# ସଂବାଦପତ୍ରରୁ ଓଡ଼ିଶାର କଥା

ପ୍ରଥମ ଖଣ୍ଡ

[ ୧୮୫୬-୧୮୮୧ ]

ସଂକଳନ ଓ ସଂପାଦନା :
ଶ୍ରୀ ସୁଧାକର ପଟ୍ଟନାୟକ



ପ୍ରକାଶକ :
ଗ୍ରନ୍ଥ ମନ୍ଦିର
କଟକ-୨ : ବ୍ରହ୍ମପୁର

ପ୍ରକାଶକ :

ଶ୍ରୀ ଅଭିରାମ ମହାପାତ୍ର
**ଗ୍ରନ୍ଥ ମନ୍ଦିର**
କଟକ-୨ : ବ୍ରହ୍ମପୁର

ମୁଦ୍ରକ :

ଶ୍ରୀ ସୁଧାକର ପଟ୍ଟନାୟକ
**ପଟ୍ଟନାୟକ ପ୍ରେସ**
କଟକ

ପ୍ରଥମ ମୁଦ୍ରଣ :
ମେ, ୧୯୭୨

ମୂଲ୍ୟ ଟ ୨୨.୦୦
ବୋର୍ଡ଼ ବନ୍ଧେଇ ଅତିରିକ୍ତ ଟ ୩-୦୦

# ମୁଖବନ୍ଧ

ମୋର ପରମ ଆନନ୍ଦର ବିଷୟ ଯେ ବିଗତ ପ୍ରାୟ ଷାଠିଏ ବର୍ଷର ଗୋଟିଏ କଳ୍ପନା ଭଗବତ୍ କୃପାରୁ ଆଜି ସଫଳ ହେବାକୁ ଯାଉଛି । ସେ ପ୍ରାୟ ୧୯୧୫–୧୭ ସାଲର କଥା । ମୁଁ ସେତେବେଳେ ରେଭେନ୍‌ସା କଲେଜର ବି. ଏ. କ୍ଲାସରେ ଯୋଗଦେଇଥାଏ । ମୋର ବିଷୟ ଥାଏ Philosophy ଓ Political Economy । ଆଉ ଜଣେ ଛାତ୍ରଙ୍କର ବିଷୟ ଥାଏ History ଓ Sanskrit । ମାନନୀୟ ଅଧ୍ୟାପକ ରାୟବାହାଦୁର ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ଚିହ୍ନାଇ କରି କହୁଥିଲେ—History is the root and Economics is the fruit. But here are two boys, one has stuck to the root without the fruit, while the other has all on a sudden risen to the fruit without touching the root ! ଯାହାହେଉ ସେହି ମହାମନା ଅଧ୍ୟାପକଙ୍କ ପ୍ରେରଣାରେ ଇତିହାସ ପ୍ରତି ମୋର ସୁପ୍ତ ଆକାଙ୍‌କ୍ଷା ଉଜ୍ଜୀବିତ ହେଲା ଏବଂ ଧୀରେ ଧୀରେ ମୁଁ ଦେଶର ପ୍ରାଚୀନ ଇତିହାସ ପ୍ରତି ଆକୃଷ୍ଟ ହେଲି । ଆଜି ମନେପଡ଼ୁଛି ଏହିପରି ଆଉ ଗୋଟିଏ ସନ୍ଧ୍ୟାର କଥା—ଆମେ ଦୁଇଜଣ ଛାତ୍ର ଯୋଗେଶବାବୁଙ୍କ ସଙ୍ଗେ ବଡ଼ାନାଣୀରେ ଏଠିବି କୌଣସି ପ୍ରାଚୀନ କୀର୍ତ୍ତିର ଚିହ୍ନ ଅଛି କି ନା, ଦେଖିବାକୁ ଯାଇଥିଲୁ । ଅବଶ୍ୟ ସେଠାରେ ସେଦିନ କିଛି ପ୍ରାଚୀନ କୀର୍ତ୍ତିର ଚିହ୍ନ ଦେଖିଲୁନାହିଁ । ଆମେ ସେଠାର ବୁଢ଼ା ବୁଢ଼ା କୁମ୍ଭାରମାନଙ୍କଠାରୁ ଶୁଣିଲୁ ଯେ ସେ ଅଞ୍ଚଳର ଉପର ମାଟି ବର୍ତ୍ତମାନ ମହାନଦୀର ବାଲିଚର ହୋଇଯାଇଅଛି । ଏଣୁ ହାଣ୍ଡି ଗଢ଼ିବା ପାଇଁ ସେମାନଙ୍କୁ ବେଳେ ବେଳେ ପ୍ରାୟ ଛଅ ସାତ ହାତ ମାଟି ଖୋଳି ତଳୁ ହାଣ୍ଡିଗଢ଼ା ମାଟି ଉଠାଇବାକୁ ପଡ଼େ । ଏହିପରି ଭାବରେ ସେହି ମାଟି ଖୋଳା ଗାତରୁ କେବେ କେବେ ସେମାନେ କୌଣସି ଠାକୁର ମୂର୍ତ୍ତି, ଘରତିଆରରେ ବ୍ୟବହୃତ କାଠ ପଥର ଆଦି ମଧ୍ୟ ପାଇଥାନ୍ତି ।

ସେ ସନ୍ଧ୍ୟାରେ ଅବଶ୍ୟ ସେମାନେ ଆମମାନଙ୍କୁ କୌଣସି ବସ୍ତୁର ନମୁନା ଦେଖେଇ ପାରିଲେ ନାହିଁ; ମାତ୍ର ଏହି କଥାଗୁଡ଼ିକ ମୋ ମନରେ ଆଙ୍କି ହୋଇ ରହିଗଲା । ଯୋଗେଶବାବୁ ଜଣେ ବିଜ୍ଞାନ ଅଧ୍ୟାପକ ହେଲେ ସୁଦ୍ଧା ସେ ସବୁ ଦିଗରେ ଜଣେ ତିନିଆଖିଆ ଥିଲେ । ତାଙ୍କର ପ୍ରେରଣାରେ ଇତିହାସ ଓ କିଂବଦନ୍ତୀ ଆଦି ପ୍ରତି ମୋର ଆକର୍ଷଣ ବଦ୍ଧମୂଳ ହୋଇଗଲା । ବର୍ତ୍ତମାନର ଏ ଗ୍ରନ୍ଥଖଣ୍ଡର ସଂକଳନ ତାହାର ଫଳ ବୋଲି କହିବାକୁ ହେବ ।

ତେବେ ଏଠାରେ ଆଉ ଦୁଇଜଣ ବନ୍ଧୁଙ୍କ ବିଷୟରେ କିଛି ନ କହିଲେ ମୋର ବର୍ଣ୍ଣନା ଅସମ୍ପୂର୍ଣ୍ଣ ରହିଯିବ । ସେ ଉଭୟେ ଥିଲେ ମୋର ଘନିଷ୍ଠତର; ମାତ୍ର ବର୍ତ୍ତମାନ ଉଭୟେ ସ୍ୱର୍ଗରେ । ମୁଁ ରେଭେନ୍‌ସା କଲେଜରେ ମୋର ସହପାଠୀ ଏବଂ ପରବର୍ତ୍ତୀକାଳରେ କଲିକତା ବିଶ୍ୱବିଦ୍ୟାଳୟର ଜଣେ ଲବ୍‌ଧପ୍ରତିଷ୍ଠ ଅଧ୍ୟାପକ ସ୍ୱର୍ଗତ ପ୍ରିୟରଞ୍ଜନ ସେନ ଏବଂ ରେଭେନ୍‌ସା କଲେଜରେ ମୋର ଘନିଷ୍ଠତର ବନ୍ଧୁ, ଓଡ଼ିଶାର ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିଦ୍ ଏବଂ ଓଡ଼ିଶା ମିଉଜିୟମ୍‌ର ପୂର୍ବତନ ସୁପରିଣ୍ଟେଣ୍ଡେଣ୍ଟ ସ୍ୱର୍ଗତ ପରମାନନ୍ଦ ଆଚାର୍ଯ୍ୟଙ୍କ କଥା କହୁଅଛି । ଆଜି ମନେପଡ଼େ, ରେଭେନ୍‌ସା କଲେଜରେ ପଢ଼ୁଥିଲାବେଳେ ଅନେକ ସମୟରେ ପ୍ରିୟରଞ୍ଜନବାବୁ ଓ ମୁଁ ଯୋଗେଶବାବୁଙ୍କ ସଙ୍ଗେ ନାନା ଐତିହାସିକ ପ୍ରସଙ୍ଗରେ କଥାବାର୍ତ୍ତା କରୁଥିଲୁ ଏବଂ ତାଙ୍କଠାରୁ ନାନାପ୍ରସଙ୍ଗରେ ଉପଦେଶ ମଧ୍ୟ ପାଉଥିଲୁ । ଆଉ ଆଜି ଶ୍ରଦ୍ଧା ସହିତ ପ୍ରକାଶ କରୁଅଛି ଯେ, ପ୍ରିୟରଞ୍ଜନବାବୁ ଓ ପରମାନନ୍ଦ-ବାବୁଙ୍କର ମୋପ୍ରତି କପରି ଗୋଟିଏ ଅଯାଚିତ ବିଶ୍ୱାସ ଆସିଯାଇଥିଲା । ସେମାନେ ଭାବୁଥିଲେ ଯେ ଏହି ଲୋକଟି ଉପରେ ଇତିହାସ ସଂଗ୍ରହ ବିଷୟରେ କେତେକ ପରିମାଣରେ ନିର୍ଭର କରାଯାଇପାରେ । ମୋର ଏହି ଦୁଇ ଅନ୍ତରଙ୍ଗ ବନ୍ଧୁ ଏ ଗ୍ରନ୍ଥଖଣ୍ଡି ସଂକଳନ କରିବାକୁ ବରାବର ମୋତେ ଉତ୍ସାହିତ କରୁଥିଲେ । ହାର୍ଦ୍ଦିକ କୃତଜ୍ଞତା ସହିତ ଆଜି କହୁଅଛି—ମୋର ଏ କାର୍ଯ୍ୟରେ ସାହାଯ୍ୟ କରିପାରେ ବୋଲି ଭାବି ପ୍ରିୟରଞ୍ଜନବାବୁ ତାଙ୍କର ନାନା କାର୍ଯ୍ୟ ମଧ୍ୟରେ ବି ଖୋଜି 'ସମ୍ବାଦପତ୍ରେ ସେ କାଲେର କଥା' ନାମକ ବଙ୍ଗଳା ବହିଖଣ୍ଡମାନ କଲିକତାରୁ ମୋତେ ଉପହାରସ୍ୱରୂପ ପଠାଇଦେଇଥିଲେ; ଯହିଁରୁ ଆଜି ବି ମୁଁ ନାନା ସାହାଯ୍ୟ ପାଉଅଛି । ଆଉ ପରମାନନ୍ଦବାବୁ ତ ପ୍ରତି ମାସରେ ବାରିପଦାରୁ କଟକ ଆସିଲେ ମୋ ସଙ୍ଗେ ଦେଖାକରିବା ଏବଂ ଏ ବହି ବାବତରେ ଖବର ନେବା ତାଙ୍କର ଗୋଟିଏ ଅବଶ୍ୟ କର୍ତ୍ତବ୍ୟ-କର୍ମ ଥିଲା । ତାଙ୍କର ମୃତ୍ୟୁର ଠିକ୍ ଦୁଇଦିନ ପୂର୍ବରୁ ସେ ମୋତେ ଯେଉଁ ଚିଠିଖଣ୍ଡି ଲେଖିଥିଲେ, ସେଥିରେ ମଧ୍ୟ ମୁଁ ଏ ବହି କାମରେ କେତେଦୂର ଆଗେଇଲିଣି ବୋଲି ପଚାରିଥିଲେ । ଏ ଉଭୟ ବନ୍ଧୁଙ୍କ ଜୀବିତକାଳ ମଧ୍ୟରେ ଏ ଗ୍ରନ୍ଥ ଖଣ୍ଡି ପ୍ରକାଶିତ ହୋଇପାରିଥିଲେ ନିଜର ଶ୍ରମ ସାର୍ଥକ ମନେକରିଥାନ୍ତି; ମାତ୍ର ମନୁଷ୍ୟ ଯାହା ଭାବେ ତାହା କଣ ସବୁବେଳେ ସର୍ବନିୟନ୍ତାଙ୍କ ଆଶୀର୍ବାଦ ଲାଭ କରେ ?

ସ୍ୱଦେଶର, ସ୍ୱଜାତିର ପୁରୁଣା ଗଳ୍ପ, ପୁରୁଣା କଥା ଶୁଣିବାକୁ ଓ ଜାଣିବାକୁ କାହାର ମନ ଉଲ୍ଲସିତ ନହୁଏ ? ପୁରୁଣା ଶାସ୍ତ୍ର ପଢ଼ିବା ଶୁଣିବା ପରି ଦେଶର ପୁରୁଣା ସମ୍ବାଦପତ୍ରଠାରୁ ମଧ୍ୟ ଆମ ଘରର କେତେ ପୁରୁଣା କଥା ଆମେ ଜାଣିପାରୁ ।

ଦୁଃଖର ବିଷୟ, ଓଡ଼ିଶା ବ୍ରିଟିଶ ଶାସନାଧୀନ ହେବାର ପ୍ରାୟ ସତୁରିବର୍ଷ ପରେ ଯାଇ ଓଡ଼ିଶାରେ ନିୟମିତ ସମ୍ବାଦପତ୍ରର ପ୍ରଚଳନ ଆରମ୍ଭ ହେଲା ଏବଂ କୁହାଯାଇପାରେ ତାହା ମଧ୍ୟ ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷର ଗୋଟିଏ ସୁଫଳ । ନ'ଅଙ୍କ ଦୁର୍ଭିକ୍ଷ ପର୍ଯ୍ୟନ୍ତ ଓଡ଼ିଶା ଉପରେ ଶାସନ କର୍ତ୍ତୃପକ୍ଷଙ୍କର କୌଣସି ଦୃଷ୍ଟିପାତ ହୋଇ ନ ଥିଲା କହିଲେ ଚଳେ

ଏବଂ ଓଡ଼ିଶାର ଉନ୍ନତକଳ୍ପେ ଯାହା ଯାହା କାର୍ଯ୍ୟାନୁଷ୍ଠାନ ହେଲା, ତାହା ତାଙ୍କ ଦୁର୍ଭିକ୍ଷର ପରବର୍ତ୍ତୀ । ସମ୍ବାଦପତ୍ରର ପ୍ରଚ୍ଚର ଆରମ୍ଭ ହୋଇଥିଲା ସେହି ଅଧ୍ୟବସାୟୀ ଇଂରେଜ ମିଶନାରୀମାନଙ୍କଦ୍ୱାରା ପ୍ରାୟ ୧୮୫୫-୫୬ ସାଲରେ । ତାହାପରେ ଯାଇ ଆମ୍ଭମାନଙ୍କର କୌଣସି କୌଣସି ଶିକ୍ଷିତ ଦେଶବାସୀ ଏ ଦଗରେ ଆଖି ପକାଇଥିଲେ ।

ଏହିପରି ଭାବରେ ଓଡ଼ିଶାରେ ସମ୍ବାଦପତ୍ର ପ୍ରଚଳନର ନିମ୍ନଲିଖିତ କାଳକ୍ରମ ଦେଖାଯାଏ :

ଜ୍ଞାନାରୁଣ } ମିଶନାରୀ ପତ୍ରିକା;
ପ୍ରବୋଧଚନ୍ଦ୍ରିକା } ୧୮୫୫-୫୬ ରେ ଆରମ୍ଭ

ଉତ୍କଳଦୀପିକା (କଟକ) ୪।୮।୧୮୬୬ରେ ଆରମ୍ଭ
ବୋଧଦାୟିନୀ (ବାଲେଶ୍ୱର) ୧୮୬୮ ଜୁଲାଇ
ଉତ୍କଳ ଶୁଭକରୀ ପତ୍ରିକା ୧୮୬୯ ( ବ୍ରାହ୍ମଧର୍ମ ସମ୍ପର୍କୀୟ )
ବାଲେଶ୍ୱର ସମ୍ବାଦବାହିକା (୧୮୬୮) ଆରମ୍ଭ ମାସିକପତ୍ରଭାବେ;
ପରେ ସାପ୍ତାହିକରେ ପରିଣତ ହେଲା ।
ଉତ୍କଳହିତୈଷିଣୀ (କଟକ-ପାକ୍ଷିକ) ୧୮୬୯
ଉତ୍କଳଦର୍ପଣ (ବାଲେଶ୍ୱର) ୧୮୭୩, ପ୍ରଥମେ ମାସିକ,
ପରେ ୧୮୭୭ରେ ପାକ୍ଷିକ, ପରେ ୧୮୭୯ରେ ସାପ୍ତାହିକ
ଉତ୍କଳପୁତ୍ର (କଟକ) ୧୮୭୩, ପ୍ରଥମେ ପାକ୍ଷିକ, ପରେ ସାପ୍ତାହିକ
ଭକ୍ତ ପ୍ରଦାୟିନୀ (କଟକ) ୧୮୭୩, ପାକ୍ଷିକ
ସ୍ୱଦେଶୀ (କଟକ) ୧୮୭୩
ଶିକ୍ଷକ ଓ ଧର୍ମବୋଧିନୀ (ବାଲେଶ୍ୱର) ୧୮୭୩
ପୁରୁଷୋତ୍ତମ ଚନ୍ଦ୍ରିକା (ପୁରୀ) ୧୮୭୪, ମାସିକ
ସ୍ୱଦେଶୀ (ବ୍ରହ୍ମପୁର) ୧୮୭୬
ବାର୍ତ୍ତାଲହରୀ (ବ୍ରହ୍ମପୁର) ୧୮୭୭
ଉତ୍କଳମଧୁପ (କଟକ) ୧୮୭୮, ମାସିକ
ଓଡ଼ିଶା ଗେଜେଟ (କଟକ) ୧୮୭୯
ମୟୂରଭଞ୍ଜ (ବାରିପଦା) ୧୮୭୯
କୋହିନୂର (କଟକ) ୧୮୮୦
ପୁରୁଷୋତ୍ତମ ଦୀପିକା (ପୁରୀ) ୧୮୮୦
ପୁରୁଷୋତ୍ତମ ପତ୍ରିକା (ପୁରୀ) ୧୮୮୨ ସାପ୍ତାହିକ
ପ୍ରଜାବନ୍ଧୁ (ବାଲେଶ୍ୱର) ୧୮୮୨
ସେବକ (କଟକ) ୧୮୮୩, ମାସିକ

ସଂସ୍କାରକ (କଟକ) ୧୮୮୩, ସାପ୍ତାହିକ
ଧୂମକେତୁ (ବାଲେଶ୍ୱର) ୧୮୮୩
ତାରକା (ବାଲେଶ୍ୱର) ୧୮୮୫, ମାସିକ ଖ୍ରୀଷ୍ଟିୟାନ ପତ୍ରିକା
ଶିକ୍ଷାବନ୍ଧୁ (କଟକ) ୧୮୮୬, ମାସିକ
ନବସମ୍ବାଦ (କଟକ) ୧୮୮୬
ବ୍ୟବସାୟୀ (ବାରିପଦା) ୧୮୮୬
Orissa Students (କେନ୍ଦ୍ରାପଡ଼ା) ୧୮୮୬
ଓଡ଼ିଆ ବା ଜଗନ୍ନାଥ ପତ୍ରିକା ୧୮୮୭ (ପରେ ଓଡ଼ିଆ ଓ ନବସମ୍ବାଦ ଏକତ୍ରିତ ହୋଇ ବାଲେଶ୍ୱରରୁ ବାହାରିଲା, ୧୮୮୮)
ସାମ୍ୟବାଦ (କଟକ) ୧୮୮୮
Orissa Patriot (କଟକ) ୧୮୮୮
ଆଶା (କଟକ) ୧୮୮୮
ସାହିତ୍ୟ ସମ୍ମିଳନୀ (କଟକ) ୧୮୮୯
ଦୀପକ (କଟକ) ୧୮୮୯, ସାପ୍ତାହିକ
ସମ୍ବଲପୁର ହିତୈଷିଣୀ (ବାମଣ୍ଡା) ୧୮୮୯
ଉତ୍କଳପ୍ରଭା (ବାଲେଶ୍ୱର) ମାସିକ, ୧୮୯୧-୯୫
ଇନ୍ଦ୍ରଧନୁ (କଟକ) ୧୮୯୩
ବିଜୁଳି (ବାମଣ୍ଡା) ୧୮୯୩
ଆଶା (କଟକ) ୧୮୯୨
ବ୍ରାହ୍ମ (କଟକ) ୧୮୯୨, ମାସିକ
ଉତ୍କଳ-ଚନ୍ଦ୍ରିକା (କଟକ) ୧୮୯୪, ମାସିକ
ଉତ୍କଳବନ୍ଧୁ (ତାଳଚେର) ୧୮୯୬, ମାସିକ
ପ୍ରଭାତ ତାରା (କଟକ) ୧୮୯୬, ମାସିକ ଖ୍ରୀଷ୍ଟିୟାନ ପତ୍ରିକା
Ganjam News (ବ୍ରହ୍ମପୁର) ୧୮୯୬
ଉତ୍କଳ ସାହିତ୍ୟ (କଟକ) ୧୮୯୭, ମାସିକ ସାହିତ୍ୟ ପତ୍ରିକା
ଗଞ୍ଜାମ ଓଡ଼ିଆ ହିତବାଦିନୀ (ବ୍ରହ୍ମପୁର) ୧୮୯୯, ମାସିକ; ପରେ ସାପ୍ତାହିକ
ଆଲୋଚନା (ବାମଣ୍ଡା) ୧୯୦୦, ମାସିକ
ଗଡ଼ଜାତବାସିନୀ (ତାଳଚେର) ୧୯୦୨ ।

ଏହାଛଡ଼ା ଆଉ କେତେ ଖଣ୍ଡ ଇଂରାଜୀ ପତ୍ରପତ୍ରିକା ମଧ୍ୟ କଟକରୁ ବାହାର ଅଳ୍ପଦିନ ମଧ୍ୟରେ ବିଲୀନ ହୋଇଯାଇଥିଲା; ଯଥା— Cuttack Argus, Cuttack Star ଇତ୍ୟାଦି ।

ପୂର୍ବ ପୃଷ୍ଠାରେ ଦିଆଯାଇଥିବା ତାଲିକା ମଧ୍ୟରେ ବର୍ତ୍ତମାନର ପ୍ରଚଳିତ ସମାଜ, ପ୍ରଜାତନ୍ତ୍ର, ମାତୃଭୂମି ଓ କଳିଙ୍ଗ ପ୍ରଭୃତି ପତ୍ରିକାମାନଙ୍କର କଥା ସମସ୍ତେ ଜାଣନ୍ତି । ତେଣୁ ସେମାନଙ୍କର ନାମ ଏ ତାଲିକାଭୁକ୍ତ କରିବାର ଆବଶ୍ୟକତା ଅନୁଭୂତ ହେଲନାହିଁ ।

ଆଉ ଗୋଟିଏ କଥା—ଆମ ଏଠାର ଦେଶୀୟ ଲୋକମାନଙ୍କଦ୍ୱାରା ପ୍ରଥମ ହୋଇ ପ୍ରତିଷ୍ଠିତ ହେଲ 'ଉତ୍କଳଦୀପିକା' । ତାହା ପୂର୍ବରୁ ମିଶନାରୀମାନଙ୍କଦ୍ୱାରା ଏକଚାଟିଆ ଭାବରେ ସମ୍ବାଦପତ୍ର ଚାଲୁଥିବାରୁ ମନେହୁଏ ଦୀପିକା ପ୍ରତି ସେମାନଙ୍କର ଶୁଭଦୃଷ୍ଟି ନଥିଲା । ଏଥିପାଇଁ ଆମ୍ଭେମାନେ ଦେଖୁଁ ଦୀପିକା ଛପାପାଇଁ ପାଦ୍ରିଙ୍କ ସୀସା ତିଆରି ଅକ୍ଷର ମିଳୁ ନ ଥିଲା । ତେଣୁ ପୂର୍ବ ବର୍ଷେକାଳ ଦୀପିକା ଛପା ହେଉଥିଲା ପଥର ଛାପାରେ । ତାହା ଦେଖିବାକୁ ଆଜିକାଲିର ସାଇକ୍ଲୋଷ୍ଟାଇଲ ଛାପା ପରି । ପରେ ବୋଧହୁଏ ମିଶନାରୀମାନଙ୍କ ସଙ୍ଗେ କିଛୁ ରାଜିନାମା ହୋଇଥିବ । ତେଣୁ ଆମ୍ଭେମାନେ ଦେଖୁଁ ତା ୪ । ୮ । ୧୮୬୭ଠାରୁ ଦୀପିକା ଛାପାରେ ସୀସା ଅକ୍ଷର ବ୍ୟବହୃତ ହେଲା । ପାଠକମାନଙ୍କର କୌତୂହଳ ନିବାରଣ ନିମିତ୍ତ ଦୀପିକାର ସେହି ପ୍ରଥମ ପଥର ଛାପାର ଖଣ୍ଡିଏ ଫଟୋ ଏଥିସଙ୍ଗେ ଦିଆଗଲା ।

ଆଗରୁ କହୁଅଛୁଁ ମିଶନାରୀମାନେ ୧୮୫୫—୫୬ ସାଲରେ ଓଡ଼ିଶାରେ ପ୍ରଥମେ ସମ୍ବାଦପତ୍ରର ପ୍ରଚାର କଲେ; ମାତ୍ର ତାହାର ବହୁ ପୂର୍ବରୁ ପ୍ରକାଶିତ ଆଉ ଖଣ୍ଡିଏ ବିଚିତ୍ର ସମ୍ବାଦପତ୍ର ବିଷୟରେ ଏଠାରେ ଦୁଇପଦ ନ କହିଲେ ବର୍ଣ୍ଣନା ଅସମ୍ପୂର୍ଣ୍ଣ ରହିଯିବ । ଏହାର ନାମ ଥିଲା 'କୁଞ୍ଜବର ପତ୍ର' । ଏହାର ପ୍ରଚାରକ ଥିଲେ ଜଣେ ଓଡ଼ିଆ ସାଧୁ ମହାପୁରୁଷ । କହିବାକୁ ଗଲେ ବର୍ତ୍ତମାନ ଆମ ଦେଶର ଲୋକେ ତାଙ୍କର ନାମ ସୁଦ୍ଧା ଭୁଲିଗଲେଣି । ଆମ୍ଭେମାନେ ଚୌଦ୍ୱାର ନିକଟବର୍ତ୍ତୀ କୁଞ୍ଜବର ମଠର ସାଧୁ ସୁନ୍ଦର ଦାସ ବା ସାଧାରଣରେ ପରିଚିତ ସୁନ୍ଦର ବାବାଜୀଙ୍କ କଥା କହୁଅଛୁଁ । ଓଡ଼ିଶାକୁ ଖ୍ରୀଷ୍ଟିୟାନ ମିଶନାରୀମାନେ ପ୍ରଥମ ହୋଇ ଆସିଲେ ୧୨ ତାରିଖ ଫେବୃଆରୀ ୧୮୨୨ ସାଲରେ; ମାତ୍ର ସେମାନଙ୍କ ଆସିବାର ବହୁ ବର୍ଷ ପୂର୍ବରୁ ଚଉଦ୍ୱାରର ଉପାନ୍ତବର୍ତ୍ତୀ କୁଞ୍ଜବର ମଠରେ ସାଧୁ ସୁନ୍ଦର ଦାସ ତାଙ୍କର ଆସ୍ଥାନ ସ୍ଥାପନ କରିଥିଲେ । ମିଶନାରୀମାନେ କଟକକୁ ଆସିବାର ଚାରିବର୍ଷ ପରେ ୧୮୨୬ ସାଲରେ ସାଧୁ ସୁନ୍ଦର ଦାସଙ୍କ ନିମନ୍ତ୍ରଣକ୍ରମେ ରେଭରେଣ୍ଡ ସଟନ୍ ପ୍ରଭୃତି କୁଞ୍ଜବର ଯାଇ ସାଧୁଙ୍କ ସହିତ ସାକ୍ଷାତ୍ କଲେ ଏବଂ ସେହି ପ୍ରଥମ ସାକ୍ଷାତ୍କାରରେ ମଧ୍ୟ ମିଶନାରୀମାନେ ତାଙ୍କ ପ୍ରତି ଅତ୍ୟନ୍ତ ଆକୃଷ୍ଟ ହୋଇ ଯାଇଥିଲେ । ସେ ଜଣେ ସର୍ବଧର୍ମସମଦର୍ଶୀ ମହାପୁରୁଷ ଥିଲେ । ଚୌଦ୍ୱାର ନିକଟବର୍ତ୍ତୀ ଗୋଟିଏ ଗ୍ରାମର ଜଣେ ଅଧିବାସୀ ଗଙ୍ଗାଧର ଷଡ଼ଙ୍ଗୀ ଓଡ଼ିଶାର ପୂର୍ବତନ ମରହଟ୍ଟା ଶାସକ ଲଛମନଜୀ ଯାଚକଙ୍କ ନାତି ରାମଚନ୍ଦ୍ରଜୀ ଯାଚକ ପ୍ରଭୃତି ସାଧୁସୁନ୍ଦର ଦାସଙ୍କର ଶିଷ୍ୟଶ୍ରେଣୀଭୁକ୍ତ ହୋଇଥିଲେ । ମିଶନାରୀମାନଙ୍କ ସଂସ୍ପର୍ଶରେ ଆସିବା ପରେ ଗଙ୍ଗାଧର ଓ ରାମଚନ୍ଦ୍ର ଯେତେବେଳେ ୧୮୨୮–୨୯ରେ ଖ୍ରୀଷ୍ଟଧର୍ମ ଅବଲମ୍ବନ କରିବାକୁ ଗଲେ ସୁନ୍ଦର ବାବାଜୀ ବିନା ଆପତ୍ତିରେ ସେମାନଙ୍କୁ ଧର୍ମାନ୍ତର ଗ୍ରହଣ କରିବାକୁ ଛାଡ଼ିଦେଇଥିଲେ । ସୁନ୍ଦର ବାବାଜୀ

ତେତେବେଳେ ଜଣେ ଅତ୍ୟନ୍ତ ବୟସ୍କ ସାଧୁ ଥିଲେ । ତାଙ୍କର ଶିଷ୍ୟମାନଙ୍କର ବିଶ୍ୱାସ ଥିଲା, ସେତେବେଳେ ବାବାଜୀଙ୍କର ବୟସ ପାଖାପାଖି ଏକଶ' ବର୍ଷ ଏବଂ ସେମାନଙ୍କର ବିଶ୍ୱାସ ବାବାଜୀ ଜନ୍ମ ହୋଇଥିଲେ ପ୍ରାୟ ୧୭୨୦ ସାଲରେ, ମାତ୍ର Orissa and its Evangelisation ଗ୍ରନ୍ଥରେ ଏହାର ଲେଖକ Rev. A. Sutton ୧୮୫୦ ସାଲରେ ଲେଖିଥିଲେ, ସେ ତାଙ୍କୁ ୧୮୨୭ ସାଲରେ କୁଜିବର-ଠାରେ ଦେଖିଲାବେଳେ ସେ ଅତ୍ୟନ୍ତ ବୁଢ଼ା ହୋଇଯାଇଥିଲେ ମଧ୍ୟ ସଚଳ ତେତେବେଳେ ତାଙ୍କର ବୟସ ଅନ୍ଦାଜ ପଚାଶ ବର୍ଷ ହୋଇଥିବ ବୋଲି ଅନୁମାନ କରିଥିଲେ । ଏ ଅନୁମାନ ଯଦି ସତ୍ୟ ହୁଏ, ତେବେ ସୁନ୍ଦରି ବାବାଜୀଙ୍କର ଜନ୍ମ ଆନୁମାନିକ ୧୭୭୫ ସାଲର ଆଖପାଖରେ ହୋଇଥିବ ବୋଲି ଧରିଯାଇପାରେ ।

ସୁନ୍ଦରି ବାବାଜୀଙ୍କର ଅନ୍ୟାନ୍ୟ କାର୍ଯ୍ୟ ଛଡ଼ା ତାଙ୍କର ଗୋଟିଏ ଅତି ବିଖ୍ୟାତ ଓ ମହତ୍ତ୍ୱ କାର୍ଯ୍ୟ ଥିଲା ଯେ, ସେ ଯୁଗରେ ସୁଦ୍ଧା ଯେତେବେଳେ ବଙ୍ଗଦେଶରେ ମଧ୍ୟ ସମ୍ବାଦ-ପତ୍ରର ନାମ ବୋଧହୁଏ ଶୁଣାନଥିଲା, ତେତେବେଳେ ସୁନ୍ଦରି ବାବାଜୀ କୁଜିବର ମଠରୁ 'କୁଜିବର ପତ୍ର' ନାମରେ ତାଳପତ୍ରରେ କମ୍ବା କଟକ ନିକଟବର୍ତ୍ତୀ ପଦ୍ମପୁର ଗ୍ରାମରେ ସେକାଳରେ ତିଆରି ହେଉଥିବା 'ହରିତାଳି' କାଗଜରେ ହାତରେ ଲେଖା ଗୋଟିଏ ସମ୍ବାଦପତ୍ର ବାହାର କରି ତାକୁ ହାଟ, ମେଳା ବା ପରେ ଖ୍ରୀଷ୍ଟୀୟ ସମିତି ଆଦିରେ ପ୍ରକାଶ କରୁଥିଲେ ଏବଂ ଏଥିରେ ଦେଶର ନାନା ବିଷୟର ଚର୍ଚ୍ଚା ଓ ଆଲୋଚନା ହେଉଥିଲା । ୧୮୩୯ ସାଲରେ ସାଧୁ ସୁନ୍ଦର ଦାସଙ୍କ ଦେହତ୍ୟାଗପରେ 'କୁଜିବର ପତ୍ର' ବନ୍ଦ ହୋଇ ଯାଇଥିଲା । ଏହାର ପ୍ରାୟ ପନ୍ଦର ଷୋଳବର୍ଷ ପରେ ଯାଇ ୧୮୫୫-୫୬ ସାଲରେ ଖ୍ରୀଷ୍ଟିୟାନ ମିଶନାରିମାନେ ଓଡ଼ିଶାରେ 'ଜ୍ଞାନାରୁଣ' ଓ 'ପ୍ରବୋଧଚନ୍ଦ୍ରିକା' ପତ୍ରିକା ପ୍ରକାଶ କଲେ । ଏଥିରୁ ଦେଖାଯିବ ଆଜକୁ ପ୍ରାୟ ଦେଢ଼ଶ ବର୍ଷ ପୂର୍ବେ ସେକାଳର ଜଣେ ଓଡ଼ିଆ ସାଧୁ-ପୁରୁଷଙ୍କର ଦୃଷ୍ଟି କିପରି ବହୁପ୍ରସାରି ଥିଲା । ଅତ୍ୟନ୍ତ ଦୁଃଖର ବିଷୟ ସାଧୁ ସୁନ୍ଦର ଦାସଙ୍କ ମୃତ୍ୟୁ ହେଲା ଆଜକୁ ପ୍ରାୟ ୧୩୪ ବର୍ଷ ତଳେ । ଏ ଦୀର୍ଘକାଳ ଗତ ହୋଇଥିବାରୁ ଆଜି ଆଉ 'କୁଜିବର ପତ୍ର'ରୁ ଖଣ୍ଡିଏ ହେଲେ ଆମ ଦୃଷ୍ଟିପଥାରୂଢ଼ ହୋଇପାରିନାହିଁ; ଯଦିବା ଇଉରୋପୀୟ ମିଶନାରିମାନେ ତାକୁ ସେକାଳରେ ବିଲାତ ପର୍ଯ୍ୟନ୍ତ ମଧ୍ୟ ପଠାଇଥିଲେ । 'Centenary Volume of the Baptist Missionary Society, London (1792—1892)'ର ସମ୍ପାଦକ John Brown Meyers ତାଙ୍କର ଉକ୍ତ ଗ୍ରନ୍ଥର ୨୩୭-୫୨ ପୃଷ୍ଠାରେ ସାଧୁ ସୁନ୍ଦର ଦାସଙ୍କ ସମ୍ପର୍କରେ ଅନେକ କଥା ଲେଖିଛନ୍ତି ।

ଏଥର ବର୍ତ୍ତମାନର କଥା ଆମ୍ଭମାନଙ୍କୁ ଦେଖିବାକୁ ପଡ଼ିବ । 'ଉତ୍କଳଦୀପିକା' ଆଦି ଓଡ଼ିଶାର ପ୍ରାଚୀନ ସମ୍ବାଦପତ୍ରମାନ ଏବେ ଯେଉଁଠାରେ ଯେତେଖଣ୍ଡ ସଂଗୃହୀତ ହୋଇ ପାରିଅଛି, ତହିଁରୁ ସ୍ଥୂଳରେ ଏ ଦେଶ ସମ୍ପର୍କରେ ଯେତେଗୁଡ଼ିଏ ସମ୍ବାଦ ମିଳିଅଛି, ତାହା ଏ ଗ୍ରନ୍ଥରେ ପ୍ରକାଶ କରିବାକୁ ଆମ୍ଭେମାନେ ଚେଷ୍ଟା କରିଅଛୁ ।

'ଉତ୍କଳଦୀପିକା' ବାହାରିବା ପୂର୍ବରୁ 'ଜ୍ଞାନାରୁଣ' ଓ 'ପ୍ରବୋଧଚନ୍ଦ୍ରିକା' ବାହାରି-ଥିଲେ ମଧ୍ୟ ସେସବୁ ବେଶି ଦିନ ଚଳିନଥିଲା । ୧୮୬୬ ସାଲରେ ଉତ୍କଳଦୀପିକା ବାହାରିବା-ବେଳକୁ ଓଡ଼ିଶା ପ୍ରାୟ ଷାଠିଏ ବର୍ଷ ବ୍ରିଟିଶ ଶାସନାଧୀନ ହୋଇସାରିଥିଲେ ମଧ୍ୟ ତତ୍କାଳୀନ ଓଡ଼ିଶା ପରି ଗୋଟିଏ ରାସ୍ତାଘାଟଶୂନ୍ୟ ନଦୀ-ନାଳବେଷ୍ଟିତ ଅପନ୍ତରା ରାଜ୍ୟ ଉପରେ ପ୍ରଧାନ ରାଜକର୍ମଚାରୀମାନଙ୍କର ସେତେବେଳକୁ ସୁଦ୍ଧା କୌଣସି ସୁଦୃଷ୍ଟି ପଡ଼ି ନଥିଲା କହିଲେ ଚଳେ । ଯାହାହେଉ, କେଉଁ ଶୁଭକ୍ଷଣରେ ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷ ପଡ଼ିଲା, ସେଥି ସଙ୍ଗକୁ ମଣିକାଞ୍ଚନ ସଂଯୋଗ ପରି ତେତେବେଳେ ଗୌରୀଶଙ୍କର, ବିଚକ୍ଷାନନ୍ଦ, ମହାରାଜ ଭଗୀରଥ ମହେନ୍ଦ୍ର ବାହାଦୂର, କଲେକ୍ଟର ଜନ୍ ବିମ୍ସ, ଉତ୍କଳହିତୈଷୀ କମିଶନର ରେଭେନ୍‌ସା ପ୍ରଭୃତିଙ୍କର ଆବିର୍ଭାବ ହୋଇଥିଲା । ତାହାରି ସୁଫଳରେ ନ'ଅଙ୍କ ଦୁର୍ଭିକ୍ଷର ପ୍ରତିକାର ଛଡ଼ା କ୍ରମେ କ୍ରମେ କଟକରେ ହାଇସ୍କୁଲ, କଲେଜ, ନର୍ମାଲ ସ୍କୁଲ, ମେଡ଼ିକାଲ ସ୍କୁଲ, ଜରିବ ଶିକ୍ଷା ସ୍କୁଲ, ଗୋଟିଏ କ୍ଷୁଦ୍ର ବାଳିକା ବିଦ୍ୟାଳୟ ଏବଂ ଶିକ୍ଷା ବିଭାଗ ପାଇଁ ଜଣେ ସ୍ୱତନ୍ତ୍ର ଇନସ୍ପେକ୍ଟରଙ୍କ ଅଭାବ ଅନୁଭୂତ ହେଲା ଏବଂ ପରେ ସେସବୁ ପ୍ରତିଷ୍ଠିତ ହେଲା ମଧ୍ୟ ।

ପଶ୍ଚାତ୍ତରେ ପ୍ରାୟ ସେହି ସମୟରେ ଓଡ଼ିଆଭାଷା ଉଠାଇ ଦେଇ ଓଡ଼ିଶାରେ ବଙ୍ଗଳା ଭାଷାର ପ୍ରଚଳନ ପାଇଁ ମଧ୍ୟ ବାଲେଶ୍ୱର ସ୍କୁଲର ଜନୈକ ଶିକ୍ଷକ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ, ବାଲେଶ୍ୱର ସ୍କୁଲ ଡେପୁଟି ଇନସ୍ପେକ୍ଟର ଶିବଦାସ ଭଟ୍ଟାଚାର୍ଯ୍ୟ, କଟକର ଉତ୍କଳହିତୈଷିଣୀ ପତ୍ରିକାର ସମ୍ପାଦକ କାଳିପଦ ବନ୍ଦୋପାଧ୍ୟାୟ, ସ୍କୁଲ ଡେପୁଟୀ ଇନସ୍ପେକ୍ଟର ଉମାଚରଣ ହାଲଦାର, ଐତିହାସିକ ରାଜେନ୍ଦ୍ରଲାଲ ମିତ୍ର ଆଦିଙ୍କର କ୍ରୂର ଚେଷ୍ଟା ମଧ୍ୟ ଚାଲିଥିଲା । ଯାହାହେଉ ବଳିଷ୍ଠକର୍ମୀ ଗୌରୀଶଙ୍କର, ଓଡ଼ିଆଭାଷାପ୍ରେମୀ ଭାଷାବିତ୍ କଲେକ୍ଟର ଜନ୍ ବିମ୍ସ୍ ଭାଷାବିତ୍ ରଙ୍ଗଲାଲ ବାନାର୍ଜି ଓ ଉତ୍କଳହିତୈଷୀ କମିଶନର ରେଭେନ୍‌ସା ଆଦିଙ୍କର ପ୍ରବଳ ଚେଷ୍ଟାରେ ସେ ଦୁଷ୍କର୍ମ ଫଳବତୀ ହୋଇପାରିଲା ନାହିଁ ।

ଏହି ସମସ୍ତ ସୁକର୍ମ କୁକର୍ମର ପ୍ରତିଚ୍ଛାୟା ଉତ୍କଳଦୀପିକା ଆଦିରୁ ଆମ୍ଭେମାନେ ଦେଖିବାକୁ ପାଉଁ । ତେଣୁ ଦେଶର ଇତିହାସ ସଙ୍କଳନ ପାଇଁ, ଦେଶର ତତ୍କାଳୀନ ରାଜନୈତିକ ଓ ସାମାଜିକ ପ୍ରତିଚ୍ଛାୟା ସଂଗ୍ରହ ପାଇଁ ଏହି ସବୁ ସମ୍ବାଦପତ୍ରର କାର୍ଯ୍ୟ ବହୁମୂଲ୍ୟବାନ ।

ଅତ୍ୟନ୍ତ ଦୁଃଖର ବିଷୟ ଆମର ଓଡ଼ିଶାରେ ଆଧୁନିକ ଶିକ୍ଷାର ପ୍ରଚଳନ ମଧ୍ୟ ହେଲା ବହୁ ପରେ । ତେଣୁ ଯେ କେତେଖଣ୍ଡ ସମ୍ବାଦପତ୍ର ପ୍ରକାଶିତ ହୋଇଥିଲା, ସେ ସବୁକୁ ସଂଗ୍ରହ କରି ରଖିବାର ଆବଶ୍ୟକତା ବା ପ୍ରବୃତ୍ତି ତେତେବେଳେ ଆମ ଲୋକଙ୍କର ନଥିଲା । କେବଳ ଗୋଟିଏ ବିଶେଷ କାରଣରୁ ଦୀପିକାର ଯୋଡ଼ିଏ ସେଟ୍ ମାତ୍ର ରହିଯାଇ ଥିଲା— ଗୋଟିଏ ହେଉଛି ଦୀପିକାର ସୁଯୋଗ୍ୟ ସମ୍ପାଦକ ଗୌରୀଶଙ୍କର ବାବୁଙ୍କର ନିଜର ସେଟ୍‌ଟି ଏବଂ ଅନ୍ୟଟି ହେଉଛି ଓଡ଼ିଶାର କମିଶନରଙ୍କ ଅଫିସରେ ବନ୍ଧାବନ୍ଧିହୋଇ

ରହିଥିବା ଆଉ ଗୋଟିଏ ସେଟ୍ । ଗୌରୀଶଙ୍କର ବାବୁଙ୍କର ମୃତ୍ୟୁପରେ ତାଙ୍କ ସେଟଟି ନେଇ ତାଙ୍କ ଭ୍ରାତୃଷ୍ପୁତ୍ର ଅଧ୍ୟାପକ ଗିରିଜାଶଙ୍କର ରାୟ ଗୋଟିଏ ବଡ଼ କାମ କଲେ । ସେ ସେଟ୍‌ଟିକୁ "Orissa State Archives"କୁ ଦାନ କରିଦେଲେ । ତାହା ସେଠାରେ ବର୍ତ୍ତମାନ ସୁରକ୍ଷିତ ହୋଇ ରହିଅଛି । କମିଶନର ଅଫିସରେ ଥରେ ତାଙ୍କର ଅନ୍ୟାନ୍ୟ ନୂତନ ନଥିପତ୍ର ସଂଗ୍ରହ କରି ରଖିବା ପାଇଁ ସ୍ଥାନର ଅକୁଳାନ ହେବାର ଦେଖା-ଯିବାରୁ ସେଠାରେ ଥିବା ପୁରୁଣା ସେଟ୍‌ଟିକୁ ମଧ୍ୟ ନଷ୍ଟ କରି ଦେବାର ପ୍ରସ୍ତାବ ହେଲା । ସୌଭାଗ୍ୟକ୍ରମେ ସେତେବେଳେ ମୁଁ ଉତ୍କଳ ସାହିତ୍ୟ ସମାଜର ସମ୍ପାଦକ ଥିଲି ଏବଂ ସେ ଦୁଷ୍ପ୍ରାପ୍ୟ ବହୁମୂଲ୍ୟ ସେଟ୍‌ଟିକୁ ଉତ୍କଳ ସାହିତ୍ୟ ସମାଜ ପରି ଓଡ଼ିଶାର ଗୋଟିଏ ନାମଜାଦା ସାଧାରଣ ଅନୁଷ୍ଠାନରେ ରଖିବା ପାଇଁ ଆମ୍ଭମାନଙ୍କୁ ଦେଇଦେବା ପାଇଁ ଅନୁରୋଧ କଲି । ଏଥିପାଇଁ କମିଶନର ଅଫିସର ତତ୍କାଳୀନ ଟ୍ରାନ୍‌ସଲେଟର ସୁସାହିତ୍ୟିକ ସ୍ୱର୍ଗୀୟ ବନ୍ଧୁ ଚରଣ ପଟ୍ଟନାୟକ ମୋତେ ବିଶେଷ ସାହାଯ୍ୟ କରିଥିଲେ । ମାତ୍ର ଏ ଦୁଇଟି ସେଟ୍ ତୃତୀୟ ବର୍ଷଠାରୁ ଆରମ୍ଭ ହୋଇଅଛି ଏବଂ ମଝିରେ ମଝିରେ କୌଣସି କୌଣସି ବର୍ଷର କାଗଜ ମଧ୍ୟ ନାହିଁ । ସୌଭାଗ୍ୟକ୍ରମେ ଦୀପିକାର ପ୍ରଥମ ଦୁଇ ବର୍ଷର ଆଉ ଗୋଟିଏ ମାତ୍ର ସେଟ୍ କୌଣସି ପ୍ରକାରେ କଟକର ଶ୍ରୀଯୁକ୍ତ ଲଳ ନଗେନ୍ଦ୍ର କୁମାର ରାୟଙ୍କ ନିକଟରେ ଥିଲା । ବହୁ ଚେଷ୍ଟା କରି ତାହା ଉତ୍କଳ ଇଉନିଭରସିଟିଙ୍କ ଲାଇବ୍ରେରୀ ପାଇଁ ଖରିଦ କରି ନିଆଯାଇ ବର୍ତ୍ତମାନ ସେଠାରେ ରକ୍ଷିତ ଅଛି ।

ଦୀପିକା ଛଡ଼ା ଆଉ କେତେ ଖଣ୍ଡ ପତ୍ରପତ୍ରିକା ମଧ୍ୟ ଯାହା ମିଳିଅଛି, ସେ ସବୁର ବ୍ୟବହାର ଏ ଗ୍ରନ୍ଥରେ କରାଯାଇଅଛି । ମାତ୍ର ଉତ୍କଳରେ ଯେତେଗୁଡ଼ିଏ କାଗଜ ପ୍ରକାଶିତ ହୋଇଥିଲା ତହିଁରୁ ଖୁବ୍ କମ୍ ସଂଖ୍ୟକ କାଗଜ ବର୍ତ୍ତମାନ ଆମ୍ଭମାନଙ୍କ ହାତକୁ ଆସି ପାରି ଅଛି । ଦିନକୁ ଦିନ କାଳ ଅତୀତ ହେବା ସଙ୍ଗେ ସଙ୍ଗେ ଅନ୍ୟ କାଗଜଗୁଡ଼ିକ ଆଉ ମିଳିବାର ସମ୍ଭାବନା ନାହିଁ କହିଲେ ଚଳେ ।

ଆଉ ଗୋଟିଏ ଦୁଇଟି କଥା କହି ମୋର ବକ୍ତବ୍ୟ ଶେଷ କରିବି । ଇଂରେଜ-ମାନଙ୍କର ଓଡ଼ିଶା ଅଧିକାର ପରେ ଧୀରେ ଧୀରେ ଓଡ଼ିଆ ଭାଷାଶିକ୍ଷାର ପ୍ରସାର ହେଲା ଏବଂ ସାଧାରଣରେ ଗଦ୍ୟ ରଚନାର ମଧ୍ୟ ଆରମ୍ଭ ହେଲା କହିଲେ ଚଳେ । ତେଣୁ ସେହି ପ୍ରଥମାବସ୍ଥାରେ ଲିଖନ ରୀତିରେ ବିଶେଷ ଶୃଙ୍ଖଳା ଥିଲା ପରି ମନେ ହୁଏ ନାହିଁ; ବିଶେଷ କରି କଚେରିଆ ଭାଷାରେ । ଏଣୁ ଆମ୍ଭେମାନେ ଦେଖୁଁ, ଥରେ କଟକର ଜଣେ ଜଜ୍ ବ୍ରାଉନ ସାହେବ ୧୮୭୬ ସାଲରେ ମଧ୍ୟ ଅର୍ଜିନବିସମାନଙ୍କ ବ୍ୟବହାର ପାଇଁ କେତେଗୁଡ଼ିଏ ସାଧାରଣ ନିୟମର ପ୍ରଚଳନ କରିବାର ଆବଶ୍ୟକତା ଅନୁଭବ କରିଥିଲେ ।

ବହୁକାଳ ପରେ ମଧ୍ୟ, ଉତ୍କଳ ଦୀପିକାର ପୃଷ୍ଠାମାନଙ୍କରୁ ଦେଖାଯାଏ, ସେ କାଳରେ ଛେଦ ସବୁ (punctuation signs) ବହୁତ କମ୍ ବ୍ୟବହୃତ ହେଉଥିଲା । ଏଣୁ ସମସ୍ତ ସମୟରେ ବାକ୍ୟର ଅର୍ଥ ଗ୍ରହଣ କରିବାରେ ମଧ୍ୟ ଅସୁବିଧା ହେଉଥିଲା ଏବଂ

ବର୍ଣ୍ଣାଶୁଦ୍ଧି ପ୍ରତି ମଧ୍ୟ ଅନେକ କମ୍ ଦୃଷ୍ଟି ଦିଆଯାଉଥିଲା । ସେହିପରି କେବେ କେବେ, ଯାଉଁ ଯାଉଁ, ଦେଖି ଦେଖି ଇତ୍ୟାଦି ଲେଖିବାବେଳେ ସେ କାଳରେ ପ୍ରଥମ ଶବ୍ଦଟି ପରେ ଆଜିକାଲି ପରି ସେହି ଶବ୍ଦଟି ଆଉ ଥରେ ନ ଲେଖି, ଶବ୍ଦଟି ଥରେ ଲେଖିସାରି ତାପରେ ଗୋଟିଏ '୨' 'ଅଙ୍କ ଦିଆ ଯାଉଥିଲା—ଯେପରି କେବେ ୨, ଯାଉଁ ୨, ଇତ୍ୟାଦି । ବର୍ତ୍ତମାନ ଅବଶ୍ୟ ସେ ପ୍ରଥା ପରିତ୍ୟାଗ କରାଗଲାଣି । ମାତ୍ର ଐତିହାସିକ ଦୃଷ୍ଟିରୁ ଭାଷା ଓ ଲେଖନ ରୀତିର କିପରି ପରିବର୍ତ୍ତନ ହୋଇଆସିଛି ତାହା ଦେଖାଇବା ପାଇଁ ଏବଂ ଅନୁସନ୍ଧିତ୍ସୁ ପାଠକମାନଙ୍କର ସୁବିଧା ପାଇଁ ଆମ୍ଭେମାନେ ଏହି ଗ୍ରନ୍ଥରେ ସେହି ପୂର୍ବ ପ୍ରଚଳିତ ରୀତି ଯେ ପର୍ଯ୍ୟନ୍ତ ଚଳୁଥିଲା ତାକୁ ବଜାୟ ରଖିଅଛୁ ।

ସେହିପରି କୌଣସି କୌଣସି ପ୍ରାଚୀନ ଶବ୍ଦ ବର୍ତ୍ତମାନ ସମାଜରେ ପ୍ରାୟ ତ୍ୟକ୍ତ ଓ ଲୁପ୍ତ (obsolete) ହୋଇ ଯାଇଥିଲେ ସୁଦ୍ଧା ଯେତେବେଳେ ତାହା ଏକ କାଳରେ ଓଡ଼ିଆ ଭାଷାରେ ଚଳୁଥିଲା, ତାହାର ନମୁନା ସ୍ୱରୂପ ତାକୁ ଯେଉଁଠାରେ ପାଇଅଛୁଁ ଏ ଗ୍ରନ୍ଥର ବ୍ୟବହାରରୁ ଉଠାଇ ଦିଆଯାଇ ନାହିଁ । ନମୁନା ସ୍ୱରୂପ, ଗୋଟିଏ ମାତ୍ର ଶବ୍ଦର ଉଦାହରଣ ଦେଉଅଛୁଁ— 'ଅସୁସାର'—ଅସୁବିଧାଜନକ (ଉଦାହରଣ— କଟକ ହାଇସ୍କୁଲ ଘର ନିର୍ମାଣ ନ ହେବାରୁ ଶିକ୍ଷା ଦାନରେ ବହୁତ ଅସୁସାର ହେଉଅଛି । ଉ: ଦୀ: ୧୨ । ୩ । ୧୮୭୦) ।

ଏହି ପ୍ରାଚୀନ ସଂଗ୍ରହକୁ ଏବଂ ଦେଶର ଅବସ୍ଥାକୁ ସୁବିଧାରେ ଏବଂ ସହଜରେ ଠଉରାଇବା ପାଇଁ ଏ ଗ୍ରନ୍ଥଟିକୁ ନିମ୍ନଲିଖିତ ପାଞ୍ଚଗୋଟି ପରିଚ୍ଛେଦରେ ବିଭକ୍ତ କରାଯାଇଅଛି— ସମାଜ, ଶିକ୍ଷା, ସାହିତ୍ୟ, ଧର୍ମ ଓ ବିବିଧ । ଆଶାକରେ କୌଣସି ବିଶେଷ ଘଟଣାକୁ ସହଜରେ ଖୋଜି ପାଇବା ପାଇଁ ଏହା ସାହାଯ୍ୟ କରିବ ।

"ସମ୍ବାଦ ପତ୍ରରୁ ଓଡ଼ିଶାର କଥା" ଗ୍ରନ୍ଥର ପ୍ରଥମଖଣ୍ଡ ଆରମ୍ଭ କରାଯାଇଅଛି ୧୮୫୬ ସାଲରେ ପ୍ରକାଶିତ 'ପ୍ରବୋଧ ଚନ୍ଦ୍ରିକା' ପ୍ରକାଶଠାରୁ ଏବଂ ଏ ଖଣ୍ଡକୁ ଶେଷ କରାଯାଇଅଛି ୧୮୮୧ ସାଲରେ, ଉତ୍କଳଗୌରବ ମଧୁସୂଦନ ଦାସଙ୍କ କଲିକତାରୁ ଓଡ଼ିଶା ଫେରିବା ସହିତ ।

ପରିଶେଷରେ ଗ୍ରନ୍ଥମନ୍ଦିରର ସୁଯୋଗ୍ୟ ସ୍ୱତ୍ୱାଧିକାରୀ ସ୍ୱେଚ୍ଛାକ୍ରମେ ଏହାର ପ୍ରକାଶନଭାର ଗ୍ରହଣ କରିଥିବାରୁ ମୁଁ ଏଠାରେ ତାହାଙ୍କ ପ୍ରତି ମୋର ଅନ୍ତରର ଧନ୍ୟବାଦ ଅର୍ପଣ କରୁଅଛି ।

ଶ୍ରୀ ସୁଧାକର ପଟ୍ଟନାୟକ

# ସୂଚୀପତ୍ର

| ବିଷୟ | ପୃଷ୍ଠା |
| --- | --- |

।

| ବିଷୟ | ପୃଷ୍ଠା |
| --- | --- |
| ଉତ୍କଳ ଭାଷାରେ ଶିକ୍ଷା ଦେବାର ବିଧାନ | ୫୫୮ |
| ଓଡ଼ିଆ ଇଂରାଜୀ ବିଦ୍ୟାଳୟମାନଙ୍କର ପରୀକ୍ଷାଫଳ | ୫୬୨ |
| ଉତ୍କଳ ଭାଷାରେ ଶିକ୍ଷା ଦାନର ଆବଶ୍ୟକତା | ୫୬୪ |
| ଓଡ଼ିଶାରେ ବଙ୍ଗଳା ଶିକ୍ଷା | ୫୬୫ |
| ବର୍ଣ୍ଣାକ୍ୟୁଲର ଓ ମାଇନର ବୃତ୍ତି ପରୀକ୍ଷାର ଫଳ | ୫୬୬ |
| 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ' | ୫୬୯ |
| ବଙ୍ଗଳା ଭାଷା ଓ ବଙ୍ଗଳା ଅକ୍ଷରରେ ଲିଖିତ କେତେଖଣ୍ଡି ଦରଖାସ୍ତ | ୫୭୨ |
| କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ପୁସ୍ତକ ସମ୍ପର୍କରେ ଉତ୍କଳ ହିତୈଷିଣୀଙ୍କ ମନ୍ତବ୍ୟ | ୫୭୩ |
| ବାବୁ ଉମାଚରଣ ମାଇତି ଓ ଦେଶର ପୁରାତନ କୀର୍ତ୍ତି | ୫୭୩ |
| ଉତ୍କଳ ଭାଷା ଉଠାଇବାର ଉଦ୍ୟମ | ୫୭୫ |
| ଓଡ଼ିଆ ଓ ବଙ୍ଗଳା ଭାଷା | ୫୭୮ |
| ଅନଗୁଳ ସ୍କୁଲ | ୫୮୧ |
| 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହଇ' | ୫୮୨ |
| ପୁରୁଷୋତ୍ତମର ସଂସ୍କୃତ ବିଦ୍ୟାଳୟ | ୫୮୩ |
| କଟକ ହିନ୍ଦୁ ବାଳିକା ବିଦ୍ୟାଳୟ | ୫୮୫ |
| ବାଳିକା ବିଦ୍ୟାଳୟର ପାରିତୋଷିକ ଦାନ | ୫୮୫ |
| କରବ କାର୍ଯ୍ୟ ଶିଖିବାର ନୂତନ ବନ୍ଦୋବସ୍ତ | ୫୮୭ |
| ବିଦ୍ୟାଳୟର ପରୀକ୍ଷା ଫଳ | ୫୮୮ |
| ଓଡ଼ିଶାରେ ଗୋଟିଏ କଲେଜର ପ୍ରୟୋଜନ | ୫୯୦ |
| ଓଡ଼ିଶା ପାଇଁ ସ୍ୱତନ୍ତ୍ର ଇନସ୍ପେକ୍ଟର | ୫୯୨ |
| ଦେଶଭାଷାର ଉନ୍ନତି | ୫୯୨ |
| ଓଡ଼ିଶା ଶିକ୍ଷାବିଭାଗର ବାର୍ଷିକ ବିଜ୍ଞାପନୀ | ୫୯୩ |
| ଢେଙ୍କାନାଳ ମହାରାଜାଙ୍କ ଦ୍ୱାରା ଗଡ଼ରେ ନିର୍ମିତ ନୂତନ ସ୍କୁଲ ଘର ଓ ଶିକ୍ଷା ପ୍ରଣାଳୀ | ୫୯୪ |
| ବାବୁ ଧରଣୀଧର ମିଶ୍ରଙ୍କର ସମ୍ବଲପୁରର ଡେପୁଟୀ ଇନସ୍ପେକ୍ଟର ନିଯୁକ୍ତି | ୫୯୬ |
| ପ୍ରବେଶିକା ପରୀକ୍ଷାରେ ବୃତ୍ତିପ୍ରାପ୍ତ ଓଡ଼ିଶା ଛାତ୍ରଙ୍କ ତାଲିକା (୧୮୭୫) | ୫୯୭ |

| ବିଷୟ | ପୃଷ୍ଠା |
|---|---|

| ବିଷୟ | ପୃଷ୍ଠା |
| --- | --- |

# ପ୍ରବୋଧ ଚନ୍ଦ୍ରିକା

୧ । ( ୧୮୬୭ ସାଲ, ଜାନୁୟାରି, ସଂଖ୍ୟା ୧ )

ଏ ପୁସ୍ତକ ଗ୍ରହଣ କରିବାକୁ ଯାହାର ଇଚ୍ଛାହେଲେ ସେ କଟକ ସହର ନିବାସି ଶ୍ରୀଯୁକ୍ତ ଲେସିସାହେବଙ୍କ ନିକଟକୁ ଚିଠୀ ଲେଖିଲେ ନତୁବା ସ୍ୱୟଂ ସାକ୍ଷାତ କଲେ ବାଞ୍ଛାସିଦ୍ଧ କରିପାରିବେ । ମାସକୁ ମାସ ନୂତନ ୨ ଖଣ୍ଡ ଛପାହେବ । ମୂଲ୍ୟ ଖଣ୍ଡକୁ ଦଶପଇସା ଲେଖାଏ । ବାରଖଣ୍ଡର ଆଗତୁରା ଦାମ୍ ଏକାବେଳକେ ଦାଖଲ-କଲେ ଠ୧୲ ଲାଗିବ । ଆଉ ଡାକରେ ପଠାଇବାକୁ ହେଲେ ବାରଗୋଟା ଅଣାକିଆ ଡାକ ଟିକଟ ଦେଲେ ବିନା ମାସୁଲ ଅନ୍ତଗାମି ପଠିଆ ଯିବ ।

୨ । ପାଠକମାନଙ୍କ ପ୍ରତି ପ୍ରଥମ ପତ୍ର
ଏ ପ୍ରବୋଧ ଚନ୍ଦ୍ରିକା ବିଷୟକ ।

× × × ×

× × × ×

ଅତଏବ କେଉଁ ସ୍ଥାନରେ କି ଆଶ୍ଚର୍ଯ୍ୟ କର୍ମ ହେଉଅଛି ତାହା ଶ୍ରବଣରେ ଆଉ ସୁଗଳ୍ପ ପାଠରେ ସମସ୍ତଙ୍କର ଅନ୍ତଃକରଣରେ ଯେଉଁ କ୍ଷଣକାଳୀନ ଆହ୍ଲାଦ ଓ ହର୍ଷ ଜନ୍ମଇ ତଦ୍ଭିନ୍ନ ଅନେକ ବୃତ୍ତାନ୍ତ ଆବଶ୍ୟକ ଆଉ ଚିରସୁଖଦାୟକ ଜ୍ଞାନ ଏ କ୍ଷୁଦ୍ର ପତ୍ରିକା ଗ୍ରହଣରେ ଏ ଦେଶୀୟ ଲୋକ ପ୍ରାପ୍ତ ହୋଇପାରିବେ ବୋଲି ଦୃଢ଼ ପ୍ରତ୍ୟୟ ହୋଇଅଛି । କୌଣସି ବିଶେଷ ଧର୍ମର ପ୍ରଚାର ଏ ପୁସ୍ତକର ଅଭିପ୍ରାୟ ନୁହଇ । ଏ ସକାଶେ ତାହା ଆପଣା ଆପଣା ଗୃହରେ ଗ୍ରହଣକରି ପାଠ କଲେ କାହାରି ଇଷ୍ଟଧର୍ମ ହାନି ହେବ ଏ ପ୍ରକାର ଶଙ୍କା କେହି ନକରିବେ ।

୩ । କନ୍ଧମାଳଠାରୁ ସମାଚାର ମିଳିଅଛି କି ଡିସେମ୍ବର ମାସ ୨ ତାରିଖ [illegible] ପ୍ରଭାତରେ ଅନେକ କନ୍ଧମାନେ ଏକଠିହୋଇ ଗିରି କମାନ ହେବ କନ୍ଧମାଳରେ ଥିବା ଏଜେଣ୍ଟସାହେବଙ୍କ ଉପରେ ଚଢ଼ାଉକଲେ । ସାହେବଙ୍କ ସଙ୍ଗେ କେତେଜଣ ଲସ୍କର

କଟକ ନଗର ଯନ୍ତ୍ରାଳୟରେ ଶ୍ରୀଯୁକ୍ତ ଡବଲିଉ ବ୍ରୁକସ ସାହେବଙ୍କଦ୍ୱାରା ଛପାହେଲ

ଥିବାରେ ଏବଂ କନ୍ଧମାନେ ଆପଣା ତରଫରୁ ତୀର ଚଳାଇବାରୁ ଉକ୍ତ ସାହେବ ସେମାନଙ୍କ ଉପରେ ଗୁଳିମାରିବାକୁ ଲସ୍କରମାନଙ୍କୁ ହୁକୁମଦେଲେ । ତହିଁରେ ଜଣେ କନ୍ଧଠାରେ ଗୁଳିବାଜି ସେ ମରିଯିବାରୁ ଅନ୍ୟସବୁ କନ୍ଧମାନେ ପଳାଇଯାଇ କିଛି ଦୂରରେ ପୁନର୍ବାର ଜମା ହୋଇଅଛନ୍ତି । କନ୍ଧମାନେ କି ହେତୁରୁ ସରକାରଙ୍କ ବିରୁଦ୍ଧରେ ଏହି ପ୍ରକାର ବିଦ୍ରୋହକର୍ମ କରୁଅଛନ୍ତି ତାହା ଅଦ୍ୟାବଧି ନିଶ୍ଚୟରୂପେ ଜଣାପାଇ ନାହିଁ ।

× × × ×

୪ । ( ସନ ୧୮୬୭ ସାଲ, ମାର୍ଚ୍ଚ, ସଂଖ୍ୟା ୩ )

## କୌଣସି ବନ୍ଧୁର ଲେଖିତ ଚିଠି

ମହାଶୟ, ଆମ୍ଭେ ଶ୍ରୀକ୍ଷେତ୍ରକୁ ଆଗମନ କାଳୀନ ବାଲେଶ୍ୱରରେ ଉପସ୍ଥିତ ହେଲୁଁ, ତହିଁରେ ଦର୍ଶନ ଓ ଶ୍ରବଣ କଲୁଁ ପୀଡ଼ାରେ ସେଠାରେ ଲୋକେ କଷ୍ଟପୀଡ଼ିତ ହେଉଅଛନ୍ତି । ସେହି ସ୍ଥାନରେ କୌଣସି ଦାତବ୍ୟ ଚିକିତ୍ସାଳୟ ନଥିବାରୁ ଯାତ୍ରୀ ଏବଂ ପଥିକ ଓ ବାସିନ୍ଦା ଲୋକେ ସର୍ବଦା ମାରି ଯାଉଅଛନ୍ତି, ପୀଡ଼ିତ ଲୋକମାନେ ଔଷଧ ପଥ୍ୟ ପାଉନାହାନ୍ତି । ବାଲେଶ୍ୱରରେ ମିସନରିମାନେ ଏକ ଔଷଧାଳୟ କରିଅଛନ୍ତି । ସେଥିରେ ତାଦୃଶ ଉପକାର ହୁଏ ନାହିଁ । ଗବର୍ଣ୍ଣମେଣ୍ଟ ଅନୁଗ୍ରହପୂର୍ବକ ଚିକିତ୍ସାଳୟ ପ୍ରତିଷ୍ଠା କରିବାରେ ଅନେକ ଦୂରର ପୀଡ଼ିତ ଲୋକେ ଆସି ଆଶ୍ରୟ ପାଉଥିଲେ ଏବଂ ଚିକିତ୍ସାଗୃହ ପ୍ରସ୍ତୁତ ନୋହିବାରୁ ଦୁଃଖୀ ଦରିଦ୍ରମାନେ ଆସି ଔଷଧ କାରଣ ଆର୍ତ୍ତନାଦ କରନ୍ତି ଏବଂ ପଥିକ ଓ ଯାତ୍ରୀମାନଙ୍କ ଆଶ୍ରୟ ପାଇବାର ଉପାୟ ହୋଇଥିଲା । ମାତ୍ର କୌଣସି ଅବ୍ୟକ୍ତ କାରଣରେ ବା ବିଶେଷ କାରଣରେ ହେଉ ଗବର୍ଣ୍ଣମେଣ୍ଟ ଚିକିତ୍ସାଳୟର କାର୍ଯ୍ୟ ରହିତ କରି ହଠାତ୍ ଔଷଧ ପ୍ରଦାନରୁ କ୍ଷାନ୍ତ ରହିଲେ । ସେଥିରେ ପୂର୍ବରେ ଯେଉଁ ସକଳ ଦୁଃଖୀ ଦରିଦ୍ରମାନଙ୍କୁ ଔଷଧ ପ୍ରଦାନ କାରଣ ଡକାଯାଉଥିଲା ଏତେବେଳେ ସେମାନଙ୍କୁ ବାହାର କରିଦେବାକୁ ହେଉଛି ଏବଂ ନିରାଶ୍ରୟ ଲୋକେ ଯେଉଁମାନେ ଔଷଧ ପଥ୍ୟ ଆଶାରେ ବୃକ୍ଷମୂଳାବଲମ୍ବନ କରିଥିଲେ ସେମାନେ ସୁଙ୍କା ହୁଣ୍ଡୀକୃତହେଲେ ଏବଂ ଗବର୍ଣ୍ଣମେଣ୍ଟଙ୍କ ଦାନରୁ ଶବ୍ଦ ଯାହା ଚତୁର୍ଦ୍ଦିଗ ବ୍ୟାପକ ହୋଇଥିଲା ତାହା ଜଳରେ ଖାର ନ୍ୟାୟ ଲୁପ୍ତ ହୋଇଗଲା । ଇହା କେବଳ ଉପହାସ ସ୍ଥଳ ହୋଇଅଛି, ଗବର୍ଣ୍ଣମେଣ୍ଟ ସର୍ବସାଧାରଣଙ୍କୁ ପ୍ରାଣଦାନର ଆଶାଦେଇ କାହିଁକି ବଞ୍ଚିତ କଲେ ଭଗବାନ କହିପାରିବେ ।

କସ୍ୟଚିତ୍ ପଥିକସ୍ୟ ।

୫ । ( ସନ ୧୮୫୭ ସାଲ, ମାର୍ଚ୍ଚ, ସଂଖ୍ୟା ୧୨ )

ଜଳକୀର୍ତ୍ତି ଆଉ ପୁଣ୍ୟକର୍ମ ସମ୍ପାଦନ

କଲିକତା ପ୍ରଭୃତି ଅନେକାନେକ ସ୍ଥାନ ନିବାସି ବଙ୍ଗବର ଦୟାଶୀଳ ଧନଶାଳି ପୁରୁଷମାନେ ଭାରତବର୍ଷ ନାନା ସ୍ଥାନରେ 'ଜଳକୀର୍ତ୍ତି', 'ଧର୍ମଶାଳା' ଏବଂ ରାଜ-ମାର୍ଗରେ ବୃକ୍ଷାରୋପଣ ଇତ୍ୟାଦି ପୁଣ୍ୟକର୍ମ କରିବାଦ୍ୱାରା ପଥିକମାନଙ୍କର ଉପକାର ଜନ୍ୟ ସରକାର ବାହାଦୂରଙ୍କଠାରୁ ସୁଖ୍ୟାତି ପାଉଅଛନ୍ତି । ଏ ବିଷୟରେ ଉତ୍କଳ ଦେଶବାସି ଧନବନ୍ତ ପୁରୁଷମାନେ ଉତ୍ତମରୂପେ ଜ୍ଞାତ ହୋଇ ଯେ ଉପରୋକ୍ତ ପୁଣ୍ୟ କର୍ମରେ ପ୍ରବର୍ତ୍ତି ହେଉନାହାନ୍ତି ଏ ବଡ଼ ଲଜ୍ଜାକର ମଧ୍ୟ ଆଶ୍ଚର୍ଯ୍ୟଯୁକ୍ତ ବିଷୟ ଅଟେ । ଯେ ହେତୁରୁ ଧନ ବାହୁଲ୍ୟର ମୁଖ୍ୟ ଫଳ ଦାନ ଅତଏବ ଧନ ସଦ୍ଭାବରେ ଯାଦ୍ୟପି ପରୋପକାର ନ ହୁଏ ତେବେ ସେ ଧନକୁ କେବଳ ଏକ ଭାର ସ୍ୱରୂପ ଜ୍ଞାନ ବ୍ୟତିରିକ୍ତ ଅନ୍ୟ କିଛି ଜ୍ଞାନ କରି ଯାଇ ନ ପାରେ ।

ଏହି ବୃଦ୍ଧିରେ ରେଉଆର ଶ୍ରୀଯୁକ୍ତ ମହାରାଜା ଶ୍ରୀ ପୁରୁଷୋତ୍ତମ ଦେଶକୁ ଆଗମନ କରିବା ସମୟରେ ବୌଦ୍ଧ ଜିଲ୍ଲାର ଅନ୍ତଃପାତି ପଦ୍ମତୋଳା ଅର୍ଥାତ୍ କଟକଠାରୁ ୩୭ କ୍ରୋଶ ଅନ୍ତର ହେବ ବସ ମୁକାମରେ ଏକ ପୁଷ୍କରିଣୀ ଓ ଗୋଟିଏ ଧର୍ମଶାଳା ନିର୍ମାଣ କରିବାସକାଶାତ୍ ସରକାର ବାହାଦୂରଙ୍କ ହସ୍ତରେ ଛ ସହସ୍ର ରୌପ୍ୟ ମୁଦ୍ରା ସମର୍ପଣ କରିବାକୁ ସ୍ୱୀକାରପ୍ରାପ୍ତ ହୋଇଅଛନ୍ତି ।

ଅତଏବ ଉତ୍କଳ ଦେଶ ନିବାସି ଧନି ପୁରୁଷ ମାନଙ୍କୁ ପ୍ରବୋଧ ଦିଆ ଯାଉ ଅଛି କି ତୁମମାନଙ୍କ ଦେଶରେ ଯେ ବିଦେଶୀୟ ଲୋକେ ଚିର କାଳକୁ କୀର୍ତ୍ତି ପତାକା ସ୍ଥାପନ କରଅଛନ୍ତି ଏ ଅତି ଲଜ୍ଜାଜନକ କଥା ଏହା ଅନ୍ୟ କିଛି ବୋଲି ଯାଇ ନ ପାରେ । ଏଣୁକରି ସେମାନେ ସଦ୍‌ବିବେଚନା ପୂର୍ବକ ପାରମାର୍ଥିକ ବିଷୟରେ ସଙ୍କୁଚିତ ନ ହୋଇ ଜନସମୂହର ପ୍ରଶଂସା ଭାଜନ ହେଉନ୍ତୁ ।

ମାନ କଟକ ଜିଲ୍ଲା ମଧ୍ୟରେ କେବଳ ରାମଚନ୍ଦ୍ର ଖୁଣ୍ଟିଆ ୧୮୫୬ ସାଲରେ ହରିହରପୁର ପରଗଣାର ଅନ୍ତଃପାତି ଗଡ଼ଙ୍ଗ ଗ୍ରାମରେ ବିଂଶତି ମୁଦ୍ରା ବ୍ୟୟ କରି ଏକ କୂପ କର ଅଛନ୍ତି ଏବଂ ପୁରୀ ଜିଲ୍ଲାରେ ବାସୁ ନନ୍ଦ ଖୋରଦା ତାଲୁକ ଅନ୍ତଃପାତି ଗୁରୁଜଙ୍ଗ ଗ୍ରାମରେ ଚତୁର୍ବିଂଶତି ମୁଦ୍ରା ବ୍ୟୟରେ ଏକ କୂପ ଓ ଉକ୍ତ ଜିଲ୍ଲା ନିବାସି ଈଶ୍ୱର ସାହୁ ଜିଲ୍ଲା ମଜକୁର ଜଜାଳିଙ୍ଗ ମୌଜାରେ ସାର୍ଦ୍ଧଶତ ମୁଦ୍ରା ବ୍ୟୟରେ ଏକ ପୁଷ୍କରିଣୀ ଏବଂ ସେହି ଜିଲ୍ଲା ନିବାସି ଚେତନ ସିଂହ ଉପରୋକ୍ତ ଗ୍ରାମରେ ଷୋଡ଼ଶ ମୁଦ୍ରା ବ୍ୟୟରେ ଗୋଟିଏ କୂପ ନିର୍ମାଣ କରିଅଛନ୍ତି ।

୬ । (ସନ ୧୮୬୭ ସାଲ, ସେପ୍ଟେମ୍ବର, ସଂଖ୍ୟା ୨୦)

## ବାଲଶ୍ୱର ମାଲୁଲୀ ଜମୀଦାର

କଟକ ଜିଲ୍ଲା ଅନ୍ତଃପାତି ବାଲଶ୍ୱର ସାବକ ମାଲୁଲୀ ଜମୀଦାର ରାମକୃଷ୍ଣ ସାନ୍ତସିଂହାର, ଦୀନବନ୍ଧୁ ମହାରଣା ଓ ଉପେନ୍ଦ୍ର ଜେନା ଓଗେର କେତେକ ଜଣ ମନୁଷ୍ୟ ଜମାଯୁକ୍ତବସ୍ତ୍ର କରି ସରକାର ବାହାଦୁରଙ୍କ ବିପକ୍ଷରେ ଅର୍ଥାତ୍ କେତେକ ଅସ୍ତ୍ରଶସ୍ତ୍ର ତୋହାଏ ଆଶଙ୍କା ଘଟେଇ ଲାଗି ଆଧୁନିକ ଜମୀଦାରଙ୍କୁ ଖାଜଣା ନ ଦେବା ବିଷୟରେ ସେ ସ୍ଥାନର ପ୍ରଜାମାନଙ୍କୁ କୁମନ୍ତ୍ରଣା ଦେଉଥିବା ବିଷୟ ଉକ୍ତ ଜିଲ୍ଲାର ଶ୍ରୀଯୁକ୍ତ ମାଜିଷ୍ଟ୍ରେଟ ସାହେବଙ୍କ ଛାମୁରେ ଗୋଚର କରାଇ ଦିଆ ଯିବାରୁ ପ୍ରଶଂସିତ ସାହେବଙ୍କ ବିବେଚନାରେ ରାମକୃଷ୍ଣ ସାନ୍ତସିଂହାର ଓ ଦୀନବନ୍ଧୁ ମହାରଣା ଏବଂ ଉପେନ୍ଦ୍ର ଜେନା ଏ ତିନିଜଣ ରାଜଦ୍ରୋହିତା ଦୋଷରେ ଦୋଷୀ ସ୍ଥିର ହେବାଯୋଗୁଁ ଉପରଲେଖିତ ଆସାମୀମାନେ ଦୌରା ସୋପର୍ଦ୍ଦ ହୋଇଥିଲେ, କିନ୍ତୁ ଗଲାତ ସନ ଅଗଷ୍ଟ ମାସ ୩୦ ତାରିଖରେ ଶ୍ରୀଯୁକ୍ତ ସେସନ ଜଜ ସାହେବଙ୍କ ବିବେଚନାରେ ଉକ୍ତ ଆସାମୀ ମାନଙ୍କ ମଧ୍ୟରୁ ଉପେନ୍ଦ୍ର ଜେନା ଉପରେ କୌଣସି ଦୋଷ ଆରୋପ ନୋହିବା ହେତୁରୁ ସେ ମୁକ୍ତ ହେଲା ଏବଂ ରାମକୃଷ୍ଣ ସାନ୍ତସିଂହାର ଓ ଦୀନବନ୍ଧୁ ମହାରଣା ଦୁଇଜଣ ପ୍ରତ୍ୟେକରେ ପାଞ୍ଚବର୍ଷ ଲେଖାଏ କଏଦ ହେବେ ଅଥଚ ମେହନତ କରିବେ, ପୁନଶ୍ଚ ଅପରାଧି ମକଦ୍ଦମାର ମାନଙ୍କ ସର୍ବପ୍ରକାର ସକଳ ସମ୍ପତ୍ତି ଅର୍ଥାତ୍ ଚଳନ୍ତି ଅଚଳନ୍ତି ଜାଏଦାଦମାନ ସରକାରରେ ଜବତ ଓ ନୀଲାମ ହୋଇ ତହିଁର ଉତ୍ପନ୍ନ ଟଙ୍କା ସରକାରି ତହବିଲରେ ଜମାହେବ ।

୭ । ଗୃଛିବସାରେ ରାମଗଡ ବାଟାଲିୟନର ସୈନ୍ୟର ଯେଉଁ ୬୦ ଜଣ ଥିଲେ ସେମାନେ ବାହୁଲପର ହୋଇ କଏଦୀ ମାନଙ୍କୁ ଖଲାସ କରିଦେବା ପାଇଁ ଯାଇଥିଲେ ମାତ୍ର କପ୍ତାନ ସିସ୍‌ମୋର ସାହେବଙ୍କ ତଦବୀରରେ ସତ୍ତଲଇକଲର ପ୍ରଜା ୬୦୦ ଜଣ ମନୁଷ୍ୟ ସହିତ ଅର୍ଦ୍ଧଘଣ୍ଟା ସମୟରେ ସେମାନଙ୍କୁ ଘେରି ଗ୍ରେପ୍ତାର କରି ଅଛନ୍ତି ।

୮ । (ସନ ୧୮୬୭ ସାଲ, ଅକ୍ଟୋବର, ସଂଖ୍ୟା ୨୨)

## ଗୃଛିବସାରେ ରାମଗଡ଼ ବେଟାଲିୟନଙ୍କ କାର୍ତ୍ତି —

ରାମଗଡ ବେଟାଲିୟନର ଯେଉଁ ସିପାହିମାନେ ଗୃଛିବସାରେ ନିଯୁକ୍ତ ଥିଲେ ସେମାନେ ସେ ମୁକାମର ଖଜଣାଖାନା ଲୁଟି କରି ସ୍ୱୀୟ ପ୍ରଦେଶକୁ ଯାଇ ଅଛନ୍ତି । ଟେରେଇକଲର ପ୍ରଜା ସେମାନଙ୍କୁ ଧରିବାଲାଗି ତଦବୀର କରୁଅଛନ୍ତି ।

୯ । ସୁଦର ସା

ସମ୍ବଲପୁର ଆସିଷ୍ଟାଣ୍ଟ କମିଶନର ଶ୍ରୀଯୁକ୍ତ କାପ୍ତାନ ଲି ସାହେବ ଲେଖି ଅଛନ୍ତି କି ସମ୍ବଲପୁରର ରାଜବଂଶୀୟ 'ସୁନ୍ଦର ସା' ନାମକ ଜଣେ ବ୍ୟକ୍ତି ହଜାରିବାଗରେ କଏଦ ଥିଲା । ତାକୁ ବିଦ୍ରୋହି ସୈନ୍ୟମାନେ ମୁକ୍ତ କରି ଦେବାରୁ ସେ ସମ୍ବଲପୁର ଠାରେ ପହଞ୍ଚି ରାଜବିଦ୍ରୋହାଚରଣରେ ପ୍ରବୃତ୍ତ ହେବାର ସମ୍ଭାବନା ଅଛି । ଅତଏବ କଟକ ଠାରୁ ତିନି କମ୍ପାନି ଓ ନାଗପୁରଠାରୁ ତିନି କମ୍ପାନି ସୈନ୍ୟ ସମ୍ବଲପୁରଠାକୁ ଯିବାର ଆଜ୍ଞା ହୋଇଅଛି ଏବଂ ବ୍ରହ୍ମପୁରଠାରେ ଯେଉଁ * ନମ୍ବରୀ ପଲଟଣ ଅଛନ୍ତି ତହିଁ ମଧ୍ୟରୁ ପାଞ୍ଚକମ୍ପାନି କଟକ ଆସିବା ନିମନ୍ତେ ପ୍ରସ୍ଥାନ କରିଅଛନ୍ତି । ପ୍ରାୟ ଏହିମାସ ତା ୧୫ରିଖ ମଧ୍ୟରେ କଟକଠାରେ ପହଞ୍ଚିବେ ।

୧୦ । ହସ୍ତୀ ସମ୍ପର୍କୀୟ ଆଦେଶ

କଟକ ଜିଲ୍ଲା ମଧ୍ୟରେ ଯେଉଁ ରାଜା ଓ ଜମିଦାର ପ୍ରଭୃତିଙ୍କର ହସ୍ତୀ ଅଛନ୍ତି ସେମାନଙ୍କୁ ଆଜ୍ଞା ହୋଇଅଛି କି, ଯେଉଁ ସ୍ଥାନରୁ ଇଂରାଜି ପଲ୍ଟଣ ଯିବ ସେହି ସ୍ଥାନକୁ ସେହି ପଲ୍ଟଣର ସାମଗ୍ରୀ ବୋହିନେବା ଲାଗି ରାଜା ଓ ଜମିଦାରମାନେ ଆପଣା ୨ ହସ୍ତିମାନଙ୍କୁ ମଦଦ ଦେବେ ।

୧୧ । ନଦୀବୃଦ୍ଧି

ବର୍ତ୍ତମାନ ସମ୍ବତ୍ସରରେ ମହାନଦୀ ଓ ବ୍ରାହ୍ମଣୀ ପ୍ରଭୃତି ନଦୀମାନେ ପ୍ରବଳ ରୂପେ ବୃଦ୍ଧିଯୁକ୍ତ ହୋଇ ପୁରୀ, କଟକ, ବାଲେଶ୍ୱର ଜିଲ୍ଲାର ଅନ୍ତର୍ଗତ ଅନେକ ୨ ପ୍ରଦେଶରେ ଶସ୍ୟହାନି କରିବାରୁ କଟକ ଏଲକାର ଯେଉଁ ପ୍ରଦେଶର କି ପରିମାଣରେ ଶସ୍ୟହାନି ହୋଇଅଛି ଇହା ତଦାରକ କରିବା ନିମନ୍ତେ ଉକ୍ତ ଜିଲାର ଡେପୁଟି କଲେକ୍ଟର ଶ୍ରୀଯୁକ୍ତ ବାବୁ ଦୁର୍ଯ୍ୟୋଧନ ଦାସ ଓ ଶ୍ରୀଯୁକ୍ତ ବାବୁ ନରସିଂହ ଚରଣ ଦାସ ଅନୁମତ ପ୍ରାପ୍ତ ହୋଇ ଅଛନ୍ତି, ତହିଁର ବିଶେଷ ଏହି କି, ପ୍ରଥମୋକ୍ତ ବାବୁ ମହାନଦୀ ଦ୍ୱାରା ନଷ୍ଟ ହୋଇ ଥିବା ଓ ଶେଷୋକ୍ତ ବାବୁ କାଠଯୋଡ଼ି ନଦୀ ଦ୍ୱାରା ନଷ୍ଟ ହୋଇଥିବା ଦେଶସମୂହ ତଦାରକ କରିବେ । ଏଥିରୁ ବୋଧହୁଏ ଯେ ରାଜମାନ ଶ୍ରୀଯୁକ୍ତ ସରକାର ବାହାଦୁର ଏତଦ୍ଦେଶୀୟ ପ୍ରଜାବର୍ଗ ଉପରେ ନିରତିଶୟାନୁଗ୍ରହ ପ୍ରକାଶ ପୂର୍ବକ ଅବଶ୍ୟ କିୟଦଂଶ ରାଜକର କ୍ଷମା କରିବାର ଆଜ୍ଞା ପ୍ରକାଶ କରିବେ ।

୧୨ । ଶ୍ରୀଯୁତ ବ୍ରହ୍ମାନନ୍ଦ ଦାସ

କଟକ ସମ୍ପର୍କୀୟ କଲ୍ଲାକାଉର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁତ ବାବୁ ବ୍ରହ୍ମାନନ୍ଦ ଦାସ କଲ୍ଲାଜାତ ତଦାରକ କରିବା ସକାଶେ ଅନୁଗୋଳ କଲ୍ଲାରେ କିଛିକାଳ ଅବସ୍ଥାନ କରିବାର ଆଜ୍ଞା ହୋଇଅଛି ।

୧୩ । ଲବଣ ପୋକତାନ

ବାଲେଶ୍ୱର ଜିଲ୍ଲାର ଅନ୍ତର୍ଗତ ଅଙ୍ଗ ଦଶମଲଙ୍ଗର ଦାରୋଗା ଶ୍ରୀଯୁକ୍ତ ବାବୁ ବଞ୍ଚୁମୋହନ ପାଢ଼ି ଗତ ସନରେ ଆପଣାର ନମକ ପୋଖତାଣୀ କର୍ମ ନିପୁଣରୂପେ ସମ୍ପାଦନ କରିବାରେ ଶ୍ରୀଯୁକ୍ତ ସରକାର ବାହାଦୂର ପ୍ରଶଂସିତ ବାବୁଙ୍କ ପ୍ରତି ସନ୍ତୋଷ ସୂଚକ ଦୁଇଶ ଟଙ୍କା ମୂଲ୍ୟର ଶାଲ ଯୋଡ଼ ପୁରସ୍କାର ପ୍ରଦାନ କରିଥିଲେ । ଚଳିତ ସନରେ ମଧ୍ୟ ଉକ୍ତ ଦାରୋଗା ତଦପେକ୍ଷା ଅଧିକ ନମକ ପୋଖତାନ କରାଇବାରୁ ୫୦୦ଟଙ୍କା ପୁରସ୍କାର ପାଇବା ନିମନ୍ତେ ଅନୁମତ ହୋଇଅଛି ।

୧୪ । ( ସନ ୧୮୫୭ ସାଲ, ନଭେମ୍ବର, ସଂଖ୍ୟା ୨୩ )

ଦୁଇତିନ ବର୍ଷ ହେଲା କଟକ ଜିଲା ସମ୍ପର୍କୀୟ ନଦୀମାନେ ବୃଦ୍ଧିଶୀଳ ହୋଇ ଅନେକ ପ୍ରଦେଶରେ ଧାନ୍ୟ ଶସ୍ୟ ନଷ୍ଟକରିଅଛନ୍ତି, ବିଶେଷରେ ଅଙ୍ଗ ଜାଡରେ ଉକ୍ତ ଶସ୍ୟ ବିଶେଷରୂପେ ନଷ୍ଟହେବା ଯୋଗୁଁ ମଳଙ୍ଗୀମାନେ ସ୍ଥାନାନ୍ତର ହେଲେ ଲବଣୋତ୍ପତ୍ତି ହେବାର ସୁକଠିନ ହେବ । ଅତଏବ ଏହି ଦୃଷ୍ଟିରେ କଟକ ସମ୍ପର୍କୀୟ ଲବଣର ଏଜେଣ୍ଟ ବୋର ସାହେବ ମହାଶୟ ରାଜମାନ ଶ୍ରୀଲ ଶ୍ରୀଯୁକ୍ତ ସରକାର ବାହାଦୁରଙ୍କ ସ୍ଥାନରୁ ଏହି ସୁପାରିଶ କରିଅଛନ୍ତି କି ସରକାର ପକ୍ଷରୁ ୧୦୦୦୦ ସହସ୍ର ଟଙ୍କାର ଧାନ୍ୟ କ୍ରୟ କରାଯାଇ ଅଙ୍ଗ ଜାଡରେ ରହିବ । ଆଗାମୀ ଯେଉଁ ସମୟରେ ଏହି ପ୍ରକାର ଦୁର୍ଭିକ୍ଷ କାଳ ଉପସ୍ଥିତହେବ ସେ ସମୟରେ ପଡ଼ିକ ମୂଲ୍ୟାପେକ୍ଷା କମିତ ରେଟଲେଖରେ ମଳଙ୍ଗିମାନଙ୍କୁ ଧାନ୍ୟ ଦିଆଗଲେ ସେମାନେ ସୁସ୍ଥ ରହି ସର୍ବଦା ଉତ୍ତମରୂପେ ଲବଣୋତ୍ପତ୍ତି କରିଥିବେ । ଏହାର ବୋଧ ହୁଏ କି ପ୍ରଶଂସିତ ମହାଶୟଙ୍କ ପ୍ରାର୍ଥନାନୁସାରେ ସରକାର ବାହାଦୂର ଏହା ସକଳ ସେଚନ ପୂର୍ବକ ସମ୍ମତ ହେଲେ ଅବଶ୍ୟ ହୀନ ଦରିଦ୍ର ମଳଙ୍ଗୀମାନେ ସ୍ୱାସ୍ଥ୍ୟାବସ୍ଥାରେ ରହି ସରକାର ବାହାଦୁରଙ୍କର ମଧ ଶ୍ରେୟୋଜନକ ହେବେ ।

୧୫ । ଶ୍ରୀଲ ଶ୍ରୀଯୁକ୍ତ ସରକାର ବାହାଦୁରଙ୍କୁ ବର୍ତ୍ତିମାନ କାଳୀନ ମୁଖ୍ୟ ନବାବ ନିମନ୍ତେ ନିମ୍ନଲିଖିତ ମହାଶୟମାନେ ବିନା ମୂଲ୍ୟରେ ହସ୍ତି ପ୍ରଦାନ କରିଅଛନ୍ତି, ଏଥିରୁ ଯଦ୍ୟପି ସେହି ହସ୍ତିମାନେ ଜୀବଦ୍ଦଶାରେ ପ୍ରତ୍ୟାବୃତ୍ତ ହେବେ ତେବେ ତ ସ୍ୱାମୀମାନେ ପୁନର୍ଗ୍ରହଣ କରିବେ, ନତୁବା ହସ୍ତିମାନେ ନଷ୍ଟ ହେଲେ ମାଲିକ ମହାଶୟମାନେ ହସ୍ତି ଅବା ତନ୍ମୂଲ୍ୟ ଦାବୀ କରିବେ ନାହିଁ କିନ୍ତୁ ସରକାର ବାହାଦୁରଙ୍କ ମାନସ ଅଛି କି ହସ୍ତିମାନେ ନଷ୍ଟ ହେଲେ ଯଥୋଚିତ ମୂଲ୍ୟ କିମ୍ବା ପୁରସ୍କାର ସ୍ୱରୂପ କିଛି ମୁଦ୍ରା ସରକାର ପକ୍ଷରୁ ନିମ୍ନଲିଖିତ ମହାଶୟମାନଙ୍କୁ ପ୍ରଦାନ କରାଯିବ ।

ଶ୍ରୀଯୁକ୍ତ ରାଜା କଲ୍ଲା ମଯୂରଭଞ୍ଜ—ଘ୧

,, ,, କେନ୍ଦୁଝର—ଘ୧

,, ,, ନୀଳଗିରି—ଘ୧

,, ,, ଆଳୀ—ଘ୧

ଗଞ୍ଜାମ କଲ୍ଲା ସ୍ୱାଠଗାଁର ଶ୍ରୀଯୁକ୍ତ ସାବକ ଜମିଦାର—ଘ୨
ଏ ଛ ଘର ହସ୍ତୀ ରାଣୀଗଞ୍ଜ ମୁକାମକୁ ପଠିଆ ଯାଇ ଅଛନ୍ତି ।

କଲ୍ଲା ଦରପଣିର ଜମୀଦାର ଶ୍ରୀଯୁକ୍ତ ବାବୁ ଗୋପିନାଥ ପଣ୍ଡିତ ଉପଦେଶ୍ର ନିୟମରେ ଘ୨ର ଓ ପଟିଆର ଶ୍ରୀଯୁକ୍ତ ରାଜା ବକ୍ରୀ କରିବା ମାନସରେ ଘ୨ର ହସ୍ତୀ ପ୍ରଦାନ କରିଅଛନ୍ତି । ଏ ଗୁରଘର ବର୍ତ୍ତମାନ ସମ୍ବଲପୁରକୁ ପଠିଆ ଗଲେ । ସେଠାରୁ ଆସିଲାପଣି ରାଣୀଗଞ୍ଜକୁ ପଠିଆ ଦିବେ ।

ପୁରୁଷୋତ୍ତମ କ୍ଷେତ୍ରସ୍ଥିତ କମ୍ମ କର୍ତ୍ତା ମହାଶୟମାନେ ବିନା ନିୟମରେ ସରକାର ବାହାଦୁରଙ୍କୁ ହସ୍ତୀ ଦ୍ୱାରା ସାହାଯ୍ୟ ପ୍ରଦାନ କରି ଅଛନ୍ତି ।

ଶ୍ରୀଯୁକ୍ତ ମହାରାଜା ବୀରକେଶରୀ ଦେବ—ଘ୧

,, ଛତ୍ରେଶ୍ୱର ଭଗବାନ ରାଉତ ସିଂହ ଜମିଦାର—ଘ୧

,, ମହନ୍ତ ମୋହନ ଦାସ—ଘ୧

,, ମହନ୍ତ ଚତୁର୍ଭୁଜ ଦାସ—ଘ୧

,, ବେଙ୍କଟଜଗନ୍ନାଥ ଆଚାର୍ଯ୍ୟ ସ୍ୱାମି—ଘ୧

ଏ ପାଞ୍ଚ ଘର ହସ୍ତୀ ରାଣୀଗଞ୍ଜ ମୁକାମକୁ ପଠିଆ ଦିବେ, ଉପରୋକ୍ତ ମହାଶୟ-ମାନେ ଆତ୍ମୀୟତା ଓ ସୌହାର୍ଦ୍ଦ୍ୟ ପ୍ରକାଶ କରି ସରକାର ବାହାଦୁରଙ୍କୁ ଯେ ଯଥାଯୋଗ୍ୟ ସାହାଯ୍ୟ ପ୍ରଦାନ କଲେ ଏଥିରେ ସରକାର ବାହାଦୁର ଅବଶ୍ୟ କୃତଜ୍ଞତା ସ୍ୱୀକାର କରିବେ ।

୧୬ । କଟକର ଶ୍ରୀଯୁକ୍ତ ମାଜଷ୍ଟ୍ରେଟ ସାହେବ ୫୦୦୦ଙ୍କା ମୂଲ୍ୟ ମଧ୍ୟରେ ଘରେ ହସ୍ତୀ ଓ ବାଲେଶ୍ୱରର ଶ୍ରୀଯୁକ୍ତ ମାଜଷ୍ଟ୍ରେଟ ସାହେବ ଘରେ ହସ୍ତୀ ସରକାର ବାହାଦୁରଙ୍କ ନିମନ୍ତେ କ୍ରୟ କରିବାର ମାନସ କରିଅଛନ୍ତି ।

୧୭ । ବାଙ୍କୀ କଲ୍ଲା କଲ୍ଲାଜାତର ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କ ଅଧିକାରରୁ ଖାରଜ ହୋଇ କଟକ ମୁକାମର କଲେକ୍ଟର ସାହେବଙ୍କ ଅଧୀନ କରା ଯାଇଅଛି ।

# ଉତ୍କଳ ଦୀପିକା

୧୮ । (ଭାଗ ୧, ତା୧୧ରିଖ, ଅଗଷ୍ଟ ସନ ୧୮୬୬ ମସିହା ସଂଖ୍ୟା ୨)

## କଟକସ୍ଥ ଦୁର୍ଭିକ୍ଷ ନିବାରଣ କମେଟି

ଅଗଷ୍ଟ ତାରିଖରେ ଯେଉଁ ସାହାଯ୍ୟ କମେଟୀ ହୋଇଥିଲା ତହିଁରେ ତଳଲିଖିତ କଥାମାନ ଧାର୍ଯ୍ୟ ହୋଇଅଛି ।

(୧) ସହର ମଧ୍ୟରେ ଯେତେ ଅରକ୍ଷିତ ଦରିଦ୍ର ପିଲା ସରକାରୀ ସଡକ ଉପରେ ବୁଲୁଥିବାର ଦେଖାଯିବେ ସେମାନଙ୍କୁ ସାହାଯ୍ୟ ମଣ୍ଡଳୀମାନଙ୍କ ନିଯୁକ୍ତ ଥିବା ଓଭରସିଅର ଆପଣା ଜିମା ନେଇ ତାହାଙ୍କର ଭରଣ ପୋଷଣ କରିବ ।

(୨) ମଫସଲସ୍ଥିତ ଅନ୍ନଛତ୍ରମାନ ତଦାରଖ ସକାଶେ ଏକଜଣ ଗୁକର ମାସିକ ଠ'୦୦ଙ୍କା ବେତନରେ ନିଯୁକ୍ତ ହେବ ଓ ଗସ୍ତ ସମୟରେ ମାଇଲ ପ୍ରତି ଠ୦ ଲେଖାଏଁ ଖର୍ଚ୍ଚା ପାଇବ ।

(୩) ସାହାଯ୍ୟ କମେଟୀ ଯେତେ ଚାଉଳ ପ୍ରାପ୍ତ ହେବେ ତାହା ସମାନ ଅଂଶରେ ବିକ୍ରି ଓ ବିତରଣ କରିବେ ।

× × × ×

୧୯ । ସପ୍ତାହିକ ସମ୍ବାଦ

ଅଦ୍ୟ ଆମ୍ଭମାନଙ୍କର ଶ୍ରୁତିଗୋଚରରେ ଆସିଲା ଯେ ମାହାଙ୍ଗା ଗ୍ରାମରେ କେତେଜନ ହେଲେ ଚୋଟିଏ ଅନାହାର ପୀଡ଼ିତ ସ୍ତ୍ରୀଲୋକ ଜାଣିରେ ଗୁଡ଼ଆଣୀ ପ୍ରବେଶ କରିଅଛି । × × ତାହାର ଅବସ୍ଥା ଅତି ଘୃଣାକର । ମନୁଷ୍ୟ ମାଂସ ଭକ୍ଷଣରେ

---

ଏହି ଉତ୍କଳଦୀପିକା ସହର କଟକ ଆଲେମ୍‌ଚନ୍ଦ ବଜାର କଟକପ୍ରିଣ୍ଟିଂ କମ୍ପାନିର ପଥରଛାପାରେ ମୁଦ୍ରିତ ହୋଇ ପତ୍ରିକାର ଅଧିକାରୀଙ୍କ ସକାଶେ ପ୍ରଚାର କରାଗଲା ।

ତାହାର ଅତ୍ୟନ୍ତ ପ୍ରୀତି । ଅନ୍ନ ଭୋଜନ ପାଉଥିଲେ ମଧ୍ୟ ସେ ଶ୍ମଶାନକୁ ଯାଇ ମୃତ ପିଣ୍ଡ ମୃତ୍ତିକା ମଧ୍ୟରୁ ବାହାର କରି କଞ୍ଚା ମାଂସ ଭୋଜନ କରେ । ଏକଦା ଗୋଟିଏ ଅଳ୍ପ ବୟସ୍କା ସୁନ୍ଦରୀ ବାଳିକା ଦାଣ୍ଡରେ ବୁଲୁଥିଲା । ସେ ରାକ୍ଷସୀ ତାକୁ ଦେଖି ତାହାଠାକୁ × × ଆସି ତାହାର ଶରୀରରୁ ଦୁଇପୁଳା ମାଂସ କାମୁଡ଼ି ଖାଇଲା । ବାଳିକା ଉଚ୍ଚ ସ୍ୱରରେ ରୋଦନ କରନ୍ତେ କେତେଜଣ ଗ୍ରାମବାସୀ ଦୌଡ଼ିଆସି ବାଳିକାକୁ ରକ୍ଷା କଲେ । × × × । ତାହାର ଏରୂପ କଦାଚାର ନିମନ୍ତେ ପୂର୍ବ ଥରେ ତାହା ଶରୀରରେ ତପ୍ତ ଲୌହଦ୍ୱାରା ଚେଁକା ଦିଆ ଯାଇଥିଲା ।

୨୦ । (୨ୟ ଭାଗ, ୧୮।୮।୧୮୬୭, ସଂଖ୍ୟା — ୩)

ଏ ସପ୍ତାହରେ ଚାଉଳ ଦର

କଟକରେ ଟ୧୦ଙ୍କା ସେରରେ ସେ ୧୨ଠାରୁ ସେ୧୫ର ପର୍ଯ୍ୟନ୍ତ,
ପୁରୁଷୋତ୍ତମରେ ସେ୧୪ର ଠାରୁ ସେ୧୬ ର ପର୍ଯ୍ୟନ୍ତ,
ବାଲେଶ୍ୱରରେ ସେ୭ର ଠାରୁ ସେ୭୨ର ପର୍ଯ୍ୟନ୍ତ ।

୨୧ । "କଟକ ଛୋଟ ଅଦାଲତର ଓକିଲ ରଘୁନାଥ ଦାସଙ୍କ ପୁତ୍ର ମଧୁସୂଦନ ଦାସ କଲିକତାକୁ ଯାଇ ସେଠାରେ ଖ୍ରୀଷ୍ଟିୟାନଧର୍ମ ଅବଲମ୍ବନ କରି ଅନ୍ଧକାର କୂପରୁ ଉଦ୍ଧାର ପାଇ ସମ୍ପ୍ରତି ସ୍ୱର୍ଗମାର୍ଗରେ ଭ୍ରମଣ କରୁଅଛନ୍ତି । ସେ ଏଠାରୁ ବାଲେଶ୍ୱର ସ୍କୁଲର ୪ର୍ଥ ମାଷ୍ଟରରେ ନିଯୁକ୍ତ ହୋଇଥାନ୍ତି, ଏଥିପରେ ସେଠାକାର ରେଜିଷ୍ଟ୍ରୀ ଅଫିସରେ କିରାଣିଗିରିରେ ସେ ରହିଲେ । କିଛି ଟଙ୍କା ସରକାରୀ ତହବିଲରୁ ଖର୍ଚ୍ଚ କରିଥିବାରୁ ସେ ଏବର୍ଷର ମାବୁଲହୋଇ କଲିକତା ଚାଲିଗଲେ । ଖ୍ରୀଷ୍ଟିୟାନଧର୍ମ ଅବଲମ୍ବନ କରିବା ମାତ୍ରକେ ସେହି ଧର୍ମସ୍ଥ ଏକ ସ୍ତ୍ରୀର ପାଣିଗ୍ରହଣ କଲେ । ବୋଧହୁଏ ଏହି ଲୋଭରେ ଅନେକ ଖ୍ରୀଷ୍ଟିୟାନ ହୋଇଅଛନ୍ତି ।

କିଂ କୁର୍ବନ୍ତି ନ କୁର୍ବନ୍ତି ସ୍ତ୍ରୀମିଣୀ
ବଶଗା ନରାଃ
ଯତ୍ର କାମିନ୍ୟା ପ୍ରସାଦେନ
ନୃପତି ଘୋଟକାୟତେ ।

୨୨ । ( ୧ମ ଭାଗ, ୨୬।୩।୧୮୬୬, ସଂଖ୍ୟା-୪ )

କଟକସ୍ଥ ସାହାଯ୍ୟ କମେଟୀ

ଗଲତ ମାସ ତା.୧୨ରିଖରେ ସାହାଯ୍ୟ କମେଟୀର ଯେ ସଭା ହୋଇଥିଲା ତହିଁର ବିବରଣ ପାଠ କରିବାରେ ଜଣାଗଲା ଯେ କମେଟୀ ସର୍ବପ୍ରକାର ଭଲ ହେବାର ଲକ୍ଷଣ ପ୍ରଦର୍ଶନ କରୁଅଛନ୍ତି । ଏ ସଭାରେ ଯେ ବିଷୟମାନ ଧାର୍ଯ୍ୟହେଲା ତନ୍ମଧ୍ୟରେ ତଳ-ଲେଖିତ ମୁଖ୍ୟସ୍ଥମାନ ସ୍ଥିର ହୋଇଅଛି । ଯଥା:—

୧ । କମେଟୀର ମେମ୍ବରମାନଙ୍କ ମଧ୍ୟରେ ତଳଲେଖିତ ଦେଶୀୟ ଲୋକ ନିଯୁକ୍ତ ହୋଇ ଅଛନ୍ତି ।

ଶ୍ରୀଯୁତ ଶ୍ରୀରଜା ଭଗୀରଥ ମହେନ୍ଦ୍ର ବାହାଦୁର, ଜ: ଢେଙ୍କାନାଳ
,, ବାବୁ ରଙ୍ଗଲାଲ ବନ୍ଦୋପାଧ୍ୟାୟ
,, ଦୀନାନାଥ ସରକାର
,, ଈଶାନ ଚନ୍ଦ୍ର ବନ୍ଦୋପାଧ୍ୟାୟ
,, ଲକ୍ଷ୍ମୀ ନାରାୟଣ ରାୟ ଚୌଧୁରୀ

୨ । ଗୃହସ୍ଥ ଦୁଃଖୀ ସ୍ତ୍ରୀମାନଙ୍କୁ ସୂତାକାଟିବା ସକାଶେ ଦିଆଯିବ ଓ ତାହା ସେମାନେ କାଟିଦେଲେ ସେମାନଙ୍କ ପ୍ରତିପୋଷଣ ଅନୁସାରେ ମଜୁରୀ ଦିଆଯିବ ।

× × × ×

ମାତ୍ର ସାହାଯ୍ୟକମେଟୀ ଆଉରି ଦୁଇ ତିନ ଉପଯୁକ୍ତ ବ୍ୟକ୍ତିଙ୍କୁ ମେମ୍ବର କରିଥିଲେ ଅଧିକ ଭଲହେବାର ସମ୍ଭାବନା ଥିଲା । ଯେଉଁ ମେମ୍ବରମାନେ ନିଯୁକ୍ତ ହୋଇ ଅଛନ୍ତି ସେମାନେ ପ୍ରାଏ ସମସ୍ତେ ସହର ନିବାସୀ ଅଟନ୍ତି । ମଫସଲ ଅବସ୍ଥାର ସମ୍ବାଦ ଏମାନଙ୍କ ଠାରୁ ଯଥାର୍ଥରୂପେ ପ୍ରାପ୍ତ ହେବାର ଆଶା କରିହାଇ ନପାରେ । × × × ଶ୍ରୀଯୁତ ଚୌଧୁରୀ ବୈଦ୍ୟନାଥ ଦାସ ଓ ଶ୍ରୀଯୁତ ବାବୁ ରାଧାଶ୍ୟାମ ନରେନ୍ଦ୍ରଙ୍କୁ କମେଟୀରେ ମେମ୍ବର କରିଥିଲେ ଉତ୍ତମ ହୋଇଥାନ୍ତା । ଚୌଧୁରୀ ବୈଦ୍ୟନାଥ ଦାସ ଏଦେଶର ଜଣେ ପ୍ରଧାନ ଜମିଦାର ଓ ବର୍ତ୍ତମାନ କାଳରେ ମୃତ୍ତଲବକ୍ସି ଓ ଅନ୍ନଛତ୍ର ଇତ୍ୟାଦ ଦ୍ୱାରା ଅନେକ ପ୍ରକାରରେ ଦୁଃଖୀଙ୍କୁ ସାହାଯ୍ୟ କରୁଅଛନ୍ତି । ବାବୁ ରାଧାଶ୍ୟାମ ନରେନ୍ଦ୍ରଙ୍କର ବଦାନ୍ୟତା ଦେଶ ବିଦେଶରେ ଅନେକ କାଳରୁ ବିଖ୍ୟାତ ଅଛି ଓ ଦୁହେଁ ମଫସଲର ଅବସ୍ଥା ଓ ବର୍ତ୍ତମାନ କାଳରେ ପ୍ରଜାଙ୍କ କଷ୍ଟ ଅବଗତ ଅଛନ୍ତି ଓ ମଫସଲରେ ଅଧିକାଂଶ ସମୟ ରହୁଥିବାରୁ ଏମାନେ ନିକଟସ୍ଥ ସରକାରୀ ସାହାଯ୍ୟ ସ୍ଥାନମାନଙ୍କର

ତତ୍ତ୍ୱାବଧାରଣ କରିପାରନ୍ତେ ଓ ଏସମସ୍ତରେ ଏମାନେ ଯେ ପ୍ରକାର ସତ୍କାର୍ଯ୍ୟ କରୁଅଛନ୍ତି ତଦପେକ୍ଷା ଅଧିକ ସେ ବିଷୟରେ ଉତ୍ସାହୀ ହୁଅନ୍ତେ । × ×

× × × ×

୨୩ । (୧ମଭାଗ, ୨।୯।୧୮୬୬, ସଂଖ୍ୟା-୫)

'ଓଡ଼ିଆମାନେ ସ୍ୱଭାବତଃ ନିର୍ବୋଧ' ଏହି ପ୍ରବାଦ ଯଥାର୍ଥ କିନା ।

ବିଦେଶୀୟ ଲୋକମାନେ କହନ୍ତି ଓଡ଼ିଆମାନଙ୍କର ଜ୍ଞାନ ଏପରି ସ୍ଥୂଳ ଯେ ନାନା-ପ୍ରକାର ଚେଷ୍ଟାକଲେ ମଧ୍ୟ ସେମାନେ କୌଣସି ପ୍ରକାରରେ କୌଣସି ବିଷୟରେ ସୁଶିକ୍ଷିତ ହୋଇ ପାରନ୍ତିନାହିଁ । ମାତ୍ର ଅନୁଧାବନ ପୂର୍ବକ ବିବେଚନା କରି ଦେଖିଲେ ସେମାନଙ୍କର ଏହି ସଂସ୍କାର ଏକାନ୍ତ ଅଦୂରଦର୍ଶିତାମୂଳକ । କି ଶାସ୍ତ୍ରବିଦ୍ୟା କି ଶସ୍ତ୍ରବିଦ୍ୟା କି ସ୍ଥାପତ୍ୟ କି ଶିଳ୍ପ ସକଳ ବିଦ୍ୟାରେ ଓଡ଼ିଆମାନେ ସ୍ୱଭାବରେ ପାରଦର୍ଶୀ, କେବଳ କେହି ଉତ୍ସାହ-ଦାତା ନଥିବାରୁ ଏବଂ ରାଜଦ୍ରୋହ ତଥା ଅନ୍ୟାନ୍ୟ ବାଧା ଜନ୍ମିବାରୁ ଉତ୍କଳୀୟ-ମାନଙ୍କର ସ୍ୱକୀୟ ମହାଯଶସ୍ୱୀ ଧୀଶକ୍ତି କ୍ରମଶଃ ହ୍ରାସହୋଇ ପଡ଼ିଅଛି । ଏହି ଆମ୍ଭମାନଙ୍କର ପ୍ରତିବେଶୀ ବଙ୍ଗାଳୀମାନଙ୍କର ଅବସ୍ଥା ଯେ ଏତେ ଉତ୍କୃଷ୍ଟ ହୋଇଅଛି ତାହାର କାରଣ କି ? କେବଳ ଅନ୍ୟର ଯତ୍ନ କି ଏହି ଉନ୍ନତ ଅବସ୍ଥାର ମୂଳୀଭୂତ କାରଣ ନୁହେଁ ? ଦେଖ କି ଗବର୍ଣ୍ଣମେଣ୍ଟ ଓ ଦେଶହିତୈଷୀ ସଦାଶୟ ଡେବିଡ଼ ହେୟାର ଓ ଡ୍ରିଙ୍କ୍‌ୱାଟର ବେଥୁନ ପ୍ରଭୃତି ବଙ୍ଗଳାର ଉନ୍ନତି କାରଣ କିପର୍ଯ୍ୟନ୍ତ ଅର୍ଥବ୍ୟୟ ଓ ଆୟାସ ସ୍ୱୀକାର କରି ନାହାନ୍ତି ? ଦୁର୍ଭାଗ୍ୟ ଉତ୍କଳ ଦେଶରେ ଯଦି ସେପରି ଚେଷ୍ଟା କରାଯାଇଥାନ୍ତା ତେବେ ଆଜି କି ଉତ୍କଳର ଏପରି ଦୁରବସ୍ଥା ଥାଆନ୍ତା ? ପ୍ରତ୍ୟୁତ ଉର୍ବରା ଭୂମିରେ ନିପତିତ ବୀଜ ଯେପରି ଅଲ୍ପାୟାସରେ ଆଶୁ ଅଙ୍କୁରିତ ଓ ଶାଖାପ୍ରଶାଖାଯୁକ୍ତ ପରିଣତ ହୁଏ ତଦ୍ରୂପ ଅବଶ୍ୟ ଓଡ଼ିଶା ଏକ ସଭ୍ୟତମ ଦେଶ ମଧ୍ୟରେ ପରିଗଣିତ ହୁଅନ୍ତା ସନ୍ଦେହ ନାହିଁ ! ଏହି ଯେ ଅସାଧାରଣ ଧୀଶକ୍ତିସମ୍ପନ୍ନ ଇଂରାଜମାନେ, ସାକ୍ସନମାନଙ୍କର ଇଂଲଣ୍ଡ ଅଧିକାର ପୂର୍ବରେ ଏମାନଙ୍କର ଅବସ୍ଥା କିପରି ଥିଲା ? କେବଳ ଅନ୍ୟର ଯତ୍ନ କି ଏମାନଙ୍କର ଉନ୍ନତାବସ୍ଥାର ହେତୁଭୂତ ହୋଇନାହିଁ ? ଦେଶର ସଭ୍ୟତାର ମୂଳୀଭୂତ ଯେ ଭାଷା । ପୂର୍ବରେ ଇଂରାଜି ଭାଷା କିପରି ଥିଲା ବର୍ତ୍ତମାନ କିପରି ହୋଇଅଛି । ସାକ୍ସନମାନଙ୍କର ଇଂଲଣ୍ଡ ଆକ୍ରମଣ ପୂର୍ବରେ ଇଂରେଜି ଭାଷାର ଯେଉଁ ଅବସ୍ଥା ଥିଲା ତାହାର ସହିତ ଅଧୁନାତନ ଉତ୍କଳଭାଷାର ତୁଳନାକରି ଦେଖିଲେ ଏକ. କିଛି ପ୍ରଭେଦ ପ୍ରତୀୟମାନ ହୁଏ ।

ପୁନଶ୍ଚ ଦେଖ ଏହି ବଙ୍ଗାଳାଭାଷାର ଉନ୍ନତି କାରଣ କି ପର୍ଯ୍ୟନ୍ତ ନା ଯତ୍ନ କରାଯାଉଅଛି ।

ତଥାପି ଉତ୍କଳୀୟ କବିମାନେ ଯେ ସକଳ କାବ୍ୟଗ୍ରନ୍ଥ ରଚନାକରି ଯାଇଅଛନ୍ତି ତାହାର ସହିତ ତୁଳନା ଦେବାପାଇଁ ଆଜି ପର୍ଯ୍ୟନ୍ତେ ଖଣ୍ଡେ ମଧ୍ୟ କାବ୍ୟ ବଙ୍ଗଳା ଭାଷାରେ ପ୍ରକାଶ ହୋଇନାହିଁ। ଏକଥା ଯଥାର୍ଥ ଅଟେ ଯେ କି ସାହିତ୍ୟ କି ଗଣିତ କି ଭୂଗୋଳ କି ପ୍ରାକୃତିକ ବିଦ୍ୟା ସକଳ ବିଷୟରେ ବଙ୍ଗଳାରେ ଭୁରି ଭୁରି ଗ୍ରନ୍ଥ ପ୍ରକାଶ ହୋଇଅଛି ମାତ୍ର ଏହି ସକଳ ପୁସ୍ତକ ଅନୁବାଦିତ ଅଟନ୍ତି, ସ୍ୱାଧୀନ ପୁସ୍ତକ କେତେ ଖଣ୍ଡ ଅଛି ? ସ୍ୱାଧୀନ ଗ୍ରନ୍ଥ ମଧ୍ୟରୁ ବଙ୍ଗାଳୀମାନେ ବିଦ୍ୟାସୁନ୍ଦରକୁ ସୁପ୍ରସିଦ୍ଧ ପୁସ୍ତକ ବୋଲି ଗଣନ୍ତି ଏବଂ ଏହି ଗ୍ରନ୍ଥ ରଚନାକରି ୰ ଭାରତ ଚନ୍ଦ୍ର ରାୟ ବଙ୍ଗଳା ଦେଶରେ ବିଖ୍ୟାତ ହୋଇଅଛନ୍ତି।

( କ୍ରମଶଃ ପ୍ରକାଶ୍ୟ )

୨୧। (୧ମ ଭାଗ, ସନ ୧୯।୧।୧୮୬୬ମସିହା, ସଂଖ୍ୟା ୪)

ଚିଲିକାହ୍ରଦ।

ଚିଲିକାହ୍ରଦର ମୁହଁ ଖୋଲାଇ ଗଞ୍ଜାମ ଓ ପୁରୀସଙ୍ଗେ ଜଳପଥଦ୍ୱାରା ଗତାୟତର ସୁଯୋଗ କରିଦେବା ନିମନ୍ତେ ଗବର୍ଣ୍ଣମେଣ୍ଟ ଆଦେଶ କରିଅଛନ୍ତି। ଉକ୍ତ କର୍ମ ଯେବେ ଇରିଗେଶନ କୁମ୍ପାନି କରିପାରିବେ ତେବେ ଉତ୍ତମ ନଚେତ୍ ଗବର୍ଣ୍ଣମେଣ୍ଟ ସ୍ୱୟଂ ତାହା ସିଦ୍ଧ କରିବେ। ଏ କର୍ମରେ ଆମ୍ଭମାନଙ୍କର ଅନେକ ଉପକାର ହେବ ସନ୍ଦେହ ନାହିଁ।

୨୫। ଗତ ଶନିବାରଠାରୁ ସରକାରୀ ଚାଉଳ ଭାଉ ଅଧିକ ହୋଇଅଛି। ବର୍ତ୍ତମାନ ସନ୍ନ ଚାଉଳ ଟଙ୍କାକୁ ସେ୪୨ର ଓ ମୋଟ ଚାଉଳ ସେ୬ର ମିଳୁଅଛି।

ଧାମନଗରରେ ଚାଉଳ ଭାଉ ଟଙ୍କାରେ ଏକସେର ଓ ଯାଜପୁରରେ ସେ୨୨ର ହୋଇଅଛି। ସେ ସ୍ଥାନମାନଙ୍କୁ ଶୀଘ୍ର ସରକାର ଚାଉଳ ପଠାଇବାର ଉପାୟ କରିଯାଉ ଅଛି।

୨୬। ( ୧ମ ଭାଗ, ସନ ୮।୨।୧୮୬୬ମସିହା, ସଂଖ୍ୟା ୬ )

ଚାଉଳ ଭାଉ

ଗତକାଲି ଠାରୁ ସରକାରୀ ଚାଉଳ ଫି ଟଙ୍କାକୁ ସେ୫୨ର ଓ ଧାନ୍ୟ ସେ୨୨ର ଭାଉରେ ବିକ୍ରି ହେଉଅଛି। ସମ୍ବଲପୁରରୁ ବିଶେଷ ଚାଉଳ ଆସିଥିବାରୁ ଏରୂପ ହୋଇଅଛି।

୨୭। (୧ମ ଭାଗ, ସନ୨୯।୧।୧୮୬୬ ମସିହା, ସଂଖ୍ୟା ୯)

ଉତ୍କଳ ଦେଶର ଯେଉଁ କଙ୍ଗାଳମାନେ କଲିକତାରେ ସାହାଯ୍ୟ ପାଉଅଛନ୍ତି

ସେମାନଙ୍କ ମଧ୍ୟରୁ ଅନେକ ଲୋକ ଆପଣା ଆପଣା ଘରକୁ ଫେରି ଆସିବାକୁ ଇଚ୍ଛା କରିବାରୁ କଲିକତାର ସାହାଯ୍ୟ କମିଟୀଙ୍କ ସୁପାରିଶମତେ ବୋର୍ଡ ସେମାନଙ୍କୁ ଫିରେଜ ନାମକ ଜାହାଜରେ ବାଲେଶ୍ୱର ବନ୍ଦର ଓ ପୁରୀକୁ ପଠାଉଅଛନ୍ତି ।

୨୮ । (୧ମ ଭାଗ, ସନ ୨୦।୧୦।୧୮୬୬, ସଂଖ୍ୟା ୧୨)

'ଓଡ଼ିଆମାନେ ସ୍ୱଭାବତଃ ନିର୍ବୋଧ' ଏହି ପ୍ରବାଦ ଯଥାର୍ଥ କି ନା ।

(୪ର୍ଥ ସଂଖ୍ୟା ପ୍ରକାଶିତ ପରେ)

ବିଦ୍ୟାସୁନ୍ଦର ରଚନାର ଅନେକବର୍ଷ ପୂର୍ବରେ ଦୀନକୃଷ୍ଣ ଦାସ ଯେ ରସକଲ୍ଲୋଳ ନାମକ ପୁସ୍ତକ ରଚନା କରିଅଛନ୍ତି ତାହାର ସହିତ ତୁଳନା କରି ଦେଖିଲେ ବିଦ୍ୟାସୁନ୍ଦର ଅତି ଅପକୃଷ୍ଟ ବୋଧହୁଏ । କି ରଚନା ଚାତୁର୍ଯ୍ୟ କି ସ୍ୱଭାବବର୍ଣ୍ଣନା କି ଶ୍ଳେଷ ଓ ଯମକ ରଚନା ସମସ୍ତ ବିଷୟରେ ଦୀନକୃଷ୍ଣ ଭାରତ ଚନ୍ଦ୍ରଙ୍କଠାରୁ ଅଧିକ ପରାକାଷ୍ଠା ଲାଭକରି ଅଛନ୍ତି । ତଥାପି ଦେଖ ବିଦ୍ୟାସୁନ୍ଦର ଆଜି କି ପର୍ଯ୍ୟନ୍ତ ବିଦ୍ୱାନମଣ୍ଡଳୀରେ ସମାଦୃତ ହେଉଅଛି । ମାତ୍ର ରସକଲ୍ଲୋଳ ପ୍ରତି କେହି ଦୃଷ୍ଟିପାତ କରିବାକୁ ନାହିଁ । ରସକଲ୍ଲୋଳ ଆଦରଯୋଗ୍ୟ ଓ କୁତ୍ସିତ ଭାବାଶ୍ରିତ ବୋଲି ଯେ ଯାହା କହନ୍ତୁ ସେଥିରେ ଆମ୍ଭର ବକ୍ତବ୍ୟ ନାହିଁ । ମାତ୍ର ରସକଲ୍ଲୋଳ ଯେ ସର୍ବ ବିଷୟରେ ବିଦ୍ୟାସୁନ୍ଦରଠାରୁ ଉତ୍କୃଷ୍ଟ ଗ୍ରନ୍ଥ ତାହାର ସନ୍ଦେହାଭାବ ।

ଏହି ବାକ୍ୟର ଦୃଢ଼ତା କାରଣ ପ୍ରମାଣ ଦର୍ଶାଇବା ବାହୁଲ୍ୟ ମାତ୍ର । ଯେ ସୁହୃଦମ୍ବ ବ୍ୟକ୍ତି ଏହି ଗ୍ରନ୍ଥଦ୍ୱୟ ପାଠ କରିଅଛନ୍ତି ସେହି ଏହି ଗ୍ରନ୍ଥଦ୍ୱୟର ଉତ୍କର୍ଷାପକର୍ଷ ବିଷୟ ହୃଦୟଙ୍ଗମ କରିଅଛନ୍ତି । ଦୀନକୃଷ୍ଣଙ୍କ ଭିନ୍ନ ଆହୁରି ମଧ୍ୟ ଅନେକ କବି ଅନେକ ବିଷୟରେ ଅନେକ ଗ୍ରନ୍ଥ ରଚନା କରିଅଛନ୍ତି । ମୁଦ୍ରାଯନ୍ତ୍ର ଅଭାବରେ ଅନେକ ଗ୍ରନ୍ଥ ଲୋପ ହୋଇଅଛି । ଓଡ଼ିଶାର କବିକୁଳକେଶରୀ ଉପେନ୍ଦ୍ରଭଞ୍ଜ ୫୨ଖଣ୍ଡ ଗ୍ରନ୍ଥ ରଚନା କରିଥିଲେ ମାତ୍ର ଇଦାନିଂ ପ୍ରସିଦ୍ଧ କବି ରଚିତ ୨୦।୨୫ ଖଣ୍ଡ ଗ୍ରନ୍ଥରୁ ଅଧିକ ମିଳୁନାହିଁ ।

× × ×

(3½ Columns)

୨୯ । ବାଲେଶ୍ୱରରେ ସାହାଯ୍ୟ କର୍ମ

ଶୁଣାଯାଏ ବାଲେଶ୍ୱରର ସାହାଯ୍ୟକର୍ମ ଏବେ ଉତ୍ତମରୂପେ ଚାଲିବାର ଦେଖି

ବଙ୍ଗାଳୀମାନେ କହୁଅଛନ୍ତି ଯେ ଏହାର ସୁବିଧା ପ୍ରଥମରୁ ହୋଇଥିଲେ ଆମ୍ଭମାନଙ୍କର ସହସ୍ର ସହସ୍ର ଭାଇବନ୍ଧୁମାନେ ମୃତ୍ୟୁଗ୍ରାସରୁ ଉଦ୍ଧାର ପାଇଥାଆନ୍ତେ ।

୩୦ ।     (୦ମ ଭାଗ, ସନ ୩।୧୧।୧୮୭୭ ମସିହା, ସଂଖ୍ୟା ୩)

### ଓଡ଼ିଶା ବଡ଼ି, ଦୁର୍ଭିକ୍ଷ ସାହାଯ୍ୟ ଓ ପ୍ରତିକାର ବ୍ୟବସ୍ଥା

'ଓଡ଼ିଶା ପ୍ରଦେଶରେ ନଦୀବଡ଼ି ହେତୁ ଭାରି ବିପଦ ପଡ଼ିଥିବାର ପ୍ରମାଣ ହୋଇଅଛି ଗବର୍ଣ୍ଣମେଣ୍ଟ ତହବିଲରୁ ବିନା ଓଜର ଦାଦନ କର ଓ ଏ ବିପଦର ଗତି ଓ ନିବାରଣର ଆଶା କ୍ଷୁଦ୍ର ଅଛି ଶୀଘ୍ର ରିପୋର୍ଟ କର' । ଲାଟଙ୍କ ସେକ୍ରେଟେରୀ ଆମ୍ଭମାନଙ୍କ ଦୁର୍ଦ୍ଦଶା ଶ୍ରବଣ ମାତ୍ରକେ ଏତାଦୃଶ ବଦାନ୍ୟତା ପ୍ରକାଶ କରିଅଛନ୍ତି ମାତ୍ର ଅତ୍ରସ୍ଥ କର୍ମଚାରୀମାନେ ବର୍ଷାଧିକକାଳ ଆମ୍ଭର ଯନ୍ତ୍ରଣା ଦେଖି ଦେଖି କେତେବେଳେ କହନ୍ତି ସାହାଯ୍ୟକର୍ମ ଉତ୍ତମ ଚଳୁଛି, ଅନ୍ୟ କେତେବେଳେ କହନ୍ତି ଟଙ୍କା ଦରକାରନାହିଁ ଓ କେତେବେଳେ ଦେଶରେ ଅନେକ ଧାନ ଥିବାର ବିଶ୍ୱାସକରି ଚାଉଳ ପଠାଇବା ବିଷୟରେ ବୋର୍ଡ଼କୁ ବାରଣ କରନ୍ତି ।

୩୧ ।     (୧ମ ଭାଗ, ସନ ୧୭।୧୨।୧୮୬୯, ସଂଖ୍ୟା ୧୫)

### ବଙ୍ଗାଳିଙ୍କର ଭବିଷ୍ୟଦବସ୍ଥା

କ୍ରମଶଃ ଦୁର୍ଭିକ୍ଷର ପ୍ରଭା ଅସ୍ତହେବାକୁ ଆରମ୍ଭହେଲା ଓ ସରଗଡ଼ର ଫସଲ ଉତ୍ତମ ହୋଇଥିବା ସମସ୍ତଙ୍କ ମନରେ ଜାଗରିତ ହୋଇଥିବାରୁ ବଜାରରେ ଶସ୍ୟାଦିର ଦରକ୍ରମନ ବୃଦ୍ଧି ହେବାର ଦେଖା ଯାଉଅଛି । ଗତ ସପ୍ତାହରେ ସେ ୬ରୁ ଅଧିକରେ ପ୍ରାପ୍ତ ହେଉଅଛି । ଦୁଃଖୀମାନେ ବର୍ତ୍ତମାନ ଧନ ଆବଶ୍ୟକ କରୁଅଛନ୍ତି ।

× × × ×

× × ×

ଅତଏବ ଆମ୍ଭେମାନେ ପ୍ରସ୍ତାବକରୁଁ ଯେ ପରିଶ୍ରମ କରିବାକ୍ଷମ ଲୋକଙ୍କୁ କର୍ଜତ୍ ଅର୍ଥ ଦେଆପାଇ ଅନାଚ୍ଛନ୍ନ ବହିଷ୍କୃତ କରାଯାଉ ଓ ମଫସଲ ଅନ୍ନଛତ୍ରମାନ ଏକାବେଳକେ ରଦ୍ଦ କରାଯାଉ । ତକଗୋଟି ଅନ୍ନଛତ୍ର କଲିକତାରେ ଯଥେଷ୍ଟ ହେବ ।

× × ×

ଅରକ୍ଷ ବାଳକମାନଙ୍କ ବିଷୟରେ ଏଥିପୂର୍ବେ ଲିଖିତ ହୋଇଅଛି । ଗ୍ରାମ୍ୟ କମିଶନର ସାହେବଙ୍କ ପ୍ରସ୍ତାବମତେ ଆମ୍ଭର ଦୟାଶୀଳ ଗବର୍ଣ୍ଣମେଣ୍ଟ ପ୍ରତି ବାଳକ ସକାଶେ ମାସିକ ୫୲ଙ୍କା ଲେଖାଏଁ ଖୋରାକ ମଞ୍ଜୁର କରିଅଛନ୍ତି ଓ ମିଶନରିମାନଙ୍କୁ ଏଥିର ଭାର ନେବାପାଇଁ କମିଟି ଅନୁରୋଧ କରିଅଛନ୍ତି । ମିଶନରିମାନଙ୍କ ଦ୍ୱାରା ଏମାନଙ୍କର ଶିକ୍ଷାହୋଇ ପାରିବ ସନ୍ଦେହ ନାହିଁ ମାତ୍ର ଯଦ୍ୟପି ଏମାନଙ୍କୁ କେବଳ ଲେଖିବା ପଢିବା ଶିକ୍ଷାଦିଆ ନଯାଇ କୃଷିବିଦ୍ୟା ଓ ଶିଳ୍ପ କର୍ମରେ ଶିକ୍ଷା ଦିଆଯିବାର କୌଣସି ଉପାୟ ହୁଅଇ ତାହାହେଲେ ଅନ୍ତକାଳରେ ଏମାନଙ୍କର ପରମ ଉପକାର ହେବ । ଉପଯୁକ୍ତ ବ୍ୟକ୍ତିଙ୍କୁ ଏବିଷୟରେ ଆମ୍ଭେମାନେ ପୂର୍ବରୁ ଜଣାଇଥିଲୁ । ସେମାନେ ବିବେଚନା ପୂର୍ବକ କର୍ମକାରକ ହେବେ ।

୩୨ । ଗୁଡ଼ଲ ଦର ।

କଟକରେ ଗୁଡ଼ଲଦର ଏକ ନୂତନ ନିୟମରେ ଚଳୁଅଛି । ଦିନ ମଧ୍ୟରେ ପ୍ରାୟ ତିନ ଚାରି ଥର ଦର ବଦଳ ହେଉଅଛି ମାତ୍ର ସୌଭାଗ୍ୟର ବିଷୟ ଯେ ପ୍ରତି ପରିବର୍ତ୍ତନରେ କିଛି ଗୁଡ଼ଲ ଅଧିକ ହେଉଅଛି । ବର୍ତ୍ତମାନ ସହରରେ ୨୧୮ର ପର୍ଯ୍ୟନ୍ତ ଗୁଡ଼ଲ ପ୍ରାପ୍ତ ହୁଅଇ ।

ଆମ୍ଭେମାନେ ସମ୍ବାଦ ପାଉଅଛୁଁ ଯେ ବାଲେଶ୍ୱରରେ ଗୁଡ଼ଲ ୧ଙ୍କାରୁ ୧୨ର ପ୍ରାପ୍ତ ହେଉଅଛି ମାତ୍ର ପୂର୍ବରେ ୨୦ରରୁ ଅଧିକ ହୋଇନାହିଁ ।

୩୩ । (୧ମ ଭାଗ, ୨୦।୧୧।୧୮୬୭, ସଂଖ୍ୟା-୧୬)

କଟକରେ ଏକଖଣ୍ଡି ସାପ୍ତାହିକ ଇଂରେଜି ସମ୍ବାଦପତ୍ର ହେବାର ଉଦ୍ୟମ ହେଉଅଛି । ବୋଧ ହୁଅଇ ଆଗତ ସନ ଆରମ୍ଭରୁ ଏପତ୍ର ପ୍ରକାଶ ହେବ । ଯେବେ ଏକଳ୍ପନା ସିଦ୍ଧ ହୁଅଇ ତେବେ ଏ ମଧ୍ୟ ଓଡ଼ିଶାର ଉନ୍ନତିର ଏକ ଉପାୟ ।

୩୪ । (୧ମ ଭାଗ, ୧।୧୨।୧୮୬୭, ସଂଖ୍ୟା ୧୭)

କଟକରେ ବର୍ତ୍ତମାନ ସମ୍ବଲପୁରୀ ଗୁଡ଼ଲ ୫ଙ୍କାରୁ ୨୪ର ଓ ଦେଶୀ ଗୁଡ଼ଲ ୨୩ର ବିକ୍ରି ହେଉଅଛି ।

ସରକାର ଗୁଡ଼ଲ କଟକକୁ ଆସିବାର ଅବଧି ସ୍ଥିରକୃତ ହୋଇନାହିଁ

୩୫ । (୧ମ ଭାଗ, ୮।୧୨।୧୮୬୬, ସଂଖ୍ୟା ୧୮)

ଇଣ୍ଡିଆ ଗବର୍ଣ୍ଣମେଣ୍ଟ ଦୁର୍ଭିକ୍ଷ ବିଷୟମାନ ଅନୁସନ୍ଧାନ କରିବା ନିମନ୍ତେ ଏଥି ପ୍ରତି ନିଯୁକ୍ତ ହୋଇଥିବା ବ୍ୟକ୍ତିମାନଙ୍କର ସଂଖ୍ୟା ବୃଦ୍ଧି କରିଅଛନ୍ତି । ହାଇକୋର୍ଟର ଜଜ କ୍ୟାମ୍ବେଲ ସାହେବ ଏଥିରେ ପ୍ରେସିଡେଣ୍ଟ ଅର୍ଥାତ୍ ସଭାପତି ହୋଇଅଛନ୍ତି । ନିମ୍ନଲିଖିତ ବ୍ୟକ୍ତିମାନେ ମେମ୍ବର ଅର୍ଥାତ୍ ସଭ୍ୟ ଅଟନ୍ତି—

କର୍ଣ୍ଣେଲ ମର୍ଟନ ସାହେବ
ଏକ ଜଣ ଡାକ୍ତର
ଡେମିସ୍ନର ସାହେବ
କକରେଲ ସାହେବ

କକରେଲ ସାହେବ ବିହାର ଦେଶର ଦୁର୍ଭିକ୍ଷ ତଦାରଖ କରିବାକୁ ଯିବେ । ଅନ୍ୟମାନେ ଓଡ଼ିଶାର ଦୁର୍ଭିକ୍ଷ ସମ୍ବନ୍ଧୀୟ ବିଷୟମାନ ତଦାରଖ କରିବେ ।

୩୬ । (୧ମଭାଗ, ୨୧।୧୨।୧୮୬୬, ସଂଖ୍ୟା ୨୧)

ଦୁର୍ଭିକ୍ଷ କମିଶନରମାନେ ଏଠାରେ ପ୍ରବେଶ ହୋଇ ଚଳିତମାସ ତା।୨୪ଠାରୁ କାର୍ଯ୍ୟ ଆରମ୍ଭ କରିଅଛନ୍ତି ।

—o—

୩୭ । (୨ୟ ଭାଗ, ୫।୧।୧୮୬୭, ସଂଖ୍ୟା୧)

ଦୁର୍ଭିକ୍ଷଅନୁସନ୍ଧାନ କମିଶନ

ଆମ୍ଭେମାନେ ଗତ ସପ୍ତାହ ପତ୍ରିକାରେ ଦୁର୍ଭିକ୍ଷ ଅନୁସନ୍ଧାନ କମିଶ୍ନରମାନଙ୍କ କାର୍ଯ୍ୟାରମ୍ଭ ବିଷୟ ଲେଖିଥିଲୁଁ । ଏସପ୍ତାହରେ ଖୋର୍ଧାର ଅଶିଷ୍ଟାଣ୍ଟ ବାର୍ଟନ ସାହେବ ଓ ଭଦ୍ରକର ଆଶିଷ୍ଟାଣ୍ଟ ସର୍ଟସାହେବ ଓ ଦୁର୍ଭିକ୍ଷ ସକ୍ରାନ୍ତ ଅନ୍ୟାନ୍ୟ ସର୍କାରୀ କାର୍ଯ୍ୟକାରକ ମାନଙ୍କର ଯୋବାନବନ୍ଦି ନିଆ ଯାଇଅଛି । ଏମାନେ କି କହିଅଛନ୍ତି ତାହା ସବସାଧାରଣଙ୍କର ଜାଣିବାର ଉପାୟ ନାହିଁ । ଏବିଷୟରେ କମିଶ୍ନରମାନେ ନିମ୍ନଲିଖିତ ବିଜ୍ଞାପନ ଦେଇ ଅଛନ୍ତି ।

ଦୁର୍ଭିକ୍ଷ ଅନୁସନ୍ଧାନ ଖାସ କମିଶ୍ନରମାନଙ୍କ ସକାଶରେ କୌଣସି ଭଦ୍ରଲୋକଙ୍କର ଉପସ୍ଥିତ ରହିବାର ଇଚ୍ଛା ହେଲେ ତନ୍ନିମନ୍ତେ ଆହ୍ୱାନ କରା ଯାଇଅଛି ମାତ୍ର ସେଠାରେ ଯେ ଗୋପନବନ୍ଦ ନଆସିବ ତାହା ବର୍ତ୍ତମାନ କେହି ଲେଖିତ ନେଇ ପାରିବେ ନାହିଁ କିମ୍ବା ପ୍ରଚାର କରିବେ ନାହିଁ ।

କଟକ                                                    ମି: ଡିକେନ୍ସ ସାହେବ

ତା ୨୮ ରିଖ ଡିସେମ୍ବର ସନ ୧୮୬୬          କମିଶ୍ନର ସାହେବମାନଙ୍କର ସେକ୍ରେଟରି

ଯେଉଁ ସବୁ ଯୋବାନବନ୍ଦ ନଅଯାଉଅଛି ତାହା ସର୍ବସାଧାରଣର ଗୋଚରାର୍ଥ ପ୍ରଚାର କରିବାର ନିବାରଣ କରିବାର ଯେ କି ଅଭିପ୍ରାୟ ଓ ତାହାଦ୍ୱାରା କି ଅଭିଷ୍ଟ ସିଦ୍ଧ ହେବ ତାହା ଆମ୍ଭମାନଙ୍କର ବୋଧଗମ୍ୟ ହେଉନାହିଁ । ଯେଉଁମାନଙ୍କର ଯୋବାନବନ୍ଦ ନିଆ ଯାଉଅଛି ସେମାନେ ସମସ୍ତେ ସରକାରୀ କର୍ମକାରକ ଓ ସେମାନଙ୍କ ମଧ୍ୟରୁ ଅଧିକାଂଶ ଦୁର୍ଭିକ୍ଷ କର୍ମରେ ନିଯୁକ୍ତ ଥିଲେ । ଏହେତୁ ଅନେକ ଯଥାର୍ଥ ବୃତ୍ତାନ୍ତ ପ୍ରକାଶ କଲେ ସେମାନଙ୍କର ଆପଣାର କର୍ତ୍ତବ୍ୟ କର୍ମରେ ଅମନୋଯୋଗିତା ପ୍ରକାଶ ପାଇପାରେ ମଧ୍ୟ ଏପରି ଅନେକ ବିଷୟ ଥାଇପାରେ ଯେ ତାହା ବ୍ୟକ୍ତ କଲେ ସେମାନଙ୍କ ଉପର ହାକିମ ଓ ଗବର୍ଣ୍ଣମେଣ୍ଟର ଦୋଷ ପ୍ରକାଶ ହୋଇପାରେ । ଏହି ସମସ୍ତ କାରଣରୁ ସେମାନେ ନିର୍ଭୟରେ ଅନେକ ଯଥାର୍ଥ ବୃତ୍ତାନ୍ତ ପ୍ରକାଶ କରିବାକୁ ବାଧା ଜନ୍ମିବାର ସମ୍ଭାବନା ; ମଧ୍ୟ ଦୁଇ ଏକ ଗବର୍ଣ୍ଣମେଣ୍ଟ ଅଧୀନ କାର୍ଯ୍ୟକାରକଙ୍କ ଯୋବାନବନ୍ଦରୁ ଗବର୍ଣ୍ଣମେଣ୍ଟ ଓ ଆପଣା ଉପର ହାକିମଙ୍କୁ ବଞ୍ଚାଇବାର ଅଭିପ୍ରାୟ ସ୍ପଷ୍ଟ ପ୍ରକାଶ ହୋଇ ଥିବାର ଆମ୍ଭେମାନେ ଅବଗତ ହୋଇଅଛୁଁ । ସର୍କାରୀ କାର୍ଯ୍ୟକାରକଙ୍କ ଛଡ଼ା ଜମିଦାର ଓ ମହାଜନମାନଙ୍କର ଯୋବାନବନ୍ଦ ନଆସିବ । ଏ ଦେଶରେ ଏପରି କେହି ପ୍ରଧାନ ଜମିଦାର ନାହିଁ ଯେ ଦୁର୍ଭିକ୍ଷ ବିଷୟରେ ତାହାଠାରୁ କିଛି ବିଶେଷ ଉପଯୋଗୀ ସମାଚାର ପ୍ରାପ୍ତ ହୋଇ ପାରିବ ଓ ଏଦେଶର ଜମିଦାରମାନଙ୍କର ଅଧିକାଂଶ ଏପର୍ଯ୍ୟନ୍ତ ଏପରି ସୁଶିକ୍ଷିତ ଓ ସଭ୍ୟ ହୋଇ ନାହାନ୍ତି ଯେ ଅସଙ୍କୁଚିତ ଚିତ୍ତରେ ନିଷ୍ପକ୍ଷପାତ ହୋଇ କୌଣସି ବ୍ୟକ୍ତିବିଶେଷର ମଙ୍ଗଳାମଙ୍ଗଳ ଉପରେ ଦୃଷ୍ଟି ନକରି ସର୍ବସାଧାରଣର ଉପକାର ନିମନ୍ତେ ଯାହାସବୁ ବାସ୍ତବରେ ଘଟଣା ହୋଇଅଛି ତାହା ବ୍ୟକ୍ତ କରିବେ ଓ ଭବିଷ୍ୟତରେ ଉକ୍ତଙ୍କର ଦୁର୍ଘଟଣା ନିବାରଣର କୌଣସି ଉତ୍ତମୋପାୟ ଉଲ୍ଲେଖ କରିବେ । ଆମ୍ଭେମାନେ ଯାହା ଲେଖିଲୁଁ ଏତଦ୍ୱାରା ପାଠକମାନେ ଆମ୍ଭମାନଙ୍କର ଏପରି ଅଭିପ୍ରାୟ ବୁଝିବେ ନାହିଁ ଯେ ଯଥାର୍ଥ ବିଷୟ ପ୍ରକାଶ କରିବାର ପରାଙ୍ମୁଖ ହେବାର ଦୋଷ ସମସ୍ତଙ୍କ ଉପରେ ଅମ୍ଭେମାନେ ଦେଉଅଛୁଁ । ଯେ ଯେତେ ସତ୍ୟପ୍ରିୟ ହେଲେହେଁ ଆପଣାର ମଙ୍ଗଳାକାଙ୍କ୍ଷା ସ୍ଥଳରେ

ନ୍ୟୂନାଧିକ ପରିମାଣରେ ଅଦମ୍ମହୃଦୟତା ପ୍ରକାଶ କରିବାର ମନୁଷ୍ୟମାତ୍ରର ସ୍ୱଭାବ ଓ ତାହା ନିବାରଣ ନିମନ୍ତେ ଯଥାସାଧ୍ୟ ଉପାୟ କରିବାର ଯେଉଁମାନଙ୍କର ସତ୍ୟ ବୃତ୍ତାନ୍ତ ଅବଗତ ହେବାର ଆବଶ୍ୟକ ସେମାନଙ୍କର କରିବାର ସର୍ବତୋଭାବେ ଉଚିତ । ଦୁର୍ଭିକ୍ଷ ଅନୁସନ୍ଧାନ କମିଶ୍ନରମାନେ ନେଇଥିବା ଘୋଷଣାନିବନ୍ଧ ସର୍ବସାଧାରଣଙ୍କ ଗୋଚରାର୍ଥ ପ୍ରବୃତ୍ତ ହେଉଥିଲେ ଯେବେ କେହି କୌଣସି ବିଷୟ ଅଯଥାର୍ଥ କିଂବା ଅସଙ୍ଗତ କହନ୍ତି ତାହା ଧରିପଡ଼ନ୍ତା ଓ କୌଣସି ନୂତନ ବିଷୟ ପ୍ରଶ୍ନ କଲେ ଦେଶର କୌଣସି ବିଶେଷ ଅବସ୍ଥା ପ୍ରକାଶ ହେବାର ସମ୍ଭାବନା ଥିଲେ ତାହା ଉଲ୍ଲେଖଯୋଗ୍ୟ ହୁଅନ୍ତା ଓ ଦେଶର ଅବସ୍ଥା ବିଶେଷରୂପେ ଜାଣିଲେ ଭବିଷ୍ୟତରେ ଏପ୍ରକାର ଦୁର୍ଘଟଣା ନିବାରଣର ଉପାୟ ଅନୁସନ୍ଧାନରେ ଅନେକ ବୁଦ୍ଧି ନିୟୋଜିତ ହୁଅନ୍ତା ଓ ତଦ୍ୱାରା ଅନ୍ୟାନ୍ୟ ଅନେକ ହିତର ସମ୍ଭାବନା ଥିଲା ମାତ୍ର କମିଶ୍ନରମାନେ ଆପଣାକୁ ସର୍ବଜ୍ଞ ମନେକରି କାହାର କୌଣସି ସାହାଯ୍ୟ ଗ୍ରହଣ ନାହିଁ କରିବା ପ୍ରବୃତ୍ତ ହେଲେ ସେମାନଙ୍କର କାର୍ଯ୍ୟରେ କିଛି ଦୋଷ ଥିଲେ ପ୍ରକାଶ ହେବାର ଭୟ କରନ୍ତି କି ଆଉ କି ଅଭିପ୍ରାୟ ଅଛି ତାହା ଆମ୍ଭମାନଙ୍କୁ କିଛି ଜଣା ଯାଉନାହିଁ । ଯାହା ହେଉ କମିଶ୍ନରମାନଙ୍କର ନିଷ୍ପକ୍ଷପାତରେ କାର୍ଯ୍ୟ କରିବାର ଓ ସର୍ବସାଧାରଣଙ୍କର ସାହାଯ୍ୟଲାଭ କରିବାର ଯଦି ଇଚ୍ଛାଥାଏ ତେବେ ଶୀଘ୍ର ଉଲ୍ଲେଖିତ ବିଜ୍ଞାପନ ରହିତ କରି ସର୍ବସାଧାରଣରେ ସେମାନଙ୍କ କାର୍ଯ୍ୟ ପ୍ରକାଶ ହେବାର ଅନୁମତି ଦେଉନ୍ତୁ ।



୩୮ । ସଭ୍ୟତା ଓ ଚର୍ମ ପାଦୁକା

ଏଥିପୂର୍ବେ ଆମ୍ଭେମାନେ ଆଗ୍ରା ଦରବାର ବିଷୟରେ ଲେଖିଅଛୁଁ ଯେ ବଡ଼ ବଡ଼ ଶ୍ରେଷ୍ଠ ଦେଶୀ ଲୋକ ଯେତେ ସେ ସ୍ଥାନକୁ ଯାଇଥିଲେ ସମସ୍ତଙ୍କୁ ବଡ଼ଦେଶରେ ଚର୍ମପାଦୁକା ତ୍ୟାଗ କରିବାକୁ ହୋଇଥିଲା ତାହା ପାଠକମାନେ ଜ୍ଞାତ ହୋଇଥିବେ । ପଶ୍ଚିମରେ ବଡ଼ ବଡ଼ ରଜାମାନେ ସାହେବ ଚାକର ରଖି ଅଛନ୍ତି; ଯଦି ଏ ସାହେବଙ୍କ ମଧ୍ୟରୁ କେହି ଆପଣା ମୁନିବ ସଙ୍ଗେ ଦରବାରକୁ ଯାଇଥିବେ, ତେବେ ତାହାଙ୍କ ମୁନିବ ରଜାମାନେ କିପରି ଅପମାନିତ ହୋଇଥିବେ । କୃଷ୍ଣକାୟ ଥିବା ଅପରାଧରୁ ମୁନିବ ଉପଯୁକ୍ତ ହୋଇ ଦରବାର ଦୁଆରେ ଜୋତା ରଖିଥିବେ ଓ ତାହାଙ୍କ ସାହେବ ଚାକର ଶୁକ୍ଳାଙ୍ଗ ଥିବା ଗୁଣରୁ ମହାରାଣୀଙ୍କ ପ୍ରତିନିଧିର ସିଂହାସନ ପର୍ଯ୍ୟନ୍ତ ଚର୍ମାବୃତ ପାଦରେ ଯାଇଥିବେ । ହା, ପରମେଶ୍ୱର ଆମ୍ଭମାନଙ୍କୁ କୃଷ୍ଣବର୍ଣ୍ଣ କରି କେତେ ଖେଦ ଦେଉଅଛନ୍ତି । ମହାରଜା ହେଲେ ତଥାଚ ଏ ଦେଶୀୟ ଲୋକ କୃଷ୍ଣବର୍ଣ୍ଣ ଥିବା ଅପରାଧରୁ ଦଣ୍ଡରୁ ରକ୍ଷା ପାଇଲେ ନାହିଁ । ଆମ୍ଭମାନଙ୍କର କି କପାଳ ! ନିମନ୍ତ୍ରଣ ସ୍ଥଳରେ ଓ ଇଂରେଜମାନଙ୍କ ଦେଖି ଏମନ୍ତ ସନ୍ଧ୍ୟା ନିମନ୍ତ୍ରଣଙ୍କ ବିଷୟରେ ସୁଦ୍ଧା ଅପମାନିତ

ହେଉଅଛୁଁ । ଏଠାକୁ ଯେତେବେଳେ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ଆସିଥିଲେ ରାଜା ଜମିଦାର୍ ଓ ଅନେକାନେକ ଭଦ୍ରଲୋକଙ୍କୁ ନିମନ୍ତ୍ରଣ କରି ଦୁଇ ତିନି ଦିନ ବାହାରେ ଅକାଳ ସମୟରେ ଅଣାଇ ଏହିପରି ଅପମାନ କଲେ ଓ ପଶ୍ଚିମରେ ରାଜା ଓ ମହାରାଜା ଯେଉଁମାନେ ଗବର୍ଣ୍ଣର ଜେନେରାଲଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଆଗ୍ରା ଦରବାରକୁ ଯାଇଥିଲେ ସେହିରୂପ କର୍ମ ଭୋଗକଲେ । ଏଠାରେ ହାଡ଼ି ଇତ୍ୟାଦି ଅତି ନୀଚ ଜାତି କାହାକୁ ନିମନ୍ତ୍ରଣ କଲେ ଯହିଁରେ ତାହାଙ୍କର କୌଣସି ବିଷୟରେ ମନଦୁଃଖ ନହେବ ଏଥିରେ ସେ ଅତି ସତର୍କ ଥାନ୍ତି ମାତ୍ର ଇଂରେଜମାନେ ସେହି ଆପଣାମାନଙ୍କୁ ବଡ଼ ସଭ୍ୟ ଜାତି ଜ୍ଞାନ କରି ଏଦେଶ ମନୁଷ୍ୟମାନଙ୍କୁ ଅସଭ୍ୟ ବୋଲି ଘୃଣା କରନ୍ତି କି ଆଶ୍ଚର୍ଯ୍ୟ ଆମ୍ଭ ସଭ୍ୟ ଇଂରେଜମାନଙ୍କ ମଧ୍ୟରେ ଯେ କି ବିଦ୍ୟାବୁଦ୍ଧିର ନୈପୁଣ୍ୟ ହେତୁ ଏକ ବଡ଼ ପରାକ୍ରମଶାଳୀ ରାଜାଙ୍କର ପ୍ରତିନିଧି ହୋଇ ଅଛନ୍ତି ସେ ଆତିଥ୍ୟ ସେବାର ନିୟମ ଜ୍ଞାନରେ ଏଦେଶର ନୀଚ ଜାତି ଲୋକଠାରୁ ଅଜ୍ଞ । ଏହାକୁ କି ସଭ୍ୟତା କହନ୍ତି; ତାହାହେଲେ ଆମ୍ଭର ପ୍ରାର୍ଥନା ଯେ ଆମ୍ଭେମାନେ ଯୁଗେଯୁଗେ ଏହିପରି ଅସଭ୍ୟ ଥାଉଁ ।

ଆମ୍ଭେମାନେ କୌଣସିଠାକୁ ଗଲେ ଯୂତାଯୋଡ଼ି ବିଛଣା ଉପରକୁ ଯାଉଁ । ଏଥିନି ଇଂରେଜମାନେ ଜ୍ଞାନ କରନ୍ତି ଯେ ଯୂତା ତ୍ୟାଗକରିବା ଆମ୍ଭମାନଙ୍କର ମାନ୍ୟ ଜଣାଇବାର ରୀତି । ସେ ବୁଝିପାରନ୍ତି ନାହିଁ ଯେ ଆମ୍ଭମାନଙ୍କ ବସିବାରୀତିରୁ ଯୂତା ତ୍ୟାଗକରିବା ନିତାନ୍ତ ଆବଶ୍ୟକ ହୁଏ । ଯୂତାସହିତ ଆମ୍ଭେମାନେ କିପରି ବିଛଣା ଉପରେ ବସିବୁଁ ? ଦେଶୀଲୋକମାନଙ୍କର ଚର୍ମପାଦୁକା ଯଦି ଆମ୍ଭମାନଙ୍କ ରାଜପୁରୁଷମାନଙ୍କୁ ବିରକ୍ତି କରୁଥିବ ତେବେ ଦରବାରରେ ଦେଶୀ ଲୋକମାନଙ୍କର ବସିବା କାରଣ ଦେଶୀ ବିଛଣା କରନ୍ତୁ । ତାହାହେଲେ ଆସୀନ ବ୍ୟକ୍ତି ସମୂହ ସ୍ୱେଚ୍ଛାରେ ଯୂତା ତ୍ୟାଗ କରିବେ, ଏବିଷୟରେ କାହାର ଉପଦେଶ ଦେବା ଆବଶ୍ୟକ ହେବନାହିଁ । ଆମ୍ଭର ଚୌକିରେ ଦରକାର ନାହିଁ । କୌଣସି ଏକ ପ୍ରକାରର ରୀତି ପ୍ରଚଳ କରିବା ଉଚିତ, ବର୍ତ୍ତମାନର ଅଧେ ଦେଶୀ ଅଧେ ବିଲାତି ରୀତିରେ ଦେଶୀଲୋକମାନଙ୍କର ଅନେକ ଅପମାନ ହେଉଅଛି ।

ରଞ୍ଜିତସିଂହଙ୍କ ପୁତ୍ର ଦୁଲପସିଂହ ବର୍ତ୍ତମାନ ବିଲାତରେ ଅଛନ୍ତି । ଆମ୍ଭେ ଶୁଣିଅଛୁଁ ମହାରାଣୀଙ୍କ ନିକଟକୁ ଗଲେ ମଧ୍ୟ ଯୂତା ଓ ପଗଡ଼ି ନେଇ ଯାଆନ୍ତି । ତେବେ ମହାରାଣୀଙ୍କ ପ୍ରତିନିଧିମାନେ କି ନିମନ୍ତେ ଦେଶୀ ଗୋଡ଼ରେ ଯୂତା ଦେଖିପାରନ୍ତି ନାହିଁ କିଛି ବୁଝା ଯାଉନାହିଁ । କୌଣସି ଅତ୍ୟାଚାରୀ ଜାତି ଆମ୍ଭମାନଙ୍କ ରାଜା ଥିଲେ ଆମ୍ଭ ମନେ ଏ ବିଷୟରେ ଏତେ ଖେଦ ଜାତ ହୁଅନ୍ତାନାହିଁ ମାତ୍ର ଇଂରେଜ-ମାନଙ୍କ ପରି ଏପରି ଗୌରବଶାଳୀ ଓ ଦୟାବାନ ରାଜାଙ୍କ ଶାସନରେ ଥାଇ ଯେ

ଏପରି ଅପମାନ ପାଉଅଛନ୍ତି ଏହା ଅତି ଦୁଃଖର ବିଷୟ । ଆମ୍ଭେମାନେ ଭରସା କରୁଁ ଯେ ରାଜପୁରୁଷମାନେ ଏବିଷୟ ବିବେଚନା କରି ଭବିଷ୍ୟତ ଦରବାରମାନଙ୍କରେ ପାଦୁକା ତ୍ୟାଗ କରିବାର କୁପ୍ରଥା ଉଠାଇ ଦେବେ ।

୩୯ । ସପ୍ତାହର ସମ୍ବାଦ

ଚାଉଳ ଆମଦାନୀ ।—ଧାମରାକୁ ଦେଢ଼ଲକ୍ଷ ମହଣ ଓ ମାଛଗାଁକୁ ପଚିଶହଜାର ମହଣ ଚାଉଳ କଲିକତାରୁ ଜାହାଜଦ୍ୱାରା ଆଣି ପହଞ୍ଚାଇବା ସକାଶେ ଇସ୍ତାହାର ଦିଆଯାଇଅଛି । କେହି ଇଚ୍ଛାକଲେ ବୋର୍ଡ ରେଭେନ୍ୟୁ ସେକ୍ରେଟରି ସାହେବଙ୍କଠାରେ ଚଳିତ ଜାନୁଆରିମାସ ତା ୧୫ ମଧ୍ୟରେ କିମ୍ବା ସେଥିପୂର୍ବେ ଦରଖାସ୍ତ କରି ପାରିବେ । ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ବାଲେଶ୍ୱରର କେତେକ ମହାଜନ ଦରଖାସ୍ତ କରିଅଛନ୍ତି ।

୪୦ । ଚାଉଳଦର—ଓଡ଼ିଶା ପ୍ରଦେଶରେ ଚଳିତ ସପ୍ତାହରେ ଚାଉଳ ଏକ ଟଙ୍କାକୁ ଯେତେସେର କଟକୀ ଓଜନରେ ବିକ୍ରୟ ହୋଇଅଛି ତାହା ତଳେ ପ୍ରକାଶ କରୁଅଛୁଁ ।

କଟକ—ମୋଟ ଚାଉଳ ସେ ୧୦ ବାଲେଶ୍ୱର ସେ ୧୬
ପୁରୀ ଓଜନ ସେ ୧୧ ଜଲେଶ୍ୱର ସେ ୨୪
ସରୁ ସେ ୧୦ ସୋରୋ ଭଦ୍ରଖ ଓ ଧାମନଗର ସେ ୧୩

(ଉତ୍କଳ ଦୀପିକା, ସନ ୧୨।୧।୧୮୬୭, ସଂଖ୍ୟା ୨)

୪୧ । ଚାଉଳର ଦର—ଆମ୍ଭେମାନେ ପୂର୍ବ ଏକ ପତ୍ରିକାରେ ଚାଉଳର ଦର ବିଷୟରେ ଆମ୍ଭମାନଙ୍କ ଅଭିପ୍ରାୟ ବ୍ୟକ୍ତ କରିଥିଲୁଁ । ତଦନୁସାର ଦେଖାଯାଉଅଛି କୌଣସିକ୍ରମେ ବଜାର ସୁସାର ହେଉନାହିଁ । ଆଜି କାଲି ଧାନ ଚାଉଳ ସକାଶେ ସମସ୍ତେ ଉତ୍କଣ୍ଠିତ ଅଛନ୍ତି । ଏଥିରେ ପୌଷମାସରେ ଏରୂପ ଦର ବିବେଚନାରେ ଯାହାର ଯେ ପର୍ଯ୍ୟନ୍ତ ସଙ୍ଗତି ସେ ସବାଠାରୁ ଅଧିକ ଚାଉଳ ସଞ୍ଚୟ କରିବାର ଚେଷ୍ଟା କରୁଅଛି । ଏଥିରେ ବେପାରିମାନେ ମୂଲ୍ୟ ଉଚ୍ଚ ରଖିବାର ଅଧିକ ସୁଯୋଗ ପାଇ ଅଛନ୍ତି । ଏସମସ୍ତ ଛଡ଼ା ଆମ୍ଭେମାନେ ଦର ଊଣା ନହେବାର ଆଉ ଏକ କାରଣ ଅବଗତ ହୋଇଅଛୁଁ । ତାହା ଏହି ଯେ ସରକାରୀ ଚାଉଳ ଏବର୍ଷ ଏଜିଲାକୁ ଆସି କଲିକତା ଓଜନ ମହଣ ଟଙ୍କା ତିନିରେ ବିକ୍ରି ହେବାର ଏଥୁ ସମସ୍ତ ଲୋକ ଜାଣି ପାରିବାରୁ ସେମାନେ କହୁଅଛନ୍ତି ଯେ ଯେବେ ସରକାର ଶସ୍ତାରେ ନଦେବେ ତେବେ ଆମ୍ଭେମାନେ କି ସକାଶେ ଅଳ୍ପ ମୂଲ୍ୟରେ

ବିକ୍ରି କରିବୁ । ଏହା ସ୍ଥିରକରି ସମସ୍ତ ବେପାରି କିଂବା ତାଙ୍କର ଉପଦେଶଦାତା ଦଣ୍ଡିଧାରମାନେ ସେ ସଂଗ୍ରହର ଭାଉ ଅଧିକ କରୁନାହାନ୍ତି । ଆମ୍ଭମାନଙ୍କୁ ବୋଧ ହେଉ ଅଛି ଯେ ଏକାରଣ ଅନେକାଂଶରେ ସତ୍ୟ ହୋଇ ପାରେ । ଯେତେବେଳେ ଖରିଦଦାର ଅଧିକ ଅଛନ୍ତି ଓ ସରକାରର ମନସ୍ଥ ଜଣାଗଲା ଯେ ଅନ୍ୟସ୍ଥଳ କେହି ଚାଉଳ ଅଣାଇଲେ ସେ ସଂଗ୍ରହ ଅଧିକ ଦେଇ ପାରିବ ନାହିଁ ଅଥବା ଦେଲେ ତାହାର ଲାଭ ହେବ ନାହିଁ ସେତେବେଳେ ଦେଶୀୟ ବେପାରୀମାନେ ଉକ୍ତ ଭାଉ ନିରନ୍ତରେ ସ୍ଥିର ରଖି ପାରନ୍ତି । ଇଦାନିଂ ଏଠା ଲୋକମାନେ ପୂର୍ବାପେକ୍ଷା ଅନେକ ସତର୍କ ଓ ବାଣିଜ୍ୟ ବ୍ୟବସାୟରେ ବ୍ୟୁତ୍ପତ୍ତି ଲାଭ କରିଅଛନ୍ତି । ଅତଏବ ଉପର ଲେଖିତ ବିଷୟ ଭାଉ ନ୍ୟୂନ ନହେବାର ଏକ ପ୍ରବଳ କାରଣ ସମ୍ଭବ ହେଉଅଛି । ବର୍ତ୍ତମାନରେ ରାଜପୁରୁଷମାନଙ୍କର ଆବଶ୍ୟକ ଯେ ଏବିଷୟ ଆଲୋଚନା କରନ୍ତୁ ଓ ଯଦ୍ୟପି ସେମାନଙ୍କ ଉକ୍ତସ୍ଥ ବୁଦ୍ଧିରେ ଏକଥା ଅସଙ୍ଗତ ବୋଧ ନହୁଅଇ ତେବେ ସରକାରୀ ଚାଉଳ କିଛି ଊଣ ଦରରେ ବିକ୍ରିକରିବାର ବନ୍ଦୋବସ୍ତ କରନ୍ତୁ । ପୂର୍ବ ବର୍ଷମାନଙ୍କରେ ଏହାଠାରୁ ବଳବତ୍ତର ଧୋଇମାନ ହୋଇଅଛି । ମାତ୍ର ଏତାଦୃଶ ଚଢ଼ା ଭାଉରେ ଖାଦ୍ୟସାମଗ୍ରି କେବେ ବିକ୍ରିହୋଇ ନଥିଲା ଓ ଏବର୍ଷ ଧୋଇରେ ଯେ ସର୍ବାପେକ୍ଷା ଅଧିକ ମୂଲ୍ୟ ଶସ୍ୟ ବିକ୍ରିହେଲା ଏଥିରୁ ଅବଶ୍ୟ ଅନ୍ୟ କାରଣ ଥିବ । ରାଜପୁରୁଷମାନଙ୍କୁ ତାହା ଅନୁସନ୍ଧାନ କରିବାର ଉଚିତ । ସରକାର ତରଫରୁ କିଞ୍ଚିତ୍ ଊଣା ଭାଉରେ ବିକ୍ରିହେଲେ ଅନେକ ଲୋକ ସମ୍ଭବ କରୁଅଛନ୍ତି ଯେ ବଜାର ଶସ୍ତାହେବ । ଯଦ୍ୟପି କି ଆମ୍ଭେମାନେ ଜାଣୁ ଯେ ସରକାର ତରଫରୁ କମ ନିରଖ ହେଲେ ସାଧାରଣ ସମୟରେ ସେଥିରୁ ଅନିଷ୍ଟ ଜାତ ହୁଅଇ ମାତ୍ର ଏବର୍ଷର ବିଶେଷ ଅବସ୍ଥା ଦୃଷ୍ଟିରେ ଅନ୍ୟ ପ୍ରକାର କର୍ମ କଲେ ବୋଧହୁଅଇ ପ୍ରାୟ ମଙ୍ଗଳ ହୋଇ ପାରିବ ।

## ୪୨ ଦୁର୍ଭିକ୍ଷ ଅନୁସନ୍ଧାନ କମିଶନ

ଆମ୍ଭେମାନେ ଅବଗତ ହେଲୁଁ ଯେ କମିଶ୍ନରମାନେ ଦୁଇ ଏକ ଦିନରେ ନିଶ୍ଚୟ ଏସ୍ଥାନରୁ କଲିକତାକୁ ଗମନ କରିବେ । ମାତ୍ର ଯେ କର୍ମ ସକାଶେ ଏମାନେ ଏଠାକୁ ଆସିଥିଲେ ତାହା କେତେଦୂର ସଫଳ କଲେ ତାହା ଆମ୍ଭେମାନେ ଜାଣିପାରିଲୁ ନାହିଁ । କାରଣ ଏମାନଙ୍କର କାର୍ଯ୍ୟର ବୃତ୍ତାନ୍ତ ସାଧାରଣଙ୍କର କର୍ଣ୍ଣଗୋଚର ହେଲାନାହିଁ । ଏମାନେ ଏଠାକୁ ଆସିଲା ଦିନୁ ଦୋମହଲା କୋଠାଘରେ ସ୍ଥାନଯୁକ୍ତ ଥାଇ କମ୍ମା ଅମଲ୍ ଓ ଗୋରଙ୍କ ଠାରୁ ଦୁର୍ଭିକ୍ଷର ଫଳାଫଳର ଅନୁସନ୍ଧାନ କରୁଅଛନ୍ତି ଓ ଯଦ୍ୟପି କି କେତେକ ସମ୍ଭ୍ରାନ୍ତ ସ୍ୱାଧୀନ ବ୍ୟକ୍ତିଙ୍କ ଗୋବାନବନ୍ଦ ନେଇଅଛନ୍ତି ଓ ସେମାନେ ନିର୍ଭୟରୂପେ ସତ୍ୟ କହିଥିବାର ଆମ୍ଭମାନଙ୍କର ବିଶ୍ୱାସ ହେଉଅଛି ମାତ୍ର ତାଙ୍କ ସଂଖ୍ୟା

ଅଲଥିବାଲ ଅଧିକ ଲୋକଙ୍କ କଥାର ଅନୁଗାମୀ ହେବେ ଏରୂପ ଆଶଙ୍କା ହେଉଅଛି । କମିଶ୍ନରମାନଙ୍କୁ ମଫସଲ ଗାଇ କଷ୍ଟଦନ ସ୍ୱଚକ୍ଷୁରେ ଓଡ଼ିଶାର ଦୁର୍ଦ୍ଦଶା ଦେଖିବାର ଆବଶ୍ୟକ ଥିଲ । ତାହାକଲେ ପ୍ରକୃତ କଥାମାନ ସେମାନଙ୍କର ଯେରୂପ ହୃଦୟଙ୍ଗମ ହୁଅନ୍ତା ଶତ ଶତ ଲୋକଙ୍କଠାରୁ ଶ୍ରବଣ କଲେ ମଧ୍ୟ ସେରୂପ ହେବନାହିଁ । କେବଳ ସାହାଯ୍ୟ ସଂକ୍ରାନ୍ତ କେତେକ ବ୍ୟକ୍ତିଙ୍କ ମୁଖରୁ ସମସ୍ତ ବିଷୟ ଅବଗତ ହେବାର ଆଶା ଏଠାକୁ ନଥାଏ ମଧ୍ୟ ରିପୋର୍ଟ ଦ୍ୱାରା ପୂର୍ଣ୍ଣ ହୋଇପାରନ୍ତା । ଆମ୍ଭେମାନେ ଭରସା କରୁଁ ଯେ କମିଶ୍ନରମାନେ ଯେରୂପ ପରିଶ୍ରମ ଓ ଯତ୍ନ ପୂର୍ବକ ଏଠାରେ କର୍ମ କରୁଅଛନ୍ତି ସେରୂପ ମଧ୍ୟ କଷ୍ଟ ଅଙ୍ଗୀକାର ପରିଶ୍ରମ ସ୍ୱୀକାର ପୂର୍ବକ ମଫସଲର ଅବସ୍ଥା ସ୍ୱଚକ୍ଷୁରେ ଦର୍ଶନ କରନ୍ତୁ । ତାହାହେଲେ ପ୍ରଜାଗଣେ ଉତ୍ତମରୂପେ ଜାଣିପାରିବେ ଯେ ଶ୍ରୀ ଶ୍ରୀମତୀ ମହାରାଣୀ ତାହାଙ୍କ ଦୁଃଖ ଜାଣିବା ଓ ସେଥିର ନିବାରଣୋପାୟ କରିବା ଲଗି କି ପର୍ଯ୍ୟନ୍ତ ସମୁତ୍ସୁକ ଅଛନ୍ତି ଓ ତଦ୍ଦ୍ୱାରା ରାଜଭକ୍ତିର ଭାବମାନ ଦୃଢ଼ତରରୂପେ ସେମାନଙ୍କ ଚିତ୍ତରେ ସ୍ଥାନ ପାଇବ ।

କମିଶ୍ନରମାନଙ୍କଠାରେ ଆମ୍ଭମାନଙ୍କର ଆଉ ଏକ ପ୍ରାର୍ଥନା ଅଛି ଯେ ସର୍ବସାଧାରଣଙ୍କ ଜ୍ଞାତବ୍ୟ କାରଣ ତାହାଙ୍କ ଦ୍ୱାରା ଲେଖା ହୋଇଥିବା ଜୋବାନବନ୍ଦୀର ଖୋଲସା ପ୍ରସ୍ତୁତ କରନ୍ତୁ ଯେଉଁରୂପେ କି ରିପୋର୍ଟ ପୂର୍ବରେ ତାହାର ଯେ ଆପତ୍ତି ଥିବ ସେ ସମସ୍ତ ବ୍ୟକ୍ତ ହୋଇଥିବ । ଆମ୍ଭେମାନେ ଶୁଣୁଅଛୁଁ ଯେ ବଙ୍ଗଳା ଦୁର୍ଭିକ୍ଷ ଅନୁସନ୍ଧାନ କମିଶ୍ନରମାନେ ଏହି ପ୍ରକାର କରିଥିଲେ ଅତଏବ ଏମାନଙ୍କର ଏରୂପ କରିବା ପକ୍ଷରେ କିଛି ବାଧା ହୋଇ ନପାରେ ।

୪୩ । ଅରକ୍ଷ ବାଳକ ବାଳକାମାନଙ୍କ ଭବିଷ୍ୟଦବସ୍ଥା ।

ଦୁର୍ଭିକ୍ଷ ହେତୁରୁ ଯେ କେତେ ବାଳକ ବାଳକା ଅରକ୍ଷ ହୋଇଅଛନ୍ତି ତାହା କାହାର ଅବିଦିତ ନାହିଁ । ଅନୁସନ୍ଧାନ କମିଶ୍ନରମାନେ ଏମାନଙ୍କ ସଂଖ୍ୟା ୮୦୦୦ ନିଶ୍ଚୟ କରିଥିବାର ଆମ୍ଭେମାନେ ଶ୍ରବଣ କରିଅଛୁଁ ଓ ବୋଧହୁଅଇ ତାହା ଅଧିକ ହୋଇଲ । ଏମାନଙ୍କର ରକ୍ଷଣାବେକ୍ଷଣ ସରକାରଙ୍କର ଏକ ମହତ୍ କାର୍ଯ୍ୟ ହେଉଅଛି । ଦୁର୍ଭିକ୍ଷପୀଡ଼ିତଙ୍କ ସାହାଯ୍ୟ କିଛିବ ବୁଝିଲେ ଅନେକ ଦିନ ହେବାର ଆବଶ୍ୟକ ହେବ ନାହିଁ ମାତ୍ର ଅନାଥ ବାଳକ ବାଳିକାମାନଙ୍କ କଥା ସେପରି ନୁହଇ । ଏମାନଙ୍କୁ କର୍ମୋପଯୋଗୀ ହେବା ପର୍ଯ୍ୟନ୍ତ ଭରଣପୋଷଣ ଓ ଶିକ୍ଷାଦାନ କରିବାକୁ ହେବ । ଏବିଷୟରେ କମିଶ୍ନରମାନେ ଗବର୍ଣ୍ଣମେଣ୍ଟଙ୍କୁ କି ଉପାୟ ଅବଲମ୍ବନ କରିବାକୁ ଉପଦେଶ ଦେବେ ତାହା ବର୍ତ୍ତମାନ ଜଣାଯାଇ ନପାରେ ମାତ୍ର ଆମ୍ଭମାନଙ୍କର ବକ୍ତବ୍ୟ ଏହି ଯେ

ଦେଶର ରୀତି ଓ ବ୍ୟବହାର ଦୃଷ୍ଟିରେ ସେମାନେ ଏପରି ବନ୍ଦୋବସ୍ତ କରିବା ସକାଶେ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିବେ କି ଯହିଁରେ ଅସ୍ଥ ଲୋକମାନଙ୍କ ମନରେ କୌଣସି ସଂଶୟ ନ ଜନ୍ମେ ।

ବର୍ତ୍ତମାନ ସେପରିପ ଏକାର୍ଯ୍ୟ ନିର୍ବାହ ହେଉଅଛି ତାହା ଦେଶୀୟ ଲୋକଙ୍କ ମନୋନୀତ ନୁହଇ ଓ ସେକଥା ଆମ୍ଭେମାନେ ଅନେକ ଦିନ ପୂର୍ବରୁ ସର୍ବସାଧାରଣଙ୍କୁ ଜ୍ଞାତ କରିଅଛୁଁ । ପାଦ୍ରି ସମ୍ପ୍ରଦାୟ ଏମାନଙ୍କର ରକ୍ଷଣାବେକ୍ଷଣର ଉପଯୁକ୍ତ ପାତ୍ର ନୁହନ୍ତି କାରଣ ସେ ଯେତେ ଯତ୍ନ ଓ ସତର୍କ ସହିତ ଏ ଗୁରୁତର ଭାର ନିର୍ବାହ କରନ୍ତୁ ଅସ୍ଥ ଲୋକମାନେ ମନେକରନ୍ତି ଯେ କେବଳ ଖ୍ରୀଷ୍ଟିୟାନ ଦଳବୃଦ୍ଧି କରିବାଲାଗି ସେମାନେ ଏଭାର ଗ୍ରହଣ କରି ଅଛନ୍ତି ଓ ସରକାର ମଧ୍ୟ ଉକ୍ତ ଧର୍ମ ପ୍ରତି ପକ୍ଷପାତ ଦର୍ଶାଇ ତାହାଙ୍କ ଠାରେ ପିଲମାନଙ୍କୁ ଅର୍ପଣ କରିଅଛନ୍ତି । ଯେଉଁ ପିଲମାନେ ନିତାନ୍ତ ଶିଶୁ ସେମାନଙ୍କ କଥା ବିଗ୍ରରର ଅନାବଶ୍ୟକ ମାତ୍ର ଯେଉଁମାନଙ୍କର କିଞ୍ଚିତ୍ ଜ୍ଞାନ ହୋଇଅଛି ସେମାନେ ସ୍ୱୟଂ ପାଦ୍ରି ସାହେବଙ୍କ ଦ୍ୱାରା ପ୍ରତିପାଳିତ ହେବାକୁ ଅନିଚ୍ଛା ପ୍ରକାଶ କରି ଅଛନ୍ତି । ଗତ ମାଂସ ମଧ୍ୟରେ ଗୋଟିଏ ଅରକ୍ଷ ବାଳକାଳୟ କେତେକ ଜଣ ହିନ୍ଦୁଙ୍କ ତତ୍ତ୍ୱାବଧାନରେ ଅଛି ମାତ୍ର ସେଥିରୁ ଅଳ୍ପ ଦିନ ହେଲା କେତେକ ବାଳକଙ୍କୁ ପାଦ୍ରି ସାହେବଙ୍କୁ ଅର୍ପଣ କରିବାର କଥା ହେବାରୁ କେତୋଟି ବାଳକ ରକ୍ଷା ସ୍ଥାନରୁ ପଳାୟନ କଲେ ଓ କି ଅଭିପ୍ରାୟରେ ଯେ ପିଲମାନଙ୍କୁ ସ୍ଥାନାନ୍ତର କରାଗଲା ତହିଁର କିଛି କାରଣ ପ୍ରକାଶ ହେଲାନାହିଁ । ଫଳତଃ ଯଦ୍ୟପି ସରକାରରୁ ସେମାନଙ୍କର ଭରଣପୋଷଣର ସମଗ୍ର ଖର୍ଚ୍ଚ ଦେବାକୁ ହେଲା ତେବେ ସେମାନଙ୍କୁ ସ୍ୱତନ୍ତ୍ର କାର୍ଯ୍ୟକାରିଙ୍କ ଅଧିକାରରେ ସ୍ୱତନ୍ତ୍ର ସ୍ଥାନରେ ରଖିଲେ କି ଅନିଷ୍ଟ ହେବ ତାହା ଜଣା ଯାଉନାହିଁ । ବୋଧ ହୁଅଇ ସ୍ଥାନୀୟ ହାକିମମାନେ ଆପଣା ୨ ଝୁଙ୍କିରୁ ମୁକ୍ତ ପାଇବା ଆଶାରେ ପାଦ୍ରିଙ୍କ ଜିମା କରି ଦେଇ ନିଶ୍ଚିନ୍ତ ହେଉଅଛନ୍ତି । ନତୁବା ତାହାଙ୍କୁ ଏଭାର ଅର୍ପଣ କରି ଅକାରଣରେ କି ସକାଶେ ସରକାର ଉଲଦେଇ ଜାତି ନେବା ଦୋଷରେ କଳଙ୍କିତ ହେଉଅଛନ୍ତି । ଲୋକମାନେ ଇଚ୍ଛାପୂର୍ବକ ଖ୍ରୀଷ୍ଟଧର୍ମାବଲମ୍ବନ କଲେ ଅବଶ୍ୟ ସେଥିରେ ଉକ୍ତ ଧର୍ମର ମର୍ଯ୍ୟାଦା ବଢିବ ମାତ୍ର ଆମ୍ଭେମାନେ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରୁଅଛୁଁ ଯେ ଖ୍ରୀଷ୍ଟଧର୍ମର ଗୌରବ କାରଣ ଏବଂ ସରକାରର ସକଳ ଧର୍ମପ୍ରତି ସମଦୃଷ୍ଟି ଭାବ ରକ୍ଷା କାରଣ ଅରକ୍ଷ ପିଲମାନଙ୍କୁ ପାଦ୍ରିଙ୍କ ହସ୍ତରେ ସମର୍ପଣ ନ କରନ୍ତୁ ।

ଏହିରୂପେ ସ୍ୱତନ୍ତ୍ରରୂପେ ଅଥବା ସରକାରର ନିତାନ୍ତ ଅଭିମତ ହେଲେ ପାଦ୍ରିଙ୍କ ହସ୍ତରେ ପିଲମାନଙ୍କୁ ରଖାଗଲେ ଆମ୍ଭେମାନେ ପ୍ରସ୍ତାବ କରୁଁ ଯେ ତାହାଙ୍କ

ଶିକ୍ଷା ନିମନ୍ତେ ଗୋଟିଏ ଶିଳ୍ପକାର୍ଯ୍ୟ ଓ କୃଷି ଶିକ୍ଷାର ଗବର୍ଣ୍ଣମେଣ୍ଟ ବିଦ୍ୟାଳୟ ସ୍ଥାପନ କରନ୍ତୁ । ଯେ ଅରକ୍ଷିତ ପିଲାମାନେ ସରକାରଙ୍କର ସାହାଯ୍ୟରେ ଅଛନ୍ତି ସେମାନେ କେହି ଲେଖାପଢ଼ା କର୍ମ କରନ୍ତି ନାହିଁ । ନାନାପ୍ରକାର ଦୁଃଖକରି ଉଦର ପୋଷଣ କରନ୍ତି । ବିଶେଷରେ ଶିଳ୍ପ କର୍ମର ଚର୍ଚ୍ଚା ଏଦେଶରେ ଅତି ବିରଳ ଓ ସେହି ହେତୁରୁ ଏଦେଶର ବିଶେଷ ଉନ୍ନତି ହେଉନାହିଁ । ଅନ୍ୟ ସମୟରେ ସରକାର ବ୍ୟୟ ଭୟରେ ହୁଏତ ଏ କର୍ମରେ ମନୋଯୋଗି ହୁଅନ୍ତେ ନାହିଁ ମାତ୍ର ଏଥର ସରକାରଙ୍କ ସେ ଓଜର ନାହିଁ । ପିଲାମାନଙ୍କୁ ଅବଶ୍ୟ ପାଳିବାକୁ ହେବ ଓ ସେମାନଙ୍କୁ ଭବିଷ୍ୟତରେ ପ୍ରତିପାଳନର ଉପାୟ ନକଲେ ସରକାର ଦୋଷି ହେବେ ଅତଏବ ସର୍ବମତରେ ଆବଶ୍ୟକ ହେଉଅଛି ଯେ କୃଷି ଓ ଶିଳ୍ପ କର୍ମ ଶିକ୍ଷା ନିମନ୍ତେ ଗୋଟିଏ ସ୍କୁଲ ସ୍ଥାପନ ପୂର୍ବକ ସରକାର ଏମାନଙ୍କ ଭବିଷ୍ୟତର ଉପାୟ ଓ ତଦ୍ଦ୍ୱାରା ଏଦେଶର ଏକ ଗୁରୁତର ଅଭାବ ମୋଚନ କରିବାକୁ ଚେଷ୍ଟା କରନ୍ତୁ ।

ବର୍ତ୍ତମାନ କୌଣସି ପାଦ୍ରି ସାହେବଙ୍କ ଲେଖିବା ଅନୁସାରେ ବେଶ୍ୟାମାନେ ଦୁର୍ଭିକ୍ଷରେ କେତେ ବାଳିକା ପ୍ରାପ୍ତ ହୋଇଅଛନ୍ତି । ଏଥିର ଅନୁସନ୍ଧାନ ହେବାର ଏଠାର ସାମାନ୍ୟ ଲୋକମାନେ ଜ୍ଞାନ କରୁଅଛନ୍ତି ଯେ ପାଦ୍ରି ସାହେବ କେତେଗୁଡ଼ିଏ ବାଳିକା ପାଇ ତାହାଙ୍କ ବିବାହ ନିମନ୍ତେ କନ୍ୟା ଆବଶ୍ୟକ ହେବାରୁ ଏରୂପ କରୁଅଛନ୍ତି । ପାଦ୍ରି ସମ୍ପ୍ରଦାୟଙ୍କ ଦ୍ୱାରା ଯେ ହିନ୍ଦୁସ୍ଥାନର କେତେ ମଙ୍ଗଳ ସାଧନ ହୋଇଅଛି ତାହା ଏଦେଶସ୍ଥ ଅନେକ ଲୋକଙ୍କୁ ଜଣାନାହିଁ ଓ ବର୍ତ୍ତମାନ ଅନୁସନ୍ଧାନ କରାଇବା ଓ ଏପ୍ରକାର ବାଳିକାଙ୍କୁ ରକ୍ଷା କରିବାର ଚେଷ୍ଟାରୁ ଯେ ପାଦ୍ରିଙ୍କର ଧର୍ମ ପ୍ରବୃତ୍ତିର ବିଲକ୍ଷଣ ପରିଚୟ ପ୍ରାପ୍ତ ହେଉଅଛି ପ୍ରଶଂସା ନକରି ସେମାନଙ୍କ ସଦଭିପ୍ରାୟ ପ୍ରତି ଅସଙ୍ଗତ ଅର୍ଥ ପ୍ରୟୋଗ କରୁଅଛନ୍ତି । ଯେ ଯାହାହେଉ ବେଶ୍ୟାମାନଙ୍କ ହସ୍ତଗତ ଅନେକ ନିର୍ଦ୍ଦୋଷ ବାଳିକା ପତିତ ହୋଇଅଛନ୍ତି ଓ ସେମାନଙ୍କୁ ଉଦ୍ଧାର କରିବା ସର୍ବତୋଭାବରେ ଉଚିତ ମାତ୍ର ସରକାର ଆଇନାନୁସାରେ କି ପର୍ଯ୍ୟନ୍ତ କର୍ମ କରିପାରନ୍ତି ତାହା ପୂର୍ବରୁ କହିବାର ଆବଶ୍ୟକ ନାହିଁ । ମେଜେଷ୍ଟର ସାହେବଙ୍କର ବିଚାର ହେଲେ ବ୍ୟକ୍ତ କରିବୁଁ । ଏସ୍ଥଳେ କେବଳ ଏହି ବକ୍ତବ୍ୟ ଯେ ଦୁର୍ଭିକ୍ଷ ସମୟରେ ବେଶ୍ୟାମାନେ ବାଳିକା ଗ୍ରହଣକରି ସାଧାରଣର ଉପକାର କରୁଅଛନ୍ତି । ସେ ସମୟରେ ସରକାରଙ୍କ କିଛିମାତ୍ର ସାହାଯ୍ୟ ନ ହୋଇଥିଲା ଅଥବା କେବଳ ନାମମାତ୍ର ଥିଲା ଓ ଯେତେବେଳେ ପ୍ରାଣଧାରଣର ଅନ୍ୟ କୌଣସି ଉପାୟ ନଥିଲା ସେତେବେଳେ ବେଶ୍ୟାମାନେ ଅନ୍ଧିଚର୍ମ ବିଶିଷ୍ଟ ବାଳିକାମାନଙ୍କୁ ପ୍ରତିପାଳନ ସକାଶେ ଗ୍ରହଣ କରିଅଛନ୍ତି । ସେତେବେଳେ ସେମାନେ ଯଦ୍ୟପି ଉକ୍ତ ବାଳିକାଙ୍କୁ ସୁଖରେ ରଖିବାର ମାତବର ଦର୍ଶାଇ ନଥାନ୍ତେ ତେବେ ତାହାଙ୍କ ଜୀବନରକ୍ଷା ପ୍ରତିପାଳନ

କମିଶ ଉଚିତ ମୂଲ୍ୟ ଦେଇ ସରକାର ସେ ବାଳିକାମାନଙ୍କୁ ଉଦ୍ଧାର କରିବାକୁ ଚେଷ୍ଟା କରନ୍ତୁ ।

## (୨ୟଭାଗ, (ଅତିରିକ୍ତ) ୧୨।୧।୧୮୬୭ ମସିହା ସଂଖ୍ୟା ୨)

### ୪୪ । ବିଗତ ବର୍ଷର ପର୍ଯ୍ୟାଲୋଚନା ।

× × × ×

ଅନ୍ୟାନ୍ୟ ବର୍ଷାପେକ୍ଷା ଗତବର୍ଷ ଅନେକକାଳ ସ୍ମରଣୀୟ ହୋଇ ସନ୍ଦେହ ନାହିଁ । ବର୍ଷାରମ୍ଭ ପୂର୍ବରୁ ଦାରୁଣ ଦୁର୍ଭିକ୍ଷ ଏଦେଶକୁ କ୍ରମଶଃ ଆକ୍ରମଣ କରି ବର୍ଷର ଶେଷ ପର୍ଯ୍ୟନ୍ତ ଯେ ଅସହ୍ୟ ଉତ୍ପାତମାନ ଜାତ କଲା ତାହା ଚିନ୍ତା ମାତ୍ରକେ ଶରୀର ଶୋଣିତଶୂନ୍ୟ ହେଉଅଛି । ଏପରି ସମୟ ଅନେକ କାଳରୁ ପୁରାତନ ଲୋକମାନେ ସୁଦ୍ଧା ଦେଖି ନଥିଲେ । ଏଦୁର୍ଘଟଣା ଆପାତତଃ ଯଦ୍ୟପି କି ଆମ୍ଭମାନଙ୍କୁ ଅତ୍ୟନ୍ତ କ୍ଳେଶ ଦେବାର ବୋଧ ହେଉଅଛି ମାତ୍ର ଏଥିରୁ ଆମ୍ଭର ଭବିଷ୍ୟତ ଅବସ୍ଥା ଉତ୍କୃଷ୍ଟ ହେବାର ଅନେକ ସୂଚକ ଦେଖାଯାଏ । ଓଡ଼ିଶା ଭୂମି ଇଂରାଜ ରାଜଧାନୀର ଗୋଟିଏ କ୍ରୀତ-ଦାସୀ ପରି ଥିଲା । ଏହା ରାଜି ପ୍ରଭୁଙ୍କର ଆଜ୍ଞାବଦ୍ଧ ହୋଇ ଯଥାସାଧ୍ୟ ଆପଣା ନିୟମିତ କାର୍ଯ୍ୟସ୍ୱରୂପ ବାର୍ଷିକ କର ରାଜକୋଷକୁ ପଠାଉଥିଲା ମାତ୍ର ରାଜପୁରୁଷମାନେ ତାହା ପ୍ରତି କଦାପି ମାତ୍ର ମନୋଯୋଗ କରୁ ନଥିଲେ । ଦେଶର ପ୍ରଧାନ କର୍ମଗୁରୁମାନେ ଏସ୍ଥାନକୁ ଏରୂପ ହେୟ ଜ୍ଞାନ କରୁଥିଲେଯେ କଦାଚ ଏଠାର ଅବସ୍ଥା ପ୍ରତ୍ୟକ୍ଷ ଦର୍ଶନ ସକାଶେ ମନସ୍ଥ କରି ନ ଥିଲେ । ମାତ୍ର ଏବର୍ଷ ତଦ୍‌ବିପରୀତ ଘଟିଅଛି । ଗତବର୍ଷର ଆରମ୍ଭ କାଳରେ ଶ୍ରୀଯୁକ୍ତ ଲେଫଟେନେଣ୍ଟ ଗବର୍ଣ୍ଣର ଏଦେଶରେ ପ୍ରବେଶହୋଇ ତିନି ଚାରି ଦିନ ପ୍ରଜାଙ୍କ ମନରେ ରାଜଭକ୍ତି ଉଦ୍ଦୀପନ କରିଥିଲେ ଓ ଯଦ୍ୟପି କି କୌଣସିରୂପେ ପ୍ରତାରିତ ହୋଇ ଦୁର୍ଭିକ୍ଷ ନିବାରଣର କଦାପି ମାତ୍ର ସେ ସମୟରେ ସ୍ଥିର ନକଲେ ତଥାଚ ଆମ୍ଭମାନଙ୍କର ଅବସ୍ଥା ଦେଖିଗଲେ ବୋଲି ବିଶ୍ୱାସ ଥିଲା ଯେ ଆମ୍ଭମାନଙ୍କର ମଙ୍ଗଳ କାରଣ କିଛି ମହତ୍ କାର୍ଯ୍ୟର ଅନୁଷ୍ଠାନ କରନ୍ତେ । କ୍ରମେ ଦୁର୍ଭିକ୍ଷାଗ୍ନି ବିଶେଷ ଉତ୍ତେଜିତ ହେବାରୁ ତହିଁର ଧୂମରାଶି ଉତ୍ଥିତହୋଇ ବିଲାତରେ ଲୋକଙ୍କ ନୟନଗୋଚର ହେଲାରୁ ସମସ୍ତେ ଓଡ଼ିଶାର କଥା ଚିନ୍ତା କଲେ ଓ ତଦ୍ଦ୍ୱାରା ଯେ ଲାଭ ହେବାର ଆଶା ଅଛି ତାହା ଅବିଳମ୍ବରେ କମିଶନରମାନଙ୍କ ରିପୋର୍ଟରୁ ପ୍ରକାଶ ପାଇବ । ଫଳତଃ ଯେଉଁପ ଗବର୍ଣ୍ଣମେଣ୍ଟ ଆମ୍ଭମାନଙ୍କୁ ବହୁ କାଳରୁ ଅବହେଳା କରି ଆସୁଥିଲେ ତାହା କଳଙ୍କର ସଂହିତ ବର୍ତ୍ତମାନ ପରିଶୋଧ କରୁଅଛନ୍ତି । ଫଳତଃ

ସନ ୧୮୬୭ ମସିହା ଓଡ଼ିଶାର ଇତିହାସରେ ଏକ ପ୍ରଧାନ ବର୍ଷ । କେବଳ ଦୁର୍ଭିକ୍ଷ-
ହେତୁ ଏରୂପ ହୋଇଅଛି ଏମନ୍ତ ନୁହଇ କାରଣ ଯେରୂପ ଭୟାନକ ଦୁର୍ଭିକ୍ଷ ପଡ଼ିଅଛି
ସେହିରୂପ ମଧ୍ୟ ଭାବି ଦୁର୍ଭିକ୍ଷ ନିବାରଣର ଏକ ବଳବତ୍ ଉପାୟ ଅର୍ଥାତ୍ କେନାଲରେ
ଜଳଦେବା କାରଣ ଇରିଗେସନ କୋମ୍ପାନିଙ୍କର ପ୍ରଥମ ନାଳ ଏହିବର୍ଷ ନିର୍ମାଣ ହୋଇ
ଜଳଦେବା କାରଣ ପ୍ରସ୍ତୁତ ହୋଇଅଛି । ଶିକ୍ଷାପ୍ରଣାଳୀ ପ୍ରତି ମଧ୍ୟ ଏବର୍ଷ ବିଶେଷ
ମନୋଯୋଗ ହୋଇଥିବାର ଦେଖା ଯାଇଅଛି । ଅନେକ ଦିନରୁ ଏଦେଶସ୍ଥ
ସମ୍ଭ୍ରାନ୍ତବ୍ୟକ୍ତି କେହି ଶିକ୍ଷା କାର୍ଯ୍ୟର ତତ୍ତ୍ୱାବଧାରଣ ନିମିତ୍ତ ବରଣ ହୋଇ
ନଥିଲେ । ଏବର୍ଷ ଅସ୍ମଦ୍ଦେଶୀୟ ଦୁଇଜଣ ମହତ୍ ବ୍ୟକ୍ତି ସ୍କୁଲର ମେମ୍ବର ହୋଇ ଅଛନ୍ତି ଓ
ଏଠାରେ ଗୋଟିଏ ହାଇସ୍କୁଲ ହେବାର କଥା ପ୍ରଥମେ ଉତ୍‌ଖାତ ହୁଅଇ ମାତ୍ର
ଦୁର୍ଭାଗ୍ୟ କ୍ରମେ ଅଦ୍ୟାପି ତହିଁର କିଛି ନିଶ୍ଚୟ ହୋଇନାହିଁ ।

ମାତ୍ର ଏବର୍ଷ ଯେରୂପ ଓଡ଼ିଶାର ସାମାଜିକ ଉନ୍ନତି ହୋଇଅଛି ଉଲ୍ଲେଖିତ
ରାଜସଂକ୍ରାନ୍ତ କାର୍ଯ୍ୟମାନ ତହିଁର ତୁଳନାରେ ଅତି ଅଳ୍ପ ଜ୍ଞାନ ହେବ ସନ୍ଦେହ ନାହିଁ ।
ଏସ୍ଥାନର ଲୋକମାନେ ସାଧାରଣ ହିତ ଚିନ୍ତାରେ ବିଶେଷ ମଗ୍ନ ନଥିଲେହେଁ ଅବହେଳା
କ୍ରମେ ଛପ ଯନ୍ତ୍ରାଳୟ ସ୍ଥାପନ କରିଅଛନ୍ତି ତାହା ଅଦ୍ୟାପି ସମ୍ପୂର୍ଣ୍ଣରୂପେ କାର୍ଯ୍ୟକ୍ଷମ
ନ ହୋଇ ଥିଲେ ସୁଦ୍ଧା ସେଥିର ଫଳାଫଳ ଏହିବର୍ଷ ଅନୁଭବ ହୋଇଅଛି ଯେ
ସାମ୍ବତ୍ସରିକ ଉତ୍କଳ ପଞ୍ଜିକା ଜ୍ୟୋତିଷ ଭିନ୍ନ କାହାରି ବୋଧଗମ୍ୟ ନଥିଲା ଓ ଯାହା
ଅନେକ ଅଧିକ ବ୍ୟୟ ସ୍ୱୀକାର ପୂର୍ବକ ଦୂରସ୍ଥ କଲିକତା ନଗରରୁ ଅଣାଉ ଥିଲେ
ତାହା ଏବର୍ଷ ଯନ୍ତ୍ରାଳୟ ପ୍ରସାଦରୁ ପୁସ୍ତକାକାରରେ ସମସ୍ତଙ୍କ ବୋଧଗମ୍ୟ ଓ
ଜ୍ୟୋତିଷ ବିନା ନାନା କର୍ମ ନିର୍ବାହ ହେବାଯୋଗ୍ୟ ଅବସ୍ଥାରେ ମୁଦ୍ରିତ ଓ ପ୍ରଚାରିତ
ହୋଇ ବିଶେଷ ଫଳ ଦର୍ଶାଇଅଛି ଓ ଉତ୍ତର କାଳକୁ ପ୍ରତିବର୍ଷ ଦର୍ଶାଇବ । ଉତ୍କଳ ଦେଶସ୍ଥ
ପୁରାତନ କବିମାନଙ୍କର ଚିରସ୍ମରଣୀୟ ନାମ ଆମ୍ଭମାନଙ୍କ ଅଯୋଗ୍ୟତାରୁ ଏତାବତ୍‌କାଳ
ଦେଶାନ୍ତରରେ ପ୍ରଚାର ହେବାର ଦୁସ୍ତର ଥିଲା । ଏବର୍ଷ ତାହା ଖଣ୍ଡନାଶାରେ
କେତେକ ଲୋକ ଯତ୍ନବାନ ହୋଇ ଅଛନ୍ତି ଓ ଯେରୂପ ସୃଷ୍ଟି ପୂର୍ବରେ କେବଳ
ଜଳମୟ ଥିଲା ଓ ତହିଁରୁ ସମସ୍ତ ବସ୍ତୁ ଉଦ୍ଭବ ହେଲା ସେହିରୂପ ଉତ୍କଳ ସାହିତ୍ୟର
ପୁନଃସୃଷ୍ଟି ନିମିତ୍ତ ପ୍ରଥମେ ପ୍ରେମସୁଧାନିଧିର ସଞ୍ଚାର ହୋଇଅଛି ।

ପରିଶେଷରେ ଯଦ୍ୟପି ପାଠକମାନେ ଆମ୍ଭମାନଙ୍କୁ ଅଳ୍ପ ଆତ୍ମପ୍ରଶଂସା ଦୋଷରେ
ଯୁକ୍ତକରିବେ ତେବେ ଆମ୍ଭେମାନେ ବିନୟପୂର୍ବକ ଜଣାଉ ଅଛୁଁ ଯେ ଆମ୍ଭର ଜନ୍ମ
ମଧ୍ୟ ଗତବର୍ଷ ପ୍ରାଧାନ୍ୟର ଏକ କାରଣ ଜ୍ଞାନ କରିବାକୁ ହେବ । ସାଧାରଣର
ଅଭିପ୍ରାୟ ପ୍ରକାଶକରେ ଓ ସାଧାରଣଙ୍କୁ ସମସ୍ତ କଥା ଅବଗତ କରାଏ ଏରୂପ କୌଣସି

ଉପାୟ ଏଦେଶରେ ନଥିଲା । ଏହି ବର୍ଷରେ ଏଥିର ପ୍ରଥମାନୁଷ୍ଠାନ ହୁଅଇ । ଉତ୍କଳ ଦୀପିକା ପ୍ରଥମ ଦର୍ଶନ ସମୟରେ ଏଡୁକେଶନ ଗେଜେଟ ଲେଖିଥିଲେ ଯେ ଓଡ଼ିଶାରେ ମନୁଷ୍ୟ ଅଛନ୍ତି ବୋଲି ତାଙ୍କର ଜ୍ଞାନ ନଥିଲା । ଯାହାହେଉ ଯେବେ ଏହି ମାତ୍ର ଜ୍ଞାନ ବିଦେଶୀୟ ଲୋକଙ୍କଠାରେ ଜନ୍ମାଇ ଥାଏ ତାହାହେଲେ ଉତ୍କଳ-ଦୀପିକା ଯଥାର୍ଥ ଦୀପିକାର କର୍ମ କରିଅଛି ସନ୍ଦେହ ନାହିଁ ।

## (୯ମ ଭାଗ, ୧୯।୧।୧୮୭୭, ସଂଖ୍ୟା ୩)

୪୫ । ସନ ୧୮୭୭ ମସିହାରେ ଏଦେଶରେ କେତେ ଶସ୍ୟଥିଲା ।

ଏବିଷୟରେ ଆମ୍ଭେମାନେ ଏଥିପୂର୍ବେ ଏକ ପ୍ରସ୍ତାବ ଲେଖିଥିଲୁଁ । ତାହା ପାଠକମାନେ ପାଠକରି ଅବଶ୍ୟ ଜାଣିଥିବେ ଯେ ଏଦେଶରେ ଶସ୍ୟ ଅଧିକ ନଥିଲା ଓ ଯଦ୍ୟପି କ କଅଁତ୍ ଶସ୍ୟ ଜମିଦାରଙ୍କ ହସ୍ତରେ ଥିଲା ମାତ୍ର ସେମାନେ ଧାନ୍ୟ ବ୍ୟବ-ସାୟୀ ନ ଥିବାରୁ ତଦ୍ୱାରା ସାଧାରଣ ଉପକାର ହେବାର ସମ୍ଭବ ନଥିଲା । ଦୁର୍ଭିକ୍ଷ ଅନୁ-ସନ୍ଧାନି କମିଶ୍ନରମାନେ ଏବିଷୟରେ ଲୋକଙ୍କ ମତ ଜାଣିବାକୁ ଅନେକଯତ୍ନ କରି ପ୍ରାୟ ସମସ୍ତଙ୍କୁ ଏକଥା ପ୍ରଶ୍ନ କରିଅଛନ୍ତି ଓ ଅଧିକ ଲୋକ ଦେଶରେ ଧାନ ବିଶେଷ ଥିବାର ପ୍ରାୟ ଯୋବାନବନ୍ଦିରେ ଲେଖାଇ ଅଛନ୍ତି । ଯୋବାନବନ୍ଦି ସାଧାରଣରୂପେ ପ୍ରକାଶ କରିବା କମିଶ୍ନରମାନଙ୍କ ମତ ନଥିବାରୁ ଆମ୍ଭେମାନେ ସେଥିର ବିସ୍ତାରିତ କହିପାରୁ ନାହୁଁ । ଫଳତଃ ଅଧିକ ଲୋକ ଯେ ଧାନଥିବାର ବ୍ୟକ୍ତ କରିଥିବେ ଏହା ସନ୍ଦେହର ସ୍ଥଳ ନୁହଇ । ଆମ୍ଭେ ପୁନଃ ପୁନଃ ଲେଖିଅଛୁଁ ଯେ ସହରସ୍ଥ ଅଧିକ ଲୋକ ଧାନ୍ୟାଧିକାରୀ ନୁହନ୍ତି । ଏମାନେ କିଣିଖିଆ ଲୋକଥିବାରୁ ସାଧାରଣତଃ ଜମିଦାରଙ୍କୁ ଧାନର କୁବେର ବୋଲି ଜ୍ଞାନକରନ୍ତି ଓ ଅଧିକାଂଶ ଏହି ଲୋକ-ମାନଙ୍କ ଯୋବାନବନ୍ଦି ହୋଇଅଛି । ଅତଏବ ଏମାନେ ଧାନ ଥିବାର ଲେଖାଇ ଥିବେ । ଏ ବ୍ୟତୀତ ଯେଉଁଲୋକମାନେ ପୁନଃ ପୁନଃ କର କର୍ତ୍ତିତ କରିବା ସକାଶେ ଗବର୍ଣ୍ଣମେଣ୍ଟକୁ ଅନୁରୋଧ କରିଅଛନ୍ତି ସେମାନଙ୍କ କଥାରେ ଶସ୍ୟ ଅଧିକ ଥିବାର ଜଣାଗାଏ । ଆମ୍ଭେମାନେ ଅବଗତ ହେଲୁଁ ଯେ ଏହି ସମସ୍ତ ବିବେଚନାରେ କମିଶ୍ନରମାନେ ଏକପ୍ରକାର ସ୍ଥିର କରିଅଛନ୍ତି ଯେ ଶସ୍ୟ ପୂର୍ବରୁ ନଅଣାଇବାରେ ଗବର୍ଣ୍ଣମେଣ୍ଟ ଦୋଷୀ ନୁହନ୍ତି । ଏ ସିଦ୍ଧାନ୍ତ କେତେ ଦୂର ଯୁକ୍ତିସିଦ୍ଧ ତାହା ଏସ୍ଥଳେ ଆମ୍ଭେମାନେ ସର୍ବସାଧାରଣଙ୍କ ଗୋଚରାର୍ଥେ ବିସ୍ତାର କରିବାର ଆବଶ୍ୟକ ବୋଧ କରୁଅଛୁଁ ।

ପ୍ରଥମ । ଏଦେଶର ପାଠକମାନେ ଅବଶ୍ୟ ସ୍ମରଣ ରଖିଥିବେ ଯେ ଗତବର୍ଷ ଏହି

ସମୟରେ ଦେଶରେ ଶସ୍ୟଥିବା ବିଷୟରେ ନାନାମତ ଉପସ୍ଥିତ ହୋଇଥିଲା । କୃଷୀ, କର୍ମଚାରୀ ଓ ଦୋକାନଦାର ସମସ୍ତେ ଶସ୍ୟ ନଥିବାର କହୁଥିଲେ । କେବଳ କଣିକିଆ-ମାନେ ଅଥବା ଯାହାର ଶସ୍ୟର ଅକୁଲାନ ଥିଲା ସେହିମାନେ ଶସ୍ୟର ଅସ୍ତିତ୍ୱ ଓ ବିପଣିବାଯୀର ଦୁଷ୍ଟସ୍ୱଭାବତା ଜ୍ଞାନ କରୁଥିଲେ । ଏସ୍ଥଳରେ କୌଣସି ଏକ ମତକୁ ଅନୁସନ୍ଧାନ ଦ୍ୱାରା ସ୍ଥିର କରିବା ସରକାରଙ୍କୁ ଉଚିତଥିଲା । ତାହା ହୋଇନାହିଁ ଓ ଯେ ସ୍ଥଳେ ସରକାର ଜାଣୁଥିଲେ ଯେ କାହାର ଘରୁ ବଳପୂର୍ବକ ଶସ୍ୟ ଅଣାଯାଇ ନପାରେ ଓ ଶସ୍ୟାଧିକାରୀମାନେ ଦୁଷ୍ଟସ୍ୱଭାବତା ପ୍ରକାଶ କଲେ ମଧ୍ୟ ତାହା ନିବାରଣ ନିମିତ୍ତ ସରକାର ସକ୍ଷମ ନଥିଲେ କିଂବା ସେ ସମ୍ବନ୍ଧରେ ତହିଁର ନୂତନ ଉପାୟ ଅବଲମ୍ବନ ନ କଲେ ସେ ସ୍ଥଳେ ବିଦେଶରୁ ଶସ୍ୟ ଅଣାଇବାର ପ୍ରସ୍ତାବ ସେହି ସମୟରେ ନକରି କାଳକ୍ଷେପ କରିବାରେ ସ୍ଥାନୀୟ ହାକିମମାନଙ୍କର ତ୍ରୁଟି ହୋଇଅଛି ଅବଶ୍ୟ ସ୍ୱୀକାର କରିବାକୁ ହେବ । ଦେଶରେ ଶସ୍ୟଥିଲେ ଶସ୍ୟହୀନ ବ୍ୟକ୍ତିର କି ଲାଭ ? ଚନ୍ଦ୍ର ଠାରେ ଅମୃତ ଅଛି ସମସ୍ତେ ବିଶ୍ୱାସ କରନ୍ତି ମାତ୍ର ଏବିଶ୍ୱାସରେ କି ଆମ୍ଭେମାନେ ଅମର ହୋଇ ପାରିବୁଁ ? ବାରିପତନ ନହେଲେ କେବଳ ଜଳପୂର୍ଣ୍ଣ ନୀଳବର୍ଣ୍ଣ ମେଘମାଳା ଦୃଷ୍ଟିରେ କି ଚାତକ ପକ୍ଷୀର ପିପାସା ନାଶହେବ ? ଅକ୍ଟୁବର ମାସରୁ ଶସ୍ୟପ୍ରାପ୍ତିର କଷ୍ଟ ଜଣାଗଲା ମାତ୍ର ମାର୍ଚ୍ଚ ମଧ୍ୟରେ ଯେବେ ସରକାର ଶସ୍ୟ ପ୍ରାପ୍ତିର କୌଣସି ସୁଯୋଗ ନକଲେ ତେବେ ଜଣାଯାଏ ଯେ ସେମାନେ ଉପରୋକ୍ତ ପ୍ରକାର କୌଣସି ଅସମ୍ଭବ କଥା ସାକ୍ଷାତ କରିବାର ଭ୍ରମରେ ପଡ଼ିଥିଲେ ସନ୍ଦେହ ନାହିଁ ।

ଦ୍ୱିତୀୟ । ଏଦେଶରେ କେତେକ ମାନ୍ୟ ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ମାର୍ଚ୍ଚମାସ ଶେଷଦିବସ ଶସ୍ୟର ସୁଯୋଗାର୍ଥେ ଏକସଭା କରି ସେଥିରେ ବିଜ୍ଞାପନରେ ଲେଖିଥିଲେ ଯେ ଏଦେଶରେ ଅନେକ ଶସ୍ୟ ଅଛି ଓ ତଦନୁସାରେ ସଭାରେ ସ୍ଥିର କରି ଉକ୍ତ ମହୋଦୟମାନଙ୍କ ମଧ୍ୟରୁ ସର୍ବାପେକ୍ଷା ଯାହାଙ୍କୁ ମଫସଲ ବିଶେଷ ଜ୍ଞାନ ଥିଲା ତାହାଙ୍କଦ୍ୱାରା ଶସ୍ୟର ଏକଖଣ୍ଡ ଇଷ୍ଟିମେଟ ପ୍ରସ୍ତୁତ କରିଥିଲେ । ସେଥିରୁ ଦେଖାଯାଇ ଥିଲା ଯେ କଟକ ଜିଲ୍ଲାରେ ସର୍ବସୁଦ୍ଧା ୬୪୮୦୦୦ ରଣ ଧାନ ସେ ସମୟରେ ଥିବାର ସମ୍ଭବ ଥିଲା । ଏକଥା ଯେ ହାକିମମାନଙ୍କ ଅଜ୍ଞାତସାରରେ ଆସିଥିଲା ତାହା ଆମ୍ଭମାନଙ୍କୁ ବିଶ୍ୱାସ ହେଉନାହିଁ କାରଣ ତାହାହେଲେ ସେମାନେ ଶୀଘ୍ର ଗୁପ୍ତ ଅନୁସନ୍ଧାନର ଉଦ୍‌ଯୋଗ କରିଥାନ୍ତେ ଓ ଯେବେ ଏସବୁର ବୃତ୍ତାନ୍ତର ସେମାନେ ଗୋଚର ନଥଲେ ତାହାହେଲେ ଏଥିରୁ ସେମାନଙ୍କର କିଛି ଉପକାର ନହୋଇ ବରଂ ଆମ୍ଭର ଅନୁସନ୍ଧାନର ତ୍ରୁଟି ଜଣାଯାଏ । ବାସ୍ତବରେ ଯେବେ ଏଦେଶରେ ୬୪୮୦୦୦ ରଣ କନ୍ୟା ସେଥିରୁ ଅଧିକ ୬୬୦ । ୬୦୦୦୦ ରଣ ଧାନ୍ୟ ଥିଲା

ମାତ୍ର ସେଥିରୁ କି ଉପକାର ହୁଅନ୍ତା ତାହା କେହି ବିଚାର ନକଲେ । ଯେବେ ଅଙ୍କବିଦ୍ୟା ଏସମସ୍ତ କର୍ମରେ ଉପକାରୀ ହୁଅଇ ତେବେ ସାମାନ୍ୟ ଗଣନାରେ ଦେଖାଯାଏ ଯେ କଟକୀ ସେ୪ରଚ୍ୟା ଗୌଣୀରେ ବାଇସାକୁଟା ପ୍ରମାଣେ ଭ୬୦୦୦୦ ମଣ ଧାନରେ କଟକୀ ପ୍ରାୟ ଭ୩୨୮୦୦୦ରଣ ଚାଉଳରୁ ଅଧିକ ନହେବ ଓ ତାହା ଜଣକୁ ମାସିକ ସେର୨ର ହିସାବ କଲେ କେବଳ ୨୦ଲକ୍ଷ ଲୋକ ମାସେ ଶେଷପର୍ଯ୍ୟନ୍ତ ଆହାର ପ୍ରାପ୍ତ ହୁଅନ୍ତେ । ମାତ୍ର ଯଥାର୍ଥରେ ଏଥିରୁ ଅନେକ ସ୍ୱଳ୍ପ ହୁଅନ୍ତା କାରଣ ସମସ୍ତେ ଶସ୍ୟ ଶୂନ୍ୟ ହୋଇ ରହିନ୍ତେ ନାହିଁ ଅତଏବ ସ୍ପଷ୍ଟ ଜଣାଯାଉଅଛି ଉପରୋକ୍ତ ଇଷ୍ଟିମେଟରୁ ସତ୍ୟ ଜ୍ଞାନକଲେ ମଧ୍ୟ କଟକଜିଲାର ମନୁଷ୍ୟ ସଂଖ୍ୟା ବିବେଚନାରେ ଏକମାସର ଆହାର ପୁଞ୍ଜି ନ ଥିଲା ଅର୍ଥାତ୍ ସ୍ଥାନାନ୍ତରରୁ ଚାଉଳ ନ ଆଣାଇଲେ ମଇମାସ ତା ୧୦ । ୧୫ରିଖ ପୁଞ୍ଜି ସମସ୍ତଙ୍କର ଅନାହାରରେ ମୃତ୍ୟୁ ହେବାର ସନ୍ଦେହ ନଥିଲା । ଏପରି ବିବେଚନାରେ ଚାଉଳ ଆଣାଇବାର ଉଦ୍ୟମ ଏସମୟରେ ଅର୍ଥାତ୍ ଅପ୍ରେଲ ମାସ ପ୍ରଥମ ସପ୍ତାହରେ ହୋଇଥିଲେ ଜୁନ ଜୁଲାଇର ଭୟାନକ ମୃତ୍ୟୁ ହେଲେ ଅନେକ ନିବାରଣ ହୋଇଥାନ୍ତା । ଏଣୁକରି ଏସ୍ଥଳରେ ମଧ୍ୟ ଆମ୍ଭର ରକ୍ଷକମାନଙ୍କ ସାମାନ୍ୟ ବିବେଚନାର ତ୍ରୁଟି ପ୍ରତ୍ୟକ୍ଷ ହେଉଅଛି ।

ତୃତୀୟ । ଯଦ୍ୟପି ସ୍ୱୀକାର କରାଯାଏ ଯେ ଏଦେଶରେ ଅଧିକ ଶସ୍ୟ ଥିବା ଓ ତାହା ସର୍ବସାଧାରଣଙ୍କର ଆବଶ୍ୟକମତେ କ୍ରୟ କରିବାକୁ ପ୍ରାପ୍ୟ ଥିବାର ସ୍ଥାନୀୟ ହାକିମମାନେ ଜାଣୁଥିବାରୁ ଶସ୍ୟ ଆଣାଇବାର ଶୀଘ୍ର ଉଦ୍‌ଯୋଗ ନକଲେ ତଥାଚ ସେମାନେ ଏହା ଜାଣୁଥିଲେ ଯେ ଶସ୍ୟର ମୂଲ୍ୟ ଊଣା ହେବାର ଭରସା ନଥିଲା ଓ ଯେ ଦେଶ ଲୋକମାନେ ଏକବର୍ଷ ପୂର୍ବେ ଟଙ୍କାକୁ ସେ୨୫ର ଚାଉଳକୁ ମହାର୍ଘ ମନେ କରୁଥିଲେ ସେ ଲୋକମାନେ ତହିଁର ଚତୁର୍ଗୁଣ ମୂଲ୍ୟ ଦେଇ କାଳ ନିର୍ବାହ କରିବାର କଦାଚ ସମ୍ଭବ ନଥିଲା । ମାତ୍ର ଏହାଜାଣି କି ଦୁଃଖୀଙ୍କୁ ଶସ୍ତା ବିକ୍ରି କରିବାର କି ଖୋରାକି ଚାଉଳଦେଇ କର୍ମ କରାଇବାର କୌଣସି ବ୍ୟବସ୍ଥା ହୋଇ ଥିଲା ? ଆଠସେରରେ ଦୁଃଖୀମାନେ ଚାଉଳଖାଇ ବଞ୍ଚିରହିବେ ଏହା ଯେଉଁମାନେ ବିଶ୍ୱାସ କରୁଥିଲେ ସେମାନେ ଦେଶର ଅବସ୍ଥା କିଛିମାତ୍ର ଜାଣନ୍ତି ନାହିଁ ଅବଶ୍ୟ କହିବାକୁ ହେବ ।

ଉପରୋକ୍ତ ବିଷୟମାନ ଆଲୋଚନା କରିବାରେ ଜଣାଯାଏ ଯେ ସ୍ଥାନୀୟ ହାକିମମାନଙ୍କର ଜାଣିବାର ଉପାୟ ଥିବାପ୍ରତ୍ୟକ୍ଷେ ତହିଁ ପ୍ରତି ତାହାଙ୍କ ମନଯୋଗ କରିନାହାନ୍ତି ଓ ପ୍ରଥମରୁ ଦୁର୍ଭିକ୍ଷର କଥାରେ ହେୟ ଜ୍ଞାନ କରିବାରୁ ଏଠାକାର ଦୁର୍ଦ୍ଦଶା ଅଧିକ ବଳବନ୍ତ ହୋଇଅଛି । କିନ୍ତୁ କି ଆଶ୍ଚର୍ଯ୍ୟ କେବଳ ସ୍ଥାନୀୟ

ସ୍ଥାନମାନଙ୍କଠାରେ ଏ ତ୍ରୁଟି ଲକ୍ଷିତ ହୋଇଅଛି ଏମନ୍ତ ନୁହେ । ମାନ୍ୟବର ଲେଫଟେନେଣ୍ଟ ଗଵର୍ଣ୍ଣର ସ୍ୱୟଂ ଏସ୍ଥାନକୁ ଆସି ସ୍ୱଚକ୍ଷୁରେ ଏସମସ୍ତ ଦର୍ଶନ କରିବା ପ୍ରତ୍ୟକ୍ଷ ତାହାଙ୍କ ଉତ୍କୃଷ୍ଟ ବୁଦ୍ଧିରେ ସୁଦ୍ଧା ଏମାନ କଷ୍ଟ ଆସିଲନାହିଁ । କମିଶ୍ନରମାନେ ସୁବିଚାର ପୂର୍ବକ କ ଷ୍ଟିର କରିବେ କେହି କହି ନପାରେ ମାତ୍ର ଆମ୍ଭମାନଙ୍କର ଭରସା ହେଉଅଛି ଯେ ଏ ପ୍ରସ୍ତାବର ଅନ୍ତର୍ଗତ ମୁକ୍ତମାନ ତାହାଙ୍କ ବିବେଚନାର ଅନ୍ତର ହେବନାହିଁ । ଅମ୍ଭେମାନେ କାହାର ଉପରେ ଦୋଷାରୋପ କରିବାକୁ ଚାହୁଁନାହୁଁ ବରଂ ଏଦେଶସ୍ଥ ଲୋକମାନଙ୍କ ଏପ୍ରକାର ସରଳ ହୃଦୟ ଯେ ସେମାନେ କାହାଠାରେ କ୍ଳେଶ ବା ଅପମାନ ପାଇଥିଲେ ସୁଦ୍ଧା ତାହାର ଦୋଷ ନଦେଇ ଆପଣା ୨ କପାଳକୁ ଦୋଷି କରନ୍ତି ମାତ୍ର ଆମ୍ଭମାନଙ୍କ ବାଞ୍ଛା ଯେ କମିଶ୍ନରମାନେ କୌଣସି ବିଷୟରେ ଅଜ୍ଞାତରହି ଯେରୂପେ ଭ୍ରମଯୁକ୍ତ ରିପୋର୍ଟ ନ କରନ୍ତି । ତାହାହେଲେ ସାଧାରଣର ତାଦୃଶ ମଙ୍ଗଳ ହେବନାହିଁ ଓ ଆମ୍ଭେମାନେ ମଧ୍ୟ ଆପଣା କର୍ତ୍ତବ୍ୟ ସାଧନରେ ତ୍ରୁଟି କରିଥିବାର ଅପରାଧୀ ହେବୁଁ ।

୪୬ । ସାପ୍ତାହିକ ସଂବାଦ

ଦୁର୍ଭିକ୍ଷ କମିଶ୍ନରମାନେ ଗତ ରବିବାର ଓ ସୋମବାର ସୁଦ୍ଧା କଟକରୁ ପୁରୀକୁ ଯାତ୍ରା କଲେ । ସେଠାରୁ ଜାହାଜରେ ସମୁଦ୍ର ପଥରେ ବାଲେଶ୍ୱରରେ ପ୍ରବେଶ ହେବେ ଓ ସେଠାରୁ କର୍ମଶେଷକରି କଲିକତାକୁ ଯାଇ ଫିବ୍ରୁଆରି ମାସର ପ୍ରଥମାବସ୍ଥାରେ ରିପୋର୍ଟ ଦାଖଲ କରିବାର ସମ୍ଭବ ହେଉଅଛି । ମାତ୍ର ଏରୂପ ହେଲେ ସୁଦ୍ଧା ପାର୍ଲିଆମେଣ୍ଟର ଆଗତ ସତ୍ରରେ ଯେ ଏମାନଙ୍କ ରିପୋର୍ଟ ଆଗତ ହୋଇପାରିବ ବିଶ୍ୱାସ ହେଉନାହିଁ ।

୪୭ । ଚଳିତ ସନ ସକାଶେ ସରକାରୀ ଚାଉଳ ଆମଦାନୀ ଓ ସାହାଯ୍ୟ କର୍ମମାନ ବହୁଳ ଅଭ୍ୟନ୍ତରରେ ଆରମ୍ଭ ହେଉଅଛି ଓ ସେଥିର ଭରସା ହୁଏ ଯେ ଗତବର୍ଷର ଦୁର୍ଘଟଣାର ଯଥାର୍ଥ ଶିକ୍ଷା ଗବର୍ଣ୍ଣମେଣ୍ଟ ପାଇ ଏବର୍ଷ ସତର୍କତା ସହିତ କର୍ମ କରୁଅଛନ୍ତି ।

୪୮ । କଟକଠାରୁ ପୁରୁଷୋତ୍ତମ ପର୍ଯ୍ୟନ୍ତ ଡାକ ଗମନାଗମନର ସୁଯୋଗ କରିବା ନିମିତ୍ତ ଗୋଟିଏ କୁମ୍ପାନି ନିକଟରେ କଟକରେ ହେବାର ପ୍ରସ୍ତାବ ହୋଇଅଛି । ଏକୁମ୍ପାନିର ଇଚ୍ଛା ଯେ ଘୋଡ଼ାଗାଡ଼ିର ଡାକ ସ୍ଥାପନ କରି ଲୋକମାନଙ୍କୁ ଅଳ୍ପ ମୂଲ୍ୟ ଓ ଅଳ୍ପ କାଳରେ କଟକ ଓ ପୁରୀ ଯାତାୟତ ସକାଶେ ସମର୍ଥ କରିବେ । ଆମ୍ଭେମାନେ ଶୁଣିଅଛୁଁ ଯେ କୋମ୍ପାନିକୁ ଟ°/୨ ହିସ୍ସା ଲେଖାଏ ଜଣ ପ୍ରତି ଉଠାଇନେଇ ଏକୁମ୍ପାନି

ଚଳିଥାଉଛି । ଏ ପ୍ରସ୍ତାବ ଅତି ଆନନ୍ଦଜନକ । ଏହା ଶୀଘ୍ର ଆତ୍ମୀୟକର କୃତକାର୍ଯ୍ୟ ହେଉନ୍ତୁ । କଟକ ସହରର ମଧ୍ୟରେ ଉତ୍ତାରେ ଚୋଡ଼ ଯୋଗାଇବା ଏକ୍ସମାନର ପ୍ରସ୍ତାବର ଏକ ଶାଖା ଅଟଇ ।

୪୯ । ଆମ୍ଭେମାନେ ଅବଗତ ହେଲୁଁ ଯେ ସମ୍ପ୍ରତି ବରହମପୁରରେ ଟଙ୍କାକୁ କଟକୀ ପ୍ରାୟ ସେ ୨୦ର ଚାଉଳ ପ୍ରାପ୍ତ ହେଉଅଛି । ଅତଏବ ଚାଉଳ ମହାଜନଙ୍କୁ ଏ ଅତି ଆନନ୍ଦଜନକ ସମ୍ବାଦ । ଆମ୍ଭେମାନେ ଭରସାକରୁଁ ଯେ ଗଞ୍ଜାମରୁ ମହାଜନମାନେ ଚାଉଳ ଆଣି ଏଠାକାର ଦୁର୍ମୂଲ୍ୟ କିଛି ନିବାରଣ କରନ୍ତୁ ।

## (୨ୟ ଭାଗ, ୨୬ । ୧ । ୧୮୬୭, ସଂଖ୍ୟା ୪)

୫୦ । ସାପ୍ତାହିକ ସମ୍ବାଦ

ଆମ୍ଭେମାନେ ଶୁଣିଅଛୁଁ ଯେ ମେଦନୀପୁରରେ ଏବର୍ଷ ଚାଉଳ ଟଙ୍କାକୁ ସେ ୪୦ ର ପ୍ରାପ୍ତ ହେଉଅଛି ଓ ମଫସଲରେ ତଦପେକ୍ଷା ଏକ ଏକ ସ୍ଥାନରେ ଅଧିକ ମିଳୁଅଛି ।

୫୧ । ଓଡ଼ିଶା ପ୍ରଦେଶର ବର୍ତ୍ତମାନ ସୁନିୟମ ପୂର୍ବକ ନିର୍ମାଣ ବା ମରାମତି ସକାଶେ କଟକରେ ଯେ ଦୁଇମେଣ୍ଟି ହୋଇଅଛି ତାହାଙ୍କର କାର୍ଯ୍ୟାରମ୍ଭ ହୋଇଅଛି । ଏକ୍ସମେଣ୍ଟି ଅଧୀନରେ କେତେକ ସରବୀୟର ଓ ବାରକ ମାଷ୍ଟର ଓ ଅନ୍ୟ କର୍ମଗୃହମାନେ ନିଯୁକ୍ତ ହେବାର ସ୍ଥିର ହୋଇଅଛି । ଅଳ୍ପ କାଳରେ ସଡ଼କ ଇତ୍ୟାଦି କର୍ମହେବ ।

## (୨ୟ ଭାଗ, ୨ । ୨ । ୧୮୬୭ ,ସଂଖ୍ୟା ୫)

୫୨ । କଟକସ୍ଥ ସାହାଯ୍ୟ କମିଟି

× × × ×

ପ୍ରତି ଅଞ୍ଚଳରେ ପରଦାନସୀନ ସ୍ତ୍ରୀମାନଙ୍କ ସାହାଯ୍ୟାର୍ଥେ ସୂତାକାଟିବାର ନିୟମ ସଂସ୍ଥାପନ ଓ ଛତ୍ରର ତତ୍ତ୍ୱାବଧାରଣ ନିମନ୍ତେ ଅଧିକ ବେତନଭୋଗି ଗୃହର ନିୟୋଜନ ଓ ପ୍ରତିସ୍ଥାନରେ ସର୍ବଦା ୧୦୦ ବସ୍ତା ଚାଉଳ ଗୋଦାମରେ ରହିବା ଏସବୁର ପ୍ରଧାନ କର୍ମମାନ ଥିଲା ଓ ତାହା ପ୍ରତିପାଳନ ସକାଶେ ଉପଯୁକ୍ତ ଉପାୟ ସ୍ଥିର କରିବା ପାଇଁ ସାହାଯ୍ୟ ମେନେଜର ପ୍ରତି ଆଜ୍ଞା ହୋଇଅଛି । ଫିଟ୍ସ୍ଆଡ଼

ମାସ ତାଂ ୧୫ରେ ସଞ୍ଚୋଳ ତହିଁର ବଗୁରହେବ । ଏଥର ବେଗିଙ୍କ ଚକସ୍ତା ନିମନ୍ତେ ଜଣେ ସବ ଆସିଷ୍ଟାଣ୍ଟ ସରଜନ ଦୁଇଜଣ ନେଟିବ ଡାକ୍ତର ଓ କେଟଣ ଡ୍ରେସର ନିଯୁକ୍ତ ହେବାର ସ୍ଥିର ହୋଇ କଲକତାର ଉପଯୁକ୍ତ ଲୋକ ଆଣିବା ସକାଶେ ପତ୍ର ଯାଇଅଛି । ଏପ୍ରସ୍ତାବ ସବୁଠାରୁ ଅଧିକ ହିତକାରୀ । ସାଧାରଣ ସମୟରେ ଜଣେ ସବ ଆସିଷ୍ଟାଣ୍ଟ ସରଜନର ଥିବାର ଆବଶ୍ୟକ ଲୋକମାନେ ବୋଧକରି ଗବର୍ଣ୍ଣମେଣ୍ଟକୁ ଦରଖାସ୍ତ କରିଥିଲେ ମାତ୍ର ତହିଁରେ କିଛି ବବେଚନା ହୋଇନାହିଁ । ଏଥର ଦୁର୍ଭିକ୍ଷ କଙ୍ଗାଳିଙ୍କ ଚକସ୍ତା ସକାଶେ ହେଲେ ଯେ ଜଣେ ଏରୂପ ଚକତ୍ସକ କଟକକୁ ଆସିବ ଏଥିରେ ସମସ୍ତଙ୍କର ଉପକାର ସମ୍ଭାବନା । ବର୍ତ୍ତମାନ ଏସ୍ଥାନର ସକଳକର୍ମ ଏକଜଣ ଚକତ୍ସକଦ୍ୱାରା ଚଳୁଅଛି ମାତ୍ର କେବଳ ସରକାରି ମହକୁମାମାନ ତତ୍ତ୍ୱାବଧାରଣ କରିବାରେ ଏହାଙ୍କର ସମସ୍ତ ସମୟ ବ୍ୟୟ ହୁଅଇ ଓ କେତେବେଳେ ଏରୂପ ଘଟଇ ଯେ ଠିକାଂ ଦେଲେ ସୁଦ୍ଧା କୌଣସି ଉତ୍କଟ ରୋଗର ଚକସ୍ତା ନିମିତ୍ତ ଡାକ୍ତର ସାହେବଙ୍କର ସାକ୍ଷାତ ହେବାର ଦୁଷ୍କର ହୁଅଇ । ଏ ଅବସ୍ଥାରେ ଚକସ୍ତା କର୍ମକାରଙ୍କର ସଂଖ୍ୟା ବୃଦ୍ଧି ହେବା ଯେ କେତେ ଆବଶ୍ୟକ ତାହା ସହଜରେ ସମସ୍ତଙ୍କର ଜ୍ଞାତସାର ହେବ ।

୫୭ । ସରକାରୀ ଗୁରୁତର କାରବାର ଓ ସାହାଯ୍ୟ କର୍ମ ଅଧିକ ହେବାରୁ ଓଡ଼ିଶା ପ୍ରଦେଶର ରେବନ୍ୟୁ ହାକିମମାନଙ୍କ ସାହାଯ୍ୟ ନିମିତ୍ତ ପ୍ରତି ଜିଲାରେ ଜଣେ ଜଏଣ୍ଟ ମାଜିଷ୍ଟ୍ରେଟ ନିଯୁକ୍ତ ହୋଇଅଛନ୍ତି, ଯଥା ।

| | |
|---|---|
| ବାଲେଶ୍ୱରରେ | ଆର, ଏଚ, ପାସି ସାହେବ |
| କଟକରେ | ଜେ, ଏସ, ଆର୍ମଷ୍ଟ୍ରଂ ସାହେବ |
| ପୁରୀରେ | ଇ, ଜେ, ବାର୍ନେଟ ସାହେବ |

ଏଥିରେ ତିନି ଜଣ ଡେପୋଟି କଲେଟର ନିଯୁକ୍ତ ହୋଇଅଛନ୍ତି

୫୮ । ସାପ୍ତାହିକ ସମ୍ବାଦ

ସମ୍ବଲପୁରରେ ଶୀଘ୍ର ମନିଅର୍ଡ଼ର ଅଫିସ ସଂସ୍ଥାପନ ହେବ । କଟକ ଓ ସମ୍ବଲପୁର ମଧ୍ୟରେ ଅନେକ ପ୍ରକାର ବାଣିଜ୍ୟ ହୁଅଇ । ଅତଏବ ଏ ଦୁଇସ୍ଥାନ ମଧ୍ୟରେ ମନିଅର୍ଡର ଦ୍ୱାରା ଟଙ୍କା ପଠାଇବାର ସୁଯୋଗ ହେଲେ ବ୍ୟବସାୟୀମାନଙ୍କର ଅନେକ ମଙ୍ଗଳ ହେବାର ସମ୍ଭାବନା ।

୫୯ । ଇରିଗେଶନ କମ୍ପାନିର ଖାଲଦ୍ୱାରା କୃଷିବର୍ଦ୍ଧନ କରିବା ସକାଶେ ଗବର୍ଣ୍ଣମେଣ୍ଟ ବିଶେଷ ସହବାନ ଅଛନ୍ତି ଓ ତଦନୁସାରେ ଉକ୍ତ କମ୍ପାନିକୁ ଆଦେଶ କରିଅଛନ୍ତି ଯେ

ଏଥି ବର୍ଷମଧ୍ୟରେ ଓଡ଼ିଶାର ଭିନ୍ନ ଜିଲ୍ଲାରେ କିଛି କିଛି କର୍ମ ନ କଲେ ଗବର୍ଣ୍ଣମେଣ୍ଟ ତାଙ୍କପ୍ରତି ଅସନ୍ତୁଷ୍ଟ ହେବେ ।

୫୨ । ଆମ୍ଭେମାନେ ଶ୍ରବଣ କରୁଅଛୁଁ ଯେ ବର୍ତ୍ତମାନ ଚିରସ୍ଥାୟୀ ବନ୍ଦୋବସ୍ତ ଓଡ଼ିଶାରେ ସ୍ଥଗିତ ରହି ପୁନର୍ବାର ବାର ବର୍ଷ ନିମିତ୍ତ ବନ୍ଦୋବସ୍ତ ହେବ । ଏଥିର ନିଶ୍ଚୟ କଥା ଆମ୍ଭେମାନେ ଅବଗତ ହେଲେ ଜଣାଇବୁଁ ।

୫୩ । ମଫସଲ ସାହାଯ୍ୟ ସ୍ଥାନମାନଙ୍କରେ ସରକାରୀ ଚାଉଳ ଟଙ୍କାକୁ ତେର ସେର କଟକ ଓଜନରେ ବିକ୍ରୟ ଆରମ୍ଭ ହୋଇଅଛି । ଏଥିରେ ପ୍ରଜାଙ୍କର ବିସ୍ତର ଉପକାର ହେବ ଶୁଣାଯାଏ । କଟକ ସହରରେ ମଧ୍ୟ ସରକାରୀ ଚାଉଳ ବିକ୍ରି ହେବାର ପ୍ରସ୍ତାବ ହୋଇଅଛି ମାତ୍ର କଲିକତା ଏକ ମହଣକୁ ଟ୍ ୩ । ଦରରେ ବିକ୍ରୟ ହେବ । ଏଥିରୁ ବିଶେଷ ଫଳ ହେବାର ସମ୍ଭାବନା ହେଉନାହିଁ ।

୫୪ । ଗତ ସପ୍ତାହର କଲିକତା ଗେଜେଟରେ ଶ୍ରୀଯୁକ୍ତ ସାର ସାହେବଙ୍କ ରିପୋର୍ଟ ପ୍ରକାଶ ହୋଇଅଛି । ସେଥିରେ ଦେଖିଲୁଁ ଯେ ଏବର୍ଷ ଓଡ଼ିଶା ପ୍ରଦେଶକୁ ଗବର୍ଣ୍ଣମେଣ୍ଟ ସାହାଯ୍ୟ ନିମିତ୍ତ ବାରଲକ୍ଷ ଏକସହସ୍ର ମହଣ ଚାଉଳ ପଠାଇବେ ଯେ ତହିଁ ମଧ୍ୟରୁ ଆଠ ଲକ୍ଷ ମହଣ କଟକ, ଦୁଇଲକ୍ଷ ସାଠିଏ ହଜାର ମହଣ ପୁରୀ ଓ ଦେଢ଼ଲକ୍ଷ ମହଣ ବାଲେଶ୍ବରକୁ ଆସିବ । ଶ୍ରୀଯୁକ୍ତ ସାର ସାହେବଙ୍କ ଅନୁସନ୍ଧାନମତେ କଟକରେ ସର୍ବାପେକ୍ଷା ଏବର୍ଷ ଅଧିକ ଦୁର୍ଭିକ୍ଷ ହେବାର ସମ୍ଭାବନା ଓ ବାଲେଶ୍ବର ଜିଲ୍ଲାରେ କେବଳ [illegible] ସବଡିଭିଜନରେ ଚାଉଳ ଆଣାଇବାର ଆବଶ୍ୟକ ହୋଇଅଛି । ଏ ଚାଉଳ ସମସ୍ତ ବର୍ଷାକାଳ ଆରମ୍ଭପୂର୍ବରୁ ଜିଲ୍ଲାରେ ପ୍ରବେଶ ହେବ ଯେଉଁପରି କି ଗତବର୍ଷପରି [illegible] ଓ ସ୍ଥାନାନ୍ତର କରିବାରେ କୌଣସି କ୍ଲେଶ ଓ ବୃଥା ବ୍ୟୟ ନହେବ ।

ଏ ଚାଉଳ ଆସିଲେ କଲିକତା ଓଜନ ମହଣପ୍ରତି ଟ୍ ୩ । ରୁ ଅଳ୍ପମୂଲ୍ୟରେ କଦାପି ବିକ୍ରି ହେବନାହିଁ ଓ ବଜାର ନିତାନ୍ତ ଚଢ଼ା ହେଲେ ଏଥିରୁ ଅଧିକ ମୂଲ୍ୟରେ ବିକ୍ରୟ ହୋଇପାରେ ।

ଉକ୍ତ ମହାଶୟ ଆହୁରି ଅନୁମାନ କରୁଅଛନ୍ତି ଯେ ପନ୍ଦରଲକ୍ଷ ମହଣରେ ସରକାରର ଚାରିଲକ୍ଷ ଟଙ୍କା ଖର୍ଚ୍ଚ ହେବ ଓ ତହିଁମଧ୍ୟରୁ ତିନିଲକ୍ଷ ଟଙ୍କା ବିକ୍ରିରେ ଆଦାୟ ହୋଇ ବାକି ଏକଲକ୍ଷଟଙ୍କା ନିଶ୍ଚୟ ସରକାରର କ୍ଷତି ପଡ଼ିବ । ଅତଏବ ଦେଖାଯାଏ ଯେ ଓଡ଼ିଶାକୁ ବାରଲକ୍ଷ ମହଣ ଚାଉଳ ସରକାର ପଠାଇବାରେ ବାରଲକ୍ଷଟଙ୍କା ଦାନ କରିବେ । ଧନ୍ୟ ବ୍ରିଟିଶ ରାଜଧର୍ମ !

୬୯ । ଦୁର୍ଭିକ୍ଷ ହେତୁରୁ ଅରକ୍ଷିତ ବାଳକ ବାଳିକାମାନଙ୍କ ଭବିଷ୍ୟତର ନିର୍ବାହ ନିମିତ୍ତ ସରକାର ପ୍ରତି ବାଳକ ପ୍ରତିମାସକୁ ୪ଟଙ୍କା ଲେଖାଏଁ ଖୋରାକ ସ୍ଥିର କରିଅଛନ୍ତି ମାତ୍ର ଏମାନେ କର୍ମକ୍ଷମ ହେବାପର୍ଯ୍ୟନ୍ତ ଏମାନଙ୍କ ପ୍ରତିପାଳନରେ ଅନେକବ୍ୟୟ ଆବଶ୍ୟକ । ଅତଏବ ବଙ୍ଗଳା ଗବର୍ଣ୍ଣମେଣ୍ଟ ସର୍ବସାଧାରଣଙ୍କଠାରେ ହିନ୍ଦୁସ୍ଥାନ ଓ ବିଲାତରେ ଚାନ୍ଦା ପ୍ରାର୍ଥନା କରୁଅଛନ୍ତି । ଧନୀମାନେ ଧନର ଉତ୍ତମବ୍ୟୟ ଏତେବେଳେ ନକରି ଆଉ କେବେ କରିବେ ? ଅମ୍ଭେ ଭରସା କରୁଁ ସମସ୍ତେ ଆପଣା ୨ ପରାକ୍ରମାନୁସାରେ ଚାନ୍ଦା ଦାନଦ୍ୱାରା ଧର୍ମ ଓ ଯଶଃ ଲାଭ କରିବେ ।

(୨ୟ ଭାଗ, ୯।୨।୧୮୬୭, ସଂଖ୍ୟା ୭)

୭୦ । ଅରକ୍ଷ ବାଳକମାନଙ୍କ ଧର୍ମରକ୍ଷା

ଶ୍ରୀଯୁକ୍ତ ମେକନିଲ ସାହେବ ଖାସ କଲେକଟରଙ୍କ ଲେଖାନୁସାରେ ଓଡ଼ିଶା ପ୍ରଦେଶରେ ପ୍ରାୟ ଦୁଇସହସ୍ର ବାଳକ ବାଳିକା ରକ୍ଷକଶୂନ୍ୟ ହୋଇ ସାଧାରଣର ବଦାନ୍ୟତାର ଅପେକ୍ଷାରେ ରହିଅଛନ୍ତି । ସମ୍ପ୍ରତି ଗବର୍ଣ୍ଣମେଣ୍ଟ ସେମାନଙ୍କର ଭରଣ ପୋଷଣ କରୁଅଛନ୍ତି ମାତ୍ର ଏଥିରେ ଅନେକ ବ୍ୟୟର ସମ୍ଭାବନା ଓ ଗବର୍ଣ୍ଣମେଣ୍ଟ ସେମାନଙ୍କର ହେତୁ ହେବାପର୍ଯ୍ୟନ୍ତ ଯେ ଏକାକୀ ଏ ଭାରବହନ କରିବେ ଏହା ଉଚିତ ନୁହଇ । ଏଥିରେ ଅନ୍ୟୂନ ବାର୍ଷିକ ଏକ ଲକ୍ଷଟଙ୍କା ବ୍ୟୟ ହେବ ଓ ରାଜକୋଷର ବର୍ତ୍ତମାନ ଅବସ୍ଥାପ୍ରତି ଦୃଷ୍ଟି କଲେ ବୋଧ ହୁଅଇ ଯେ ଗବର୍ଣ୍ଣମେଣ୍ଟ ସୁସାରରେ ଏଟଙ୍କା ଦେଇ ନପାରନ୍ତି ଓ ଦେଲେ ଶେଷରେ ଆମ୍ଭମାନଙ୍କଠାରୁ କୌଣସି ଟେକ୍ସ ଦ୍ୱାରା ଭଣ୍ଡାରର କ୍ଷତି ପୂରଣ ହେବ ସନ୍ଦେହନାହିଁ । ଯାହାହେଉ ସାଧାରଣଙ୍କଠାରୁ ଚାନ୍ଦା ସଂଗ୍ରହଦ୍ୱାରା ଏ ବ୍ୟୟ ନିର୍ବାହ ନିମିତ୍ତ ସ୍ଥାନୀୟ ଗବର୍ଣ୍ଣମେଣ୍ଟ ବିଲାତ ଓ ଭାରତବର୍ଷର ସମସ୍ତ ବ୍ୟକ୍ତିଙ୍କୁ ଅନୁରୋଧ କରିବାର ପ୍ରସ୍ତାବ କରିଅଛନ୍ତି । ଯଦ୍ୟପି କି ଏଦେଶସ୍ଥ ଧନୀମାନେ ଗତ ଦୁର୍ଭିକ୍ଷରେ ବହୁତର ଦାନକର୍ମରେ ଅର୍ଥବ୍ୟୟ କରିବାରୁ ଏତେବେଳେ ଯଥେଷ୍ଟମତେ ଚାନ୍ଦାଦେବାକୁ ପାରଗ ନାହାନ୍ତି ମାତ୍ର ଆମ୍ଭମାନଙ୍କର ବିଶ୍ୱାସ ହେଉଅଛି ଯେ କି ଦେଶୀୟ କି ବିଦେଶୀୟ ସମସ୍ତ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଏଥିରେ ଯଥାଶକ୍ତି ସାହାଯ୍ୟ କରିବେ ଓ ତଦ୍ୱାରା ଅରକ୍ଷ ପ୍ରାଣୀଙ୍କ କୌଣସି ପ୍ରକାରରେ ଭକ୍ଷଣ ପୋଷଣ ଓ ଶିକ୍ଷା କର୍ମ ଚଳିଯିବ ।

ଅରକ୍ଷ ବାଳକ ବାଳିକାଙ୍କୁ ଶିକ୍ଷା ଓ ଭରଣପୋଷଣ କି ପ୍ରକାରେ ହେଲେ ସେମାନଙ୍କର ଭବିଷ୍ୟତରେ ମଙ୍ଗଳ ହେବ ତାହା ଆମ୍ଭେମାନେ ଏଥିପୂର୍ବେ ଏ ପତ୍ରିକାରେ ପ୍ରକାଶ କରିଥିଲୁଁ । ପୁନରୁକ୍ତିର ଆବଶ୍ୟକ ନାହିଁ । ଏମାନଙ୍କର ଧର୍ମରକ୍ଷା କରିବା ସାଧାରଣ ଗବର୍ଣ୍ଣମେଣ୍ଟର କର୍ତ୍ତବ୍ୟ କି ନା ଓ ତାହା କଉରୂପ ରକ୍ଷା ହୋଇପାରେ ଏସମସ୍ତ ବିଗୃହ କରିବା ମାନସରେ ବର୍ତ୍ତମାନ ଏ ପ୍ରବନ୍ଧ ଲେଖୁଅଛୁଁ ।

ହିନ୍ଦୁସ୍ଥାନ ଅନ୍ୟାନ୍ୟ ଦେଶାପେକ୍ଷା ବିଶେଷ ଅବସ୍ଥାପନ୍ନ । ନାମାନୁସାରେ ଏକଦେଶ ହେଲେହେଁ ରୀତି ଓ ବ୍ୟବହାରରେ ଏହାକୁ ଗୋଟିଏ ଦେଶ ବୋଲି ଜ୍ଞାନ ହୁଅଇ ନାହିଁ । ଏକ ଏକ ଦେଶରେ ରାଜା ଓ ପ୍ରଜାର ପ୍ରାୟ ଗୋଟିଏ ଗୋଟିଏ ଧର୍ମ ଥିବାର ଦେଖାଯାଏ ମାତ୍ର ଭାରତବର୍ଷରେ ହିନ୍ଦୁ ମୁସଲମାନ ଇତ୍ୟାଦି ନାନାପ୍ରକାର ଧର୍ମାବଲମ୍ବୀ ଲୋକ ବାସ କରୁଅଛନ୍ତି ଓ ରାଜାର ଧର୍ମ ସବୁଠାରୁ ପୃଥକ୍ । ଅତଏବ ଆବଶ୍ୟକ ଯେ ରାଜା ସର୍ବ ଜାତି ପ୍ରଜା ପ୍ରତି ସମଦୃଷ୍ଟି ରଖିବେ ଓ ତାହାହେଲେ କୌଣସି ଧର୍ମାବଲମ୍ବୀ ପ୍ରତି ପକ୍ଷପାତ ପ୍ରଦର୍ଶନ ନକରି ସମସ୍ତଙ୍କ ଧର୍ମ ସମଭାବରେ ରକ୍ଷାକରିବେ ଓ କାହାର ଅବସ୍ଥାର ଉପର ବିଶେଷ ଦୃଷ୍ଟିରେ ତାହାଙ୍କ ଧର୍ମପ୍ରତି ହସ୍ତକ୍ଷେପ ନକରିବେ ମାତ୍ର ଆମ୍ଭମାନଙ୍କ ରାଜକର୍ମଚାରୀମାନେ ତଦ୍ରୂପ ଆଚରଣ କରୁନାହାନ୍ତି । ଧର୍ମ ବିଷୟରେ ଗବର୍ଣ୍ଣମେଣ୍ଟ ହସ୍ତ ପ୍ରସାରଣ ନକରିବାର ନିୟମ ଆମ୍ଭମାନଙ୍କ ଦୟାବତୀ ମହାରାଣୀ ଘୋଷଣାରେ ସ୍ପଷ୍ଟ ସଙ୍କେତରେ ରଚନା କରିଥିବା ପ୍ରତ୍ୟେକ ତାହାଙ୍କର କର୍ମଚାରୀମାନେ ଯେ ଅସହାୟ ବ୍ୟକ୍ତିଙ୍କ ଧର୍ମ ନଷ୍ଟଦ୍ୱାରା ଆପଣା କର୍ତ୍ତବ୍ୟ ସାଧନ ବୁଦ୍ଧିକୁ କଳଙ୍କିତ କରୁଅଛନ୍ତି ଏହା ଅତ୍ୟନ୍ତ ଦୁଃଖର ବିଷୟ । ପ୍ରାଣରକ୍ଷା ଯେରୂପ କର୍ତ୍ତବ୍ୟ ଧର୍ମରକ୍ଷା ମଧ୍ୟ ସେହିରୂପ କର୍ତ୍ତବ୍ୟ । ଯେବେ ଧର୍ମତ୍ୟାଗ ନହୋଇ ସେମାନଙ୍କ ପ୍ରାଣରକ୍ଷା ନହେଲା ତେବେ ସେଥିରେ ତାହାଙ୍କର କି ଲାଭ ହେଲା ଯେ ଗବର୍ଣ୍ଣମେଣ୍ଟ ଠଙ୍କା ଦେଇ କି କୃତଜ୍ଞତା କ୍ରୟ କଲେ ? ଅତଏବ ଅରକ୍ଷ ବାଳକ ବାଳିକାଙ୍କୁ ପାଦ୍ରୀ ସାହେବଙ୍କୁ ଅର୍ପଣ କରିବାରେ ଗବର୍ଣ୍ଣମେଣ୍ଟ ନୀତିବିରୁଦ୍ଧ କରୁଅଛନ୍ତି ଓ ଯେତେବେଳେ ନାନାପ୍ରକାର ଧର୍ମାବଲମ୍ବୀ ଧନୀଙ୍କଠାରୁ ଗୃହୀତ ଚାନ୍ଦା ଉକ୍ତ ବାଳକମାନଙ୍କୁ କୌଣସି ଏକଧର୍ମରେ ପ୍ରତିପାଳନ କରିବେ ତେତେବେଳେ ଗବର୍ଣ୍ଣମେଣ୍ଟ ଅନାୟାସରେ ବିଶ୍ୱାସଘାତକତା ଦୋଷରେ ଅପରାଧୀ ହେବେ ସନ୍ଦେହନାହିଁ । ଯଦ୍ୟପି ସାଧାରଣର ବ୍ୟୟଦ୍ୱାରା ଏ ଅରକ୍ଷମାନଙ୍କ ପ୍ରତିପାଳନ ହେବ ତେବେ ସାଧାରଣ ଧର୍ମରକ୍ଷା ଅର୍ଥାତ୍ ଯେ ଯେଉଁ ଜାତିର ଲୋକ ତାକୁ ସେହି ଜାତିରେ ରଖି ପ୍ରତିପାଳନ କରିବା ଉଚିତ । ବିବେଚନାରହିତ ହୋଇ ସମସ୍ତଙ୍କୁ ପାଦ୍ରୀ ମାନଙ୍କୁ ଅର୍ପଣ କରିବା କଦାଚ ଉତ୍ତମ ଉପାୟ ନୁହଇ ଓ ପାଦ୍ରୀ ମାନଙ୍କର ଯେ ଏଥିରେ ଲାଭଠାରୁ ଅଲାଭ ଅଧିକ ତାହା ପୂର୍ବରୁ ଆମ୍ଭେମାନେ କହିଅଛୁଁ । ଜଣେ ଭଲ ମନୁଷ୍ୟ ଖ୍ରୀଷ୍ଟିଆନହେଲେ ଖ୍ରୀଷ୍ଟଙ୍କ

ଧର୍ମର ଯେତେ ଗୌରବ ହୁଅଇ ଜଣେ ମଧ୍ୟଲୋକର ଦୁଷ୍କର୍ମରୁ ତଦପେକ୍ଷା ଶତଗୁଣରେ ଅନିଷ୍ଟ ଜାତ ହୁଅଇ । ଅତଏବ ଦୁର୍ବୃତ୍ତ ଲମ୍ପଟରେ ବାଳକ ସଂଗ୍ରହକରି ଦଳ ବଢ଼ାଇଲେ ତଦ୍ଦ୍ୱାରା ଉଚିତ ପ୍ରତ୍ୟାଶା କଦାଚ ହୋଇ ନପାରେ । ବାସ୍ତବରେ "ସାଙ୍ଗେତିକ ବାଣ୍ଡ ବୃକ୍ଷକୁ ନ ଫାଙ୍ଗୁ" । ପାଦ୍ରୀମାନେ ପିଲଙ୍କର ଭାର ନେଉନ୍ତୁ ମାତ୍ର ଉଚିତ ଯେ ସେମାନଙ୍କର ଜାତିରକ୍ଷା କରି ଶିକ୍ଷାଦ୍ୱାରା ପଶ୍ଚାତ୍ ସେମାନଙ୍କୁ ଆପଣା ଧର୍ମଭୁକ୍ତ କରନ୍ତୁ । ତାହା ହେଲେ ସେମାନଙ୍କର ଯଥାର୍ଥ ଲାଭହେବ ।

ଅତଏବ ଆମ୍ଭେମାନେ ପୁନଃ ପୁନଃ ଅନୁରୋଧ କରୁଅଛୁଁ ଯେ ଗବର୍ଣ୍ଣମେଣ୍ଟ ଏମାନଙ୍କର ଆପାତତଃ ଧର୍ମରକ୍ଷାର ଉପାୟ କରନ୍ତୁ । ହିନ୍ଦୁ ପେଟ୍ରିୟଟ ଏବିଷୟରେ ପ୍ରସ୍ତାବ କରିଅଛନ୍ତି ଯେ ହିନ୍ଦୁମାନଙ୍କୁ ମଠଧାରୀଙ୍କ ଜିମା ଓ ମୁସଲମାନମାନଙ୍କୁ ମସଜିଦର ଅଧ୍ୟକ୍ଷଙ୍କ ହସ୍ତରେ ସମର୍ପଣ କରି ତାହାଙ୍କୁ ପ୍ରତିପାଳନର ଖର୍ଚ୍ଚ ଦେବେ ଓ ଯେଉଁପେ ବାଳକମାନଙ୍କୁ ପ୍ରତିପାଳଣ କରିବାକୁ ଓ ଶିକ୍ଷା ଦେବାକୁ ହେବ ସେଥିର ନିୟମ ସ୍ଥିରକରି ଉକ୍ତମଠଧାରୀ ଓ ମସଜିଦର ଉପଯୁକ୍ତ ଲୋକଙ୍କଠାରେ ସମସ୍ତ ହେପାଜତ ବୁଝିବେ ଓ ତାହାଙ୍କ ଉପରେ ଅଧିକାର ରଖିବେ । ଆମ୍ଭେମାନେ ଏ ମତରେ ସମ୍ପୂର୍ଣ୍ଣ ଐକ୍ୟ ଅଟୁଁ ବିଶେଷତଃ ମଠଧାରୀମାନେ ଅନାୟାସରେ ସାଧାରଣ ସମ୍ପତ୍ତି ଭୋଗକରି କିଛିମାତ୍ର ସାଧାରଣ ଉପକାର କରନାହାନ୍ତି । ସେମାନଙ୍କୁ ବଳପୂର୍ବକ ଏ ସମସ୍ତ କର୍ମରେ ଲଗାଇଲେ କିଞ୍ଚିତ୍ ମାତ୍ର ଅନ୍ୟାୟ ହେବ ନାହିଁ । ଆମ୍ଭେମାନେ ଆହୁରି ଭରସା କରୁଁ ଯେ ସର୍ବପ୍ରକାର ଧର୍ମାବଲମ୍ବୀ ଲୋକମାନେ ଜେତେଗୁଡ଼ିଏ ବାଳକ ବାଳିକାର ପ୍ରତିପାଳଣର ଭାରନେବାକୁ ଶୃଙ୍ଖଳ ସରକାର ସେଥିରେ ମଧ୍ୟ ସମ୍ମତ ହେଉନ୍ତୁ ଓ ଯେତେ ବାଳକ ନେବାକୁ ଇଚ୍ଛାକଲେ ତାହାଙ୍କୁ ତଦନୁସାରେ ଖର୍ଚ୍ଚ ଦେବାକୁ ମଧ୍ୟ ପ୍ରସ୍ତୁତ ହେଉନ୍ତୁ । ତାହାହେଲେ ଯେଉଁମାନେ ସ୍ୱ ଧର୍ମରକ୍ଷା କରିବାକୁ ଇଚ୍ଛାକରନ୍ତି ସେ ସେଥିରେ କୃତକାର୍ଯ୍ୟ ହେବେ ଓ ଯେବେ କେହି ଭାର ନେବାର କଷ୍ଟକୁ ଅଙ୍ଗୀକାର ନକରି ଭିନ୍ନ ଗବର୍ଣ୍ଣମେଣ୍ଟର ଦୁର୍ନାମ କରନ୍ତି ତେବେ ସେଥିରେ ଗବର୍ଣ୍ଣମେଣ୍ଟର ଦୋଷ କଦାଚ ହେବନାହିଁ । ଆମ୍ଭମାନଙ୍କ ମଧ୍ୟରେ ଅନେକ ସମ୍ଭ୍ରାନ୍ତ-ବ୍ୟକ୍ତିମାନେ ଏରୂପ ଧର୍ମପରାୟଣ ଅଛନ୍ତି ଯେ ସେମାନେ ପ୍ରାଣାନ୍ତେ କାହାର ଧର୍ମ ନଷ୍ଟ କରିବେ ନାହିଁ ଓ କାଶୀ ସ୍କୁଲରେ ଶିକ୍ଷା କଲେ ମଧ୍ୟ ଖ୍ରୀଷ୍ଟିୟାନ ହୋଇଯାଇ ଏରୂପ ବୃଥା ଆଶଙ୍କାରେ ଆପଣାର ଅତି ସ୍ନେହାସ୍ପଦ ଶିଶୁମାନଙ୍କୁ ବିଦ୍ୟାରୂପ ଅମୂଲ୍ୟ ରତ୍ନରୁ ନିଷ୍ଠୁରରୂପେ ବଞ୍ଚିତ କରନ୍ତି । ସେମାନେ ଯେ ଅସହାୟ ଲୋକଙ୍କ ଧର୍ମନଷ୍ଟ ହେବାର ଜାଣି କିଞ୍ଚିତ୍ ଧର୍ମରକ୍ଷାର ଉପାୟ ଚିନ୍ତା କରନାହାନ୍ତି ଏହା ସାମାନ୍ୟ ଆକ୍ଷେପର ବିଷୟ ନୁହଇ । ଫଳତଃ ଏବଂପ୍ରକାର ବ୍ୟକ୍ତିଙ୍କ ଏରୂପ ଆଚରଣ ଦେଖି ବୋଧହୁଅଇ ଯେ ଏମାନେ ସ୍ୱାର୍ଥପରତାର ବଶୀଭୂତ ହୋଇଥିବେ । ତାହା ନହେଲେ ଯେ ଧର୍ମର

ମାନନା ସେମାନେ କରନ୍ତି ତାହା ଅନ୍ୟକନ୍ଧ୍ରିକ ନଷ୍ଟ ହେବାର ଓ ସେମାନେ ଦେଖି ବ୍ୟସ୍ତ ହୁଅନ୍ତେନାହିଁ ? ଅତଏବ ଏମାନଙ୍କର କର୍ତ୍ତବ୍ୟ ଯେ ଆପଣା ଜାତିର ବାଳକମାନଙ୍କୁ ନେଇ ପ୍ରତିପାଳନ କରନ୍ତୁ ଅଥବା ଗବର୍ଣ୍ଣମେଣ୍ଟ ଯେରୂପ ଆଚରଣରେ ଚଳିଲେ ଏମାନଙ୍କର ଧର୍ମରକ୍ଷା ହେବ ତାହା ବିଚାର ପୂର୍ବକ ସ୍ଥିରକରି ସ୍ଥାନୀୟ ହାକିମମାନଙ୍କଠାରେ ସେସମସ୍ତ ନିବେଦନ କରନ୍ତୁ । ଏସମସ୍ତ ନକଲେ ସେମାନେ ଜନସମାଜରେ ନିନ୍ଦାର ଭାଜନ ହେବେ ସନ୍ଦେହ ନାହିଁ ।

୬୧ । ସାପ୍ତାହିକ ସଂବାଦ

ଶୁଣାଯାଉଅଛି ଯେ ମୁଗଲବନ୍ଦୀ ଇଲାକା ଗଡଜାତର ରାଜାମାନଙ୍କ ଦୁରବସ୍ଥା ଦୃଷ୍ଟିରେ ଗବର୍ଣ୍ଣମେଣ୍ଟ ଦୟାଦ୍ର ହୋଇ ସେମାନଙ୍କ ରାଜ୍ୟ ଯେପ୍ରକାର ଅନ୍ୟହସ୍ତ ନହୁଏ ସେଥିର ଉପାୟ କରିବାର ବିଚାର କରୁଅଛନ୍ତି । କୁଜଙ୍ଗ, ଆଳି, କନିକା ଓ ପଟିଆ ଏମାନେ ଋଣଗ୍ରସ୍ତ ହୋଇ ନିତାନ୍ତ ମନ୍ଦ ଅବସ୍ଥାରେ ଅଛନ୍ତି । ସରକାର ଶୀଘ୍ର କିଛି ଉପାୟ ନକଲେ ଅଦାଲତରେ ଡିଗ୍ରୀଜାରୀରେ ନିଲାମ ହେବ । ଏହି ପୁରାତନ ରାଜବଂଶ ମାନରକ୍ଷା କରାଇ ଗବର୍ଣ୍ଣମେଣ୍ଟ ଲୋକଙ୍କର ଆଦର ଓ ପ୍ରଶଂସାଭାଜନ ହେବେ ସନ୍ଦେହ ନାହିଁ ।

୬୨ । ଶୁଣା ଯାଉଅଛି ଯେ ଓଡ଼ିଶାର ଅନାଥ ବାଳକମାନଙ୍କ ଭବିଷ୍ୟତ ଭରଣ-ପୋଷଣ ଓ ଶିକ୍ଷା କାର୍ଯ୍ୟାଦି ନିର୍ବାହର ଉପାୟ ଚିନ୍ତା କରିବା ନିମନ୍ତେ ଗତ ଫିବ୍ରୁଆରୀ ମାସ ତା୯ରିଖରେ ଶ୍ରୀଯୁକ୍ତ ଗବର୍ଣ୍ଣର ଜେନେରଲ ବାହାଦୁର କଲିକତାରେ ଏକ ସଭା କରିବେ ।

## (୨ୟ ଭାଗ, ୧୭ । ୨ । ୧୮୬୭, ସଂଖ୍ୟା ୭)

୬୩ । ସାପ୍ତାହିକ ସଂବାଦ

ବାଲେଶ୍ୱରର କେତେକ ମହାଜନମାନେ ଏବର୍ଷ ଲୁଣପୋକ୍ତାନ କରିବାର ଉଦ୍ୟମ କରୁଅଛନ୍ତି । ଏଥିରେ ମଲଙ୍ଗିମାନଙ୍କର ଅନେକ ଉପକାର ହେବ ସନ୍ଦେହ-ନାହିଁ ଏବଂ ଏ ଦେଶୀୟଲୋକଙ୍କୁ କ୍ରମେ ସମସ୍ତ ବିଷୟରେ ନିଯୁକ୍ତ ହେବାର ଆବଶ୍ୟକ ।

୬୪ । ଓଡ଼ିଶାର ଅନାଥ ବାଳକମାନଙ୍କ ପ୍ରତିପୋଷଣର ବ୍ୟୟ ନିର୍ବାହ ନିମନ୍ତେ

ଗୃଡା ଅସୁଲ କରିବା ସକାଶେ ବାଲିଗାସ୍ଥ ସେକ୍ରେଟରୀଙ୍କ ନିକଟକୁ ଗବର୍ଣ୍ଣର ଜେନେରଲ ତାର ଡାକରେ ଖବର ଦେଇଅଛନ୍ତି ।

(୨ୟ ଭାଗ, ୨୩ । ୨ । ୧୮୭୭, ସଂଖ୍ୟା ୮)

## ୨୬ । ଅରକ୍ଷ ବାଳକଙ୍କ ଧର୍ମରକ୍ଷା

ଆମ୍ଭେମାନେ ଉପଲକ୍ଷ ପ୍ରସ୍ତାବରେ ପୂର୍ବେ ଏକ ପତ୍ରିକାରେ ଯାହା ବ୍ୟକ୍ତ କରିଥିଲୁଁ ସେଥିରେ କୌଣସି ପାଠକ ଆପତ୍ତି କରି ଏକଖଣ୍ଡ ପତ୍ର ପ୍ରେରଣ କରିଅଛନ୍ତି । ଉକ୍ତପତ୍ର ସାଧାରଣଙ୍କ ଗୋଚରାର୍ଥେ ଯଥା ସ୍ଥାନରେ ପ୍ରକାଶ କଲୁଁ । ଆମ୍ଭେମାନେ ଲେଖକଙ୍କ ମତାନୁଗାମୀ ହୋଇ ନପାରୁଁ କାରଣ ଅରକ୍ଷ ବାଳକଙ୍କ ଅବସ୍ଥା ଯାହା ହେଉ ଓ ମିଶନରୀମାନେ ତାହାଙ୍କୁ ଯେରୂପ ପ୍ରତିପାଳଣ କରନ୍ତୁ ସେଥିରେ ଅନୁସନ୍ଧାନ ନକରି କେବଳ ପାଦ୍ରୀଙ୍କ ହସ୍ତରେ ଉକ୍ତ ବାଳକଙ୍କୁ ସରକାର ସମର୍ପଣ କରୁଅଛନ୍ତି ବୋଲି ହିନ୍ଦୁ ମତାବଲମ୍ବୀମାନେ ଗବର୍ଣ୍ଣମେଣ୍ଟର ଧର୍ମ ବିଷୟରେ ଅପକ୍ଷପାତ ବୁଦ୍ଧିରେ ଦୋଷାରୋପ କରୁଅଛନ୍ତି ଓ ଯେସ୍ଥଳେ ତାହା ନିବାରଣର ସହଜ ଉପାୟ ଅଛି ସେସ୍ଥଳେ ଆମ୍ଭେମାନେ ବିବେଚନା କରୁଁ ଯେ ଉକ୍ତ ଉପାୟ ଅବଲମ୍ବନ କରିବାର ଉଚିତ । ଏପିଲମାନେ ବୟଃପ୍ରାପ୍ତ ହେଲେ ଆପଣା ଆପଣା ଇଚ୍ଛାନୁସାରେ ଧର୍ମାବଲମ୍ବନ କରିବାରେ କେହି ଏମାନଙ୍କୁ ନିଷେଧ କରିବେ ନାହିଁ । ସମ୍ପ୍ରତି ଏମାନଙ୍କୁ କୌଣସି ଧର୍ମ ମତାନୁସାରେ ଶିକ୍ଷା ନଦେଇ ସାଧାରଣରୂପେ ଶିକ୍ଷା ଦେବାର ଆବଶ୍ୟକ । କଲିକତାରେ ଏରୂପ ବାଳକମାନଙ୍କ ପ୍ରତିପାଳଣ ଓ ଶିକ୍ଷା ସମ୍ବନ୍ଧରେ ତତ୍ରସ୍ଥ କମିଟି ଯେ ନିୟମ କରିଅଛନ୍ତି ତାହା ସର୍ବତ୍ର ପ୍ରଚଳନ କଲେ ଅନାୟାସରେ ସକଳ ସମ୍ପ୍ରଦାୟୀ ଲୋକଙ୍କର ଆପତ୍ତି ଖଣ୍ଡନ ହେବ ଓ ପାଦ୍ରୀମାନଙ୍କ ଉପରେ ତତ୍ତ୍ୱାବଧାରଣର ଭାର ରହି ସେହି ନିୟମାନୁସାରେ କର୍ମ ଚଳାଇଲେ କେହି ଆପତ୍ତି କରିବେ ନାହିଁ । ଉକ୍ତ ନିୟମମାନ ଏହି ଯେ ବାଳକମାନଙ୍କୁ କୌଣସି ଧର୍ମ ବିଷୟରେ ଶିକ୍ଷା ନଦେଇ ସାଧାରଣ ବିଦ୍ୟା ଓ ଶିଳ୍ପଶିକ୍ଷା ଦିଆଯିବ ଓ ଯଥାସାଧ୍ୟ ଏମାନେ କୌଣସି ବ୍ୟବସାୟ ବାଣିଜ୍ୟ କର୍ମରେ ଶିକ୍ଷିତ ହେବେ । ପାଚକମାନେ ବ୍ରାହ୍ମଣ ବ୍ୟତୀତ ଅନ୍ୟ କୌଣସି ଜାତିର ଲୋକ ହେବେ ନାହିଁ ଓ ଗୋମାଂସ କି ଶୂକରମାଂସ ଖାଦ୍ୟ ସାମଗ୍ରୀ ବୋଲି ବ୍ୟବହାର ହେବ ନାହିଁ । ଏତିକ ମାତ୍ର ସଂକ୍ଷେପ ନିୟମରେ ଯେବେ ହିନ୍ଦୁ ଓ ମୁସଲମାନ ଧର୍ମ ସାଧାରଣରୂପେ ରକ୍ଷା ହୁଅଇ ତେବେ ତାହା କରିବାକୁ କାହାର ଆପତ୍ତି ଅଛି ?

ଆମ୍ଭେମାନେ ଭରସା କରୁଁ ଯେ ଅବସ୍ଥ ସାହାଯ୍ୟ କମିଟି ଏବିଷୟ ବିଶେଷ ପୂର୍ବକ କର୍ମକାରକ ହେବେ । କଲକତା କମିଟିଙ୍କ ରିପୋର୍ଟ ଗତ ମାସ ତା୧୩ ରିଖର କଲକତା ଗେଜେଟରେ ମୁଦ୍ରିତ ହୋଇଅଛି । ତାହା ପାଠ କଲେ ସବିଶେଷ ଅବଗତ ହୋଇପାରିବେ ।

## (୨ୟ ଭାଗ, ୨ । ୩ । ୧୮୬୭, ସଂଖ୍ୟା ୯)

୬୭ । ଶସ୍ୟର ଦର

ଆମ୍ଭେମାନେ ଅବଗତ ହେଲୁଁ ଯେ ମଫସଲରେ ଅନେକ ସ୍ଥଳରେ ଚାଉଳ ସମ୍ପୂର୍ଣ୍ଣ ଦୁଷ୍ପ୍ରାପ୍ୟ ହୋଇଅଛି ଓ ଯେଉଁଠାରେ ପ୍ରାପ୍ତ ହେଉଅଛି ଏପରି ଅଧିକାଂଶ ସ୍ଥାନରେ ଟଙ୍କାକୁ କଟକ ସେର । ୯ର ଭିତ ହୋଇଅଛି । ଏପରି ଅବସ୍ଥାରେ ସରକାରୀ ଚାଉଳ ନାନାସ୍ଥାନରେ ବିକ୍ରି କରିବା ଆବଶ୍ୟକ । ତାହାହେଲେ ଏକସ୍ଥାନରେ କେତେ ଚାଉଳ ଖର୍ଚ୍ଚ ହୋଇପାରେ ଏଥିର ଏକପ୍ରକାର ପରିମାଣ ପ୍ରାପ୍ତହେବ ଓ ତଦ୍ଵାରା ଆଗାମୀ ମାସମାନଙ୍କରେ କେତେ ଚାଉଳ ଦରକାର ତାହା ପୂର୍ବରୁ ସ୍ଥିର ହୋଇପାରିବ ଅର୍ଥାତ୍ ଚୈତ୍ରମାସ ଠାରୁ ଆଷାଢ଼ ମାସ ଶେଷପର୍ଯ୍ୟନ୍ତ ବର୍ତ୍ତମାନ ବିକ୍ରିର ଦ୍ୱିଗୁଣ ୨ ଅଧିକ ପରିମାଣରେ ଚାଉଳ ଦରକାର ହେବ । କେନ୍ଦ୍ରାପଡ଼ା ଓ ହରିହରପୁର ଡିବିଜନରେ ଅନାହାରରେ କେହି କେହି ମରିବାର ଶୁଣାଯାଏ । ଏଣୁକରି ବିକ୍ରିର ସଙ୍କଳ୍ପ ଶୀଘ୍ର କରିବାର ଆବଶ୍ୟକ ।

କଟକ ସହରରେ ବର୍ତ୍ତମାନ ସରକାରୀ ଚାଉଳ ବିକ୍ରି କରିବାର ଆବଶ୍ୟକ ହୋଇ ନାହିଁ ଯେହେତୁ ଅନ୍ୟାନ୍ୟ ସ୍ଥାନରୁ ଚାଉଳ ଆମଦାନି ହେବାରୁ ଏଠାର ଭିତ ସେର୧୦ ରୁ କମ ଏକପ୍ରକାର ରହିଅଛି । ଖୋର୍ଦ୍ଧା ଓ ଅନୁଗୁଳରୁ ବିଶେଷ ଚାଉଳ ଓ ଧାନ ଆସୁ ଅଛି ଓ ଗଡ଼ଜାତରୁ ଯେ ଚାଉଳ ଆସିବାର ସମ୍ଭାବନା ଥିଲା ତାହା ବର୍ତ୍ତମାନ ଦେଖା ଯାଉନାହିଁ ଯେହେତୁ ଗତସପ୍ତାହରେ ଯେତେ ଗାଡ଼ି ଓ ଡଙ୍ଗା ସୁନପୁର ଓ ଢେଙ୍କାନାଳ ପ୍ରଭୃତି ସ୍ଥାନରୁ ଆସିଅଛି ସେଥିରେ କେବଳ ଜଡା ଓ ଗେରି ତୈଳଜ ଶସ୍ୟ ଆସିଥିବାର ଜଣାଯାଏ ।

## (୨ୟ ଭାଗ, ୯।୩।୧୮୬୭, ସଂଖ୍ୟା ୧୦)

ସାପ୍ତାହିକ ସମ୍ବାଦ

୬୭ । ଏଦେଶର ଅନାଥ ଶିଶୁମାନଙ୍କ ସାହାଯ୍ୟାର୍ଥେ ଏପର୍ଯ୍ୟନ୍ତ ଟ୧୩୭୮୪ଙ୍କା ଚାନ୍ଦା ହୋଇଅଛି ।

୬୮ । ଦୁର୍ଭିକ୍ଷ ପୀଡ଼ିତ ଲୋକମାନଙ୍କ ଚିକିତ୍ସା ସକାଶେ ଯେ ଏକଜଣ ସବ୍‌ଆସିଷ୍ଟାଣ୍ଟ ସର୍ଜନ ଓ ଦୁଇଜଣ ନେଟିବ ଡାକ୍ତର ନିଯୁକ୍ତ ହୋଇଥିଲେ ସେମାନେ ଆସି କଟକରେ ପ୍ରବେଶ ହୋଇଅଛନ୍ତି । କେ କେଉଁ ସ୍ଥାନକୁ ଯିବ ତାହା ଏପର୍ଯ୍ୟନ୍ତ ସ୍ଥିର ହୋଇନାହିଁ ।

## (୨ୟ ଭାଗ, ୧୬।୩।୧୮୬୭ ମସିହା, ସଂଖ୍ୟା ୧୧ )

### ସାପ୍ତାହିକ ସମ୍ବାଦ

୬୯ । କଟକର ଆସିଷ୍ଟାଣ୍ଟ କଲେକଟର ଓ ରିଲିଫ ମେନେଜର ଶ୍ରୀଯୁକ୍ତ କର୍କଡ୍ଡ ସାହେବ ଜଣେ କର୍ମଚାରୀକୁ ପ୍ରହାର କରିଥିବାରୁ ତାହାର ନାଲିସାନୁସାରେ ମେଜେଷ୍ଟ୍ରେଟରେ ୫ ଟଙ୍କା ଅର୍ଥଦଣ୍ଡ ଦେଇଅଛନ୍ତି । ଏଥିରେ ବୋଧହୁଅଇ ସେ ଉତ୍ତର କାଳକୁ ଏରୂପ ଆଚରଣ ପରିତ୍ୟାଗ କରିବେ ।

୭୦ । କଟକରେ ଚାଉଳଦର ପୁନର୍ବାର ଅଧିକ ହେବାର ଆରମ୍ଭ ହୋଇଅଛି । ବର୍ତ୍ତମାନ ଟଙ୍କାକୁ ୧୦ ସେରରୁ ଅଧିକ ମିଳୁନାହିଁ ।

୭୧ । ଦୁର୍ଭିକ୍ଷ କମିଶନର ମଲେନସାହେବ କର୍ମ ଆରମ୍ଭ କରିଅଛନ୍ତି । କଟକ ପୁରୀ ବାଲେଶ୍ୱର ଜିଲ୍ଲାମାନଙ୍କର ରିଲିଫ ମେନେଜରମାନେ ତାହାଙ୍କ ଅଧୀନରେ କର୍ମ କରିବାର ଆଦିଷ୍ଟ ହୋଇ ଅଛନ୍ତି । ଅନ୍ନଛତ୍ରମାନ କ୍ରମେ କ୍ରମେ ଉଠାଇ ଦେଇ ତତ୍ସ୍ଥ ଲୋକମାନଙ୍କୁ ଆପଣା ଆପଣା ବ୍ୟବସାୟ ପୁନରାରମ୍ଭ କରିବା ସକାଶେ ସାହାଯ୍ୟ ଓ ଉତ୍ସାହ ଦେବାର ଚେଷ୍ଟା କରାଯିବ ଓ ଯେଉଁମାନେ ଅତ୍ୟନ୍ତ [କର୍ମର ଅକ୍ଷମ ସେମାନଙ୍କୁ ଅନ୍ନଛତ୍ରରେ ରଖାଯିବ । ବ୍ରାହ୍ମଣ କାୟସ୍ଥ ଓ ଭଦ୍ରଲୋକଙ୍କ ଘରର ସ୍ତ୍ରୀମାନେ ଯେଉଁମାନେ କି ପ୍ରାଣାନ୍ତ ହେଲେସୁଦ୍ଧା କର୍ମ କରିବେ ନାହିଁ ସେମାନଙ୍କୁ ଟିକଟଦ୍ୱାରା ଚାଉଳ ଦିଆଯିବ ।

## (୨ୟ ଭାଗ, ୨୩।୩।୧୮୬୭, ସଂଖ୍ୟା ୧୨ )

### ସାପ୍ତାହିକ ସମ୍ବାଦ

୭୨ । ଦୁର୍ଭିକ୍ଷ ନିବାରଣର ନୂତନ ଉପାୟମାନ ସୁବିଧାରେ ଚଳିବାର ତତ୍ତ୍ୱାବଧାନ କରିବା ନିମନ୍ତେ ତଳଲେଖିତ ଡିପୋଟି କଲେକ୍ଟରମାନେ ନିଯୁକ୍ତ ହୋଇଅଛନ୍ତି ।

ଶ୍ରୀଯୁକ୍ତ ବାବୁ ଜଗବନ୍ଧୁ ଗାଙ୍ଗୁଲି
,, ସୀତାକାନ୍ତ ମୁଖାର୍ଜି

ଶ୍ରୀ ଯୁକ୍ତ ହରନାଥ ଚକ୍ରବର୍ତ୍ତୀ
,, ହରକାଲୀ ମୁଖାର୍ଜି
,, ଏଚ. ଡବ୍ଲିଉ ଡବ୍ଲିଉ ଏକ୍ସ ସାହେବ
,, ଏ. ଡବ୍ଲିଉ ଜୋନ୍ସ ସାହେବ

## (୨ୟ ଭାଗ, ୩୦ । ୩ । ୧୮୬୭ ମସିହା, ସଂଖ୍ୟା ୧୩ )

୨୩ । କଟକଜିଲ୍ଲା ଜଗତସିଂହପୁରରେ ଆଉ ଗୋଟିଏ ସବଡିଭିଜନ ହେବାର ମଞ୍ଜୁର ହୋଇଅଛି । ଗବର୍ଣ୍ଣମେଣ୍ଟ ଆଜ୍ଞା କରିଅଛନ୍ତି ଯେ ଜିଲ୍ଲାରେ ବର୍ତ୍ତମାନ ଯେଉଁ ହାକିମମାନେ ଅଛନ୍ତି ସେଥିମଧ୍ୟରୁ ଏକଜଣ ଉକ୍ତ ସବଡିଭିଜନର ଭାର ନେବେ । ଜଗତସିଂହପୁରରେ ବର୍ତ୍ତମାନ କଚେରୀ ହେବାସକାଶେ ଉପଯୁକ୍ତ ସ୍ଥାନ ଅଛି କି ନାହିଁ ଏବିଷୟରେ ରିପୋର୍ଟ ତଲବ ହୋଇଅଛି ଓ ଗୃହ ନିର୍ମାଣ କରିବା ନିମନ୍ତେ ଉପଯୁକ୍ତ ସ୍ଥାନ ପସନ୍ଦକରି ଲେଖି ପଠାଇବା ସକାଶେ କଲେକ୍ଟର ସାହେବଙ୍କୁ ଆଦେଶ ହୋଇଅଛି ।

## ( ୨ୟ ଭାଗ, ୨୦ । ୪ । ୧୮୬୭ ,ସଂଖ୍ୟା ୧୬ )

### ବିଜ୍ଞାପନ

୨୪ । ସନ ୧୨୭୪ । ୭୫ ସାଲ ଅର୍ଥାତ୍ ଇଂ ସ ୧୮୬୭ । ୬୮ ମସିହାର ନୂତନ ପଞ୍ଜିକା ଉତ୍କଳ ଭାଷାରେ କଟକ ପ୍ରିଣ୍ଟିଂ କମ୍ପାନୀଙ୍କଦ୍ୱାରା ମୁଦ୍ରିତ ହୋଇ ବର୍ତ୍ତମାନ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ମୂଲ୍ୟ ପ୍ରତିଖଣ୍ଡ ଠ ୨ଙ୍କା । ❋

---

❋ ( ୨ୟ ଭାଗ ସଂ ୨ ସଂଖ୍ୟାରେ ମଧ୍ୟ ଏହି ବିଜ୍ଞାପନ ଦିଆଯାଇଅଛି । ସେତେବେଳକୁ ପାଞ୍ଜିର ମୂଲ୍ୟ କମି କରିଦିଆଯାଇଥିଲା । ସେ ବିଜ୍ଞାପନରେ ମୂଲ୍ୟ ଠ୦୪ ଲେଖା ଯାଇଅଛି । )

## (୨ୟ ଭାଗ, ୪ । ୫ । ୧୮୭୭ ମସିହା, ସଂଖ୍ୟା ୧୮)

### ସାପ୍ତାହିକ ସମ୍ବାଦ

୨୫ । କଟକର ଡେପୋଟି କଲେକ୍ଟର ଓ ଡେପୋଟି ମେଜେଷ୍ଟର ଶ୍ରୀଯୁକ୍ତ ଟେଲର ସାହେବ ଉତ୍ତରେଗନ କୃଷୀକର ଖାଲମାନଙ୍କର ଜଳନେଇ ଅଧିକ ପରିମାଣରେ ଶସ୍ୟ ଉତ୍ପନ୍ନ କରିବାର ଲଭ ଲୋକମାନଙ୍କ ହୃଦୟଙ୍ଗମ କରିବା ସକାଶେ ନିଯୁକ୍ତ ହୋଇ ଅଛନ୍ତି । ସେ କଟକ, ପୁରୀ, ବାଲେଶ୍ୱର ଓ ମେଦିନୀପୁର ଜିଲ୍ଲାମାନଙ୍କରେ ଭ୍ରମଣ କରି ଜଳ ନେବା ନିମନ୍ତେ ଲୋକମାନଙ୍କୁ ପ୍ରବର୍ତ୍ତାଇବେ । ଟେଲର ସାହେବଙ୍କର ବେତନ ୧୦୦୦୯ ହେବ ଏବଂ ଏ ବ୍ୟୟ ଗବର୍ଣ୍ଣମେଣ୍ଟର ନହୋଇ କୃଷୀକ ଦେବେ ।

## ( ୨ୟ ଭାଗ, ୧୮ । ୫ । ୧୮୭୭ ମସିହା, ସଂଖ୍ୟା ୨୦ )

### ସାପ୍ତାହିକ ସମ୍ବାଦ

୨୭ । ପାଠକମାନଙ୍କ ମଧ୍ୟର ଅନେକ ଲୋକ ଜାଣନ୍ତି ଯେ କେନ୍ଦୁଝର କିଲ୍ଲ ରାଜଧାନୀ ନିମିତ୍ତ ଯେତେବେଳେ ମୌରଭଞ୍ଜ କିଲ୍ଲ ମହାରାଜାଙ୍କ ନାତି ପକ୍ଷରୁ ପ୍ରଥମେ ମକଦ୍ଦମା ଆରମ୍ଭ ହୁଅଇ ସେତେବେଳେ କିଲ୍ଲ କେନ୍ଦୁଝରର କେତେକ ସରଦାରମାନେ ମୟୁରଭଞ୍ଜ ପକ୍ଷ ହେବାର କେନ୍ଦୁଝିର ନାବାଳକ ରାଜାଙ୍କ ପ୍ରାର୍ଥନାନୁସାରେ ଶ୍ରୀଯୁକ୍ତ ସୁପ୍ରିଣ୍ଟ ଗଡ଼ଜାତ ସାହେବ ସେମାନଙ୍କୁ କେନ୍ଦୁଝର କିଲ୍ଲର ବାହାରକରି ଦେଇ ଥିଲେ । ବର୍ତ୍ତମାନ ଅବଗତ ହେଲୁ ଯେ ଉକ୍ତ ସରଦାରମାନେ ଅନ୍ୟ କିଲ୍ଲରେ ବସତି କରିବାର ଇଚ୍ଛା କରି ଶ୍ରୀଯୁକ୍ତ ରେଭେନସା ସାହେବ ସୁପ୍ରିଣ୍ଟଙ୍କ ନିକଟରେ ଅନୁମତି ପ୍ରାର୍ଥନା କରିବାରୁ ସାହେବ ପ୍ରଶଂସିତ ସେମାନଙ୍କୁ କେନ୍ଦୁଝିର ରାଜା ଗୋଡ଼ତଳେ ପଡ଼ିବା କାରଣ ଆଜ୍ଞାଦେଲେ । ଗଡ଼ଜାତରେ ଆଇନ ଚଳିବ ନାହିଁ ବୋଲି ଯେ ସେଠା ବର୍ତ୍ତମାନ ଅନ୍ୟାୟରୂପେ ଚଳିବ ଏହା ଆମ୍ଭମାନଙ୍କୁ ଜଣା ନଥିଲା । ଫଳତଃ ସୁପ୍ରିଣ୍ଟ ଇଲାକା ହୁକୁମମାନ ଅନେକସ୍ଥଳରେ ଏରୂପ ନ୍ୟାୟ ବିରୁଦ୍ଧ ଓ ସ୍ୱେଚ୍ଛାଚାରୀ ଦେଖାଯାଏ ଯେ ଶୀଘ୍ର ଏଥିର ନିବାରଣ ନିମିତ୍ତ ଗବର୍ଣ୍ଣମେଣ୍ଟଙ୍କୁ ମନୋଯୋଗୀ ହେବା ଆବଶ୍ୟକ ବୋଧ ହୁଅଇ ।

## ( ୨ୟ ଭାଗ, ୨୭ । ୫ । ୧୮୭୭, ସଂଖ୍ୟା ୨୧)

### ସାପ୍ତାହିକ ସମ୍ବାଦ

୭୭ । କଟକ ସହରରେ ସରକାରୀ ଗୃହଳ ବିକ୍ରି ଗତ ବୁଧବାରଠାରୁ ଆରମ୍ଭ ହୋଇଛି ମାତ୍ର ଯେଉଁ ନିୟମରେ ବିକ୍ରି ହେଉଅଛି ସେଥିରେ କିଛି ଫଳ ହେବାର ନାହିଁ । ଏମନ୍ତ ବିକ୍ରିକୁ ମିଛ ବିକ୍ରି କହିଲେ ହୁଅଇ । ପ୍ରତିଜଣଙ୍କୁ ଯେବେ ଗୃହଅଣାଠାରୁ ଅଧିକ ନମିଳିଲା ତେବେ ସେଥିରେ ବିଶେଷ ଉପକାର କଣ ହେଲା ? ସର୍ବସାଧାରଣ ଏପରି ନିୟମରେ ଗୃହଳ ପାଇ ନପାରନ୍ତି ଓ ଗୃହଅଣା ଗୃହଳ ଏକ ଏକ ଗୃହସ୍ଥର ଏକ ଓଳିକୁ ଅଣ୍ଟଇ ନାହିଁ ।

## ( ୨ୟ ଭାଗ, ୧ । ୬ । ୧୮୭୭, ସଂଖ୍ୟା ୨୨ )

### ସାପ୍ତାହିକ ସମ୍ବାଦ

୭୮ । ସରକାରୀ କର୍ମଗୃହୀଙ୍କ ବେତନ ବୃଦ୍ଧି ପ୍ରସ୍ତାବ ।

ଶ୍ରୀଯୁକ୍ତ କମିଶ୍ନର ସାହେବ ଓଡ଼ିଶାର ସମସ୍ତ ଗବର୍ଣ୍ଣମେଣ୍ଟ କର୍ମଗୃହୀମାନଙ୍କ ବେତନ ବୃଦ୍ଧି ସକାଶେ ବଙ୍ଗଳା ଗବର୍ଣ୍ଣମେଣ୍ଟକୁ ଲେଖି ଅଛନ୍ତି ଯେ ମାସିକ ୫୧୦ଙ୍କା ଓ ତନ୍ନ୍ୟୂନ ବେତନଭୋଗୀ ଗୃକରମାନଙ୍କୁ ଶତକଡ଼ା ୫୫୦ ଏବଂ ୫୧୦ଙ୍କାରୁ ଅଧିକ ବେତନ ଭୋଗୀମାନଙ୍କୁ ଶତକଡ଼ା ୫୨୫ଙ୍କା ବୃଦ୍ଧି ଓ ଅଟଙ୍କିତ ଧାକମମାନଙ୍କୁ ସେମାନଙ୍କର ଉପର ଶ୍ରେଣୀର ବେତନ ଏବଂ ସମସ୍ତ ସରକାରୀ କାର୍ଯ୍ୟକାରକମାନଙ୍କୁ ଗସ୍ତଖର୍ଚ୍ଚା ପ୍ରତି ମାଇଲ ୫୦୨ ଲେଖାଏଁ ଦିଆ ଯିବାର ଅନୁରୋଧ କରି ଅଛନ୍ତି । ସମ୍ପ୍ରତି ସକଳ ପଦାର୍ଥ ଦୁର୍ମୂଲ୍ୟ ହୋଇଅଛି । ଏଥିରେ ବର୍ତ୍ତମାନ ବେତନରେ କାର୍ଯ୍ୟ ନିର୍ବାହ କରିବାର ଅସମ୍ଭବ ହୋଇଅଛି । ଅତଏବ ସମସ୍ତ କାର୍ଯ୍ୟକାରକମାନଙ୍କର ବେତନ ବୃଦ୍ଧି ହେବାର ଆବଶ୍ୟକ ।

୭୯ । କଟକରେ ଗୃହଳ ଭାଉ ।

ବର୍ତ୍ତମାନ କଟକରେ ଗୃଉଳର ଭାଉ ଟଙ୍କାକୁ ସେ୭ଚ ହୋଇଅଛି ଓ ଅଧିକ ଭାଣ୍ଡା ହେବାର ଲୋକେ ସମ୍ଭବ କରନ୍ତି । ଏ ସମୟରେ ସରକାରୀ ଗୃଉଳ ବିକ୍ରିହେଲେ

ଦ୍ରାକ୍ଷୀଙ୍କୁ ରକ୍ଷାହେବାର ମାତ୍ର ଅବଧି ପ୍ରବଳ ପରିମାଣରେ ବିକ୍ରିର ସୁଯୋଗ ହୋଇନାହିଁ । ଚୈତନ୍ୟ ଡାକ୍ତରମାନେ କେଉଁ ଅଭିପ୍ରାୟରେ ବିଳମ୍ବ କରୁଅଛନ୍ତି ଆମ୍ଭେମାନେ ନ ଜାଣୁ । ସରକାରୀ ଗୁଡ଼ଲ ବର୍ତ୍ତମାନ ଠିକାରୁ ୧୫।୵ ବିକ୍ରି ହେଉଅଛି ମାତ୍ର କାହାରିକୁ ସୂରଅଣାର ଅଧିକ ଦିଆ ଯାଉନାହିଁ । ଏଥିରେ ବଜାରର ଭଉ କ ଉତ୍ତପ ବଢ଼ିବ ।

୮୦ । ଗ୍ରୀଷ୍ମଯୋଗୁଁ ଅଦାଲତ ବନ୍ଦ ପ୍ରସ୍ତାବ ।

ଏ ସପ୍ତାହରେ ବିଶେଷ ଗ୍ରୀଷ୍ମ ହେବାରୁ ସରକାରୀ ମନୁଷ୍ୟମାନର କର୍ମ ଚଳିବାରେ ଅତ୍ୟନ୍ତ କ୍ଲେଶ ହୋଇଅଛି । ଦିନ ଘଂଟା ସମୟରେ ଗ୍ରୀଷ୍ମ ମାପଯନ୍ତ୍ରରେ ପାରଦ ୧୦୦ ଅଂଶ ପର୍ଯ୍ୟନ୍ତ ଉଠିବାର ଦେଖା ଯାଇଅଛି । ଏ ଯୋଗୁଁ ଏଠାର ଜଜସାହେବ ଅଦାଲତ କଚେରୀ ଏକମାସ ବନ୍ଦ କରିବାକୁ ହାଇକୋର୍ଟର ଅନୁମତି ପ୍ରାର୍ଥନା କରିଅଛନ୍ତି । ବାସ୍ତବରେ ଏ ପ୍ରକାର ଗ୍ରୀଷ୍ମରେ କଦାଚ କାର୍ଯ୍ୟ ହୋଇନପାରେ ଓ ଗବର୍ଣ୍ଣମେଣ୍ଟଙ୍କ ଉଚିତ କି ଏ ବିଷୟରେ କିଛି ବିଧାନ କରନ୍ତୁ । ଆମ୍ଭମାନଙ୍କ ବିବେଚନାରେ ଯେଉଁ ଦିନ ଅତ୍ୟନ୍ତ ଗ୍ରୀଷ୍ମ ହେବ ସେଦିନ କଚେରୀ ବନ୍ଦ କରିବାପାଇଁ ହାକିମଙ୍କୁ କ୍ଷମତା ଦିଆଗଲେ ଉତ୍ତମ ହେବ । ଏପର ଗ୍ରୀଷ୍ମକାଳ ଦୁଇମାସ ସକାଳ ୬ଘଣ୍ଟା ଠାରୁ ୧୦ଘଣ୍ଟା ପର୍ଯ୍ୟନ୍ତ କଚେରୀର ସମୟ ନିରୂପିତ କରିବା ଉଚିତ ।

( ୨ୟ ଭାଗ, ୮ । ୬ । ୧୮୬୭, ସଂଖ୍ୟା ୨୩ )

୮୧ । କଟକର ଶିଳ୍ପ କର୍ମ ।

ଫ୍ରାନ୍ସ ଦେଶର ରାଜଧାନୀ ପାରିଶ ନଗରରେ ଯେଉଁ ସାଧାରଣ ଦ୍ରବ୍ୟାଦିର ପ୍ରଦର୍ଶନ ହୋଇଅଛି ତନ୍ମଧ୍ୟରେ ଯେତେ ଯେତେ ଦେଶର ପଦାର୍ଥମାନ ଆସିଅଛି କଟକର ରୌପ୍ୟ ଓ ସୁବର୍ଣ୍ଣ ତାରରେ ନିର୍ମିତ ହୋଇଥିବା ଅଳଂକାରାଦିର ବିଶେଷ ପ୍ରଶଂସା ହୋଇଅଛି । ଏ ସମ୍ବାଦ ଅତି ଆନନ୍ଦକର ଅଟଇ । ଓଡ଼ିଶା ଦେଶକୁ ଦେଶ ବୋଲି ଗଣନା କରନ୍ତି ନାହିଁ କିମ୍ବା ଓଡ଼ିଶାବାସୀଙ୍କୁ ଅନେକଲୋକ କସ୍ତିଦା-ନବାସୀ ବୋଲି ଜ୍ଞାନକରନ୍ତି ମାତ୍ର ଏଠା ଲୋକମାନେ ଯେ ଶିଳ୍ପ କର୍ମର ଏକପ୍ରଧାନ ଶାଖାରେ ବିଶେଷ ନିପୁଣତା ଲାଭ କରି ବିଖ୍ୟାତ ପାରିସ ନଗର ପର୍ଯ୍ୟନ୍ତ ଆପଣା ଯଶଃ ବିସ୍ତାର କରିଅଛନ୍ତି ଏହା ସାମାନ୍ୟ ପ୍ରଶଂସାର ବିଷୟ ନୁହେ ।

× × × ×

[୨ । ଅଦାଲତର ଗ୍ରୀଷ୍ମାବକାଶ ।

ଶ୍ରୀଯୁକ୍ତ ଜଜସାହେବଙ୍କ ଅନୁରୋଧ କ୍ରମେ କଲିକତା ହାଇକୋର୍ଟ ଏହି ପ୍ରଦେଶର ସମସ୍ତ ଦେଓ୍ୱାନୀ ଅଦାଲତ ଚଳିତମାସ ତା୧୫ରିଖ ପର୍ଯ୍ୟନ୍ତ ବନ୍ଦ କରିବାକୁ ଅନୁମତି ଦେଇ ଅଛନ୍ତି । ଅତଏବ ଗ୍ରୀଷ୍ମହେତୁକ ଏହା ହୋଇଅଛି ମାତ୍ର ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ଦୁର୍ଗାପୂଜା ସମୟର ଛୁଟି ମଧ୍ୟରୁ ଏ ସମୟ ମିନ୍ହା ଦିଆଯିବ । ଅଦାଲତରେ ଯେଉଁମାନେ କର୍ମକରନ୍ତି ସେମାନେ ଧନ୍ୟ ।

( ୨ୟ ଭାଗ, ୨୪ । ୭ । ୧୮୬୭, ସଂଖ୍ୟା ୨୭ )

[୩ । ସାର୍ ହେନେରୀ ରିକେଟ୍ସ ସାହେବ ।

ଦୁର୍ଭିକ୍ଷ ଆରମ୍ଭରେ ମହାତ୍ମା ରିକେଟ୍ସ ସାହେବଙ୍କ ଗୁଣ କୀର୍ତ୍ତନ କରି ଆମ୍ଭେମାନେ ଯତ୍ କିଞ୍ଚିତରେ ଆପଣାକୁ କୃତାର୍ଥ କରିଥିଲୁଁ । ଉକ୍ତ ସାହେବଙ୍କର ଆମ୍ଭ ପ୍ରଦେଶପ୍ରତି ଯେପରି ଅକୃତ୍ରିମ ସ୍ନେହ ଓ ଦୟା ଅଛି ପୁନର୍ବାର ସେଥିର ଏକ ଆନନ୍ଦକର ଚିହ୍ନ ଦେଖି ତାହା ପାଠକ ମହାଶୟଙ୍କ ଜ୍ଞାନ ଇତଦାରରେ କ୍ଷଣମାତ୍ର ବିଳମ୍ବ କରିବା କର୍ତ୍ତବ୍ୟର ଗୁରୁତର ତ୍ରୁଟି ବୋଧକରି ଏଠାରେ ପ୍ରକାଶ କରୁଅଛୁଁ ।

ଦୁର୍ଭିକ୍ଷ ପଡ଼ିଲୁ ବିନ୍ଦୁ ଓଡ଼ିଶା ଲୋକମାନେ ଯେଉଁ ଦଶା ଛିଡ଼ା ଯେତେ ପ୍ରକାରରେ ସ୍ଥାନୀୟ ହାକିମ ଏବଂ ଗବର୍ଣ୍ଣମେଣ୍ଟଙ୍କ ଦ୍ୱାରା ନିନ୍ଦନୀୟ ଓ ଅପମାନିତ ହୋଇଅଛନ୍ତି ତାହା କାହାରିକୁ ଅବିଦିତ ନାହିଁ । ଯେବେ ଆମ୍ଭମାନଙ୍କ ଅବସ୍ଥା ଭଲ ଥିଲା ଅର୍ଥାତ୍ ଏପରି କୌଣସି ଦୁର୍ବିପାକ ପଡ଼ି ନଥିଲା ସେତେବେଳେ ଆମ୍ଭେମାନେ ସମସ୍ତଙ୍କର ପ୍ରିୟାସ୍ପଦ ହୋଇଥିଲୁଁ ଓ ରାଜପୁରୁଷମାନେ ଆପଣା ଇଚ୍ଛାନୁସାରେ ଆମ୍ଭମାନଙ୍କଠାରୁ କର ଗ୍ରହଣ କରି ସ୍ୱଚ୍ଛନ୍ଦରେ ରହୁଥିଲେ ଓ ଏକଥି ଭ୍ରମରେ ସୁଦ୍ଧା ଆମ୍ଭମାନଙ୍କର କଥା ସ୍ମରଣ କରୁନଥିଲେ । ବର୍ତ୍ତମାନ ଦୁର୍ଭିକ୍ଷ ହେବାରୁ ଯହୁଁ ଆମ୍ଭମାନଙ୍କ ଅବସ୍ଥା ଅତ୍ୟନ୍ତ ମନ୍ଦ ହେଲା ଓ ସରକାର ଆମ୍ଭଠାରୁ କର ନପାଇ ଆହୁରି ଆମ୍ଭ ଭରଣପୋଷଣ ନିମନ୍ତେ ଅଧିକତର ଖର୍ଚ୍ଚାନ୍ତ ହେଲେ ସେତେବେଳେ ଆମ୍ଭମାନଙ୍କର ଚର୍ଚ୍ଚା ଅନୁଷ୍ଠାନ କରିବାକୁ ହେଲା ଓ ବ୍ୟସ୍ତ ହେଉଛନ୍ତି ସମସ୍ତେ ଆମ୍ଭ ଉପରେ ବିରକ୍ତ ହେଲେ । ସର୍ବତ୍ରରେ ଓଡ଼ିଆଙ୍କର ନିନ୍ଦା ହେଲା ଓ ଓଡ଼ିଆମାନଙ୍କ ସ୍ୱଭାବ ଦୁର୍ଭିକ୍ଷର କାରଣ ସ୍ୱରୂପ ମଧ୍ୟ ବ୍ୟକ୍ତ ହେଲା ।

କଲିକତା ରିଭିଉ ପତ୍ରିକାରେ ଜଣେ ଲେଖକ ଓଡ଼ିଆଙ୍କ କେତେକ ନିନ୍ଦାବାକ୍ୟ ଅବତାରଣ କରିଥିଲେ । ସାର ହେନେରି ରିକେଟ ସାହେବ ଉକ୍ତ ବିଷୟ ପାଠ ମାତ୍ର ସହ୍ୟକରି ନପାରି ସ୍ୱକରଣ୍ଡେ ତାହା ଖଣ୍ଡନ ନିମନ୍ତେ ଉକ୍ତ ପତ୍ରିକାରେ ଏକ ପତ୍ର ପ୍ରକାଶ କରିଅଛନ୍ତି । ସମୁଦାୟ ପତ୍ର ଆମ୍ଭେମାନେ ଦେଖିନାହୁଁ ମାତ୍ର ତହିଁର କିୟଦଂଶ ହିନ୍ଦୁ ପେଟ୍ରିୟଟରେ ପାଠ କରିଅଛୁଁ । ତାହା ଏହି :—

"ସତ୍ୟ ଅଟେ ଯେ ଯେତେବେଳେ ଷ୍ଟାର୍‌ଲିଂ ସାହେବ ଓଡ଼ିଶାର ବିବରଣ ଲେଖିଥିଲେ ସେହି ସମୟରେ ଓ ତହିଁର କେତେଦିନ ଅନ୍ତ ପର୍ଯ୍ୟନ୍ତ ମଧ୍ୟ ଓଡ଼ିଶାରେ ସରକାରୀ କର୍ମମାନ ବିଦେଶୀୟ ଲୋକଙ୍କୁ ଦିଆ ଯାଉଥିଲା । ପୁରୀ ଓ ଖୋର୍ଦ୍ଧାର କଲେକ୍ଟରେ ଶ୍ରୀଯୁକ୍ତ ୱିଲିଅମ୍ ୱିଲ୍‌କିନ୍‌ସନ୍ ସାହେବ ଏକା ଓଡ଼ିଆମାନଙ୍କୁ ସରକାରୀ ଚାକରୀରେ ଆପଣାର ଉପଯୁକ୍ତତା ଦେଖାଇବାର ସୁଯୋଗ ପ୍ରଥମେ ଦେଇଥିଲେ । ଏ ମହତ୍ତାନୁଷ୍ଠାନର ପ୍ରଶଂସା ତାଙ୍କର ଅଟଇ । ଶ୍ରୀଯୁକ୍ତ ମିଲସ ସାହେବ ଓ ଆମ୍ଭେ ତାହାଙ୍କ ପଶ୍ଚାଦ୍‌ଗାମୀ ହେଲୁଁ ଓ ଅଳ୍ପ ବର୍ଷ ମଧ୍ୟରେ ଏ ପ୍ରଦେଶର ସରକାରୀ କର୍ମ ଚଳାଇବାର ପ୍ରାୟ ସମସ୍ତ ପଦମାନ ଓଡ଼ିୟାଙ୍କ ଦ୍ୱାରା ପୂର୍ଣ୍ଣ ହେଲା । ଏ ପ୍ରଦେଶର ବନ୍ଦୋବସ୍ତର ସମସ୍ତ ବିସ୍ତାରିତ କାର୍ଯ୍ୟମାନ ଓଡ଼ିୟା ଡେପୁଟି କଲେକ୍ଟରଙ୍କଦ୍ୱାରା ନିର୍ବାହ ହେଲା ଏବଂ ଆମ୍ଭେ କହାଇକରି କହୁନାହୁଁ ମାତ୍ର ତାହାଙ୍କର ପରିଶ୍ରମତା, ଉପଯୁକ୍ତତା ଏବଂ ସତତା କି ଯାହା ବିଶୁଦ୍ଧ ଖିଷ୍ଟର୍ପଣ ଓ ଚିନ୍ତ୍ୟ ସଂସର୍ଗରୁ ଜାତହେଲେ ସେ ସମସ୍ତ ଉତ୍କଳସ୍ଥ ଲୋକମାନଙ୍କର ଭାଗ୍ୟ ପ୍ରତି ଯଥାର୍ଥ ଫଳଦାୟକ ହେଲା । ଆମ୍ଭେ ଓଡ଼ିଆଙ୍କ ସହବାସରେ ୨୧ ବର୍ଷ କାଳ ଯାପନକଲୁଁ ଓ ସେମାନେ ଆମ୍ଭ ପ୍ରତି ଯେଉଁପ ବ୍ୟବହାର କରିଥିଲେ ତାହା ବର୍ତ୍ତମାନ ଆମ୍ଭର ଏକ ଅତ୍ୟନ୍ତ ଆନନ୍ଦଜନକ ସ୍ମରଣର ପ୍ରସଙ୍ଗ ହୋଇଅଛି । ଅତଏବ ଆମ୍ଭେ ଏପ୍ରକାର ନିନ୍ଦାବାକ୍ୟ କି ଯାହା ପତ୍ରିକାରେ ଲେଖାଅଛି ତାହା ବିରୁଦ୍ଧ କହିବା ମାତ୍ର ନକହି କଦାଚ ରହି ନପାରୁଁ ।"

( ସମ୍ପାଦକୀୟ )

× × ×

ମହାମାନ୍ୟ ୱିଲ୍‌କିନସନ ସାହେବଙ୍କଠାରୁ ଗୋରସାହେବ ପର୍ଯ୍ୟନ୍ତ ଉତ୍କଳ ଦେଶର ଯାହା କିଛି ମର୍ଯ୍ୟାଦାଥିଲା ତାହାଥିଲା । ଏବେ ଆଉ ଆମ୍ଭମାନଙ୍କ ସାହାପକ୍ଷ

କେହନାହିଁ । ଶ୍ରୀଯୁକ୍ତ ଟେଗୋର ସାହେବ ଏସ୍ଥାନ ତ୍ୟାଗ କରିବା ଜନ୍ତୁ ଏଠାରୁ ଶ୍ରୀ ଉଠି ଯାଇଅଛି । × ×

× × × ×

ଗୃହଲ ଭାଉ

୮୪ । ଏସପ୍ତାହରେ ମହାନଦୀ ଓ କାଠଯୋଡ଼ୀ ବଢ଼ିବାରୁ ସମ୍ବଲପୁରରୁ ଗୃହଲ ନୌକାମାନ ଅଧିକ ଆସିଅଛି ଏବଂ ଗୃହଲ ମଧ୍ୟ କଛୁ ଶସ୍ତା ହୋଇଅଛି । ନଦୀକୂଳରେ ସମ୍ବଲପୁରୀ ଗୃହଲ ସରୁ ସେ୯ର ଓ ମୋଟ ସେ୧୦ର ଲେଖାଏଁ ବିକ୍ରି ହେଉଅଛି ।

## (୨ୟ ଭାଗ, ୧୩ । ୭ ।୧୮୬୭, ସଂଖ୍ୟା ୨୮)

### ସାପ୍ତାହିକ ସମ୍ବାଦ

୮୫ । ଗଭର୍ଣ୍ଣମେଣ୍ଟ ଆଜ୍ଞା କରିଅଛନ୍ତି ଯେ କଟକର କମିସ୍ନର ବାଲେଶ୍ୱରର ଦୌରା କାର୍ଯ୍ୟରେ ଜଜସାହେବଙ୍କୁ ଯେ ସାହାଯ୍ୟ କରୁଥିଲେ ବର୍ତ୍ତମାନ କମିଶ୍ନରଙ୍କର ସ୍ୱକୀୟ କାର୍ଯ୍ୟ ଅଧିକ ହେବାରୁ ସେ ଆଉ ବାଲେଶ୍ୱରର ସେସନ କର୍ମ କରିବେ ନାହିଁ ।

୮୬ । ଫିରଙ୍ଗୀଙ୍କ ଦ୍ୱାରା ତହବିଲ ତୋସରଫ ।

ଦାରଜିଲିଂର ମନିଅର୍ଡର ଏଜେଣ୍ଟ ସରକାର ତହବିଲ ତୋସରଫ କରି ପଳାଇ ଥିବାରୁ ତାହାଙ୍କୁ ଗିରଫଦାର କରିଦେବା ବ୍ୟକ୍ତିକୁ ୫୨୫୦ଙ୍କା ଇନାମ ଦେବାପାଇଁ ସେସ୍ଥଳର ଡେପୁଟି କମିଶନର ବିଜ୍ଞାପନ ଦେଇଅଛନ୍ତି । ସେ ସ୍ଥଳର ମନିଅର୍ଡର ଏଜେଣ୍ଟ ଜଣେ ଫିରଙ୍ଗି ଅର୍ଥାତ୍ ଦେଶୀସାହେବ ଥିଲେ । ବାଲେଶ୍ୱରର ଇ, ଡିସିଲଭା ନାମକ ଜଣେ ଏହି ଜାତି ଲୋକ ତହବିଲ ତୋସରଫ କରିଥିଲା ତଥାପି ଦୁର୍ଭିକ୍ଷ ସମ୍ବନ୍ଧରେ କଟକ ରାଜପୁରୁଷମାନେ ଏହିଜାତିର ଲୋକଙ୍କୁ ଦେଶୀୟ ହିନ୍ଦୁ ମୁସଲମାନଙ୍କଠାରୁ ଅଧିକ ବିଶ୍ୱାସର ପାତ୍ର ଜ୍ଞାନକରନ୍ତି ।

### ଦୁର୍ଭିକ୍ଷ କମିଶନ ରିପୋର୍ଟ

ଦୁର୍ଭିକ୍ଷସମ୍ବନ୍ଧରେ ଯେଉଁ କମିଶନ ବସିଥିଲା ଓ ତାହାର ସଭ୍ୟେ ହାଇକୋର୍ଟର

ଜଜ କ୍ୟାମ୍ବେଲ୍‌ସାହେବ ଥିଲେ, ସେଥିର ରିପୋର୍ଟ ପ୍ରକାଶ ପାଇଅଛି । ଆମ୍ଭେ ଶୁଣିଲୁଁ ଯେ ଉକ୍ତ ରିପୋର୍ଟରେ କଟକ କମିଶନର ସାହେବ ଓଡ଼ିଆଙ୍କ ବିପକ୍ଷରେ ଥିବାର ସତ୍ୟ ଲେଖା ପାଇଥିବାରୁ ତାହା ଖଣ୍ଡନ ନିମିତ୍ତ କମିଶନର ସାହେବ ବାଛି ବାଛି ଅସତ୍ୟ କେତେକ ସାହେବଙ୍କ ମତପ୍ରାର୍ଥନା କରିଅଛନ୍ତି । ଆମ୍ଭେମାନେ ବୋଧକରୁ ଏ କମିଶନର ସାହେବ ଦେଶୀ ବିଦେଶୀ ସମସ୍ତ ଶ୍ରେଣୀର ସମ୍ଭ୍ରାନ୍ତବ୍ୟକ୍ତିଙ୍କ ମତ ପ୍ରାର୍ଥନା କରିଥାନ୍ତେ ।

## (୨ୟ ଭାଗ, ୨୦ । ୭ । ୧୮୬୭, ସଂଖ୍ୟା ୨୯)

୪୮ । ଓଡ଼ିଶା ଦୁର୍ଭିକ୍ଷ ରିପୋର୍ଟ ।

ଲଣ୍ଡନ ନଗରର ଜୁଲାଇମାସ ତା୨ରିଖରେ ତାର ଡାକଦ୍ୱାରା ଆସିଥିବା ସମ୍ବାଦରୁ ଜଣାଗଲା ଯେ ଓଡ଼ିଶା ଦୁର୍ଭିକ୍ଷ ରିପୋର୍ଟ ପାର୍ଲିଅମେଣ୍ଟ ସଭାରେ ଆଗତ ହୋଇ ଅଛି ଓ ଆମ୍ଭମାନଙ୍କର ଗବର୍ଣ୍ଣର ଜେନେରାଲ ଶ୍ରୀଯୁକ୍ତ ଲରେନ୍ସ ସାହେବ ଆପଣାର ଯେଉଁ ମନ୍ତବ୍ୟଲିପି ବିଲାତକୁ ପଠାଇଥିଲେ ତାହା ମଧ୍ୟ ସେଠାରେ ପ୍ରକାଶ ହୋଇଅଛି । ସେ ମନ୍ତବ୍ୟଲିପି ଅତି ବୃହତ୍ ଅଟଇ ଓ ସେଥିରେ ଗବର୍ଣ୍ଣର ଜେନେରାଲ ସାହେବ ଲେଖି ଅଛନ୍ତି ଯେ ଏଦୁର୍ଘଟନା ସମ୍ପର୍କରେ ବଙ୍ଗଳାର ଗବର୍ଣ୍ଣମେଣ୍ଟ ସାବଧାନତା, ବିଚକ୍ଷଣତା ଓ ବହୁଦର୍ଶିତାର ଅଭାବ ପ୍ରଦର୍ଶନ କରିଅଛନ୍ତି ଓ ଏସମସ୍ତ ଅଭାବର କୌଣସି ଉପଯୁକ୍ତ କାରଣ ନାହିଁ ।

ଲଣ୍ଡନ ନଗରର ଟାଇମସ ନାମକ ପତ୍ରିକା ଏହାରୂପ ଏକପ୍ରସ୍ତାବ ମୁଦ୍ରିତକରି ସେଥିରେ ଭାରତବର୍ଷୀୟ ଗବର୍ଣ୍ଣମେଣ୍ଟକୁ ଏହିରୂପ ଦୋଷୀ କରିଅଛନ୍ତି ଯେ ସେ ଦୁର୍ଭିକ୍ଷ ଆରମ୍ଭରେ କୌଣସି ଉପାୟ ଚେଷ୍ଟା କରି ନାହାନ୍ତି ।

ଅତଏବ ଦେଖାଯାଏ ଯେ ଦୁର୍ଭିକ୍ଷ କମିଶନରମାନେ ସ୍ଥାନୀୟ ଗବର୍ଣ୍ଣମେଣ୍ଟ ଓ କର୍ମଚାରୀମାନଙ୍କୁ ରକ୍ଷା କରିବାରେ ଯେତେ ଚେଷ୍ଟା କରିଅଛନ୍ତି ତାହା କିଛି ସଫଳ ହୋଇନାହିଁ । ପାର୍ଲିଆମେଣ୍ଟରେ ଯଥାର୍ଥ ବିଗ୍ରହହେବ ଓ ଯେ ଯେଉଁ ପ୍ରକାର କର୍ମ କରିଅଛନ୍ତି ସେପ୍ରମାଣରେ ନିନ୍ଦା ବା ପ୍ରଶଂସା ପାଇବେ । ମାତ୍ର ଆଶ୍ଚର୍ଯ୍ୟର ବିଷୟ ଯେ କମିଶନରମାନେ ଆପଣା ରିପୋର୍ଟରେ ଲେଫ୍‌ଟେନେଣ୍ଟ ଗବର୍ଣ୍ଣରଙ୍କୁ ନିର୍ଦ୍ଦୋଷ କରିବାର ଚେଷ୍ଟା କରିଅଛନ୍ତି କିନ୍ତୁ ଗବର୍ଣ୍ଣର ଜେନେରାଲ ସାହେବ ତାହାଙ୍କର ନିନ୍ଦା ରିପୋର୍ଟରେ କରିଅଛନ୍ତି । ଏସ୍ଥଳେ କମିଶନରମାନଙ୍କ ମତ ଗ୍ରାହ୍ୟ ଧାର୍ଯ୍ୟ ହେବନାହିଁ ।

କମିଶନରମାନେ ଆପଣା ରିପୋର୍ଟରେ ଦୁର୍ଭିକ୍ଷ ସମ୍ବନ୍ଧ ସମସ୍ତ ବିଷୟ ବାହୁଲ୍ୟରୂପେ ଲେଖି ଅଛନ୍ତି ମାତ୍ର ଅପୂର୍ବ କୌଶଳ ଦ୍ୱାରା କୌଣସି ହାକିମଙ୍କୁ ଅତ୍ୟନ୍ତ ଦୋଷୀ କରିନାହାନ୍ତି । ଓଡ଼ିଶା ହାକିମମାନଙ୍କ ପକ୍ଷରେ ସାଧାରଣରୂପେ ଏହି ରିପୁ ଦେଇ ଅଛନ୍ତି ଯେ ସେମାନଙ୍କର ସାହସ କିଛିମାତ୍ର ନାହିଁ । କେବଳ ଷ୍ଟ୍ରା ବାର୍ଟନ ସାହେବ ପୁରୀ କଲେକ୍ଟରଙ୍କର ପ୍ରଶଂସା କରିଅଛନ୍ତି ଓ ଅପରସ୍ଥାନର ହାକିମ ମଧ୍ୟରେ ନଦିୟାର କଲେକ୍ଟର ଓ କମିଶନର ସାହେବଙ୍କର ବିଶେଷ ପ୍ରଶଂସା ହୋଇଅଛି ।

## ( ୨ୟ ଭାଗ, ୨୭ । ୭ । ୧୮୬୭, ସଂଖ୍ୟା ୩୦ )

୮୯ । ଚାଉଳ ଦର ।

କଟକରେ ବର୍ତ୍ତମାନ ଚାଉଳର ଦର କିଞ୍ଚିତ ଭଲ ହୋଇଅଛି । ନଦୀକୂଳରେ ସେ୧୧ର ଓ ବଜାରରେ ସେ୧୦ର ପର୍ଯ୍ୟନ୍ତ ପ୍ରାପ୍ତ ହୁଅଇ । କି ଆଶ୍ଚର୍ଯ୍ୟ ଏତେବେଳେ ସେ୧୧ର ଟଙ୍କାକୁ ମିଳିଲାବୋଲି ଲୋକେ ଶ୍ଳାଘା ଜ୍ଞାନ କରୁଅଛନ୍ତି । ଗତବର୍ଷ ପୂର୍ବ ଟଙ୍କାକୁ ସେ୨୦ର ମହାର୍ଘ ବୋଧ ହେଉଥିଲା ।

## ( ୨ୟ ଭାଗ, ୪ । ୮ । ୧୮୬୭, ସଂଖ୍ୟା ୩୧ )

୯୦ । ଆତ୍ମ ସମ୍ବାଦ-ଅକ୍ଷର ଛାପା ।

ଆମ୍ଭେମାନେ ବର୍ଷାଧିକ କାଳ ପତ୍ରିକା ପଥରଛାପାରେ ଚଳାଇ ଆଜଠାରୁ ଅକ୍ଷରଛାପାରେ ପତ୍ରିକା ଆରମ୍ଭ କଲୁଁ । ପଥରଛାପା ଅକ୍ଷର ପାଠକମାନେ ପଢ଼ିବାକୁ କଷ୍ଟ ପାଉଥିଲେ ତାହା ଆମ୍ଭେମାନେ ଜାଣିକରି ମଧ୍ୟ ଉପାୟାନ୍ତରରେ ସେଥିର ପ୍ରତିକାର କରିବାକୁ ସକ୍ଷମ ହୋଇ ନଥିଲୁଁ । ଏଥର ବୋଧ ହୁଅଇ ସେମାନେ ତାହା କଷ୍ଟ ପାଇବେନାହିଁ ଓ ଅକ୍ଷର ଛାପାରେ ଆମ୍ଭେମାନେ ଅତ୍ୟଲ୍ପଦିନ ହେଲା କାର୍ଯ୍ୟାରମ୍ଭ କରିଥିବାରୁ ପତ୍ରୀ କି ପ୍ରଥମ ଭୁଲ ଛିନସମ୍ବାଦ କର୍ମ ସମ୍ପନ୍ନରେ ଉତ୍ତମ ହେଲାନାହିଁ ମାତ୍ର ଅଳ୍ପକାଳରେ ଉତ୍ତମ ମୁଦ୍ରାଙ୍କନ ଦ୍ୱାରା ପାଠକ ମହାଶୟଙ୍କୁ ଆହ୍ଲାଦିତ କରିବୁ ଏପରି ଭରସା କରୁଅଛୁଁ । ଗତବର୍ଷ ଅଗଷ୍ଟମାସରେ ପତ୍ରିକା ଆରମ୍ଭ ସମୟରେ ଯେତେ ଗ୍ରାହକ ହୋଇଥିଲେ ବର୍ତ୍ତମାନ ତହିଁର ଦ୍ୱିଗୁଣରୁ ଅଧିକ ଗ୍ରାହକ ହୋଇଅଛନ୍ତି । ଏହେତୁରୁ ଆମ୍ଭେମାନେ ଉତ୍ସାହିତ ହୋଇ କ୍ରମଶଃ ପତ୍ରିକାକୁ ସର୍ବସାଧାରଣଙ୍କର

ଆଦରଣୀୟ କରିବାକୁ ସମ୍ୟକ ପ୍ରକାରରେ ଯତ୍ନ କରୁଅଛୁଁ । ଉକ୍ତ ଯତ୍ନ ଓ ପରିଶ୍ରମ ସଫଳ କରିବାର ଭାର ସର୍ବସାଧାରଣଙ୍କଠାରେ ଅର୍ପଣ କରି ନିୟମାନୁସାରେ କାର୍ଯ୍ୟରେ ପ୍ରବୃତ୍ତ ହେଲୁଁ ।

୯୧ । ଗୁଡ଼ର ଦର

କଟକରେ ଗୁଡ଼ର ବର୍ତ୍ତମାନ ସେ୧୬୲ର ମିଳୁଅଛି । ବାଲେଶ୍ବରରେ ସେ୧୩ର ପୁରୀରେ ସେ୧୧ର ହୋଇଅଛି ।

## (୬ଷ୍ଠ ଭାଗ, ୧୦।୮।୧୮୭୭, ସଂଖ୍ୟା ୩୨ )

ଗୁଡ଼ର ଦର

୯୨ । ଗତସପ୍ତାହରେ କଟକ ନଗରରେ ଟଙ୍କାକୁ ସେ୧୪ର ପର୍ଯ୍ୟନ୍ତ ଗୁଡ଼ର ବିକ୍ରୟ ହୋଇଥିଲା ।

୯୩ । ପ୍ରେରିତପତ୍ର

× × × ×

ମହାଶୟ,

ମୁଁ କୌଣସି କର୍ମରେ ଛେଣ୍ଡିପଦା ( in Angul ) କୁ ଯାଇଥିଲି । ସେଠାରେ ଦେଖିଲିଯେ ଲୌହନିର୍ମିତ କାମାମାନେ ପ୍ରସ୍ତର ଚୂର୍ଣ୍ଣକରି ପ୍ରସ୍ତର କୋଇଲା ସମ୍ମିଳନରେ ଦଗ୍ଧକରି ଲୌହ ଜାତ କରୁଅଛନ୍ତି । ତାହା ଦେଖି ମୁଁ ସେମାନଙ୍କୁ ଉକ୍ତ ଲୌହ-ଜନକ ପ୍ରସ୍ତରର ଓ ପ୍ରସ୍ତର କୋଇଲା ପ୍ରାପ୍ତି ବିଷୟ ପଚାରିବାରୁ ସେମାନେ କହିଲେ କି ଏହି ପ୍ରଦେଶରେ ବହୁକାଳରୁ ଉକ୍ତ ବହୁ ଲାଭକର ପଦାର୍ଥମାନ ବହୁ ପରିମାଣରେ ଓ କିଲେ ତାଳଚେରରେ ମଧ୍ୟ ସେ ସବୁ ପ୍ରାପ୍ତ ହେଉଅଛି । ଏହା ବଡ ଆକ୍ଷେପର ବିଷୟ ଯେ ଏପରି ଲାଭକର ପଦାର୍ଥର ବ୍ୟବସାୟ ନିମିତ୍ତ ସରକାର କିଛି ମନ ନିବେଶ କରିନାହାନ୍ତି । ଇତି

ସବିନୟ ନିବେଦନଂ

— ଅନୁଗୁଳ

ଓଡ଼ିଶା ଗଡ଼ଜାତରେ ପଥର କୋଇଲ ଜନ୍ମୁଅଛି ବୋଲି ଆମ୍ଭେମାନେ ଏଥି ପ୍ରଥମ ଶ୍ରବଣ କରୁଅଛୁଁ । ପତ୍ର ପ୍ରେରକ ମହାଶୟ ଅନୁଗ୍ରହ ପୂର୍ବକ ଲୌହପ୍ରସ୍ତୁତ କରିବାର ସମୁଦାୟ କ୍ରିୟା ଲେଖି ଏକ ଏକଖଣ୍ଡ ପଥର କୋଇଲ ଓ ଲୌହମୟ ପ୍ରସ୍ତର ସହିତ ପଠାଇଲେ ସର୍ବସାଧାରଣର ବିଶେଷ ଉପକାର ହେବ ।

(ସମ୍ପାଦକ)

## ( ୨ୟ ଭାଗ, ୧୭ । ୮ । ୧୮୬୭, ସଂଖ୍ୟା ୩୩ )

୯୪ । ଚାଉଳ ଦର ।

ଗତସପ୍ତାହରେ ଚାଉଳ ଦର କଟକରେ ସେ୧୩ର, ପୁରୀରେ ସେ୧୧ର ଓ ବାଲେଶ୍ୱରଠାରେ ସେ୧୩ର ଲେଖାଏଁ ବିକ୍ରି ହୋଇଥିଲା ।

## (୨ୟ ଭାଗ, ୨୪ । ୮ । ୧୮୬୭, ସଂଖ୍ୟା ୩୪ )

୯୫ । ଭୂପାଳ ନିକଟସ୍ଥ ରାଜଘରର ମହାରାଜା ମହମ୍ମଦୀୟ ଧର୍ମ ଅବଲମ୍ବନ କରିଅଛନ୍ତି । ଗବର୍ଣ୍ଣର ଜେନେରାଲ ବାହାଦୁରଙ୍କ ଏଜେଣ୍ଟ ତାହାଙ୍କୁ ଉକ୍ତକର୍ମରୁ ସ୍ଥଗିତ କରିବା ସକାଶେ ଅନେକ ଚେଷ୍ଟା କରିଥିଲେ ମାତ୍ର ସମସ୍ତ ନିଷ୍ଫଳ ହେଲା ।

## (୨ୟ ଭାଗ, ୩୧ । ୮ । ୧୮୬୭, ସଂଖ୍ୟା ୩୫)

୯୬ । କଟକରେ ଚାଉଳ ଦର ସେ୧୯ର ।

## (୨ୟ ଭାଗ, ୧୪ । ୯ । ୧୮୬୭, ସଂଖ୍ୟା ୩୭)

୯୭ । ଗତ ଝୁଲଣଯାତ୍ରାଦିନ କେନ୍ଦୁଝରର ନାବାଳକ ରାଜା ବୟଃପ୍ରାପ୍ତ ହୋଇ ଆପଣା ରାଜ୍ୟର ଭାର ଗ୍ରହଣକଲେ । ଶୁଣାଯାଏ ସେ ଦୁର୍ଗୋତ୍ସବପରେ ଆପଣା ଗଡକୁ ଗମନ କରିବେ ।

୯୮ । ଦରିଦ୍ରମାନଙ୍କ ସାହାଯ୍ୟପାଇଁ ଗବର୍ଣ୍ଣମେଣ୍ଟରୁ ଧନ୍ୟବାଦ ।

ଗତ ଦୁର୍ଭିକ୍ଷରେ ଓଡ଼ିଶାପ୍ରଦେଶରେ ତଳଲେଖିତ ଜମିଦାର ଓ ଭଦ୍ରଲୋକ-

ମାନେ ଦରିଦ୍ରମାନଙ୍କୁ ସାହାଯ୍ୟ କରିଥିବାରୁ ଗବର୍ଣ୍ଣମେଣ୍ଟର ଧନ୍ୟବାଦ ପାଇଅଛନ୍ତି ।

କଟକ— ରାଧାଶ୍ୟାମ ନରେନ୍ଦ୍ର, ଗୌରଶ୍ୟାମ ବେହେରା, ଜଗୁସିଂହ,
ଦୁର୍ଗାନାରାୟଣ ବୋଷ, ଅନ୍ତର୍ଯ୍ୟାମୀ ମିଶ୍ର, ମୌଲବୀ ସମୁଦ
ଗୋଲାମ କାଦର, ଚୌଧୁରୀ ସହଦେବ ମହାପାତ୍ର, ସୁଦର୍ଶନ ସାହୁ,
ବଳରାମ ଚୌଧୁରୀ, ସଚ୍ଚିଦାନନ୍ଦ ଦାସ, ନିମାଇ ଚରଣ ନେଉଗୀ,
ମନରାମ ସାହୁ, କୈଳାସ ଚନ୍ଦ୍ର ଘୋଷ, ପାଦ୍ରୀ ବକଲି ଏବଂ
ମିଲର ସାହେବ ।

ପୁରୀ— ଭଗବାନ ରାଏଠ ସିଂହ, ଚୌଧୁରୀ ରଘୁନାଥ ଦାସ, ରାଜା ପାରିକୁଦ,

ବାଲେଶ୍ୱର— ଶ୍ୟାମାନନ୍ଦ ଦେ, ଗୋପୀ ନନ୍ଦନ ଚୌଧୁରୀ, ସୁରେନ୍ଦ୍ର ନାରାୟଣ
ଚୌଧୁରୀ, ଦ୍ୱାରକାନାଥ ଭୂୟାଁ, ନିତାଇ ଚରଣ ଦାସ, ଶିବ ପ୍ରସାଦ
ପଣ୍ଡା, ରାମ ନାରାୟଣ ଦାସ, ମଦନ ମୋହନ ଦାସ, କୈଳାସ ଚନ୍ଦ୍ର
ରାୟ ମହାଶୟ, ରାମ ପ୍ରସାଦ ବୋଷ, ନିମାଇ ଚରଣ ବୋଷ,
ନରସିଂହ ଚରଣ ସିଂହ, ପଦ୍ମ ଲୋଚନ ମଣ୍ଡଳ, ଏନ, ଜାଗେନ୍ଦ୍ରା,
ପଞ୍ଚୁ ମିୟାଁ, ଇନାୟେତ ମିୟାଁ, ମୌଲବୀ ଅବଦୁର ରଉଫ,
ରାମ ଜେନା, ପଞ୍ଚୁ ଜେନା, ଓ ପାଦ୍ରୀ ମିଲର ସାହେବ ।

୯୯ । କଙ୍ଗାଳୀଙ୍କ ଜାତି କରଣ ।

× × × । ଅନେକଲୋକ ଦୁଇ ତିନ ଜଣ କଙ୍ଗାଳୀ ଦାସ ଦାସୀ ରୂପେ ଆପଣା ଗୃହରେ ପ୍ରତିପାଳନ କରୁଅଛନ୍ତି ମାତ୍ର ସେମାନଙ୍କ ହସ୍ତରେ ଜଳସ୍ପର୍ଶ କରୁନଥିବାରୁ ମୁନିବର ସକଳ ପ୍ରୟୋଜନ ସାଧିତ ହେଉନାହିଁ ଏବଂ ଗୃହର ମଧ୍ୟ ଅପରାଙ୍କୁ ହିନ ଜୀବନର ଦୁଃଖରେ କାଳହରଣ କରୁଅଛି । କେତେଲୋକ ଦାରୁଣ ଉଦର ପୀଡ଼ାରେ ଅନ୍ଧତାମୁ ହୋଇ ଅଭକ୍ଷ ଭକ୍ଷଣ କରିଅଛନ୍ତି କିନ୍ତୁ ଯେତେବେଳେ ସେମାନେ ଅନୁତାପରେ ଦଗ୍ଧ ହେଉ ଅଛନ୍ତି ଏମନ୍ତଲୋକଙ୍କୁ ସ୍ୱଜାତିରେ ପ୍ରତ୍ୟାଗମନର ଉପାୟ କରିଦେବା ସର୍ବାଗ୍ରେ ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ ହୋଇଅଛି ।

୧୦୦ । ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ସାଧାରଣଙ୍କୁ ଜଣାଉଅଛୁଁ ଯେ ଅନ୍ତତଃ ଏକ ମହାନୁଭବ ବ୍ୟକ୍ତି କଙ୍ଗାଳୀଙ୍କ ଚିନ୍ତାରେ ଚିନ୍ତିତ ଅଛନ୍ତି । ଶ୍ରୀଯୁକ୍ତ ବାବୁ ସଚ୍ଚିଦାନନ୍ଦ ଦାସ ଦୁର୍ଭିକ୍ଷ ଆକ୍ରାନ୍ତ ଦୁଃଖୀଙ୍କର ରକ୍ଷା ରକ୍ଷଣରେ ଯତ୍ନ କରିଥିଲେ

ଏବଂ ଏତେବେଳେ ମଧ୍ୟ ସେମାନଙ୍କର ଗୋଟିଏ ମାତ୍ର ଗୁରୁତର ଅଭାବ ମୋଚନ ପକ୍ଷରେ ଯତ୍‌ପରୋନାସ୍ତି ଯତ୍ନ କରୁଅଛନ୍ତି ।

ବିଗତ ଶନିବାରଦିନ ପ୍ରଶଂସିତ ବାବୁ ଏନଗରର କେତେକ ସମ୍ଭ୍ରାନ୍ତବ୍ୟକ୍ତିଙ୍କ ସହିତରେ ଏକସଭା ପ୍ରସ୍ତୁତ କରି ଓଡ଼ିଶା ପ୍ରଦେଶର ନାନାସ୍ଥାନନିବାସୀ ଉତ୍କଳ ପଣ୍ଡିତମାନଙ୍କୁ ସେଠାକୁ ଆହ୍ୱାନ କରିଥିଲେ ଏବଂ ସେମାନଙ୍କଠାରେ ବଙ୍ଗାଳିମାନଙ୍କ ଜାତିକରଣ ବିଷୟରେ ବ୍ୟବସ୍ଥା ପ୍ରାର୍ଥନା କରିଅଛନ୍ତି । ପଣ୍ଡିତମାନେ ପ୍ରାୟ ସମସ୍ତେ ବଙ୍ଗାଳୀମାନେ ଜାତିହୋଇ ପାରିବାର କହି ଅଛନ୍ତି ମାତ୍ର ସମସ୍ତଙ୍କ ସ୍ୱାକ୍ଷରରେ ବ୍ୟବସ୍ଥା ଲେଖିଦେଇ ନାହାନ୍ତି ଓ ଜାତି ହେବାପାଇଁ କିରୂପ ପ୍ରାୟଶ୍ଚିତ୍ତ କରିବାର ଆବଶ୍ୟକ ତାହା କିଛି ନିର୍ଦ୍ଦେଶ କରିନାହାନ୍ତି । ଆମ୍ଭେମାନେ ଭରସା କରୁଁ ଯେ ବିଚିତ୍ରାନନ୍ଦ ବାବୁଙ୍କର ମାନସ ଶୀଘ୍ର ସଫଳହେଉ ।

ଆମ୍ଭେମାନେ ଏସ୍ଥଳରେ ହିତସାଧକ ଶ୍ରୀ ବିଚିତ୍ରାନନ୍ଦ ବାବୁଙ୍କୁ ଏହି ଉପଦେଶ ଦେଉଅଛୁଁ ଯେ ପଣ୍ଡିତଙ୍କର ବ୍ୟବସ୍ଥା ଓ ପ୍ରାୟଶ୍ଚିତ୍ତର ଅନୁକ୍ରମ ଏକତ୍ରରେ ମୁଦ୍ରିତ କରି ସମସ୍ତ ଜମିଦାରମାନଙ୍କ ନିକଟକୁ ଏକ ଏକ ଖଣ୍ଡ ପ୍ରେରଣ କରନ୍ତୁ ଏବଂ ହାଟ ବଜାର ଇତ୍ୟାଦି ପ୍ରକାଶ୍ୟ ସ୍ଥାନରେ ସର୍ବସାଧାରଣଙ୍କ ଗୋଚରାର୍ଥେ ସେହିର ଘୋଷଣା ଦେଉନ୍ତୁ । ଗବର୍ଣ୍ଣମେଣ୍ଟ କର୍ମଗୃହୀମାନେ ଅବଶ୍ୟ ଏ ବିଷୟରେ ସାହାଯ୍ୟ କରିବେ । ଜମିଦାର ମାନଙ୍କୁ ଆମ୍ଭେମାନେ ବିଶେଷରୂପେ ଅନୁରୋଧ କରୁଅଛୁଁ ଯେ ସେମାନେ ଆପଣା ଆପଣା ରଇତଙ୍କୁ ଯଥାର୍ଥରୂପେ ଏବିଷୟରେ ସାହାଯ୍ୟ କରିବେ ।

( ୨ୟ ଭାଗ, ୨୮ । ୧୨ । ୧୮୭୭, ସଂଖ୍ୟା ୪୦ )

୧୦୧ । ବାୟୁ ରୋଗୀମାନଙ୍କ ମନରଞ୍ଜନ ପ୍ରଚେଷ୍ଟା ।

ଏ ନଗରର ସିଭିଲ ଇଲ୍‌କାର ଡାକ୍ତର ଷ୍ଟିୱାର୍ଟ ସାହେବ ବାୟୁ ରୋଗୀ ମାନଙ୍କର ମନରଞ୍ଜନ ନିମନ୍ତେ ପ୍ରତି ଶନିବାର ସନ୍ଧ୍ୟାବେଳେ ପାଗଲ ହସପାତାଲଠାରେ ବେଶ୍ୟାନର୍ତ୍ତନର ନିୟମ ସ୍ଥାପନ କରିଅଛନ୍ତି । ବେଶ୍ୟାମାନେ ଢୁଲୁଢଣ୍ଟା ନୃତ୍ୟ ଗୀତାଦିରେ ଅତିବାହିତ କରନ୍ତି । ଗବର୍ଣ୍ଣମେଣ୍ଟ ଏମାନଙ୍କୁ ବେତନ ଦେଇ ନିଯୁକ୍ତ କରି ଅଛନ୍ତି । କ୍ରମେ କ୍ରମେ ପାଗଲ ହାସପାତାଲ ଲକ୍ଷ୍ଣୌ ନବାବର ରଙ୍ଗବାଟୀ ପରି ହୋଇ ଆସୁଅଛି ।

୨୦୨ । ଘୋଡ଼ ଦୌଡ଼ ।

ଗତ ଶୁକ୍ରବାର ଓ ଶନିବାର ଘୋଡ଼ଦୌଡ଼ ଶେଷହେଲା ଏବଂ ତାହା ସଙ୍ଗେ ସଙ୍ଗେ କେତେ ନଗରବାସୀ ରୌଦ୍ରର ଉତ୍ତାପରେ ଏବଂ ଶୀତକାଳର ଉଷ୍ଣ ଶଯ୍ୟା ପରିତ୍ୟାଗ କରି ଥର ଥର କଲେବରରେ ଗୃହକୁ ଆଗନ୍ତୁକ ଦୌଡ଼କଲେ । ଆମ୍ଭେମାନେ ଭରସା କଲୁଁ ସେମାନଙ୍କର ପରିଶ୍ରମ ବିଫଳ ହୋଇନାହିଁ । ଆଗାମୀ ମଙ୍ଗଳବାର ଘୋଡ଼ା-ଦୌଡ଼ କ୍ରୀଡ଼ାର ଶେଷହେବ ।

୨୦୩ । ଶ୍ରୀଯୁକ୍ତ ଭଗୀରଥ ମହୀନ୍ଦ୍ର ବାହାଦୁର ।

କାଲି ଢେଙ୍କାନାଳର ରାଜା ଶ୍ରୀଯୁକ୍ତ ଭଗୀରଥ ମହୀନ୍ଦ୍ର ବାହାଦୁର ଦୀନ ଦୁଃଖୀମାନଙ୍କୁ ଦୁର୍ଭିକ୍ଷ ସମୟରେ ବିଶେଷରୂପେ ସାହାଯ୍ୟ ପ୍ରଦାନ କରିଥିବାରୁ ଶ୍ରୀଯୁକ୍ତ ଗବର୍ଣ୍ଣର ଜେନେରାଲ ସାହେବ ଆହ୍ଲାଦ ପୂର୍ବକ ତାହାଙ୍କୁ 'ମହାରାଜା' ପଦ ଦେଇ ଅଛନ୍ତି । ଏଥିପୂର୍ବେ ଏହାଙ୍କୁ 'ରାଜାବାହାଦୁର' ପଦ ଦିଆଯାଇଥିଲା କିନ୍ତୁ ତାହା ଉପଯୁକ୍ତ ନଥିବାରୁ ଏଥର ଉତ୍ତମ ସଂଶୋଧନ ହେଲା । ଓଡ଼ିଶାରେ କି ଆଉ କେହି କୌଣସି ପଦ ପାଇବାର ଯୋଗ୍ୟର କାର୍ଯ୍ୟ କରିନାହାନ୍ତି ?

## ( ୩ୟ ଭାଗ, ୪ । ୧ । ୧୮୭୮, ସଂଖ୍ୟା ୧ )

ଓଡ଼ିଶା ଦୁର୍ଭିକ୍ଷପାଇଁ ଦାୟିତ୍ୱ କର୍ତ୍ତବ୍ୟ ।

୧୦୪ । ବୋର୍ଡ ଅବ ରେଭନ୍ୟୁ କୌଣସି ପ୍ରକାରରେ ଓଡ଼ିଶା ଦୁର୍ଭିକ୍ଷ ସମ୍ପର୍କୀୟ ଅପବାଦରୁ ନିଷ୍କୃତି ପାଇଲେନାହିଁ । ସେମାନେ ଆପଣା କର୍ତ୍ତବ୍ୟ କର୍ମରେ ତ୍ରୁଟି ନକରି ଥିବା ବିଷୟରେ ଅନେକ କାରଣ ଦର୍ଶାଇ ଗବର୍ଣ୍ଣମେଣ୍ଟକୁ ଆବେଦନ ପ୍ରେରଣ କରିଥିଲେ ମାତ୍ର ଶ୍ରୀଯୁକ୍ତ ଗବର୍ଣ୍ଣର ଜେନେରାଲ ସାହେବ ସେ ସମସ୍ତ କାରଣରେ ସନ୍ତୁଷ୍ଟ ନହୋଇ ଉତ୍ତର ଦେଲେ ଯେ ବୋର୍ଡର କର୍ମପ୍ରତି ଗବର୍ଣ୍ଣମେଣ୍ଟ ଯେଉଁପ୍ରକାର ଦୋଷାରୋପ ପୂର୍ବରେ ବ୍ୟକ୍ତ କରିଅଛନ୍ତି ସେଥିର ଅନ୍ୟଥା ଏତେବେଳେ ସ୍ୱୀକାର କରିବାର କୌଣସି ହେତୁ ଦେଖାଯାଉନାହିଁ । ଲକ୍ଷ ଲକ୍ଷ ପ୍ରଜାଙ୍କ ପ୍ରାଣନାଶରେ କି କାହାର ପୁଣ୍ୟାତ ହୁଅଇ ।

୧୦୫ । କଚେରୀରେ ପ୍ରଜାର ବ୍ୟବହାର

ଦେଶୀୟ ଲୋକମାନେ ଯେତେପର୍ଯ୍ୟନ୍ତ କୌଣସି ଅଦାଲତ କି ଇଂରାଜ ସମାଜକୁ

ଯାଇ ପାରିବେନାହିଁ ଏକଥା କେବେହେଁ ମିମାଂସା ପାଉନାହିଁ । ସମ୍ପ୍ରତି ଗବର୍ଣ୍ଣର ଜେନେରଲ ବାହାଦୁର ଏକଥା ନିଶ୍ଚୟ କରିବା ମାନସରେ କଲିକତା ଓ ଉତ୍ତର ପଶ୍ଚିମର ହାଇକୋର୍ଟ ଜଜମାନଙ୍କୁ ଏ ପ୍ରସଙ୍ଗରେ ପ୍ରଶ୍ନ କରିଥିଲେ କିନ୍ତୁ ଉଭୟ ହାଇକୋର୍ଟ ଏକପ୍ରକାର ମତ ନଦେବାରୁ ଗବର୍ଣ୍ଣର ଜେନେରଲ ସାହେବ ବର୍ତ୍ତମାନ ବ୍ୟସ୍ତହୋଇ ମାନ୍ଦ୍ରାଜ ଓ ବୋମ୍ବାଇର ଜଜମାନଙ୍କ ଅଭିପ୍ରାୟ ଜାଣିବା କାରଣ ଉକ୍ତ ପ୍ରଶ୍ନ ପଠାଇଅଛନ୍ତି । ସେମାନେ କି ରାୟ ଦେବେ ପରେ ପ୍ରକାଶ ପାଇବ । ସୋମ ପ୍ରକାଶ ଯଥାର୍ଥ କହୁଅଛନ୍ତି ଯେ ଗୋରାଙ୍କର ମୃତ୍ୟୁ ମସ୍ତକରେ ପ୍ରବେଶହୋଇ ଏପ୍ରକାର ବଙ୍ଗ ଲୋକଙ୍କୁ ବ୍ୟସ୍ତ କରିବାର ଦୁଃଖର ବିଷୟ ଅଟଇ ।

## (୩ୟ ଭାଗ, ୧୧ । ୧। ୧୮୬୮, ସଂଖ୍ୟା ୨ )

୧୦୬ । **କେନ୍ଦୁଝରର ଅବସ୍ଥା ।**

ଅବଗତ ହେଲୁଁ ଯେ କେନ୍ଦୁଝରର ନୂତନ ରାଜାଙ୍କର ଅଧିକାର ଉତ୍ତମ ରୂପେ ସଂସ୍ଥାପନ ନିମନ୍ତେ କଟକ ବାଲେଶ୍ୱର ଅନୁଗୁଳ ଇତ୍ୟାଦି ସ୍ଥାନରୁ ପୁଲିସ ସିପାହୀ-ମାନେ ପ୍ରେରିତ ହେଉଅଛନ୍ତି । ବୋଧହୁଅଇ ଭୂଆଁ ଲୋକମାନେ କମିଶ୍ନର ସାହେବଙ୍କ ସତ୍ ପରାମର୍ଶ ନଶୁଣିବାରୁ ସେମାନଙ୍କୁ ଭୟ ପ୍ରଦର୍ଶନ ପୂର୍ବକ ରାଜାଙ୍କ ଅଧୀନରେ ରଖିବାର ଆବଶ୍ୟକ ହୋଇଅଛି । ଆମ୍ଭେମାନେ ଭରସା କରୁଁ ଯେ ପ୍ରଜା-ମାନେ ମୂର୍ଖତା ବଶତଃ ଆପଣା ଦୁଃଖର ବାଟ ଆପେ ପରିଷ୍କାର ନକରନ୍ତୁ ।

## ( ୩ୟ ଭାଗ, ୧୮ । ୧ ।୧୮୬୮, ସଂଖ୍ୟା ୩ )

୧୦୭ । **ଦୁର୍ଭିକ୍ଷ କାଳାକ୍ରାନ୍ତ ଜାତିଭ୍ରଂଶୋତ୍ତୀର୍ଣ୍ଣ ବ୍ୟବସ୍ଥା**

ଏବିଷୟରେ ଅନେକଦିନ ହେଲା ଆମ୍ଭେମାନେ ସ୍ଥାନୀୟ ସମ୍ଭ୍ରାନ୍ତ ଜନଗଣଙ୍କୁ ବ୍ୟବସ୍ଥା କରିବାର ଅନୁରୋଧ କରିଥିଲୁ ଏବଂ ଓଡ଼ିଶାର ପଣ୍ଡିତମାନଙ୍କୁ ବ୍ୟବସ୍ଥା ପଠାଇବା ନିମନ୍ତେ ପ୍ରାର୍ଥନା କରିଥିଲୁ ମାତ୍ର ଏକଜଣ ପଣ୍ଡିତ ବ୍ୟତୀତ କେହି କିଛି ମତ ପ୍ରକାଶ କରିବାକୁ ସାହସୀ ହୋଇନଥିଲେ ଏବଂ କଙ୍ଗାଳୀମାନେ ପୁନର୍ବାର ସ୍ୱ ସ୍ୱ ଜାତିରେ ପ୍ରବେଶ କରି ପାରନ୍ତିକି ନାହିଁ ଏଥିର ଆନ୍ଦୋଳନ ହେଉଥିଲା । ଯାହାହେଉ ସମ୍ପ୍ରତି ଶ୍ରୀଯୁକ୍ତ ବାବୁ ବିଚିତ୍ରାନନ୍ଦ ଦାସଙ୍କ ଯତ୍ନ ଓ ଉଦ୍‌ଯୋଗରେ

ଶ୍ରୀପୁରୁଷୋତ୍ତମ ସେନ ଓ ବଙ୍ଗଦେଶ ଏବଂ କଟକସ୍ଥ ପଣ୍ଡିତମାନଙ୍କ ବ୍ୟବସ୍ଥାମାନ ଏକତ୍ରରେ ପୁସ୍ତକାକାରରେ ମୁଦ୍ରିତ ହୋଇଅଛି । ସର୍ବସାଧାରଣ ଏହାକୁ ପାଠକଲେ ତାହାଙ୍କ ପରିଶ୍ରମ ବିଫଳ ହେବନାହିଁ । ବାବୁ ସଚ୍ଚିଦାନନ୍ଦ ଦାସ ଏବିଷୟରେ ପ୍ରଥମରୁ ଅଶେଷପ୍ରକାର କରିଥିବାର ଆମ୍ଭେ ଏଥିପୂର୍ବେ ଲେଖିଥିଲୁ ଏବଂ ଏତେବେଳେ ସେ କୃତକାର୍ଯ୍ୟ ହୋଇଅଛନ୍ତି ଏହା ଅତି ଆନନ୍ଦର ବିଷୟ ।

ବ୍ୟବସ୍ଥା ପାଠରେ ଆମ୍ଭେମାନେ ନିଶ୍ଚୟ କଲୁଁ ଯେ କାଙ୍ଗାଳୀମାନେ ପୁନର୍ବାର ଜାତିହୋଇ ପାରନ୍ତି ଅଥବା ବାସ୍ତବରେ ସେମାନଙ୍କର ଜାତି ନଷ୍ଟ ହୋଇନାହିଁ । ଉପର ଲିଖିତ ତିନି ସ୍ଥାନର ପଣ୍ଡିତଙ୍କର ମତଐକ୍ୟ ହୋଇନାହିଁ, ସେଥିର ବାହୁଲ୍ୟ ଏସ୍ଥଳେ ଲେଖୁଅଛୁଁ । ଅଧିକାଂଶ ପଣ୍ଡିତଙ୍କ ମତ ଏହି ଯେ ପ୍ରାଣରକ୍ଷା ନିମିତ୍ତ କେହି କୌଣସି କାର୍ଯ୍ୟ କଲେ ସେଥିର ଦୋଷନାହିଁ ।

× × × × × ×

ବଙ୍ଗଦେଶୀୟ ଏବଂ କଟକସ୍ଥ ପଣ୍ଡିତମାନଙ୍କର ଏହିମତ ଅଟଇ । ବଙ୍ଗଦେଶୀୟ ପଣ୍ଡିତମାନେ ପ୍ରାୟଶ୍ଚିତ୍ତର ବିଧାନ ଉଲ୍ଲେଖ ନକରିବାରୁ ବୋଧ ହୁଅଇ ସେମାନେ ଏଅବସ୍ଥାରେ ପ୍ରାୟଶ୍ଚିତ୍ତର ଆବଶ୍ୟକ ଥିବାର ବିବେଚନା କରନ୍ତି ନାହିଁ । କଟକର ପଣ୍ଡିତଙ୍କ ମତରେ ପ୍ରାୟଶ୍ଚିତ୍ତ ଆବଶ୍ୟକ ।

× × ×

ଆମ୍ଭେମାନେ ପୁରୁଷୋତ୍ତମ ସେନ ପଣ୍ଡିତଙ୍କ ବ୍ୟବସ୍ଥା ବିଷୟରେ ପୂର୍ବେ କିଛି କହିନାହୁଁ । ଏମାନଙ୍କର ମତ ଭିନ୍ନପ୍ରକାରର ଅଟଇ ଏବଂ ତାହା ପାଠକରି ଆମ୍ଭେମାନେ ହତାଶ ହୋଇଅଛୁଁ । ମୁକ୍ତିମଣ୍ଡପ ପୁରାତନ କାଳରୁ ବିଖ୍ୟାତ ଅଛି । × ×

× × × × × ×

କିନ୍ତୁ ଦୁଃଖର ବିଷୟ ଯେ ବର୍ତ୍ତମାନ ସେ ଗୌରବ ରକ୍ଷା ହୋଇପାରୁନାହିଁ । ପଣ୍ଡିତମାନେ ଆଦୌ ପ୍ରଶ୍ନରେ ଭୁଲ କରିଅଛନ୍ତି । ଦୁର୍ଭିକ୍ଷ ସମ୍ବନ୍ଧେ ପ୍ରଶ୍ନ ଥିବା ପ୍ରତ୍ୟକ୍ଷେ ପ୍ରଥମେ ଏମାନେ କାରାଗାରସ୍ଥିତ ଲୋକଙ୍କ ଜାତିରକଥା ଲେଖି ଅଛନ୍ତି କିନ୍ତୁ ଏହା ବିବେଚନା କଲେନାହିଁ ଯେ ଦୁର୍ଭିକ୍ଷରେ ଲୋକର ପ୍ରାଣନାଶର କଥାଥିଲା । କାରାଗାରକୁ ଯିବାର ପଥ ଲୋକେ ଆପେ କରନ୍ତି ।

× × ×

୧୦୮ । ଦୁର୍ଭିକ୍ଷ ସମୟରେ ମୃତ୍ୟୁ ।

× × × ×

ଓଡ଼ିଶାର କେଉଁ ଜିଲ୍ଲାରେ ଦୁର୍ଭିକ୍ଷ ପୂର୍ବରେ କେତେ ଲୋକ ଥିଲେ ଓ କେତେ ନଷ୍ଟ ହୋଇ ଅବଶିଷ୍ଟ କେତେ ଅଛନ୍ତି ତାହା ତଳଲିଖିତ ତାଲିକା ଦୃଷ୍ଟିରେ ପ୍ରକାଶ ହେବ ।

| | କଟକ | ପୁରୀ | ବାଲେଶ୍ୱର | ମୋଟ |
|---|---|---|---|---|
| ଦୁର୍ଭିକ୍ଷ ପୂର୍ବରେ ନିବାସୀଙ୍କ ସଂଖ୍ୟା | ୧୫୦୩୮୨୯ | ୭୭୬୭୨୮ | ୭୩୨୨୬୯ | ୩୦୧୫୮୨୬ |
| ଦୁର୍ଭିକ୍ଷରେ ମୃତ୍ୟୁ | ୩୭୮୦୦୯ | ୨୧୮୮୫୨ | ୨୧୭୬୦୮ | ୮୧୪୪୬୯ |
| ଦୁର୍ଭିକ୍ଷରେ ପଳାନ୍ତକ | ୫୩୩୫୭ | ୩୨୧୧୩ | ୨୯୫୫୮ | ୧୧୫୦୨୮ |
| ମୋଟ ପ୍ରାଣି ନଷ୍ଟ | ୪୩୨୩୬୭ | ୨୫୦୯୬୫ | ୨୪୭୧୬୭ | ୯୨୯୪୯୭ |
| ବର୍ତ୍ତିମାନ ନିବାସୀଙ୍କ ସଂଖ୍ୟା | ୧୦୭୨୪୬୦ | ୫୨୮୭୫୩ | ୪୮୫୨୨୩ | ୨୦୮୬୩୨୯ |

× × × ×

× × × × ×

ସରକାରୀ କାଗଜରେ ଯେଉଁପ ଦେଖାଗଲା ଆମ୍ଭେମାନେ ସେହିରୂପ ଏଠାରେ ଲେଖିଲୁଁ ମାତ୍ର ଏ ତାଲିକା ପ୍ରକୃତ ଅଟଇ କି ନା ଏହା ନିଶ୍ଚୟ କରିବା ସହଜ ନୁହେ ।

୧୦୯ । ଚାଉଳ ରପ୍ତାନି

ଦୁର୍ଭିକ୍ଷ ହେତୁରୁ ଓଡ଼ିଶାରୁ ସ୍ଥାନାନ୍ତରକୁ ଚାଉଳ ରପ୍ତାନି ହେବାର ନିଷେଧ ହୋଇଥିଲା । ସମ୍ପ୍ରତି ଗବର୍ଣ୍ଣମେଣ୍ଟ ଇଣ୍ଡିଆ ଉକ୍ତ ନିଷେଧ ଆଜ୍ଞା ରହିତ କରି ଯାଜପୁର କମିଶନରଙ୍କୁ ସର୍ବସାଧାରଣଙ୍କୁ ଏ ବିଷୟ ଜ୍ଞାତ କରିବା ନିମିତ୍ତ ଆଦେଶ ଦେଇ ଅଛନ୍ତି । ଏଥର ଓଡ଼ିଶାରେ ବିଦେଶୀୟ ମହାଜନମାନେ ଚାଉଳ ନେଇପାଇ ପାରିବେ ।

## (୩୨ଶ ଭାଗ, ୨୫।୧।୧୮୭୮, ସଂଖ୍ୟା ୪)

୧୧୦। ଯାତ୍ରୀ ଟାକ୍ସ

ଯାତ୍ରୀଙ୍କ ଉପରେ ଟାକ୍ସ ବସାଇବାର ନିମନ୍ତେ କୋହ୍ନୁ ପୁରୁଷୋତ୍ତମ ପଣ୍ଡାମାନେ ଟାକ୍ସ ଉସୁଲ କରିବାର ଭାର ପାଇବାଲାଗି ହିନ୍ଦୁ ପେଟ୍ରିୟଟରେ ବିଜ୍ଞାପନ ଦେଇଅଛନ୍ତି । ବୋଧହୁଏ ଅଠରନଳା ଘାଟ ଥିଲାବେଳେ ଏମାନେ ବସ୍ତ୍ର ଲାଭ କରିଥିଲେ । ଅତଏବ ତାହା ଏତେଦିନରେ ଭୁଲି ଯାଇନାହାନ୍ତି । ପଣ୍ଡା ପଣ୍ଡାମାନେ ଯାତ୍ରୀଙ୍କ ଠାରୁ ଏତେଲାଭ କରନ୍ତି ଯେ ଏମାନଙ୍କ ଉପରେ ଟାକ୍ସ ଧାର୍ଯ୍ୟ କରିବାର ଉଚିତ ।

## (୩୨ଶ ଭାଗ, ୧।୨।୧୮୭୮, ସଂଖ୍ୟା ୫)

୧୧୧। କେନ୍ଦୁଝର

କେନ୍ଦୁଝରର ପ୍ରଜାମାନେ ନୂତନ ରାଜାଙ୍କ ଅଧିକାର ସ୍ୱୀକାର କରିଅଛନ୍ତି । ରାଣୀ ନଗର ପରିତ୍ୟାଗକରି ପୁରୁଷୋତ୍ତମକୁ ଗମନ କରିଅଛନ୍ତି ଏବଂ ତାହାଙ୍କ ସଙ୍ଗେ ଜଂଶ କନଷ୍ଟେବଲ ଗଣ୍ଡି ତର ପର୍ଯ୍ୟନ୍ତ ଆସିବେ । କେବଳ ଦୌବାରିମାନେ ରାଜାଙ୍କ ଅଧୀନରେ ଆସିନାହାନ୍ତି ଭଲୁ ଆମ୍ଭମାନଙ୍କ ବିବେଚନାରେ ଅଧିକଦିନ ଏରୂପ ରହିବନାହିଁ । ଅଳ୍ପଦିନେ ଏମାନେ ଆପେ ବଶୀଭୂତ ହେବେ ।

## (୩୨ଶ ଭାଗ, ୮।୨।୧୮୭୮, ସଂଖ୍ୟା ୬)

୧୧୨। କେନ୍ଦୁଝର

ଶୁଣାଯାଏ କେନ୍ଦୁଝରର ବହୁତ ଜଙ୍ଗଲିଲୋକ ଅସ୍ତ୍ରମାନ ଧାରଣ ପୂର୍ବକ ରାଣୀଙ୍କୁ ବଳଭଦ୍ରଙ୍କୁ ଛଡ଼ାଇନେବା କାରଣ ଆସିଥିଲେ କିନ୍ତୁ ଗ୍ରାମ୍ୟଲେ ସୁପେରିନଟେଣ୍ଡେଣ୍ଟ ସାହେବ ସାହସ ପ୍ରଦର୍ଶନପୂର୍ବକ ସେମାନଙ୍କ ପଶ୍ଚାତ୍ ପୁଲିସର ସିପାହୀମାନଙ୍କୁ ଧାବମାନ କରାଇ ପ୍ରାୟ ଜଂଶ ଗିରଫ୍ତାର କରିଅଛନ୍ତି । ଅବଶିଷ୍ଟ ଲୋକମାନେ ପଳାୟନ କଲେ । ଭରସା ହେଉଅଛି ଯେ ଧୃତ ବ୍ୟକ୍ତିମାନେ ଦଣ୍ଡପାଇଲେ ଜଙ୍ଗଲି ଲୋକମାନେ ଆଉ ଏପ୍ରକାର କରିବେନାହିଁ ।

୧୨୩ । ଡାକ ଚଳାଚଳ ।

ଆମ୍ଭେମାନେ ଅବଗତ ହେଲୁଁ ଯେ ଡାକଘର ସମ୍ପର୍କରେ କଟକଠାରୁ କଲିକତା ପର୍ଯ୍ୟନ୍ତ ଗୋରର ଗାଡ଼ିଡାକ ସ୍ଥାପନହେବ । ଏଗାଡ଼ି ଦ୍ୱାରା ପଥିକ ଓ ବାଣିଜ୍ୟ ପଦାର୍ଥ ଯାତାୟତ କରିପାରିବ ଏବଂ ଆସନ୍ତା ଅପ୍ରେଲ ମାସରୁ ଏହା ଆରମ୍ଭହେବ । ଯଦ୍ୟପି ଏରୂପ ହୁଅଇ ତେବେ ଓଡ଼ିଶାର ବଙ୍ଗଦେଶ ସହିତ କାରବାର କରିବା କାରଣ ଯଥାର୍ଥ ସୁଯୋଗ ହେବ ସନ୍ଦେହ ନାହିଁ ଏବଂ ଯେ ପରିମାଣ ସଗଡ଼ଦ୍ୱାରା କାରବାର ହେଉଅଛି ସେଥିରୁ ନିଶ୍ଚୟ ଜଣାଯାଏ ଯେ ଏକାର୍ଯ୍ୟରେ ଗବର୍ଣ୍ଣମେଣ୍ଟର କ୍ଷତି ପଡ଼ିବ ନାହିଁ ।

( ୩ୟ ଭାଗ,୨୨ । ୨ । ୧୮୭୮, ସଂଖ୍ୟା ୮ )

୧୨୪ । କେନ୍ଦୁଝର ।

ଏ ଗଡ଼ଜାତ ମାହାଲରେ ବ୍ୟବସ୍ଥା ଏକକାଳରେ ନିବୃତ୍ତି ହେଲା । ରଜା ଧନୁର୍ଜୟ ଭଞ୍ଜ ପ୍ରାୟ ୫ମାସ ହେବ କଟକଠାରୁ ଆପଣା ରାଜଧାନୀକୁ ଗମନ କରିଥିଲେ ମାତ୍ର ଶ୍ରୀଯୁକ୍ତ କମିଶନର ରାବେନସା ସାହେବ ଦୁଇମାସ କାଳ ସେଠାରେ ଅବସ୍ଥିତ କରି ଅରଣ୍ୟବାସୀ ଅସଭ୍ୟ ଲୋକଙ୍କୁ ଆୟତ୍ତ କରିଅଛନ୍ତି । ଏହା ଅତି ସୁଖର ବିଷୟ ଅଟଇ ଏବଂ କମିଶନର ସାହେବ ଏନିମିତ୍ତ ପ୍ରଶଂସାର ଭାଜନ ହୋଇଅଛନ୍ତି ସନ୍ଦେହନାହିଁ । ପ୍ରଥମେ ରାଜାଙ୍କୁ ଗାଦିରେ ବସାଇବାକୁ ପ୍ରଜାମାନେ ଅସନ୍ତୁଷ୍ଟ ପ୍ରକାଶକରି କେହି ତାହାଙ୍କୁ ରାଜାବୋଲି ସ୍ୱୀକାର କରୁନଥିଲେ ଏବଂ ରାଣୀ ଗଡ଼ରୁ ବାହାର ଯିବାପାଇଁ ଉଦ୍ୟତ ହୋଇଥିଲେ । ସମ୍ପ୍ରତି ରାବେନସା ସାହେବ ମଧ୍ୟସ୍ଥହୋଇ ଅତି ସଦ୍‌ବିବେଚନା ପୂର୍ବକ ସମସ୍ତଙ୍କୁ ଏକତ୍ର କରିଦେଇ ରଜା ଧନୁର୍ଜୟ ଭଞ୍ଜଙ୍କର ଅଧିକାର ବଳପୂର୍ବକ କେନ୍ଦୁଝରରେ ସ୍ଥାପନ କରିଦେଇ ଅଛନ୍ତି । ରାଣୀ ପୁରୁଷୋତ୍ତମକୁ ଆସିବାର ମନସ୍ଥ ପରିତ୍ୟାଗ କରି ଆପଣା ଉଆସକୁ ପ୍ରତ୍ୟାଗମନ କରିଅଛନ୍ତି ଏବଂ ଖୋଇବାଦ ପାଟଗାଁ ଜାତି ପ୍ରଜାମାନେ ରଜାଙ୍କର ଅଧିକାରରେ ଆପଣାମାନଙ୍କୁ ଅର୍ପଣ କରିଅଛନ୍ତି । ଏସମସ୍ତ ବିଷୟ ଅତି ଆନନ୍ଦଜନକ ଅଟଇ ।

ଏସ୍ଥଳେ ପାଠକମାନଙ୍କୁ ଜଣାଇଦେବାର ଆବଶ୍ୟକ ଯେ ଅରଣ୍ୟବାସୀ ପ୍ରଜାମାନେ ଏକ ଅପୂର୍ବ ବିଧାନରେ ରାଜାଙ୍କର ଅଭିଷେକ କରନ୍ତି । ରଜା ଧନୁର୍ଜୟ ଭଞ୍ଜଙ୍କୁ ବିଧିମତ ରଜା କରିବା ନିମିତ୍ତ ଚଳିତମାସ ତା୧୩ରିଖ ନିଶ୍ଚୟ ହେବାରୁ ସେହି

ଦାନ ରାଜାଙ୍କ ପ୍ରଜାମାନେ ପୌର ଓ ଘସନ୍ତି ହୋଇ ବାଦ୍ୟ ଦେଇ ଗଡଠାରେ ମେଳ ହେଲେ ଓ ରାଜା ସେମାନଙ୍କର ପ୍ରତ୍ୟେକ ଜଣକୁ ଏକଖଣ୍ଡ ଲେଖାଏ ସିରପାଦେଇ ସେମାନଙ୍କର ଲଲାଟ ଦେଶରେ ଏବଂ କର୍ଣ୍ଣରେ ଚନ୍ଦନ ପୁଷ୍ପାଦ ପିନ୍ଧାଇଦେଲେ । ତଦନ୍ତର ଏମାନଙ୍କ ମଧ୍ୟରୁ ଏକଜଣ ଲଇଁପଡ଼ ଘୋଡ଼ା ହେଲା ଏବଂ ରାଜା ତାହା ପୃଷ୍ଠରେ ବସିଲାରୁ ସେ ଘୋଡ଼ା ପ୍ରାୟ ଲମ୍ଫଦେଇ ଉଆସ ମଧ୍ୟରୁ ପୂଜାସ୍ଥାନକୁ ଆସିଲା ଏବଂ ସେଠାରେ ରାଜା ତାହାପୃଷ୍ଠରୁ ଓହ୍ଲାଇଲେ ଏବଂ ବିଧି ଅନୁସାରେ ପୂଜା ଶେଷ ହେଲାରୁ ହେଉମାନଙ୍କ ମଧ୍ୟରେ ଗ୍ରାହ୍ୟହେଲେ ।

ଏ କର୍ମଟି ଅତି ସମାରୋହ ପୂର୍ବକ ନିର୍ବାହହେଲା ଏବଂ ରାଜାଙ୍କ ମଜଲିସରେ କଟକର କମିଶ୍ନର ଶ୍ରୀଯୁକ୍ତ ରେବେନସା ସାହେବ ଓ ତାହାଙ୍କର ଭାର୍ଯ୍ୟା, ଛୋଟନାଗପୁର କମିଶ୍ନର କର୍ଣ୍ଣେଲ ଡାଲଟନ, ଡିପୋଟି କମିଶ୍ନର ହେସ ସାହେବ ଏବଂ ତହସିଲଦାର ଅମଲା କାରକ ଅନେକଲୋକ ଉପସ୍ଥିତ ଥିଲେ ।

## ସାପ୍ତାହିକ ସମ୍ବାଦ

୧୧୫ । ଆମ୍ଭେମାନେ ଅନେକଦିନ ପୂର୍ବରେ ପାଠକମାନଙ୍କୁ ଜଣାଇ ଥିଲୁଁ ଯେ କଟକରେ କେତେକ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଘୋଡ଼ାଗାଡ଼ି ଭଡ଼ାଦେଇ ଲୋକଙ୍କର ଯାତାୟତର ସୁଯୋଗ ନିମନ୍ତେ ଏକ କୁମ୍ପାନି ସ୍ଥାପନ କରିଥିଲେ । ସମ୍ପ୍ରତି ଏ କୁମ୍ପାନିର କାର୍ଯ୍ୟାରମ୍ଭ ହୋଇଅଛି ଓ ତଦ୍ଦ୍ୱାରା ବିସ୍ତର ଲୋକଙ୍କର ଉପକାର ହେବାର ଜଣାଯାଏ । କେବଳ କଟକନଗର ମଧ୍ୟରେ ବର୍ତ୍ତମାନ କୁମ୍ପାନିର କାର୍ଯ୍ୟ ଚଳୁଅଛି । ଏଠାର ଫଳାଫଳ ଦେଖି କାର୍ଯ୍ୟ ବଢ଼ାଇବାକୁ ହେବ । ଯତ୍ନ ଓ ଚେଷ୍ଟାର ଅସାଧ୍ୟ କିଛିନାହିଁ । ଆମ୍ଭେମାନେ ବୋଧକରୁଁ ଯେ ଏକୁମ୍ପାନିର କାର୍ଯ୍ୟ ଉତ୍ତମରୂପେ ଚଳିବ ଏବଂ ଏଥିରେ ଲାଭର ଆଶା ଦେଖାଯାଉଅଛି ।

୧୧୬ । **ବିଜ୍ଞାପନ**

ପୂର୍ବେ ଏହି ପ୍ରଣାଳୀରେ ସରକାର କର ଯାତ୍ରୀଙ୍କଠାରୁ ନେଉଥିଲେ ଅର୍ଥାତ୍ ନୀଳପାଟି ଟ୧୦ଙ୍କା । ତନ୍ମଧ୍ୟେ ଗବର୍ଣ୍ଣମେଣ୍ଟ ଟ୬।୦୯ ପଣ୍ଡାଆରକାଟିଯୋଗ ଯେ କି ସେମାନଙ୍କର ଯାତ୍ରୀମାନଙ୍କର ଦର୍ଶନ କରାଇବାର ଜମାଦାର ଟ୩୯ ଓ ନାମ୍ବନାଲ ଟ୬୨ଙ୍କା; ତନ୍ମଧ୍ୟେ ସରକାର ଟ୫୯ଙ୍କା । ପଣ୍ଡାଆରୀ ଟ୧୨୯; ଉଚଲା ଟ୪୫ ତନ୍ମଧ୍ୟେ ସରକାର ଟ୪୯ଙ୍କା, ପଣ୍ଡାଆରୀ ଟ୦୫; ଭଡ଼ଙ୍ଗ ଟ୨।୵ ତନ୍ମଧ୍ୟେ ସରକାର ଟ୨୯ଙ୍କା, ପଣ୍ଡାଆରୀ ଟ୦।୵; ଯୋଗୀ ଟ୦।୵୬ ତନ୍ମଧ୍ୟେ ସରକାର ଟ୦। ପଣ୍ଡାଆରୀ ଟ୦।୬, ଏହିପରି

କିଆଯାଉଥିଲା । ସମ୍ପ୍ରତି ଯାତ୍ରୀମାନଙ୍କ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ଜଳ ଆଦାୟ ନିମନ୍ତେ ଗଭର୍ଣ୍ଣମେଣ୍ଟର ଯେ ଅଭିପ୍ରାୟ ହୋଇଅଛି ତାହା ପୂର୍ବପ୍ରଣାଳୀରେ ପଣ୍ଡାଙ୍କ କପୋଗଙ୍କଦ୍ୱାରା ଏକଥା ବହୁତ ।

## (୩ୟ ଭାଗ, ୧୪ । ୩ । ୧୮୭୮, ସଂଖ୍ୟା ୧୧)

### ସାପ୍ତାହିକ ସମ୍ବାଦ

୧୧୭ । ବଙ୍ଗଳା ଇଲାକାର ସମୁଦାୟ ଜମିଦାରଙ୍କ ରାଜସ୍ୱ ପ୍ରତିବର୍ଷ ୫୩୫୦୪୭୦୦୨ଙ୍କା ଧାର୍ଯ୍ୟ ଯାଏ । ଏଥିମଧ୍ୟରୁ ନିମ୍ନଲିଖିତ ଅନୁସାରେ ଓଡ଼ିଶାପ୍ରଦେଶରୁ ଉତ୍ପନ୍ନହୁଏ ।

| | |
|---|---|
| ବାଲେଶ୍ୱର ଜିଲ୍ଲା | ୫୩୮୪୦୫୪ଙ୍କା |
| କଟକ ଜିଲ୍ଲା | ୬୨୭୦୮୨୫ଙ୍କା |
| ପୁରୀ ଜିଲ୍ଲା | ୫୪୭୨୨୨୩ଙ୍କା |
| ମୋଟ | ୫୧୫୨୮୭୫୨ଙ୍କା |

## ( ୩ୟ ଭାଗ, ୨୧ । ୩ । ୧୮୭୮ ,ସଂଖ୍ୟା ୧୨ )

୧୧୮ । ସଦାବର୍ତ୍ତି ମଠମାନଙ୍କର ତତ୍ତ୍ୱାବଧାରଣ ।

ଓଡ଼ିଶା ଭାରତବର୍ଷ ମଧ୍ୟରେ ଏକପ୍ରଧାନ ତୀର୍ଥସ୍ଥଳ ଅଟଇ । ପୁରୀ ଭୁବନେଶ୍ୱର, ଓ ଯାଜପୁର, କେନ୍ଦ୍ରାପଡ଼ା ଇତ୍ୟାଦ କ୍ଷେତ୍ରମାନଙ୍କର ମହିମା ହିନ୍ଦୁମାନଙ୍କ ମଧ୍ୟରେ ଅବିଦିତ ନାହିଁ ।

× × ×

ଦୁଃଖୀଲୋକଙ୍କୁ ଅନ୍ନଦାନ ଏକ ପରମ ଧର୍ମର କାର୍ଯ୍ୟ ଅଟଇ ଏବଂ କ୍ଷେତ୍ରସ୍ଥଳୀରେ ଜାତିଭେଦ ନଥିବାରୁ ଏପ୍ରକାର ଦାନର ବିଶେଷ ସୁବିଧା ହୁଅଇ । ଏହି ନିମନ୍ତେ ଓଡ଼ିଶାପ୍ରଦେଶରେ ଅନେକ ସଦାବର୍ତ୍ତି ମଠ ସ୍ଥାପନ ହୋଇଅଛି ।

× × × ×

ଯଥାଭକ୍ତି ମଠଧାରୀମାନଙ୍କ ଆଚରଣ ଅନେକ ସ୍ଥଳରେ ଦୋଷଯୁକ୍ତ ଦେଖାଯାଏ ଏବଂ ଅନେକ କାଳରୁ ଲୋକମାନେ ଏଥିରେ କ୍ଷୋଭିତ ଅଛନ୍ତି । ସାତ ଆଠବର୍ଷ ପୂର୍ବରେ କଟକ ସ୍କୁଲର ଜଣେ ଶିକ୍ଷକ ବାବୁ କେଦାରନାଥ ଘୋଷ ଓଡ଼ିଶା ମଠଧାରୀମାନଙ୍କ ଅପବ୍ୟୟିତା ଏବଂ ମନ୍ଦ ଆଚରଣ ପ୍ରସଙ୍ଗରେ ଏକଖଣ୍ଡ କ୍ଷୁଦ୍ରପୁସ୍ତକ ମୁଦ୍ରିତକରି ପ୍ରଚାର କରିଥିଲେ ଏବଂ ଅଲ୍ପଦିନ ହେଲା ଓଡ଼ିଶାର ଲୋକମାନେ ଗଭର୍ଣ୍ଣମେଣ୍ଟରୁ ଏତଦ୍ବିଷୟରେ ଏକ ଆବେଦନପତ୍ର ପ୍ରେରଣ କରିବାର ସମ୍ମତି ଗଭର୍ଣ୍ଣମେଣ୍ଟ ସଦାବର୍ତ୍ତି ମଠମାନଙ୍କର ଅବସ୍ଥା ଜାଣିବା କାରଣ ଏକ କମିଶନ ଅର୍ଥାତ୍ ଅନୁସନ୍ଧାନକାରୀ ସଭା ନିଯୁକ୍ତ କରିବାର କଳନା କରୁଅଛନ୍ତି ।

## (୩ୟ ଭାଗ, ୨୮ । ୩ । ୧୮୭୮, ସଂଖ୍ୟା ୧୩)

୧୨୧ । <u>ନୂତନ ପଞ୍ଜିକା ।</u>

କ୍ରମାଗତ ଷଣ୍ଡବର୍ଷକାଳ ପରେ ଓ ପରିଶ୍ରମ କରି କଟକ ପ୍ରିଣ୍ଟିଂ କମ୍ପାନି ଏବର୍ଷ ଶୁଦ୍ଧମତ ଉତ୍କଳ ପଞ୍ଜିକା ମୁଦ୍ରିତ ଓ ପ୍ରଚାର କରିବାକୁ ସମର୍ଥ ହୋଇଅଛନ୍ତି । ଏବର୍ଷର ପଞ୍ଜିକା ପୂର୍ବାପେକ୍ଷା ଅନେକାଂଶରେ ଉତ୍କୃଷ୍ଟ ହୋଇଅଛି ଏବଂ ଉତ୍କଳଦେଶରେ ଯେଉଁ ବ୍ୟବସ୍ଥାନୁସାରେ କର୍ମଚଳୁଅଛି ତଦନୁଯାୟୀ ହୋଇଅଛି । ପୂର୍ବ ବର୍ଷମାନଙ୍କରେ ବଙ୍ଗଦେଶୀୟ ବ୍ୟବସ୍ଥାନୁସାରେ ଗୁଣ୍ଠୁଗୁଣ୍ଠର ତାରତମ୍ୟ ହୋଇଥିବାରୁ ଏଦେଶରେ ଉତ୍କଳ ପଞ୍ଜିକାର ଆଦର ହେଉନଥିଲା କିନ୍ତୁ ଏବର୍ଷ ଯଥାସାଧ୍ୟ ଉକ୍ତ ଦୋଷମାନ ଖଣ୍ଡନ ହୋଇଅଛି ଏବଂ ଦେଶବ୍ୟବହାର ଦ୍ୱାରା ନିତ୍ୟ ଯେସମସ୍ତ ବ୍ୟବସ୍ଥା ଜାଣିବାର ପ୍ରୟୋଜନ ତାହା ସମସ୍ତ ଏପଞ୍ଜିକାରେ ଦିଆଯାଉଅଛି ।

ଅନେକଲୋକଙ୍କର ବିଶେଷରେ ପଣ୍ଡିତମାନେ ଉତ୍କଳଦେଶୀୟ ଲୋକଙ୍କୁ ମୂର୍ଖ ବୋଲି ଜ୍ଞାନ କରନ୍ତି ସେମାନଙ୍କର ଏମନ୍ତ ଭ୍ରମ ହୋଇଅଛି ଯେ ଉକ୍ତ ପଞ୍ଜିକା ବଙ୍ଗଳା ପଞ୍ଜିକାର ଅନୁବାଦ ମାତ୍ର । ସେମାନେ ଜାଣନ୍ତି ନାହିଁ ଯେ ବଙ୍ଗଳା ଉତ୍କଳଦେଶର ବ୍ୟବସ୍ଥାର ବିରୁଦ୍ଧ ଅଟଇ ଓ ପଣ୍ଡିତମାନେ ଉତ୍କଳଦେଶରେ ବଙ୍ଗଳାପାଞ୍ଜିର ବ୍ୟବସ୍ଥାନୁସାରେ କର୍ମକରନ୍ତି ସେମାନଙ୍କ ଇଚ୍ଛା ଆପଣାମାନଙ୍କୁ ଅନୁରୋଧ କରନ୍ତି ମାତ୍ର ସେମାନଙ୍କର କାର୍ଯ୍ୟ ଯଥା କାଳରେ ହୁଅଇ ନାହିଁ । ଆହୁରି ବଙ୍ଗଳାଦେଶ ଓ ଓଡ଼ିଶାରେ ସୂର୍ଯ୍ୟୋଦୟାସ୍ତ କାଳରେ ଭିନ୍ନତା ଥିବାରୁ ତିଥି ନକ୍ଷତ୍ର ଇତ୍ୟାଦିର ଭୋଗକାଳର ବ୍ୟତିକ୍ରମହେଉଛି । ତ୍ରିଷିଦ୍ଧରେ ବଙ୍ଗଦେଶର ବ୍ୟବସ୍ଥାମାନ ଏଦେଶରେ ଚଳନ କରିବା

ଶ୍ରୀନିବାସ ଦୀପିକାରେ ନିଷେଧ ଅଛି । ଆମ୍ଭେମାନେ ପାଠକମାନଙ୍କ ଜାଣିବା କାରଣ ଗ୍ରନ୍ଥକାରଙ୍କର ବଚନ ପ୍ରମାଣସ୍ୱରୂପ ଉଦ୍ଧୃତ କଲୁଁ ।

ସର୍ବେଷୁ ଦେଶେଷୁ ବିଶେଷତୋମୀ ବିଷ୍ଣୁମୂଳାଦ୍ୟା ମୁନୟଃ ପ୍ରଶସ୍ତାଃ
ବାରର୍କ୍ଷ୍ୟ ଯୋଗାନ୍ତି ହି ଚାରଯୋଗା ବଙ୍ଗେଷୁ ମୂଲ୍ୟା ନତୁ ଗୃହ୍ୟଦେଶେ ॥

ବିବାହମିହିର ଆଦି ଯେତେକ ମୁନିଗଣ ବିଷ୍ଣୁମାଦି ସପ୍ତବିଂଶ ଯୋଗକୁ ପ୍ରମାଣ କରିଅଛନ୍ତି ।

"ସର୍ବଦେଶରେ ଅଟଇ ଏ ସପ୍ତବିଂଶ ଯୋଗ ।
ବାର ନକ୍ଷତ୍ର ମିଳନେ ତଥି ବାର ଭୋଗ ॥
କେବଳ ଏ ବଙ୍ଗଦେଶେ ପ୍ରଚୁରକମନ୍ତ୍ରେ ।
ଅନ୍ୟଦେଶେ ବ୍ୟବହାର ନୋହେ କଦାଚିତେ ॥
ଶ୍ରୀନିବାସ ଗ୍ରନ୍ଥେ ଏହା ହୋଇଛି ବଖାଣ ।
ସୂଚିଣ୍ଡରେ ବିଚାରିବ ସର୍ବ ବୁଧଗଣ ॥"

ଏହାକୁ ପାଠକରି ବୋଧହୁଅଇ ପାଠକମାନେ ଏଦେଶରେ ବଙ୍ଗଳା ପାଞ୍ଜି ନେଇ କାର୍ଯ୍ୟକରିବା ବୃଥା ଅର୍ଥବ୍ୟୟ ଓ ଭ୍ରମ ହେବାର ଜାଣିପାରିବେ ଏବଂ ବଙ୍ଗଦେଶର ପାଞ୍ଜିରେ ଓ ଉତ୍କଳ ପାଞ୍ଜିରେ ବହୁତ ପ୍ରଭେଦ ଥିବାର ମଧ୍ୟ ଗୋଚର ହେବ ।

## ( ୩ୟ ଭାଗ ୪ । ୪ । ୧୮୬୮, ସଂଖ୍ୟା ୧୪ )

୧୨୦ । ଉପାନହ ବ୍ୟବହାର ।

ଗତ ସପ୍ତାହରେ ଇଣ୍ଡିଆଗେଜେଟରେ ଏବିଷୟରେ ଗବର୍ଣ୍ଣମେଣ୍ଟ ଆଜ୍ଞା ପ୍ରଚାର ହୋଇଅଛି । ତାହା ପାଠକରିବାରେ ପ୍ରକାଶ ହେଲା ଯେ ଏଥର ସମସ୍ତ ଦେଶୀୟ ଭଦ୍ରଲୋକ ଇଂରାଜିଜୋତା ପରିଧାନ କରିଥିଲେ ଜୋତାସହିତ ସରକାରୀ କର୍ମଚାରୀଙ୍କ ନିକଟକୁ ଯାଇପାରିବେ । ଇଂରାଜମାନଙ୍କର ଶାସନ ଆରମ୍ଭ ସମୟର ପ୍ରାୟ ଚର୍ମପାଦୁକାର ତର୍କ ଉପସ୍ଥିତ ହୋଇଥିଲା ଏବଂ ରାଜପୁରୁଷମାନେ କଦାଚ ଦେଶୀୟ ଲୋକଙ୍କୁ ଜୋତାସହିତ ତାଙ୍କ ସମ୍ମୁଖରେ ଯିବାକୁ ଦେଉନଥିଲେ । ଏଥିରେ ଯେ କେତେପ୍ରକାର ମନୋବେଦନା ଉପସ୍ଥିତ ହେଉଥିଲା ତାହା କାହାରିକୁ ଅବିଦିତ ନାହିଁ । ଅଦ୍ୟେମାନେ ଯଦ୍ୟପି କି ମଫସଲରେ ଅଧିକ ପରିମାଣରେ ହାକିମ ଇଚ୍ଛାନୁସାରେ କାର୍ଯ୍ୟକରି ଓ ମରହଟୀ ଜୋତା ବହୁତ ବ୍ୟବହାରକରି ଖାଲିଗୋଡରେ ସାହେବଙ୍କ ନିକଟକୁ ଯିବାରେ

କ୍ଲେଶ ସତ୍ତ୍ୱ ନକଲଁ ତଥାଚ ଏରୂପ ନିୟମ ଥିବାରୁ ଅତି ଅସନ୍ତୁଷ୍ଟ ଥିଲୁଁ । ଦୁଃଖର କଥା ଯେତେବେଳେ ଲେଫଟେନାଣ୍ଟ ଗବର୍ଣ୍ଣର ଏଠାରେ ଦରବାର କରିଥିଲେ ତେତେବେଳେ ଉକ୍ତ ନିୟମ ହେଉନ ଲୋକ ଭଦ୍ରଲୋକମାନେ ମନକ୍ଷୁର୍ଣ୍ଣ ହୋଇ ଅଭୀତ ପ୍ରତ୍ୟାଗମନ କଲେ । ଶ୍ରୀଯୁକ୍ତ ଗବର୍ଣ୍ଣର ଜେନେରାଲ ସାହେବ ଏତେଦିନରେ ଆମ୍ଭମାନଙ୍କ ଏକଥାର ମନସ୍ତାପରୁ ରକ୍ଷା କଲେ ଏବଂ ସ୍ୱଦେଶୀୟ ଜୋତାର ମଧ୍ୟ ମର୍ଯ୍ୟାଦା ବଢ଼ାଇଲେ । ଉପାନହ ଏଥର ସମସ୍ତ ସରକାରୀ କାର୍ଯ୍ୟାଳୟ ଏବଂ ସରକାରୀ ସମସ୍ତ ହାକିମଙ୍କ ଘରକୁ ଯାଇପାରିବ । ଇଂରାଜଙ୍କ ସଭ୍ୟତାରେ ଉପାନହ ପରିତ୍ୟାଗର ବିଧି କଳଙ୍କ ସ୍ୱରୂପ ଥିଲା । ଶ୍ରୀଯୁକ୍ତ ଲରେନ୍ସ ସାହେବ ଏତେକାଳରେ ସେ କଳଙ୍କ ମୋଚନ କଲେ । ଏହା ସାମାନ୍ୟ ସୁବିଧାର ବିଷୟ ନୁହେ ।

## ( ୩ୟ ଭାଗ, ୧୧ । ୪ । ୧୮୬୮, ସଂଖ୍ୟା ୧୪ )

୧୬୧ । କଙ୍ଗାଳିଙ୍କର ଜାତିହେବା ।

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ପାଠକମାନଙ୍କୁ ଜଣାଉଅଛୁଁ ଯେ ଦୁର୍ଭିକ୍ଷରେ ଯେଉଁମାନେ ଜାତିଭ୍ରଷ୍ଟ ହୋଇଥିଲେ ତାହାଙ୍କୁ ପୁନର୍ବାର ଜାତି କରିବାଲାଗି ଯେଉଁ ଉପାୟମାନ ହୋଇଥିଲା ତଦ୍ଦ୍ୱାରା ବିଶେଷ ଉପକାର ହୋଇଅଛି । ଶ୍ରୀଯୁକ୍ତ ବାବୁ ସଚ୍ଚିଦାନନ୍ଦ ଦାସ ବହୁପରି ଓ ପରିଶ୍ରମ ସହିତ ବ୍ୟବସ୍ଥା ସଂଗ୍ରହକରି ସର୍ବସାଧାରଣଙ୍କ ଜାଣିବା କାରଣ ବିନାମୂଲ୍ୟରେ ବିତରଣ କରିବାରୁ ଦୁଃଖୀଙ୍କର ବିଶେଷ ଉପକାର ହୋଇଅଛି । ଏଥିପାଇଁ ତାହାଙ୍କୁ ପ୍ରଶଂସା କରିବା ଉଚିତ । ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ଅତିଶୟ ଆଗ୍ରହ ପୂର୍ବକ ଜମିଦାର ଓ ଅନ୍ୟାନ୍ୟ ଲୋକମାନେ ଉକ୍ତ ବ୍ୟବସ୍ଥାମାନ ଦେଖିପାର ଆପଣା ଆପଣା ଭୂମିରେ ବାସ କରୁଥିବା ଜାତିଭ୍ରଷ୍ଟ ଲୋକଙ୍କୁ ଉଦ୍ଧାର କରିବାରେ ସାହାଯ୍ୟ କରୁଅଛନ୍ତି । ହାଡ଼ିଆ ଜାତିର ଲୋକମାନେ ପ୍ରାୟ ଅନ୍ୟର ସାହାଯ୍ୟ ପ୍ରାର୍ଥନା କରୁନାହାନ୍ତି । ଏକ ଏକ ଗ୍ରାମର ଲୋକ ଆପଣା ଆପଣା ମଧ୍ୟରେ ଚାନ୍ଦାକରି ଯଦ୍‌କିଞ୍ଚିତ୍ ଅର୍ଥ ସଂଗ୍ରହକରି ଗ୍ରାମଦେବୀଙ୍କଠାରେ ଅର୍ଚ୍ଚନା ଓ ପୂଜାକରି ସେଠାରେ ସମସ୍ତ ଆପଣା ଆପଣା ଜାତିବର୍ଗଙ୍କୁ ଦେଖି ଅନ୍ନବ୍ୟଞ୍ଜନାଦି ଭୋଜନ ଦେଇ ଉଦ୍ଧାର ହେଉଅଛନ୍ତି । ଏଥିରେ ଅଧିକବ୍ୟୟର ଆବଶ୍ୟକ ହେଉନାହିଁ ମାତ୍ର ଫଳ ସମାନ ହେଉଅଛି ।

ଏହିରୂପେ ଅନେକଲୋକ ଆପଣା ଆପଣା ଜାତିରେ ମିଶ୍ରିତ ହେଲେଣି ଏବଂ ଭରସା ହୁଅଇ ଯେ ଅଳ୍ପକାଳରେ ଦୁର୍ଭିକ୍ଷପୀଡ଼ିତ ସମସ୍ତ ଲୋକ ପୁନର୍ବାର ସ୍ୱଜାତି ପ୍ରାପ୍ତ

ହେବେ । ଯେଉଁମାନେ ଏବିଷୟରେ ସାହାଯ୍ୟ କରୁଅଛନ୍ତି ସେମାନେ ସାଧାରଣର ଧନ୍ୟବାଦପାତ୍ର ଅଟନ୍ତି ସନ୍ଦେହ ନାହିଁ ।

କିନ୍ତୁ ଦୁର୍ଭିକ୍ଷ ପୀଡ଼ିତ ଅନାଥ ବାଳକମାନଙ୍କର ଏକ୍ଷଣର ଉଦ୍ଧାର ନହେବାର ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ଅଛୁଁ । ଏମାନେ ଦୁର୍ଭିକ୍ଷ ସମୟର ପିତାମାତା ଦ୍ୱାରା ପରିତ୍ୟକ୍ତ ହୋଇ ପାଦ୍ରୀ ସାହେବଙ୍କ ଅଧୀନରେ ଅଛନ୍ତି । ସୁତରାଂ ଏହାଙ୍କର ଜାତି ଓ ଧର୍ମ ସକଳ ନଷ୍ଟ ହୋଇଅଛି । ଦୁର୍ଭିକ୍ଷ କାଳ ଉପସ୍ଥିତ ହେବାରୁ ଅନେକ ବାଳକଙ୍କର ପିତାମାତା ଆପଣା ସନ୍ତାନଙ୍କୁ ଫେରାଇନେବା ନିମନ୍ତେ ଆପଣା ଜାଗାରେ ମିଶିଲେ କିନ୍ତୁ ବର୍ତ୍ତମାନ ପାଦ୍ରୀ ସାହେବ ଆଉ ପିଲଙ୍କୁ ଫେରି ଦେଉନାହାନ୍ତି । ଏ ଅତି ଦୁଃଖର ବିଷୟ ଏବଂ ଆଇନ ବିରୁଦ୍ଧ ଅଟଇ କାରଣ ପିତାମାତା ଇଚ୍ଛାବିନାରେ ସେ କେହି ସନ୍ତାନର ରକ୍ଷକ ହୋଇ ନପାରେ । ଆମ୍ଭେମାନେ ଇଚ୍ଛା କରୁଁ ଯେ ଅନାଥ ବାଳକମାନଙ୍କୁ ଫେରାଇଦେବା ପାଇଁ ଗବର୍ଣ୍ଣମେଣ୍ଟ ଚେଷ୍ଟା କରନ୍ତୁ ଅର୍ଥାତ୍ ଯାହାଙ୍କର ପିତାମାତା ବା ଭାଇ ବାନ୍ଧବ କେହି ବର୍ତ୍ତମାନ ଅଛନ୍ତି ଏବଂ ବାଳକର ରକ୍ଷକ ହେବାକୁ ସମ୍ମତ ହୁଅନ୍ତି ତାହାଙ୍କୁ ବାଳକ ଫେରି ଦିଆଯାଉ ଓ ଯେଉଁ ବାଳକର କେହି ନାହାନ୍ତି ତାହାକୁ ଗବର୍ଣ୍ଣମେଣ୍ଟ ପାଦ୍ରୀଙ୍କ ସାବଧାନରେ ରଖନ୍ତୁ । ଅନେକ ବାଳକର ପିତାମାତା ବିଶ୍ୱାସ କରନ୍ତି ଯେ ସେମାନେ ପ୍ରାର୍ଥନା କଲେହିଁ ଗବର୍ଣ୍ଣମେଣ୍ଟ ସେମାନଙ୍କର ସନ୍ତାନାଦିଙ୍କୁ ଫେରାଇଦେବେ ନାହିଁ କିନ୍ତୁ ଗବର୍ଣ୍ଣମେଣ୍ଟ ଆପଣା ଅଭିପ୍ରାୟ ଯଦ୍ୟପି ଘୋଷଣାପତ୍ର ଦ୍ୱାରା ଜଣାଇଲେ ଅନେକ ପିଲାର ଜାତି ରକ୍ଷା ପାଇବେ ଏବଂ କେବଳ ଖ୍ରୀଷ୍ଟିୟାନଙ୍କ ବୃଦ୍ଧି ନିମିତ୍ତ ସାଧାରଣ ଧନବ୍ୟୟ ନିବାରିତ ହେବ ।

## ସାପ୍ତାହିକ ସମ୍ବାଦ

୧୨୨ । କଟକର ଦୁଇଜଣ ସମ୍ଭ୍ରାନ୍ତବ୍ୟକ୍ତିଙ୍କର ମୃତ୍ୟୁସମ୍ବାଦ ଆମ୍ଭେମାନେ ଅତିଶୟ ଦୁଃଖର ସହିତ ପାଠକମାନଙ୍କୁ ଜଣାଉ ଅଛୁଁ । ଏନଗରର ଅଦାଲତି ଦେୱାନୀର ବିଖ୍ୟାତ ଉକିଲ ବାବୁ ଜ୍ଞାନଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ କଲିକତାରେ ଗତ ଶନିବାରଦିନ (4.4.68) ପ୍ରାଣତ୍ୟାଗ କରିଅଛିବାର ଶୁଣିଲୁ ତାର ଡାକଦ୍ୱାରା ପ୍ରକାଶ ହୋଇ ଏବଂ ତହିଁର ତିନିଦିନ ଉତ୍ତାରୁ ଅର୍ଥାତ୍ ଗତ ମଙ୍ଗଳବାର (7.4.68) ପ୍ରାତଃ କାଳରେ ବାବୁ ନରସିଂହ ଚରଣ ଦାସଙ୍କର ଏହି ନଗରରେ ମୃତ୍ୟୁହେଲା । ଏମାନଙ୍କ ବିଷୟରେ ଆମ୍ଭେମାନେ କିଛି ଲେଖିବାର ଆବଶ୍ୟକ ବୋଧ କରୁନାହୁଁ କାରଣ ଅଧିକ ଦେଶୀୟ ଲୋକଙ୍କଠାରେ ଏମାନେ କଦାପି ଅପରିଚିତ ନଥିଲେ । ବାବୁ ଜ୍ଞାନ ଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ ଅପରାପର ଉକିଲମାନଙ୍କ ମଧ୍ୟରେ ବକ୍ତୃତା ଶକ୍ତିରେ ଅଗ୍ରଗଣ୍ୟ ଥିଲେ

ଓ ତାଙ୍କୁ ଲୋକମାନେ ବିଶେଷ ମାନ୍ୟ କରୁଥିଲେ । ବାବୁ ନରସିଂହ ଚରଣ ଦାସ ବହୁକାଳ ଡେପୁଟି କଲେକ୍ଟରର କର୍ମ ଉତ୍ତମରୂପେ ନିର୍ବାହକରି ବର୍ତ୍ତମାନ ପେନସନ ଭୋଗ କରୁଥିଲେ । ଏକ ଏକ ହୋଇ ଏଦେଶର ପୁରାତନ ଓ ବିଜ୍ଞ ଲୋକମାନେ ଆମ୍ଭମାନଙ୍କୁ ପରିତ୍ୟାଗ କରୁଅଛନ୍ତି ।

## ( ୩ୟ ଭାଗ, ୨୫ । ୪ । ୧୮୭୮, ସଂଖ୍ୟା ୧୭ )

୧୬୩ । କଟକସଭା ଓ ଶ୍ରୀଯୁକ୍ତ କମିଶ୍ନର ସାହେବ ।

ପ୍ରାୟ ଦୁଇମାସ ହେଲା କଟକର କେତେ ବିଦ୍ୱାନ ଓ ସମ୍ଭ୍ରାନ୍ତ ଲୋକମାନେ ଆପଣାର ଜ୍ଞାନ ଉନ୍ନତି ଉଦ୍ଦେଶ୍ୟରେ ଗୋଟିଏ ସମାଜ ସ୍ଥାପନ କରିଅଛନ୍ତି, କଟକ ହାଇସ୍କୁଲ ଗୃହରେ ସଭ୍ୟମାନେ ଉପସ୍ଥିତ ହୋଇ ନାନା ଇଂରାଜୀ ଓ ଦେଶୀୟ ସମ୍ବାଦ ପତ୍ର ଓ ପୁସ୍ତକାଦି ପାଠକରନ୍ତି ଓ ମାସରେ ଦୁଇଥର ସମସ୍ତ ସଭ୍ୟ ଏକତ୍ରହୋଇ ସାମାଜିକ ଓ ବିଜ୍ଞାନ ଶାସ୍ତ୍ରାନ୍ତର୍ଗତ ଏକ ଏକ ବିଷୟରେ ତର୍କ ବିତର୍କ କରନ୍ତି ।

× × ×

ଗତବୁଧବାର ତା୧୭ରିଖ ବୁଧବାର ଯେଉଁ ସଭା ହୋଇଥିଲା ସେଥିରେ ଆମ୍ଭମାନଙ୍କର ବିଦ୍ୟାନୁରାଗୀ ଓ ବିଚକ୍ଷଣ କମିଶ୍ନର ଶ୍ରୀଯୁକ୍ତ ରେବନଶା ସାହେବ ସଭା ଦର୍ଶନ କରିବା ଆସି ଯେଉଁପ ସଦ୍‌ବ୍ୟବହାର ଓ ସଦୁକ୍ତିମାନ ପ୍ରକାଶକଲେ ତାହାଦେଖି ଆମ୍ଭେମାନେ ପରମସନ୍ତୋଷ ଆହ୍ଲାଦିତ ଓ ତାହାଙ୍କଠାରେ କୃତଜ୍ଞ ହୋଇଅଛୁଁ ।

କଥା ପ୍ରସଙ୍ଗରେ ଶ୍ରୀଯୁକ୍ତ ରେବନଶା ସାହେବ ସଭାରେ ବ୍ୟକ୍ତକଲେ ଯେ ନାନାପ୍ରକାର ଦେଶହିତକର ଏବଂ ଶାସନ ବିଷୟରେ ଅଭିଜ୍ଞ ସର୍ବସାଧାରଣଙ୍କର ମତ ଜଣାଯାଇପାରେ ଏପ୍ରକାର କୌଣସି ସୁଯୋଗ ଅନେକକାଳରୁ ସେ ଅନୁସନ୍ଧାନ କରୁଅଛନ୍ତି ଏବଂ ଏସଭାଦ୍ୱାରା ତାହାଙ୍କର ଆଶାପୂର୍ଣ୍ଣହେବାର ସମ୍ଭାବନା ଥିବାରୁ ଏହା ଦର୍ଶନ କରିବା ଆସିଅଛନ୍ତି । ଦେଶୀୟ ଲୋକଙ୍କର ଅଭିପ୍ରାୟ ଜଣାଗଲେ ଶାସନକର୍ତ୍ତାମାନଙ୍କର ଅନେକ ଉପକାର ଏବଂ ଦେଶ ଶାସନର ବିସ୍ତର ସୁବିଧା ହୋଇପାରେ । ଯଦ୍ୟପି ଏସଭାରେ ଜମିଦାର ଓ ମହାଜନ ଇତ୍ୟାଦି ନାନାଶ୍ରେଣୀର ଲୋକ ଏକତ୍ର ହୋଇ ଅକାତରଚିତ୍ତରେ ଆପଣା ଅଭିପ୍ରାୟ ପ୍ରକାଶ କରନ୍ତି ତାହାହେଲେ ଅଧିକ ମଙ୍ଗଳର ସମ୍ଭାବନା ଅଛି । ସେ ( ଅର୍ଥାତ୍ କମିଶ୍ନର ) ସଭ୍ୟମାନଙ୍କୁ ଅନୁରୋଧ କଲେ ଯେ

ତାହାଙ୍କ ଅସାକ୍ଷାତରେ ସେମାନେ ଯେଉଁରୂପ ସଭ୍ୟର କାର୍ଯ୍ୟ ନିର୍ବାହ କରନ୍ତି ତାହାଙ୍କ ସାକ୍ଷାତରେ ସେହିପରି କାର୍ଯ୍ୟ କରନ୍ତୁ । ତାହାଙ୍କୁ ସରକାର ଉଚ୍ଚକର୍ମଗୃହୀ କିମ୍ବା ସଭ୍ୟମାନଙ୍କଠାରୁ ଶ୍ରେଷ୍ଠ ଜ୍ଞାନକରି ଯେମନ୍ତ ସଭ୍ୟମାନେ କଥାବାର୍ତ୍ତା କରିବାରେ ଭୟଯୁକ୍ତ ନହୁଅନ୍ତି । ସଭାରେ ଅନ୍ୟାନ୍ୟ ଦର୍ଶକଙ୍କପରି ସେ ଜଣେ ଅଟନ୍ତି ଏବଂ ଏହିପ୍ରକାର ସଭ୍ୟ ତାହାଙ୍କୁ ଜ୍ଞାନକରି ଯଥାରୀତି କାର୍ଯ୍ୟ ନିର୍ବାହ କରନ୍ତୁ । ଯେବେ ତାହାଙ୍କର ସଭାକୁ ଆଗମନରେ ସଭ୍ୟମାନଙ୍କର ଚିତ୍ତର ପ୍ରଫୁଲ୍ଲତା ହ୍ରାସହେବ ଓ ସେମାନେ ନିର୍ଭୟରେ ଆପଣା ୨ ଅଭିପ୍ରାୟ ବ୍ୟକ୍ତକରିବାକୁ ଅକ୍ଷମହେବେ ତେବେ ତାହାଙ୍କ ଉପସ୍ଥିତିରେ କିଛି ଲାଭ ହେବନାହିଁ ଓ ତାହାଙ୍କର ଉଦ୍ଦେଶ୍ୟ ସାଧନ ହେବନାହିଁ ।

× × ×

## ସାପ୍ତାହିକ ସମ୍ବାଦ

୧୨୪ । ସ୍ଥାନୀୟ କର୍ମଗୃହୀଙ୍କ ପରାମର୍ଶ ଏବଂ ଗବର୍ଣ୍ଣମେଣ୍ଟ ବଙ୍ଗାଳଙ୍କ ଅନୁରୋଧରେ କଟକଜିଲ୍ଲାର କାଠଯୋଡ଼ି ଓ କୁଆଖିଆନଦୀ ପାରହେବା ସ୍ଥାନରେ ପହରିବାଲ ନିଯୁକ୍ତ କରିବାକୁ ଗବର୍ଣ୍ଣମେଣ୍ଟ ଇଣ୍ଡିଆ ମଞ୍ଜୁର କରିଅଛନ୍ତି । କେବଳ ଏହି ଦୁଇନଦୀରେ ପହରି ନିଯୁକ୍ତ କରିବା କି ପ୍ରୟୋଜନ ହେଲା ଆମ୍ଭେମାନେ ଜାଣିପାରୁ ନାହୁଁ ।

## ( ୩ୟ ଭାଗ, ୯ ।୪ । ୧୮୭୮, ସଂଖ୍ୟା ୧୯ )

୧୨୫ । କଚେରିକୁ ଜୋତା ପିନ୍ଧି ଯିବାର ବାଧା ।

ଗତ ମାର୍ଚ୍ଚମାସ ତା୧୯ରିଖରେ ଉପାନହ ବ୍ୟବହାର ବିଷୟରେ ଶ୍ରୀଯୁକ୍ତ ଗବର୍ଣ୍ଣର ଜେନେରାଲଙ୍କ ସଭାରେ ଯେ ନିୟମ ପ୍ରଚଳିତ ହୋଇଥିଲା ତାହା ଅବଗତ ହୋଇ ଆମ୍ଭେମାନେ ଆଶା କରିଥିଲୁଁ ଯେ ତଦ୍ଦ୍ୱାରା ଅନେକ ଅନର୍ଥକ ମନସ୍ତାପର କାରଣ ନିବାରଣ ହେଲା ଏବଂ ସର୍ବତ୍ରର ଏକ ପ୍ରକାର ନିୟମ ଚଳିବାରୁ ଅନେକ ଲୋକଙ୍କର ସ୍ୱେଚ୍ଛାନୁରୂପ ବ୍ୟବହାର ରହିତ ହେବାର କାରଣ ହେଲା କିନ୍ତୁ ଏନିୟମଦ୍ୱାରା ଯେ ଅଧିକ ଅନିଷ୍ଟହେବ ଏବଂ ହାକିମମାନଙ୍କ ମନରେ ଜୋତାପ୍ରତି ଅଧିକ ଅଶ୍ରଦ୍ଧା ଜାତହେବ ଏମନ୍ତ ଆମ୍ଭେମାନେ କଦାଚ କଳ୍ପନା କରି ପାରିନଥିଲୁଁ । ଏନିୟମ ପ୍ରଚଳିତ ହେବା ପୂର୍ବରେ ଯଦ୍ୟପି କି ହାକିମଙ୍କ ମିଶିଲକୁ ଜୋତାପିନ୍ଧି ଯିବାର ପ୍ରକାଶ୍ୟ ବାଧା ନଥିଲା କିନ୍ତୁ ଲୋକମାନେ ଜୋତାପିନ୍ଧି ମିଶିଲକୁ ଯାଉଥିଲେ ଏବଂ ହାକିମମାନେ ତାହାଦେଖି ଚୁପି ହୋଇ ବସିଥିବା

ବୋଲି ସେଥିରେ କିଛି କହୁନଥିଲେ । କିନ୍ତୁ ବର୍ତ୍ତମାନ ଆମ୍ଭମାନଙ୍କର ଏକଟିଙ୍ଗ ଜଏଣ୍ଟ ମାଜିଷ୍ଟ୍ରେଟ କର୍ଣ୍ଣ ସାହେବ ଆଉ କଲାଡେଲଙ୍କ ଗୋଡରେ ମିଶାଲ ଉପରେ ଜୋତା ଦେଖି ପାରୁନାହାନ୍ତି । ସୁଅବସ ସେ ମୌଖିକ ଆଜ୍ଞା କରିଥିଲେ ଯେ ଇଂରେଜୀ ଜୋତା ନପିନ୍ଧିଲେ କେହି ଜୋତା ସହିତ ମଙ୍ଗଳକୁ ଆସିବ ନାହିଁ । ଯଦ୍ୟପି ଲୋକମାନେ ଇଂରେଜୀ ଜୋତା ବ୍ୟବହାର କଲେ ତହିଁରେ ଅଧିକ ବଳବନ୍ତ ହୋଇ ଇସ୍ତାହାର ଦେଇ ଅଛନ୍ତି ଯେ ଚିକିବଲ ଜୋତାପିନ୍ଧି ମଙ୍ଗଳକୁ କେହି ଆସିବନାହିଁ । ମୋଜା ଓ ଜୋତା ଉଭୟ ପରିଧାନ କରିବାର ଆବଶ୍ୟକ, ଖାଲି ଜୋତା ପିନ୍ଧି ମଙ୍ଗଳକୁ ଆସିବାର ଦେଶିକ ଥାଇ ସାହେବ ଯେଉଁ କୋଠରୀରେ ବସନ୍ତି ସେଥିର ଚୌକାଠକୁ କେହି ଡେଇଁବ ନାହିଁ । ଏ ଆଜ୍ଞା ଉଲ୍ଲଙ୍ଘନରେ ଦଣ୍ଡଭାଜନ କରିବାକୁ ସେ ଏତେ ଅଭିଳାଷୀ ଯେ ଘରର ଉତ୍ତର ଦାଣ୍ଡି ଦୁଇପାର୍ଶ୍ୱରେ ଗୃହବାସ ଏହିପରି ଇସ୍ତାହାର ଦେଇ ଅଛନ୍ତି ।

ଉପଯୁକ୍ତ ବେଶ ଧାରଣ ପୂର୍ବକ ଲୋକଙ୍କୁ କଚେରୀକୁ ଆସିବା ପାଇଁ ବାଧ୍ୟକରିବା ଉତ୍ତମ କଥା ଅଟଇ ଏବଂ ଏହିକଥା ମନେକରି ବୋଧହୁଅଇ ମୁକ୍ତାର ଓ ଅମଲମାନେ ମୋଜା ଓ ଜୋତାପିନ୍ଧି ଆସି ହାକିମଙ୍କୁ ପରିତୋଷ କରୁଅଛନ୍ତି । କିନ୍ତୁ ଏରୂପ ଇସ୍ତାହାର ଦେବା ଗିବର୍ଣ୍ଣର ଜେନେରାଲଙ୍କ ଆଜ୍ଞାର ଅତିରିକ୍ତ ଥିବାରୁ ଆମ୍ଭେମାନେ ଏହାର ପ୍ରତିବାଦ କରୁଅଛୁଁ ।

୨୬୭ । 

## କେନ୍ଦୁଝର

ପ୍ରାୟ ତିନିମାସ ପୂର୍ବେ ଆମ୍ଭେମାନେ ଲେଖିଥିଲୁଁ ଯେ କେନ୍ଦୁଝରର ବିଦ୍ରୋହ ଶେଷହୋଇ ଏବଂ ସେସ୍ଥାନର ଅସଭ୍ୟଜାତି ଲୋକମାନେ ଶ୍ରୀ ରାଜା ଧନୁର୍ଜୟ ଭଞ୍ଜଙ୍କ ଅଧୀନତା ସ୍ୱୀକାରକଲେ କିନ୍ତୁ ସମ୍ପ୍ରତି ଉକ୍ତ କିଲ୍ଲାର ଅବସ୍ଥା ପୂର୍ବାପେକ୍ଷା ଅଧିକ ମନ୍ଦ ଥିବାର ଜଣାଯାଏ । ଭୂୟାଁମାନେ ପୁନର୍ବାର ଅତ୍ୟାଚାର ଆରମ୍ଭ କରିଅଛନ୍ତି ଏବଂ ନାନା ପ୍ରକାର ଶସ୍ତ୍ରଧାରଣ ପୂର୍ବକ ଦଳବଦ୍ଧ ହୋଇ ରାଜାଙ୍କଠାରୁ ସ୍ୱାଧୀନ ହେବାର ଚେଷ୍ଟା କରୁଅଛନ୍ତି । ଗୃହଦାହ ଓ ସରକାରୀ ଡାକ ଲୁଟ କରିବା ଏବଂ ସରକାରୀ କର୍ମଚାରୀଙ୍କ ଆଜ୍ଞା ଅମାନ୍ୟ କରିବାରେ ରାଜା ଓ ତାହାଙ୍କ ବେତନ ପ୍ରସାଦ କର୍ମଚାରୀଙ୍କ ପ୍ରାଣସଂଶୟ ହୋଇଅଛି ।

ଶ୍ରୀଯୁକ୍ତ କମିଶ୍ନର ସାହେବ ଏହିକ୍ଷଣ ଅଧିକକାଳ କେନ୍ଦୁଝରରେ ବାସକରି ସନ୍ତୋଷ କୌଶଳକ୍ରମେ ଭୂୟାଁମାନଙ୍କୁ ସତ୍ପଥରେ ଆଣିଲେ ତାହାର ଏତେ ଅଳ୍ପ କାଳରେ ଯେ ପୁନର୍ବାର ସେମାନଙ୍କର ମତି ଫେରିଯିବ ଆମ୍ଭେମାନେ ଏରୂପ ବିଶ୍ୱାସ କରି

ନଥିଲେ । ପଞ୍ଚାନ୍ତରେ ରାଜା ଧନୁର୍ଜୟ ଭଞ୍ଜଙ୍କ ବଳଦ୍ଧରେ ବଣୁଆଙ୍କ ଚିତ୍ତରେ ଯେରୂପ ପରିଚୟ ତାହାଙ୍କ ଉଚିତ କେତେକ ରୀତିର ପ୍ରାପ୍ତ ହୋଇଅଛି ତଦ୍ଭିନ୍ନ ଯେମାନେ ସେ ସହଜରେ ତାହାଙ୍କୁ ରାଜାବୋଲି ସ୍ୱୀକାର କରିବେ ସମ୍ଭାବନାର ଅତିରିକ୍ତ, କାରଣ ମୁଗଲବନ୍ଦୀର ଅପେକ୍ଷାକୃତ ସଭ୍ୟଲୋକ ନାନା କାରଣରୁ ଗବର୍ଣ୍ଣମେଣ୍ଟର ଆଜ୍ଞା ପାଳନ କରନ୍ତି କିନ୍ତୁ ବଣୁଆମାନେ ନା ପ୍ରକୃତ୍ୱାସ୍ଥ ସ୍ଥିରବୁଝନ୍ତି ନା ପରିଜ୍ଞାନର ଉପରେ କାବୁଷ ହୁଅନ୍ତି । ସୁତରାଂ ଏମାନଙ୍କୁ ପ୍ରବୋଧ ଦେବାର ସହଜ ବ୍ୟାପାର ନୁହଇ । ବର୍ତ୍ତମାନ କ୍ଷେତ୍ରମାନଗୁଡିକ ଉପୋକ୍ତ କମିଶ୍ନର ଏମନ୍ତ ନିବାରଣ କମିଶ୍ନ ନେଲଙ୍କରଲୁ ଗବର୍ଣ୍ଣମେଣ୍ଟ ଆଜ୍ଞାନୁସାରେ ଆସୁଅଛନ୍ତି ଏବଂ ଶ୍ରୀଯୁକ୍ତ ରେଭେନସା ସାହେବ କମିଶ୍ନର ମଧ୍ୟ ସେଠାକୁ ଯିବାକୁ ଉଦ୍ୟତ ଅଛନ୍ତି । ଏମାନେ ଉପସ୍ଥିତ ହେଲେ ଶାନ୍ତିରକ୍ଷାର ବିଶେଷ ପନ୍ଥା ଅବଶ୍ୟ କରିବେ ସନ୍ଦେହ ନାହିଁ ଏବଂ ପୁଲିସ ସେନା ମଧ୍ୟ ଅନେକ ଯିବାପାଇଁ ପ୍ରସ୍ତୁତ ହୋଇଅଛନ୍ତି କିନ୍ତୁ ଆମ୍ଭେମାନେ ବିବେଚନାକଲୁଁ ବଳାତ୍କାରରେ ଏମାନଙ୍କୁ ଶାସନ କରିବାର ଉଚିତ ନୁହଇ । ତାହାହେଲେ ସେ ଶାସନ ଚିରକାଳ ରହିବନାହିଁ । ଯେରୂପ ତାହାଙ୍କର ମନ ମାନିବ ଏରୂପ କରିବା ଆବଶ୍ୟକ ।

## ( ୩ୟ ଭାଗ, ୧୬ । ୪ । ୧୮୬୮, ସଂଖ୍ୟା ୬୦ )

୧୬୨ । ଏଦେଶୀୟ ଲୋକଙ୍କର ଉଚ୍ଚପଦରେ ନିଯୁକ୍ତ ହେବା ।

× × ×

ଉତ୍କଳଦେଶକୁ ବଙ୍ଗଳାର ଏକ ଅଂଶ କରିବାରେ ଗବର୍ଣ୍ଣମେଣ୍ଟର ଯେ କିଛି ଶାସନର ସୁବିଧା ହେଉ, ପ୍ରକୃତ ଉତ୍କଳବାସୀମାନଙ୍କର ଉନ୍ନତି ପକ୍ଷରେ ଏ ବନ୍ଦୋବସ୍ତ ଅନେକ ପ୍ରକାରରେ ଅପକାରଜନକ ହୋଇଅଛି । ବଙ୍ଗଳାରେ କଲେଜ ଅର୍ଥାତ୍ ଉଚ୍ଚ-ବିଦ୍ୟାଳୟ ସ୍ଥାପନ ହେବାର ଏତେକାଳ ଓଡ଼ିଶାରେ ଉଚ୍ଚଶ୍ରେଣୀର ସ୍କୁଲ ମଧ୍ୟ ସ୍ଥାପନ ହୋଇନଥିଲା । ବଙ୍ଗଳାରେ ବଙ୍ଗଭାଷାର ଉନ୍ନତି ହେଉଥିବାର ଏତେଦିନ ଗବର୍ଣ୍ଣମେଣ୍ଟ ବଳାତ୍କାରରେ ଉତ୍କଳ ବାଳକମାନଙ୍କୁ ବଙ୍ଗଭାଷାରେ ଶିକ୍ଷା ଦେଉଅଛନ୍ତି ଏବଂ ବଙ୍ଗଳାରେ ସୁଶିକ୍ଷିତ ଦେଶୀୟ ଲୋକଙ୍କ ସଂଖ୍ୟା ଅଧିକ ହେବାରୁ ଯେବେ ଉଚ୍ଚପଦର କର୍ମଚାରୀ ଆବଶ୍ୟକହେଲେ ବଙ୍ଗଳାରୁ ଆସୁଅଛନ୍ତି । ଏଥିରେ ଆମ୍ଭମାନଙ୍କ ଶାସନକର୍ତ୍ତାଙ୍କ କାର୍ଯ୍ୟପ୍ରତି ଲକ୍ଷ୍ୟକଲେ ସ୍ପଷ୍ଟ ପ୍ରତୀତ ହୁଅଇ ଯେ ଯାହା ବଙ୍ଗଳାରୁ ଆସିଗଲେ ତାହା ଏଦେଶରେ ଥାଉ ଅଥବା ନଥାଉ ବଙ୍ଗଳାର ଆନୁରୂପ କରନ୍ତି । କେବଳ ମାସିକ ଦଶ ଓ କୋଡ଼ିଏ ଟଙ୍କା ବେତନର ମୋହରିର କି କିରାଣୀ କଲିକତାରୁ ଆସିବେନାହିଁ

ହୋଇ ଏପ୍ରଦେଶର ଲୋକଙ୍କୁ କାର୍ଯ୍ୟ କରିବାକୁ ବାଧ୍ୟ ହୁଅନ୍ତି । ଯେତେକାଳ ଏ ନିୟମର ପରିବର୍ତ୍ତନ ନହେବ ଏବଂ ଯେତେକାଳ କଲି—ପ୍ରଦେଶର ସ୍ୱାଳମମାନେ ଆମଲା ଅଧିକାରସ୍ଥ ଲୋକଙ୍କୁ କ୍ରମଶଃ ଉଚ୍ଚପଦରେ ଆରୂଢ଼ ନକରିବେ ସେତେକାଳ ଉତ୍କଳବାସିଙ୍କର ମଙ୍ଗଳ ହେବନାହିଁ ବରଂ କର୍ତ୍ତବ୍ୟ କର୍ତ୍ତବ୍ୟ ନୈପୁଣ୍ୟର ନୂତନ ପ୍ରମାଣ ଦେଖି ଉତ୍ସାହଭଙ୍ଗ ହେବାରୁ ସମ୍ପୂର୍ଣ୍ଣରୂପେ ଅକର୍ମଣ୍ୟ ହେବେ ।

× × ×

୧୬୮ । **କେନ୍ଦୁଝର**

ଏକଲର ସମ୍ପର୍କୀୟ ଉଲଲିଖିତ ତାରଖ୍ୟାର ସମ୍ବାଦ ନିମନ୍ତେ ଆମ୍ଭେମାନେ ଶ୍ରୀଯୁକ୍ତ କମିଶ୍ନର ସାହେବଙ୍କ ନିକଟରେ ଋଣୀ ହୋଇଅଛୁଁ । ଏସମ୍ବାଦ ଗତ ବୁଧବାର ଗବର୍ଣ୍ଣମେଣ୍ଟ ବଙ୍ଗାଳରୁ ତାହାଙ୍କ ନିକଟକୁ ଆସିଥିଲା, ଯଥା :—

"ଡାଲଟନ ସାହେବ ଲେଖିଛନ୍ତି କି କେନ୍ଦୁଝରରେ ଅବସ୍ଥା ଅତିଶୟ ମନ୍ଦ ଦେଖା ଯାଉଅଛି । ଗବର୍ଣ୍ଣମେଣ୍ଟ ଧନୁର୍ଜୟ ଭଞ୍ଜଙ୍କର ସାହାଯ୍ୟ କରିବେ । ଅତଏବ ତୁମ୍ଭେ ଯେତେ ପୁଲିସ ଜମା କରିପାର ତାହାକରି ହେଏ ସାହେବଙ୍କଠାକୁ ପଠାଇ ଦିଅ ।"

ଗବର୍ଣ୍ଣମେଣ୍ଟଙ୍କର ଅଭିପ୍ରାୟ ଆମ୍ଭମାନଙ୍କ ଜାଣିବାରେ କେନ୍ଦୁଝରିଆ ଲୋକଙ୍କର ସ୍ପଷ୍ଟ ସପକ୍ଷତା ଥିବାରୁ ଗୋଳମାଳ ସହଜରେ ନିବୃତ୍ତ ହେବାର କଷ୍ଟ ହେଲେହେଁ ଗବର୍ଣ୍ଣମେଣ୍ଟ ଭଲପ୍ରକାର ବ୍ୟବହାର କରିନପାରନ୍ତି । ଯାହାମତେ ଭାରତବର୍ଷର ସର୍ବୋଚ୍ଚ ଅଦାଲତର ଶ୍ରୀ ଧନୁର୍ଜୟ ଭଞ୍ଜ ରାଜା ବୋଲି ସ୍ଥିର ହୋଇଅଛି । ଯେବେ ସେ ଆଜ୍ଞାକୁ କେତେ ଜଣ ବନୁଆଲୋକ ମିଳକରି ଅକର୍ମଣ୍ୟ କରିପାରନ୍ତି ଓ ଅତ୍ୟାଗ୍ରହ କରିବା ଦ୍ୱାରା ଗବର୍ଣ୍ଣମେଣ୍ଟଙ୍କୁ ସେଥିର ଅନ୍ୟଥା କରିବା ନିମନ୍ତେ ପ୍ରକାରାନ୍ତରେ ବାଧ୍ୟକରନ୍ତି ତାହା ହେଲେ ଅଦାଲତର ମହିମା ଆଉ ଶାସନର ପରାକ୍ରମ କେଉଁଠାରେ ରହିଲା ? ଅନ୍ୟାନ୍ୟ ସ୍ଥଳର ଦୁଷ୍ଟ ଲୋକମାନେ ମଧ୍ୟ କେନ୍ଦୁଝରିଆଙ୍କର ଆଚରଣକୁ ଲକ୍ଷକରି ଅନ୍ୟାୟ ଓ ବଳପୂର୍ବକ ଆପଣା ଅଭୀଷ୍ଟ ସିଦ୍ଧକରିବାକୁ ଉତ୍ସାହିତ ହେବେ ଏବଂ ଏମନ୍ତ ହେଲେ ଦିନ ଦିନ ଉପଦ୍ରବ ବଢିବ ।

ପକ୍ଷାନ୍ତରେ ଯେଉଁମାନେ ରାଜା ଧନୁର୍ଜୟ ଭଞ୍ଜର ବିପକ୍ଷ ହୋଇଅଛନ୍ତି ସେମାନେ ନିତାନ୍ତ ଅସଭ୍ୟ ଥିବାରୁ ନ୍ୟାୟଯୁକ୍ତ ଆଇନର ଫଳରୁ ବଞ୍ଚିତ ଅଛନ୍ତି । ବୋଧହୁଏ

ଏମାନେ ଏକପ୍ରକାର ପଶୁ ଅଟନ୍ତି ସୁତରାଂ ଏମାନଙ୍କ ଉପରେ ବଳ ପ୍ରକାଶକରି ଦମନ କରିବାରେ ଅନେକ ଲୋକର ପ୍ରାଣଦଣ୍ଡ କିଂବା ଶାରୀରିକ ପୀଡାଦେବା ଦୁଃଖର ବିଷୟ ଅଟଇ । ଅତଏବ ଏଠାରେ ଉଭୟ ସଙ୍କଟ ଉପସ୍ଥିତ ହୋଇଅଛି । ଆମ୍ଭମାନେ ଭରସା କରୁ ଯେ ଏସ୍ଥଳେ ସରକାରୀ କର୍ମଚାରୀମାନେ ଏରୂପ ସୁବିବେଚନାପୂର୍ବକ କାର୍ଯ୍ୟ କରିବେ କି ଦେହିରେ ପୁଣିଥରେ ଅନର୍ଥ ବିନା ଦେଶ ଶାସନ ହୋଇପାରେ ।

ଟାହାହେଉ ଶ୍ରୀଯୁକ୍ତ କମିଶ୍ନର ସାହେବ ଉପର ଲିଖିତ ସମ୍ବାଦ ସାଧାରଣର ଗୋଚରାର୍ଥେ ଆମ୍ଭମାନଙ୍କ ନିକଟକୁ ପଠାଇବାରେ ଅନେକ ଉପକାର କରିଅଛନ୍ତି । ସମ୍ପ୍ରତି କେନ୍ଦୁଝରର କଥାନେଇ ଅସତ୍ୟ ଲୋକମାନେ ନାନା ତର୍କ ବିତର୍କ କରୁଅଛନ୍ତି ଏବଂ ସତ୍ୟ ମିଥ୍ୟା କେତେକଥା ଶୁଣାଯାଉଅଛି ସେଥିର ସୀମାନାହିଁ । କେହି କହନ୍ତି ବଣୁଆମାନେ ଦେବଗଡ଼କୁ ନଗରର ଧନଯାଇ ଆପଣାମାନଙ୍କ ନିକଟରେ ରଖିଅଛନ୍ତି ଓ କେହି କହନ୍ତି ଯେ ରାଜାଙ୍କୁ ମଧ୍ୟ ରାଣୀର ହସ୍ତରୁ ଛଡ଼ାଇନେଇ ଏହିପ୍ରକାରେ ବନ୍ଦୀ କରିଅଛନ୍ତି । ବଣୁଆମାନଙ୍କର ରଣସଜ୍ଜା ବିଷୟରେ ନାନାକଥା ଶୁଣାଯାଏ । ଏସ୍ଥଳେ ରାଜପୁରୁଷଙ୍କର ଉଚିତ ଯେ ଯଥାର୍ଥ ବ୍ୟାପାର ଲୋକଙ୍କୁ ଜଣାଇବା କାରଣ ଚେଷ୍ଟା କରନ୍ତୁ ଓ ସମ୍ବାଦ-ପତ୍ରରେ ମୁଦ୍ରିତ ହେବା କାରଣ ଉପଯୁକ୍ତ କଥାମାନ ପଠାଇଲେ ଯେ ସମସ୍ତ ସତ୍ୟ ବୃତ୍ତାନ୍ତର ଅବଗତହେବେ ଏହା ବୋଲିବା ବାହୁଲ୍ୟ ।

## ସାପ୍ତାହିକ ସମ୍ବାଦ

୧୨୯ । କେନ୍ଦୁଝରର ବିଦ୍ରୋହ ନିବାରଣାର୍ଥେ କଟକ ପୁଲିସର ଡିଷ୍ଟ୍ରିକ୍ଟ ସୁପ୍ରିଣ୍ଟେଣ୍ଡେଣ୍ଟ ଏବଂ ପୁଲିସ ସାହେବ ଅସିଷ୍ଟାଣ୍ଟ ପୁଲିସ ଶିପାହୀଙ୍କୁ ନେଇ ଯାଇଅଛନ୍ତି । ଓଡ଼ିଶା ପ୍ରଦେଶର ବିଭିନ୍ନ ସ୍ଥାନରୁ ପ୍ରାୟ ଦୁଇଶତ ପୁଲିସରୁ ଅଧିକ ସେଠାକୁ ଯିବାର ଆଜ୍ଞା ପାଇଅଛନ୍ତି । ଶ୍ରୀଯୁକ୍ତ ବାବୁ ହରେକୃଷ୍ଣ ଦାସ ଅସିଷ୍ଟାଣ୍ଟ ସୁପ୍ରିଣ୍ଟେଣ୍ଡେଣ୍ଟ ଗଡଜାତ ମାହାଲ ମଧ୍ୟ ସେଠାକୁ ଯାଇଅଛନ୍ତି । ଶୀଘ୍ର ଗୋଲମାଲ ନିବାରଣର ସମ୍ବାଦ ନଆସିଲେ ସ୍ୱୟଂ କମିଶ୍ନର ସାହେବଙ୍କୁ ଯିବାକୁହେବ ।

**( ୩୨ଶ ଭାଗ, ୨୩ । ୪ । ୧୮୭୮, ସଂଖ୍ୟା ୨୧ )**

୧୩୦ । କେନ୍ଦୁଝର

କେନ୍ଦୁଝର ସମ୍ପର୍କରେ ଓଡ଼ିଶାଗଡଜାତ ମାହାଲର ସୁପ୍ରିଣ୍ଟେଣ୍ଡେଣ୍ଟଙ୍କର ନିମ୍ନଲିଖିତ ବିଜ୍ଞାପନ ସାଧାରଣଙ୍କ ଜ୍ଞାତାର୍ଥେ ପଠାଯାଇଅଛି :—

ବିଜ୍ଞାପନ

ଯେହେତୁ ଏବେକାର ଅଦାଲତର ହାକିମମାନଙ୍କ ତଜବିଜରେ ରାଜା ଧନୁର୍ଜୟ ନାରାୟଣଭଞ୍ଜ କଟକଜିଲ୍ଲା ଅନ୍ତଃପାତୀ ତେଳାଙ୍ଗ ମାହାଲ କିଲ୍ଲା କେନ୍ଦୁଝରର ଆଇନସିଦ୍ଧ ଓ୍ୟାରସ ଓ ଅଧିକାରୀ ଥିବାର ସ୍ଥିର ହୋଇଅଛି ରାଜାଧନୁର୍ଜୟ ଭଞ୍ଜଙ୍କ ନାମରେ ତାହାଙ୍କ ତରଫରୁ କେତେକ ବର୍ଷ କଟକଜିଲ୍ଲା ଗଡଜାତ ମାହାଲର ସୁପ୍ରିଣ୍ଟ ଏଜେଣ୍ଟର କାର୍ଯ୍ୟ-ନିର୍ବାହ କରିଥିଲେ ଓ ସେ ବୟଃପ୍ରାପ୍ତ ହେବାରୁ ଗବର୍ଣ୍ଣମେଣ୍ଟ ତାଙ୍କ ସମ୍ପତ୍ତି ଓ ରାଜଗି ତାଙ୍କ ଜିମା କରିଦେଲେ । ବର୍ତ୍ତମାନ ମହାଜ୍ଞପ୍ରାୟ ··· ················ ଗୋଳମାଳ ଓ ଆପତ୍ତିମାନ ହୋଇଥିବାରୁ ରାଜାଙ୍କ ବିଦ୍ରୋହୀ ପ୍ରଜାମାନଙ୍କ ବିପକ୍ଷରେ ରାଜାଙ୍କ ସହାୟତା ନିମନ୍ତେ ବିଶେଷ ପୁଲିସସୈନ୍ୟ କେନ୍ଦୁଝରକୁ ପଠାଯିବାର ଆବଶ୍ୟକ ଦେଖାଯାଉଅଛି । ଅତଏବ ସର୍ବସାଧାରଣଙ୍କୁ ଏତଦ୍ଵାରା ଜଣାଇ ଦିଆ ଯାଉଅଛି ଯେ ଭାରତବର୍ଷର ପ୍ରବଳ ପ୍ରତାପ ଶ୍ରୀଯୁକ୍ତ ଶ୍ରୀଗବର୍ଣ୍ଣର ଜେନରଲ ସାହେବ ବାହାଦୂରଙ୍କ ମଞ୍ଜୁରରେ ରାଜା ଶ୍ରୀ ଧନୁର୍ଜୟ ଭଞ୍ଜଙ୍କର ଯେ ପ୍ରକାର ଆପଣା ରାଜ୍ୟର ଅଧିକାର ସୁସ୍ଥିର ରହିବ ସେପ୍ରକାର ତାହାଙ୍କୁ ସାହାଯ୍ୟ କରିବା ନିମନ୍ତେ ଗବର୍ଣ୍ଣମେଣ୍ଟ ବଙ୍ଗାଳ ପ୍ରତିଜ୍ଞା କରିଅଛନ୍ତି । ଏ ବିଜ୍ଞାପନ ଦ୍ଵାରା ସମସ୍ତ ଲୋକଙ୍କୁ ସାବଧାନ କରାଇ ଦିଆ ଯାଉଅଛି ଯେ ଯେ କେହି କେନ୍ଦୁଝର ଲୋକଙ୍କୁ କିମ୍ବା ରାଣୀ ଶ୍ରୀବିଷ୍ଣୁପ୍ରିୟା ପାଟମହାଦେଈଙ୍କୁ ଅଥବା ବାବୁ ବୃନ୍ଦାବନଚନ୍ଦ୍ର ଭଞ୍ଜଙ୍କୁ କିମ୍ବା ଅନ୍ୟ କାହାରକୁ ରାଜା ଧନୁର୍ଜୟ ଭଞ୍ଜଙ୍କର କିଲ୍ଲା କେନ୍ଦୁଝରର ଆଇନସିଦ୍ଧ ଅଧିକାରରେ ବାଧା ଜନ୍ମାଇବାରେ କି ବିପକ୍ଷ ଆଚରଣ କରିବାରେ ସାକ୍ଷାତରେ କିମ୍ବା ଅସାକ୍ଷାତରେ ସାହାଯ୍ୟ କରନ୍ତି ସେମାନଙ୍କପ୍ରତି ବିହିତ ଦଣ୍ଡ ହେବ । ତା୧୯ ରିଖ ମାହେ ମଇ ସନ ୧୮୬୮ମସିହା ।

ସାପ୍ତାହିକ ସମ୍ବାଦ

୧୮୧ । କ୍ରମେ କ୍ରମେ ଓଡ଼ିଶାର ତଳଗଡଜାତମାନ ଲୋପ ପାଉଅଛି । ଗତ ସପ୍ତାହରେ କିଲ୍ଲା ପଟିଆର ଅନେକ ମୌଜା ଅଦାଲତରେ ନିଲାମ ହେବାରୁ ସାରଭାଗ ମାତ୍ର ରହିଅଛି କିନ୍ତୁ କିଲ୍ଲା କୁଜଙ୍ଗ ସମ୍ପୂର୍ଣ୍ଣରେ ବୁଡ଼ିଗଲା ଅର୍ଥାତ୍ ସମୁଦାୟ କିଲ୍ଲା ଅଦାଲତରେ ନିଲାମଦ୍ଵାରା ପୂର୍ବାଧିକାରୀ ରାଜାଙ୍କଠାରୁ ବାହାରିଗଲା । ବର୍ତ୍ତମାନ ମହାରାଜା ସାହେବାଜାଦା ଠାକୁରେ ଏକିଲ୍ଲାକୁ କ୍ରୟ କଲେ ।

**( ୩ୟ ଭାଗ, ୩୦ । ୫ । ୧୮୬୮, ସଂଖ୍ୟା ୨୨ )**

ସାପ୍ତାହିକ ସମ୍ବାଦ

୧୮୨ । ସିଂହଭୂମି ଡେପୁଟି କମିଶନର ଡାକ୍ତର ହେସ ସାହେବ କିଲ୍ଲା କେନ୍ଦୁଝରରେ

ମାଜିଷ୍ଟ୍ରେଟ କଲେକ୍ଟରର ଏବଂ ଅଧୀନ ଜଜର କ୍ଷମତାପ୍ରାପ୍ତ ହୋଇଅଛନ୍ତି ଏବଂ କଟକରେ ଗଡ଼ଜାତ ମହାଲର ସୁପ୍ରିଣ୍ଟ ସାହେବଙ୍କ ଅଧୀନରେ କ୍ଷମତାନୁସାରେ କାର୍ଯ୍ୟକରିବେ ।

## (୩ୟ ଭାଗ, ୭।୭।୧୮୭୮, ସଂଖ୍ୟା ୨୩)

୧୩୩ । କେନ୍ଦୁଝର

ଆମ୍ଭେମାନେ ଯାହା ଶେଷରେ ଭୟକରିଥିଲୁଁ ତାହା ଶେଷରେ ଉପସ୍ଥିତ ହେଲା । କେନ୍ଦୁଝରର ପୂର୍ବବିଷୟରେ ଆଉ ସନ୍ଦେହନାହିଁ ଅଥବା ଏହାକୁ ମିଛବୋଲିବା ଅନ୍ୟାୟ ଅଟଇ କାରଣ ଏ ପ୍ରଜା ଶାସନର ଉପାୟ ମାତ୍ର । ଦୁର୍ବୃତ୍ତ ବଣୁଆ ପ୍ରଜାମାନେ ଆପଣା ଜମିଦାର ଓ ତଦ୍ଦ୍ୱାରା ଗଭର୍ଣ୍ଣମେଣ୍ଟର ବଳବତରେ ଅସ୍ୱୀକାରକରି କେବଳ ଆପଣାର ଅମଙ୍ଗଳ ସାଧନ କରୁଅଛନ୍ତି ଏମନ୍ତ ନୁହେ, ପାର୍ଶ୍ୱବର୍ତ୍ତୀ ଅନ୍ୟାନ୍ୟ ଲୋକମାନଙ୍କର ମଧ୍ୟ କ୍ଳେଶର କାରଣ ହୋଇଅଛନ୍ତି ।

ଗଭର୍ଣ୍ଣମେଣ୍ଟ ପ୍ରଥମେ ଶ୍ରୀଯୁକ୍ତ ହେଉସ ସାହେବଙ୍କୁ କେନ୍ଦୁଝରକୁ ପଠାଇଲେ, ସେ ସଦ୍‌ବ୍ୟବହାରପୂର୍ବକ ବିଦ୍ରୋହୀମାନଙ୍କୁ ସେମାନଙ୍କ ଭ୍ରମ ଓ ମହାଗର୍ଭରୁ ଉଦ୍ଧାର କରିବାକୁ ଚେଷ୍ଟାକଲେ ଏବଂ ସେମାନଙ୍କର ଅତ୍ୟାଚାରର ନିବାରଣ ନିମନ୍ତେ କଟକରୁ କେତେକ ପୁଲିସ ମଧ୍ୟ ପ୍ରେରଣ ହେଲେ । କିନ୍ତୁ ବୋଧହୁଅଇ ଅବାଧ୍ୟ ସେମାନେ ଆପଣାକୃତ ଦୁଷ୍କର୍ମର ଅନିଷ୍ଟ ବୁଝି ଧାଇନାହାନ୍ତି ଏବଂ ଅଧିକ ସଂଖ୍ୟାରେ ସ୍ଥାନ ସ୍ଥାନରେ ଏକତ୍ର ହେବାରୁ ସେମାନଙ୍କ ଅଭିପ୍ରାୟ ସ୍ପଷ୍ଟ ପ୍ରକାଶ ହେଉଅଛି । ଅତଏବ ଗଭର୍ଣ୍ଣମେଣ୍ଟ ରାଜା ଧନୁର୍ଜୟ ଭଞ୍ଜଙ୍କ ସାହାଯ୍ୟ ଏବଂ ଦେଶର କୁଶଳ ସ୍ଥାପନ ନିମନ୍ତେ ଅଧିକ ପରିମାଣରେ ସୈନ୍ୟ ପଠାଇବାକୁ ବାଧ୍ୟହେଲେ ।

ଏ ତଦନୁସାରେ ଛୋଟନାଗପୁରର କମିଶନର ଡାଲଟନ ସାହେବ ସ୍ୱୟଂ ସେଠିକୁ ଆସୁଅଛନ୍ତି ଏବଂ ଓଡ଼ିଶା ଛୋଟନାଗପୁର ଓ ବର୍ତ୍ତମାନ ପ୍ରଭୃତି ସ୍ଥାନରୁ ଯେତେ ପୁଲିସ ଓ ଜଙ୍ଗି ସିପାହୀ ଆସିବାର ଆଜ୍ଞା ହୋଇଅଛି ଓ କାଠ ଘାଟର ସୁଯୋଗ ଏବଂ ଆହାରୀୟ ଦ୍ରବ୍ୟ ଆୟୋଜନ ଯେଉଁପ ହେଉଅଛି ତଦ୍ଦୃଷ୍ଟିରୁ ବୋଧ ହୁଅଇ ଯେ ଯୋଗାଏ ଦେଶ ଜୟ ହୋଇପାରେ କେନ୍ଦୁଝର ଅବା କେତେମାତ୍ର ଅଟଇ ।

ଦେବର୍ଣ୍ଣର କୁଶଳ ସମାଚାର ଅବଧି ପ୍ରାପ୍ତ ହୋଇନାହିଁ । ତାହାଙ୍କୁ ଗଡମଧ୍ୟରେ କେଉଁଠାରେ ଲୁଚାଇ ରଖି ଅଛନ୍ତି । ସେମାନେ ଗଡ ମଧ୍ୟରେ ପ୍ରବେଶହୋଇ ଦେବର ଗଲେ ସେଉଁଠାରେ ଥିବ ଜଣାପଡ଼ିବ ।

ଯାହାହେଉ ବଡ଼ କଷ୍ଟ ସମ୍ମୁଖରେ ବିଦ୍ରୋହ ନିବାରଣ କରିବାକୁ ପଡ଼ିଲା । ବର୍ଷାହେତୁରୁ ସେନାମାନେ ନାନା ପ୍ରକାର କଷ୍ଟ ପାଇଲେ । ଗୃହ ସମୟରେ ବଣୁଆମାନେ ସୁଖରେ ମାତ୍ର ଆପଣା ଆହାର ନିମିତ୍ତ ଶସ୍ୟ ଉତ୍ପନ୍ନ କରି ନପାରିବାରୁ ଅନେକଙ୍କୁ ପାଇବେ । କୁଲିବେଗାରି ଏ ସମୟରେ ଅଧିକ ଦରକାର ହେଲେ ମୁଗଲବନ୍ଦୀରେ ମଧ୍ୟ ଗୃହର ଖରବର ହେବ ।

ଆମ୍ଭେମାନେ ଭରସା କରୁଁ ଯେ ବଣୁଆମାନେ ଆପଣା ଭ୍ରମ ବୁଝିପାରି ଶାନ୍ତ-ହେଉନ୍ତୁ ଏବଂ ଅକାରଣ ଯେମନ୍ତ ଅନେକଲୋକ ମରି ନପଡ଼ନ୍ତି ।

## (୩ୟ ଭାଗ, ୧୩ । ୭ । ୧୮୭୮, ସଂଖ୍ୟା ୨୪)

### ସାପ୍ତାହିକ ସମ୍ବାଦ

୧୩୪ । କେନ୍ଦୁଝର

କେନ୍ଦୁଝରରୁ ଏ ସପ୍ତାହରେ ଆହୁରି ଦୁଇ କୁମ୍ପାନି ସିପାହି ଗଲେ । ଏହାଙ୍କୁ ନେଇ କେନ୍ଦୁଝରରେ ପୁଲିସ ଓ ଜଙ୍ଗି ହୋଇ ଦୁଇସହସ୍ର ସୈନ୍ୟ ହେବ । ଏମାନଙ୍କ ସକାଶ ଖାଦ୍ୟସାମଗ୍ରୀ ଗୃହିଁବସା ମେଦିନୀପୁର ବାଲେଶ୍ୱର କଟକ ଜିଲାମାନଙ୍କରୁ ଯାଉଅଛି ।

## (୩ୟ ଭାଗ, ୨୦ । ୭ । ୧୮୭୮, ସଂଖ୍ୟା ୨୫ )

### ସାପ୍ତାହିକ ସମ୍ବାଦ

୧୩୫ । କେନ୍ଦୁଝର

ଗବର୍ଣ୍ଣମେଣ୍ଟର ଆଜ୍ଞାକ୍ରମେ ଆମ୍ଭମାନଙ୍କର କମିଶ୍ନର ସାହେବ କେନ୍ଦୁଝର ଯିବାର ଉଦ୍ୟମ କରୁଅଛନ୍ତି । ଶୀଘ୍ର ସେଠାକୁ ପ୍ରସ୍ଥାନ କରିବେ । ଏସମୟରେ ଜିଲ୍ଲା ଛାଡ଼ି କେନ୍ଦୁଝର ଯିବା ଆମ୍ଭେମାନେ ପରାମର୍ଶସିଦ୍ଧ କରୁନାହୁଁ । ସମ୍ପ୍ରତି ଜିଲାର ଅବସ୍ଥା ମନ୍ଦ ଅଛି । ଏଠାରେ ରହିଲେ ମଙ୍ଗଳ ଅଛି । ଗତ ଦୁର୍ଭିକ୍ଷାରମ୍ଭରେ କମିଶ୍ନର

ସାହେବ ମୟୂରଭଞ୍ଜକୁ ଯିବାରେ ଯେତେ ଅନିଷ୍ଟ ହେଲ । ଆମ୍ଭମାନଙ୍କର ସେହି ସମସ୍ତ ଆଶଙ୍କା ହେଉଅଛି ।

୧୩୭ । ଗତ ସନ ଦୁର୍ଭିକ୍ଷ ସାହାଯ୍ୟ ନିମିତ୍ତ ଅସିଥିବା ସରକାରୀ ଚାଉଳ ଅନେକ ବାକୀ ପଡ଼ିଥିବାରୁ ସରକାର ତାହା ଶୀଘ୍ର ବିକ୍ରୟ କରିବା ଆଶାରେ ଭଲ ଚାଉଳ କଲିକତା ମହଣକୁ ୫୦୲ ଓ ଧାନ୍ଦିଆ ୫୦୲ ଲେଖାଏ ଯାହାକୁ ଯେତେ ବିକ୍ରି ହେଉଥିଲା । ବର୍ତ୍ତମାନ ବର୍ଷା ଓ ବଢ଼ି ଦେଖି ଆଗାମୀ ଫସଲପ୍ରତି ଗୁରୁତର ଶଙ୍କା ଜାତ ହେବାରୁ ସରକାରୀ ଚାଉଳ ସସ୍ତାରେ ବିକ୍ରି କରିବା ଅଯୌକ୍ତିକ ବୋଧହେଲା । ଏଥିପାଇଁ କଲେକ୍ଟରେ ସାହେବ ଆଜ୍ଞା କରିଅଛନ୍ତି ଯେ ୫୧ଙ୍କାରୁ ଅଧିକ କୌଣସି ଏକ ବ୍ୟକ୍ତିକୁ ସରକାର ଗୋଦାମରୁ ଚାଉଳ ବିକ୍ରି ହେବନାହିଁ ଏବଂ ମୂଲ୍ୟ ମହଣପ୍ରତି ଚାରିଅଣା ବୃଦ୍ଧି ହୋଇଅଛି । ଏ ଆଜ୍ଞା ଉତ୍ତମ ହୋଇଅଛି କାରଣ ଏଥିରେ ଖାଉଟିଆମାନେ ଆପଣା ପ୍ରୟୋଜନାନୁସାରେ ଚାଉଳ ପାଇବେ ମାତ୍ର ମୋଟା ବେପାରୀ ଆଗରୁ ଲାଭ କରିବା ନିମିତ୍ତ ବହୁତ ସଂଗ୍ରହ କରିବାକୁ ପାରିବେନାହିଁ ।

## ୧୩୭ । କେନ୍ଦୁଝର

କେନ୍ଦୁଝରର ମୃତ୍ତବଶସ୍ଥ ଉଲ୍ଲେଖକର ହିନ୍ଦୁପେଟ୍ରିୟଟ ଲେଖନ୍ତି ଯେ "ଆଇନସିଦ୍ଧ ପୋଷ୍ୟପୁତ୍ର ଓ ଉତ୍ତରାଧିକାରୀ ଥିବାସତ୍ତ୍ୱରେ ଦାସୀ ପୁତ୍ରକୁ ମୃତରାଜାର ଗାଦୀରେ ବସାଇବାପାଇଁ କମିଶ୍ନର ସାହେବଙ୍କ ଉପଯୁକ୍ତ ଆଜ୍ଞା ହେତୁରୁ ଏ ବିବାଦ ଉପସ୍ଥିତ ହୋଇଥିବାର ବିଶ୍ୱାସ ହୁଅଇ । ଏକଥା ସତ୍ୟହେଲେ କମିଶ୍ନର ସାହେବଙ୍କର ସମ୍ପୂର୍ଣ୍ଣ ଦୋଷ ଅଟଇ ।" ବୋଧହୁଅଇ କଲିକତାର ହାଇକୋର୍ଟ ପର୍ଯ୍ୟନ୍ତ ଦେଓୟାନୀ ମୋକଦ୍ଦମାରେ ଧନୁର୍ଜୟ ଭଞ୍ଜଙ୍କର ଦାବୀ ସାବ୍ୟସ୍ତ ହେବାର ହିନ୍ଦୁପେଟ୍ରିୟଟ ବିସ୍ମୃତ ହୋଇଅଛନ୍ତି । ତଥାପି ଯେବେ ଆଜ୍ଞା ଅଶୁଦ୍ଧ ଥିବାର ଜ୍ଞାନ କରିପାଏ ତେବେ ପୂର୍ବତନ କମିଶ୍ନର ସୋର ସାହେବ ସେଥିର ଦାୟୀ ଅଟନ୍ତି । ବର୍ତ୍ତମାନ କମିଶ୍ନର କେବଳ ଅଦାଲତର ବିଚାରାନୁଯାୟୀ କର୍ମ କରୁଅଛନ୍ତି ।

## ୧୩୮ । ବନ୍ୟା

ଏପତ୍ରିକା ଯନ୍ତ୍ରାରୂଢ଼ ହେବାସମୟରେ ଜାଣିଲୁଁ ଯେ ଅବଧି ଧର୍ମଶାଳା ଉତ୍ତରକୁ ଯିବାର ବାଟ ହୋଇନାହିଁ । ସମସ୍ତ ଭୂଖଣ୍ଡ ସମୁଦ୍ର ପ୍ରାୟ ଜଳରେ ପୂର୍ଣ୍ଣ ରହିଅଛି ।

ପୁରୀଜିଲରେ ଜାନକାଦେଇପୁର ଗୋପପୁର ଏବଂ ଅନ୍ୟାନ୍ୟ ସ୍ଥାନରେ ସଡକ ଭଗ୍ନ ହୋଇଅଛି । ଚତୁର୍ଦ୍ଦିଗର ଅବସ୍ଥା ସମାନ ଅଟଇ ।

## ( ୩ୟ ଭାଗ, ୨୨ । ୭ । ୧୮୭୮, ସଂଖ୍ୟା ୨୭ )

୧୩୯ । ବର୍ଷା ଓ ବନ୍ୟା

ଗତ ସପ୍ତାହରେ ଡାକ ଯାତାୟାତର ସୁବିଧା ହେବାରୁ ଜଣାଗଲା ଯେ କେବଳ ଓଡ଼ିଶାରେ ଅତିବର୍ଷା ହୋଇଅଛି ଏମନ୍ତ ନୁହଇ । ବଙ୍ଗଳା ସମ୍ବଲପୁର ଓ ଦକ୍ଷିଣରେ ଭିଜାନଗର ପର୍ଯ୍ୟନ୍ତ ଏହିରୂପ ପଦରଦନ ଝଡ଼ହେବାର ସମ୍ବାଦ ପ୍ରାପ୍ତ ହୋଇଅଛି ।

× × ×

ଜାଗନ୍ନାଥ ସଡ଼କ ଉପରେ ଏତେ ଜଳ ହୋଇଥିଲା ଯେ ସ୍ଥାନ ସ୍ଥାନରେ ତାରଖୁଣ୍ଟମାନ ବୁଡ଼ିଯାଇଥିଲା । × × ×

ବଡଚଣାଠାରୁ ବୈତରଣୀ ଘାଟପର୍ଯ୍ୟନ୍ତ ଠିକାରେ ଗୃହଳ ପେଷର ମିଳିବାର କଠିନ ହେଲା ଏବଂ ଯେବେ ଶୀଘ୍ର ବର୍ଷା ଛାଡ଼ନଯାଏ ତେବେ କେହି ପ୍ରାଣରେ ବଞ୍ଚିବେ ନାହିଁ ।

ସାପ୍ତାହିକ ସମ୍ବାଦ

୧୪୦ । ଅଦ୍ୟ କମିଶ୍ନର ସାହେବ କେନ୍ଦୁଝର ପ୍ରସ୍ଥାନ କରିବେ ।

× × ×

କେନ୍ଦୁଝରର ବିଦ୍ରୋହୀଙ୍କ ମଧ୍ୟରୁ ଗୃହଜଣ ସରଦାରଙ୍କୁ ମୟୁରଭଞ୍ଜ ରାଜା ଧୃତକରି କମିଶ୍ନର ସାହେବଙ୍କ ସାକ୍ଷାତକୁ ପଠାଇଥିଲେ । ତିନିଜଣ ବାଟରୁ ପଳାଇଗଲେ କେବଳ ଏକଜଣ କଟକରେ ଗିରଫ୍ତାର ଅଛି । ତାହା କହିବାରୁ ପ୍ରକାଶ ଯେ ଦେବତ୍ତି ଓ ଅନ୍ୟାନ୍ୟ ଲୋକ, କି ଯାହାଙ୍କୁ ଭୂୟାମାନେ ଘେନି ଯାଇଥିଲେ, ଜୀବିତ ଅଛନ୍ତି ଓ ସେମାନଙ୍କୁ ପ୍ରତିଦିନ ଡାଲି ଗୃହଳ ଇତ୍ୟାଦି ଖାଇବା ନିମିତ୍ତ ଦିଆ ଯାଉଅଛି ।

## ( ୩ୟ ଭାଗ, ୧୧ । ୭ । ୧୮୭୮, ସଂଖ୍ୟା ୨୮ )

୧୪୧ । କେନ୍ଦୁଝର

କହୁଁ କହୁଁ କେନ୍ଦୁଝରର ଭୂୟାମାନେ ତନମାସହେଲା ବିଦ୍ରୋହାଚରଣ କରି

ମୂଳବୃତ୍ତି ଅବଲମ୍ବନ କରିଅଛନ୍ତି ଏବଂ ତାହା ନିବାରଣ ନିମନ୍ତେ ପୁଲିସ, ମାନ୍ଦ୍ରାଜ ସିପାହି ଓ କେତେକ ସିବିଲ କର୍ମଚାରୀ ପ୍ରେରିତ ହୋଇଅଛନ୍ତି । ଏମାନେ ସେଠାରେ କପର୍ଯ୍ୟନ୍ତ କୃତକାର୍ଯ୍ୟହୋଇଲେ ଅବା କି କରିଅଛନ୍ତି ଏବଂ ବର୍ତ୍ତମାନ କେନ୍ଦୁଝରର ଅବସ୍ଥା ଅବା କିରୂପ ତାହା କିଛି ଜଣାନାହିଁ । ଗବର୍ଣ୍ଣମେଣ୍ଟର ସ୍ଥାନୀୟ କର୍ମଚାରୀମାନେ କେନ୍ଦୁଝର ଯୁଦ୍ଧ ସମ୍ପର୍କରେ ଅପର ଲୋକଙ୍କ ପ୍ରତି ଯେରୂପ ବ୍ୟବହାର କରିଅଛନ୍ତି ସେଥିରୁ ପ୍ରକାଶ ଯେ କାହାକୁ ଏବିଷୟରେ କୌଣସି କଥା ଜ୍ଞାତ କରାଇବା ଏମାନଙ୍କର ମାନସ ନୁହଇ । ଗୋପନରେ କାର୍ଯ୍ୟ କରିବାର ଫଳ କି ଅଟଇ ଆମ୍ଭେମାନେ ଅନୁଭବ କରିପାରୁନାହୁଁ କିନ୍ତୁ ଏହାର ମନ୍ଦ ଫଳର ପରିଚୟ ଅନେକ ପାଇଅଛୁଁ । ଲୋକମାନେ ସତ୍ୟ ବୃତ୍ତାନ୍ତ ଜାଣିବାକୁ ଅକ୍ଷମ ହେବାରୁ ସମୟ ସମୟରେ ନାନା ଅମୂଳକ କଥା ଶ୍ରବଣକରି ମନରେ ବୃଥା ଭୟ ଜନ୍ମାଉ ଅଛନ୍ତି । ମିଥ୍ୟା ସମ୍ବାଦ ଏନଗରରେ କେତେ ପ୍ରଚାର ହୁଅଇ ତାହା ସଂଖ୍ୟା କରିବା ଯେମନ୍ତ ଅସମ୍ଭବ ସେଥିରେ ଲୋକଙ୍କ ଅବିଶ୍ୱାସ ଜନ୍ମାଇବା ତଦ୍ରୂପ ଅସମ୍ଭବ ଅଟଇ । ଯେବେ ସତ୍ୟକଥା ଜଣା ଯାଉଥାନ୍ତା ଏବଂ ଯେବେ ଗବର୍ଣ୍ଣମେଣ୍ଟ କର୍ମଚାରୀମାନେ ସତ୍ୟ ସମ୍ବାଦ ପ୍ରଚାର କରିବାକୁ ସୁଯୋଗ ଦିଅନ୍ତେ ତେବେ ଲୋକଙ୍କର ଭ୍ରମ ଓ ଭୟ ନିବାରଣ ହୁଅନ୍ତା ଏବଂ ସର୍ବସାଧାରଣ ସକଳ କଥା ଜାଣିପାରି ଉଚିତ ବ୍ୟବସ୍ଥା ବିଚାରନ୍ତେ । ଏଯୁଦ୍ଧ ଆରମ୍ଭ ହେବା ସମୟରେ ଶ୍ରୀଯୁକ୍ତ କମିଶନର ରେଭେନସା ସାହେବ ଅତି ସୁବିଚାର ପୂର୍ବକ ଯୁଦ୍ଧ ସମ୍ପର୍କୀୟ ହୋଇ ଏକ ବୃତ୍ତାନ୍ତ ସାଧାରଣ ଗୋଚରାର୍ଥ ପଠାଇଥିଲେ ମାତ୍ର ଏବେ କି ନିମନ୍ତେ ସେଥିର ବିପରୀତ ରୀତିର ଅନୁସରଣ କଲେ ଜଣା ଯାଉନାହିଁ ।

ଏହି ଗଡ଼ରୁ ଆସିଥିବା କୌଣସି ଲୋକଠାରୁ ଅବଗତ ହେଲୁଁ ଯେ ଗଲ ସପ୍ତାହରେ ସେଠାରେ ତେର ଜଣ ସାହେବ ଓ ଜ୧୨୦୦ଣ ସିପାହି ଥିଲେ । ଏମାନେ ଗଡ଼ରେ କୁଡ଼ିଆ ଘରରେ ରହି ବର୍ଷାକାଳ ଅତିବାହିତ କରିଅଛନ୍ତି । ଭୂୟାଁଙ୍କ ସହିତ ପ୍ରକୃତ ଯୁଦ୍ଧ ହୋଇନାହିଁ କିନ୍ତୁ ସମୟ ସମୟରେ ବାଟ ଓଗାଳିବାରେ କେତେ ଭୂୟାଁ ମାରି ପଡ଼ିଅଛନ୍ତି । ଏକଜଣ କାଣ୍ଡହାର ଆଘାତିତ ହୋଇଥିଲେ । ସେମାନେ ଆରୋଗ୍ୟ ଲାଭ କରିଅଛନ୍ତି । ଭୂୟାଁମାନେ ଘାଟି ବନ୍ଦ କରିଥିଲେ. ଏବେ ନିରସ୍ତ ହୋଇ ବାଟ ଘାଟ ଛାଡ଼ି ଦେଲେଣି । ଶ୍ରୀଯୁକ୍ତ ଡାଲଟନ ସାହେବ କେତେ ଲୋକଙ୍କୁ ଧୃତ କରି ଅଛନ୍ତି ଏବଂ ସେମାନେ କହନ୍ତି ଯେ ତାହାଙ୍କୁ ଦଣ୍ଡ ନଦେଲେ ବେବର୍ତ୍ତାକୁ ଫେରିଦେବେ । ଶ୍ରୀଯୁକ୍ତ କମିଶନର ସାହେବ ଆନନ୍ଦପୁର ଆଡ଼କୁ ଯାଇଥିଲେ । ଏତେ ଦିନ ଗଡ଼ରେ ପ୍ରବେଶ ହୋଇଥିବେ ଓ ତାହାଙ୍କ ପ୍ରବେଶ ବେଳକୁ ସବୁ କାର୍ଯ୍ୟ ସଫଳ ହୋଇ ଥିବାର ବିଶ୍ୱାସ ହୁଅଇ ।

ସାପ୍ତାହିକ ସମ୍ବାଦ

୧୪୧ । ଗତ ସପ୍ତାହ ଡେଲି ନ୍ୟୁଜରେ ଓଡ଼ିଶା ହାକିମମାନଙ୍କ ପ୍ରେରିତ କେତେ ଖଣ୍ଡ ଡାକଡ଼ାକ ପ୍ରକାଶ ହୋଇ ଅଛି । ସେଥିରୁ ପ୍ରକାଶ ଯେ ଏ ବର୍ଷ ପୂର୍ବ ବର୍ଷମାନଙ୍କ ଅପେକ୍ଷା ୯ ଇଞ୍ଚ ଉର୍ଦ୍ଧ୍ୱକୁ ଉଠି ଥିଲା । ଏଥିରେ କଟକ ଇଲାକାର ଯାଜପୁର ଓ କେନ୍ଦ୍ରାପଡ଼ା ଇଲାକାର ବିଶେଷ କ୍ଷତି ହୋଇ ଅଛି । ପୁରୀରେ ତାଦୃଶ କ୍ଷତି ହୋଇ ନାହିଁ । ବାଲେଶ୍ୱରରେ ବିଆଳି ଧାନ ସମ୍ପୂର୍ଣ୍ଣରୂପେ ନଷ୍ଟ ହୋଇ ଅଛି ।

(୩୨ଶ ଭାଗ, ୧୮ । ୭ । ୧୮୭୮, ସଂଖ୍ୟା ୨୯)

ସାପ୍ତାହିକ ସମ୍ବାଦ

୧୪୩ । ଉତ୍କଳ ଭାଷାରେ ସିବିଲ କର୍ମଚାରୀଙ୍କର ସର୍ବୋଚ୍ଚ ବ୍ୟୁତ୍ପତ୍ତି ନିର୍ଣ୍ଣୟ କରିବା କାରଣ ତଳ ଲିଖିତ ପୁସ୍ତକମାନଙ୍କରେ ପରୀକ୍ଷା ଗ୍ରହଣ ହେବାର ଗବର୍ଣ୍ଣମେଣ୍ଟ ଇଣ୍ଡିଆ ଧାର୍ଯ୍ୟ କରି ଅଛନ୍ତି :—

୧ ହିତୋପଦେଶ

୨ ବତିଶ ସିଂହାସନ

୩ ଗୀତ ଗୋବିନ୍ଦ

( ୩୨ଶ ଭାଗ, ୨୫ । ୭ । ୧୮୭୮, ସଂଖ୍ୟା ୩୦ )

୧୪୪ । ସଦାବର୍ତ୍ତି ମଠର ଅବସ୍ଥାନୁସନ୍ଧାନ ।

ଆମ୍ଭେମାନେ ଆନନ୍ଦପୂର୍ବକ ପାଠକମାନଙ୍କୁ ଜଣାଉ ଅଛୁଁ ଯେ ସଦାବର୍ତ୍ତି ମଠ ସମ୍ପର୍କରେ ଯେଉଁ କମିଟି ବସିବାର ପ୍ରସ୍ତାବ ହୋଇଥିଲା ତାହା ସମ୍ପ୍ରତି ଗବର୍ଣ୍ଣମେଣ୍ଟର ମଞ୍ଜୁର ହୋଇଅଛି । କମିଟିର କାର୍ଯ୍ୟ ଏଥର ଶୀଘ୍ର ଆରମ୍ଭ ହେବ । ଗବର୍ଣ୍ଣମେଣ୍ଟ ଇଣ୍ଡିଆ ଗତ ମଇମାସ ମଧ୍ୟରେ ରିପୋର୍ଟ ପାଇବାର ଆଶା କରିଥିଲେ ମାତ୍ର ଶ୍ରୀଯୁକ୍ତ କମିସ୍ନର ଅନେକ କାଳ ମୋଫସଲରେ ରହିବା ଏବଂ ଅନୁସନ୍ଧାନ କାର୍ଯ୍ୟ ଅଳ୍ପ ସମୟରେ ହୋଇ ନପାରିବା ଦୃଷ୍ଟିରେ କୈଥଲ୍ମ ଏବେ କାର୍ଯ୍ୟାରମ୍ଭ ହେଲା ।

ଏ କମିଟିରେ ତଳ ଲିଖିତ ବ୍ୟକ୍ତିମାନେ ସଭ୍ୟରୂପେ ନିଯୁକ୍ତ ହୋଇ ଅଛନ୍ତି । ଯଥା—

କଟକ—ବାବୁ ଜଗନ୍ମୋହନ ଘୋଷ, ବାବୁ ରାଧାଶ୍ୟାମ ନରେନ୍ଦ୍ର ଏବଂ ବାବୁ ବିଚିତ୍ରାନନ୍ଦ ଦାସ ।

ପୁରୀ— ବାବୁ ପୁରୁଷୋତ୍ତମ ପଟ୍ଟନାୟକ, ବାବୁ ମୋହନଲାଲ ଶାସ୍ତ୍ରୀ ।

କମିଟିକୁ ଯେ ସକଳ କର୍ମ କରିବାକୁ ହେବ ଏବଂ ଯେମାନେ ଯେଉଁ ଯେଉଁ ବିଷୟ ଅନୁସନ୍ଧାନ କରି ଗବର୍ଣ୍ଣମେଣ୍ଟକୁ ଜଣାଇବେ ତାହା ସଂକ୍ଷେପରେ ଏହିରୂପେ ବର୍ଣ୍ଣିତ ହୋଇଅଛି । ଯଥା— କମିଟିର କର୍ମ ଏହି ଯେ ତାହାଙ୍କୁ ଏକ ନକସା ପ୍ରସ୍ତୁତ କରିବାକୁ ହେବ । ସେଥିରେ ଏହି କଥାମାନ ଲେଖାଯିବ ଯେ କି ସମ୍ପତ୍ତି ପୂର୍ବେ ଦାନ ହୋଇଥିଲା ଓ ଦାତାର କି ଇଚ୍ଛା ଓ ଅଭିପ୍ରାୟ ଥିଲା ଓ ଦାନର ତଫସିଲ ଅର୍ଥାତ ଭୂମି କିଂବା ନଗଦାଦି ଲେଖିବାକୁ ହେବ ଓ କି ପ୍ରକାର ସେଥିର ଅର୍ଥାତ୍ ଦାତାର ଇଚ୍ଛାନୁସାର କିମ୍ବା ଅନ୍ୟ ପ୍ରକାର ବ୍ୟୟ ହୋଇଅଛି ଓ ହେଉଅଛି, କି ପରିମାଣ ଭୂମି କିମ୍ବା ନଗଦାଦି ଅପବ୍ୟୟ ହୋଇଅଛି, ଜମାଦାରମାନଙ୍କଦ୍ୱାରା ବର୍ତ୍ତମାନ ଯେ କାର୍ଯ୍ୟ କରାହେଉଅଛି ତାହା ଉତ୍ତମ ହୋଇଅଛି କି ନାହିଁ, ଅସଲ ଦାତାର ଇଚ୍ଛା ଓ ଅଭିପ୍ରାୟର ବିପରୀତ ହେଉଥିବା ଅପବ୍ୟୟର ତଫସିଲ ଓ ଅପବ୍ୟୟ ନିବାରଣ କରିବା ଓ ଯେ ଅଭିପ୍ରାୟରେ ଦାନ ହୋଇଥିଲା ତାହା ରକ୍ଷା କରିବା ପକ୍ଷରେ କି ଉପାୟ କରି କର୍ତ୍ତବ୍ୟ, ସମୁଦାୟ ଧର୍ମାର୍ଥ ଓ ଖଏରାତ ସମ୍ପତ୍ତି ଲୋକଲ କମିଟିର ଅଧୀନରେ ଆଣିବାର ଉଚିତ କିମ୍ବା ଯେଉଁ ସମସ୍ତ ସମ୍ପତ୍ତି ସନ ୧୮୬୩ ସାଲ ୨୦ ଆଇନର ୩ ଦଫାରେ ଲେଖା ଅଛି ଓ ଯହିଁର ଜମାଦାର ଗବର୍ଣ୍ଣମେଣ୍ଟଙ୍କ ନିଯୁକ୍ତ ଓ ମନୋନୀତ ହୁଅନ୍ତି କେବଳ ସେହିସବୁ ସମ୍ପତ୍ତି ସ୍ଥାନୀୟ କମିଟିଙ୍କ ଅଧୀନରେ ରଖିବା ପକ୍ଷରେ ତୁମ୍ଭର କି ଇଚ୍ଛା, ବର୍ତ୍ତମାନ କମିଟିରେ ଯେ ପ୍ରକାର ବ୍ୟକ୍ତିରେ ଲୋକ ନିଯୁକ୍ତ ହେଉ ଅଛନ୍ତି ତାହା ପରିବର୍ତ୍ତନ କରିବା ବିଷୟରେ ତୁମ୍ଭର କି ଅଭିପ୍ରାୟ, ବର୍ତ୍ତମାନ ପ୍ରତ୍ୟେକ ଧର୍ମାର୍ଥ ସ୍ଥାନ ସକାଶେ ଯେ ଭିନ୍ନ ଭିନ୍ନ କମିଟି ନିଯୁକ୍ତ ହେଉଅଛି ତାହାହେଲେ ଉତ୍ତମ ହେବ କିମ୍ବା ତୁମ୍ଭ ବିଷୟରେ ତିନିଜିଲ୍ଲା ସକାଶେ କେବଳ ଏକ ଚିରସ୍ଥାୟୀ କମିଟି ସ୍ଥାପନ କଲେ ଉତ୍ତମ ହେବ ଅଥବା ପ୍ରତ୍ୟେକ ଜିଲ୍ଲା ସକାଶ ଏକ ଏକ କମିଟି ହେଲେ ଉତ୍ତମ ହେବ, ଏ ପ୍ରକାର କମିଟିକୁ କି କ୍ଷମତା ଦିଆ ଯିବାର ଉଚିତ ଅର୍ଥାତ୍ ସେମାନଙ୍କୁ ସମ୍ପୂର୍ଣ୍ଣ ଅଧିକାର ଦିଆ ଯିବାର ଉଚିତ କି ନାହିଁ ତାହା ହେଲେ ଓ ତହିଁରେ କୌଣସି ବ୍ୟାଘାତ ଜାତ ହେବାର ସମ୍ଭାବନା କି ନାହିଁ ତାହା ସୁସ୍ପଷ୍ଟରୂପେ ବ୍ୟକ୍ତ କରିବାକୁ ହେବ । ଦାନ ସମ୍ପର୍କୀୟ ସମସ୍ତ କାର୍ଯ୍ୟ କରାଇବା ବିଷୟରେ ଲୋକଲ କମିଟି ମାନଙ୍କୁ ଅଦାଲତରେ ଚୂଡାନ୍ତ କ୍ଷମତା ଓ ଜମାଦାର ମାନଙ୍କୁ ବାହାର

ଓ ବରତରଫ କରିବାର ଅଧିକାର ଦିଆ ଯିବାର ଉଚିତ କି ନାହିଁ ଓ ସେ କମିଟିର ହୁକୁମ କି ପ୍ରକାର ଜାରୀ ହେବ, ସେମାନଙ୍କର କାର୍ଯ୍ୟ କି ରୂପେ ନିର୍ବାହ ହେବ ଓ ସ୍ଥାନୀୟ କମିଟିର ମେମ୍ବର ମାନଙ୍କୁ କିଏ ମୁକରର କରିବ ଓ କି ପ୍ରକାର ଅବସ୍ଥାରେ ସେମାନଙ୍କୁ ବରଖାସ୍ତ କରାଯିବ ଓ ସେ କମିଟିର ମେମ୍ବର ମାନଙ୍କୁ ବେତନ ଦିଆଯିବ କି ନାହିଁ ଓ ଦିଆଗଲେ କେତିକି ଦିଆଯିବ ।

ଉପର୍ଯ୍ୟୁକ୍ତ କାର୍ଯ୍ୟାବଳୀରୁ ଜଣାଯାଏ ଯେ କମିଟି ଉପରେ ସାମାନ୍ୟ ଭାର ଦିଆ ଯାଇ ନାହିଁ ଏବଂ ଏ ଭାର ବହନରେ ସେମାନଙ୍କୁ ସାମାନ୍ୟ ପରିଶ୍ରମ ଓ କାଳ ବ୍ୟୟ କରିବାକୁ ହେବ ନାହିଁ । ମାତ୍ର କଷ୍ଟିତ ଫଳ ହେଲେ ସେଥିରେ ତାହାଙ୍କ କ୍ଷତି ନାହିଁ । ଯେଉଁରୂପେ ଏ ସମସ୍ତ ବୃତ୍ତାନ୍ତ ଅବିକଳରୂପେ ସର୍ବସାଧାରଣ ଜ୍ଞାତ ହୋଇ ପାରିବେ କମିଟିକୁ ସେ ପକ୍ଷରେ ଯଥାସାଧ୍ୟ ଯତ୍ନ କରିବାର ଆବଶ୍ୟକ । ଧର୍ମଶାଳମାନଙ୍କ ଅପବ୍ୟୟରେ ମୃତ ଧର୍ମାତ୍ମାଙ୍କ ଧର୍ମଲୋପ ହେଉଅଛି । ଯେଉଁ ବ୍ୟକ୍ତି ସେ ଧର୍ମ ରକ୍ଷା କରିବେ ସେମାନେ ଅବଶ୍ୟ ପୁଣ୍ୟର ଭାଗୀ ହୋଇ ପାରନ୍ତି । ବାସ୍ତବରେ ସଦାବର୍ତ୍ତ ସମ୍ପର୍କରେ ଯେଉଁମାନେ ସୁବିଧା କରିବେ ତାହାଙ୍କର ଇହଲୋକ ଓ ପରଲୋକ ଦୁଇ ଅବସ୍ଥାରେ ଲାଭ ଅଛି । ଗବର୍ଣ୍ଣମେଣ୍ଟ ଏ ବିଷୟରେ ମନୋଯୋଗୀ ହେବାରୁ କେତେ ମଙ୍ଗଳ ହେବାର ସମ୍ଭାବନା ଅଛି ତାହା କାହାରିକୁ କହିବାର ଆବଶ୍ୟକ ନାହିଁ ।

୧୦୫ ।

## କେନ୍ଦୁଝର

ଇଣ୍ଡିଆନ ଡେଲିନିୟୁସ କେନ୍ଦୁଝର ବିଷୟରେ ଏକ ବୃହତ୍ ପ୍ରସ୍ତାବ ଲେଖି ବର୍ତ୍ତମାନ ଯୁଦ୍ଧ ପ୍ରସଙ୍ଗରେ ଲେଖିଅଛନ୍ତି ଯେ କେନ୍ଦୁଝରର "ବର୍ତ୍ତମାନ ରାଜାକୁ ହାଇକୋର୍ଟ ଯଥାର୍ଥ ଉତ୍ତରାଧିକାରୀ ସ୍ଥିର କରି ଥିଲେହେଁ ସେ ନ୍ୟାଯ୍ୟ ପୁତ୍ର ନୁହନ୍ତି । ଭୂୟାଁମାନେ କହନ୍ତି ତାହାଙ୍କୁ ରାଜା ବୋଲି ମାନିବେ ନାହିଁ ଏବଂ ପ୍ରାର୍ଥନା କରନ୍ତି ଯେ ଗବର୍ଣ୍ଣମେଣ୍ଟ ଅନ୍ୟ କାହାରିକୁ ରାଜା ନିଯୁକ୍ତ କରନ୍ତୁ ନତୁବା ସ୍ୱୟଂ ରାଜ୍ୟଭାର ଗ୍ରହଣ କରନ୍ତୁ । କଟକର କମିଶନର ଏ ରାଜାକୁ ଗାଦିରେ ବସାଇବାରୁ ଗବର୍ଣ୍ଣମେଣ୍ଟ ତାହାଙ୍କୁ ରକ୍ଷା କରିବାକୁ ବାଧ୍ୟ ହୋଇ ଅଛନ୍ତି ମାତ୍ର ଏ ବିଷୟରେ କୌଣସି କର୍ମ ଗବର୍ଣ୍ଣମେଣ୍ଟ କି କମିଶନ କଲେ ତାହା ସ୍ଥିର କରିବାର କଠିନ ଅଟଇ ତେବେ ଅନ୍ୟ କରଦ ରାଜ୍ୟ ସହିତ ଯେରୂପ ବ୍ୟବହାର କରନ୍ତି ଏ ସ୍ଥଳେ ଠିକ ସେହିପରି ହୋଇ ଅଛି । ଏ ଯୁଦ୍ଧ ସକାଶେ ଏକ ସହସ୍ରରୁ ଅଧିକ ଲୋକ ପ୍ରେରଣ ହୋଇ ଅଛନ୍ତି । ଏଥି ମଧ୍ୟରେ ମାନ୍ଦ୍ରାଜର ପଦାତିକସୈନ୍ୟ ଓ ପୁଲିସ ଓ ସରଦାର ସ୍ୱରୂପ କମିଶନର ପ୍ରାୟ ଅନ୍ୟାନ୍ୟ କର୍ମଚାରୀ ଇଂରାଜ ଜ୨ଂଣ ଅଛନ୍ତି । ଏତେ ଲୋକ ପଠାଇବାର ପ୍ରୟୋଜନ କି ? ଭାରତ ବର୍ଷର କେତେକ ସହସ୍ର ଟଙ୍କା ଋଣ ବର୍ଦ୍ଧନ ହେବ, ଅସଭ୍ୟ ଲୋକଙ୍କ ସଙ୍ଗେ

ପାହାଡ଼ ମଧ୍ୟରେ ଯୁଦ୍ଧ ହେବ, ଅଳ୍ପ ମନ୍ଦ ସମୟରେ ମାରାତ୍ମକ ଜଙ୍ଗଲ ମଧ୍ୟରେ ପ୍ରବେଶ କରିବେ, ମୃତ୍ୟୁ ହେଲେ କେହି ପଚାରିବାକୁ ନାହିଁ । ଯେଉଁଠାରେ ଜୟରେ ଯଶ ନାହିଁ ଓ ଯୁଦ୍ଧ ଜଣିବାର ହୋଇ ନପାରେ, ଲୋକଙ୍କ ଇଚ୍ଛା ବିରୁଦ୍ଧରେ ଜଣେ ଜାରଜ ପୁତ୍ରଙ୍କୁ ସିଂହାସନରେ ବସାଇବା ବାସ୍ତବରେ ଇଂରାଜ ଲୋକ ଏବଂ ଇଂରାଜଙ୍କ ପ୍ରଜାର ପ୍ରାଣସଂଶୟ କରିବାର କି ମହତ୍ କାର୍ଯ୍ୟ ଅଟଇ ! ଗବର୍ଣ୍ଣମେଣ୍ଟ ଇଣ୍ଡିଆର ଶାସନ ପଦ୍ଧତି ଏହିରୂପ ଅଟଇ ।”

## ସାପ୍ତାହିକ ସମ୍ବାଦ

୧୪୨ । ଢେଙ୍କାନାଳ

କେନ୍ଦୁଝର ବିଷୟର ପ୍ରସ୍ତାବ ମଧ୍ୟରେ ଡେଲି ନିୟୁସ ଲେଖନ୍ତି ଯେ ଢେଙ୍କାନାଳ ରାଜା ଆପଣାର ସମ୍ପତ୍ତିର ଉନ୍ନତି କରି ଅଛନ୍ତି ଏବଂ ଗବର୍ଣ୍ଣମେଣ୍ଟକୁ ଆପଣାର ଉତ୍ତରାଧିକାରୀ କରିବାର ମାନସ ପ୍ରକାଶ କରି ଅଛନ୍ତି । ଡେଲି ନିୟୁସ କେଉଁଠାରୁ ଏ କଥା ଶୁଣିଲେ ଆମ୍ଭେମାନେ କହି ନପାରୁଁ । ବୋଧହୁଅଇ ମହାରାଜାଙ୍କର ପୁତ୍ର ନଥିବାରୁ ଏବଂ ସନ୍ତାନ ନହେଲେ ପୋଷ୍ୟପୁତ୍ର କରିବେ କି ନାହିଁ ନିଶ୍ଚୟ କରି ନଥିବାରୁ ଏହିପରି ଜନରବ ହୋଇ ଅଛି ।

**( ୩ୟ ଭାଗ, ୧ । ୮ । ୧୮୬୮, ସଂଖ୍ୟା ୩୧ )**

## ସାପ୍ତାହିକ ସମ୍ବାଦ

୧୪୬ । ଓଡ଼ିଶାର ଗଡ଼ଜାତ ନିବାସୀ କନ୍ଧଜାତିମାନେ ମେରିଆ ଦେଇ ମନୁଷ୍ୟ ବଧ କରିବାର ପ୍ରଥା ପରିତ୍ୟାଗ କରିବାର ମାନସ କରି ଅଛନ୍ତି । ସରକାରଙ୍କ ଏ ବିଷୟରେ ସେମାନଙ୍କ ଉପରେ ଭାରି କଠିନ ଆଜ୍ଞା ହୋଇଅଛି ଏବଂ ଏ ରୂପ ଗୋଟିଏ ମେରିଆ ଦିଆଗଲେ ରାଜା ଓ ସରଦାରମାନେ ସ୍ୱୟଂ ଦାୟୀହେବା ବିଷୟରେ ସେମାନଙ୍କୁ ସତର୍କ କରା ଯାଇଅଛି ।

**(୩ୟ ଭାଗ, ୮ । ୮ । ୧୮୬୮, ସଂଖ୍ୟା ୩୨ )**

୧୪୮ । ଗବର୍ଣ୍ଣମେଣ୍ଟ ମନସ୍ଥ କରି ଅଛନ୍ତି ଯେ ଭବିଷ୍ୟତରେ କଟକ ଓ ସମ୍ବଲପୁର ପ୍ରତ୍ୟେକ ସ୍ଥାନରେ ଏକ ଏକ ପୂରା ପଲଟନ ପଦାତିକ ସିପାହି ରହିବେ । ଡେଲି ନିୟୁସ

କହନ୍ତି ଯେ ସିଂହାପୁରର ଦୁଇ ପଲଟନ ମାନ୍ଦ୍ରାଜ ପଲଟନ ଫେରି ଆସିବାରୁ ଏ ପ୍ରକାର ମନସ୍ଥ ହୋଇଅଛି । ଦୁର୍ଭାଗ୍ୟ ଓଡ଼ିଶା ଦେଶର କେତେ ଗୁଡ଼ାଏ କୁଟୁମ୍ବ ବଢ଼ିଲେ ଏହି ମାତ୍ର ।

( ୩ୟ ଭାଗ, ୧୪ । ୮ । ୧୮୬୮, ସଂଖ୍ୟା ୩୩ )

୧୪୯ । ସୂର୍ଯ୍ୟୋପରାଗ

ଆଗାମୀ ମଙ୍ଗଳବାର ତା ୧୮ ଖରେ ଗୋଟିଏ ଆଶ୍ଚର୍ଯ୍ୟ ଘଟନା ହେବ । ଏ ଦିନ ଗୋଟିଏ ସୂର୍ଯ୍ୟୋପରାଗ ହେବାର ଅଛି । ଏପରି ଗ୍ରହଣ ଅନେକ କାଳରୁ ହୋଇ ନାହିଁ । ମାନ୍ଦ୍ରାଜ ଦେଶରେ ସର୍ବ ଗ୍ରାସ ଦେଖାଯିବ ଓ ୬ ମିନିଟ କାଳ ସୂର୍ଯ୍ୟ ଦେଖା ଯିବେ ନାହିଁ । ଏ ଅପୂର୍ବ ଗ୍ରହଣ ଦେଖିବା ନିମିତ୍ତ ଅନେକ ଜ୍ୟୋତିଷ ଇଉରୋପ ଖଣ୍ଡରୁ ଆସି ଅଛନ୍ତି ।

ଭାରତବର୍ଷର ଗବର୍ଣ୍ଣମେଣ୍ଟ ଯେଉଁ କର୍ମଚାରୀମାନ ନିଯୁକ୍ତ କରି ଅଛନ୍ତି ତହିଁ ମଧ୍ୟରୁ ହର୍ଷେଲ ସାହେବ ଏକଜଣ ଅଟନ୍ତି । ଏମାନେ ଗ୍ରହଣର ସମସ୍ତ ଗଣନା କରିବେ । ଇଣ୍ଡିଆ ଗବର୍ଣ୍ଣମେଣ୍ଟ ଏ ଦିନ ସମସ୍ତ ସରକାରୀ କାର୍ଯ୍ୟାଳୟ ବନ୍ଦ କରିବାକୁ ଆଜ୍ଞା ଦେଇ ଅଛନ୍ତି । ହିନ୍ଦୁମାନେ ଏ ରୂପ ଗ୍ରହଣ ହେବାରେ ନାନା ପ୍ରକାର ଅମଙ୍ଗଳର ଆଶଙ୍କା କରନ୍ତି ମାତ୍ର ସେ ସମସ୍ତ ଅମୂଳକ ଅଟଇ । ବର୍ଷା କାଳରେ ଏ ଗ୍ରହଣ ହେବାରୁ ଦେଖିବା ପକ୍ଷରେ କିଛି ବାଧାତ ଜନ୍ମିବାର ଆଶଙ୍କା ହେଉଅଛି । ମାତ୍ର ଓପ୍ପେର ସାହେବ ଏକ ପ୍ରକାର ଆଶ୍ୱାସ ଦେଇ ଅଛନ୍ତି ତାହାଙ୍କ ଗଣନାନୁସାରେ ଉକ୍ତ ତାରିଖରେ ବର୍ଷା ହେବନାହିଁ ସୁତରାଂ ଦର୍ଶକମାନେ ନିର୍ବିଘ୍ନରେ ଏ କୌତୁକାବହ ବ୍ୟାପାର ଦର୍ଶନ କରିବାକୁ ସମର୍ଥ ହେବେ ।

ଏଠାରେ ପୂର୍ଣ୍ଣଗ୍ରାସ ହେବ ନାହିଁ । ଏକ ମତରେ ସୂର୍ଯ୍ୟ ମଣ୍ଡଳରୁ ବ ୫୬/ ଏବଂ ମତାନ୍ତରରେ ବ ୫୬/ ୫ ଗ୍ରାସ କରିବ । ଗ୍ରାସକାଳ ପ୍ରାୟ ଦ ୨ । ୧୦ ଲତା । ଦିବା ଘ ୮ । ୨୯ ମିନିଟରେ ଗ୍ରହଣ ଆରମ୍ଭ ହେବ ଏବଂ ଘ ୧୨ । ୪୬ ମିନିଟରେ ମୋକ୍ଷ ହେବାର ନିର୍ଦ୍ଦିଷ୍ଟ ହୋଇ ଅଛି ।

୧୫୦ । କେନ୍ଦୁଝର

ଏ ଗଡ଼ଜାତ ମାହାଲର ବିଦ୍ରୋହ ନିବାରଣ ବିଷୟରେ ନିଯୁକ୍ତ ହୋଇଥିବା କର୍ମଚାରୀଙ୍କୁ ଯଥୋଚିତ ବଳବାନ୍ କରିବା ମାନସରେ ଗବର୍ଣ୍ଣମେଣ୍ଟ ଉକ୍ତ କାଲରେ

ବେଡ ଦଣ୍ଡର ଆଇନ ( ସନ ୧୮୭୦ ମସିହାର ଆ ୭ ଇନ ) ପ୍ରଚଳିତ କରି ଅଛନ୍ତି । ଡେଲି ନ୍ୟୁସ ପତ୍ରିକାର ସମ୍ପାଦକ ଏ ସମ୍ବାଦ ଲେଖି ପ୍ରଶ୍ନ କରି ଅଛନ୍ତି ଯେ ବିଦ୍ରୋହିକୁ ବେଡାଘାତ ଦ୍ୱାରା କୌଣସି ଭିନ୍ନ ବାହାର କରି ଦେବା କି ଜ୍ଞାନବାନର ବ୍ୟବସ୍ଥା ଅଟଇ । ଆମ୍ଭେମାନେ ଏ ମତର ଅନୁମୋଦନ କରୁଅଛୁଁ । କାରଣ ଆମ୍ଭମାନଙ୍କ ବିବେଚନାରେ ବଳଦ୍ୱାରା ଲୋକଙ୍କୁ ଶାସନ କରିବା କଦାଚ ନିରାପଦ ନୁହଇ । ଏଥିରେ କ୍ଷଣକାଳ ନିମନ୍ତେ ଉତ୍ପାତ ନିବାରଣ ହୋଇପାରେ ମାତ୍ର ଭବିଷ୍ୟତର ଭରସା କରିବା ନ୍ୟାୟଯୁକ୍ତ ନୁହଇ । ମନୁଷ୍ୟ ମନର ସ୍ୱଭାବ ଏହି ଯେ ଅଭିଷ୍ଟ ଲଭରେ କେହି ବଳ ପୂର୍ବକ ବାଧା ଜନ୍ମାଇଲେ ତାହା ଅତିକ୍ରମ କରିବାକୁ ଦ୍ୱିଗୁଣ ଇଚ୍ଛୁକ ହୁଅଇ । ବିଶେଷରେ ବଣୁଆଲୋକଙ୍କର ତାଦୃଶ ବୁଦ୍ଧି କି ବିଚାର ନାହିଁ । ଏମାନେ ଭଲ ମନ୍ଦ ନଜାଣିବାରୁ ଯାହା ଇଚ୍ଛା ତାହା କରୁ ଅଛନ୍ତି । ଯେମନ୍ତ ପଶୁମାନଙ୍କ ପିଠିରେ ହାତ ବୁଲାଇ ସାନ୍ତ୍ୱନା କରିବାକୁ ହୁଅଇ ତେସନ୍ଧରୂପ ବ୍ୟବହାର ଏହାଙ୍କ ସଙ୍ଗେ କରିବାର ଉଚିତ । ଦଣ୍ଡ ଦେଇ କିମ୍ବା ବଳଦେଖାଇ ଯେବେ ଏମାନଙ୍କୁ ଦୁଷ୍କର୍ମରୁ ବିହତ କରିବାକୁ ପାରିଯାନ୍ତା ତେବେ କେନ୍ଦୁଝରର କଥା ଏପରିକି ଆସି ନଥାନ୍ତା । ଗତ ଶୀତକାଳରେ ଶ୍ରୀଯୁକ୍ତ କମିଶ୍ନର ସାହେବ ସେଠାରେ ରହି ସମସ୍ତ ଗୋଳମାଳ ଏକ-ପ୍ରକାର ନିବାରଣ କରିଥିଲେ ମାତ୍ର ଦେଖାଗଲା ଯେ ତାହାଙ୍କ ପ୍ରତ୍ୟାଗମନର ଅଳ୍ପ-କାଳ ମଧ୍ୟରେ ସେଠାର ଅବସ୍ଥା ଅନ୍ୟ ମତ ହୋଇଗଲା । ଏଥିରୁ ବୋଧ ହେଉଅଛି ଯେ କେବଳ ହାକିମର ଭୟରୁ ସେମାନେ କିଛି ଦିନ ନିବର୍ତ୍ତି ଥିଲେ । ଅତଏବ ସ୍ପଷ୍ଟ ଦେଖା ଯାଉଅଛି ଯେ କେବଳ ଦଣ୍ଡ ବିଧାନ ଦ୍ୱାରା ଏମାନଙ୍କୁ ଶାସନ କରିବାର ଉପାୟ ନିରାପଦ ନୁହଇ ।

ସମ୍ପ୍ରତି ପରମ୍ପରା ଶ୍ରବଣ କରୁଅଛୁଁ ଯେ କେତେ ଗୁଡ଼ିଏ ବିଦ୍ରୋହୀ ଧରା ପଡ଼ିଅଛନ୍ତି । ତେଣୁଟ ନାଗପୁର ଅଞ୍ଚଳର ରଜାମାନେ ପାଇକ ଦେଇ ଆସି ଇଂରଜ ସେନାସଙ୍ଗେ ଯୋଗ ଦେଇ ଅଛନ୍ତି । ଏଥିରୁ ଜଣାଯାଏ ଯେ ଅବିଳମ୍ବରେ ସମସ୍ତ ଦୁଷ୍ଟଲୋକେ ଧରା ପଡ଼ିବେ ଏବଂ ଗୋଳମାଳ ନିବାରଣ ହେବ ମାତ୍ର ଯେରୂପ ଚିରକାଳ ନିମନ୍ତେ ବିଦ୍ରୋହ ନିବାରଣ ହୁଅଇ ସେଥିର ଉପାୟ କରିବାର ଆବଶ୍ୟକ ।

## ସାପ୍ତାହିକ ସମ୍ବାଦ

୧୫୧ । କେନ୍ଦୁଝରରୁ ପ୍ରେରିତ ହୋଇଥିବା ସିଭିଲ କର୍ମଚାରୀଙ୍କର ଆସିଷ୍ଟାଣ୍ଟ ଶ୍ରୀଯୁକ୍ତ ଲେଫ୍ଟେନାଣ୍ଟ ଯେ, ଜନଷ୍ଟନ ସାହେବ ଉକ୍ତ ଜିଲ୍ଲାରେ ସର୍ବୋଚ୍ଚ ନେଇ ଜଜର କ୍ଷମତା ପାଇଅଛନ୍ତି । ଏମନ୍ତ କ୍ଷମତା ଦେବାର କାରଣ କି ? ବୋଧହୁଅଇ କେନ୍ଦୁଝରରୁ

ଦେଓ୍ୟାନୀ କାର୍ଯ୍ୟ ସୁଦ୍ଧା ସମ୍ପ୍ରତି ଗବର୍ଣ୍ଣମେଣ୍ଟ କର୍ମଗୃହଦ୍ୱାରା ନିର୍ବାହ ହେବ ।

( ୩ୟ ଭାଗ, ୨୨।୮।୧୮୬୮, ସଂଖ୍ୟା ୩୪ )

ସୂର୍ଯ୍ୟୋପରାଗ

୧୫୨।

ବହୁକାଳରୁ ଯେଉଁ ଅଦ୍ଭୁତ ଘଟନା ପ୍ରତ୍ୟକ୍ଷ କରିବାପାଇଁ ଲୋକମାନେ ବ୍ୟସ୍ତ ହେଉଥିଲେ ଓ ଯାହାଲାଗି ଇଉରୋପୀୟ ନାନା ଜ୍ୟୋତିଷମାନେ ମାନ୍ଦ୍ରାଜ ପ୍ରଦେଶରେ ଛାମାଡ଼ରୁ ବାସ କରିଥିଲେ ସେ ଘଟନା ଗତ ସପ୍ତାହରେ ପ୍ରଦର୍ଶନ ହେଲା । ଆମ୍ଭମାନଙ୍କର ଭୟ ଥିଲା ଯେ ମେଘ କାଳହେତୁରୁ ଗ୍ରହଣ ଉତ୍ତମ ରୂପେ ଦୃଷ୍ଟ ହେବନାହିଁ ଏବଂ ତା ୧୮ ଦିଶ ପ୍ରାତଃକାଳରେ ଯେରୂପ ମେଘ ଘୋଟି ରହିଥିଲା ସେଥିରେ ଏକ ପ୍ରକାର ନିରାଶ ହୋଇଥିଲୁଁ କିନ୍ତୁ ଭାଗ୍ୟବଳରୁ ଗ୍ରହଣାରମ୍ଭର କିଞ୍ଚିତ ପୂର୍ବରୁ ମେଘାଚ୍ଛନ୍ନ ଭାଙ୍ଗିଗଲା ଓ ସୂର୍ଯ୍ୟମଣ୍ଡଳ ସୁନ୍ଦରରୂପେ ଦୃଶ୍ୟ ହେଲା । ଅଳ୍ପ ଅଳ୍ପ ମେଘ ଥିବାରୁ ରୌଦ୍ରପ୍ରକାଶ ବିଶେଷ ନ ଲାଗିବାରୁ ଦର୍ଶକଙ୍କର ଆହୁରି ସୁବିଧା ହେଲା ।

ଆମ୍ଭେମାନେ ଅତିଶୟ ପରିଶ୍ରମ ପୂର୍ବକ ଗ୍ରହଣର ଆରମ୍ଭ ଓ ବୃଦ୍ଧି ହ୍ରାସ ଏବଂ ମୋକ୍ଷ କାଳମାନ ଦର୍ଶନ କରି ଲିପିବଦ୍ଧ କରିଥିଲୁଁ । ତାହା ଏଠାରେ ପାଠକମାନଙ୍କୁ ଜଣାଉ ଅଛୁଁ । କେବଳ ଚକ୍ଷୁଦ୍ୱାରା ଯେତେଦୂର ସ୍ଥିର ହୋଇପାରେ ତାହା କରିଅଛୁଁ ମାତ୍ର ଯନ୍ତ୍ରର ସାହାଯ୍ୟ ନ ଥିବାରୁ ଆମ୍ଭମାନଙ୍କ ଲେଖାରେ କିଞ୍ଚିତ୍ ଭ୍ରମ ହୋଇଥିବ । ସକାଳ ଘ ୮ । ୪୨ ମିନିଟରେ ଗ୍ରହଣ ଆରମ୍ଭ ଘ ୧୦ । ୫ ମିନିଟ ପର୍ଯ୍ୟନ୍ତ ବୃଦ୍ଧି ହୋଇ ସୂର୍ଯ୍ୟମଣ୍ଡଳର ୩୪/୪ରୁ କିଞ୍ଚିତ ଅଧିକ ଗ୍ରାସକଲା ଉତ୍ତାରୁ ଛାଡ଼ିବାର ଆରମ୍ଭ ହେଲା ଏବଂ ଘ ୧୧ । ୩୨ ମିନିଟଠାରେ ସମ୍ପୂର୍ଣ୍ଣ ମୋକ୍ଷ ହେଲା ।

ଏଥିରୁ ପ୍ରକାଶ ହେଉଅଛି ଯେ ଆମ୍ଭେମାନେ ଯେ ସମୟମାନ ନିର୍ଦ୍ଦିଷ୍ଟ କଲୁଁ ତାହା କୌଣସି ପଞ୍ଜିକାର ମତ ସହିତ ଐକ୍ୟ ହେଉନାହିଁ । ବଙ୍ଗଳାର ପୃଥକ ପୃଥକ ପଞ୍ଜିକାରେ ଘ ୧୦ ଓ ଘ ୧୧ ଣ୍ଟା ସମୟରେ ଗ୍ରହଣ ଆରମ୍ଭ ହେବାର ଗଣନା ହୋଇଥିଲା ଏବଂ ପ୍ରିଣ୍ଟିଂ କୁମ୍ପାନିର ଉତ୍କଳ ପଞ୍ଜିକାରେ ଘ ୧୦ ଣ୍ଟା ଓ ବାଙ୍କୀ ଓ ରଘୁନାଥର ଉତ୍କଳ ପଞ୍ଜିକାରେ ଘ ୧୧ ଣ୍ଟା ନିଷ୍ପନ୍ନ ହୋଇ ଥିଲା । ଏ ସମସ୍ତ ଗଣନା ଭ୍ରମଯୁକ୍ତ ହୋଇ ଅଛି । ଏଥି ମଧ୍ୟରେ ନ୍ୟୁନାଧିକ ବିବେଚନା କଲେ ଯେ ସମସ୍ତ ପଞ୍ଜିକାରେ ଘ ୧୧ ଣ୍ଟା ଲେଖା ଅଛି ସେ ସମସ୍ତ ଅପେକ୍ଷା ଯହିଁରେ ଘ ୧୦ ଣ୍ଟା ଲେଖା ଅଛି ତାହା ସତ୍ୟର ନିକଟକୁ ଆସୁଅଛି । ଅତଏବ ବଙ୍ଗଳାର ଯେଉଁ ପଞ୍ଜିକାରେ ଘ ୧୦ଣ୍ଟା ଲେଖା ଅଛି ତାହା ଏବଂ କୁମ୍ପାନିର ଉତ୍କଳ ପଞ୍ଜିକା ଅନ୍ୟ ପଞ୍ଜିକାଠାରୁ ଅବଶ୍ୟ ଉତ୍କୃଷ୍ଟ

ହେଲ । ଯେଉଁମାନେ ବଙ୍ଗଦେଶର ପଞ୍ଜିକାକୁ ଉତ୍କଳର ପଞ୍ଜିକାଠାରୁ ଉତ୍କୃଷ୍ଟ ଜ୍ଞାନ କରୁଥିଲେ ସେମାନେ ଏଥର ବୁଝି ପାରିବେ ଯେ ତୁମ୍ଭମାନର ଉତ୍କଳ ପଞ୍ଜିକା ଯଦ୍ୟପି କି ଏ ସ୍ଥାନରେ ବଙ୍ଗଳା ପଞ୍ଜିକାଠାରୁ ଉତ୍କୃଷ୍ଟ ନହେଲା ମାତ୍ର କୌଣସି ଅଂଶରେ ନ୍ୟୂନ ନୁହେ ।

ସେ ଯାହାହେଉ ଆନନ୍ଦର ବିଷୟ ଯେ ଉତ୍କଳର ଜଣେ ନୂତନ ଜ୍ୟୋତିଷ ଏ ଗ୍ରହଣର ଯେଉଁ ଗଣନା କରି ଅଛନ୍ତି ବଙ୍ଗଦେଶୀୟ ଜ୍ୟୋତିଷମାନେ କେହି ସେ ରୂପ ଗ୍ରହଣର କାଳ ଠିକ କରିବାକୁ ସମର୍ଥ ହୋଇ ନାହାନ୍ତି । ତୁମ୍ଭମାନର ଉତ୍କଳ ପଞ୍ଜିକାର ପୃ ୨୨୦ ଷ୍ଠା ଦୃଷ୍ଟି କଲେ ସେଠାରେ କିଲ୍ଲ ଖଣ୍ଡପଡ଼ାବାସୀ ଶ୍ରୀ ସାମନ୍ତ ଚନ୍ଦ୍ର ଶେଖର ସିଂହଙ୍କ ଗଣନା ଦେଖାଯିବ । ସେ ଯେଉଁ ଗଣନା କରି ଅଛନ୍ତି ସେଥିସଙ୍ଗେ ଆମ୍ଭମାନଙ୍କର ପ୍ରତ୍ୟକ୍ଷ କାଳର କେବଳ ଷୋଳ ମିନିଟ ଭିନ୍ନ ଦେଖାଗଲା ଏ ମାତ୍ର ଘଟିକା ଯନ୍ତ୍ରର ଭୁଲ ନିମିତ୍ତ ପାଞ୍ଚ ଛଅ ମିନିଟ ବାଦ ଦେଲେ ମି ୧୦ନିଟ ମାତ୍ର ପ୍ରଭେଦ ହେଉଅଛି ଓ ଯେତେବେଳେ ବିବେଚନା କରାଯାଏ ସାମନ୍ତ ମହାଶୟ ଆପଣା ବୁଦ୍ଧି ବଳରୁ କୌଣସି ଶାସ୍ତ୍ରକୁ ଅବଲମ୍ବନ ନ କରି ଏ ଗଣନା କରିଅଛନ୍ତି ତେତେବେଳେ ତାହାଙ୍କର ଏ ସାମାନ୍ୟ ଭ୍ରମ ଗ୍ରାହ୍ୟର ଯୋଗ୍ୟ ନୁହଇ । ପ୍ରକୃତରେ ଆମ୍ଭେମାନେ ଶ୍ରୀ ସାମନ୍ତ ଚନ୍ଦ୍ର ଶେଖରଙ୍କର ଯଥୋଚିତ ପ୍ରଶଂସା ନ କରି କ୍ଷାନ୍ତ ରହି ନ ପାରୁଁ । ଓଡ଼ିଶାରେ ଯେ ଏ ପ୍ରକାର ଗଣନାଶାଳୀ ବ୍ୟକ୍ତି ଅଛନ୍ତି ଏହା ପ୍ରାୟ କାହାରିକୁ ଜଣା ନଥିଲା । ସାମନ୍ତ ମହାଶୟ ଏ ବିଷୟରେ ପରିଶ୍ରମ କରି କେବଳ ଆପଣାର ସୁଖ୍ୟାତି ବଢ଼ାଇ ଅଛନ୍ତି ଏମନ୍ତ ନୁହେ, ତାହାଙ୍କ ହେତୁରୁ ଏ ସମୟରେ ବଙ୍ଗଦେଶଠାରୁ ଓଡ଼ିଶା ଓ ଓଡ଼ିଶା ଗଡ଼ଜାତ ମଧ୍ୟରେ କିଲ୍ଲ ଖଣ୍ଡପଡ଼ା ସୁଖ୍ୟାତି ଲଭିକଲା । ଆମ୍ଭେମାନେ ଭରସା କରୁଁ ଯେ ସାମନ୍ତ ମହାଶୟ ଯେଉଁ ପୁସ୍ତକ ରଚନା କରିବାର ସଂକଳ୍ପ କରି ଅଛନ୍ତି ଶୀଘ୍ର ସେଥିରେ ପ୍ରବୃତ୍ତ ହେଉନ୍ତୁ ଏବଂ ଅନ୍ୟାନ୍ୟ ଗଡ଼ଜାତ ରାଜାମାନଙ୍କୁ ଅନୁରୋଧ କରୁଅଛୁଁ ଯେ ସେମାନେ ଆପଣା ଆପଣା ରାଜ୍ୟରେ ଏକ ଏକ ଜଣ ଗୁଣୀଲୋକ ପ୍ରକାଶ କରିବାର ଚେଷ୍ଟା କରନ୍ତୁ । ତେବେ ଉତ୍କଳର ଖ୍ୟାତି ଅବଶ୍ୟ ବର୍ଦ୍ଧନ ହେବ ଏବଂ ଓଡ଼ିଆମାନଙ୍କର ବୁଦ୍ଧି ନଥିବାର ଯେଉଁମାନେ କହନ୍ତି ସେମାନେ ଲଜ୍ଜା ପାଇବେ ।

( ୩ୟ ଭାଗ, ୫।୯।୧୮୭୮, ସଂଖ୍ୟା ୩୬ )

୧୬୩ ।

## କେନ୍ଦୁଝର

ଆମ୍ଭେମାନେ ଅତି ଆନନ୍ଦର ସହିତ ଅବଗତ ହେଲୁଁ ଯେ କେନ୍ଦୁଝରର ଗୋଳମାଳ କି ଯାହା ଏକ ପ୍ରକାର ଘୋର ଅବସ୍ଥାକୁ ପ୍ରାପ୍ତ ହୋଇଥିଲା ତାହା ନିବୃତ୍ତି

ହେଲ । ରତନ ନାୟକ ଓ ନନ୍ଦ ପ୍ରଧାନ ଇତ୍ୟାଦି ସରଦାର ବଦମାସମାନେ ଧୃତ ହେବାରୁ ଅଞ୍ଚଳ ପ୍ରଜାମାନେ ଯେଉଁମାନେ ଭୟରେ ଏହାଙ୍କ ସଙ୍ଗେ ଯୋଗ ଦେଇ ଥିଲେ ସ୍ୱସ୍ୱ ପୂର୍ବାବସ୍ଥାରୁ ପ୍ରତ୍ୟାଗମନ କରିଅଛନ୍ତି ଏବଂ ଉକ୍ତ ସରଦାର ଓ ପ୍ରଧାନ ବିଦ୍ରୋହକାରୀ ସ୍ୱକର୍ମ ଭୋଗ କରିବାପାଇଁ କଟକକୁ ଆନୀତ ହେଉଅଛନ୍ତି । ଜଙ୍ଘିସିପାହି-ମାନେ ପ୍ରତ୍ୟାଗମନ କରୁଅଛନ୍ତି ଏବଂ କେଉଁଝରର ରାଣୀ ଏମାନଙ୍କ ସମଭିବ୍ୟାହାରରେ ଆସୁଅଛନ୍ତି । ରାଣୀଙ୍କ ଆସିବା କାରଣ ଜଣାନାହିଁ । ଶୁଣାଯାଏ ଯେ ସେ ପୁରୁଷୋତ୍ତମକୁ ଯିବେ । ଆମ୍ଭମାନଙ୍କର କମିଶ୍ନର ସାହେବ ମଧ୍ୟ ଅଳ୍ପ କାଳରେ ଫେରିଆସିବେ । ତାହାଙ୍କର ସେଠାରେ ଆଉ ରହିବାର କାରଣ ନାହିଁ । ଯୁଦ୍ଧକାର୍ଯ୍ୟ ସମାପନ ହେଲା । ଏଥର ଏ ଯୁଦ୍ଧରେ କେତେ ବ୍ୟୟ ଓ କେତେ ଅନର୍ଥକ କ୍ଲେଶ ହେଲା ସେହିର ବିଚାର ହେବ । ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ପୁଲିସ ସିପାହି କିମ୍ବା ଜଙ୍ଘି ସିପାହିଦ୍ୱାରା ଗୋଟିଏ ସରଦାର ଧରା ପଡ଼ିନାହାନ୍ତି । ଏମାନେ କେବଳ ରସଦଖାଇ ରୂପର ଶୋଭା ଦେଖାଇ ଫେରି ଆସୁଅଛନ୍ତି ଓ ବର୍ଷା କାଳରେ ପଟକୁଡ଼ିଆରେ ରହି ଯେତେ କ୍ଲେଶ ଓ ରୋଗ ଭୋଗ କରିଅଛନ୍ତି ଏତିକି ମାତ୍ର ଏହାଙ୍କ ଯିବାରେ ଫଳ ହୋଇଅଛି । ଆମ୍ଭେ-ମାନେ ଦୁଃଖର ସହିତ ଶୁଣି ଅଛୁଁ ଯେ ସାହେବଠାରୁ ସିପାହି ପର୍ଯ୍ୟନ୍ତ ଅଧିକାଂଶ ଲୋକ ପୀଡ଼ା ଭୋଗ କରି ଅଛନ୍ତି । ଫଳତଃ ଜଙ୍ଗଲ ସ୍ଥାନରେ ଏମାନଙ୍କର ବର୍ତ୍ତିବା ଚଳିବାର କଠିନ । ବିସ୍ତୀର୍ଣ୍ଣ ପଡ଼ିଆ ଏହାଙ୍କର ଯୁଦ୍ଧର ସ୍ଥାନ ହେଉଅଛି । ଛୋଟ ନାଗପୁର ଅଞ୍ଚଳର ରାଜାମାନଙ୍କ ସାହାଯ୍ୟରେ ଓ ସେମାନଙ୍କର ସୈନ୍ୟଦ୍ୱାରା ବିଦ୍ରୋହୀମାନେ ସରକାରର ହସ୍ତଗତ ହେଲେ । ରତନ ନାୟକକୁ ପାଲଲହଡ଼ା ରାଜା ଏବଂ ନନ୍ଦ ପ୍ରଧାନ ଓ ରଣୟା କୋଲକୁ ବଣେଇ ରାଜାର ଦେଓ୍ୱାନ ଧୃତକଲେ । ଏ ରାଜାମାନେ ଆପଣା ଆପଣା ପାଇକ ସଙ୍ଗେନେଇ ସରକାରର ବିନା ପ୍ରାର୍ଥନାରେ ସାହାଯ୍ୟଦାନ କଲେ ଏବଂ ଯଥୋଚିତ ସାହସ ଓ ରାଜଭକ୍ତି ପ୍ରଦର୍ଶନ ପୂର୍ବକ ଏରୂପ ବର୍ଷା କାଳରେ ନିବିଡ଼ ବନ ମଧ୍ୟରେ ପ୍ରବେଶ କରି ବିଦ୍ରୋହୀଙ୍କ ପଶ୍ଚାତ୍ ଧାବମାନ ହୋଇ ସେମାନଙ୍କୁ ହସ୍ତଗତ କଲେ । ଆମ୍ଭେମାନେ ଏହାଙ୍କ ରାଜଭକ୍ତି ଓ କର୍ତ୍ତବ୍ୟ ସାଧନରେ ତତ୍ପରତା ଦେଖି ଅତିଶୟ ଆନନ୍ଦ ହୋଇଅଛୁଁ ଏବଂ ଭରସା କରୁଁ ଗବର୍ଣ୍ଣମେଣ୍ଟ ଏମାନଙ୍କର କାର୍ଯ୍ୟର ଯଥୋଚିତ ପୁରସ୍କାର ପ୍ରଦାନ କରିବେ । ଯେଉଁମାନେ ମନେ କରନ୍ତି ଯେ ବଳପୂର୍ବକ ରାଜ୍ୟ ଶାସନ କରିବା ଉଚିତ ସେମାନେ ଏ ବିଦ୍ରୋହ ବିବରଣର କଥା ଶ୍ରବଣକରି ଆପଣା ଭ୍ରମ ପରିତ୍ୟାଗ କରିବେ ସନ୍ଦେହ ନାହିଁ । ବଳରେ ଲୋକଙ୍କୁ କେତେକାଳ କେହି ଶାସନ କରିପାରିବ ? ମନରେ ଯେବେ ସୁଖଜାତ ନ ହେଲା ତେବେ କଦାଚ ତାହା ସ୍ଥିର ହେବନାହିଁ, ସର୍ବଦା ସୁଯୋଗ ଖୋଜୁଥିବ । ଭାଗ୍ୟବଶରୁ ଇଂରାଜଙ୍କ ଶାସନ ପ୍ରଣାଳୀ କ୍ରମଶଃ ନରମ ଏବଂ ଏମାନେ ଦିନ ଦିନ ଯେତେ

ଲୋକଙ୍କ ହିତ ସାଧନ ଓ ନ୍ୟାୟ ପୂର୍ବକ କାର୍ଯ୍ୟ କରୁଅଛନ୍ତି ତେତେ ଲୋକଙ୍କର ଭକ୍ତି ଅଧିକ ହେଉଅଛି ଓ ପାଳପଡ଼ୁଛି, ବଡ଼େଇ ରଜାମାନେ ଏଥିର ଉଦାହରଣ ହୋଇ ଅଛନ୍ତି । ଆମ୍ଭେମାନେ ଏ ବ୍ୟାପାରରୁ ଏହି ହିତ ଶିକ୍ଷା କରୁଅଛୁଁ ଯେ ପ୍ରଜାଙ୍କୁ ବଳଦ୍ୱାରା ଶାସନ କରିବା କିଛି ନୁହଇ, ସାଧୁତା ପ୍ରଦର୍ଶନ ପୂର୍ବକ ସେମାନଙ୍କର ମନ ଆକର୍ଷଣ କରିବାର ଉଚିତ ।

କେନ୍ଦୁଝରର ଶାସନ ପକ୍ଷରେ ବର୍ତ୍ତମାନ ଏହି ସ୍ଥିର ହୋଇଅଛି ଯେ ଲେଫ୍‌ଟ-ନାଣ୍ଟ ଜନଷ୍ଟନ ସାହେବ ସେଠାରେ ଚିରବର୍ଷକାଳ ରହିବେ ଓ ତାହାଙ୍କ ଅଧୀନରେ ଦୁଇଶତଜଣ ପୁଲିସ ସିପାହୀ ସେଠାରେ ଅବସ୍ଥିତ କରିବେ ।

## ( ୩ୟ ଭାଗ, ୧୯ । ୯ । ୧୮୭୮, ସଂଖ୍ୟା ୩୮ )

୧୬୪ । ସଦାବର୍ତ୍ତି ସମ୍ପତ୍ତିର ଅପବ୍ୟବହାର ଅନୁସନ୍ଧାନ ।

ଏ ବିଷୟ ଅନୁସନ୍ଧାନ କରିବା କାରଣ ଅଲଦିନ ହେଲା କମିଟି ନିଯୁକ୍ତ ହୋଇ-ଅଛନ୍ତି ମାତ୍ର ଏମାନେ ବିଧିମତ କାର୍ଯ୍ୟାରମ୍ଭ ନକରୁଁ ସଦାବର୍ତ୍ତିର ଅପବ୍ୟୟ କଥା ଅପେ ପ୍ରକାଶ ହେଉଅଛି । ଗୋପାଳଜଉ ଠାକୁରଙ୍କ ମଠ କଟକରେ ଗୋଟିଏ ଧ୍ୟାତିପୂର୍ଣ୍ଣ ସଦାବର୍ତ୍ତି ସ୍ଥଳ ଅଟଇ । ପୂର୍ବରୁ ଏଠାରେ ପ୍ରତିଦିନ ଅନେକ କଙ୍କାଳ ଓ ବୈରାଗୀଙ୍କୁ ଶୁଷ୍କତଣ୍ଡୁଳ ଓ ଅନ୍ନଦାନ ଏବଂ ଠାକୁରଙ୍କ ଗୀତ ଓ ସେବାରେ ବିସ୍ତର ଧନବ୍ୟୟ ହେଉଥିଲା । ସମ୍ପ୍ରତି ଏଠାରେ ଯେଉଁ ବ୍ୟକ୍ତି ମହନ୍ତ ଅଛନ୍ତି ସେ ଅଲଦିନ ହେଲା ଏକ ଫୌଜଦାରୀ ମକଦ୍ଦମାରେ ଦୋଷୀ ହୋଇ କାରାଗାରରେ ଦଣ୍ଡ ଭୋଗ କରୁଅଛନ୍ତି । କାରାବାସ ସମୟରେ ମଠର ତତ୍ତ୍ୱାବଧାରକ କେହି ନଥିବାରୁ ମାଜିଷ୍ଟ୍ରେଟଙ୍କ ପକ୍ଷରୁ ସମସ୍ତ ଚଳନ୍ତି ସମ୍ପତ୍ତିର ତାଲିକା ହେବା ସମୟରେ ଜଣାଗଲାଯେ ଗୋପାଳଜଉ ଠାକୁରଙ୍କର ଅଳଙ୍କାର ଏବଂ ଅନ୍ୟାନ୍ୟ କେତେକ ବହୁମୂଲ୍ୟ ପଦାର୍ଥ ମହନ୍ତ ଅମୂଲ୍ୟ କରିବା ଅଭିପ୍ରାୟରେ ସ୍ଥାନାନ୍ତର କରିଅଛନ୍ତି । ଏହି ବିଶ୍ୱାସରେ ତାହାଙ୍କ ନାମରେ ଫଉଜ-ଦାରୀରେ ମକଦ୍ଦମା ଉପସ୍ଥିତ ହୋଇ ବିଗୃରାଧୀନରେ ଅଛି ।

ଅଦାଲତରେ ମଧ୍ୟ ମହନ୍ତଙ୍କ ଅପବ୍ୟୟ ବିଷୟରେ ଦରଖାସ୍ତ ପଡ଼ିଥିବାରୁ ଜଜ ସାହେବଙ୍କ ଆଜ୍ଞାକ୍ରମେ ମାଜିଷ୍ଟ୍ରେଟଙ୍କଦ୍ୱାରା ମଠର ସମ୍ପତ୍ତିମାନ କୋଡ଼କ ହେବାର ହୁକୁମ ହୋଇଅଛି ବୋଲି ଶୁଣାଯାଏ ।

ଆମ୍ଭେମାନେ ଦୁଃଖର ସହିତ ଦେଖୁଅଛୁଁ ଯେ ପୂର୍ବେ ଯେତେ ଅତିଥି

ସେଠାରେ ଏକତ୍ର ହେଉଥିଲେ ତାହା ଦିନ ଦିନ ଉଣା ହେଉଥିଲା ଓ ବର୍ତ୍ତମାନ କେହି ମହନ୍ତ ନ ଥିବାରୁ ଉକ୍ତ ପଦାକାଂକ୍ଷୀ ଲୋକମାନେ ସୁଯୋଗ ପାଇବା ଆଶାରେ କେଉ ଅଥବା ଅନ୍ୟ କାରଣରୁ ହେଉ ଉଦ୍ଧମରୂପେ ଅତିଥି ସେବା କାର୍ଯ୍ୟ ଚଳାଉ ଅଛନ୍ତି । ସେ ଯାହା ହେଉ ସଦାବର୍ତ୍ତିର ଅବସ୍ଥା ଅନୁସନ୍ଧାନ କରିବା ନିମିତ୍ତ ଏଠାରେ ସମ୍ପ୍ରତି ସମସ୍ତ ସୁଯୋଗ ଘଟିଅଛି । ଅତଏବ ଆମ୍ଭେମାନେ ଭରସାକରୁଁ କମେଟିର ସଭ୍ୟମାନେ ଏହି ମଠର ଅବସ୍ଥା ଅଗ୍ରେ ଅନୁସନ୍ଧାନ କରନ୍ତୁ । ପରେ ଅନ୍ୟାନ୍ୟ ମଠର ଅବସ୍ଥା ଜ୍ଞାତ ହେବାକୁ ଉଦ୍ୟମ କରିବେ ।

## ସାପ୍ତାହିକ ସମ୍ବାଦ

୧୫୫ । ଗତ ସୋମବାର ପ୍ରାତଃକାଳରେ କେନ୍ଦୁଝରକୁ ଯାଇଥିବା କନ୍‌ଷ୍ଟି-ବିଲମାନେ କଟକକୁ ଫେରି ଆସିଲେ । ଏମାନଙ୍କ ସମଭିବ୍ୟାହାରରେ କେନ୍ଦୁଝରର ରାଣୀ ଏବଂ କେତେ ଗୁଡ଼ାଏ ବଦମାସ କଏଦୀ ଆସି ଅଛନ୍ତି । ରାଣୀ ବର୍ତ୍ତମାନ କଟକରେ ଅଛନ୍ତି ମାତ୍ର ଅଳ୍ପଦିନରେ ଶ୍ରୀକ୍ଷେତ୍ରକୁ ଗମନ କରିବେ ।

ଏହି ସମୟରେ ନାଗପୁର ବିଭାଗର ଗଡ଼ଜାତ ମାହାଲ ସୁରଗୁଜାର ମହାରାଜ କଟକରେ ପ୍ରବେଶହୋଇ ଏକ ଦିନ ଅବସ୍ଥିତି କରି ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମିତ୍ତ ପୁରୁଷୋତ୍ତମକୁ ଗମନ କଲେ । ଏ ମହାରାଜା ପୂର୍ବେ ଗବର୍ଣ୍ଣମେଣ୍ଟଙ୍କର ଅନେକ ସାହାଯ୍ୟକରି ରାଜଭକ୍ତି ପ୍ରକାଶ କରିଥିବାରୁ ବିଶେଷ ସମ୍ମାନ ସୂଚକ ପଦମର୍ଯ୍ୟାଦା ପାଇଅଛନ୍ତି ଏବଂ ସମ୍ପ୍ରତି କେନ୍ଦୁଝରର ଗୋଲମାଲରେ ଯଥୋଚିତ ସାହାଯ୍ୟ କରି ଅଛନ୍ତି ।

## (ଉତ୍କଳ ଦୀପିକା, ୩।୧୦।୧୮୬୮, ସଂଖ୍ୟା ୩୯)

୧୫୬ । **କେନ୍ଦୁଝର**

ଏ କାଳର ଉତ୍ପାତ ସମ୍ପ୍ରତି ନିବାରଣ ହୋଇଅଛି କିନ୍ତୁ ଯେବେ କୌଣସି ଉପାୟଦ୍ୱାରା ଏ ଗଡ଼ଜାତର ଜଳବାୟୁ ସ୍ୱାସ୍ଥ୍ୟକର ହୋଇପାରେ ତାହାହେଲେ ଅନେକ ଉପକାର ହେବ । ଆମ୍ଭେମାନେ କେନ୍ଦୁଝରରୁ ପ୍ରତ୍ୟାଗତ ଅନେକ ଲୋକଙ୍କର କୃଷ୍ଣବର୍ଣ୍ଣ ରୂପ ଏବଂ ପୀଡ଼ାଗ୍ରସ୍ତ ଶରୀର ଦେଖି ଚମତ୍କାର ହୋଇଥିଲୁଁ । ବର୍ତ୍ତମାନ ଜଣେ ବନ୍ଧୁଠାରୁ କେନ୍ଦୁଝରର ମାଟି ବିଷୟରେ ପୁରାତନକାଳର ରଚିତ ଗୋଟିଏ ଛନ୍ଦ ଉକ୍ତି ଶ୍ରବଣ କରି ଆମ୍ଭମାନଙ୍କର ଭ୍ରମଦୂର ହେଲା—

କବିତାଟି ଏହି:—

"ତପ କରେଁ କାଲ କରେଁ ପିଲ୍ଲ କରେଁ ମେଙ୍କେଇ କରେଁ
ଝାଡା ଆର ଆମଲନ୍ତୁ କରେଁ ପେଠଫୁଲଉଁ ପେଡ଼୍ ଫୁଲଉଁ
ନ ମରେ ତୋ ମେଁ କ୍ୟା କରୁଁ" ।

## ପ୍ରେରିତ ପତ୍ର

୧୫୭ ।

ହେ ମହାଶୟ, ଆମ୍ଭର ଏ ନିମ୍ନଲିଖିତ ନିବେଦନ ସଂଶୋଧନ ପୂର୍ବକ ଆପଣଙ୍କ ସମ୍ବାଦ ପତ୍ରିକାର ଏକପାର୍ଶ୍ୱରେ ସ୍ଥାନଦାନ ଦେବା ହେବେ ।

ଗଞ୍ଜାମଜିଲ୍ଲା ଘୁମୁସର କିଲ୍ଲାର ଶ୍ରୀମହାରାଜ ଧନଞ୍ଜୟ ଭଞ୍ଜଦେଓ ମହାରାଜା କେତେକ ଦୁଷ୍ଟ ଲୋକଙ୍କ ପ୍ରତାରଣାରେ ସରକାର ବାହାଦୁରଙ୍କ ସଙ୍ଗେ ବିବଳ ହୋଇ ମୃତ୍ୟୁ ଲଭିବାରୁ ମହାରାଜ ମଉସୁଫଙ୍କ ଜ୍ୟେଷ୍ଠ ପୁତ୍ର ଶ୍ରୀ ବ୍ରଜରାଜ ଭଞ୍ଜ ଦେଓ ମହାରାଜଙ୍କୁ ଅନେକଦିନ ହେଲା ଗବର୍ଣ୍ଣମେଣ୍ଟ କିଲ୍ଲା ମଜକୁରରୁ ଅନ୍ତର କରାଇ ନେଇ ଚେନାପାଟଣାରେ ରଖାଇ ଥିଲେ । ବର୍ତ୍ତମାନ ଗବର୍ଣ୍ଣମେଣ୍ଟଙ୍କ ଆଦେଶ ଅନୁସାରେ ରାଜା ମହାଶୟ ଆପଣା ସ୍ୱସ୍ଥାନକୁ ପ୍ରସ୍ଥାନ କରି ଆସି ବ୍ରହ୍ମପୁର ମୁକାମରେ ପହଞ୍ଚି ଅଛନ୍ତି । ଏ ସମାଚାର ଶୁଣି ଦେଶୀୟ ଲୋକମାନେ ମହାସନ୍ତୋଷ ହେଉଅଛନ୍ତି କାରଣ କି ମହାରାଜ ମଉସୁଫ ବିଶେଷ ଦିନ ହେଲା ମାନ୍ଦ୍ରାଜ ରାଜଧାନୀ ନିକଟରେ ରହିଥିବାରୁ ଇଂଲିଶ ଓ ତେଲେଙ୍ଗା ବିଦ୍ୟାମାନ ଉତ୍ତମରୂପେ ଅଭ୍ୟାସକରି ବିଶେଷ ଯୋଗ୍ୟମାନ ହୋଇଥିବାରୁ ଓ ମଧ୍ୟ ରାଜା ମହୋଦୟ ଧୀମନ୍ତ ଏବଂ ସାରାସାର ବିବେଚନା କରିବା ବିଷୟରେ ଅତି ନିପୁଣ ଥିବାରୁ ରାଜା ମୌସୁଫଙ୍କୁ ତାଙ୍କ ଦେଶ ସମର୍ପଣ କରାଗଲେ ସେ ଗବର୍ଣ୍ଣମେଣ୍ଟଙ୍କ ରାଜଭକ୍ତିରେ ରହି ସ୍ୱଦେଶ ଲୋକଙ୍କୁ ଉତ୍ତମରୂପେ ପ୍ରତିପାଳନ କରି ଆପଣା ଦେଶର ମଙ୍ଗଳ ଉନ୍ନତି ସାଧନକରି ସରକାର ଆଇନ ଦସ୍ତୁର ପ୍ରକାରେ କର୍ମ କରିବାର ଉତ୍ତମରୂପେ ସମ୍ଭବ ହେଉଅଛି । ଏହି ହେତୁମାନଙ୍କରୁ ଦେଶୀୟ ଲୋକମାନେ ବିଶେଷ ସନ୍ତୋଷ ହେଉଅଛନ୍ତି ମାତ୍ର ରାଜମଉସୁଫଙ୍କୁ ତାଙ୍କ ସ୍ୱଦେଶକୁ ଗବର୍ଣ୍ଣମେଣ୍ଟ କି ଅଭିପ୍ରାୟରେ ଆଣାଇ ଅଛନ୍ତି, ତାଙ୍କୁ ରାଜ୍ୟସମର୍ପଣ କରିବାର ବାଞ୍ଛା ଅଛି କି ନା, ତାହା କିଛି ସ୍ପଷ୍ଟରୂପେ ଜଣା ଯାଉନାହିଁ । କିନ୍ତୁ ରାଜା ମୌସୁଫ ଉପର ଲିଖିତ ପ୍ରକାରେ ଗୁଣଜ୍ଞ ହୋଇଥିବା ପ୍ରତ୍ୟକ୍ଷେ କିଲ୍ଲା ମଜକୁର ରାଜ୍ୟ ବିଶେଷ ଦିନହେଲା ଗବର୍ଣ୍ଣମେଣ୍ଟଙ୍କ ସ୍ୱାଧୀନ ହୋଇଥିବାରୁ ଦେଶୀୟ ଲୋକମାନେ ସରକାରୀ ଆଇନଦସ୍ତୁରର ମର୍ମ ଜାଣିପାରି ପୂର୍ବପ୍ରଭୃତି ବର୍ତ୍ତମାନ ବହୁ ସଦ୍‌ବୁଦ୍ଧିରେ ଥିବାରୁ ରାଜା ମୌସୁଫଙ୍କୁ ରାଜ୍ୟ

ସମର୍ପଣ ହେଲେ ରାଜା ଓ ପ୍ରଜା ସମସ୍ତ ଲୋକମାନେ ଗବର୍ଣ୍ଣମେଣ୍ଟଙ୍କ ରାଜଭକ୍ତରେ ସଦା-ସର୍ବଦା ରହିବାର ଇଚ୍ଛାମାନ୍ୟ ହୋଇଅଛି । ଏ ହେତୁ ରାଜା ମୌସୁଫଙ୍କୁ ଗବର୍ଣ୍ଣମେଣ୍ଟ ରାଜ୍ୟସମର୍ପଣ କରି ସମସ୍ତ ଲୋକଙ୍କର ଆଶାପୂର୍ଣ୍ଣ କରିବାର ଉଚିତ ॥ ଇତି ॥

## ( ୩୨ୟ ଭାଗ, ୧୦ । ୧୦ । ୧୮୭୮, ସଂଖ୍ୟା ୪୦ )

୧୫୮ ।

### କେନ୍ଦୁଝର

ଗତମାସରେ କେନ୍ଦୁଝର ମୁଲକର ଶାନ୍ତିପର୍ବ ହୋଇଗଲା । କର୍ଣ୍ଣେଲ ଡାଲଟନ ସାହେବ ଏବଂ ତାଙ୍କ ସଙ୍ଗେ ଆସିଥିବା ୧୦ ରେଜିମେଣ୍ଟର ସେନାମାନେ ଉକ୍ତମାସ ତା ୧୨ ରିଖରେ ସ୍ୱସ୍ଥାନକୁ ପ୍ରସ୍ଥାନ କଲେ ଓ ନାନା ସ୍ଥାନରୁ ଯେ ପୁଲିସ ସିପାହୀମାନେ ସାହାଯ୍ୟ କରିବାକୁ ଆସିଥିଲେ କ୍ରମେ କ୍ରମେ ନିଜ ୨ ଜିଲାକୁ ଫେରି ଯାଉଅଛନ୍ତି । ଏତେ-ଜନଶ୍ରୁତି ପ୍ରାୟ ସମସ୍ତେ କେନ୍ଦୁଝରର ପରିତ୍ୟାଗ କରିଥିବେ । କିନ୍ତୁ ରକ୍ଷା ନିମନ୍ତେ ସେଠାରେ ଦୁଇଶତ କନେଷ୍ଟବଲ ଜଣେ ଇନସ୍ପେକ୍ଟର ଏବଂ ଏକଜଣ ଆସିଷ୍ଟାଣ୍ଟ ସୁପ୍ରିଣ୍ଟେ ରହିବାର ସ୍ଥିର ହୋଇଅଛି । ଆସିଷ୍ଟାଣ୍ଟ କିଏ ହେବ ଜଣାନାହିଁ । କିନ୍ତୁ ଶୁଣାଯାଏ ଯେ ଶ୍ରୀ ସୁବ୍ରାଏଣ ବାବୁଙ୍କୁ ଏ କର୍ମରେ ନିଯୁକ୍ତ କରିବାପାଇଁ ରିପୋର୍ଟ ହୋଇଅଛି । ଆମ୍ଭେମାନେ ଆଶାକରୁଁ ଯେ ସୁବ୍ରାଏଣ ବାବୁ ଯେ ପ୍ରକାର ଉପଯୁକ୍ତ କର୍ମଚାରୀ ତାହାଙ୍କୁ ଏ ରୂପ ଉଚ୍ଚପଦରେ ନିଯୁକ୍ତ କରିବା ସର୍ବପ୍ରକାରରେ ଉଚିତ ଅଟଇ । ଏପରି ନହେଲେ କି ଭରସାରେ ପୁଲିସ କର୍ମଚାରୀମାନେ ପ୍ରଶଂସାଯୋଗ୍ୟ କର୍ମ କରିବାକୁ ଯତ୍ନବାନ ହେବେ ?

କେନ୍ଦୁଝର ମୁଲକର ପ୍ରଧାନ ବ୍ୟକ୍ତି ରତନ ନାୟକ ସମ୍ପ୍ରତି କଟକ କାରାଗାରରେ ବାସ କରୁଅଛନ୍ତି । କମିଶନର ସାହେବ ଏ ବିଷୟର ମୋକଦ୍ଦମା ବିଚାର କରି ଆପଣା ସୁପାରିଶ ନଥି ଗବର୍ଣ୍ଣମେଣ୍ଟଙ୍କୁ ପଠାଇ ଅଛନ୍ତି । ରତନ ନାୟକର ଫାଶି ଏବଂ ନନ୍ଦ ପ୍ରଧାନ ରଣେସ୍ୱା କୋଲ ଏବଂ ଅନ୍ୟାନ୍ୟ ତେର ଜଣ ମନୁଷ୍ୟ ଓ ଏଥିମଧ୍ୟରେ ତିନିଜଣ ବାବୁ ଅଛନ୍ତି ଏମାନଙ୍କର ଯାବଜ୍ଜୀବନ ଦ୍ୱୀପାନ୍ତର ହେବାର ଦଣ୍ଡ ବିଧାନ କରି ଅଛନ୍ତି । ଆଉ କେତେଗୋଟା ଛୋଟ୍ ଅପରାଧର ମୋକଦ୍ଦମା ଅଛି । ସେ ସମସ୍ତର ବିଚାର ସରିଲେ କମିଶନର ସାହେବ କଟକକୁ ଆସିବେ । ମଧ୍ୟ ଆଜିକାଲି କେନ୍ଦୁଝରରେ ଭାରି ବର୍ଷା ହେଉ ଥିବାରୁ ବାଟଘାଟ ବନ୍ଦ ଅଛି । ଏଣୁକରି ସାହେବ ଫେରି ଆସିବାକୁ ବିଳମ୍ବ କରୁ-ଅଛନ୍ତି । ଯାହାହେଉ ନବମ୍ବର ମାସରେ ସେ ପ୍ରତ୍ୟାଗମନ କରିବେ ଏମନ୍ତ ଜଣାଯାଏ ।

( ୩ୟ ଭାଗ, ୨୪ । ୧୦ । ୧୮୬୮, ସଂଖ୍ୟା ୪୨ )

୧୫୯ ।    ଚାଉଳର ବଜାର

ଆମ୍ଭେମାନେ ଗତ ସପ୍ତାହରେ ମେଘର ନିଷ୍ଠୁରତା ଦର୍ଶନ କରି ଯାହା ଆଶଙ୍କା କରିଥିଲୁଁ ବର୍ତ୍ତମାନ ସପ୍ତାହରେ କେବଳ ତାହା ପୂର୍ଣ୍ଣହେଲା ଏମନ୍ତ ନୁହଇ । ୯ ଅଙ୍କ ଦୁର୍ଭିକ୍ଷର ଆଦ୍ୟ ସୂଚକ ସମ୍ପୂର୍ଣ୍ଣରୂପେ ଅନୁଭବ ହେଲା । ଏତେ ଶୀଘ୍ର ଯେ ଆମ୍ଭେମାନେ ପୁନର୍ବାର ଦୁର୍ଭିକ୍ଷଜ ବିଶେଷ ଦୁଃଖ ଅନୁଭବ କରିବୁ ଏମନ୍ତ ଉଦାର ବିଶ୍ୱାସ ନଥିଲା କାରଣ ସେ ବର୍ଷର ଦୁର୍ଘଟନା ଅନେକ କାଳରୁ ଅସତ୍ୟ ଲୋକମାନେ ସହ୍ୟକରି ନଥିଲେ କିନ୍ତୁ ଯେତେବେଳେ ସ୍ମରଣ କରାଯାଏ ଯେ ୨୪ ଅଙ୍କ ଦୁର୍ଭିକ୍ଷ ଉତ୍ତାରୁ ୨୮ ଅଙ୍କରେ ଦୁର୍ଭିକ୍ଷ ପଡ଼ିଥିଲା ତେତେବେଳେ ୯ ଅଙ୍କ ଉତ୍ତାରୁ ୧୨ ଅଙ୍କରେ ଦୁର୍ଭିକ୍ଷ ପଡ଼ିବ ଏଥିରେ ଚମତ୍କାର କି ଅଛି ? ସଂସାରର ବ୍ୟାପାର ସମସ୍ତ ଗଣନାର ନିୟମାଧୀନ ନୁହଇ ଓ ଘଟନା ସମସ୍ତ ନୈସର୍ଗିକ ସୂତ୍ରର ଅନୁଗାମୀ ନୁହଇ ସତ୍ୟ ମାତ୍ର ଯାହା ଥରେ ଘଟିଅଛି ତାହା ପୁନର୍ବାର ସଂଘଟନ ହେବାରେ କିଛି ମାତ୍ର ବାଧାନାହିଁ । ଅତଏବ ବହୁଦର୍ଶିତା ଗୁଣର ଅନୁସରଣ କରି ସାବଧାନ ହେବାର ଆବଶ୍ୟକ ।

୯ ଅଙ୍କ ଦୁର୍ଭିକ୍ଷ ସମୟରେ ଦୀପାବଳୀ ଅମାବସ୍ୟା ପର୍ଯ୍ୟନ୍ତ ବୃଷ୍ଟି ନହେବାରୁ ଚାଉଳ ବିକ୍ରେତାମାନେ ଆଗାମୀ ଫସଲର ଦୁରବସ୍ଥା ଜାଣିପାରିଲେ । ସେ ବର୍ଷ ତୁଲମାସ ପୂର୍ବରୁ ଏକାବେଳେକେ ବର୍ଷା ସ୍ଥଗିତ ହୋଇଥିଲା କିନ୍ତୁ ଏବର୍ଷ ଦୀପାବଳୀ ଅମାବସ୍ୟା କିଞ୍ଚିତ୍ ଶୀଘ୍ର ଅର୍ଥାତ୍ ଗର୍ଭଣା ସଂକ୍ରାନ୍ତି ଦିନ ପଡ଼ିବାରୁ ବର୍ଷାର ବିଶେଷ ସମ୍ଭାବନା ଓ ତତୋଧିକ ପ୍ରୟୋଜନ ଥିଲା । ଏଥକୁ ମେଘ କପଟ କରିବାରୁ ଚାଉଳ କାରବାର ଲୋକମାନେ ନିଶ୍ଚୟ କଲେ ଯେ ଏବର୍ଷ ଉତ୍ତମ ଫସଲ ହେବନାହିଁ । ଅତଏବ ସମସ୍ତେ ମେଳକରି ଗତ ରବିବାର ସ୍ୱହସ୍ତରୁ ଚାଉଳ ବିକ୍ରୟ ଏକପ୍ରକାର ବନ୍ଦ କରି ଦେଲେ । ଆମ୍ଭେମାନେ ଶୁଣିଲୁଁ ଯେ ନଗରର କେତେକ ପ୍ରଧାନ ଦଣ୍ଡିଦାର ଓ ମୋଦି-ମାନେ ଏକତ୍ରହୋଇ ପରାମର୍ଶ କରି ମୂଲ୍ୟ ବଢ଼ାଇବା ଆଶାରେ ଏ ପ୍ରକାର କଲେ । ସହରର ଲୋକ ସମସ୍ତେ କିଣିଖିଆ ଅଟନ୍ତି । ରବିବାର ରାତ୍ର ଓ ସୋମବାର ପ୍ରାତଃକାଳ ଚାଉଳ ବିକ୍ରୟ ଏକ ପ୍ରକାର ରହିତ ହେବାର ଦେଖି ହତାଶହେଲେ । ମୋଦିମାନେ ଅତି କଷ୍ଟରେ ଉଚ୍ଚ ମୂଲ୍ୟ ନେଇ ଏକ ୨ ଜଣକୁ ଅତ୍ୟଳ୍ପ ଚାଉଳ ଦେବାର ଆରମ୍ଭ କଲେ, ଖାଉ ଟଂକାକୁ ସେ୧୫ର ଓ ଏଥିରେ ଯଥେଷ୍ଟ ପ୍ରାପ୍ତ ହେଲାନାହିଁ । ସୌଭାଗ୍ୟ କ୍ରମେ ଗତ ଦୁର୍ଭିକ୍ଷର ସରକାରୀ ଚାଉଳ ଏ ଦେଶରେ ଥିବାରୁ ସେହିଦିନ ବିକ୍ରୟ ଆରମ୍ଭ

ହୋଇ ଏବଂ ତେତେବେଳେ ମୋଦମାନେ ଆପଣା ଅଭିଷ୍ଟ ସିଦ୍ଧି ପକ୍ଷରେ ବାଧାଦେଖି ଘରୁ ଗୁଡ଼ଳ ବାହାର କରି ଦୋକାନ ଛାଡ଼ିଲେ ଓ ଯଥାସ୍ଥିତ ବିକ୍ରୟ କରୁ ଅଛନ୍ତି ।

× × ×

ଅନ୍ୟଦଗରୁ ସ୍ୱାଭାବିକ ବାଣିଜ୍ୟ କ୍ରମେ ଏଠାକୁ ଗୁଡ଼ଳ ପ୍ରଚୁର ପରିମାଣରେ ଆସିବ ଏବର୍ଷ ଯେଥିରେ ଭରସା ନାହିଁ କାରଣ ଏଦେଶକୁ ଗୁଡ଼ଳ ଆମଦାନୀ ବିଷୟରେ ସମ୍ବଲପୁର ଛତିଶଗଡ଼ ଓ କଳାହାଣ୍ଡି ଗଡ଼ଜାତ ଆଦିର ସମ୍ପୂର୍ଣ୍ଣ ଅଧୀନ ଅଟଇ ମାତ୍ର ସମ୍ବଲପୁରରେ କାଳ ପଡ଼ିବାର ଶୁଣାଯାଏ । ଅନାବୃଷ୍ଟିର ଦୁଃଖ ମଧ୍ୟପ୍ରଦେଶର ସମୁଦାୟରେ ବ୍ୟାପିଯିବାର କଥିତ ହୋଇଅଛି ଏବଂ ନାଗପୁରକୁ ଗୋଦାବରୀ ଅଞ୍ଚଳରୁ ଗୁଡ଼ଳ ଅଣାଇବା କାରଣ ସେ ଦେଶର ଗବର୍ଣ୍ଣମେଣ୍ଟ କର୍ମଚାରୀ ଆଗହୁଁ ସ୍ଥିର କରୁଅଛନ୍ତି । ଅତଏବ ସମ୍ବଲପୁର ଏବର୍ଷ ଆମ୍ଭମାନଙ୍କୁ ଏକଦିନବୁଝା ପ୍ରତିପାଳନ କରି ପାରିବନାହିଁ ଓ ଯେବେ ଏହା ନ ହେଲା ତେବେ ଆଉ ଦେଶକୁ ଅଇଲେ କେତେ ନ ଅଇଲେ ବା କେତେ ? ଏଦେଶର ଦୁରବସ୍ଥା ମେଣ୍ଟିବା ପକ୍ଷରେ ଆଉ କେହି ସମର୍ଥ ହେବେ ନାହିଁ । ବଙ୍ଗଦେଶରୁ ଗୁଡ଼ଳ ଅସିବାର ତାଦୃଶ ଆଶା ନାହିଁ କାରଣ ସଚରାଚର ଗୁଡ଼ଳ ସେଠାରୁ ଆସେ ନାହିଁ । ଏଥିରେ ପୁଣି ଏବର୍ଷ ବଙ୍ଗ ଦେଶର ସର୍ବତ୍ରରେ ଭଲ କ୍ଷେତ ହୋଇନାହିଁ । ତଦ୍ ବିପରୀତ ଜିଲ୍ଲା ଚବିଶ ପର୍ଗଣା । ୨ ଦକ୍ଷିଣାଞ୍ଚଳରେ ଦୁର୍ଭିକ୍ଷ ପଡ଼ିବାରୁ ଆଜହୁଁ ସାହାଯ୍ୟ କର୍ମ ଆରମ୍ଭ ହେଲାଣି । ଏପରି ଅବସ୍ଥାରେ ବ୍ରହ୍ମ ଦେଶ-ଜିନ ଆଉ କୌଣସିଠାରେ ଆମ୍ଭମାନଙ୍କର ଦାନାପାଣି ପରମେଶ୍ୱର ରଖି ଥିବାର ଦେଖା ଯାଏ ନାହିଁ ଓ ବ୍ରହ୍ମ ଦେଶରୁ ଗୁଡ଼ଳ ଆସିବା ଅନାୟାସ ସାଧ୍ୟ ନୁହଇ ବିଶେଷତଃ ଉତ୍ତର ପଶ୍ଚିମାଂଶରେ ଦୁର୍ଭିକ୍ଷର ସମ୍ପୂର୍ଣ୍ଣ ସମ୍ଭାବନା ଥିବାରୁ ସେ ପ୍ରଦେଶପାଇଁ ମହାଜନ-ମାନେ ରେଙ୍ଗୁନ ଆଦି ସ୍ଥାନରେ ଗୁଡ଼ଳ କ୍ରୟ କରି ଜାହାଜରେ ବୋଝାଇ କରୁ-ଅଛନ୍ତି । ଅତଏବ ରାଜ କର୍ମଚାରୀଙ୍କର ନିତାନ୍ତ କର୍ତ୍ତବ୍ୟ ଯେ ଏତିକିବେଳେ କ୍ଷେତରେ ଥିବା ଧାନ ବୃକ୍ଷର ଅବସ୍ଥା ଦର୍ଶନ କରି କେତେଗୁଡ଼ଳ ଅଣାଇବାର ନିତାନ୍ତ ପ୍ରୟୋଜନ ଅଟଇ ତାହା ସ୍ଥିର କରନ୍ତୁ ଓ ସେହି ପରିମାଣ ଗୁଡ଼ଳ ବ୍ରହ୍ମ ଦେଶରୁ ଅଣାଇବାର ଉପାୟ କରନ୍ତୁ ଯେମନ୍ତ କି ସମୟରେଲେ ଆଉ ଅପେକ୍ଷା ନଥିବ । ବର୍ତ୍ତମାନ ଚୈତ୍ରାଶ ଆରମ୍ଭ ଯାଏ ଗୁଡ଼ଳ କଷ୍ଟ ହେବନାହିଁ, ଲୋକେ କୌଣସିରୂପେ ଆହାର ନିମନ୍ତେ ଗୁଡ଼ଳ ପାଇବେ କିନ୍ତୁ ସେଠାରୁ ନୂତନ ବଳ୍ପାଳୀ ହେବା ପର୍ଯ୍ୟନ୍ତ ଅର୍ଥାତ୍ ଆଶ୍ୱିନ ମାସ ଯାଏ ସରକାରକୁ ଦାନା ଖଞ୍ଜାଇବାର ଆବଶ୍ୟକ । ଏସମୟ ନିମନ୍ତେ କେତେ ଗୁଡ଼ଳ ପ୍ରୟୋଜନ ହେବ ବର୍ତ୍ତମାନ ସ୍ଥିର କରିବା ତାଦୃଶ କ୍ଲେଶକର ନୁହଇ । ' ଅଙ୍କ ଦୁର୍ଭିକ୍ଷ ଜନ୍ମରୁ ତାହା ଏକ ପ୍ରକାର ଜଣା ଯାଇ ଅଛି । ଆମ୍ଭମାନଙ୍କର ଅନୁମାନ

ହୁଅଇ ପ୍ରାୟ ୮ । ୧୦ ଲକ୍ଷ ମନୁଷ୍ୟ ସୃଙ୍ଖଳ ପ୍ରୟୋଜନ ହେବ । ବର୍ତ୍ତମାନ ପ୍ରାୟ ୩ ଲକ୍ଷ ମନୁଷ୍ୟ ସରକାରୀ ଗୃଙ୍ଖଳ ଏଠାରେ ଜମା ଥିବାରୁ ସମସ୍ତ ଅନୁସନ୍ଧାନ କରି ବନ୍ଦୋବସ୍ତ କରିବା ପାଇଁ ଯଥେଷ୍ଟ ସମୟ ଅଛି ।

୧୨୦ । ସଦାବର୍ତ୍ତି ସମ୍ପତ୍ତିର ଅବସ୍ଥା ଅନୁସନ୍ଧାନ ।

ଏହି ଅନୁସନ୍ଧାନ ଉପଲକ୍ଷରେ ପୁରୁଷୋତ୍ତମରେ କେହି ୨ ଲୋକ ପ୍ରତାରଣା ପୂର୍ବକ ଧନ ଅର୍ଜନ କରିବା ବିଷୟ ଆମ୍ଭେମାନେ ଶ୍ରବଣ କରି ଗତ ମାସରେ ସେଥିର ଉଲ୍ଲେଖ କରିଥିଲୁଁ । ତଦୁତ୍ତରୁ ପୁରୁଷୋତ୍ତମର ଅବସ୍ଥା ଶ୍ରବଣ କରିବାରେ ଜଣାଗଲା ଯେ ଏ ଅନୁସନ୍ଧାନ ହେବାରୁ ଭାରି ଗୋଲଯୋଗ ସେଠାରେ ଆରମ୍ଭ ହୋଇଅଛି । ମଠଧାରୀ-ମାନେ ଅନୁସନ୍ଧାନର ପ୍ରକୃତ ଉଦ୍ଦେଶ୍ୟ ବୁଝି ନଥିଲେ ଓ ସୁଝି କମିଟିର ଯେଉଁ ସଭ୍ୟ ତାହାଙ୍କଠାରୁ ଆୟ ବ୍ୟୟ ଫର୍ଦ୍ଦ ପ୍ରାର୍ଥନା କଲେ ସେ କାଗଜ ପ୍ରସ୍ତୁତ କରିବାର ଧାରା ତାହାଙ୍କୁ ବୁଝାଇ ଦେଇଥିବାର ପ୍ରକାଶ ପାଉନାହିଁ । ବରଂ କାଗଜ ମାଗିବାର ଧାରାରୁ ସେମାନଙ୍କର ଏମନ୍ତ ବିଶ୍ୱାସ ଜନ୍ମିଥିଲା ଯେ କମିଟିର ସଭ୍ୟମାନେ ଯଥେଚ୍ଛରୂପେ ସେମାନଙ୍କୁ ବାହାର କରି ଦେବାର ମଧ୍ୟ କ୍ଷମତା ରଖନ୍ତି । ଫଳତଃ ଅନୁସନ୍ଧାନ ଆରମ୍ଭର ଆଡମ୍ବର ଦେଖି ମଠଧାରୀମାନେ ଅତିଶୟ ଭୟଯୁକ୍ତ ଓ ଚିନ୍ତିତ ହୋଇଥିଲେ । ଏ ଅବସ୍ଥାରେ ଯେ ଖଳଲୋକମାନେ ସୁଯୋଗ ପାଇ ମଠଧାରୀମାନଙ୍କୁ ନାନା କଥାରେ ଆଶ୍ୱାସ ଦେଇ ଧନହରଣ କରିବେ ଏଥିରେ ବିଚିତ୍ର କି ଅଛି ?

× × ×

୧୨୧ । ଜମିଦାର ମହାଜନ ଓ ପ୍ରଜା ଇତ୍ୟାଦି ସମସ୍ତ ଶ୍ରେଣୀର ହିତ କମିତ୍ତି ନାନା ଦେଶରେ ନାନା ପ୍ରକାର ସମ୍ବାଦପତ୍ର ପ୍ରଚଳିତ ଅଛି ଓ ତଦ୍ୱାରା ଅସଂଖ୍ୟ ପ୍ରକାର ଭ୍ରମ ସଂଶୋଧନ ହେଉଅଛି ମାତ୍ର ଏ ଦେଶର ଜନାଲୋକ, ଶିକ୍ଷା ଓ ନାନା ବିଷୟର ଅଧିକାଂଶଲୋକ ପତ୍ରକଂଡ଼ି ଅର୍ଥବ୍ୟୟରେ କାତର ହୋଇ ସମ୍ବାଦପତ୍ର ଗ୍ରହଣ ଓ ପଠନ କରନ୍ତି ନାହିଁ । ଏଥିରେ ଯେତେ ସେମାନଙ୍କର କ୍ଷତି ହେଉଅଛି ତାହା ନିବାରଣର ଆଉ କି ଉପାୟ ଅଛି ? ପାଠକମାନେ ଏମନ୍ତ ମନେ କରିବେ ନାହିଁ ଯେ ଆମ୍ଭେମାନେ ଉତ୍କଳ ଦୀପିକାର ଗ୍ରାହକ ବୃଦ୍ଧି କରିବା ନିମିତ୍ତ ଉପର୍ଯ୍ୟୁକ୍ତ କଥାମାନ ଲେଖିଲୁ । ଉତ୍କଳ ଦୀପିକା ଓଡ଼ିଶାର ଏକମାତ୍ର ସମ୍ବାଦପତ୍ର । ଅତଏବ ଏହାର ଅଧିକ ଗ୍ରାହକ ହେବାର ଆଶାକରିବା ପର୍ଯ୍ୟନ୍ତ କି ଅସଙ୍ଗତ ନୁହଇ ତଥାଚ ଆମ୍ଭେମାନେ ଏକା ଏହି-ପତ୍ରିକା ନେବାପାଇଁ ସାଧାରଣଙ୍କୁ ଅନୁରୋଧ କରୁନାହୁଁ । ଏ ଦେଶରେ ବଙ୍ଗଳା ଇଂରାଜୀ

ଇଂରାଜି ଏବଂ ଅନ୍ୟାନ୍ୟ ଭାଷାରେ ଯେତେ ସମ୍ବାଦପତ୍ର ପ୍ରଚାର ଅଛି ଏ ସମସ୍ତ ଜନଙ୍କର ହିତ ନିମିତ୍ତ ହୋଇଅଛି । ଏଥିମଧ୍ୟରେ ଯାହାର ଯେ ପତ୍ରିକା ଗ୍ରହଣ କରିବାର ଅଭିଳାଷ ହୁଅଇ ସେ ତାହାର ଗ୍ରାହକ ହେଉ । ଆମ୍ଭେମାନେ କେବଳ ଏହି ପ୍ରାର୍ଥନା କରୁଅଛୁଁ ଯେ ପ୍ରକୃତ କଥା ଜାଣିବାର ଉପାୟ ଥାଉଁ ୨ କେହି ଅଜ୍ଞାନ ଅନ୍ଧକାରରେ ପଡ଼ି ଆପଣାର କ୍ଷତି ସ୍ୱୀକାର ନକରୁ ।

## ସାପ୍ତାହିକ ସମ୍ବାଦ

୧୬୨ । ପ୍ରେରିତ ପତ୍ର

ମହାଶୟ, ବ୍ରଜରାଜ ଭଞ୍ଜଦେଓ ଘୁମୁସରରୁ ଆସିଥିବାରୁ ଆପଣଙ୍କର ଜଣେ ପତ୍ର ପ୍ରେରକ ଅନୁମାନ କରନ୍ତି ଯେ ଘୁମୁସର ସିଂହାସନରେ ଅଭିଷିକ୍ତ କରାଇବାପାଇଁ ଗବର୍ଣ୍ଣମେଣ୍ଟ ମାନ୍ଦ୍ରାଜରୁ ତାହାଙ୍କୁ ଅଣାଇ ଅଛନ୍ତି । କିନ୍ତୁ ପତ୍ରପ୍ରେରକ ମହାଶୟ ଘୁମୁସର ସକ୍ରାନ୍ତ ସମସ୍ତ ବିବରଣ ଅବଗତ ଥିଲେ ଏପରି ଯେ ଲେଖନ୍ତେ ଏମନ୍ତ ବୋଧହୁଅଇ ନାହିଁ । ଆମ୍ଭେ ପତ୍ର ପ୍ରେରକ ମହାଶୟଙ୍କୁ ଭ୍ରମ ଅପନୟନ କାରଣ କିଛି ନଲେଖି ସ୍ଥିର ହୋଇ ରହି ପାରିଲୁ ନାହିଁ । ମହାରାଜ ହରେକୃଷ୍ଣ ଭଞ୍ଜଦେଓ ଘୁମୁସର ସିଂହାସନର ଯଥାର୍ଥ ଉତ୍ତରାଧିକାରୀ । ସ୍ୱର୍ଗୀୟ ଶ୍ରୀକର ଭଞ୍ଜଙ୍କ ଉଇଲ ସ୍ୱରୂପ ଲିପିରେ ସେ ବିଷୟ ବିଶେଷରୂପେ ବ୍ୟାଖ୍ୟାତ ଅଛି । ଓଡ଼ିଶା ଓ ଅନ୍ୟାନ୍ୟ ସ୍ଥାନର କେତେକ ଜଣ ରାଜାମଧ୍ୟ ଏ ବିଷୟର ସାକ୍ଷ୍ୟ ପ୍ରଦାନ କରି ଅଛନ୍ତି ଏବଂ ମହାରାଜ ହରେକୃଷ୍ଣ ଭଞ୍ଜଙ୍କ ସପକ୍ଷରେ ମାନ୍ଦ୍ରାଜ ଓ ବଙ୍ଗଳା ଗବର୍ଣ୍ଣମେଣ୍ଟ ଡିଗ୍ରୀ ଦେଇ ଅଛନ୍ତି । ଧର୍ମ୍ମ ବିଚାର ପାର୍ଲିଆମେଣ୍ଟରେ ମକଦ୍ଦମା ଉପସ୍ଥିତ ହୋଇଅଛି । ଏସ୍ଥଳେ ବ୍ରଜରାଜ ଭଞ୍ଜ କଦାଚ ସିଂହାସନାରୂଢ ହୋଇ ନ ପାରନ୍ତି । ସେ ଇଂରାଜୀ ଜାଣନ୍ତି ବୋଲି ଯେବେ ରାଜ୍ୟ ପ୍ରାପ୍ତ ହେବେ ତେବେ କୁମାର ପ୍ରତାପ ଚନ୍ଦ୍ର ଭଞ୍ଜଙ୍କର ଅପରାଧ ?

ଆମ୍ଭେ ପତ୍ରିକା ବିଶେଷରେ ପାଠ କରିଅଛୁଁ ବ୍ରଜରାଜ ଭଞ୍ଜଦେଓ ବିବାହ କରିବାପାଇଁ ୧୨ ସହସ୍ର ଟଙ୍କା ପାଥେୟ ସହିତ କିଛି ଦିନ କାରଣ ବିଦାୟ ପ୍ରାପ୍ତ ହୋଇ ଆସି ଅଛନ୍ତି । ଇତି ।

୧୪ ଇଁ ଅକ୍ଟୋବର ବଶମ୍ବଦ ଭୃତ୍ୟ
ସନ ୧୨୭୮ ମସିହା କାଲେଶ୍ୱରୀ
ବାଲେଶ୍ୱର

## ( ୩୩ଶ ଭାଗ, ୩୧ । ୧୦ । ୧୮୭୮, ସଂଖ୍ୟା ୪୩ )

### ସାପ୍ତାହିକ ସମ୍ବାଦ

୧୬୩ । କଟକର ସ୍ମଲକଜ ଅଦାଲତର ଜଜ ରାଇଟ ସାହେବ ତିନି ମାସର ଛୁଟି ନେବାରୁ ତାହାଙ୍କ କର୍ମରେ ବାବୁ ଗଙ୍ଗା ଚରଣ ସରକାର ପ୍ରତିନିଧି ନିଯୁକ୍ତ ହୋଇ ଆସୁ ଅଛନ୍ତି । ଶ୍ରୀ ରାଇଟ ସାହେବ ଆଗାମୀ ମଙ୍ଗଳବାର ବଳାଘରଠାରେ ଜାହାଜରେ ଚଢ଼ିବେ ।

୧୬୪ । ପୁରୀର ଡାକ୍ତର ବାବୁ ଉଦୟ ଚନ୍ଦ୍ର ଦତ୍ତ ଏକ ବର୍ଷପାଇଁ ଛୁଟି ନେବାରୁ ତାହାଙ୍କ କର୍ମରେ ଡବଲଉ ଷ୍ଟୁଆର୍ଟ ସାହେବ ଯେ କି ଅଳ୍ପ ଦିନ ପୂର୍ବେ କଟକରେ ଡାକ୍ତର ଥିଲେ ସେ ସ୍ଥାନର ଏକଟିଂ ଡାକ୍ତର ନିଯୁକ୍ତ ହୋଇ ଅଛନ୍ତି । ତେବେ ଷ୍ଟୁଆର୍ଟ ସାହେବଙ୍କର କେନ୍ଦୁଝରରେ ରହିବାର କଥା ନିଶ୍ଚୟ ହେଲା ନାହିଁ ।

୧୬୫ । ଏ ନଗରର ବାଲକ ଦାସ ମଠର ମହନ୍ତ ବିଶ୍ୱାସଘାତକତା ଅପରାଧରେ ଅପରାଧୀ ହୋଇ ଜଏଣ୍ଟ ମାଜିଷ୍ଟ୍ରେଟଙ୍କ ଦ୍ୱାରା ଏକବର୍ଷ କାରାଦଣ୍ଡ ପାଇଅଛୁ । ଠାକୁରଙ୍କ ସହିତ ବିଶ୍ୱାସଘାତକତା କଲେ ଫଉଜଦାରୀରେ ଦଣ୍ଡ ନପାଇ ଆଉ କେଉଁଠାରେ ଦଣ୍ଡ ପାନ୍ତା ।

୧୬୬ । ଗତ ରବିବାର କେନ୍ଦୁଝରର ଆହୁରି ଜଣ ୩୦ ଜଣ କଏଦ ଆସି ଏ ନଗର ଜେଲଖାନାରେ ପ୍ରବେଶ ହେଲେ । ଏମାନେ କେହି ବର୍ଷ କେହି ଦଶବର୍ଷ କାରାବାସ ଓ ଦ୍ୱୀପାନ୍ତର ହେବାର ଆଜ୍ଞା ପାଇ ଅଛନ୍ତି ।

## ( ୩୩ଶ ଭାଗ, ୭ । ୧୧ । ୧୮୭୮, ସଂଖ୍ୟା ୪୪ )

### ସାପ୍ତାହିକ ସଂବାଦ

୧୬୭ । ଗତ ସପ୍ତାହରେ ଶ୍ରୀଯୁକ୍ତ କର୍ଣ୍ଣେଲ ସାହେବ କଟକର ସବାସ୍ଥ ହୋଇଥିଲେ । କଟକ ସବଡିଭିଜନ ଓ ସାହାପୀ ମହକୁମାର ଭାର ପୂର୍ବର ଏହାଙ୍କ ପ୍ରତି ଅର୍ପିତ ଥିଲା । ଶ୍ରୀଯୁକ୍ତ ଆର୍ମଷ୍ଟ୍ରଙ୍ଗ ସାହେବ ଓ ପୁଲିସ ସୁପ୍ରିଣ୍ଟେ ମଫସଲକୁ ଯିବାରୁ କଲେକ୍ଟରୀ ମେଜେଷ୍ଟ୍ରେଟୀ ଯେହଲଖାନା ପଲଟନର ମେଜେଷ୍ଟ୍ରୀ ଏବଂ ପୁଲିସର ଭାର ପାଇଲେ । ଏଥିରେ ଜଜ ସାହେବ ବାଲେଶ୍ୱରକୁ ବଦଳିମାନ ହେବାରୁ ଦେଓୟାନି ଅଦାଲତର

ହିର ଏହାଙ୍କ ପ୍ରତି ଅର୍ପିତ ହେଲା । ଏକା କମିଶ୍ନରର ଭାର ପାଇଥିଲେ ଏକାବେଳକେ ଦଶଅବତାର ପୂର୍ଣ୍ଣ ହୋଇଥାନ୍ତା ।

—୦—

୧୬୮ । ଓଡ଼ିଶାର ପୁରାତନ ମନ୍ଦିରାଦି ସନ୍ଦର୍ଶନ କାରଣ ଶ୍ରୀଯୁକ୍ତ ବାବୁ ରାଜେନ୍ଦ୍ରଲାଲ ମିତ୍ର ଏବଂ ଏକ ଜଣ ସାହେବ ଗତମାସ ଦ୍ଵିତୀୟାର୍ଦ୍ଧରେ କଲିକତାରୁ ଜାହାଜରେ କଟାଘର ବାଟେ ଆସୁ ଅଛନ୍ତି । ଆଜିକାଲି ଏ ନଗରରେ ପ୍ରବେଶ ହେବେ ।

୧୬୯ । କାଲି ହରିଶପୁର ନିକଟରେ ଯେଉଁ ଯାହାଜ ବସି ଯାଇଥିଲା ହାଇକୋର୍ଟ ଉକ୍ତ ଯାହାଜର କପ୍ତାନ କର୍ତ୍ତବ୍ୟରେ ତ୍ରୁଟି ପ୍ରଯୁକ୍ତ ଯାହାଜ ନଷ୍ଟ ହେଲା କି ନାହିଁ ଏବିଷୟର ତଦାରଖ କରି ଉକ୍ତ କପ୍ତାନର ସାର୍ଟିଫିକେଟ ଛ ମାସ ନିମିତ୍ତ ସ୍ଥଗିତ କରିବାର ଆଜ୍ଞା ଦେଇ ଅଛନ୍ତି ।

୧୭୦ । ପ୍ରେରିତ ପତ୍ର

ମହାଶୟ, ଆମ୍ଭେମାନେ ଅତି ଆନନ୍ଦର ସହିତ ଆପଣଙ୍କୁ ଜଣାଉଅଛୁଁ ଯେ କଟକର (ପୁରୀର ?) ଡେପୁଟି କାଲେକ୍ଟର ଶ୍ରୀଯୁକ୍ତ ବାବୁ ଉଦୟଗୃହ ଦଣ୍ଡ ପୁରୀ ଇଙ୍ଗ୍ରେଜୀ ବିଦ୍ୟାଳୟରେ ସ୍ୱୀୟ ସଦାଶୟ ଟ ୧୦୦୦ ପ୍ରଦାନ କରି ଅଛନ୍ତି । ତଦ୍ଦ୍ଵାରା ଉକ୍ତ ବିଦ୍ୟାଳୟର ଯଥେଷ୍ଟ ଉପକାର ହେବାର ସମ୍ଭାବନା କାରଣ ଚାନ୍ଦା ପ୍ରଦାୟକମାନଙ୍କଠାରୁ ଚାନ୍ଦା ଫିହରିସ୍ତ ସମ୍ବନ୍ଧାନୁସାରେ ଆଦାୟ ହୋଇ ପାରୁ ନଥିବାରୁ ଶିକ୍ଷକମାନଙ୍କ ବେତନ ପ୍ରତିମାସରେ ଦିଆ ଯାଇ ପାରୁ ନାହିଁ । ବାବୁ ମହାଶୟ ଏ ଟଙ୍କା ଦାନ କରି ଆମ୍ଭମାନଙ୍କର ଯଥାର୍ଥ ଧନ୍ୟବାଦପାତ୍ର ହୋଇଅଛନ୍ତି ଏବଂ ଆମ୍ଭେମାନେ ଭରସା କରୁଁ ଯେ ଆପଣ ଅନୁଗ୍ରହ ପୂର୍ବକ ଏ ବିଷୟ ଆପଣଙ୍କ ଜଗଦ୍ ବିଖ୍ୟାତ ଉତ୍କଳ ଦୀପିକା ନାମକ ପତ୍ରିକାରେ ପ୍ରକାଶ କରି ଏଦେଶସ୍ଥ ଧନୀଲୋକମାନଙ୍କୁ ବାବୁ ମହାଶୟଙ୍କର ଅନୁଗାମୀ ହେବାକୁ ପ୍ରବୃତ୍ତ କରିଇବେ ।

୧୭୧ । ବିଜ୍ଞାପନ

ସର୍ବସାଧାରଣଙ୍କୁ ଏତଦ୍ଦ୍ୱାରା ଜଣାଇ ଦିଆ ଯାଉଅଛି କି କଟକ ଯୋଗୋଇଟି ଅଗତ ଶନିବାର ଠାରୁ କର୍ମ ଆରମ୍ଭ କରିବେ ଏବଂ ଆଗତ ମଙ୍ଗଳବାର ଦିନ ଉକ୍ତ ସ୍କୁଲରେ ଜମିଦାରମାନଙ୍କର ସଭା ଅର୍ଥାତ୍ ଓଡ଼ିଶା ବ୍ରିଟିଶ ଇଣ୍ଡିୟାନ ସଭା ହେବ ।

ତା ୭ଇଖ ମାହେ ନବମ୍ବର
ସନ ୧୮୬୮ ମସିହା

ଶ୍ରୀ କାଳୀ ଚରଣ ବନ୍ଦୋପାଧ୍ୟାୟ
ସେକ୍ରେଟେରୀ

( ଖସ୍ତୁ ଭାଗ ୧୪।୧୧।୧୮୭୮, ସଂଖ୍ୟା ୪୫ )

## ସମାଜ ଉନ୍ନତିର ଚେଷ୍ଟା ।।

୧୭୨ ।

ଏକେତେ ବର୍ଷହେଲା କଟକସ୍ଥ ସମ୍ଭ୍ରାନ୍ତ ବ୍ୟକ୍ତିମାନେ କଲିକତାର ଭାରତବର୍ଷୀୟ ସଭା ପରି ଓଡ଼ିଶାର ଉତ୍କର୍ଷ ସାଧନ କାରଣ ଗୋଟିଏ ସଭା ସ୍ଥାପନ କରିବାର ଉଦ୍ଯୋଗ କରି ଅଛନ୍ତି ମାତ୍ର ନାନା ପ୍ରତିବନ୍ଧକବଶତଃ ତାହା ଅଦ୍ୟାପି ନିଷ୍ପନ୍ନ ହୋଇ ପାରୁ ନାହିଁ । ଗତ ସପ୍ତାହରେ କଟକ ସୋସାଇଟିର କେତେକ ଜଣ ସଭ୍ୟଙ୍କଦ୍ୱାରା ଏସଭା ସ୍ଥାପନ ପକ୍ଷରେ ଚେଷ୍ଟା ହୋଇ ଅନେକ ଭଦ୍ରଲୋକ ଓ ଜମିଦାରଙ୍କୁ ପତ୍ରଦ୍ୱାରା ଅନୁରୋଧ କରା ଯାଇ ଥିଲା କି ସେମାନେ ଏକତ୍ର ହୋଇ ସଭା ସ୍ଥାପନ ପକ୍ଷରେ ବିହିତ ଉପାୟ କରିବେ ମାତ୍ର ଦୁର୍ଭାଗ୍ୟ ବଶତଃ ଆମନ୍ତ୍ରିତ ବ୍ୟକ୍ତିଙ୍କ ମଧ୍ୟରୁ ଅତ୍ୟଳ୍ପ ଲୋକ ଉପସ୍ଥିତ ହେଲେ, ସୁତରାଂ ଆଶାନୁରୂପ କାର୍ଯ୍ୟ ହୋଇ ପାରିଲା ନାହିଁ । ସଭାସ୍ଥାନକୁ ଯେ କି ନିମିତ୍ତ ଅଧିକ ଲୋକ ନଆସିଲେ ଏଥିର ଆଲୋଚନା କଲେ ବୋଧହୁଅଇ ଯେ ସଭାଦ୍ୱାରା ଦେଶର ଓ ଆପଣାର କି ପର୍ଯ୍ୟନ୍ତ ମଙ୍ଗଳ ହୋଇପାରେ ତାହା ଅଧିକାଂଶ ଲୋକଙ୍କୁ ଜଣାନାହିଁ । ଏହି ହେତୁରୁ ସେମାନେ ମନୋଯୋଗୀ ହୁଅନ୍ତି ନାହିଁ ! ଏରୂପ ଲୋକଙ୍କର ଭ୍ରମ ଖଣ୍ଡନ କୌଣସି ଯୁକ୍ତିଦ୍ୱାରା ହୋଇ ନପାରେ । ସେମାନେ ଯେବେ ଅନ୍ୟାନ୍ୟ ସଭାଦ୍ୱାରା ଦେଶର କି ପର୍ଯ୍ୟନ୍ତ ଉନ୍ନତି ହୋଇଅଛି ଜାଣିବାକୁ ଚେଷ୍ଟା କରିବେ ତେବେ ସଭାର ଆବଶ୍ୟକତା ବିଷୟରେ ସେମାନଙ୍କର ସନ୍ଦେହ ଭଞ୍ଜନ ହେବ । [illegible] କେହି କେହି ମନେ କରନ୍ତି ଯେ ଭାରତବର୍ଷ ପ୍ରଥମରୁ ଏତେକାଳ ପର୍ଯ୍ୟନ୍ତ ରାଜାଙ୍କଦ୍ୱାରା ଶାସିତ ହୋଇ ଆସିଲା ମାତ୍ର ସଭାର ଅଭାବ କଦାଚ ବୋଧ ହୋଇ ନାହିଁ । ଆଜି କି ନିମିତ୍ତ ସଭାର ପ୍ରୟୋଜନ ହେଲା । ଏମନ୍ତ ଲୋକଙ୍କୁ ଆମ୍ଭେମାନେ ଏହି ମାତ୍ର କହୁଅଛୁଁ ଯେ ହିନ୍ଦୁରାଜାଙ୍କ ସମୟରେ ପ୍ରଜାମାନଙ୍କର ଶୈଶବାବସ୍ଥା ଥିଲା ଅତଏବ ରାମଚନ୍ଦ୍ର କି ଯୁଧିଷ୍ଠିରାଦି ପୁତ୍ରବତ୍ସଳ ଭାବରେ ପ୍ରଜାଙ୍କର ଲାଳନ ପାଳନ କରିବାରୁ ସେମାନେ ପରମ ସୁଖରେ ଦିନ ଯାପନ କଲେ । ତଦୁତ୍ତାରୁ ମୁସଲମାନଙ୍କ ରାଜ୍ୟ ସମୟରେ ପ୍ରଜାଙ୍କର ପଠଦଶା ଉପସ୍ଥିତ ହେଲା କାରଣ ମୁସଲମାନ ରାଜାମାନେ ଆଖୋନଜୀ ( ମୁସଲମାନ ଶିକ୍ଷକ ) ଙ୍କ ପରି ଅତ୍ୟାଚାରରୂପ ବେତ୍ରାଘାତରେ ପ୍ରଜାଙ୍କୁ ଶାସନ କଲେ । ଏ ଦୁଇ ଅବସ୍ଥାରେ ପ୍ରଜାଙ୍କର ଅଭାବ ସେମାନେ ସ୍ୱୟଂ ବୁଝି ନଥିଲେ । ଶୈଶବ କାଳରେ ସେମାନଙ୍କର ଅଭାବ ନଥିଲା, ଆଖୋନଜୀଙ୍କର ଯାହା ଇଚ୍ଛା ଏମାନଙ୍କୁ ତାହା କରିବାକୁ ହେଉଥିଲା । ସମ୍ପ୍ରତି ଇଂରାଜଙ୍କ ଶାସନ ସମୟରେ ପ୍ରଜାମାନେ ଯୌବନ ଦଶାକୁ ପ୍ରାପ୍ତ ହୋଇ ଅଛନ୍ତି । ଏତେବେଳେ ଏମାନେ ଆପେ ପରିଶ୍ରମ ନ କଲେ ଆଉ

ଗଣ ନାହିଁ । ସ୍ୱତନ୍ତ୍ରଂ ପ୍ରଜାଙ୍କୁ ଆପଣା ଇଚ୍ଛାମତ ବିଚାର କରି କାର୍ଯ୍ୟ କରିବାକୁ ପଡ଼ୁଅଛି, ଯେବେ ତାହା ନ କରିବେ ତେବେ ଦୁଃଖ ପାଇବେ ସନ୍ଦେହ ନାହିଁ ।

( ୩ୟ ଭାଗ, ୨୮ । ୧୧ । ୧୮୭୮, ସଂଖ୍ୟା ୪୭ )

୧୨୩ । କେନ୍ଦୁଝର

କେନ୍ଦୁଝର ବିଦ୍ରୋହର ସରଦାରମାନେ ରତନ ନାୟକ ପ୍ରଭୃତି ଗୃହଜଣ ଆଗାମୀ ସୋମବାର କଟକ ଜେଲ ସମ୍ମୁଖରେ ଫାଶି ପାଇବେ । ଶ୍ରୀଯୁକ୍ତ ରେଭେନସା ସାହେବ କେନ୍ଦୁଝର ମୁକାମରେ ଏମାନଙ୍କର ବିଚାର କରି ଏହି ଦଣ୍ଡ ଦେବାର ପ୍ରସ୍ତାବ କରିଥିଲେ । ଗବର୍ଣ୍ଣମେଣ୍ଟ ସେଥିରେ ସମ୍ମତ ହୋଇ ଅଛନ୍ତି । ଯଦ୍ରୂପ କାର୍ଯ୍ୟ ତଦ୍ରୂପ ଫଳ ହେଲା ।

( ୩ୟ ଭାଗ, ୧୬ । ୧୨ । ୧୮୭୮, ସଂଖ୍ୟା ୪୯ )

ସାପ୍ତାହିକ ସମ୍ବାଦ

୧୨୪ । ସୁବର୍ଣ୍ଣ ଜଣେ ପତ୍ର ପ୍ରେରକ ଗତ ମାସ ତା ୧୨ ରିଖରେ ହିନ୍ଦୁ ପେଟ୍ରିୟଟକୁ ଏକ ପତ୍ର ଲେଖିଥିଲେ । ସେଥିର ପ୍ରକାଶ ଯେ ସେଠା ଲୋକମାନେ ଏବର୍ଷ ମଧ୍ୟ ୯ ଅଙ୍କ ପରି ଦୁର୍ଭିକ୍ଷ ପଡ଼ିବାର ଆଶଙ୍କା କରି ଅଛନ୍ତି । ଆମ୍ଭେମାନେ ଏତେ ଗୁଡ଼ାଏ ବିଶ୍ୱାସ କରି ନାହୁଁ । ହୀନ ବୃଷ୍ଟି ହେତୁରୁ ବସ୍ତୁର ପରିମାଣରେ ଶସ୍ୟର ଉତ୍ପନ୍ନ ଊଣା ହୋଇ ଅଛି ସତ୍ୟ ତଥାପି ସରକାରୀ କର୍ମଚାରୀମାନଙ୍କୁ ସାବଧାନ ହେବାର ଉଚିତ । କ୍ଷେତ୍ରରେ ଶସ୍ୟ ଥାଉଁ ଯେମନ୍ତ ଫସଲର ଅବସ୍ଥା ଦେଖି ଉପକାର ଅନୁମାନ କରନ୍ତୁ ଏହି ଆମ୍ଭମାନଙ୍କର ପ୍ରାର୍ଥନା । ଏତେବେଳେ କାର୍ଯ୍ୟରେ ହେଳା କରି ପଶ୍ଚାତକୁ କେବଳ କ୍ଷମ୍ୟ ଥିବାର ବିଶ୍ୱାସ କଲେ ସହଜରେ ମନ୍ଦ ହୋଇ ଉଠିବ, ସନ୍ଦେହ ନାହିଁ ।

( ୪ର୍ଥ ଭାଗ, ୨ । ୧ । ୧୮୭୯, ସଂଖ୍ୟା ୧ )

୧୨୫ । ବିଦେଶକୁ ଚାଉଳ ରପ୍ତାନି

ଏବର୍ଷ ଶସ୍ୟର ଅବସ୍ଥା ଦୃଷ୍ଟିରେ ବିଦେଶକୁ ଚାଉଳ ଛାଡ଼ ଦେବାର ଉଚିତ ନୁହଇ ବୋଲି ତାହା ନିଷେଧ କରିବାକୁ ବାଲେଶ୍ୱର ସମ୍ବାଦବାହିକା ସୂଚକ

କର୍ତ୍ତୃପକ୍ଷଙ୍କୁ ସାବଧାନ କରିଥିଲେ ମାତ୍ର ଅଦ୍ୟାବଧି ସେ ବିଷୟରେ କିଛି ଆଜ୍ଞା ପ୍ରଚାର ହୋଇ ନ ଥିବାରୁ ଅମ୍ଭମାନଙ୍କ ବିରକ୍ତ ଅଛନ୍ତି । ବାଲେଶ୍ୱରର ଅବସ୍ଥା ପ୍ରକୃତରେ କିରୂପ ଅଛି ଆମ୍ଭେମାନେ ଭଲ ବିଚାର କରି ନ ପାରୁଁ ତଥାପି ଆମ୍ଭମାନଙ୍କୁ ବୋଧ ହୁଅଇ ଯେ କଠକଠାରୁ ବିସ୍ତର ଭଲ ନାହିଁ କାରଣ ଏତେବେଳେ ସେଠାରେ ଟଙ୍କାକୁ ସେ ୨୮ ର ଚାଉଳ ବିକ୍ରୟ ହେଉ ଥିବାର ପ୍ରକାଶ । ବାଣିଜ୍ୟର ସ୍ୱାଧୀନତା ପ୍ରତି ବଲ ପ୍ରକାଶ କରିବା ଯଦ୍ୟପି କି ସଭ୍ୟତମ ଗବର୍ଣ୍ଣମେଣ୍ଟର ଉଚିତ ନୁହଇ ଓ ପ୍ରତ୍ୟୁତ ସେଥିରୁ ମନ୍ଦଫଳ ଘଟିବାର ସମ୍ଭାବନା କିନ୍ତୁ ଦୁର୍ଭିକ୍ଷ କମିସନରମାନେ ସିଦ୍ଧାନ୍ତ କରି ଅଛନ୍ତି କି ଯେପର୍ଯ୍ୟନ୍ତ ବାଣିଜ୍ୟ ଗତାୟାତର ସମ୍ୟକ ସୁବିଧା ଉତ୍ପନ୍ନ ହୋଇ ନାହିଁ ସେ ପର୍ଯ୍ୟନ୍ତ ବିଶେଷ ଅବସ୍ଥାରେ ଚାଉଳ ରପ୍ତାନି ନିଷେଧ କରିବା ଯୁକ୍ତି ସିଦ୍ଧ ହୋଇ ପାରେ । ଏହି ରୂପ ବିବେଚନାରେ ସନ ୧୮୬୭ ମସିହାରେ ରପ୍ତାନି ନିଷେଧ ହୋଇଥିଲା ଏବଂ ଏବର୍ଷ ଅକ୍ଟୋବର ମାସରେ ଫସଲ ସମ୍ପର୍କରେ ସର୍ବସାଧାରଣର ସନ୍ଦେହ ଜାତ ହେବାରୁ ପୁନର୍ବାର ନିଷେଧାଜ୍ଞା ପ୍ରବଳ କରିବା କାରଣ ଜିଲ୍ଲାର କଲେକ୍ଟର ଅନୁରୋଧ କରି ଥିଲେ ମାତ୍ର ସରକାରୀ ଚାଉଳ ଏଠାରେ ଅନେକ ବାକି ଥିବାର ଦେଖି ଶ୍ରୀ କମିସନର ମକେଞ୍ଜୀ ସାହେବ ବାଣିଜ୍ୟରେ ହସ୍ତକ୍ଷେପ କରିବାକୁ ଅସ୍ୱୀକୃତ ହେଲେ । ଆମ୍ଭେମାନେ ସେହି କାଳରୁ ଏ ଆଜ୍ଞାର ଫଳାଫଳ ଅନୁମାନ କରୁଅଛୁଁ । ସମ୍ପ୍ରତି ଦେଖାଯାଏ ଯେ ଲୋକେ ଅକ୍ଟୋବର ମାସରେ ଯେରୂପ କାତର ଥିଲେ ବର୍ତ୍ତମାନ ସେରୂପ ନାହାନ୍ତି । ପ୍ରୟୋଜନାନୁସାରେ ଧାନ ଚାଉଳ ପ୍ରାପ୍ତ ହେବାରୁ କେହି ଚିନ୍ତିତ ନାହାନ୍ତି । ଏବର୍ଷର ଉତ୍ପନ୍ନ ଯେ ସାଧାରଣ ବର୍ଷାପେକ୍ଷା ନ୍ୟୂନ ସେଥିରେ ସନ୍ଦେହ ନାହିଁ ମାତ୍ର ଗତ ଦୁର୍ଭିକ୍ଷ ଲୋକଙ୍କୁ ସତର୍କ କରିବାରୁ ବୋଧହୁଅଇ ସମସ୍ତେ ସାଧ୍ୟାନୁସାରେ ଆପଣା ବ୍ୟୟ ପରିମାଣ ଧାନ ରଖି ଅଛନ୍ତି । ଏବେ ନ ଏକ ଏକ ସ୍ଥାନର କୃଷିମାନେ ଧାନ ବିକ୍ରୟ ସକାଶେ ସମଧିକ ଚେଷ୍ଟା କରୁଅଛନ୍ତି ଓ ଯେରୂପ ଫସଲ ହସ୍ତଗତ ହୋଇ ଅଛି ସେଥିରେ ବୈଶାଖ ପର୍ଯ୍ୟନ୍ତ ଉତ୍ତମରୂପେ ନିର୍ବାହ ହେବ ଓ ତଦୁତ୍ତାରେ କିଞ୍ଚିତ୍ କ୍ଲେଶ ହେଲେ ଗୋଦାମରେ ଥିବା ସରକାରୀ ଚାଉଳ ଚଳାଇ ନେବ । ଏରୂପ ଅବସ୍ଥାରେ ବାଣିଜ୍ୟ ପ୍ରତିରୋଧ କରିବାର ବିଶେଷ କାରଣ ଦେଖା ଯାଉନାହିଁ ଓ ମଧ୍ୟ ଯଦ୍ୟପି କି କେତେଜଣ ମନ୍ଦ୍ରାଜୀ ସୁଲଭ ଚାଉଳ କିଣି ନେବାକୁ ଆସିଅଛି ମାତ୍ର ସହଜରେ ଚାଉଳ ପାଉନାହିଁ ଅତଏବ ଅନେକ ଚାଉଳ ଯେ ବାହାରିଯିବ ଏଥିରେ କୌଣସି ସମ୍ଭାବନା ଦେଖା ନଯାଏ । ଚାଉଳ ଭରପୂର ଥିବାରୁ ନିଷେଧ ଆଜ୍ଞା ବିନା ବିସ୍ତର ଚାଉଳ ବିଦେଶକୁ ଯିବାର ନିବାରଣ ହୋଇପାରେ । ତଥାଚ ଭବିଷ୍ୟତ୍ କାରଣ ଯଦ୍ୟପି ଗବର୍ଣ୍ଣମେଣ୍ଟଙ୍କର କିଛି କର୍ତ୍ତବ୍ୟ ଯୁକ୍ତିସିଦ୍ଧ ହୁଅଇ ତେବେ ଆମ୍ଭେମାନେ ଏହି ପ୍ରସ୍ତାବ କରୁଁ ଯେ କେନ୍ଦ୍ରାପଡ଼ାର ଡେପୁଟି କଲେକ୍ଟର ବାବୁ ଜଗନ୍ମୋହନ ବସୁ ଯେରୂପ ଘୋଷଣା ପତ୍ର ଦେଇ ଅଛନ୍ତି ସେହିରୂପ ଘୋଷଣା ପତ୍ର ସର୍ବତ୍ରରେ ପ୍ରଚାର ହେଉ । ତାହାହେଲେ ଲୋକ-

ମାନେ ସତର୍କ ହେବେ ଓ ଅସାବଧାନତା ହେତୁର କେହି ପଶ୍ଚାତ୍‌କୁ ଦୁଃଖ ପାଇବେ ନାହିଁ । ପ୍ରଶଂସିତ ବାବୁ ଲୋକଙ୍କୁ ଜଣାଇ ଦେଇଅଛନ୍ତି ଯେ ଏବର୍ଷ ଅନାବୃଷ୍ଟି ଓ ଧୋଇ ହେତୁର ଅଲ୍ପ ପରିମାଣରେ ଶସ୍ୟ ପ୍ରାପ୍ତ ହୋଇଅଛି ଓ ଅନେକ ଶସ୍ୟ ନଷ୍ଟ ହୋଇଅଛି । ଅତଏବ ଏବର୍ଷ କାଳ ଯେ ଲୋକଙ୍କର ସୁଚ୍ଛନ୍ଦରେ ନିର୍ବାହ ହେବ ଏମନ୍ତ ଜଣା ଯାଏନା, ଏ ଅବସ୍ଥାରେ ବିଦେଶକୁ ଧାନ ପଠିବା ମହାଜନଙ୍କୁ ଯୁକ୍ତି ବିରୁଦ୍ଧ କରିବା ଯୁକ୍ତିଯୁକ୍ତ ନୁହଇ ଓ ଏମନ୍ତ କଲେ ପ୍ରଜାମାନେ ଆପଣା ହାତରେ ଆପେ କ୍ଳେଶ ପାଇବେ । ଅତଏବ ଘୋଷଣାଦ୍ୱାରା ସେମାନଙ୍କୁ ସତର୍କ କରାଗଲା ଯେ ସେମାନେ ବୁଝି ସୁଝି କର୍ମ କରନ୍ତୁ । ଏରୂପ ଘୋଷଣା ଦେବାକୁ କୌଣସି ରୂପେ ବାଣିଜ୍ୟ ପ୍ରତି ହସ୍ତ କ୍ଷେପଣ କରିବା ବୁଝାପାଇ ନପାରେ । ଅତଏବ ବାଣିଜ୍ୟ ନିଷେଧ କରିବାର ଫଳ ଏଥିର ପ୍ରାପ୍ତ ହେବ ଅଛି ।

୧୭୭ । ସବରନ ନାମକ ସୁବର୍ଣ୍ଣ ମୁଦ୍ରା ଥା ୧ ନରୁ ୫ ୧ । ମୂଲ୍ୟରେ ଖଜଣାଖାନା ରେ ନେବାର ଆଜ୍ଞା ହେବାର ୫୨୦୦୦ ମୁଦ୍ରା ଖଜାଣାଖାନାକୁ ଆସିଲା ମାତ୍ର ତଥାଚ ଏମୁଦ୍ରା ପ୍ରଚଳନ ହେଲେ ଯେ ବସ୍ତୁର କାରବାର ହେବ ବୋଧ ହେଉ ନାହିଁ ।

## ( ୪ର୍ଥ ଭାଗ, ୯ । ୧ । ୧୮୬୯, ସଂଖ୍ୟା ୨ )

୧୭୮ । ବିଗତ ବର୍ଷର ପର୍ଯ୍ୟାଲୋଚନା

× × × ×

× × × × ×

ବିଗତ ବର୍ଷର ଏରୂପ ଗୁରୁତର ବିଗ୍ରହ କାଲ ଉତ୍ତାର ଓଡ଼ିଶା ପକ୍ଷରେ କିଛି କହିବାର ଆବଶ୍ୟକ ବୋଧ ହେଉଅଛି । ବିଗତ ବର୍ଷ ଓଡ଼ିଶା ପ୍ରତି ଯେମନ୍ତ ମଙ୍ଗଳ ପ୍ରଦ ହୋଇଅଛି ଏମନ୍ତ ପ୍ରାୟ ଅନ୍ୟ କୌଣସି ସ୍ଥାନରେ ହୋଇ ନାହିଁ । ଦୁର୍ଭିକ୍ଷ ସମୟରେ ରାଜପୁରୁଷମାନଙ୍କ ମନ ଏ ଦୁର୍ଭାଗ୍ୟ ଦେଶ ପ୍ରତି ଆକର୍ଷିତ ହେବାରୁ ବର୍ଷକୁ ବର୍ଷ ଯେ ଏଠାର କେତେ ପ୍ରକାର ଉନ୍ନତି ହେଉଅଛି ବୁଝାପାଇ ନପାରେ । ସବ ପ୍ରକାର ଉନ୍ନତିର ବିଦ୍ୟାଶିକ୍ଷାର ଉନ୍ନତି ସାଧନ ଉତ୍କୃଷ୍ଟ ଅଟଇ କାରଣ ବିଦ୍ୱାନ ବ୍ୟକ୍ତି ଭିନ୍ନ କେହି ସ୍ୱଦେଶର ଉନ୍ନତି ଚେଷ୍ଟା କରଇ ନାହିଁ କିମ୍ବା ଉନ୍ନତି ହେଲେ ମଧ୍ୟ ତାହା ଜାଣି-ପାରଇ ନାହିଁ । ମୂର୍ଖତା ନାଶ କରିବାଠାରୁ ଆଉ ଅଧିକ ଉନ୍ନତି କରିବେ ସମ୍ଭବ ? ଏବଂ ଆମ୍ଭେମାନେ ଆହ୍ଲାଦରେ ସହିତ ସ୍ମରଣ କରୁଁ ଯେ ଏବର୍ଷ ଆରମ୍ଭରେ ଓଡ଼ିଶାରେ

ହାଇସ୍କୁଲ ସ୍ଥାପନ ହୋଇ ଇଂରାଜୀଭାଷା ଶିକ୍ଷାପ୍ରାପ୍ତି ଯେପରି ସୁଗମ ହେଲା ବର୍ଷ ଶେଷରେ ନର୍ମାଲ ସ୍କୁଲର ପ୍ରସ୍ତାବ ଗବର୍ଣ୍ଣମେଣ୍ଟର ସମ୍ମତିପ୍ରାପ୍ତ ହେବାରୁ ଦେଶୀୟ ଭାଷା ଉନ୍ନତିର ଓ ସର୍ବସାଧାରଣର ଶିକ୍ଷା ମଧ୍ୟ ସେହିପ୍ରକାର ସୁବିଧା ହେବାର ଆଶା ହେଲା । ଏ ଉତ୍ତାରୁ ବାଲେଶ୍ୱରରେ ଗୋଟିଏ ଯନ୍ତ୍ରାଳୟ ସ୍ଥାପନ ଓ ବୋଧଦାୟିନୀ ପତ୍ରିକାର ଜନ୍ମ ଏବଂ ସମ୍ବଲପୁରର ଇନସପେକ୍ଟରର ବାବୁ ବିଷ୍ଣୁ ପଟ୍ଟନାୟକ ଓ ଅନ୍ୟାନ୍ୟ ଲୋକଙ୍କ ଉଦ୍ୟମରେ କେତେଗୁଡ଼ିଏ ଉତ୍କଳ ପୁସ୍ତକ ମୁଦ୍ରାଙ୍କନ ହେଲା । ଏ ସମସ୍ତର ଉଦ୍ଦେଶ୍ୟ ଦେଶର ବିଦ୍ୟା ଓ ଜ୍ଞାନବୃଦ୍ଧି ଅଟଇ ଏବଂ ଉଦ୍ଦେଶ୍ୟ ଯେ ଏସମସ୍ତ ଉପାୟଦ୍ୱାରା ସାଧ୍ୟ ହେବ ସନ୍ଦେହ ନାହିଁ । ବାସ୍ତବରେ ଏକବର୍ଷ ମଧ୍ୟରେ ଗବର୍ଣ୍ଣମେଣ୍ଟର ବିନା ସାହାଯ୍ୟରେ ଯେପ୍ରକାର ଉତ୍କଳ ପୁସ୍ତକର ସଂଖ୍ୟା ବୃଦ୍ଧି ହୋଇଅଛି କେବଳ ଏତିକି ଏଦେଶର ଯଶ ଘୋଷଣା କରୁଅଛି ଏବଂ ଏଥିପାଇଁ ଏବର୍ଷ ଆପଣା ପ୍ରାଧାନ୍ୟ ସ୍ଥାପନ କରୁଅଛି । ଅନ୍ୟାନ୍ୟ ହିତକର କାର୍ଯ୍ୟ ମଧ୍ୟରେ ସଦାବର୍ତ୍ତ ସମ୍ବନ୍ଧିୟ ଅବସ୍ଥା ଅନୁସନ୍ଧାନ, ପୁରାତନ କାଳର କୀର୍ତ୍ତି ସମୂହରକ୍ଷା କରିବା ଓ ତହିଁର ଅବସ୍ଥା ଓ ଚରିତ ଜାଣିବାର ଉଦ୍ୟମ ପ୍ରଧାନ ଅଟଇ ।

ଓଡ଼ିଶାର ସାମାଜିକ ଉନ୍ନତି ବିଷୟରେ ଦିଓଗୋଟି ନୂତନ କଥା ଏବର୍ଷ ଦେଖାଗଲା । ପ୍ରାକାଶ୍ୟ ସଭାରେ ନୃତ୍ୟଗୀତ ଓ ଅଭିନନ୍ଦନ ପତ୍ରଦ୍ୱାରା କୌଣସି ବ୍ୟକ୍ତିକୁ ଏତାବତ୍‌କାଳ ସମ୍ମାନ କରାଯାଇ ନଥିଲା । ବାବୁ ଦିଗମ୍ବର ମିତ୍ରଙ୍କର ସମ୍ମାନକରି ଉତ୍କଳବାସିମାନେ ଗୋଟିଏ ନୂତନ ସଭ୍ୟ ନିୟମ ସ୍ଥାପନ କଲେ ଓ ତଦ୍ୱାରା ବିଦେଶରେ ସେମାନଙ୍କର ଉନ୍ନତିର ପରିଚୟ ପ୍ରାପ୍ତ ହେଲା । ଦ୍ୱିତୀୟ ବିଷୟ ଏହି ଯେ ପୂର୍ବପ୍ରଚଳିତ ପ୍ରଥା ଭଲହେଉ ଅବା ମନ୍ଦହେଉ ତାହା ରକ୍ଷା କରିବାର ଚେଷ୍ଟା ଅସ୍ମଦେଶୀୟମାନେ ଅନୁକ୍ଷଣେ କରନ୍ତି କିନ୍ତୁ ବାବୁ ନରସିଂହ ଚରଣ ଦାସଙ୍କ ଗୃହରେ କରଣମାନଙ୍କର ଯେଉଁ ସଭା ହୋଇଥିଲା ସେଥିରେ ଜଣାଗଲା ଯେ ବର୍ତ୍ତମାନ ଲୋକମାନେ ହିତାହିତ ବିବେଚନା କରି ରୀତି ପରିବର୍ତ୍ତନ ନିମିତ୍ତ ପ୍ରସ୍ତୁତ ହେଉଅଛନ୍ତି ଓ ଯଦ୍ୟପି ସେ ସଭା ଉତ୍ତାରୁ ଆଉ ଏବିଷୟରେ କିଛି ହୋଇ ନାହିଁ ତଥାପି ସେତିକି ପ୍ରଶଂସନୀୟ ଅଟଇ । ଦୁର୍ଭିକ୍ଷରେ ଜାତିଭ୍ରଷ୍ଟ କଙ୍ଗାଳଙ୍କ ପୁନର୍ବାର ଜାତିହେବା ଗୋଟିଏ ଗୁରୁ ବିଷୟ ଥିଲା । ଜାତି ପକ୍ଷରେ ଲୋକଙ୍କର ଯେପ୍ରକାର ସଂସ୍କାର ସେଥିରେ ଏପର୍ଯ୍ୟନ୍ତ ହେବାର ଆଶା ନ ଥିଲା ମାତ୍ର ଈଶ୍ୱରଙ୍କ କୃପାରୁ ଶ୍ରୀ ବାବୁ ସଚ୍ଚିଦାନନ୍ଦ ଦାସଙ୍କ ବ୍ୟବସ୍ଥା ସଙ୍ଗତ ବିଫଳ ହେଲା ନାହିଁ ।

ଯେମନ୍ତ ସାମାଜିକ ଓ ବିଦ୍ୟାର ଉନ୍ନତି ହେଲା ଓଡ଼ିଶାର ଗୌରବ ଏବର୍ଷ ସର୍ବାପେକ୍ଷା ଅଧିକ ହେଲା । ଏହି ବର୍ଷ ମଧ୍ୟରେ ଢେଙ୍କାନାଳରାଜା ମହାରାଜ ପଦ

ପାଇଲେ ଏବଂ ପାଲ୍ଲୁଡ଼ାର ରଜା "ସି, ଏସ୍, ଆଇ" ଅର୍ଥାତ୍ ଭାରତର ନକ୍ଷତ୍ର ପଦ ପାଇଲେ । ଏ ପଦର ବଳିକାର ଭାରତବର୍ଷରେ ଆଜ ବଡ଼ ମାନସୂଚକ ପଦ ନାହିଁ ଓ ଓଡ଼ିଶାର ଏକାଧିକ ରଜା ତାହା ପ୍ରାପ୍ତ ହେଲେ ଏଥିରୁ ଆଉ କେଉଁ ବିଷୟରେ ଓଡ଼ିଶାର ଗୌରବ ଅଧିକ ବୃଦ୍ଧି ହୁଅନ୍ତା ।

ଏହିମନ୍ତ ମଙ୍ଗଳ ବିଷୟରେ ଯେ କିଛି ଅମଙ୍ଗଳ ଘଟି ନାହିଁ ଏମନ୍ତ ଆମ୍ଭେମାନେ କହିନାହୁଁ ପ୍ରସ୍ତୁତ ଥୋଇ ଓ ମଲ୍ଲେଡ଼ି ଏକାଥରେ ହେବାରୁ ଏବର୍ଷ ଲୋକମାନେ ସାମାନ୍ୟ କଷ୍ଟ ପାଇନାହାନ୍ତି ଓ କେନ୍ଦୁଝରରେ ବିଦ୍ରୋହ ହେବାରୁ ମଧ୍ୟ ଲୋକଙ୍କର ମନ୍ତ୍ରପରେନାହିଁ କ୍ଲେଶ ହୋଇଅଛି କିନ୍ତୁ ସରକାରୀ ଗୃହଳ ଭଣ୍ଡାର ପୂର୍ଣ୍ଣଥିବା ଓ ଗବର୍ଣ୍ଣମେଣ୍ଟ କର୍ମଚାରୀମାନେ ପ୍ରଥମରୁ ମନୋଯୋଗୀ ହୋଇ କାର୍ଯ୍ୟ କରିବାରୁ ସେ ଦୁଃଖମାନ ଅନେକାଂଶରେ ଲାଘବ ହେଲା ଓ ଇରିଗେସନ କୁମ୍ପାନି ନାଳିରୁ ଅନେକ କ୍ଷେତ୍ରକୁ ଜଳ ଦିଆଯିବାରୁ ବିଶେଷ କ୍ଷତି ହେଲାନାହିଁ ଓ ଦୁଇମାସ ପୂର୍ବରେ ଲୋକେ ଯେତେ ବ୍ୟସ୍ତ ଥିଲେ ବର୍ତ୍ତମାନ ସେତେ ନାହାନ୍ତି । ଏପରି ଆଉ ଗୋଟିଏ ଅମଙ୍ଗଳ ଏହି ହେଲା ଯେ ଏଠାର ପୁରାତନ ରାଜଗୀ କୁଜଙ୍ଗ ଏକାବେଳକେ ଲୋପପାଇଲା ଏବଂ ଆଳି ଓ ପଟିଆ କେବଳ ନାମମାତ୍ର ରହିଅଛି । ମାତ୍ର ଏଥିରେ ଆମ୍ଭେମାନେ ଦୁଃଖ କଲେ କି ହେବ ଯେଉଁ ବ୍ୟକ୍ତି ଯେରୂପ ଆଚରଣ କରିବ ସେ ତାହାର ଫଳ ଅବଶ୍ୟ ଭୋଗ କରିବ ।

ବିଗତ ବର୍ଷକୁ ଏହିରୂପେ ଗତକରି ନୂତନ ମନ୍ତ୍ରୀ ଓ ନୂତନ ଗବର୍ଣ୍ଣର ଜେନେରଲଙ୍କୁ ଘେନି ନୂତନବର୍ଷ ଆରମ୍ଭ କରୁଅଛୁଁ । ଏବର୍ଷ ଈଶ୍ୱର କିରୂପେ ନିର୍ବାହ କରିନେବେ ଦେଖାଯିବ ।

### ୨୬୮ । ଢେଙ୍କାନାଳର ରଜାଙ୍କୁ ମହାରାଜାପଦ ପ୍ରଦାନର ଦରବାର

ଅନେକ ଦିନ ଉତ୍ତାରୁ ଏ ନଗରର ଲୋକମାନେ ଗୋଟିଏ ଦରବାର ଦର୍ଶନର ସୁଖ ଲାଭକଲେ । ଗତ ଶନିବାର ବେଳ ଦୁଇ ପ୍ରହର ଦୁଇ ବାଜିବା ସମୟରେ ଗୃହଳଆଗସ୍ତ ପଡ଼ିଆରେ ଏ ଦରବାର ହୋଇଥିଲା ଓ ଶ୍ରୀଯୁକ୍ତ ରେଭେନ୍ସା ସାହେବ କମିଶନର ଏଥିର ସଭାପତି ଥିଲେ । ନଗରସ୍ଥ ଦେଶୀୟ ଓ ବିଦେଶୀୟ ସମ୍ଭ୍ରାନ୍ତ ବ୍ୟକ୍ତି ଅନେକ ଆଗମନ କରିଥିଲେ ଏବଂ ଇଉରୋପୀୟ ସ୍ତ୍ରୀମାନେ ମଧ୍ୟ ଆଗମନଦ୍ୱାରା ଦରବାରର ଶୋଭା ବର୍ଦ୍ଧନ କରିଥିଲେ ତଥାପି ଆମ୍ଭେମାନେ ଦେଶୀୟ ଜମିଦାର ଓ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ସଂଖ୍ୟା ଅଳ୍ପ ବୋଧ କଲୁଁ । ଯଥେଷ୍ଟକାଳ ପୂର୍ବରୁ ଆମନ୍ତ୍ରଣପତ୍ର

ପ୍ରସ୍ତୁତ ନ ହେବାରୁ ବୋଧହୁଅଇ ମଫସଲରୁ କେହି ଆସି ନ ପାରିଲେ । ଯାହା ହେଉ ଦରବାରର ଅନୁଷ୍ଠାନର କିଛି ମାତ୍ର ତ୍ରୁଟି ହୋଇନଥିଲା । ପୁଲିସ ପଲଟନ ଓ କଚ୍ଛି ପଲଟନ ଏବଂ ତୋପ ଓ ବାଦ୍ୟ ରୀତିମତ ସମସ୍ତ ଉପସ୍ଥିତ ଥିଲା ଏବଂ ସକଳ କାର୍ଯ୍ୟ ନିୟମାନୁସାରେ ଯଥୋଚିତ ସମାରୋହରେ ନିର୍ବାହ ହେଲା । ମହାରାଜ ପଦ ଓ ଖିଲାତ ପାଇଁ ରାଜାଙ୍କୁ ପ୍ରାୟ ୪ ୧୮୦୦ ଙ୍କାର ଅଧିକ ମୂଲ୍ୟର ସ୍ୱର୍ଣ୍ଣମୁଦ୍ରା ନଜରାନା ସ୍ୱରୂପ ଦେବା ହେଲା । ଏଥିରେ କେତେକଲୋକ ଛିଦ୍ରାଧର କହନ୍ତି ଯେ ପଦ ଓ ଖିଲାତ କ୍ରୟ କରିବାରେ ପୌରୁଷ ନାହିଁ ? ମାତ୍ର ସେମାନଙ୍କୁ ଆମ୍ଭେମାନେ ପ୍ରଶ୍ନ କରୁଁ ଯେ ସେମାନେ ଧନଦେଇ ପଦକ୍ରୟ କରିବାର ଚେଷ୍ଟାରେ କେବେ ସଫଳ ହୋଇଥିଲେ ? ଗଡ଼ଜାତର କେତେକ ରାଜା ପଦ ପ୍ରଦାନଦ୍ୱାରା ଧନ ବଢ଼ାନ୍ତି ସତ୍ୟ ମାତ୍ର ଗବର୍ଣ୍ଣମେଣ୍ଟ ଯେବେ ସେରୂପ ଆଚରଣ କରନ୍ତେ ତେବେ ଟାକ୍ସ ଧାର୍ଯ୍ୟ ବିନା ଅକ୍ଳେଶରେ ଧନ ପାନ୍ତେ ସନ୍ଦେହ ନାହିଁ । ରାଜା ଭଗୀରଥୀ ମହାନ୍ତ୍ର ବାହାଦୁର ଉପଯୁକ୍ତ ସତ୍ କର୍ମମାନ କରି- ଅଛନ୍ତି ବୋଲି ଏଡ଼େ ମର୍ଯ୍ୟାଦାର ଭାଜନ ହୋଇଅଛନ୍ତି । ସେ ସତ୍‌କର୍ମମାନ କ ତାହିଁର ସବିଶେଷ ଶ୍ରୀଯୁକ୍ତ କମିସ୍ନରଙ୍କ ବକ୍ତୃତା ପାଠକଲେ ଜଣାପିବ ଏହି ଆଶାରେ ସେ ବକ୍ତୃତାକୁ ସ୍ଥାନାନ୍ତରରେ ପ୍ରକାଶ କଲୁଁ । ଫଳତଃ ମହାରାଜ ଭଗୀରଥୀ ମହାନ୍ଦ୍ର ବାହାଦୁର ଯେ ଏ ଉଚ୍ଚ ମର୍ଯ୍ୟାଦାର ସୁଯୋଗ୍ୟପାତ୍ର ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ! ପ୍ରାୟ ପ୍ରତିବର୍ଷ ମହାରାଜ ଏକଥର କଟକକୁ ଆସିବାରୁ ଅତଏବ ସମ୍ଭ୍ରାନ୍ତ ଗୁଣଗ୍ରାହୀ ବ୍ୟକ୍ତିମାନେ ଏହାଙ୍କ ବିଦ୍ୟା, ବୁଦ୍ଧି, ପ୍ରଜାପାଳନ, ସଦ୍‌ବ୍ୟୟ, ବଦାନ୍ୟତା ଏବଂ ଅନ୍ୟାନ୍ୟ ଉତ୍ତମ ଗୁଣରେ ଏହାଙ୍କୁ ବର୍ତ୍ତମାନର ଗଡ଼ଜାତ ରାଜାଙ୍କ ମଧ୍ୟରେ ଶ୍ରେଷ୍ଠ କରି ଗଣନ୍ତି ଏବଂ ଅନ୍ୟ ରାଜାମାନେ କେହି ଏମନ୍ତ ଥିଲେ ମଧ୍ୟ ତାହାଙ୍କର କଥା ଏଠାରେ ପ୍ରକାଶ ନାହିଁ । ଅତଏବ ଆମ୍ଭେମାନେ ଭରସା କରୁଁ ଯେ ସୁଯୋଗ୍ୟ ଲୋକଙ୍କୁ ଆମ୍ଭମାନଙ୍କର ଗବର୍ଣ୍ଣମେଣ୍ଟ କି ପ୍ରକାର ମାନ୍ୟ କରନ୍ତି ଏହି ଦରବାରର ସେହିରି ପରିଚୟ ପାଇ ଅସ୍ମଦ୍ଦେଶୀୟ ରାଜା ଓ ଧନାଢ୍ୟ ବ୍ୟକ୍ତିମାନେ ସଦନୁଷ୍ଠାନରେ ପ୍ରବୃତ୍ତ ହେଉନ୍ତୁ ଯେ ସେମାନେ ମଧ୍ୟ ଏହିରୂପ ମାନ୍ୟ ପାଇବେ ।

୧୭୯ । ପାରିକୁଦର ରାଜା

ସତ୍କର୍ମ କାହାର ବ୍ୟର୍ଥ ଯାଏନା ! ଏଥିରେ ଇହକାଳ ଓ ପରକାଳ ଉଭୟରେ ଲାଭ ଅଛି । ପରକାଳର କଥା କେହି ନିଶ୍ଚୟ କହି ପାରନ୍ତି ନାହିଁ ଏବଂ ଇହକାଳର ବିଷୟରେ ଅନ୍ୟାନ୍ୟ ସମୟରେ ଯାହା ହୁଅନ୍ତା ଇଂରାଜଙ୍କ ରାଜ୍ୟ ପାଳନରେ ସତ୍କର୍ମର ସୁଫଳ ସର୍ବଦା ପ୍ରାପ୍ତ ହେବାର ଦେଖାଯାଏ । ପାରିକୁଦର ରାଜାଙ୍କ ସି, ଏସ, ଆଇ ଅର୍ଥାତ୍ ଭାରତବର୍ଷର ନକ୍ଷତ୍ର ପଦ ପ୍ରାପ୍ତି ଏଥିର ଦୃଷ୍ଟାନ୍ତର ସ୍ଥଳ ଅଟଇ । ଏରାଜା

ଅ ୯ ଙ୍କର ଦୁର୍ଭିକ୍ଷ ସମୟରେ ପ୍ରଜା ଓ ଅନାଥ ବ୍ୟକ୍ତି ପାଳନରେ ଯେମନ୍ତ ଧନବ୍ୟୟ ଓ ସୁବୁଦ୍ଧିର କାର୍ଯ୍ୟ କରିଥିଲେ ତାହା କାହାରିକୁ ଅଜ୍ଞାତ ନାହିଁ । ସ୍ୱୟଂ ଲଣପାଶରେ ଗଛ ଓ ସାଧାରଣ ବ୍ୟକ୍ତି କର୍ମଚାରି କ୍ଲେଶ ପାଉଥିଲେ ହେଁ ବହୁତ ଦୀନ ଦରିଦ୍ରଙ୍କୁ ଦୁର୍ଭିକ୍ଷର କରାଳ କବଳରୁ ମୁକ୍ତ କଲେ ଓ ଏ ମହାପାପର ଫଳସ୍ୱରୂପ ଶ୍ରୀ ଶ୍ରୀମତୀ ମହାରାଣୀ ସ୍ୱୟଂ ଏହାଙ୍କୁ ନଶନ ଉପାଧି ପ୍ରଦାନ କରୁଅଛନ୍ତି । ମହାରାଣୀଙ୍କ ବିନା ଏ ପଦ ଅନ୍ୟ କେହି ଦେଇ ନପାରେ । ଏଥିର ବଳକର ମାନ୍ୟ ସୂଚକ ପଦ ଭାରତବର୍ଷରେ ନାହିଁ । ଆମ୍ଭମାନଙ୍କର ଲେଫ୍‌ଟେନଣ୍ଟ ଗବର୍ଣ୍ଣରଙ୍କ ସୁଦ୍ଧା ଏପଦ ପାଇ ନାହାନ୍ତି । ଓଡ଼ିଶାର ଜଣେ ରାଜା ଏ ପଦ ପାଇଲେ ବୋଲି ଯେ କି ପର୍ଯ୍ୟନ୍ତ ଆମ୍ଭେମାନେ ଆନନ୍ଦିତ ଓ ଗର୍ବିତ ହୋଇଅଛୁଁ ବ୍ୟକ୍ତ କରି ନପାରୁଁ ଓ ଆମ୍ଭମାନଙ୍କର ମାନସ ଏହି ଯେ ଅବଶ୍ୟ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ପ୍ରାକାଶ୍ୟ ସଭାରେ ପାରଳୁଦର ରାଜାଙ୍କୁ ଏ ପଦ ଅର୍ଜନ କାରଣ ଆନନ୍ଦ ସୂଚକ ବାର୍ତ୍ତା ଓ ଧନ୍ୟବାଦ ପ୍ରଦାନ କରନ୍ତୁ ।

## ସାପ୍ତାହିକ ସମ୍ବାଦ

୧୮୦ । ଗତ ସପ୍ତାହର ଗେଜେଟରେ ପ୍ରକାଶ ଯେ ବାବୁ ଚନ୍ଦ୍ର ଶେଖର ବାନୁର୍ଯ୍ୟା ଡେପୁଟି କଲେକ୍‌ଟର ଓ ମାଜିଷ୍ଟ୍ରେଟରେ ପୁରା କ୍ଷମତା ପାଇଅଛନ୍ତି ।

( ଉ: ଦୀ: ଅଷ୍ଟରଳ୍ଲ, ୯ । ୧ । ୧୮୭୯ )

୧୮୧ । ଦରବାରରେ କମିଶନର ସାହେବଙ୍କ ବକ୍ତୃତା

ମହାରାଜ ଭଗୀରଥୀ ମହେନ୍ଦ୍ର ବାହାଦୁର କଲେ ଢେଙ୍କାନାଳ ।

"ତୁମ୍ଭଙ୍କୁ ଯେଉଁ କାରଣରେ ମହାରାଜ ପଦ ଏବଂ ଖିଲତ ଦିଆଗଲା ତାହା ବର୍ତ୍ତମାନ ସଂକ୍ଷେପରେ ବର୍ଣ୍ଣନା କରିବାର ଆବଶ୍ୟକ ।

ତୁମ୍ଭେ ପୂର୍ବେ ନାବାଳକ ଥିବା ସମୟରେ କଟକର ଗଡ଼ଜାତ ମହାଲର ସୁପ୍ରିଣ୍ଟେ ସାହେବଙ୍କ ମହାଫିଜ ଓ ତତ୍ତ୍ୱାବଧାରକର ଅଧୀନରେ ଥିଲ ଏବଂ ଆମ୍ଭେ ଆନନ୍ଦର ସହିତ ବ୍ୟକ୍ତ କରୁଅଛୁଁ ଯେ ତୁମ୍ଭର ବାଲ୍ୟକାଳର ବିଦ୍ୟାଧ୍ୟୟନରେ ଯେ ମନୋଯୋଗ ଓ ଯତ୍ନ କରାଯାଇ ଥିଲା ତାହା ବ୍ୟର୍ଥ ହୋଇନାହିଁ । ତୁମ୍ଭର ବୟସ ଅଧିକ ହେବାରୁ ତୁମ୍ଭେ ବିଦ୍ୟା ପଠନ ଓ ଅଭ୍ୟାସରେ ହେଳା କରିନାହିଁ ଏବଂ ସଂସ୍କୃତ ପଣ୍ଡିତ ଓ ବିଦ୍ୟାବନ୍ତ ଗଣରେ ଓ ଆପଣା ରାଜ୍ୟର ଲୋକମାନଙ୍କର ଉନ୍ନତି ଓ ବିଦ୍ୟା ଶିକ୍ଷାର

ଯୋଗ୍ୟତା କରିବାରେ ତୁମ୍ଭର ଖ୍ୟାତି ଉତ୍ପନ୍ନ ହେବ । ତୁମ୍ଭେ ପଞ୍ଚଦଶବର୍ଷ ହେଲା ବୟଃପ୍ରାପ୍ତ ହୋଇ ଆପଣା ବିଭବଜାତର ଗ୍ରହଣ କଲ । ପ୍ରଥମରେ ତୁମ୍ଭଙ୍କୁ କଷ୍ଟ ଓ ବିପତ୍ତି ମାନ ହୋଇଥିଲା ଓ ତୁମ୍ଭେ ସୁବିଚାର ପୂର୍ବକ ମିଲ ସାହେବଙ୍କୁ ପରାମର୍ଶ ମାଗିଲ । ମିଲ ସାହେବ ସନ ୧୮୪୨ ସାଲର ରିପୋର୍ଟରେ ତଳ ଲିଖିତ ବିଷୟମାନ ଏହିରୂପେ ଲେଖି-ଅଛନ୍ତି ଯଥା;—

"ଢେଙ୍କାନାଳ ରଜା ଅନେକକାଳ ପର୍ଯ୍ୟନ୍ତ ଆପଣା ପ୍ରଧାନ ଅମଲାମାନଙ୍କୁ ଆପଣାର ସମସ୍ତ ଅଧିକାର ଦେଇଥିଲେ । ମାତ୍ର ପ୍ରାୟ ଏକବର୍ଷ ହେଲା ସେ ଏକ ଦିନ କଟକକୁ ଆସି ତାହାଙ୍କ ବିଷୟ କାର୍ଯ୍ୟ ଚାକରମାନଙ୍କ ମନ୍ଦାଚରଣ ହେତୁ ବିଶୃଙ୍ଖଳା ହୋଇ ଥିବାରୁ ତହିଁରୁ ତାହାଙ୍କୁ ଉଦ୍ଧାର କରିବା ନିମନ୍ତେ ହଜୁରରେ ସହାୟତା ପ୍ରାର୍ଥନା କଲେ ଓ ହଜୁରଦ୍ୱାରା ତାହାଙ୍କ କଲ ଜରିବ ଓ ବନ୍ଦୋବସ୍ତ କରାଇବାକୁ କହିଲେ କିନ୍ତୁ ସେ ନିଜେ ଆପଣା ରଇତମାନଙ୍କର ଜମା ନିର୍ଦ୍ଧାର୍ଯ୍ୟ କଲେ । ତାହାଙ୍କର ରାଜ୍ୟ ସୌଭାଗ୍ୟଶାଳୀ ହେବା ଓ ହଜୁରର ହସ୍ତକ୍ଷେପଣ ଯେତେ ଅଳ୍ପ ହୋଇପାରେ ତେତେ ଅଳ୍ପ ହେବାର ବିହିତ ଥିବା ବିବେଚନାରେ ତାହାଙ୍କର ନିଜ ସାକ୍ଷାତ୍ ତତ୍ତ୍ୱାବଧାରଣ-ରେ ଏହି ସମସ୍ତ କାର୍ଯ୍ୟ କରିବା ନିମନ୍ତେ ବରଖାସ୍ତ ଡିପୋଟି କଲେକ୍ଟର ନରସିଂହ ଚରଣ-ଦାସଙ୍କୁ ନିଯୁକ୍ତ କରିବା ନିମନ୍ତେ ହଜୁରରୁ ତାହାଙ୍କୁ ଉପଦେଶ ଦିଆଗଲା ।"

ଉକ୍ତ ରିପୋର୍ଟରେ ଆହୁରି ଲେଖାଅଛି ଯେ ରଜା ବର୍ତ୍ତମାନ ଆପଣା କଲର ମଉଜାମାନଙ୍କୁ ଯାଇ ରଇତମାନଙ୍କର ଓଜର ଶୁଣି ପଧାନମାନଙ୍କଠାରୁ କବୁଲିୟତ ନେଉଅଛନ୍ତି ଏବଂ ସେ ଆପଣା ବିଷୟ କାର୍ଯ୍ୟରେ କିଛି ସମୟ ଯାପନ କରି ସ୍ୱୟଂ ଆପଣା କାର୍ଯ୍ୟ ବୁଝିବାର ଯେପରି ଇଚ୍ଛା ପ୍ରକାଶ କରିଅଛନ୍ତି ତହିଁରୁ ସେ ଉତ୍ତମ ରଜା ହେବାର ଆଶା ହେଉଅଛି । ୨୦ ବର୍ଷ ପୂର୍ବେ କରାଯାଇ ଥିବା ଏହି ଆଶା ସଫଳ-ହୋଇଅଛି ଏବଂ ସେ ସମୟରେ ବିଷୟ କାର୍ଯ୍ୟରେ ମନୋଯୋଗ କରିବାକୁ ଯେ ତୁମ୍ଭେ ଆରମ୍ଭ କରିଥିଲ ତାହା ଫଳଦାୟୀ ହୋଇଅଛି । ତୁମ୍ଭେ ସ୍ୱୟଂ ଆପଣା କଲରୁ ଜନାକାତ ବନ୍ଦୋବସ୍ତ କରାଇ ପ୍ରଜାମାନଙ୍କୁ ନ୍ୟାଯ୍ୟ ଓ ଲଘୁ କରରେ ପଟ୍ଟା ଦେଇ ସେମାନଙ୍କଠାରୁ କବୁଲିୟତ ନେଲ ଓ ସମସ୍ତ ଅନ୍ୟାଯ୍ୟ ମାଗଣ ଓଗେର ଉଠାଇ ଦେଲ ଓ ଏଥିରୁ ଏହି ଫଳ ହେଲା ଯେ ତୁମ୍ଭର ରଇତମାନେ ଆପଣା ୨ ଭୂମି ଓ ସମ୍ପତ୍ତି ନିରାପଦରେ ଭୋଗକଲେ ଏବଂ ଦୌରାତ୍ମ୍ୟ ଓ ଅନ୍ୟାନ୍ୟ ବ୍ୟୟମାନଙ୍କରୁ ଉଦ୍ଧାର ପାଇଲେ ଓ ଅତଏବ ସୌଭାଗ୍ୟଶାଳୀ ଓ ସନ୍ତୁଷ୍ଟ ହୋଇ ତୁମ୍ଭପ୍ରତି ଅନୁରକ୍ତ ହେଲେ । ହଜୁର ତୁମ୍ଭ କଲର ଅବସ୍ଥା ଅନୁସନ୍ଧାନ କରିବାଦ୍ୱାରା ତୁମ୍ଭେ ପ୍ରଥମେ ବନ୍ଦୋବସ୍ତ କରି ତହିଁ ଉତ୍ତାରୁ ଯେପରି ନ୍ୟାଯ୍ୟ ଓ ପକ୍ଷ ସହିତ ଆପଣା ରାଜ୍ୟ ଚଳାଇ ଅଛ

ସେଥିର ଉତ୍ତମ ଫଳ ଦର୍ଶନ କରୁଅଛନ୍ତି । ତୁମ୍ଭେ ଏକ ଉତ୍କୃଷ୍ଟ ଅଟ୍ଟାଳିକା ନିର୍ମାଣ କରିଅଛ ଓ ଇଂରେଜୀ ଓ ଦେଶୀୟ ବିଦ୍ୟାଳୟମାନ ସ୍ଥାପନ କରିଅଛ ଓ ଉତ୍ତମ ଶୃଙ୍ଖଳାରେ ଚାର୍ଜିତମ ପୁଲିସ ରଖିଅଛ । ତୁମ୍ଭ ଇଲାକାରେ ଅପରାଧମାନ ଅଧିକ ହୁଏ ନାହିଁ ଓ ତୁମ୍ଭ ପ୍ରଜାମାନଙ୍କ ଶରୀର ଓ ସମ୍ପତ୍ତି ନିରାପଦରେ ଅଛି । ତୁମ୍ଭ ରାଜ୍ୟର ଓ ପ୍ରଜାମାନଙ୍କର ଉନ୍ନତି କରିବାରେ ଅନେକ କାଳରୁ ସ୍ୱୟଂ ତୁମ୍ଭେ ମନୋଯୋଗୀ ହୋଇଅଛ ଓ ତୁମ୍ଭର ନ୍ୟାୟ ଓ ଶାନ୍ତ ଶାସନ ହେତୁ ବିଶେଷ ଲୋକ ଅନ୍ୟସ୍ଥାନରୁ ଆସି ତୁମ୍ଭ ରାଜ୍ୟରେ ବାସକରି ଅନେକ ଜଙ୍ଗଲ ଓ ପଡ଼ିଆ ଜମି ଆବାଦ କରିଅଛନ୍ତି । ଉପର ଲିଖିତ ବୃତ୍ତାନ୍ତମାନ ଗବର୍ଣ୍ଣମେଣ୍ଟଙ୍କୁ ଜ୍ଞାତ କରାଇବାରେ ସନ ୧୮୬୭ ସାଲରେ ତୁମ୍ଭଙ୍କୁ ରାଜାବାହାଦୁର ପଦ ଦିଆ ଯାଇଥିଲା । ପରେ ଗତ ଦୁର୍ଭିକ୍ଷରେ ତୁମ୍ଭେ ଫାମିନ ରିଲିଫ ଫଣ୍ଡ ଅର୍ଥାତ୍ ଦୁର୍ଭିକ୍ଷ ନିବାରଣ କୋଷକୁ ଯେ ଦାନକଲ ତାହା ମଧ୍ୟ କଟକଜିଲାର ଦୁର୍ଭିକ୍ଷ ପଡ଼ିଥିବା ପ୍ରଦେଶମାନଙ୍କର ପାଇଥିବା ଦୁର୍ଭିକ୍ଷ ପୀଡ଼ିତ ଲୋକମାନଙ୍କୁ ତୁମ୍ଭେ ସାହାଯ୍ୟ ଓ ଆଶ୍ରୟଦେବା ବିଷୟ ହଜୁର ଗବର୍ଣ୍ଣମେଣ୍ଟଙ୍କୁ ରିପୋର୍ଟ କଲେ । ତୁମ୍ଭେ ସମସ୍ତ ଲୋକମାନଙ୍କୁ ଅନ୍ନଦେବା ସକାଶେ ଅନ୍ନଛତ୍ର କରି ସେଥିରେ ଟ ୫୦୦୦ ଙ୍କା ବ୍ୟୟ କଲ ଓ ଯେଉଁ ଦରିଦ୍ର ଓ ଦୁଃଖୀ ଭଦ୍ରବଂଶୀୟମାନେ ଜାତି ନଷ୍ଟହେବା ଭୟରେ ଅନ୍ନଛତ୍ରକୁ ନଗଲେ ସେମାନଙ୍କୁ ଟ ୬୨୦୮ ଙ୍କା ମୂଲ୍ୟର ଖାଦ୍ୟଦ୍ରବ୍ୟ ଓ ନଗଦ ଟଙ୍କା ଦେଇ ବିଶେଷ ସାହାଯ୍ୟ କଲ । ସମୁଦାୟ ଦୁର୍ଭିକ୍ଷ କାଳରେ ତୁମ୍ଭର ଧାନ ଅମାର ଓ ଭଣ୍ଡାରଘରମାନ ଖୋଲିଥିଲ ଓ କିଣିବାର ଶକ୍ତିଥିବା ମାତ୍ର ଅନ୍ୟସ୍ଥାନରେ ଧାନ ନପାଉଥିବା ଲୋକମାନଙ୍କୁ ଧାନ ନଗଦ ବିକ୍ରିକରିବା ଛଡ଼ା ଦୁଃଖୀ ଲୋକମାନଙ୍କର ପ୍ରତିପୋଷଣ ଅଥବା ଆପଣା ୨ କ୍ଷେତରେ ବୁଣିବା ନିମିତ୍ତ ଟ ୧୨୫୦୦୦ ଙ୍କା ମୂଲ୍ୟର ମ ୪୦୦୦୦ ହଣ ଧାନ ବିନା ମୂଲ୍ୟରେ ଦାନ କଲ କିମ୍ବା ଉଧାର ଦେଲ । ଏପରି ଦୁର୍ଭିକ୍ଷ ସମୟରେ ଦରିଦ୍ର ଲୋକମାନଙ୍କୁ ସାହାଯ୍ୟ କରିବାରେ ତୁମ୍ଭର ଟ ୧୩୮୨୦୦ ଙ୍କା ବ୍ୟୟହେଲା ଏବଂ ତଦ୍ଦ୍ୱାରା ବହୁ ସହସ୍ର ଲୋକମାନଙ୍କର ପ୍ରାଣ ବଞ୍ଚିଲା ସନ୍ଦେହ ନାହିଁ ।

ତୁମ୍ଭେ ଆପଣା ରାଜ୍ୟ ଉପର ଲିଖିତ ପ୍ରକାରେ ଅତି ଉତ୍କୃଷ୍ଟରୂପେ ଚଳାଇଥିବା ଏବଂ ଦୁର୍ଭିକ୍ଷ ସମୟରେ ବଦାନ୍ୟତା ପ୍ରକାଶ କରିଥିବା ହେତୁ ଅଦ୍ୟ ହଜୁର ଅତି ଆନନ୍ଦ ସହିତ ମହାରାଜପଦ ଏବଂ ଯେଉଁ ଖିଲତ ତୁମ୍ଭେ ପରିଧାନ କରିଅଛ ତାହା ତୁମ୍ଭଙ୍କୁ ଦେଲେ ।

ହଜୁର ଭରସା କରନ୍ତି ଯେ ତୁମ୍ଭେ ଚିରକାଳ ଗବର୍ଣ୍ଣମେଣ୍ଟର ଅନୁଗ୍ରହ ଏବଂ ସନ୍ତୋଷ ଭାଜନ ହୋଇଥିବ ଓ ତୁମ୍ଭର ଉଦାହରଣ ଦ୍ୱାରା ଉତ୍ସାହିତ ହୋଇ ଗଡ଼ଜାତ

ଓ ଆଇନକାରୀ କିମ୍ବା ଅନ୍ୟ ରାଜା ଓ ଜମିଦାରମାନେ ଆପଣା ୨ ରାଜଗି ଓ ଜମିଦାରୀର କାର୍ଯ୍ୟ ସେହିପରି ସୁନିୟମରେ ନିର୍ବାହ କରିବେ ଏବଂ ତୁମ୍ଭେ ବଦାନ୍ୟତା ଓ ଦାନ-ଶୀଳତାର ଯେ ମାର୍ଗ ପ୍ରଦର୍ଶନ କରିଅଛ ସେମାନେ ସେଥିର ଅନୁଗାମୀ ହେବେ ।

## ( ୪ର୍ଥ ଭାଗ, ୭ । ୨ । ୧୮୭୯,ମସିହା, ସଂଖ୍ୟା ୭ )

୧୮୨ । ବନ୍ଦଘର ବାଟେ ଗମନାଗମନର ସୁଯୋଗ ।

ଆମ୍ଭେମାନେ ଏଥିପୂର୍ବେ ସାଧାରଣଙ୍କୁ ଜଣାଇ ଥିଲୁଁ ଯେ କଲିକତା ସଙ୍ଗେ କଟକର ଯୋଗ ରଖିବା ସକାଶେ ଗବର୍ଣ୍ଣମେଣ୍ଟ ବହୁବ୍ୟୟ ସ୍ୱୀକାର ପୂର୍ବକ ବନ୍ଦଘର-ଠାରେ ଖଣ୍ଡିଏ ଧୂଆଁକଳ ଯାହାଜ ଓ ଆଉ ଖଣ୍ଡିଏ ମାଲ ବୋଝାଇର ଯାହାଜ ବରାବର ରହିବାର ମଞ୍ଜୁର କରିଅଛନ୍ତି ଓ ମାସକୁ ମାସ ଖଣ୍ଡିଏ ଧୂଆଁକଳ ଯାହାଜ କଲିକତାରୁ କଟକକୁ ଆସଇ ଓ ସେଥିରେ ଅନେକ ଲୋକର ଦ୍ରବ୍ୟ ମଧ୍ୟ ଆସଇ । କିନ୍ତୁ ସକଳ ଲୋକଙ୍କର ଦ୍ରବ୍ୟ ଆସିବାର ସୁବିଧା ନ ଥିବାରୁ ଆମ୍ଭେମାନେ ମହାଜନ ଯାହାଜ ଗମନାଗମନର ପ୍ରସ୍ତାବ କରିଥିଲୁଁ । ଏହି ପତ୍ରିକାର ସ୍ଥାନାନ୍ତରରେ ଏ ବିଷୟରେ ଯେଉଁ ବିଜ୍ଞାପନ ପ୍ରକାଶ ହେଲା ତାହା ପାଠକଲେ ସର୍ବସାଧାରଣ ଜାଣିପାରିବେ ଯେ ଆମ୍ଭ-ମାନଙ୍କର ଆଶା ପୂର୍ଣ୍ଣ ହୋଇଅଛି ଓ ଅନ୍ତତଃ ଆଗାମୀ ଅପ୍ରେଲ ମାସ ଶେଷ ପର୍ଯ୍ୟନ୍ତ ଯାହାଜ ଯିବା ଆସିବାର ନିଶ୍ଚୟ ହୋଇଅଛି । ଓଡ଼ିଶାର ବର୍ତ୍ତମାନାବସ୍ଥାରେ କଲିକତା ସହିତ ଯୋଗ ରଖିବାର ଏଥିରୁ ବଳକର ଭଲ ଉପାୟ ନାହିଁ ଓ ବ୍ୟବସାୟିମାନେ ଆପଣା ଦ୍ରବ୍ୟ ଆଣିବାରେ କେତେ ସୁବିଧା ବୋଧ କରିବେ ତାହା ପ୍ରତ୍ୟକ୍ଷ ହେଉଅଛି । ଆଠଦିନ ମଧ୍ୟରେ କଲିକତାରୁ କଟକ ଦ୍ରବ୍ୟ ଆସିବ ଓ ତାହା ଆଣିବାପାଇଁ ମନୁଷ୍ୟ ଯିବାର କି ଶଗଡ଼ ଖୋଜିବାର ପ୍ରୟୋଜନ ନ ହେବ ଓ ଖଣ୍ଡେ ଚିଠି ପଠାଇଲେ କଲିକତାରୁ ମାଲ ଆସି କଟକ କଲେକ୍ଟର କଚେରୀ ଦ୍ୱାରରେ ଅକ୍ଳେଶରେ ପ୍ରବେଶ ହେବ ଏହା କି ସାମାନ୍ୟ ଲାଭର କଥା ? ନିଜେ କ୍ଳେଶ ପାଇବାର ନାହିଁ କି ବାଟରେ ଚୋର ଡକାୟତ ଭୟ ନାହିଁ । ଆମ୍ଭେମାନେ ଇଚ୍ଛା କରୁଁ ଯେ ମହାଜନ ପଥିକମାନେ ଯଥା ସାଧ୍ୟ ଏ ସୁଯୋଗର ଫଳ ଭୋଗ କରିବାରେ ତ୍ରୁଟି ନ କରିବେ । ବିଶେଷତଃ ଆମ୍ଭେମାନେ ଅତି ଆନନ୍ଦିତ ହୋଇଅଛୁଁ ଯେ କଟକର କଲେକ୍ଟର ଶ୍ରୀଯୁକ୍ତ ମାକଫର୍ସନ ସାହେବ ଦ୍ରବ୍ୟ ଓ ପଥିକ ଯିବା ଆସିବାର ସୁଯୋଗ ନିମିତ୍ତ କୌଣସି ଉପାୟ ତ୍ୟାଗ କରିନାହାନ୍ତି । ଗବର୍ଣ୍ଣମେଣ୍ଟର ଧୂଆଁକଳ ଜାହାଜ ତାଳଦଣ୍ଡାରେ ସର୍ବସାଧାରଣର ଦ୍ରବ୍ୟାଦି ଲଞ୍ଚର ବାଉଠାରେ କୁମ୍ପାନିର ଯାହାଜରେ ବୋଝାଇ ଦେବାକୁ ନେଇଯିବା କାରଣ ପ୍ରସ୍ତୁତ ଥିବ ଓ ଯେ କେହି ସେ ଯାହାଜର କପ୍ତାନକୁ ଦ୍ରବ୍ୟ ଦେବେ ତାହା

ଯେ ଗ୍ରହଣକାରୀ ସେଥିର ରକ୍ଷିତ ହେବେ । ପୁଣି ଯାହାଜର ଦ୍ରବ୍ୟଆଣି ଡାଲଦଣ୍ଡାରେ ପହୁଞ୍ଚାଇବେ ଏ ବିଷୟରେ ତାହାଙ୍କୁ ବିଶେଷରୂପେ ଆଜ୍ଞା ହୋଇଅଛି । ଏ ସମସ୍ତ ଉପାୟଦ୍ୱାରା କେବଳ କଲିକତାସଙ୍ଗେ କାରବାରର ସୁଯୋଗ ହୋଇଅଛି ଏମନ୍ତ ନୁହଇ, ମାନ୍ଦ୍ରାଜ ଓ ବୋମ୍ବାଇ ପ୍ରଦେଶର ସକଳ ସ୍ଥାନସଙ୍ଗେ ମଧ୍ୟ ଗମନାଗମନର ସୁଯୋଗ ହେଲା । ଏ ଗୃହ ମାସ ଉତ୍ତାର ହେବେ କ୍ରମାନ ଏଠାରେ ଯାହାଜ ଲଗାଇବା ଲାଭଯୁକ୍ତ ଜ୍ଞାନ କରିବେ ତେବେ ଏ କାର୍ଯ୍ୟ ଚିରସ୍ଥାୟୀ ହେବ ସନ୍ଦେହନାହିଁ । ଆମ୍ଭେମାନେ ଏହି ମାତ୍ର ଆଶାକରୁଁ ଯେ ଏ କାର୍ଯ୍ୟ ଚିରସ୍ଥାୟୀ ହେଉ । ତାହା ହେଲେ ଆମ୍ଭମାନଙ୍କର ଗୋଟିଏ ଗୁରୁତର ଅଭାବ ମୋଚନ ହେବ । ଜାହାଜରେ ମନୁଷ୍ୟ କି ଦ୍ରବ୍ୟ ଯିବାକୁ କେତେଥି ଭଡ଼ା ଲାଗିବ ତାହା ନିଶ୍ଚୟ ଜାଣିଗଲେ ଆଗାମୀ ସପ୍ତାହରେ ଜଣାଇବୁଁ ।

୧୮୩ । ବିଜ୍ଞାପନ

କଲିକତାର ବ୍ରିଟିଶ ଇଣ୍ଡିଆ ଷ୍ଟିମ ନେବିଗେସନ କମ୍ପାନୀଙ୍କ ସଙ୍ଗେ ଗବର୍ଣ୍ଣମେଣ୍ଟ ବନ୍ଦୋବସ୍ତ କରିଅଛନ୍ତି ଯେ ମାସକୁ ମାସ ବାଲେଶ୍ୱରକୁ ଧୂଆଁ କଳ ଯାହାଜ ଆସିବ ।

ଉକ୍ତ କମ୍ପାନୀର ଯାହାଜ ତଳ ଲିଖିତ ଦିନମାନଙ୍କରେ କଲିକତାର ବାଲେଶ୍ୱରକୁ ଆସିବ । ଯଥା—

| କଲିକତାରୁ ବାହାରିବ | ବାଲେଶ୍ୱରଠାରେ ପହୁଞ୍ଚିବ |
|---|---|
| ତା ୧୩ ରିଖ ଫେବ୍ରୁଆରୀ | ତା ୧୪ ରିଖ ସକାଳ ଘ ୬ ଣ୍ଟା |
| ତା ୧୩ ରିଖ ମାର୍ଚ୍ଚ | ତା ୧୪ ରିଖ ଏକାନ |
| ତା ୧୦ ରିଖ ଅପ୍ରେଲ | ତା ୧୧ ରିଖ ଏକାନ |

ଏବଂ ବାଲେଶ୍ୱରରୁ କଲିକତାକୁ ଯିବାବେଳେ ତଳ ଲିଖିତ ଦିନମାନଙ୍କରେ ବାଲେଶ୍ୱରଠାରେ ପ୍ରବେଶ ହେବ । ଯଥା— ତା ୭ ରିଖ ଫେବ୍ରୁଆରୀ, ତା ୬ ରିଖ ମାର୍ଚ୍ଚ, ତା ୩ ରିଖ ଅପ୍ରେଲ ଓ ତା ୧ ରିଖ ମଇ । କଲିକତାରୁ ଆସିବାବେଳେ ଯାହାଜ ଯେମନ୍ତ ସମୟାନୁସାରେ ପ୍ରବେଶ ହେବ କଲିକତାକୁ ଯିବା ସମୟରେ ତେମନ୍ତ ଠିକ ରହିବ ନାହିଁ କାରଣ ବାଟରେ ଓ କଲିକତା ମଧ୍ୟରେ ଅନେକ ବନ୍ଦରରେ ଯାହାଜ ଲଗାଇବାର ଆବଶ୍ୟକ ହୁଅଇ । ଅତଏବ ଦିନେ ଅଧେ ଉଣାଅଧିକ ହୋଇପାରେ । ଗବର୍ଣ୍ଣମେଣ୍ଟଙ୍କର ଗୋଟିଏ ଲଞ୍ଚ କାର ଧୂଆଁ କଳ ଯାହାଜ ବାଲେଶ୍ୱର ନଗର ବାଡ଼ଠାରୁ ଡାଲଦଣ୍ଡା ଗ୍ରାମକୁ ଦ୍ରବ୍ୟ ଓ ଯାତ୍ରୀ ନେଇ ଯିବାଆସିବା କରିବ ଏବଂ ଯାହାଜର ଦ୍ରବ୍ୟ ଉଠାଇବା କାରଣ ନଗରବାଡ଼ରେ ଖଣ୍ଡିଏ ଯାହାଜ ରହିବ ।

## ( ୪ର୍ଥ ଭାଗ, ୨୦ । ୩ । ୧୮୭୪, ସଂଖ୍ୟା ୧୨ )

୧୮ । କଟକରେ ସାଧାରଣ ଚକିତ୍ସାଳୟ ସ୍ଥାପନ ପ୍ରସ୍ତାବ ।

ଆମ୍ଭେମାନେ ଆନନ୍ଦର ସହିତ ଶ୍ରବଣ କଲୁଁ ଯେ ଏଠାରେ ଗୋଟିଏ ସାଧାରଣ ଚିକିତ୍ସାଳୟ ବୃହଦାକାରରେ ସ୍ଥାପନ କରିବା କାରଣ ଗବର୍ଣ୍ଣମେଣ୍ଟ ମଞ୍ଜୁର କରିଅଛନ୍ତି । ବର୍ତ୍ତମାନ ଅନ୍ଧଛତ୍ର ଚିକିତ୍ସାଳୟ ଉଠିଯାଇ ତହିଁ ପରିବର୍ତ୍ତରେ ସ୍ଥାପନ ହେବ । ଏହାର ଅଧାବ୍ୟୟ ଅବଶ୍ୟ ଲୋକଙ୍କଠାରୁ ଚେନ୍ଦାଦ୍ୱାରା ଗ୍ରହଣ ହେବ । ଏଥିରେ ଆମ୍ଭର ସମ୍ପୂର୍ଣ୍ଣ ଆଶା ହେଉଅଛି ଯେ ଜଣେ ସବ ଆସିଷ୍ଟାଣ୍ଟ ସର୍ଜନ ଏଠାକୁ ଆସିପାରନ୍ତି ।

## ( ୪ର୍ଥ ଭାଗ, ୩ । ୪ । ୧୮୭୪, ସଂଖ୍ୟା ୧୪ )

୧. ୫ । ବିଜ୍ଞାପନ

୧୮୭୪ ସାଲ ତା ୧୫ ରିଖ ମାର୍ଚ୍ଚ ୧୮୬୮ ସାଲର ବଙ୍ଗଦେଶୀୟ ୬ ଆଇନର ( ଅର୍ଥାତ୍ ପ୍ରଦେଶୀୟ ନଗରୀୟ ଆଇନର ) ୨ ଓ ୫ ଧାରାମତେ ସମ୍ବାଦ ଦିଆ ଯାଉଅଛି ଯେ ଉକ୍ତ ଆଇନର ବିଧାନ ୧୮୭୪ ସାଲ ଏପ୍ରେଲ ମାସ ତା ୧ ରିଖ-ଠାରୁ କଟକଜିଲ୍ଲା ଅନ୍ତର୍ଗତ କଟକ, ଯାଜପୁର, କେନ୍ଦ୍ରାପଡ଼ା ନଗର କମ୍ନ ଲିଖିତ ସୀମାମଧ୍ୟରେ ପ୍ରଚଳିତ ହେବ ।

### ( ୧ ) କଟକ ନଗର

ଉତ୍ତର ସୀମା—ମହାନଦୀ, ଦକ୍ଷିଣ ସୀମା କାଠଯୋଡ଼ୀ ନଦୀ, ପଶ୍ଚିମ ସୀମା କଟକ ନଗର ଠିକ ଉତ୍ତର କାଠଯୋଡ଼ୀ ଓ ମହାନଦୀ ସଂଯୋଗସ୍ଥାନ, ପୂର୍ବ ସୀମା କାଠଯୋଡ଼ୀ ନଦୀଠାରୁ ଶଙ୍କରପୁର ଓ ବଛିମଲ୍ଲ ଗ୍ରାମ ପୂର୍ବଦିଗ ପର୍ଯ୍ୟନ୍ତ ଓ ସେଠାରୁ ମହାନଦୀ ପର୍ଯ୍ୟନ୍ତ ଯେ ରେଖା ଟଣାଯାଏ ତାହା ।

### ( ୨ ) ଯାଜପୁର ।

ପଶ୍ଚିମ ସୀମା—କନ୍ୟାନାଳୀ, ଉତ୍ତର ସୀମା—ଚକ୍ରୋଦଣ୍ଡପୁର ପର୍ଯ୍ୟନ୍ତ ବୈତରଣୀ ନଦୀ, ପୂର୍ବ ସୀମା—କୋଦଣ୍ଡପୁର, କୋଅଁରେଶ୍ୱର, ନରହରିପୁର, ବାଗିଚାପୁର, ଶଙ୍ଖମାଧବ, ଶୁକପୁର ଭିତର ବରଜ, ଦାମୋଦରପୁର, ଗୋପାଳପୁର, ଗୋଧନପୁର,

ଶ୍ରୀଦ୍ୱୟପୁର, ଆଲବାଗ, ବରଇପୁର, ଚମ୍ପାନଗର ରଘୁନାଥପୁର, ବନ୍ଦୀଦେବୀଦ୍ୱାରଗ୍ରାମ, ଦକ୍ଷିଣ ଓ ଦକ୍ଷିଣ ପଶ୍ଚିମ ସୀମା – ଖୁନସରପୁର, ଭଗତପୁର, କେଦାରେଶ୍ୱର, ନୂଆଗାଁ, ରଘୁତରପୁର ପର୍ଯ୍ୟନ୍ତ ଭବାନୀଗଞ୍ଜ ଗ୍ରାମ ।

(୩) କେନ୍ଦ୍ରାପଡ଼ା ।

ପଶ୍ଚିମ ସୀମା—ଗୋପିସ୍ୱାନାଳନଦୀ, ଦକ୍ଷିଣ ସୀମା—ନରସିଂହଜୀ ଠାକୁରଙ୍କ ଚଉ ଓ ନାଲା ଗୋପେବନ୍ଦ ପୁଷ୍କରଣୀ, ପଠୁ ପୋଖରୀ, ପିଜ୍‌ରୟା ପୋଖରୀ, ସୁଲତାନାବନ୍ଧ ଓ ଦୁଗବୁବନ୍ଧ, ପୂର୍ବସୀମା— ଇଚ୍ଛାପୁରଘାଟ, ମଧ୍ୟେଘାଞ୍ଜୁରୀ ଓ ଉତ୍ତର ସୀମା—ମଧ୍ୟଖଣ୍ଡ ପୋଡ଼ୀ ସାହିଙ୍କ ପାଠ, ଗୃକାପୁ ବାରଙ୍କ ପାଠ, ଯୋନାଲୀ ପାଠ, ଗୋବରୀନଦୀ, ଓ ପଠାମୁଣ୍ଡେଇ ପଥ ।

ଉକ୍ତ ଆଇନର ୧୨ ଧାରା ମତେ ପ୍ରକାଶ କରାଯାଉଅଛି ଯେ ଉକ୍ତ ଆଇନର ୧୪ ଓ ୧୫ ଧାରାମତେ ଏହି ୨ ନଗର ଆୟ ବ୍ୟୟର ଯେ ଅନୁମାନ ପତ୍ର ପ୍ରସ୍ତୁତ କରାହେବ ତାହା ଏହି ମାସର ତା ୧୭ ରିଖର ପରେ ସାଧ୍ୟମତେ ଶୀଘ୍ରରେ କରାଯିବ ଏବଂ ଉକ୍ତ ଆଇନର ବିଧାନମତେ ଯେ ଟାକ୍ସ ଧାର୍ଯ୍ୟ ହୁଅଇ ତାହା ୧୮୭୧ ସାଲ ଏପ୍ରେଲ ମାସ ତା ୧ ରିଖଠାରୁ ଉକ୍ତ ପ୍ରତ୍ୟେକ ନଗରରେ ପ୍ରବଳ ହେବ ।

ଏହି ଆଇନର ୪୧ ଧାରାମତେ ମାଜିଷ୍ଟ୍ରେଟ ସାହେବ ଏହି ୨ ନଗରରେ ନଗରୀୟ କମିଟୀର ମେମ୍ବର ଓ ସଭାପତି ପଦରେ ସ୍ଥାୟୀରୂପେ ନିଯୁକ୍ତ ହେଲେଣି ।

୪୨ ଧାରାମତେ ପ୍ରକାଶ କରାଯାଉଅଛି ଯେ କଟକ ଓ ଯାଜପୁର ନଗରର ନଗରୀୟ କମିଟୀର ମେମ୍ବର ସବୁଗତ ହୋଇ ଏହି ଆଇନର K ଚିହ୍ନିତ ତଫସିଲର ୧—୧୩ ପ୍ରକରଣର ଲିଖିତ କ୍ଷମତା କର୍ମ କଲେ B ଚିହ୍ନିତ ତଫସିଲରେ ମାଜିଷ୍ଟ୍ରେଟ ସାହେବଙ୍କ ପ୍ରତି ଯେ ୨ ଶକ୍ତି ଓ କ୍ଷମତା ପ୍ରଦତ୍ତ ହୋଇଅଛି ଓ ଯେ ସକଳ କାର୍ଯ୍ୟର ଭର ଅର୍ପିତ ହୋଇଅଛି ତଦନୁସାରେ କାର୍ଯ୍ୟ କରିବେ ଏବଂ C ଚିହ୍ନିତ ତଫସିଲରେ ମାଜିଷ୍ଟ୍ରେଟଙ୍କର ଯେ ୨ କ୍ଷମତା ଓ କର୍ମ ନିର୍ଦ୍ଦିଷ୍ଟ ହୋଇଅଛି ନଗରୀୟ କମିଟୀ ତଦନୁସାରେ କର୍ମ କରିବେ ।

ଏ, ଇଡେନ
ବଙ୍ଗଦେଶର ଗବର୍ଣ୍ଣମେଣ୍ଟଙ୍କର
ସେକ୍ରେଟରୀ ।

## ( ୪ର୍ଥ ଭାଗ, ୧୫ । ୫ । ୧୮୭୪, ସଂଖ୍ୟା ୧୫ )

### ସାପ୍ତାହିକ ସମ୍ବାଦ

୧୮୭ । ଗତ ସପ୍ତାହରେ କଟକ ଟାଉନ କମିଟୀର ସଭା ହୋଇଥିଲା । କେତେକ ଟାକସର ଆୟବ୍ୟୟ ସ୍ଥିର ହୋଇ ସାଧାରଣ ଜ୍ଞାତ କାରଣ ତାହା ପ୍ରକାଶ ହୋଇଅଛି । ଉକ୍ତ ପତ୍ରରୁ ଅବଗତ ହେଲୁଁ ଯେ ଚଳିତ ବର୍ଷ ପ୍ରାୟ ଟ ୧୯୦୦୦ ଙ୍କା ଟାକସଦ୍ୱାରା ଆଦାୟ ହେବ ଓ ଅନ୍ୟାନ୍ୟ ଆୟ ମିଶି ଟ ୨୬୦୦୦ ଙ୍କା କମିଟୀ ପ୍ରାପ୍ତ ହେବାର ଆଶା କରନ୍ତି । ଏଥିରୁ ପୁଲିସର ବ୍ୟୟ ଟ ୫୦୦୦ଙ୍କା ଓ ଟାକସ ଦାରୋଗା ମହରୀମାନଙ୍କ ଦରମା ଦିଆଯିବା ପାଇଁ ଅବଶିଷ୍ଟ ଟ ୪୦୦୦ ଙ୍କା ନଗରପରିଷ୍କାର ଓ ସୌଷ୍ଠବ କାର୍ଯ୍ୟରେ ବ୍ୟୟ ହେବ । ନୂତନ କଥା ମଧ୍ୟରେ ଏହିଯେ ନଗରରେ କେତୋଟି ପାଇଖାନା ସାଧାରଣ ବ୍ୟବହାର କାରଣ ନିର୍ମାଣହେବ । ଏହାଦ୍ୱାରା ଯେବେ ନଦୀକୂଳ ପରିଷ୍କାର ରହିପାରେ ତେବେ ବିଶେଷ ଉପକାର ଅଛି ସନ୍ଦେହ ନାହିଁ । କମିଟୀର ଏହି ପ୍ରଥମ ସଭା ଥିବାରୁ ଏଥିରେ ବିସ୍ତର କାର୍ଯ୍ୟ ହୋଇ ନ ପାରିଲା କିନ୍ତୁ ଆଗାମୀ ସଭାରେ ଅନେକ ବିଷୟ ସ୍ଥିର ହେବାର ସମ୍ଭାବନା ଅଛି ।

## ( ୪ର୍ଥ ଭାଗ, ୧୯ । ୭ । ୧୮୭୪, ସଂଖ୍ୟା ୨୫ )

୧୮୭ । ପ୍ରେରିତ ପତ୍ର

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ ମହାଶୟ ସମୀପେଷୁ

ମହାଶୟ, ସବିନୟ ନିବେଦନ ଏହି ଯେ ମଲ୍ଲିଖିତ ଏହି କେତେକ ପଂକ୍ତି କି ସଂଶୋଧନ କରି ଆପଣଙ୍କ ଜଗଦ୍‌ବିଖ୍ୟାତ ପତ୍ରର ପାର୍ଶ୍ୱରେ ସ୍ଥାନଦାନ କରିବାରେ କୃପଣତା ପ୍ରକାଶ ନ କରିବେ । ସମ୍ପାଦକ ମହାଶୟ, କଟକର ଅବସ୍ଥା ଦିନ ୨ ଉନ୍ନତ ହେଉଅଛି । ବର୍ତ୍ତମାନ ଅନେକ ସ୍ଥାନରେ ସଭା ସ୍ଥାପନ ହୋଇ ସଂସ୍କୃତ, ଉତ୍କଳ, ଓ ଇଂରାଜୀ ଭାଷାର ଆଲୋଚନା ଏବଂ ଧର୍ମ ଓ ନୀତି ବିଷୟକ ଉପଦେଶ ଓ ବକ୍ତୃତା ହେଉଅଛି । ଅଳ୍ପଦିନ ହେଲା ଶ୍ରୀଯୁକ୍ତ ବାବୁ ଲକ୍ଷ୍ମୀନାରାୟଣ ରାୟଚୌଧୁରୀଙ୍କ କୋଠାରେ Cuttack Youngmen's Association—କଟକ ବାଳକ ସମାଜ ନାମରେ ଗୋଟିଏ ସଭା ସଂସ୍ଥାପିତ ହୋଇଅଛି । ସଭ୍ୟ ସଂଖ୍ୟା ବାରଜଣ ହେବ, ଏମାନେ ପ୍ରାୟ ସମସ୍ତେ ସ୍କୁଲବାଳକ । ସଭାକାର୍ଯ୍ୟର ଶୃଙ୍ଖଳା ମଧ୍ୟ ଅତ୍ୟନ୍ତ ସନ୍ତୋଷ ଜନକ ଅଟେ । ବାଲ୍ୟକାଳରୁ ତର୍କ ବିତର୍କ ଓ ବକ୍ତୃତା କରିବାକୁ ଅଭ୍ୟାସ କଲେ ଭବିଷ୍ୟତରେ

ଏମାନେ ସୁବକ୍ତା ହେବେ ଓ କାର୍ଯ୍ୟରେ ଜନସମାଜରେ ଆପଣାର ଭାବ ପ୍ରକାଶ କରିବାକୁ ସମର୍ଥ ହେବେ ସନ୍ଦେହ ନାହିଁ । ସଭାପତି ମହାଶୟଙ୍କୁ ପ୍ରାର୍ଥନା ଯେ ସର୍ବଦା ଏରୂପେ ଯତ୍ନବାନ ଥିବେ । ସାନ୍ତୁ ଖୋଲି ୨ ଯେପରି ଆଲୁ ନ ବାନ୍ଧାରେ ।

## ( ୪ର୍ଥ ଭାଗ, ୨୭ । ୭ । ୧୮୭୯, ସଂଖ୍ୟା ୨୭ )

### ୪୮ । ୧୮୭୭ । ୭୮ ବାବତ ଲବଣ କର

ସନ ୧୮୭୭ । ୭୮ ବାବତ ଲବଣ କରର ବାର୍ଷିକ ରିପୋର୍ଟ ପ୍ରକାଶ ହୋଇ-ଅଛି । ଡେଲିନ୍ୟୁସରେ ତହିଁର ଯେ ସମାଲୋଚନା ହୋଇଅଛି ସେଥିରୁ ପ୍ରକାଶ ଯେ କଟକଜିଲାରେ ୧୮୦୦୦ ମହଣ ଏବଂ ପୁରୀଜିଲାରେ ପ୍ରାୟ ୧୧୦୦୦ ମହଣ ଲବଣ ବିକ୍ରୟରେ ଊଣା ପଡ଼ିଅଛି । ଏଥିର ଏହି କାରଣ ପ୍ରଦର୍ଶିତ ହୋଇଅଛି ଯେ ଗଡଜାତ ମାହାଲମାନଙ୍କରେ ଅଳକର ଦେଉଥିବା ଗଞ୍ଜାମ ଲବଣ ବହୁତ ବ୍ୟୟ ହେବାରୁ ସ୍ଥାନୀୟ ଲୋକମାନେ ଲବଣ ବିକ୍ରୟ ହେଉନାହିଁ । ଏକଥା ଯଥାର୍ଥ ଅଟେ କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଯେ ଏଦ୍ୱାରା କର କ୍ଷତି ହେଉଥିବାର ଜାଣି ମଧ୍ୟ ଗବର୍ଣ୍ଣମେଣ୍ଟ ଲବଣ କର ସର୍ବତ୍ରରେ ସମାନ କରୁ ନାହାନ୍ତି । ଭିନ୍ନ କର ଥିଲେ ଯେ ଏହି ପ୍ରକାର ଘଟିବ ଏଥିରେ କିଛି ସନ୍ଦେହ ନାହିଁ ।

## (୪ର୍ଥ ଭାଗ, ୩ । ୭ । ୧୮୭୯ ସଂଖ୍ୟା ୨୭ )

### ୪୯ । କଟକର ଲୋକସଂଖ୍ୟା ।

ଏସ୍ଥଳର ଲୋକସଂଖ୍ୟା ଫର୍ଦ୍ଦ ସମ୍ପ୍ରତି ପ୍ରସ୍ତୁତ ହୋଇଅଛି । ଏଥିର ସାର ବୃତ୍ତାନ୍ତ ଆମ୍ଭେମାନେ ଯେରୂପ ଅବଗତ ହେଲୁଁ ନିମ୍ନେ ପ୍ରକାଶ କଲୁଁ । ଯଥା :—

| | ନିଜ ସହରରେ | ସହରର ଅନ୍ତଃପାତି ଗ୍ରାମମାନଙ୍କରେ | ମୋଟ |
|---|---|---|---|
| ପୁରୁଷ | ୧୩୨୫୪ | ୨୧୫୯ | ୧୬୨୫୮ |
| ସ୍ତ୍ରୀ | ୧୩୦୯୫ | ୩୦୨୪ | ୧୬୧୧୯ |
| ବାଳକ | ୫୬୭୭ | ୧୬୬୭ | ୭୩୪୩ |
| ବାଳିକା | ୫୨୫୦ | ୧୪୬୨ | ୬୭୧୨ |
| ଗୋଟ | ୩୭୨୮୦ | ୯୧୫୭ | ୪୬୪୩୭ |

## ୧୯୦ । କେନ୍ଦ୍ରାପଡ଼ା ନାଲ

ଗତ ସପ୍ତାହରେ ଏ ନାଲ ସମ୍ପୂର୍ଣ୍ଣରୂପେ ପ୍ରସ୍ତୁତ ହୋଇ ନଦୀସଙ୍ଗେ ସଂଯୋଗ-ହେଲା ଏବଂ ଏହାଦ୍ୱାରା ବନ୍ଦରକୁ ନୌକା ଗମନାଗମନ କରିବାର ଆରମ୍ଭ ହେଲା । ଜିଲ୍ଲାର ପ୍ରଧାନ ରାଜକର୍ମଚାରୀମାନେ ଅର୍ଥାତ୍ କମିଶନର ଜଜ କଲେକ୍ଟର ଏବଂ ବାକି ମାସ୍ତ୍ରୀ ଓ ନାଲ ଖୋଳାଇବାର ଅନେକ ସାହେବ ଧୂଆଁକଳ ଜାହାଜରେ ଏ ନାଲବାଟେ ବନ୍ଦର ପର୍ଯ୍ୟନ୍ତ ଯାତାୟାତ କରିବାର ଅନୁକୂଳ କଲେ । ଓଡ଼ିଶା ପ୍ରଦେଶର ଏମନ୍ତ ପକ୍ଷରେ ଏହାକୁ ଗୋଟିଏ ପ୍ରଧାନ ଘଟନା କହିବାକୁ ହେବ । ଏଥିରେ ଯେତେ ପ୍ରକାର ସାଧାରଣ ଉପକାରର କଥା ଅଛି ସମ୍ୟକ୍ ବ୍ୟକ୍ତ ହୋଇ ନପାରେ । ଇରିଗେସନ କମ୍ପାନି ଉଚିତ ବିବେଚନା କରି ସର୍ବାଗ୍ରେ ଏ ନାଲର କାର୍ଯ୍ୟାରମ୍ଭ କରିଥିଲେ ଓ ପ୍ରାୟ ଚତୁର୍ବର୍ଷରେ ତାହା ବର୍ତ୍ତମାନ ସମ୍ପୂର୍ଣ୍ଣ ଓ କାର୍ଯ୍ୟକର ହେଲା । ସମ୍ପ୍ରତି କଲିକତା ଓ ଅନ୍ୟାନ୍ୟ ସ୍ଥାନରୁ ବନ୍ଦରବାଟେ ଜାହାଜରେ ଦ୍ରବ୍ୟ ଆସିବାର ଯେପରି ସୁଯୋଗ ହୋଇଅଛି କିନ୍ତୁ କଟକଠାରୁ ବନ୍ଦର ପର୍ଯ୍ୟନ୍ତ ଗମନାଗମନର କୌଣସି ଉତ୍ତମ ଉପାୟ ନ ଥିବାରୁ ତାହା ସଫଳ ହେଉନାହିଁ ଓ ଯଦ୍ୟପି କି ଅନେକ କଷ୍ଟରେ ପ୍ରତିମାସ କଲିକତାରୁ ଅନେକ ଦ୍ରବ୍ୟ ଆସୁଅଛି ମାତ୍ର ଏଠାରୁ କୌଣସି ବାଣିଜ୍ୟ ଦ୍ରବ୍ୟ ଯାଉନାହିଁ । ବର୍ତ୍ତମାନ ସେ କଷ୍ଟ ଦୂରୀକୃତ ହେଲା । ଏବେ ମହାନଦୀଠାରୁ ନୌକାରେ କେନ୍ଦ୍ରାପଡ଼ା ନାଲବାଟେ ମାର୍ଷାଘାଇ ପର୍ଯ୍ୟନ୍ତ ଓ ସେଠାରୁ ନଦୀବାଟେ ଜମ୍ବୁ ବା ବାକୁଦ ମୁହାଣ ବାଟେ ନିରାପଦରେ ବନ୍ଦରର ନଙ୍ଗରବାଡ଼ ପର୍ଯ୍ୟନ୍ତ ଦ୍ରବ୍ୟ ଯାଇ ଜାହାଜରେ ବୋଝାଇ ହୋଇପାରେ । କେବଳ ଏତିକି ଆବଶ୍ୟକ ଯେ ସରକାରୀ କେତେକଖଣ୍ଡ ମାଲ ବୋହାଇ ନୌକା ଓ ଧୂଆଁକଳ ଜାହାଜଦ୍ୱାରା ଏ କାର୍ଯ୍ୟ ହେବ । ଦେଶୀୟ ନୌକା ଜମ୍ବୁବାଟେ ନଙ୍ଗରବାଡ଼କୁ ଯିବାର ନିରାପଦ ନୁହଇ ଓ ସେଥିରେ ଦେଶୀୟ ସାମାନ୍ୟ ମହାଜନମାନେ ଲୁଚି ପଡ଼ାନ୍ତି ନାହିଁ । ଯେମନ୍ତ ନାବିଗେସନ କମ୍ପାନି ଜାହାଜରେ କଲିକତା ଅଥବା ଅନ୍ୟାନ୍ୟ ଦେଶରୁ ବନ୍ଦରକୁ ମାଲ ଆସୁଅଛି ସେହିପରି ସରକାରୀ ଜାହାଜରେ ବନ୍ଦରଠାରୁ ନାଲବାଟେ ମହାନଦୀ ମହାନଘାଟ ପର୍ଯ୍ୟନ୍ତ ଦ୍ରବ୍ୟ ଆଣିତ ହେଲେ କେତେ ସୁବିଧା ହେବ କୁହାଯାଇ ନପାରେ । ସରକାର ଅନ୍ୟ କୌଣସିଠାରେ ଗୋଦାମ ନକରି ଏକାବେଳେକେ ମହାନଦୀ ଘାଟ ଉପରେ ଗୋଦାମରେ ଦ୍ରବ୍ୟ ରଖିପାରନ୍ତି ଓ ସେଠାରୁ ଲୋକମାନେ ଖର୍ଚ୍ଚ ଦେଇ ଆପଣା ଦ୍ରବ୍ୟ ଆଣିବାରେ ବହୁତ ଆନନ୍ଦିତ ହେବେ ସନ୍ଦେହ ନାହିଁ ଓ ଜଳବାଟେ ଦ୍ରବ୍ୟ ଆଣିବାର ଖର୍ଚ୍ଚ ମଧ୍ୟ ଊଣା ପଡ଼ିବ । ଆପାତତଃ ତାଳଦଣ୍ଡାବାଟେ ବାଣିଜ୍ୟ ଅସିବାରୁ ତଦନ୍ତ୍ୟ ଶଗଡ଼ିଆଙ୍କର ଯେରୂପ ଉପାୟ ହୋଇଥିଲା ତାହା ଏକାବେଳେକେ ରହିତ ହେବ ଓ ସେଥିରେ ସେମାନଙ୍କର କିଛିଦିନ କିଛି କ୍ଳେଶ ହୋଇପାରେ ମାତ୍ର ଏଥିରୁ

ନୈରାଶ ହେଲେ ସେମାନେ ଅନ୍ୟ ଉପାୟ ଅବଲମ୍ବନ କରିବେ । ବୃହତ ଆକାରରେ କୌଣସି ବାଣିଜ୍ୟ ବ୍ୟବସାୟ ଆରମ୍ଭ କଲେ ପ୍ରଥମେ କେତେ କ୍ଷୁଦ୍ର ବ୍ୟବସାୟିଙ୍କର କ୍ଲେଶ ହେବାର ସମ୍ଭବରେ ଦେଖାଅଛି ମାତ୍ର ସେ କ୍ଲେଶ ଅଧିକଦିନ ରହିଇ ନାହିଁ । ଏକ ଆଡ଼ର ବ୍ୟବସାୟରେ ନୈରାଶ ହେଲେ ଲୋକେ ତତ୍‌କ୍ଷଣାତ୍ ଅନ୍ୟ ବ୍ୟବସାୟରେ ନିଯୁକ୍ତ ହୁଅନ୍ତି ଓ ପୃଥିବୀ ଏତେ ବୃହତ ଓ ଏଥିରେ ଏତେ ପ୍ରକାର କାର୍ଯ୍ୟର ପ୍ରୟୋଜନ ଅଛି ଯେ ଅତ୍ୟନ୍ତ ଆଳସ୍ୟଯୁକ୍ତ ବ୍ୟକ୍ତି ମଧ୍ୟ କଛିକ୍ଷଣ ଚିନ୍ତାକଲେ ଆପଣା ପ୍ରାଣପୋଷଣଯୋଗ୍ୟ ଗୋଟିଏ ବ୍ୟବସାୟ ପାଇବ ।

## ସାପ୍ତାହିକ ସମ୍ବାଦ

୧୯୧ । ବର୍ତ୍ତମାନ ମହାରାଜଙ୍କ ଉଥାପିତ ମକଦ୍ଦମାରେ କେନ୍ଦ୍ରାପଡ଼ାର ଡେପୁଟୀ କଲେକ୍ଟର ବାବୁ ଚନ୍ଦ୍ର ଶେଖର ବନ୍ଦୋପାଧ୍ୟାୟ କୁଜଙ୍ଗର ରାଜା ଉପରେ ଟ ୬୦୦ ଙ୍କା ଅର୍ଥଦଣ୍ଡ କରିଥିଲେ । ରାଜା ପକ୍ଷରୁ ଜଜ ସାହେବଙ୍କ ନିକଟରେ ଅପୀଲ ହେଲାର ଗତ ସପ୍ତାହରେ ଅପୀଲ ନିଷ୍ପତ୍ତି ହୋଇ ଡେପୁଟୀ କଲେକ୍ଟରଙ୍କର ଆଜ୍ଞା ରହିତ ଓ ଅର୍ଥଦଣ୍ଡ ଫେର ଦେବାର ଆଜ୍ଞା ହୋଇଅଛି । ଆମ୍ଭେମାନେ ଅବଧି ମକଦ୍ଦମାର ଗୃପ୍ତ ଦେଖି ନଥିବାର ସେଥିର ବୃତ୍ତାନ୍ତ କଛି ଲେଖି ନପାରିଲୁଁ । ଉତ୍ତର କାଳରୁ ସେଥିର ବର୍ଣ୍ଣନା କରିବାର ମାନସ ରଖିଁ ।

## (୪ର୍ଥ ଭାଗ, ୧୬ । ୭ । ୧୮୭୯, ସଂଖ୍ୟା ୨୯)

## ସାପ୍ତାହିକ ସମ୍ବାଦ

୧୯୨ । ଶ୍ରୀଯୁକ୍ତ ମଲେନୀ ସାହେବ ମଇମନସିଂହର ଜଜିୟତି ପଦରେ ନିଯୁକ୍ତ ହୋଇଅଛନ୍ତି ମାତ୍ର ଏଠାର ଏକ୍‌ଟିଂ କମିଶନର ସ୍ୱରୂପ କାର୍ଯ୍ୟ କରିଥିବେ ।

୧୯୩ । ଚତୁର୍ଥ ଶ୍ରେଣୀର ଏକଜିକଉଟିବ ଇଞ୍ଜିନିୟର ବାବୁ ଭୋଳାନାଥ ଦାସ ଦକ୍ଷିଣ କଟକ ରାଜଗଡ଼ର ବାରିକ ମାଷ୍ଟର ନିଯୁକ୍ତ ହୋଇଅଛନ୍ତି । ଅସ୍ମଦ୍ଦେଶୀୟ ଲୋକଙ୍କ ମଧ୍ୟରେ ଏ ଜଣେ ପ୍ରଥମ ବାରିକ ମାଷ୍ଟର ଅଟନ୍ତି ଓ ବଡ଼ ଆନନ୍ଦର ବିଷୟ ଯେ ପ୍ରଥମେ ଏହାଙ୍କୁ କଟକ ଆସିବାକୁ ହେଲା ।

( ୪ର୍ଥ ଭାଗ, ୨୪ । ୭ । ୧୮୭୪, ସଂଖ୍ୟା ୩୦ )

୧୯୦ ।

ପ୍ରେରିତ ପତ୍ର

କଟକ ଡିବେଟିଂ କ୍ଲବ

ନିବେଦନ ମିଦଂ

ମହାଶୟ, ଏହି କଟକ ନଗରରେ କେତେକ ସଭ୍ୟ ବ୍ୟକ୍ତିମାନେ ଏକତ୍ରିତ ହୋଇ ଡିବେଟିଂ କ୍ଲବ ନାମକ ଏକ ଗୋଟି ସମାଜ ଏହି ଦେଶର ହିତସାଧନ ନିମିତ୍ତ ସ୍ଥାପନ କରିଅଛନ୍ତି । ତାହା ପ୍ରାୟ ସାଧାରଣରେ ବିଦିତ ଅଛି । ଗତ ବୁଧବାର ସମାଜ ନିର୍ଦ୍ଧାରିତ ଅନୁପକାରୀ ସମ୍ବାଦ ପାଠକ ମହାଶୟମାନଙ୍କୁ ଅବଗତ କରାଇବା ନିମିତ୍ତ ନିମ୍ନଲିଖିତ କେତେକ ପଂକ୍ତି ପ୍ରେରଣ କରୁଅଛୁଁ । ସଂଶୋଧନ ପୂର୍ବକ ଭବଦୀୟ ପତ୍ର କାରେ ସ୍ଥାନ ଦାନକରି ବାଧିତ କରିବା ହେବେ ।

ବିଗତ ଅଧିବେଶନରେ କେତେକ ବଙ୍ଗୀୟ ସଭ୍ୟମାନେ ବକ୍ତୃତାଦ୍ୱାରା ଏହା ବ୍ୟକ୍ତ କରିଅଛନ୍ତି ଯେ ଉତ୍କଳ ପୁସ୍ତକମାନ ବଙ୍ଗାକ୍ଷରରେ ମୁଦ୍ରିତ କରି ପ୍ରଚାର କଲେ ଏବଂ ଏ ଦେଶୀୟ କଚେରୀ ଦରବାରମାନଙ୍କରେ ବଙ୍ଗାକ୍ଷର ବ୍ୟବହାର କଲେ ଅନେକ ଧର୍ମିଷ୍ଠ ଶ୍ରୀ ବଙ୍ଗୀୟମାନଙ୍କ ସହବାସରେ ଏତଦ୍ଦେଶର ଅନେକ ଉପକାର ଓ ଶ୍ରୀବୃଦ୍ଧି ହୋଇବ । ଏହି ବିଷୟରେ କେତେକ ଏ ଦେଶୀୟ ବ୍ୟକ୍ତିମାନେ ଆପତ୍ତି ଉତ୍ଥାପନ କରିଥିଲେ କିନ୍ତୁ ଶ୍ରୀ ବାବୁ ରାଜକୃଷ୍ଣ ବନ୍ଦୋପାଧ୍ୟାୟ ମହାଶୟ ସ୍ୱୀୟ ଅସାଧାରଣ ବିଦ୍ୟାବତ୍ତା ଓ ବାକ୍‌ପଟୁତା ସହକାରେ ବହୁ ବାଗାଡମ୍ବର କରିବାରେ ଉଲ୍ଲିଖିତ ବିଷୟ ଧାର୍ଯ୍ୟହେଲା । × × × ×

ବାବୁ ମହାଶୟ ଅନେକ ବିଦ୍ୟାରେ ପରିପୂର୍ଣ୍ଣ ହୋଇ ଡ୍ରଗଂସାପଥିମାନ ଲକ୍ଷିକରି "ଏନେ" ଉପାଧି ପ୍ରାପ୍ତ ହୋଇଅଛନ୍ତି ; ସ୍ୱଦେଶର ପ୍ରତି ଭକ୍ତ ହୋଇ ଉତ୍କଳର ଉନ୍ନତି ନିମିତ୍ତ କୃତସଙ୍କଳ୍ପ ହୋଇ ଆମ୍ଭମାନଙ୍କର ସୌଭାଗ୍ୟ କ୍ରମେ ଏ ଦେଶରେ ଅବତୀର୍ଣ୍ଣ ହୋଇଅଛନ୍ତି । ଉତ୍କଳର ସୌଭାଗ୍ୟ ମନୋନୀତ ଉପଯୁକ୍ତ ଲୋକ ପାଇ ଅଛି । ଅନେକ ଛାତ୍ରପତ୍ର ଲଭ କରିବ !

୧୫ । ୭ । ୧୮୭୪ ଶ୍ରୀ ରଙ୍ଗନାଥ ପଣ୍ଡାନନ

( ୪ଥ ଭାଗ, ୧୪ । ୮ । ୧୮୭୯, ସଂଖ୍ୟା ୩୩ )

୧୯୫ । ବଡ଼ଗଡ଼ର ବନ୍ଦର

କ୍ରମଶଃ ବଡ଼ଗଡ଼ର ବାଟେ କଟକକୁ ନାନା ସ୍ଥାନର ଦ୍ରବ୍ୟ ଆସିବାର ସୁଯୋଗ ହେଉଅଛି । ବ୍ରିଟିଶ ଇଣ୍ଡିଆନ ଷ୍ଟିମ ନାଭିଗେସନ କମ୍ପାନିଙ୍କର ଜାହାଜ କଲିକତା ଓ ବୋମ୍ବାଇ ଗମନାଗମନ ସମୟରେ ଭାରତ ବର୍ଷୀୟ ସମସ୍ତ ଉପକୂଳ ସ୍ଥିତ ନଗରର ଦ୍ରବ୍ୟ ବଡ଼ଗଡ଼ରେ ପ୍ରତ୍ୟେକ ହେଉଅଛି ଓ ଏଠାରୁ ମଧ୍ୟ ଅନ୍ୟ ସ୍ଥାନକୁ ଯିବାର ସୁଯୋଗ ହୋଇଅଛି କିନ୍ତୁ ବଡ଼ଗଡ଼ଠାରୁ କଟକ ଆସିବାର ସର୍ବପ୍ରକାର ସୁଯୋଗ ଅବଧି ହୋଇ ନାହିଁ । ଫାଳଦଣ୍ଡା ପର୍ଯ୍ୟନ୍ତ ସରକାର ଆପଣା ଜାହାଜରେ ବିନା ବ୍ୟୟରେ ଦ୍ରବ୍ୟ ପହଞ୍ଚାଇ ଦେଉଥିଲେ ମାତ୍ର ସେଠାରୁ ମନୁଷ୍ୟ ଯାଇ ଦ୍ରବ୍ୟ ଆଣି-ବାରେ କେତେ ପ୍ରକାର କ୍ଳେଶ ହେଉଥିଲା ବିଶେଷତଃ ମହାଜନର ନୌକା ଓ ନୌକାର ଗୋଦାମ ଦ୍ରବ୍ୟ ଆସିବାରେ ଅନେକ ସ୍ଥାନରେ ଲେଉଟି ପାଉଥିବାରୁ ତାହା ନଷ୍ଟ ଓ ଅପହୃତ ହେଉଥିଲା । ଏମନ୍ତ କି ମହାଜନମାନେ ବହୁତ କ୍ଷତିଗ୍ରସ୍ତ ହେଲେ ଓ କାହାକୁ ଧରିବେ ଓ କିଏ କ୍ଷତି ପୂରଣ କରିବେ ତାହା କିଛି ମାତ୍ର ସ୍ଥିର ନଥିଲା । ଏ ଯୋଗୁଁ ଆମ୍ଭମାନଙ୍କର ଶଙ୍କା ହୋଇଥିଲା ଯେ ମହାଜନମାନେ ଆଉ ଦ୍ରବ୍ୟ ଆଣିବାକୁ ସାହାସ ନ କରିବେ ସୁତରାଂ ଦ୍ରବ୍ୟ ଆସିବାର ଯେଉଁ ସୁଯୋଗ ହୋଇଅଛି ତାହା ଅକାଳେ ବିନଷ୍ଟ ହେବ । ମାତ୍ର ଆନନ୍ଦର ସହିତ ଆମ୍ଭେମାନେ ଅବଗତ ହେଲୁଁ ଯେ ଶ୍ରୀଯୁକ୍ତ କଲେକ୍ଟର ସାହେବ ଏ ବିଷୟରେ ମନୋଯୋଗୀ ହୋଇ ବନ୍ଦୋବସ୍ତ କରିଅଛନ୍ତି ଯେ ଜାହାଜର ଦ୍ରବ୍ୟ ନୌକାକୁ ଓଜ୍ଞାଇ ଇଲଷଣ ଫାଳଦଣ୍ଡା ଗୋଦାମକୁ ନମାଇ ସରକାରୀରେ ମାରଶାଘାଇ ପର୍ଯ୍ୟନ୍ତ ଓ ସେଠାରୁ କେନ୍ଦ୍ରାପଡ଼ା ନାଲବାଟେ ଯୋବ୍ରାଘାଟଠାରେ ଉପସ୍ଥିତ ହେବ ଓ ମହାଜନମାନେ ସେହି ଘାଟଠାରେ ଆପଣା ଆପଣା ଦ୍ରବ୍ୟ ବୁଝି ପାଇବେ । ଏଥିରୁ ବନ୍ଦୋବସ୍ତରେ ଥରକୁ ଥର ଦ୍ରବ୍ୟ ଓଜ୍ଞାଇବା ଓ ଲଦାଇବା ହେବାର ଆବଶ୍ୟକ ନ ହେବାରୁ ଦ୍ରବ୍ୟ ନଷ୍ଟ ଆଉ ଅପହୃତ ହେବାର ଅବକାଶ ନଥିବ ଓ ସବୁ ଦ୍ରବ୍ୟ ଏକାବେଳେକେ ଆସିବାରୁ ଆଉ ପ୍ରକାରରେ କୌଣସି ଲୋକର ଦ୍ରବ୍ୟ ଅଳ୍ପ ବ୍ୟୟରେ କଟକରେ ପ୍ରବେଶ ହେବ । ଆମ୍ଭେମାନେ ଏ ବିଷୟକୁ ଅତ୍ୟୁତ୍ତମ ଜ୍ଞାନ କରି ଭରସା କରୁଁ ଯେ ଏହି ବନ୍ଦୋବସ୍ତକୁ କଲେକ୍ଟର ଚିରସ୍ଥାୟୀ କରନ୍ତୁ । ଏଥିରେ ସରକାରଙ୍କୁ କମ୍ପୁ ଓ ମାର୍ଶାଘାଇଠାରେ ଗୋଦାମ ଓ ଗୃହର ନିର୍ମାଣ କରିବାର ଆବଶ୍ୟକ ନ ହେବାରୁ କୌଣସି ଅତିରିକ୍ତ ବ୍ୟୟ ନ ପଡ଼ିବ ଏବଂ ଲୋକମାନେ ଅତ୍ୟଳ୍ପ ବ୍ୟୟରେ ଗୋଡ଼ାଘାଟରେ ଆପଣା ଦ୍ରବ୍ୟ ପାଇବାରୁ ଅନେକ ଉପକାର

ବୋଧକର ଗବର୍ଣ୍ଣମେଣ୍ଟଙ୍କର ଧନ୍ୟବାଦ କରିବେ । ଆଜକୁ ପ୍ରାୟ ଆଠ ମାସ ହେବ କଲକତାର ବସ୍ତ୍ରର ଦ୍ରବ୍ୟ ଦେନ ପ୍ରତିମାସ ବଡ଼ଘରକୁ ଯାହାଜ ଆସୁଅଛି ଓ ପ୍ରତିମାସରେ ବସ୍ତ୍ରର ଭଡ଼ା ଆଦାୟ ହେଉଥିବାର ଜୁମାନ ଏ ନିୟମ ବରାବର ରଖିବେ ସମ୍ଭବ ହୁଅଇ କିନ୍ତୁ ଯୋବରଘାଠରୁ ଦ୍ରବ୍ୟ ଆସିବାର ବନ୍ଦୋବସ୍ତ ସ୍ଥିର ନ ରହିଲେ ତାଦୃଶ ଉପକାର ହେବାର ଭରସା ନାହିଁ ।

## ( ୪ର୍ଥ ଭାଗ, ୨୧ । ୮ । ୧୮୭୪, ସଂଖ୍ୟା ୩୪)

୧୯୭ । ବଡ଼ଘର ବନ୍ଦର

ବଡ଼ଘର ବାଟେ ଯାହାଜରେ ଯିବା ଆସିବାର ସର୍ବପ୍ରକାର ସୁଯୋଗ ହେଲା । ଅଦ୍ୟ ଯେଉଁ ଯାହାଜ ବଡ଼ଘରଠାରେ ପହୁଞ୍ଚିବାର ଅଛି ସେଥିରେ କଲିକତାକୁ ଯିବା-ପାଇଁ କେତେଲୋକ ଗତ ମଙ୍ଗଳବାର ମହାନଦୀ ଘାଟଠାରେ ଇଷ୍ଟଗେଶନ କୁମାନିଙ୍କ ଯାହାଜରେ ଗମନ କଲେ । ଏ ଯାହାଜ ସେମାନଙ୍କୁ ଏକାବେଳେକେ ବଡ଼ଘରଠାରେ ପହୁଞ୍ଚାଇ ବଡ଼ ଯାହାଜରେ ଚଢ଼ାଇ ଦେବ ଓ ଏ ଯାହାଜର ଭଡ଼ା ମଧ୍ୟ ଅଧିକ ହୋଇନାହିଁ ।

## ( ୪ର୍ଥ ଭାଗ, ୨୮ । ୮ । ୧୮୭୪ ମସିହା , ସଂଖ୍ୟା ୩୫ )

୧୯୭ । ସାଧାରଣ ଚିକିତ୍ସାଳୟ

ବର୍ତ୍ତମାନ ଏ ନଗରରେ ଅନ୍ନଛତ୍ର ନାମରେ ଯେଉଁ ଦାତବ୍ୟ ଚିକିତ୍ସାଳୟ ଅଛି ତାହା ସାଧାରଣ ବ୍ୟବହାର କାରଣ ସର୍ବତୋଭାବେ ଉପଯୋଗୀ ନ ହେବାର ତହିଁ ପରିବର୍ତ୍ତରେ ଗୋଟିଏ ଜେନେରାଲ ହସପାତାଲ ଅର୍ଥାତ୍ ସାଧାରଣ ଚିକିତ୍ସାଳୟ ସ୍ଥାପନ ହେବାର କଳନା ହୋଇଅଛି । ଅବିଳମ୍ବେ ଏଥିର କାର୍ଯ୍ୟ ଆରମ୍ଭ ହେବ । ବର୍ତ୍ତମାନ ଚିକିତ୍ସାଳୟ ଏହାର ଆକୃତି ବଡ଼ ହେବ ଏବଂ ଯାତ୍ରିମାନଙ୍କର ସାହାଯ୍ୟ ବିଶେଷ ରୂପେ ଆବଶ୍ୟକ ଥିବାର ଏ ଚିକିତ୍ସାଳୟ ଗୃଣ୍ଡିଚାଗଡ଼ ପର୍ଯ୍ୟନ୍ତରେ ନିର୍ମାଣ ହେବାର ସ୍ଥିର ହୋଇଅଛି । ସେ ସ୍ଥାନରେ ହସପାତାଲ ରହିଲେ ଯାତ୍ରିମାନଙ୍କୁ ନିକଟ ହେବ ଓ ନଗରକୁ ନଆସି ସେମାନେ ସାହାଯ୍ୟ ପାଇବେ । ଆମ୍ଭେମାନେ ଏ ସ୍ଥାନର ଡାକ୍ତର ଶ୍ରୀଯୁକ୍ତ ମାକଡୋନାଲ୍ ସାହେବଙ୍କ ପ୍ରମୁଖାତ୍ ଶୁଣିଅଛୁଁ ଯେ ଏ ଚିକିତ୍ସାଳୟ କେବଳ ଦୁଃଖୀ କଙ୍ଗାଳ ଅନ୍ନଛତ୍ର ରୋଗୀଙ୍କ ସକାଶେ ହେବ ଏମନ୍ତ ନୁହଇ । ଭଦ୍ରଲୋକ ଯାତ୍ରୀ ଅର୍ଥାତ୍ ଯେଉଁମାନେ ଅନ୍ନଛତ୍ରରେ ଭୋଜନ କରିବାରେ ଆପଣା ଜାତି ବା ମାନ ହାନି

ଜ୍ଞାନ କରନ୍ତି ଏମାନଙ୍କ କାରଣ ଭଲ ବନ୍ଦୋବସ୍ତ ହେବ ଏବଂ କୁଳାଙ୍ଗନାମାନଙ୍କ ଚିକିତ୍ସା ସାହାଯ୍ୟ ପ୍ରଦାନ ହେବାର ମଧ୍ୟ ପୃଥକ୍ ନିୟମ ହେବ । ଅତଏବ ଦେଖାଯାଏ ଯେ ଏ ଚିକିତ୍ସାଳୟଦ୍ୱାରା ସର୍ବପ୍ରକାର ଅନୁସାରେ ଶୁଭ ହେବାର ମାନସ ଅଛି ଓ ତାହା ସ୍ଥିରକରିବା ପକ୍ଷରେ ଅସ୍ମଦ୍ଦେଶୀୟ ଲୋକଙ୍କର ପକ୍ଷ କରିବା କେତେଦୂର କର୍ତ୍ତବ୍ୟ ସହଜରେ ଅନୁଭବ ହୋଇପାରେ ।

ଏରୂପ ପରିମାଣର ଚିକିତ୍ସାଳୟ ନିର୍ମାଣ ନିମନ୍ତେ ଅନେକ ଟଙ୍କାର ପ୍ରୟୋଜନ ହେବ ( ସମ୍ପ୍ରତି ଟ ୮୦୦୦ ଙ୍କା ଇଷ୍ଟିମେଟ ହୋଇଅଛି ) ଓ ଯେତେ ଅଧିକ ଟଙ୍କା ହେବ ତେତେ ବଡ଼ଘର ନିର୍ମାଣ ହୋଇ ସର୍ବପ୍ରକାର ଉଦ୍ଦେଶ୍ୟ ସାଧନ ପକ୍ଷରେ ସୁଯୋଗ ହେବ । ଏଥିରୁ ଗବର୍ଣ୍ଣମେଣ୍ଟ ଯେ ଟଙ୍କା ଦେବେ ତଦତିରିକ୍ତ ଭେଦାଦ୍ୱାରା ଅସ୍ମଦ୍ଦେଶୀୟ ଧନବାନ୍ ଓ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କଠାରୁ ଅର୍ଥସଂଗ୍ରହ କରିବାର ଆବଶ୍ୟକ ହୋଇଅଛି ଓ ଆମ୍ଭେମାନେ ଭରସା କରୁଁ ଯେ ବଦାନ୍ୟବ୍ୟକ୍ତି ମାତ୍ରକେ ଏରୂପ ସାଧାରଣ ଉପକାରଜନକ ବ୍ୟାପାରରେ ଅର୍ଥ ସାହାଯ୍ୟ କରିବାକୁ କୁଣ୍ଠିତ ନହେବେ । ଏସ୍ଥଳେ ଆମ୍ଭେମାନେ କୃତଜ୍ଞତା ସହିତ ଜଣାଉ ଅଛୁଁ ଯେ ଗତ ସପ୍ତାହରେ ଏନଗର ବକ୍ସିବଜାର ନିବାସୀ ନହବନ୍ତ ରାମ ଭଗତ ଓ ବସୁନ ଦୟାଲ ଭଗତ ଏକୁହେଁ ଟ ୫୦୦ ଙ୍କା ଶ୍ରୀଯୁକ୍ତ ଡାକ୍ତର ସାହେବଙ୍କ ନିକଟକୁ ପଠାଇ ଦେଇଅଛନ୍ତି । ଭୋଜପୁରୀ ମହାଜନମାନେ ବହୁକାଳରୁ ଏ ଦେଶକୁ ଆସି ଅନେକ ଟଙ୍କା ଉପାର୍ଜନ କରିଅଛନ୍ତି ଏବଂ ଏମାନେ ଏମନ୍ତ କୌଶଳରେ ଏଠାରେ ବଡଲୋକ ହୋଇଅଛନ୍ତି ଯେ ଏମାନଙ୍କୁ ଲୋକେ ଅର୍ଥପିଶାଚ ବୋଲି ଜ୍ଞାନ କରନ୍ତି କିନ୍ତୁ ଆନନ୍ଦର ବିଷୟ ଯେ ଏମାନେ ମଧ୍ୟ ଏରୂପ ସାଧାରଣ କାର୍ଯ୍ୟରେ ଦାନ କରିବାକୁ ପରାଙ୍ମୁଖ ହୋଇନାହାନ୍ତି । ପାଠକମାନଙ୍କର ସ୍ମରଣ ଥିବ ଯେ ପ୍ରାୟ ଦଶବର୍ଷ ହେବ ସୁବିଖ୍ୟାତ ମୃତ ମୋହନ ଭଗତ ଅନ୍ନଛତ୍ରର ସାହାଯ୍ୟ ନିମନ୍ତେ ନଗଦ ପାଞ୍ଚହଜାର ଟଙ୍କା ଦାନ କରିଥିଲେ । ସେ ଟଙ୍କାର ସୁଧରୁ ଉଦରଖର ଚିକିତ୍ସାଳୟର ବ୍ୟୟନିର୍ବାହ ହେଉଅଛି । ଭୋଜପୁରୀୟଙ୍କ ମଧ୍ୟରେ ଏ ବ୍ୟକ୍ତି ପ୍ରଥମ ଦାନ କରିଅଛନ୍ତି । ଏହାଙ୍କ ପୂର୍ବରେ ଆଉ କେହି କିଛି ଦାନ କରିବାର ଶୁଣାନାହିଁ ଓ ମଧ୍ୟ ଏହାଙ୍କର ଦୃଷ୍ଟାନ୍ତରକୁ ଅବଲମ୍ବନ କରି ଅବଧି ଆଉ କେହି କିଛି ଦେଇ ନଥିଲେ । ସମ୍ପ୍ରତି ନହବନ୍ତ ରାମ ଓ ବସୁନ ଦୟାଲ ଉପର ଲିଖିତ ଦାନଦ୍ୱାରା ଭୋଜପୁରୀୟଙ୍କର ସମ୍ମାନ ବଢ଼ାଇ ଅଛନ୍ତି । ଏହାଙ୍କର ଦାନ କାର୍ଯ୍ୟରୁ ଯଦ୍ୟପି କେହି ୨ ଅଧିକ କରି ନଦେଇନବେ ତଥାପି ଆମ୍ଭେମାନେ କହୁଅଛୁଁ ଯେ ବିଦେଶୀୟ ଲୋକମାନଙ୍କର ଏ ଅଳ୍ପ ପରିମାଣ ଦାନ ମଧ୍ୟ ପ୍ରଶଂସନୀୟ ଅଟଇ ଓ ଭରସା କରୁଁ ଯେ ଅନ୍ୟାନ୍ୟ ଧନାଢ୍ୟ ଭୋଜପୁରୀମାନେ ଏହାଙ୍କ ଚରିତ୍ରକୁ ଆଦର୍ଶ କରି ଯଥାସାଧ୍ୟ ଦାତବ୍ୟ ପ୍ରକାଶ କରନ୍ତୁ । ତାହାହେଲେ ଏମାନେ ଯେମନ୍ତ ଧନ ଉପାର୍ଜନ ବିଷୟରେ

ନାମ କରୁଅଛନ୍ତି ତଦ୍ରୂପ ଦାତବ୍ୟତାଦ୍ୱାରା ଏଅଞ୍ଚଳରେ ଖ୍ୟାତି ଏବଂ ପରଲୋକରେ ସୁଗତି ଲାଭ କରିବାକୁ ଯତ୍ନବାନ ହୋଇନ୍ତୁ ।

ଏଠାରେ ଅସ୍ମଦ୍ଦେଶୀୟ ଲୋକମାନଙ୍କଠାରେ କିଛି ଜଣାଇବାର ଆବଶ୍ୟକ । ପ୍ରସ୍ତାବିତ ବିଦ୍ୟାଳୟଦ୍ୱାରା ଏଦେଶର ବିଶେଷ ଉପକାର ହେବାର ସମ୍ଭାବନା ଓ ଅନ୍ୟ ଦେଶବାସୀଙ୍କ ଅପେକ୍ଷା ଅତ୍ରତ୍ୟ ଲୋକଙ୍କଠାରୁ ଅଧିକ ଦାନର ଆଶା ସ୍ୱଭାବତଃ ହୋଇଅଛି । ସେ ଆଶା ଯେରୂପେ ବିଫଳ ନ ହୁଅଇ ତନ୍ନିମନ୍ତେ ସମସ୍ତଙ୍କର ମନୋଯୋଗ କରିବାର ଉଚିତ । ବଙ୍ଗଦେଶ ଓ ଉତ୍ତର ପଶ୍ଚିମର ଲୋକମାନେ ଏ ପ୍ରକାର କାର୍ଯ୍ୟରେ ଯେରୂପ ଧନ ଦାନ କରି ସୁଖ୍ୟାତି ଲାଭ କରୁଅଛନ୍ତି ତାହା ପତ୍ରିକା ପାଠକମାନେ ସମୟ ୨ ରେ ପାଠକରି ଅବଶ୍ୟ ଆନନ୍ଦ ଲାଭ କରୁଥିବେ । ଏରୂପ ରୀତି ଅତ୍ରତ୍ୟ ଲୋକମାନେ ଅବଲମ୍ବନ କଲେ ତାହାଙ୍କର ଖ୍ୟାତି ଯେ ସେହିରୂପ ବୃଦ୍ଧି ହେବ ସନ୍ଦେହ ନାହିଁ ଓ ବିଦେଶୀୟ ଲୋକମାନେ ସେଥିର ବୃତ୍ତାନ୍ତ ଅବଗତ ହୋଇ ଅବଶ୍ୟ ଏ ଦେଶ ପ୍ରତି ଆଦର ପ୍ରକାଶ କରିବେ ।

## ( ୪ର୍ଥ ଭାଗ, ୪ । ୯ । ୧୮୭୯, ସଂଖ୍ୟା ୩୭ )

୧୯୮ । ବାବୁ ଦୁର୍ଯ୍ୟୋଧନ ଦାସ

ଆମ୍ଭେମାନେ ଅତି ଆନନ୍ଦର ସହିତ ଗଜେଟରେ ପାଠ କଲୁଁ ଯେ ବାବୁ ଦୁର୍ଯ୍ୟୋଧନ ଦାସ ପୁରୀର ଡେପୁଟୀ କଲେକ୍ଟର ତୃତୀୟ ଶ୍ରେଣୀର ଡେପୁଟୀ କଲେକ୍ଟର ହୋଇଅଛନ୍ତି । ଏଥିରେ ମାସିକ ଟ ୫୦୦ ଙ୍କା ବେତନ ପାଇବେ ।

## ( ୪ର୍ଥ ଭାଗ, ୯ । ୧୦ । ୧୮୭୯, ସଂଖ୍ୟା ୪୧ )

ସାପ୍ତାହିକ ସମ୍ବାଦ

୧୯୯ । ବାଲେଶ୍ୱର ବୋଧଦାୟିନୀ ସମୁଦ୍ରଯାତ୍ରା ବିଷୟରେ ଏକ ପ୍ରସ୍ତାବ ଲେଖି ସପ୍ରମାଣ କରିଅଛନ୍ତି ଯେ ପୂର୍ବକାଳରେ ହିନ୍ଦୁମାନେ ଯୋଡାରୋହଣ ପୂର୍ବକ ସମୁଦ୍ରରେ ଗମନାଗମନ କରୁଥିଲେ । ଅତଏବ ବର୍ତ୍ତମାନ ତାହା କିପରି ବୋଲ ଯାଇ ନପାରେ ।

× × ×

## ( ୪ର୍ଥ ଭାଗ, ୧୩ । ୧୧ । ୧୮୭୪, ସଂଖ୍ୟା ୪୪ )

### ୨୦୦ । ପାରଳୁଦ ରଜାଙ୍କୁ ପଦ ପ୍ରଦାନ

ଗତ କାଲ ପାରଳୁଦ ରଜାଙ୍କୁ ପଦ ପ୍ରଦାନ ଦରବାର କାର୍ଯ୍ୟ ନିର୍ବାହ ହୋଇଗଲା । ସବିଶେଷ ପରେ ପ୍ରକାଶ କରିବା । ଶୁଣି ଦୁଃଖିତ ହେଲୁଁ ଯେ ଉପର ଗଡ଼ଜାତ କ ତଳ ଗଡ଼ଜାତର କୌଣସି ରଜା ଆସିଲେ ନାହିଁ । ଏଥିର କାରଣ କି ଜଣା ଯାଉ ନାହିଁ । ସ୍ୱଦେଶବାସିମାନେ ଏରୂପ କରଗ୍ରାହୀ ହେଲେ ଏଠାରେ କିରୂପ ମଙ୍ଗଳ ହେବ ।

## ( ୪ର୍ଥ ଭାଗ, ୨୦ । ୧୧ । ୧୮୭୪, ସଂଖ୍ୟା ୪୫ )

### ୨୦୧ । ପାରଳୁଦ ରଜାଙ୍କୁ ପଦ ପ୍ରଦାନର ଦରବାର ।

ଦୁର୍ଭିକ୍ଷର ଦୁର୍ଘଟନାମାନ ମନେକଲେ ଯେମନ୍ତ ହୃଦୟ ବିଦୀର୍ଣ୍ଣ ହୁଅଇ ତଦ୍ଧିଜାତ ହୋଇଥିବା କେତୋଟି ସୁଫଳ ଦର୍ଶନରେ ଅନେକାଂଶ ମନର ଦୁଃଖ ପାଶୋରଣ ହୁଅଇ । ଗତବର୍ଷ ପ୍ରାୟ ଏହି ସମୟରେ ଢେଙ୍କାନାଳର ରଜାଙ୍କୁ ମହାରାଜାପଦ ଦେବା ନିମିତ୍ତ ଗୋଟିଏ ବୃହତ୍ ଦରବାର ହୋଇଥିଲା ଏବଂ ଏବର୍ଷ ଗତ ସପ୍ତାହ ଶୁକ୍ରବାର ପାରଳୁଦର ରଜାଙ୍କୁ କମ୍ପାନିୟନ ଷ୍ଟାର ଅଫ ଇଣ୍ଡିଆ ପଦ ଦେବା ସକାଶେ ଅନ୍ୟ ଏକ ଦରବାର ହୋଇଗଲା ।

× × ×

## ( ୪ର୍ଥ ଭାଗ, ୧୧ । ୧୨ । ୧୮୭୪, ସଂଖ୍ୟା ୪୮ )

### ସାପ୍ତାହିକ ସମ୍ବାଦ ।

### ୨୦୨ । ହଜାରିବାଗ ଓ ଲୋହାରଡ଼ାଗାରେ ହିନ୍ଦୀ ପ୍ରଚଳନ ।

ଛୋଟନାଗପୁର କମିଶନର କର୍ଣ୍ଣେଲ ଡାଲଟନ ସାହେବ ବୋଲୁଛନ୍ତି ଯେ ହଜାରିବାଗ ଏବଂ ଲୋହାରଡ଼ାଗା ବିଚାରାଳୟ ସକଳରେ ଉର୍ଦ୍ଦୁ ପରିବର୍ତ୍ତେ ହିନ୍ଦୀ ପ୍ରଚଳିତ କରା ଉଚିତ । ଲେଫ୍ଟେନେଣ୍ଟ ଗବର୍ଣ୍ଣର ମହୋଦୟ ଏହି ପ୍ରସ୍ତାବର ସବିଶେଷ ବିଚାର କରିବାକୁ ସମ୍ମତ ହୋଇଅଛନ୍ତି ।

## ( ୪ର୍ଥ ଭାଗ, ୧୮ । ୧୨ । ୧୮୬୯, ସଂଖ୍ୟା ୪୯ )

### ସାପ୍ତାହିକ ସମ୍ବାଦ

୧୦୩ । ଏଡୁକେଶନ ଗେଜେଟ ଲେଖନ୍ତି ଯେ ଓଡ଼ିଶା ଦୁର୍ଭିକ୍ଷ ସମୟରେ ଯେଉଁ ଟଙ୍କା ସଂଗୃହୀତ ହୋଇଥିଲା ତାହାର ଟ ୨୨୦୨୬୩ ଙ୍କା ବଙ୍ଗଳା ବ୍ୟାଙ୍କରେ ଏବଂ ଟ ୧୯୦୦୨୧ ଙ୍କା ଓଡ଼ିଶା ପ୍ରଦେଶ ବଣ୍ଟନ ଟ୍ରେଜରିରେ ଜମା ଅଛି । ଅର୍ଥାତ୍ ସର୍ବସୁଦ୍ଧା ଟ ୪୬୦୨୮୪ ଙ୍କା ରାଜକୋଷଭୁକ୍ତ କରି ଅନାଥମାନଙ୍କ ପ୍ରତିପାଳନାର୍ଥେ ଯାହା ଦେଉ ତାହା ସାଧାରଣ ଧନାଗାରର ଦାୟ୍ୟା ହେଉ । ଗବର୍ଣ୍ଣମେଣ୍ଟ ଦୁର୍ଭିକ୍ଷ ସମୟରେ ଯେଉଁ ଚାଉଳ ପ୍ରେରଣ କରିଥିଲେ ତାହାର ମୂଲ୍ୟ ଦଶଲକ୍ଷ ଟଙ୍କା । ସୁତରାଂ ଅନାଥମାନଙ୍କ ପ୍ରତିପାଳନରେ ଯେବେ ଟ ୨୨ ଲକ୍ଷ ଟଙ୍କାର ସୁଧ ବାୟିତ ହେବ ଧରାଯାଏ ତେବେ ଓଡ଼ିଶାର ଦୁର୍ଭିକ୍ଷ ନିବାରଣରେ ଗବର୍ଣ୍ଣମେଣ୍ଟ ବ୍ୟୟ ପ୍ରାୟ ଟ ୮ ଲକ୍ଷ ଟଙ୍କା ହେଲା ।

## ( ୫ମ ଭାଗ, ୧୫ । ୧ । ୧୮୭୦ ମସିହା, ସଂଖ୍ୟା ୩ )

୧୦୪ । ସନ ୧୮୬୯ ସସିହା

( ଗତ ପ୍ରକାଶିତର ଅବଶିଷ୍ଟ )

× × × ×

× × × × ×

ଆମ୍ଭେମାନେ ବିଗତ ବର୍ଷକୁ ଉନ୍ନତିର ବର୍ଷ ବୋଲି ଜ୍ଞାନ କରୁଅଛୁଁ ଏବଂ ସେ ଉନ୍ନତିର ଭାଗୀ ଉତ୍କଳଦେଶ ଯେମନ୍ତ ହୋଇଅଛି ଏମନ୍ତ ଭାରତବର୍ଷର ଆଉ କୌଣସି ସ୍ଥାନରେ ଲକ୍ଷିତ ହେଉ ନାହିଁ । ବାଣିଜ୍ୟ ଓ କୃଷିର ଉପକାର କାରଣ ଗବର୍ଣ୍ଣମେଣ୍ଟ ଇରିଗେସନ କମ୍ପାନୀଠାରୁ ଉତ୍କଳର ସମୁଦାୟ ଜଳ ସେଚନ କାର୍ଯ୍ୟ କ୍ରୟ କରି କେନ୍ଦ୍ରାପଡ଼ାର ନାଳ ହାଇଲେବଲ କାନାଲ ବ୍ରାହ୍ମଣୀଯାଏ ସମ୍ପନ୍ନ କରିଅଛନ୍ତି । ଏହିରୂପେ ଏବଂ ନାବିଗେସନ କମ୍ପାନୀଙ୍କୁ ପ୍ରବର୍ତ୍ତାଇ ପ୍ରତିମାସରେ ଦୁଇ ଗୁରିଥର ବନ୍ଦରଠାରେ ଜାହାଜ ଲଗାଇବାରୁ କଲିକତା କିମ୍ବା ଦକ୍ଷିଣ ଦେଶର ଦ୍ରବ୍ୟାଦି ଓ ଲୋକ ଆସିବା ଏବଂ ଏଠାରୁ ଅନ୍ୟ ସ୍ଥାନକୁ ଯିବାର ସମ୍ପୂର୍ଣ୍ଣ ସୁବିଧା ହୋଇଅଛି । ଏ ଉପାୟଦ୍ୱାରା କଲିକତାର ଆଠଦିନ ମଧ୍ୟରେ କଟକକୁ ଦ୍ରବ୍ୟାଦି ଆସୁଅଛି ଓ ବାଣିଜ୍ୟକାର୍ଯ୍ୟ ଯେପରି ବଢ଼ୁଅଛି

ତାହା କାହାରିକୁ ଅବିଦିତ ନାହିଁ । ଅତଏବ ଲୋକମାନେ ସୁଯୋଗ ପାଇ ବାଣିଜ୍ୟ କାର୍ଯ୍ୟରେ ପ୍ରବୃତ୍ତ ହେବାର ଅଚିରେ ଏଠାର ମଙ୍ଗଳ ହେବାର ଆଶା ହେଉଅଛି । ଏଥିରୁ ସୁଯୋଗ ପାଇ ବିଗତବର୍ଷ ବହୁକାଳ ସ୍ମରଣ ରହିବ ।

ଶିକ୍ଷା ସମ୍ବନ୍ଧରେ ବିଗତ ବର୍ଷର ଯେ ଉନ୍ନତି ହୋଇଅଛି ତାହା ବାର୍ଷିକ ପରୀକ୍ଷାର ପ୍ରମାଣ । ହାଇସ୍କୁଲର ଫଳ ଏହିବର୍ଷ ପ୍ରଶଂସ୍ନୀୟ ହେଲା ଓ ତାହା ଅଳ୍ପ ହେଲେହେଁ ଅଧିକ ମଣିବାକୁ ହେବ । ଶିକ୍ଷା ବିଷୟରେ ପ୍ରଧାନ ଉନ୍ନତି ଏହିଯେ ଏତେ-କାଳ ଉତ୍କଳ ଓ ବଙ୍ଗଭାଷା ଯେଉଁ ବିବାଦ ଥିଲା ତାହା ଏବର୍ଷ ଭଞ୍ଜନ ହେଲା ! ସ୍ୱାର୍ଥପର ଲୋକମାନେ ଯେ ଯାହା ବୋଲନ୍ତୁ ଗବର୍ଣ୍ଣମେଣ୍ଟ ସୁବିଚାର କରି ଉତ୍କଳରେ ଓଡ଼ିଆଭାଷା ପଠନ ହେବାର ଆଜ୍ଞା ଦେଇଅଛନ୍ତି ଏବଂ ଉତ୍କଳ ପୁସ୍ତକର ବିଚାର କମିଟି କମିଟି ନିଯୁକ୍ତ କରି ଆମ୍ଭମାନଙ୍କର ବହୁକାଳର ଆଶା ପୂର୍ଣ୍ଣ କରିଅଛନ୍ତି । ଏପରି ଜଣେ ଉତ୍କଳୀୟ ଏବର୍ଷ ଡେପୁଟି ଇନସ୍ପେକ୍ଟର କର୍ମରେ ନିଯୁକ୍ତ ହୋଇଅଛନ୍ତି । ଏହା ଛଡ଼ା ଗୋଟିଏ ବାଳକ ବିଦ୍ୟାଳୟ ଓ କାଳୀପଦ ବାବୁଙ୍କ ନାଇଟ ସ୍କୁଲ ଏବର୍ଷର ଶୁଭଚିହ୍ନସ୍ଥାନରେ ଗଣ୍ୟ କରିବାକୁ ହେବ ।

ସାଧାରଣ ଉତ୍କର୍ଷ ସାଧନ ପକ୍ଷରେ କଟକରେ ସ୍ଥାପିତ ଉତ୍କଳୋଲ୍ଲାସିନୀ ସଭା ଏକ ମହତ୍ କାର୍ଯ୍ୟ ଅଟଇ । ଏଥିରେ ଅସ୍ମଦ୍ଦେଶୀୟ ବ୍ରାହ୍ମଣ ପଣ୍ଡିତ ଓ ଯୁବା ବୃଦ୍ଧ ସମସ୍ତେ ବସି ନାନା ସାମାଜିକ ହିତକର ବ୍ୟାପାରର ଚର୍ଚ୍ଚା କରନ୍ତି । ଏସଭା ସ୍ଥିରମତ ହେଉଥିଲେ ଅନେକ ମଙ୍ଗଳ ହେବ ।

ସମ୍ବାଦ ପତ୍ର ବୃଦ୍ଧି ବିଷୟରେ ଏବର୍ଷକୁ ସବୁଠାରୁ ଅଧିକ କୁହାଯିବ ମାତ୍ର ଏଠାରେ ବିବେଚନା ହୁଅଇ ଯେ ସନ ୧୮୬୯ ମସିହା ବାହାସ୍ତରିଆ ପାଳିଛି ପାଇଅଛି ସେଥିର କାରଣ ଏହି ଯେ ବାହାସ୍ତରିଆ ଲୋକର ଯେମନ୍ତ ଚିତ୍ତ ସ୍ଥିର ନଥାଏ ସେହିପରି ଅଣସ୍ତରିଆ ସମ୍ବାଦ ପତ୍ର ସ୍ଥିରତା ଦେଖା ଗଲା ନାହିଁ । ପାଞ୍ଚଖଣ୍ଡ ସମ୍ବାଦ-ପତ୍ର ଏବର୍ଷରେ ଜନ୍ମଗ୍ରହଣ କଲେ ସେଥିରୁ ଦୁଇଖଣ୍ଡ ଇଂରାଜୀ ପତ୍ର ବିନାଶ ପାଇ ଅଛନ୍ତି ଆଉ ତିନିଖଣ୍ଡ ବର୍ତ୍ତମାନ ଅଛନ୍ତି କିନ୍ତୁ ନିଯ୍ମିତ ଦିବସରେ ପ୍ରକାଶ ହେବାର ଦେଖା ନଯାଏ । ଯାହା ହେଉ ଆମ୍ଭେମାନେ ପ୍ରାର୍ଥନା କରୁଁ ଯେ ଏ ତିନିଖଣ୍ଡି କାଗଜ ଦୀର୍ଘ-କାଳ ସ୍ଥାୟୀ ହୋଇ ଉତ୍କଳର ହିତସାଧନ କରନ୍ତୁ ।

ଧର୍ମ ବିଷୟରେ ମଧ୍ୟ ଏବର୍ଷ ବିଲକ୍ଷଣରୂପେ ସ୍ମରଣୀୟ ଅଟେ । ଏଥିରେ ପାଠକମାନେ ଏମନ୍ତ ଜ୍ଞାନ କରିବେ ନାହିଁ ଯେ ଆମ୍ଭେମାନେ ପୁଧ ସାଇଲେ ମହାପ୍ରଭୁଙ୍କ କଥା ପୁନର୍ବାର ଉତ୍ଥାପନ କରୁଅଛୁଁ । ସେକଥା ଖଣ୍ଡଦନର ଥିଲା ବର୍ତ୍ତମାନ ଲୋପ

ପାଇଲଣି । ଉତ୍କଳ ବ୍ରାହ୍ମସମାଜ ସ୍ଥାପନ ଓ ତଦ୍ଦ୍ୱାର ହାଟ ବଜାରରେ ବ୍ରାହ୍ମଧର୍ମର ଚର୍ଚ୍ଚାର କଥା ଆମ୍ଭମାନଙ୍କର ଲେଖିବାର ଉଦ୍ଦେଶ୍ୟ ଅଟଇ । ଧର୍ମ ଏତେ ସସ୍ତା ହେବ ବୋଲି ଆମ୍ଭମାନଙ୍କୁ ଜଣାନଥିଲା । ପ୍ରାୟ ମାସେକାଳ ଏହା କଟକର ନାନା ବଜାରରେ ଦେଖାଗଲା କିନ୍ତୁ ସଂପ୍ରତି ତାହା ଆଉ ନାହିଁ । ନବ ଉତ୍ସାହୀ ଯୁବକମାନେ ଆପଣା କାର୍ଯ୍ୟର ଫଳ ଜାଣିପାରି ଆଉ ବଜାରକୁ ବାହାର ନାହାନ୍ତି । ଧର୍ମ ଘୋଷଣା କରିବା ସକଳ ଧାର୍ମିକ ଲୋକଙ୍କର କର୍ତ୍ତବ୍ୟ ସନ୍ଦେହ ନାହିଁ ମାତ୍ର କାଳପାତ୍ର ବିବେଚନା ରହିତ ହୋଇ କାର୍ଯ୍ୟ କଲେ ତାହା ନିଷ୍ଫଳ ହୁଅଇ । ଏହି ହେତୁରୁ ଆମ୍ଭେମାନେ ଏହାର ପୋଷକତା କରୁ ନାହୁଁ ।

## ସାପ୍ତାହିକ ସମ୍ବାଦ

୨୦୫ । କଟକ ଷ୍ଟାଣ୍ଡାର୍ଡ ନାମରେ ଅର୍ଣ୍ଣେଷ୍ଟ ସାହେବ ଯେଉଁ ଅପବାଦର ମୋକଦ୍ଦମା କରିଅଛନ୍ତି ତାହା ନିଷ୍ପତ୍ତି ହେବାପାଇଁ ଆଗାମୀ ବୁଧବାର ଦିନ ନିର୍ଦ୍ଦିଷ୍ଟ ହୋଇଅଛି । ମୋକଦ୍ଦମା ଶ୍ରୀ ଟେଲର ସାହେବ ଡିପୋଟି ମାଜିଷ୍ଟ୍ରେଟଙ୍କ ବିଚାରାଧୀନରେ ଅଛି । ମୋକଦ୍ଦମାର ହେତୁ ଏହି ଯେ ଉକ୍ତ ପତ୍ରିକାରେ ଲେଖା ଥିଲା କି ଏକଜଣ ଫିରିଙ୍ଗି କେତେଜଣ ବଙ୍ଗାଳୀ ଓ ଓଡ଼ିଆଙ୍କୁ ଭୋଜନ ଓ ନାଚର ନିମନ୍ତ୍ରଣ କରିଥିଲେ । ସେ ବ୍ୟକ୍ତି ବହୁତ ମଦ୍ୟପାନରେ ଠରିଥିଲେ ଏବଂ ନାଚ ସ୍ଥାନରେ ଏମନ୍ତ ଭାଷା ବ୍ୟବହାର ହୋଇଥିଲା ଯେ ଭଦ୍ର ସମାଜରେ ତାହା ଦୂଷଣୀୟ ଅଟଇ । ଅର୍ଣ୍ଣେଷ୍ଟ ସାହେବ ଆପଣାକୁ ସେହି ଫିରିଙ୍ଗି ବୋଲି ପରିଚୟ ଦେଇ ମୋକଦ୍ଦମା ଚଳାଉ ଅଛନ୍ତି । ମୁଦ୍ଦେଇ ଗୁହାମାନେ କେହି ଅର୍ଣ୍ଣେଷ୍ଟ ସାହେବ ମଦ୍ୟପାନରେ ଉନ୍ମତ୍ତଥିବା କିମ୍ବା କୁଭାଷା ପ୍ରୟୋଗ କରିବାର କହି ନାହାନ୍ତି କେବଳ ଅନ୍ୟ ଲୋକମାନେ କୁଭାଷା ବୋଲିବାର ଉଚ୍ଚେଶି-କହି ଅଛି ।

## (୫ମ ଭାଗ, ୨୨।୧।୧୮୭୦, ସଂଖ୍ୟା ୪)

### ସାପ୍ତାହିକ ସଂବାଦ

୨୦୬ । କଟକ ଷ୍ଟାଣ୍ଡାର୍ଡ ।— କଟକ ଷ୍ଟାଣ୍ଡାର୍ଡ ପତ୍ରିକା ନାମରେ ମୋକଦ୍ଦମା ହେବାର ଗତ ସପ୍ତାହର ତାହା ବିଚାର ହୋଇ ନାହିଁ ।

## (୫ମ ଭାଗ, ୨୯।୧।୧୮୭୦, ସଂଖ୍ୟା ୫)

୨୦୭ । କଟକ ଷ୍ଟାଣ୍ଡାର୍ଡ ନାମରେ ମକଦ୍ଦମା :— ଗତ ସୋମବାର ଏହା

କମ୍ପାନି ହେଲା । ପତ୍ରିକାର ଜଣେ ମୁଦ୍ରାକର ଓ ପ୍ରଚାରକ ଓ ସମ୍ପାଦକ ଲଏବ୍ ସାହେବ ଉପରେ ଦୋଷ ସାବ୍ୟସ୍ତ ହୋଇ ତାହାଙ୍କ ଉପରେ ୫ ୧୦୦ ଙ୍କା ଅର୍ଥଦଣ୍ଡ ଓ ଯେଉଁ ବ୍ୟକ୍ତ ତାହାଙ୍କୁ ସମ୍ବାଦ ଦେଇଥିଲା ତାହା ଉପରେ ୫ ୨୦ ଙ୍କା ଓ ଅପର ଏକ ବ୍ୟକ୍ତ ଯେ ସମ୍ବାଦକୁ ସଂଶୋଧନ ପୂର୍ବକ ସହାୟତା କରିଥିବାରୁ ତାହା ଉପରେ ମଧ୍ୟ ୫ ୨୦ ଙ୍କା ଅର୍ଥଦଣ୍ଡର ଆଦେଶ ହେଲା ।

## ( ୪ର୍ଥ ଭାଗ, ୪ । ୨ । ୧୮୭୦, ସଂଖ୍ୟା ୭ )

W. C. Lacey । ୱଇଲିଅମ କେର୍ ଲେସି ସାହେବ ।

ଆମ୍ଭେମାନେ ଅତ୍ୟନ୍ତ ଶୋକ ସହିତ ପାଠକମାନଙ୍କୁ ଜଣାଉ ଅଛୁଁ ଯେ ଗତ ସୋମବାର ଦିନ ଦୁଇପ୍ରହର ସମୟରେ ୱଇଲିଅ କେର୍ ଲେସି ସାହେବ ଚିରକାଳ ନିମନ୍ତେ ସଂସାରରୁ ବିଦାୟ ହେଲେ । ଏହାଙ୍କ ମୃତ୍ୟୁରେ ଏ ନଗରବାସିମାନେ କେତେଦୂର ଦୁଃଖିତ ହୋଇଅଛନ୍ତି କହିବାର ନୁହଇ । ଅଲକ୍ଷାଳ କଲେରା ରୋଗ ହେବା ଉତ୍ତାରୁ ଏ ଦାରୁଣ ଦୁର୍ଘଟନା ହେବ ଏହା ସ୍ୱପ୍ନର ଅଗୋଚର, ବିଶେଷରେ ତାହାଙ୍କର ବୟସ ଅଧିକ ନଥିଲା । ଗୃହଶବର୍ତ୍ତର ଅଧିକ ଅନୁମାନ ହେଉନାହିଁ ଏବଂ ଦେଖିବାକୁ ଉତ୍ତମ ବଳକାୟ ଥିଲେ କିନ୍ତୁ ନିଦାନ ପ୍ରବେଶ ହେଲେ ରକ୍ଷା କରନ୍ତା କାହାର ଆୟୁଷ ? ବଞ୍ଚିଥିବା ଲୋକଙ୍କୁ ଶୋକ ସାଗରରେ ମଗ୍ନକରି ଆପେ ନିଶ୍ଚିନ୍ତ ହୋଇ ଚାଲିଗଲେ ।

କେର୍ ଲେସିଙ୍କର ପରିଚୟ ଦେବା ବାହୁଲ୍ୟ ମାତ୍ର । ସେ ଆବାଲ୍ୟ କାଳରୁ ମୃତ୍ୟୁ ପର୍ଯ୍ୟନ୍ତ ଓଡ଼ିଶାରେ କାଳ ହରଣ କରିବାରୁ ଏଠାରେ ପ୍ରାୟ ସମସ୍ତେ ତାହାଙ୍କୁ ଜାଣନ୍ତି ଓ ଯେ ତାହାଙ୍କୁ ଜାଣେ ସେ ତାହାଙ୍କ ନିଷ୍କପଟ ସ୍ନେହରେ ମୋହିତ । ସେ ଇଂରେଜ ଥିଲେହେଁ ଅନେକ ଦେଶୀୟ ଲୋକମାନେ ତାହାଙ୍କୁ ଓଡ଼ିଆ ଜ୍ଞାନ କରୁଥିଲେ ଓ ଯେ ତାହାଙ୍କ ପାଖକୁ ଯାଉଥିଲା ଓଡ଼ିଆରେ ତାହାକୁ ଅନ୍ୟ ଭାଷାରେ ସମ୍ବୋଧନ କରୁନଥିଲେ । ଅଧୀନସ୍ଥ ଲୋକଙ୍କ ଉପରେ ତାଙ୍କର ଯେମନ୍ତ ଦୟା ଓ ସରଳ ଭାବ-ଥିଲା ତାହା ଅକଥନୀୟ ଓ ବହୁକାଳରେ ବିସ୍ମରଣ ହେବାର ନୁହଇ । ମଙ୍ଗଳବାର ଦିନ ତାହାଙ୍କ କବର ହେବାକାଳରେ ଯେ ବ୍ୟକ୍ତି ସେଠାରେ ଉପସ୍ଥିତ ଥିଲେ ସେହି ବ୍ୟକ୍ତି ଜାଣେ କେ ଲେସି ସାହେବଙ୍କୁ ଅନେକ ଲୋକେ କେଡ଼େ ସ୍ନେହ ଓ ମାନ୍ୟ କରୁଥିଲେ । ଇଂରେଜମାନେ ତ ସ୍ୱଜାତୀୟ ବୋଲି ଅବଶ୍ୟ ସେଠାରେ ଉପସ୍ଥିତ ରହନ୍ତେ କିନ୍ତୁ ଏତେ ହିନ୍ଦୁ, ମୁସଲମାନ ଓ ଅନ୍ୟାନ୍ୟ କଳାଲୋକଙ୍କର କବରସ୍ଥାନକୁ ଯିବାର କି ହେତୁ ଥିଲା ? ଏଥିର ଏକମାତ୍ର କାରଣ ଏହି ଯେ ଲେସି ସାହେବ ଆପଣା ଗୁଣରେ ସମସ୍ତଙ୍କର ମନ କିଣି ନେଇଥିଲେ ।

ଲେସି ସାହେବ କେବଳ ସରକାରୀ କାର୍ଯ୍ୟାଳୟରେ ଯାହା କରିଅଛନ୍ତି ତାହା କମିଶ୍ ପ୍ରଶଂସନୀୟ ଏମନ୍ତ ନୁହଇ । ବାସ୍ତବରେ ଯେ ଉତ୍କଳ ଭାଷାଶିକ୍ଷା ସୁବିଧା ଉଦ୍ଦେଶରେ କେତେକଶ୍ରେଣି ଉତ୍ତମଗ୍ରନ୍ଥ ରଚନା କରି ଏଦେଶର ଜଣେ ହିତୈଷୀ ବୋଲି ଗଣ୍ୟ ହୋଇଅଛନ୍ତି । ଏପରି ଉତ୍କଳ ଗବର୍ଣ୍ଣମେଣ୍ଟ ଗଜେଟର ଆଦି କର୍ତ୍ତା ଅଟନ୍ତି । ଏହାଙ୍କ ମୃତ୍ୟୁରେ ଗବର୍ଣ୍ଣମେଣ୍ଟ ଜଣେ ଉତ୍କୃଷ୍ଟ କର୍ମଚାରୀ ହରାଇ ଅଛନ୍ତି ।

## ( ୫ମ ଭାଗ, ୧୨।୨। ୧୮୭୦, ସଂଖ୍ୟା ୭ )

୨୯ । ଉତ୍କଳ ଅନୁବାଦକ ପଦ ।

ଯେଉଁ ଦୁଃଖଜନକ ଦୁର୍ଘଟନା ହେତୁରୁ ଏପଦ ଶୂନ୍ୟ ରହିଅଛି ତାହା ଗତ ସପ୍ତାହରେ ବ୍ୟକ୍ତ କରିଅଛୁଁ । ଶ୍ରୀ ଲେସି ସାହେବ ଏକର୍ମ ସକାଶେ ଯେ ପ୍ରକାର ଉପଯୁକ୍ତ ଥିଲେ ତାହା ସର୍ବସାଧାରଣଙ୍କୁ ବିଦିତ ଅଛି । ସେ ବିଷୟ ଆଉ କିଛି ଉଲ୍ଲେଖ କରିବା ପ୍ରୟୋଜନ ନାହିଁ । ଆଉ ଗୋଟିଏ ସେରୂପ ଉପଯୁକ୍ତ ଲୋକ ଗବର୍ଣ୍ଣମେଣ୍ଟଙ୍କୁ ପ୍ରାପ୍ତ ହେବା ସହଜ ନୁହଇ । ଏହା ବୋଲି କାର୍ଯ୍ୟ ସ୍ଥଗିତ ରହିବ ଏମନ୍ତ ନୁହେ । ଇଂରାଜ କାହାରିକୁ ଦେବାର ହେଲେ ମିସ୍ତରଙ୍କ ମଧ୍ୟରେ କେହି ମିଳ ପାରନ୍ତି ଏବଂ ଦେଶୀୟ କର୍ମଚାରୀ ରଖିବାର ହେଲେ ସେଥିର ଅଭାବ ନାହିଁ କିନ୍ତୁ ବ୍ୟକ୍ତିବିଶେଷର ଯୋଗ୍ୟା-ଯୋଗ୍ୟର କଥା ଆମ୍ଭମାନଙ୍କର କହିବାର ଉଦ୍ଦେଶ୍ୟ ନୁହଇ । ଆଜିଯାଏ ଏ ପଦଦ୍ୱାରା କି ଲାଭ ହେଉଅଛି ଓ ତାହା ରଖିବାର କର୍ତ୍ତବ୍ୟ କି ନୁହଇ ଓ ରହିଲେ କିରୂପ ଚଳିଲେ ସେଥିରୁ ଉପକାର ହେବ ଏହି ସମସ୍ତ ବିଚାର କାରଣ ଆମ୍ଭେମାନେ ଏ ପ୍ରସ୍ତାବର ଅବତାରଣା କରିଅଛୁଁ ।

ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ଗବର୍ଣ୍ଣମେଣ୍ଟ ପ୍ରଚରିତ ଆଇନ କାନୁନ, ସାଧାରଣ ବିଜ୍ଞାପନୀ ଓ ନାନା ବିଷୟକ ଆଜ୍ଞା ଏବଂ ବୋର୍ଡ଼ ରେବିନ୍ୟୁ ଓ ହାଇକୋର୍ଟ ଇତ୍ୟାଦିର ସର୍କୁଲର ଅର୍ଡ଼ର ଓ ବିଶେଷ ନିସ୍ପତ୍ତିମାନ ଅବଶ୍ୟ ଲୋକଙ୍କୁ ଜଣାଇବା ହେତୁ ଦେଶୀୟ ଭାଷାରେ ଅନୁବାଦ କରି ପ୍ରଚାର କରିବା କାରଣ ଏପଦ ଓ ତହିଁ ସଙ୍ଗେ ୨ ଉତ୍କଳ ଗବର୍ଣ୍ଣମେଣ୍ଟ ଗଜେଟର ସୃଷ୍ଟି ହୋଇଥିଲା ଓ ତଦବଧି ପ୍ରତି ସପ୍ତାହରେ ଗଜେଟ ସ୍ଥାଗାହୋଇ ଆସୁଅଛି ମାତ୍ର ଏହାଦ୍ୱାରା ଉକ୍ତ ଉଦ୍ଦେଶ୍ୟମାନ କି ପର୍ଯ୍ୟନ୍ତ ଫଳବାନ ହୋଇଅଛି ତାହା ବ୍ୟକ୍ତ କରିବାକୁ ଗଲେ ଆମ୍ଭମାନଙ୍କୁ ବାଧ୍ୟ ହୋଇ ସ୍ୱୀକାର କରିବାକୁ ହେଉଅଛି ଯେ ଉତ୍କଳ ଗଜେଟ ଏକପ୍ରକାର ନିଷ୍ଫଳ କାର୍ଯ୍ୟ ହୋଇଅଛି । ହୁଏତ ଯେପ୍ରକାର ବ୍ୟୟଦ୍ୱାରା ଏହା ମୁଦ୍ରାଶାଳୀରେ ଚଳିପାରେ ସେ ପ୍ରକାର ବ୍ୟୟ

ଗବର୍ଣ୍ଣମେଣ୍ଟଙ୍କଠାରୁ ପ୍ରାପ୍ତିର ଚେଷ୍ଟା ନହେବାରୁ ନୋହିଲେ ଅନେକ ଲୋକମାନେ ଏହା ଗ୍ରହଣ କରିବାକୁ ଆଗ୍ରହ ପ୍ରକାଶ ନକରିବାରୁ ଏହାର ଅବସ୍ଥା ମନ୍ଦ ହୋଇଅଛି । ଆମ୍ଭେ ଗେଜେଟର ପୂର୍ବାବସ୍ଥାର ବିଶେଷ ରୂପେ ଅବଗତ ନ ଥିବାରୁ ସେଥି ସମ୍ପର୍କରେ କିଛି କହି ନପାରୁଁ କିନ୍ତୁ ପ୍ରାୟ ଏକବର୍ଷ ହେଲା ଆମ୍ଭେମାନେ ଏ ଗେଜେଟ ପାଉଅଛୁଁ । ଏଥିରେ ଦେଖୁଅଛୁଁ ଯେ କାଗଜ କୌଣସି ସପ୍ତାହରେ ଯଥାସମୟରେ ବାହାରେ ନାହିଁ ଓ ଯେବେ ବାହାରେ ସେଥିରେ ଅତିପୁରାତନ କଥାମାନ ଲେଖାଯାଏ । ସୁତରାଂ ଏପରି କାଗଜ କ୍ରୟ କରିବାକୁ ଯେ ଲୋକେ ସ୍ୱଭାବତଃ ଅସମ୍ମତ ହେବେ ଏଥିରେ ବିଚିତ୍ର କି ହେଲା । ଏହା ମଧ୍ୟ ବୋଲିବାର ଉଚିତ ଯେ ଅନେକ ଲୋକମାନେ ସମ୍ବାଦ ପତ୍ରାଦି କ୍ରୟକରି ପାଠ କରିବାର ହିତାହିତ ଉତ୍ତମରୂପେ ବୁଝିପାରୁ ନାହାନ୍ତି । ଯେବେ ସେରୂପ ବୁଝି କାର୍ଯ୍ୟ କରନ୍ତେ ତାହାହେଲେ ଗେଜେଟର ଟଙ୍କା ଉସୁଲ କାରଣ ଜିଲ୍ଲାର କଲେକ୍ଟରଙ୍କୁ ଆୟାସ ସ୍ୱୀକାର କରିବାକୁ ପଡ଼ନ୍ତା ନାହିଁ ।

ଉତ୍କଳ ଗେଜେଟ ପ୍ରତି ଆଗ୍ରହ ଊଣା ହେବାର ଅନ୍ୟ କାରଣ ଏହି ଯେ ବର୍ତ୍ତମାନ ସମସ୍ତ ସରକାରୀ କାର୍ଯ୍ୟାଳୟରେ ଇଂରେଜୀ ଭାଷାରେ ଶିକ୍ଷା ପାଇଥିବା ବ୍ୟକ୍ତିଙ୍କ ସଂଖ୍ୟା ଦିନ ଦିନ ବୃଦ୍ଧି ହେଉଅଛି ଓ ଯେ ସମସ୍ତ ଗବର୍ଣ୍ଣମେଣ୍ଟ ବିଧି ଆଜ୍ଞା ପ୍ରଚାର ହେଉଅଛି ତାହା ଇଂରେଜୀରେ ଆଗେ ଆସିବାରୁ ସେଥିରୁ ଅବଗତ ହୋଇ କାର୍ଯ୍ୟ କରନ୍ତି ସୁତରାଂ ଆଉ ଉତ୍କଳ ଅନୁବାଦର ପୂର୍ବ ପ୍ରାୟ ପ୍ରୟୋଜନ ହୁଅଇ ନାହିଁ ମଧ୍ୟ ବଙ୍ଗଳା ଜାଣିବା ବ୍ୟକ୍ତି ନ୍ୟୂନାଧିକରେ ସକଳ ମହକୁମାରେ ଥିବାରୁ ବଙ୍ଗଳା ଗେଜେଟ ଦ୍ୱାରା ଅନେକ ସାହାଯ୍ୟ ହୁଅଇ । ସୁତରାଂ ଗବର୍ଣ୍ଣମେଣ୍ଟ ମହକୁମାମାନଙ୍କରେ କି ସଦରରେ ଉତ୍କଳ ଗେଜେଟ ବିସ୍ତର ପ୍ରୟୋଜନୀୟ ଥିବାର ପୂର୍ବେ ସମ୍ଭାବନା ଥିଲା ସମ୍ପ୍ରତି ସମ୍ପୂର୍ଣ୍ଣ-ରୂପେ ଅପ୍ରୟୋଜନୀୟ ହୋଇଅଛି । ଏ ଗେଜେଟ ମହକୁମାର ଅମଲାମାନେ ଥରେ ମାତ୍ର ପଢ଼ନ୍ତି କି ନାହିଁ ସନ୍ଦେହ । ବାହାର ଲୋକ ପ୍ରୟୋଜନୀୟ କଥାମାନ ନାନାଦି ଉପାୟ ଯଥା ସମ୍ବାଦ ପତ୍ରଦ୍ୱାରା କିମ୍ବା ଅମଲାଙ୍କ ମୁଖରୁ ଆଗରୁ ଶୁଣିଥିବାରୁ ଆଉ ଗେଜେଟ ପଢ଼ିବାକୁ ବଢ଼ କରି ଯାଉନାହାନ୍ତି ନାହିଁ । ମଧ୍ୟ ସବୁକଥା ଏହାଙ୍କ ଜାଣିବାର ଆବଶ୍ୟକ ନାହିଁ । ବାହାର ଲୋକଙ୍କ ପକ୍ଷରେ ଆଇନର ପାଣ୍ଡୁଲିପି ଜାଣି ସେଥିପକ୍ଷରେ ମତାମତ ପ୍ରକାଶ କରିବା ଏକ ଭାରି କଥା ଅଟଇ ଓ ଏ ବିଷୟ ଗେଜେଟର ଏକ ପ୍ରଧାନ ଅଙ୍ଗ ଅଟଇ ମାତ୍ର ଆଇନର ପାଣ୍ଡୁଲିପି ପ୍ରକାଶ ହେବାର ଆଉ ଆଇନ ସିଦ୍ଧ ହେଲାରୁ ମଧ୍ୟ ଶୀଘ୍ର ତାହା ପ୍ରକାଶ ହେବାର ସଚରାଚରରେ ଦେଖା ନଯାଏ । ଜମିଦାର ଓ ପ୍ରଜାଙ୍କ ବିଷୟରେ ସନ ୧୮୬୯ ମସିହାର ୮ ଆଇନ କି ପାଞ୍ଚ ଆଉ ଦୁଇମାସ ମଧ୍ୟରେ ଏଠାରେ ପ୍ରଚଳ ହେବ ଅବଧି ସେ ଆଇନ ଗେଜେଟରେ ବାହାରି ନାହିଁ । ଏସ୍ଥଳେ ଆଉ କେଉଁକଥା କୁହାଯିବ ।

ଅତଏବ ଯେତେ ପ୍ରକାର ବିବୃତ ନବ୍ୟ ତନ୍ମଧ୍ୟରେ ଏହି ସିଦ୍ଧାନ୍ତ ହେଉଅଛି ଯେ ଉତ୍କଳ ଗଜେଟ ଯେବେ ବର୍ତ୍ତମାନ ପ୍ରାୟ ଚଳଇ ତେବେ ତାହା ଅନର୍ଥକ ବ୍ୟୟ ମାତ୍ର ସେଥିରେ କିଛି ଲଭ ନାହିଁ । ଯେବେ ଏ ଗଜେଟକୁ ନିତାନ୍ତ ରଖିବାର ଆବଶ୍ୟକ ତେବେ ଏହାକୁ ନ୍ୟୂନପକ୍ଷରେ ବଙ୍ଗଳା ଗଜେଟ ପ୍ରାୟ ଚଳାଇବାର ଉଚିତ ଓ ସେଥିରେ ବିସ୍ତର ବ୍ୟୟ ପଡ଼ିବ କିନ୍ତୁ ଆଜିକାଲି ଗବର୍ଣ୍ଣମେଣ୍ଟଙ୍କର ଅର୍ଥ ଅନଟନ ଅବସ୍ଥାରେ ତେତେ ବ୍ୟୟ କରିବାର ଯେ ସାର୍ଥକ ହେବ ଏମନ୍ତ ଅନୁମାନ ହେଉନାହିଁ କାରଣ ବ୍ୟୟ ଅନୁସାରେ ଫଳଲାଭର ସମ୍ଭାବନା ଦେଖା ନଯାଏ କିମ୍ବା ବ୍ୟୟର କୌଣସି ଉପଯୁକ୍ତ ଅଂଶ ଗଜେଟ ବିକ୍ରୟଦ୍ୱାରା ଉଠିବ ନାହିଁ । ଏରୂପ ଅବସ୍ଥାରେ ଗଜେଟକୁ ଉଠାଇ ଦେବାର ଉଚିତ ଓ ତାହା ଉଠିଗଲେ ଅନୁବାଦରେ ଆଉ ଯେଉଁ କାର୍ଯ୍ୟ ରହିଲା ତାହା ନିର୍ବାହ ହୋଇପାରିଲେ ଏ ପଦ ରହିବାର ମଧ୍ୟ ଆବଶ୍ୟକ ନାହିଁ ।

ଅନୁବାଦକର ଅନ୍ୟକାର୍ଯ୍ୟ ଆଇନ ଅନୁବାଦ କରିବା । ଏ କାର୍ଯ୍ୟଟି ବାସ୍ତବରେ ଅତ୍ୟନ୍ତ ଆବଶ୍ୟକୀୟ ଅଟଇ ଓ ଏପକ୍ଷରେ ଗବର୍ଣ୍ଣମେଣ୍ଟଙ୍କର ସମ୍ପୂର୍ଣ୍ଣ ସୁଯୋଗ କରିବାର ବିହିତ । ଆଇନ ଅନୁବାଦହୋଇ ପୁସ୍ତକାକାରରେ ମୁଦ୍ରିତ ଓ ବିକ୍ରୟ ନହେଲେ ଲୋକଙ୍କର ନାନାପ୍ରକାର ଅସୁବିଧା ହେବ କିନ୍ତୁ କେହି ବୋଲିବେ କି ଗବର୍ଣ୍ଣମେଣ୍ଟ ଆଇନ ଛପାଇକରି ବିକ୍ରୟ ନକଲେ ଯେ କେହି ବ୍ୟକ୍ତି ଅପଣା ଲଭ ଆଶାରେ ଆବଶ୍ୟକୀୟ ଆଇନମାନ ଛପାଇକରି ବିକ୍ରୟ କରିପାରିବ ସୁତରାଂ ଅନୁବାଦରେ ପ୍ରୟୋଜନ କି ? ମାତ୍ର ଆମ୍ଭେମାନେ ଏ ମତରେ ଐକ୍ୟନୋହୁଁ । ସେଥିର କାରଣ ଏହି ଯେ ଉକ୍ତରୂପ ପ୍ରକାଶିତ ଆଇନ ଶୁଦ୍ଧ ହେଲା କି ନା ତାହା କିରୂପେ ଜଣାଯିବ । ଯହିଁରେ କିଛି ମାତ୍ର ଭ୍ରମ ରହିଲେ ଅନେକ ଅମଙ୍ଗଳ ହୋଇପାରେ ତାହା ବିଶୁଦ୍ଧ ପ୍ରକାରରେ ହେଲା କି ନାହିଁ ଏହିଷୟ ଗବର୍ଣ୍ଣମେଣ୍ଟଙ୍କୁ ତଦନ୍ତ କରିବାର ଆବଶ୍ୟକ ଓ ଏକଜଣ ଭାରଗ୍ରସ୍ତ କର୍ମଚାରୀ ବିନା ତାହା ହୋଇ ନପାରେ । ବଙ୍ଗଳା ଆଇନ ଗଜେଟରେ ପ୍ରକାଶ ହେଉଅଛି ତଦ୍ରୂପେ କିଏ କିରୂପ ପୁସ୍ତକ ଛପାଇବାର ରଖିବାର ପ୍ରୟୋଜନ ନାହିଁ କିନ୍ତୁ ଉତ୍କଳଭାଷାର ଆଇନ ଗଜେଟ ଅଭାବରେ ଗବର୍ଣ୍ଣମେଣ୍ଟ ଆଜ୍ଞା କ୍ରମେ ପ୍ରକାଶ ହେବାର ଉଚିତ । ଏଥିକୁ କମିଶନର କଚେରୀରେ ଜଣେ ଅନୁବାଦକ ଅଛନ୍ତି ତାହାଙ୍କୁ ଏହିର ଦେଇ ତାହାଙ୍କର କିଛି ବେତନ ବୃଦ୍ଧି କରିଦେଲେ ନତୁବା ପ୍ରତ୍ୟେକ ଆଇନର କଲେବର ଦୃଷ୍ଟିରେ କିଛି ଠିକା ଖର୍ଚ୍ଚ । ଧାର୍ଯ୍ୟ କରିଦେଲେ ଏକାର୍ଯ୍ୟ ଉତ୍ତମରୂପେ ଚଳିପାରେ । ଆଇନମାନ ଯଥା ସମୟରେ ପ୍ରକାଶ କରିବା କାରଣ କିଛି ଅଧିକ ବ୍ୟୟ ପଡ଼ିଲେ ମଧ୍ୟ ସେ ବ୍ୟୟ ଅନର୍ଥକ ହୁଅଇ କିନ୍ତୁ ଆମ୍ଭମାନଙ୍କର ବିଶ୍ୱାସ ହେଉଅଛି ଯେ ଉପର ଲିଖିତ ଦୁଇ ଉପାୟ ମଧ୍ୟରୁ କୌଣସି ଉପାୟକୁ ଅବଲମ୍ବନ କଲେ ସମ୍ପ୍ରତି ଗବର୍ଣ୍ଣମେଣ୍ଟଙ୍କର ଯେତେ ବ୍ୟୟ ହେଉଅଛି ତହିଁର ଊଣାପଡ଼ିବ !

## ( ୫ମ ଭାଗ, ୧୯ । ୨ । ୧୮୭୦, ସଂଖ୍ୟା ୮ )

୨୧୦ । କଟକର ବାଣିଜ୍ୟର ଉନ୍ନତି ।

ଗତ ବର୍ଷଠାରୁ ବନ୍ଦରଘାଟେ ବାଣିଜ୍ୟଦ୍ରବ୍ୟ ଗମନାଗମନର ସୁଯୋଗ ଗବର୍ଣ୍ଣମେଣ୍ଟ କରିଦେବାରୁ ଯେଉଁରୂପ ବାଣିଜ୍ୟର ସୁବିଧା ହୋଇଅଛି ତାହା କାହାରିକୁ ଅବିଦିତ ନାହିଁ । ଗତ ବର୍ଷ କେବଳ କଲିକତାରୁ ଏଠାକୁ ଦ୍ରବ୍ୟ ଆସୁଥିଲା । ଏ ବର୍ଷ ଏଠାରୁ ମଧ୍ୟ ଅନେକ ଦ୍ରବ୍ୟ କଲିକତା ଓ ମାନ୍ଦ୍ରାଜକୁ ଯାଉଅଛି । ଗତ ଦୁଇମାସରେ ପ୍ରତିମାସ ପ୍ରାୟ ୫୦ କି ୬୦ ହଜାର ଟଙ୍କାର ଦ୍ରବ୍ୟ ଆସିଅଛି ଓ ପ୍ରାୟ ୩୦ ହଜାର ଟଙ୍କାର ଦ୍ରବ୍ୟ ଏଠାରୁ ଯାଇଅଛି । ଏଠାକୁ ଆସିବା ଦ୍ରବ୍ୟ ମଧ୍ୟରେ ବିଲାତି ଲୁଗା ଗୁଆ ମସଲା ଓ ତମ୍ବା ଖପର ଆଦି ପ୍ରଧାନ ଅଟଇ । ଏଠାରୁ ରପ୍ତାନି ଦ୍ରବ୍ୟ ମଧ୍ୟରେ କାଠ ଚର୍ମ ଶିଙ୍ଗ ଓ ଚାଉଳ ରାଶି ପ୍ରଧାନ ଅଟଇ । ଚର୍ମ ଓ ଶିଙ୍ଗ ଆଗେ ସ୍ଥଳପଥରେ କଲିକତାକୁ ଯାଉଥିଲା କିନ୍ତୁ କାଠ ଯିବାର ସୁବିଧା ଏକା ଯାହାଜହେତୁ ହୋଇଅଛି । ଏଥିରୁ ଏ ଦ୍ରବ୍ୟମାନ ପ୍ରାୟ ଗଡ଼ଜାତରେ ଅଧିକ ହୁଅଇ ଓ ବାଣିଜ୍ୟ-ଦ୍ୱାରା ଗଡ଼ଜାତଙ୍କର ବିଶେଷ ଲାଭର ସମ୍ଭାବନା । ମୁଗଲବନ୍ଦୀ ଲୋକମାନେ ଗଡ଼ଜାତରୁ କ୍ରୟକରି ଆଣି ଦେଶାନ୍ତରକୁ ପଠାଇବାଦ୍ୱାରା ମଧ୍ୟ ଲାଭକରି ପାରନ୍ତି ଓ ତାହା କିଅଦଂଶରେ ହେଉଥିଲେ ଆମ୍ଭେମାନେ ଦେଖୁଅଛୁଁ ଯେ ବିଦେଶୀୟମାନେ ଏଥିରୁ ବିଶେଷ ଲାଭ ପାଉଅଛନ୍ତି । ଏଠା କାଠର ବେପାର ସମ୍ପ୍ରତି ଷ୍ଟୋନ ସାହେବଙ୍କ ଦ୍ୱାରା ଚଳୁଅଛି ଓ ଚାଉଳ ଓ ରାଶିର ବେପାରରେ କେତେଜଣ ତେଲେଙ୍ଗା ମହାଜନ ନିଯୁକ୍ତ ଅଛନ୍ତି । ଯେମନ୍ତ ଆମଦାନି ଦ୍ରବ୍ୟର ଲାଭ ମାରୱାଡ଼ି ଓ ଭୋଜପୁରୀଙ୍କ ହସ୍ତଗତ ହୋଇଅଛି ସେହିରୂପ ରପ୍ତାନି ଦ୍ରବ୍ୟର ଲାଭ ତେଲେଙ୍ଗା ଓ ଇଂରେଜ ନେଉଅଛନ୍ତି । ଉତ୍କଳର ଲୋକମାନେ କେବଳ କଣିକାକୁ ଭୁକ୍ତହୋଇ ରହିଅଛନ୍ତି । ଅନ୍ୟ ଦେଶସ୍ଥ ଲୋକଙ୍କଦ୍ୱାରା ରପ୍ତାନି କାର୍ଯ୍ୟ ପଡ଼ିବାରୁ ଆମ୍ଭମାନଙ୍କର କ୍ଷତି ହେଉଅଛି ଏମନ୍ତ ନୁହଇ କାରଣ ଦ୍ରବ୍ୟ ବିକ୍ରୟ ହେଲେ ଯେ ଲାଭ ହୁଅଇ ତାହା ହେଉଅଛି ଓ ଏସ୍ଥାନର ଦ୍ରବ୍ୟଜାତ ହେତୁକହେଁ ଭାଉ ଉଣା ହୋଇ ପାରୁନାହିଁ ମାତ୍ର ମଧ୍ୟବର୍ତ୍ତୀ ସ୍ୱରୂପ ବାଣିଜ୍ୟର ଯେ ଲାଭ ତାହା ତ ଏଦେଶର କେହି ଲୋକ ଚେଷ୍ଟାକଲେ କରିପାରନ୍ତା ତାହା କିପାଇଁ ହେଉନାହିଁ । ଏଠାର କୌଣସି ଜମିଦାର କି ଧନାଢ୍ୟ ବ୍ୟକ୍ତି ଯେବେ ଅନ୍ୟ ଦେଶର ମହାଜନ ସଙ୍ଗେ ବନ୍ଦୋବସ୍ତ କରି ଏଠାରୁ ରାଶି ଚାଉଳ କାଷ୍ଠାଦି ପଠାନ୍ତା ତାହାହେଲେ ଏ କାର୍ଯ୍ୟରେ ଏଠାରେ ଯେଉଁ ଲାଭ ତାହା ଏହି ଦେଶ ଲୋକହାତରେ ରହନ୍ତା ଓ ନାନା ସ୍ଥାନରୁ ଦ୍ରବ୍ୟ ଗୋଟାଇ ଆଣିବାର ଏଦେଶ-

ଲୋକପ୍ରତି ଯେତେ ସହଜ ବିଦେଶୀୟ ବ୍ୟକ୍ତି ପକ୍ଷରେ ତେତେ ଅଶ୍ରକା ନୁହଇ । କେବଳ ବ୍ୟବସାୟରେ ମନ ଦଅନ୍ତି ନାହିଁ ବୋଲି ଅଦେଶୀୟ ଲୋକଙ୍କର ଉନ୍ନତି ହେଉ-ନାହିଁ । ବିଦେଶୀୟ ଲୋକ ଆସି ଏଠାରେ ଧନୀ ହୋଇ ଯାଉଅଛନ୍ତି । ଏଠା ଲୋକ ସେପରି ହୋଇ ପାରୁନାହାନ୍ତି । ସମ୍ପ୍ରତି ଏଠାରେ କେତେଜଣ ତେଲେଙ୍ଗା ପ୍ରତି ୩୦ ହଜାର ଟଙ୍କାରୁ ଅଧିକ ହେବ ଘିଣି କରି ପାହାଜରେ ଇଙ୍ଗଲଣ୍ଡକୁ ପଠାଉ ଅଛନ୍ତି ଓ ଅନ୍ୟାନ୍ୟ ଦ୍ରବ୍ୟ କେତେ ସେମାନେ ମାନ୍ଦ୍ରାଜକୁ ପଠାଇଲେଣି । ଏ ସମସ୍ତ ଦେଖି ଶୁଣି ଯେ ଏଠାଲୋକେ ବୃହତ୍ ପରିମାଣରେ ବାଣିଜ୍ୟ ଆରମ୍ଭ କରିବାକୁ ସାହାସୀ ହେଉନାହାନ୍ତି ବଡ଼ ଆଶ୍ଚର୍ଯ୍ୟର ବିଷୟ ଅଟଇ । ଏତେ ପୁବତା ହେଲେହେଁ ଯେବେ ଏଠାଲୋକେ ବାଣିଜ୍ୟରେ ମନ ନବଢ଼ାଇବେ ତେବେ ଏହାଙ୍କର ଅବସ୍ଥା ଉନ୍ନତିର ଆଉ କି ଉପାୟ ଅଛି । ଉତ୍କଳ ଲୋକ ବଡ଼ ଦୁଃଖୀ ବୋଲି ସମସ୍ତେ ଜାଣନ୍ତି ଓ ଦୁଃଖ ହରଣ ହେବାର ସର୍ବୋତ୍କୃଷ୍ଟ ଉପାୟ ବାଣିଜ୍ୟ ଅଟଇ ଯଥା ବାଣିଜ୍ୟେ ବସତି ଲକ୍ଷ୍ମୀଃ ଅତଏବ ବାଣିଜ୍ୟର ଅନୁସରଣ କରିବା ଅସ୍ମଦ୍ଦେଶୀୟଙ୍କ ପକ୍ଷରେ ପରମ ହିତକାରୀ ସନ୍ଦେହ ନାହିଁ

ବାଣିଜ୍ୟର ସୁଯୋଗ ହେଲା ବନ୍ଦୁ ଯେ ଏଠାଲୋକେ ଭୁବହୋଇ ରହି ଅଛନ୍ତି ଏମନ୍ତ ନୁହେ । କ୍ରମେ ଏକ ୨ ଜଣ କଲିକତାର ଦ୍ରବ୍ୟ ଆଣାଇ ବିକ୍ରୟ କରିବାକୁ ଆରମ୍ଭ କରିଅଛନ୍ତି ମାତ୍ର ଏସବୁ ଅତି ସାମାନ୍ୟରୂପେ ଚଳୁଅଛି । ଆମ୍ଭମାନଙ୍କ ବୋଲିବାର ଅଭିପ୍ରାୟ ଏହିଯେ କେହି ବୃହତ୍ ପରିମାଣରେ କାର୍ଯ୍ୟାରମ୍ଭ କରନ୍ତୁ ତେବେ ସିନା ତହିଁର ଫଳ ଜଣାଯିବ ।

## ( ୫ମ ଭାଗ, ୫ । ୩ । ୧୮୭୦, ସଂଖ୍ୟା ୧୦ )

୨୧୧ । ଯାତ୍ରୀ ଟାକ୍ସ ।

ଯାତ୍ରୀଙ୍କଠାରୁ କର ଗ୍ରହଣକରି ସେମାନଙ୍କର ସ୍ୱାସ୍ଥ୍ୟରକ୍ଷାରେ ବ୍ୟୟ କରିବାର କଳ୍ପନା ଅନେକ କାଳରୁ ହୋଇଅଛି । ଯେଉଁସମୟରେ ପ୍ରଥମେ ଗବର୍ଣ୍ଣମେଣ୍ଟ ଏଥିର ଉଦ୍ଭାବନ କଲେ ସେ ସମୟରେ ବହୁତଲୋକ ଏଥିର ବିପକ୍ଷ ମତ ବ୍ୟକ୍ତ କରିବାରୁ ବୋଧହୁଏ ଗବର୍ଣ୍ଣମେଣ୍ଟ ସହସା ତାହା କାର୍ଯ୍ୟରେ ପରିଣତ କରିବାକୁ ଉଚିତ ଜ୍ଞାନ ନକଲେ । କିଛିକାଳ ଏ ପ୍ରସ୍ତାବ ପଡ଼ିରହିଲା ଉତ୍ତାରୁ ଏଥର ଆଉ ଏକ କୌଶଳ ହେଉ-ଅଛି । ତାହା ଏହିଯେ ସାକ୍ଷାତ୍ ପ୍ରକାରରେ ଯାତ୍ରୀମାନଙ୍କଠାରୁ ଟେକ୍ସ ଗୃହୀତ ନହୋଇ ନଦୀଘାଟ ମାସୁଲ ଯାତ୍ରୀଙ୍କ ପକ୍ଷରେ କିଛି ବୃଦ୍ଧି କରି ଆଦାୟ କରି ସେହି ଅର୍ଥ-

ଦ୍ୱାରା ତାହାଙ୍କର ସ୍ୱାସ୍ଥ୍ୟରକ୍ଷାର ବିଧାନ କରାଯିବ । କେତେ ଲାଭରେ କେଉଁ ନିୟମା-
ନୁସାରେ ଏ କର ଆଦାୟ ହେବ ସେଥିର ସମୁଦାୟ ବିବରଣ ସ୍ଥିର ହୋଇନାହିଁ ।
ଶୁଣିଲୁଁ ଯେ ସ୍ଥାନୀୟ କର୍ମଚାରୀଙ୍କୁ ଏଥିର ବିଧାନ କରିବାକୁ ଆଦେଶ ହୋଇଅଛି ଓ
ସେମାନଙ୍କର ମତ ଜାଣିଲାଠାରୁ ଗବର୍ଣ୍ଣମେଣ୍ଟ ନିଶ୍ଚୟ ଆଜ୍ଞା ପ୍ରଦାନ କରିବେ ।

ଏସମ୍ବାଦ ଶୁଣି ଆମ୍ଭମାନଙ୍କ ମନରେ ଏହି ବିଶ୍ୱାସ ହେଉଅଛି ଯେ ଗବର୍ଣ୍ଣମେଣ୍ଟ
ଯାତ୍ରୀଙ୍କଠାରୁ କିଛି କର ଆଦାୟ କରିବାର ନିତାନ୍ତ ସ୍ଥିର କରିଅଛନ୍ତି କିନ୍ତୁ ଯେଉଁ
ନିୟମରେ ତାହା ଗ୍ରହଣ କରିବାର ପ୍ରସ୍ତାବ କରନ୍ତି ସେଥିରେ ଯେ କେହି ସନ୍ତୁଷ୍ଟ
ହେବେ ଏମନ୍ତ ବୋଧ ହେଉନାହିଁ । ଗବର୍ଣ୍ଣମେଣ୍ଟ ଯେବେ ପୂର୍ବପ୍ରାୟ ଅଠରନଳା ଘାଟ
ବସାଇବାର ଉଦ୍ୟମ କରିଥାଆନ୍ତେ ତେବେ ଯାତ୍ରୀମାନେ ଯାହାକିଛି କଷ୍ଟ ଏକ ସ୍ଥାନରେ
ଭୋଗ କରନ୍ତେ । ପ୍ରତି ନଈଘାଟରେ କିଛି ୨ ଦେବାରେ ଆପାତତଃ ଗବର୍ଣ୍ଣମେଣ୍ଟ ଏହି
ଜ୍ଞାନ କରିଥିବେ ଯେ ଯାତ୍ରୀମାନେ ଅଳ୍ପ ୨ କରି ଟଙ୍କା ଦେବାରେ ତାହାଙ୍କର ବିସ୍ତର
କ୍ଳେଶ ହେବନାହିଁ କିମ୍ବା ଏତେ ଟଙ୍କାଦେଲେ ବୋଲି ଜାଣି ପାରିବେନାହିଁ ମାତ୍ର ପ୍ରତି ସ୍ଥାନରେ
ଯେ ତାହାଙ୍କୁ କ୍ଳେଶ ଭୋଗ କରିବାକୁ ହେବ ତାହା ଗବର୍ଣ୍ଣମେଣ୍ଟ ବିଚାର କରିଥିବାର
ଜଣା ପଡୁନାହିଁ । ନଈଘାଟ ପାରି ହେବାର ମାସୁଲ ଯେତେ ଦିନରୁ ସରକାର ବସାଇ
ଅଛନ୍ତି ତେତେଦିନରୁ ଯାତ୍ରୀଙ୍କର ଯେ କ୍ଳେଶ ହୋଇଅଛି, ତାହା ଅକଥନୀୟ । ସରକାରୀ
ମାସୁଲ ଛଡ଼ା ନୌକା ବୋହିବା ବ୍ୟକ୍ତିଙ୍କୁ ବକ୍‌ସିସ୍ ଦେବାକୁ ହୁଏ ଓ କେବେ ୨
ନିରକ୍ଷର ଅଧିକ ନଦେଲେ ପଡ଼ି ରହିବାକୁ ହୁଏ । ଏହାସ୍ତର ପ୍ରଚଳ ହେଲେ ଆଉ
ଗୋଟିଏ ଅତ୍ୟାଚାରର ସୁଯୋଗ ହେବ ଏବଂ ଇଜାରଦାରମାନେ ଅନ୍ୟାନ୍ୟ ବାଟୋଇଙ୍କୁ
ଯାତ୍ରୀବୋଲି କହି ଅଧିକା ଲାଭ କରିବାର ସୁନ୍ଦର ଉପାୟ ପାଇବେ । ଘାଟ ପାଖରେ
ପଡ଼ି ରହିବାଠାରୁ ଲୋକେ ଇଜାରଦାରଙ୍କୁ କିଛି ଅଧିକ ଦେବାକୁ ସମ୍ମତ ହୁଅନ୍ତି ଓ
ସରକାରୀ କଚେରୀରେ ନାଲିଶ କରି ବାଟରେ ପଡ଼ିରହିବାକୁ କାହାର ଇଚ୍ଛା କି
ଅବକାଶ ହୁଏନାହିଁ । ସୁତରାଂ ଇଜାରଦାର ସ୍ୱେଚ୍ଛାକ୍ରମେ ଅତ୍ୟାଚାର କରିପାରିବ
ଓ ପ୍ରାୟ ସବୁ ବାଟୋଇଙ୍କୁ ଯାତ୍ରୀ କହି ସମସ୍ତଙ୍କଠାରୁ ଅଧିକା ମାସୁଲ ନେବ । ଏମନ୍ତେ
ନଈବଢ଼ି ଦିନରେ ଯେତେଯାତ୍ରୀ ଆସିବେ ତାହାଙ୍କର କ୍ଳେଶର ସୀମା ରହିବ ନାହିଁ
ଓ ତାହାଙ୍କ ସଙ୍ଗରେ ଅନ୍ୟ ଲୋକମାନେ ମଧ୍ୟ କ୍ଳେଶ ପାଇବେ ଅଥଚ ଯେଉଁମାନେ
ବର୍ଷାକାଳରେ ନଆସି ଅନ୍ୟ ସମୟରେ ଜଗନ୍ନାଥ ଦର୍ଶନକୁ ଆସିବେ ସେମାନେ ଟାକ୍‌ସ
ଦେବେନାହିଁ । ଏ କେମନ୍ତ ସୁନ୍ଦର ବିଚାର ! ଏ ନିୟମ ହେଲାଠାରୁ ଯେଉଁମାନେ
ବର୍ଷାକାଳରେ ତୀର୍ଥ କରିବାକୁ ଆସିବେ ସେମାନେ ବିଶେଷ ଧର୍ମାର୍ଜନ କରିବେ କାରଣ
ସମସ୍ତ ଯାତ୍ରୀଙ୍କ ମଙ୍ଗଳ ନିମିତ୍ତ କର ଦେଉଥିବେ ।

## ( ୫ମ ଭାଗ, ୧୦ । ୪ । ୧୮୭୦, ସଂଖ୍ୟା ୧୫ )

୨୧୨ । ପୁଲିସର ପ୍ରତାପ ।

ଅନେକ ଦିନ ଉତ୍ତାରୁ ପୁଲିସ ଏଥର ନଗରର ପାଖ ସଂପ୍ରତି ଖୁବ ଅଧିକାର ପ୍ରକାଶ କରିଅଛନ୍ତି । ଅଳ୍ପଦିନ ହେଲା ପୁଲିସର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଗ୍ରେବ ସାହେବ ବିଜ୍ଞାପନଦ୍ୱାରା ଘୋଷଣା ଦେଇଅଛନ୍ତି ଯେ ସୂର୍ଯ୍ୟାସ୍ତଠାରୁ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ କାଳ ମଧ୍ୟରେ ନଗରର କୌଣସି ସଡ଼କ କିମ୍ବା ଗଳିରେ କେହି ବାଜା ବଜାଇ ସମାରୋହ କରି କିମ୍ବା ଦଳବଦ୍ଧହୋଇ ଗତାୟତ କରି ନ ପାରିବ । ଯାହାର ଆବଶ୍ୟକ ହେବ ସେ ପୁଲିସକୁ ଜଣାଇ ପାଶ ନେଇ କର୍ମ କରିବ ଓ ପାଶର ବିପରୀତ କୌଣସି କାର୍ଯ୍ୟକଲେ କିମ୍ବା ଆଜ୍ଞା ନମାନିଲେ ପୁଲିସ ଆଇନାନୁସାରେ ଟ ୨୦୦ ଙ୍କା ଅର୍ଥଦଣ୍ଡ ହେବ । ଏ ଆଜ୍ଞା ଏତେ ଅନିଷ୍ଟକର ତାହା ଆମ୍ଭେମାନେ ସମ୍ୟକ ବ୍ୟକ୍ତ କରି ନପାରୁଁ ଓ ପୁଲିସର କର୍ମଚାରୀ ଆଇନର ଅଭିପ୍ରାୟ ବୁଝି ଏ ଆଜ୍ଞା ଦେଇଥିବାର ଆମ୍ଭମାନଙ୍କ ବିଶ୍ୱାସ ହେଉନାହିଁ । ଉକ୍ତ ଆଇନରେ ପୁଲିସର ପ୍ରଧାନ କର୍ମଚାରୀଙ୍କୁ କେବଳ ସଡ଼କରେ ସମାରୋହ ପୂର୍ବକ ଆସିବା କିମ୍ବା ବାଜା ବଜାଇବା ବିଷୟରେ ଆବଶ୍ୟକମତେ ସମୟ ଓ ବାଟର ବିଧାନ କରିବାକୁ କ୍ଷମତା ଦିଆ ଯାଇଅଛି । ଏକାବେଳେକେ ନିଷେଧ କରିବାର ଆଜ୍ଞା ନାହିଁ । ଯେ କିଛି ସମାରୋହ କାର୍ଯ୍ୟ କିମ୍ବା ବାଜା ବଜାଇବା ରାତ୍ରିକାଳରେ ହୁଅଇ ଦିନ ଦୁଇପ୍ରହରରେ ଏସବୁ କର୍ମ ହେବାର ଅଳ୍ପ ଘଟନା ହୁଏ । ପୁଲିସ ସାହେବ ସନ୍ଧ୍ୟାଠାରୁ ସକାଳ ପର୍ଯ୍ୟନ୍ତ ଏକାବେଳେକେ ବନ୍ଦକରି ଦେବାରେ ପ୍ରତ୍ୟେକ ସମାରୋହ କିମ୍ବା ବାଜା ବଜାଇବା ପାଇଁ ପାଶ ନେବାର ଆଜ୍ଞା ହୋଇଅଛି । ଏମନ୍ତ କଥା କି ସବୁ ସମୟରେ ସମସ୍ତଙ୍କ ପକ୍ଷରେ ସୁଯୋଗ ହୋଇପାରେ ଓ ସବୁ ଲୋକଙ୍କୁ ସର୍ବଦା କଚେରିକି ଦୌଡ଼ାଇବାରେ ପୁଲିସ କି ଆପଣାର କ୍ଷମତା ଅଧିକ ଦେଖାଇବାକୁ ଚାହାନ୍ତି । ସଂକୀର୍ତ୍ତନ ଓ ବାଜା କେତେ ପ୍ରକାରରେ ଲୋକଙ୍କର କେତେବେଳେ ପ୍ରୟୋଜନ ହୁଅଇ ତାହାର ସ୍ଥିରତା ନାହିଁ । କାହାର ସନ୍ଧ୍ୟାବେଳେ ହଠାତ୍ ପ୍ରୟୋଜନହେଲା କିମ୍ବା କଚେରୀ ବନ୍ଦ କି ରବିବାର ଦିନ ପଡ଼ିଲା ତେବେ ସେ ବ୍ୟକ୍ତିର ଆଉ ତ ଗତି ନାହିଁ । ତେତେବେଳେ ସେ କେଉଁଠାରୁ ପାଶ ପାଇବ ଓ ଦୁଇଘଣ୍ଟା କାର୍ଯ୍ୟ ସକାଶେ ପାଶ ନେବାରେ ଅନର୍ଥକ ସମସ୍ତଙ୍କ ମଧ୍ୟ କରି ପାଶ ନେବାର କଷ୍ଟ ଭୋଗ କରିବ । ଯେତେବେ ଜାଣନ୍ତୁ ଯେ ବାଜା ବଜାଇବ କି ସମାରୋହ ପୂର୍ବକ ଯିବା ଆସିବାରେ କିଛି ଦୁର୍ଘଟଣା ହୋଇଅଛି କିମ୍ବା ବର୍ଷ ମଧ୍ୟରେ ଦଶପାଞ୍ଚ ଥର ଲୋକଙ୍କର ଅପକାର କି କ୍ଷତି ହୁଅଇ କିମ୍ବା ପୁଲିସକୁ ବଡ଼କଷ୍ଟ ପାଇବାକୁ

ହୁଏ ତେବେ ଏରୂପ କୌଣସି ନିୟମ କରିବାର ଆବଶ୍ୟକତା ଜଣା ପଡ଼ନ୍ତା । ତୁଚ୍ଛାକୁ ଆପଣାର ଅଧିକାର ଦେଖାଇ ଲୋକଙ୍କୁ କ୍ଲେଶ ଦେବାରେ କି ଲାଭ ହେବ ଆମ୍ଭେମାନେ ଅନୁଭବ କରି ପାରୁନାହୁଁ । ପୁଲିସ କନଷ୍ଟେବଲ ଉଗ୍ର ହେବାରୁ ଅଣିମାଷ୍ଟି ସାହେବଙ୍କର କି ଏତେ ଭୟ ହୋଇଅଛି । ଯେବେ ସେରୂପ ହୋଇଥାଏ ତେବେ ସନ୍ଧ୍ୟାବେଳେ ସବୁଲୋକଙ୍କୁ ଆପଣା ୨ ଘରେ ପୂରାଇ କବାଟଦେଇ ଆସିଲେତ ପୁଲିସକୁ ବଡ଼ ସୁବିଧାକାର୍ଯ୍ୟ ପଡ଼ନ୍ତା । ଫଳତଃ ଯେଉଁସ୍ଥଳେ ଅବକାରୀ ଦୋକାନମାନ ରାତି ୯ଘଣ୍ଟା ପର୍ଯ୍ୟନ୍ତ ଖୋଲି ଥିବାର ଆଜ୍ଞା ଅଛି ସେ ସ୍ଥଳେ ବାଜା ଇତ୍ୟାଦି ସନ୍ଧ୍ୟାବେଳୁଁ କାହିଁକି ବନ୍ଦ ହେବ କିଛି ବୁଝା ଯାଉନାହିଁ ।

ଯଦ୍ୟପି କି ବିଜ୍ଞାପନ ଅର୍ଥରୁ ଜଣାଯାଏ ଯେ ସନ୍ଧ୍ୟା ଉତ୍ତାରୁ ଦଶଜଣରୁ ଅଧିକ ଏକତ୍ର ହୋଇ ବୁଲିଲେ ପୁଲିସ ତାହାକୁ ଧରି ଦଣ୍ଡ ଦିଆଯାଇପାରେ କାରଣ ଦଳବଦ୍ଧ ହୋଇ ଯିବାର ପୂର୍ବା ନିଷେଧ ଅଛି କିନ୍ତୁ ଲୋକେ କହନ୍ତି ଯେ ମୋହରମ ପର୍ବ ଉପଲକ୍ଷରେ ଏ ଆଜ୍ଞା ପ୍ରଚାର ହୋଇଅଛି । ଏଥିରୁ ମୋହରମ ପର୍ବ ସମୟରେ ଆଖଡ଼ାବାଲାମାନେ ହାତ ହତିଆର ଢୋଲ ବାଜା ସହିତ ଦଳବଦ୍ଧ ହୋଇ ବାହାରିବାର ଛିକାହି ବିଦେଶୀଙ୍କ ଲୋକମନରେ ଶଙ୍କା ହୋଇପାରେ କିନ୍ତୁ ଯେ ଲୋକ ଏ ନଗରରେ ରହି କେତେକାଳ ଏ ସବୁ ଦେଖିଅଛି ତାହା ମନରେ କିଛି ଶଙ୍କା ନାହିଁ । ପୂର୍ବେ ମାଜିଷ୍ଟ୍ରେଟ ଓ ପୁଲିସ ସୁପ୍ରିଣ୍ଟ ବରାବର ଆଖଡ଼ାବାଲାଙ୍କୁ ବାଜା ବଜାଇ ବୁଲିବାକୁ ଆଜ୍ଞା ଦେଇ ଆସିଥିଲେ ଓ ନୂତନ ପୁଲିସ ମଧ୍ୟ ସେ ରୀତିକୁ ରହିତ କରିନାହାନ୍ତି । ଆଖଡ଼ାବାଲାଙ୍କର ନାମ ରେଜିଷ୍ଟ୍ରି କରି ପ୍ରତ୍ୟେକ ଆଖଡ଼ାସଙ୍ଗେ ଏକ ୨ ଜଣ ପୁଲିସ ନିଯୁକ୍ତ ରଖି ନିଶ୍ଚିନ୍ତ ଥିଲେ ଓ ଗତକାଲ ରାତିରେ ପୁଲିସର ଅନେକ ଲୋକ ତାହାଙ୍କ ସଙ୍ଗରେ ରହି ନିର୍ବିଘ୍ନରେ ଲୋକଙ୍କ ଶ୍ରଦ୍ଧାନୁସାରେ କାର୍ଯ୍ୟ ନିର୍ବାହ କରିଥିଲେ । ଏଣିକି କଣ ପୁଲିସରେ ଅଳସୁଆ ଲୋକ ଅଧିକ ରହିଲେଣି ଯେ ଏମାନେ ରାତିଜାଗି ପରିଶ୍ରମ କରିବାକୁ ନଚାହିଁ ଆପେ ନିଶ୍ଚିନ୍ତ ହୋଇ ଶୋଇବା ମାନସରେ ଏକାବେଳେକେ ପ୍ରଜାଙ୍କର ଆମୋଦ ଉତ୍ସବ ନାଶ କରିବାକୁ ବସିଅଛନ୍ତି । ତାହାଙ୍କର ଯେବେ ଶୋଇବାପାଇଁ ଏତେ ଶ୍ରଦ୍ଧା ତେବେ କେହି ସେଥିର ପ୍ରତିବାଦ କରୁନାହିଁ । ନିତି ରାତିରେ ସେମାନେ ଶୋଇଥାନ୍ତୁ । ନିତିପାଳି ପହରା ଦେଇ ବୁଲିବାର ସରକାରର ଦେଖାନାଏନା ଓ ସେଥିରେ ବଡ଼ ଅନିଷ୍ଟ ହେଉନାହିଁ । ଏ ରାତିରେ ଶୋଇଲେ ମଧ୍ୟ କିଛି କ୍ଷତି ହେବନାହିଁ ବରଂ ପର୍ବ ଦିନରେ ସମସ୍ତେ ରାତିଜାଗିବାରୁ ଚୋରଙ୍କର ଅବକାଶ ହୁଅଇ ନାହିଁ ବୋଲି ପୁଲିସର ପ୍ରୟୋଜନ ଅତ୍ୟଳ୍ପ ହୁଅଇ ।

ସେ ଯାହାହେଉ ପୁଲିସର ବର୍ତ୍ତମାନ ପ୍ରଚାରିତ ବିଜ୍ଞାପନ ଅତ୍ୟନ୍ତ ଅବିଚାର

କାର୍ଯ୍ୟ ହୋଇଅଛି ଓ ଏଥିପାଇଁ କଲର ମାଜିଷ୍ଟ୍ରେଟ ଓ ପୁଲିସର କର୍ତ୍ତାଙ୍କୁ ଅନୁରୋଧ କରୁଅଛୁଁ ଯେ ଏ ଆଜ୍ଞାକୁ ରହିତ କରି ଲୋକଙ୍କ ମନରେ ହର୍ଷ ଜାତ କରନ୍ତୁ । ପ୍ରଜାଙ୍କୁ ସନ୍ତୋଷରେ ରଖିବା ଶାସନ ପ୍ରଣାଳୀର କଗୂଢ଼ ତତ୍ତ୍ୱ ହେଉଅଛି । ଯେଉଁ ହାକିମ ଏକଥା ପ୍ରତି ଦୃଷ୍ଟି ନରଖେ ତାହାଙ୍କୁ ଅତ୍ୟାଗ୍ରହୀ ବୋଲିପାଏ ।

ଏ ପ୍ରସ୍ତାବ ଲେଖିବା ଉତ୍ତାରୁ ଅବଗତ ହେଲୁଁ ଯେ ନଗରର ମୁସଲମାନମାନେ ମାଜିଷ୍ଟ୍ରେଟଙ୍କ ନିକଟରେ ଦରଖାସ୍ତ ଦେବାରୁ ପୁଲିସକୁ କଇଫିୟତ ତଲବ ହୋଇଅଛି । ବୋଧହୁଏ ଉଭୟମତରେ ନିଷ୍ପତ୍ତି ହେବ ।

## ( ୫ମ ଭାଗ, ୧୬ । ୪ । ୧୮୭୦, ସଂଖ୍ୟା ୧୬ )

୨୧୩ । ବଙ୍ଗାଳି ଓ ଓଡ଼ିଆ ।

ଗତ ପ୍ରକାଶିତ ଉତ୍କଳ ହିତୈଷିଣୀରେ ଗୋଟିଏ ଚମତ୍କାର ପ୍ରସ୍ତାବ ବାହାରି ଅଛି । ଓଡ଼ିଆ ଓ ବଙ୍ଗାଳିଙ୍କ ମଧ୍ୟରେ ଭାଷା ବିଷୟରେ କଳି ହେବାର ଦେଖି ଏ ଦୁଇ ଜାତିର ଲୋକ ମଧ୍ୟରେ କି ପ୍ରକାର ସମ୍ବନ୍ଧ ଅଛି ଲେଖକ ସେଥିର ବିଚାର କରି ସ୍ଥିର କରିଅଛନ୍ତି ଯେ ଗତ ସାତଶବର୍ଷଠାରୁ ଓଡ଼ିଶା ଉପରେ ବଙ୍ଗଳାର ଅଧିପତ୍ୟ ଅତି ସ୍ପଷ୍ଟ ରୂପେ ଦେଦୀପ୍ୟମାନ ଅଛି । କି ଶାସନ ପ୍ରଣାଳୀ କି ଧର୍ମ କି ଭାଷା ସବୁ ବିଷୟରେ ଉନ୍ନତମାର୍ଗେ ଓଡ଼ିଶା ବଙ୍ଗଳାଠାରେ ଋଣୀ ଅଟଇ । ସେ ବୋଲନ୍ତି ଯେ ଗଙ୍ଗବଂଶୀୟ ରାଜାଙ୍କର ଆଦିପୁରୁଷ ବଙ୍ଗଳାରୁ ଆସି ଏଠାରେ ରାଜତ୍ୱ ସ୍ଥାପନ କରିଥିଲେ ଓ ସେହି କାଳ ଉତ୍କଳର ଇତିହାସର ପ୍ରଧାନ ସମୟ ଅଟଇ । ଯଦ୍ୟପି କି ଷ୍ଟାରଲିଂ ସାହେବଙ୍କ ମତରେ ସେ କର୍ଣ୍ଣାଟ ଦେଶରୁ ଆସିଥିଲେ ମାତ୍ର ଉଇଲସନ ସାହେବ ବୋଲନ୍ତି ଯେ ସେମାନେ ଗଙ୍ଗାନଦୀ ତୀରସ୍ଥ ଦେଶର ରାଜାଥିଲେ ଓ ସେଦେଶ ବର୍ତ୍ତିମାନ ମେଦନୀପୁର ଓ ତମଲୁକ ନାମରେ ଖ୍ୟାତ । ତଦୁତ୍ତାରୁ କଳାପାହାଡ଼ ନାମରେ ବଙ୍ଗାଳି ବ୍ରାହ୍ମଣ ବଙ୍ଗଳା ସେନା ସହିତ ଉତ୍କଳକୁ ଆସି ଏଠାର ସ୍ୱାଧୀନ ରାଜତ୍ୱଧ୍ୱଂସ କଲା । ପରିଶେଷରେ ବଙ୍ଗଳାର ସୁବାଦାରଙ୍କ ଅଧୀନରେ ଓଡ଼ିଶା ବରାବର ରହିଅଛି ।

ଧର୍ମର ମତବିଷୟରେ ଦେଖାଯାଏ ଯେ ଚୈତନ୍ୟ ମହାପ୍ରଭୁ ବଙ୍ଗଳାରେ ଅବତୀର୍ଣ୍ଣହୋଇ ଓଡ଼ିଶାଲୋକଙ୍କୁ ବୈଷ୍ଣବ ଧର୍ମର ଶିକ୍ଷାଦେଲେ । ଏହିଠାରୁ ବୌଦ୍ଧଧର୍ମ ଲୋପହେଲା ଓ କେବଳ ବ୍ରାହ୍ମଣ ଛଡ଼ା ଆଉ ସମସ୍ତେ ଏତେବେଳେମଧ୍ୟ ଚୈତନ୍ୟ ମହାପ୍ରଭୁଙ୍କର ମତାବଲମ୍ବୀ ହୋଇଅଛନ୍ତି ।

ଭାଷା ଉନ୍ନତି ପତ୍ରରେ ମଧ୍ୟ ଏହିରୂପ ଲେଖକ ବୋଲନ୍ତି ଯେ ଚୈତନ୍ୟ ଦେବଙ୍କ ଅବତାର ପୂର୍ବ [illegible] କୌଣସି ଉତ୍କଳ ଭାଷା ଗ୍ରନ୍ଥ ନାହିଁ । ମହାଭାରତ ରଚୟିତା ଶାରଳା ଦାସ ଏଥିର ଅନେକ ଦିନ ଉତ୍ତାରୁ ଜନ୍ମ ଗ୍ରହଣ କଲେ ଓ ସେ ଜଣେ ବୈଷ୍ଣବ ଓ ଚୈତନ୍ୟ ମହାପ୍ରଭୁଙ୍କର ବଡ଼ ଭକ୍ତଥିଲେ । କେବଳ ଚୈତନ୍ୟଙ୍କ ମତ ପ୍ରଚାର କରିବା ପାଇଁ ଭାଷା ଗ୍ରନ୍ଥ ରଚନା କରିବାର ଆବଶ୍ୟକ ହେଲା । ଉପେନ୍ଦ୍ରଭଞ୍ଜ ଦୀନକୃଷ୍ଣ ଦାସ ଓ ଅଭିମନ୍ୟୁ ସାମନ୍ତସିଂହାର ଏମାନେ ସମସ୍ତେ ପୁଣି ବୈଷ୍ଣବ ଓ ଏଠାର ଭାଷା ଗ୍ରନ୍ଥ ସବୁ ବୈଷ୍ଣବଧର୍ମ ଆଡ଼କୁ ଢଳିଅଛି ।

ପତ୍ରଶେଷରେ ଲେଖକ କହିଅଛନ୍ତି ଯେ ବର୍ତ୍ତମାନ କାଳରେ ଯାହା କିଛି ବିଦ୍ୟାଶିକ୍ଷା ଓ ସାହସ ଏ ସ୍ଥାନରେ ଦେଖାଯାଏ ତାହା କେବଳ ବଙ୍ଗାଳି ଜମିଦାର ଓ ଅନ୍ୟ ବଙ୍ଗଳା ନିବାସୀଙ୍କ ସାହାଯ୍ୟରେ ସମ୍ଭବ ହୋଇଅଛି ।

ହେ ଉତ୍କଳୀୟମାନେ ଯେବେ ପୂର୍ବରୁ ଏ କଥାମାନ ଶୁଣି ନଥିଲ ତେବେ ଥରେ ଚିନ୍ତାକରି ଶୁଣ, ଆପଣମାନଙ୍କର ହିତକାରୀ ହିତୈଷିଣୀ କେତେ ପରିଶ୍ରମ ଓ ଅନୁସନ୍ଧାନ କରି ଏ କଥାମାନ ବାହାର କରିଅଛନ୍ତି !

## ( ୫ମ ଭାଗ, ୭ । ୫ । ୧୮୭୦, ସଂଖ୍ୟା ୧୯ )

୨୧୪ । ଗ୍ରୀଷ୍ମଋତୁ ।

ଗତ ସପ୍ତାହର ଯେରୂପ ଗ୍ରୀଷ୍ମ ଭୋଗ ହେଉଅଛି ତାହା ଅତ୍ୟନ୍ତ ଅସହ୍ୟ ଅଟଇ । ଦିନ ବେଳେ ଘର ବାହାରିବାର କଥା ରାତିରେ ଘରେ ଶୋଇବାର ସାଧ୍ୟ ନାହିଁ । ବର୍ଷାକାଳ ଆରମ୍ଭହେବାକୁ ନିତାନ୍ତ ଊଣାରେ ଦେଢ଼ମାସ ଅଛି । ଏଥିକୁ ଆଜିକୁ ପୋଖରୀ କୂପମାନ ଶୁଖିକି ପଡ଼ିଲାଣି । ଜଳବିନା ଲୋକଙ୍କର ଦୁର୍ଗତି ଦିନ ଦିନ ବୃଦ୍ଧି ହେଉଅଛି । ଏ ଦେଢ଼ମାସ କିରୂପେ ନିର୍ବାହ ହେବ ବୁଦ୍ଧିପାଇ ନପାରେ । ଗତ ବର୍ଷ କଟକରେ ବର୍ଷା ଊଣା, ପୋଖରୀମାନ ପୂରି ନଥିଲା ସୁତରାଂ ସେ ସମସ୍ତ ଶୁଖିଗଲା । ଏବେ ଜଳ ବିହୀନେ ଲୋକଙ୍କର ଆପାତତଃ କ୍ଳେଶ ହେଉଅଛି ଏମନ୍ତ ନୁହେ ଭବିଷ୍ୟତରେ ପୀଡ଼ିତ ହେବାର ମଧ୍ୟ ଆଶଙ୍କା ଅଛି ।

କଟକ ନଗରରେ ଗଙ୍ଗାମଣ୍ଡଳ ଗୋଟିଏ ବଡ଼ପୋଖରୀ ଅଟେ ଓ ତାହା ମଧ୍ୟ ସ୍ଥଳରେ ଥିବାରୁ ବହୁଲୋକଙ୍କର ନିର୍ବାହର ସ୍ଥାନ, ବିଶେଷରେ ଜେଲଖାନାର ସମସ୍ତ ଜଳ ଏହି ପୋଖରୀରୁ ବୁହା ହୁଅଇ । ଅତଏବ ଆମ୍ଭମାନଙ୍କ ବିବେଚନାରେ ଏହାକୁ

ସରକାରୀ ବ୍ୟୟରେ ଖୋଳାଇ ଦେବାର ଉଚିତ । ମିଉନିଶପଲ ଟାକ୍ସର ଟଙ୍କା ଅନେକ ତୁଚ୍ଛ କଥାରେ ବ୍ୟୟ ହେଉଅଛି । ଯେବେ ସେଥିରୁ କିଛି ଟଙ୍କା ଏ ହିତକର କାର୍ଯ୍ୟରେ ଲାଗେ ତେବେ କେଡେ ଭଲ ହେବ ବର୍ଣ୍ଣିବାର ପ୍ରୟୋଜନ ନାହିଁ । ଆଉ ଏ ପୋଖରୀ ସରକାରୀ ଟଙ୍କାରେ ମରମତ ହୋଇଥିଲୁ । ଜେଲଖାନାର ଯେଉଁ ଏହିଠାରେ ହେଉଥିବାରୁ କଇଦିମାନଙ୍କୁ ଏହାର ଫଙ୍କୋଦ୍ଧାରଣ କାର୍ଯ୍ୟରେ ନିଯୁକ୍ତ କଲେ ଅନ୍ୟାୟ ହେବନାହିଁ । କେବଳ ତାହାଙ୍କ ଉପକାର ନିମନ୍ତେ ଅପେକ୍ଷା ଜଣା ହୋଇଅଛି ଓ ପୋଖରୀ ଶୁଖିଲା ପଡ଼ିଲାରୁ ମଧ୍ୟ ପାଣି ବୁହା ବନ୍ଦ ହୋଇନାହିଁ । ଅତଏବ ଆମ୍ଭେମାନେ ସ୍ଥାନୀୟ କର୍ତ୍ତୃପକ୍ଷଙ୍କଠାରେ ଅନୁରୋଧ କରୁଅଛୁଁ ସେ ଏ ପୋଖରୀର ଦୁର୍ଦ୍ଦଶା ମୋଚନ ପକ୍ଷରେ ଯତ୍ନବାନ ହୁଅନ୍ତୁ ।

## ( ୪ମ ଭାଗ, ୭ । ୫ । ୧୮୭୦, ସଂଖ୍ୟା ୧୯ )

୨୧୫ । ମିଉନିସିପାଲ ଟାକ୍ସ ।

ପୂର୍ବେ ଯେଉଁ ରୀତିରେ ନଗରମାନଙ୍କରେ ଚୌକିଦାରୀ ଟାକ୍ସ ଗୃହୀତ ହେଉଥିଲା ତାହା ଗତ ବର୍ଷରେ ରହିତ ହୋଇ ମିଉନିସିପାଲ ଟାକ୍ସ ଗ୍ରହଣ ପୂର୍ବକ ନଗରର ରକ୍ଷା ଓ ସୌଷ୍ଠବର ନୂତନ ଆଇନ ପ୍ରଚଳନ ହୋଇଅଛି ମାତ୍ର ଗତବର୍ଷ ସେ ଆଇନ ଅନୁସାରେ କୌଣସି କାର୍ଯ୍ୟ ହୋଇନାହିଁ ବୋଇଲେ ଅତ୍ୟୁକ୍ତି ହୋଇ ନପାରେ । ଥରେ କି ଦୁଇଥର ମିଉନିସିପାଲ କମିଟୀର ଅଧିବେଶନ ହୋଇଥିଲା ଯଥ୍ୟ ମାତ୍ର କାର୍ଯ୍ୟ କିଛି ହୋଇ ନଥିଲା । ଏବର୍ଷ ରୀତିମତ କାର୍ଯ୍ୟ ହେବାର ପୂର୍ବ ଲକ୍ଷଣ ଦେଖା ଯାଉଅଛି । ଗତ ମଙ୍ଗଳବାର କମିଟୀର ଅଧିବେଶନରେ ଚଳିତ ବର୍ଷର ଆୟବ୍ୟୟର ଆନୁମାନିକ ଫର୍ଦ୍ଦ ପ୍ରସ୍ତୁତ ହୋଇ ସଭ୍ୟଙ୍କ ଅନୁମୋଦିତ ହୋଇଅଛି । ସଂକ୍ଷେପରେ ଏବର୍ଷ କଟକ ନଗରରେ ପନ୍ଦର ସହସ୍ର ଟଙ୍କା ବ୍ୟୟ ହେବ ଯଥା ଚୌକିଦାରୀ ପୁଲିସ ଖର୍ଚ୍ଚ ସାତ ହଜାର, ସଡ଼କବାଟ ଓ ନର୍ଦ୍ଦମା ମରାମତିର ବ୍ୟୟ ପାଞ୍ଚ ହଜାର । ଟାକ୍ସ ବନ୍ଦୋବସ୍ତ ଓ ଉସୁଲ ତହସିଲ ଓ ନଗର ପରିଷ୍କାର ନିମନ୍ତେ ନିଯୁକ୍ତ ଥିବା କର୍ମଚାରୀ ମୟୂଲଗାଡ଼ି ମେହେନ୍ତର ବଳଦ ଇତ୍ୟାଦିର ବ୍ୟୟ ତିନି ହଜାର ଟଙ୍କା ହେବ । ଏହି ପନ୍ଦର ହଜାର ଟଙ୍କା ଟାକ୍ସଦ୍ୱାରା ଆଦାୟ ହେବାର ଅନୁମାନ ହୋଇଅଛି ଓ ପୂର୍ବେ ଟାକ୍ସ ବନ୍ଦୋବସ୍ତ ପଞ୍ଚାଏତଦ୍ୱାରା ହେଉଥିଲା । ଏବର୍ଷ ତାହା ନହୋଇ ବୈତନିକ କର୍ମଚାରୀଦ୍ୱାରା ବନ୍ଦୋବସ୍ତ ହେବ । ଏଥିର ବ୍ୟୟ ଟ ୩୬୦ କା ସ୍ଥିର ହୋଇଅଛି ଅର୍ଥାତ୍ ଏକମାସ ସକାଶେ ଦୁଇଜଣ ଅସେସର ଜଣକେ ଟ ୧୫୦ କା ଲେଖାଏଁ ବେତନରେ ନିଯୁକ୍ତ ହେବେ ଓ ଟ ୬୦ କାରେ ତାହାଙ୍କ ଅଧୀନରେ ଅମଲା ରହିବେ ।

ଏସବୁ ପ୍ରସ୍ତାବ ଭଲ ହେବ ବା ମନ୍ଦହେବ ନଗରବାସିଙ୍କର ଦୁଃଖ ବଢିବ ସନ୍ଦେହ ନାହିଁ । ଏ ନଗରର ଚୌକିଦାରୀ ଅବସ୍ଥାକୁ ବିଚାର କରି ଦେଖିଲେ ବର୍ଷକେ ଦଶ-ସହସ୍ର ଟଙ୍କା ଉଠିବାର କଠିନ ମାତ୍ର ଏବର୍ଷ ତହିଁର ଦେଢ଼ା ଆଦାୟ ହେବାର ପ୍ରୟୋଜନ ଓ ପଞ୍ଚାଏତମାନେ ଲୋକଙ୍କ ଅବସ୍ଥା ବୁଝି ବନ୍ଦୋବସ୍ତ କରିବାର ଲୋକଙ୍କର ଯାହା କିଛି ରକ୍ଷାର ଉପାୟ ଥିଲା ତାହା ମଧ୍ୟ ଗଲା । ବୈତନିକ ଆସେସରମାନେ କୌଣସିରୂପେ ପନ୍ଦର ହଜାର ଟଙ୍କା ଉଠାଇବାରେ ଚେଷ୍ଟା କରିବେ ସୁତରାଂ ଇନକମ୍ ଟାକ୍ସର ଅତ୍ୟାଚାର ଏ ଟାକ୍ସ ବନ୍ଦୋବସ୍ତରେ ମଧ୍ୟ ପ୍ରତ୍ୟକ୍ଷ ହେବ । ଦେଢ଼ା ଟାକ୍ସ ଦେଇଲେ କିଛି ଅଧିକ ସୁଖ ପାଇବେ ତହିଁର ମଧ୍ୟ ଆଶାନାହିଁ । ପରନ୍ତୁ ସଡ଼କ ଓ ନାଳ ମରାମତ ଓ ଝାଡୁଆଣି ବଢାଇବା ଏହି ଶୁଣାକଥା ଯେମନ୍ତ ପୂର୍ବରୁ ହୋଇ ଆସୁଅଛି ଏବର୍ଷ ସେହିପରି ହେବ । ଶ୍ରୀଯୁକ୍ତ ମନ ସାହେବଙ୍କ ସମୟରେ ଗ୍ରୀଷ୍ମକାଳରେ ସଡ଼କରେ ପ୍ରତ୍ୟହ ଜଳସେଚନ ହେଉଥିଲା ତାହା ଏବେ ଦେଖାନାହିଁ ଓ କିଛି ନୂତନ କାର୍ଯ୍ୟ ନିର୍ମାଣର ମଧ୍ୟ କଥାନାହିଁ । ଯାଜପୁର ଓ କେନ୍ଦ୍ରାପଡ଼ା କ୍ଷୁଦ୍ର ନଗରମାନଙ୍କରେ ନିତ୍ୟ ଜଳସେଚନ ହୋଉଥିବା ପ୍ରତ୍ୟକ୍ଷେ ଏ ନଗରବାସିମାନେ ସଡ଼କ ଧୂଳିରେ ଘୋର-ହୋଇ ଚଳୁଅଛନ୍ତି ଆଶ୍ଚର୍ଯ୍ୟ ଅଟେ ଅଥଚ ଟାକ୍ସ ବୃଦ୍ଧି କରାଯିବାର ତ୍ରୁଟି ନାହିଁ ।

୨୧୨ । ଯାଜପୁର ସଭା !

ଚଳିତ ମାସ ତା ୧ରିଖର ଉତ୍କଳ ହିତୈଷିଣୀରେ ଯାଜପୁର ନିବାସୀ ବାବୁ ଗଣେଶ ଚନ୍ଦ୍ର ମହାପାତ୍ରଙ୍କର ଏକ ସୁଦୀର୍ଘ ବକ୍ତୃତା ପ୍ରକାଶ ହୋଇଅଛି । ସେ ବକ୍ତୃତା ଗତ ମାସ ତା ୧୧ରିଖରେ ଏକ ସଭାରେ ପଠିତ ହୋଇଥିଲା । ମାତ୍ର ସଭାର ଉଦ୍ଦେଶ୍ୟ କି ବକ୍ତୃତାର ଫଳକି କିଛିମାତ୍ର ଉଲ୍ଲେଖ ନକରି କେବଳ ତାହାକୁ ପ୍ରକାଶ କରିବାରେ ହିତୈଷିଣୀର ଅଭିପ୍ରାୟ କିଛି ଜଣା ଯାଉନାହିଁ । ବୋଧହୁଅଇ ତହିଁରେ ଆମ୍ଭମାନଙ୍କର ନିନ୍ଦା ଥିବାରୁ ସମ୍ପାଦକ ଅତ୍ୟନ୍ତ ଆନନ୍ଦିତହୋଇ ସକଳକଥା ବୁଝିବାପାଏ ସମ୍ଭାଳ ହୋଇ ପାରିଲେ ନାହିଁ ଅଥବା ଜାଣିକରି ପରଛିଦ୍ର ରଖିବା ସ୍ୱାର୍ଥ ଜ୍ଞାନ କରିଅଛନ୍ତି । ଆମ୍ଭେମାନେ ମଧ୍ୟ ତାହାଙ୍କ ଆଶା ପୂର୍ଣ୍ଣ କାରଣ ଏ ସପ୍ତାହରେ ଏ ବିଷୟରେ କିଛି କହିଲୁଁ ନାହିଁ କେବଳ ଏତିକି ଜଣାଇବାର ଆବଶ୍ୟକ ଯେ ମହାପାତ୍ର ମହାଶୟ ବକ୍ତୃତା କରିବା ସମୟରେ ତାହାଙ୍କ ହସ୍ତରେ ଗୁମର ମୁଠାକ ଥିଲା କି ନାହିଁ ତାହା ହିତୈଷିଣୀ ନକହି ବଡ଼ ରସଭଙ୍ଗ କରିଅଛନ୍ତି । କାରଣ ଦାଇକାଟି ଯେମନ୍ତ ସଜାଡ଼ ହୋଇ ଲେଖା ହୋଇଅଛି ସେବେ ତଦୁପଯୁକ୍ତ ଗୁମର ଗୃଜନ ହୋଇ ନଥିବ ତେବେ ମହାପାତ୍ରଙ୍କ ପ୍ରଶଂସା ଲାଭେଚ୍ଛାର ବିସ୍ତର ହାନି ହୋଇଥିବ ।

( ୫ମ ଭାଗ, ୧୪ । ୫ । ୧୮୭୦, ସଂଖ୍ୟା ୨୦ )

୨୧୭ । ଯାଜପୁର ସଭା ।

ଅମ୍ଭମାନେ ଗତ ସପ୍ତାହରେ ଏ ସଭାର ବିବରଣ ପ୍ରକାଶ କରି ନଥିଲୁଁ । ଉକ୍ତ ସଭାରେ ଉପସ୍ଥିତ ଥିବା ଜଣେ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କଠାରୁ ଅବଗତ ହେଲୁଁ ଯେ ସଭାଟି ବାବୁ ତ୍ରୈଲୋକ୍ୟ ନାଥ ମୁଖୁର୍ଯ୍ୟାଙ୍କ ଉଦ୍ୟମରେ ହୋଇଥିଲା । ଗଣେଶ ଚନ୍ଦ୍ର ବାବୁ ଯେଉଁ ବକ୍ତୃତା ପାଠକଲେ ତାହାର ମର୍ମ ଏହି ଯେ ଓଡ଼ିଆ ଭାଷା ଉଠାଇବା ସମ୍ବନ୍ଧରେ ଏ ପତ୍ରିକାରେ ଯାହା ପ୍ରକାଶ ହୋଇଅଛି ତାହା ଉତ୍କଳୀୟଙ୍କ ମତ ନୁହଇ । ଉତ୍କଳୀୟମାନେ ଓଡ଼ିଆ ଭାଷାକୁ ଉଠାଇ ଦେବାକୁ ଚାହାନ୍ତି, କେବଳ ତାହାଙ୍କୁ ଦରଖାସ୍ତ ଲେଖିବାକୁ ଆସିଇ ନାହିଁ ବୋଲି ତାହାଙ୍କ ଅନୁରୋଧରେ ବଙ୍ଗାଳମାନେ ଦରଖାସ୍ତ ପ୍ରସ୍ତୁତ କରି ସ୍ୱାକ୍ଷର କରାଉ ଅଛନ୍ତି ମାତ୍ର ଗଣେଶ ବାବୁ ଆଉ ୨ ଯେ ଓଡ଼ିଆମାନେ ବଙ୍ଗାଳିଙ୍କର ସାହାଯ୍ୟ ପ୍ରାର୍ଥନା କଲେ ଆଶ୍ଚର୍ଯ୍ୟ ଅଟେ ।ଏଥିରୁ ଏହି ବୋଧହୁଅଇ ଯେ ତାହାଙ୍କର ବକ୍ତୃତାଟିକୁ ସେ ଲେଖି ନାହାନ୍ତି କୌଣସି ବଙ୍ଗାଳି ସେଥିରେ ସାହାଯ୍ୟ କରିଥିବେ ନୋହିଲେ ଏମନ୍ତ ବକ୍ତୃତା ଯାହାଙ୍କୁ ଲେଖିବାର କ୍ଷମତା ଅଛି ସେ କି ଦରଖାସ୍ତ ଲେଖି ନପାରନ୍ତେ । ଗଣେଶ ବାବୁ ବହୁ ଅନୁଗ୍ରହ ପୂର୍ବକ ଆପଣାମତକୁ ଉତ୍କଳୀୟଙ୍କ ମତ ଓ ଦୀପିକା ଏ ଦେଶର ପରମ ଶତ୍ରୁ ଥିବାର ପରିଚୟ ଦେଲେ । ତଦୁତ୍ତାରୁ ବାବୁ ତ୍ରୈଲକ୍ୟ ନାଥ ଏହି ବିଷୟରେ କିଛି ବକ୍ତୃତା କଲେ ଓ ବଙ୍ଗଳା ଦରଖାସ୍ତ ପାଠକରି ଉପସ୍ଥିତ ସଭ୍ୟମାନଙ୍କୁ ସ୍ୱାକ୍ଷର କରିବାକୁ ଅନୁରୋଧ କଲେ । ସେ ନଗରସ୍ଥ ପ୍ରଧାନ ଜମିଦାର ଚୌଧୁରୀ ପ୍ରହଲ୍ଲାଦ ମହାପାତ୍ର ଓ ବିଦ୍ୟାଳୟର ପଣ୍ଡିତ ଶିବ ଚନ୍ଦ୍ର ବିଦ୍ୟାରତ୍ନ ବକ୍ତୃତାର ପ୍ରତିବାଦ କରି କହିଲେ ଯେବେ ଯାଜପୁର ବଙ୍ଗଳା ସୀମାକୁ ନିକଟ ବୋଲି ସେଠାରେ ବଙ୍ଗଳା ଚଳାଇବା କର୍ତ୍ତବ୍ୟ ତେବେ କୋଠଦେଶରେ ତେଲେଙ୍ଗି ଚଳାଇବାର ଆବଶ୍ୟକ । ଆଉଁ ଯେବେ ବଙ୍ଗଳା ଓଡ଼ିଆ ଏକଭାଷା ତେବେ ବଙ୍ଗାଳମାନେ ଓଡ଼ିଆର କେତେଟା ଅକ୍ଷର ବଙ୍ଗଳାରେ ପ୍ରଚଳ କରନ୍ତୁ ତେବେ ଓଡ଼ିଆରେ କେତେକ ବଙ୍ଗଳା ଅକ୍ଷର ମିଶାଇବାକୁ ସମ୍ମତ ସେ ହେବେ । ଏହିରୂପ ବାଦାନୁବାଦ ହେଉଁ ୨ କଳହୋଉ ଉଠିଲା ଓ ସଭ୍ୟମାନେ କେହି ସେଥିରେ ସମ୍ମତହୋଇ ସ୍ୱାକ୍ଷର କଲେ ନାହିଁ ।

ସାପ୍ତାହିକ ସମ୍ବାଦ ।

୨୧୮ । ଗତ ଶନିବାର ଆମ୍ଭମାନଙ୍କ କମିଶ୍ନର ଶ୍ରୀଯୁକ୍ତ ରେବନସା ସାହେବ

ସକାଳ ଘ୯ଣ୍ଟା ସମୟରେ କଟକରେ ପ୍ରବେଶହୋଇ କାର୍ଯ୍ୟଭାର ଗ୍ରହଣ କଲେ ଓ ସେହି ଦିବସ ଶ୍ରୀଯୁକ୍ତ ମନ୍ନେମା ସାହେବ କଲିକତାକୁ ପ୍ରସ୍ଥାନ କଲେ ।

୨୮୯ । ଏହିଦିନ ଦୁଇପ୍ରହର ସମୟରେ ତୋପ ପଡ଼ୁନାହିଁ । ଏଠାର ଗୋଲନ୍ଦାଜ ପଲଟନ ଉଠିଯିବା ଏହାର କାରଣ ଅଟଇ ମାତ୍ର ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ପଦାତିକ ସୈନ୍ୟ ମଧ୍ୟରେ କମ୍ପାନି ପ୍ରତି ଜଣ୨ଣ ଲେଖାଏଁ ତୋପ ଜାରିବାକୁ ଶିକ୍ଷିବାର ନିୟମ ଅଛି ଓ ସେହି ପରିମାଣରେ ଜାଣନ୍ତି । ଏହାଙ୍କଦ୍ୱାରା ପ୍ରତି ଶନିବାର ତୋପ ଫାଏର ହେଲେ ଭଲ ହୁଅନ୍ତା । ତୋପ ନପଡ଼ିଲେ ନଗରବାସିଙ୍କୁ ଘଡ଼ି ଠିକ କରିବାର ଅନ୍ୟ ଉପାୟ ନାହିଁ ।

## ( ୫ମ ଭାଗ, ୨୧ । ୫ । ୧୮୭୦, ସଂଖ୍ୟା ୨୧ )

୨୨୦ । ଶ୍ରୀଯୁକ୍ତ ରେଭେନସା ସାହେବଙ୍କ ପ୍ରତ୍ୟାଗମନ ଉପଲକ୍ଷରେ ଏ ନଗରକୁ ଢେଙ୍କାନାଳ ମହାରାଜ ଓ କେନ୍ଦୁଝଡ଼ ଆଠଗଡ଼ ମଧୁପୁର ରାଜାମାନେ ଶୁଭାଗମନ କରିବାର ଗତ ସପ୍ତାହର ଏଠାରେ ପ୍ରାୟ ପ୍ରତିଦିନ ସଭାର ଆଡ଼ମ୍ବର ଲଗିଅଛି । ଏଥି-ମଧ୍ୟରେ ଉତ୍କଳୋଲ୍ଲାସିନୀର ଦୁଇଥର ଅଧିବେଶନ ହୋଇଥିଲା । ଶେଷ ସଭାରେ ଶ୍ରୀଯୁକ୍ତ ରେଭେନସା ସାହେବ କମିଶ୍ନର ଦର୍ଶକ ସ୍ୱରୂପ ଆସିଥିଲେ ! ସଭା ପ୍ରିଣ୍ଟିଂକମ୍ପାନୀର ଦୋମହଲା ଘରେ ହୋଇଥିଲା ଓ ସଭାରେ ଅନେକ ସମ୍ଭ୍ରାନ୍ତ ବ୍ୟକ୍ତି ମାନେ ସମସ୍ତେ ଉପସ୍ଥିତ ଥିଲେ । ଶ୍ରୀଯୁକ୍ତ କମିଶ୍ନେର ସାହେବ ଛିକ୍ରଗୃହର ଶୋଭା ଦେଖି ଦତ୍ତପରୋନାସ୍ତି ସନ୍ତୁଷ୍ଟ ହୋଇ ବକ୍ତୃତା କରିଥିଲେ । ସେଥିରେ ସେ ବ୍ୟକ୍ତ କଲେ ଯେ ଓଡ଼ିଶାବାସିମାନେ ଆପଣା ହିତସାଧନ କାରଣ ଏତେବ୍ୟୟ ସ୍ୱୀକାର କରି ଏମନ୍ତ ସୁନ୍ଦର କୀର୍ତ୍ତି ସ୍ଥାପନ କରିଅଛନ୍ତି ସାମାନ୍ୟ ସୁଖର ବିଷୟ ନୁହଇ । ଯେତେକାଳ ଏଗୃହ ବିଦ୍ୟମାନ ଥିବ ତେତେ କାଳ ଏଥିରେ ସାହାଯ୍ୟ କରିଥିବା ବ୍ୟକ୍ତିଙ୍କନାମ ଜାଜ୍ୱଲ୍ୟମାନ ରହିବ ସନ୍ଦେହ ନାହିଁ । କଟକରେ ସାଧାରଣ ସଭା କାରଣ ଗୋଟିଏ ମାତ୍ର ଗୃହ ନଥିଲା, ସମ୍ପ୍ରତି ଏ ଘର କଟକର ଅଳଙ୍କାରସ୍ୱରୂପ ପ୍ରାପ୍ତ ହୋଇଅଛି ଓ ଏହାଦ୍ୱାରା ଅନେକ ଉପକାର ହେବାର ସମ୍ଭାବନା । ସେଦିନ କମିଶ୍ନର ସାହେବ ସଭ୍ୟମାନଙ୍କୁ ଯାତ୍ରିଙ୍କଠାରୁ ଟାକ୍ସ ଗ୍ରହଣ ବିଷୟରେ ଗୋଟିଏ ପ୍ରଶ୍ନ କଲେ, ସଭାର ତହିଁର ଉତ୍ତର ଏପରେ ଦିଆଯିବାର ସ୍ଥିର ହୋଇ ସଭା ଭଙ୍ଗହେଲା ।

ଆଗନ୍ତୁକ ରାଜାମାନେ ଆପଣା ୨ ବସାଘରଠାରେ ନଗରସ୍ଥ ସମସ୍ତ ପଣ୍ଡିତ ଓ କେତେକ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କୁ ଆହ୍ୱାନ କରି ସଭା କରିଅଛନ୍ତି । ପ୍ରଥମେ କେନ୍ଦୁଝଡ଼-

ରାଜା ଏହାର ସୂତ୍ରପାତ କଲେ ଓ ତଦନନ୍ତର ଢେଙ୍କାନାଳର ମହାରାଜ ଓ ତହିଁ ଆରଦିନ ମୟୂରଭଞ୍ଜ ରାଜା ଏହିରୂପ ସଭା କରିଥିଲେ । ଆଠଗଡ଼ ରାଜାଙ୍କର ଗତ ରାତିରେ ସଭା ହୋଇଥିଲା । ଏକଦିନ କଟକ ଯୋଗାଇଟୀର ସଭା ହୋଇଥିଲା ଓ ତତ୍ତ୍ୱଦର୍ଶିନୀ ସଭା ମଧ୍ୟ ଦିନେ ହେବାର କଥା ଅଛି । ଏସଭା ସଂକ୍ରାନ୍ତ କେତେକ ବିଷୟ ବୋଲିବାକୁ ଆମ୍ଭମାନଙ୍କର ଇଚ୍ଛା ରହିଲା କ୍ରମେ ତାହା ପ୍ରକାଶ କରିବା । ସମ୍ପ୍ରତି କେବଳ ଏତିକି ବୋଲିବାର ପ୍ରୟୋଜନ ଯେ ରାଜାମାନେ କଟକକୁ ଆସିବାରୁ ପଣ୍ଡିତଙ୍କର ବିଲକ୍ଷଣ ଲାଭ ହୋଇଅଛି କିନ୍ତୁ ରାଜାମାନେ ପଣ୍ଡିତଙ୍କର ସମାଦର କରି ଜ୍ଞାନୋପାର୍ଜନ ପ୍ରତି ଯଥାର୍ଥ ଉତ୍ସାହ ପ୍ରଦାନ କରିଅଛନ୍ତି କି ନା ଆମ୍ଭେମାନେ ସହସା କହି ନପାରୁଁ ।

## ୨୨୧ । ଉତ୍କଳର ଲବଣ କର ରକ୍ଷାର ବିଧାନ ।

ଗତ ତା୧୩ରିଖ ଡେଲି ନିୟୁଜରୁ ଅବଗତ ହେଲୁଁ ଯେ ଓଡ଼ିଶାର ଲବଣ କର ରକ୍ଷା ଉଦ୍ଦେଶ୍ୟରେ ବୋର୍ଡ ରେବିନ୍ୟୁ ଗତ ଦୁଇବର୍ଷଠାରୁ ଏକ ସୀମା ସ୍ଥିରକରି ପୁଲିସ ପ୍ରହରୀ ବସାଇବାର ବିଚାର କରୁଅଛନ୍ତି । ଦକ୍ଷିଣର ଲୁଣ ପୁରା ମାସୁଲ ନଦେଇ କଟକ ଗଡ଼ଜାତ ଓ ମଧ୍ୟପ୍ରଦେଶରେ ବିକ୍ରୟ ହେବା ନିବାରଣ କରିବା ଏଥିର ତାତ୍ପର୍ଯ୍ୟ ଅଟଇ । ସମ୍ପ୍ରତି ବୌଦ ଯାଏ ପୁଲିସ ପହରା ଅଛି । ସେଠାରୁ କଟକଜିଲ୍ଲାର ସମୁଦ୍ରତୀର ପର୍ଯ୍ୟନ୍ତ ପୁଲିସ ପହରା ବସାଇବାର କଥା ହେଉଅଛି । ମଧ୍ୟପ୍ରଦେଶର କଷ୍ଟମ କମିଶ୍ନର କହନ୍ତି ଯେ ଏହି ପୁଲିସ ରକ୍ଷିତ ସୀମା ମଧ୍ୟରୁ ଚିଲିକା ହ୍ରଦର ଲବଣ ପ୍ରସ୍ତୁତ ଯୋଗ୍ୟ ସ୍ଥାନମାନ ବାହାରିଯିବ ମାତ୍ର ଶ୍ରୀଯୁକ୍ତ ରେବେନସା ସାହେବଙ୍କ ମତରେ ଚିଲିକା ହ୍ରଦକୁ ରକ୍ଷିତ ସ୍ଥାନ ମଧ୍ୟରେ ଆଣି ଦେବୀନଦୀର ମୁହାଣ ପାଖ ମଢଲି ନିକଟ ପର୍ଯ୍ୟନ୍ତ ପୁଲିସ ସ୍ଥାପନ ହେବ । ଡେଲି ନିୟୁଜ ବୋଲନ୍ତି ଯେ ପରିଶେଷରେ ରେବେନସା ସାହେବଙ୍କ ମତ ଗବର୍ଣ୍ଣମେଣ୍ଟ ଅନୁମୋଦନ କରିବାର ବିଶ୍ୱାସ ହେଉଅଛି କାରଣ ରେବେନସା ସାହେବ ଉତ୍କଳର ଅବସ୍ଥାର ସମ୍ୟକ ଅବଗତ ଥାଇଁ ଯାହା କହିଅଛନ୍ତି ତାହା ଘେନ-ବାକୁ ହେବ । ହଡମ ସାହେବଙ୍କୁ ଏ ପ୍ରଦେଶର ଗତିବିଧି ଭାଲୁଣ ଜଣାନାହିଁ । ଅନୁମାନ ହୁଅଇ ଏ ପୁଲିସ ପହରା ସୀମା ଗଞ୍ଜାମ ସଡ଼କର ସମାନ୍ତରାଳ ଦଶମାଇଲ ଛଡ଼ାରେ ରହିବ । ଡେଲି ନିୟୁଜ ଆହୁରି କହନ୍ତି ଯେ ଏ ପୁଲିସ ପ୍ରହରୀମାନେ କଟକ କମିଶ୍ନରଙ୍କ ଅଧୀନରେ ରହିବା ଉଚିତ କାରଣ ଏ ମହାଶୟ ଗଡ଼ଜାତର ସୁପରି-ଣ୍ଟେଣ୍ଡେଣ୍ଟ ଥିବାରୁ ଏହାଙ୍କର ଆଜ୍ଞା ଯେପରିଯେ ପ୍ରତିପାଳିତ ହେବ ମଧ୍ୟପ୍ରଦେଶର କମିଶ୍ନରଙ୍କ କଥା ତେତେ ବଳବାନ ହେବନାହିଁ ।

ଉପସଂହାର ସ୍ଥଳେ ସମ୍ପାଦକ ଏହି ପୁଲିସ ସ୍ଥାପନ ବ୍ୟାପାର ବିବେଚନା କରିବାକୁ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଅଛନ୍ତି । ସେ ବୋଲନ୍ତି କି ଯେଉଁରୂପ ପୁଲିସ ବସାଇବାର

ଦେଖା ହେଉଅଛି ସେଥିରେ ବାର୍ଷିକ ୫୭୫୦ ଟଙ୍କାର ଊଣା ବ୍ୟୟ ହେବନାହିଁ ଓ ଲବଣ କର କି ଏତେ ପରିମାଣରେ ନଷ୍ଟ ହେଉଅଛି ଯେ ତାହା ହସ୍ତଗତ ହେଲେ ସେଥିର ପୁଲିସ ବ୍ୟୟ ପାଇଁ ଅବଶିଷ୍ଟ ରହିବ ଟଙ୍କା ଗବର୍ଣ୍ଣମେଣ୍ଟଙ୍କ ହସ୍ତଗତ ହେବ ? ଯେପର୍ଯ୍ୟନ୍ତ ଏ କଥାର ସ୍ଥିର ହୋଇନାହିଁ ସେପର୍ଯ୍ୟନ୍ତ ନୂଆ ମହକୁମା ସ୍ଥାପନର କୌଣସି ହେତୁ ଦେଖା ଯାଉନାହିଁ । ଆମ୍ଭମାନଙ୍କର ମଧ୍ୟ ଏହି ମତ ଅଟେ । ଦକ୍ଷିଣର ଚୋରା ଲୁଣ ଆସି ଏ ପ୍ରଦେଶରେ ବିକ୍ରୟ ହେବାର କପର୍ଯ୍ୟନ୍ତ ରାଜସ୍ୱର କ୍ଷତି ହେଉଅଛି ଓ ପୁଲିସ ବସାଇବା ଭିନ୍ନ ତାହା ନିବାରଣ ହୋଇପାରେ କିନା ଗବର୍ଣ୍ଣମେଣ୍ଟଙ୍କର ସହଜରେ ବିଚାର କରିବାର କର୍ତ୍ତବ୍ୟ । ଯେବେ ସେଥିର ଏମନ୍ତ ଉପଲବ୍ଧ ହୁଅଇ ଯେ ବ୍ୟୟ କଲେ ତହିଁର ଅଧିକ ଧନାଗାରକୁ ରାଜସ୍ୱ ଆସିବ ତେବେ କିଛି କ୍ଷତିନାହିଁ ମାତ୍ର ଆମ୍ଭମାନଙ୍କର ଭୟ ହେଉଅଛି ଯେ ଶେଷରେ ଲାଭର ଗୁଡ଼ ପିମ୍ପୁଡ଼ି ଖାଇ ନଯାଏ । ଫଳତଃ ଏ ପୁଲିସ ବସିଲେ ଗବର୍ଣ୍ଣମେଣ୍ଟଙ୍କର ଲାଭ ହେଉ ବା ନହେଉ ଆମ୍ଭମାନଙ୍କ ବିବେଚନାରେ ଲବଣ କରର ଭିନ୍ନ ବିଧାନ କରିବା ସର୍ବପ୍ରକାରରେ ଉଚିତ ଅଟଇ । ଏକ ୨ ପ୍ରଦେଶରେ ଲବଣ କରର ପରିମାଣ ଭିନ୍ନ ଥିବାରୁ ସିନା ଏତେ ପୁଲିସ ରଖିବାର ପ୍ରୟୋଜନ ହେଉଅଛି, ଯେବେ ମାନ୍ଦ୍ରାଜ ଓ ବଙ୍ଗଳାରେ ଲବଣ କର ଏକପ୍ରକାର ଥାନ୍ତା ତେବେ ଆଉ କିଛି ଡର ନଥାନ୍ତା । ବର୍ତ୍ତମାନ ଗବର୍ଣ୍ଣମେଣ୍ଟଙ୍କର ଯେମନ୍ତ ଅର୍ଥର ଅନଟନ ଓ ଅଫିମର କର ଯେମନ୍ତ ଊଣା ପଡ଼ୁଅଛି ଏଥିକୁ ନିତାନ୍ତ ଆବଶ୍ୟକ ଯେ ଲବଣ କର ଉପରେ ବିଶେଷ ଅଶାଭରସା ସ୍ଥାପିତ ହେଉ । ଲବଣ କରଦ୍ୱାରା କେବଳ ଗବର୍ଣ୍ଣମେଣ୍ଟର ଅଧିକ ଲାଭ ତାହା ନୁହଇ । ଏହାପରି ସହଜରେ ଅନ୍ୟ କୌଣସି ଶୁଳ୍କ ଆଦାୟ ହେବାର ଦେଖା ନଯାଏ । ଅତଏବ ଯେଉଁପେ ଅଳ୍ପ ବ୍ୟୟରେ ଏ କର ହସ୍ତଗତ ହୁଅଇ ଅନୁଷ୍ଠାନ ସେଥିର ଚିନ୍ତାକରିବା ଆବଶ୍ୟକ । ମାନ୍ଦ୍ରାଜ ଓ ବୋମ୍ବାଇରେ ଲବଣ କରର ପରିମାଣ ବଙ୍ଗଳା ପ୍ରାୟ କରିବାର ଅନେକ କାଳରୁ ଗବର୍ଣ୍ଣମେଣ୍ଟ ପ୍ରସ୍ତାବ କରିଅଛନ୍ତି ମାତ୍ର କାହିଁକି ଆଜିଯାଏ କିଛି ହୋଇନାହିଁ ବୁଝି ନପାରୁଁ । ଯେତେ ବେଗରେ ଇନ୍‌କମ୍ ଟାକ୍‌ସ ଆଇନ ହୁଅଇ ଯେବେ ଅରେ ଏ ସବୁ ବିଷୟରେ ସେହି ବେଗର ସଂଯୋଗ ହୁଅନ୍ତା ତେବେ ଇନ୍‌କମ୍ ଟାକ୍‌ସର ପ୍ରୟୋଜନ ହୁଅନ୍ତା ନାହିଁ ।

୨୨୨ । ଓଡ଼ିଶାର ମତ୍ସ୍ୟଙ୍କ ରକ୍ଷାର ଉପାୟ ।

ଏ ବିଷୟ ତଦନ୍ତ କରିବା ନିମିତ୍ତ ଡାକ୍ତର ଡେ ନାମରେ ଏକ ବ୍ୟକ୍ତି ଏ-ପ୍ରଦେଶକୁ ଏକବର୍ଷ ପୂର୍ବରେ ଆସିଥିବାର ପାଠକଙ୍କ ସ୍ମରଣ ଥିବ । ସେ ଏଠାର ସକଳ କଥା ବୁଝିପାଇ ଗବର୍ଣ୍ଣମେଣ୍ଟଙ୍କୁ ପତ୍ରଲେଖି ଦେବାରେ ଗତ ସପ୍ତାହର କଲିକତା ଗେଜେଟରେ ତାହାର ବିଜ୍ଞାପନ ପ୍ରକାଶ ହୋଇଅଛି ।

ତା ୧୯ରଖ ଅପ୍ରେଲ ସନ ୧୮୭୦, ।

ନଦୀଜଳ ଅଟକ ରଖିବା ପଥରବନ୍ଧ ନିକଟ ଏବଂ ସରକାରୀ ନାଳ ସମସ୍ତର ମାଛବଧ ନିବାରଣ ଉଦ୍ଦେଶ୍ୟରେ ଡାକ୍ତର ଡେ ସାହେବଙ୍କ ପ୍ରସ୍ତାବମତ ଶ୍ରୀଯୁକ୍ତ ଗବର୍ଣ୍ଣର ଜେନେରାଲଙ୍କ ମନୋନୀତ ହେବାରୁ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସାହେବ ଆଦେଶ କରିଅଛନ୍ତି କି ତଳଲିଖିତ ନିୟମମାନ ଏ ପ୍ରଦେଶର ସମସ୍ତ ସରକାରୀ ନାଳରେ ଅଦ୍ୟାବଧି ପ୍ରଚଳନ ହେବ ।

୧ । ନାଳରୁ ମାଛ ଧରିବା ଜାଲ ଜଲାମାନ ବଡ଼ହେବ ଅର୍ଥାତ୍ ପ୍ରତ୍ୟେକ ଛିଦ୍ରର ବେଢ଼ ଚୁରିଇଞ୍ଚିରୁ ଊଣା ନହେବ ଏବଂ ଖଇଁଚ ଆଦିର କାଠିମାନ ସ୍ପଷ୍ଟ ଦୁଇ ଇଞ୍ଚ ଛଡ଼ାରେ ରହିବ ।

୨ । ଯେତେବେଳେ ବନ୍ଧ ଉଛୁଳା ପାଣି ବହୁନଥିବ ତେତେବେଳେ ପ୍ରତ୍ୟେକ ତଳ କବାଟି ବାଟର ଗୋଟିଏ ମୁହଁ ସପ୍ତାହରେ ଥରେ ହେଲେ ଖୋଲା ରହିବ ଯେ ଯେମନ୍ତ ବାଟରେ ମାଛଗୁଡ଼ିକ ସମୁଦ୍ରକୁ ଯାଇ ପାରିବେ ।

୩ । କୌଣସି ପଥରବନ୍ଧର ତଳ ଅଧମାଇଲ ଏବଂ ବନ୍ଧ ଉପରକୁ ୨୦୦ ଗଜ ମଧ୍ୟରେ ଜାଲ ପକାଇବା କିମ୍ବା ବନ୍ଧିରେ ମାଛ ଧରିବା ନିଷେଧ ହେବ କାରଣ ଏ ପ୍ରକାର ମାଛଧରିବାରେ ଏକାବେଳକେ ସବୁମାଛ ନଷ୍ଟ ହେଉଅଛନ୍ତି ।

ସାପ୍ତାହିକ ସଂବାଦ ।

୨୨୩ । ଶ୍ରୀଯୁକ୍ତ କ, ଟେଏନବୀ ସାହେବ ଉପ୍ରେଡ କଟକର ଏକଟିଂ କଲେକଟର ମାଜିଷ୍ଟ୍ରେଟ ନିଯୁକ୍ତ ହୋଇଅଛନ୍ତି ! ଏ ମହାଶୟ ଗତ ସୋମବାରରୁ ଏଠାରେ ଉପସ୍ଥିତ ହେଲେକ ।

( ୫ମ ଭାଗ, ୨୮ । ୫ । ୧୮୭୦, ସଂଖ୍ୟା ୨୨ )

୨୨୪ । ସଭା ଓ ମର୍ଯ୍ୟାଦା ।

ଆମ୍ଭେମାନେ ଗତ ସପ୍ତାହର ପତ୍ରିକାରେ ଏ ନଗରରେ ଯେଉଁ ସଭାମାନ ହେବାର ସମ୍ବାଦ ଲେଖିଥିଲୁଁ ସେ ବିଷୟରେ ଆପଣା ମନ୍ତବ୍ୟ ପ୍ରକାଶ କରିବାର ଇଚ୍ଛା ପ୍ରକାଶ କରିଥିଲୁଁ । ସେ ସଭାମାନ ଦୁଇ ପ୍ରକାରରେ ବିଭାଗ ହୋଇପାରେ ଅର୍ଥାତ୍

ସାଧାରଣସଭା ଓ ପଣ୍ଡିତଙ୍କର ସଭା । ଅଦ୍ୟ ସାଧାରଣ ସଭା ବିଷୟରେ ଆପଣା ଅଭିପ୍ରାୟ ବ୍ୟକ୍ତ କରୁଅଛୁଁ ।

ସାଧାରଣ ସଭା ମଧ୍ୟରେ ଉଲ୍ଲାସିନୀ ସଭାକୁ ପ୍ରଧାନ ବୋଲିବାକୁ ହେବ । ଏ ଏ ସଭାରେ ରାଜା ଜମିଦାର ପଣ୍ଡିତ ସରକାରୀ ଉଚ୍ଚ କର୍ମଚାରୀ ଏବଂ ଆଉ ଶ୍ରେଣୀର ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଏକତ୍ରିତ ହୋଇଥିଲେ । କମିଶନର ସାହେବ ଆପଣା ବକ୍ତୃତାରେ କହିଲେ ଯେ ସେ ସଭାକୁ ଆସିଅଛନ୍ତି ବୋଲି କେହି ଯେମନ୍ତ ତାହାଙ୍କୁ ଉଚ୍ଚ ହାକିମ ବିଚାର କରି ମନୋଗତ ଭାବ ପ୍ରକାଶ କରିବାକୁ ଲଜ୍ଜିତ ବା କୁଣ୍ଠିତ ନହେଉନ୍ତୁ । ବାସ୍ତବରେ ସେ ହାକିମ ସ୍ୱରୂପ ସଭାକୁ ଆସିନାହାନ୍ତି, ଅନ୍ୟ ସଭ୍ୟଙ୍କ ପ୍ରାୟ ତାହାଙ୍କୁ ଜଣେ ଉତ୍କଳବାସୀ ବନ୍ଧୁ ବୋଲି ସଭ୍ୟମାନେ ଗ୍ରହଣ କଲେ ସେ ଅତିଶୟ ଆନନ୍ଦିତ ହେବେ । ଏକଥା ଯେ କେଡ଼େ ଉତ୍କୃଷ୍ଟ ଓ ଏଥିରେ ସଭ୍ୟମାନେ କି ପର୍ଯ୍ୟନ୍ତ ସନ୍ତୁଷ୍ଟ ହେଲେ ଆମ୍ଭେମାନେ ବର୍ଣ୍ଣନା କରି ନପାରୁଁ । ବାସ୍ତବରେ ଶ୍ରୀଯୁକ୍ତ ରେଭେନସା ସାହେବଙ୍କୁ କମିଶନର ବୋଲି ଲୋକେ ଯେଡ଼େ ଭକ୍ତି କରୁ ନଥିଲେ ଏକଥାରେ ତହିଁର ତ୍ରିଗୁଣ ସ୍ନେହ ଓ ଭକ୍ତି ଉଦୟ ହେଲା । କେବଳ ସରକାରୀ ମର୍ଯ୍ୟାଦା ଧରିଲେ ତାହାଙ୍କର ସମାନସ୍ଥଳ କେହି ନଥିଲା ଓ ତହିଁର ପ୍ରତ୍ୟକ୍ଷ ପ୍ରମାଣ ଏହି ଯେ ସେ ଉଠିଲା-ବେଳେ ସମସ୍ତେ ଉଠୁଥିଲେ ଓ ବସିଲାକୁ ସମସ୍ତେ ବସୁଥିଲେ ମାତ୍ର ସେ ଉକ୍ତ ମର୍ଯ୍ୟାଦା ରଖିବାକୁ ଅସ୍ୱୀକାର ହେବାରୁ ତାହାଙ୍କର କିଛି କ୍ଷତି ନହୋଇ ଅଧିକ ସମ୍ମାନ ବଢ଼ିଲା । ମର୍ଯ୍ୟାଦା ପ୍ରଶଂସା ଆଦି ବିଷୟ କେହି ଆପଣାସତ୍ୱ ବୋଲି ପ୍ରଚଳ କରି ନପାରନ୍ତି ତାହା ଅନ୍ୟର ବିଚାର ଉପରେ ନିର୍ଭର ରଖଇ । ଅତି ମର୍ଯ୍ୟାଦାବନ୍ତ ଲୋକ ଦାଣ୍ଡରେ ଚାଲି-ଯାଉଥିଲେ କେହି ତାହାଙ୍କୁ ପଚାରିବ ନାହିଁ ମାତ୍ର ସମ୍ଭ୍ରାନ୍ତ ମଣ୍ଡଳୀରେ ଉପସ୍ଥିତ ହେଲେ ତତ୍କ୍ଷଣାତ୍ ତାହାଙ୍କର ମର୍ଯ୍ୟାଦା ବଢ଼ିବ ଓ ସେ ଯେତେ ଆପଣାର ମର୍ଯ୍ୟାଦାକୁ ନ୍ୟୂନ କରିବାକୁ ଚାହୁଁ ଥିବେ ସେତେ ତାହା ବଢ଼ାଇବା ପାଇଁ ଅନ୍ୟ ସଭ୍ୟମାନେ ବ୍ୟସ୍ତ ହେଉଥିବେ । ରାଜାମାନେ ଆଉ ଶ୍ରେଣୀର ଲୋକଙ୍କ ସହିତ ସଭାରେ ବସିଲେ ତାହାଙ୍କର ମାନହାନି ହୁଅଇ ଏମନ୍ତ କଦାଚ କୁହାଯାଇ ନପାରେ ଓ ଯେ ଏମନ୍ତ ବିଚାର କରନ୍ତି ସେ କେବଳ ଭ୍ରମରେ ପଡ଼ିଅଛନ୍ତି ବୋଲିବାକୁ ହେବ । ରାଜାମାନେ ଯେତେ ସଭାରେ ଉପସ୍ଥିତ ହୁଅନ୍ତି ସେତେ ତାହାଙ୍କର ମର୍ଯ୍ୟାଦା ବଢ଼ୁଥାଏ । ଏଥିର ଉଦାହରଣ ଦେବାର ଆବଶ୍ୟକ ନାହିଁ । ସମସ୍ତେ ଜାଣନ୍ତି ଯେ ଅସତ୍ୟ କେହି ରାଜା ଯେତେବେଳେ କଟକକୁ ଆସନ୍ତି ସେତେବେଳେ ଯେଉଁ ହିତକର ସଭାକୁ ତାହାଙ୍କୁ ଆମନ୍ତ୍ରଣ ହୁଅଇ ସେଠାରେ ଉପସ୍ଥିତ ହୁଅନ୍ତି । ଯେବେ ସେ ଆପଣାକୁ ଭାରି ମର୍ଯ୍ୟାଦାବନ୍ତ ମାନ କରି ଘରେ ରୁଦ୍ଧହୋଇ ରହନ୍ତେ ତେବେ ତାହାଙ୍କର କର୍ମଚାରୀ ଓ ପ୍ରଜା ଭିନ୍ନ ଆଉ କେହି ତାହାଙ୍କୁ ସମ୍ମାନ କରନ୍ତେ ନାହିଁ । ପରସ୍ପର ସାକ୍ଷାତ୍ କରି କଥୋପକଥନ

କରିବା ପ୍ରଧାନ ସାମାଜିକ ନିୟମ ହୋଇଅଛି । ଏ ନିୟମଦ୍ୱାରା ଯେ କେତେ ଲାଭ ହୁଅଇ ତାହା ଅକଥନୀୟ । ଧନବାନର ଧନ ପଣ୍ଡିତର ବୁଦ୍ଧି ଓ ପରାକ୍ରମଶାଳୀର ବଳ ଏକତ୍ର ହେଲେ କେଉଁ କାର୍ଯ୍ୟ ସାଧନ ହୋଇ ନପାରେ ମାତ୍ର ଏମାନେ ଆପଣା ଠେକ ରଖିବାପାଇଁ କେହି କାହାର ସହିତ ବାକ୍ୟାଳାପ ନକଲେ ତାହା କିରୂପେ ହେବାର ସମ୍ଭାବନା । ଋଷିୟାର ସମ୍ରାଟ ଆପଣା ପ୍ରଜାର ମଙ୍ଗଳ ନିମନ୍ତେ ସ୍ୱୟଂ ବଢ଼ାଇଙ୍କ ସଙ୍ଗେ ମିଶି ସ୍ୱହସ୍ତେ ଅସ୍ୱଦେଶ ଜାହାଜ ନିର୍ମାଣ କାର୍ଯ୍ୟ ଶିକ୍ଷା କରିଥିଲେ । ସେ ଆପଣା ମର୍ଯ୍ୟାଦାକୁ ଗୃହିଁଥିଲେ ଆଜଯାଏ ତାହାଙ୍କର ଖ୍ୟାତି ରହି ନଥାନ୍ତା । ମାତ୍ର ବଡ଼ ଦୁଃଖର ବିଷୟ ଯେ ରାଜାମାନେ ପରସ୍ପର ସହିତସାକ୍ଷାତ କି ବାକ୍ୟାଳାପ କରନ୍ତି ନାହିଁ । ଏଥିରେ ଯେ କପର ମାନହାନି ହୁଅଇ ବୁଝିବା କଠିନ । ପୂର୍ବ ସମୟର କଥା ବର୍ତ୍ତମାନ ମନେ କରିବା ଅନର୍ଥକ । ଇଂରାଜ ଶାସନ ହେଲା ଦିନୁ ଅତଏବ ସମସ୍ତ ରାଜାଙ୍କର ମର୍ଯ୍ୟାଦା ଏକପ୍ରକାର ହୋଇଅଛି । ସମାନ ମର୍ଯ୍ୟାଦାସ୍ଥଳରେ ଏକରାଜା ଅନ୍ୟ ସଙ୍ଗରେ କଥା କହନ୍ତି ନାହିଁ କେଡ଼େ କ୍ଷୋଭର ବିଷୟ ଅଟଇ । ଯେବେ ଏମାନେ ପରସ୍ପର ବନ୍ଧୁ ଖବରଖି ଦେଖା ସାକ୍ଷାତ ଓ କଥାବାର୍ତ୍ତା କରୁଥାନ୍ତେ ତେବେ କେବଳ ବଡ଼ ସୁଖ ଜାତ ହୁଅନ୍ତା ଏମନ୍ତ ନୁହଇ । ଆପଣା ୨ ଉନ୍ନତିର ଉପାୟ ହୁଅନ୍ତା ସନ୍ଦେହ ନାହିଁ । ସମ୍ପ୍ରତି ଅତଏବ ରାଜାମାନେ ଏକ ଅନ୍ୟଠାରୁ ସମ୍ପୂର୍ଣ୍ଣରୂପେ ପୃଥକ୍ ଥିବାରୁ କୌଣସି ହିତାନୁଷ୍ଠାନରେ ସେମାନଙ୍କର ଐକ୍ୟତା ହୋଇ ପାରୁନାହିଁ । ସାମାଜିକ ନିୟମର ଅନୁସରଣ କରି ରାଜାମାନେ ପରସ୍ପର ସହିତ ସଦ୍ଭାବ ରଖିଲେ ନାନା ମଙ୍ଗଳ-କର କଥାର ଉଦୟ ହୁଅନ୍ତା ଓ ଜଣକ ପ୍ରସ୍ତାବରେ ଆଉମାନେ ଯୋଗଦେଇ ନାନା ହିତସାଧନ କରି ପାରନ୍ତେ ।

## ସାପ୍ତାହିକ ସମ୍ବାଦ

୨୨୫ । ଶ୍ରୀଯୁତ ଟେଏନବି ସାହେବ କଟକ ଶିକ୍ଷା ବିଭାଗର ସାଧାରଣ କମିଟୀର ସମ୍ପାଦକ ହୋଇଅଛନ୍ତି ।

୨୨୬ । ଚଳିତ ମାସ ତାଂରିଖଠାରୁ ଭଦ୍ରକ ସବଡିଭିଜନ କଚେରୀରେ ଗୋଟିଏ ମନିଅର୍ଡର ଅଫିସ ସଂସ୍ଥାପିତ ହୋଇଅଛି । ସେଠାରେ ଟଙ୍କା ଦେଇ କୌଣସି ସ୍ଥାନକୁ ମନିଅର୍ଡର ପ୍ରାପ୍ତ ହୋଇ ପାରେ ଓ ଅନ୍ୟ ଅଫିସର ମନିଅର୍ଡର ଭଙ୍ଗାଇ ଟଙ୍କା ମିଳିପାରେ ।

( ୫ମ ଭାଗ, ୪ । ୬ । ୧୮୭୦, ସଂଖ୍ୟା ୨୩ )

୨୨୭ । ଟାଉନ କମିଟୀର ସଭା ।

ଗତ ମଙ୍ଗଳବାର କଟକ ଟାଉନ କମିଟୀର ସଭାରେ ଉଲ୍ଲିଖିତ କଥାମାନ ଧାର୍ଯ୍ୟ ହେଲା ।

ନଗରବାସିଙ୍କ ଉପରେ ଚଳନ୍ତ ବର୍ଷପାଇଁ ଟାକ୍ସ ବନ୍ଦୋବସ୍ତ କାର୍ଯ୍ୟ ବାବୁ ସଦାନନ୍ଦ ପାଠକ ଓ ନିମାଇଁ ଚରଣ ନେଉଗୀଙ୍କଦ୍ୱାରା ନିର୍ବାହ ହେବ । ଏମାନେ ବିନା ବେତନରେ ଏକମାସ ଏ କାର୍ଯ୍ୟରେ ନିଯୁକ୍ତ ହେବାକୁ ସ୍ୱୀକାର କରିବାରୁ କମିଟୀ ଏହାଙ୍କୁ ଧନ୍ୟବାଦ ଦେଇଅଛନ୍ତି । ଯେମନ୍ତ ଅନ୍ୟମାନଙ୍କ ଠାରୁ ଆଦାୟ ହୁଅଇ ଓ ବନ୍ଦୋବସ୍ତ ନ୍ୟାଯ୍ୟ ହୁଅଇ ଏ ବିଷୟରେ ତାହାଙ୍କୁ ସାବଧାନ କରା ହୋଇଅଛି ।

ନଗର ସଡ଼କ ବାଟ ଓ ନାଳ ମରାମତି କାର୍ଯ୍ୟର ତତ୍ତ୍ୱାବଧାରଣ କରିବାକୁ କ୍ଲୋକ, ବର୍ଣ୍ଣ, ମେକମିଲନ ପ୍ରଭୃତି ସାହେବମାନେ ସମ୍ମତ ହେବାରୁ ଏହାଙ୍କଦ୍ୱାରା ଏକାର୍ଯ୍ୟ ହେବାର ସ୍ଥିର ହୋଇଅଛି ।

ନଗର ପରିଷ୍କାର ରଖିବା କାର୍ଯ୍ୟର ତତ୍ତ୍ୱାନୁସନ୍ଧାନ କରିବା ନିମିତ୍ତ ବାବୁ ଜଗନ୍ମୋହନ ରାୟ ଓ କାଳୀପଦ ବାନ୍ରର୍ଯ୍ୟା ପ୍ରଭୃତି କେତେକ ସଭ୍ୟ ନିଯୁକ୍ତ ହୋଇଅଛନ୍ତି ।

ଆସେସରମାନେ ବିନା ବେତନରେ କର୍ମ କରିବାକୁ ସ୍ୱୀକୃତ ହେବାରୁ ଏମାନଙ୍କୁ ସରକାରର ବଡ଼ ହିତକାଙ୍କ୍ଷୀ ବୋଲି ଜଣା ପଡ଼ୁଅଛି କିନ୍ତୁ ପକ୍ଷାନ୍ତରରେ ଆମ୍ଭମାନଙ୍କର ଭୟ ହେଉଅଛି ଯେ ସରକାରର ଲଭ କରି କରି ଲୋକଙ୍କ ଉପରେ ଅଧିକ କର ବସାଇ ବିରକ୍ତ ଜନକ ହୋଇ ନପଡ଼ନ୍ତି । ଏହିପରି ସରକାରର ହିତ ଲୋଡ଼ିବାରୁ ପିନା ଇନକମ୍ ଟାକ୍ସ ଦୁଃଖିଙ୍କ ଅତ୍ୟାଚାରର ହେତୁ ହୋଇଅଛି । ଆଗେ ଟାକ୍ସ ବୃଦ୍ଧି କରିବାର କଳ୍ପନା କରି ପଶ୍ଚାତ୍ ପଞ୍ଚାଏତ ଦ୍ୱାରା ଟାକ୍ସ ବନ୍ଦୋବସ୍ତର ବିଧାନ ନହୋଇ ବିଶେଷ କର୍ମଚାରୀଙ୍କୁ ସେ ଭାର ଦେବାରେ ଅତ୍ୟାଚାରର ସମ୍ଭାବନା ଦେଖାଯାଏ ଅତଏବ ଏ ନିୟମଟି ଭଲ ହୋଇନାହିଁ ।

ସଡ଼କ ମରାମତି ଓ ନଗର ପରିଷ୍କାର କର୍ମ ଉକ୍ତ ଶୃଙ୍ଖଳାରେ ଏଣିକି ଚଳିବ ଦେଖାଯିବ । ଆପାତତଃ ସଡ଼କ ମଧ୍ୟସ୍ଥିତ ଗର୍ତ୍ତମାନ ଭର୍ତ୍ତି କରିବାର ଉପାୟ ହେଲେ ବର୍ଷାକାଳରେ କିଛି ଭଲ ହୋଇପାରେ ।

## ସାପ୍ତାହିକ ସମ୍ବାଦ ।

୨୬୮ । ଆମ୍ଭମାନଙ୍କର ସମ୍ବାଦଦାତାଠାରେ ଆସିଅଛି ଯେ ଗତ ସୋମବାର ଗ୍ରହଣରେ ଗଣେଶ ମନ୍ଦିର ରାମନବମୀ ଯାତ୍ରାଠାରେ ପୁଲିସର ସବଇନସ୍ପେକ୍ଟର ପ୍ରବେଶ ହୋଇ

ସହର ଦୂର ବାଳିକା ଉତ୍ତାର ଯାତ୍ରା ହେଉଥିବା ଆଜ୍ଞା ବଳଙ୍କ ଥିବାର କହି ବଳ ପୂର୍ବକ ବନ୍ଦ କରିଦେଲେ । ଯାତ୍ରା ଯେଉଁ ସ୍ଥାନରେ ହେଉଥିଲା ତାହା ସରକାରୀ ବାଟରେ ନଥାଇଁ ପଥର ପରିଚ୍ଛନ୍ନ ବେଷ୍ଟିତ ବ୍ୟକ୍ତିବିଶେଷର ସ୍ଥାନ ଅଟଇ । ସେଥିରେ ପୁଲିସର ଅଧିକାର ନାହିଁ ବୋଲି ଆବେଦନ ପୁଲିସ ସୁପ୍ରିଣ୍ଟେଣ୍ଡେଣ୍ଟଙ୍କୁ ଜଣାଇବାରେ ସେ କହିଲେ ଯେ ପୁଲିସର ଏ ଯାତ୍ରା ଉପରେ କର୍ତ୍ତୃତ୍ୱ ନାହିଁ । ତଥାପି ରାତିପାକ ଯାତ୍ରା ହେଲା । ମାତ୍ର ମାତାଠାଟର ଶୁଣାଗଲା ଯେ ଦୁଇଜଣ କନଷ୍ଟେବଲ ହତାହାରେ ପହରା ଦେଉଛନ୍ତି, କେହି ବାଟରେ ପ୍ରସ୍ରାବ କଲେ ତାହାକୁ ଥାନାକୁ ଚାଲାନ କରିବେ । ଏଦନ ଏ ଆଜ୍ଞା ପ୍ରତିପାଳନ କରିବାର ବିଶେଷ ପ୍ରୟୋଜନ କ ହେଲା ଅମ୍ଭେମାନେ ବୁଝି ପାଉନାହୁଁ ।

## ( ୫ମ ଭାଗ, ୧୧ । ୬ । ୧୮୭୦, ସଂଖ୍ୟା ୨୪ * )

୨୨୯ ଯାତ୍ରି ଟାକ୍ସ ।

ଏ ବିଷୟରେ ଆମ୍ଭେମାନେ ପୁରୀରୁ ଖଣ୍ଡିଏ ପ୍ରେରିତପତ୍ର ଆନନ୍ଦ ସହିତ ପ୍ରାପ୍ତ ହୋଇ ତାହା ପ୍ରକାଶ କଲୁଁ । ଯାତ୍ରିଙ୍କଠାରୁ କର ନେବାର କଥା ପୁରୁଷୋତ୍ତମବାସିଙ୍କୁ ପଚାରିବା ଅନର୍ଥକ ଓ ଏ ପ୍ରସଙ୍ଗରେ ପଣ୍ଡିତ ହରିହର ଦାସ ଯାହା ବ୍ୟକ୍ତ କରିଅଛନ୍ତି ବୋଧହୁଅଇ ସାଧାରଣ ମନୋଗତ ହେବ, ଫଳତଃ ଆମ୍ଭମାନଙ୍କର ମନୋଗତ ହୋଇଅଛି କେବଳ ଏତିକି ପ୍ରଭେଦ ଯେ ଚୌକିଦାରୀ ଟାକ୍ସ ନହୋଇ ମଧ୍ୟ ଯାତ୍ରି ରଖିବାପାଇଁ ଭଡ଼ାଘର ଯେଉଁମାନେ ରଖିଅଛନ୍ତି ତାହାଙ୍କଠାରୁ କିଛି ପଞ୍ଝା ରସୁମ ନିଆଯାଇ ପାରେ ଓ ତାହା କେବଳ ଏହି ଅଭିପ୍ରାୟରେ ହେବ ଯେ ଯେଉଁଘରେ ଯେତେଲୋକ ରହିପାରନ୍ତି ସେଥିରୁ ଅଧିକ ଲୋକ ରଖିବେନାହିଁ । ରଖିଲେ ଦଣ୍ଡ ପାଇବେ ନଭୁବା ପ୍ରତିଘରେ ରହିବା ଯାତ୍ରିପ୍ରତି ଟାକ୍ସ ବସାଇଲେ ତାହା ସୁତରାଂ ଯାତ୍ରି ଟାକ୍ସ ହେଲା ଘର ଟାକ୍ସ କହିବା ନାମାନ୍ତର ମାତ୍ର । ଶ୍ରୀଯୁକ୍ତ କମିଶ୍ନର ସାହେବ ଏହି ପ୍ରଶ୍ନମାନ କଟକସ୍ଥ ଉତ୍କଳୋଲ୍ଲାସିନୀ ସଭା ପ୍ରତି କରିଅଛନ୍ତି ଓ ସଭାସ୍ଥ ବ୍ୟକ୍ତିମାନେ ତାହା ଉତ୍ତର କରିବାକୁ ଦ[illegible]ନ ସମୟ ନେଇଥିଲେ ମାତ୍ର ତଦବଧି ସଭାର ଅଧିବେଶନ ହୋଇ ନଥିବାରୁ ମତାମତ ପ୍ରକାଶ ହୋଇ ନାହିଁ । ଏସବୁ ବିଷୟରେ ସଭ୍ୟମାନଙ୍କର ବିଳମ୍ବ କରିବା କେତେ ଅନୁଚିତ କହିନପାରୁଁ ।

---

* ସଂଖ୍ୟା ୨୪ ଭୁଲକ୍ରମେ ସଂଖ୍ୟା ୨୩ ଛପା ହୋଇଥିଲା ଏବଂ ଏହି ଭୁଲ କ୍ରମାନ୍ୱୟେ ବର୍ଷ ଶେଷ ପର୍ଯ୍ୟନ୍ତ ରହି ପାଇଥିଲା । ଏଣୁ ଆମ୍ଭେମାନେ ସଂଖ୍ୟାକୁ ସଂଶୋଧନ କରି ଲେଖିଲୁଁ ।

( ୫ମ ଭାଗ, ୨୪ । ୭ । ୧୮୭୦, ସଂଖ୍ୟା ୨୭ )

୨୮୦ । ନଗରର ଅବସ୍ଥା ।

ଏବର୍ଷ ଟାଉନ ଟାକ୍ସ ବୃଦ୍ଧି ବିଷୟରେ ଟାଉନ କମିଟୀ ଅଥବା ମାଜିଷ୍ଟ୍ରେଟଙ୍କର ଯତ୍ନ ଦେଖି ଆମ୍ଭେମାନେ ବିଶ୍ୱାସ କରିଥିଲୁ ଯେ ପୂର୍ବଠାରୁ ବାଟଘାଟ ଓ ନାଳ ନର୍ଦ୍ଦମାମାନ ଉତ୍ତମରୂପେ ପ୍ରସ୍ତୁତ ହେବ । ଏଥରୁ ବର୍ଷାକାଳ ଆରମ୍ଭ ହୋଇ ସପ୍ତାହକାଳ ଗତ ହେଲା । ସଡ଼କରେ ଓ ଗଳିବାଟରେ କଡ଼ପାଣି ପ୍ରାୟ ଜଳ ମାଡ଼ିଗଲା, ସଡ଼କ ଉପରିସ୍ଥିତ ଖାଲମାନ ଭର୍ତ୍ତିହୋଇ ବେଙ୍ଗଙ୍କର ଆଶ୍ରୟସ୍ଥାନ ହେଲା ତଥାଚ ନଗର-ରକ୍ଷକଙ୍କର ନିଦ୍ରା ଭଙ୍ଗିବାର ଜଣାଯାଉନାହିଁ । ବୋଧହୁଅଇ ବର୍ଷାଯୋଗ ଦେଖି ସେମାନେ ନିଶ୍ଚିନ୍ତ ହୋଇ ଘରେ ଶୋଇ ରହିଲେ । ପାଣିରେ ଭିଜି ୨ ନଳା ଖୋଳିବା କାର୍ଯ୍ୟରେ ବ୍ୟସ୍ତ ହେବାକୁ ମନ ଲାଗୁନାହିଁ । ଲୋକଙ୍କର ଅବସ୍ଥା ଯାହାହେଉ ସେଥିରେ କ୍ଷତି କି, ଟାକ୍ସ ଉସୁଲ ପକ୍ଷରେ ତ ଏ ସମସ୍ତ ଆପତ୍ତି ଶୁଣା ଯିବନାହିଁ । ଆପଣାଘର ସମ୍ମୁଖସ୍ଥ ନର୍ଦ୍ଦମା ପାଣି ବୋହିଯିବା ପାଇଁ ହାତରେ ନଳା କାଟନ୍ତୁ ଅଥଚ ଟାକ୍ସ ଦେଉନ୍ତୁ । କେତେ ସୁନ୍ଦର ବିଚାର, ନୋହିଲେ କି ନଗରର ଏମନ୍ତ ଦୁର୍ଦ୍ଦଶା ହୁଅନ୍ତା । ପୂର୍ବେ କୌଣସି ଟାକ୍ସ ନଥିଲା ଅଥଚ ଚିରସ୍ମରଣୀୟ ଶୋର ସାହେବ ନଗରର ଯେ ଉନ୍ନତି କରି ଯାଇଅଛନ୍ତି ତହିଁରୁ ବଳକରି କାର୍ଯ୍ୟ କରିବାର ତେଣିକି ଥାଉ ସେ ସବୁ ସଡ଼କବାଟ ରକ୍ଷା କରିବା ବର୍ତ୍ତମାନ ମାଜିଷ୍ଟ୍ରେଟଙ୍କ ପକ୍ଷରେ କଷ୍ଟ ହୋଇଅଛି । ତହିଁ ଉତ୍ତାର ଶ୍ରୀଯୁକ୍ତ ମନି ସାହେବ ମାଜିଷ୍ଟ୍ରେଟ ନଗର ପରିଷ୍କାର ଓ ଏହାର ଶୋଭା ବର୍ଦ୍ଧନ ପ୍ରତି କେତେ କାର୍ଯ୍ୟ କରି ଯାଇଥିଲେ ତାହାଙ୍କର କୀର୍ତ୍ତି ସ୍ୱରୂପ ସେ ସମସ୍ତ ରହିଅଛି । ବର୍ତ୍ତମାନ ସେ ସମୟଠାରୁ ଅଧିକଟଙ୍କା ଟାକ୍ସ ସ୍ୱରୂପ ଆଦାୟ ହେଉଅଛି କିନ୍ତୁ ତାହା କିରୂପେ ବ୍ୟୟ ହେଉଅଛି ଜଣା ପଡ଼ୁନାହିଁ । ଅଦାଲତ ପୋଖରୀ ଚତୁର୍ଦ୍ଦିଗରେ ମନି ସାହେବ ଛଉଦେଓ୍ୱାଲ କରିଥିଲେ । ପ୍ରାୟ ବର୍ଷେ ହେବ ବାଟ ପାଖରେ ଖଣ୍ଡେ ଛଉଦେଓ୍ୱାଲ ଭାଙ୍ଗିଯାଇ ଅଛି, ଅବଧି ତାହାକୁ ନଗରର ତତ୍ତ୍ୱାବଧାରକ ଦେଖି ଅଛନ୍ତି କି ନାହିଁ ବୋଲିଯାଇ ନପାରେ କାରଣ ଦେଖିଥିଲେ କି ତାହା ସଂସ୍କାର କରିବାରେ ଏତେକାଳ ବିଳମ୍ବ ହୁଅନ୍ତା । କେବଳ ଅଧିକ ଟଙ୍କା ଦିଅ ଏହି ଶବଦ ପଡ଼ିଅଛି ମାତ୍ର ଅଧିକ ଟଙ୍କା ଦେଇ ତ ଅଧିକ ସୁଖରେ ରହିବାର କିଛି ଚିହ୍ନ ଦିଶୁନାହିଁ । ଆମ୍ଭମାନଙ୍କୁ ବୋଧ ହୁଅଇ ଯେ ଏକା ମାଜିଷ୍ଟ୍ରେଟ ହାତରେ ପୂର୍ବେ ଏକାର୍ଯ୍ୟ ଥିବାରୁ ଉତ୍ତମରୂପେ ନିର୍ବାହ ହେଉଥିଲା; ଏବେ ଟାଉନ କମିଟୀ ହୋଇ ଦଶଜଣ ହାତରେ ସେ କାର୍ଯ୍ୟ ପଡ଼ିବାରୁ କି ଉତ୍ତମରୂପେ ନିର୍ବାହିତ ହେଉନାହିଁ । ବହୁତ ମନୁଷ୍ୟରେ ମଶା ମରଇନାହିଁ ବୋଲି

ଯେଉଁ ବାକ୍ୟ ଅଛି ଚାଉନ କମିଟୀର ସଭ୍ୟମାନେ କେବଳ ସେହି କଥାକୁ ସାର୍ଥକ କରିଅଛନ୍ତି ।

## ସାପ୍ତାହିକ ସମ୍ବାଦ ।

୨୩୧ । ଓଡ଼ିଶା ପେଟ୍ରିଅଟ ବୋଲନ୍ତି ଯେ ପ୍ରିଣ୍ଟିଂକମ୍ପାନିର ଛାପାଖାନା ତାଙ୍କର ଶତ୍ରୁ ଓ ତାହାଙ୍କ ଲେଖାର ଦ୍ବାରା ପ୍ରକାଶ ଯେ ଏହି ଶତ୍ରୁତା ହେତୁରୁ ଉତ୍କଳଦୀପିକା ତାଂଗରଶର ପତ୍ରିକା ବାହାରି ନାହିଁ । ଆପଣା ସ୍ବାର୍ଥ ନିମିତ୍ତ ପରର ନିନ୍ଦା କରିବା କି ପ୍ରକାର ଲୋକର ସ୍ବଭାବ ଥିଲ ଓ ଏଣିକି ତାହା କେଉଁ ସରକ ଉର୍ଦ୍ଧଗାମୀ ହେଲାଣି ଯେ ଆଲୋଚନା କରିବ ସେ ଜାଣି ପାରିବ ।

ତାଂଗରଶ ପତ୍ରିକା କ ନିମିତ୍ତ ବାହାରି ନାହିଁ ତହିଁର କାରଣମାନ ସମ୍ପାଦକ ଯଥାର୍ଥରୂପେ ନିର୍ଦ୍ଦେଶ କରିଥିଲେ ପାଠକମାନେ ଜାଣିପାରନ୍ତେ ଯେ ଛାପାଖାନାର ଦୋଷରୁ ତାହା ଘଟି ନାହିଁ । ଯାହାହେଉ କମ୍ପାନି ଏରୂପ ଦୁର୍ନାମ ଶୁଣି ଯେବେ ଶାନ୍ତ ରହନ୍ତି ତେବେ ସେମାନଙ୍କ ସହିଷ୍ଣୁତା ଗୁଣକୁ ପ୍ରଶଂସା ଯୋଗ୍ୟ ବୋଲିବାକୁ ହେବ ।

୨୩୨ । ଗତ ବୁଧବାର କଟକ ସୋସାଇଟିର ଗୋଟିଏ ବୃହତ୍ସଭା ହୋଇଥିଲା ଶ୍ରୀଯୁକ୍ତ ରବନ୍‌ସା ସାହେବ ଓ ଅନ୍ୟାନ୍ୟ କେତେକ ଇଂରାଜ ଏବଂ ସମ୍ଭ୍ରାନ୍ତ ଦେଶୀୟ ବ୍ୟକ୍ତିମାନେ ଉପସ୍ଥିତ ଥିଲେ । ସଭାରେ ଅନ୍ୟାନ୍ୟ ବିଷୟ ମଧ୍ୟରେ ଧାର୍ଯ୍ୟହେଲା ଯେ ଓଡ଼ିଶା ପେଟ୍ରିଅଟର ଭାର ସ୍ମୋଲ ସାହେବ ଗ୍ରହଣ କରିବେ ଏବଂ ଏଠାରେ ଯେ ଭିନ୍ନ ୨ ସଭାମାନ ଅଛି ସେ ସବୁ ମିଶି ଏକ ହୋଇଯିବ ଅର୍ଥାତ୍ ସମସ୍ତ କଟକ ସୋସାଇଟିର ଅଧୀନରେ ରହିବ ।

୨୩୩ । ଏଡୁକେସନ ଗଜେଟ ଶୁଣି ଅଛନ୍ତି ଯେ ପୁରୀର ଗବର୍ଣ୍ଣମେଣ୍ଟ ସ୍କୁଲ ଗୃହରେ କେତେମାସ ହେଲା ସାହେବମାନେ ପ୍ରଭୁ ରବବାର ଗିର୍ଜା କରୁଅଛନ୍ତି । ଏହା ସୁଖୀ ସ୍କୁଲର ଦୁର୍ଗତିର କାରଣ ହୋଇଥିବାରୁ ଉକ୍ତ ସ୍କୁଲର ହେଡ଼ମାଷ୍ଟର ଆପତ୍ତି କଲେ, ଏଥିପାଇଁ ସାହେବମାନେ ବଡ଼ ବିରକ୍ତ ଅଛନ୍ତି । ଏକଥା ଅବ ଶୋଚନୀୟ ଅଟଇ । ସାହେବମାନେ କି ଆପଣା କୋଠିରେ ସପ୍ତାହରେ ଥରେ ଗିର୍ଜା କରିପାରି ନାହାନ୍ତି ଯେ ସ୍କୁଲ ଗୃହରେ ତାହାଙ୍କର ଲୋକଙ୍କର ଇଂରାଜୀ ଶିକ୍ଷା ପ୍ରତି ଭ୍ରମ ଜନ୍ମାଉ ଅଛନ୍ତି । ଏକେତ ଇଂରାଜୀ ଶିକ୍ଷାଦାନକୁ ଖ୍ରୀଷ୍ଟିଆନ କରିବାର ଉପାୟବୋଲି ସାମାନ୍ୟ ଲୋକେ ଜ୍ଞାନ କରନ୍ତି ତହିଁରେ ପୁଣି ସେ ସ୍ଥାନରେ ଗିର୍ଜା ହେଲେ ସେ କଥା ପ୍ରତି କାହାର ଦୃଢ ବିଶ୍ବାସ ନହେବ ।

( ୫ମ ଭାଗ, ୨।୭।୧୮୭୦, ସଂଖ୍ୟା ୨୭ )

୨୩୪। କଟକ ଟାଉନ ଟାକ୍ସ।

ଗତ ସୋମବାର ଟାକ୍ସ କମିଟୀର ଅଧିବେଶନ ହୋଇଥିଲା। ସେଦିନେ ଆଗାମୀ ବର୍ଷପାଇଁ ଯେଉଁ ଟାକ୍ସ ବନ୍ଦୋବସ୍ତ ହୋଇଅଛି ତାହା ଆଗତହେଲା ଓ ସଭ୍ୟମାନେ ତାହାକୁ ମଞ୍ଜୁର କଲେ। ବନ୍ଦୋବସ୍ତର ଅବସ୍ଥା ଏହିପରି। ଏ ନଗର ମଧ୍ୟରେ ସର୍ବସୁଦ୍ଧା ୮୮୪୭ ଘର ଅଛି। ତହିଁ ମଧ୍ୟରୁ ୦୫୫୯ ଘର ନାନା କାରଣରୁ ଟାକ୍ସରୁ ମୁକ୍ତ ପାଇଲା, ଅବଶିଷ୍ଟ ୪୨୮୭ ଘର ଉପରେ ମୋଟ ଟ ୧୪୨୩୭ ଙ୍କା ଟାକ୍ସ ଧାର୍ଯ୍ୟହେଲା। ଏଥିମଧ୍ୟରୁ କାଣ୍ଟନମେଣ୍ଟରେ ଥିବା ଘ ୫୮୦ ର ମଧ୍ୟରୁ ଘ ୨୬୩ ର ଉପରେ ବାର୍ଷିକ ଯେଉଁ ଟ ୧୪୫୭ ଙ୍କା ଧାର୍ଯ୍ୟ ହୋଇଅଛି ସେ ଟଙ୍କା ଉପରେ ନଗରର କୌଣସି ଅଧିକାର ନଥିବାରୁ ତାହା ମିଶାଦେଲେ କଟକ ନଗର ପାଇଁ ଘ ୪୦୨୪ ରରୁ ଟ ୧୩୨୭୮ଙ୍କା ବନ୍ଦୋବସ୍ତ ହୋଇଅଛି। ପୂର୍ବ ବର୍ଷରେ ପ୍ରାୟ ଟ ୧୦୦୦୦ ଙ୍କା ବନ୍ଦୋବସ୍ତ ହୋଇଥିଲା, ସୁତରାଂ କେଣ୍ଟନମେଣ୍ଟ ଛଡ଼ା ଟ ୩୨୦୦ଙ୍କା ଅଧିକା ପ୍ରାପ୍ତ ହେବାର ସ୍ଥିର ହୋଇଅଛି। କିନ୍ତୁ କମିଟୀ ଏଥିରେ ସନ୍ତୁଷ୍ଟ ନାହାନ୍ତି, ତାହାଙ୍କର ଆହୁରି ଟ ୨୦୦୦ଙ୍କା ଦରକାର। ତାହାହେଲେ ଇଷ୍ଟିମିଟ ଖର୍ଚ୍ଚାକୁ ଅଣ୍ଟିବ। ଏଟଙ୍କା କମିଟୀ ଆଦାୟ କରିବାର ଆଶା ରଖନ୍ତି।

ଏତକ ଟଙ୍କା ସହଜରେ ବୃଦ୍ଧି ହୋଇନାହିଁ। ଆସେସରମାନେ ନଗରପାକ ବୁଲି ଘାରପର୍ଯ୍ୟନ୍ତ ଟାକ୍ସ ବଢ଼ାଇଲେ ତାହା ମାଜିଷ୍ଟ୍ରେଟଙ୍କ ମନକୁ ନଆସିବାରୁ ପୁନର୍ବାର ବୃଦ୍ଧି ହୋଇ ଏପରିକି ଆସିଅଛି। ଏହା ଉପରେ ମଧ୍ୟ କମିଟୀ ଆଶା ଛାଡ଼ି ନାହାନ୍ତି। ଏଥିରେ ଯେ ଅପିଲର ଫଳ କଣ ହେବ କହିହାପାଇ ନପାରେ। ଆମ୍ଭେମାନେ ବନ୍ଦୋବସ୍ତ ଫର୍ଦ୍ଦ ଦେଖିଅଛୁଁ। ଯେଥିରେ କେତେଗୁଡ଼ିଏ କୁଟୀର ଉପରେ ମାସକୁ ଅଣାଏ ଲେଖାଏଁ ଟାକ୍ସ ବସିଅଛି। ଏମାନେ ଯେ କେତେବେଳେ ଉକ୍ତ ଅଳ୍ପ ଟାକ୍ସ ଆଦାୟ କରିପାରିବେ ଭରସା ହେଉନାହିଁ ଅଥଚ ଏପରି ଲୋକଙ୍କ ସକାଶେ ଟାକ୍ସ ଦାରୋଗାର ପରିଶ୍ରମ ଅଧିକ ହେବ। ଅଣାଏ ପଇସା କାରଣ ଆସେ ହରକତ ଓ ପରକୁ ଦୁଃଖ ଦେବାର କଅଣ ପ୍ରୟୋଜନ ଅଛି। ଏଥିରୁ ଲୋକଙ୍କୁ ଛାଡ଼ିଦେଲେ ବିଶେଷ କ୍ଷତି ହୁଅନ୍ତାନାହିଁ ଓ ଯେବେ କ୍ଷତିର ସମ୍ଭାବନା ଥିଲା ତେବେ ସେଟଙ୍କା ଅନ୍ୟ ଲୋକଠାରୁ ଆଦାୟ ହୋଇପାରନ୍ତା। ଯେବେ ଦୁଇଅଣା ଦେବା ବ୍ୟକ୍ତି ଉପରେ ଛଅଣା ବସିଲା ତେବେ ଆଉ ଅଣାଏ ବସି ସାତଅଣା ହେଲେ ତାହାର ଦୁଃଖ କିଛି ଅଧିକ

ହୁଅନ୍ତା ନାହିଁ । ଠାକୁର ବଢ଼ାଇବା ଯେ ସ୍ଥଳେ ଉଦ୍ଦେଶ୍ୟ ସେସ୍ଥଳେ ଆମ୍ଭମାନଙ୍କ ବିଚାରରେ କେବଳ ଥିଲଲୋକ ଠାରେ ତାହା କରିବା ଉଚିତ, କୁମ୍ଭଡ଼ ଜଳରେ ମାଠିଆ ଭର୍ତ୍ତି କରିବାର ଚେଷ୍ଟା କାହିଁକି ?

ନଗର ବାଟ ନାଳ ଇତ୍ୟାଦି ସଂସ୍କାର ବିଷୟରେ ଏହି ଧାର୍ଯ୍ୟ ହେଲା ଯେ ନଗରକୁ ଛ ଭାଗରେ ବିଭକ୍ତ କରି ପ୍ରତ୍ୟେକ ଭାଗର ଭାର ଦୁଇଜଣ ଲେଖାଏଁ ସଭ୍ୟଙ୍କୁ ଅର୍ପିତ ହେଲା ଯେ ଏମାନେ ଆପଣା ୨ ଭାଗରେ ଭ୍ରମଣ କରି ଦେଖିବେ ଯେ କି ପ୍ରକାର ମରାମତି କର୍ମମାନ ସେଥିରେ ଆବଶ୍ୟକ ଅଛି ଓ ସେଥିରେ କି ପରିମାଣରେ ବ୍ୟୟ ଆବଶ୍ୟକ ହେବ । ଏ ରିପୋର୍ଟ ପ୍ରତ୍ୟେକ ଭାଗର ସଭ୍ୟମାନଙ୍କୁ ଏହିମାସ ତା ୨୯ ରିଖ ଉତ୍ତାରୁ ଟାଉନ କମିଟୀର ଯେଉଁ ସଭାହେବ ସେହି ସଭାରେ ଆଗତ କରିବାକୁ ହେବ, ତଦୁତ୍ତାରେ ସଭାରେ ବିଚାର ହୋଇ ଯାହା କର୍ତ୍ତବ୍ୟ ତାହା ଧାର୍ଯ୍ୟହେବ । ଏତ ଭଗୀରଥ ଗଙ୍ଗା ଆଣିବାର ବିଧାନ ହେଲା ଏଥିରୁ ବର୍ଷାକାଳ ପାରି ବା ହେବ । ଆପାତତଃ ଯେବେ ଟାଉନ କମିଟୀ ସାହେବଯାଦାବଜାର ପ୍ରଭୃତି କେତେ ବାଟରେ ଖଣ୍ଡିଏ ନୌକା ପକାଇ କିଛି ଘାଟ ଉସୁଲ କରିବାର ବ୍ୟବସ୍ଥା କରନ୍ତି ତାହାହେଲେ ଲୋକଙ୍କର ଯାତାୟାତର ସୁଯୋଗ ଓ ଟାଉନ ଫଣ୍ଡର କିଛି ଟଙ୍କା ହୋଇପାରିବ ।

## ସାପ୍ତାହିକ ସମ୍ବାଦ

୨୩୫ । କଟକର ଗୋଲନ୍ଦାଜ ପଲ୍‌ଟନ ଭାଙ୍ଗିଯିବାରୁ ତୋପ ଓ ତୋପଖାନା ଆସବାବମାନ ଗତ ସପ୍ତାହରେ ମାନ୍ଦ୍ରାଜକୁ ପ୍ରେରିତ ହେଲା ।

୨୩୬ । ଉତ୍କଳ ହିତୈଷିଣୀରୁ ଅବଗତ ହେଲୁଁ ଯେ ପୁରୁଷୋତ୍ତମରେ ରଥଯାତ୍ରା ଉତ୍ତାରୁ ସଦାବର୍ତ୍ତ ବିଷୟରେ ଗୋଟିଏ ଭାରି ସଭାହେବ । ଉକ୍ତ ସଭାରେ କଟକ ଯୋଗାଇଁ ପକ୍ଷରୁ ଉପସ୍ଥିତହୋଇ ତର୍କ ବିତର୍କ କରିବା ସକାଶେ ହି. ଓ୍ୟାଲଟନ ସାହେବ, ଡବଲିଉ ମାକଫର୍ସନ ସାହେବ ଓ ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟ ପ୍ରେରିତ ହୋଇଅଛନ୍ତି । ଓ୍ୟାଲଟନ ସାହେବ କେତେଆଡ଼କୁ ହେବେ ଜଣା ଯାଉନାହିଁ ।

୨୩୭ । ଏବର୍ଷ ରଥଯାତ୍ରା ଦେଖିବାପାଇଁ କଟକର ହାକିମମାନେ ସୁଦ୍ଧା ଯାଇଅଛନ୍ତି, କମିଶ୍ନର ଜଜ କଲେକ୍‌ଟର ଏବଂ ଭଆଜର ସାହେବ ପ୍ରଭୃତି ବାହିକ ମାସ୍ତରୁ ଇଲାକାର କେତେକ ଜଣ ସାହେବ ଗତ ସୋମବାର ଓ ମଙ୍ଗଳବାର ପୁରୀକୁ ଯାତ୍ରା କରିଅଛନ୍ତି । ଶୁଣାଯାଏ ଯାତ୍ରିଙ୍କ ଅବସ୍ଥା ଦେଖିବା ଓ ସେମାନଙ୍କ ସ୍ୱାସ୍ଥ୍ୟରକ୍ଷା

ପ୍ରତି କ ଉପାୟମାନ ଅବଲମ୍ବନ କଲେ ଭଲହେବ ଆପଣା ମଧ୍ୟରେ ତର୍କକରି ସେ ସମସ୍ତ ସ୍ଥିର କରିବା କାରଣ ଏମାନେ ପୁରୀକୁ ଯାଇଅଛନ୍ତି ।

୧୩୮ । ବନ୍ଦରଘରବାଟେ ସମୁଦ୍ରଯାତ୍ରୀ ବାଣିଜ୍ୟ ଦ୍ରବ୍ୟ କଟକକୁ ଯାତାୟତ କରିବାର ସର୍ବପ୍ରକାର ସୁଯୋଗ କରିଦେବା ଆଶାରେ ସ୍ଥାନୀୟ କଲେକ୍ଟର ଓ କର୍ଣ୍ଣେଲ ପ୍ରଭୃତି ହାକିମମାନେ ଯେ ସମସ୍ତ ପ୍ରସ୍ତାବ କରିଥିଲେ ତାହା ଗବର୍ଣ୍ଣମେଣ୍ଟ ବଙ୍ଗାଲଙ୍କର ମନୋନୀତ ହୋଇ ତଦନୁସାର କାର୍ଯ୍ୟ କରିବାର ଆଜ୍ଞା ହୋଇଅଛି । ଜମ୍ବୁନଦୀ ଘାଟରେ ଗୋଟିଏ ଗୋଦାମ ନିର୍ମାଣ ହେବ, ପ୍ଲେଡନ ନାମକ ବନ୍ଦରଘର ନିକଟରେ ଯେଉଁ ଦ୍ୱୀପ ଅଛି ତାହା ଗବର୍ଣ୍ଣମେଣ୍ଟ ପଟ୍ଟା କରିନେବେ । କଷ୍ଟମ ଏଲକାର ହାକିମ ତାହାଙ୍କ କଚେରୀ ବନ୍ଦରଠାରେ ଜାହାଜ ଉପରେ ରହିବେ ଯେପରିକି ମହାଜନମାନେ କଷ୍ଟମ ଆଇନ ଅନୁଯାୟୀ କାର୍ଯ୍ୟ କରିବାକୁ କୌଣସି କ୍ଲେଶ ବୋଧ କରିବେ ନାହିଁ ।

୧୩୯ । ପ୍ରେରିତ ପତ୍ର ।

ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ ମହାଶୟେଷୁ;

କଲିକତା ନଗରସ୍ଥ ବ୍ରିଟିଶ ଇଣ୍ଡିଆନ ଆସୋସିଏସନର ଅନସ୍ଥ ଡେପୁଟି କଲେକ୍ଟର ବାବୁ ଅମ୍ବିକା ଚରଣ ରାୟ ଚୌଧୁରୀ ଓ କଲେକ୍ଟରୀର ସିରସ୍ତାଦାର ଶ୍ରୀ ନିତ୍ୟାନନ୍ଦ ଦାସଙ୍କଠାରୁ ଏକା ମର୍ମରେ ଦୁଇଖଣ୍ଡ ପତ୍ର ଆସିଥିଲା । ତହିଁର ମର୍ମ ଏହି ଯେ ଗବର୍ଣ୍ଣମେଣ୍ଟ ଯେ ଉଚ୍ଚ ଶିକ୍ଷାରେ ସାହାଯ୍ୟ ଦେବାକୁ ଅସ୍ୱୀକୃତ ହୋଇଅଛନ୍ତି ତହିଁରେ ପୁରୁଷୋତ୍ତମ ନିବାସୀମାନଙ୍କର କି ଅଭିମତ । ଏଥିରେ ଉକ୍ତ ଦୁଇ ମହାଶୟ ଅବସ୍ଥ ସମସ୍ତ ଭଦ୍ରମଣ୍ଡଳୀରେ ଏବିଷୟ ଜଣାଇ ଅଦ୍ୟ ଏକ ସଭା କରିଥିଲେ । ସଭାରେ ପ୍ରାୟ ପଚାଶ ଜଣ ଅନୁତ୍ତମ ଶିକ୍ଷିତ ନବ୍ୟ ଓ ପ୍ରାଚୀନ ଭଦ୍ରଲୋକ ଥିଲେ, ମଧ୍ୟ ପ୍ରଧାନ ମହନ୍ତମାନେ ଥିଲେ । ସମସ୍ତେ ଏହା ନିଶ୍ଚିତ ହେଲା ଯେ ଆମ୍ଭମାନଙ୍କର ଗବର୍ଣ୍ଣମେଣ୍ଟ ଯେବେ ଉଚ୍ଚତର ଶିକ୍ଷାରେ ସାହାଯ୍ୟ ପ୍ରଦାନ ନ କରିବେ ତେବେ ଲୋକମାନଙ୍କର ଯେ କିଛି ଉନ୍ନତି ହେଉଅଛି ତାହା ଏକାବେଳେକେ ସମୂଲୋଚ୍ଛିନ୍ନ ହେବ । ଉଚ୍ଚତର ଶିକ୍ଷାରେ ଅତ୍ୟନ୍ତ ଧନବନ୍ତମାନ ଅତ୍ୟଳ୍ପ ପଢ଼ନ୍ତି ଯେ ସେମାନେ ସ୍ୱୟଂ ଆନୁଶିକ୍ଷା ନିର୍ବାହ କରି ପାରିବେ । ଅଧିକାଂଶ ମଧ୍ୟମ ଶ୍ରେଣୀର ବାଳକମାନେ ପଢ଼ନ୍ତି । ସେମାନେ କଦାପି ଏତେବ୍ୟୟ ସ୍ୱୀକାର କରି ଅଧ୍ୟୟନ କରି ନପାରନ୍ତି । ଏଣୁକରି ଗବର୍ଣ୍ଣମେଣ୍ଟଙ୍କର ଉକ୍ତ ପ୍ରସ୍ତାବରେ ବିଶେଷ ଅମଙ୍ଗଳ ହେବା ଲୋକମ ଷ ସନ୍ଦେହ ନାହିଁ ।

ଏହି ପ୍ରସ୍ତାବ ଆସନ୍ତା କାଲ ଭାରତବର୍ଷୀୟ ସଭାର ସେକ୍ରେଟେରୀଙ୍କଠାକୁ ପଠାଯିବ କିନ୍ତୁ ସମ୍ପାଦକ ମହାଶୟ, ଆମ୍ଭେ ଆଶ୍ଚର୍ଯ୍ୟ ହେଲୁଁ ଯେ କଟକ ଇଂରାଜୀ ଓ ଶିକ୍ଷାର୍ଥୀ ସୁଯୋଗ୍ୟ ଡେପୁଟୀ କଲେକ୍ଟର ସମସ୍ତଙ୍କ ମତର ଭିନ୍ନ ମତ ପ୍ରକାଶ କଲେ । ସେ କହିଲେ କି ଇଂରାଜୀ ଭାଷାଧ୍ୟୟନରୁ ଆମ୍ଭଦେଶରେ ଅନେକ ନାସ୍ତିକ ହେଉଅଛନ୍ତି । କିନ୍ତୁ ଚମତ୍କାର କି ସେ କି କେବେ ଶୁଣି ନାହାନ୍ତି ଯେ ପୂର୍ବରେ ନ୍ୟାୟଶାସ୍ତ୍ର ଗୌତମ ପ୍ରଣୀତ ସଂଶୟମତ ନାସ୍ତିକ ମୂଳକ । ଇଂରାଜୀ ଶିକ୍ଷାର ଯେ କିଛି ଲୋକେ ନାସ୍ତିକ ହୁଅନ୍ତି ଏମନ୍ତ କଦାପି ନୁହଇ । ଏହି ଇଂରାଜୀଶିକ୍ଷାରୁ ଦେଶର ଯେ କେତେ ଉପକାର ହୋଇଅଛି ତାହା ବଚନାତୀତ । ଇଂରାଜୀ ଭାଷାରେ ଯେତେ ପଦାର୍ଥ ଅଛି ସେ ସବୁ ଯେତେବେଳେ ଦେଶଭାଷାରେ ଅନୁବାଦିତ ହେବ ଏବଂ ସେ ସମ୍ପ୍ରଦାୟ ଜ୍ଞାନ ଯେତେବେଳେ ଆମ୍ଭ ଦେଶରେ ଅଙ୍କୁରବୀଜ ସ୍ୱରୂପ ରୋପିତ ହେବ ତେତେବେଳେ ଇଂରାଜୀଭାଷା ଉଠାଇ ଦେଲେ ଦିଆ ହୋଇପାରେ । ଲୋକଙ୍କର ଏ ଅବସ୍ଥାରେ କଦାପି ହୋଇ ନପାରେ । ଇଂରାଜୀଭାଷା ଭାରତବର୍ଷର ସୌଭାଗ୍ୟବାହିନୀ ନଦୀ ସ୍ୱରୂପ । ସମ୍ପ୍ରଦାୟ ପଶ୍ଚିମ ପ୍ରଦେଶର ବିଦ୍ୟା ଏହି ପଥରେ ଭାରତକୁ ଆଗମନ କରୁଅଛି । ଅତଏବ ଏହା କଦାପି ଉଠାଇ ଦିଆଯାଇ ନପାରେ । ଯେଉଁ ବାବୁ ଇଂରାଜୀ ଉଠାଇ ଦେବାକୁ ବୋଲୁ-ଅଛନ୍ତି ସେ କପରି ମନୁଷ୍ୟ ହୋଇଅଛନ୍ତି ଆମ୍ଭେ ତାହା ପଚାରୁ ଅଛୁଁ । ଇତି । ତା ୨୬ରିଖ ଜୁନ ସନ ୧୮୬୦ ମସିହା ।

ଜନୈକପାଠକ

୨୫୦ । ବିଜ୍ଞାପନ

ଅଲବର୍ଟ କମିଟୀର ମେମ୍ବରମାନଙ୍କ ପ୍ରାର୍ଥନାନୁସାରେ ଆସନ୍ତା କାଲିଠାରୁ ତା ୫ରିଖ ମଙ୍ଗଳବାର ବୃହସ୍ପତିବାର ବାରଘଣ୍ଟା ସମୟରେ କଟକସ୍କୁଲ ସ୍କୁଲଶାଳା ଘରେ ସର୍ବସାଧାରଣଙ୍କର ଏକ ସଭା ହେବ । ଏ ସଭାରେ ଶ୍ରୀମୁତ କମିଶନର ସାହେବ ବାହାଦୁରମାନେ ହୋଇ ସଭାପତି ହେବେ । ଏ ସଭାର ଉଦ୍ଦେଶ୍ୟ ଏହିମେ କଟକରେ ଏକ ବୃହତ୍ ସାଧାରଣ ଦ୍ୱାସପାତାଳ ନିର୍ମାଣ ହେବ ଓ ସହରରେ ଯେ ଦ୍ୱାସପାତାଳମାନ ଅଛି ୨ ହୋଇ ଅଛି ସେ ସବୁକୁ ଏକତ୍ରିତ କରିବା ବିବେଚନା କରାଯିବ । ଗବର୍ଣ୍ଣମେଣ୍ଟ ଏ ବିଷୟରେ ସମ୍ମତ ହୋଇଅଛନ୍ତି ଓ ପ୍ରଚୁର ଦାନ କରିବାକୁ ସ୍ୱୀକାର କରିଅଛନ୍ତି । ଯେହେତୁ ଏ ସହରର ଓ ଜିଲ୍ଲାର ନିବାସୀ ଦେଶୀୟ ଭଦ୍ରଲୋକମାନଙ୍କ ଉଦ୍ଯୋଗ ଉପରେ ଏ ବିଷୟର ସଫଳତା ନିର୍ଭର କରେ ଅତଏବ ଭରସା ହେଉଅଛି ଯେ ସେମାନେ ସମସ୍ତେ ଏ ସଭାରେ ଉପସ୍ଥିତ ହେବେ । ସେତେବେଳେ ସେମାନଙ୍କୁ ଏ

ପ୍ରସ୍ତାବର ସମସ୍ତ ବୃତ୍ତାନ୍ତ ଓ ତର୍ଦ୍ଧିଲ ଟାହା ଉପକାର ହେବ ବୁଝାଇ ଦଆପିବ ।

ତା ୨୭ରଖ ମାହେ ଜୁନ
ସନ ୧୮୭୦ ମସିହା

କଲଟେର ଓ ମେଜେଷ୍ଟର
ଜିଲ୍ଲା କଟକ

## ( ୪ମ ଭାଗ, ୯ । ୭ । ୧୮୭୦, ସଂଖ୍ୟା ୨୮ )

୨୪୧ । କଟକ ଡିବେଟିଂ କ୍ଲବ ।

ଆଜକାଲି କଟକରେ ସଭା ଦେଖି ୨ ଅମ୍ଭେମାନେ ଅତ୍ୟନ୍ତ ଶ୍ରାନ୍ତ ହେଲୁଣି ଓ ସଭାକଥାମାନ ଲେଖି ୨ କାଗଜ ପୂର୍ଣ୍ଣହେଲାଣି । ଏହି ସପ୍ତାହରେ ତିନୋଟି ସଭାର ବିବରଣ ଲେଖିବାକୁ ପଡ଼ିବାର ଆଉ କିଛି ଲେଖିବାକୁ ସ୍ଥାନ ନାହିଁ ତଥାପି କେବଳ ସଂକ୍ଷେପରେ ଏକ ଏକ ସଭାର କଥା ଲେଖିଅଛୁଁ । ପୁରୁଷୋତ୍ତମର ସଭା ବିଷୟରେ ଏକ ସୁଦୀର୍ଘ ପତ୍ରିକା ପାଇଅଛୁଁ ମାତ୍ର ସ୍ଥାନାଭାବରୁ ତାହା ପ୍ରକାଶ କରିବାକୁ ଅକ୍ଷମ ହେଲୁଁ ।

ଡିବେଟିଂ କ୍ଲବ ସଭାର ସଂକ୍ଷେପ ବିବରଣ ଏହି ଯେ କଟକରେ ଥିବା କଟକ ସୋସାଇଟୀ, ଉତ୍କଳାସିନୀ ଓ ଡିବେଟିଂ କ୍ଲବ ଏ ତିନିସଭାକୁ ଏକତ୍ର କରିବାପାଇଁ ଅଥବା ଶେଷ ଲିଖିତ ଦୁଇସଭାକୁ ପ୍ରଥମ ଲିଖିତ ସଭାର ଅନ୍ତର୍ଗତ କରିବାପାଇଁ ଏ ସଭା ହୋଇଥିଲା ମାତ୍ର ଡିବେଟିଂ କ୍ଲବ କି ଉତ୍କଳାସିନୀ ସଭାର କୌଣସି ସଭ୍ୟ ଏଥିରେ ସମ୍ମତ ନ ହେବାରୁ ଶେଷରେ ଏହି ଧାର୍ଯ୍ୟ ହେଲା ଯେ ବର୍ତ୍ତମାନ ତିନିସଭାକୁ ଏକତ୍ର କରିବାର ଉପଯୁକ୍ତ କାଳ ହୋଇନାହିଁ ଅତଏବ ଏଥିର ବିଚାର ଅନ୍ୟ ସୁକାଳ ଅପେକ୍ଷାରେ ସ୍ଥଗିତ ରହିଲା । ସଭାମାନ ଭିନ୍ନ ୨ ଥିବାରେ କି ଦୋଷ ହେଲା ଓ ଯୋଗ ହେଲେ କି ଲାଭ ହେବ ପ୍ରସ୍ତାବ କାରୀ ସଭାପତି ମହାଶୟ ବ୍ୟକ୍ତ କରିନାହାନ୍ତି । କେବଳ ସ୍ୱବନସା ମାହେବ କମିଶ୍ନର ଏତିକି କହିଲେ ଯେ କୋଡ଼ିଏ କାଠିକୁ ଏକତ୍ର ବାନ୍ଧିଲେ ଯେମନ୍ତ କଠିନ ହୁଅଇ ସମସ୍ତେ ଏକମେଳ ହେଲେ ସେହିପରି ହେବ । ଏ ବିଷୟରେ ଆମ୍ଭମାନଙ୍କ ମନ୍ତବ୍ୟ ଆଗାମୀ ସପ୍ତାହରେ ପ୍ରକାଶ କରିବା ।

ଏ ସଭାରେ ଆହୁରି ସ୍ଥିରହେଲା ଯେ କଟକରେ ଜଣେ ସବ ଅସିଷ୍ଟାଣ୍ଟ ସର୍ଜନ ନିଯୋଗ କରିବାପାଇଁ ଗବର୍ଣ୍ଣମେଣ୍ଟଙ୍କ ନିକଟକୁ ଏକ ଆବେଦନ ପତ୍ର ପ୍ରେରିତ ହେବ । ଏ ପ୍ରସ୍ତାବ ବଡ଼ ହିତକର ଅଟଇ ଓ ଆମ୍ଭେମାନେ ଭରସାକରୁ ଯେ ଅବଶ୍ୟ ସର୍ବସାଧାରଣ ଏଥିରେ ଯୋଗ ଦେବେ ।

୨୯୨ ।

## ଯାତ୍ରି ଟାକ୍ସ

ଏ ବିଷୟ ବିବେଚନା କରିବା କାରଣ ଗଲତ ମାସ ତା୨ରିଖ ବେଳ ଦଣ୍ଡ ଠାରେ ପୁରୀ ସ୍କୁଲଗୃହରେ ସଭା ହୋଇଥିଲା । ପୁରୀ ନଗରର ଓ କଟକରୁ ଯାଇଥିବା ହାକିମ ଓ ସମ୍ଭ୍ରାନ୍ତବ୍ୟକ୍ତି ଅନେକ ଲୋକ ସଭାରେ ଉପସ୍ଥିତ ହୋଇଥିଲେ । ଯାତ୍ରିଙ୍କ ରକ୍ଷାର୍ଥେ ଧନ କିରୂପେ ସଂଗ୍ରହ ହେବ ଓ ସେ ଧନ କିଏ ବ୍ୟୟ କରିବ ଏ ସମସ୍ତ ନିର୍ଣ୍ଣୟ କରିବା ସଭାର ଉଦ୍ଦେଶ୍ୟ ଥିଲା । କମିଶ୍ନର ସାହେବ ଆପଣା ମତ ଏହିରୂପ ବ୍ୟକ୍ତ କଲେ । ଯାତ୍ରିଙ୍କଠାରୁ ସାମାନ୍ୟରୂପ ଟାକ୍ସ ନେବା ଓ ଯାତ୍ରିଙ୍କୁ ଭଡ଼ା ଦିଆଯିବା ଘରର ଅଧିକାରିଙ୍କଠାରୁ କିଛି ରସୁମ ନେବା ଏବଂ ମଠବାଡ଼ି ଆୟର କୌଣସି ଅଂଶ ନେବା ଏ ତିନି ଉପାୟରେ ଯେ ଧନ ପ୍ରାପ୍ତି ହେବ ସେ ସମୁଦାୟ ଦେଶୀୟଲୋକଙ୍କ କମିଟୀଦ୍ୱାରା ଯାତ୍ରିଙ୍କ ରକ୍ଷାର୍ଥେ ବ୍ୟୟ ହେବ । ପଣ୍ଡା ଓ ମହନ୍ତ ସମସ୍ତେ ଯାତ୍ରିଙ୍କଠାରୁ ଟାକ୍ସ ନେବା ପକ୍ଷରେ ମତ ଦେଲେ ଓ ପଣ୍ଡାମାନେ କହିଲେ ଯେ ପୂର୍ବେ ଯେମନ୍ତ ତାହାଙ୍କୁ ଅଠରନଳା ଘାଟ ଟଙ୍କାର ଅଂଶ ମିଳୁଥିଲା ସେହିରୂପ ଅଂଶ ମିଳିବ । ପର ଉପରେ କଥା ପକାଇ ଦେବାକୁ କାହାର କ୍ଲେଶ ହୁଅଇ ନାହିଁ, ବିଶେଷ ପଣ୍ଡାମାନେ ଏ ବିଷୟରେ ଫଳାକାଙ୍କ୍ଷୀ ଥିବାରୁ ସେମାନେ ଏକମତ ହେବାର ସମ୍ଭାବିତ ନୁହଇ । ମହନ୍ତମାନେ ମଠବାଡ଼ିର କିଛି ଦେବେନାହିଁ ଏ ବିଷୟରେ ସେ ଅନ୍ୟେ ଦରଖାସ୍ତ କମିଶନର ସାହେବଙ୍କ ନିକଟରେ ଦେଇଅଛନ୍ତି । ସେ ବୋଲନ୍ତି ଯେ ତାହାଙ୍କର ପୂର୍ବପୁରୁଷମାନେ ବହୁ ପରିଶ୍ରମରେ ଧନାଢ଼୍ୟଲୋକଙ୍କୁ ପ୍ରବର୍ତ୍ତାଇ ସଦାବର୍ତ୍ତ ସମ୍ପତ୍ତି ପ୍ରାପ୍ତ ହୋଇଅଛନ୍ତି । ତାହାଙ୍କୁ ଯେ କରିବାର ନିୟମ ତାହାଙ୍କ ସମ୍ବନ୍ଧରେ ଅଛି ସେହି କାର୍ଯ୍ୟ କରିବେ, ଅପର କାର୍ଯ୍ୟରେ କଦାଚ ଧନ ଦେବେନାହିଁ । ସେ କାର୍ଯ୍ୟ ଉତ୍ତମ ନହେଲେ ତାହା ସଂଶୋଧନ ପାଇଁ ଗବର୍ଣ୍ଣମେଣ୍ଟ ଚେଷ୍ଟା କରନ୍ତୁ । ଆମ୍ଭେମାନେ ଏହାଙ୍କ ଆପତ୍ତି ପ୍ରବଳ ଜ୍ଞାନ କରୁଁ ଓ ତାହାଙ୍କଠାରୁ କୌଣସିରୂପେ ଜୋର କରି ସକାଶେ ଧନ ଗୃହୀତ ହୋଇ ନପାରେ । ଫଳେ ଏହି ହେବ ଯେ ଯାତ୍ରିଙ୍କଠାରୁ କିଛି ତାହାଙ୍କୁ ଦେଇ ଦେଲେ ସେମାନେ ଚେତକ ଦେଇ ନିଶ୍ଚିନ୍ତ ରହିବେ । ତାହା ହେଲେ ସେମାନେ ବର୍ତ୍ତମାନଠାରୁ ଆହୁରି ଅମିତବ୍ୟୟ କରି ସୁଖରେ କାଳ ଯାପନ କରିବେ ।

ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟ ଏ ସଭାରେ ଉପସ୍ଥିତ ହୋଇ ବକ୍ତୃତା କରିଥିଲେ । ତାହାଙ୍କ ମତରେ ଯାତ୍ରି ଆଣିବାବାଲା ପଣ୍ଡାଙ୍କଠାରୁ ଟାକ୍ସ ନେବାର ଉଚିତ । ଯାତ୍ରିଙ୍କଠାରୁ ସାକ୍ଷାତ୍ ସମ୍ବନ୍ଧେ ଟାକ୍ସ ନେଲେ ଗବର୍ଣ୍ଣମେଣ୍ଟ ଧର୍ମ ବିଷୟରେ ହସ୍ତକ୍ଷେପଣ କରିବାର ଲୋକେ ବିଶ୍ୱାସ କରିବେ ମାତ୍ର ପଣ୍ଡା ଯାହା ଦେବେ ତାହା ସେ ଶେଷରେ ଯାତ୍ରିଙ୍କ ଉପରେ ପଡ଼ିବ ଓ କେହି୨ ଟାକ୍ସ ଦେବା ଭୟରେ ଯାତ୍ରି ଆଣି-

ବାଲ୍କ ଲୁଣ୍ଠିତ ହେଲେ ମଧ୍ୟ ଧର୍ମ ବିଷୟରେ ହସ୍ତକ୍ଷେପଣ ହେବ ତାହା ସେ ବିବେଚନା କରୁନାହାନ୍ତି । ଯାତ୍ରୀଆଣିବା ପଣ୍ଡାମାନଙ୍କୁ ଏକ ପ୍ରକାର ଧର୍ମପ୍ରବର୍ତ୍ତିକ ବୋଲି ଯାଇ-ପାରେ । ଯେବେ ଖ୍ରୀଷ୍ଟିଆନମାନେ ଧର୍ମୋପଦେଶ ଦେବାପାଇଁ ବନ୍ଦ କରି ଦେଉ ନାହାନ୍ତି ତେବେ ପଣ୍ଡାମାନେ କାହିଁକି ଦେବେ ? କୌଣସିରୂପେ ଯାତ୍ରୀଙ୍କ ସମ୍ବନ୍ଧରେ ଟାକ୍ସ ନେବାର ଲୋକ ହେଲେ ଯାତ୍ରୀ ଉଣା ପଡ଼ିବେ ଓ ଯାତ୍ରୀ ଉଣାହେଲେ ଓଡ଼ିଶାକୁ ଯେତେ ଆସୁଅଛନ୍ତି ତେତେ ଆସିବେ ନାହିଁ । ଏରୂପ ହେଲେ କି ଓଡ଼ିଶାର ମଙ୍ଗଳ ହେବ ?

ଯାହାହେଉ ଏ ସଭାରେ କୌଣସି କଥା ସ୍ଥିର ହେଲନାହିଁ ଓ ତାହା ଦେଖି କମିଶ୍ନର ସାହେବ କହିଲେ ଯେ ଏ ବିଷୟ ପୁନର୍ବାର ବିବେଚନା ହେବ ବର୍ତ୍ତମାନ ସ୍ଥଗିତ ଥାଉ । ଏଠାରୁ ସଭା ଭଙ୍ଗହେଲା ।

୧୪୩ । ସାଧାରଣ ଚିକିତ୍ସାଳୟ ନିର୍ମାଣର ସଭା ।

ଗତ ମଙ୍ଗଳବାର କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ହୋମହଲ ଗୃହଠାରେ ସାଧାରଣ ଚିକିତ୍ସାଳୟ ନିର୍ମାଣ କାରଣ ଚାନ୍ଦା ସଂଗ୍ରହ କରିବାପାଇଁ ସଭା ହୋଇଥିଲା । ଶ୍ରୀଯୁକ୍ତ କମିଶ୍ନର ସାହେବ ଏହାର ସଭାପତି ଥିଲେ । ଚାରିପାଞ୍ଚ ଦିନ ପୂର୍ବରୁ ନଗରର ଯାବତୀୟ ଧନୀ ଓ ସମ୍ଭ୍ରାନ୍ତବ୍ୟକ୍ତିଙ୍କୁ ବିଜ୍ଞାପନ ଦିଆ ଯାଇଥିବା ପ୍ରତ୍ୟକ୍ଷେ ଜଣଂଶ ସୁଦ୍ଧା ଉପସ୍ଥିତ ହେଲେନାହିଁ । ସେଥି ମଧ୍ୟରୁ ପୁଣି ଅଧିକାଂଶ ଅମଲା । ଜମିଦାର ମହାଜନ ପ୍ରଭୃତି କି ଯାହାଙ୍କ ଆଗମନ କରିବା ସର୍ବାପେକ୍ଷା ଉଚିତ ଥିଲା ତାହାଙ୍କ ମଧ୍ୟରୁ ଦୁଇ-ଚାରିଜଣ ବ୍ୟତ୍ୟକେ ଅଧିକ ଉପସ୍ଥିତ ହେବାର ଦେଖା ଗଲାନାହିଁ । କେତେ ଜମି-ଦାର ଆପଣା ୨ ମୁକ୍ତାର ପଠାଇ ସଭାକୁ ବାଧିତ କରିଥିଲେ । ଇଂରାଜ ମଣ୍ଡଳୀ ମଧ୍ୟରୁ ଶ୍ରୀ ରବେନସ, ମାକ୍ନଫର୍ସନ, କର୍ଚ୍ଚ୍ଡ଼, ରାଇଟ ଓ ମାକଡୋନାଲଡ ସାହେବମାନେ ଉପସ୍ଥିତ ଥିଲେ । ଦେଶୀୟ ହାକିମ ମଧ୍ୟରୁ ଏକା ବାବୁ ଜଗନ୍ମୋହନ ରାୟ । ଏତକ ଲୋକରେ କୌଣସିରୂପେ ସଭାର କାର୍ଯ୍ୟ ଆରମ୍ଭ ହେଲା । ଶ୍ରୀଯୁକ୍ତ ମାକଡୋନାଲଡ ସାହେବଙ୍କ ଲିଖିତ ଖଣ୍ଡିଏ ବକ୍ତୃତାର ଉତ୍କଳ ଅନୁବାଦ ବାବୁ ଜଗନ୍ମୋହନ ରାୟ ପାଠକରି ସଭାର ଉଦ୍ଦେଶ୍ୟ ବ୍ୟକ୍ତକଲେ । ସେଥିରୁ ଜଣାଗଲା ଯେ ବର୍ତ୍ତମାନ ନଗରର ନାନାସ୍ଥାନରେ ଗୋଟିଏ ୨ ଚିକିତ୍ସାଳୟ ଥିବା ଓ ସମସ୍ତ ଏକଜଣ ଡାକ୍ତର ସାହେବଙ୍କ ଅଧୀନ ଥିବାରୁ କେବଳ ଯିବା ଆସିବାରେ ବହୁତ କାଳ ବିଳମ୍ବ ହୁଅଇ ଓ ଏ ସବୁ ଦେଖୁ ୨ ଦିନ ବୁଲିଯାଏ ସୁତରାଂ ନଗରରେ ସରକାରୀ କର୍ମଚାରୀ କିମ୍ବା ଅପର ବ୍ୟକ୍ତିଙ୍କ ଘରଠାରୁ ଯାଇ ଚିକିତ୍ସା କରିବାର ଅବକାଶ ରହେ ନାହିଁ । ସବୁ ଚିକିତ୍ସାଳୟ

ଏକସ୍ଥାନରେ ରହିଲେ ଡାକ୍ତରଙ୍କର ଭ୍ରମଣ କରିବାର ପରିଶ୍ରମ ଓ ସମୟ ଊଣା ହେବ ଓ ତାହା ଚିକିତ୍ସା ପକ୍ଷରେ ହିତକର ହେବ । ଏହି ହେତୁରୁ ପ୍ରସ୍ତାବ ହୋଇଅଛି ଯେ ନଗରର ଜନାକୀର୍ଣ୍ଣସ୍ଥାନର ଅନ୍ତର ଏକ ପ୍ରଶସ୍ତ ପଡ଼ିଆରେ ଯଥା ଗୃହଲଆଗଷ୍ଟଠାରେ ବୃହତ୍ ପରିମାଣରେ ଗୋଟିଏ ଚିକିତ୍ସାଳୟ ନିର୍ମାଣ ହେବ । ସେଥିରେ ଦେଶୀୟ ବିଦେଶୀୟ ଏବଂ ଯାତ୍ରୀ ରୋଗୀଙ୍କ ରହିବା କାରଣ ପୃଥକ୍ ୨ ଘର ରହିବ । ଗର୍ଭିଣୀ-ସ୍ତ୍ରୀଙ୍କୁ ପ୍ରସବ କରାଇବା କାରଣ ଗୋଟିଏ ସ୍ୱତନ୍ତ୍ର ଘର ହେବ । ଯେ କୌଣସି ସ୍ତ୍ରୀର ଇଚ୍ଛା ହେଲେ ସେଠାକୁ ଆସି ପ୍ରସବର ବେଦନାରୁ ମୁକ୍ତ ପାଇବ । ସରକାରୀ ଗୃହର ପୁଲିସ କର୍ମକାରକଙ୍କ ନିମିତ୍ତ ସେହିଠାରେ ପୃଥକ ଘରମାନ ରହିବ । ଏମନ୍ତେ ସବୁ-ପ୍ରକାର ସୁସାର ଏକସ୍ଥାନରେ ହେବାର ଅଛି । ମାତ୍ର ଏତେ ବଡ଼କାର୍ଯ୍ୟ ସାଧାରଣ ସାହାଯ୍ୟ ବିନା ହୋଇ ନପାରେ ଅତଏବ ସାଧାରଣଠାରୁ କିଛି ୨ ଚାନ୍ଦା ପ୍ରାର୍ଥନା ହେଉଅଛି ।

ଏବକୁଡା ପଢ଼ାହେଲା ଉତ୍ତାରୁ ଶ୍ରୀଯୁତ କମିଶ୍ନର ସାହେବ କହିଲେ ଯେ ଉକ୍ତ ପ୍ରକାର ଗୃହନିର୍ମାଣରେ ପ୍ରାୟ ଟ୩୨୦୦୦ଙ୍କା ବ୍ୟୟ ହେବ । ଶ୍ରୀଯୁତ ବର୍ଣ୍ଣ ସାହେବ ଏହି ଇଷ୍ଟିମେଟ କରିଅଛନ୍ତି । ଏଥିମଧ୍ୟରୁ ସରକାର ଅର୍ଦ୍ଧେ ଦେବେ, ଅବଶିଷ୍ଟ ଅର୍ଦ୍ଧେ ଅର୍ଥାତ୍ ଟ୧୬୦୦୦ଙ୍କା ମଧ୍ୟରୁ ଟ୧୦୦୦୦ଙ୍କା ଚିକିତ୍ସା ଫଣ୍ଡରେ ଜମା ଅଛି ଓ ପ୍ରାୟ ଆଉ ଏକହଜାର ବର୍ତ୍ତମାନର ହାସପାତାଲ ବିକ୍ରୟରେ ପ୍ରାପ୍ତ ହେବ ସୁତରାଂ ସାଢ଼େ ଚାରିହଜାର ଟଙ୍କା ଚାନ୍ଦାଦ୍ୱାରା ଉଠିଲେ ସବୁକାର୍ଯ୍ୟ ସମ୍ପନ୍ନ ହେବ । ଏହିରୂପ ବୁଝାଇ ଦେଇ କମିଶ୍ନର ସାହେବ ଆପେ ଟ୧୦୦ଙ୍କା ଦେବାର ସ୍ୱାକ୍ଷର କରି ଚାନ୍ଦା-ଫର୍ଦ୍ଦ ଅନ୍ୟ ଲୋକଙ୍କ ସ୍ୱାକ୍ଷର କାରଣ ଫେରିଲା । ବାବୁ ସଦାନନ୍ଦ ମହାପାତ୍ର ପୂର୍ବେ ଟ୧୦୦ଙ୍କା ଦେବାକୁ ସ୍ୱୀକାର କରିଥିବାରୁ ତାଙ୍କର ସ୍ୱାକ୍ଷର ହେଲାନାହିଁ । ବାବୁ ଲକ୍ଷ୍ମୀନାରାୟଣ ରାୟଚୌଧୁରୀ ରଘୁନାଥ ଦାସ ଟ୨୦୦ଙ୍କା ଆଉ ସଭ୍ୟମାନେ ଯଥା-ଶକ୍ତି ପର୍ଯ୍ୟନ୍ତ ପଦର ଲେଖିଦେଲେ ଉତ୍ତାରୁ ସର୍ବସୁଦ୍ଧା ପ୍ରାୟ ଟ[illegible]ଙ୍କା କିମ୍ବା କିଛି ଊଣା ଅଧିକ ହେଲା । ଏଥିରୁ ଜଣାଯାଏ ଯେ ସଭା ଏକପ୍ରକାର ସଫଳ ହେଲା ମାତ୍ର ଅନୁପସ୍ଥିତ ବ୍ୟକ୍ତିଙ୍କ ନିକଟକୁ ଚାନ୍ଦାଫର୍ଦ୍ଦ ପ୍ରେରିତ କରି ଯେତେ ଟଙ୍କା ହୋଇପାରେ ସଂଗ୍ରହ କରିବାର ଭାର କଲେକ୍ଟର ସାହେବଙ୍କୁ ଅର୍ପିତ ହୋଇ ସଭା ଭଙ୍ଗ ହେଲା ।

## ସାପ୍ତାହିକ ସମ୍ବାଦ ।

୨୦୪ । ଗତ ବୁଧବାର ଫଉଜଦାରୀ ଅଦାଲତରେ ବାବୁ କୈଳାସ ଚନ୍ଦ୍ର ଘୋଷ ଡେପୁଟୀ ମାଜିଷ୍ଟ୍ରେଟ ଏକ ମାରପିଟ ମକଦ୍ଦମାରେ ଗୋଛିନାଁ ନାମକ ବିଖ୍ୟାତ

ମଲ୍ଲ ଓ ଆଉ ଜଣେ ମୁସଲମାନଙ୍କୁ ଏକସପ୍ତାହ କାରାବାସ ଓ ୫୦ଙ୍କା ଅର୍ଥଦଣ୍ଡର ଆଜ୍ଞା ଦେଇଥିଲେ । ତହିଁ ଆରଦିନ ଆସାମିମାନେ ଅପିଲ କରି ମାଜିଷ୍ଟ୍ରେଟ ସାହେବଙ୍କ ଆଜ୍ଞାନୁସାରେ ଯାମିନ ଦେଇ ଖଲାସ ହୋଇଆଛନ୍ତି । ମକଦ୍ଦମା ବିଚାରାଧୀନରେ ଅଛି ।

## ( ୪ର୍ଥ ଭାଗ, ୧୬ । ୭ । ୧୮୭୦, ସଂଖ୍ୟା ୨୯ )

୨୪୫ । ଉତ୍କୃଷ୍ଟ ବଦାନ୍ୟତା ।

ଆମ୍ଭେମାନେ ଅତି ଆନନ୍ଦର ସହିତ ସର୍ବସାଧାରଣଙ୍କୁ ଜଣାଉଅଛୁଁ ଯେ ପଥିକଙ୍କ ଉପକାର ନିମିତ୍ତ କାଠଯୋଡ଼ିନଦୀ ଦକ୍ଷିଣଘାଟର ମୋକାମେଶ୍ୱର ନିକଟରେ ଗୋଟିଏ ପକ୍କା ଧର୍ମଶାଳ ନିର୍ମାଣାର୍ଥେ ବାବୁ କହ୍ନେୟାଲାଲ ପଣ୍ଡିତ ଏ ନଗରର ଜଣେ ଧନାଢ୍ୟ ବ୍ୟକ୍ତି ନଗଦ ୫୦୦୦ଙ୍କା କଟକ ଅନ୍ନଛତ୍ର କମିଟୀ ହସ୍ତରେ ସମର୍ପଣ କରିଅଛନ୍ତି । ଉକ୍ତ କମିଟୀ ଧର୍ମଶାଳ ଗୃହ ନିର୍ମାଣ କରିବେ ଓ ତାହା ନିର୍ବାହ ନିମିତ୍ତ ବ୍ୟବସ୍ଥା ମଧ୍ୟ ସେହିମାନେ କରିବେ । ଦାତା କେବଳ ଏତିକ ନିୟମରେ ଟଙ୍କା ଦେଇଥିବାର ଶୁଣାଯାଏ ଯେ ଧର୍ମଶାଳରେ ଯେ ଇଚ୍ଛା ସେ ରହିପାରିବେ ଓ ଦୁଃଖୀ ପାନ୍ଥମାନେ ଏକ ସନ୍ଧ୍ୟା ଭୋଜନ ପାଇବେ । ଆହୁରି ଶୁଣାଯାଏ ଯେ ମହାନଦୀ ଉତ୍ତରଘାଟର ସଡ଼କ ପାଖରେ ମଧ୍ୟ ଏହିପରି ଗୋଟିଏ ପାନ୍ଥଶାଳ ହେବ । ଜଗନ୍ନାଥ ସଡ଼କରେ ଯାତ୍ରିଙ୍କର ଯେ କ୍ଳେଶ ତାହା ଅକଥନୀୟ ଓ ବାବୁ ଯେମାନଙ୍କ ରକ୍ଷା ନିମିତ୍ତ ଯେଉଁ ଦାନ କରିଅଛନ୍ତି ସେଥିରେ ସେ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ଏପରି ଦାନ କରିବାର ଲୋକସଂଖ୍ୟା ଓଡ଼ିଶାରେ ଅତ୍ୟଳ୍ପ ମାତ୍ର । ଆମ୍ଭେମାନେ ଭରସା କରୁଁ ଯେ ଏମାନଙ୍କ ସଂଖ୍ୟା ଅଧିକ ହେଉ ଓ ଦରିଦ୍ରଙ୍କ ଦୁଃଖ ନାଶିବା ପକ୍ଷରେ ଏକ ଅନ୍ୟକୁ ବଳିଯିବାର ଚେଷ୍ଟା କରନ୍ତୁ ।

ଅନ୍ନଛତ୍ର କମିଟୀ କିରୂପେ ଏଟଙ୍କା ବ୍ୟୟ କରିବେ, ଆମ୍ଭମାନଙ୍କୁ ଜଣାନାହିଁ ମାତ୍ର ବୋଧହୁଅଇ ଯେ କେବଳ ଧର୍ମଶାଳାରେ ତାଦୃଶ ଉପକାର ନାହିଁ । ଯେଉଁପେ ବାଲେଶ୍ୱରର ପ୍ରସିଦ୍ଧ ଜମିଦାର ଈଶାନ ଚନ୍ଦ୍ର ମିତ୍ର ଗୋଟିଏ ଚିକିତ୍ସାଳୟ ନିର୍ମାଣ ନିମନ୍ତେ ପାଞ୍ଚହଜାରଟଙ୍କା ପ୍ରଦାନ କରି ତାହା ନିର୍ବାହ ହେବାଲାଗି ବାର୍ଷିକ ତିନିହଜାର ଟଙ୍କାର ଖଣ୍ଡିଏ ଜମିଦାରୀ ପ୍ରଦାନ କରିଅଛନ୍ତି ସେହି ପ୍ରାୟ ଏ ଧର୍ମଶାଳର ବ୍ୟୟ ନିର୍ବାହାର୍ଥେ କୌଣସି ବନ୍ଦୋବସ୍ତ ହେଲେ ଅବଶ୍ୟ ସର୍ବପ୍ରକାର ଶ୍ରେୟ ହେବ । ଏତେବେଳେ ଜଗନ୍ନାଥ ସଡ଼କ ବାଟରେ କେତେ ସ୍ଥଳେ ଧର୍ମଶାଳ ଅଛି ମାତ୍ର ସେ ସବୁ କ

ଦୁର୍ଦ୍ଦଶାକୁ ଲକ୍ଷଲକ୍ଷଣି କେହି ତାହାର ରକ୍ଷାକର୍ତ୍ତା ନାହିଁ । ଯାତ୍ରିମାନେ ମନଇଚ୍ଛା ସେଥିରେ ରହି ଅପରିଷ୍କାର ରୋଗ ପାଉଛନ୍ତି । ଯେବେ ପ୍ରତି ଧର୍ମଶାଳରେ ଗୋଟିଏ ଲେଖାଏଁ ଚିକିତ୍ସାଳୟ ସ୍ଥାପିତ ହୋଇ ତହିଁର ଭାର ଜଣେ ନେଟିବ ଡାକ୍ତର ହସ୍ତେ ଅର୍ପିତ ହୁଅନ୍ତା ତେବେ ଦରିଦ୍ର ଯାତ୍ରିମାନେ ଭୋଜନ ଓ ରହିବାକୁ ସ୍ଥାନ ପାଇ-ପାରନ୍ତେ ଓ ଅପର ଯାତ୍ରିମାନେ ପୀଡ଼ାଗ୍ରସ୍ତ ହେଲେ ଔଷଧାଦି କୁଶଳ ଲାଭ କରନ୍ତେ । କେବଳ ବସାକର ରହିବାକୁ ଚଟିଘରେ ସ୍ଥାନପ୍ରାପ୍ତ ହୁଅଇ ମାତ୍ର ରୋଗ ସମୟରେ ଯାତ୍ରିଙ୍କର କୌଣସି ଉପାୟ ନାହିଁ । ତେତେବେଳେ ସେମାନେ ବାଟରେ ନିତାନ୍ତ ଅସହାୟ ହୋଇପଡ଼ନ୍ତି । ଏଥିର ପ୍ରତିକାର କରିବା ଦେଖିବେ ଆବଶ୍ୟକ ଓ ସେଥିରେ ଯେଉଁରୂପ ଉପକାରର ସମ୍ଭାବନା ତାହା ଧର୍ମଶାଳା ଗୃହ ନିର୍ମାଣରେ ତାଦୃଶ ଉପକାର ହେବାର ନାହିଁ । ଅତଏବ ଆମ୍ଭମାନଙ୍କର ପ୍ରାର୍ଥନା ଯେ ବାବୁ କନ୍ହେୟା ଲାଲ ପଣ୍ଡିତ ଯେଉଁରୂପ ବଦାନ୍ୟତା ଦର୍ଶାଇ ଆପଣା ଦାନ୍ୟାଦି ତହିଁର ପରିଚୟ ଦେଇଅଛନ୍ତି ସେହି-ରୂପ କିଛି ବୃତ୍ତି ସଂସ୍ଥାପନଦ୍ୱାରା ଧର୍ମଶାଳାକୁ ସର୍ବାଂଶରେ ଯାତ୍ରିଙ୍କର ହିତୋପଯୋଗୀ କରନ୍ତୁ । ପାଞ୍ଚହଜାର ଟଙ୍କା କେବଳ ଗୃହନିର୍ମାଣରେ ବ୍ୟୟ ହେବ ମାତ୍ର ଗୃହନିର୍ମାଣ ଉତ୍ତାର ନିତ୍ୟମିତ ବ୍ୟୟ କାରଣ ଅଳ୍ପ ଟଙ୍କା ରହିବ ଆଉ କିଛି ତାହାସଙ୍ଗେ ମିଶାଇ ଏହାକୁ ଚିରକାଳ ଉତ୍ତମରୂପେ ଚଳାଇବାର ଚେଷ୍ଟା କଲେ ବଡ଼ ଫଳହେବ ଓ ଚିକିତ୍ସାଳୟ ହେଲାଠାରୁ ଗବର୍ଣ୍ଣମେଣ୍ଟ ମଧ୍ୟ ସାହାଯ୍ୟ କରିବେ । ଯେବେ ଏହିପରି ଏକ ୨ ସ୍ଥାନରେ ଚିକିତ୍ସାଳୟ ନିର୍ମାଣ ହୁଅଇ ତେବେ ଯାତ୍ରିମାନଙ୍କ ରକ୍ଷାର୍ଥେ ଠାକୁର ବସାଇବାର କୌଣସି ପ୍ରୟୋଜନ ହେବ ନାହିଁ ବୋଲିବା ବାହୁଲ୍ୟ ମାତ୍ର ।

## ସାପ୍ତାହିକ ସମ୍ବାଦ ।

୨୫୭ । ପୁରୁଷୋତ୍ତମରେ ରଥଯାତ୍ରା ସମୟରେ ଏକ ରହସ୍ୟ ଜନକ ବ୍ୟାପାର ଘଟିଥିଲା । ମହାପ୍ରଭୁ ମନ୍ଦିରର ବାହାରିଲା ଦିନ ସୁଆରମାନେ ଆପଣା ଲାଭ କାରଣ ଅନେକ ଅନ୍ନଭୋଗ ଦେବାର ଆୟୋଜନ କରିଥିଲେ । ବେଳ ଘ. ୧୦ଣ୍ଟା ଠାରୁ ଘ ୨ଣ୍ଟା ପର୍ଯ୍ୟନ୍ତ ଭୋଗବୁଝା ସରିଲାନାହିଁ ଅଥଚ ଅନ୍ନର ଗରମରେ ଦେଉଳରେ ରହିବାର କଠିନ ହେଲା । ପୂଜକ ପଣ୍ଡାର ଶରୀର କମ୍ପିଲା ଓ ସେ ଆଉ ତାହାପ ସହି ନପାରି କବାଟ ଲଗାଇ ପୂଜା ଆରମ୍ଭ କଲା । ଦୁଇଜଣ ସୁଆର ଘରମଧ୍ୟରେ ଥିଲେ ତାହାଙ୍କର ନିଶ୍ୱାସ ରୁଦ୍ଧହୋଇ ପ୍ରାଣସଙ୍କଟ ହେଲା ଓ ସେମାନେ ଚିତ୍କାର କରିବାରୁ ବାହାର ଲୋକ କବାଟ ଜଳା ମଧ୍ୟରେ ପାଣି ଦେବାର କୌଣସି ଉପାୟ ବନ୍ଦ ନହେଲା । ଭୋଗ ଉତ୍ତାରୁ କବାଟ ଫିଟିଲା ବେଳେ ପଣ୍ଡାମାନେ ଲୁଚି ରହିଲେ ଓ ସୁଆରମାନେ ଏମନ୍ତ ରାଗାନ୍ୱିତ ହୋଇଥିଲେ ଯେ ତାହାଙ୍କୁ ପ୍ରାଣରେ ବଧ କରିବାପାଇଁ ବାଉଁଶ ଇତ୍ୟାଦି ଘେନି

ଶୋକ ଭୁଲିଲେ । ପରିଶେଷରେ ପୁଲିସର ସହାନୁଭୂତିରେ ସମ୍ରାଙ୍କର ପ୍ରାଣରକ୍ଷା ହେଲା । ମଫସଲର କାର୍ଯ୍ୟ କିରୂପେ ଶୃଙ୍ଖଳାରେ ନିର୍ବାହ ହେଉଅଛି ପାଠକମାନେ ଏଥିରୁ ଅନୁମାନ କରନ୍ତୁ ।

୨୨୭ । ଗତ ସପ୍ତାହ ଶୁକ୍ରବାର ସକାଳବେଳା ଗୋଟାଏ ବାଘ ମହାନଦୀରେ ଭାସିଆସି କଟକ ନଗର ମଧ୍ୟରେ ପ୍ରବେଶ ହୋଇଥିଲା । ବହୁତ ଲୋକ ତାହାକୁ ଘେରି ବଧ କରିବାକୁ ଚେଷ୍ଟାକଲେ । ବାଘ ଧାବମାନ ହୋଇ କେତେ ଲୋକଙ୍କୁ ନଖରେ ଆଘାତ କଲା କିନ୍ତୁ କାହାରି ସାଂଘାତିକ ହୋଇନାହିଁ । ପରିଶେଷରେ ଟେଲର ସାହେବ ପ୍ରଭୃତି ଇଂରାଜମାନେ ତାହାକୁ ବଧକଲେ । ବାଘଟି ଦେଖିବାକୁ ବଡ଼ ସାନ ନୁହେଁ କେବଳ ବହୁ ଦୂରରୁ ପାଣିରେ ଭାସି ଆସିଥିବାରୁ ତେତେ ବଳଯୁକ୍ତ ନଥିଲା ।

## ( ୫ମ ଭାଗ, ୨୩ । ୭ । ୧୮୭୦, ସଂଖ୍ୟା ୩୦ )

୨୦୮ । ଟାଉନ ଟାକ୍ସ ।

ଟାଉନ ଟାକ୍ସ ବନ୍ଦୋବସ୍ତ ସମ୍ବନ୍ଧରେ ବହୁତ ଅପୀଲ ମୋକଦ୍ଦମା ଉପସ୍ଥିତ ହେବାରୁ ସେ ସମସ୍ତ ନିଷ୍ପତ୍ତି କରିବା କାରଣ ପ୍ରତି ସପ୍ତାହରେ ତିନିଥର ଅର୍ଥାତ୍ ସୋମବାର ବୁଧବାର ଶୁକ୍ରବାର ଟାଉନକମିଟୀର ସଭା ହେଉଅଛି । ଏଥି ମଧ୍ୟରେ କେତେ ସଭା ହେଲାଣି । ଗତ ସପ୍ତାହରେ ଯେ ସଭାମାନ ହୋଇଥିଲା ସେଥିରେ ପ୍ରାୟ କେହି କ୍ଷମା ପାଇ ନାହାନ୍ତି । ସବୁ ଅପୀଲ ନାମଞ୍ଜୁର । ଏଥିରେ ଲୋକମାନେ ନିରୁତ୍ସାହ ହୋଇ କଚେରୀକୁ ଆସିବାକୁ ବିରକ୍ତ ହେଲେଣି । କେତେଦିନ ନାକମା ହେଲା ଉତ୍ତାର ଯେବେ କିଛି ବୁଝାମଣା ନହେଲା ତେବେ ଫଳ କଣ । ପ୍ରଥମ ଦୁଇ ତିନିଦିନ ଭଲକାର୍ଯ୍ୟ ହୋଇଥିଲା । ସେଥିରେ ଅନେକ ଅପୀଲ ନାମଞ୍ଜୁର ହେଲେ ମଧ୍ୟ କେତେଗୁଡିଏ ସଫଳ ହୋଇଥିଲା । ଏଣିକି ସବୁ ନାମଞ୍ଜୁର । ଏତେଲୋକ ଯେ ବୃଥା ଆପତ୍ତି କରୁଅଛନ୍ତି ଅନୁଭବ ହୋଇ ନାହିଁ । ମାତ୍ର ଟାଉନ କମିଟୀର ଭମ୍ବ ହୋଇଥିବ ଯେ କ୍ଷମା ଦେଲେ ଟାକ୍ସ ବହୁତ ଊଣା ହେବ, ଏବଂ କେତେ ଲୋକର କ୍ଷମା ପାଇଲେ ଅଧିକ ସଂଖ୍ୟକ ଅପୀଲ ଉପସ୍ଥିତ ହେବ । ସୁତରାଂ ଅପୀଲ ନାମଞ୍ଜୁର କରି ଶୀଘ୍ର ନିଶ୍ଚିନ୍ତ ହେବାକୁ ବାଞ୍ଛା କରୁଅଛନ୍ତି ।

ସାପ୍ତାହିକ ସମ୍ବାଦ ।

୨୪୯ । ଏ ନଗରର ତେଲିଙ୍ଗା ବଜାର ମେହେନ୍ତରନ ଜାତିର ଓ ନୂଆ ସଡ଼କରେ କେତେଘର ହାଡ଼ି ବାସ କରନ୍ତି । ଏମାନେ ପୂର୍ବରୁ ବାସସ୍ଥାନ ଭୂମିକୁ ଜାଗିର ସ୍ୱତ୍ୱ

ହେଗଳର ଆସୁଥିଲେ ଓ ନଗର ପରିଷ୍କାର କରିବା ସେମାନଙ୍କର କାର୍ଯ୍ୟଥିଲା । କେତେକ ବର୍ଷହେବ ନଗର ପରିଷ୍କାର ନିମିତ୍ତ ଗବର୍ଣ୍ଣମେଣ୍ଟ ବେତନ ଦେଇ ଜଣ ୨ ଗୃକର ରଖିବାରୁ ଯାଗିରହେଗୀ ହାଡ଼ିମାନଙ୍କୁ କର୍ତ୍ତ କର୍ମ କରିବାକୁ ପଡ଼ୁନାହିଁ ଓ ଯାଗିର ଅକାରଣ ହେଲା । ଏହି ହେତୁରୁ ସେମାନଙ୍କ ନାଚିକ ଚାଗିନ୍ଦ୍ରାମ ହୋଇ ବନ୍ଦୋବସ୍ତ ହେବାର ବାର୍ଷିକ ଆୟ ୫୬୦ଟଙ୍କା ଜମା ଧାର୍ଯ୍ୟ ହୋଇଅଛି । ଏଟଙ୍କା ଜଣେ ଗୃକରର ବେତନ ଅଧିକ ମାତ୍ର ଏଥିରେ ନଗର ସୁନ୍ଦର ପରିଷ୍କାର ହେବାର କଥା ଥିଲା । ପୂର୍ବର ବନ୍ଦୋବସ୍ତମାନ କେମନ୍ତ ସୁଲଭ ଏଥିରୁ ପାଠକମାନେ ଅନୁମାନ କରନ୍ତୁ । ସେ ଯାହାହେଉ ବର୍ତ୍ତମାନ ଏଟଙ୍କାର ଅଧିକାରୀ କିଏ ? ଆମ୍ଭେମାନେ ବିବେଚନା କରୁଁ ଯେ ଟାଉନ କମିଟି ଏଟଙ୍କା ପାଇ ପାରନ୍ତି । ନଗର ପରିଷ୍କାର କରିବା ସକାଶେ ଏ ଭୂମି ଯାଗିର ସ୍ୱରୂପ ଖଞ୍ଜା ହୋଇଥିଲା, ହାଡ଼ିମାନେ ସେ କର୍ମ ନ କରିବାରୁ ତାଙ୍କଠାରୁ କାଢ଼ି ନିଆଗଲା ମାତ୍ର ଟାଉନ କମିଟି ସେ କର୍ମ କରୁଅଛନ୍ତି ଅତଏବ ଏଟଙ୍କା ସେମାନଙ୍କର ପ୍ରାପ୍ୟ ହେଉଅଛି । ଗବର୍ଣ୍ଣମେଣ୍ଟ ଯାହା ଏକ କର୍ମ ନିମିତ୍ତ ଦେଇଅଛନ୍ତି ସେ କର୍ମର ଭାର ଯେବେ ନ ନେଲେ ତେବେ ସେଥିପାଇଁ ଖଞ୍ଜା ହୋଇଥିବା ଟଙ୍କା କାହିଁକି ନେବେ । ଟାଉନ କମିଟିର ଟଙ୍କାର ନାଅଣ୍ଟ । ତାହାଙ୍କର ଏଥିରେ ଅନେକ ଉପକାର ହୋଇପାରେ ।

୨୫୦ । କଟକର ସିଭିଲ ସରଜନ ଡାକ୍ତର ମେକଡନାଲଡ଼ ସାହେବ ଗତ ବୁଧବାର କଲିକତାକୁ ପ୍ରସ୍ଥାନ କଲେ । ଛୁଟିନେଇ ବିଲାତକୁ ଯାଉଅଛନ୍ତି । ପୁରୀର ଡାକ୍ତର ଷ୍ଟୁଆର୍ଟ ସାହେବ ଏଠାରେ ନିଯୁକ୍ତ ହେବାର ଶୁଣାଯାଏ ।

## ( ୫ମ ଭାଗ, ୨୩ । ୭ । ୧୮୭୦, ସଂଖ୍ୟା ୩୦ )

୨୫୧ । କଟକ ସୋସାଇଟୀ ।

ଗତ ମାସ ତା ୨୨ ରିଖରେ ଏ ସମାଜର ଗୋଟିଏ ବିଶେଷ ସଭା ହୋଇଥିଲା । ସେ ସଭାରେ ଯେଉଁ ପ୍ରସଙ୍ଗମାନ ପଡ଼ିଥିଲା ଓ ଯେ ସବୁ ଯେରୂପେ ନିଷ୍ପତ୍ତି ହେଲା ତହିଁର ବିବରଣ ଗତ ପ୍ରକାଶିତ ଉତ୍କଳ ହିତବର୍ଦ୍ଧିନୀରେ ମୁଦ୍ରିତ ଅଛି । ଆମ୍ଭେମାନେ ତାହା ପାଠ କରି ଉପ୍ରୋକ୍ତ ବିଷୟରେ ବଡ଼ କୌତୁକାବିଷ୍ଟ ଜଣାଗଲା । ସେ ସ୍ଥଳେ ଦୁଇ ବିଷୟର ପ୍ରସ୍ତାବ ଆପ୍ତପୂର୍ଣ୍ଣ ବିବେଚନା ଆହ୍ୱାନ କରିଥିଲେ । ପ୍ରଥମ ଏହି ଯେ ଏ ନଗର ମଧ୍ୟରେ ସଂସ୍ଥାପିତ ଥିବା ଭିନ୍ନ ୨ ସମାଜମାନଙ୍କୁ ଏକତ୍ର କରିବା ଏବଂ ଦ୍ୱିତୀୟ ଏହି ଯେ କଟକ ପ୍ରିଣ୍ଟିଂକୁମାନର ପବ୍ଲିକଯନ୍ତ୍ରକୁ ସୋସାଇଟୀର ତତ୍ତ୍ୱାବଧାନରେ ଆଣିବା । ଏ ଦୁଇ

ପ୍ରସ୍ତାବ ସଫଳ ହେଲେ ତାହାଙ୍କ ଜାଣିବାରେ ଉତ୍କଳର ମହତ୍ ଉପକାର ସାଧନ ହେବ ।

ପ୍ରଥମ ପ୍ରସ୍ତାବ ବିଷୟ ରେବନସା ସାହେବଙ୍କ ମତ ଏହି ଯେ ଗୋଟିଏ ସମାଜ ବଳବନ୍ତର ହୋଇ ରହିଲେ କୌଣସି କାର୍ଯ୍ୟ କରିବାକୁ ହେଲେ ସମସ୍ତେ ଏକମତ ହୋଇ କାର୍ଯ୍ୟ କରିବେ ଓ ଗବର୍ଣ୍ଣମେଣ୍ଟ ମଧ୍ୟ ସେମାନଙ୍କର ପରାମର୍ଶ ଗ୍ରହଣ କରି ପାରିବେ । ଏକଥା ସିଦ୍ଧ କରିବା ନିମିତ୍ତ ଡିବେଟିଂ କ୍ଲବର ଯେଉଁ ଅଧିବେଶନ ହୋଇ-ଥିଲ ତହିଁର ବୃତ୍ତାନ୍ତ ଏଥିପୂର୍ବ ଲେଖିଅଛୁଁ ଓ ସେଠାରେ ପ୍ରକାଶ ପାଇଲ ଯେ ଏକତ୍ରିତ ହେବା କାହାର ମତ ନୁହଇ । ଏଥିର ହେତୁ ଏହିଯେ ଭିନ୍ନ ୨ ସମାଜ ଭିନ୍ନ ୨ ଉଦ୍ଦେଶ୍ୟରେ ସ୍ଥାପିତ ହୋଇଅଛି, ଭିନ୍ନ ୨ ସ୍ଥାନରେ ଏ ସବୁର କାର୍ଯ୍ୟ ଚଳଇ ଓ ଭିନ୍ନ ୨ ପ୍ରସଙ୍ଗରେ ତର୍କ ବିତର୍କ ହୋଇଥାଏ । ଯେଉଁ ସମୟରେ ସାଧାରଣ ହିତକର କଥାର ଅନୁଷ୍ଠାନ ହୁଅଇ ସେ ସମୟରେ ସମସ୍ତେ ଏକମେଳ ହୋଇ କାର୍ଯ୍ୟ କରନ୍ତି ଯେପରି କି ଉଚ୍ଚଶିକ୍ଷା ସମ୍ବନ୍ଧରେ ସଭା ସମୟରେ ହୋଇଥିଲ । ଅତଏବ ରେବନସା ସାହେବ ଯାହା ଅଭିଳାଷ କରନ୍ତି ତାହା ସିଦ୍ଧ ହୋଇଅଛି ବୋଲିବାକୁ ହେବ । ସାଧାରଣ ବିଷୟରେ ସମସ୍ତେ ଯୋଗଦେଇ ଅପର ବିଷୟରେ ଆପଣା ନିୟମା-ନୁସାରେ କାର୍ଯ୍ୟ କଲେ କି ଅସୁସାର ହେଲ ଅମ୍ଭେମାନେ ବୁଝି ପାରୁନାହୁଁ । ଯେବେ ସାଧାରଣ ହିତକର କଥାରେ ଭିନ୍ନ ୨ ସମାଜର ଲୋକମାନେ ଆପଣା ମଧ୍ୟରେ ବିବାଦ ରଖି ସାହାଯ୍ୟ ନ କରନ୍ତେ ତେବେ ଅନିଷ୍ଟ ହୁଅନ୍ତା । ବର୍ତ୍ତମାନରେ ଭିନ୍ନ ୨ ସଭା ଥିବାରୁ ଏହି ଏକ ଲାଭ ହୋଇଅଛି ଯେ କୌଣସି ତର୍କରେ ଏକ ୨ ସମାଜ ବାଦୀ ପ୍ରତିବାଦୀ ହେବାର ଉତ୍ତମ ସିଦ୍ଧାନ୍ତ ହେଉଅଛି । ଏଣୁକରି ଆମ୍ଭେମାନେ ବିବେଚନା କରୁଁ ଯେ ଭିନ୍ନ ୨ ସଭା ଥିବାରେ କ୍ଷତି ନଥାଇ ବରଂ ଲାଭ ଅଛି ଓ ଏହାଙ୍କୁ ଏକତ୍ରିତ କରିବା ଅବିଧେୟ ।

ଦ୍ୱିତୀୟ ପ୍ରସ୍ତାବଟି ଅତି ଚମତ୍କାର ଓ କିପ୍ରକାର ମୁକ୍ତିର ଅନୁସରଣ କରି ରେବନସା ସାହେବ ତାହା ବ୍ୟକ୍ତ କରିବାକୁ ସାହସ କଲେ ବୁଝି ପାଉନାହିଁ । ସୋସାଇଟୀ ପ୍ରସ୍ତାବଟିକୁ ଆଦର ସହିତ ଗ୍ରହଣ କରି କାର୍ଯ୍ୟ କଲେ ଯେ କି ସତ୍ତ୍ୱରେ ଡାଇରେକ୍ଟରମାନେ ପାଠାଳୟକୁ କଟକ ସୋସାଇଟୀ ହସ୍ତରେ ନ୍ୟସ୍ତ କରିବାକୁ ସମ୍ମତ ହେବେ ତାହା ଜାଣିବା କାରଣ ସେମାନଙ୍କୁ ପ୍ରାର୍ଥନା ହେବ । ପ୍ରିଣ୍ଟିଂ କମ୍ପାନିର ମନ୍ତ୍ରାଳୟ ସୋସାଇଟୀ ହସ୍ତକୁ ଗଲେ ସାହେବ ବୋଲନ୍ତି ଅନେକ ଉପକାର ହେବ ମାତ୍ର ଉପକାର କଣ ଓ କାହାର ହେବ ପ୍ରକାଶ ପାଉନାହିଁ । ଅନୁମାନ ହୁଅଇ ସୋସାଇଟୀ ଗୋଟିଏ ମୁଦ୍ରାଯନ୍ତ୍ର ସ୍ଥାପନ କରିବା ବିଷୟକୁ ଉଦ୍ଦେଶ କରି ଏହା କହି ଅଛନ୍ତି ଯେ ବର୍ତ୍ତମାନ ସମୟରେ ଅଧିକ ମୁଦ୍ରାଯନ୍ତ୍ର ହେଲେ ଭଲ ହେବନାହିଁ ।

ସେ ଯାହାହେଉ ସୋସାଇଟୀ କେମନ୍ତ ବଳେ ପଣି କାର୍ଯ୍ୟ ନେବାକୁ ଜାଣନ୍ତି ଅଥବା ତାଙ୍କ କର୍ମକୁ ଏହି ପ୍ରକାର ଘଟନା ହୁଅଇ । ବଙ୍ଗଳା ସ୍କୁଲ ଉଠିଗଲା । ତାହାର ସଞ୍ଚିତ ଟଙ୍କାଗୁଡ଼ିକ ପାଇଲେ । ବଙ୍ଗଳା ଲାଇବ୍ରେରୀକୁ ସମ୍ବଳରେ ହସ୍ତଗତ କଲେ । ଢେଙ୍କାନାଳ ରଜାଙ୍କ ପୁସ୍ତକ ମୁଦ୍ରାଙ୍କନ ଦାନ ଟଙ୍କା ପ୍ରତି ଅବଧି ଆଶା ଛାଡ଼ିନାହାନ୍ତି । ଏଥର କମ୍ପାନି ଉପରେ ଦୃଷ୍ଟି ପଡ଼ିଛି । ଡାଇରେକ୍ଟରମାନେ କି ବନ୍ଦୋବସ୍ତ କରିବେ ପଶ୍ଚାତ୍ ଜଣା ପଡ଼ିବ । ମାତ୍ର ସେମାନଙ୍କର ତ ନାହିଁ କରିବାର କ୍ଷମତା ନାହିଁ ଓ ତାହା କେହି ତାହାଙ୍କୁ ପଚାରିବ ନାହିଁ । ସୋସାଇଟୀ ଜାଣି ଅଛନ୍ତି ଯେ ଅଂଶିମାନେ ଯନ୍ତ୍ରାଳୟକୁ ଛାଡ଼ିଦେଲେ କେବଳ ନିୟମ ସ୍ଥିର କରିବାର ବାକିଅଛି । ଗବର୍ଣ୍ଣମେଣ୍ଟ ଯେପରି ଇରିଗେସନ କାର୍ଯ୍ୟର ଭାର ନେଲେ ବୋଧହୁଅଇ ସୋସାଇଟୀ ସେହିପରି ଆଶା କରିଅଛନ୍ତି । ସେଥିର ଅଂଶିମାନଙ୍କୁ ଗବର୍ଣ୍ଣମେଣ୍ଟ ଯେପରି ବୋଧକଲେ ସେପରି ସେହିପରି ସୋସାଇଟୀ କମ୍ପାନିର ଅଂଶିମାନଙ୍କୁ ବୋଧ କରନ୍ତି ତେବେ ଆଶାପୂର୍ଣ୍ଣ ହୋଇପାରେ ।

## ( ୫ମ ଭାଗ, ୩୦ । ୭ । ୧୮୭୦, ସଂଖ୍ୟା ୩୦ )

### ସାପ୍ତାହିକ ସମ୍ବାଦ ।

୨୫୨ । ଶ୍ରୀ ଡାକ୍ତର ଷ୍ଟିଆର୍ଟ ସାହେବ ଗତ କାଲି ଏ ନଗରର ଜେଲ ଓ ଚିକିତ୍ସାଳୟାଦିର ଭାର ଗ୍ରହଣ କରିଅଛନ୍ତି । ସେ ତହିଁ ପୂର୍ବଦିନରେ ଏଠାରେ ପହୁଞ୍ଚିଲେ ।

ଜେଲର ଓଲଉଠା ରୋଗ ଶେଷ ହୋଇନାହିଁ । ଗତକାଲି ତିନିଜଣ ପୀଡ଼ିତ ଥିଲେ ଓ ଶୃଙ୍ଖଳଆଗଣ୍ଡିରେ ଥିବା ପୀଡ଼ିତ ବ୍ୟକ୍ତିଙ୍କ ମଧ୍ୟରୁ ଶୁକ୍ରବାର ଜଣେ ମରିଗଲା ଓ ଆଉ କେତେଲୋକ ପ୍ରାଣର ଆଶା ନଥିଲା । ଏହି ରୋଗ ଭୟରେ ଅଦାଲତି କଚେରୀ ଜଜ ସାହେବ ଶୁକ୍ରବାରଠାରୁ ତିନଦିନପାଇଁ ବନ୍ଦ କରିଅଛନ୍ତି । ଏ କଚେରୀ ଜେଲଖାନାକୁ ଲାଗି ରହିଅଛି ସୁତରାଂ ଏଠାରେ ଭୟଜାତ ହେବାର ସମ୍ଭାବନା ।

୨୫୩ । ଏହି ମାସ ତା୨୪ରିଖରେ କଲିକତାର ଜାହାଜରେ ଯେଉଁ ଦ୍ରବ୍ୟମାନ ଆସିଥିଲା ସେଥିର ଅଧିକାଂଶ କଟକରେ ପହୁଞ୍ଚିବା ସଡ଼କ ବର୍ଷାପାଣିରେ ଭିଜି ଯାଇଅଛି । ମହାଜନଙ୍କର ଏଥିରେ ଅନେକ କ୍ଷତି ହେବାର ସମ୍ଭାବନା । ଶୁଣାଯାଏ ଏ କ୍ଷେସାରତ ପାଇଁ କେହି ୨ ଅଦାଲତରେ ନାଲିଶ କରିବାକୁ ପରାମର୍ଶ କରିଅଛନ୍ତି ।

( ୪ମ ଭାଗ, ୩୦ । ୭ । ୧୮୭୦, ସଂଖ୍ୟା ୩୧ )

ଅଟରକ୍ତ ।

ଇସ୍ତାହାରନାମା କରେଣ୍ଟ କଲଟର
ଜଲ୍ଲେ ପୁରୀ ଗେର୍ଦ ଓଡ଼ିଶା

୨୪୪ । ଏତଦ୍ଵାରା ସର୍ବସାଧାରଣଙ୍କୁ ଅବଗତ କରାଇ ଦିଆ ଯାଉଅଛି ଯେ ଯେଉଁ ବ୍ୟକ୍ତି ସନ ୧୮୭୦ ଓ ୭୧ ମସିହା ମହସୁମରେ ଏ ପୁରୀଜଲ୍ଲା ଅନ୍ତର୍ଗତ କୌଣସି ଅଢ଼ଙ୍ଗ ଜମ୍ବା ଅଢ଼ଙ୍ଗମାନଙ୍କରେ ଇଉସ୍ନସହ୍ଵାରାଏ ସନ୧୮୬୮ ମସିହା ୭ଆଇନ ଅନୁଯାୟୀ ଲବଣ ଯୋଗାନ କରିବାକୁ ବାଞ୍ଛାକରେ ସେ ବ୍ୟକ୍ତି ଆଗତ ଅଗସ୍ତ ମାସ ତା୧୫ରିଖ ଜମ୍ବା ତହିଁପୁର୍ବେ ବୋର୍ଡଙ୍କ ଉଲର ବିଧାନମତେ ଦରଖାସ୍ତ ହଜୁରରେ ଦାଖଲ କରିବେ ଓ ସେ ଦରଖାସ୍ତରେ ସେ ଯେଉଁ ଅଢ଼ଙ୍ଗରେ ଯୋଗାନ କରିବାର ବାଞ୍ଛାକରେ ତହିଁର ନାମ ଓ ଯେଉଁ ଜମୀ ଜମ୍ବା ଖାଦରେ ଯୋଗାନ କର୍ମ କରିବାର ମାନସ ରଖେ ତହିଁର ଏକ ନକସା ଲେଖି ସେଥିର ଚତୁଃପାର୍ଶ୍ଵର ସୀମା ବର୍ତ୍ତମାନ ସ୍ପଷ୍ଟକରି ଲେଖିବ ଓ ମଧ୍ୟ ସେ ଜମୀର ଠିକ ଦୀର୍ଘ ପ୍ରସ୍ଥ ଓ ଅନ୍ଦାଜ ଓସ୍ତନ ସେ ନକସାରେ ଦର୍ଜ କରିବ । ତା୨୧ରିଖ ଜୁଲାଇ ସନ ୧୮୭୦ ମସିହା ।

ଦସ୍ତଖତ ହି, ଓ୍ୟାଲଟନ ସାହେବ
କଲେକ୍ଟର, ପୁରୀ

( ୪ମ ଭାଗ, ୭ । ୮ । ୧୮୭୦, ସଂଖ୍ୟା ୩୨ )

୨୪୫ । ହିତକର ସଭା ।

ଆମ୍ଭେମାନେ ଆନନ୍ଦର ସହିତ ଗତ ପ୍ରକାଶିତ ଉତ୍କଳ ହିତୈଷିଣୀରେ ଉକ୍ତମ୍ଭୋଟି ନୂତନ ସଭା ସଂସ୍ଥାପନର ବୃତ୍ତାନ୍ତ ପାଠକଲୁଁ । ଏ ଦୁଇ ସଭା ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟଙ୍କ ଉଦ୍ୟମରେ ସ୍ଥାପିତ ହେବାର ଲେଖାଯାଏ ଓ ବାବୁ ମହାଶୟ କଟକ ସୋସାଇଟୀ ପକ୍ଷର ଏ କାର୍ଯ୍ୟ କରିଅଛନ୍ତି । ସୁତରାଂ ବୋଧହୁଅଇ ଯେ ଦୁହେଁ କଟକ ସୋସାଇଟୀର ଶାଖା ହେବେ । ଗୋଟିଏ ସଭା ପୁରୁଷୋତ୍ତମ ନଗରରେ ବସିଅଛି । ତହିଁର ସଭାପତି ସେଠାର କଲେକ୍ଟର ଓ୍ୟାଲଟନ ସାହେବ ଓ ସମ୍ପାଦକ ବାବୁ ଅମ୍ବିକା

ଚରଣ ରାୟଚୌଧୁରୀ । ଏ ସଭାରେ କଉ କାର୍ଯ୍ୟହେବ ସ୍ଥିରହୋଇ ନାହିଁ, କେବଳ ସୁସାର ଜଣେ ପତ୍ରପ୍ରେରକ ଲେଖିଛନ୍ତି ଯେ ପ୍ରତ୍ୟେକ ସଭ୍ୟଙ୍କୁ ଗୃହଅଶାଳ ଅନ୍ୟୂନ ଭେଦା ଦେବାକୁ ହେବ ଓ ସେ ଭେଦାରେ ଓଡ଼ିଶା ପେନ୍‌ଟ୍‌ଅଠ ଗୃଲବ । ଅନ୍ୟ ସଭା ଖୋରଧାରେ ସ୍ଥାପିତ ହୋଇଅଛି । ଏହାର ସଭାପତି ଶ୍ରୀ ବାବୁ ଭଗବତ ମହାନ୍ତି ଓ ସମ୍ପାଦକ ବାବୁ ଜନ୍ମେଜୟାଲଲ ରାୟ । ଏ ସଭା କଟକ ସୋସାଇଟୀ ଅଧୀନରେ ରହି ସେହି ସଭାର ନିୟମାବଳୀନୁସାରେ କାର୍ଯ୍ୟ କରିବେ । ଭେଦାର ନ୍ୟୂନସଂଖ୍ୟା ଗୃହଅଣା ଓ ବାର୍ଷିକ ମୋଟ ଯେତେଟଙ୍କା ପ୍ରାପ୍ତ ହେବ ସେଥିରୁ ସଭାର ନିୟମିତ ବ୍ୟୟ ଯାଇ ଅବଶିଷ୍ଟ ଟଙ୍କା କଟକ ସୋସାଇଟୀର ସମ୍ପାଦକଙ୍କୁ ଅର୍ପଣ ହେବ । ସୋସାଇଟୀ ଏ ଟଙ୍କା ବଦଳରେ ଉତ୍କଳ ହିତୈଷିଣୀ ଓ ଅନ୍ୟାନ୍ୟ ଛାପା କାଗଜମାନ ବିନା ମୂଲ୍ୟରେ ଦେଆ-ଇବ । ଏ ଦୁଇସଭାର କାର୍ଯ୍ୟ ଏହି ପର୍ଯ୍ୟନ୍ତ ସ୍ଥିର ହୋଇଅଛି । ଆମ୍ଭେମାନେ ଭରସା କରୁଁ ଯେ ଏ ସଭାମାନ ଚିରସ୍ଥାୟି ଓ ବଳିଷ୍ଠ ହୋଇ ଆପଣା ୨ ଉଦ୍ଦେଶ୍ୟ ସାଧନ କରନ୍ତୁ ଓ କଟକ ସୋସାଇଟୀର ବଳବର୍ଦ୍ଧର ସହାୟ ହେଉନ୍ତୁ ।

## ୧୫୭ । ଜେଲଖାନାର ଓଲଉଠା ।

ଆମ୍ଭେମାନେ ଦୁଃଖିତ ହୋଇ ଜଣାଉଅଛୁଁ ଯେ ଏ ନଗରର ଜେଲଖାନା ଅବଧି ବିସୁଚିକାରୋଗର କବଳରୁ ମୁକ୍ତ ପାଇ ନାହିଁ । ଗତ ସପ୍ତାହରେ ନୂତନ ରୋଗୀ ହାସପାତାଲରେ ଭର୍ତ୍ତି ହୋଇଅଛନ୍ତି । ସର୍ବସୁଦ୍ଧା ଗତ ଗୁରୁବାର ପର୍ଯ୍ୟନ୍ତ ଜ୪୧ଣ ପୀଡ଼ିତ ଓ ତହିଁ ମଧ୍ୟରୁ ଜ୨୨ଣ ମରି ଅଛନ୍ତି । ଶ୍ରୀଯୁକ୍ତ ଡାକ୍ତର ଷ୍ଟିଓ୍ୟାର୍ଟ ସାହେବ ଆସିଲା ଦିନୁ ଚିକିତ୍ସା ବିଷୟରେ କୌଣସି ତ୍ରୁଟିକତ ହୋଇନାହିଁ ଓ ରୋଗ ନିବାରଣ କରିବା ପକ୍ଷରେ ମଧ୍ୟ ଯଥେଷ୍ଟ ଚେଷ୍ଟା ହୋଇଅଛି । ଜେଲଖାନାର କଇଦମାନଙ୍କ ମଧ୍ୟରୁ ଅର୍ଦ୍ଧେ ଜେଲଖାନାରେ ରଖି ଅବଶିଷ୍ଟ ଅର୍ଦ୍ଧେ ଲୋକଙ୍କୁ ପୋଲିସ କାରଖାନା ଓ ଗୃଉଲିଆଗଞ୍ଜରେ ରଖାଯାଇ ଅଛି ଯେ ଜନତା ଗହଳ ନଥିଲେ ରୋଗ ସଂକ୍ରମଣ କରି ପାରିବ ନାହିଁ । ଏପରି ଜେଲଖାନାର ସବୁ ଗୃହମାନ ନୂତନରେ ପରିଷ୍କାର, କଇଦିଙ୍କ ପୁରୁଣା ଲୁଗା ବିଛଣା ଇତ୍ୟାଦି ଅଗ୍ନିରେ ଦଗ୍ଧ ଏବଂ ପ୍ରତ୍ୟେକ କୋଠରିରେ ଅଗ୍ନିକୁଣ୍ଡ ଥୋଇ ମନ୍ଦବାୟୁ ନିବାରଣ ଇତ୍ୟାଦି ଉପାୟମାନ ଯଥୋଚିତ ପରିମାଣରେ ହୋଇ ଅଛି । ଏ ସବୁଥିରୁ ଏତିକ ଫଳ ଦେଖାଯାଏ ଯେ ପୂର୍ବ ସପ୍ତାହଠାରୁ ଗତ ସପ୍ତାହରେ ରୋଗର ବଳ ଅନେକ ଊଣା ହୋଇଅଛି ମାତ୍ର ସମ୍ପୂର୍ଣ୍ଣରୂପେ ଏହା ନିଃଶେଷ ହୋଇ ନାହିଁ । ଏ ଜେଲଖାନ ଗତ ମାର୍ଚ୍ଚ ।୯ ସ ମଧ୍ୟରେ ଏମନ୍ତ ଭଲଥିଲା ଯେ କୌଣସି ଉତ୍କଟରୋଗ ଏଠାରେ ପ୍ରତ୍ୟକ୍ଷ ହୋଇ ନଥିଲା । କଇଦୀ ଯଥୋଚିତ ସ୍ୱାସ୍ଥ୍ୟଲାଭ କରିଥିଲେ । ଏକ ୨ ବେଳରେ ହାସପାତାଲରେ ଗୋଟିଏ ମାତ୍ର ରୋଗୀ ନଥିଲେ ।

ଏମନ୍ତ ଉତ୍ତମ ସ୍ଥାନରେ କି ପ୍ରକାରରେ ଏଡ଼େ ଭୟଙ୍କର ରୋଗ ଉତ୍ପନ୍ନ ହେଲା ବୁଝିବାର କଠିନ। ଲୋକେ ବୋଲନ୍ତି ଯେ ଅନେକ କାଳ ଭଲଥିଲେ ଭସ୍ତାନଙ୍କ ରୋଗରେ ପଡ଼ିବାରୁ ହୁଏ। ସେହିକଥା କି ଏଠାରେ ଘଟନା ହେଲା ? ଅଥବା ଡାକ୍ତର ମେକଡ୍‌ନାଲ୍ ସାହେବଙ୍କ ପଦ୍ଧତି ଭଲଥିଲା ଯେ ତାହାଙ୍କ ସମୟରେ ଜେଲ ସର୍ବାଂଶରେ ଉତ୍ତମ ଥିଲା ଓ ତାହାଙ୍କ ଗଲା ମାତ୍ରକେ ଏ ଦୁର୍ଘଟନା ହେଲା। ସେ ଗତମାସ ତା ୨୯ ରିଖରେ ଏଠାରୁ ପ୍ରସ୍ଥାନ କଲେ ଓ ତା ୩୧ ରିଖରେ ଏ ଉପଦ୍ରବ ଆରମ୍ଭ ହେଲା।

୨୫୭। ବିଜ୍ଞାପନ

ଉତ୍କଳ ଶୁଭକରୀ ପାଠକ ଓ ଅପର ସାଧାରଣ ସମସ୍ତଙ୍କୁ ଜ୍ଞାତ କରାଯାଉଅଛି ଯେ ଆମ୍ଭମାନଙ୍କ ସମାଜର ଅର୍ଥାସଙ୍ଗତି ନିବନ୍ଧନ ୩। ୪ମାସ କାଳ ଶୁଭକରୀ ବନ୍ଦ୍ ପ୍ରାୟ ହୋଇ ଉଠିଥିଲା, ମାତ୍ର ବର୍ତ୍ତମାନ ବାକୀ ଟଙ୍କା ଆଦାୟର ସୁଯୋଗ ହୋଇଅଛି ଏବଂ ଆମ୍ଭମାନଙ୍କର ପତ୍ରିକା ସୁଦ୍ଧା ପ୍ରତି ମାସରେ ନିୟମିତ ସମୟରେ ସମସ୍ତଙ୍କର ନୟନ-ପଥର ପଥିକ ହେବ ଏଥିରେ ସନ୍ଦେହ ନାହିଁ। ପୂର୍ବ ଗ୍ରହଣକାରୀମାନେ ବକେୟା ପ୍ରାପ୍ୟ ଆଦାୟ ନିମିତ୍ତ ଏତଦ୍ୱାରା ପ୍ରାର୍ଥିତ ହେଉଅଛନ୍ତି। ଇତି।

ତା୧୪ଇଂ ଅଗଷ୍ଟ ସନ ୧୮୭୦ ସାଲ।

ଶ୍ରୀ ଭଗବତୀ ଚରଣ ଦାସ
ଉତ୍କଳ ଶୁଭକରୀ ପ୍ରକାଶକ ଓ
ଉତ୍କଳ ବ୍ରାହ୍ମ ସମାଜର ସମ୍ପାଦକ।
କଟକ

( ୫ମ ଭାଗ, ୨୭।୮।୧୮୭୦, ସଂଖ୍ୟା ୩୪ )

୨୫୮। ଟାଉନ କମିଟି

ଯଦ୍ୟପିକି ଏହି ନଗରର ସଡ଼କ ଓ ନାଲ ସଂସ୍କାର ବିଷୟରେ ଅବଧି କୌଣସି ବିଶେଷ କାର୍ଯ୍ୟ ହୋଇନାହିଁ ମାତ୍ର ଏଥିରୁ ପାଠକମାନେ ଅନୁମାନ କରିବେ ନାହିଁ ଯେ ଟାଉନ କମିଟି ତୁନିହୋଇ ବସି ଅଛନ୍ତି। ସେମାନଙ୍କର ପରାମର୍ଶର ସୀମାନାହିଁ। ଗତ ସୋମବାର କମିଟିରେ ନଗର ପରିଷ୍କାର ଓ ଏହାର ଶୋଭାବର୍ଦ୍ଧନ ବିଷୟରେ ପ୍ରାୟ ଘଣ୍ଟାଏ ତର୍କବିତର୍କ ହୋଇ ନାନା କଥା ଧାର୍ଯ୍ୟ ହେଲା। ତନ୍ମଧ୍ୟରେ ପ୍ରଧାନ ଏହି

ଯେ କମିଟୀର ମେମ୍ବରମାନେ ନଗରର ଯେ ଯେଉଁ ଭାଗ ସ୍ୱାସ୍ଥ୍ୟର ନିମନ୍ତେ ଭାର ଗ୍ରହଣ କରିଅଛନ୍ତି ତାହାଙ୍କୁ ସେ ଭାଗର ଆବଶ୍ୟକୀୟ କାର୍ଯ୍ୟ କରିବା ପାଇଁ ଉଚିତମତେ ଠିକା ଦେବାର ସ୍ଥିର ହେଲା ଓ ବର୍ଷା ଜଳ ବାହା ଯିବାର ନାଳମାନ ସୁପ୍ରଣାଳୀରେ ନିର୍ମାଣ କରିବା ପାଇଁ ଓ ମଧ୍ୟ ଗୋଟିଏ ସାଧାରଣ ବ୍ୟବହାର କାରଣ ପାଇଖାନା ନିର୍ମାଣପାଇଁ ଷ୍ଟୋନ ସାହେବଙ୍କୁ ଭାର ଓ ଆବଶ୍ୟକୀୟ ଠିକା ଦିଆଗଲା । ଏପରି ସ୍ଥିର ହେଲା ଯେ ନଗରର ଗୋଟିଏ ବଡ଼ ନକସା ପ୍ରସ୍ତୁତ ହେବ ଯେ ସେଥିରେ ପ୍ରତ୍ୟେକ ବ୍ୟକ୍ତିର ଘର ଓ ଜମି ସ୍ପଷ୍ଟରୂପେ ଚିହ୍ନିତ ହୋଇଥିବ ଓ ପ୍ରତ୍ୟେକ ବଜାର ଓ ଗଳିର ନାମ ଖଣ୍ଡିଏ ଲେଖାଏଁ ତକ୍ତାରେ ଲେଖାହୋଇ ଏକ ୨ ବଜାର କି ଗଳିରେ ଲଗାଯିବ । ଏ ସବୁ ତକ୍ତା ପ୍ରସ୍ତୁତ କରିବାର ଭାର ଉଇଟନ ସାହେବଙ୍କୁ ଦିଆଗଲା । ଅଦାଲତ ପୋଖରୀର ଛଡ଼ଦିଆଲ ନିର୍ମାଣ ହେବାର ପ୍ରସଙ୍ଗ ହୋଇଥିଲା । ଅଧିକାଂଶ ରାସ୍ତା ସଂସ୍କାରର ଭାର ଓ ସେଥିପାଇଁ ୫୮୦୦ ଟଙ୍କା ଷ୍ଟୋନ ସାହେବଙ୍କୁ ଦିଆ ଯାଇଅଛି ।

ଆମ୍ଭେମାନେ ଭରସା କରୁଁ ଯେ ଏ ସମସ୍ତ ଆଡ଼ମ୍ବର ବୃଥା ହେବନାହିଁ ଓ ଟାଉନ କମିଟୀ ଶୀଘ୍ର ଆପଣା ପ୍ରସ୍ତାବମାନ କାର୍ଯ୍ୟରେ ପରିଣତ କରି ଅଧିକା ଟାକ୍ସ କରିବାର ଶୋକକୁ ଲୋକଙ୍କ ମନରୁ ଦୂର କରିବେ ମାତ୍ର ଆଜିଯାଏ ସଡ଼କପାର୍ଶ୍ୱ ପାଣି-ମାହାଳିମାନ ପ୍ରସ୍ତୁତ ନହେବାରୁ ଯେ ମନ୍ଦଫଳ ନଘଟିଲା ଏଥିପାଇଁ ଇନ୍ଦ୍ରଙ୍କୁ କି ଟାଉନ କମିଟୀକୁ ଧନ୍ୟବାଦ ଦେବା କଥା ସ୍ଥିର କରିନାହୁଁ । ବୋଧହୁଏ ଇନ୍ଦ୍ରଦେବତା ଯେମନ୍ତ ଗବର୍ଣ୍ଣମେଣ୍ଟଙ୍କ ନାଳ ଜଳର ଉପଯୋଗିତା ଦେଖାଇବାପାଇଁ ଜଳ ବୃଷ୍ଟିରେ କୃପଣତା କରିଅଛନ୍ତି ସେହି ପ୍ରାୟ ଟାଉନ କମିଟୀଙ୍କ ଶୈଥିଲ୍ୟତା ଦେଖି ତାହାଙ୍କ ଲଜ୍ଜା ନିବାରଣପାଇଁ ମଧ୍ୟ କୃପଣତା କରିଅଛନ୍ତି ନୋହିଲେ ପ୍ରଚୁର ବୃଷ୍ଟି ହୋଇଥିଲେ ପାଣି ବାହାର ଯିବାର ଅଭାବରୁ କେତେଘର ଭୂମିସାତ୍ ହୋଇଥାନ୍ତା ତାହା କିଏ କହିପାରେ ।

### ୧୫୯ । ସମ୍ବାଦ ପତ୍ରର ଉତ୍କର୍ଷ ସାଧନ ।

ଆମ୍ଭେମାନେ ଅତି ଆନନ୍ଦର ସହିତ ଜଣାଉଅଛୁଁ ଯେ ଏତେଦିନ ଉଡ଼ିଶାର ପ୍ରଧାନ କର୍ମକର୍ତ୍ତା ଶ୍ରୀଯୁକ୍ତ କମିସ୍ନର ସାହେବ ସ୍ଥାନୀୟ ସମ୍ବାଦ ପତ୍ରମାନଙ୍କୁ ସାଧାରଣ ବିଷୟରେ ସମ୍ବାଦ ଦେବାପାଇଁ ଯତ୍ନବାନ ହୋଇ ଜିଲ୍ଲାର କଲେକ୍ଟରଙ୍କ ନିକଟକୁ ଲେଖି ଅଛନ୍ତି ଯେ ତଳଲିଖିତ ବିଷୟର ସମ୍ବାଦ ଦେବାପାଇଁ କୌଣସି ଉତ୍ତମ ବନ୍ଦୋବସ୍ତ କରିବେ ।

ଖାଦ୍ୟସାମଗ୍ରୀର ସାପ୍ତାହିକ ମୂଲ୍ୟ ।

ଜାହାଜ ସମ୍ପର୍କୀୟ ସମ୍ବାଦ ଅର୍ଥାତ୍ ଜାହାଜ କେଉଁଠାରୁ ଆସିଲା କେଉଁଠାକୁ ଗଲା କି ଦ୍ରବ୍ୟମାନ ଆମଦାନି ବା ରପ୍ତାନି ହେଲା ।

ଗବର୍ଣ୍ଣମେଣ୍ଟଙ୍କ ଆଜ୍ଞା ଓ ଗେଜେଟ ।

ଏ ସବୁ ଓ ଅନ୍ୟାନ୍ୟ ସାଧାରଣ ଜ୍ଞାତଯୋଗ୍ୟ କାଗଜ ଏକ ମେଜ ଉପରେ ସ୍ୱତନ୍ତ୍ର ହୋଇ କରେଲା ମଧ୍ୟରେ ରହିବ ଯେ ପତ୍ରିକାର ସମ୍ପାଦକମାନେ ସେଠାକୁ ଯାଇ ଯାହା ଆବଶ୍ୟକ ଜ୍ଞାତ ହେବେ ମାତ୍ର କୌଣସି କାଗଜ କରେଲାର ବାହାର ଆସି ପାରିବେ ନାହିଁ ।

ପତ୍ରିକାର ସମ୍ପାଦକଙ୍କୁ ଏ ଆଜ୍ଞାର ସମ୍ବାଦ ଦିଆ ଯାଇଅଛି ।

ଶ୍ରୀଯୁକ୍ତ କମିଶନର ସାହେବଙ୍କର ସମ୍ବାଦପତ୍ର ପ୍ରତି ଅମ୍ଭେମାନେ ଏରୂପ ମନୋ-ଯୋଗ ଦେଖି ଧନ୍ୟବାଦ ଦେଉଅଛୁଁ ଓ ଭରସା କରୁଁ ଯେ ଏ ସୁଯୋଗ ଦ୍ୱାରା ଅନେକ ହିତକର ଓ ଶୁଦ୍ଧ ସମ୍ବାଦ ପତ୍ରିକାମାନଙ୍କରେ ପ୍ରକାଶ ହୋଇ ପାରିବ । ଆମ୍ଭେମାନେ ବୋଧକରୁଁ ଯେ ଏହିରୂପ ସମ୍ବାଦମାନ ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାର କମିଶନରଙ୍କ କଚେରୀକୁ ଆସଇ ଓ ସେସବୁ ସେଠାରୁ ପ୍ରାପ୍ତ ହୋଇ ପାରିବ । ଯେବେ ଏ ସବୁ ଆସୁ ନଥାଏ ତେବେ ପୁରୀ ଓ ବାଲେଶ୍ୱରର ଏହିରୂପ ସମ୍ବାଦ ଅଣାଇବା ପକ୍ଷରେ ବିହିତ ଆଜ୍ଞା ପ୍ରଦାନ ହେବ ।

୧୬୦ । ପ୍ରେରିତ ପତ୍ର ।

ମହାଶୟ, ଅଗଷ୍ଟମାସ ତା୦ ୧୩ ରିଖରେ ପୁରୀ ସୋସାଇଟୀର ଦ୍ୱିତୀୟ ଅଧିବେଶନ ହୋଇଥିଲା । ତହିଁରେ ପ୍ରସ୍ତାବ ହୋଇ ସ୍ଥିରହେଲା ଯେ କଟକ ସୋସାଇଟୀର ଅଧୀନ ପୁରୀ ସୋସାଇଟୀ ରହିବ ଯେହେତୁ ଅଧୀନତା ସ୍ୱୀକାର ବିଶେଷ ଫଳବନ୍ତ ଦେଖା ନଗଲା ବରଂ କଟକ ସୋସାଇଟୀର ସମ୍ବାଦ ପତ୍ର ବଣ୍ଟନ ଓ ଗ୍ରାହକ-ବର୍ଗଙ୍କଠାରୁ ମୂଲ୍ୟ ସଂଗ୍ରହଣାଦି ରୂପ ଭାରାର୍ପଣ ମାତ୍ର ଦେଖାଗଲା ଅତଏବ "ପ୍ରୟୋଜନ ମନୁଦ୍ଦିଶ୍ୟ ନ ମନ୍ଦୋଽପି ପ୍ରବର୍ତ୍ତତେ" ଏହି ମହାଜନୋକ୍ତ ବାକ୍ୟାର୍ଥାନୁଭବୀକୃତ ବିଦ୍ୱଦ୍ୱର୍ଗ୍ୟମାନଙ୍କର ନିଷ୍ଫଳ କର୍ମରେ ପ୍ରବୃତ୍ତି କି ସମ୍ଭବ ପାରେ । ଇତି

ନି: ବଳଭଦ୍ର ପ୍ରହରାଜ ଶର୍ମା

ସମ୍ପୂର୍ଣ୍ଣ ବିଦ୍ୟାଳୟ ପଣ୍ଡିତ

## ( ୫ମ ଭାଗ, ୧୫ । ୧୦ । ୧୮୭୦, ସଂଖ୍ୟା ୪୦ )

୨୬୧ । ଟାଉନ କମିଟୀ ।

ଏ କମିଟୀର ସଭ୍ୟମାନେ ଏକବର୍ଷକାଳ ବିସ୍ମୃତ କରି ୨ ଏଥର ଯାହାହେଉ କର୍ମ କରିବାକୁ ଦୃଢ଼ ହୋଇଅଛନ୍ତି । ଆମ୍ଭେମାନେ ଏହା ଦେଖି ଅତିଶୟ ଆନନ୍ଦିତ ହେଲୁଁ କାରଣ ଏରୂପ କାର୍ଯ୍ୟ ହେବବୋଲି ଭରସା ନଥିଲା । ସମ୍ପ୍ରତି ସଡ଼କ ଅନେକ ସ୍ଥାନରେ ମରାମତ ହେଲାଣି ଓ କରକଗୁ ପୂର୍ବାପେକ୍ଷା ଭଲ ହୋଇଅଛି । ବୋଧହୁଏ ଅଳ୍ପ ଦିନରେ ସବୁ ସଡ଼କ ଉତ୍ତମ ହୋଇଯିବ । କର୍ମ ଦ୍ରାୟୁ ସବସରେ ଲଗିଅଛି । ଏଣେ ନଗରର ସ୍ୱାସ୍ଥ୍ୟରକ୍ଷାର ସୁବିଧାନ କରିବା ପାଇଁ ଡାକ୍ତର ସାହେବ ତତ୍ପର ହୋଇ ନଗର ଯାକ ଭ୍ରମଣ କରି ଦେଖୁଅଛନ୍ତି । ଶ୍ରୀଯୁକ୍ତ କ୍ଲି ଓ୍ୟାର୍ଟ ସାହେବ ଯେମନ୍ତ ପରିଶ୍ରମୀ ଓ ସ୍ୱାସ୍ଥ୍ୟରକ୍ଷାର ଉପାୟ ଯେରୂପ ଜାଣନ୍ତି ଏଥିର ସମ୍ପୂର୍ଣ୍ଣ ଭରସା ହୁଏଇ ଏହାଙ୍କଦ୍ୱାରା ନଗରର ଅନେକ ଉପକାର ହେବ । ଶୁଣିଲୁଁ ଯେ ସହନା ଝିଲକୁ ଶୁଖାଇ ପରିଷ୍କାର କରିବାପାଇଁ ବିଶେଷ ଚେଷ୍ଟା କରୁଅଛନ୍ତି । ଏ କାର୍ଯ୍ୟ ଅତ୍ୟାବଶ୍ୟକ । ଗଙ୍ଗାମନ୍ଦିର ପୁଷ୍କରିଣୀର ଚତୁଃପାଶରେ ବଣବୁଦା ରହିଥିବାରୁ ଲୋକେ ଅବାଧରୂପେ ପୋଖରୀପାଣି ବସନ୍ତି ଓ ବର୍ଷାରେ ମଇଳା ସବୁ ପୋଖରୀ ଭିତରକୁ ଧୋଇଆସି ଜଳକୁ ଦୂଷିତ କରଇ । ତାହା ନିବାରଣ ସକାଶେ ମାଜିଷ୍ଟ୍ରେଟଙ୍କୁ ପତ୍ର ଲେଖୁଅଛନ୍ତି । ବଣସବୁ ପରିଷ୍କାର ହେବ ଓ ପୁଲିସ ପହରା ରହିଲେ କେହି ପୋଖରୀ ବସି ପାରିବେ ନାହିଁ ।

ଗଙ୍ଗାମନ୍ଦିର ପୁଷ୍କରିଣୀକୁ ପରିଷ୍କାର ରଖିବା ଯେମନ୍ତ ଜେଲଖାନା ପାଇଁ ତେମନ୍ତ ନଗର ପାଇଁ ଆବଶ୍ୟକ । ମାତ୍ର କେବଳ ପରିଷ୍କାରରେ ସମ୍ପୂର୍ଣ୍ଣ ଫଳ ହେବନାହିଁ । ଏ ପୋଖରୀରେ ଯେପରି ଜଳ ରହିବ ତହିର ଉପାୟ କରିବା ଆବଶ୍ୟକ । ଗତ ଖରାଦିନରେ ଏହାର ଯେ ଦୁର୍ଦ୍ଦଶା ଥିଲା ବୋଧହୁଏ ପାଠକମାନେ ବିସ୍ମୃତ ହୋଇ ନାହାନ୍ତି । ଏବର୍ଷ ବୃଷ୍ଟି ତହୁଁ ଊଣା । ଏଥିରେ ଏ ପୋଖରୀ ବୃହଦଂଶରେ ଖୁଣ୍ଟା ପୂର୍ଣ୍ଣ ହୋଇନାହିଁ । ଏଥକୁ ବର୍ଷାକାଳ ଶେଷହେଲା ଆଉ ବୃଷ୍ଟି ହେବାର ସମ୍ଭାବନା ନାହିଁ ସୁତରାଂ ଆଗାମୀ ଫଗୁଣ ମାସକୁ ଏ ପୋଖରୀ ଶୁଖି ଯାଇଥିବ । ଏ ଘଟନା ହେଲେ ଜଳବିନା ଲୋକଙ୍କର କଷ୍ଟର ସୀମା ରହିବ ନାହିଁ ଓ ଜେଲଖାନାର ମଧ୍ୟ ଅନେକ ଅସୁବିଧା ହେବ । ଏ ଅବସ୍ଥାରେ ଆମ୍ଭେମାନେ ପୁନର୍ବାର କର୍ତ୍ତୃପକ୍ଷଙ୍କୁ ଅନୁରୋଧ କରୁଅଛୁଁ ଯେ ନଈର ନାଳ ଖନନ କରି ଏ ପୋଖରୀକୁ ଜଳ ଆଣିବାର ଉପାୟ ହେଉ । ଏଥିରେ ନାନା ପ୍ରକାର ଉପକାର ହେବ ।

୬୨୨ ବଜାଘର

ବଜାଘରଠାରେ ଯେ ସମସ୍ତ କାରଖାନା ହେବାର ଗବର୍ଣ୍ଣମେଣ୍ଟ ସ୍ଥିର କରି-ଅଛନ୍ତି ସେଥିରୁ ଅନୁମାନ ହୁଅଇ ଯେ ଅଳ୍ପ କାଳରେ ଏ ସ୍ଥାନ ପ୍ରାଧାନ୍ୟ ଲଭ କରିବ । ବର୍ତ୍ତମାନ ଏ ସ୍ଥାନ ଏମନ୍ତ ଯେ ଏଥିରେ ବାସ କରିବା ଲୋକ ବନ୍ଦ ପ୍ରାୟ ରହିଥାନ୍ତି । କୌଣସି ଦ୍ରବ୍ୟ ମିଳିବାକୁ ନାହିଁ । ନିକଟରେ ତାଦୃଶ ଲୋକର ବସତି ନାହିଁ କିମ୍ବା ହାଟ ବଜାର କିଛିନାହିଁ । ଯେଉଁମାନେ ଏଠାରେ ବାସ କରନ୍ତି କେବଳ ସମୁଦ୍ରର ଜଳ ଦେଖି ୨ ଦିନପାତ କରନ୍ତି । ବର୍ତ୍ତମାନ ସେଠାରେ ବାଣିଜ୍ୟ ଦ୍ରବ୍ୟ ରହିବାପାଇଁ ଗୋଟିଏ ଗୋଦାମ ଓ ଗୋଟିଏ ପୁଲିସ ଥାନା ଓ ଗୋଟିଏ ଡାକଘର ନିର୍ମାଣ ହେବ ଓ କଷ୍ଟମ ଇଲକାର କର୍ମଚାରୀଙ୍କ ପାଇଁ ମଧ୍ୟ ଘର ନିର୍ମାଣ ହେବ । ନୌକାରୁ ମାଲ ଉତ୍ତାରିବା ଓ ବୋଝାଇ ଦେବାର ସୁବିଧା କାରଣ କାଠର ପାହାଚ ଜଳକୂଳ ପର୍ଯ୍ୟନ୍ତ ପ୍ରସ୍ତୁତ ହେବ । ଏସବୁ କାର୍ଯ୍ୟପାଇଁ ଗବର୍ଣ୍ଣମେଣ୍ଟ ୬୩ହଜାର ଟଙ୍କା ମଞ୍ଜୁର କରିଅଛନ୍ତି । ଏ ସମସ୍ତ ହେଲେଠାରୁ ସେଠାରେ ବହୁତ ଲୋକ ବାସ କରିବେ ଓ ମହାଜନମାନେ ସର୍ବଦା ସେଠାକୁ ଯାତାୟାତ କରିବେ ଓ ଯେବେ ବାଣିଜ୍ୟ ବୃଦ୍ଧି ହୁଅଇ ତେବେ କଟକ ପର୍ଯ୍ୟନ୍ତ ତାରଡାକ ମଧ୍ୟ ବସି ପାରେ ଅତଏବ ସ୍ପଷ୍ଟ ଅନୁମାନ ହେଉଅଛି ଯେ ବଜାଘର ଅଳ୍ପ କାଳରେ ଗୋଟିଏ ନଗରୀ ପ୍ରାୟ ହୋଇଯିବ । ସମ୍ପ୍ରତି ବଜାଘରଠାରେ କୌଣସି ସୁବିଧା ନ ଥିବାରୁ ଜାହାଜବାଟେ ବହୁତ ଲୋକ କଲିକତା କି ଅନ୍ୟ ସ୍ଥାନକୁ ଯାଇ ନାହାନ୍ତି । ଯେବେ ସେଠାରେ ଖାଇବା ଓ ରହିବାର ସୁସାର ହେବ ତେବେ ଅନାୟାସରେ ଲୋକେ ବସାକରି ରହିବେ ଓ ଇଚ୍ଛାନୁସାରେ ଯେତେବେ ତେତେବେ ଜାହାଜରେ ଯାଇ ପାରିବେ । ବିଦେଶ ସହିତ ଗମନାଗମନର ସୁଯୋଗ ହେବା କୌଣସି ସ୍ଥାନର ସଭ୍ୟତା ବୃଦ୍ଧିର ପ୍ରଧାନ ଉପାୟ ହେଉଅଛି । ଓଡ଼ିଶାରେ ସୁଯୋଗ ନ ଥିବାରୁ ଏହାର ଅବସ୍ଥା ଏତେ ମନ୍ଦ । ଯେତେବେଳେ ବଜାଘରର ଅବସ୍ଥା ଉନ୍ନତ ହେବ ତେତେବେଳେ ଏ ପ୍ରଦେଶର ସୌଭାଗ୍ୟ ବଢ଼ିବ ସନ୍ଦେହ ନାହିଁ ।

ବର୍ତ୍ତମାନ ବଜାଘର ନିକଟ କିଂସାରିଡିହା ନାମକ ଠାପୁରେ କି ପାହାର ଇଙ୍ଗରେଜୀନାମ ପ୍ଲାଉଡୀ ଦ୍ୱୀପ ଅଟେ ଏ ସବୁ କାରଖାନା ହେବାର ସ୍ଥିର ହୋଇଅଛି । ଉକ୍ତ ଠାପୁ ହୁଜଙ୍ଗ ରାଜାଙ୍କଠାରୁ ଫ୍ରେସାଞ୍ଜ ସାହେବ କିଣିବାରୁ ଇସ୍ତମରାରୀ ପଟ୍ଟା ନେଇଥିଲେ । ଗବର୍ଣ୍ଣମେଣ୍ଟର ସେ ସ୍ଥାନ ପ୍ରୟୋଜନ ହେବାରୁ ଆଇନ ଜାରିକରି ତାହା ଗ୍ରହଣ କରିଅଛନ୍ତି ।

## ୨୭୭ । ଓଡ଼ିଶାର ବାଣିଜ୍ୟ ।

ଆଜିକାଲି ବନ୍ଦରଘାଟଠାକୁ ଯେରୂପ ଜାହାଜ ଆସୁଅଛି ତହିଁର ସହଜରେ ଅନୁମାନ ହୁଅଇ ଯେ ଓଡ଼ିଶା ବାଣିଜ୍ୟ ବୃଦ୍ଧିର ସୀମା ନାହିଁ । ମାସରେ ତିନି ଗୋଟି ଥର କଲିକତାରୁ ଓ ଥରେ ଦକ୍ଷିଣରୁ ଧୂଆଁ କଳ ଜାହାଜ ଆସୁଅଛି ଓ ପ୍ରାୟ ସବୁ ଜାହାଜରେ କଟକକୁ ମାଲ ଆମଦାନୀ ଓ କଟକରୁ ରପ୍ତାନୀ ହେଉଅଛି । ଏହାଛଡ଼ା ଦେଶୀୟ ସୁଲୁପ କ୍ରମଶଃ ବୃଦ୍ଧି ହେଉଅଛି । ପୂର୍ବେ ଶୀତକାଳରେ ବଡ଼ହେଲେ ୫ । ୭ଖଣ୍ଡ ଦକ୍ଷିଣୀ ସୁଲୁପ ଆସୁଥିଲା ! ଏବର୍ଷ ଶୀତକାଳ ଆରମ୍ଭ ନହେଉଣୁ ପ୍ରାୟ ୪୦ଖଣ୍ଡ ଜାହାଜ ଆସି ଲଙ୍ଗର କଲଣି ଆଉ କେତେ ଆସିବ କିଏ କହିପାରେ । ଅବଧି ଫସଲପ୍ରତି ଲୋକଙ୍କର ଆଶଙ୍କା ଦୂର ହୋଇନାହିଁ ଓ ଅଳପବର୍ଷାରେ ମଧ୍ୟ ଯେଉଁଠାରେ ଯେତ ହୋଇଅଛି ତାହା ଝିଙ୍କି ଜାମୁହଁର ନିସ୍ତାର ପାଇନାହିଁ । ଧାନଗୁଡ଼ିକପାଇଁ ଗ୍ରାହକ ଏତେ ଏହା ଦେଖି କିଏ ନକହିବ ଯେ ଓଡ଼ିଶାର ବାଣିଜ୍ୟ ବିଶେଷ ବୃଦ୍ଧି ହୋଇଅଛି ଓ ଏଥିରେ ଏହାର ଅବସ୍ଥାର ବିଶେଷ ପରିବର୍ତ୍ତନ ଓ ଉନ୍ନତି ହୋଇଥିବ ମାତ୍ର ଅନୁମାନ କରି ଦେଖିଲେ ଓଡ଼ିଶା ଯାହାକିଛି ବାଣିଜ୍ୟ ବୃଦ୍ଧି ତାହା ଈଶ୍ୱର ଦତ୍ତ ଅଟେ ଲୋକଙ୍କର ଉଦ୍ୟମ ବା ଅଧ୍ୟବସାୟରେ କିଛିମାତ୍ର ଫଳ ହୋଇନାହିଁ । ଯଥାକାଳରେ ବୃଷ୍ଟି ହେବାରୁ ଶସ୍ୟ ଉତ୍ପନ୍ନ ହେଉଅଛି ଓ ତାହା ଦେଶକୁ ବିକ୍ରୟ କରି ଲୋକେ ସାହୁକାର ବୋଲାଉ ଅଛନ୍ତି । ଯେବେ ଦୈବବଶତଃ ଅକାଳ ଉପସ୍ଥିତ ହେବ ଓ ଯଥାପରିମାଣରେ ଶସ୍ୟ ଉତ୍ପନ୍ନ ହେବନାହିଁ ତେବେ ଓଡ଼ିଶାର ବାଣିଜ୍ୟର କଥା ସରିଯିବ । ଲୋକଙ୍କ ପରିଶ୍ରମରେ ଯେ ଏଠାର ବାଣିଜ୍ୟର କିଛିମାତ୍ର ଉନ୍ନତି ହୋଇନାହିଁ ଏଥିର ପ୍ରମାଣ ଦେବା ନିମିତ୍ତ ବିସ୍ତର ଆୟାସ ପାଇବାକୁ ହେବନାହିଁ । କୌଣସି ଦୋକାନଦାର କିଛିଦ୍ରବ୍ୟ ବିକ୍ରୟ କଲେ ତାହା ଘେନିଯିବାର ପାତ୍ର ସଂଗ୍ରହ କରି ରଖିଥାଏ । ସାମାନ୍ୟ ଦୋକାନମାନେ କେହି କାଠପତ୍ର କେହି କାଗଜ ଅବା କେହି ମାଟିଆ ସରା ଇତ୍ୟାଦି କିଣି ପାଶରେ ରଖିଥାନ୍ତି । ଯେବେ ଦ୍ରବ୍ୟଦେଇ ଖଣ୍ଡିଏ ପତ୍ର କି କାଗଜ ଦେଇ ନପାରେ ତେବେ ତାକୁ ଲଜ୍ଜା ବୋଧହୁଅଇ । ବଡ଼ ୨ ବ୍ୟବସାୟିମାନେ ଅଖା ବାକସ ଇତ୍ୟାଦି ସଂଗ୍ରହ କରି ରଖିଥାନ୍ତି ଓ ତାହାପାଇଁ ଭିନ୍ନ ମୂଲ୍ୟ ନେଲେ ମଧ୍ୟ ସେଥିରେ କଷ୍ଟ ହୁଅଇ ନାହିଁ । ବିଲାତରୁ ଯେତେ ଦ୍ରବ୍ୟ ଆସୁଅଛି ତେତିକି ଦେବଦାରୁ କାଠର ବାକସ ମଧ୍ୟ ଆସୁଅଛି ଓ ଗୋଟିଏ ଦିଆସିଲିର ବାକସର ନକସା ଦେଖିଲେ ଅସ୍ମଦ୍ଦେଶୀୟ ଲୋକେ ବିସ୍ମୟ ହୁଅନ୍ତି । ମାତ୍ର ଓଡ଼ିଶାର ଲୋକେ ଏଡ଼େ ଆଳସ୍ୟ ଯୁକ୍ତ ଅବା ଅମନୋଯୋଗୀ ଯେ ବର୍ଷକୁ ବର୍ଷ ଏତେଧାନ ଗୁଡ଼ିଏ ବିକ୍ରୟ କରୁଅଛନ୍ତି କିନ୍ତୁ ତାହା ଘେନିଯିବା ପାଇଁ ଅଖା ଦେଇପାରୁ ନାହାନ୍ତି ! ଶସ୍ୟ ଉତ୍ପନ୍ନ କରିବାଠାରୁ ଝୋଟ ଛଣପଟ ଉତ୍ପନ୍ନ କରିବା କି ଏଡ଼େ କଠିନ ବ୍ୟାପାର ? ବାସ୍ତବରେ ଦେଖାଯାଏ ଯେ ଅନେକ ଝୋଟ ଓ ଛଣପଟ

ଏଠାରେ ଉତ୍ପନ୍ନ ହୁଅଇ ଓ ଆବଶ୍ୟକ ହେଲେ ଏହାର ଗୃହ ବୃଦ୍ଧି ହୋଇପାରେ ମାତ୍ର ସେପରି ଲୋକ କାହିଁକି ଯେ ଅଳ୍ପ ପରିଶ୍ରମରେ ଅଧିକ ପରିମାଣରେ ଅଣ୍ଡା ବୁଣିଲ ବ୍ୟବସ୍ଥା କରି ନପାରିବ । ଦୁର୍ଭିକ୍ଷ ହେତୁରୁ ଗୃହଳ ବିଦେଶରେ ଆସିଲେ ଦୁଇ ଏକବର୍ଷ ଅଣ୍ଡାର ସୁଯାର ହୋଇଥିଲା । ଏବେ ସେ ସବୁ ଶେଷ ହେଲ ଓ ମାନ୍ଦ୍ରାଜ ମହାଜନମାନେ ଏଠାରେ ଅଣ୍ଡା ନପାଇ ଦକ୍ଷିଣରୁ ଆମଦାନି କରୁଅଛନ୍ତି ତଥାପି ଏଠାରେ କେହି ସେ ବ୍ୟବସାୟରେ ପ୍ରବୃତ୍ତ ହେଉ ନାହାନ୍ତି । ଆମ୍ଭେମାନେ ଅନୁସନ୍ଧାନ କରି ଦେଖିଅଛୁଁ ଯେ ଗତ ମଇମାସର ଅବଧି ପର୍ଯ୍ୟନ୍ତ ଗୃହମାସ ମଧ୍ୟରେ କଲିକତା ଓ ମାନ୍ଦ୍ରାଜରେ ୫୨୧୦୦ ଟଙ୍କା ମୂଲ୍ୟର କେବଳ ଅଣ୍ଡା ଏ ନଗରକୁ ଆମଦାନୀ ହୋଇଅଛି । ମହାଜନମାନେ ବୋଲନ୍ତି ଯେ ଏଠାରେ ଅଣ୍ଡା ମିଳଇ ନାହିଁ ଓ ଯାହା ମିଳେ ତହିଁର ମୂଲ୍ୟ ଅଧିକ ଓ ଦ୍ରବ୍ୟ ସାବୁତ ନୁହଇ । ଅତଏବ ସେମାନେ ଅନାକୃଷ୍ଟ ହୋଇ ବିଦେଶରୁ ଅଣ୍ଡା ଆଣାଉ ଅଛନ୍ତି ।

ଆମ୍ଭେମାନେ ଏବିଷୟ ବିଶେଷରୂପେ ଅସ୍ମଦ୍ଦେଶୀୟଙ୍କ ଗୋଚରରେ ଆଣିଲୁ ଯେ ସେମାନେ ଅବଗତହୋଇ ଆପଣା ପରିଶ୍ରମବିହୀନ ବୃତ୍ତିକୁ ପରିତ୍ୟାଗ କରନ୍ତୁ ଓ ଯେଉଁପରି ଏ ଲାଭକର ବ୍ୟାପାରରେ ନିୟୋଗ ହୁଅନ୍ତି ସେଥିର ଉପାୟ କରନ୍ତୁ । କଟକରେ ଜେଲଖାନା ସମ୍ପର୍କୀୟ କର୍ମକାରୀଙ୍କୁ ମଧ୍ୟ ଏକଥା ଜାଣିବାର ଆବଶ୍ୟକ । ଜେଲଖାନାରେ ସର୍ବଦା ଅଣାଟି କର୍ମ ହୁଅଇ କିନ୍ତୁ ଯେଉଁପରି ସେ ବ୍ୟବସାୟ ଲାଭକର ହେବ ସେଥିର ଉପାୟ ସେମାନେ ନକରି କାହିଁକି ହେଳାରେ ଧନପାତ କରୁଅଛନ୍ତି । ଯେବେ ଗୋଟିଏ ଅଣ୍ଡା ବୁଣିବାର କଳ ବସାଇଲେ ଲାଭହେବ ତେବେ ତାହା କରିବାରେ କି ବାଧାଅଛି ? ଆମ୍ଭମାନଙ୍କର ଦୃଢ଼ବିଶ୍ୱାସ ଏହିପରି ଓଡ଼ିଶାର ପ୍ରଧାନ ବାଣିଜ୍ୟ ଦ୍ରବ୍ୟ ଅଟେ ଓ ଏହି ବାଣିଜ୍ୟ ଚିରକାଳ ରହିବାର ସମ୍ଭାବନା ସୁତରାଂ ଅଣ୍ଡାପଟ୍ଟର ପ୍ରୟୋଜନ କୌଣସି କାଳରେ ଊଣା ହେବନାହିଁ ଓ ଯେ ଏ ବ୍ୟବସାୟରେ କୃତକାର୍ଯ୍ୟ ହେବ ତାହାର ଫଳଲାଭ ବସ୍ତ୍ର ଧନ ସ୍ଥାୟୀ ହେବ ସନ୍ଦେହ ନାହିଁ ।

## ( ୪ମ ଭାଗ, ୨୨ । ୧୦ । ୧୮୭୦, ସଂଖ୍ୟା ୪୧ )

### ୨୮ । ସର୍ବକାରୀ ପାଇଖାନା ।

ନଗରକୁ ପରିଷ୍କାର ରଖିବାର ଅନ୍ୟାନ୍ୟ ଉପାୟ ମଧ୍ୟରେ କଟକ ଟାଉନ କମିଟୀ ନଗରମଧ୍ୟରେ ସାଧାରଣ ବ୍ୟବହାର ଯୋଗ୍ୟ କେତେଗୋଟି ପାଇଖାନା ନିର୍ମାଣ କରିବାର କଳନା କରି ସମ୍ପ୍ରତି ଦୋବନ୍ଧାଠାରେ ଗୋଟିଏ ପାଇଖାନା ନିର୍ମାଣକରି ଘୋଷଣା ଦେଇଅଛନ୍ତି ଯେ ସର୍ବସାଧାରଣ ଲୋକଙ୍କରେ ଉକ୍ତ ପାଇଖାନା ବ୍ୟବହାର କରିପାରିବେ ଓ ପାଇଖାନା ସର୍ବଦା ପରିଷ୍କାର ରଖିବାପାଇଁ ମେହେନ୍ତର ଗୃହକ ହୋଇଅଛି ।

ସରକାରୀ ପାଇଖାନା କରିବାର ଉଦ୍ଦେଶ୍ୟ ଏହିପରି ଲୋକେ ଇଚ୍ଛାମତ ଯେ-କୌଣସିଠାରେ ବାହାରକୁ ବସି ଆଗେ ଯେମନ୍ତ ମଇଳା କରୁଥିଲେ ତାହା କରି ନପାରିବେ । ସେମାନଙ୍କୁ ଗୋଟିଏ ସ୍ଥାନ ନିର୍ଦ୍ଦେଶ କରି ଦିଆଗଲା ଯେ ସେହିଠାରେ ବାହାରକୁ ଯିବେ ଓ ଆଉ ସ୍ଥାନମାନ ମଇଳା ନକରିବେ । ମାତ୍ର ଏଥିପାଇଁ ଯେଉଁ ବିଜ୍ଞାପନ ଦିଆଯାଇଅଛି ତାହା ପାଠକଲେ ଜଣାପଡ଼େ ପାଇଖାନାର ଉପଯୁକ୍ତ ଅନ୍ତରରେ କେହି କୌଣସିଠାରେ ମଇଳା କଲେ ପୁଲିସ ତାହା ନାମରେ ମାଜିଷ୍ଟ୍ରେଟଙ୍କ ନିକଟରେ ନାଲିସକରି ତାହାକୁ ଦଣ୍ଡରେ ପହଞ୍ଚାଇବେ । ଏଥିରୁ ଏମନ୍ତ ଅର୍ଥ ବୋଧ ହୁଅଇ ଯେ ପାଇଖାନାର ପ୍ରତିବାସୀମାନେ ଅର୍ଥାତ୍ ଉପଯୁକ୍ତ ଅନ୍ତରରେ ଥିବା ଲୋକମାନେ ଆପଣା ପାଇଖାନା କି ବାଡ଼ିରେ ସୁଦ୍ଧା ବାହାରକୁ ବସି ପାରିବେନାହିଁ । ଏରୂପହେଲେ ବଡ଼ କଠିନ ହେବ ଓ ବିଶେଷରେ ସରକାରୀ ପାଇଖାନାରୁ କେତେ ଅନ୍ତରକୁ ଉପଯୁକ୍ତ ଅନ୍ତର ବୁଝାଯିବ ତାହା ମଧ୍ୟ ଜଣା ପାଉନାହିଁ । ଏସବୁ କଥାକୁ ବିସ୍ତାରକରି ଗୋଟିଏ ଘୋଷଣାପତ୍ର ପ୍ରକାଶହେଲେ ଭଲହେବ ନୋହିଲେ ଏଥିରେ କେହି ୨ ଲୋକର ଅନର୍ଥକ କଷ୍ଟହେବାର ସମ୍ଭାବନା ।

୨୬୯ । ଘୁମୁସରରେ ତେଲଙ୍ଗାଙ୍କର ଆଧିପତ୍ୟ ।

ଅଦ୍ୟ ଦିବସର ଅନ୍ତର୍ଭୁକ୍ତ ପତ୍ରିକାରେ ଘୁମୁସରରୁ ଆସିଥିବା ଗୋଟିଏ ପତ୍ର ମୁଦ୍ରିତ କରି ପାଠକମାନଙ୍କୁ ଅନୁରୋଧ କରୁଅଛୁଁ ଯେ ସେମାନେ ମନୋଯୋଗପୂର୍ବକ ତାହା ପାଠକରିବେ । ଉତ୍କଳ ଦେଶ ହିତ ଚେଷ୍ଟାରେ ଯେଉଁମାନେ ଅଛନ୍ତି ସେମାନଙ୍କୁ ଏ ବିଷୟରେ ବିଶେଷ ଉଦ୍‌ଯୋଗୀ ହେବାର ଆବଶ୍ୟକ । ଘୁମୁସରବାସୀମାନେ ଯାହା ପ୍ରାର୍ଥନାକରନ୍ତି ତାହା ଯେ ସର୍ବତୋଭାବେ ଯୁକ୍ତିଯୁକ୍ତ ଓ ବହୁ ଉପକାରମୂଳକ ଅଟଇ ଏକଥାରେ ଅଣୁମାତ୍ର ସନ୍ଦେହନାହିଁ । ଓଡ଼ିଶାର ଦୁରବସ୍ଥା ଯେଉଁମାନେ ଜାଣନ୍ତି ଓ ତହିଁର କାରଣ ଅନୁସନ୍ଧାନ କରନ୍ତି ସେମାନେ ଅବଶ୍ୟ ଅବଗତ ହୋଇଥିବେ ଯେ ଏ ଦେଶ ତିନଖଣ୍ଡ ହୋଇ ତିନି ଶାସନକର୍ତ୍ତାଙ୍କ ଅଧୀନରେ ରହିବାରୁ ଏହାର ଉନ୍ନତି ହେଉନାହିଁ । ଏକଖଣ୍ଡ ବଙ୍ଗଳା ଗବର୍ଣ୍ଣମେଣ୍ଟ ଏକଖଣ୍ଡ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଓ ଅପର ଏକଖଣ୍ଡ ମଧ୍ୟପ୍ରଦେଶର ଚିଫ କମିଶନରଙ୍କ ଶାସନରେ ରହିବାରୁ ଏଦେଶ ସମୁଦାୟ ଏକ ହୋଇ ଚଳିପାରୁନାହିଁ । ମାତ୍ର ଏପ୍ରକାର ଅବସ୍ଥାରେ ଥିଲେହେଁ ଗବର୍ଣ୍ଣମେଣ୍ଟ ଗୋଟିଏ କଥାରେ ଦୃଷ୍ଟି ରଖିଥିବାରୁ ଅନେକ ମଙ୍ଗଳ ହେଉଅଛି । ବଙ୍ଗଳା ଓ ମଧ୍ୟପ୍ରଦେଶର ଅଧୀନ ଓଡ଼ିଶାରେ ଥିବା ସମସ୍ତ ସରକାରୀ କାର୍ଯ୍ୟାଳୟରେ ଓଡ଼ିଆ ଭାଷା ପ୍ରଚଳିତଅଛି ଓ ସ୍ୱାର୍ଥପର ଲୋକେ କେତେ ଉପାୟ କଲେହେଁ ଗବର୍ଣ୍ଣମେଣ୍ଟ ଏ ଯୁକ୍ତିଯୁକ୍ତ ନ୍ୟାୟର ବିରୁଦ୍ଧ କାର୍ଯ୍ୟ କରିବାକୁ ସମ୍ମତ ହୋଇନାହାନ୍ତି । ଯେବେ ବଙ୍ଗଳା ଓ ମଧ୍ୟପ୍ରଦେଶରେ

ଏପରି ହେଲେ ତେବେ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଅନ୍ତର୍ଗତ ଓଡ଼ିଶାରେ କାହିଁକି ଓଡ଼ିଆ ଭାଷାରେ ସରକାରୀ କାର୍ଯ୍ୟାଳୟମାନଙ୍କର କାର୍ଯ୍ୟ ନ ଚଳିବ ? ଓ ଯେଉଁଠାରେ ପୂର୍ବରେ ସେଠାରେ ରାଜକାର୍ଯ୍ୟ ଓଡ଼ିଆ ଭାଷାରେ ହୋଇ ଆସୁଥିଲା ତେବେ ଇଂରାଜ ଗବର୍ଣ୍ଣମେଣ୍ଟ କାହିଁକି ଅନ୍ୟରୂପ ଆଚରଣ କରିବେ ? ଆମ୍ଭମାନଙ୍କୁ ନିଶ୍ଚୟ ବୋଧ ହେଉଅଛି ଯେ ଉତ୍କଳବାସୀମାନେ ଏକାଗ୍ରରେ ଏକମତ ହୋଇ ଗବର୍ଣ୍ଣମେଣ୍ଟଙ୍କୁ ଆବେଦନ କଲେ ତାହାଙ୍କର ପ୍ରାର୍ଥନା ସଫଳ ହେବ । ବିଦେଶୀୟ ଭାଷାରେ କାର୍ଯ୍ୟାଳୟ ସାବଡାରୁ କାର୍ଯ୍ୟ ଚଳିବା କଦାଚ ଗବର୍ଣ୍ଣମେଣ୍ଟଙ୍କ ଅନୁମୋଦିତ ନୁହଇ କେବଳ ଘୁମୁସରବାସିମାନେ ଏତେଦିନେ ଯାହା କହିନାହାନ୍ତି ବୋଲି ତାହାଙ୍କର ଦୁଃଖ ଶୁଣାଯାଇ ନାହିଁ । ଏବେ ସେମାନେ ସମସ୍ତ ଉତ୍କଳବାସିଙ୍କଠାରେ ଏକଥା ଜଣାଇଲେ ଏଥିରୁ ଆବଶ୍ୟକ ଯେ ପୁରୀ କଟକ ଓ ବାଲେଶ୍ୱରରେ ଥିବା ସମସ୍ତ ଉତ୍କଳୀୟ ତାହାଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ହେଉନ୍ତୁ ଓ ଆମ୍ଭେମାନେ ଭରସାକରୁଁ ଯେ ଉତ୍କଳୋନ୍ନତିବିଧାୟିନୀ ସଭା ବିଶେଷ ଆଗ୍ରହ-ପୂର୍ବକ ଏ ବିଷୟରେ ହସ୍ତକ୍ଷେପ କରନ୍ତୁ ।

(୫ମଭାଗ, ୨୨।୧୦।୧୮୭୦, ଅତିରିକ୍ତ ସଂଖ୍ୟା)

୨୨୦ । ମାନ୍ୟବର ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ ସମୀପେଷୁ ।

ହେ ମହାଶୟ ! କଟକ ଓ ପୁରୀଜିଲ୍ଲା ଅନ୍ତର୍ଗତ ଉତ୍କଳଦେଶ ନିବାସୀ ମହାଶୟ-ମାନଙ୍କୁ କେତେକ ବିଷୟ ଜ୍ଞାତକରାଇବାର ଅତ୍ୟାବଶ୍ୟକ ଥିବାରୁ ନିମ୍ନଲିଖିତ ବୃତ୍ତାନ୍ତ ଲିପିବଦ୍ଧ କଲୁଁ, ଆପଣ ପରୋପକାର କରିବା ଅଭିପ୍ରାୟରେ ଅନୁଗ୍ରହକରି ଏ ନିମ୍ନଲିଖିତ ଲିପିକୁ ସଂଶୋଧନ ପୂର୍ବକ ଉତ୍କଳଦୀପିକାର ଏକ ପାର୍ଶ୍ୱରେ ସ୍ଥାନ ଦାନକରି ପାଠକ-ମାନଙ୍କୁ ଅବଗତ କରାଇବା ହେବେ ।

ବର୍ତ୍ତମାନ ଏ ସେପ୍‌ଟେମ୍ବର ମାସ ତା ରିଖରେ ଗଞ୍ଜାମଜିଲ୍ଲା ଘୁମୁସର ତାଲୁକ ରସଲକୋଣ୍ଡା ମୋକାମରେ ଏକସଭା ହୋଇଥିଲା । ସେ ସଭାରେ ରେମେଶ୍ୱରଙ୍କର କୃତକାର୍ଯ୍ୟ ଓ ନୀଳଗିରିନାଥଙ୍କର ଫଳାଫଳ ଓ ପୂର୍ବର ପୁଲିସାନୁକ୍ରମେ ଚଳି ଅସୁଥିବା ବ୍ୟବସ୍ଥା ଓ ଭିନ୍ନ ମାନ୍ୟମାନଙ୍କର ଯାବତ ବିଷୟ କହୁଥିବାରେ ଭାରତବର୍ଷ ଶ୍ରୀମତୀ ମହାରାଣୀଙ୍କ ଅଧୀନ ହେବ । ଦିନାଦିକ ପୂର୍ବ ପ୍ରତି ଯାବତ ଦେଶର ବିଦ୍ୟା ଉନ୍ନତି ହୋଇ ଶ୍ରୀବୃଦ୍ଧି ହୋଇ ଆସୁଅଛି, ମାତ୍ର ଗଞ୍ଜାମଜିଲ୍ଲା ଅତ୍ର ଯାତ ହୋଇଥିବା ଋଷିକୁଲ୍ୟା ନଦୀ ସମୀପ ବର୍ତ୍ତୀ ଅନ୍ୟତ୍ର ଦେଶରେ ଥିବା ଯାବତ ଗ୍ରାମରେ ଓଡ଼ିଆ ଲୋକେ ନିବାସ କରନ୍ତି ହେଁ ପୂର୍ବରେ ରାଜାମାନଙ୍କ ଉତ୍କଳବିଦ୍ୟା ପ୍ରଚଳ ଥିବାରୁ ସେ ବିଦ୍ୟା ମାତ୍ରଭାଷା

ଥିବାରେ ଲୋକମାନେ ବିଦ୍ୟାବନ୍ତ ହୋଇ ସ୍ୱଜାତୀୟ ଉଚ୍ଚପଦମାନ ପାଇ ସମର୍ଯ୍ୟାଦା ପ୍ରକାରେ ରାଜକର୍ମ କରୁଥିଲେ, ଓ ମଧ୍ୟ ଲବ୍ଧପ୍ରତିଷ୍ଠ ବିଦ୍ୟାବାନ୍ ଲୋକମାନେ ପାଣିନୀୟ ବ୍ୟାକରଣ ଗଣିତ ଶାସ୍ତ୍ରାଦି ନାନା ପ୍ରକାର ଗ୍ରନ୍ଥମାନ ରଚନା କରୁଥିଲେ ଏ ଦେଶୀୟ ଲୋକମାନଙ୍କର ଯଶଃ ଶ୍ରୀବିଦ୍ୟାବୃଦ୍ଧି ହୋଇ ଭାଗ୍ୟବାନ୍ ହେଉଥିଲେ । ଏ ଦେଶମାନ ସରକାର ସ୍ୱାଧୀନ ହେବାଠାରୁ କଟକଠାରେ ତେଲିଙ୍ଗି ବିଦ୍ୟା ପ୍ରଚୁର ହେବାରୁ କ୍ରମେ କ୍ରମେ ଏଦେଶ ଲୋକଙ୍କର ଶ୍ରୀଚ୍ୟୁତ ହୋଇ ଯଶଃଶ୍ରୀ ବିଦ୍ୟାବୃଦ୍ଧି ହେବାର ଲୋପହେବା ପ୍ରତ୍ୟକ୍ଷ ସରକାରଙ୍କ ନ୍ୟାୟ ଲଭିବାର ଦୁସ୍ତର ହୋଇଅଛି । କେବଳ ତେଲିଙ୍ଗି ଦେଶୀ ଲୋକଙ୍କର ଶ୍ରୀବୃଦ୍ଧି ହୋଇ ଯେଉଁ ଲୋକମାନେ ଏଦେଶକୁ ଦମାଲକୁ ଚରି ଖାଇ କରି- ଥିଲେ ସେମାନେ ବର୍ତ୍ତମାନ ସରକାର କର୍ମରେ ନିଯୁକ୍ତ ହୋଇ ଏଦେଶରେ ଅଧିକାର କରି ସମନ୍ଭୂତପରି କର୍ମ କରୁଅଛନ୍ତି, ଆଉ ଇଂରେଜୀରୁ ହାକିମମାନେ ଯେ ଆସୁଅଛନ୍ତି ସେମାନଙ୍କର ଅମଲାଗଣ ସେହି ତେଲିଙ୍ଗା ଦେଶୀ ଲୋକଥିବାରୁ ହାକିମଙ୍କଠାରେ ବଶୀ- ଭୂତ ହୋଇ ସେହି ତେଲିଙ୍ଗା ଭାଷାରେ ତାହାଙ୍କ ପରାମର୍ଶରେ କର୍ମ କରୁଥିବାରୁ ଓଡ଼ିଆ ଲୋକମାନେ ସେହି ହାକିମମାନଙ୍କୁ ଉତ୍ତରକରି ଆପଣାର ଦୁଃଖ ଜଣାଇ କିଛି କହି ପାରୁନାହାନ୍ତି ଓ ମଧ୍ୟ ମାମଲା ମକଦ୍ଦମା ବିଚାର ସମୟରେ ସେହି ତେଲିଙ୍ଗା ଭାଷାରେ କଥୋପକଥନ ହେଉଥିବାରୁ ପ୍ରଜାମାନେ ଅଧିକ ଭଲ ବୁଝିପାରୁ ନଥିବାରୁ ଉତ୍ତର ଜବାବ ସଓ୍ୱାଲ କରି ନପାରି ଅମଲାମାନଙ୍କ ବିନା ସହାୟରେ କେହି ନ୍ୟାୟ ଲଭି ପାରୁ- ନାହାନ୍ତି । ଅମଲାମାନଙ୍କୁ ସହାୟକରି ଲୋଡ଼ିବାରେ ପ୍ରଜାମାନଙ୍କର ଯେ କଷ୍ଟ ହେଉଅଛି ସେଥିରେ ଆଖିକୁ ମାରି ବାଉଁଶକୁ ପାଣି ଦେଲାପରି ହେଉଅଛି । ଏହେତୁ ତଳଲିଖିତ କାଗଜାତରେ ଜବାବ କରିଥିବା ଆଜିକି ୨୦୦୧୦୧୦ ଦଶଲକ୍ଷ ମନୁଷ୍ୟମାନଙ୍କର ଶ୍ରୀଚ୍ୟୁତ ହୋଇ ତେଲିଙ୍ଗିଦେଶ ଲୋକଙ୍କର ଶ୍ରୀବୃଦ୍ଧି ହେବାକୁ କାରଣ ହେଉଅଛି ଆଉ ଏଦେଶର ଗ୍ରାମାଧିକାରୀ ଅର୍ଥାତ୍ କରଣ କାପ. ଓଗେର ଗ୍ରାମ ପ୍ରଧାନ ଲୋକେ ତାହାଙ୍କ ପୂର୍ବପୁରୁଷାର୍ଜିତ ରାଜାମାନେ ଦେଇଥିବା, ଭୂମି ଓ ରସୁମ ଭୋଗକରି ପୂର୍ବରେ ରାଜା- ସଭାରେ ସମର୍ଯ୍ୟାଦା ପ୍ରକାରେ ବସୁଥିବା ସେଥିମଧ୍ୟରୁ କେହି ୨ ପାହାଡ଼ ଅଧିକାରମାନ କରୁଥିବା, କେହି ୨ ଗ୍ରାମାଧିକାରକରି ଯେତେ ଗ୍ରାମର ଲୋକମାନଙ୍କୁ ରାଜଦରବାରରେ ଦାଖଲ କରୁଥିଲେ ବର୍ତ୍ତମାନ ସେହି ଭୂମି ଓ ରସୁମ ପାଇ ପୂର୍ବପ୍ରଥା ବଂଶରେ ଲୋକ- ମାନ ସରକାରରେ ଦାଖଲ କରୁଥିବା ପ୍ରତ୍ୟକ୍ଷ ଓଡ଼ିଆ ଅକ୍ଷରରେ ନୋଟାଲେଖି ଦାଖଲ କରୁଥିବାରୁ ଯେ ଲୋକମାନ ତେଲିଙ୍ଗାରେ ତର୍ଜମାକରି ଆଣିବାକୁ ହାକିମମାନେ ହୁକୁମ ଦେଉଥିବାରୁ ସେଥିରେ ଗ୍ରାମାଧିକାରୀମାନଙ୍କୁ ଯେ ଖର୍ଚ୍ଚ ଲାଗୁଅଛି ସେଥିରେ ତାହାଙ୍କ ପୂର୍ବପୁରୁଷାର୍ଜିତ ଭୂମିର ଆୟ ହେବା ସବୁ ଦ୍ରବ୍ୟ ବ୍ୟୟ ହୋଇ ରସୁମ ପାଇ ମିଳୁଅଛି ତାହା କଚେରିରେ ପଡ଼ନ୍ତହେବା ଖର୍ଚ୍ଚକୁ ସରି ହେଉଅଛି, ଏହେତୁ ଗ୍ରାମାଧି-

କାରୁମାନେ ପ୍ରତିପୋଷଣ ହୋଇ ନପାରି କେବଳ ଫୁଲଗଛ ଗୁଣ କରିବା ଓ ପ୍ରଜା
ମାନଙ୍କୁ ପୀଡ଼ନ୍ଧା କରିବା ଇତ୍ୟାଦି ଗତ ବୃତ୍ତିରେ କଷ୍ଟରେ ପ୍ରତିପୋଷଣ ହେଉଅଛନ୍ତି
ଓ ମଧ୍ୟ କେତେ ଲୋକ ନିଃସ୍ପୃହ ହୋଇ ସରକାର ଠାରୁ ପାଉଥିବା କର୍ମଚ୍ୟୁତ ଓ
କଳଙ୍କୀ ହୋଇ ଯାଉଅଛନ୍ତି, ଆଜିକାଲି ସମସ୍ତ ଦେଖି ଏଦେଶୀୟ ଓଡ଼ିଆ ଲୋକଙ୍କ
ହାତେ କୌଣସି ସରକାରୀ କର୍ମ ଦେବନାହିଁ ବୋଲି ହାକିମମାନଙ୍କଠାରେ ଅମଲାମାନେ
କହୁଥିବାରେ ହାକିମମାନେ ସାରବାର ବିବେଚନା ନକରି ନୂତନରେ ସରକାର କର୍ମରେ
ରଖିବାର ଦୂରେ ଥାଉ ପୁରୁଷାନୁକ୍ରମେ ଥିବା ବୃତ୍ତିଦାରଙ୍କ ମଧ୍ୟ ଅନ୍ତର କରିବାର ଚେଷ୍ଟା
କରୁଅଛନ୍ତି, ଯେବେ ଏଦେଶୀୟ ଓଡ଼ିଆ ଲୋକଙ୍କ ହାତେ ସରକାରୀ କର୍ମ ହେଉନାହିଁ
ତେବେ ଇଂରେଜରାଜ୍ୟ ସରକାର ସ୍ୱାଧୀନ ହେବା ସମୟରେ ବାଲଜୀ ପଟ୍ଟନାୟକ ଓ
ବଳଭଦ୍ର ପଟ୍ଟନାୟକ ଓ ନିଧି ପଟ୍ଟନାୟକ ଓଗେର ସରକାର କର୍ମରେ ମୁକରର ହୋଇ
ଅଦ୍ୟାପି ୬୦ ବର୍ଷ ପର୍ଯ୍ୟନ୍ତ କି ପ୍ରକାରେ କର୍ମ କରୁଥିବେ ଆଉ ଯେଉଁମାନେ ନିବାସ କରି
ଥିବା ମାଳପ୍ରଦେଶରେ କି ପ୍ରକାରରେ ପୂର୍ବରେ ଓଡ଼ିଆ ଲୋକେ ଅର୍ଥାତ୍ ମହାନ୍ତି ହରିବନ୍ଧୁ
ପଟ୍ଟନାୟକ ଓ ଶ୍ରୀହର୍ଷ ପଟ୍ଟନାୟକ ଓ ବାଲଜୀ ପଟ୍ଟନାୟକ ଓ ଲକ୍ଷ୍ମୀନାରାୟଣ ପଟ୍ଟନାୟକ
ଓ ସାମନ୍ତ ବନାୟକ ସିଂହ ଓ ସୁନ୍ଦର ସିଂହ ଓ ଗୋପ ସିଂହ ଓଗେର କି ପ୍ରକାର
ସରକାରୀ କର୍ମ କରି ପଣ ଲଭୁଅଛନ୍ତି । ବର୍ତ୍ତମାନ ଘୁମୁସର ନିବାସୀ ଶ୍ରୀଯୁକ୍ତ ବାବୁ
ଦୀନବନ୍ଧୁ ପଟ୍ଟନାୟକ ଓ ବୃନ୍ଦାବନ ବଡ଼ଶୋର ଓ ବୈଦ୍ୟନାଥ ପଟ୍ଟନାୟକ ଓ ଚୈତନ
ସିଂହ ଓଗେର କି ପ୍ରକାରରେ ସରକାରୀ କର୍ମ କରି ଦରସ୍ତ ହୋଇଅଛନ୍ତି ମାତ୍ର ମାଳ
ପ୍ରଦେଶର ମନୁଷ୍ୟ ମଧ୍ୟ କଳ ଗଞ୍ଜନ ସବୁ ମଧ୍ୟ ଥିବାରୁ ତେଲେଙ୍ଗା ଦେଶର ଲୋକେ
ହିଂସାଭାବରେ ମାଳପ୍ରଦେଶରୁ ନଡ଼ିବାର ଓଡ଼ିଆ ଲୋକେ ବହୁତ ମଜବୁତ ବୋଲି ଯେହି
ଅମଲାମାନେ ସୁପାରସ କରିବାରେ ସେହି ହାକିମମାନେ ଓଡ଼ିଆ ଲୋକଙ୍କୁ ତେଲେଙ୍ଗା
ନ ଆସୁଥିଲେ ମଧ୍ୟ ଉଚ୍ଚପଦରେ ନିଯୁକ୍ତ କରିଅଛନ୍ତି ଓ ମଧ୍ୟ ଓଡ଼ିଆ ଲୋକେ କେତେ
ଦିନ ସେ ଦୁଃସାଧ୍ୟ କେଉଁଠାରେ ରହି ସାଧ୍ୟ କରିବୁ ତେଲେଙ୍ଗା ବିଦ୍ୟା ଜାଣିବା ଲୋକ
ନରହିଲେ କର୍ମ ଚଳିବନାହିଁ ବୋଲି ସେମାନଙ୍କୁ ବାହାର କରିବାର ଚେଷ୍ଟା କରି
ତେଲେଙ୍ଗା ଦେଶର ଲୋକେ ନଥିଲେ ମଧ୍ୟ ମୁସଲମାନ ଲୋକଙ୍କୁ ପଠାଉଅଛନ୍ତି
ଏ ସମସ୍ତ କେବଳ ଦେଶର ଚଳିତ ଭାଷାର ବିଦ୍ୟା ପ୍ରଚଳନ ନହୋଇ କଚେରିରେ
ଅନ୍ୟ ଦେଶର ତେଲେଙ୍ଗି ବିଦ୍ୟା ପ୍ରଚଳନ ହେବାରୁ ଦେଶୀୟ ଲୋକମାନଙ୍କୁ ଦେଶରେ
କୌଣସି ଉପଯୁକ୍ତ କର୍ମ ସକଳ ନଥିବୁ ନ ମିଳି ନାନାବିଧ ଯନ୍ତ୍ରଣାମାନ ପ୍ରାପ୍ତ ହୋଇ
ଲୋକମାନଙ୍କର ପରମ ଶ୍ରୀବିଦ୍ୟା ଲୋପ ହୋଇଯାଉ ଅଛି । ଏଥିରେ ଭାରତବର୍ଷର
ହିତୈଷୀମାନଙ୍କୁ ଏଥି ଧ୍ୟାନ ନକରି ଦୃଶ୍ୟାଦୃଶ୍ୟ ହୋଇ ଦୁର ପ୍ରଭୁ ସର୍ବାଧିକାରୀ ସର୍ବ-
ଶକ୍ତିମାନ୍ ହୋଇ ଯେଉଁ ଦୁଷ୍ଟ ଲୋକଙ୍କର ଅତ୍ୟାଚାର ପ୍ରକାଶ ନହୋଇ ଗୁପ୍ତରେ

ରହୁଅଛି ସେମାନଙ୍କୁ ଗୁପ୍ତରେ ଥିବା ପ୍ରଭୁ ଯେ ପରମେଶ୍ୱର ସେ ଦଣ୍ଡ ଦେଇ ସାଧୁମାନଙ୍କର ଶ୍ରୀବୃଦ୍ଧି କରୁଅଛନ୍ତି । ଯେଉଁ ଦୁଷ୍ଟ ବ୍ୟକ୍ତିମାନଙ୍କର ଅପରାଧ ପ୍ରକାଶ ହୋଇଅଛି ସେମାନଙ୍କୁ ପ୍ରକାଶରେ ଥିବା ପ୍ରଭୁ ଯେ ଶ୍ରୀଯୁକ୍ତ ଗବର୍ଣ୍ଣର ଜେନେରାଲ ବାହାଦୁର ସେ ସେମାନଙ୍କୁ ଦଣ୍ଡଦେଇ ସାଧୁମାନଙ୍କର ଶ୍ରୀବୃଦ୍ଧି କରୁଅଛନ୍ତି ! ଏହି ପ୍ରକାରେ ଦୁଇ ପ୍ରଭୁ ଥିବା ପ୍ରତ୍ୟକ୍ଷେ ଏଦେଶ ଲୋକମାନଙ୍କର ଦୁଃଖ ଦରିଦ୍ରାବସ୍ଥା ଯେ କାହାରିକୁ ଗୋଚର ହେଉନାହିଁ ଏ ବଡ଼ ଚମତ୍କାର କଥା ମାତ୍ର ପରମେଶ୍ୱର ଯେଉଁ ବ୍ୟକ୍ତିମାନଙ୍କ ଅଦୃଷ୍ଟରେ ଯାହା ଲେଖିଅଛନ୍ତି ମନୁଷ୍ୟମାନଙ୍କ ଉଦ୍‌ଯୋଗରେ ସେ ଫଳ ପ୍ରାପ୍ତହେବାର ସମସ୍ତଙ୍କ ମତରେ ଆସିଥିବାରୁ ଏ ବିଷୟରେ ଉଦ୍‌ଯୋଗକରି ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କୁ ପ୍ରଥମରେ ଜଣାକରି ଆପଣା ଦେଶ ଅଦାଲତରେ ଦେଶର ଓଡ଼ିଆ ବିଦ୍ୟା ପ୍ରବୃତ୍ତକରିବା କାରଣ ପ୍ରାର୍ଥନା କରିବାର ଉଚିତ ଥିଲା । ମାତ୍ର ଏଦେଶୀୟ ଲୋକେ ଆପଣା ଦେଶରେ ଓଡ଼ିଆ ବିଦ୍ୟା ପ୍ରବୃତ୍ତହେବା ଆଶାରେ ମାନ୍ଦ୍ରାଜ ରାଜଧାନୀର ଅନ୍ତର ହୋଇ ବଙ୍ଗଳା ରାଜଧାନୀରେ ରହିବାର ଇଚ୍ଛା କରୁଥିବାରୁ ଓ ମଧ୍ୟ ଏଦେଶରେ ନିଯୁକ୍ତ ହୋଇଥିବା ତେଲେଙ୍ଗା ଦେଶ ଅମଲାମାନଙ୍କ ବିନା ସହାୟରେ କିଛି କର୍ମ ସିଦ୍ଧ ହେଉ ନଥିବାରୁ ଅମଲାମାନଙ୍କ ଭୟରେ ଏଦେଶୀୟ ଲୋକ ସ୍ୱତନ୍ତ୍ରରେ ଦରବାର କରିବାକୁ କେହି ସମର୍ଥ ନଥିବାରୁ ଏଥି ବିଷୟରେ ଆପଣା ଗବର୍ଣ୍ଣମେଣ୍ଟଙ୍କୁ କିଛି ଜଣା କରି ନପାରି ବିଶେଷ ଭାବନାକରି ମହାରଗ କାଳେ ଗାଇ ବିପତ୍ତିକାଳେ ଭାଇ ରକ୍ଷାକର୍ତ୍ତା ବୋଲି ଡାକ ବଚନ ଥିବାରୁ କଟକ ଜିଲ୍ଲା ମଧ୍ୟସ୍ଥ ଉତ୍କଳ ଦେଶୀୟମାନଙ୍କୁ ଦୁଃଖ ଜଣା କରିବାର ସ୍ଥିର କରାଗଲା । ଉକ୍ତ ଜିଲ୍ଲାର ଉତ୍କଳ ଦେଶୀୟ ମହାଶୟମାନେ ଦରିଦ୍ର ଲୋକଙ୍କ ଦୁଃଖ ମୋଚନ କରିବାର ଧର୍ମ କେତେ ତାହା ବିବେଚନା କରି ଉପରି ଲିଖିତ ଅବସ୍ଥାରୁ ଏ ଦେଶଲୋକଙ୍କୁ ଉଦ୍ଧାର କରି ଶାସ୍ତ୍ରାନୁସାରେ ଉତ୍କଳଦେଶ ସମଗ୍ର ଏକତ୍ର ହୋଇ ଓଡ଼ିଶା ଜିଲ୍ଲାରେ ରହିବା ଓ ସର୍ବତ୍ର ଉତ୍କଳ ଦେଶର ଅଦାଲତରେ ଉତ୍କଳ ବିଦ୍ୟା ପ୍ରଚଳ ହେବା ନିମିତ୍ତ ଭାରତବର୍ଷର ଶ୍ରୀଯୁକ୍ତ ରାଇଟ ଅନରେବଲ ଗବର୍ଣ୍ଣର ଜେନେରାଲ ବାହାଦୁରଙ୍କ ହଜୁରର ହୁକୁମ ହେବା କାରଣ କଟକ ଜିଲ୍ଲା ଉତ୍କଳ ଦେଶୀୟ ମହାଶୟମାନେ ଯଥୋଚିତ ତଦ୍‌ବିର କରି ଚିରସ୍ଥାୟୀ କୀର୍ତ୍ତି ରଖିବାର ଯଶଃ ପ୍ରକାଶ କରନ୍ତୁ । ଆଶ୍ଚର୍ଯ୍ୟ ଆନନ୍ଦ ହେବାର ଭରସା ଜଣେ ଦୀନଲୋକର ବନ୍ଧୁ ଯେ ସେ ଏ ଉଦ୍‌ଯୋଗ କରୁଅଛନ୍ତି ।

ଋଷିକୁଲ୍ୟାନଦୀର ଉତ୍ତର ପାର୍ଶ୍ୱରେ ଥିବା କନ୍ଦାଜାତ ।

ପାଲୁର, ହୁମା, ଗଣ୍ଡା, ବିରାଳି, ପୂର୍ବଖଣ୍ଡ, ଖଲ୍ଲିକୋଟ, ଆଠଗଡ଼, ଘୁମୁସର, ଧରାକୋଟ, ସୋରଡ଼ା, ବଡ଼ାବା, କରଡ଼ା, କହିଙ୍ଗା, ଗଦାପୁର ।

ଦକ୍ଷିଣ ପାରଗଣରେ ଥିବା କଲ୍‌ଜାତ ।

ବରଗଡ଼, ପେରଗଡ଼, ସାନକିମୁଣ୍ଡି, ବଡ଼କିମୁଣ୍ଡି, ଟେକଟି, ମହୁରି, ଚିକିଡ଼ା, ସୁରଙ୍ଗି, ଭୁଞ୍ଜାନଗିରି, ଜଳନ୍ତର, ମଞ୍ଜୁଷା, ତରଲା, ପାରଲା, ଚିକିଲି ।

ଲିଖିତଂ ଗଞ୍ଜାମର ତାଲ୍‌କା ଦାରୋଗାଙ୍କ ଦେବସ୍ଥଳ କମିଟୀ ମେମ୍ବର ଶ୍ରୀ ଜନାର୍ଦ୍ଦନ ପାଢ଼ୀନ ।

## ( ୫ମ ଭାଗ, ୨୯ । ୧୦ । ୧୮୭୦, ସଂଖ୍ୟା ୪୨ )

ସାପ୍ତାହିକ ସମ୍ବାଦ ।

୨୭୧ । ଶ୍ରୀଯୁକ୍ତ ଟେଲର ସାହେବ ଡିପୋଟୀ କଲେକ୍‌ଟର ଖୋର୍ଦ୍ଧାରୁ ବଦଳି ହୋଇଅଛନ୍ତି । ତାହାଙ୍କୁ ଆଜ୍ଞା ହୋଇଅଛି ଯେ ଅବିଳମ୍ବେ କଟକରେ ପହୁଞ୍ଚି ଭାର ଗ୍ରହଣ କରିବେ ।

୨୭୨ । ଆମ୍ଭେମାନେ ଏପରି ଜନରବ ଶୁଣୁଅଛୁଁ ଯେ ଅବଶ୍ୟ ପ୍ରଧାନ କର୍ମଚାରୀମାନେ ଦୁର୍ଭିକ୍ଷର ଆଶଙ୍କା କରି ବିଦେଶରୁ ଚାଉଳ ଅଣାଇବା ଓ ସାହାଯ୍ୟ କାର୍ଯ୍ୟର ଅନୁଷ୍ଠାନ କରିବାକୁ ଗବର୍ଣ୍ଣମେଣ୍ଟକୁ ଅନୁରୋଧ କରିଅଛନ୍ତି । ଏତେ ବର୍ଷା ଓ ଚାଉଳର ସୁଅବସ୍ଥା ହେଲାଠାରୁ ଯେ ଦୁର୍ଭିକ୍ଷର ଆଶଙ୍କା ହେଉଅଛି ଆମ୍ଭମାନଙ୍କୁ ଚମତ୍କାର ବୋଧ ହେଉଅଛି । ଭରସାକରୁଁ ଏମାନେ ଦେଶର ଅବସ୍ଥାର ଉତ୍ତମରୂପେ ଅବଗତ ନାହାନ୍ତି ଅଥବା ଯାହାକୁ ସାପ କାମୁଡ଼େ ସେ ଦାଲ ଦଉଡ଼ିକୁ ଡରେ ଏହିକଥା ସାର୍ଥକ ହେଉଅଛି ।

୨୭୩ । ବାବୁ ରାଧିକା ପ୍ରସାଦ ମୁଖର୍ଜ୍ଜୀ ଅସିଷ୍ଟାଣ୍ଟ ଇଞ୍ଜିନିୟର ଜେନେରାଲଙ୍କୁ ଲେଖିଅଛନ୍ତି ଯେ ସେ ଜଗନ୍ନାଥଙ୍କ ମନ୍ଦିର ବେଢ଼ାଭିତରେ ସମସ୍ତ ସ୍ଥାନର ଗୋଟିଏ ନକସା ପ୍ରସ୍ତୁତକରି ଥିଲେ ଏବଂ ତାହାର ନକଲ ବାବୁ ରାଜେନ୍ଦ୍ର ଲାଲ ମିତ୍ରଙ୍କୁ ଦେଇଥିଲେ । ସେ ତାହା ଏସିଆଟିକ ସୋସାଇଟୀକୁ ଅର୍ପଣ କରିଥିଲେ । ବାବୁ ରାଜେନ୍ଦ୍ର ଲାଲ ଏ ନକସା ପ୍ରସ୍ତୁତ କରିଥିବାର କହିବାରୁ ଦୁହିଙ୍କ ମଧ୍ୟରେ କଳହ ଜାତ ହୋଇଅଛି । ନକସା ସମ୍ବନ୍ଧି ଓ୍ୟାଇମାନ କମ୍ପାନିଙ୍କଦ୍ୱାରା ମୁଦ୍ରିତ ହୋଇ ବିକ୍ରୟ ହେଉଅଛି ।

## ( ୫ମ ଭାଗ, ୧୯ । ୧୧ । ୧୮୭୦, ସଂଖ୍ୟା ୪୫ )

୨୭୪ । କଟକରେ ଭାରତ ବର୍ଷୀୟ ସଭାର କାର୍ଯ୍ୟାରମ୍ଭ ।

ଗତ ପୂର୍ବ ସପ୍ତାହରେ କଟକ ଓ୍ୟେବେଷ୍ଟ ସୋସାଇଟୀର ଆହ୍ୱାନ ମତେ ଅନେକ

ଉଲ୍ଲାସିନୀ ଓ କଟକ ସୋସାଇଟୀର ସଭ୍ୟମାନେ କଟକ ମୁଳ ଗୃହରେ ସଭାରେ ଏକତ୍ରିତ ହୋଇ ଶାଖା ସଭା ସ୍ଥାପନ ବିଷୟରେ ବିଚାର କରିଥିଲେ । ଭାରତବର୍ଷୀୟ ସଭାର ସମ୍ପାଦକ ଡିବେଟିଂ ସଭାର ସମ୍ପାଦକଙ୍କୁ ପତ୍ର ଲେଖିବାରୁ ଏ କଥାର ପ୍ରସ୍ତାବ ହେଲା ଓ ଏଥିପାଇଁ ଗୋଟିଏ ସ୍ୱତନ୍ତ୍ର ସଭା କରିବା କାରଣ ଡିବେଟିଂ ସଭାର ସଭ୍ୟମାନେ ମତ ଦେଇଥିଲେ । କଟକ ସୋସାଇଟୀର ସଭ୍ୟମାନଙ୍କ ମଧ୍ୟରେ ଯେଉଁମାନେ ଉପସ୍ଥିତ ଥିଲେ ସେମାନଙ୍କର ମତ ସଭା ସ୍ଥାପନର ବିରୁଦ୍ଧ ହେଲା । ଏ ବିଷୟରେ ବାବୁ କାଳୀପଦ ବାନ୍ଦୁର୍ଯ୍ୟା ଯେଉଁ ବକ୍ତୃତା କଲେ ତହିଁରେ ସଭା ସ୍ଥାପନ ବିରୁଦ୍ଧରେ ଅନେକ କଥା କହିଲେ । ତାହାଙ୍କ ମତରେ ସଭା ସ୍ଥାପନର ଉପଯୁକ୍ତ କାଳ ଅବଧି ହୋଇନାହିଁ ଓ କଲିକତାର ଭାରତବର୍ଷୀୟ ସଭାଦ୍ୱାରା କୌଣସି ହିତସାଧନ ହୋଇନାହିଁ ବୋଲି ସେ କହିଲେ । କଟକ ସୋସାଇଟୀର ଅନ୍ୟ ସଭ୍ୟମାନେ ମଧ୍ୟ ଏହିପରି ମତ ଦେଲେ ମାତ୍ର ସୌଭାଗ୍ୟ କ୍ରମେ ସେମାନଙ୍କ ସଂଖ୍ୟା ଊଣା ଥିବାରୁ ତାହାଙ୍କର ମତ ପ୍ରବଳ ହୋଇ ପାରିଲା ନାହିଁ । ଉପସ୍ଥିତ ସଭ୍ୟଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କ ମତରେ ସଭା ସ୍ଥାପନ ଉଚିତ ବୋଧ ହେବାରୁ ତଦନୁସାର ଧାର୍ଯ୍ୟ ହେଲା ।

କଟକ ସୋସାଇଟୀର ମତ ଏବଡ଼ିନ ଦେଖି ଆମ୍ଭେମାନେ ଅତିଶୀଘ୍ର ବିସ୍ମିତ ହୋଇଅଛୁଁ । ଏଠାରେ ଯେଉଁକାଳରେ ଭାରତବର୍ଷୀୟ ସଭାର ଶାଖା ସଭା ହେବାର ପ୍ରଥମ ପ୍ରସ୍ତାବ ହେଲା ସେହିକାଳରେ କଟକ ସୋସାଇଟୀ ସ୍ଥାପନ ହୋଇଅଛି ଓ ସୋସାଇଟୀର ସଭ୍ୟମାନେ ସେହି ସଭାକୁ ଆଦର୍ଶ କରି ତହିଁର ନିୟମାବଳୀ ଦେଖି ଆପଣା ସଭାର ବିଧିମାନ ସ୍ଥିର କଲେ ଓ ଭାରତବର୍ଷୀୟ ସଭାର ଶାଖାସଭା ହେବେ ବୋଲି କହୁଥିବାର ଶୁଣିଅଛୁଁ । ତଦୁତ୍ତାରୁ ଅବଶ୍ୟ କେତେକ ସମ୍ଭ୍ରାନ୍ତ ବ୍ୟକ୍ତି ସୋସାଇଟୀର କାର୍ଯ୍ୟଉପରେ ନିର୍ଭର ନକରି ଶାଖା ସଭା ସ୍ଥାପନପାଇଁ ଭିନ୍ନ ଉପାୟ ଚିନ୍ତାକଲେ ଓ ଉଲ୍ଲାସିନୀ ସଭାର ତହିଁର ଉଦ୍ୟମ ହୋଇଥିଲା । ଶେଷରେ ଡିବେଟିଂ ସଭାରେ ଏକଥା ଧାର୍ଯ୍ୟ ହେଲା । ଏଥିରୁ ପ୍ରକାଶ ହୁଅଇ ଯେ ଅନ୍ତତଃ ଭିନ୍ନ ୨ ସଭାର ସଭ୍ୟମାନେ ଶାଖାସଭା ସ୍ଥାପନ ବିଷୟରେ ଏକମତ ଅଛନ୍ତି ମାତ୍ର କଟକ ସୋସାଇଟୀ ଆଦ୍ୟରେ ତହିଁର ଅନୁମୋଦନକାରୀ ହୋଇ ଏଣିକି କାହିଁକି ପ୍ରତିବନ୍ଧକତାଚରଣ କଲେ ବୁଝି ପାରୁନାହିଁ । ଆମ୍ଭେମାନେ ଅନୁମାନ କରୁଁ ଯେ ଉକ୍ତ ସଭା କୃତକାର୍ଯ୍ୟ ହେଲେ ନାହିଁ ବୋଲି ବିଶ୍ୱାସ କରିଥିବେ କି ନାହିଁ ତାହାଙ୍କ ଦ୍ୱାରା ସାଧ୍ୟ ନହେଲା ତାହା ଆଉ କାହାର ଦ୍ୱାରା ସାଧ୍ୟ ହୋଇ ନପାରେ ଅଥବା ଏ କଳ୍ପନାଟି ତାଙ୍କର ପୂର୍ବରୁ ଥିଲା ଯେଣି ଏକା ତାହାଙ୍କରିବେ ଆଉ କାହାର ଦ୍ୱାରା ସେକାର୍ଯ୍ୟ ହେବାକୁ ସୁଖ ପାଉନଥିବାରୁ ଯେମନ୍ତ ନହୁଏ ସେଥିର ଚେଷ୍ଟା କରୁଥିଲେ । ଯାହାହେଉ ଶାଖା ସଭାସ୍ଥାପନ ହେବାରୁ କୂଟକଳ୍ପନା ବ୍ୟର୍ଥ ହୋଇଅଛି । ଏଥର ଦେବେ ଶାଖାସଭାର କାର୍ଯ୍ୟ ଉତ୍ତମରୂପେ

ଚଳଇ, ତେବେ ପ୍ରଥମ କଳନା ସଫଳ ହେବ ନୋହିଲେ କଟକ ସୋସାଇଟୀକୁ ବୋଲିବାକୁ ହେବ କି ଯାହା ତାହାଙ୍କର ଅସାଧ୍ୟ ତାହା ଏଠାରେ ଆଉ କାହାରି କରିବାର କ୍ଷମତା ନାହିଁ ।

( ୫ମ ଭାଗ, ୨୭।୧୧।୧୮୭୦, ସଂଖ୍ୟା ୪୭ )

୨୨୫ । କଟକ ସୋସାଇଟୀ ।

ଗତ ବୁଧବାର ରାତ୍ରି ୮ଘଣ୍ଟା କମ୍ପାନିଙ୍କ ଯନ୍ତ୍ରାଳୟରେ କଟକ ସୋସାଇଟୀର ସଭା ହୋଇଥିଲା । ଏଥିରେ ୬ଜଣ ଇଂରାଜ ଓ ପ୍ରାୟ ୨୨ଜଣ ଦେଶୀୟ ବ୍ୟକ୍ତି ଉପସ୍ଥିତ ହୋଇଥିଲେ । ଇଂରାଜଙ୍କ ମଧ୍ୟରେ କମିଶନର, ଡାକ୍ତର ସୁଲିସର ଗ୍ରେବସ ଓ ବାବୁକ ମାଷ୍ଟର କାମ୍ବେଲ ସାହେବ ଓ ଦେଶୀୟ ସମ୍ପ୍ରଦାୟ ମଧ୍ୟରେ ଉତ୍କଳାଭିଳାଷିଣୀ ସଭାର ସଭ୍ୟ ୧୪ଜଣ ଓ ଅବଶିଷ୍ଟ ସୋସାଇଟୀର ସଭ୍ୟ । ଜଳ ସେଚନ ବା ଜଳମୁକ୍ତ କରିବା ଦ୍ୱାରା ଭୂମିର ଉନ୍ନତି ସାଧନ ନିମିତ୍ତ ଯେଉଁ ଆଇନର ପାଣ୍ଡୁଲିପି ପ୍ରକାଶ ହୋଇଅଛି ତାହା ବିଚାର କରିବାର ଏଥର ଉଦ୍ଦେଶ୍ୟ ଥିଲା ଓ ସେଥି ବିଷୟରେ ପ୍ରାୟ ରାତ୍ରି ୧୧ଘଣ୍ଟା ବାଜିଲା । ଏ କାର୍ଯ୍ୟ ଶେଷହେବା ଉତ୍ତାରୁ ଉତ୍କଳାଭିଳାଷିଣୀ ଓ ସୋସାଇଟୀକୁ ଏକତ୍ର କରିବାର ଉଦ୍ୟମ ହେଲା ଓ ତହିଁପାଇଁ ଧାର୍ଯ୍ୟହେଲା ଯେ ଦୁଇ ସଭାର ଦୁଇଜଣ ଲେଖାଏଁ ସଭ୍ୟ ଏକତ୍ରରେ ବସି କିରୂପେ ମେଳ ହେବ ତହିଁର ନିୟମମାନ ସ୍ଥିର କରିବେ । ଆମ୍ଭେମାନେ ଭରସା କରୁଁ ଯେ ଦୁଇସଭା ମିଳିଯାଉ କାରଣ ସୋସାଇଟୀ ସ୍ୱୟଂ ସଭାର ଉଦ୍ୟମକର ଛନ୍ଦବନ୍ଧ ବିଜ୍ଞାପନ ଦେଇ ସୁଦ୍ଧା ତେବେ ଆପଣା ସଭ୍ୟମଣ୍ଡଳୀରେ ଦେଶୀୟ ଓ ବିଦେଶୀୟ ମିଶି ୨୦ଜଣ ସଭ୍ୟ ଏକତ୍ରିତ କରିପାରିଲେ ନାହିଁ ତେବେ ଏକାକୀ କିରୂପେ ଏସଭାର କାର୍ଯ୍ୟ ଚଳିବ ।

୨୨୬ । ସାମାଜିକ ପ୍ରତିବନ୍ଧକତା ।

ଆଜି ଦିବସ ଯେତିକାଳେ ଅମ୍ଭେମାନେ ଖଣ୍ଡିଏ ପ୍ରେରିତ ପତ୍ର ପ୍ରକାଶ କଲୁଁ । ତହିଁରେ ଲେଖକ କରଣମାନଙ୍କ ବୈବାହିକ ନିୟମପ୍ରତି କେତେ ଆପତ୍ତି ପ୍ରଦର୍ଶନ କରି ତହିଁର ଖଣ୍ଡନ ପ୍ରାର୍ଥନା କରିଅଛନ୍ତି । ବିବାହର ବ୍ୟୟ ଲାଘବ, ବିବାହାନ୍ତେ କନ୍ୟାକୁ ପିତା ଗୃହକୁ ଆଣିବା ଓ ସ୍ତ୍ରୀକୁ ସଙ୍ଗେ ନେଇ ସ୍ୱାମୀର ବିଦେଶ ବାସକରିବା ଏହି ତିନି କଥାର ସୁଯୋଗକରିବା ଏଥର ଉଦ୍ଦେଶ୍ୟ ଅଟଇ । ଆମ୍ଭେମାନେ ବୋଧକରୁଁ ଯେ ଏ ୩ ନୋଟି ବିଷୟ ଅତି ପ୍ରୟୋଜନୀୟ ଓ ଏହାରୁ ନିୟମରେ ବର୍ତ୍ତମାନ ଯେ ସମସ୍ତ ଦୋଷ ଅଛି ତାହା ଦୂରୀକୃତ ହେବାର ଉଚିତ । ଲେଖକ ଯେତେ ଦୋଷ ଦେଖାଇ ଅଛନ୍ତି

ସେ ସମସ୍ତ ଆମ୍ଭମାନଙ୍କର ମନୋମତ ବୋଲି ବୋଲୁ ନାହୁଁ । ବାସ୍ତବରେ ବିବାହ ବିଧାନ ଆମ୍ଭମାନଙ୍କୁ ଭଲ ଜଣା ପଡ଼ୁନାହିଁ । ମାତ୍ର ଆମ୍ଭମାନଙ୍କର ବିଶ୍ୱାସ ଏହି ଯେ ପତ୍ର ପ୍ରେରକଙ୍କ ଲିଖିତ ଉକ୍ତ ବିଷୟରେ ଅନେକ ଦୋଷ ଅଛି ଓ ସେସବୁ ଖଣ୍ଡନ ପକ୍ଷରେ ଯେବେ ଅବଶ୍ୟ କର୍ତ୍ତାମାନେ ଚେଷ୍ଟାକରନ୍ତି ତେବେ ସାଧାରଣ ଉପକାରର ସମ୍ଭାବନା । ଉତ୍କଳୋନ୍ନତିବିଧାୟିନୀ ସଭାକୁ ପତ୍ର ପ୍ରେରକ ସ୍ୱୟଂ ଅନୁରୋଧ କରିଅଛନ୍ତି ଓ ଆମ୍ଭେମାନେ ମଧ୍ୟ ଆଶା କରୁଁ ଯେ ଉକ୍ତ ସଭା ଏ ବିଷୟରେ ପ୍ରଚଳିତ ସାମାଜିକ ନିୟମ ସଂଶୋଧନ ପକ୍ଷରେ ଯତ୍ନବାନ ହେଉନ୍ତୁ । ପଶ୍ଚିମରେ ରାଜପୁତ୍ରମାନଙ୍କର କନ୍ୟା ବିବାହ ନିୟମ ସଂଶୋଧନ ବିଷୟରେ ସଭା ହୋଇ ଅନେକ ମଙ୍ଗଳ ହୋଇଅଛି । ଏଠାରେ ସେରୂପ କାର୍ଯ୍ୟ ସଭାଦ୍ୱାରା ନିର୍ବାହ ହେଲେ କି ଦୋଷ ଅଛି ?

## ସାପ୍ତାହିକ ସଂବାଦ

୧୭୭ । ଅଦାଲତ କଚେରୀ ସମ୍ମୁଖସ୍ଥ ପୁଷ୍କରିଣୀରେ ଜଳ କାଳୁ ହୋଇ ପଚି ଏମନ୍ତ ଦୁର୍ଗନ୍ଧ ହୋଇଅଛି ଯେ ତାହା ପାର୍ଶ୍ୱ ଦେଇ ଚାଲିଯିବାର କଷ୍ଟ । ଉତ୍ତର ପଶ୍ଚିମ ବତାସଦ୍ୱାରା ପୂର୍ବପାର୍ଶ୍ୱ ସଡ଼କରେ ଅତିଶୟ ଦୁର୍ଗନ୍ଧ । ଟାଉନ କମିଟିଙ୍କ ଓଭରସିଅର କଣ କହୁଅଛନ୍ତି ଯେ ଅବଧି ତାହା ନିବାରଣ କରିବାର କୌଣସି ଉପାୟ ହୋଇନାହିଁ । ପୁରବାସିଙ୍କ ସ୍ୱାସ୍ଥ୍ୟ ପ୍ରତି ଏହା କେଡ଼େ ଅନିଷ୍ଟକର ତାହା କି ହାକିମମାନେ ଜାଣି ପାରୁନାହାନ୍ତି ?

୧୭୮ । ପ୍ରେରିତ ପତ୍ର ।

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ ମହୋଦୟ
ସମୀପେଷୁ ।

ନିବେଦନ ମିଦଂ,

ମହାଶୟ— ଅଧୁନାତନ ଇଂରାଜମାନଙ୍କ ଶୁଭାଗମନ ଓ ସହବାସ ସହକାରେ ନାନାଦେଶରେ ସଭ୍ୟତାର ଉନ୍ନତି ହେବାର ଦେଖାଯାଉଅଛି । ଏବଂ ସେହି ୨ ଦେଶରେ ସଭ୍ୟତା ଓ ସାମାଜିକ ଶ୍ରୀବୃଦ୍ଧି ହେବାର ସମ୍ବନ୍ଧରେ ସହସ୍ର ୨ ପ୍ରମାଣ ପ୍ରାପ୍ତ ହେଉଅଛି । ଏତଦ୍ଦେଶରେ କୌଣସି ପ୍ରକାର ଉନ୍ନତି ହେବାର ଦେଖାଯାଉ ନାହିଁ, ତାହାର କାରଣ କି ? ଜଗଦୀଶ୍ୱର କି ଏହି ଦେଶରେ କୃପା କଟାକ୍ଷ ନିକ୍ଷେପ କରିବା ବିଷୟରେ କୃପଣତା ଅବଲମ୍ବନ କରିଅଛନ୍ତି ? ଆମ୍ଭେମାନେ ଅନୁମାନ କରୁଁ ଯେ କେତେକ ଦୋଷାଗୁଣ ଏଦେଶର ଅନୁନ୍ନତିର ମୂଳକାରଣ ହୋଇଅଛି । ଆମ୍ଭମାନଙ୍କ ମନରେ କେତେକ

କାଳସ୍ୟ ଉଦୟ ହେବାର ଆଶେ ତାହା ପାଠକମାନଙ୍କର ଅବଗତି ନିମିତ୍ତ ନିମ୍ନରେ ପ୍ରକାଶ କରୁଅଛୁଁ ।

ଦେଶାଚାର କାହାକୁ କହନ୍ତି ? ଆମ୍ଭେ ଶାସ୍ତ୍ର ବିହିତ ଆଚାରକୁ ସଦାଚାର ଓ ଶାସ୍ତ୍ର ନିଷିଦ୍ଧ ଆଚାରକୁ କଦାଚାର କହୁଁ । ଏତାଦୃଶ ଆମ୍ଭର କୌଣସି ଦେଶରେ ପାରମ୍ପର୍ଯ୍ୟ ଉପରେ ପ୍ରଚଳିତ ହେଲେ ତାହାକୁ ଦେଶାଚାର ବୋଲୁଁ । ଶାସ୍ତ୍ର ବିହିତ ଆଚାର ଆମ୍ଭମାନଙ୍କ ମଙ୍ଗଳ ନିମିତ୍ତ ବିହିତ ହୋଇଅଛି । ଏବଂ ତାହା ସାଧ୍ୟାନୁସାରେ ପ୍ରତିପାଳିବା ଆମ୍ଭମାନଙ୍କର ସର୍ବତୋଭାବେ ବିଧେୟ । କିନ୍ତୁ ବୁଦ୍ଧିମାନ ବ୍ୟକ୍ତିମାନେ ଏହା ଅବଶ୍ୟ ସ୍ୱୀକାର କରିବେ ଯେ କୌଣସି ଦୁର୍ଦ୍ଦାନ୍ତ ନରପତିଙ୍କର ରାଜ୍ୟ ଶାସନ ବା ସମାଜର ଉତ୍ପାତ ଅବା ଅନ୍ୟ କୌଣସି ଘଟନା ଅବଲମ୍ବନ ପୂର୍ବକ କିଛିକାଳ ଚଳିଗଲେ କଦାଚାରକୁ ମଧ୍ୟ ଦେଶାଚାର ମଧ୍ୟରେ ପରିଗଣିତ କରି ତାହାର ଅଧୀନତାକୁ ଲୋକେ ମସ୍ତକୋପରି ବହନ କରୁଅଛନ୍ତି । ଉପର୍ଯ୍ୟୁକ୍ତ ସମସ୍ତ ଲକ୍ଷଣରେ ତାଦୃଶ କଦାଚାରର ଅଧୀନ ହୋଇ ବୁଦ୍ଧିଜୀବ ନରନାମର ଗୌରବ ନାଶକରି ଦେଶ ହିତୈଷୀ ଲୋକଙ୍କର କି କର୍ତ୍ତବ୍ୟ ?

ଏରୂପ କଦାଚାର ଜନିତ ଯେ କେତେ ଅନିଷ୍ଟ ଘଟୁଅଛି ତାହା ବର୍ଣ୍ଣନାତୀତ । ତିଳାଧିର ବୈବାହିକାଦି କେତେକ କଦାଚାର ମୂଳକ ଦୁଃଖର ଆତିଶଯ୍ୟ ହେତୁରେ କେତେକ ଲୋକମାନଙ୍କୁ ଉତ୍ତମର୍ଣ୍ଣର ଋଣରୂପ କରାଳ କାଳ ମୁଖ ବ୍ୟାଘ୍ରକର ସର୍ବସ୍ୱ ଉଦରସାତ୍ କରୁଅଛି । କେତେକ ଲୋକ ଉକ୍ତ କାଳମୁଖର ପରିହାସ ନପାଇ ଅବସାନରେ ବାସଗୃହରେ ଅବସ୍ଥିତ କରି ଶମନାଗାର ଗମନ ଯୋଗ୍ୟ ପଥର ପଥିକ ହେଉଅଛନ୍ତି । କୌଣସି ୨ କଦାଚାରର ବଶୀଭୂତ ହୋଇ ଏତଦ୍ଦେଶୀୟ ଲୋକମାନେ ଭିନ୍ନ ଦେଶୀୟ ଲୋକମାନଙ୍କର ଦୁର୍ଗତି ଦେଖିବାରେ କୁଣ୍ଠିତ ହେଉନାହାନ୍ତି । କେହିବା ଦେଶାଚାରର ଦାସ ହୋଇ ରାଜକୀୟ କର୍ମର ଭାର ଗ୍ରହଣକରି ସ୍ୱେଚ୍ଛାକ୍ରମେ ବିଦେଶ ଗମନକରି ପୂର୍ଣ୍ଣ ସମ୍ପାଦନରୁ ବଞ୍ଚିତ ହୋଉଅଛନ୍ତି ।

ମହିଳାମାନେ ପିତାଦିଙ୍କର ନିରର୍ଥକତା ହେତୁରୁ ସ୍ୱର୍ଗାଧିକ ଜନନୀ ଓ ଜନ୍ମଭୂମି ଦେଖିବାରୁ ବଞ୍ଚିତ ହେଉଅଛନ୍ତି । ଇତ୍ୟାଦି କେତେ ଅନିଷ୍ଟ ଯେ ହେଉଅଛି ତାହା କିଏ କହିପାରେ ?

କିନ୍ତୁ ଏମାନ କି ଅନିବାର୍ଯ୍ୟ ? ତାହା ନୁହେଁ, ଚେଷ୍ଟାକଲେ ଏମାନ ଶୀଘ୍ର ଦୂରୀକୃତ ହୋଇପାରେ । କିନ୍ତୁ କିଏ ଚେଷ୍ଟା କରିବ ? ଦୁଇ ଏକଲୋକଦ୍ୱାରା କି ଏହା ହୋଇପାରେ ? କି ସ୍ୱଦେଶୀୟ ଲୋକଙ୍କ ଚେଷ୍ଟାରେ ଏହା ସମ୍ପାଦିତ ହେବାର ସମ୍ଭାବନା

ଅଛି ? ତାହା ନୁହେ । ଏତଦ୍ଦେଶୀୟ ଲୋକଙ୍କ ଦ୍ୱାରା ପ୍ରବର୍ତ୍ତିତ କୌଣସି ସଭାଦ୍ୱାରା ଏମାନ ହୋଇପାରେ । ଏରୂପ ସଭା କି ଏଦେଶରେ ନାହିଁ ? କାହିଁକି ନଥାନ୍ତା, ଏରୂପ ସଭା ଗୋଟିଏ ଏନଗରରେ ଅଛି । ତାହାର ନାମ ଉତ୍କଳୋନ୍ନତିସିଦ୍ଧି । କିନ୍ତୁ ଦୁଃଖର ବିଷୟ ଯେ ସାମାଜିକ ନିୟମ ସମାଲୋଚନା କରିବା ଏସଭାର ଉଦ୍ଦେଶ୍ୟ ଥିବା ପ୍ରତ୍ୟକ୍ଷେ ଏପର୍ଯ୍ୟନ୍ତ ଏସଭା ଦ୍ୱାରା ସମାଜର କୌଣସି ଉନ୍ନତି ହେବାର ଦେଖାଯାଉ ନାହିଁ, କିନ୍ତୁ ଆମ୍ଭେ ଭରସାକରୁଁ ଯେ ନିମ୍ନଲିଖିତ କେତେକ ବିଷୟର ସମାଲୋଚନା କରି ଏବଂ ତଦ୍ ବିଷୟରେ ଏଦେଶୀୟ ବ୍ରାହ୍ମଣ ଓ କରଣ ମଣ୍ଡଳୀଙ୍କର ମତ ଗ୍ରହଣକରି ତହିଁ ମଧ୍ୟରୁ ଯେ ଦେଶାଚାରମାନ ପରିବର୍ତ୍ତନ କରିବା ଆବଶ୍ୟକ ବୋଧହୁଏ ତାହା କରିବା ବିଷୟରେ ସାଧ୍ୟାନୁସାରେ ଚେଷ୍ଟାକରି ଦେଶର ଶ୍ରୀବୃଦ୍ଧି ଓ ଆପଣା ଉଦ୍ଦେଶ୍ୟ ସଫଳ କରିବେ । ଇତି

## ପ୍ରଶ୍ନାବଳୀ ।

୧ । ଉତ୍କଳ ଦେଶର ଲୋକମାନେ ଯେରୂପ ଅର୍ଥହୀନ ତାହା କାହାରି ଅବିଦିତ ନାହିଁ । ଅପରିମିତ ବ୍ୟୟ ତାହାର ପ୍ରଧାନ କାରଣ । ଏମନ୍ତେ ବିବାହାଦି ଉପଲକ୍ଷରେ ବାଣ ଫୁଲ ପ୍ରଭୃତିରେ ଅନର୍ଥକ ଗୁଡ଼ାଏ ବ୍ୟୟ କରିବା କି ସେମାନଙ୍କ ପକ୍ଷରେ ବିଧେୟ ? ଏପ୍ରଥା ରହିତ କରି ଦେଲେ ବିବାହ କର୍ମ କରିବାକୁ ହେଲେ ମଣ ଲଜ୍ଜାରୁ କି ଚଳିବ ନାହିଁ ?

୨ । ବୈଦେଶିକ ବସ୍ତ୍ରପ୍ରତି ସହଣ ଲୁଗା କେତେ ଶସ୍ତା ତାହା ସମସ୍ତେ ଜାଣନ୍ତି । ଦୁଃଖର ବିଷୟ ଏହିପରି ବିବାହାଦି କ୍ରିୟାରେ ଯେ ବସ୍ତ୍ର ବ୍ୟବହାର ହୁଅନ୍ତି ତାହା କେବଳ ଦେଶୀ କି ସହଣ ବସ୍ତ୍ର ବ୍ୟବହାର କରିବା ପକ୍ଷରେ କି ଆପତ୍ତି ଅଛି ?

୩ । ବିବାହ ଓ ଅଶୌଚାଦି କ୍ରିୟା ଉପଲକ୍ଷରେ ଆତ୍ମୀୟ ଲୋକମାନଙ୍କୁ "ବେଭାର" ଦିଅନ୍ତି । "ବେଭାର" କାହିଁକି ଦିଅନ୍ତି ? ସେମାନେ ଯେଉଁ ବେଭାର ଦିଅନ୍ତି କ୍ରିୟାକର୍ତ୍ତାଙ୍କୁ ଫେରନ୍ତା ଦେଇବାର ସ୍ୱରୂପ ସେମାନଙ୍କୁ ତହିଁ ପ୍ରତି ଅଧିକ ଦେବା କେତେକ ସ୍ଥାନରେ ଚଳିଅଛି । ଫେରନ୍ତା ବେଭାର ଦେବା ପ୍ରଥା ଉଚ୍ଚଜାତିମାନଙ୍କରେ ଚଳନ ନାହିଁ । ଏପ୍ରଥା ରହିତ କରିବାପକ୍ଷରେ କି ଆପତ୍ତି ହୋଇପାରେ ? ଓଡ଼ିଶାର ଏକ ସ୍ଥାନରେ ଯଦି ଏରୂପ ଅନିଷ୍ଟକର ପ୍ରଥା ପ୍ରଚଳିତ ନାହିଁ ଅନ୍ୟସ୍ଥାନରେ କାହିଁକି ଚଳିବ ? କ୍ରିୟାକର୍ତ୍ତା ଆବଶ୍ୟକୀୟ ବ୍ୟୟକରି ପ୍ରାୟ ଅର୍ଥହୀନ ହୋଇଥାଏ । କହିଁ ଘାରେ ଲୁଣ ଦେବା କି ଆତ୍ମୀୟ ଲୋକଙ୍କର କର୍ତ୍ତବ୍ୟ ? ଆତ୍ମୀୟ ଲୋକଙ୍କୁ ଯେ ସମୟରେ ସାହାଯ୍ୟ କରିବେ କି ଅଧିକ ଯାତନା ଦେବେ ?

୪। ବିବାହରେ ଯେ ଯୌତୁକ ଦିଆଯାଏ ତହିଁ ମଧ୍ୟରେ ପିତ୍ତଳ କଂସା ପ୍ରଭୃତି କେତେକ ଅପ୍ରୟୋଜନୀୟ ପଦାର୍ଥ ଦେଇ ବୃଥା ବ୍ୟୟ କରିବାର କି ଆବଶ୍ୟକ ?

୫। ବିବାହ ସମୟରେ କନ୍ୟାର କର୍ତ୍ତାପକ୍ଷକୁ ବରଯାତ୍ରୀ ସାମନ୍ତମାନଙ୍କୁ "ବେହାର" "ଚୌକି ବିଦାକି" ଏମାନ ଦେବାକୁ ହୁଏ । "ଯେ ଆଦେଶ କନ୍ୟା ବା ଜାମାତାକୁ ଯାହା ଇଚ୍ଛା ତାହା ଦେବେ" କିନ୍ତୁ ବରଯାତ୍ରୀମାନଙ୍କୁ ଦେବାକୁ ସେ କାହିଁକି ବାଧ୍ୟ ହେବ ?

୬। ଏଦେଶ କରଣମାନଙ୍କ ମଧ୍ୟରେ ବିବାହାନନ୍ତର କନ୍ୟା ଯେତେଥର ପିତୃଗୃହ ଗମନ କରେ ପ୍ରଥମଥର ପର ସମ୍ଭାର ଓ ଆଡ଼ମ୍ବରରେ ତାକୁ ବିଦାୟ ଦେବାକୁ ହୁଏ । ଏ କାରଣରୁ ବିବାହ ପରେ କନ୍ୟା ଆଉ ଜନ୍ମଭୂମି ଜନନୀ ପ୍ରଭୃତିଙ୍କର ମୁଖାବଲୋକନ କରିପାରେ ନାହିଁ, ଏହା କି ଆକ୍ଷେପର ବିଷୟ ନୁହେଁ ? ଏପ୍ରଥା କାହିଁକି ନିବୃତ୍ତ କରା ନଯିବ ? ଏପରି ପ୍ରଥା କୌଣସି ଦେଶରେ ନାହିଁ, ଏଦେଶରେ ମଧ୍ୟ ବ୍ରାହ୍ମଣ ଓ ଅନ୍ୟ ବର୍ଣ୍ଣଙ୍କ ମଧ୍ୟରେ ନାହିଁ, ତେବେ କରଣ କି ଦୋଷ କଲେ ?

୭। ପୂର୍ବ କାଳରେ ମୁସଲମାନ ଓ ମରହଟ୍ଟା ରାଜପୁରୁଷମାନଙ୍କ ଦୌରାତ୍ମ୍ୟ ହେତୁରୁ ସହରକୁ ପରିବାର ଆଣିବା ପ୍ରଥା ରହିତ ହୋଇଥିଲା କିନ୍ତୁ ଏବେ ସେ ସମୟ ଗଲାଣି ଓ ସେ ରାଜପୁରୁଷମାନେ ମଧ୍ୟ ଗଲେଣି । ଏବେ ସହରକୁ ପରିବାର ଆଣିବା ପକ୍ଷରେ କି ଆପତ୍ତି ହୋଇପାରେ ? ଏପରି ଭ୍ରମମୂଳକ ଦେଶାଚାରର ଅନୁଗତ ହୋଇ ଧର୍ମ ପରିତ୍ୟାଗ କରିବା କି ଉଚିତ ? ଧର୍ମପତ୍ନୀଠାରୁ ଅନ୍ତର ହେବା କି ଶାସ୍ତ୍ର ବିରୁଦ୍ଧ କର୍ମ ନୁହେଁ ?

୮। ଶାସ୍ତ୍ରାନୁସାରେ ଦିବସରେ ବିବାହ କରିବା ଉତ୍ତମ କି ରାତ୍ରିରେ କରିବା ଉଚିତ ? ଯଦି ରାତ୍ରି ଓ ଦିବସ ବିବାହ ଶାସ୍ତ୍ରସିଦ୍ଧ ହୁଏ ତେବେ କେଉଁ ସମୟରେ କରିବା କର୍ତ୍ତବ୍ୟ ? ବ୍ରାହ୍ମଣମାନଙ୍କର ଦିବସ ବିବାହ ହୁଏ, କରଣମାନଙ୍କର କାହିଁକି ଦିବସରେ ନହୋଇ ରାତ୍ରିରେ ବିବାହ ହେବ ?

୭।୧୨।୭୦

କସ୍ୟଚିତ୍

୪ । ବିବାହରେ ଯେ ଯୌତୁକ ଦିଆଯାଏ ତହିଁ ମଧ୍ୟରେ ପିଢ଼ୁଲା ଚେଉ ପ୍ରଭୃତି କେତେକ ଅପ୍ରୟୋଜନୀୟ ପଦାର୍ଥ ଦେଇ ବୃଥା ବ୍ୟୟ କରିବାର କି ଆବଶ୍ୟକ ?

୫ । ବିବାହ ସମୟରେ କନ୍ୟାର କର୍ତ୍ତାପକ୍ଷକୁ ବରଜାତି ସାମନ୍ତମାନଙ୍କୁ "ବେହାର" "ଗୌଡ଼ ବିଦାଙ୍କି" ଏମାନ ଦେବାକୁ ହୁଏ । "ସେ ଆପଣା କନ୍ୟା ବା ଜାମାତାକୁ ଯାହା ଇଚ୍ଛା ତାହା ଦେଇପାରେ" କିନ୍ତୁ ବରଜାତିମାନଙ୍କୁ ଦେବାକୁ ସେ କାହିଁକି ବାଧ୍ୟ ହେବ ?

୬ । ଏଦେଶ କରଣମାନଙ୍କ ମଧ୍ୟରେ ବିବାହାନନ୍ତର କନ୍ୟା ଯେତେଥର ପିତୃଗୃହ ଗମନ କରେ ପ୍ରଥମଥର ପରି ସମ୍ଭାର ଓ ଆଟୋପରେ ତାକୁ ବିଦାୟ ଦେବାକୁ ହୁଏ । ଏ କାରଣରୁ ବିବାହ ପରେ କନ୍ୟା ଆଉ ଜନ୍ମଭୂମି ଜନନୀ ପ୍ରଭୃତିଙ୍କର ମୁଖାବଲୋକନ କରିପାରେ ନାହିଁ, ଏହା କି ଆକ୍ଷେପର ବିଷୟ ନୁହେ ? ଏପ୍ରଥା କାହିଁକି ରହିତ କରା ନଯିବ ? ଏରୂପ ପ୍ରଥା କୌଣସି ଦେଶରେ ନାହିଁ, ଏଦେଶରେ ମଧ୍ୟ ବ୍ରାହ୍ମଣ ଓ ଅନ୍ୟ ବର୍ଣ୍ଣଙ୍କ ମଧ୍ୟରେ ନାହିଁ, ତେବେ କରଣ କି ଦୋଷ କଲେ ?

୭ । ପୂର୍ବ କାଳରେ ମୁସଲମାନ ଓ ମରହଟ୍ଟା ରାଜପୁରୁଷମାନଙ୍କ ଦୌରାତ୍ମ୍ୟ ହେତୁରୁ ଶ୍ୱଶୁରକୁ ପରିବାର ଆଣିବା ପ୍ରଥା ରହିତ ହୋଇଥିଲା କିନ୍ତୁ ଏବେ ସେ ସମୟ ଗଲାଣି ଓ ସେ ରାଜପୁରୁଷମାନେ ମଧ୍ୟ ଗଲେଣି । ଏବେ ଶ୍ୱଶୁରରୁ ପରିବାର ଆଣିବା ପକ୍ଷରେ କି ଆପତ୍ତି ହୋଇପାରେ ? ଏରୂପ ଭ୍ରମମୂଳକ ଦେଶାଚାରର ଅନୁଗତ ହୋଇ ଧର୍ମ ପରିତ୍ୟାଗ କରିବା କି ଉଚିତ ? ଧର୍ମପତ୍ନୀଠାରୁ ଅନ୍ତର ହେବା କି ଶାସ୍ତ୍ର ବିରୁଦ୍ଧ କର୍ମ ନୁହେଁ ?

୮ । ଶାସ୍ତ୍ରାନୁସାରେ ଦିବସରେ ବିବାହ କରିବା ଉତ୍ତମ କି ରାତ୍ରିରେ କରିବା ଉତ୍ତମ ? ଯଦି ରାତ୍ରି ଓ ଦିବସ ବିବାହ ଶାସ୍ତ୍ରସିଦ୍ଧ ହୁଏ ତେବେ କେଉଁ ସମୟରେ କରିବା ଉଚିତ ? ବ୍ରାହ୍ମଣମାନଙ୍କର ଦିବସ ବିବାହ ହୁଏ, କରଣମାନଙ୍କର କାହିଁକି ଦିବସରେ ନ ହୋଇ ରାତିରେ ବିବାହ ହେବ ?

୭ । ୧୧ । ୭୦

କସ୍ୟଚିତ୍

( ୫ମ ଭାଗ, ୧୭ । ୧୨ । ୧୮୭୦, ସଂଖ୍ୟା ୪୯ )

୨୨୯ । କଟକ ସୋସାଇଟୀ ।

ଆମ୍ଭେମାନେ ପୂର୍ବ ସପ୍ତାହରେ ବ୍ୟକ୍ତ କରିଥିଲୁଁ ଯେ କଟକ ସୋସାଇଟୀ ଓ ଉତ୍କଳୋନ୍ନତିବିଧିନୀ ସଭା ଶୀଘ୍ର କିରୂପେ ହେବ ତହିଁର ନିୟମ ସ୍ଥିର କରିବା ପାଇଁ ଦୁଇ ସଭାର ଦୁଇଜଣ ଲେଖାଏଁ ସଭ୍ୟ ନିଯୁକ୍ତ ହୋଇଅଛନ୍ତି । ଗତ ସପ୍ତାହରେ ଏ ସଭ୍ୟ-ମାନେ ଏକତ୍ରିତ ହୋଇ ଦୁଇସଭାର ମିଳନ ପକ୍ଷରେ ଏହା ଧାର୍ଯ୍ୟ କଲେ ଯେ କଟକ ସୋସାଇଟୀର ନାମ ଓଡ଼ିଶା ସୋସାଇଟୀ ହେବ ଓ ଉତ୍କଳଉନ୍ନତିବିଧିନୀ ଏହା ସଙ୍ଗରେ ମିଶିବ । ଉନ୍ନତିବିଧିନୀର ସଭାପତି ସୋସାଇଟୀର ସହକାରୀ ସଭାପତି ହେବେ ଏବଂ ଉନ୍ନତିବିଧିନୀ ସୋସାଇଟୀର ଏକ ଶାଖା ସ୍ୱରୂପ ଏହାଙ୍କ ଅଧୀନରେ ରହିବ । ସହକାରୀ ସଭାପତି ଏ ଶାଖାର ସମସ୍ତ କାର୍ଯ୍ୟର ଭାର ଗ୍ରହଣ କରିବେ । ଚେଦା ଇତ୍ୟାଦି ସକଳ ବିଷୟରେ ନିୟମ କରିବେ ଓ ହିନ୍ଦୁଧର୍ମ ଦେଶାଚାର ଇତ୍ୟାଦି ବିଷୟରେ ଏଥିରେ ତର୍କ ବିତର୍କ ହେବ, ସେଥିରେ କେହି ଇଉରୋପୀୟ ସଭ୍ୟ ହେବେନାହିଁ । ଏ ଶାଖାର ସଭ୍ୟମାନେ ସୋସାଇଟୀର ସାଧାରଣ ସଭାରେ ଉପସ୍ଥିତ ହୋଇ ମତ ଦେଇପାରିବେ ମାତ୍ର ସ୍ୱତନ୍ତ୍ର ସୋସାଇଟୀର ସଭ୍ୟ ନହେଲେ ବିନାମୂଲ୍ୟରେ ସମ୍ବାଦପତ୍ର ପାଇବେ ନାହିଁ କିମ୍ବା ପୁସ୍ତକା-ଳୟ ବ୍ୟବହାର କରିବାକୁ ଯୋଗ୍ୟ ନହେବେ ଓ ମଧ୍ୟ ସୋସାଇଟୀର କାର୍ଯ୍ୟନିର୍ବାହକ ସଭାର ସଭ୍ୟ ହୋଇପାରିବେ ନାହିଁ ।

ଏରୂପ ମିଳନର ତାତ୍ପର୍ଯ୍ୟ ଏତିକି ଜଣାଯାଏ ଯେ ସୋସାଇଟୀରେ କୌଣସି ବିଷୟର ତର୍କ ଉପସ୍ଥିତ ହେଲେ ଉନ୍ନତିବିଧିନୀର ସଭ୍ୟମାନେ ସେଠାରେ ବସି ମତ ଦେଇ ପାରିବେ । ମାତ୍ର ଏଥିପାଇଁ ମିଳନର କଣ ଆବଶ୍ୟକ ଥିଲା ଏହି ମର୍ମରେ ସୋସାଇଟୀ ଗୋଟିଏ ପ୍ରସ୍ତାବ ଲିପିବଦ୍ଧ କଲେତ ଏହି ଫଳ ହୁଅନ୍ତା । ବାସ୍ତବରେ ଏ ମିଳନ କାକୁଡ଼ି ମେଳପ୍ରାୟ ହେଲା । ବାହାରେ ଗୋଟାଏ ମାତ୍ର ଭିତରେ ଫାଳ ୨ । ଆମ୍ଭେମାନେ ଏ ମିଳନରେ କୌଣସି ଲାଭ ଦେଖୁନାହୁଁ । ସୋସାଇଟୀର ସଭାପତି କହି ଅଛନ୍ତି ଯେ ଉନ୍ନତିବିଧିନୀର କେବଳ ଦେଶୀୟଲୋକ ଅଛନ୍ତି । ସେମାନେ ସୋସାଇଟୀରେ ଯୋଗଦେଲେ ଏହାର ମାନ୍ୟ ବଢ଼ିବ ମାତ୍ର ଯେବେ ଏମାନେ ସୋସାଇଟୀର କାର୍ଯ୍ୟ-ନିର୍ବାହକ ସଭାରେ ରହିବାକୁ କ୍ଷମତା ପାଇଲେ ଓ ସେସବୁ ଇଂରାଜ ସଭ୍ୟଙ୍କ ତୁଲ୍ୟରେ ରହିଲା ତେବେ ସମୟରେ ଏମନ୍ତ ଘଟିପାରେ ଯେ ଉକ୍ତ ସଭ୍ୟମାନଙ୍କ ଯେଉଁମତ ସ୍ଥିର କରିବେ ତାହା ଦେଶୀୟ ଲୋକଙ୍କ ମତ ବୋଲି ଜଗତରେ ପ୍ରଚାର ହେବ । ସମ୍ପ୍ରତି ମଧ୍ୟ ଏହିରୂପ ଭ୍ରମ ହେଉଅଛି । ଉତ୍କଳ ହିତୈଷିଣୀର ସମ୍ପାଦକଙ୍କ ଜଣେ ଇଂରାଜ

ଓ ସେଥିରେ ଯେଉଁ ମତମାନ ପ୍ରଚାର ହୁଅଇ ତାହା ସର୍ବଦା ଦେଶୀୟ ଲୋକଙ୍କ ମତାନୁଯାୟୀ ନୁହଇ ମାତ୍ର ବିଦେଶୀୟ ଲୋକମାନେ କହନ୍ତି କି ଏଥିରେ ଲେଖାଥିବା ସମସ୍ତ କଥା ଦେଶୀୟ ଲୋକଙ୍କ ମନର ଭାବ ଅଟଇ । ଏଣୁକରି ଆମ୍ଭେମାନେ ବୋଧକରୁଁ ଯେ ଦେଶୀୟ ଲୋକ ଅଧିକ ପରିମାଣରେ ଏ ସୋସାଇଟୀର ସଭ୍ୟ ହେଲେ ଓ ଏମାନଙ୍କ ଠାରେ କାର୍ଯ୍ୟର ଭାର ଅର୍ପିତ ନହେଲେ ସୋସାଇଟୀର ଉନ୍ନତି ହେବାର ଆଶା ଅତ୍ୟଳ୍ପ ଦେଖାଯାଏ ।

ଦେଶୀୟ ଲୋକ କାହିଁକି ଏସଭାର ସଭ୍ୟ ହେଉନାହାନ୍ତି ଏପ୍ରଶ୍ନର ଆମ୍ଭେମାନେ ଏହି ଉତ୍ତର ଦେଇ ପାରୁଁ ଯେ ଅନେକ କାରଣରୁ ଏସଭା ଦେଶୀୟ ଲୋକମାନଙ୍କ ମନୋନୀତ ହୋଇନାହିଁ । ଏସଭା ଆଜିଯାଏ ଏମନ୍ତ କୌଣସି କାର୍ଯ୍ୟକରି ନାହାନ୍ତି କି ଯଦ୍ଦ୍ୱାରା ଦେଶୀୟ ଲୋକଙ୍କ ପ୍ରୀତିଭାଜନ ହେବେ । ପ୍ରଥମତଃ ଏସଭାର ୟୁରୋପୀୟ ସଭ୍ୟସଂଖ୍ୟା ଅଧିକ ଥିବାରୁ ଦେଶୀୟ ଲୋକେ ମିଶିବାକୁ ଅନିଚ୍ଛୁକ । ଦ୍ୱିତୀୟ ସଭ୍ୟ ହେଲେ ବହୁତ ଚାନ୍ଦା ଦେବାକୁ ପଡ଼ଇ । ତୃତୀୟ ସଭାର କାର୍ଯ୍ୟଭାର ବହୁଦର୍ଶୀ ଲୋକଙ୍କ ହସ୍ତେ ଅର୍ପିତ ହୋଇନାହିଁ । ଚତୁର୍ଥ ସଭା କୌଣସି ପ୍ରକୃତ ହିତକାର୍ଯ୍ୟର ଅନୁଷ୍ଠାନ ନକରି ଅନର୍ଥକ କେତେଗୁଡ଼ିଏ କାର୍ଯ୍ୟରେ ବ୍ୟସ୍ତଥାନ୍ତି । ଏହି ସମସ୍ତ ଏବଂ ଏହିପରି ଅନ୍ୟାନ୍ୟ କାରଣରୁ ସଭାରେ ଦେଶୀୟଲୋକେ ଯୁକ୍ତ ହେଉ ନାହାନ୍ତି । ଯେବେ ଏସଭା ଆପଣା କାର୍ଯ୍ୟକାରିତା ଦର୍ଶାଇଥାନ୍ତେ ତାହାହେଲେ ପୁରୁଷୋତ୍ତମବାସିମାନେ କି ପ୍ରଥମେ ସଭାର ଶାଖା ହୋଇ ପାରେ ତହିଁର ଅନ୍ତର ହୁଅନ୍ତେ ?

କଟକ ସୋସାଇଟୀର କାର୍ଯ୍ୟ ଯେ ଉତ୍ତମରୂପେ ଚଳୁନାହିଁ ତହିଁର ପରିଚୟ ଅନାୟାସରେ ପ୍ରାପ୍ତ ହେଉଅଛି । ଉତ୍କଳ ଭାଷାରେ ପୁସ୍ତକ ଅନୁବାଦ କରିବା ଏସଭାର ଗୋଟିଏ ମୁଖ୍ୟ ଉଦ୍ଦେଶ୍ୟ ଅଟେ । ମାତ୍ର ଆଜିଯାଏ ସଭାଦ୍ୱାରା ଖଣ୍ଡିଏ ପୁସ୍ତକ ହୋଇ ନାହିଁ । ବରଂ ଶୁଣା ଅଛି ଯେ ଏସଭାରୁ ଯେତେ ପୁସ୍ତକ ଉତ୍କଳ ପୁସ୍ତକ ପରୀକ୍ଷକ କମିଟୀରେ ଅର୍ପିତ ହୋଇଥିଲା ସେ ସମସ୍ତ ଅଗ୍ରାହ୍ୟ ହୋଇଅଛି । ପୁସ୍ତକାଳୟ ରଖିବା ଏମାନଙ୍କର ଆଉଗୋଟିଏ କାର୍ଯ୍ୟ ମାତ୍ର ତାହା ଦେଶୀୟ ଲୋକଙ୍କ ବ୍ୟବହାରରେ ଆସୁ ନାହିଁ ଓ ତାହାଙ୍କର ପୁସ୍ତକାଳୟ ଥାଇସୁଦ୍ଧା ଏନଗରରେ ପୁସ୍ତକାଳୟ ନଥିଲା ପ୍ରାୟ ବୋଧହୁଅଇ । ବିଦ୍ୟାଳୟ ଗୋଟିଏ ଏହାଙ୍କ ହସ୍ତରେ ଅଛି ମାତ୍ର ତଦ୍ଦ୍ୱାରା କି ବିଶେଷ ହିତ ସାଧନ ହେଉଅଛି ଜଣାନାହିଁ । ସାଧାରଣ ଚାନ୍ଦା ଓ ଗବର୍ଣ୍ଣମେଣ୍ଟ ସାହାଯ୍ୟରେ ଚଳୁଥିବା ଅନ୍ୟାନ୍ୟ ବିଦ୍ୟାଳୟ ଅପେକ୍ଷା ଏହାର ଅବସ୍ଥା ଭଲ ନୁହଇ ଓ ଯେରୂପ ଅଛି ସୋସାଇଟୀର କର୍ତ୍ତୃତ୍ୱ ବିନା ସେହିପରି ଅଥବା ତହିଁରୁ ଭଲରୂପେ ଚଳିପାରନ୍ତା । ସମ୍ବାଦ ପତ୍ର ଦେଶର ମଙ୍ଗଳକର କାର୍ଯ୍ୟ ଅଟଇ ସତ୍ୟ ମାତ୍ର ସୋସାଇଟୀଦ୍ୱାରା ଏଥିର ଅନୁଷ୍ଠାନ

ହୋଇ କି ଲାଭ ହେବ ଜଣାପଡୁନାହିଁ । ସମସ୍ତେ ଜାଣନ୍ତି ଯେ ସମ୍ବାଦ ପତ୍ର ଯେତେ
ଅଧିକ ପ୍ରଚୁର ହୁଏ ତେତେ ଉପକାର ଅଛି ଓ ପ୍ରଚୁର ହେବାର କଥା ପତ୍ରିକାର
ମୂଲ୍ୟ ଉପରେ ଅଧିକ ପରିମାଣରେ ନିର୍ଭର କରଇ ସୋସାଇଟୀ ଯେବେ ଅଳ୍ପ ମୂଲ୍ୟରେ
ପତ୍ରିକା ବିତରଣ କରି ପାରନ୍ତେ ତେବେ ତାହାଙ୍କର ଯଶୋଲାଭ ହୁଅନ୍ତା ଓ ଲୋକେ
ପରମୋପକୃତ ହୁଅନ୍ତେ ସନ୍ଦେହ ନାହିଁ । ମାତ୍ର ସୋସାଇଟୀ ଯେଉଁପ ମୂଲ୍ୟରେ ସମ୍ବାଦ
ପତ୍ର ପ୍ରଚାର କରୁଅଛନ୍ତି ସେ ଅନ୍ୟଲୋକ କେହି ମନେକଲେ ଚଳାଇ ପାରେ ତେବେ
ସୋସାଇଟୀର ପରିଶ୍ରମ କରିବାର କି ଫଳ ହେଲା ? କଲିକତାରେ ବାବୁ କେଶବଚନ୍ଦ୍ର
ଗୋଟିଏ ସଭା ସଂସ୍ଥାପନ କରିଅଛନ୍ତି ଓ ସେ ସଭାର ସୁଲଭସମାଚାର ନାମରେ ଖଣ୍ଡିଏ
ସାପ୍ତାହିକ ବଙ୍ଗଳା ପତ୍ରିକା ବାହାରି ଅଛି ଏହାର ମୂଲ୍ୟ ଖଣ୍ଡିକୁ ଏକପଇସା ଲେଖାଏଁ ।
ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ଏରୂପ ଅଳ୍ପମୂଲ୍ୟ ହେବାରୁ ପତ୍ରିକାର ବିକ୍ରୟ
ସଂଖ୍ୟା ସପ୍ତାହକୁ ବଢୁଅଛି । ପ୍ରଥମ ସପ୍ତାହରେ ଦୁଇହଜାର ଛପା ହୋଇଥିଲା ଦ୍ୱିତୀୟ
ସପ୍ତାହରେ ପାଞ୍ଚହଜାର ଖଣ୍ଡ ନିଅଣ୍ଟ ହେଲା ଓ ତୃତୀୟ ସପ୍ତାହରେ ଆଠହଜାର ଖଣ୍ଡ
ମୁଦ୍ରିତ ହୋଇ ଅନାୟାସରେ ବିକ୍ରୟ ହେଲା । ଏଥିରୁ ଯେବେ ଖଣ୍ଡେ କାଗଜକୁ
ତିନିଜଣ ଲେଖାଏଁ ପାଠକ କଳ୍ପନା କରାଯାଏ ଓ ଏହା କଦାଚ ଅଧିକ ନୁହଇ ତେବେ
ଉକ୍ତ ପତ୍ରିକା ଚୌବିଶ ହଜାର ଲୋକଙ୍କଦ୍ୱାରା ଉପକୃତ ହେଉଅଛନ୍ତି ବୋଲିବାକୁ ହେବ ।
ଏରୂପ କାର୍ଯ୍ୟରେ ଅଧିକାରିଙ୍କର କ୍ଷତି ହେଉଅଛି ସନ୍ଦେହ ନାହିଁ-ମାତ୍ର ଏକାକୀ କେହି
ଏତେବ୍ୟୟ କରି ନପାରିଲେ ସୁତରାଂ ସଭାଦ୍ୱାରା ଏରୂପ କାର୍ଯ୍ୟ ନିର୍ବାହ ହେବାର ଯୋଗ୍ୟ
ଅଟଇ । କଟକ ସୋସାଇଟୀର ଅର୍ଥ ସ୍ୱଚ୍ଛନ୍ଦତା ଏତେ ନୁହଇ ଯେ ଏମନ୍ତ ବ୍ୟାପାରରେ
ହସ୍ତକ୍ଷେପ ନକରି ପାରନ୍ତି ମାତ୍ର ସାମାନ୍ୟଲୋକ ଓ ସୋସାଇଟୀରେ କିଛିମାତ୍ର ଭେଦ
ନରହିଲେ ସଭାକୁ କାହିଁକି ଲୋକେ ଅଧିକ କରି ଦେବେ ?

ଆମ୍ଭେମାନେ କଟକ ସୋସାଇଟୀ ବିଷୟରେ ଏତେକଥା କହିଲୁ ବୋଲି
କେହି ୨ ମନେ କରିବେ ଯେ ସୋସାଇଟୀପ୍ରତି ଆମ୍ଭମାନଙ୍କର କୌଣସି ମନାନ୍ତର ଅଛି ।
ବାସ୍ତବରେ ସେରୂପ କିଛି ନୁହଇ । ସୋସାଇଟୀ କାର୍ଯ୍ୟ-ସୁଶୃଙ୍ଖଳାରୂପେ ଚଳିବାପାଇଁ
ଆଗାମୀ ତା ୨୨ରିଖରେ ବୃହତ୍ ସଭା ହେବ ସେ ସମୟରେ ସଭ୍ୟମାନେ ସବୁକଥା
ବିଚାର କରି ସୋସାଇଟୀକୁ ଦେଶର ଯଥାର୍ଥ ହିତ ସାଧକ କରିବା ଉଦ୍ଦେଶ୍ୟରେ
ଆପଣା ୨ ମତପ୍ରକାଶ କରିବେ ଏହିନିମନ୍ତେ ଆମ୍ଭେମାନେ ଏସମସ୍ତ କଥା ବ୍ୟକ୍ତ କଲୁଁ ।
ଭରସାକରୁଁ ଯେ ଆମ୍ଭମାନଙ୍କର ଉଦ୍ଦେଶ୍ୟର କେହି ଭ୍ରମାର୍ଥ ନକରି ହିତକର କାର୍ଯ୍ୟର
ଅନୁଷ୍ଠାନ କରିବେ ।

( ୪ର୍ଥ ଭାଗ, ୨୪ । ୧୨ । ୧୮୭୦, ସଂଖ୍ୟା ୫୦ )

୨୮୦ । ବାବୁ ନବୀନଚନ୍ଦ୍ର ଷଡ଼ଙ୍ଗୀ ।

ଅସ୍ମେମାନେ ଅତ୍ୟନ୍ତ ଦୁଃଖର ସହିତ ବାବୁ ନବୀନଚନ୍ଦ୍ରଙ୍କ ମୃତ୍ୟୁ ସମ୍ବାଦ ଲିପିବଦ୍ଧ କରୁଅଛୁଁ । ଗତ ଶନିବାର ରାତ୍ରି ଆଠଘଣ୍ଟା ସମୟରେ ଏ ଶୋକାବହ ଘଟନା ହୋଇ ଓ ତହିଁ ଦୁଇଦିନ ପୂର୍ବରୁ ଏକପ୍ରକାର କି ରୋଗ ଏହାଙ୍କ ଦେହରେ ପ୍ରବେଶ ହେଲା ଯେ ମଳ ମୂତ୍ର ଏକାବେଳକେ ବନ୍ଦ ହୋଇଗଲା । ଚିକିତ୍ସକର ଉପାୟ କାର୍ଯ୍ୟକାରୀ ନହେବାରୁ ବାବୁ ଆପଣ ବିଷୟ ବ୍ୟବସ୍ଥା କରିଦେଇ ସ୍ୱଚେତରେ ଦେହ ପରିତ୍ୟାଗ କଲେ । ଏହାଙ୍କ ବୟସ ବ୪୧ର୍ଷ ମାତ୍ର ହୋଇଥିଲା ।

ବାବୁ ନବୀନଚନ୍ଦ୍ରଙ୍କ ମୃତ୍ୟୁରେ ଓଡ଼ିଶାର ବିଶେଷ ଗୌରବହାନି ହୋଇଅଛି ବୋଲିବାକୁ ହେବ । ସାଧାରଣ ବ୍ୟାପାରରେ କୌଣସି ଖ୍ୟାତି ଲାଭ କରିଅଛନ୍ତି କି ନାହିଁ ଆମ୍ଭେମାନେ ତାହା କିଛି କହୁନାହୁଁ ମାତ୍ର ଇଂରାଜୀବିଦ୍ୟା ଉପାର୍ଜନ ବିଷୟରେ ସେ ଓଡ଼ିଶାର ଉତ୍କଳୀୟଙ୍କ ମଧ୍ୟରେ ପ୍ରଥମ ଗୁଣବନ୍ତ ଓ ଥିବା ବାଏ ସମସ୍ତଙ୍କଠାରୁ ଶ୍ରେଷ୍ଠ ଥିଲେ । ଇଂରାଜୀ ଭାଷା ତାହାଙ୍କର ମାତୃଭାଷା ପ୍ରାୟ ହୋଇଥିଲା ଓ ପୁସ୍ତକପାଠ ତାହାଙ୍କର ଏକମାତ୍ର କାର୍ଯ୍ୟଥିଲା । ତହିଁର ସାକ୍ଷ ସ୍ୱରୂପ ତାଙ୍କ ଗୃହର ଆଲମାରୀ ପୁସ୍ତକ ରହି- ଯାଇ ଅଛନ୍ତି ଏ ଭଳି ଆଉ କାହାର ସମ୍ପର୍କି ନାହିଁ । ଉତ୍କଳ ଭାଷାରେ କେତେଗୁଡ଼ିଏ ପୁସ୍ତକ ପ୍ରକାଶ କରି କେତେ ଉପକାର କରିଆଛନ୍ତି ଓ ଜଣ୍ଟର୍ଲ କାଲ କାଫୋଲେଜରେ ହେଡ଼ ବା ଅପର ବିଷୟରେ ହେଡ଼ ଲୋକଙ୍କ ସଙ୍ଗେ ସର୍ବଦା ଶିକ୍ଷା ଓ ମିଷ୍ଟଭାଷିତା- ଚରଣ କରିବାର ବହୁତ ଲୋକ ତାହାଙ୍କ ପାଇଁ ଝୁରୁ ଅଛନ୍ତି ।

( ୪ର୍ଥ ଭାଗ, ୨୪ । ୧୨ । ୧୮୭୦, ସଂଖ୍ୟା ୫୦ )

ସାପ୍ତାହିକ ସମ୍ବାଦ ।

୮୧ । ବାବୁ ନବୀନଚନ୍ଦ୍ର ଷଡ଼ଙ୍ଗୀଙ୍କର ମୃତ୍ୟୁ ହେବାର ଦାନ-ଓ-କାଷ୍ଟା ସାହେବ ଜ୍ଜେଠ ଅଦାଲତର ପ୍ରଧାନ କ୍ଲାର୍କପଦରେ ନିଯୁକ୍ତ ହୋଇଅଛନ୍ତି । ବଡ ଅଦାଲତର ଅନୁବାଦକ ପଦରେ ବାବୁ ବନମାଳୀ ସିଂହ ଓ ହେଡ କ୍ଲାର୍କ ପଦେ କେନ୍ଦ୍ରାପଡ଼ା ସବ- ଡିଭିଜନର କ୍ଲାର୍କବାବୁ ହରେକୃଷ୍ଣ ଦାସ ନିଯୁକ୍ତ ହୋଇଅଛନ୍ତି । ବଡ ଅଦାଲତର ସିରସ୍ତା ଏତେ ଦିନରେ ଭଲ ହେବାର ଲକ୍ଷଣ ଦେଖାଗଲା ଓ ଏ ବନ୍ଦୋବସ୍ତମନ ସର୍ବସାଧାରଣ ମନୋନୀତ ହୋଇଅଛି ।

( ୫ମ ଭାଗ, ୩୧ । ୧୨ । ୧୮୭୦, ସଂଖ୍ୟା ୫୧ )

୨୮୨ ।

## କଟକ କାରେଜ କମ୍ପାନି ।

ଏ କମ୍ପାନିର କାର୍ଯ୍ୟର ସମ୍ପର୍କୀୟ ଖଣ୍ଡିଏ ବିଜ୍ଞାପନୀ ସମ୍ପାଦକ ଶ୍ରୀବାବୁ ବିଚିତ୍ରାନନ୍ଦ ଦାସଙ୍କ ଦ୍ୱାରା ପ୍ରସ୍ତୁତ ହୋଇଅଛି । ଆମ୍ଭେମାନେ ତାହା ପାଠକରି ଅତ୍ୟନ୍ତ ଆନନ୍ଦିତ ହେଲୁଁ । କଟକ ନଗରରେ କମ୍ପାନି ସ୍ଥାପନ ପୂର୍ବକ ବ୍ୟବସାୟ କରିବାର ହିତ ଅବଶ୍ୟ ସାଧାରଣ ଅନୁମୋଦନୀୟ ହୋଇନାହିଁ । ଯେଉଁମାନେ ଏବଂପ୍ରକାର ବ୍ୟବସାୟର କୁଶଳତା ଦର୍ଶାଇବାକୁ ଚେଷ୍ଟା କରନ୍ତି ତାହାଙ୍କୁ ଅବଶ୍ୟ ପ୍ରଶଂସା କରିବାର ଉଚିତ । ଏଥିକୁ ବ୍ୟବସାୟର କୁଶଳତା ତହିଁର ଫଳରୁ ଜଣାଯାଏ । କାରେଜ କମ୍ପାନିଙ୍କର ବ୍ୟବସାୟରେ କି ଫଳ ହୋଇଅଛି ସମ୍ପ୍ରତି ତାହା ବର୍ଣ୍ଣ୍ୟ ଅଟଇ ।

ବିଜ୍ଞାପନୀର ଶେଷରେ ଯେଉଁ ହିସାବମାନ ଲେଖାଯାଇ ଅଛି ତହିଁରୁ ଯଦ୍ୟପିକ କମ୍ପାନିର ଆୟବ୍ୟୟର ସ୍ଥୂଳ ପରିଚୟ ପ୍ରାପ୍ତ ହୁଅଇ ମାତ୍ର କେତେକ ହିସାବ ସର୍ବତୋଭାବେ ପରିଷ୍କାର ହୋଇ ଲେଖା ନାହିଁ, ଯଥା ପୁରୁଣାଗାଡ଼ି ମରାମତି ଓ ଘୋଡ଼ାଙ୍କ ସାଜ ଖରିଦ ଓ ମରାମତିରେ ଯେଉଁ ଟଙ୍କା ଲେଖାଯାଇ ଅଛି ତାହା ନିୟମିତ ବ୍ୟୟ କି କିଣାହେବା ସମୟରେ ଏକକାଳୀନ ବ୍ୟୟ ଜଣା ନପଡ଼ିବାରୁ ତହିଁର କେଉଁଅଂଶ ଖର୍ଚ୍ଚ ମଧ୍ୟରେ ଓ କେଉଁଅଂଶ ସ୍ଥିତି ମଧ୍ୟରେ ଧରିବାକୁ ହେବ ନିଶ୍ଚୟ ହେଉନାହିଁ । ଯାହାହେଉ କଟକ ଓ ପୁରୀର ଖର୍ଚ୍ଚର ପୃଥକ୍ ୨ ଫର୍ଦ୍ଦରେ ବ୍ୟୟର ବିବରଣ ବିସ୍ତାରିତରୂପେ ଲେଖାଥିବାରୁ ପ୍ରଥମ ହିସାବ ବୁଝିବା ପକ୍ଷରେ କେତେକ ସାହାଯ୍ୟ ହେଉଅଛି ଆମ୍ଭେ ସେସମସ୍ତକୁ ମନୋଯୋଗ ପୂର୍ବକ ପାଠକରି ତଳଲିଖିତ କଥାମାନ ଉପଲବ୍ଧ କରିଅଛୁଁ ଯଥା:—

ଏ କମ୍ପାନିର ବ୍ୟବସାୟ ସନ ୧୮୬୮ ମସିହା ଜାନୁଏରି ମାସରେ ଆରମ୍ଭ ହେଲା । କିନ୍ତୁ ସେ ସମୟରେ କେହି ଅଂଶୀ ଟଙ୍କା ଦେଇନଥିଲେ, ମାର୍ଚ୍ଚ ମାସରୁ ଟଙ୍କା ଓସୁଲ ହେବାର ଉପାୟ ହୋଇ ସନ ୧୮୬୮ ମସିହାରେ ଟ ୧୩୫୨ ଙ୍କା ସନ ୧୮୬୯ ମସିହାରେ ଟ ୩୭୦ ଙ୍କା ଏବଂ ସନ ୧୮୭୦ ଅକ୍ଟୁବର ମାସ ପର୍ଯ୍ୟନ୍ତ ବା ୨ । ୧୦ ମାସରେ ଟ ୨୦୪୭ଙ୍କା ଅସୁଲ ହେଲା । ଏଥିମଧ୍ୟରେ ପ୍ରାୟ ଟ ୨୦୦୦ଙ୍କା ପୁରୀ ମୁକାମକୁ ଗାଡ଼ି ଚଳାଇବାର ସୁଯୋଗ କାରଣ ବ୍ୟୟ ହୋଇଥିବା ଓ ତହିଁରୁ କାର୍ଯ୍ୟାରମ୍ଭ ନହେବାରୁ ଆୟ ସଙ୍ଗେ ସେ ଟଙ୍କାର ସମ୍ପର୍କ ନଥିବାରୁ କେବଳ ଟ ୨୦୦୦ ଙ୍କାରେ କମ୍ପାନିର ବ୍ୟବସାୟ ଚଳୁଥିବାର ବୋଲିବାକୁ ହେବ । ଏ ଟଙ୍କାରେ ତିନବର୍ଷରେ ସର୍ବସୁଦ୍ଧା

ଟ୬୨୦୦ଙ୍କା ଆୟ ହୋଇଅଛି । ଏହାମଧ୍ୟରୁ ଘୋଡ଼ା ଗୋରିକ ଓ ଭୃତ୍ୟଙ୍କ ବେତନ ଟ୧୬୨୮୫ଙ୍କା ଓ ଘର ମରାମତି ଓ ଅନ୍ୟାନ୍ୟ ନିୟମିତ ବ୍ୟୟ ଟ୪୨୫ଙ୍କା ଏରୂପ ଟ୨୭୦୦ଙ୍କା ବ୍ୟୟ ମିଶାଗଲେ ଟ୨୫୦୦ଙ୍କା ଲାଭହୋଇଥିବାର ଜଣାଯାଏ । ମାତ୍ର ଗାଡ଼ି ଓ ସାଜ ମରାମତି ଖର୍ଚ୍ଚର ଚତୁର୍ଥାଂଶ ଏଥିରୁ ମିଶାଯିବ ଓ ବ୍ୟବହାର ହେତୁ ଗାଡ଼ି ଘୋଡ଼ାର ମୂଲ୍ୟରୁ କିଛି ମିଶା ଯିବାର ଆବଶ୍ୟକ । ଏରୂପ ପଦରେ ଟ୫୦୦ଙ୍କା ଆନୁମାନିକ ମିଶାଗଲେ ମଧ୍ୟ ଆମ୍ଭେମାନେ ଦେଖୁଅଛୁଁ ଯେ ବର୍ଷ । ୧୮ ମାସରେ ଟ୬୦୦୦ଙ୍କା ମୂଳଧନରେ ଟ୨୦୦୦ଙ୍କା ଲାଭ ହୋଇଅଛି ଅର୍ଥାତ ବାର୍ଷିକ ଟ୧୦୦ଙ୍କାରେ ଟ୨୬ଙ୍କା ଲେଖାଏଁ ପଡ଼ିଅଛି । ଏଫଳ ଅନୁତ୍ତମ ନୁହଇ ଓ ଏଥିରେ ଅଂଶୀମାନଙ୍କର ଉତ୍ସାହିତ ହେବାର ଉଚିତ । ଯେବେ ପୁରୀ ବାଟରେ ଗାଡ଼ି ଚଳିବାର ଆରମ୍ଭ ହୋଇଥାନ୍ତା ତେବେ ଆହୁରି ଅଧିକ ଲାଭ ହୁଅନ୍ତା ମାତ୍ର ଯେ ପର୍ଯ୍ୟନ୍ତ ହୋଇଅଛି ତାହାର ଫଳ ବଡ଼ ସନ୍ତୋଷଜନକ ହୋଇଅଛି ଏବଂ ଯେତେବେଳେ ବିବେଚନା କରାଯାଏ ଯେ ମୂଳଧନ ଆଦାୟ ହେବା ପର୍ଯ୍ୟନ୍ତ ଅପେକ୍ଷା ନକରି ସମ୍ପାଦକ ଆପଣା ହାତରୁ ବ୍ୟୟ ସ୍ୱୀକାର କରି କାର୍ଯ୍ୟାରମ୍ଭ କଲେ ତେତେବେଳେ ତାହାଙ୍କର ଅବଶ୍ୟ ସୁଖ୍ୟାତି କରିବାକୁ ହେବ । ହେସାବରେ ଜଣାଯାଏ ଯେ ଅଂଶୀମାନେ କେହି ଲାଭ ପାଇନାହାନ୍ତି ମାତ୍ର ତାହାଙ୍କର ମୂଳଧନ ବୃଦ୍ଧି ହୋଇଅଛି । ତିନିହଜାର ଟଙ୍କା ବ୍ୟୟକରି ସବୁ ଖର୍ଚ୍ଚା ପରିଶୋଧ ଉତ୍ତାରୁ ତାହାଙ୍କ ହସ୍ତରେ ଟ୪୫୦୦ଙ୍କାର ଦ୍ରବ୍ୟ ରହିଅଛି ।

ଆମ୍ଭେମାନେ ଏରୂପ ଫଳଦେଖି ଅଂଶିମାନଙ୍କୁ ଅନୁରୋଧ କରୁଅଛୁଁ ଯେ ପୁରୀକୁ ଗାଡ଼ି ଚଳାଇବାର ଉଚିତ ବନ୍ଦୋବସ୍ତ ଯେତେ ଶୀଘ୍ର ପାରନ୍ତି କରନ୍ତୁ ତାହାହେଲେ ସେମାନଙ୍କର ଯେ ବିଶେଷ ଲାଭହେବ ଏଥିରେ କିଛି ସନ୍ଦେହ ନାହିଁ ଓ ମଧ୍ୟ ଲୋକଙ୍କର ଗୋଟିଏ ବଡ଼ ସୁବିଧା ହେବ । ପୁରୁଷୋତ୍ତମକୁ ଗାଡ଼ି ଚଳାଇବା ଏ କମ୍ପାନିର ପ୍ରଥମ ଉଦ୍ଦେଶ୍ୟ ଥିଲା ଏହା ଯେ ଏତେକାଳ ସଫଳ ହୋଇନାହିଁ ଦୁଃଖର ବିଷୟ ଅଟଇ ।

( ୬ଷ୍ଠ ଭାଗ, ୧୨ । ୮ । ୧୮୭୧, ସଂଖ୍ୟା ୨୧ )

୨୮୩ । ସାପ୍ତାହିକ ସମ୍ବାଦ

କେନ୍ଦୁଝର ବିଦ୍ରୋହରେ ଓଡ଼ିଶାରେ ତଳଲେଖିତ ବ୍ୟକ୍ତିମାନେ ଗବର୍ଣ୍ଣମେଣ୍ଟଙ୍କୁ ସାହାଯ୍ୟ କରିଥିବାରୁ ଶ୍ରୀଯୁକ୍ତ ଲେଫ୍‌ଟନେଣ୍ଟ ଗବର୍ଣ୍ଣରଙ୍କ ପ୍ରାର୍ଥନାନୁସାରେ ମହାମାନ୍ୟ ଗବର୍ଣ୍ଣର ଜେନେରାଲଙ୍କ ନିକଟରୁ ଯେ ଯେମନ୍ତ ସମ୍ମାନ ପାଇବେ ତାହା ପ୍ରକାଶିତ ହୋଇଲା, ଯଥା—

ମୁନିପାଲ, ପାଲଲହଡ଼ା ଜମିଦାର — ରାଜା ବାହାଦୁର

ଏହାଙ୍କ ବେବର୍ତ୍ତ ଅନିରୁଦ୍ଧ ଦାସ — ଢାଲ ତରୁଆର

ଦୀନବନ୍ଧୁ ପାଲ
ହାଡ଼ିନାଥ ସୁରେନ୍ଦ୍ର ସିଂହ
ଉପେନ୍ଦ୍ର ଗୀତା
ବାରକିଶୋର ବୋଇତା
ମହାରାଜ ଭଗୀରଥି ମହେନ୍ଦ୍ର ବାହାଦୁର, ଢେଙ୍କାନାଳ
} ଧନ୍ୟବାଦ ସୂଚକ ପତ୍ର

ଏହାଙ୍କର ଜମାଦାର ସୁଜାତ ଅଲ୍ଲୀ — ଏକତରବାର ଓ ପରୱାନା

ରାଜା—ସୁକିନ୍ଦା
ଜମିଦାର—ଅଠମ୍ଭା
} ଧନ୍ୟବାଦ ସୂଚକ ପତ୍ର

ହସ୍ତୀ ଉଧାର ଦେଇଥିବାରୁ

ଯୋଗେନ୍ଦ୍ର ସାମନ୍ତ, ଜମିଦାର, ଆଠମଲ୍ଲିକ,
ରାଜା ଈଶ୍ବର ସିଂହ ମର୍ଦ୍ଦରାଜ ଜଗଦେବ, ହିନ୍ଦୋଳ
" ଶ୍ରୀକରଣ ଜଗନ୍ନାଥ ବେବର୍ତ୍ତା ପଟ୍ଟନାୟକ, ଆଠଗଡ଼
" କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ, ପାଲଲହଡ଼ା
" ନଟବର ମର୍ଦ୍ଦରାଜ ଭ୍ରମରବର ରାୟ, ଖଣ୍ଡପଡ଼ା
" ହରିହର ଷିରିବର ମହାପାତ୍ର, ତିଗିରିଆ
" କୃଷ୍ଣଚନ୍ଦ୍ର ଧୀର ନରେନ୍ଦ୍ର, ମଧୁପୁର
" ଦିବ୍ୟସିଂହ ଦେବ, ପଟିଆ
ବାବୁ ଗୋପୀବଲ୍ଲଭ ରାୟ ମହାଶୟ, କାଉପୁର
} ଧନ୍ୟବାଦ ସୂଚକ ପତ୍ର

## ପ୍ରେରିତ ପତ୍ର

୨୮୪ । ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ ମହାଶୟ, ସମୀପେଷୁ

ଆପଣ ପ୍ରାୟ ଜାଣିଥିବେ ଯେ ପୂର୍ବେ ନରେନ୍ଦ୍ର ପୁଷ୍କରିଣୀର ଜୀର୍ଣ୍ଣସଂସ୍କାର ନିମନ୍ତେ ପ୍ରାୟ ଦଶ ସହସ୍ର ଟଙ୍କା ସଂଗୃହୀତ ହୋଇଥିଲା । ଉକ୍ତ କାର୍ଯ୍ୟର ଭାର ଶ୍ରୀ ବାବୁ ରାମାନନ୍ଦ ଗୃହନ୍ତୀ, ଶିବ ପ୍ରସାଦ ସିଂହ ମୁନସିଫ ଓ ମାଜିଷ୍ଟ୍ରେଟ ଏମାନଙ୍କ ମାରଫତରେ ଥିଲା । ତତ୍ପରେ ଶ୍ରୀଯୁକ୍ତ ବାବୁ ମୋହନଲାଲ ପାଣ୍ଡେ ସେ କାର୍ଯ୍ୟର ଭାର ନେଲେ । ସେ ଯିବା-ବେଳେ ବାକୀ ୬୦୦ କି ୭୦୦ ଟଙ୍କା ପୁରୀର କୌଣସି ଭଦ୍ରବ୍ୟକ୍ତିଙ୍କ ମାରଫତରେ ଦେଇଗଲେ । ସେଥିନିମନ୍ତେ ସେ ଟଙ୍କାର ପତ୍ତା ମିଳୁନାହିଁ । ବର୍ତ୍ତମାନ ନରେନ୍ଦ୍ର ପୁଷ୍କରିଣୀର ପାଞ୍ଚ ଅନେକ ସ୍ଥାନରେ ଭଗ୍ନ ହୋଇଅଛି, ଅନେକ ସ୍ଥାନରେ କାର୍ଯ୍ୟ ଅସମ୍ପୂର୍ଣ୍ଣ ହୋଇ ରହିଅଛି । ଯେବେ ସେ ଟଙ୍କା ବର୍ତ୍ତମାନ ବ୍ୟୟିତ ହୁଅନ୍ତା ତେବେ ଅନେକ ଉପକାର ଦର୍ଶାନ୍ତା । ଅତଏବ ଆମ୍ଭେମାନେ ଅନୁରୋଧ କରଅଛୁଁ ଯେ ପୁରୀ ସେଃସାଇଟୀ ଅନୁଗ୍ରହ-କରି ଏତାଦୃଶ ଲୋକସାଧାରଣର ହିତକାର୍ଯ୍ୟରେ ମନୋନିବେଶ କରନ୍ତୁ । ଇତି

ତା ୫ ଅଗଷ୍ଟ ସନ ୧୮୭୧ ଆଜ୍ଞାଧୀନ ବାଧିତ

କୌଣସି ଗୋଏଥା ଓ୍ୟାଲ

## ( ୬ଷ୍ଠ ଭାଗ, ୨୩।୯।୧୮୭୧, ସଂଖ୍ୟା ୩୭ )

୨୮୫ ।

### ବାଟକର

ଉତ୍କଳୋନ୍ନତିସିନୀ ସଭାର ଗତ ଅଧିବେଶନରେ ଅନ୍ୟାନ୍ୟ କଥା ମଧ୍ୟରେ ବାଟକର ଆଇନ ବିରୁଦ୍ଧରେ ଖଣ୍ଡିଏ ଆବେଦନପତ୍ର ଗବର୍ଣ୍ଣମେଣ୍ଟଙ୍କୁ ପଠାଇବାର ସ୍ଥିର ହୋଇଅଛି । କମିଶନର ସାହେବଙ୍କଦ୍ୱାରା ତାହା ପ୍ରେରିତ ହେବ, ତହିଁରେ ଏହି ପ୍ରାର୍ଥନା କରିବାର ସ୍ଥିର ହୋଇଅଛି ଯେ ଜଳକର ଅଦାପୂର ଉତ୍ତମ ବନ୍ଦୋବସ୍ତ ହେବା ପର୍ଯ୍ୟନ୍ତ ଉକ୍ତ ଆଇନ ସ୍ଥଗିତ ରଖାଯିବ ।

ଆମ୍ଭେମାନେ ଏ ପ୍ରସ୍ତାବକୁ ଅବଶ୍ୟ ଆଦର କରଅଛୁଁ ଓ ଭରସା କରୁଁ ଯେ ଗବର୍ଣ୍ଣମେଣ୍ଟ ଏଥିରେ ସ୍ଥାନୀୟ ଲୋକଙ୍କ ମତ ବିରୁଦ୍ଧରେ କାର୍ଯ୍ୟ କରିବେ ନାହିଁ । ଜଳକର ଆଦାୟର ସୁପ୍ରଣାଳୀ କରିବା ଅତ୍ୟନ୍ତ ଆବଶ୍ୟକ ହୋଇଅଛି ଓ ଏହି କର ହେତୁଁ ବର୍ତ୍ତମାନ ପ୍ରଜାମାନେ ଯତ୍‌ପରୋନାସ୍ତି କ୍ଲେଶରେ ଅଛନ୍ତି । ଏ କଥା ସାମାନ୍ୟ ନୁହଇ, ଭୂମିର ପ୍ରଧାନ କରର ସମାନ ଅଥବା ତାହା ନିକଟରେ ହୋଇଅଛି କିନ୍ତୁ ଆଦାୟ

ପ୍ରଣାଳୀକୁ ସ୍ମରଣ କଲେ ଜଳକରକୁ ଭୂମିକର ଅପେକ୍ଷା ଅନେକ ଗୁଣ ଉତ୍କୃଷ୍ଟତର ବୋଲିବାକୁ ହେବ । ଏମନ୍ତ ଉତ୍କୃଷ୍ଟକର କରର ଆଦାୟର ଉପାୟ ନହେଉଣୁ ଆଉ ଗୋଟିଏ କର ପ୍ରଜାଙ୍କ ସ୍କନ୍ଧରେ ଥୋଇ ଦେବା କେତେ କଷ୍ଟକର ତାହା କିଞ୍ଚିତ ମାତ୍ର ଅନୁମାନ କଲେ ଗବର୍ଣ୍ଣମେଣ୍ଟ ଅନାୟାସରେ ବୁଝି ପାରିବେ । ବାଟକରର ପରିମାଣ ଊଣାବୋଲି ଯେ ତଦ୍ଦ୍ୱାରା ପ୍ରଜାଙ୍କର କ୍ଲେଶ ଊଣା ହେବ ତାହା ନୁହଇ । ଭୂମି କର ଆଦାୟର ନିୟମଟି ଅକଷ୍ଟକର । ଆଜି ଜଳକର ପିଆଦା, କାଲି ବାଟକର ପିଆଦା, ଆଉଦିନେ ଇନକମ ଟାକ୍ସ ପିଆଦା ପ୍ରତି ଦ୍ୱାରକୁ ଯିବାଆସିବା କରୁଥିବେ ଓ ସମସ୍ତଙ୍କୁ ବୋଧକରିବାକୁ ହେବ, ସମସ୍ତଙ୍କଠାରୁ ଗାଳି ଓ ଧମକ ଶୁଣିବାକୁ ହେବ । ଦଶ ହାକିମର ହୁକୁମ ଶୁଣିବାଠାରୁ ଜଣେ ହାକିମର ଅତ୍ୟାଚାର ସହିବା ମଧ୍ୟ ଭଲ ଲାଗଇ, ଯେମନ୍ତ କି ଦେହସାରା ଲୁଣ୍ଡିଆ କାଛୁ ହେବାଠାରୁ ଏକସ୍ଥାନରେ ଗୋଟାଏ ବଡ ବଥ ହେଲେ-ସୁଦ୍ଧା ଅଳ୍ପ କ୍ଲେଶ ଓ ସହଜ ଚିକିତ୍ସା ହୁଅଇ । ଏହି ହେତୁରୁ ଆମ୍ଭେମାନେ ବିଚାର କଲୁଁ କି ଯେବେ ଗବର୍ଣ୍ଣମେଣ୍ଟଙ୍କର ଯେତେବେଳେ ଯାହା କରିବାକୁ ମନହେବ ତହିଁପାଇଁ ପ୍ରଜାଙ୍କୁ କର ଦେବାକୁ ହେବ ତେବେ ଭୂମି କରର ବନ୍ଦୋବସ୍ତ ଏକାଠି ପଚାଶ ତିରିଶ ବର୍ଷ ପାଇଁ ନକରି ପ୍ରତି ଦଶବର୍ଷର କି ପାଞ୍ଚବର୍ଷର ବ୍ୟୟ ଅନୁମାନ କରି ଯେତେଟଙ୍କା ପ୍ରୟୋଜନ ସେହି ଅନୁସାରେ ଭୂମିକର ବଢାଇ ଦେଲେ ଭଲହେବ । ଏଥିରେ ପ୍ରଜା ରହନ୍ତୁ ବା ଲଙ୍ଘିଯାଆନ୍ତୁ ତହିଁର ବିଚାର କରିବାର ଆବଶ୍ୟକ ନାହିଁ । ପାରିଲେ ଜମି ପାଖକୁ ଯିବେ ନୋହିଲେ ଆଉବାଟ ଦେଖିବେ ।

୨୮୬ । ଜଳକର ଆଦାୟର ବିଧାନ ।

ଗତ ବୁଧବାର କଟକ ଡିବେଟିଂ ସୋସାଇଟୀରେ ଜଳକର ଆଦାୟ କରୁ ଯେ ଭଲେ ଭଲହେବ ଏଥିର ବିଚାର ହୋଇଥିଲା । ବାବୁ ନନ୍ଦ କିଶୋର ଦାସ ଏବିଷୟରେ ଖଣ୍ଡିଏ ସୁଦୀର୍ଘ ରଚନା ଇଂରାଜୀ ଭାଷାରେ ଲେଖିଆଣି ପାଠକରିଥିଲେ । ସଭ୍ୟମାନେ ତାହାଶୁଣି ବଡ଼ ଆନନ୍ଦିତ ହେଲେ । ସେଥିରେ କେବଳ ଜଳକର ଆଦାୟର କଥା ଲେଖାଥିଲା ଏମନ୍ତନୁହେ । ଗବର୍ଣ୍ଣମେଣ୍ଟଙ୍କ ନାଳ ନିର୍ମାଣ ସମ୍ପର୍କୀୟ ଯାବତ କଥା ବାହୁଲ୍ୟରୂପେ ଲେଖାଥିଲା । ଓଡିଶାର କୃଷି ପ୍ରଣାଳୀ, ନାଳର ଉପଯୋଗିତା, ଜଳକର ଆଦାୟ କରିବାର ନିୟମ, ବର୍ତ୍ତମାନ ଓ ଭବିଷ୍ୟତର ଆଦର୍ଶ କ୍ଷେତ୍ର ଓ କୃଷିବିଦ୍ୟା ଶିକ୍ଷାର ଉପାୟ ଇତ୍ୟାଦି ଅନେକ ପ୍ରସଙ୍ଗ ଲେଖାଥିଲା । ଆମ୍ଭେମାନେ ସେ ସବୁ ବର୍ଣ୍ଣନା କରିବାକୁ ଅବକାଶ ପାଉନାହୁଁ । କେବଳ ସ୍ଥୂଳରୂପେ ଏତିକି କହିବାକୁ ଯେ ବାବୁଙ୍କ ମତରେ ନାଳଦ୍ୱାରା ଗମନାଗମନର ସୁଯୋଗ ଓ କୃଷିର ଉନ୍ନତି ହେବାଇ ଅଛି ମାତ୍ର ଏ ଦେଶୀୟ ଲୋକେ କୃଷିକାର୍ଯ୍ୟ ଭଲ ଜାଣନ୍ତି ନାହିଁ ବୋଲି ନାଳପାଣିଦ୍ୱାରା

ଯେତେ ଲଭ ହେବାର ଉପାୟ ଅଛି ତାହା କରି ପାରୁ ନାହାନ୍ତି । ଏଥିପାଇଁ ଜଣେ କୃଷିବିଦ୍ୟା ଜାଣୁଥିବା ଇଂରେଜ ଲୋକଙ୍କୁ ଗବର୍ଣ୍ଣମେଣ୍ଟ କିଛି କାଳ ପାଇଁ ନିଯୁକ୍ତ କରି ଏଠାରେ ଆଦର୍ଶ କ୍ଷେତ୍ର ପ୍ରସ୍ତୁତ କଲେ ଭଲ ହେବ ଓ କଟକ ନର୍ମ୍ୟାଲ ସ୍କୁଲରେ ଓ ପାଠଶାଳା ମାନଙ୍କରେ କୃଷିବିଷୟକ ଶିକ୍ଷା ଦିଆ ଯିବାର ମଧ୍ୟ ପ୍ରସ୍ତାବ କରିଥିଲେ । କଲକ୍ଟର ବିଷୟରେ ସେ କିଛି ମନ୍ତବ୍ୟ କରି ନାହାନ୍ତି ବୋଲିବାକୁ ହେବ କାରଣ ସେ ବଳାତ୍କାର ଓ ସ୍ୱେଚ୍ଛାଧୀନ ଉଭୟ ନିୟମରେ କର ଆଦାୟ କରିବାର କହି ଉଭୟ ନିୟମର ଦୋଷଗୁଣ ଦେଖାଇ ଅଛନ୍ତି । ତେବେ ଏ ଦୁଇ ନିୟମର ଦୋଷଗୁଣ ତୁଳନା କଲେ ବଳାତ୍କାର ନିୟମ ପକ୍ଷରେ ବାବୁଙ୍କର ମତ ଅଧିକ ବୋଲି ଜଣାପାଏ ଏବଂ ଏ ନିୟମରେ ସେ ମାଣପ୍ରତି ୪୦ ପଇସାରୁ ଅଧିକ କର ବସାଇବାର ଉଚିତ ନୁହେ ବୋଲି କହିଅଛନ୍ତି ।

ରଚନାପାଠଶେଷ ହେଲାରୁ ଆଉ ସଭ୍ୟମାନେ ଏ ବିଷୟରେ ତର୍କବିତର୍କ କଲେ । ଶେଷ ସିଦ୍ଧାନ୍ତ କିଛି ହେଲାନାହିଁ । ଶ୍ରୀଯୁକ୍ତ ବେବନଗ ସାହେବ ସ୍ୱେଚ୍ଛାଧୀନ ପ୍ରଣାଳୀ ଅନୁସାରେ କାର୍ଯ୍ୟ କରିବା କଠିନ ବୋଲି ବ୍ୟକ୍ତ କଲେ ଓ ଆଉ ସଭ୍ୟମାନେ ଯଦ୍ୟପିକି ସ୍ୱେଚ୍ଛାଧୀନ ନିୟମକୁ ନ୍ୟାୟ ସଙ୍ଗତ ଓ ଉତ୍କୃଷ୍ଟ ଜ୍ଞାନ କଲେ ମାତ୍ର ତଦ୍ଦ୍ୱାରା ଅତ୍ୟାଗ୍ରହ ହେଉଅଛି ବୋଲି ମାଣପ୍ରତି ଅତି ଅଳ୍ପ କର ବସାଇ ଜମିଦାରଙ୍କ ଦ୍ୱାରା ସବୁ ପ୍ରଜାଙ୍କଠାରୁ ବଳାତ୍କାର ନିୟମରେ କର ଆଦାୟ କରିବା ପକ୍ଷରେ ମତଦେଲେ । ଏହିରୂପେ ଦୁଇ ନିୟମ ସମ୍ପର୍କରେ କେତେକ କଥାବାର୍ତ୍ତା ହୋଇ ସଭା ଭଙ୍ଗହେଲା ।

ଆମ୍ଭେମାନେ ପୂର୍ବରୁ କହିଅଛୁଁ ଯେ ସ୍ୱେଚ୍ଛାଧୀନ ପ୍ରଣାଳୀ ନ୍ୟାୟସଙ୍ଗତ ଓ ସମସ୍ତଙ୍କ ମନୋନୀତ ଅଟଇ ମାତ୍ର ଏ ନିୟମରେ ବର୍ତ୍ତମାନ କାର୍ଯ୍ୟ କରିବାରେ ଯେତେ ପ୍ରତିବନ୍ଧକମାନ ଉପସ୍ଥିତ ହୋଇଅଛି ତାହା ଯେ ନିୟମର ଦୋଷ ଏରୂପ ପ୍ରକାଶ ପାଉନାହିଁ । କଲକ୍ଟର ଆବାଦୁନ ଭାର ଯାହାଙ୍କ ଉପରେ ଅର୍ପିତ ଅଛି ସେ ସାବଧାନ ହୋଇ ବିବେଚନା ପୂର୍ବକ କାର୍ଯ୍ୟ କଲେ ଉତ୍ତମରୂପେ କାର୍ଯ୍ୟ ଚଳିପାରେ ଏପରି ଅନେକ ଲୋକଙ୍କର ବିଶ୍ୱାସ । ଅତଏବ ନିୟମ ପରିବର୍ତ୍ତନ ନକରି ତହିଁରେ ଯେତେଗୋଟି ଦୋଷ ଅଛି ଅଗ୍ରେ ତାହା ସଂଶୋଧନ କରି କାର୍ଯ୍ୟ ଦେଖିଲେ ଭଲ ହେବ ।

୨୮୭ । ଓଡ଼ିଶା ଗଡ଼ଜାତ ମାହାଲ ।

ମୁଗଲବନ୍ଦୀ ଲୋକମାନେ ଗଡ଼ଜାତ ଲୋକଙ୍କୁ ମୂର୍ଖ ଓ ଅସଭ୍ୟ ବୋଲି ସର୍ବଦା ଦୁର୍ନାମ କରନ୍ତି ଅଥଚ ମୁଗଲବନ୍ଦୀ ଲୋକେ ଯେ ବଡ଼ ସଭ୍ୟ ଓ ଜ୍ଞାନୀ ହୋଇଅଛନ୍ତି

ଏହା ଆମ୍ଭେମାନେ କହୁନାହୁଁ । ବାସ୍ତବରେ ସଭ୍ୟତା ଜ୍ଞାନ ସ୍ଥିର ପଦାର୍ଥ ନୁହେଁ ଯେ ତାହା କେହି ସମ୍ପୂର୍ଣ୍ଣ ବା ଆଂଶିକ ରୂପେ ପ୍ରାପ୍ତ ହୋଇଅଛି ବୋଲିଯିବ । ଆମ୍ଭେମାନେ କେବଳ ତୁଳନାଭାବରେ ଏ ଶବ୍ଦଦ୍ୱୟର ଅର୍ଥ ବୁଝିଥାଉଁ, ଯେତେବେଳେ କୌଣସି ଲୋକକୁ ସଭ୍ୟ ବା ଜ୍ଞାନୀ ବୋଲୁଁ ତେତେବେଳେ ଆମ୍ଭମାନଙ୍କର ଏହି ଭାବ ପ୍ରକାଶ ହୁଏଇ ଯେ ଅନ୍ୟ ବ୍ୟକ୍ତି ବା ବ୍ୟକ୍ତିମାନଙ୍କଠାରୁ ସେ ଲୋକ ଅଧିକ ଜ୍ଞାନୀ ବା ସଭ୍ୟ ଅଟଇ । ଜ୍ଞାନର ଶେଷ ନାହିଁ, ଲୋକେ ଅନୁସନ୍ଧାନ ଓ ଅଧ୍ୟବସାୟ ଦ୍ୱାରା ନୂଆ ନୂଆ ନୂତନ କଥା ବାହାର କରୁଅଛନ୍ତି ଓ ତଦନୁସାରେ ଜ୍ଞାନର ବୃଦ୍ଧି ହେଉଅଛି । ଏହାପର କେତେକାଳ ଚଳିବ ଓ କେଉଁଠାରେ ଜ୍ଞାନର ଶେଷ ହେବ ତାହା କିଏ କହିପାରେ ? କିନ୍ତୁ ସେ ଅବସ୍ଥା ପ୍ରବେଶ ହେଉ କି ନହେଉ ଯେଉଁ ସ୍ଥାନର ଲୋକ ଯେ ପରିମାଣରେ ଜ୍ଞାନ ଲାଭ କରିଅଛନ୍ତି ଓ କରୁଥିବେ ତାହା ତୁଳନାକରି କାହାକୁ ଉତ୍କୃଷ୍ଟ ଓ କାହାକୁ ନିକୃଷ୍ଟ ବୋଲିପାଇ ପାରିବ । ସଭ୍ୟତାର ଅବସ୍ଥା ମଧ୍ୟ ସେହିରୂପ । କୌଣସି ସ୍ଥାନର ଲୋକ ସମ୍ପୂର୍ଣ୍ଣରୂପେ ସଭ୍ୟ ହୋଇଅଛନ୍ତି ବୋଲି ବୋଲିପାରି ନପାରେ ମାତ୍ର ଏକ ସ୍ଥାନର ଲୋକ ଅନ୍ୟ ସ୍ଥାନର ସଭ୍ୟତାଠାରୁ ଅପେକ୍ଷାକୃତ ଗୁଣୀ କି ଅଧିକ ଥିବାର ଅନୁସାରରେ ବୋଲିହୋଇ ପାରେ । ଏହି ଅନୁକ୍ରମରେ ଆମ୍ଭେମାନେ କଲିକତାଠାରୁ ଇଂଲଣ୍ଡକୁ ଜ୍ଞାନ ଓ ସଭ୍ୟତାରେ ଅଧିକ ବୋଲୁଅଛୁ ଓ ଏହି କାରଣରୁ ଗଡ଼ଜାତରୁ ମୁଗଲବନ୍ଦୀ ଓ ମୁଗଲବନ୍ଦୀରୁ ବଙ୍ଗଳାକୁ ଅଧିକ ଜ୍ଞାନୀ ବା ସଭ୍ୟ ବୋଲିଯାଏ । ପରନ୍ତୁ ଆହୁରି ପ୍ରକାଶ ଯେ ଜ୍ଞାନ ସଭ୍ୟତାର ହେତୁ ଅଟଇ, ଯେମନ୍ତ ଜ୍ଞାନ ବଢ଼ୁଥାଏ, ତେମନ୍ତ ସଭ୍ୟତାର ବୃଦ୍ଧି ପାଉଥାଏ ଓ ବିଶେଷ ବିଶେଷର ଜ୍ଞାନ ପରିବର୍ତ୍ତନ ସହିତ ସଭ୍ୟତାର ମଧ୍ୟ ପରିବର୍ତ୍ତନ ହୁଏଇ । ଯେଉଁ ଆଗର ବ୍ୟବହାର ଜ୍ଞାନ ସଙ୍ଗେ ମିଶଇ ନାହିଁ ତାହାକୁ ଅସଭ୍ୟ ବୋଲି ଲୋକେ ନିନ୍ଦା କରନ୍ତି ଓ ଜ୍ଞାନୀଲୋକର ବ୍ୟବହାରକୁ ସଭ୍ୟ ବୋଲି ଗ୍ରହଣ କରନ୍ତି । ଅତଏବ ସଭ୍ୟତାକୁ ଜ୍ଞାନର ଫଳ ବୋଲିବାକୁ ହେବ ଓ ଯେଉଁ ଦେଶ ଅନ୍ୟ ଦେଶାପେକ୍ଷା ସଭ୍ୟତାରେ ନ୍ୟୂନ ସେ ଦେଶ ଜ୍ଞାନରେ ମଧ୍ୟ ନ୍ୟୂନ ବୋଲି ସ୍ୱୀକାର କରିବାକୁ ହେବ । ମୁଗଲବନ୍ଦୀ ଅପେକ୍ଷା ଗଡଜାତ ସଭ୍ୟତାରେ ନ୍ୟୂନ ବୋଧ ହୁଏଇ-ଏକଥା ପ୍ରମାଣ କରିବାର ପ୍ରୟୋଜନ ନାହିଁ । ଅନ୍ୟ ଦେଶର ସଭ୍ୟମଣ୍ଡଳୀରେ ମୁଗଲବନ୍ଦୀ ଓ ଗଡଜାତର ପ୍ରସଙ୍ଗରେ ସେମାନେ ତତ୍କ୍ଷଣାତ୍ କହିଦେବେ ଯେ ଗଡ଼ଜାତବାସୀମାନେ ସଭ୍ୟତାର ପାଖକୁ ଘୁଞ୍ଚା ଆସି ନାହାନ୍ତି । ଫଳତଃ ଯେ ସ୍ଥାନରେ ଅବଧି ଲୋକେ ଉଲଗ୍ନ ରହିଅଛନ୍ତି, ଟିକିଏ କଥାରେ ମନୁଷ୍ୟ ବଧ କରିବାକୁ କୁଣ୍ଠିତ ନୁହନ୍ତି, ସେସ୍ଥାନର ଲୋକଙ୍କୁ କିରୂପେ ସଭ୍ୟ ବୋଲିବାକୁ ହେବ । ରାଜା କମ୍ବା ତାହାଙ୍କ ବେଢ଼ି ରହିଥିବା କେତୋଟି ଲୋକ କିୟତ୍ ପରିମାଣରେ ପ୍ରଜାଙ୍କଠାରୁ ଉତ୍କୃଷ୍ଟ ଅଟନ୍ତି । ହେଲେହେଁ ଦୁଇ ଏକସ୍ଥାନରେ ଏପରି ଦେଖାଯାଏ ନାହିଁ ବା ଅଧିକାଂଶ ସ୍ଥାନରେ ରାଜା ପ୍ରଜା ସବୁ ସମାନ ।

ଏରୂପ ହେବାର କାରଣ କି ? ଆମ୍ଭେମାନେ ଏହାର ଉତ୍ତର ଏତିକି ଦେଖୁଅଛୁଁ ଯେ ଗଡ଼ଜାତରେ ଜ୍ଞାନ ବୃଦ୍ଧିର ଉପାୟ ନାହିଁ ସୁତରାଂ ସଭ୍ୟତା ବୃଦ୍ଧି ହୋଇ ପାରୁ-ନାହିଁ । ଜ୍ଞାନବୃଦ୍ଧି ମୁଗଲବନ୍ଦୀରେ କାହିଁକି ହେଲା ଓ ଗଡ଼ଜାତରେ ନହେବାର କାରଣ କି ନିର୍ଣ୍ଣୟ କରିବା କଷ୍ଟ କଠିନ ନୁହଇ । ଜ୍ଞାନଲାଭର ଦୁଇ ମାର୍ଗ ଅଛି , କିଛି ଆପଣା ମନରୁ ଜାତ ହୁଅଇ ଓ କିଛି ଅନ୍ୟ ଲୋକଙ୍କଠାରୁ ଶିକ୍ଷାଦ୍ୱାରା ହୁଅଇ । ଆପଣା ମନରୁ ଯାହା ଜାତ ହୁଅଇ ତାହା ପ୍ରୟୋଜନର ବଶ । ମନୁଷ୍ୟ କେହି ପରିଶ୍ରମ କରିବାକୁ ସୁଖ ପାଏନାହିଁ । ସମସ୍ତେ ନିଶ୍ଚିନ୍ତ ହୋଇ ସୁଖରେ ଦିନପାତ କରିବେ ଏତିକି ଲୋଡ଼ି-ଥାନ୍ତି । ମାତ୍ର ଯେତେବେଳେ ପ୍ରୟୋଜନ ପଡ଼େ ତେତେବେଳେ ତାହା ପୂର୍ଣ୍ଣ କରିବାକୁ ହୁଅଇ ଓ କିରୂପେ ପୂର୍ଣ୍ଣ କରିପାରିଲେ ଭବିଷ୍ୟତରେ ନିଶ୍ଚିନ୍ତ ରହିବାକୁ ହେବ ଏକଥା ବୁଝୁ ବୁଝୁ ଜ୍ଞାନର ଉନ୍ନତି ହୁଅଇ । ନୂତନ କୌଶଳ ମନରେ ପ୍ରବେଶ ହୁଅଇ ଓ ତାହା ଏକାଥରକେ ମନୋମତ ନହେଲେ କ୍ରମଶଃ ଚିନ୍ତାକରିବାକୁ ପଡ଼େ । ଏହିରୂପେ ଜ୍ଞାନର ବୃଦ୍ଧି ହୁଅଇ । ଗଡ଼ଜାତ ଲୋକଙ୍କର ପ୍ରୟୋଜନ ଅତ୍ୟଳ୍ପ ଓ ତାହା ଅନାୟାସରେ ପ୍ରାପ୍ତ ହୋଇପାରେ ସୁତରାଂ ସେମାନଙ୍କର ଅଭାବ ନାହିଁ ଓ ତହିଁପାଇଁ ପରିଶ୍ରମ କରିବାକୁ ଇଚ୍ଛା ମଧ୍ୟ ନାହିଁ । ଯେବେ କୌଣସି ଲୋକ ପରିଶ୍ରମକରି କିଞ୍ଚିତ ଅର୍ଥ ବା ମନୋମତ ଦ୍ରବ୍ୟ ସଞ୍ଚୟକରେ ତାହା ରାଜା ବା ତାହାଙ୍କର କ୍ଷମତାପନ୍ନ କର୍ମଚାରୀ ଲୁଟି ନିଅନ୍ତି, ଶଙ୍କାକରି ଆପେ ଖଣ୍ଡିଏ ଭଲ ଘରକଲେ କି ଭଲ ଲୁଗା ପିନ୍ଧିଲେ କିମ୍ବା ସ୍ତ୍ରୀ ସନ୍ତାନଙ୍କୁ ଅଳଙ୍କାର ଦେଲେ ତାହା କର୍ତ୍ତୃପକ୍ଷଙ୍କର ମନାକର୍ଷଣ କରଇ ଓ ତହିଁପାଇଁ ଦଣ୍ଡ ଦେବାକୁ ପଡ଼େ । ଏପରି ସ୍ଥଳରେ କାହିଁକି କେହି ଲୋକ ଆପଣାର ଉନ୍ନତିର ଚେଷ୍ଟା କରିବ ? ସେମାନେ ଜାଣନ୍ତି ଯେ ପରିଶ୍ରମ କରି ଦ୍ରବ୍ୟ ଉପାର୍ଜ୍ଜନ କଲେ ତାହା ଭୋଗ କରିପାରିବେ ନାହିଁ ସୁତରାଂ ମନ୍ଦାବସ୍ଥାରେ ରହିଥାନ୍ତି । ବର୍ତ୍ତମାନ ସମୟରୁ କର୍ତ୍ତୃପକ୍ଷଙ୍କର ଏରୂପ ଅତ୍ୟାଚାର ଅନେକ ନିବାରଣ ହେଲାଣି ତଥାପି ଯାହା ଅଛି ଜ୍ଞାନ ଲାଭ ବିଷୟରେ ତାହା ପ୍ରଚୁର ଅଟଇ ।

ଗଡ଼ଜାତରେ ଜ୍ଞାନ ଲାଭର ପ୍ରଥମ ଉପାୟର ଯେମନ୍ତ ଅବକାଶ ନାହିଁ ସେହିରୂପେ ଦ୍ୱିତୀୟ ଉପାୟର ମଧ୍ୟ ସୁଯୋଗ ନାହିଁ । ସବୁ ଗଡ଼ଜାତ ବନ ଓ ପର୍ବତ ବେଷ୍ଟିତ, ମନୁଷ୍ୟଙ୍କର ଅବାସ ଭୂମି ଅତ୍ୟଳ୍ପ, ବ୍ୟାଘ୍ର ଭଲ୍ଲୁକାଦି ହିଂସ୍ରକ ପଶୁର ଭୟ ଅତ୍ୟନ୍ତ । ଏହେତୁ ଗଡ଼ଜାତ ସଙ୍ଗେ ମୁଗଲବନ୍ଦୀର ସଂସର୍ଗ ହେବାର କଠିନ । ମୁଗଲବନ୍ଦୀକୁ ସର୍ବଦା ଭିନ୍ନ ଭିନ୍ନ ଦେଶର ଲୋକମାନେ ଆସୁଅଛନ୍ତି ଓ ନାନା ପ୍ରୟୋଜନ ହେତୁରୁ ବହୁକାଳ ବାସ କରୁଅଛନ୍ତି, ଏମାନଙ୍କର ଜ୍ଞାନ ଓ ସଭ୍ୟତାକୁ ମୁଗଲବନ୍ଦୀମାନେ ଶିକ୍ଷାକରି କ୍ରମଶଃ ଆପଣା ଅବସ୍ଥାକୁ ଉନ୍ନତ କରୁଅଛନ୍ତି । ଯେବେ ବହୁକାଳ ଏମାନେ ଆପଣା ମନରୁ ଗୋଟିଏ ଜ୍ଞାନର କଥା ଉଦ୍ଭାବନ କରନ୍ତି ତେବେ ମଧ୍ୟ ଶିକ୍ଷାଦ୍ୱାରା ଏମାନଙ୍କର

କ୍ରମଶଃ ଉନ୍ନତ ହେଉଥିବ। ଯେତେବେଳେ ଯେଉଁ ରାଜା ଅଧୀନରେ ଭାରତବର୍ଷ ହୋଇଅଛି ସେମାନଙ୍କର ଜ୍ଞାନ ଓ ସଭ୍ୟତା ଓଡ଼ିଶା ମୁଗଲବନ୍ଦୀରେ ଆସି ପ୍ରବେଶ ହୋଇଅଛି, ମାତ୍ର ଗଡ଼ଜାତ ଯେମନ୍ତ ପୂର୍ବରେ ଥିଲା ପ୍ରାୟ ସେହିରୂପ ଅବସ୍ଥାରେ ରହିଅଛି। କହୁଁ କହୁଁ ଇଂରାଜଙ୍କ ଅଧିକାର ପ୍ରାୟ ବତିଶବର୍ଷ ହେଲା ଓଡ଼ିଶାରେ ସ୍ଥାପନ ହେଲା ଓ ଏମାନେ ପ୍ରଜାଙ୍କର ମଙ୍ଗଳ ସାଧନରେ ଯେମନ୍ତ ତତ୍ପର ପ୍ରାୟ ଅନ୍ୟ କୌଣସି ରାଜା ସେରୂପ କରି ନଥିଲେ, ତଥାପି ଆଜିପାଏ ଗଡ଼ଜାତଭିତରୁ ଯିବାପାଇଁ ସଡ଼କ ହୋଇ-ନାହିଁ କିମ୍ବା ଗୋଟିଏ ହେଁ ଯିବାପାଇଁ ଡାକଘରଟିଏ ବସି ନାହିଁ। କଟକରୁ ସମ୍ବଲପୁର ପର୍ଯ୍ୟନ୍ତ ଯିବାପାଇଁ ଗୋଟିଏ ମାତ୍ର ସଡ଼କ ଅଛି ତହିଁମଧ୍ୟରେ କଣ୍ଟଡ଼ା ବାଟେ ଯାଇଥିବା ସଡ଼କ ପ୍ରଧାନ କାରଣ ତହିଁରେ ଏତେ ଗୁଣା ଲୋକ ଗମନାଗମନ କରନ୍ତି ଯେ ସେଠାରେ ଅବଧି ଚିଟିଘର ବସିନାହିଁ। କେବଳ ଏକଖଣ୍ଡ ଦୋକାନ ମାତ୍ର ବସିଅଛି। ଅଥଚ କଣ୍ଟଡ଼ା ଯେମନ୍ତ କଟକର ନିକଟ ମୋକାମସର ଓ ଚୌଦ୍ୱାର ସେହିପରି ବରଂ ଅଧିକ ନିକଟ ଅଟଇ ଅଥଚ ଏହିଭଳି ସ୍ଥାନରେ ବହୁତ ଚିଟିଘର ଅଛି। ଏଥିରୁ ପ୍ରକାଶ ହେଉଅଛି ଯେ କେତେ ଅଳ୍ପଲୋକ ଗଡ଼ଜାତକୁ ଯାତାୟାତ କରନ୍ତି ଓ ଯେତେବେଳେ ମୁଗଲବନ୍ଦୀ ଓ ଗଡ଼ଜାତ ଲୋକ ଏହିପରି ପୃଥକ ରହିଥିବେ ତେତେବେଳେ କଦାଚ ଏହିଭଳିସ୍ଥାନର ଲୋକଙ୍କର ସଭ୍ୟତା ସମାନ ହେବନାହିଁ। ଗଡ଼ଜାତ ରାଜାମାନେ ଏଥିପକ୍ଷରେ କିଛିମାତ୍ର ଚେଷ୍ଟା କରିବାର ଦେଖାଯାଏ ନାହିଁ ବରଂ ତାହାଙ୍କର କାର୍ଯ୍ୟରୁ ଏମନ୍ତ ଅନୁମାନ ହୁଅଇ ଯେ ସେମାନେ ଆପଣା ଅବସ୍ଥା ପରିବର୍ତ୍ତନ କରିବାକୁ ସୁଖ ପାନ୍ତି ନାହିଁ। ଏକଥା କେତେକ ପରିମାଣରେ ମିଥ୍ୟା ନୁହଇ। ଆମ୍ଭେମାନେ ଶୁଣିଅଛୁଁ ଯେ ରାଜା ଚତୁର ହେଲେ କର୍ମଚାରୀମାନେ ତାହାଙ୍କୁ ଠକି ଖାଇ ପାରିବେନାହିଁ, ଏଥିପାଇଁ କର୍ମଚାରୀମାନେ ରାଜାଙ୍କୁ ବନ୍ଧନରେ ରଖିବାକୁ ଚେଷ୍ଟା କରନ୍ତି। ସଡ଼କବାଟ ଗଡ଼କୁ ନିର୍ମାଣ ହେଲେ କିମ୍ବା ଡାକଘର ବସିଲେ ମୁଗଲବନ୍ଦୀଆମାନେ ସେଠାରେ ଯାଇଁ ବାସ କରିବେ ଓ ଲୋକମାନେ ଜ୍ଞାନ ଶିଖିବେ। ତାହାହେଲେ କର୍ମଚାରୀଙ୍କର ସୁଯୋଗ ରହିବ ନାହିଁ। ଏଥିପାଇଁ ସେମାନେ ବୋଲନ୍ତି ଯେ ଏମନ୍ତ ହେଲେ ରାଜ୍ୟ ଭ୍ରଷ୍ଟ ହୋଇଯିବ। ସବୁ କାର୍ଯ୍ୟ ପଦାରେ ପଡ଼ିବ; ଏହିରୂପ କୁମନ୍ତ୍ରଣା ଦେଇ ରାଜାଙ୍କୁ କରଗତରେ ରଖିଥାନ୍ତି। କେବଳ ଢେଙ୍କାନାଳ ମହାରାଜା ଆପଣା ରାଜ୍ୟକୁ ଗୋଟିଏ ସଡ଼କ ବାନ୍ଧୁଅଛନ୍ତି ତଥାପି ଡାକ-ଘର ଏଠାରେ ବସିନାହିଁ ମାତ୍ର ଏରାଜ୍ୟର ବିଷୟ ପୃଥକରୂପେ ଲେଖିବାର ବାଞ୍ଛାଥିବାରୁ ଏଠାରେ ଉଲ୍ଲେଖର ପ୍ରୟୋଜନ ନାହିଁ।

ସାପ୍ତାହିକ ସମ୍ବାଦ।

ବାବୁ ବନମାଳୀ ସିଂହଙ୍କର ପିତାଙ୍କର କାଳହେବାରୁ ସେ ଆପଣା ଘରକୁ

ଏକାଦ୍ଧୋର ପଡ଼ିଅଛନ୍ତି । ଆପଣା ବଂଶର ଚର୍ଚ୍ଚା କରିବା ଓ ମହାରାଜାଙ୍କ ସେବଂଶୀ କରିବା (ଏ ତାହାଙ୍କର ପୈତୃକ କର୍ମ ଅଟଇ) ଲାଗି ଢେଙ୍କାନାଳରେ ରହିବାର ସ୍ଥିରକରି ସରକାରୀ କର୍ମ ତ୍ୟାଗ କଲେ ।

ସୁଦ୍ଧା ଡେପୁଟୀ କଲେକ୍‌ଟରୀ କାରଣ କମିଶନର ସାହେବ ବାବୁ ନନ୍ଦ କିଶୋର ଦାସଙ୍କୁ ମନୋନୀତ କରିଅଛନ୍ତି ବୋଲି ଶୁଣାଯାଏ । ଆଗାମୀ ସପ୍ତାହରୁ ଜଣାଯିବ ।

ସମ୍ପ୍ରତି ଏଠାରେ ଚାଉଳ ବଡ଼ ଶସ୍ତା ହୋଇଅଛି । ଠିଙ୍କାରୁ ନୂଆ ବଆଳ ଚାଉଳ ଏକ ମହଣ ମିଳୁଅଛି । ଏପରି ସୁକାଳ ବହୁତଦିନ ହେଲା ଦେଖା ନଥିଲା ।

## ( ୬ଷ୍ଠ ଭାଗ, ୭ । ୧୦ । ୧୮୭୧, ସଂଖ୍ୟା ୩୯ )

୨୮୯ । ଓଡ଼ିଆ ଡେପୁଟି କଲେକ୍‌ଟର ।

ଓଡ଼ିଶା ଲୋକଙ୍କର କପାଳ ଏତେ ଦିନରେ ଫିଟିଲା ପରି ଜଣା ଯାଉଅଛି । ପୂର୍ବକାଳରେ କେତେ ଗୁଡ଼ିଏ ଓଡ଼ିଆ ଡେପୁଟି କଲେକ୍ଟର ହୋଇ ଉତ୍ତମରୂପେ ସରକାରୀ କର୍ମ ଚଳାଇ ପ୍ରଶଂସାଭାଜନ ହୋଇଥିଲେ ମାତ୍ର ଏଣିକି ପ୍ରାୟ ଦଶବର୍ଷରୁ ଅଧିକ ହେବ ଓଡ଼ିଆଙ୍କୁ କେହି ପଚାରୁ ନଥିଲେ । ଆମ୍ଭମାନଙ୍କର ପରମବନ୍ଧୁ ଶ୍ରୀଯୁକ୍ତ ଘୋର ସାହେବ କଲେକ୍‌ଟର ଓ ଶ୍ରୀଯୁକ୍ତ କୋବର୍ଣ୍ଣ ସାହେବ କମିଶନର ଥିଲାବେଳେ ତିନିଜଣ ନିଯୁକ୍ତ ହୋଇଥିଲେ । ତନ୍ମଧ୍ୟରୁ ଜଣେମାତ୍ର ବର୍ତ୍ତମାନ କର୍ମ କରୁଅଛନ୍ତି । ସମ୍ପ୍ରତି ଶ୍ରୀଯୁକ୍ତ ରେବନସା ସାହେବ କମିଶନରଙ୍କ ଅନୁଗ୍ରହ ଓ ଉଦ୍‌ଯୋଗରେ ଓଡ଼ିଆମାନେ ପୁନର୍ବାର ଉଚ୍ଚପଦ ପାଇବାର ଆରମ୍ଭ ହୋଇଅଛି । ଆମ୍ଭେମାନେ ଏଥିପୂର୍ବ ବାବୁ ବନମାଳୀ ସିଂହଙ୍କ ନିୟୋଗ ଓ ତାହା ସଙ୍ଗେ ସଙ୍ଗେ ପଦତ୍ୟାଗ କରିବାର ସମ୍ବାଦ ଦେଇଥିଲୁଁ ଏବଂ ବାବୁ ନନ୍ଦ କିଶୋର ଦାସ ଏ ପଦପାଇଁ ମନୋନୀତ ହୋଇ ଅଛନ୍ତି ବୋଲି ମଧ୍ୟ ଲେଖିଥିଲୁଁ । ଭରସାକରୁଁ ଶୀଘ୍ର ଗବର୍ଣ୍ଣମେଣ୍ଟ ଏହାଙ୍କୁ ନିୟୋଗ କରିବେ । ଶ୍ରୀଯୁକ୍ତ କମିଶନର ସାହେବଙ୍କ ପ୍ରତି ଓଡ଼ିଆମାନେ କେତେ କି ପର୍ଯ୍ୟନ୍ତ କୃତଜ୍ଞ ଅଛନ୍ତି ତାହା ଆମ୍ଭେମାନେ ବ୍ୟକ୍ତ କରି ନପାରୁଁ । କେବଳ ଓଡ଼ିଆଙ୍କୁ କର୍ମଦେବାରେ ଆମ୍ଭେମାନେ ଯେତେ ସନ୍ତୁଷ୍ଟ ଅଟୁଁ ଓଡ଼ିଆଙ୍କ ମଧ୍ୟରୁ ଉପଯୁକ୍ତ ବ୍ୟକ୍ତିଙ୍କୁ ବାଛି କର୍ମ ଦେବାରେ ତଦପେକ୍ଷା ଅଧିକ ଆନନ୍ଦିତ ଅଟୁଁ । ଶୁଣାଯାଏ ଯେ ସୁଯୋଗ ପାଇଲେ ସାହେବ ପ୍ରଶଂସିତ ଆହୁରି ଓଡ଼ିଆଙ୍କୁ ଉଚ୍ଚପଦ ଦେବେ । ଓଡ଼ିଆମାନଙ୍କୁ ଏରୂପ ଉତ୍ସାହ ଦେବା ଯେ ଗବର୍ଣ୍ଣମେଣ୍ଟଙ୍କର ନିତାନ୍ତ କର୍ତ୍ତବ୍ୟ କର୍ମ ତହିଁରେ କିଛି ସନ୍ଦେହ ନାହିଁ ଓ

ଶ୍ରୀଯୁକ୍ତ ରେବେନସା ସାହେବଙ୍କ ପରି ପରାମର୍ଶଦାତାଙ୍କ ଉପରେ ନିର୍ଭର କରି କର୍ମକରେତ ଭରସା ହୁଅଇ ଗବର୍ଣ୍ଣମେଣ୍ଟ ଉପଯୁକ୍ତ ଓଡ଼ିଆ କର୍ମଚାରୀ ପାଇବାରେ କ୍ଳେଶବୋଧ କରିବେ ନାହିଁ । କେହି କେହି ବୋଲନ୍ତି ଯେ ରେବେନସା ସାହେବ ଓଡ଼ିଆଙ୍କ ଭକ୍ତହୋଇ କେବଳ ଓଡ଼ିଆ ଜାତୀୟ ଲୋକଙ୍କୁ କର୍ମଦେବାର ମାନସ ରଖନ୍ତି, ଓଡ଼ିଶାରେ ପୁରୁଷାନୁକ୍ରମେ ବାସକରୁଥିବା ବଙ୍ଗାଳୀ କାୟସ୍ଥ ମୁସଲମାନ ପ୍ରଭୃତିଙ୍କୁ ଲେଖୁନାହାନ୍ତି । ଆମ୍ଭମାନଙ୍କ ବିବେଚନାରେ କମିଶନର ସାହେବଙ୍କର ଏଦୋଷ ଥିବାନୁହେ କାରଣ ଏଥିରେ ଓଡ଼ିଶାପ୍ରତି ତାହାଙ୍କର ସ୍ନେହ ଜଣା ପାଉଅଛି । ଓଡ଼ିଆଙ୍କୁ ଛାଡ଼ି ଅନ୍ୟଲୋକଙ୍କୁ କର୍ମ ଦେଲେ ପ୍ରଶଂସନୀୟ କାର୍ଯ୍ୟ ହୁଅନ୍ତା ନାହିଁ ।

୨୯୦ । ଡେପୁଟୀ କଲେକ୍ଟରୀ ପଦରେ ନିଯୁକ୍ତ ହେବାପାଇଁ

ପ୍ରବେଶିକା ପରୀକ୍ଷାର ନିୟମ ।

ଆମ୍ଭେମାନେ ଓଡ଼ିଶାର ଲୋକଙ୍କୁ ଡେପୁଟୀ କଲେକ୍ଟରୀ ପଦରେ ନିଯୁକ୍ତ ହେବାର ଦେଖି ଯେତେ ଆନନ୍ଦିତ ହେଉଅଛୁଁ ଓ ଶ୍ରୀଯୁକ୍ତ ରିଭେନସା ସାହେବ କମିଶନରଙ୍କୁ ଯେତେ ଧନ୍ୟବାଦ ଦେଉଅଛୁଁ ଗବର୍ଣ୍ଣମେଣ୍ଟଙ୍କର ଏବିଷୟରେ ପ୍ରସ୍ତୁତ ନିୟମମାନ ପାଠକରି ତତୋଧିକ ଚିନ୍ତାଯୁକ୍ତ ହେଉଅଛୁଁ । ନିୟମମାନ ନିତାନ୍ତ କଠିନ କିମ୍ବା ଓଡ଼ିଶା ଲୋକେ ତାହା ପାରିବେ ନାହିଁ ବୋଲି ଆମ୍ଭମାନଙ୍କର ଦୁଃଖ ହେଉଅଛି ଏମନ୍ତ ନୁହେ । ଡେପୁଟୀ କଲେକ୍ଟର ପଦପାଇଁ ଏତେ ପ୍ରକାର ପରୀକ୍ଷା ଦେବାକୁ ହେବ ଏହା ପୂର୍ବରୁ କାହାରିକୁ ଜଣାନଥିଲା ଓ ଠିକ ଯେ ସମୟରେ ଓଡ଼ିଶାବାସୀଙ୍କର କର୍ମ ପାଇବାର କଥାହେଲା ସେହି ସମୟରେ ଏସବୁ ନିୟମ ପ୍ରସ୍ତୁତ ହେଲା ପୁଣି ପରୀକ୍ଷା ଦେବାପାଇଁ ପ୍ରସ୍ତୁତ ହେବାଲାଗି ଅଧିକ ସମୟ ମଧ୍ୟ ଦିଆଗଲା ନାହିଁ କାରଣ କି ପ୍ରଥମ ପରୀକ୍ଷା ଆଗାମୀ ଜାନୁଏରୀମାସ ମଧ୍ୟରେ ହେବ । ଏତେ ଅଳ୍ପ ମାସ ମଧ୍ୟରେ ଯେ ଲୋକେ ଏ ପରୀକ୍ଷା ଦେବାପାଇଁ ପ୍ରସ୍ତୁତ ହେବେ ଏମନ୍ତ ସମ୍ଭବକୁ ଆସୁନାହିଁ । କଲିକତାବାସୀଙ୍କ ପକ୍ଷରେ ଏସବୁ କଠିନ ହୋଇ ନପାରେ କାରଣ ସେଠାରେ ସର୍ବ ପ୍ରକାର ଗୁଣ ଶିଖିବାର ସୁଯୋଗ ଅଛି ଓ ଅନେକ ଲୋକ ସେସବୁ ସୁଯୋଗ ହେତୁରୁ ଉପଯୁକ୍ତ ଶିକ୍ଷାଲାଭ କରି ପରୀକ୍ଷାଦେଇ ବସି ଅଛନ୍ତି । ସେହିମାନଙ୍କ ସକାଶେ ପରୀକ୍ଷା ସହଜ ହୋଇପାରେ ଓ ସେମାନେ ଅନାୟାସରେ କର୍ମ ପାଇବେ । ପୂର୍ବ ନିୟମାନୁସାରେ କଲିକତାରେ ପରୀକ୍ଷା ହେବାର କେବଳ ଆବଶ୍ୟକ ଥିବାରୁ ଉତ୍କଳୀୟମାନେ କୃତକାର୍ଯ୍ୟ ନହେବାରୁ କମିଶନର ସାହେବ ଭିନ୍ନ ନିୟମାନୁସାରେ ଏମାନଙ୍କୁ କର୍ମ ଦେବାପାଇଁ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଥିଲେ ମାତ୍ର ଗବର୍ଣ୍ଣମେଣ୍ଟ ଏମନ୍ତ ନିୟମ କଲେ ଯେ

ପ୍ରତ୍ୟାଶା ଓଡ଼ିଆଙ୍କୁ ସୁଯୋଗ ଦେବାର ଦୂରେଥାଉ କଲିକତା ନଗରେ କେହି କର୍ମ ପାଇବେନାହିଁ ବୋଲି କାର୍ଯ୍ୟତଃ ପ୍ରକାଶ କଲେ ।

ଆମ୍ଭେମାନେ ନିୟମାବଳୀ ପାଠ କରିଅଛୁଁ ଓ ତହିଁର ବିବେଚନା କରିଅଛୁଁ ଯେ ଉକ୍ତ ନିୟମରେ କଲିକତା ନଗର କି ନିକଟରେ ଥିବା ଲୋକଙ୍କୁ ସମ୍ପୂର୍ଣ୍ଣ ସୁଯୋଗ ଦିଆ ଯାଇଅଛି ଓ ଉତ୍କଳୀୟଙ୍କୁ ସର୍ବାପେକ୍ଷା ଅସହାୟ ଅବସ୍ଥାରେ ରଖାଯାଇ ଅଛି । ତହିଁର ଉଦାହରଣ ସ୍ୱରୂପ ଦୁଇ ଏକ ନିୟମର ଉଲ୍ଲେଖ କରୁଅଛୁଁ, ଯଥା— ଗୋଟିଏ ନିୟମ ଏହିଯେ କର୍ମପ୍ରାର୍ଥୀମାନେ ଡାକ୍ତର ସାହେବଙ୍କଠାରୁ ଖଣ୍ଡିଏ ସାର୍ଟିଫିକେଟ ଆଣି ଦେଖାଇବେ । ତହିଁରେ ଲେଖାଥିବ ଯେ ଉକ୍ତ ଲୋକ ଶାରୀରିକ ସବଳ ଅଛି ଓ କୌଣସି ଜିଲ୍ଲାରେ ଯିବା ନିମନ୍ତେ କର୍ମ କରିପାରେ । ଏ ସାର୍ଟିଫିକେଟ କଲିକତାରେ ଥିବା ଜଣେ ଡାକ୍ତର କି ଯାହାଙ୍କୁ ଗବର୍ଣ୍ଣମେଣ୍ଟ ନିଯୁକ୍ତ କରିବେ ତାହାଙ୍କଠାରୁ ପ୍ରାପ୍ତ କରିବାକୁ ହେବ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ କଲିକତା ଗମନ ବ୍ୟତୀରେକେ କାହାର କର୍ମ ପାଇବା ଆଶାନାହିଁ ଓ କଲିକତାପାଇ ସାର୍ଟିଫିକେଟ ଆଣିଲେ ଯେ କାର୍ଯ୍ୟ ହେବ ଏମନ୍ତ କହି ହୁଅଇ କାରଣ ଯେସବୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇସୁଦ୍ଧା କେହି କର୍ମ ପାଇବାକୁ ଦାବୀ କରି ନପାରେ, ସମ୍ପୂର୍ଣ୍ଣରୂପେ ଗବର୍ଣ୍ଣମେଣ୍ଟଙ୍କ ଇଚ୍ଛାଧୀନ । ଅତଏବ ଏମନ୍ତ ସ୍ଥଳରେ କଲିକତାପାଇ ସାର୍ଟିଫିକେଟ ଆଣିବାକୁ କାହାର ଚିତ୍ତ ବଳିବ ଓ ଇଚ୍ଛା ହେଲେ ମଧ୍ୟ ଏରୂପ କେତେ କଷ୍ଟସହିଷ୍ଣୁ ଲୋକ ଓଡ଼ିଶାରେ ଅଛନ୍ତି ଯେ ହାତରୁ ଟଙ୍କା ବ୍ୟୟକରି କଲିକତା ଯିବା ଆସିବା କରିବେ । ସୁତରାଂ ଏ ନିୟମଦ୍ୱାରା ମୋଫସଲବାସୀଙ୍କୁ ବିଶେଷତଃ ଉତ୍କଳୀୟଙ୍କୁ କର୍ମ ଦେବାର ନିଷେଧ କରାଗଲା ।

ଆଉ ଗୋଟିଏ ନିୟମ ଏହିଯେ ବଙ୍ଗଳା ଅଥବା ହିନ୍ଦୋସ୍ଥାନୀରେ ଭାଷା ପରୀକ୍ଷା ଦେବାକୁ ହେବ ମାତ୍ର ଯେଉଁମାନେ ହିନ୍ଦୋସ୍ଥାନୀରେ କେବଳ ପରୀକ୍ଷା ଦେବେ ସେ ବିହାର ବିଭାଗରେ କର୍ମ ପାଇବେ । ଏ ଦୃଷ୍ଟାନ୍ତରୁ ଏକ ଭାଷା ସହିତ ଓଡ଼ିଆ ଭାଷାରେ ପରୀକ୍ଷା ଗୃହୀତ ହୋଇ ପାରିବ ଓ ଓଡ଼ିଆ ଜାଣିବା ଲୋକ କେବଳ ଓଡ଼ିଶାରେ କର୍ମ ପାଇବ । ଏଥିରୁ ଜଣାଯାଏ ଓଡ଼ିଆମାନେ ଆପଣା ମାତୃଭାଷା ଛଡ଼ି ହିନ୍ଦୋସ୍ଥାନୀ କିଂବା ବଙ୍ଗଳାଭାଷାରେ ପରୀକ୍ଷାଦେବେ । ଏ ନିୟମଟି ମଧ୍ୟ ଓଡ଼ିଶା ପକ୍ଷରେ ବଡ଼ କଠିନ ହୋଇଅଛି କାରଣ ଅନ୍ୟସ୍ଥାନର ଲୋକମାନେ ବଙ୍ଗଳା କିମ୍ବା ହିନ୍ଦୋସ୍ଥାନୀ ଗୋଟିଏ ବିଦ୍ୟା ଶିଖିବେ ମାତ୍ର ଓଡ଼ିଆମାନେ ଗୋଟିଏ ଅଧିକା ନ ଶିଖିଲେ କର୍ମ ପାଇବେ ନାହିଁ । ଅତଏବ ଆମ୍ଭେମାନେ ଦେଖୁ ଅଛୁଁ ଯେ ନିୟମମାନ ଓଡ଼ିଶାବାସୀଙ୍କ ସମ୍ପୂର୍ଣ୍ଣ

ବିପକ୍ଷ ଅଟଇ ଓ ଗବର୍ଣ୍ଣମେଣ୍ଟ ଯେମନ୍ତ କେବଳ କଲିକତା ନଗରବାସୀଙ୍କୁ କର୍ମ ଦେବାକୁ ମନସ୍ଥ କରି ଏରୂପ ନିୟମମାନ ପ୍ରଚୁର କରିଅଛନ୍ତି ।

ଭୂମି ଜରିବ ଓ ଗୃହ ନିର୍ମାଣ କାର୍ଯ୍ୟର ପରୀକ୍ଷା ଦେବାର ଯେଉଁ ନିୟମ ହୋଇ-ଅଛି ତାହା ସବୁ ମନ୍ଦ ହୁଅଇ । ନ୍ୟୁନାଧିକରେ ଏସବୁ କାର୍ଯ୍ୟ ଡେପୁଟୀ କଲେକ୍ଟର ମାନଙ୍କୁ କରିବାକୁ ହୁଅଇ ମାତ୍ର ଏସବୁ ଶିକ୍ଷା ଦେବାପାଇଁ ସୁବିଧା ନଥିବା ପର୍ଯ୍ୟନ୍ତ ନିତାନ୍ତ ପ୍ରୟୋଜନୀୟ ବୋଲି ଲୁହାପାଇ ନଥିଲେ ଭଲ ହୁଅନ୍ତା । ଯେସ୍ଥଳେ ଜଣାଅଛି ଯେ ଓଡ଼ିଶାରେ କୌଣସି ସ୍ଥାନରେ ଏସବୁ ଶିକ୍ଷା ଲାଭ କରିବାର ଉପାୟ ନାହିଁ ସେ ସ୍ଥଳେ ନିୟମକରି କେବଳ ଓଡ଼ିଶା ଲୋକଙ୍କୁ ଉଚ୍ଚପଦର କର୍ମରୁ ବଞ୍ଚିତ କରିବାଇ ଅଛି ମାତ୍ର ଅନ୍ୟ କିଛି ଦେଖାଯାଉ ନାହିଁ । ଯାହା ଅବା ଓଡ଼ିଆମାନେ ବାରିକ ମାତ୍ରରୀ ଇଲକା କର୍ମଗୃହୀଠାରୁ ପରିଶ୍ରମ କରି ଶିକ୍ଷା କରନ୍ତେ ତହିଁକି ସମୟ ଦିଆଯାଇ ନାହିଁ । ଦୁଇ ମାସ ମଧ୍ୟରେ କିପରି ଏସବୁ ଗୁଣ ଶିଖି କେହି ପରୀକ୍ଷା ଦେବ । ଅତଏବ ଆମ୍ଭେ-ମାନେ ସବିନୟରେ ଗବର୍ଣ୍ଣମେଣ୍ଟଙ୍କୁ ଜଣାଉଅଛୁ କି ଯେବେ ଓଡ଼ିଆମାନଙ୍କୁ ନିତାନ୍ତ ଉଚ୍ଚପଦାରୂଢ଼ କରିବାର ମାନସ ଥାଏ ତେବେ ନ୍ୟୁନକଳ୍ପରେ ଏକ ବର୍ଷପାଇଁ ଏସବୁ ନିୟମ ରହିତ କରି କେବଳ ଆଇନର ପରୀକ୍ଷା ଗୃହୀତ ହେଉ ଏବଂ ଶାରୀରିକ ଯୋଗ୍ୟ-ତାର ସାର୍ଟିଫିକେଟ କଟକ ସିବିଲସାର୍ଜନଙ୍କୁ ଦେବାର ଆଜ୍ଞା ହେଉ । ତାହାହେଲେ ଏବର୍ଷ ପରୀକ୍ଷାରେ କେହି କେହି ଉତ୍ତୀର୍ଣ୍ଣହୋଇ କର୍ମ ପାଇପାରନ୍ତି, ନୋହିଲେ ଓଡ଼ିଆ-ମାନଙ୍କ କପାଳ ଯେମନ୍ତ ଦଡ଼େ ବନ୍ଧିଅଛି ସେହିପରି ରହିଥିବ ଓ କମିଶନର ସ ହେବ ଅଥବା ଗବର୍ଣ୍ଣମେଣ୍ଟ କଦାଚ ଏମାନଙ୍କର ଅବସ୍ଥା ଉନ୍ନତ କରିବାକୁ ସକ୍ଷମ ହେବେ ନାହିଁ । ଶ୍ରୀଯୁକ୍ତ କମିଶନର ସାହେବଙ୍କୁ ଅନୁରୋଧ କରୁଅଛୁଁ ଯେ ଏବିଷୟରେ ଓଡ଼ିଆଙ୍କ ସପକ୍ଷ ହୋଇ ଲେଖନୀ ଧାରଣ କରନ୍ତୁ ।

୨୯୧ । ଗଡ଼ଜାତର ଅବସ୍ଥା ।

ଆମ୍ଭେମାନେ ଏଥିପୂର୍ବେ ଏହି ଶିରୋନାମାରେ ଏକ ପ୍ରସ୍ତାବ ଲେଖି ତହିଁରେ ଜଣାଇ ଥିଲୁଁ ଯେ ଗଡ଼ଜାତରେ ଦୁଇ କାରଣରୁ ଜ୍ଞାନ ଓ ସଭ୍ୟତା ବୃଦ୍ଧି ହେଉ ନାହିଁ ଓ ସେହି ପ୍ରସ୍ତାବରେ ଲେଖିଥିଲୁଁ କି ଢେଙ୍କାନାଳ ଗଡ଼ର ଅବସ୍ଥା ସ୍ୱତନ୍ତ୍ର ଅଟଇ । ସେ ଅବସ୍ଥା କି ଏ ପ୍ରସ୍ତାବରେ ତହିଁର କିଛି ବର୍ଣ୍ଣନା କରିବାକୁ ଇଚ୍ଛା ହୋଇଅଛି । ଢେଙ୍କା-ନାଳ ରାଜାଙ୍କୁ ଅନେକ ଲୋକେ ଦେଖିଅଛନ୍ତି ଓ ତାହାଙ୍କ ବିଦ୍ୟା ବୁଦ୍ଧି ବଦାନ୍ୟତା ଓ ମହତ୍ତ୍ୱର ପରିଚୟ ମଧ୍ୟ ପାଇଅଛନ୍ତି । ଅତଏବ ଏସବୁ ବର୍ଣ୍ଣନାକରିବା ଅନାବଶ୍ୟକ ଅଟଇ । ସେ ଆପଣା ରାଜ୍ୟ କରୁଯେ ଶାସନ କରୁଅଛନ୍ତି ଓ ପ୍ରଜାଙ୍କର ସୁଖ ସ୍ୱାଚ୍ଛନ୍ଦତା ସାଧନ କାରଣ କି ଉପାୟମାନ କରିଅଛନ୍ତି ତହିଁର କିଞ୍ଚିତ୍ ଉଲ୍ଲେଖ କରିବା—

ଆମ୍ଭେମାନେ ଏକ ସମୟରେ ଏଗଡ଼କୁ ଯାଇ ଦେଖିଲୁଁ ଯେ ଏଠାର ଶାସନ ପ୍ରଣାଳୀ ଅନେକାଂଶରେ ଉତ୍କୃଷ୍ଟ ଅଟଇ ଓ ଅନୁସନ୍ଧାନ କରି ଅବଗତ ହୋଇଅଛୁଁ ଯେ ଅନ୍ୟ କୌଣସି ଗଡ଼ଜାତରେ ଏ ପ୍ରକାର ନାହିଁ । ସମ୍ପୂର୍ଣ୍ଣଭାବରୁ ଆମ୍ଭେମାନେ ମହାରାଜାଙ୍କ ସ୍ୱୟଂସନରେ ବସି ଫଉଜଦାରୀ ଆସାମୀଙ୍କୁ ସୁବିଚାର କରିବାର ପ୍ରଣାଳୀ ଦେଖିବାକୁ ଅସମର୍ଥ ହେଲୁଁ ମାତ୍ର ପ୍ରଜାଙ୍କର ଭାବଗତିରୁ ଜଣାଗଲା ଯେ ସେମାନେ ବଡ଼ କଷ୍ଟରେ ନାହାନ୍ତି । ତହିଁର କାରଣ ଏହି ଯେ ମହାରାଜ ସ୍ୱଭାବତଃ ନ୍ୟାୟବାନ୍ ଓ ଧର୍ମ୍ମଶୀଳ ଅଟନ୍ତି ଓ ଇଂରାଜଙ୍କ ଶାସନ ପ୍ରଣାଳୀ ଅବଲମ୍ବନପୂର୍ବକ କାର୍ଯ୍ୟ ନିର୍ବାହ କରନ୍ତି । ଏଥିରେ ଲୋକଙ୍କର ବିଶେଷ କ୍ଳେଶ ହୁଅଇ ନାହିଁ । ଖଜଣା ଉସୁଲ ନିମିତ୍ତ ପ୍ରଜାଙ୍କୁ କେତେ ଦଣ୍ଡ ଭୋଗ କରିବାକୁ ହୁଅଇ ତାହା କାହାରିକୁ ଅବିଦିତ ନାହିଁ । ଲାଟବନ୍ଦୀର ନିୟମ ପୂର୍ବରେ ଜମିଦାରମାନଙ୍କୁ ମୁଗଲବନ୍ଦୀରେ ସୁଦ୍ଧା କ୍ଲେଶ ଭୋଗ-କରିବାକୁ ହେଉଥିଲା ଓ ଦିନେ ସୁଦ୍ଧା ପିଆଦା ଛାଡ଼ ନଥିଲେ । ଢେଙ୍କାନାଳର ମହାରାଜ ବର୍ତ୍ତମାନ ଆପଣା ରାଜ୍ୟରେ ଲାଟବନ୍ଦୀର ନିୟମ ପ୍ରଚଳିତ କରିଅଛନ୍ତି । ସୁତରାଂ ଯିଏ ଖଜଣା ଯାହାର ବାକି ରହିବ ତାହାର ଜମିଦାରୀ ରହିବନାହିଁ ନୋହିଲେ ଖଜଣା ଉସୁଲ ପାଇଁ ଆଉ କିଛି ଅତ୍ୟାଚାର କାହାର ଉପରେ ହୁଅନ୍ତା ନାହିଁ । କିନ୍ତୁ ଜମିଦାରଙ୍କୁ ପ୍ରଜା ଖଜଣା ନଦେଲେ ମହାରାଜ କି ପ୍ରକାରର ଜମିଦାରଙ୍କ ସାହାଯ୍ୟ କରନ୍ତି ଯଦ୍ୟପି କି ତାହା ଆମ୍ଭେମାନେ ଜାଣିନାହୁଁ ମାତ୍ର ଏତିକ ବିଶ୍ୱାସ ହେଉଅଛି ଯେ ସେମାନେ ପ୍ରଜାଙ୍କ ଉପରେ ବହୁତ ଅତ୍ୟାଚାର କରିପାରୁ ନଥିବେ । ଏରୂପ ବିଶ୍ୱାସ କରିବାର ହେତୁ ଏହି ଯେ ଆମ୍ଭେମାନେ ସେଠାରେ ଥାଇଁ ଲୋକପ୍ରମୁଖାତ୍ ଶୁଣିଅଛୁଁ ଯେ ଜମିଦାର ଯେବେ କୌଣସି ପ୍ରଜାଙ୍କୁ ବେଠି କରିବାକୁ ଆଣି ତାହା ଉପରେ ଅତ୍ୟାଚାର କରେ ତେବେ ସେ ସରକାରରେ ଅପରାଧୀ ହୁଅଇ । ଯେଉଁଠାରେ ବେଠି ନିମିତ୍ତ ଏରୂପ ସୁନିୟମ ହୋଇଅଛି ସେଠାରେ ଖଜଣାପାଇଁ ଅତ୍ୟାଚାର ହେଉଥିବ କେମନ୍ତ କରି ଅନୁଭବ କରିବା । ଅତଏବ ଦେଖାଯାଏ ଯେ ଖଜଣା ଉସୁଲ ଓ ବେଠି ଏ ଦୁଇ ଗୁରୁତର ଅନିଷ୍ଟକୁ ପ୍ରଜାମାନେ ଅତକ୍ରମ କରିଅଛନ୍ତି । ଏପର ଆମ୍ଭେମାନେ ଦେଖିଲୁଁ ଯେ ଅପରାଧୀମାନଙ୍କୁ ଦଣ୍ଡ ଦେବାପାଇଁ ଜେଲଖାନା ନିର୍ମାଣ ହୋଇଅଛି ଓ ତହିଁରେ ପ୍ରାୟ ୭୦ ଜଣ କଇଦି ଥିଲେ । ଏମାନେ ଦେଖିବାକୁ ପ୍ରାୟ ସମସ୍ତେ ଏମନ୍ତ ସବଳକାୟ ଯେ ବେଙ୍ଗ ପିନ୍ଧି କୋଡ଼ି ଦେଇ ସଡ଼କ ମରାମତ କାର୍ଯ୍ୟ କରିବା ତାହାଙ୍କ ପକ୍ଷରେ କିଛି ପରିଶ୍ରମ ନୁହଇ । ସେମାନଙ୍କ ରୂପ ଦେଖିଲେ ଜଣାଯାଏ ଯେ ଜେଲଖାନାରେ ଏହାଙ୍କର ଖାଇବା ପିଇବାର କ୍ଲେଶନାହିଁ ଓ ଅନେକାଂଶରେ ସୁଖରେ ଅଛନ୍ତି । ଅଧିକାଂଶ କଇଦୀ ଚୋରୀ ଅପରାଧରେ ବନ୍ଦୀ ହୋଇଅଛନ୍ତି ଓ ଆଶ୍ଚର୍ଯ୍ୟର ବିଷୟ ଯେ ଏକ ୨ ଜଣ ଦୁଇ ତିନଥର କଏଦରୁ ମୁକ୍ତପାଇ ପୁନର୍ବାର ଜେଲକୁ ଆସିଅଛନ୍ତି ମାତ୍ର ଏଅବସ୍ଥା କଦାଚ ଭଲ ବୋଲଯାଇ ନପାରେ କାରଣ ସବଳକାୟ ଲୋକ ଉଚିତ ଉପାୟରେ

ଶାନ୍ତିରକ୍ଷାନିର୍ବାହ ନକରି ସ୍ୱେଚ୍ଛାନୁସାରେ ରହିଥିବା ଓ ପୁନଃ ପୁନଃ ଜେଲଖାନାକୁ ଯିବାଆସିବା କରୁଥିବାର ଦେଖାଯାଏ । ସମସ୍ତ ଶ୍ରେଣୀର ପ୍ରଜାଙ୍କ ଜୀବିକା ନିର୍ବାହର ଉପାୟ ସ୍ଥଳରେ ଏବଂ ଅପରାଧ ନିବାରଣ କାରଣ ପୁଲିସ ପକ୍ଷରେ ଭଲ ମନୋଯୋଗ ହେଉନାହିଁ ଏବଂ ଜେଲଖାନାର ପ୍ରଣାଳୀ ମଧ୍ୟ ଉତ୍ତମ ନୁହଇ । ଜେଲରେ ଏମନ୍ତ ଦଣ୍ଡ ଦେବାର ଉଚିତ କି ତାହା ଅପରାଧୀମାନେ ଭୋଗକରି ପୁନର୍ବାର ଆସିବାକୁ ଭୟକରିବେ । ମୁଗଲବନ୍ଦୀର ପାଇକ-ଲୋକଙ୍କ ନିମିତ୍ତ ଏପ୍ରକାର ଦଣ୍ଡ ଉତ୍ତମ ଅଟଇ ମାତ୍ର ଗଡ଼ଜାତର ନୀଚ ଶ୍ରେଣୀର ଲୋକଙ୍କୁ ଏ ଦଣ୍ଡ ଯଥେଷ୍ଟ ନୁହଇ । ଯେଉଁ ଉଚ୍ଚ ଶ୍ରେଣୀର ଲୋକଙ୍କ ମାନାପମାନର ଜ୍ଞାନ ଅଛି ସେମାନଙ୍କ ପାଇଁ ଜେଲଖାନା ଭଲ ଅଟେ ମାତ୍ର ଇତର ଜାତି କାରଣ ଆଉ କିଛି ଉପାୟ କରିବା ଆବଶ୍ୟକ । ଆମ୍ଭେମାନେ ବୋଧକରୁଁ ଏପ୍ରକାର ଲୋକଙ୍କୁ ବେତାଘାତ ଦଣ୍ଡ ଓ କଷ୍ଟ କାଳ ପୁଲିସର ନଜରବନ୍ଦୀରେ ରଖିବାର କର୍ତ୍ତବ୍ୟ । ମୁଲକର ଅବା ସେଠାରେ କାହିଁ ? ମାତ୍ର ଆମ୍ଭେମାନେ କହୁଅଛୁଁ କି ଯେଉଁମାନେ ମାଦକ ଓ ଚୌର୍ଯ୍ୟ ଥାଇ ଜାଗିରି ଭୋଗ କରୁଅଛନ୍ତି ସେହିମାନେ କର୍ତ୍ତୃମାଧୀନ ହେଲେ ମୁଲକର କାର୍ଯ୍ୟ ନିର୍ବାହ କରିବେ ।

ଶାସନ ପ୍ରଣାଳୀର ଅବସ୍ଥା ଏହିରୂପ । ପ୍ରଜାଙ୍କ ସୁଖ ସ୍ୱଚ୍ଛନ୍ଦତା କାରଣ ମହାରାଜା କୌଣସି ଅଂଶରେ ତ୍ରୁଟି କରୁ ନାହାନ୍ତି । ବାଳକଙ୍କ ବିଦ୍ୟାଲାଭ କାରଣ ଗଡ଼ଠାରେ ଗୋଟିଏ ବିଦ୍ୟାଳୟ ସ୍ଥାପନ କରି ଅଛନ୍ତି । ତହିଁରେ ଇଂରାଜୀ ବଙ୍ଗଳା ଓଡ଼ିଆ ଓ ସଂସ୍କୃତ ଚାରିଭାଷାରେ ବିଦ୍ୟାଦାନ ହୁଅଇ ଓ ଏଥିପାଇଁ ଉପଯୁକ୍ତ ଶିକ୍ଷକମାନେ ନିଯୁକ୍ତ ଅଛନ୍ତି । ଆହୁରି ମୋଫସଲରେ ପାଠଶାଳାମାନ ସ୍ଥାପନ ହେଉଛି ବା ହେଉଅଛି ରୋଗୀଙ୍କର ଚିକିତ୍ସା କାରଣ ମହାରାଜା ଗଡ଼ଠାରେ ଗୋଟିଏ ଚିକିତ୍ସାଳୟ ସ୍ଥାପନ କରି ଜଣେ ନେଟିବ ଡାକ୍ତର ନିଯୁକ୍ତ କରି ଅଛନ୍ତି । ତାହାଙ୍କଦ୍ୱାରା ଇଂରାଜୀ ମତରେ ଚିକିତ୍ସା ହୁଅଇ । ପ୍ରତିଦିନ ଅନେକ ଲୋକ ଆସି ଔଷଧ ନେଇଯାନ୍ତି ଓ ଡାକ୍ତରଙ୍କର ଚିକିତ୍ସାରେ ସମସ୍ତଙ୍କର ସନ୍ତୋଷ ଜାତ ହୋଇଅଛି । ରାଜ୍ୟର ସବୁଲୋକ ଏଠାରେ ଚିକିତ୍ସା ପାଇ ପାରନ୍ତି ନାହିଁ ବୋଲି ଗଡ଼ରୁ ଅନ୍ତରରେ ଆଉ ଦ୍ୱିତୀୟ ଚିକିତ୍ସାଳୟ ସ୍ଥାପନ ହେବାର ହୋଇଲାଣି । ଏଥିରେ ବହୁତ ଲୋକଙ୍କର ଉପକାର ହେବ । ଅତଏବ ବର୍ତ୍ତମାନର ରାଜାଙ୍କର ମାନ୍ୟ ? କର୍ତ୍ତବ୍ୟ ବୋଲି ସଭ୍ୟ ଦେଶର ଲୋକମାନେ ବୋଲନ୍ତି ନ୍ୟୁନାଧିକରେ ସେସବୁର ଅନୁଷ୍ଠାନ ଢେଙ୍କାନାଳରେ ଦେଖାଯାଏ । ଏଣୁକରି ଆମ୍ଭେମାନେ ଢେଙ୍କାନାଳକୁ ଗଡ଼ଜାତର ଆଦର୍ଶ ଭୂମି ସ୍ୱରୂପ ଜ୍ଞାନ କରୁଅଛୁଁ ଓ ଅନ୍ୟାନ୍ୟ ଗଡ଼ର ରାଜାମାନେ ଯେବେ ଏହି ଉପରେ ଅନୁକରଣ କରିଲେ ମନୋଯୋଗୀ ହେବେ ତେବେ ଅଚିରେ ଗଡ଼ଜାତର ଅବସ୍ଥା ଉନ୍ନତ ହେବାରେ କିଛି ମାତ୍ର ସନ୍ଦେହ ନାହିଁ । ଆମ୍ଭେମାନେ ଦେଖି ଅଛୁଁ ଯେ ଢେଙ୍କାନାଳର ମହାରାଜା ଆପଣା ରାଜ୍ୟକୁ ଉନ୍ନତି

କରିବାଲାଗି ଯତ୍ନ ଓ ବ୍ୟୟରେ କୁଣ୍ଠିତ ହେଉ ନାହାନ୍ତି । ଅଳ୍ପକାଳ ହେଲା ଜଣେ ଇଂରାଜ କର୍ମଚାରୀ ରଖି ଗୋଟିଏ ସଡ଼କ ନିର୍ମାଣର ଉଦ୍ୟମ କରି ଅଛନ୍ତି । ଏହି ବର୍ଷରେ ସଡ଼କ ନିର୍ମାଣ ହେଲେ ସମ୍ବଲପୁର ସଡ଼କ ସଙ୍ଗେ ମିଶିବ । ତେତେବେଳେ ଗମନାଗମନର କ୍ଳେଶ ରହିବ ନାହିଁ ଓ ଏହା ସଙ୍ଗେ ଚଟି ଡାକ ବସାଇବାର ଉଦ୍ୟମ ହେଉଅଛି । କେବଲ ଜଣେ ଉପଯୁକ୍ତ ମନ୍ତ୍ରୀର ଅଭାବ ଥିଲା ସମ୍ପ୍ରତି ବାବୁ ବନମାଳୀ ସିଂହ ସେଠାରେ ରହିବାରୁ ତାହା ନଧ ମୋଚନ ହୋଇଅଛି । ଅତଏବ ଆଶା ହୁଅଇ ଯେ ଆଗାମୀ ବର୍ଷ ଢେଙ୍କାନାଳର ଅବସ୍ଥା ଆମ୍ଭେମାନେ ଆହୁରି ଉତ୍ତମ ରୂପେ ବର୍ଣ୍ଣନା କରିବାକୁ ସମର୍ଥ ହେବୁଁ ।

୨୯୨ । ସାପ୍ତାହିକ ସମ୍ବାଦ

ଗତ ଗୁରୁବାରଦିନ ଘ୧୨ଣ୍ଟା ସମୟରେ ଗୋଟିଏ ସ୍ତ୍ରୀ ତାହାର ବାଳିକା ସହିତ ମାଲବାଗ ହତାମଧ୍ୟସ୍ଥ ପୁଷ୍କରିଣୀକୁ ସ୍ନାନ କରିବା ନିମିତ୍ତ ଯାଇଥିଲା । ସେ ପ୍ରଥମେ ବାଳିକାକୁ ସ୍ନାନ କରାଇ କୂଳରେ ଛିଡ଼ା କରାଇ ଦେଲା । ଏଥିମଧ୍ୟରେ କେତେବେଳେ ସେ ବାଳିକା ଜଳରେ ମଗ୍ନହୋଇ ପଞ୍ଚତ୍ୱ ପ୍ରାପ୍ତ ହେଲା ତାହା ଉକ୍ତ ସ୍ତ୍ରୀକୁ ଜଣା ନାହିଁ । ସେ ସ୍ନାନ ସାରି ଘରକୁ ଯାଇ ବାଳିକାକୁ ଅନ୍ୱେଷଣ କରି କରି ପୁନର୍ବାର ସେହି ପୁଷ୍କରିଣୀ ତଟରେ ପ୍ରବେଶ ହୋଇ ଦେଖିଲା ଯେ ବାଳିକା ଜଳରେ ମଗ୍ନ ହୋଇ ପ୍ରାଣତ୍ୟାଗ କରି ଭାସୁଅଛି । ତହୁଁ ଶୋକାକୁଳା ହୋଇ ନିଜେ ଜଳରେ ପଡ଼ି ବୁଡ଼ି ମରୁଥିଲା କଟେନବୀ ସାହେବଙ୍କ ଚପରାଶି ତାହାକୁ ଘୋଷାଡ଼ି ଆଣିଲା । ପୋଖରୀରେ ପଥର ପାହାଚ ଥିଲା ତାହାକୁ ଟାଉନ କମିଟୀ କାଢ଼ିନେଇ ଗୃହଆଡ଼ି ଗଡ଼ନ୍ତ କରିଦେଇ ଦେବାରୁ ଏ ଦୁର୍ଘଟନା ହେଲା । ଗଡ଼ନ୍ତରେ ପିଲା ଛିଡ଼ା ହେଲା ସିନା ଗଡ଼ିପଡ଼ି ଥିବ, ପାହାଚ ଥିଲେ ଗଡ଼ି ପଡ଼ିବାର ସମ୍ଭାବନା ଥାନ୍ତାନାହିଁ । ଟାଉନ କମିଟୀଙ୍କ ସନ୍ତୋଷାର୍ଥି ଏମନ୍ତ ଶୋଚନୀୟ ରୂପେ ପ୍ରତିଷ୍ଠିତ ହେଲା ବଡ ଦୁଃଖର ବିଷୟ ଅଟଇ ।

୨୯୩ ଗତ ଗୁରୁବାର କଟକର ଜଣେ ପ୍ରଧାନ ମହାଜନ ଦେବୀ ପ୍ରସାଦ ସାହୁ ଦଗାବାଜୀ ମୋକଦ୍ଦମାରେ ଛଅମାସ କଠିନ ପରିଶ୍ରମ ସହିତ କାରାବାସର ଦଣ୍ଡ ପାଇଅଛି । ଦେବୀ ପ୍ରସାଦ ସାହୁକୁ ସମସ୍ତେ ଉତ୍ତମ ବୋଲି ଜ୍ଞାନ କରିଥିଲେ ତାହାର ଏପରି ଅବସ୍ଥା ଘଟିଲା ଆଶ୍ଚର୍ଯ୍ୟ ଅଟଇ ଅଥବା ନରର ମାୟା ନାରାୟଣଙ୍କୁ ଅଗୋଚର ।

## ( ୬ଷ୍ଠ ଭାଗ, ୧୮ । ୧୧ । ୧୮୭୧, ସଂଖ୍ୟା ୪୪ )

୨୯୪ । ବାଟକର

ଗତ ମଙ୍ଗଳବାର ସାୟଂକାଳରେ କଟକ ପ୍ରିନ୍ସିପାଲଙ୍କ କୋଠାରେ

ଉତ୍କଳଉଲ୍ଲାସିଙ୍କ ସଭାର ଗୋଟିଏ ବିଶେଷ ଅଧିବେଶନ ହୋଇଥିଲା । ବାଠକର ଜଣନ୍ତିରେ ଜମିଦାରମାନଙ୍କର କି କର୍ତ୍ତବ୍ୟ ଏକଥା ବିଚାର କରିବା ସଭାର ଉଦ୍ଦେଶ୍ୟ ଥିଲା । ନିରୂପିତ କାଳରେ ଏ ଦେଶୀୟ ଅନେକ ଜମିଦାର ଓ ଅନ୍ୟାନ୍ୟ ଭଦ୍ରଲୋକ ଉପସ୍ଥିତ ହୋଇ ସଭାର କାର୍ଯ୍ୟ ନିର୍ବାହ କଲେ । ପ୍ରଥମରେ ବାଠକର ଆଇନ ଓ ତଦ୍ଧି ଷୟରେ ଗବର୍ଣ୍ଣମେଣ୍ଟ ବଙ୍ଗାଲ ଯେ ବର୍ତ୍ତମାନ ପ୍ରସ୍ତାବ କରିଅଛନ୍ତି ତାହା ପାଠ ହେଲ ଓ ସଭ୍ୟମାନେ ତହିଁର ପ୍ରଧାନ ବିଷୟମାନ ହୃଦୟଙ୍ଗମ କରି ପ୍ରାୟ ସମସ୍ତେ ଐକ୍ୟ ହୋଇ ବ୍ୟକ୍ତ କଲେ ଯେ ଏ ଆଇନ ଏଠାରେ ପ୍ରଚଳିତ ହେଲେ ଅଧିବାସୀମାନଙ୍କର ବଡ଼ କଷ୍ଟ ହେବ । ପ୍ରଜାମାନେ ଜଳକର ହେତୁରୁ ଦୁଃଖ ଭୋଗ କରୁଅଛନ୍ତି, ତହିଁର ଯନ୍ତ୍ରଣା ଶେଷ ନହେଉଣୁ ଆଉ ଗୋଟିଏ କର ତାହାଙ୍କ ଉପରେ ଚାପିବା ବଡ଼ ଅନିଷ୍ଟକର କାର୍ଯ୍ୟ ଅଟଇ ।

## ବାବୁ ସୁଦାମଚନ୍ଦ୍ର ପଟ୍ଟନାୟକ ।

ଗତ ୬ଠ ଅବ ଇଣ୍ଡିଆରୁ ପ୍ରକାଶ ଯେ ବାବୁ ସୁଦାମଚନ୍ଦ୍ର ପଟ୍ଟନାୟକ ତୃତୀୟ ଶ୍ରେଣୀ ଅସିଷ୍ଟାଣ୍ଟ ଇଞ୍ଜିନିୟର ନିଯୁକ୍ତ ହୋଇ ବଙ୍ଗ ପ୍ରଦେଶର ଅଟ୍ଟାଳିକା ଓ ସଡ଼କ ବିଭାଗରେ କର୍ମ କରିବାକୁ ଆଦେଶ ପାଇ ଅଛନ୍ତି ।

୨୯୫ । ଅଣ୍ଡ୍ରେଷ୍ଟ ସାହେବ ନାମରେ ଜଣେ ଫିରିଙ୍ଗି ଏନଗରରେ ବାଣିଜ୍ୟ ଓ ମୁଲ୍ଲାରି ବ୍ୟବସାୟ କରୁଥିଲା । ଗତ ଶନିବାର ଏକ ଦଗାବାଜୀ ମକଦ୍ଦମାରେ ଏକଟିଂ ଜଏଣ୍ଟ ମାଜିଷ୍ଟ୍ରେଟ ତାହାଙ୍କୁ କଠିନ ପରିଶ୍ରମ ସହିତ ଏକମାସ କାରାବାସ କରିବାର ଦଣ୍ଡ ଦେଇଅଛନ୍ତି ।

୨୯୬ । ଖଣ୍ଡାପଡ଼ା ।

ଗତବର୍ଷ ଅର୍ଥାତ୍ ସନ ୧୮୭୧ । ୭୨ ସାଲରେ ଯେଉଁଠାରୁ ଜମିଉପରେ ମାଣପ୍ରତି ୫୨୯ଙ୍କା ହିସାବରେ ଜଳକର ଧାର୍ଯ୍ୟ ହୋଇଥିଲା ବର୍ତ୍ତମାନ ତାହା ରହିତହୋଇ ସେହି-ସବୁ ଜମିବାବତ୍ ଜଳକର ମାଣପ୍ରତି କେବଳ ୫୨୯ଙ୍କା ହିସାବରେ ଦେବାକୁ ହେବ । ସେହି ଜଳକର ବାବତ୍ ପ୍ରଜାମାନଙ୍କ ନିକଟରେ ସେମାନଙ୍କ ସ୍ୱୀକାର ଲେଖାମତେ ସର-କାରଙ୍କ ଯାହା ନ୍ୟାଯ୍ୟ ବାକିଅଛି ସେସବୁରୁ ପଦ ଗ୍ରାମର ପ୍ରଧାନ ପ୍ରଧାନ ବ୍ୟକ୍ତିମାନେ ଆଦାୟ କରିଦେବେ ତେବେ ସେମାନେ ଫି ଶତ ୫୮୯ଙ୍କା ହିସାବରେ କମିଶନ ପାଇବେ । ୫୫୦୯ଙ୍କାରୁ ନ୍ୟୂନ ଦାଖଲକଲେ ଉକ୍ତ କମିଶନ ପାଇବେ ନାହିଁ, ବର୍ତ୍ତମାନ ଏକ

୧୮୭୨।୭୨ ସାଲ ନିମନ୍ତେ ମାଣପ୍ରତି ୦୧୯ ହିସାବରେ ଜଳକର ଧାର୍ଯ୍ୟ ହୋଇଅଛି। ଏହା ସର୍ବ ସାଧାରଣଙ୍କ ହିତ କାରଣ ପ୍ରବୃତ୍ତ କରାଗଲା।

ତା ୮।୧୧। ସନ ୧୮୭୧ ସାଲ ଦସ୍ତଖତ ଜି. ଟି ଏନବି

କେନାଲ ରେଭିନ୍ୟୁ ସୁପରିଣ୍ଟେଣ୍ଡେଣ୍ଟ

## (ଷଷ୍ଠ ଭାଗ, ୯। ୧୨।୧୮୭୧, ସଂଖ୍ୟା ୪୭)

୨୯୬। ଜଳକର।

ଶ୍ରୀଯୁକ୍ତ ଟି ଏନବି ସାହେବ ଜଳକର ମାଣପ୍ରତି ୦।୧୯ଙ୍କା ଲେଖାଏଁ ଅସୁଲ କରିବା ବିଷୟରେ ଯେଉଁ ବିଜ୍ଞାପନ ଦେଇଅଛନ୍ତି ତହିଁ ଉପଲକ୍ଷରେ ଆମ୍ଭେମାନେ ଗତ-ମାସ ତା ୨୨ ଇଏର ପତ୍ରିକାରେ ଲେଖିଥିଲୁଁ ଯେ ଯେଉଁମାନେ ୦ ୧୫ ଦରରେ କର ଦେଇଅଛନ୍ତି ସେମାନେ ଅବଶିଷ୍ଟ ୦ ୧୫୯ ଫେରିପାଇବେ। ସମ୍ପ୍ରତି ଶ୍ରୀଯୁକ୍ତ ଟି ଏନବି ସାହେବ ସୁପରିଣ୍ଟେଣ୍ଡେଣ୍ଟଙ୍କଠାରୁ ଏକପତ୍ର ପାଇ ତହିଁରୁ ଅବଗତ ହେଲୁଁ ଯେ ସାହେବ ପ୍ରଶଂସିତ ଉକ୍ତ ବିଷୟରେ ଗବର୍ଣ୍ଣମେଣ୍ଟଙ୍କୁ ପତ୍ର ଲେଖିବାରୁ ତହିଁ ଉତ୍ତରରେ ଏହି ଚିଠି ଆସିଅଛି ଯେ ଯେଉଁମାନେ ସନ ୧୮୭୦।୭୧ ମସିହାରେ ୦ ୨୫ ଙ୍କା ଦରରେ କର ଦେଇ ଅଛନ୍ତି ସେମାନେ ମାଣପ୍ରତି ୦ ୧୫ ଫେରିପାଇବେ। ଲୋକେ ଇଚ୍ଛାପୂର୍ବକ ବା ବଳପୂର୍ବକ ଉକ୍ତ ୦ ୨୫ ଙ୍କା ଦରରେ କର ଦେଇଥାନ୍ତୁ ଏହି ବିଷୟର କିଛି ବିବେଚନା ହେବାର ଆବଶ୍ୟକ ନାହିଁ। ଯେଉଁମାନେ ସନ ୧୮୭୧।୭୨ ମସିହାକୁ କରଦେବାର ଦାୟୀ ଅଛନ୍ତି ସେମାନେ ନଗଦ ଫେରନ୍ତ ନପାଇ କେବଳ ମିଝା ପାଇବେ। ମାତ୍ର ଯେଉଁମାନେ ଏବର୍ଷକୁ କବୁଲିୟତ ଦେଇନାହାନ୍ତି କିଂବା ଜଳ ନେଇନାହାନ୍ତି ସେମାନଙ୍କୁ ନଗଦ ଟଙ୍କା ଫେରିଦିଆଯିବ। ଗବର୍ଣ୍ଣମେଣ୍ଟ ଆହୁରି ଲେଖିଅଛନ୍ତି ଯେ ସନ ୧୮୭୦ ମସିହା ପୁଷ ମାସ ତା ୧୯ରିଖ ଅର୍ଥାତ୍ ଯେଉଁଦିନ ଶ୍ରୀଯୁକ୍ତ କର୍ଣ୍ଣେଲ ସାହେବ ଏକଟଙ୍କା ଦରରେ କରନେବାର ଘୋଷଣା ଦେଲେ ତହିଁପୂର୍ବରୁ ଯେଉଁମାନେ ଜଳ ନେଇଥିଲେ ସେମାନଙ୍କ ପ୍ରତି ମଧ୍ୟ ଏହି ଆଜ୍ଞା ପ୍ରବଳ ହେବ।

ଏହିରୁ ସ୍ପଷ୍ଟ ଜଣାପାଏ ଯେ ସନ ୧୮୭୦ ମସିହା ଲାଗି କାହାଠାରୁ ମାଣପ୍ରତି ୦ ୮ ଙ୍କାରୁ ଅଧିକ ଦରରେ କର ଗୃହୀତ ହେବନାହିଁ। ଏ ସମ୍ବାଦ ଆନନ୍ଦକର ଓ ନ୍ୟାୟଯୁକ୍ତ ଅଟଇ ମାତ୍ର ପାଠକମାନେ ଶୁଣି ଆହୁରି ଆନନ୍ଦିତହେବେ ଯେ ଶ୍ରୀଯୁକ୍ତ ଟି ଏନବି ସାହେବଙ୍କ ପ୍ରସ୍ତାବ କ୍ରମେ ଏମନ୍ତ ଆଜ୍ଞା ଆସିଅଛି। ଅତଏବ ଏହାଙ୍କୁ ଏକାର୍ଯ୍ୟରେ ଗବର୍ଣ୍ଣମେଣ୍ଟ ନିଯୁକ୍ତ କରିବାରେ ଯେ ସବୁ ଶୁଭ ଫଳର ପ୍ରତ୍ୟାଶା ଆମ୍ଭେମାନେ କରିଥିଲୁଁ ସେସବୁ କ୍ରମେ ଦେଖିବାରେ ଆସୁଅଛି।

୨୯୮ । ରୟତର ଭୂମିରେ କି ସତ୍ୱ ।

କି ଉପାୟରେ ପ୍ରଜାଠାରୁ ଭୂମିକର ସହଜରେ ଆଦାୟ ହେବ ଏ ବିଷୟର ପ୍ରସ୍ତାବ କରିବା କାରଣ ଗତ ରବିବାର ଉତ୍କଳଉନ୍ନାସିନୀର ସଭା ହୋଇଥିଲା । ଏ ବିଷୟରେ ତର୍କବିତର୍କ ହେବା ପୂର୍ବେ ରୟତର ଭୂମିରେ କି ସତ୍ୱାଧିକାର ଅଛି ଏହାଉପରେ ଅନେକ ତର୍କ ହେଲା । ଏ ବିଷୟର ଉଦୟ ହେବାର କାରଣ ଏହି ବୋର୍ଡ ରେବିନିଉ ସ୍ଥିର କରି- ଅଛନ୍ତି ଯେ ଯଦ୍ୟପି ଥାନୀ ରୟତର ଥାନୀ ପଟ୍ଟା ଜମି ତାହାର ସନ୍ତାନ ମାନଙ୍କ ମଧ୍ୟରେ ବିଭାଗ ହେଉଅଛି ଓ ତାହାର ଦେଣରେ ଅଦାଲତରେ ନିଲାମ ହେଉଅଛି ତେବେ ତାହା ବାକୀଖଜଣା ଆଦାୟ ସକାଶେ ନିଲାମ ହୋଇପାରେ । ସୁତରାଂ ଜମିଦାର ରୟତକୁ ବାକୀ ଖଜଣା ପାଇଁ ବେଦଖଲ କରିବାର ଯେ ବାଧାଅଛି ତାହା ରହିତ ହେବ ଓ ରୟତର ଭୂମିରେ ସତ୍ୱାଧିକାର ସ୍ଥାପନ ହେବ ଓ ମଧ୍ୟ ସେ ଥାନୀ ଜମି ସମୁଦାୟ କିମ୍ବା ତହିଁର ଅଂଶ ବିକ୍ରୟ କି ଅନ୍ୟପ୍ରକାର ହସ୍ତାନ୍ତର କରିପାରିବ ।

ହାକିମଙ୍କର ଏପରି ମତ ହେବାର ଶୁଣି ଜମିଦାରମାନେ ହତବୁଦ୍ଧି ହୋଇ- ଅଛନ୍ତି, କାରଣ ତାଙ୍କର ଆୟର ଅନେକ ହ୍ରାସ ହେଉଅଛି । ଏ ବିଷୟରେ କେତେକ ସଭ୍ୟ କେତେ ପ୍ରକାର କଥା କହିଲେ । କେହି ହତାଶହୋଇ ବୋଇଲେ ଯେ ଯଦ୍ୟପି ସରକାର ଏତାଦୃଶ ଅଧିକାର ରୟତକୁ ଦେଉଅଛନ୍ତି ତେବେ ଭଲ ଏତିକି ନିୟମ କରନ୍ତୁ ଯେ ଜମିଦାର ବିନା ଅନୁମତିରେ ରୟତ ଥାନୀ ପଟ୍ଟା ଭୂମି ବିକ୍ରୟ କରି- ନପାରିବ କିମ୍ବା ତହିଁର କୌଣସି ଅଂଶ ନ ବିକିବ । ବିକିବାର ହେଲେ ସମୁଦାୟ ବିକିବ କାରଣ ତହିଁର ଏକ ଏକ ଅଂଶ ଭିନ୍ନ ଭିନ୍ନ ଲୋକଙ୍କୁ ବିକ୍ରୟ ହେଲେ ଭୂମି ଖଣ୍ଡ ଖଣ୍ଡ ହୋଇଯିବ ଓ ରୟତ ଉତ୍କୃଷ୍ଟ ଖଣ୍ଡ ଆପେ ରଖି ନିକୃଷ୍ଟ ଭୂମି ବିକି ଦେଲେ ତହିଁର ପରିମାଣାନୁସାରେ କ୍ରେତାଠାରୁ କର ଆଦାୟ ହୋଇ ନପାରିବ ସୁତରାଂ ଜମିଦାରର ହାନି ହେବ । କେହି ଦେଶହିତୈଷୀ ସଭ୍ୟ ନାନାପ୍ରକାର ଭଙ୍ଗୀ ଓ ଉଚ୍ଚ ସ୍ୱରରେ କହିଲେ ଯେ ପ୍ରଜାଙ୍କୁ ଏରୂପ ସତ୍ୱାଧିକାର ଦେଲେ ଦେଶର ମଙ୍ଗଳ ହେବ । ଭୂମିରମୂଲ୍ୟ ଧାର୍ଯ୍ୟ କରିବା ଆବଶ୍ୟକ, ରୟତର ଏପରି ସତ୍ୱ ନହେଲେ ଭୂମିର ମୂଲ୍ୟ ହୋଇ ନପାରେ । ଯେତେ ପ୍ରକାରରେ ଭୂମିର ମୂଲ୍ୟ ହୋଇପାରେ ସେତିକି ଭଲ । ଏ ବିଷୟ ଏହିପରି ରହିଲା । ତହୁଁ କି ଉପାୟରେ ଭୂମିକର ଅନାୟାସରେ ଆଦାୟ ହେବ ତଦ୍‌ବିଷୟରେ କିଞ୍ଚିତ୍ ତର୍କ ହେଲା କିନ୍ତୁ କିଛିହିଁ ଠିକ ନହେଲା । ପରିଶେଷରେ ଏହା ସ୍ଥିର ହେଲା ଯେ ସାତ ଆଠ ଜଣ ଜମିଦାର ସଭ୍ୟ ଏ ବିଷୟ ସ୍ୱହସ୍ତରେ ପ୍ରସ୍ତାବମାନ ଲେଖି ଆଗାମୀ ସଭାରେ ଆଗତ କରିବେ ।

ଆମ୍ଭମାନଙ୍କ ବିବେଚନାରେ ଥାନି ରଯ୍ୟତ ଭୂମିର କର ଯେ ପର୍ଯ୍ୟନ୍ତ ଦେଉଥିବ ସେ ପର୍ଯ୍ୟନ୍ତ ତାହା ଦଖଲ କରିବା ଭିନ୍ନ ତହିଁରେ ତାହାର ଅନ୍ୟ କୌଣସି ସତ୍ତ୍ୱାଧିକାର ନାହିଁ । କାରଣ ବନ୍ଦୋବସ୍ତ ଇସ୍ତାହାରରେ ସ୍ପଷ୍ଟ ଲେଖାଅଛି ଯେ ଥାନି ରଯ୍ୟତ ଆପଣା ଜମିକୁ ବିକ୍ରୟ, ଦାନ ବା ଇତ୍ୟାଦି କୌଣସି ପ୍ରକାର ହସ୍ତାନ୍ତର କରି ନପାରେ । ତହିଁରେ ତାହାର ମୌରସି ସତ୍ତ୍ୱ ନାହିଁ ଓ ତହିଁରେ ଥିବା ଆମ୍ବ ଇତ୍ୟାଦି ବୃକ୍ଷରୁ ତାହାକୁ ବୃକ୍ଷ ଜମିଦାର ବିନା ସମ୍ମତିରେ କାଟି କିମ୍ବା ବିକି ନପାରେ । ଆମ୍ଭେମାନେ ବୋଧକରୁଁ ବୋର୍ଡ ରେଭିନ୍ୟୁ ଏପରି ନିୟମ ଥିବାର ବିସ୍ମୃତ ହୋଇ ରଯ୍ୟତର ସତ୍ତ୍ୱାଧିକାର ସ୍ଥିର କରିଅଛନ୍ତି, ତାଙ୍କୁ ଥରେ ଚେତାଇ ଦେଲେ ସେ ଭୁଲ ହୋଇ ରହିବେ । ତେବେ ଜମିଦାରମାନେ କି ସକାଶେ ଚିନ୍ତିତ ଓ ଆନ୍ଦୋଳିତ ହେଉଅଛନ୍ତି ? ଯଦ୍ୟପି କୌଣସି ଥାନି ଜମି ରଯ୍ୟତର ଦେଣା ସକାଶେ ଅଦାଲତରେ ନିଲାମ ହୋଇଅଛି ତେବେ ତାହା ଜମିଦାରର ଅଜ୍ଞତା ହେତୁରୁ ହୋଇଅଛି । ଯେ ଆପତ୍ତି କରିଥିଲେ କଦାପି ନିଲାମ ହୋଇ ନଥାନ୍ତା ଓ ଶୁଣିବାରେ କୌଣସି ଜମିଦାର ମୁକାଦ୍ଦମ ହେବାରୁ ଏପରି ନିଲାମ ସ୍ଥଗିତ ହୋଇଅଛି । ସୁତରାଂ ଥାନି ରଯ୍ୟତର ଭୂମିରେ ସତ୍ତ୍ୱାଧିକାର ନାହିଁ ଓ ହୋଇ ନପାରେ । ଭୂମିକର ସମ୍ବନ୍ଧରେ ଆଦାୟ ହେବା ପକ୍ଷରେ ଜମିଦାର ସଭ୍ୟମାନଙ୍କର ପ୍ରସ୍ତାବିତ ଆଗାମୀ ସଭାର ଶୁଣିଲୁ ଉତ୍ତାରୁ ତଦ୍‌ବିଷୟରେ ଆମ୍ଭମାନଙ୍କର ମତ ପ୍ରକାଶ କରିବୁଁ ।

ସାପ୍ତାହିକ ସମ୍ବାଦ ।

୨୯୯ ।    ବାଲେଶ୍ୱର ସମ୍ବାଦବାହିକା ଲେଖିଛନ୍ତି—

କ । ଏବର୍ଷ ଏ ଅଞ୍ଚଳରେ ଅଧିକ ଧାନ ହୋଇଥିବାରୁ ଧାନର ଦର ବେଶୀ ହେବାର ଯେଉଁ ଆଶା ଥିଲା ତାହା ପ୍ରାୟ ବିଫଳ ହେବାର ଜଣାଯାଏ କାରଣ ପ୍ରାୟ ଦୁଇମାସଠାରୁ ତେଲୀମାନେ ଅନେକ ଜାହାଜ ନେଇ ପହୁଞ୍ଚି ଅଛନ୍ତି । ଧାନ ଚାଉଳକୁ ଜଠାର ପରି ଗୃଧ୍ର ବସି ଅଛନ୍ତି ଏବଂ ଯାହା କିଛି ଆସୁଅଛି ତାହା କ୍ରୟ କରୁଅଛନ୍ତି ।

( ୬ଷ୍ଠ ଭାଗ, ୨୩ । ୧୨ । ୧୮୭୧ , ସଂଖ୍ୟା ୪୯ )

୩୦୦ ।    ଦେଶୀୟ ଟିକସ ।

ଗତ ଥର ଅଧିବେଶନରେ ଉତ୍କଳୋଲ୍ଲାସିନୀ ସଭାରେ ଦେଶୀୟ ଟିକସ

ବିଷୟରେ ତର୍କ ବିତର୍କ ହୋଇଥିଲା । ସଭ୍ୟମାନଙ୍କ ମତ ଏହି ଜଣାଗଲା ଯେ ଡାକ୍ତରୀ ଚିକିତ୍ସା ଅପେକ୍ଷା ଦେଶୀୟ ଚିକିତ୍ସା ଉତ୍କୃଷ୍ଟ, କେବଳ ସ୍ୱତନ୍ତ୍ର ସ୍ଥାନରେ ରୋଗୀମାନେ ପଡ଼ି, ନଥିବା ଜ୍ୱର ଇତ୍ୟାଦି ଶାରୀରିକ ପୀଡ଼ା ଆରୋଗ୍ୟ ବିଷୟରେ ସେମାନଙ୍କର ପଟୁତା ଦେଖାଯାଏ ନାହିଁ ।

× × ×

୩୦୧ । ସାପ୍ତାହିକ ସମ୍ବାଦ ।

ଗତ ମାସ ତା ୨୪ରିଖରେ ଗଞ୍ଜାମର କଲେକ୍ଟର ତାର ଯୋଗେ ବୋର୍ଡ଼ ଅବ ରେବିନ୍ୟୁକୁ ଜଣାଇଥିଲେ ଯେ ଅନାବୃଷ୍ଟି ହେତୁରୁ ପେଣ୍ଠିରେ ଶସ୍ୟର ହାନି ହୋଇଅଛି ସେଠାରେ ଆଉ କିଛି ମଙ୍ଗଳ କାରଣ ଘଟଣା ହୋଇନାହିଁ । ପାରଳା-ଖେମଡ଼ିରେ ଶସ୍ୟ ଉତ୍ତମ ଓ ମହାଗାଉଁଠାର ମଧ୍ୟ ଜମିଦାରୀ ସବୁରେ ବାରଅଣା ଫସଲର ଆଶା ଅଛି । ବ୍ରହ୍ମପୁରରେ ଜଳର କଷ୍ଟ ଅନେକ ମୌଜାରେ ଅଧିକ ହେବାର ସମ୍ଭାବନା ଥିବାରୁ କୂଅ ଖୋଳାଇବା କାରଣ ଟ ୪୦୦୦ଙ୍କାର ପ୍ରୟୋଜନ ଅଛି । ଶସ୍ୟର ମୂଲ୍ୟ ବହୁତ ଉଚ୍ଚ ହୁଅଇ ଏବଂ ବଜାର ହାଟରେ ଶସ୍ୟ ମିଳୁଅଛି । ବୋର୍ଡ଼ ରେବିନ୍ୟୁ ଏ ଟଙ୍କା ବ୍ୟୟ କରିବାର ମଞ୍ଜୁରୀ କରି ଲେଖିଅଛନ୍ତି ଯେ ଜିଲ୍ଲାର ସମସ୍ତ ସ୍ଥାନରେ ଯେପରି ବୃଷ୍ଟିଜଳ ପ୍ରାପ୍ତ ହୁଅଇ ସେଥିନିମନ୍ତେ କଲେକ୍ଟର ସାହେବ ବିଶେଷ ଦୃଷ୍ଟି ରଖିଥିବେ ।

## ( ୭ମ ଭାଗ, ୧୦ । ୮ । ୧୮୭୨, ସଂଖ୍ୟା ୩୨ )

୩୦୨ । ଓଡ଼ିଆ ଡେପୁଟି କଲେକ୍ଟର ।

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ଗଜେଟରେ ଦେଖିଲୁଁ ଯେ ବାବୁ ନନ୍ଦ କିଶୋର ଦାସ ଡ଼େପୋଟି କଲେକ୍ଟରର ପ୍ରଥମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଗତ ଅପ୍ରେଲ ମାସରେ ଏ ପରୀକ୍ଷା ହୋଇଥିଲ ଓ ଏ ମହାଶୟ ଏଥିରେ ପ୍ରଥମଥର ଉପସ୍ଥିତ ହୋଇଥିଲେ । ଏକାଥରରେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ପ୍ରଶଂସାର ବିଷୟ ଅଟଇ । ଓଡ଼ିଶାରେ ପରୀକ୍ଷା ନିୟମ ଅଧୀନରେ କେବଳ ତିନିଜଣ ଲୋକ ଅବଧି ଡ଼େପୋଟୀ କଲେକ୍ଟରୀରେ ନିଯୁକ୍ତ ହୋଇଅଛନ୍ତି, ଯଥା — ବାବୁ ସଦାନନ୍ଦ ଯାଚକ, ବାବୁ ଜଗନ୍ମୋହନ ରାୟ ଓ ବାବୁ ନନ୍ଦକିଶୋର ଦାସ । ବାବୁ ସଦାନନ୍ଦ ଯାଚକଙ୍କୁ ବୟୋବୃଦ୍ଧାବସ୍ଥାରେ ନିଯୁକ୍ତ କରାଯାଇଥିଲ । ଅତଏବ ସେ ପରୀକ୍ଷାରେ ଅପାରଗ ହେବାର କଥା ବିଚିତ୍ର ନୁହଇ । କିନ୍ତୁ ଆଉ ଦୁଇଜଣ ଛ ଛ ମାସ କର୍ମକରି ଏକାଥରକେ ପ୍ରଥମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଏଥିରେ ସର୍ବସାଧାରଣ ସ୍ୱୀକାର କରିବେ ଉତ୍କଳୀୟମାନେ ଡ଼େପୋଟି କଲେକ୍ଟରୀ କର୍ମ କରିବାକୁ ସମ୍ପୂର୍ଣ୍ଣ ରୂପେ ଯୋଗ୍ୟ ଅଟନ୍ତି ମାତ୍ର ଦୁଃଖର ବିଷୟ ଯେ ଆମ୍ଭମାନଙ୍କ କମିସ୍ନର ଶ୍ରୀଯୁକ୍ତ ରେଭେନସା ସାହେବ ଓଡ଼ିଆଙ୍କ ଉନ୍ନତି ପ୍ରସଙ୍ଗରେ ବହୁତ କଥା କହନ୍ତି କିନ୍ତୁ କାର୍ଯ୍ୟତଃ ଅବଧି ଜଣକରୁ ଅଧିକୋଟି ସୁଦ୍ଧା ଲୋକଙ୍କୁ ଉଚ୍ଚପଦରେ ନିଯୁକ୍ତ କରାଇ ନାହାନ୍ତି । ଆମ୍ଭେମାନେ ଭରସା କରୁଁ ଯେ ବର୍ତ୍ତମାନ ଫଳ ଦେଖି ସେ ଉତ୍ସାହିତ ହୋଇ ଉତ୍କଳୀୟଙ୍କୁ ଏ ପ୍ରକାର ଉଚ୍ଚକର୍ମ ଦେବାପାଇଁ ବିଶେଷ ମନୋଯୋଗୀ ହେବେ ।

## ( ୭ମ ଭାଗ, ୨୭ । ୧୦ । ୧୮୭୨, ସଂଖ୍ୟା ୪୨ )

୩୦୩ । ସମ୍ବଲପୁରକୁ ଓଡ଼ିଶାକୁ ଆନୟନ ପ୍ରସ୍ତାବ ।

ବେଙ୍ଗଲ ନିୟୁଜରୁ ଅବଗତ ହେଲୁଁ ଯେ ସନ ୧୮୬୯ ମସିହାଠାରୁ ଗବର୍ଣ୍ଣମେଣ୍ଟଙ୍କ ବିବେଚନାଧୀନରେ ଏମନ୍ତ ଗୋଟିଏ ପ୍ରସ୍ତାବ ଅଛି ଯେ ସିନ୍ଧୁ ଦେଶକୁ ପଞ୍ଜାବ, ମଧ୍ୟପ୍ରଦେଶାନ୍ତର୍ଗତ ମରହଟ୍ଟା ଭାଷା ପ୍ରଚଳିତ ରାଜ୍ୟମାନଙ୍କୁ ବମ୍ବେଇ; ସାଗର ଓ ନର୍ମଦା ପ୍ରଦେଶକୁ ଉତ୍ତର ପଶ୍ଚିମ ଏବଂ ସମ୍ବଲପୁରକୁ ବଙ୍ଗପ୍ରଦେଶ ଭୁକ୍ତ କରିବାକୁ ହେବ । ଅବଧି ଏ ବିଷୟରେ କିଛି ନିଷ୍ପତ୍ତି ହୋଇନାହିଁ । ବର୍ତ୍ତମାନ ଏରୂପ ପ୍ରକାଶ ହୋଇଅଛି ଯେ ମହାମାନ୍ୟ ଗବର୍ଣ୍ଣର ଜେନେରାଲଙ୍କ ବମ୍ବେଇ ଯିବାର ଗୋଟିଏ ଉଦ୍ଦେଶ୍ୟ ଏହିଯେ ଉପରିଲିଖିତ ବିଷୟକୁ ନିଶ୍ଚୟରୂପେ ସ୍ଥିର କରିବେ । ଆମ୍ଭେମାନେ ଭରସା କରୁଁ ଯେ ପ୍ରସ୍ତାବଟି ଗ୍ରାହ୍ୟ ହେଲେ ବଡ଼ ଭଲ ହେବ ।

## ( ୭ମ ଭାଗ, ୧୭ । ୧୧ । ୧୮୭୨, ସଂଖ୍ୟା ୪୫ )

୩୦୪ । ସମ୍ବଲପୁର କଟକର ଅଧୀନ ହେବାର ପ୍ରସ୍ତାବ ।

ସମ୍ପ୍ରତି ଭାରତବର୍ଷର ଅନେକ ସମ୍ବାଦ ପତ୍ରରେ ଏହି ସମ୍ବାଦ ପ୍ରଚାର ହୋଇଅଛି ଯେ ଲର୍ଡ ନର୍ଥବ୍ରୁକ ସାହେବ ଏହିଥର ମଧ୍ୟପ୍ରଦେଶର ପୃଥକ ଶାସନ କାର୍ଯ୍ୟ ଉଠାଇ ଦେଇ ତହିଁର କେତେକ ଅଂଶ ବମ୍ବେଇ, କେତେକ ବଙ୍ଗଳା ଓ କେତେକ ଉତ୍ତର ପଶ୍ଚିମ ବିଭାଗ ସଙ୍ଗେ ଯୋଗ କରିବେ । କେବଳ ପାୟୋନିୟାର ପତ୍ରିକା ଏହାକୁ ବିଶ୍ୱାସ କରୁନାହାନ୍ତି । ଯେତେବେଳ ଯାଏ କୌଣସି ଗବର୍ଣ୍ଣମେଣ୍ଟ ଆଜ୍ଞା ପ୍ରଚରିତ ହୋଇନାହିଁ ସେ ପର୍ଯ୍ୟନ୍ତ ଆମ୍ଭେମାନେ କିଛି ନିଶ୍ଚୟ କରି କହି ନପାରୁଁ ମାତ୍ର ପ୍ରସ୍ତାବଟି ଯେ ଉତ୍ତମ ଅଟଇ ଏଥିରେ କୌଣସି ସନ୍ଦେହ ନାହିଁ ଓ ମଧ୍ୟପ୍ରଦେଶ ବିଭାଗକୁ ଉଠାଇ ଦେଲେ ଗବର୍ଣ୍ଣମେଣ୍ଟଙ୍କର ଅନେକ ପ୍ରକାରରେ ବ୍ୟୟ ଲାଘବ ଏବଂ ଶାସନ କାର୍ଯ୍ୟର ସୁଯୋଗ ହେବ ।

ଆମ୍ଭେମାନେ ଭରସା କରୁଁ ଯେ ମହାମାନ୍ୟ ଗବର୍ଣ୍ଣର ଜେନେରାଲ ସାହେବ ଏ ପ୍ରସ୍ତାବକୁ କାର୍ଯ୍ୟରେ ପରିଣତ କରିବାକୁ ଆଉ ବିଳମ୍ବ କରିବେ ନାହିଁ ଓ ଯଦ୍ୟପି ତାହା ହେବ ତେବେ ନିଶ୍ଚୟ ଅନୁମାନ ହୁଅଇ ଯେ ସମ୍ବଲପୁର ଜିଲ୍ଲା ଓଡ଼ିଶା କମିଶନରଙ୍କ ଅଧୀନରେ ଆସିବ । କାରଣ ଓଡ଼ିଶା ସହିତ ସମ୍ବଲପୁରର ଯେତେ ପ୍ରକାର ସଂଯୋଗ ଅଛି ବଙ୍ଗଳାର ଅନ୍ୟ କୌଣସି ଜିଲ୍ଲା ସହିତ ସେରୂପ ନାହିଁ । ମାତ୍ର ଆମ୍ଭେମାନେ ପରମ୍ପରା ଶୁଣି ଦୁଃଖିତ ହେଲୁଁ ଯେ ସମ୍ବଲପୁର ନିବାସୀ କେତେକ ବ୍ୟକ୍ତି ଏଥିରେ ଅସନ୍ତୁଷ୍ଟ ହୋଇ ଗବର୍ଣ୍ଣମେଣ୍ଟକୁ ଏମନ୍ତ ଆବେଦନ ପଠାଇବାକୁ ଉଦ୍ୟମ କରୁଅଛନ୍ତି କି ଯେମନ୍ତ ସମ୍ବଲପୁର କଟକ ଅଧୀନ ନହୋଇ ଛୋଟନାଗପୁରର ଅଧୀନ ହେବ । ଏରୂପ ପ୍ରାର୍ଥନା କରିବାର ତାତ୍ପର୍ଯ୍ୟ କି ଆମ୍ଭେମାନେ ସ୍ଥିର କରି ପାରୁନାହୁଁ । କିନ୍ତୁ ଅମ୍ଭମାନଙ୍କୁ ଜଣାଯାଏ ଯେ କେତେଗୁଡ଼ିଏ ସ୍ୱାର୍ଥପର ବ୍ୟକ୍ତି ଆପଣା ୨ ଲାଭ ଧ୍ୱଂସ ଆଶଙ୍କାରେ ଏରୂପ ଆନ୍ଦୋଳନ କରୁଥିବେ । ନୋହିଲେ ସମ୍ବଲପୁର ଓଡ଼ିଶାକୁ ନଛାଡ଼ି ଛୋଟ ନାଗପୁରର ଅଧୀନ ହେବାକୁ ଚେଷ୍ଟା କରିବ ଏକଥା କେଉଁ ବୁଦ୍ଧିମାନ ଲୋକ ପ୍ରକୃତ ବୋଲି ଜ୍ଞାନ କରିବ ?

ଯଦ୍ୟପି କି କୌଣସି କାରଣରୁ ସମ୍ବଲପୁର ଏତେକାଳ ମଧ୍ୟପ୍ରଦେଶର ଅନ୍ତର୍ଗତ ହୋଇଅଛି ତଥାଚ ସମ୍ବଲପୁରକୁ ବାସ୍ତବରେ ଓଡ଼ିଶାର ଅଂଶ ବୋଲି ଜ୍ଞାନ କରିବାକୁ ହେବ । ଏହୁଇ ରାଜ୍ୟର ଭାଷା ଏକ ଓ ସମାଜ ... କାର୍ଯ୍ୟକ୍ରମମାନଙ୍କର

ସମସ୍ତ କାର୍ଯ୍ୟ ଓଡ଼ିଆ ଭାଷାରେ ଚଳଇ । ଓଡ଼ିଶା ସଙ୍ଗେ ସମ୍ବଲପୁର ଯୋଗ ହେଲେ ସରକାରୀ କାର୍ଯ୍ୟର କୌଣସି ବ୍ୟାଘାତ ହେବନାହିଁ । ଛୋଟ ନାଗପୁରର ଭାଷା ପୃଥକ୍ ସୁତରାଂ ସମ୍ବଲପୁରୀ ମାମଲତକାରୀଙ୍କର ସେଠାରେ ବହୁତ କ୍ଳେଶ ଓ କଷ୍ଟ ହେବାର ସମ୍ଭାବନା । ପ୍ରଚଳିତ ଭାଷା ବିବେଚନାରେ ରାଜ୍ୟ ବିଭାଗ କରିବା ସର୍ବତ୍ରରେ ଉଚିତ ଅଟଇ ଓ ଏ ସୂତ୍ର ଅନୁସାରେ ସମ୍ବଲପୁରକୁ କଦାଚ ଓଡ଼ିଶାରୁ ବର୍ଜ୍ଜିତ କରିବାର ନୁହଇ ।

ଦ୍ୱିତୀୟରେ ଦେଖାଯାଏ ଯେ ବାଣିଜ୍ୟ ବିଷୟରେ କଟକ ଓ ସମ୍ବଲପୁର ମଧ୍ୟରେ ପ୍ରଗାଢ଼ ସମ୍ବନ୍ଧ ରହିଅଛି । ସମ୍ବଲପୁରର ଦ୍ରବ୍ୟ ସବୁପ୍ରାୟ ନଦୀ ବାଟେ କଟକକୁ ଆସଇ ଓ ବିଦେଶୀୟ ଦ୍ରବ୍ୟ ଯାବତ୍ ସେଠାରେ ବ୍ୟବହାର ହୁଅଇ ସେସବୁ ପ୍ରାୟ କଟକରୁ ଅଥବା କଟକ ବାଟେ ଯାଏ । ସର୍ବଦା ନୌକା ଯାତାୟାତ ହେଉ-ଥିବାରୁ ଯିବା ଆସିବାର କୌଣସି କ୍ଳେଶ ନାହିଁ । ବରଂ ଜଳ ସ୍ଥଳ ଉଭୟ ବାଟେ ସର୍ବଦା ଜାରି ଅଛି ଏବଂ ବାଣିଜ୍ୟ ହେତୁରୁ ଉଭୟ ଖଣ୍ଡର ଲୋକ ପରସ୍ପର ଖାତି ଗଢ଼ିରୁ ଉତ୍ତମରୂପେ ପରିଚିତ । ବର୍ତ୍ତମାନ କଟକରେ ଶତ ଶତ ସମ୍ବଲପୁରୀ ଲୋକ ଦେଖା ଯାଉଅଛନ୍ତି ଓ ଏଠାରେ କରପ ନିବାହ ହେବାକୁ ହୁଅଇ ତାହା ଜାଣୁଅଛନ୍ତି । କେବଳ ଶାସନ ପ୍ରଣାଳୀ ଭିନ୍ନ ହବାରୁ ବାଣିଜ୍ୟାଦିରେ କେତେକ ବିଷୟର ଅସୁବିଧା ଘଟୁଅଛି । ଯେବେ ଏ ଦୁଇ ରାଜ୍ୟ ଏକ ଶାସନକର୍ତ୍ତାର ଅଧୀନରେ ଆସିବ ତେବେ ସର୍ବତୋଭାବେ ମଙ୍ଗଳ ହେବ । ଛୋଟ ନାଗପୁର ଅଧୀନରେ ହେଲେ ଏସବୁ ଆପତ୍ତି ଖଣ୍ଡନ ହେବନାହିଁ ଓ ମଧ୍ୟ ଅନ୍ୟ କି ଉପକାର ହେବ ଦେଖାଯାଉ ନାହିଁ । ଅତଏବ ସମ୍ବଲପୁରକୁ ଓଡ଼ିଶା ସହିତ ଯୋଗ କରିବା ବିଷୟରେ ଆଜ୍ଞା ପ୍ରବୃତ୍ତ ହେଉ ।

---

## ( ୮ମ ଭାଗ, ୨୨ । ୨ । ୧୮୭୩, ସଂଖ୍ୟା ୮ )

୩୦୫ । ଆମ୍ଭେମାନେ କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ଯେ ଏହି କଟକ ନଗରସ୍ଥ କାଜୀବଜାର ନିବାସୀ ଖିବାବୁ ଗଞ୍ଜା ଗୋବିନ୍ଦ ମିଶ୍ର କେତେକ ଦିନ ହେଲା ଅସମର୍ଥ ଦୁଃଖୀ ଲୋକମାନଙ୍କୁ ବିନା ମୂଲ୍ୟରେ ହୋମିଓପାଥିକ ଔଷଧ ବଣ୍ଟନ କରୁ ଅଛନ୍ତି ।

## ( ୮ମ ଭାଗ, ୧ । ୩ । ୧୮୭୩, ସଂଖ୍ୟା ୯ )

### ସାପ୍ତାହିକ ସମ୍ବାଦ ।

୩୦୬ । ସବଡେପୁଟି କଲେକ୍ଟର ନିଯୁକ୍ତ ହେବାର ଆରମ୍ଭ ହେଲାଣି । ଗତ ସପ୍ତାହର କଲିକତା ଗେଜେଟରେ ବାବୁ କୈଳାସ ଚନ୍ଦ୍ର ଗୃହୀ ଏହି ପଦରେ ନିଯୁକ୍ତ ହେବାର ଦେଖାଯାଏ । ଏବ୍ୟକ୍ତି ଶ୍ରୀଯୁକ୍ତ କାମ୍ବେଲ ସାହେବଙ୍କ ନିୟମାନୁସାରେ ପ୍ରଥମ ଭାଗ୍ୟବାନ ଅଟନ୍ତି ।

## ( ୮ମ ଭାଗ, ୨୯ । ୩ । ୧୮୭୩, ସଂଖ୍ୟା ୧୩ )

୩୦୭ । ଲୋକସଂଖ୍ୟା ରିପୋର୍ଟରେ ଶ୍ରୀଯୁକ୍ତ ବେଭରଲି ସାହେବ ଓଡ଼ିଆଙ୍କୁ ଏହିରୂପେ ବର୍ଣ୍ଣନା କରି ଅଛନ୍ତି, ଯଥା—

"ଭାଷା ଓ ଜାତି ବିଷୟରେ ବଙ୍ଗାଳିଙ୍କ ସହିତ ଯୋଗ ଥିଲେହେଁ ଓଡ଼ିଆମାନେ ଅଲଗା ରହିବାରୁ ବିଶେଷ ପ୍ରକାରର ରୀତି ଓ ଗଠନ ଲାଭ କରି ଅଛନ୍ତି । ଓଡ଼ିଆମାନେ ବଙ୍ଗାଳିଙ୍କଠାରୁ ଅଧିକ ଭକ୍ତ । ପୂର୍ବ ନିୟମର ପକ୍ଷପାତୀ ହେବାରୁ ଏମାନଙ୍କଠାରେ ଉତ୍ସାହର ଅଭାବ ଦେଖାଯାଏ । ପୂର୍ବ ପୁରୁଷଙ୍କ ରୀତିକୁ ଆଦରରେ ମୁଣ୍ଡରେ ବହନ୍ତି ଏବଂ ବର୍ତ୍ତମାନ କାଳର ଉନ୍ନତି କି ଅଶ୍ରଦ୍ଧା କରନ୍ତି ।" ଏଥିକୁ ଡେଲ ନିୟମ ବୋଲନ୍ତି ଯେ ଏସବୁ ନିଃସନ୍ଦେହରୂପେ ସତ୍ୟ ତଥାପି ପୃଥିବୀ ମଧ୍ୟରେ ଓଡ଼ିଆମାନେ ଅଧିକ ପରିଶ୍ରମୀ ଓ ପରିମିତାଚାରୀ ଅଟନ୍ତି ଓ ଯେଉଁଠାରେ ଏସବୁ ଗୁଣ ତାହାଙ୍କୁ ଭାରତବର୍ଷର ଲୋକଙ୍କ ମଧ୍ୟରେ ଅତିଶୟ କୁସଂସ୍କାରବିଶିଷ୍ଟ ଏବଂ ପୁରୋହିତବଶ କରିଅଛି ସେଠାରେ ତାହାଙ୍କର ସେପରି ହେବାର କାରଣ ପରମ୍ପରା ନିୟମପ୍ରିୟତା ଅଥବା ଅଲଗା ରହିବା ଅବସ୍ଥା ଛଡ଼ା ଅନ୍ୟକିଛି ହୋଇପାରେ । ଗଞ୍ଜାମର ଉତ୍ତରାଂଶର ଓଡ଼ିଆମାନେ ଏହି ପ୍ରକାରର ଲୋକ ହୋଇଥିଲେହେଁ କୌଣସିରୂପେ ସେମାନଙ୍କୁ ସମୁଦ୍ର ତଣ୍ଡାରୁ ଟୁଙ୍ଗି

ଜାତି ବୋଲି ପାଇ ନପାରେ । ମାନ୍ଦ୍ରାଜର ସ୍କୁଲସ ଏକଥା ସପ୍ରମାଣ କରୁଅଛି ଏବଂ ଏକଥା ଜାଣିବାର ଆବଶ୍ୟକ ଯେ ଶୁଦ୍ଧ ଓଡ଼ିଆ ଭାଷା ଓଡ଼ିଶାର ଗଡ଼ଜାତରେ କଥିତ ହୁଅଇ ଓ ସେଠାର ଲୋକଙ୍କ ପରି ଭାରତବର୍ଷର କୌଣସି ଲୋକ ଅଧିକ ସାହସୀ ହୁଅନ୍ତି ଓ କଦାଚିତ୍ କେହି ଅଧିକ ବଳବାନ ନହିବେ ।

ବେବରଲି ସାହେବଙ୍କ ବର୍ଣ୍ଣନା କେତେଦୂର ସତ୍ୟ ପାଠକମାନେ ବିଚାର କରନ୍ତୁ ।

## ( ୮ମ ଭାଗ, ୩ । ୫ । ୧୮୭୩, ସଂଖ୍ୟା ୧୮ )

୩୦୮ । ଗତ ମାସରେ ପୁରୀ ରାଜାଙ୍କର ଶୁଭ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା ।

× × ×

୩୦୯ । ଦେଶୀୟ ସିଭିଲ ସର୍ଭିସ ପରୀକ୍ଷାରେ ଯେଉଁମାନେ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି ତାହାଙ୍କ ମଧ୍ୟରୁ ୬୧୦୦ଶ କର୍ମ ପାଇବାର ବନ୍ଦୋବସ୍ତ କରି ଗବର୍ଣ୍ଣମେଣ୍ଟ ଏକ ୨ କମିଶନରଙ୍କ ଏଲକାକୁ କେତେଜଣ ଲେଖାଏଁ ବାଣ୍ଟିଦେଇ ଅଛନ୍ତି । ଓଡ଼ିଶା ଭାଗରେ ତିନିଜଣ ପଡ଼ିଅଛନ୍ତି ମାତ୍ର ଦୁଃଖର ବିଷୟ ଯେ କେହି ଓଡ଼ିଆ ଏଥିମଧ୍ୟରେ ନାହିଁ ଆଉ କେହି ଓଡ଼ିଆ ପରୀକ୍ଷା ଦେବାକୁ ସାହସ କଲାଇଲେ ନାହିଁ । ଏପରି ଅବସ୍ଥାରେ ଓଡ଼ିଶାବାସୀଙ୍କ ଉନ୍ନତି କେତେକାଳରେ ହେବ । ଯେଉଁ ଲୋକମାନେ ସମ୍ପ୍ରତି ନିଯୁକ୍ତ ହେଲେ ସେମାନେ ଜିଲ୍ଲା ହାକିମଙ୍କ ଅଧୀନରେ ନାନା ବିଷୟର ତାଲିକା ସଂଗ୍ରହାଦି କର୍ମରେ ନିଯୁକ୍ତ ହେବେ ଓ ସାମାନ୍ୟ ମକଦ୍ଦମାର ତଦାରକ କରି ପାରିବେ । କମିଶନର ମାନଙ୍କୁ ସତର୍କ କରି ଦିଆଯାଇ ଅଛି ଯେ ଏହାଙ୍କୁ କରାଣି କର୍ମରେ କଦାଚ ନିଯୁକ୍ତ କରିବେ ନାହିଁ । ଏମାନଙ୍କର ବେତନ ସ୍ଥାନୀୟ ନହୋଇ ସ୍ଥାୟୀ ହୋଇଅଛି । ସୁତରାଂ କମିଶନର ସାହେବ ଯେଉଁଠାରେ ଯେମନ୍ତ ଲୋକ ରଖିବାର ଆବଶ୍ୟକ ବିଚାର କରିବେ ସେଠାରେ ତାହାଙ୍କୁ ରଖିବେ ।

## ( ୮ମ ଭାଗ, ୧୭ । ୫ । ୧୮୭୩, ସଂଖ୍ୟା ୨୦ )

୩୧୦ । ଲୁଣର ଭାଉ ବାଲେଶ୍ୱରରେ ତେଜ ହୋଇ ଥିବାରୁ ବାଲେଶ୍ୱର ସମ୍ବାଦବାହିକା ଲେଖନ୍ତି ସେରକ ନଅ ପଇସା ହୋଇଅଛି । ଗୋଲାନ କଣ୍ଟ୍ରାକ୍ଟରଙ୍କ ସଂଖ୍ୟା ଦ୍ୱିଗୁଣ ହେବାରୁ ଏରୂପ ହୋଇଅଛି କି ?

(୮ମ ଭାଗ, ୨୪ । ୫ । ୧୮୭୩, ସଂଖ୍ୟା ୨୧ )

୩୧୧ । କଟକ ହାଇସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ବାବୁ ରାସ୍ତି ଚରଣ ବାନୁର୍ଯ୍ୟାଙ୍କଠାରୁ ଅବଗତ ହୋଇ ଆମ୍ଭେମାନେ ସର୍ବସାଧାରଣଙ୍କୁ ଜଣାଉ ଅଛୁଁ ଯେ ଏହି ସ୍କୁଲ ମଧ୍ୟରେ ଗୋଟିଏ ନେଟିବ ସିବିଲ ସର୍ବିସ ଶ୍ରେଣୀ ବସିବାର ମନସ୍ଥ ଅଛି । ଯଦ୍ୟପି ଉପଯୁକ୍ତ ସଂଖ୍ୟକ ଛାତ୍ର ପ୍ରାପ୍ତ ହେବେ ତେବେ ତାହା ଅବଲମ୍ବରେ ବସିବ । ଅତଏବ ଯେଉଁମାନେ ଉକ୍ତ ଶ୍ରେଣୀରେ ଭରତି ହେବାର ମାନସ କରନ୍ତି ସେମାନଙ୍କୁ ଉଚିତ ଯେ ଉକ୍ତ ପ୍ରଧାନ ଶିକ୍ଷକଙ୍କୁ ପତ୍ରଦ୍ୱାରା ଆପଣା ୨ ଇଚ୍ଛା ଜଣାଇବେ । ଏରୂପ ଗୋଟିଏ ଶ୍ରେଣୀ ଏଠାରେ ନଥିବାରୁ ଆମ୍ଭେମାନେ ବଡ଼ ଦୁଃଖିତ ଥିଲୁଁ । ବର୍ତ୍ତମାନ ପ୍ରଧାନ ଶିକ୍ଷକଙ୍କ ପ୍ରସ୍ତାବ ଓ ଉଦ୍ୟମ ଦେଖି ଅତିଶୟ ଆନନ୍ଦିତ ହୋଇଅଛୁଁ । ନେଟିବ ସିବିଲସରବିସ ପରୀକ୍ଷା ନଦେଲେ ଏଣିକି ଭଲ କର୍ମ ହେବାର ସମ୍ଭାବନା ନାହିଁ । ଅତଏବ ଯେଉଁମାନେ ବର୍ତ୍ତମାନ ସ୍କୁଲ ପରିତ୍ୟାଗ ପୂର୍ବକ ଉମେଦୱାରୀ କରି ବୁଲୁଛନ୍ତି ଅଥବା ଯେଉଁମାନେ ସରକାରୀ ମହକୁମାମାନଙ୍କରେ ସାମାନ୍ୟ କର୍ମରେ ନିଯୁକ୍ତ ଅଛନ୍ତି ସମସ୍ତଙ୍କୁ ଉଚିତ କି ସିବିଲ ସରବିସ ଶ୍ରେଣୀରେ ଅଧ୍ୟୟନ କରନ୍ତୁ । ତାହାହେଲେ ଆଗାମୀ ଫେବ୍ରୁଆରୀ ମାସ ପରୀକ୍ଷାରେ କେତେକ ଲୋକ ଉତ୍ତୀର୍ଣ୍ଣ ହୋଇପାରିବେ ଓ ଯେଉଁମାନେ ପ୍ରଥମେ ପରୀକ୍ଷା ଦେଇ କୃତକାର୍ଯ୍ୟ ହେବେ ସେମାନେ ଶୀଘ୍ର ଭଲ କର୍ମ ପାଇବେ । ଅତଏବ ଆମ୍ଭେମାନେ ଅନୁରୋଧ କରୁଅଛୁଁ ଯେ ଯେ ଉପାୟ ଦ୍ୱାରା ଉକ୍ତ ଶ୍ରେଣୀ ଶୀଘ୍ର ସ୍ଥାପିତ ହୁଅଇ ସମସ୍ତେ ତହିଁ ପ୍ରତି ଯତ୍ନ କରନ୍ତୁ ।

(୮ମ ଭାଗ, ୭ । ୬ । ୧୮୭୩, ସଂଖ୍ୟା ୨୩ )

## ସାପ୍ତାହିକ ସମ୍ବାଦ

୩୧୨ । ବାଲେଶ୍ୱର ଜିଲ୍ଲାର ଉତ୍ତର ଓ ମେଦିନୀପୁର ଜିଲ୍ଲାର ଦକ୍ଷିଣ ସୀମାରେ ମିରିଗୋଦା ନାମକ ପ୍ରଗନାର ଜଣେ ଉତ୍କଳ ବ୍ରାହ୍ମଣ ବିଧବା ବିବାହ କରିଅଛି । ଏ ସମ୍ବାଦ ବାଲେଶ୍ୱର ସମ୍ବାଦ ବାହିକାରୁ ଅବଗତ ହେଲୁଁ । ପ୍ରଥମ ବିବାହ ହେବାର ସ୍ୱଜାତୀୟ ଉତ୍କଳ ବ୍ରାହ୍ମଣମାନେ ତାହାକୁ ପରିତ୍ୟାଗ କରିବାକୁ ଚେଷ୍ଟା କରିଥିଲେ କିନ୍ତୁ ସେଠା ଜମିଦାର ରାଜା କାଳୀ ପ୍ରସନ୍ନ ଦାସ ଗଜେନ୍ଦ୍ର ମହାପାତ୍ରଙ୍କ ଯତ୍ନ ଓ ରାଜଦଣ୍ଡ ଭୟରେ ସ୍ୱଜାତୀୟମାନେ ଉକ୍ତ ବ୍ରାହ୍ମଣକୁ ଜାତ୍ୟନ୍ତର କରି ପାରିଲେନାହିଁ । ବିଧବା ବିବାହର ସୂତ୍ରପାତ ଓଡ଼ିଶାରେ ହେଲା ସୁଖର ବିଷୟ ଅଟଇ ।

## ( ୮ମ ଭାଗ, ୨୮ । ୬ । ୧୮୭୩, ସଂଖ୍ୟା ୨୬ )

### ସାପ୍ତାହିକ ସମ୍ବାଦ ।

୩୧୩ । ସ୍ଥାନୀୟ ଜମିଦାରଙ୍କୁ ବିତରଣ କରିବା ସକାଶେ ଗବର୍ଣ୍ଣମେଣ୍ଟ ବଙ୍ଗାଳା ବାବୁ ବିଚିତ୍ରାନନ୍ଦ ଦାସଙ୍କ କୃତ କୃଷିବିଜ୍ଞାନ ୫୨୫୦ ଖଣ୍ଡ ନେବାକୁ ସମ୍ମତ ହୋଇଅଛନ୍ତି । ଏତେଦିନେ ଖଣ୍ଡିଏ ପୁସ୍ତକ ପ୍ରତି ଉତ୍ସାହ ଦେବାକୁ ଗବର୍ଣ୍ଣମେଣ୍ଟଙ୍କୁ ଦେଖାଗଲା ଆନନ୍ଦର ବିଷୟ ଅଟଇ ।

## ( ୮ମ ଭାଗ, ୫ । ୭ । ୧୮୭୩, ସଂଖ୍ୟା ୨୭ )

୩୧୪ ।

### କଲ୍ଲି ଉମପଡ଼ା ।

ଏ ରାଜ୍ୟ ଖଣ୍ଡିକ ନଷ୍ଟ ହେବାର ଉପକ୍ରମ ଦେଖାଯାଏ । ଏଠାରେ ରାଜା ପ୍ରଜାଙ୍କ ମଧ୍ୟରେ ଏମନ୍ତ ଅସଦ୍ଭାବ ଜାତ ହୋଇଅଛି ଯେ ରାଜା ପ୍ରାଣ ଭୟରେ ଗଡ଼ ଛାଡ଼ି ପଳାଇ ଆସି ସ୍ଥାନୀୟ ହାକିମଙ୍କ ଆଶ୍ରୟ ଗ୍ରହଣ କରିଅଛନ୍ତି । କଲ୍ଲୀର କେହି ଲୋକ ଏହାଙ୍କ କଥା ଶୁଣୁ ନାହାନ୍ତି କିମ୍ବା ସାହାଯ୍ୟ କରୁନାହାନ୍ତି । ରାଜାଙ୍କ ବିରୁଦ୍ଧରେ ପ୍ରଜାଙ୍କର ଏପ୍ରକାର କ୍ଷମତା ବଢ଼ିବା ସମୟର ମାହାତ୍ମ୍ୟ ଅଟଇ ତଥାଚ ଏହାର କିଛି କାରଣ ଥିବ ସନ୍ଦେହ ନାହିଁ କାରଣ ଆଉ ରାଜାଙ୍କ ପ୍ରଜାଙ୍କଠାରେ ତ ସେରୂପ ଆଚରଣ ଲକ୍ଷିତ ହେଉନାହିଁ ।

ଆମ୍ଭେ ଏହାର ମୂଳ କାରଣ ଏହି ମାତ୍ର ବୁଝିଅଛୁଁ ଯେ ରାଜା ଆପଣା ଜମିଦାରୀର ପ୍ରକୃତ ଉତ୍ପନ୍ନ ଲାଭ କରିବା ମାନସରେ ଅନ୍ୟାନ୍ୟ ଜାଗିର ସବୁ ରହିତ ଓ ପ୍ରତ୍ୟେକ ପ୍ରକାର ଭୂମି ଜରିପ କରି ଉଚିତ ମୂଲ୍ୟ ବସାଇବାକୁ ଚେଷ୍ଟା କଲେ ମାତ୍ର ପ୍ରଜାଙ୍କର ତାହା ମନୋନୀତ ହୋଇନାହିଁ । ତାହାଙ୍କୁ ଅଧିକ କର ଦେବାକୁ ପଡ଼ିବ ବୋଲି ସେମାନେ ଏକ ମେଳ ହୋଇ ଏରୂପ ବିରୁଦ୍ଧାଚରଣ କରିଅଛନ୍ତି । ଏକାରଣ ଯେବେ ଯଥାର୍ଥ ହୁଅଇ ତେବେ ରାଜାଙ୍କର ଦୋଷ ନାହିଁ ।

× × ×

୩୧୫ ।

### ରଥଯାତ୍ରା ।

ପାଠକମାନଙ୍କୁ ଜଣାଥିବ ଯେ ଅଳ୍ପଦିନ ତଳେ ଆମ୍ଭମାନଙ୍କ ଲେଫ୍‌ଟେନାଣ୍ଟ ଟେମ୍ପିଲ ରଥଯାତ୍ରା ପ୍ରତିକୂଳରେ ମନ୍ତବ୍ୟ ଲେଖି ଗବର୍ଣ୍ଣମେଣ୍ଟ ଇଣ୍ଡିଆଙ୍କ ପରାମର୍ଶ ମାଗି ପଠାଇ ଥିଲେ ଓ ତହିଁରେ ଲେଖିଥିଲେ ଯେ ରଥସବୁ ବୃହଦାକାର ଓ ଶୃଙ୍ଖଳ

ରୂପେ ନିର୍ମାଣ ହେଉଥିବାରୁ ତଦ୍ଦ୍ୱାରା ଅନେକ ବିପଦ ଘଟିବାର ସମ୍ଭାବନା ଓ ତାହା ଉଠାଇ ଦେଲେ ଅନାୟାସରେ ହୋଇପାରେ କାରଣ ପ୍ରକୃତ ହିନ୍ଦୁ ଯେଉଁମାନେ ଏଥିରେ ବିରକ୍ତ ହେବେ ତାଙ୍କ ସଂଖ୍ୟା ଅତ୍ୟଳ୍ପ ଅଟଇ । କିନ୍ତୁ ପକ୍ଷରେ ପଥ ସରୁ ସରୁ ନହେଲେ ଓ ତଦ୍ଦ୍ୱାରା ସଙ୍କଟ ଘଟିବାର ଆଶଙ୍କା ନଥିଲେ ତାହା ହଟାଇବା ପାଇଁ ମାଜିଷ୍ଟ୍ରେଟଙ୍କୁ ଆଜ୍ଞା ଦିଆଯାଇପାରେ । ମହାମାନ୍ୟ ଲର୍ଡ ନର୍ଥବ୍ରୁକ୍ ସାହେବ କି ଯେ କୌଣସି ଧର୍ମପ୍ରତି ତିଳାର୍ଦ୍ଧ ପକ୍ଷପାତୀ ନୁହନ୍ତି ଓ ସମସ୍ତ ସମ୍ପ୍ରଦାୟର ଧର୍ମକୁ ସମାନ ରୂପେ ମାନ୍ୟ କରନ୍ତି ଉକ୍ତ ପତ୍ରର ଉତ୍ତରରେ ଲେଖିଅଛନ୍ତି କି ରଥଦ୍ୱାରା ଅଧିକ ସଙ୍କଟ ଘଟିବାର ପ୍ରମାଣ ନାହିଁ ଓ ତହିଁରେ ହସ୍ତକ୍ଷେପ କରିବା ଅନାବଶ୍ୟକ । ଯଦ୍ୟପି କିଞ୍ଚିତ୍ ଯେବେ ଦୁର୍ଘଟନା ହୁଅଇ ତାହା ମାଜିଷ୍ଟ୍ରେଟ ଓ ପୁଲିସଙ୍କ ସାବଧାନତା ଦ୍ୱାରା ଯଥାର୍ଥ ରୂପେ ନିବାରିତ ହୋଇପାରେ । ମାନ୍ୟବର ପ୍ରତିନିଧି ସାହେବଙ୍କୁ ଏଥି-ପାଇଁ ଆମ୍ଭେମାନେ ସହସ୍ର ୨ ଧନ୍ୟବାଦ ଦେଉଅଛୁଁ । ତାହାଙ୍କ ସୁବିଚାର ହେତୁ କେବଳ ଲେଫ୍ଟେନାଣ୍ଟ ଗବର୍ଣ୍ଣରଙ୍କ ଗୋଟିଏ ଅତ୍ୟାଗ୍ରହ ନିବାରିତ ହେଲା ଏମନ୍ତ ନୁହେଁ କିନ୍ତୁ ପ୍ରଶଂସିତ ପ୍ରତିନିଧି ସାହେବ ଯେଉଁ ଉପାୟ କହି ଦେଇଅଛନ୍ତି ତାହା ହାତେ-ହାତ ପୁରୀରେ ପ୍ରତ୍ୟକ୍ଷ ହେଲା । ସେଠା ମାଜିଷ୍ଟ୍ରେଟ୍ ସାହେବ ଯେଉଁପରି ସୁନ୍ଦର ରୂପେ ଗତ ରଥଯାତ୍ରା ନିର୍ବାହ କରିଅଛନ୍ତି ତହିଁର ବିବରଣ ଏଥିସଙ୍ଗେ ପ୍ରକୃତ ହୋଇଥିବା ଆମ୍ଭମାନଙ୍କ ପୁରୀସ୍ଥ ସମ୍ବାଦ ଦାତାଙ୍କ ପତ୍ରରୁ ପ୍ରକାଶ ପାଇବ । ଶ୍ରୀଯୁକ୍ତ ଆର୍ମଷ୍ଟ୍ରଂ ସାହେବ ଅତ୍ୟଳ୍ପ କାଳରେ ପୁରୀରେ ଏପରି ସୁଖ୍ୟାତି ପ୍ରାପ୍ତ ହେଲେ ଅତିଶୟ ଆନନ୍ଦର ବିଷୟ ଅଟଇ ଓ ସୁଯୋଗକୁ ସୁଯୋଗ୍ୟ ବାବୁ ରାମପ୍ରସାଦ ସିଂହ ତାହାଙ୍କ ସହକାରୀ ହୋଇଅଛନ୍ତି । ଏ ଦୁହିଁଙ୍କ ଯୋଗେ ପୁରୀର ଯଥେଷ୍ଟ ମଙ୍ଗଳ ସାଧନ ହେବାର ସମ୍ପୂର୍ଣ୍ଣ ଲକ୍ଷଣମାନ ଜଣାଯାଏ ।

## (୮ମ ଭାଗ, ୨୭ । ୭ ।୧୮୭୩, ସଂଖ୍ୟା ୩୦)

୩୧୬ । ବାବୁ ଗୋପାଳ ଚନ୍ଦ୍ର ଘୋଷ ପୁରୀ ଖଜଣା ଖାନାର ମୋହରିର ଟାଙ୍କୁର ରାଜାଙ୍କର ଦେୱାନ ସ୍ୱରୂପେ ନିଯୁକ୍ତ ହୋଇ ଅଛନ୍ତି । ଏ ବାବୁଙ୍କୁ ଆମ୍ଭେ-ମାନେ ଜାଣୁ ଓ ତାହାଙ୍କ ଦ୍ୱାରା ରାଜଦରବାରର କାର୍ଯ୍ୟ ସୁନ୍ଦର ରୂପେ ଚଳିବ ଓ ବର୍ତ୍ତମାନ ଯହିଁ ପାଇଁ ଉକ୍ତ ଦରବାର ନିନ୍ଦନୀୟ ହୋଇଅଛି ତାହା ଦୂରିତ ହେବ ସନ୍ଦେହ ନାହିଁ । ତଥାଚ ଆମ୍ଭେମାନେ ବିଚାର କରୁଁ ଯେ ଅଧିକ ବେତନ ଦେଇ ଏହାଙ୍କ ଅପେକ୍ଷା ଅଧିକ ଗୁଣବାନ ବ୍ୟକ୍ତି ରଖିଲେ ଆହୁରି ଭଲ ହୁଅନ୍ତା । ମାତ୍ର ରାଜା ଯେ ଏତିକ କଲେ ଏହି ପରମ ସୁଖର ବିଷୟ ଅଟଇ ।

## ( ୮ମ ଭାଗ, ୨ । ୮ । ୧୮୭୩, ସଂଖ୍ୟା ୩୧ )

### ବଙ୍ଗ ପୁସ୍ତକାଳୟ ।

୩୧୬ । ଆମ୍ଭେମାନେ ଶୁଣୁ ଅଛୁଁ ଯେ ପୂର୍ବେ ଯେ ଏଠାରେ ବଙ୍ଗଳା ପୁସ୍ତକାଳୟ ଥିଲା ତନ୍ମଧ୍ୟର ପୁସ୍ତକ ସବୁ କି ହେଲା କମିଶ୍ନର ସାହେବ ତାହା ଜାଣିବା କାରଣ କଲେକ୍ଟର ସାହେବଙ୍କୁ ପତ୍ର ଲେଖି ଅଛନ୍ତି । କରପେ ଏ ପୁରଣା କଥା ବାହାରିଲା ଓ ବାସ୍ତବରେ କି ପ୍ରକାର ଭାବରେ ଚିଠି ଲେଖା ହୋଇଅଛି ଆମ୍ଭେମାନେ ତାହା କିଛି ନଜାଣୁ । ତଥାପି କମିଶ୍ନର ସାହେବଙ୍କର ଯେ ଏକଥା ପ୍ରତି ଦୃଷ୍ଟି ପଡ଼ି ଅଛି ଏଥିକି ସୁଖର ବିଷୟ ଅଟେ । ଯେତେବେଳେ ପୁସ୍ତକମାନ କଟକ ସୋସାଇଟୀକୁ ଅର୍ପିତ ହେଲା ଆମ୍ଭେମାନେ ସେତେବେଳେ ଏହାର ପ୍ରତିବାଦ କରିଥିଲୁଁ ( ସନ ୧୮୬୯ ମସିହା ୮ତାରିଖ ମଇର ଉତ୍କଳ ଦୀପିକା ଦେଖ ) ଓ ଶ୍ରୀଯୁକ୍ତ ଆର୍ମଷ୍ଟ୍ରଂ ସାହେବ କି ଯାହାଙ୍କ ଆଜ୍ଞାରେ ଉକ୍ତ ପ୍ରକାର ହସ୍ତାନ୍ତର ହେଲା ତାହାଙ୍କ କ୍ଷମତା ପ୍ରତି ସନ୍ଦେହ ପ୍ରକାଶ କରିଥିଲୁଁ । କିନ୍ତୁ ଆମ୍ଭମାନଙ୍କର କଥା ଧେନା ହେଲା ନାହିଁ ଓ ସର୍ବସାଧାରଣ ଅଥବା ଯେଉଁମାନେ ଚାନ୍ଦା ଦେଇ ପୁସ୍ତକାଳୟ ସ୍ଥାପନ କରିଥିଲେ ତାହାଙ୍କ ମଧ୍ୟରୁ କେହି କିଛି ଆପତ୍ତି କଲେ ନାହିଁ ସୁତରାଂ କଟକ ସୋସାଇଟୀ ପୁସ୍ତକ ସବୁର କର୍ତ୍ତୃତ୍ୱ ଅଧିକାରୀ ହୋଇ 'ଉତ୍କଳ ହିତୈଷିଣୀ' ରେ କେତେ ଅଯୌକ୍ତିକ କଥା କହି ଆମ୍ଭମାନଙ୍କ ଆପତ୍ତି ଖଣ୍ଡନ କରିବାର ଚେଷ୍ଟା କରିଥିଲେ । ବର୍ତ୍ତମାନ କମିଶ୍ନର ସାହେବ ପୁସ୍ତକସବୁ ଖୋଜି ବୁଲୁଅଛନ୍ତି ଓ ଭାଗ୍ୟକୁ 'ଉତ୍କଳ ହିତୈଷିଣୀ' ମଧ୍ୟ ପୁନର୍ଜୀବିତ ହେଉଅଛନ୍ତି । ଏଥର କି ଯୁକ୍ତିମାନ ଦର୍ଶାଇବେ ଶୁଣିବାରେ ଆସିବ ମାତ୍ର ତୁଚ୍ଛ ତର୍କ ବିତର୍କରେ ପ୍ରୟୋଜନ କି ଅଛି, କଟକ ସୋସାଇଟୀ ଯେମନ୍ତ ପୁସ୍ତକସବୁ ନେଇଥିଲେ ସେବେ ପୁସ୍ତକାଳୟକୁ ଜୀବିତ ରଖିଥାନ୍ତେ ତେବେ କିଛି କଥା ନଥିଲା କିନ୍ତୁ ଦୁଃଖର ବିଷୟ ଯେ ଅନାୟାସରେ ପୁସ୍ତକଗୁଡ଼ିକ ଲାଭକରି ସୁଦ୍ଧା ପୁସ୍ତକାଳୟକୁ ଜୀଇଁ ରଖି ପାରିଲେ ନାହିଁ । ପୂର୍ବେ ଯଥାକଥା ପୁସ୍ତକାଳୟ ଏନଗରରେ ଅଛି ବୋଲି ଜଣା ଯାଉଥିଲା; ସୋସାଇଟୀଙ୍କ ହସ୍ତକୁ ଗଲା ଦିନୁ ଏଥିର ଉଲଟ ଚେଣିକ ଥାଉ ପୁସ୍ତକାଳୟ ନାହିଁ ବୋଲି ଲୋକଙ୍କର ବିଶ୍ୱାସ ହେଉଅଛି ।

## ( ୮ମ ଭାଗ , ୩୦ । ୮ । ୧୮୭୩, ସଂଖ୍ୟା ୩୪ )

୩୧୮ । ଗଞ୍ଜାମ ପ୍ରଦେଶର 'କୌଣସି ଉତ୍କଳ ଦେଶ ହିତୈଷୀ' ଇତି ସ୍ୱାକ୍ଷରରେ ଜଣେ ପତ୍ରପ୍ରେରକ ଲେଖି ଅଛନ୍ତି କି ସେ ଅଞ୍ଚଳର ଓଡ଼ିୟା ଜମିଦାର ମାନେ କମା ବ୍ରାହ୍ମଣ ମାନଙ୍କୁ ଆପଣା କର୍ମଗୃହୀ ସ୍ୱରୂପ ନିଯୁକ୍ତ କରିବାର ତାହାଙ୍କ ଦ୍ୱାରା ରାଜା ଓ ପ୍ରଜା ଉଭୟଙ୍କର ନଷ୍ଟ ଓ କ୍ଷତି ହେଉଅଛି । ସେ ପ୍ରଶ୍ନ କରନ୍ତି କି ଜମିଦାରମାନେ

କାହିଁକି ତେଲେଙ୍ଗାମାନଙ୍କୁ ଯାବତ୍ ବିଷୟରେ ସମର୍ପଣ କରଅଛନ୍ତି । ଓଡ଼ିଆ ମାନଙ୍କ ମଧ୍ୟରେ କିଂବା ଉତ୍କଳର ସମୁଦାୟ ପ୍ରଦେଶରେ କେହି ନାହାନ୍ତି କି ? ଦକ୍ଷିଣର ରାଜାମାନଙ୍କୁ ଆମ୍ଭେମାନେ ଅନୁରୋଧ କରୁଁ ଯେ ପତ୍ର ପ୍ରେରକଙ୍କ ପ୍ରସ୍ତାବ ମନୋଯୋଗ ପୂର୍ବକ ଆଲୋଚନା କରିବେ । ସ୍ୱଜାତିଠାରେ ହିଂସାକରି ଓଡ଼ିଶାର ଏତାଦୃଶ ଅପମାନ ହୋଇଅଛି ଓ ଏଣିକି ମଧ୍ୟ ତହିଁର ପରିବର୍ତ୍ତନ ହୋଇନାହିଁ । ଯେବେ ଉତ୍କଳୀୟ ମାନେ ସ୍ୱଦେଶୀୟ ଲୋକଙ୍କୁ ଛାଡ଼ି ବିଦେଶୀୟ ଲୋକଙ୍କୁ ଲୋଡ଼ିବେ ତେବେ ତାହାଙ୍କ ଦ୍ୱାରା ସ୍ୱଦେଶର ଉନ୍ନତି ହେବାର ଭରଷା ଆଉ କାହିଁ ? ଓଡ଼ିଆଙ୍କର ଦୁର୍ଗତିର ସୀମା ରହିବ ନାହିଁ । ତେବେ ଜମିଦାର ମାନେ ଏମନ୍ତ ବୋଲିପାରନ୍ତି ଯେ ଓଡ଼ିଆମାନେ ତେତେ ଉପଯୁକ୍ତ ହୋଇ ନାହାନ୍ତି ବୋଲି ସେମାନେ ବିଦେଶୀୟଙ୍କର ସାହାଯ୍ୟ ନେଉ ଅଛନ୍ତି । ମାତ୍ର ତାହାଙ୍କୁ ବିବେଚନା କରିବାର ଉଚିତ ଯେ ଏଥିରେ ସୁଦ୍ଧା ସେମାନେ ଦୋଷୀ ଅଟନ୍ତି । ଆପଣା ପୁତ୍ର କି ଭାଇ କି ଭୋଗ କରି କିଏ ପରକୁ ଅଧିକାରୀ କରିବାକୁ ସୁଖ ପାଏ ? ସେମାନେ ଯେମନ୍ତ ଧନଶାଳୀ ଅଛନ୍ତି ସେବେ ଚେଷ୍ଟା କରିବେ ଓଡ଼ିଆ-ମାନେ ଅବଶ୍ୟ ଶିକ୍ଷା ପାଇ କାର୍ଯ୍ୟକ୍ଷମ ହେବେ । ଯେବେ ତାହା ନକରିବେ ତେବେ ତାହାଙ୍କ ଠାରୁ ଯେଉଁମାନେ ଅଧିକ କାର୍ଯ୍ୟକ୍ଷମ ତାହାଙ୍କୁ ରାଜ୍ୟ ଛାଡ଼ି ଦେଇ ଅଲଗା ହୋଇ ରହନ୍ତୁ ତେବେ ତାହାଙ୍କର ଅପକ୍ଷପାତତାର ଯଥାର୍ଥ ପରିଚୟ ପ୍ରାପ୍ତ ହେବ ।

## ( ୮ମଭାଗ , ୭ । ୯ । ୧୮୭୩ , ସଂଖ୍ୟା ୩୭ )

୩୨୯ । ଓଡ଼ିଶାର କରଣ ।

ଗତ ପ୍ରକାଶିତ ‘ ବଙ୍ଗଦର୍ଶନ ’ ରେ ଜାତିଭେଦ ଶିରୋନାମାରେ ଗୋଟିଏ ପ୍ରବନ୍ଧ ଲେଖାଅଛି । ତହିଁରେ ଓଡ଼ିଶାର କରଣଙ୍କ ବିଷୟରେ ଲିଖିତ ବୃତ୍ତାନ୍ତ ପାଠକ ମାନଙ୍କ ଜାଣିବା କାରଣ ଉଦ୍ଧୃତ କଲୁଁ ।

“ଲେଖକଙ୍କ ମତରେ କାୟସ୍ଥ ଜାତି ବର୍ଣ୍ଣସଙ୍କର । ବଙ୍ଗ ଦେଶର ବୈଦ୍ୟ ଜାତି ବ୍ରାହ୍ମଣ ପିତା ଓ ବୈଶ୍ୟ ମାତାର ଉତ୍ପନ୍ନ ଏହା ସମସ୍ତେ ମାନନ୍ତି । ମନୁସଂହିତା ମତରେ ଏହି ଜାତିର ଆଉ ଏକ ନାମ ଅମ୍ବଷ୍ଠ । କିନ୍ତୁ ଓଡ଼ିଶା ଓ ପଶ୍ଚିମ ପ୍ରଦେଶରେ ଅମ୍ବଷ୍ଠ ଜାତି କାୟସ୍ଥ ବୋଲି ଗଣ୍ୟ ।

ମନୁଲିଖିତ କରଣ ନାମକ ଜାତି ଦୁଇ ପ୍ରକାର , ଏକ ଫହିୟ ଜାତି ବ୍ରାତ୍ୟ ଅର୍ଥାତ୍ ଗାୟତ୍ରୀ ବର୍ଜିତ । ଦ୍ୱିତୀୟ ବୈଶ୍ୟ ପିତା ଓ ଶୂଦ୍ର ମାତା ଠାରୁ ଉତ୍ପନ୍ନ

ସଙ୍କର ଜାତି । ଶେଷୋକ୍ତ କରଣ ଜାତି ଲିପି ବ୍ୟବସାୟୀ ବୋଲି ପ୍ରସିଦ୍ଧ । ଉପରୋକ୍ତ ଦେଶ ସ୍ମୃତିରେ କାୟସ୍ଥ ବର୍ଣ୍ଣ ମଧ୍ୟରେ ଅମ୍ବଷ୍ଠ ସଦୃଶ କରଣ ନାମରେ ଏକ ଜାତି ମଧ୍ୟ ଦେଖାଯାନ୍ତି ।

× × ×

କାୟସ୍ଥ ଜାତି ମଧ୍ୟରେ 'ଦଶକର୍ମ' ପ୍ରଚଳିତ ଅଛି ଏବଂ ସ୍ୱଗୋତ୍ରରେ ବିବାହ ନିଷିଦ୍ଧ । ଏଗୁଡ଼ିକ ଶୂଦ୍ର ଜାତିର ଲକ୍ଷଣର ବିପରୀତ ଅଟଇ ।"

ଓଡ଼ିଶାର କରଣମାନେ ମନୁଲକ୍ଷିତ ଦୁଇପ୍ରକାର କରଣଙ୍କ ମଧ୍ୟରୁ କେଉଁ ପ୍ରକାର ତାହା ସ୍ଥିର କରିବାର ଆଲୋଚ୍ୟ । ଆମ୍ଭମାନଙ୍କୁ ବୋଧ ହୁଅଇ ଦୁଇ ପ୍ରକାର କରଣ ଏଠାରେ ଅଛନ୍ତି । ଆଠଗଡ଼ ରଜା କରଣଙ୍କ ଶ୍ରେଷ୍ଠ ଅଟନ୍ତି । ଏଣୁ ତାହାଙ୍କ ଠାରେ କ୍ଷତ୍ରିୟ ଧର୍ମ ଦେଖାଯାଏ ଓ କରଣ ଓ ଖଣ୍ଡାୟତଙ୍କ ମଧ୍ୟରେ ପ୍ରାୟ ଅନେକ ସ୍ଥଳରେ ମିଶାମିଶି ହୋଇ ଥିବାର ଶୁଣାଯାଏ । କ୍ଷତ୍ରିୟର ଅଂଶ ସ୍ୱୀକାର ନକଲେ ସେରୂପ ହେବାର ଅନ୍ୟ କାରଣ କିଛି ଅନୁମାନ ହେଉନାହିଁ । ପକ୍ଷାନ୍ତରେ କରଣମାନେ ପ୍ରାୟ ସମସ୍ତେ ଲିପି ବ୍ୟବସାୟୀ ବୋଲି ପରିଚୟ ଦଅନ୍ତି ଓ କାର୍ଯ୍ୟତଃ ତାହାହିଁ ଦେଖାଯାଏ । ଏଅଂଶରେ ତାହାଙ୍କୁ ଶୁଦ୍ର ବୋଲିବାକୁ ହେବ ଅଥଚ ଅନ୍ୟ କେତେ ଗୁଡ଼ିଏ କାରଣରୁ ସ୍ପଷ୍ଟ ଶୁଦ୍ର ବୋଲି ନିଶ୍ଚୟ ହେଉନାହିଁ । ସୁତରାଂ କରଣମାନେ ବର୍ଣ୍ଣସଙ୍କର ହେଲେହେଁ କି ପ୍ରକାରରେ ଅଥବା କେଉଁ ଜାତି ମିଶି ଏହାଙ୍କର ଉତ୍ପତ୍ତି ହେଲା ତାହା ନିଶ୍ଚୟ ନାହିଁ । ଉତ୍କଳୀୟମାନେ କାହିଁକି ଏବିଷୟର ସିଦ୍ଧାନ୍ତ କରିବାକୁ ଚେଷ୍ଟିତ ହେଉ ନାହାନ୍ତି ? ବଙ୍ଗଦେଶୀୟ କାୟସ୍ଥମାନେ ଆପଣା ଉତ୍ପତ୍ତି ବିଷୟରେ କେତେ ଖଣ୍ଡ ପ୍ରସ୍ତାବ ରଚନା ଓ ମୁଦ୍ରିତ କରାଇ ଆତ୍ମ ପରିଚୟ ଦେଇ ଅଛନ୍ତି । ଉତ୍କଳବାସୀଙ୍କୁ ମଧ୍ୟ ସେରୂପ କରିବାର ଉଚିତ ।

( ୮ମ ଭାଗ, ୧୩ । ୯ । ୧୮୭୩, ସଂଖ୍ୟା ୩୭ )

୩୨୦ ।

ଭଗବଦ୍ଭକ୍ତି ପ୍ରଦାୟିନୀ ।

ଯେମନ୍ତ ଏକ ସମୟରେ କଲିକତାରେ ସାମୟିକ ପତ୍ରିକା ବାହାରିବାର ଧୂମ ଧାମ ହୋଇଥିଲା ବର୍ତ୍ତମାନ ସେହିପରି କଟକରେ ସାପ୍ତାହିକ ପତ୍ରିକା ବାହାରିବାର ଦେଖାଯାଏ । ପ୍ରଥମେ ଉତ୍କଳଦୀପିକା, ଦ୍ୱିତୀୟରେ ଉତ୍କଳ ହିତୈଷିଣୀ ଓ ତୃତୀୟରେ ଭକ୍ତି ପ୍ରଦାୟିନୀ ଏହି ବର୍ଷ ମଧ୍ୟରେ ଜନ୍ମ ଗ୍ରହଣ କରି ଅଛନ୍ତି କିନ୍ତୁ ଉଦ୍ଦେଶ୍ୟ [illegible]

ଆମ୍ଭେମାନେ ଶେଷ ଲକ୍ଷିତ ପତ୍ରିକାଟିକୁ ଅଗ୍ରଗଣ୍ୟ କରୁଅଛୁଁ । 'ଉତ୍କଳ ପୁତ୍ର'ର ଉଦ୍ଦେଶ୍ୟ ଅଳ୍ପ ମୂଲ୍ୟରେ ସର୍ବସାଧାରଣଙ୍କୁ ପତ୍ରିକା ଯୋଗାଇବା କିନ୍ତୁ ପକ୍ଷାନ୍ତରେ ଅରେ ସମ୍ବାଦ ପତ୍ର ବାହାର କରିବାଦ୍ୱାରା ପତ୍ରିକାର ତେତେ ଆଦର ହୁଅଇ ନାହିଁ ଓ ଏଥିରେ ଯେ ସବୁ ବିଷୟ ପ୍ରକାଶ ହୁଅଇ ତହିଁରେ ଅବଧି ଲୋକଙ୍କର ରୁଚି ହୋଇ ନାହିଁ । 'ଉତ୍କଳ ହିତୈଷିଣୀ'ର ପ୍ରଣାଳୀ 'ଉତ୍କଳ ପୁତ୍ର' ପ୍ରାୟ ଅଧିକା ମଧ୍ୟରେ କିଛି ୨ ଇଂରେଜୀ ଭାଷାରେ ପ୍ରବନ୍ଧ ଲେଖା । କିନ୍ତୁ ଏହାର ମୂଲ୍ୟ ଅଧିକ ଓ ଓଡ଼ିଆ ରଚନା ଅନ୍ୟ ପତ୍ରିକାପେକ୍ଷା ନିକୃଷ୍ଟ ହେବାରୁ ଅଧିକାଂଶ ଓଡ଼ିଆଙ୍କ ପକ୍ଷରେ ଏହାର ଉପଯୋଗିତା ଦେଖା ଯାଏନା ।

'ଭଗବଦ୍ ଭକ୍ତି ପ୍ରଦାୟିନୀ'ର ଉଦ୍ଦେଶ୍ୟ ସମ୍ପୂର୍ଣ୍ଣରୂପେ ପୃଥକ ଓ ତାହା ବର୍ତ୍ତମାନ ଅବସ୍ଥା ଲୋକଙ୍କ ରୁଚି ଅନୁସାରେ ହୋଇଅଛି । ଏଠାର ଅଧିକାଂଶ ଲୋକ ବୈଷ୍ଣବ ଧର୍ମାବଲମ୍ବୀ କିନ୍ତୁ ଧର୍ମର ଚର୍ଚ୍ଚା ନଥିବାରୁ ଦିନ ୨ ଏହା ଦୁର୍ଗତିକୁ ଲକ୍ଷ୍ଯ ଅଛି । ଏପର ଅଧିକାଂଶ ଲୋକଙ୍କର ଏକପ୍ରକାର ଏମନ୍ତ କୁସଂସ୍କାର ଅଛି ଯେ ସେମାନେ ଉକ୍ତ ଧର୍ମ ବିଷୟ ଗ୍ରନ୍ଥାଦି ଛଡ଼ା ଅନ୍ୟ କିଛି ପାଠ କରିବେ ନାହିଁ । ଏହି ହେତୁରୁ ଅନେକ ସୁଶିକ୍ଷିତ ଲୋକ ଛପା ଅକ୍ଷର ପୁସ୍ତକ ପଢ଼ି ପାରନ୍ତି ନାହିଁ । ଭକ୍ତି ପ୍ରଦାୟିନୀଦ୍ୱାରା କେବଳ ଲୋକଙ୍କର ଧର୍ମପ୍ରତି ଅନୁରାଗ ଜନ୍ମିବ ଏମନ୍ତ ନୁହଇ । ଆମ୍ଭେମାନେ ଆଶାକରୁଁ ଯେ ଏହାଦ୍ୱାରା ସାହିତ୍ୟର ଅନେକ ଉନ୍ନତି ସାଧନ ହେବ ଓ ଆପାତତଃ ଯେଉଁମାନେ କିଛି ପଢ଼ିବାକୁ ସୁଖ ପାନ୍ତି ନାହିଁ ସେମାନେ କ୍ରମଶଃ ପଢ଼ିବାକୁ ଅଭ୍ୟାସ କରିବେ । ପଢ଼ିଲାଠାରୁ ଧର୍ମ ବିଷୟରେ ଅନୁସନ୍ଧାନ କରିବାକୁ ଚିନ୍ତା ବଳିବ ଓ ଯେତେ ଶାସ୍ତ୍ରାଦିର ମର୍ମ ଅବଗତ ହେବେ ତେତେ ମନ ପ୍ରଶସ୍ତ ଓ ଜ୍ଞାନ ବୃଦ୍ଧି ହେବ ।

୩୨୧ । ପ୍ରେରିତ ପତ୍ର ।

ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ ମହାଶୟ, ସମୀପେଷୁ ।

ମହାଶୟ, ନିମ୍ନଲିଖିତ କେତେକ ଶ୍ରେଣୀ ଆପଣଙ୍କ ଜଗଦ୍ ବ୍ୟାପିନୀ ପତ୍ରିକାରେ ସ୍ଥାନ ଦାନକରି ଚିର ବାଧିତ କରିବା ହେବେ ।

ଗତ ଜୁଲାଇମାସ ତା୨୯ରିଖରେ ବ୍ରହ୍ମପୁରସ୍ଥ ଜିଲ୍ଲା ପାଠଶାଳାରେ ଉତ୍କଳ ହିତବାଦିନୀ ନାମକ ସମାଜ ହୋଇଥିଲା ଓ ସମାଜ ମଧ୍ୟରେ ଉକ୍ତ ପାଠଶାଳାର ଶ୍ରୀଯୁକ୍ତ ବାବୁ ଉଇଲିୟମ ମହାନ୍ତି ନାମକ ଜଣେ ମେମ୍ବର ମହାଶୟ ଗାତ୍ରୋତ୍ଥାନ ପୂର୍ବକ ଯାହା ସଭାର ଦୃଢ଼ତା ବିଷୟରେ ବକ୍ତୃତା କଲେ ତଦ୍ଦ୍ୱାରା ସଭାସଦ ସମସ୍ତେ ପରମାହ୍ଲାଦିତ ହେଲେ । ଗତ ଜୁଲାଇ ତା୧୬ରିଖ ପ୍ରଚରିତ ଉତ୍କଳ ପୁତ୍ର ପତ୍ରିକାରେ ଗଞ୍ଜାମ, ସମ୍ବଲପୁର ଓ କଟକ ଏହି ଜିଲ୍ଲାମାନଙ୍କ ଏକତ୍ର କରିବାରେ ଯାହା ସମାଜର ମହାଶୟ

ଚେଷ୍ଟା କରିଅଛନ୍ତି ତାହା ଶ୍ରବଣ କରିବାରେ ମୃତ ବ୍ୟକ୍ତିର ଜୀବନଦାନ ପ୍ରାପ୍ତ ବୋଧ ହେଲା । କାରଣ ଏହି ଯେ ଏତେ ଦିନକୁ ଗବର୍ଣ୍ଣମେଣ୍ଟର ଉତ୍କଳୀୟମାନଙ୍କର କର୍ଣ୍ଣଗୋଚର କରାଇଲେ ମାତ୍ର ବୋଧହୁଏ ଶ୍ରୀଯୁକ୍ତ ଗବର୍ଣ୍ଣମେଣ୍ଟ ଉତ୍କଳୀୟମାନଙ୍କ ବିଷୟ ଶୁଣି ଏମାନଙ୍କ ସୀମା କେଉଁ ପର୍ଯ୍ୟନ୍ତ ଅଛି ଏବଂ ଏହି ତିନଜିଲ୍ଲା ଏକତ୍ରିତ କଲେ କେତେ ପର୍ଯ୍ୟନ୍ତ ହେବ ତାହା ଭଲରୂପେ ବିବେଚନା କରି ନାହାନ୍ତି । ଯେବେ କରିଥାନ୍ତେ ତେବେ ଶ୍ରୀଯୁକ୍ତ ଗବର୍ଣ୍ଣମେଣ୍ଟ ପୁନଃ ବହୁମୂଲ୍ୟ ଜ୍ଞାନ କରିଯାଇ ଥାନ୍ତା । ଏଥିରେ ଉତ୍କଳୀୟ ରାଜାମାନେ ଓ ପ୍ରଜାମାନେ ସମସ୍ତେ ସୁଖୀ ହୁଅନ୍ତେ । ଯଦ୍ୟପି ବୋଲିବା ଗଞ୍ଜାମ ଜିଲ୍ଲାରେ ଯାବତ୍ ଲେଖାପଢ଼ା । ବିଷୟ ତେଲଗୁରେ ଚଳୁ ଅଛି ତେବେ ଦୁଃଖର ବିଷୟ ଏହିଯେ ରାଜାପ୍ରଜା ସମସ୍ତେ ଓଡ଼ିଆ, ପୁଣି ଓଡ଼ିଆ ଜିଲ୍ଲାରେ ଯେବେ ଅନ୍ୟ ଭାଷା ପ୍ରଚଳିତ କଲେ ତେବେ ବଙ୍ଗର ଇତ୍ୟାଦି ଜିଲ୍ଲାମାନଙ୍କରେ ଓଡ଼ିଆ ଭାଷା ପ୍ରଚଳିତ କରିବାକୁ ଆଜ୍ଞା ଦେଉନ୍ତୁ । ସମ୍ପ୍ରତି ହିତବାଦିନୀ ସଭ୍ୟୋଚିତ ଭଗିନୀର ପରିଚୟାବଶ୍ୟକ କରିନ୍ତି କିନ୍ତୁ ତାଙ୍କର ଅବସ୍ଥାନ କେଉଁଠାରେ ତାହା ଏପର୍ଯ୍ୟନ୍ତ ଜଣାଯାଉ ନାହିଁ ! ପୁନଶ୍ଚ ହିତବାଦିନୀର ମେମ୍ବରମାନେ ବ୍ରହ୍ମପୁରସ୍ଥ ଜିଲ୍ଲା ପାଠଶାଳାର ଦ୍ୱିତୀୟ ମାଷ୍ଟର ଶ୍ରୀଯୁକ୍ତ ବାବୁ ଉଇଲିୟମ ମହାନ୍ତିଙ୍କୁ କୁଇଁଣ୍ଡ ଅତ୍ୟନ୍ତ ଆବଶ୍ୟକୀୟ ଭାରତବର୍ଷର ଇତିହାସ ଓ ଭୂଗୋଳ ଇଂରାଜୀ ପୁସ୍ତକର ଅନୁବାଦ କରିବାକୁ ଅନୁମତି ଦେଇ ଅଛନ୍ତି । ଆମ୍ଭେମାନେ ବୋଲୁଁ ଯେ ମାଷ୍ଟର ମହାଶୟ ଉକ୍ତ କାର୍ଯ୍ୟରେ ଅତି ଶୀଘ୍ର ଯତ୍ନବାନ ହୁଅନ୍ତୁ ନଚେତ୍ କେବଳ ଓଡ଼ିଆରେ ଶିକ୍ଷିତ ହେବା ବ୍ୟକ୍ତିମାନେ ଠେଙ୍ଗା ପରୀକ୍ଷାଧିର ଓ ଢିଭିକୁ ଦର୍ଶନ ସିନା ଦେବେ । ଇତି

ନ: ବଳରାମ ମହାରଣା

( ୮ମ ଭାଗ, ୧୮ । ୧୦ । ୧୯୭୩, ସଂଖ୍ୟା ୪୧ )

୩୨୨ ।

ରୟତର ସ୍ୱତ୍ୱ ।

ଅନେକ ଦିନ ପୂର୍ବେ କତିପୟ ପତ୍ରମାନେ ଏ ପ୍ରସଙ୍ଗର ତର୍କବିତର୍କ କରି ଥିବାରୁ ଆମ୍ଭେମାନେ ସେ ସମୟରେ ତଦ୍‌ବିଷୟରେ ଆପଣାର ମତ ପ୍ରକାଶ କରିଥିଲୁଁ । ପ୍ରାୟ ତାହା ପାଠକମାନଙ୍କର ସ୍ମରଣ ନଥିବ । ଏ ଯୋଗୁଁ ତହିଁର ସଂକ୍ଷେପ ବିବରଣ ଲେଖୁଅଛୁ । ଆମ୍ଭେମାନେ ବହୁ ବହୁ କାଗଜପତ୍ର ଇତ୍ୟାଦି ତଦନ୍ତ କରି ଏହି ସିଦ୍ଧାନ୍ତ କରିଥିଲୁଁ କି ଖାର୍ଜ ରୟତର କିଛିହିଁ ସ୍ୱତ୍ୱ ନାହିଁ । ଥାନି ରୟତର ସ୍ୱତ୍ୱ ଏହି ଯେ ସେ କର ଦେଉଥିବା ପର୍ଯ୍ୟନ୍ତ ଭୂମିଭୋଗ କରିଥିବ ସେଥିର ଜମିଦାର ତାକୁ ବହିଷ୍କୃତ କରି ନପାରିବ । ଏହା ଭିନ୍ନ ତାହାର ଆଉ କିଛି ସ୍ୱତ୍ୱ ନାହିଁ, ଏମନ୍ତ କି ସେ ଭୂମିରେ ଥିବା ବୃହତ୍ ବୃକ୍ଷାଦି କାଟି ନପାରିବ କିମ୍ବା ଦଖଲ ସ୍ୱତ୍ୱ ସୁଦ୍ଧା ହସ୍ତାନ୍ତର କରି ନପାରିବ ।

କିନ୍ତୁ ଆମ୍ଭମାନଙ୍କର କେଫେଟେନାଣ୍ଟ ସାହେବଙ୍କର ମତ ଏରୂପ ନୁହେ. ଅଧିକନ୍ତୁ ସେ ବୋଲନ୍ତି ଯେ କୌଣସି ରୟତ ଆଗ ପଟ୍ଟାର ଭୂମି କଦୃଚ୍ଛ କାଳ ଛାଡ଼ିଦେଇ ସେହି ଜମିଦାରୀରେ ଆଉ ଭୂମି ଧରିଥିଲେ ଥାନି ଭୂମିରେ ତାହାର ଦଖଲ ସ୍ୱତ୍ୱ ରହିତ ହେବନାହିଁ । ସେ ଏବିଷୟରେ ସ୍ଥାନୀୟ କର୍ମଗୃହଙ୍କଠାରୁ ରିପୋର୍ଟ ତଲବ କରି ଅଛନ୍ତି । ସେମାନେ ଯେ ମତ ପ୍ରକାଶ କରନ୍ତୁ କାମ୍ବେଲ ସାହେବ ଦେଶର ଶାସନ କର୍ତ୍ତା ହୋଇ ରମ୍ଭତ ଜମିଦାରର ସ୍ୱତ୍ୱାସ୍ୱତ୍ୱ ବିଷୟରେ ତାହାଙ୍କର ଏତାଦୃଶ ଭ୍ରମ; ଏଥିରୁ ବଳିକରି ଆଶ୍ଚର୍ଯ୍ୟର ବିଷୟ ଆଉ କଣ ହୋଇପାରେ ।

କାମ୍ବେଲ ସାହେବଙ୍କର ମତ ପାହାହେଉ ବର୍ତ୍ତମାନ ହାଇକୋର୍ଟ ଯାହା ସିଦ୍ଧାନ୍ତ କରି ଅଛନ୍ତି ତାହା ଆମ୍ଭମାନଙ୍କମତ ସଙ୍ଗେ ସମ୍ପୂର୍ଣ୍ଣରୂପେ ଐକ୍ୟ ଓ ଯଥାର୍ଥ ଅଟଇ ! ମହାମାନ୍ୟ ଜଜମାନେ ବୋଲନ୍ତି ଯେ ରୟତର ଯେ କିଛି ସ୍ୱତ୍ୱ ଥାଉ ଭୂମିର ସ୍ୱାମିତ୍ୱ ସଙ୍କାନ୍ତ ଯାହା ଆବଶ୍ୟକ ତାହାସବୁ ଜମିଦାରର ଅଛି । ଜମିଦାରର ଆହୁରି ଅଧିକାର ଅଛି ଯେ ଯେଉଁମାନଙ୍କର ଭୂମିରେ ଦଖଲ ସ୍ୱତ୍ୱ ଅଛି କେବଳ ସେହି ବ୍ୟକ୍ତିମାନଙ୍କ-ଠାରେ ସେ ସ୍ୱତ୍ୱ ଆବଦ୍ଧ କରିଯାଇ ପାରେ ଅର୍ଥାତ୍ ଜମିଦାରର ଅସମ୍ମତିରେ ସେସ୍ୱତ୍ୱ ଅନ୍ୟ କେହି ନେଇ ନପାରେ । ରୟତମାନଙ୍କର ଏପରି କିଛି ଅଧିକାର ନାହିଁ ଯେ ସେମାନେ ଦଖଲସ୍ୱତ୍ୱ ଭୂମୀକୁ ପରକୁ ହସ୍ତାନ୍ତର କରି ପାରନ୍ତି କିଂବା ଆପଣା ଲାଭ କାମନାରେ ଭୂମି ବ୍ୟବହାର କରିବାକୁ ଦେଇ ପାରନ୍ତି । ଯଦି ଏପରି ହସ୍ତାନ୍ତର କରାଯାଏ ଓ ଭୂମୀକୁ ପର ଦଖଲକାରି ହୁଏ ତେବେ ଜମିଦାରର ଅଧିକାର ଅଛି ଯେ ସେ ତାକୁ ଅନଧିକାର ପ୍ରବେଶକାରୀ ସ୍ୱରୂପ ବହିଷ୍କୃତ କରି ପାରିବ ଓ ପ୍ରକୃତ ଖତି ପୂରଣ ନେଇ ପାରିବ । ଏ ନିଦର୍ଶନ (ନଜୀର) ଉଇକ୍ଲି ରିପୋର୍ଟରେ ପ୍ରକାଶ ହୋଇଅଛି ।

ଏଥିର ସମ୍ପୂର୍ଣ୍ଣ ବିପରୀତ ରୀତି ଖାସ ମାହାଲରେ ଦେଖାଯାଏ । ରୟତମାନେ ଥାନି ପଟ୍ଟା ସବୁ କ୍ରୟ ବିକ୍ରୟ କରନ୍ତି ଓ ଖାସ ମାହାଲ ସିରସ୍ତାରେ ତହିଁର ବିଧିମତ ଦାଖଲଖାରଜ ହୁଏ ! ବୋଧହୁଏ ଗବର୍ଣ୍ଣମେଣ୍ଟଙ୍କର ଏଥିରେ କିଛି ପ୍ରତ୍ୟକ୍ଷ ହାନି ନ ହେଉଥିବାରୁ ତାଙ୍କର ଏ ବିଷୟରେ ଦୃଷ୍ଟି ନାହିଁ । କେତେକ ଜମିଦାରୀରେ ମଧ୍ୟ ଥାନି ରୟତର ପଟ୍ଟା ଅଦାଲତରେ ନିଲାମ ହୋଇଥାଏ ମାତ୍ର ଯେଉଁ ସ୍ଥଳେ ଜମି-ଦାର ଆପତ୍ତି କରିଅଛି ସେ ସ୍ଥଳେ ନିଲାମ ସ୍ଥଗିତ ବା ରହିତ ହୋଇଅଛି । କେହି ୨ ଜମିଦାର ଆପଣା ସ୍ୱତ୍ୱର ଅଜ୍ଞତା କିଂବା ଆପତ୍ତି କରନ୍ତି ନାହିଁ । ପୁଣି କେହି ୨ ଏପରି ଅଜ୍ଞଅଛନ୍ତି ଯେ ବାକି ଖଜଣା ସକାଶେ ଆପେ ଥାନି ପଟ୍ଟା ନିଲାମ କରନ୍ତି । ଜମିଦାର-ଙ୍କର ଏପରି ଅବସ୍ଥା ଶୋଚନୀୟ ଅଟେ ।

( ୮ମ ଭାଗ, ୨୫ । ୧୦ । ୧୮୭୩, ସଂଖ୍ୟା ୪୨ )

୩୨୩ । କଟକ କଲେକ୍ଟରୀ ।

ଆଜ ଦେଢ଼ ମାସ ଗତ ହେଲେ ଶ୍ରୀଯୁକ୍ତ ମାକ୍‌ଫର୍ସନ ସାହେବଙ୍କ ବଦଳିକୁ ଯାତ୍ରା କରିବାର ଏକ ବର୍ଷ ପୂର୍ଣ୍ଣ ହେବ ଓ ଏହି ସମୟ ମଧ୍ୟରେ କଟକ କଲେକ୍ଟରୀ ମହକୁମାରେ ଯେ ସମସ୍ତ ଧୁମଧାମ ହୋଇଗଲାଣି ସେସବୁ ମନେକଲେ କେବଳ ମାକ୍‌ଫରସନ ସାହେବ ଯେ କେଡ଼େ ମହତ୍ ଲୋକ ଥିଲେ ଏହି କଥା ପୁନଃ ପୁନଃ ସ୍ମୃତିପଥରେ ଆସୁଅଛି । ବାସ୍ତବରେ ଉକ୍ତ ମହାତ୍ମା ଏ କଚେରୀକୁ ତ୍ୟାଗ କଲା ଦିନରୁ ଏହା ଶ୍ରୀ ବିହୀନ ହୋଇଅଛି । ଏଥିରେ ଆଉ ସେ ଶୋଭା ନାହିଁ । କର୍ମଚାରୀଙ୍କର ସେ ସୁଖ ନାହିଁ, କିମ୍ବା ଲୋକଙ୍କର ସେ ଶାନ୍ତି ନାହିଁ । ଏବେ ଏ କଚେରୀ ଉପରେ ଶନିଙ୍କର ଦୃଷ୍ଟି ପଡ଼ିଅଛି ବୋଲି ଯାଇପାରେ । ଯାହା ସବୁ ଘଟିବାର ଦେଖାଗଲାଣି ତାହା ଦେଖି ଲୋକେ ବ୍ୟାକୁଳ ଅଛନ୍ତି । ଭବିଷ୍ୟତକୁ ଆଉ କ'ଣ ହେବ କେ କହି ପାରେ । ମାକ୍‌ଫର୍ସନ ସାହେବଙ୍କ ଉତ୍ତାରୁ ମୃତ ଇର୍‌ବିନ ସାହେବ ୭ । ୮ ମାସ ରାଜ୍ୟ କଲେ ଓ ସେ ଯେଉଁରୂପେ ଏ କଚେରୀର କାର୍ଯ୍ୟ ନିର୍ବାହ କରୁଥିଲେ ତହିଁର ସବିଶେଷ ପତ୍ରିକା ପାଠକଙ୍କୁ ଦିଆ ଯାଇଅଛି କିନ୍ତୁ ପରମେଶ୍ୱରଙ୍କ ଇଚ୍ଛା ଏମନ୍ତ ହେଲା କି ଯେ ସମୟରେ ତାହାଙ୍କ ଦ୍ୱାରା ଏ କଚେରୀର ମଙ୍ଗଳ ହେବାର ସମୟ ଉପସ୍ଥିତ ହେଲା ଦାରୁଣ କାଳ ଠିକ୍ ସେହି ସମୟରେ ତାହାଙ୍କୁ ଅପହୃତ କଲା ଓ ଆମ୍ଭମାନଙ୍କର ଯେ କିଛି ଆଶା ଭରସା ତାହାଙ୍କଠାରେ ଜନ୍ମି ଥିଲା ତାହା ସମସ୍ତ ବିଫଳ ହେଲା । ଏହି ସମୟରେ ଶ୍ରୀଯୁକ୍ତ ବିମ୍‌ସ୍ ସାହେବ ଏଠାରେ ଏକଟିଂ କମିଶନର ହୋଇ ଆସିବାର ତାହାଙ୍କର ପ୍ରଥମାବସ୍ଥାର କାର୍ଯ୍ୟ ଦେଖି ଲୋକମାନେ ବଡ଼ ଆନନ୍ଦିତ ହେଲେ ଓ [illegible]ବିନ ସାହେବ ଏକଟିଂ କଲେକ୍ଟର ହେଲେହେଁ ବିମ୍‌ସ ସାହେବ ପ୍ରକୃତ କଲେକ୍ଟର କାର୍ଯ୍ୟ କରିବାର ସମସ୍ତେ ଆଶା କଲେ ଯେ ଏଣିକି ଏ ମହକୁମାର କାର୍ଯ୍ୟ ସବୁ ସଜାଡ଼ ହୋଇଯିବ ଓ ଅମଲାମାନେ ମହା ସୁଖରେ କାର୍ଯ୍ୟ କରିବେ । କିନ୍ତୁ ତିନି ମାସ ପୂର୍ଣ୍ଣ ନ ହେଉଣୁ ତିନି ଜଣ ପ୍ରଧାନ ଅମଲାଙ୍କର କର୍ମ ଫାଟିଲାଣି, "ଅପରଂ ବା କିଂ ଭବିଷ୍ୟତି"। କଲେକ୍ଟରୀର ହେଡ଼ କିରାଣି ବାବୁ ବଳରାମ ବୋଷ ନ୍ୟୂନ ବେତନରେ [illegible]ବାଲେଶ୍ୱରକୁ ଯିବାର ଓ ସେଠାର ହେଡ଼ କିରାଣି ବାବୁ ଜଗଦ୍‌ବନ୍ଧୁ ଘୋଷ ଏଠାକୁ ଆସିବାର ଆଜ୍ଞା ହୋଇଅଛି ଓ ସିରସ୍ତାଦାର ଓ ମହାଫିଜଙ୍କୁ ଆଜ୍ଞା ହୋଇଅଛି କି ଯେବେ ସେମାନେ ଅବିଳମ୍ବେ କର୍ମତ୍ୟାଗପୂର୍ବକ ପେନସନ ନେବାର ପ୍ରାର୍ଥନା ନ କରିବେ ତେବେ ତାହାଙ୍କ ଉପରେ ବଜ୍ରପାତ ହେବ । ଯେ ସ୍ଥଳେ ବଡ଼ ୨ ଅମଲାଙ୍କ

ଏତାଦୃଶ ଦୁର୍ଗତି ସେ ସ୍ଥଳେ ଅପର ଅମଲଙ୍କ କଥା କି କହିବା ଓ ସେମାନେ ଯେ ଏରୂପ ବ୍ୟବସ୍ଥା ଦେଖି ସଶଂକିତ ଅଛନ୍ତି ଏଥିରେ ବିଚିତ୍ର କିଛି ନାହିଁ । ପୂର୍ବକାଳୀନ୍ଦ୍ରା ଲୋକମାନେ ଚାକିରିକୁ ନିତାନ୍ତ ଅସ୍ଥିର ଜ୍ଞାନ କରି 'ତାଳଗଛ ଛାଇ' ବୋଲି ବର୍ଣ୍ଣନା କରିଅଛନ୍ତି । ଆମ୍ଭେମାନେ ମୁସଲମାନ ବା ମରହଟ୍ଟାଙ୍କ ଶାସନ କାଳ ଦେଖି ନାହୁଁ, ଏଥିପାଇଁ ଉକ୍ତ ପ୍ରବାଦର ସତ୍ୟତା ଅନୁଭବ କରି ନପାରି ହାସ୍ୟାସ୍ପଦ କରୁଁ ଓ ଇଂରେଜଙ୍କ କାର୍ଯ୍ୟ ଶୃଙ୍ଖଳା ଦେଖି ଭାବୁ ଯେ ସରକାରୀ ଚାକିରୀ ସେମନ୍ତ ନୁହଇ । ଯେ ବ୍ୟକ୍ତି ସତ୍ୟତା ଓ ବିଚକ୍ଷଣତା ସହକାରେ କାର୍ଯ୍ୟ କରିବ ସେ ସକ୍ଷମ ଥିବା ପର୍ଯ୍ୟନ୍ତ କର୍ମ କରି ଅବଶେଷରେ ମୃତ୍ୟୁ ପର୍ଯ୍ୟନ୍ତ ପେନସନ ଭୋଗ କରିବ, କିନ୍ତୁ ବିମ୍ସ୍ ସାହେବଙ୍କ ଆଦେଶ ଆମ୍ଭମାନଙ୍କୁ ହତାଶ କରିଅଛି । ଏଥର ଚାକିରୀକୁ ତାଳଗଛ ଛାଇ ମଣିବାକୁ ହେବ । ଏଥିର କିଛି ସ୍ଥିରତା ନାହିଁ, ହାକିମ ଇଚ୍ଛା କଲେ କାହାର କର୍ମ ଯିବ, କାହାର ସାଧ୍ୟ ତାହିଁର ଅନ୍ୟଥା କରିପାରିବ ? ଅନ୍ୟଥା କରିବାର ଅବା ବାଟ କାହିଁ ? ଟିକିଏ ଚାଳମୂ ହେଲେ ତ ମୁଣ୍ଡରେ ବଜ୍ର ପଡ଼ିବ । ହେ ପାଠକ ମାନେ ! ଆପଣମାନେ ଅବା ପଚାରିବେ ଯେ କାହିଁକି ବଜ୍ର ପଡ଼ିବ କିନ୍ତୁ ଆମ୍ଭେମାନେ ଏଥିର ଉତ୍ତର ଦେଇ ନପାରୁଁ କାରଣ ଆପଣମାନଙ୍କ ମତରେ ହାକିମ ଐକ୍ୟ ନାହାନ୍ତି । ବିମ୍ସ ସାହେବ ଅତି ବିଚକ୍ଷଣ କର୍ମଚାରୀ । ଏକଥା ଗବର୍ଣ୍ଣମେଣ୍ଟ ମଧ୍ୟ ସ୍ୱୀକାର କରିଅଛନ୍ତି ସୁତରାଂ ସେ ଯେବେ ଦେଖି ଯାହା ସ୍ଥିର କରିବେ ତାହା ଅବଶ୍ୟ ଯଥାର୍ଥ ହେବ, ଅନ୍ୟ ଲୋକର କଥା ସେଠାରେ ସ୍ଥାନ ପାଇବ ନାହିଁ । ପୂର୍ବ କଲେକ୍ଟର ମାନେ ଏହି ସିରସ୍ତାଦାର ଓ ମହାଫିଜଙ୍କୁ ପୁନଃ ପୁନଃ ପ୍ରଶଂସା କରି ଯାଇଅଛନ୍ତି ଓ କଲେକ୍ଟର ମହାଫିଜଖାନାର କଥା କଦାପି ଶୁଣା ଯାଇଅଛି । କିନ୍ତୁ ହେଲେ କି ହେବ ବିମ୍ସ୍ ସାହେବ ଏମାନଙ୍କୁ ସୁଖି ପାଇଲେ ନାହିଁ ସୁତରାଂ ଏମାନେ ଅପସାରିତ ହେବେ । ବାବୁ ବଳରାମ ବୋଷଙ୍କ ପରି ଜଣେ ସୁଯୋଗ୍ୟ ଓ ସତ୍ୟପରାୟଣ କର୍ମଚାରୀ ଏ ପ୍ରଦେଶରେ ଦୁର୍ଲ୍ଲଭ କିନ୍ତୁ କର୍ମରେ ରହିବା ପାଇଁ ଏତିକି ଗୁଣ ଯଥେଷ୍ଟ ନୁହେଁ । ଏ ବାବୁ ବିମ୍ସ ସାହେବଙ୍କର ମନୋନୀତ ନୁହନ୍ତି ସୁତରାଂ ଏ ପଦଚ୍ୟୁତ ହେବେ । ଏଥିରେ କି ଚାରି କାହାର ! ଆମ୍ଭେମାନେ ବିମ୍ସ ସାହେବଙ୍କର ଏ ପ୍ରକାର କାର୍ଯ୍ୟ ମାନ ଦେଖି ଅନୁମାନ କରୁଅଛୁଁ ଯେ ଏଣିକି ଯେମନ୍ତ କୌଣସି କର୍ମଚାରୀ ସଦାଚାର ଓ ସଦ୍‌ଗୁଣ ସହକାରେ ସରକାରୀ କର୍ମ କରିବାକୁ ପ୍ରବୃତ୍ତ ନହେବେ । ଏହି ଉପଦେଶ ଲୋକମାନଙ୍କୁ କରିବା ନିମନ୍ତ ବିମ୍ସ ସାହେବଙ୍କ କଷ୍ଟରେ ବସି ଏ କର୍ମମାନ କରୁଅଛନ୍ତି । ନୋହିଲେ ଯେଉଁ ହାକିମଙ୍କର ଅନେକ ପ୍ରଶଂସା ଏତେ-ମାନେ ଦୁଇମାସ ହେଲା କରି ଅସିଅଛୁଁ ଓ ଆମ୍ଭମାନଙ୍କ ସହଯୋଗୀମାନେ ମଧ୍ୟ ତହିଁରେ ଯୋଗ ଦେଇଅଛନ୍ତି ତାହାଙ୍କ ହାତରେ ଏମନ୍ତ ପ୍ରଶଂସନୀୟ କାର୍ଯ୍ୟ ଓ ତାହାଙ୍କ ମୁଖରୁ ଏମନ୍ତ ନୀତିବିରୁଦ୍ଧ ବାକ୍ୟ ବାହାରିବାର ଅନ୍ୟ କି କାରଣ ହୋଇଥାରେ ।

## ( ୮ମ ଭାଗ, ୭ । ୧୨ । ୧୮୭୩ , ସଂଖ୍ୟା ୪୮ )

୩୨୪ । ଯାଜପୁର ।

ଆମ୍ଭମାନଙ୍କ ଯାଜପୁର ସମ୍ବାଦଦାତା ଲେଖିଅଛନ୍ତି ଯେ ଆଲି କଲ୍ଲା ଇଲକାର ଅଡାଜ ଯାତଗ ଗଉଡ଼ ଏକ ଦଳ ଓ ତନଗ ଭଣ୍ଡାରୀ ଏକ ଦଳ ହୋଇ ମେଳକରି, ଗଉଡ଼ କହନ୍ତି ଭଣ୍ଡାରୀମାନେ ଗଉଡ଼ମାନଙ୍କର ବିଭା ସମୟରେ ବରର ଗୋଡ଼ ଧୋଇବେ ଓ ଅଶୌଚରେ ଦାଢ଼ି ଚୁଟିକୁ ଛେଦନେଇ ଯିବେ । ଭଣ୍ଡାରୀ ତାହା ସବୁ କରିବାକୁ ଅସମ୍ମତ ହୋଇ କହନ୍ତି ଭଣ୍ଡାରୀଙ୍କର ଝିଅ ପ୍ରଥମ ଭରନେଇ ଶାଶୁଘରକୁ ଯିବା ସମୟରେ ଗଉଡ଼ମାନେ ମିଠାଇ ଭାର ଓ ଅଶୌଚରେ ତାଙ୍କ ବନ୍ଧୁ ଘରଠାରୁ ଦହି ଭାର ନେବେ ମାତ୍ର ଗଉଡ଼ମାନେ ତାହା ନେବାକୁ ଅସମ୍ମତ ହୁଅନ୍ତି । ଏହାପରେ ବଟେଗ୍ରଥରେ ମେଳବାନ୍ଧି କରଣ ଖଣ୍ଡାୟତମାନଙ୍କର ସୁଦ୍ଧା ଗଉଡ଼ମାନେ କାନ୍ଧଆ ବନ୍ଦ କରିଥିଲେ । ଫେରୁରବାଲେ କହିଲେ ଆମ୍ଭେ ସବୁଜାତିଙ୍କୁ କାନ୍ଧଆ ବନ୍ଦ କଲେ ସମସ୍ତେ ଭଣ୍ଡାରୀମାନଙ୍କୁ ପରାସ୍ତ କରି ଆମ୍ଭର ଉପରଲିଖିତ କର୍ମ କରାଇ ନେବେ । ଯାହା କହନ୍ତି ଗଉଡ଼ ଆଶୁଆ ସେ ଠିକ ଅଟେ । ଆଲି କଲ୍ଲାର ମହାରାଜ ସେମାନଙ୍କୁ ବୁଝାଇ ପାରି ନଥିଲେ । ଗନ୍ ସାହେବଙ୍କ ହଜୁରରେ ଗଉଡ଼ ଓ ଭଣ୍ଡାରୀମାନେ ମେଳ ହୋଇ ଆସି ଓ ନାଲିଶ କରି କହିବାରେ ସାହେବ ମଉଜୁଦ ରାଜାଙ୍କୁ ଡକାଇ ସବୁକରି ଉଭୟ ବିବାଦୀଙ୍କ ଆପତ୍ତି ଆଂଶିକ ରୂପେ ନିଷ୍ପତ୍ତି କଲେ କି ଭଣ୍ଡାରୀମାନେ ଗଉଡ଼ଙ୍କର ଦାଣ୍ଡଠାରୁ ଖଇରି ନେବେ ଓ ଗଉଡ଼ମାନେ ଭଣ୍ଡାରୀଙ୍କର ମିଠାଇ ଭାର ନ ନେଇ କେବଳ ଦହିଭାର ନେବେ । ଏହାପରେ ମିମାଂସା କରି ତାଙ୍କମାନଙ୍କୁ ରାଜାକର ଦୁଇ-ଜାତିଙ୍କ ବେହେରା ସରଦାରଙ୍କୁ ମେଳ କରାଇ ଦେବାରେ ସେମାନେ ମେଳ ହୋଇ-ଗଲେ ଓ ଗନ୍ ସାହେବଙ୍କୁ ଧନ୍ୟବାଦ ଦେଇଗଲେ । ଆମ୍ଭେ ମଧ୍ୟ ସାହେବଙ୍କୁ ଧନ୍ୟବାଦ ଦେଉଅଛୁଁ । ସାହେବ ପ୍ରଶଂସିତ ଜିଲ୍ଲାକୁ ଆସିକରି ଅଳ୍ପଦିନ ହେଲା ମଫସଲକୁ ଆସି ପ୍ରଜାଙ୍କ ଅବସ୍ଥା ବୁଝି ପାରି ଏପରି ସନ୍ଧି କଥାମାନ ମିମାଂସା କଲେ ଏ ବଡ଼ ଆଶ୍ଚର୍ଯ୍ୟ ଅଟେ । ତାଙ୍କ ଯୋଗେ ମଫସଲରେ ମେଳ ହେବ ନାହିଁ । ଏକ ନ୍ୟାଗେରେଣ୍ଡ ମକଦ୍ଦମାରେ ଆସାମୀ ପୂର୍ବର ଦାଗୀ ଥିବାରୁ ତାକୁ ଦୁଇ ଅଭିଯୋଗରେ ଦୁଇବର୍ଷ ଜେଲ କ୍ରମରେ କଏଦ ଓ ଏକବର୍ଷ କଠିନ ପରିଶ୍ରମ ସହ କଏଦ ଏପରି ତିନିବର୍ଷ ଦଣ୍ଡ ଓ ଆଉ ଏକ ଚୋରୀ ମାମଲାରେ ଆସାମୀ ଦାଗୀ ଥିବାରୁ ତାକୁ ବେର ବେତ ଓ ଏକମାସ କଏଦର ହୁକୁମ ଦେଇଅଛନ୍ତି । ଏଥର ଆଞ୍ଚଳରେ ଆଉ ଚୋରୀ ହେବାର ସମ୍ଭବ ହେଉନାହିଁ ।

## ( ୯ମ ଭାଗ, ୧୪ । ୨ । ୧୮୭୪, ସଂଖ୍ୟା ୭ )

୩୨୫ । ମଧ୍ୟପ୍ରଦେଶର ଶିକ୍ଷାବିଭାଗର ଇନସ୍ପେକ୍ଟର ଜେନେରଲ ବିଜ୍ଞାପନ ଦେଇ ଅଛନ୍ତି ଯେ ନାଗପୁରରେ ଥିବା ତାହାଙ୍କ ଦପ୍ତର ନିମିତ୍ତ ଜଣେ ଇଂରାଜୀ ଓଡ଼ିଆ କିରାଣିର ପ୍ରୟୋଜନ ଅଛି । ଆବେଦନକାରିମାନେ ଓଡ଼ିଆ ଅକ୍ଷର ସୁନ୍ଦରରୂପେ ଲେଖି ପାରୁଥିବେ ଓ ଓଡ଼ିଆ ଭାଷାରେ ତାହାଙ୍କର ଏପରି ଜ୍ଞାନ ଥିବ ଯେ ଇଂରାଜୀରୁ ଓଡ଼ିଆରେ ଶୁଦ୍ଧରୂପେ ଅନୁବାଦ କରି ପାରିବେ ଓ କୌଣସି ପୁସ୍ତକ ମୁଦ୍ରାଙ୍କନ ସକାଶେ ପ୍ରସ୍ତାବ ହେଲେ ତହିଁର ରଚନା ଓ ବୃତ୍ତାନ୍ତ ସମ୍ପର୍କରେ ବିଚକ୍ଷଣ ଅଭିପ୍ରାୟ ବ୍ୟକ୍ତ କରି ପାରିବେ । ବେତନ ମାସିକ ଟ୩୦ଙ୍କାରୁ ଆରମ୍ଭ ହେବ ।

ମାସକୁ ଟ୩୦ଙ୍କା ବେତନରେ ଜଣେ ଅନୁବାଦକ ଓ ସମାଲୋଚକ; ହାୟ ! ଏତେଦେଶରୁ ବିଦ୍ୟାର ଭାଉ ଏତେ ଶସ୍ତା ହେଲଣି ! ପୁଣି ଆଶ୍ଚର୍ଯ୍ୟର ବିଷୟ ଏହିଯେ ଶିକ୍ଷାବିଭାଗର ପ୍ରଧାନ କର୍ମଚାରୀ ଏ ଭାଉ ସ୍ଥିର କରିଅଛନ୍ତି । ମଧ୍ୟପ୍ରଦେଶ ମଧ୍ୟରେ ଏକା ସମ୍ବଲପୁରଠାରେ ଓଡ଼ିଆଭାଷାରେ ଶିକ୍ଷା ଦିଆଯାଏ ସୁତରାଂ ସମ୍ବଲପୁରଠାରୁ ନାଗପୁରକୁ ଏହି ବେତନରେ ଯିବାକୁ ହେବ । ଶିକ୍ଷାବିଭାଗର ଏହି ପ୍ରକାର ଉତ୍ସାହ ପାଇବାରୁ ବୋଧହୁଏ ସମ୍ବଲପୁରରେ ବିଦ୍ୟାଶିକ୍ଷାର ଉନ୍ନତି ହେଉ ନାହିଁ ।

୩୨୬ । ଗତ ସୋମବାର କୁଜଙ୍ଗ ରାଜାଙ୍କର ସମ୍ପଦ ଶେଷ ହେଲା । ଏଥି ପୂର୍ବରୁ ତାହାଙ୍କର ରାଜ୍ୟ ନିଲାମ ହୋଇ ବର୍ଦ୍ଧମାନର ମହାରାଣୀଙ୍କର ହସ୍ତଗତ ହୋଇଅଛି କେବଳ ମାତ୍ର ଦେବୋତ୍ତର ଭୂମିମାନ ଏହାଙ୍କ ହସ୍ତରେ ଥିଲା ଓ ଦେବତାଙ୍କ ସେବାମୃତ ସ୍ୱରୂପ ଏ ମହାଶୟ ଆପଣା ଆଧି କଷ୍ଟରୁ ପରିମାଣରେ ରକ୍ଷା କରିଥିଲେ । ଏବିଷୟରେ ବର୍ଦ୍ଧମାନଙ୍କ ପକ୍ଷରୁ ଯେଉଁ ନାଲିଶ ଉପସ୍ଥିତ ହୋଇଥିଲା ତାହା ଉକ୍ତ ଦିନ ଡିକ୍ରି ହେବାରୁ ତହିଁରୁ ମଧ୍ୟ କୁଜଙ୍ଗରାଜା ବଞ୍ଚିତ ହେଲେ । ଆମ୍ଭେମାନେ ମୋକଦ୍ଦମାର ନଥିପତ୍ର ଦେଖିନାହୁଁ ସୁତରାଂ ସେ ବିଷୟରେ ବର୍ତ୍ତମାନ କିଛି କହି ନପାରୁଁ । ଭରସାକରୁଁ ଆଗାମୀ ସପ୍ତାହରେ ତହିଁର ସଂକ୍ଷେପ ବିବରଣ ପାଠକମାନଙ୍କୁ ଜଣାଇବୁଁ । ସମ୍ପ୍ରତି ଏତିକି କହୁଅଛୁଁ ଯେ ଓଡ଼ିଶାର ଗୋଟିଏ ପ୍ରଧାନ ରାଜବଂଶର ଏହିଠାରୁ ସର୍ବନାଶ ହେଲା । ଏହା ଅତି ଦୁଃଖର ବିଷୟ ଅଟଇ କିନ୍ତୁ ଦୁଃଖକର ଅବା ଏତେବେଳେ କି ହେବ, ଅଦାଲତଙ୍କ ହୁକୁମ ଉପରେ କାହାର ଅଧିକାର ନାହିଁ । ସେ ଯାହା ହେଉ ଆମ୍ଭେମାନେ ଶୁଣୁଅଛୁଁ ଯେ ଆମ୍ଭମାନଙ୍କର ଦୟାଳୁ କଲେକ୍ଟର ଶ୍ରୀଯୁକ୍ତ ବିମ୍‌ସ ସାହେବଙ୍କ ଅନୁରୋଧ କ୍ରମେ ବର୍ଦ୍ଧମାନର ମହାରାଜ ଏରୂପ ମନ୍ତବ୍ୟ ପ୍ରକାଶ କରିଅଛନ୍ତି କି ଯେବେ କୁଜଙ୍ଗ ରାଜା ମୋକଦ୍ଦମାରୁ କ୍ଷାନ୍ତ ରହିବେ ତେବେ

ମହାରାଜା ତାହାଙ୍କୁ ବାର୍ଷିକ ଟ୫୦୦୦ଟଙ୍କା ଆୟ ହେବା ଭଳି ଭୂମି ବୃତ୍ତି ସ୍ୱରୂପ ଦେବେ । ଏହା ହେଲେ ଆପାତତଃ ଭୁଜଙ୍ଗ ରାଜାଙ୍କର ଦୈନଦଶା ବହୁଗତ ହେବ ଏମନ୍ତ ଅନୁମାନ ହେଉଅଛି ଓ ଏଥିପାଇଁ ଆମ୍ଭେମାନେ ବଗୁର କରି ଯେ ରାଜା ଏଥିରେ ସ୍ୱୀକୃତ ହେଲେ ଭଲ ହେବ । ଦେଓ୍ୟାନୀ ମୋକଦ୍ଦମାର ଫଳାଫଳ କେହି କହି ନପାରେ ଓ ବର୍ତ୍ତମାନ ମହାରାଜାଙ୍କ ସହିତ ମୋକଦ୍ଦମା ଚଳାଇବା ବହୁ ଅର୍ଥର ପ୍ରୟୋଜନ ରଖିଲ । ଭୁଜଙ୍ଗ ରାଜାଙ୍କର ବଳ କାହିଁ ଯେ ତେତେ ଟଙ୍କା ବ୍ୟୟ କରି ଏଠାରୁ ବିଲାତ ପର୍ଯ୍ୟନ୍ତ ମୋକଦ୍ଦମା ଚଳାଇବେ । ବିଶେଷ ଯେଉଁଦିନଠାରୁ କିଲ୍ଲା ନିଲମ ହୋଇଅଛି ସେହିଦିନଠାରୁ ତାହାଙ୍କର ସର୍ବସ୍ୱ ଯାଇଅଛି ଓ ଯେତେବେଳେ ସେ ନିଲମ ଫେର ପାଇବାର ନୁହଇ ତେତେବେଳେ ଅନ୍ୟ ବିଷୟରେ ବିବାଦ କରି କି ଫଳ ଅଛି ? ମୋକଦ୍ଦମା ମାମଲାରେ ପ୍ରବୃତ୍ତି ହେବା ନିର୍ଦ୍ଧନ ଲୋକ ପକ୍ଷରେ କଦାଚ ଭଲ ନୁହଇ । ଏଣୁକରି ଆମ୍ଭେମାନେ କ୍ଷାନ୍ତ ହେବାପାଇଁ ପରାମର୍ଶ ଦେବାକୁ ସାହସ କରୁଅଛୁଁ ।

୩୨୭ ।

## ଗୁଡ଼ଳ ଦର

ଗବର୍ଣ୍ଣମେଣ୍ଟ କଣ୍ଟ୍ରାକ୍ଟରଙ୍କ ଗୁଡ଼ଳ କଣାର ଧୂମ୍ କଣା ହେଁ ଯିବାରୁ ଗତ ସପ୍ତାହରେ ଗୁଡ଼ଳର ଦର କିଛି ଉଣା ହୋଇଥିଲା କିନ୍ତୁ ଅନ୍ୟ ମହାଜନମାନଙ୍କ ଗୁଡ଼ଳ କିଣାରୁ ପୁନବାର ଭାଉ ବୃଦ୍ଧି ହୋଇଅଛି । ଆମ୍ଭେମାନେ ପୂର୍ବରୁ ଅନୁମାନ କରୁଅଛୁଁ ଯେ କଲିକତାରେ ଗୁଡ଼ଳ ଭାଉ ଉଣା ନହେଲେ ଏଠାରେ ତେଜା ଭାଉ ବରାବର ରହିବ ଓ ସେହି ଅନୁମାନ କେବଳ ବେଳକୁ ବେଳ ସଫଳ ହେଉଅଛି । ଏ ସପ୍ତାହରେ ଗୁଡ଼ଳ କିଣିବାପାଇଁ ତାର ଡାକରେ ସମ୍ବାଦ ଆସିବାରୁ ମାରୱାଡ଼ି ମହାଜନମାନେ ଯଥାସାଧ୍ୟ କ୍ରୟ କରୁଅଛନ୍ତି । ଏମାନଙ୍କର ଏତେ ଧନ ନାହିଁ ଯେ ଏକାବେଳକେ ଅଧିକ ପରିମାଣରେ କ୍ରୟ କରିପାରିବେ କିନ୍ତୁ ଯେ ଯେତେ ପାରେ ତାହା କିଣିବାରେ ତ୍ରୁଟି କରନାହାନ୍ତି । ଏ ଅବସ୍ଥାରେ କେତେକାଳ ଭାଉ ଉଣା ରହିବ ତହିଁରେ ପୁଣି ମାକନନ ମାକନଗୀ କମ୍ପାନୀ ଓ ମାକମୀଲ କମ୍ପାନୀ ଏମନ୍ତ ବନ୍ଦୋବସ୍ତ କରିଅଛନ୍ତି ଯେ ପ୍ରତି ସପ୍ତାହରେ ଦୁଇଥର ଲେଖାଏଁ ଗୁପ୍ତବାଲ ଓ ବଗାଧରକୁ ଯାହାଜ ଆସି କେବଳ ଗୁଡ଼ଳ ବୋଝାଇ କରିବେ । ଏ ଅବସ୍ଥାରେ ଯେ ଯେତେ ଗୁଡ଼ଳ କିଣି ପାରିବ ତାହା କଲିକତାକୁ ଯିବାରେ କିଛି ମାତ୍ର ବିଳମ୍ବ କିମ୍ବା କଷ୍ଟ ହେବନାହିଁ । ବର୍ତ୍ତମାନ କଲିକତାରେ ଗୁଡ଼ଳର ଦର ଟ୪ ଠାରୁ ଟ୫ଟଙ୍କା ପର୍ଯ୍ୟନ୍ତ ହୋଇଅଛି ଅର୍ଥାତ୍ କଲିକତା ଦୁଇ ମହଣର ଦର ୩।୦ ଟଙ୍କା ପର୍ଯ୍ୟନ୍ତ ହୋଇଅଛି । ଏଠାରେ ଟଙ୍କାକୁ ସେ୧୬ରେ ହେଲେ ସୁଦ୍ଧା ବଜାରେ ଦାମ ଗୁରୁ ଟଙ୍କା ପର୍ଯ୍ୟନ୍ତ ହେବ

ଓ ଖର୍ଚ୍ଚା ଇତ୍ୟାଦି ମିଶି ଟ୫ଙ୍କାରୁ ଅଧିକ ହେବନାହିଁ । ଏ ଅବସ୍ଥାରେ ଚାଉଳ କଲିକତାକୁ ନିବାର କୌଣସିରୂପେ ବନ୍ଦ ହୋଇ ନପାରେ । ଟଙ୍କାରେ ସେ୧୪।୧୫ର ହେଲେ ସୁଦ୍ଧା ଏଠାରୁ ଚାଉଳ ରପ୍ତାନି ହେବ ଅତଏବ ଯେ ପର୍ଯ୍ୟନ୍ତ କଲିକତାରେ ଚାଉଳ ସୁସାର ହୋଇନାହିଁ ସେ ପର୍ଯ୍ୟନ୍ତ କଟକରେ ଯେ ଦର ତେଜ ହେବ ଏଥିରେ କୌଣସି ସନ୍ଦେହ ନାହିଁ । ଓଡ଼ିଶା ବଙ୍ଗଳା ମଧ୍ୟରେ କେତେ ନିକଟ ସମ୍ପର୍କ ଏକଥା ତହିଁର ଏକ ଉତ୍ତମ ଉଦାହରଣ ଅଟଇ ।

### ୩୨୮ । ଚାଉଳ ରପ୍ତାନି ଓ ଲର୍ଡ଼ ନର୍ଥ ବ୍ରୁକ ସାହେବ ।

ବଙ୍ଗଳାରେ ଦୁର୍ଭିକ୍ଷର ଆଶଙ୍କା ହେଲା ଦିନଠାରୁ ସମସ୍ତେ ଚାଉଳ ରପ୍ତାନି ନିଷେଧ ସକାଶେ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଅଛନ୍ତି କିନ୍ତୁ ଗବର୍ଣ୍ଣମେଣ୍ଟ କାହିଁକି ତହିଁରେ କର୍ଣ୍ଣପାତ କରୁନାହାନ୍ତି ମହାମାନ୍ୟ ଲର୍ଡ଼ ନର୍ଥ ବ୍ରୁକ ସାହେବ ତହିଁର ହେତୁ ଏକ ନିର୍ଦ୍ଧାରଣରେ ଲିପିବଦ୍ଧକରି ସର୍ବସାଧାରଣଙ୍କ ଗୋଚରାର୍ଥେ ଗବର୍ଣ୍ଣମେଣ୍ଟ ଗେଜେଟରେ ପ୍ରକାଶ କରିଅଛନ୍ତି । ଆମ୍ଭେମାନେ ଅତ୍ୟନ୍ତ ମନୋଯୋଗ ପୂର୍ବକ ଉକ୍ତ ନିର୍ଦ୍ଧାରଣଟି ପାଠ କରି ଲର୍ଡ଼ ନର୍ଥ ବ୍ରୁକଙ୍କ ପ୍ରଶଂସା ନକରି ଥାନ୍ତ ରହି ନପାରିଲୁଁ । ବାସ୍ତବରେ ସେ ଅତି ଧୀର ଓ ମନସ୍କାରରୂପେ ଆପଣା ହେତୁମାନ ଦର୍ଶାଇ ଅନ୍ନକଷ୍ଟ ଓ ଦୁର୍ଭିକ୍ଷ ପୀଡ଼ିତ ବ୍ୟକ୍ତିଙ୍କ ସକାଶେ ସେ ଯେମନ୍ତ ଚିନ୍ତାକୁଳ ଅଛନ୍ତି ତାହା ମଧ୍ୟ ତହିଁର ପ୍ରକାଶ ପାଉଅଛି ।

× × ×

× × ×

ଆମ୍ଭେମାନେ ଗବର୍ଣ୍ଣମେଣ୍ଟଙ୍କର ଉଲ୍ଲେଖିତ ଯୁକ୍ତି ସବୁକୁ ଅନୁମୋଦନ କରୁଁ ତେବେ ଉପସ୍ଥିତ ତ୍ୟାଗ କରି ଭବିଷ୍ୟତକୁ ଆଶ୍ରୟ କରିବା ଆମ୍ଭମାନଙ୍କର ସ୍ୱଭାବସିଦ୍ଧ ନୁହଇ । ଏଥିପାଇଁ ସର୍ବ ପ୍ରକାରରେ ଏଥିରେ ମନ ମାନୁନାହିଁ ।

ଲର୍ଡ଼ ନର୍ଥ ବ୍ରୁକଙ୍କ ଯୁକ୍ତିରେ ଗୋଟିଏ ଭ୍ରମ ଦେଖାଯାଏ । ସେ କହି ଅଛନ୍ତି କି ଓଡ଼ିଶା ଦୁର୍ଭିକ୍ଷ ସମୟରେ ଦେଶରେ ଚାଉଳ ନଥିଲା ଏମନ୍ତ ନୁହଇ ଚାଉଳ ପଠାଇବାର ସୁଯୋଗ ନଥିବାରୁ ଅନର୍ଥ ଘଟିଥିଲା । ଆମ୍ଭେମାନେ ଜାଣୁ ଯେ ଗବର୍ଣ୍ଣମେଣ୍ଟ କର୍ମଚାରୀ-ମାନେ ପ୍ରଥମେ ଅନେକଦିନ ଯାଏ ଦୁର୍ଭିକ୍ଷ ଘଟିବାର ସ୍ୱୀକାର କଲେନାହିଁ , ଓଡ଼ିଶାରେ

ଗୃହଲ ଅଛି ଏହି ବିଶ୍ୱାସ କରୁଥିଲେ ସୁତରାଂ ମଥାକାଳରେ ଗୃହଲ ଆସି ନପାରୁ ଘୋର ବର୍ଷା ସମୟରେ ଆସିଲା । ଯଥାର୍ଥ ଅନେକ ଗୃହଲ ଆମଦାନୀ ହେଲା କିନ୍ତୁ ଅଧିକାଂଶ ଗୃହଲ ବୁନ୍ଧୁଦେଶର ଅତି ଉଚ୍ଚ ଦରରେ ଆସିବାରୁ ଜଣାଯାଏ ଯେ ଦେଶରେ ଗୃହଲ ଅଧିକ ନଥିଲା । ଲର୍ଡ ନର୍ଥ ବୃକ ସେ ସମୟରେ ନଥିଲେ କିନ୍ତୁ ଦୁଃଖର ବିଷୟ ଯେ ତାହାଙ୍କର ସହୃଦୟ କେହି ତାହାଙ୍କୁ ଯଥାର୍ଥ ବିଷୟ ଜଣାଇଲେ ନାହିଁ ।

( ୯ମ ଭାଗ , ୨୮ । ୨ । ୧୮୭୪ , ସଂଖ୍ୟା ୯ )

୩୨୯ । ନଗର ଆନକଠ ଉଛହେବାର କାଠଯୋଡ଼ି ନଦୀର ଜଳ ଶୁଷ୍କ ଓ ନିତାନ୍ତ ଅପରିଷ୍କାର ହୋଇଅଛି । ଏଥିପାଇଁ କେତେକ ଲୋକ କଲେକ୍ଟରେ ସାହେବଙ୍କ ନିକଟରେ ଆନକଠ ଫିଟାଇ କିଛି ଜଳ ଛାଡ଼ି ଦେବା ପ୍ରାର୍ଥନାରେ ଆବେଦନ କରିବାରୁ ସାହେବ ପ୍ରଶଂସିତ ଏ ବିଷୟରେ ବାରିକ ମାଷ୍ଟର ସାହେବଙ୍କ ନିକଟକୁ ଚିଠି ଲେଖିବାର ଆଦେଶ କରିଅଛନ୍ତି । ଏବର୍ଷ ଅଳବୃଷ୍ଟି ହେତୁ ଏଠାରେ ଜଳକଷ୍ଟ ଭୟଙ୍କର ହେବାର ସମ୍ଭବ । ଏ ନଗରରେ ପ୍ରାୟ ଭଲ ପୁଷ୍କରିଣୀ ନାହିଁ , ନଦୀ ଜଳ ଯୋଗାଇବାର ଏକମାତ୍ର ଅଧାର , ତହିଁରେ ବର୍ତ୍ତମାନ ଅବସ୍ଥା ପରିବର୍ତ୍ତନ ନହେଲେ ଲୋକଙ୍କର କଷ୍ଟର ସୀମା ନରହିବ । ଭରସାକରୁଁ ଯେ ବାରିକ ମାଷ୍ଟର ସାହେବ ଏ ବିଷୟରେ କୃପଣତା ନକରି କଲେକ୍ଟରେ ସାହେବଙ୍କ ପରି ମୁକ୍ତହସ୍ତ ହେବେ ।

୩୩୦ । ଏ ନଗରରେ ଟାଉନ କମିଟି ଯେଉଁ ହାଟ ବସାଇବାକୁ ମନସ୍ଥ କରିଅଛନ୍ତି ତହିଁର କାର୍ଯ୍ୟ ବିମ୍ସ ସାହେବ ଆଜକୁ ମାସକରୁ ଅଧିକ ହେବ ଆରମ୍ଭ କରି ଦେଇ ଅଛନ୍ତି । ହାଟଟି ଚୌଧୁରୀ ବଜାର ଗୋପାଳ ଜିଉଙ୍କ ମଠ ପଛରେ ହୋଇଅଛି । ଏସ୍ଥାନ ଯେ ହାଟପାଇଁ ଅତି ପ୍ରଶସ୍ତ ତହିଁରେ ସନ୍ଦେହ ନାହିଁ ଓ ଯେଉଁ ନୂଆ ସଡ଼କ ଏଥିରେ ନିର୍ମାଣ ହୋଇଅଛି ଆମ୍ଭମାନଙ୍କ ଦ୍ୱାରା ସେ ଅଞ୍ଚଳବାସିଙ୍କର ଅନେକ ସୁଯୋଗ ହୋଇଅଛି ଓ ମଧ୍ୟ ନଗରର ଶୋଭାବର୍ଦ୍ଧକ ହୋଇଅଛି । ଟାଉନ କମିଟି ଏସ୍ଥାନକୁ କିଣି ନେଇ ପାରି ନାହାନ୍ତି କାରଣ ଯେତେ ମୂଲ୍ୟରେ ସ୍ଥାନଟି କିଣାଯାଇ ଅଛି ପ୍ରାୟ ତେତେଟଙ୍କାର ପଥର ଏଠାରେ ବାନ୍ଧାହୋଇ ଅଛି । ପଥର ସବୁ ବିକ୍ରୟ ହେବ କିମ୍ବା ତହିଁରେ ହାଟର ଘର ଇତ୍ୟାଦି ନିର୍ମାଣ ହେବ ଆମ୍ଭମାନଙ୍କୁ ଜଣାନାହିଁ । ବିଶେଷରେ ହେଉ ଶୁଣାଯାଏ ଯେ ଏଠାରେ ଅନେକ ଗୁଡ଼ିଏ ଗୋଦାମ ଓ ଦୋକାନଘର ନିର୍ମାଣ ହୋଇ ଲୋକଙ୍କୁ ଭଡ଼ା ଦିଆଯିବ । ଆମ୍ଭମାନଙ୍କର ଏ ସମ୍ପର୍କରେ ଗୋଟିଏ କଥା କହିବାର ଅଛି । ହାଟର କଳନା ଏଠାରେ ବହୁଦିନ ହେଲା ହୋଇଥିଲା ଓ ଯେତେବେଳେ ଶ୍ରୀଯୁକ୍ତ ମନ୍ନି ସାହେବ ସି, ଏସ, ଆଇ ଏ ଜିଲ୍ଲାର କଲେକ୍ଟର ମାଜିଷ୍ଟ୍ରେଟ

ଥିଲେ ସେ ସ୍ଥାନରେ ଗୋଟିଏ ଉଚ୍ଚ ମନ୍ଦିର ନିର୍ମାଣକରି ତହିଁରେ ଏକ ବଡ଼ ଘଡ଼ି ବାସାଇବାକୁ ମନସ୍ଥ କରିଥିଲେ । ଏପରି ଗୋଟିଏ ଘଡ଼ି ବସାଇବା ଏ ନଗରର ଯେମନ୍ତ ଶୋଭାବର୍ଦ୍ଧକ ତେମନ୍ତ ପ୍ରୟୋଜନୀୟ ଅଟଇ ଓ ଆମ୍ଭେମାନେ ଆଶାକରୁଁ ଯେ ଶ୍ରୀଯୁକ୍ତ ବମ୍‌ସ ସାହେବ ଏକାର୍ଯ୍ୟଟି କରି ଆପଣାର କୀର୍ତ୍ତି ସ୍ଥାପନ କରିବେ । ※

## ( ୯ମ ଭାଗ, ୨୮ । ୩ । ୧୮୭୪, ସଂଖ୍ୟା ୧୩ )

୩୩୧ । ଗଙ୍ଗାମନ୍ଦିର ପୁଷ୍କରିଣୀ ।

ଏ ନଗରସ୍ଥ ଗଙ୍ଗାମନ୍ଦିର ପୁଷ୍କରିଣୀର ପଙ୍କ ଉଦ୍ଧାର ସକାଶେ ବାବୁ ହରି ବଲ୍ଲଭ ବୋଷଙ୍କ ଯତ୍ନରେ କେତେ ଗୁଡ଼ିଏ ଟଙ୍କା ଭେଦାଦ୍ବାରା ସଂଗୃହିତ ହୋଇ କାର୍ଯ୍ୟାରମ୍ଭର ଉଦ୍ୟମ ଲଗିଅଛି । ଭେଦା ଟଙ୍କାସବୁ ଜଲ୍ ସ୍ଥାକମ ଶ୍ରୀଯୁକ୍ତ ବମ୍‌ସ ସାହେବଙ୍କ ନିକଟରେ ଦାଖଲ୍ ହେଲେ ସେ ଠାଉନ ଠାକ୍‌ସ କମ୍ଟା ଅନ୍ୟ ଫଣ୍ଡରୁ ତେତିକି ଟଙ୍କା ବା ଅଧିକ ଟଙ୍କା ଦେଇ ଏକାର୍ଯ୍ୟ ଶେଷ କରିବେ । ଆମ୍ଭେମାନେ ଭରସାକରୁଁ ଯେ କିଛି ଅଧିକ ବ୍ୟୟରେ ଭଲକରି ପରିଷ୍କାରକରି ଦେଲେ ଦୀର୍ଘକାଳକୁ ପୁଷ୍କରିଣୀଟି ଭଲ ରହିବ ।

୩୩୨ । ଏମନ୍ତ ଜନରବ ଶୁଣାଯାଏ ଯେ ଏ ନଗରର ତିନକୋଣିଆ ବଗିଚ୍ଚ ଓ ଗୌଖାନା ମଧ୍ୟରେ ଯେଉଁ ପୁଲଅଛି ସେଠାରେ ସାମାନ୍ୟ ରୂପେ ଡକାଇତି ହେଉଅଛି । ରାତିରେ ଏକାକୀ ମନୁଷ ସେ ବାଟରେ କିଛି ଦ୍ରବ୍ୟ ନେଇ ଯାଉଥିଲେ ପୁଲ ନିକଟରେ ଡକାୟତ୍ ବାହାରି ଲୁଟି ନିଅନ୍ତି । ଏରୂପ ଦୁଇ ତିନି ଘଟଣାର କଥା ଆମ୍ଭେମାନେ ଶୁଣିଅଛୁଁ ମାତ୍ର ସେ ଘଟନାମାନ କେତେଦୂର ସତ୍ୟ କହି ନପାରୁଁ । ପୁଲିସ କର୍ମଚାରିଙ୍କୁ ଏବିଷୟରେ ଦୃଷ୍ଟି ରଖିବା ପାଇଁ ଆମ୍ଭେମାନେ ବିଶେଷ ଅନୁରୋଧ କରୁଅଛୁଁ ।

୩୩୩ । ଗବର୍ଣ୍ଣମେଣ୍ଟଙ୍କ ଧନ କିରୂପେ ବ୍ୟୟ ହୁଅଇ ତହିଁର ଗୋଟିଏ ଉଦାହରଣ ସମ୍ପ୍ରତି ଦେଖିବାରେ ଆସିଅଛି । ଓଡ଼ିଆଭାଷାରେ ପାଠ୍ୟ ପୁସ୍ତକର ଅଭାବ ଥିବାରୁ ସ୍ଥାନୀୟ କର୍ମଚାରିଙ୍କ ଅନୁରୋଧରେ ଗବର୍ଣ୍ଣମେଣ୍ଟ ୫୩୦୦ଙ୍କା ଦାନକରି ଥିବାର ପାଠକମାନେ ଜାଣନ୍ତି ଓ ସମସ୍ତଙ୍କର ଆଶାଥିଲ ଯେ ଏହି ଟଙ୍କାଦ୍ୱାରା ଅନେକ ଗୁଡ଼ିଏ ନୂତନ ପୁସ୍ତକ ପ୍ରସ୍ତୁତ ହୋଇ ପାରିବ । ଅମ୍ଭେମାନେ ମଧ୍ୟ ଏଥିପୂର୍ବ ଏ ସମ୍ପର୍କରେ କେତେଗୁଡ଼ିଏ ପ୍ରସ୍ତାବ କରିଥିଲୁ ମାତ୍ର ବର୍ତ୍ତମାନ ଶୁଣିଲୁଁ ଯେ ସେ ଟଙ୍କାର ଅଧିକାଂଶ ଯେଉଁମାନେ ପୁସ୍ତକ ରଚନା କରି ଗବର୍ଣ୍ଣମେଣ୍ଟଙ୍କ ଠାରୁ ସାହାଯ୍ୟ ପ୍ରାପ୍ତ ହୋଇଥିଲେ ସେହିମାନଙ୍କୁ ଅଧିକା ପାରିତୋଷିକ ସ୍ୱରୂପ ଦିଆଯାଇ ଅବଶିଷ୍ଟ ଅଳ୍ପ ଟଙ୍କା

※ Vide Appendix.

କେତେଗୁଡ଼ିଏ ଛୋଟ ପୁସ୍ତକ କମିଟି ହୋଇଅଛି । ତହିଁର ମଧ୍ୟ ସନ୍ଧାନ କାହାକୁ ମିଳୁ ନାହିଁ । ତାହା କୌଣସି କାଳରେ କେହି ଭାଗ୍ୟବାନ ପୁରୁଷଙ୍କୁ ଦେଖାଯିବ । ସ୍କୁଲାଇନ୍ସ କର୍ମଚାରୀମାନେ ଏପରି ବନ୍ଦୋବସ୍ତ କଲେ ଗବର୍ଣ୍ଣମେଣ୍ଟଙ୍କର ଦୋଷ କଣ ? ଯେଉଁମାନେ ଥରେ କେଣାଏଁ ସାହାଯ୍ୟପାଇ ପୁସ୍ତକ ବିକ୍ରୟକରି ଖର୍ଚ୍ଚ । ଉପରେ ଲାଭ ଟୋଲ ନେଇ ଅଛନ୍ତି ତାହାଙ୍କୁ ପୁନର୍ବାର ପାରିତୋଷିକ ଦିଆଗଲା ଓ ଯେଉଁମାନେ ଆପଣା ବ୍ୟୟରେ ପୁସ୍ତକ ମୁଦ୍ରିତ କରି ବିକ୍ରୟ ଅଭାବରୁ ହାତରୁ ଖର୍ଚ୍ଚ ଦେଇ ବସି ଅଛନ୍ତି ଅଥଚ ତାହାଙ୍କ ପୁସ୍ତକ ମନୋନୀତ ହୋଇଅଛି ସେମାନଙ୍କୁ ଅଧେସୁଦ୍ଧା କେହି ପଚାରିଲେ ନାହିଁ । ପୁସ୍ତକ ରଚୟିତାମାନେ ଏ ପ୍ରକାର ଉତ୍ସାହ ପାଇଲେ ଯେତେ ଉତ୍ତମ ପୁସ୍ତକ ବାହାରିବ ତାହା ସହଜରେ ଅନୁଭବ ହେଉଅଛି କିନ୍ତୁ ଏଥିକି ଆବୃତ୍ତ କାହାର ? ଆଜିକାଲିକା ଦରବାର ଏହିପରି ହୋଇଅଛି । ଏସବୁ ଦେଖି ଆମ୍ଭେମାନେ ଥରେ ୨ ମନେକରୁଁ ଯେ ଏଣିକି ତୁନିହୋଇ ରହିବାର ଭଲ କିନ୍ତୁ କ କରିବା ବ୍ୟବସାୟ ହାତ ଆଦରିଅଛୁଁ ନ କହିଲେ କାହିଁରେ କାଗଜ ଖଣ୍ଡ ଭରତି କରିବୁଁ ?

୩୩୪ । ସରକାରୀ କର୍ମଚାରୀଙ୍କୁ ରସଦ ଯୋଗାଇବା

ହାକିମମାନଙ୍କର ମୋଫସଲ ଗସ୍ତ ସମୟରେ ରସଦ ଯୋଗାଇବା ପାଇଁ ଜମିଦାରମାନଙ୍କ ଉପରେ ପରୱାନା ଜାରୀ ହେବାର ନିୟମ ଏ ପ୍ରଦେଶରେ ବହୁକାଳରୁ ପ୍ରଚଳିତ ଅଛି ଓ ଏଥିରେ ଯେ ସମସ୍ତ ଦୌରାତ୍ମ୍ୟ ହୁଅଇ ତାହା ନିବାରଣ ସକାଶେ ଆମ୍ଭମାନଙ୍କର କମିଶନର ଶ୍ରୀଯୁକ୍ତ ରାବେନସା ସାହେବ ବିଶେଷ ଯତ୍ନ କରୁଅଛନ୍ତି । ତାହାଙ୍କ ପ୍ରତାପରୁ ଗଡ଼ଜାତରେ ଅନେକ ପରିମାଣରେ ରସଦର ଅତ୍ୟାଚାର ନିବାରଣ ହୋଇଅଛି ଓ କର୍ମଚାରିମାନେ ତହିଁପାଇଁ ଦଣ୍ଡସୁଦ୍ଧା ପାଇ ଅଛନ୍ତି ତଥାପି ସାହେବ ସନ୍ତୁଷ୍ଟ ନ ହୋଇ ଅନ୍ୟ ନିୟମ କରିବାକୁ ତତ୍ପର ହୋଇ ଅଛନ୍ତି । ସମ୍ପ୍ରତି ଆମ୍ଭେମାନେ ଗୋଟିଏ ନିୟମର କଥା ଶୁଣି ଅତିଶୟ ଆନନ୍ଦିତ ହୋଇଅଛୁଁ ଓ ତହିଁପାଇଁ ତାହାଙ୍କର ଅନେକ ପ୍ରଶଂସା କରୁଅଛୁଁ ।

ସେ ନିୟମଟି ଏହି ଯେ ସାଧାରଣତଃ ରସଦପାଇଁ ପରୱାନା ହେବନାହିଁ କିନ୍ତୁ ଯେ ସବୁ ସ୍ଥାନରେ ଆହାର୍ଯ୍ୟ ଦ୍ରବ୍ୟ ଏପରି ଦୁଷ୍ପ୍ରାପ୍ୟ ଯେ ପରୱାନା ନ ହେଲେ ନ ଚଳେ ସେଠାରେ ଅନିଶ୍ଚିତ ପ୍ରକାରରେ ପରୱାନା ନହୋଇ କେଉଁ ଦ୍ରବ୍ୟସବୁ କି ପରିମାଣରେ କାହାପାଇଁ ପ୍ରୟୋଜନ ତହିଁରେ ତାଲିକା ସହିତ ପରୱାନା ପଠାଯିବ ଯେ ଜମିଦାରମାନେ ସେହି ପରିମାଣରେ ସାମଗ୍ରୀ ପ୍ରସ୍ତୁତ ରଖିବେ ଓ ମୂଲ୍ୟନେଇ ବିକ୍ରୟ କରିଦେବେ । ମାତ୍ର ଦୁଃଖର ବିଷୟ ଯେ ଏ ନିୟମଟିକୁ ସର୍ବତ୍ର ପ୍ରଚାର ନକରି

କେବଳ ଗଡ଼ଜାତରେ ତାହା କରି ଅଛନ୍ତି । କିନ୍ତୁ ହାକିମମାନଙ୍କ କୋର୍ଟରୁ ଯେବେ ଏହି ମର୍ମରେ ଖଣ୍ଡେ ଲେଖାଏଁ ସରକୁଲାର ପଠାନ୍ତେ ଏବଂ ଜମିଦାରଙ୍କୁ ଘୋଷଣା ଦ୍ୱାରା ଜଣାଇ ଦିଅନ୍ତେ ଯେ ରସଦ ପରଓ୍ୱାନା ସହିତ ପ୍ରୟୋଜନୀୟ ସାମଗ୍ରୀର ତାଲିକା ନ ପାଇଲେ ସେମାନେ ତାହା ପ୍ରତିପାଳନ କରିବେ ନାହିଁ ତେବେ ଉକ୍ତ ନିୟମର ମଙ୍ଗଳ ଫଳ ସମ୍ବନ୍ଧରେ ଫଳନ୍ତା ଓ ସମସ୍ତେ କମିଶନରଙ୍କୁ ଧନ୍ୟବାଦ ଦିଅନ୍ତେ । ବର୍ତ୍ତମାନ ସୁଦ୍ଧା ଏପରି କରିବା ପକ୍ଷରେ କିଛି ବାଧା ନାହିଁ ଓ ଆମ୍ଭେମାନେ ଶ୍ରୀଯୁକ୍ତ କମିଶନର ସାହେବଙ୍କୁ ବିଶେଷରୂପେ ଅନୁରୋଧ କରୁଅଛୁଁ ଯେ ଜିଲ୍ଲା ହାକିମଙ୍କ ଉପରେ ଏହିପରି ଆଜ୍ଞା ପ୍ରଚାର କରନ୍ତୁ ।

ବର୍ତ୍ତମାନ ଯେଉଁପରି ରସଦ ପରଓ୍ୱାନା ଜାରୀ ହେଉଅଛି ତହିଁରେ ଜମିଦାରମାନେ ରସଦ ଯୋଗାଇବା ପାଇଁ ବହୁତ କ୍ଳେଶ ସହ୍ୟକରନ୍ତି । କାହାକୁ କିପ୍ରକାର ଦ୍ରବ୍ୟ ଦିଆଯିବ ତହିଁର କିଛି ନିର୍ଣ୍ଣୟ ନଥିବାରୁ ବଡ଼ଠାରୁ ଛୋଟ କର୍ମଚାରୀ ପର୍ଯ୍ୟନ୍ତ ସମସ୍ତେ ଜମିଦାର ଉପରେ ହୁକୁମ ଜାରୀ କରନ୍ତି ଓ କେବଳ ଅଧିକା ଦ୍ରବ୍ୟ ମାଗନ୍ତି ଏମନ୍ତ ନୁହେଁ ଅସମ୍ଭବ ପ୍ରାର୍ଥନାମାନ ଉପସ୍ଥିତ କରନ୍ତି । ନାଜରଖାନାରପିଅଦା କି ପୁଲିସର କନଷ୍ଟେବଲ ଯେତେବେଳେ ଟୋକାଏ ଲେଖାଏଁ ଚାଉଳ ଓ ଦୁଇ ଟଙ୍କସେର ଘିଅ ମାଗନ୍ତି କେହି ଜମିଦାର ତାହା ଦ୍ୱିଗୁଣ ଅଧିକରେ ନିକାଶ କରିଦିଏ ଅଥବା କେହି ଅଜ୍ଞତାବଶତଃ ଦେଇଥାଏ କିନ୍ତୁ ଯେତେବେଳେ ସାହେବଙ୍କ ମେହେତର କୁକୁରପାଇଁ ଘିଅ ଓ ଖେତଖାନାବର୍ଜ୍ଜିନ ପରିଷ୍କାର ସକାଶେ ନହୁଣି ଅଥବା ସରଦାର ବେହେରା ଆସି ପ୍ରଦୀପପାଇଁ ସେରେ ଘିଅର ଫରମାସ କରନ୍ତି ଓ ଶୀଘ୍ର ନଦେଲେ ସାହେବ ରାଗାନ୍ୱିତ ହେବେ ବୋଲି ଧମକାଇ ଦିଅନ୍ତି ସେତେବେଳେ ଜମିଦାରର ସାଧ କଣ ଯେ ତାହା ନଦେଇ ନିଶ୍ଚିନ୍ତ ହୋଇ ବସିବ । ଘିଅ ଖାଇଲେ କୁକୁର ଦେହର ଲୋମ ଖସିପଡ଼ିବ କିମ୍ବା ସାହେବ କିଛି ଦେବତା ନୁହନ୍ତି ଯେ ତାହାଙ୍କ ପାଖରେ ଘିଅ ଦୀପ ଆଉ ଜଳିବ ନାହିଁ ଏଥିର ବିଚାର କରିବାକୁ ଅବକାଶ ନଥାଏ । ଆୟା ଆସି ମେମସାହେବଙ୍କ ପାନ ଫରମାସ କଲେସୁଦ୍ଧା ଜମିଦାରମାନେ ତାହା ତତକ୍ଷଣାତ ଦିଅନ୍ତି । ଏସବୁ କାଳ୍ପନିକ ଉଦାହରଣ ନୁହଇ ମାତ୍ର ବାସ୍ତବରେ ଘଟନା ହୋଇଅଛି । ସୁତୁଣା ପେନ୍‌ସି ପ୍ରଭୃତି କର୍ମଚାରୀଙ୍କୁ ପଚାରିଲେ ଏଥିର ଆହୁରି ଅଧିକ ହାସ୍ୟାସ୍ପଦ କଥାମାନ ଶୁଣାଯିବ । ଏସବୁ ଅତ୍ୟାଚାର ନିବାରଣର ଏକମାତ୍ର ଉପାୟ ଆବଶ୍ୟକୀୟ ଦ୍ରବ୍ୟର ତାଲିକା ପଠାଇବା ଦ୍ୱାରା ହୋଇପାରେ ଓ ଶ୍ରୀଯୁକ୍ତ କମିଶନର ସାହେବ ସେଥିପ୍ରତି ଧ୍ୟାନ କରିବାରେ ଭିନ୍ନ ବିଚକ୍ଷଣତା ପ୍ରକାଶ କରିଅଛନ୍ତି । ଆମ୍ଭେମାନେ ବୋଧକରୁଁ ପଲଟନରେ ଯେ ପ୍ରକାର ଉଚ୍ଚ ଓ କ୍ଷୁଦ୍ର କର୍ମଚାରୀଙ୍କର ରସଦର ତାଲିକା ପ୍ରଚାର ଅଛି ଅର୍ଥାତ୍ ପ୍ରତ୍ୟେକ ଲୋକ ସକାଶେ ଏତେ ଚାଉଳ ଏତେ ଡାଲି ଓ ଲୁଣ ଓ ତେଲ

ଇତ୍ୟାଦ ଉଠାପିବାର ଅଛି ସେହେତୁ ତାଲିକା ସବସରେ ପ୍ରସ୍ତୁତ ହୋଇ ହାକିମଙ୍କ ମନ୍ତ୍ରୁରୀ ସହିତ ପ୍ରକାଶ ହେଲେ ଉଷଦ ସମ୍ପର୍କୀୟ ଅତ୍ୟାଚାରର ଅନେକ ପରିମାଣରେ ନିବାରଣ ହେବ ଓ ଯେବେ ମୋଠ ଦ୍ରବ୍ୟ ଆଗଜୁରୀ ମୂଲ୍ୟ ଦେଇ ହାକିମ କ୍ରୟ କରିନେଇ ଅମଲଙ୍କ ଠାର ତାହା ଖର୍ଚ୍ଚ ସହିତ ଆଦାୟ କରିନଅନ୍ତି ତାହା ହେଲେ ମାଗଣା ଉଷଦ କେହି ଖାଇ ପାରିବେ ନାହିଁ ।

[illegible] ।  ବିଜ୍ଞାପନ ।

ଏତଦ୍ଦ୍ୱାରା ସର୍ବସାଧାରଣରେ ଜଣାଉଅଛୁଁ ଯେ ବୋଧାଙ୍କୁର ପୁସ୍ତକ ଦ୍ୱିତୀୟବାର ମୁଦ୍ରାଙ୍କିତ ହୋଇ ବିକ୍ରୟ ନିମିତ୍ତ ପ୍ରସ୍ତୁତ ଅଛି । ଯେଉଁମାନେ ପୁସ୍ତକ ନେବାର ଗ୍ରାହକ ହେବେ ସେମାନେ ନର୍ମାଲ ସ୍କୁଲର ପ୍ରଧାନ ଶିକ୍ଷକ ପଣ୍ଡିତ ଶ୍ରୀତାରିଣୀ ଚରଣ ମୁଖୋପାଧ୍ୟାୟ ମହାଶୟଙ୍କ ନିକଟରେ ତତ୍ତ୍ୱ କଲେ ପାଇ ପାରିବେ । ଇତି

୧୩ । ୩ । ୭୪  ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣ ।

## ( ୯ମ ଭାଗ, ୮ । ୪ । ୧୮୭୪, ସଂଖ୍ୟା ୧୬ )

[illegible] ।  ରଥଯାତ୍ରାରେ ଅନେକ ସ୍ଥଳରେ ଲୋକ ମରି ପଡ଼ିବାରୁ ବିଗତ ଲେଫ୍‌ଟେନାଣ୍ଟ ଗବର୍ଣ୍ଣର ସାହେବ ରଥଟଣା ଉଠାଇଦେବାକୁ ଗବର୍ଣ୍ଣମେଣ୍ଟ ଇଣ୍ଡିଆରେ ପ୍ରସ୍ତାବ କରିଥିଲେ ମାତ୍ର ତାହା ମାନ୍ୟବର ଲର୍ଡ ନର୍ଥବ୍ରୁକଙ୍କ ସୁବିବେଚନା ହିନ୍ଦୁ ଧର୍ମ ପ୍ରତି ସେପ୍ରକାର ହସ୍ତକ୍ଷେପଣ କରିବାର ବ୍ୟବସ୍ଥା ହେଲନାହିଁ । ଦୁର୍ଭାଗ୍ୟର ବିଷୟ ଯେ ଗତ ଯାତ୍ରାରେ ଭୁବନେଶ୍ୱରଠାରେ ରଥଚକରେ ଏକଜଣ ହତ ଓ ଏକଜଣ ଆହତ ହେଲ । ଆମ୍ଭେମାନେ ଶୁଣିଅଛୁଁ ଯେ ଏହୁହିଁଙ୍କର ଗୋଡ଼ରେ ଚକ ଗଲ ଯାଇଥିଲ ଅତଏବ ସମ୍ଭବରୁ ଆସଇ କି ଯେବେ ଇଂରଜୀ ଚିକିତ୍ସକ କେହି ସେଠାରେ ଉପସ୍ଥିତ ଥାନ୍ତେ ତେବେ ମୃତ୍ୟୁ ଘଟନା ହୋଇନଥାନ୍ତା । ଭୁବନେଶ୍ୱରଠାରେ କେହି ଚିକିତ୍ସକ କିଂବା ସରକାରୀ ଚିକିତ୍ସାଳୟ ନାହିଁ ଓ କଠୋକଟି କର୍ମରୁ ଦେଶୀୟ ବୈଦ୍ୟ ସମ୍ପୂର୍ଣ୍ଣରୂପେ ଅକ୍ଷମ ସୁତରାଂ କୌଣସି ଆଶୁ ପ୍ରତିକାର ନହେବାରୁ ଲୋକଟି ମରିପଡ଼ିଲ । ଏଥିପାଇଁ ଆମ୍ଭେମାନେ ଏମନ୍ତ ପ୍ରସ୍ତାବ କରୁଁ ନାହୁଁ ଯେ ଭୁବନେଶ୍ୱରଠାରେ ଗୋଟିଏ ସରକାରୀ ଚିକିତ୍ସାଳୟ ହେଉ । ଅବଶ୍ୟ ବୋଲିବାକୁ ହେବ କି ଯେବେ ପ୍ରତି ଗ୍ରାମରେ ଗୋଟିଏ ଲେଖାଏଁ ସରକାରୀ ଚିକିତ୍ସାଳୟ ବସନ୍ତା ତେବେ ପ୍ରଜାଙ୍କର ବିଶେଷ ମଙ୍ଗଳ ହୁଅନ୍ତା କିନ୍ତୁ ତାହା ହେବା ଗବର୍ଣ୍ଣମେଣ୍ଟଙ୍କ ଆୟବ୍ୟୟର

ବ୍ୟବସ୍ଥା ସଙ୍ଗେ ସମ୍ପର୍କରହିଣେ କରୁ ଆମ୍ଭେମାନେ ଏହି ପ୍ରସ୍ତାବ କରୁଁ ଯେ ମଫସଲରେ ଯେତେବେଳେ ଯେଉଁଠାରେ କୌଣସି ବୃହତ୍ ମେଳା କି ଯାତ୍ରା ହୁଅଇ ଓ ଚତୁର୍ଦ୍ଦିଗରୁ ଅନେକ ଯାତ୍ରୀ ଆସି ଜମାହୁଅନ୍ତି ସେଠାକୁ ଶାନ୍ତିରକ୍ଷା ନିମିତ୍ତ ଯେମନ୍ତ ପୁଲିସ ପଠା-ଯାଏ ସେହିପରି ଅକସ୍ମାତ୍ ପୀଡ଼ା ଓ ଦୁର୍ଘଟନା ନିମିତ୍ତ ଜଣେ ଲେଖାଏଁ ଡାକ୍ତର ପଠାଇଲେ ଭଲ ହୋଇପାରେ । ଭବୀ ଯାତ୍ରୀ ହେଲେ ପ୍ରାୟ ଏକସପ୍ତାହର ଅଧିକକାଳ ରହଇନାହିଁ ଓ ଅନେକ ଯାତ୍ରା ଏକଦିନରେ ଶେଷହୁଅଇ । ସଦର ମୁକାମ କିଂବା ସବ-ଡିଭିଜନର ଜଣେ ନେଟିବ ଡାକ୍ତର କିଂବା ତାହାର ତଳ କର୍ମଚାରୀଙ୍କୁ ଏହି ଅଳ୍ପକାଳ ନିମନ୍ତେ ଯାତ୍ରାସ୍ଥଳକୁ ପଠାଇଦେଲେ ଗବର୍ଣ୍ଣମେଣ୍ଟ ବିଶେଷ ବ୍ୟୟଗ୍ରସ୍ତ ହେବେନାହିଁ ଅଥଚ ଯାତ୍ରିଙ୍କର ପରମୋପକାର ହେବ ।

୩୩୭ । ଗଞ୍ଜାମରେ ଓଡ଼ିଆଭାଷା ।

ଗଞ୍ଜାମ ଜିଲ୍ଲାର ଅଧିକାଂଶର ଭାଷା ଓଡ଼ିଆ ଥିବାରୁ ସେଠା ବିଦ୍ୟାଳୟ ଓ କଚେରୀ ମାନଙ୍କରେ ଓଡ଼ିଆ ଭାଷା ପ୍ରଚଳିତ କରିବାର ଆଜ୍ଞା ଗବର୍ଣ୍ଣମେଣ୍ଟର ହୋଇଥିବାରୁ ଅମ୍ଭେମାନେ ଏଥିପୂର୍ବେ ଲେଖିଥିଲୁଁ ଓ ତଦ୍ଦ୍ୱାରା ସେଠା ନିବାସି ମାନଙ୍କର ପରମୋପକାର ହେବାର ଆଶା କରିଥିଲୁଁ ମାତ୍ର ବର୍ତ୍ତମାନ ଜଣାଯାଏ ଯେ ଅବଧି ତାହା ହୋଇନାହିଁ । ବଡ଼ଖେମୁଣ୍ଡିପାଟଣାଜିଲ୍ଲା ସମ୍ବନ୍ଧ ଜୟପୁର ନିବାସୀ ଓଡ଼ିଆ ଦୀନବନ୍ଧୁ ନାମରେ ଜଣେ ପତ୍ର ପ୍ରେରକ ଲେଖିଅଛନ୍ତି ଯେ "ଗତ ଜାନୁଏରୀ ମାସ ୨୪ତାରିଖ ଗଞ୍ଜାମ ଗଜେଟ ୨୪ପୃଷ୍ଠା ଲିଖିତ ଆଦେଶ ମୂଳକ ଅମ୍ଭେ ଅତି ଆଶ୍ଚର୍ଯ୍ୟ ମନେକରି ଦୁଃଖର ସଙ୍ଗି ହେଲୁଁ । ଲେଖାଅଛି ଯେ ଓଡ଼ିଆମାନେ ଓଡ଼ିଆରେ କଚେରୀ କାଗଜପତ୍ରାଦି ଦାଖଲ କରିବାକୁ କୌଣସି ପ୍ରତିବନ୍ଧକ ନାହିଁ । ମାତ୍ର ଓଡ଼ିଆ ଲିପିରେ ଦେବେ ଦାଖଲ ହୁଅଇ ତେବେ ଜବାବ ମିଳିବାର ବିଳମ୍ବ ଦେଖାଯିବ । ଯଦି ଓଡ଼ିଆଭାଷା ତେଲେଙ୍ଗା ଲିପି କିଂବା ଇଂରାଜୀ ଲିପିରେ ଲେଖା-ହୋଇ ତେବେ ବେଗରେ ଜବାବ ମିଳିପାରିବ" । ପତ୍ର ପ୍ରେରକ ଏ ଆଜ୍ଞାରେ ଅତ୍ୟନ୍ତ ଦୁଃଖିତହୋଇ ଲେଖିଅଛନ୍ତି କି ଏଥିରେ ଓଡ଼ିଆ ମାନଙ୍କର କିଛି ମଙ୍ଗଳ ହେଉନାହିଁ ଏବଂ ଗବର୍ଣ୍ଣମେଣ୍ଟଙ୍କ ନିକଟରେ ଏଥିର ପ୍ରତିବାଦ କରି ଏ ଆଜ୍ଞାକୁ ରହିତ କରାଇବା ପାଇଁ ଚେଷ୍ଟା କରିବା ଅତ୍ୟନ୍ତ ଆବଶ୍ୟକ ଅଟଇ । ଏରୂପ ଆଜ୍ଞା ହେବାର ସେ ଏହି କାରଣ ଅନୁମାନ କରନ୍ତି ଯେ ଏ ପ୍ରଦେଶକୁ ଯେଉଁମାନେ ରାଜକର୍ମର ଭାର ଗ୍ରହଣକରି ଆସନ୍ତି ସେମାନେ ଓଡ଼ିଆ ନଜାଣି ଜାଣିବାର ଦମ୍ଭ କରନ୍ତି ।

ଏଥିକୁ ଅମ୍ଭେମାନେ ବିବେଚନା କରୁଁ ଯେ ପତ୍ର ପ୍ରେରକ ଯେଉଁ କାରଣ କଳ୍ପନା କରିଅଛନ୍ତି ତାହା ନିତାନ୍ତ ଅମୂଳକ ନୁହେଁ

ଏବଂ ଓଡ଼ିଆ ବଙ୍ଗଳା ଭେଦ ଯେ ସମସ୍ତ କଥା ଓଡ଼ିଶାରେ ହୋଇଥିଲା ଗଞ୍ଜାମ ଜିଲ୍ଲାରେ ସେ ସମସ୍ତ ଅବିକଳ ଘଟିବାର ଦେଖାଯାଏ । ଏଠାରେ ବଙ୍ଗଳା ଅକ୍ଷରରେ ଓଡ଼ିଆଭାଷା ଲେଖିବାର ପ୍ରସ୍ତାବ ହୋଇଥିଲା, ସେଠାରେ ତେଲଙ୍ଗା ଅକ୍ଷରରେ ଲେଖିବାର କଥା ହୋଇଅଛି, ପ୍ରଭେଦ ଏତିକି ଯେ ଓଡ଼ିଶାରେ କେତେକ ସ୍ୱାର୍ଥପର ବ୍ୟକ୍ତି ଏରୂପ ପ୍ରସ୍ତାବ କରିଥିଲେ ମାତ୍ର ଗଞ୍ଜାମରେ ତାହା ଘୋଷଣା ପ୍ରଭୃତି ଦ୍ୱାରା ବିଧିବଦ୍ଧ ହୋଇଅଛି । ଉକ୍ତ ଘୋଷଣାର ପ୍ରକୃତ ଉଦ୍ଦେଶ୍ୟ ଯେ ପ୍ରକାରାନ୍ତରେ ଓଡ଼ିଆ ଭାଷା ଉଠାଇଦେବା ତହିଁରେ କିଛି ସନ୍ଦେହ ନାହିଁ । ଗବର୍ଣ୍ଣମେଣ୍ଟ ଯେସ୍ଥଳେ ଓଡ଼ିଆ ଭାଷା କଚେରୀରେ ପ୍ରଚଳିତ କରିଅଛନ୍ତି ସେସ୍ଥଳେ କୌଣସି କର୍ମଚାରୀ ପକ୍ଷରେ ଏରୂପ ବିରୋଧଜନକ ଚେଷ୍ଟା ଅତି ଦୂଷଣୀୟ ଅଟଇ । ତେଲଙ୍ଗାମାନେ ବସ୍ତୁତ ଗଞ୍ଜାମଜିଲ୍ଲାର କଚେରୀ ସବୁରେ କର୍ମ କରନ୍ତି । ସେମାନେ ଓଡ଼ିଆ ଜାଣନ୍ତିନାହିଁ କିମ୍ବା ଶିଖିବାକୁ ଚେଷ୍ଟା କରନ୍ତି ନାହିଁ ବୋଲି ଅବା ଏରୂପ ପରାମର୍ଶ ଉଚ୍ଚ କର୍ମଚାରୀଙ୍କୁ ଦେଇଥିବେ କିନ୍ତୁ ଉକ୍ତ କର୍ମଚାରୀମାନଙ୍କୁ ବିଚାର କରିବାର ଉଚିତ ଯେ ପ୍ରଜାଙ୍କ ହିତ ସକାଶେ ଏ ଆଜ୍ଞା ହୋଇଅଛି, ଅମଲାଙ୍କ ସକାଶେ ନୁହଇ । ଯେବେ ଲୋକେ ତେଲଙ୍ଗୀ କି ଇଂରାଜୀଭାଷା ଶିଖିଅଛନ୍ତି ତେବେ ସେ ଉକ୍ତ ଭାଷା ମାନଙ୍କରେ ଦରଖାସ୍ତ ଇତ୍ୟାଦି ନଲେଖି ନାହିଁକି ଏକପ୍ରକାର ଅକ୍ଷର ଓ ଏକପ୍ରକାର ଭାଷା ବ୍ୟବହାର କରିବାକୁ ବାଧ୍ୟ ହେବେ ଓ ସେରୂପ କରିବା ମଧ୍ୟ ସୁବିଧା ନୁହଇ । ଗଞ୍ଜାମ ଜିଲ୍ଲାର କଚେରୀ ମାନଙ୍କରେ ଓଡ଼ିଆ ଭାଷାରେ ଲେଖାପଢ଼ା କରିବା ବ୍ୟକ୍ତିଙ୍କୁ ନିଯୁକ୍ତ କରିବା ଉଚିତ ଓ ଯେବେ ସ୍ଥାନୀୟ କର୍ମଚାରୀମାନେ ତାହା କରିବାକୁ ଇଚ୍ଛା କରନ୍ତି ନାହିଁ, ତେବେ ସେଠା ଲୋକମାନଙ୍କୁ ଉଚିତ ଯେ ଏକାମେଳ ହୋଇ ସଦ୍ୟୁକ୍ତି ପ୍ରଦର୍ଶନ ପୂର୍ବକ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଓ ଇଣ୍ଡିଆ ଗବର୍ଣ୍ଣମେଣ୍ଟଙ୍କୁ ଆବେଦନ ପଠାନ୍ତୁ । ତାହାହେଲେ ଅବଶ୍ୟ ଏ ଆଜ୍ଞା ରହିତ ହୋଇଯିବ ।

୩୩ । **ବୈରାଗୀଙ୍କ ଆଶ୍ରମ ଭ୍ରଷ୍ଟ ।**

ବର୍ତ୍ତମାନ ତେଲେଙ୍ଗାବଜାର ଫାଣ୍ଡି ଏକ ଅପ୍ରକାଶ୍ୟ ଏବଂ ଜଙ୍ଗଲବେଷ୍ଟିତ ସ୍ଥଳରେ ଥିବାରୁ ଶ୍ରୀଯୁକ୍ତ ବମ୍ସ ସାହେବ ମାଜିଷ୍ଟ୍ରେଟ ସେଠାରୁ ଫାଣ୍ଡି ଉଠାଇ ଆଣି କାଠଯୋଡ଼ି ନଦୀ ବ୍ରଜଘାଟ ଉପରେ ଯେଉଁଠାରେ ବୈରାଗୀଙ୍କ ଆଶ୍ରମ ଅଛି ସେଠାରେ ବସାଇବାକୁ ମନସ୍ଥ କରିଥିଲେ କିନ୍ତୁ ବଢ଼ି ସମୟରେ ସେଠାକୁ ଜଳ ଆସଇ ବୋଲି ତାହା ପରିତ୍ୟାଗ କରି ତହିଁ ନିକଟ ଅନ୍ୟ ସ୍ଥାନରେ ଫାଣ୍ଡି ବସାଇବାକୁ ସ୍ଥିର କରିଅଛନ୍ତି । ବୈରାଗୀଙ୍କ ଆଶ୍ରମ ଫାଣ୍ଡିର ଉପଯୁକ୍ତ ହେଉନାହିଁ ସତ୍ୟ କିନ୍ତୁ ତାହା ବୋଲି ବୈରାଗୀମାନେ ସେଠାରେ ରହିପାରିଲେ ନାହିଁ । ସାହେବ

ପ୍ରଶଂସିତ ସେସମସ୍ତଙ୍କୁ ସ୍ଥାନାନ୍ତରରୁ ତଡ଼ିଦେଇ ଅଛନ୍ତି । ଏରୂପ କରିବାର ହେତୁ ଏହିରୂପେ ଜଣେ ବୈରାଗୀ ଉକ୍ତ ଆଶ୍ରମରେ କେତେ ମାସ ହେବ ଆସି ରହି ନିତ୍ୟ ପଞ୍ଚାଗ୍ନି ତପ କରୁଥିଲା ଅର୍ଥାତ୍ ଗୃହଆଡ଼େ ଅନେକ ଗଦା ଘସିନିଆଁ ଜାଳି ତହିଁ ମଧ୍ୟରେ ଆପେ ବହୁତବେଳ ବସି ତପ କରୁଥିଲା । ନଈକୂଳଆ ବତାସ ଦାଉରେ ଅନେକ ଅଗ୍ନି ଜାଳିବାରୁ କଏ ଜାଣେ କେତେବେଳେ ଅଗ୍ନି ଉଡ଼ି ନିକଟବର୍ତ୍ତି ଘର ସବୁରେ ପ୍ରବେଶ କରଇ । ଏଥିପାଇଁ ସାହେବ ତାହାଙ୍କୁ ଅନିଷ୍ଟକର ଜ୍ଞାନ କଲେ ଓ ମଧ୍ୟ ଖରାଦିନେ ଲୋକଙ୍କର ଗଡ଼ାପୁଡ଼ା ବାଡ଼ରେ ଅଗ୍ନି ଜାଳିଲେ ସମସ୍ତଙ୍କୁ କ୍ଲେଶକର ହେଉଥିବ ସନ୍ଦେହ ନାହିଁ । ଯାହା ହେଉ ସାହେବ ପ୍ରଶଂସିତ ବୈରାଗୀ ମାନଙ୍କୁ ତଡ଼ିଦେବାରୁ ବୈଷ୍ଣବ ଧର୍ମଧାତୁର ଲୋକମାନେ ବଡ଼ ବିରକ୍ତ ହୋଇଅଛନ୍ତି ଓ ଏ କାର୍ଯ୍ୟକୁ ଘୋର ଅନ୍ୟାୟ ମଣୁଅଛନ୍ତି ମାତ୍ର ଆମ୍ଭମାନଙ୍କ ବିବେଚନାରେ ତାହା ନୁହଇ । ଆମ୍ଭେମାନେ ବୋଧକରୁଁ ଏ କାର୍ଯ୍ୟଟି ଭଲ ହୋଇଅଛି ଓ ତାହାର ଚରମ ଫଳ ବୈଷ୍ଣବଙ୍କ ପ୍ରତି ଉପକାରଜନକ ଅଟଇ । ଯେବେ ବମସ ସାହେବ ଘରଭଙ୍ଗାଇ ଓ ସେଠାରେ ବିରାଜମାନ ଥିବା ହନୁମାନ ପ୍ରଭୃତି ଠାକୁରଙ୍କୁ ଉଠାଇ ଦେଇଥାନ୍ତେ ତାହା ହେଲେ ଆମ୍ଭେମାନେ ସୁଦ୍ଧା ସେ କାର୍ଯ୍ୟକୁ ଯଥୋଚିତ ନିନ୍ଦା କରନ୍ତୁ ଏବଂ ତଦ୍ୱାରା କେବଳ ହିନ୍ଦୁ ଧର୍ମ ପ୍ରତି ଅତ୍ୟାଗ୍ରହ ହୁଅନ୍ତା ଏମନ୍ତ ନୁହେ, ଅନେକ ଦରିଦ୍ର ପାନ୍ଥିକ ଯେଉଁମାନେ ଏହି ଆଶ୍ରମ ଓ ତହିଁ ଚତୁଃପାର୍ଶ୍ୱରେ ରାତିକୁ ପଡ଼ିରହି ପ୍ରାତ-କାଳରୁ ବାଟ ଧରନ୍ତି ସେମାନେ ବଡ଼ ହରବରରେ ପଡ଼ନ୍ତେ । ସାହେବ ଘର ଇତ୍ୟାଦି ଉପରେ ହସ୍ତକ୍ଷେପ କରିନାହାନ୍ତି କେବଳ ସେଠାରେ ଯେଉଁ ବୈରାଗୀମାନେ ପଡ଼ି ରହୁଥିଲେ ତାହାଙ୍କୁ ଉଠାଇ ଦେଇଅଛନ୍ତି । ବୈରାଗୀଙ୍କର ପୁଣି ଘର କଣ ? ଯେ-ବ୍ୟକ୍ତି ଧର୍ମ ଲାଗି ସଂସାର ତ୍ୟାଗକରି ଭିକ୍ଷା ଦ୍ୱାରା ଉଦର ପୂରଣ ଓ ତୀର୍ଥ ସ୍ଥାନମାନ ପର୍ଯ୍ୟଟନ କରିବାରେ ଆପଣାକୁ ନିଯୁକ୍ତ କଲା ସେ ପୁଣି କାହିଁକି ଜନପୂର୍ଣ୍ଣ ସ୍ଥାନରେ ଅନେକ ଦିନ ପଡ଼ି ରହିବ ।

× × ×

ଯେଉଁମାନେ ବମସ ସାହେବଙ୍କ କାର୍ଯ୍ୟରେ ବିରକ୍ତ ହୋଇଅଛନ୍ତି ତାହାଙ୍କୁ ଆମ୍ଭେମାନେ ଏହି ପରାମର୍ଶ ଦେଉଅଛୁଁ ଯେ ଉକ୍ତ ଆଶ୍ରମରେ ଜଣେ ପୂଜାହାରି ନିଯୁକ୍ତ କରି ଦରିଦ୍ର ପଥିକଙ୍କୁ ନିତ୍ୟ ସନ୍ଧ୍ୟା ସମୟରେ ଶାକ-ଅନ୍ନ ଦାନର ଉପାୟ କରିଦେଲେ ଧର୍ମ ପ୍ରବୃତ୍ତି ଚରିତାର୍ଥ ହେବ ଅଥଚ ତାହାଙ୍କ ଦ୍ୱାରା କୌଣସି ଯୋଗୀର ଯୋଗ ଭଙ୍ଗ ହେବନାହିଁ ।

୩୩୯ । ସାପ୍ତାହିକ ସମ୍ବାଦ ।

ଏ ନଗର ଖାସମହାଲ କମିସରୁ ଜରିବ ହେଉଅଛି । ଶୁଣାଯାଏ ଯେ ଏଥିର ନୂତନ ବନ୍ଦୋବସ୍ତ ହୋଇ ଅନେକ ଖଜଣା ବୃଦ୍ଧି ହେବ ।

## ( ୯ମ ଭାଗ, ୨୫ । ୪ । ୧୮୭୪, ସଂଖ୍ୟା ୧୭ )

୩୪୦ । ବିଜ୍ଞାପନ

ଗୃଣକ୍ୟଶତକ ଅର୍ଥ ସହିତ ମୁଦ୍ରିତ ହୋଇଅଛି । ମୂଲ୍ୟ ୧୦/ ଡାକ-ମାସୁଲ ୦/ । ପ୍ରିଣ୍ଟିଂ କମ୍ପାନି ଯନ୍ତ୍ରାଳୟ, ଉତ୍କଳସୁବୁଦ୍ଧ ଅଫିସ, ଖୋରଧା ଇଂରେଜୀ ସ୍କୁଲ ହେଡ଼ମାଷ୍ଟରଙ୍କ ସମିପରେ ଓ ସମ୍ବଲପୁର ନର୍ମାଲ ସ୍କୁଲ ପ୍ରଧାନ ଶିକ୍ଷକଙ୍କ ନିକଟରେ ପ୍ରାପ୍ତବ୍ୟ ।

୨୯ । ୪ । ୧୮୭୪ ଶ୍ରୀ ଗୋବିନ୍ଦ ରଥ ଶର୍ମା

## ( ୯ମ ଭାଗ, ୧୭ । ୫ । ୧୮୭୪, ସଂଖ୍ୟା ୨୦ )

୩୪୧ । ବାବୁ ବନମାଳୀ ସିଂହ ଅନୁଗୁଳର ତହସିଲଦାର ହୋଇଅଛନ୍ତି ଏବଂ ଏ କଥା ଶୁଣି ଏଠା ଲୋକେ ଚମତ୍କୃତ ହୋଇଅଛନ୍ତି । ଏରୂପ ହେବାର କାରଣ ଏହା ନୁହଇ ଯେ ବାବୁ ଉକ୍ତ କର୍ମର ଉପଯୁକ୍ତ ନୁହନ୍ତି . ବାସ୍ତବରେ ଆମ୍ଭେମାନେ ପୂର୍ବରୁ କହିଅଛୁଁ ଓ ବର୍ତ୍ତମାନ ସୁଦ୍ଧା କହୁଅଛୁଁ ଯେ ବନମାଳୀ ବାବୁଙ୍କୁ ନିଯୁକ୍ତ କରିବାର କମିଶ୍ନର ସାହେବଙ୍କ କାର୍ଯ୍ୟ ସମସ୍ତଙ୍କ ଠାରେ ପ୍ରଶଂସନୀୟ ହୋଇଅଛି ଓ ଏଥିର ବଳ-କର ଭଲ ବନ୍ଦୋବସ୍ତ କରିବାର ସମ୍ଭବ ନ ଥିଲା କିନ୍ତୁ ଏଠା ସବସାଧାରଣ ଏମନ୍ତ ବିଶ୍ୱାସ କରିଥିଲେ ଯେ ଢେଙ୍କାନାଳର ମହାରାଜା ଉକ୍ତ ବାବୁଙ୍କୁ ସରକାରୀ କର୍ମରୁ ଛଡ଼ାଇନେଇ ରଖିଥିବାରୁ ପୁନଶ୍ଚ ସରକାରୀ କର୍ମରେ ଯିବାପାଇଁ ଛଡ଼ ଦେବେନାହିଁ କିମ୍ବା ବାବୁ ମଧ୍ୟ ତହିଁରେ ମନ ବଳାଇବେ ନାହିଁ । ତହିଁର ବିପରୀତ ଘଟନା ମହାରାଜାଙ୍କ ପକ୍ଷରେ ଅବଶ୍ୟ ଊଣା ବୋଲିବାକୁ ହେବ । ଢେଙ୍କାନାଳ ମହାରାଜାଙ୍କର ନାନାବିଷୟରେ ଯେଉଁପରି ସୁନାମର ସୁଖ୍ୟାତି ହୋଇଆସୁଅଛି ତଦ୍ଦୃଷ୍ଟିରେ ତାହାଙ୍କର କୌଣସି କାର୍ଯ୍ୟରେ ସହସା ଦୋଷାରୋପ କରିବା ନିତାନ୍ତ ଅବିବେଚକତା । ବିଶେଷରେ ବର୍ତ୍ତମାନ ଘଟନା ସମ୍ପର୍କୀୟ ସକଳ କଥା ପ୍ରକାଶ ପାଇନାହିଁ ମାତ୍ର କେତେକ ଲୋକ ଏରୂପ ବୋଲିବାର ଶୁଣାଯାଏ ଯେ ଓଡ଼ିଶାର ରାଜା ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନେ କେତେତେ ଉନ୍ନତ କି ଲଭନ୍ତୁ ଅବଧି ସେମାନଙ୍କ ମଧ୍ୟରେ କେହି ଏମନ୍ତ ଅବସ୍ଥାକୁ ପ୍ରାପ୍ତ

ହୋଇନାହାନ୍ତି ଯେ ଗବର୍ଣ୍ଣମେଣ୍ଟଙ୍କ ପର ଦୀର୍ଘକାଳ ପର୍ଯ୍ୟନ୍ତ ଅଧୀନସ୍ଥ କର୍ମଗ୍ରାହୀମାନେ ତାହାଙ୍କ ଉପରେ ନିର୍ଭର ରଖିବାକୁ କ୍ଷମ ହେବେ ଅଥବା ସୁଶିକ୍ଷିତ ଲୋକଙ୍କ ନିବାହ ହେବାଭଳି ଏମାନଙ୍କ ଦରବାରର ଅବସ୍ଥା ହୋଇନାହିଁ ।

୩୯୨ ।

## ସାପ୍ତାହିକ ସମ୍ବାଦ ।

ଯାଜପୁର ସ୍କୁଲର ହେଡମାଷ୍ଟର ବାବୁ ମଧୁସୂଦନ ରାଓ ବଦଳି ହେଲା ଦିନୁ ସେ ବିଦ୍ୟାଳୟର କାର୍ଯ୍ୟ ବାମାଡ଼ୁଲ ହୋଇଅଛି । ଶିକ୍ଷାକାର୍ଯ୍ୟ ଉତ୍ତମ ରୂପେ ନ ଚଳିବାରୁ ବାଳକମାନେ ବେତନ ଓ ଗୃହାଦାତାମାନେ ଗୃହା ଦେବାରେ ପରାଂମୁଖ ହୋଇଅଛନ୍ତି । କେତେକ ଦିନ ହେଲା ସେମାନେ ବର୍ତ୍ତମାନର ହେଡମାଷ୍ଟର ବନମାଳୀ ମହାଶୟଙ୍କ ନାମରେ ଶିକ୍ଷା କାର୍ଯ୍ୟରେ ତ୍ରୁଟି କରିବା ଦୋଷରେ ଏଜର ସାହେବଙ୍କ ନିକଟରେ ଆବେଦନ କରିବାରୁ ସାହେବ ପ୍ରଶଂସିତ ତାଙ୍କୁ କାର୍ଯ୍ୟଚ୍ୟୁତ କରିବାର ଆଜ୍ଞା ଦେଇଅଛନ୍ତି, ଜଣେ ଉପଯୁକ୍ତ ଲୋକ ପ୍ରାପ୍ତହେଲେ ନିଯୁକ୍ତ ହେବ ଓ ସେପର୍ଯ୍ୟନ୍ତ ବନମାଳୀ ମହାଶୟ କର୍ମ କରୁଥିବେ । ଶୁଣାଯାଏ ଯେ ସେ ଆଉ ଛ ମାସ ରହି ପାରିବେ ।

୩୪୩ ।

## ପ୍ରେରିତ ପତ୍ର

ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ ମହାଶୟ ସମୀପେଷୁ,

ସବିନୟ ନିବେଦନମିଦଂ

ଏହିପେ ପୂର୍ବେ ଓଡ଼ିଆଭାଷା ଉଠିଦେଇ ବଙ୍ଗଭାଷା ଏ ଦେଶରେ ଚଳାଇବା ନିମିତ୍ତ ବଙ୍ଗୀୟମାନେ ଯେପରି ଯତ୍ନଶୀଳ ଥିଲେ ତାହା ଆପଣଙ୍କୁ ଅବିଦିତ ନାହିଁ ଦେଖିଲୁ ଆପଣ ଏହି ଓଡ଼ିଆମାନଙ୍କ ମାତୃଭାଷାକୁ ରକ୍ଷା କରିବା କାରଣ ପ୍ରତିବାଦ ସ୍ୱରୂପେ କଟେରୀରେ ଦଣ୍ଡାୟମାନ ହୋଇଥିଲେ । କେବଳ ସ୍ଥାନୀୟ କର୍ମଗ୍ରାହୀ ଏବଂ ଭୂତପୂର୍ବ ଲେଫ୍‌ଟେନାଣ୍ଟ ଗବର୍ଣ୍ଣର ଶ୍ରୀଯୁକ୍ତ କାମ୍ପେଲ ସାହେବ ମହୋଦୟଙ୍କ ଅନୁଗ୍ରହରେ ବଙ୍ଗୀୟମାନେ ତହିଁର ନିରସ୍ତ ହୋଇ ବିଷର୍ଣ୍ଣ ବଦନରେ ମୂକତାବଲମ୍ବନ କରିଥିଲେ । ଏବେ କେତେଦିନ ହେଲା ଉକ୍ତ ସାହେବ ମହୋଦୟ ଭାରତବର୍ଷ ପରିତ୍ୟାଗ କରିବାର ବଙ୍ଗୀୟମାନେ ଉକ୍ତ ବିଷୟରେ ପୁନରୁତ୍ତେଜିତହୋଇ ବର୍ତ୍ତମାନରେ ଏକ ରଚନା କରି ଅଛନ୍ତି ଯେ ଶ୍ରୀଯୁକ୍ତ ଡାଇରେକ୍ଟର ସାହେବ ଏ ଓଡ଼ିଶାରେ ବଙ୍ଗଭାଷା ଚଳାଇବା ନିମିତ୍ତ ଏ ପ୍ରଦେଶକୁ ଶୁଭାଗମନ କରିଅଛନ୍ତି । ଆଉମଧ୍ୟ ଏକ ବିଷୟ ଏହିପେ ବଙ୍ଗୀୟ-ସହଚରର ପତ୍ରିକାରେ ଓଡ଼ିଶାରେ ବଙ୍ଗଭାଷା ଚଳାଇବା ନିମିତ୍ତ ଜଣ ପ୍ରସ୍ତାବ ପ୍ରକାଶିତ

ଥିବାର ପ୍ରକାଶ କରୁ ଅବଗତ୍ୟ କର୍ମକାରକ ବଙ୍ଗୀୟମାନଙ୍କ ମଧ୍ୟରୁ କେତେକ ବ୍ୟକ୍ତି ଯତ୍ପରୋନାସ୍ତି ଆନନ୍ଦିତ ଅଛନ୍ତି। ଯେଉଁମାନେ ଏ ଦେଶର ମାତୃଭାଷା ଉଠିଯିବାର ସମ୍ବାଦ ଶୁଣିବାମାତ୍ରେ ପରମାହ୍ଲାଦିତ ହୋଇଅଛନ୍ତି ସେମାନେ ଅବା ଏଦେଶୀୟ ବ୍ୟକ୍ତିମାନଙ୍କର କି ଉପକାର କରିବେ ଏହା ଅବଶ୍ୟ ସର୍ବସାଧାରଣରେ ପ୍ରକାଶ ପାଉଅଛି। ଏପରି ବୋଧହୁଅଇ ଯେ ଯେବେ ବର୍ତ୍ତମାନର ଅବଗତ୍ୟ କମିଶନର ରେବନଶା ସାହେବ ଓ କଲେକ୍ଟର ବମସ୍ ସାହେବ ଏ ଦୁହିଙ୍କପରି କେହି ଓଡ଼ିଆ ଭାଷାର ସପକ୍ଷ ନଥାନ୍ତେ ତେବେ ଏମାନେ କଦାଚ ଓଡ଼ିଆ ଭାଷାର ନାମ ମାତ୍ର ରଖିବାରେ ସନ୍ଦେହ ହୋଇଥାନ୍ତା। ଇତ୍ୟାଦି କାରଣମାନଙ୍କରେ କ୍ଷାନ୍ତିରଶ୍ମି ଅବଗତ୍ୟ କର୍ତ୍ତୃପକ୍ଷମାନେ ଯେପରି ଓଡ଼ିଆ ଭାଷାର ବିପକ୍ଷମାନେ ଦୂରୀଭୂତ ହୋଇ ଏତଦ୍ଦେଶର ଏବଂ ଏ ଦେଶୀୟମାନଙ୍କର ଉନ୍ନତି ହୁଅଇ ତହିଁପ୍ରତି ଶ୍ରୀକ୍ଷିରଶି ଅବଗତ୍ୟ ସର୍ବସାଧାରଣଙ୍କର ଚିର ସ୍ମରଣୀୟ ହେଉନ୍ତୁ। ଇତି

୧୩।୫।୭୪ କେହି ଜଣେ ଓଡ଼ିଆ।

ଡାଇରେକ୍ଟର ସାହେବ ପୂର୍ବେ ଉତ୍କଳ ଭାଷାର ବିରୋଧୀ ହୋଇ ଥିଲେ ସତ୍ୟ କିନ୍ତୁ ବର୍ତ୍ତମାନ ଏହି କାର୍ଯ୍ୟ ସାଧନ ନିମିତ୍ତ ଏଠାକୁ ଆସି ଅଛନ୍ତି ଏମନ୍ତ ବିଶ୍ୱାସ କରିବାର କୌଣସି କାରଣ ନାହିଁ ଓ ଯେତେବେଳେ ସ୍ଥାନୀୟ କର୍ମଚାରୀମାନେ ଉତ୍କଳ ଭାଷାର ଅନୁକୂଳରେ ଅଛନ୍ତି ତେତେବେଳେ ପତ୍ରପ୍ରେରକଙ୍କର ଚିନ୍ତିତ ହେବାର ପ୍ରୟୋଜନ ନାହିଁ।

ଉ: ଦୀ: ସ:।

## ( ୯ମ ଭାଗ, ୬।୬।୧୮୭୪, ସଂଖ୍ୟା ୨୩ )

୩୦୪। ଲବଣ କର ଆଦାୟର ସମ୍ବନ୍ଧ ଯେଉଁ ନୂତନ ବିଧି ହୋଇଅଛି ତହିଁ ସମ୍ପର୍କରେ କେତେକ କଥା ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଅଧୀନ ଗଞ୍ଜାମ କଲେକ୍ଟରଙ୍କ ସହିତ ବନ୍ଦୋବସ୍ତ କରିବାର ପ୍ରୟୋଜନ ହେବାରୁ ସ୍ୱୟଂ କମିଶନର ସାହେବ ଅନତିବିଳମ୍ବରେ ସେଠାକୁ ଯିବେ। କଟକରୀତିର ଭାର କଲେକ୍ଟର ସାହେବ ଗ୍ରହଣ କରିବେ। କମିଶନର ସାହେବଙ୍କ ଇଚ୍ଛା ଯେ ଓଡ଼ିଶାରେ ଉତ୍ପନ୍ନହେବା ଲବଣ ଓଡ଼ିଶାରେ ଖର୍ଚ୍ଚ ହେଉ ଓ ଗଞ୍ଜାମର ଲବଣ ଏଠାକୁ ନ ଆସୁ ମାତ୍ର ବର୍ତ୍ତମାନ ଯେଉଁ ନିୟମ ହୋଇଅଛି ତଦ୍ଦ୍ୱାରା ତାହା ହେବାର ନୁହଇ ଏବଂ ଆମ୍ଭମାନଙ୍କର ଆନ୍ତରିକ ଭୟ ହେଉଅଛି ଯେ କାଳକ୍ରମେ କଟକ ଜିଲ୍ଲାର ଲୁଣଅପେକ୍ଷା ମୁଗାଙ୍କଲର ଲୁଣ ଅଧିକ ଉତ୍ତମ ହେବ।

୩୪୫ । ଢେଙ୍କାନାଳ

"କଣ୍ଟିତ୍ ଢେଙ୍କାନାଳ ନିବାସୀ" ଇତି ସ୍ୱାକ୍ଷରରେ ଏକ ବ୍ୟକ୍ତି ବାବୁ ବନମାଳୀ ସିଂହ ଢେଙ୍କାନାଳର ଅନୁଗୁଳକୁ ଯିବାର ତଳ ଲିଖିତ କାରଣହିଁ ଲେଖି ଅଛନ୍ତି, ଯଥା —

ଶ୍ରୀ ମହାରାଜା ପ୍ରଜାମାନଙ୍କୁ ପୁତ୍ର ଜ୍ଞାନକରି ସେମାନଙ୍କ ଉନ୍ନତିକ ନିଜ ଉନ୍ନତି ଜ୍ଞାନ କରିବାରୁ ବାବୁ ମହାଶୟଙ୍କୁ ଉକ୍ତ ପଦରୁ ବରଖାସ୍ତ ନକରି କିଛିକାଳ ନିମିତ୍ତ ଅନୁମତି ଦେଇଲେ ଦେଶାନ୍ତର କରି ସ୍ୱୟଂ ପ୍ରଜାଭାର ସ୍ୱର ଗ୍ରହଣ କଲେ ସେ ବୁଦ୍ଧି ମଳ ଶୂନ୍ୟ ହୋଇ ନବ୍ୟନବୋନ୍ମେଷଶାଳିନୀ ହେବ । ଉକ୍ତ ମହାଶୟ ମଧ ବିବେଚନା କଲେ କି ଶ୍ରୀମହାରାଜା ସ୍ୱୟଂ ସ୍ୱଲ୍ପାୟାସରେ ଏ ରାଜ୍ୟ ବୁଝିବାରେ ସକ୍ଷମ ଅତଏବ ଆମ୍ଭେ ଏ ଅବସ୍ଥାରେ ଦେଶାନ୍ତରରେ କାର୍ଯ୍ୟ କରିବାର ଉଚିତ ।

ପତ୍ର ଖଣ୍ଡିକ ଦୀର୍ଘ ଥିବାରୁ ସମ୍ପୂର୍ଣ୍ଣରୂପେ ପ୍ରକାଶ କରି ନପାରିଲୁଁ ମାତ୍ର ସଂକ୍ଷେପରେ ତହିଁରେ ଏହି ଲେଖା ଅଛି ଯେ ଢେଙ୍କାନାଳବାସିଙ୍କର କେତେ ଜନ୍ମର ତପସ୍ୟା ଏକତ୍ରିତ ହୋଇ ମହାରାଜାଙ୍କ ଉପରେ ପରିଣତ ହୋଇ ଫଳପାକକୁ ପ୍ରାପ୍ତ ହୋଇଥିଲା । ତାହାର ଭୋଗକୁ ବାବୁ ମହାଶୟ ଆସିଥିଲେ ମାତ୍ର କିଛି ଛିଦ୍ର ଥିବାରୁ ସେ ଦେଶାନ୍ତର ଗମନ କଲେ । ଗଡ଼ର ଲୋକମାନେ ଏ ଦୁହିଁଙ୍କର ପୁନର୍ମିଳନକୁ ଆଶା କରି ରହିଅଛନ୍ତି । ଆହୁରି ଦୁଃଖର ବିଷୟ ଯେ ବନମାଳୀ ବାବୁଙ୍କ ସଙ୍ଗେ ୨ ଢେଙ୍କାନାଳର ଡାକ୍ତର କଲିକତାକୁ ବଦଳି ହୋଇଅଛନ୍ତି । ଡାକ୍ତରଙ୍କ ଦ୍ୱାରା ଦେଶର କି ଉପକାର ହୁଅଇ ତାହା ଜଣା ନଥିଲା କିନ୍ତୁ ଏହି ଡାକ୍ତର ବାବୁଙ୍କ କାର୍ଯ୍ୟ ଓ ସଦ୍‌ଗୁଣମାନ ଦେଖି ବିଶ୍ୱାସ ହେଲା ଯେ ଅଧିକ ବେତନ ଦେଇ ଉଚ୍ଚ ପଦର ଡାକ୍ତର ନିଯୁକ୍ତ କରିବା ପ୍ରକୃତ ମଙ୍ଗଳକର କାର୍ଯ୍ୟ ଅଟଇ । ମହାରାଜା ଏବଂ ବନମାଳୀ ବାବୁଙ୍କ ପରି ତାହାଙ୍କ ମନ୍ତ୍ରୀ ଓ ଦୀନାନାଥ ମିଶ୍ରଙ୍କ ପରି ବୈଦ୍ୟ ଏରୂପ ତିନିଜଣଙ୍କର ଏକତ୍ର ଯୋଗରେ ଢେଙ୍କାନାଳ ଗଡ଼ବାସିମାନଙ୍କର ଯେ କି ସୌଭାଗ୍ୟ ଉଦୟ ହୋଇଥିଲା ତାହା ବୋଲିବାର ଅଧିକ । ମାତ୍ର ଦୁଃଖର ବିଷୟ ଯେ ଏପରି ସଂଯୋଗ ରହିପାରିଲା ନାହିଁ । ପୁନର୍ବାର ଏପରି ମନ୍ତ୍ରୀ ଓ ବୈଦ୍ୟ ମିଳିବାର ଅତି ସୁଯୋଗର ଫଳ ।

୩୪୬ । ସାପ୍ତାହିକ ସମ୍ବାଦ ।

ଏଥର ନିମ୍ନ ଶ୍ରେଣୀର ଓକାଲତି ପରୀକ୍ଷାରେ ଓଡ଼ିଶାର ତିନିଜଣ କି ତହିଁ ମଧ୍ୟରୁ ଦୁଇଜଣ ଓଡ଼ିଆ ଓ ଜଣେ ବଙ୍ଗବାସୀ ବାବୁ ପାର୍ବତୀ ଚରଣ ଚକ୍ରବର୍ତ୍ତୀ

ଏବଂ ମେଦନୀପୁରର ଦୁଇଜଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଏଠାରେ ପରୀକ୍ଷା ଦେବାକୁ ୯ଜଣ ଉପସ୍ଥିତ ହୋଇଥିଲେ ତହିଁ ମଧ୍ୟରୁ ୫ଜଣ କୃତକାର୍ଯ୍ୟ ହେଲେ ସୁଂର ବିଷୟ ଅଟଇ ।

୩୪୭ । ବିଜ୍ଞାପନ ।

ଆମ୍ଭେ ତାଳପତ୍ର ଲିଖିତ ଓଡ଼ିଆ ଶ୍ରୀମଦ୍ଭାଗବତକୁ କାଗଜରେ ଛପାଇବାର ସଂକଳ୍ପ କରିଅଛୁଁ । ଆଗାମୀ ଆଷାଢ଼ ମାସ ୧ମ ଦିନଠାରୁ ଏପୁସ୍ତକର ୮ପେଜି ଫରମାର ୧୨ ପୃଷ୍ଠା ଲେଖାଏଁ ପକ୍ଷାନ୍ତରେ ବାହାରିବ । ଏହାର ବାର୍ଷିକ ଅଗ୍ରିମ ମୂଲ୍ୟ ଡାକମାସୁଲ ସମେତ ୦ ୩ ଙ୍କା ମାତ୍ର । ଅତଏବ ଯେଉଁମାନେ ଏହାର ଗ୍ରାହକ ହେବାକୁ ଇଚ୍ଛା କରନ୍ତି ସେମାନେ ଅନୁଗ୍ରହ କରି ଆପଣା ୨ର ନାମ ଓ ଠିକଣା ଅବଲମ୍ବରେ ଆମ୍ଭଠାକୁ ଲେଖି ପଠାଇଲେ ଆମ୍ଭେ ସେମାନଙ୍କୁ ଗ୍ରାହକ ଶ୍ରେଣୀଭୁକ୍ତ କରିନେବୁଁ । ସାଧାରଣଙ୍କ ନିକଟରେ ପ୍ରାର୍ଥନା ଏହି ଯେ ଆମ୍ଭେ ଏକାର୍ଯ୍ୟରେ ପ୍ରବୃତ୍ତ ହୋଇଅଛୁଁ ଆଉ କେହି ଏଥିରେ ହସ୍ତକ୍ଷେପ କରିବେ ନାହିଁ ।

ଶ୍ରୀ ଭଗବାନ ଚନ୍ଦ୍ର ଦାସ
ବାଲେଶ୍ୱର

## ( ୯ମ ଭାଗ, ୧୩ । ୬ । ୧୮୭୪, ସଂଖ୍ୟା ୨୪ )

୩୪୮ । ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ହିନ୍ଦୁପେଟ୍ରିଅଟରେ ପାଠକଲୁଁ ଯେ ପୃଥିବୀରେ ସର୍ବାପେକ୍ଷା ଦ୍ରୁତଗାମୀ ବାଷ୍ପୀୟ ଯାହାଜ ଓଡ଼ିଶା ନାଲମାନଙ୍କରେ ଯାତାୟତ କରିବା କାରଣ ଭାରତବର୍ଷକୁ ଆସୁଅଛି । ଏହାର ଦୀର୍ଘ ୮୨ ଫୁଟ ପ୍ରସ୍ଥ ୧୨ଫୁଟ ଏବଂ ୩୩ ଫୁଟ ପାଣିରେ ଗୁଳି ପାରଇ । ପ୍ରତି ଘଣ୍ଟାରେ ଏଯାହାଜ ହାରିହାରି ୨୨ମାଇଲ ବାଟ ଗୁଳଇ କିନ୍ତୁ ଜୁଆର ମୁହଁରେ ୨୫ମାଇଲ ବାଟ ଯିବାର ଦେଖା ଯାଇଅଛି । ନାଲ ମଧ୍ୟରେ ଘଣ୍ଟାରେ ୨୨ମାଇଲ ଯାଇ ପାରିଲେ ସମୁଦ୍ର ବାଟକୁ କିଏ ପଚାରିବ ଓ ଅନ୍ନମାନ ହୁଅଇ ଯେ ଏ ଯାହାଜ ଦ୍ୱାରା କଟକରୁ କଲିକତାକୁ ୧୨ । ୧୪ ଘଣ୍ଟା ମଧ୍ୟରେ ଲୋକେ ଯାଇ ପାରିବେ । ଆମ୍ଭେମାନେ ଭରସାକରୁଁ ଯେ ଏ ଯାହାଜଟି ଶୀଘ୍ର ଏଠାକୁ ଆସୁ କାରଣ ଆପାତତଃ କଲିକତା ପର୍ଯ୍ୟନ୍ତ ନାଲ ବାଟ ହୋଇ ନଥିଲେ ସୁଦ୍ଧା ବଡାଘର ଓ ଚୁନ୍ଦବାଲିକୁ ଚତାୟାତ କରିବାର ଯେ ଅସୁବିଧାମାନ ତାହା ଏ ଯାହାଜଦ୍ୱାରା ନିବାରିତ ହେଲେ ଯଥେଷ୍ଟ ପରିମାଣରେ ଉପକାର ହେବ ।

୩୪୯ । ଏ ନଗରରେ ସତଗ୍ୱଡର ଭଡ଼ା ଗାଡ଼ିର କୋଚମାନମାନେ ଗାଡ଼ିରେ ଆଲୁଅ ନକାଳି ସ୍ୱଚ୍ଛରେ ଗାଡ଼ି ଚଳାଉବାର ଦେଖାଯାଏ । ଯଦ୍ୟପି କି ଏ ସହରରେ

ଗାଡ଼ି ବିସ୍ତର ନଥିବାର ହେତୁରୁ କୌଣସି ଲୋକପ୍ରତି ଦୁର୍ଘଟନା ଘଟିବାର ପ୍ରତ୍ୟକ୍ଷ ହୋଇନାହିଁ ମାତ୍ର ଅନ୍ଧାରରେ ଗାଡ଼ି ଚାଲିବା ସମୟରେ ଚାଲିପିବା ବ୍ୟକ୍ତିଙ୍କର ଯେ ଅନେକ କ୍ଳେଶ ହୁଅଇ ତାହା ସର୍ବଦା ଦେଖାଯାଏ । ଏକେତ ସହରରେ ଆଲୁଅ ନାହିଁ, ଅନ୍ଧାରରେ ଗାଡ଼ି ଶବ୍ଦପାଇଲେ ତାହା କେଉଁ ଦିଗରୁ ଆସୁଅଛି ସହସା ପଥିକ-ମାନେ ଠିକଣା କରି ପାରନ୍ତି ନାହିଁ ସୁତରାଂ ପଥଭିଡ଼ି ଚାଲିବାକୁ ଅଥବା ପଥ ପାର୍ଶ୍ୱରେ ଛିଡ଼ାହୋଇ ରହିବାକୁ ହୁଅଇ । ପୁଲିସ ଆଇନାନୁସାରେ ଏପରି ଗାଡ଼ିବାହକମାନେ ଗିରପ୍ତାର ହେବା ଯୋଗ୍ୟ ଅଟନ୍ତି ମାତ୍ର ପୂର୍ବରୁ ମୋକଦ୍ଦମା ହୋଇନାହିଁ କେବଳ ପୁଲିସ ଏ ଅପରାଧକୁ ଗ୍ରାହ୍ୟ କରନ୍ତି ନାହିଁ । ଶ୍ରୀଯୁକ୍ତ ବିମ୍ସ ସାହେବଙ୍କ ପ୍ରତାପରୁ ପୁଲିସ ବର୍ତ୍ତମାନ ଅନେକ ଏହିପରି ଅନ୍ୟାନ୍ୟ ପୁଲିସ ଆଇନ ଲଙ୍ଘନକାରୀଙ୍କୁ ଗିରପ୍ତାର କରି ଅଛନ୍ତି । ପ୍ରସ୍ତାବିତ ବିଷୟରେ ମଧ୍ୟ ମାଜିଷ୍ଟ୍ରେଟ ତାହାଙ୍କୁ ଆଦେଶ ଦେଲେ ଅନେକ ସାଧାରଣ ଉପକାର ହେବ ବୋଲି ଆମ୍ଭେମାନେ ଏ କଥାପ୍ରତି ତାହାଙ୍କର ଦୃଷ୍ଟି ଆକର୍ଷଣ କରୁଅଛୁଁ ।

୩୬୦ । ସାମ୍ବାଦିକ ସମ୍ବାଦ ।

ଉତ୍କଳ ହିତୈଷିଣୀ ଲେଖନ୍ତି ଯେ ଖୋରଧାର କର୍ମଚାରୀମାନେ ସେ ଏଲକାର ଲଠୀମାନଙ୍କର କାଠ କାଟିନେବା ପାଇଁ ଉଚିତ ପ୍ରତି ଏକଅଣା ଲେଖାଏଁ କର ବସାଇ ଅଛନ୍ତି ଓ ଯେ ବ୍ୟକ୍ତି କାଠ ଆଣିବ ସେ ଖୋରଧାକୁ ପାରି ଛାଡ଼ି ନେବ । ଏଥିରେ ଲୋକଙ୍କର ବିସ୍ତର ଅନର୍ଥକ କ୍ଳେଶ ହେଉଅଛି । ଆମ୍ଭମାନଙ୍କ ବିବେଚନାରେ ସରବରାକାରମାନଙ୍କଦ୍ୱାରା ଏ କର ଆଦାୟ ହେଲେ କାହାରି ଅସୁବିଧା ହେବନାହିଁ ଓ ଏଥିର କୌଣସି ବିଧାନ କରିବା ଉଚିତ ।

୩୬୧ । ବିଜ୍ଞାପନ ।

ଭଗବଦ୍ ଗୀତା ଶ୍ଳୋକ ଓ ଉତ୍କଳ ଅନୁବାଦିତ ପଦ୍ୟ ସହିତ ପ୍ରସ୍ତୁତ ହୋଇଅଛି । ଶୀଘ୍ର ସମ୍ପନ୍ନ ହେବ । ଇତି

୨୮ । ୫ । ୭୪

ନୀଳଗିରି ଶ୍ରୀ ବିପ୍ରହ୍ଲାଦ ଦାସ

ବାଲେଶ୍ୱର ନୀଳଗିରି ସ୍କୁଲର ହେଡମାଷ୍ଟର

## ( ୯ମ ଭାଗ, ୨୦ । ୬ । ୧୮୭୪, ସଂଖ୍ୟା ୨୫ )

୩୬୨ । ଶ୍ରୀଯୁକ୍ତ ବିମ୍ସ ସାହେବ ମାଜିଷ୍ଟ୍ରେଟ ନଗର ସଂସ୍କାର ଓ ସୌନ୍ଦର୍ଯ୍ୟ ବର୍ଦ୍ଧନରେ

ଏମନ୍ତ ତତ୍ପର ଯେ ଏହାଙ୍କଦ୍ୱାରା ଅଳ୍ପ ଦିନରେ ଅନେକ ଉପକାର ଦେଖା ଯାଉଅଛି । ସେ ସ୍ୱୟଂ ନିତ୍ୟ ୨ ନଗରର ନାନା ସ୍ଥଳରେ ଭ୍ରମଣ କରି ଏଥିର ଅବସ୍ଥା ଏମନ୍ତ ସୁନ୍ଦରରୂପେ ଦେଖନ୍ତି ଯେ ଆମ୍ଭେମାନେ ସେରୂପ ଦେଖି କୌଣସି ଛିଦ୍ର ତାହାଙ୍କ ଗୋଚରରେ ଆଣିବାକୁ ନିତାନ୍ତ ସାହସପଣିଆ ମଣୁଅଛୁଁ । ତଥାଚ ଦାୟଗ୍ରସ୍ତ ହୋଇ କହିବାକୁ ହେଉଅଛି ଯେ ସଡ଼କ ପାଖ ନାଳ ସବୁର ସଂସ୍କାର କରିବାରେ ବହୁତ ବିଳମ୍ବ ହେଲା ଓ ତହିଁ ପାଇଁ ବଡ଼ ୨ ସଡ଼କ ଦୁଇପାଖରେ ବର୍ଷା ସମୟରେ ପାଣି ଜମା ହୋଇ ରହୁଅଛି । ଗତ କଥା କଏ ପଚାରେ । ସେସବୁ ବାଟରେ ତ ଆଜିକାଲି ଗତାୟାତ କରିବା ଏକ ପ୍ରକାର ବ୍ୟାୟାମ ଶିକ୍ଷା ଅଟଇ । ବର୍ତ୍ତମାନ ନାଳ ସଂସ୍କାର କାର୍ଯ୍ୟ ଲଗି ଅଛି ସତ୍ୟ କିନ୍ତୁ ଯେଉଁରୂପେ କାର୍ଯ୍ୟ ହେଉଅଛି ଅଧେ ବର୍ଷାକାଳ ଏହିରୂପେ ଭୋଗ ହୋଇଯିବ । ଠିକାଦାର ଉକରସିଅରଙ୍କୁ ଡାକଦେଲେ ବୋଧ ହୁଅଇ ସେ ଅଧିକ ମୂଲିଆ ଲଗାଇ ଅଳ୍ପ କାଳରେ ଏ କାର୍ଯ୍ୟଟି ଶେଷ କରି ଦେବେ । ତାହା ହେଲେ ଅନେକ ଉପକାର ହେବ ।

୩୬୩ ।

## ପ୍ରେରିତପତ୍ର

ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ ମହାଶୟ ସମୀପେଷୁ,

ବିନୟ ପୂର୍ବକ ନିବେଦନ ଏହି ଯେ ଏଠାର କେତେକ ସମ୍ବାଦ ଆପଣଙ୍କ ଜ୍ଞାତାର୍ଥେ ପ୍ରକାଶ କଲି । ପାଠାନ୍ତର ଚିରବାଧିତ କରିବା ହେବେ ।

୧ । ଗତକାଲି ରାତ୍ରିରେ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁ ପୁରାତନ କାୟା ତ୍ୟାଗରେ ନୂତନ କାୟା ଧାରଣ କରିବାରୁ ଦୈତାପତିମାନେ ପୂର୍ବ ନିୟମାନୁସାରେ ତାଙ୍କର ଅଶୌଚ ପାଳନ କରୁଅଛନ୍ତି ।

୨ । ଓଡ଼ିଶାଧିପତି ମହାରାଜାଙ୍କୁ ଏ ଜିଲ୍ଲାର ପ୍ରଧାନ ରାଜକର୍ମଚାରିଙ୍କର ଉପଦେଶାନୁସାରେ ସୁଦେଓ୍ୱାନ ଅପ୍ରାପ୍ତରେ ଆପଣାର ପୁରାତନ ମୁଲ୍ତାର ଅଭିରାମ ଦାସଙ୍କୁ ଖାନସମା ଶିରରେ ନିୟୋଗ କରି ଶାଢ଼ୀ ବାନ୍ଧି ଅଛନ୍ତି ଓ ଦାସ ମହାଶୟ ଆପଣାକୁ ଦେଓ୍ୱାନ ଜ୍ଞାନ କରି ସମସ୍ତଙ୍କଠାରୁ ଯଥାମାନ୍ୟ ନେଉଅଛନ୍ତି କିନ୍ତୁ ମହାରାଜାଙ୍କର ଦରବାର ପୂର୍ବବତ୍ ଅତି ମନ୍ଦ କାରଣ କି ଏ ଜିଲ୍ଲାର ମହାମାନ୍ୟ କଲେକ୍ଟର ସାହେବଙ୍କ କୈଫିୟତ ତଲବୀ ଆଜ୍ଞାମାନ ଛଅମାସରେ ପାଳନ କରିବା ଅତି କଠିନ । ବାରମ୍ବାର ବିନା ତାକିଦରେ ପାଳନ ହୁଏ ନାହିଁ ।

୩ । ଶ୍ରୀଜଗନ୍ନାଥଜୀଉଙ୍କର ଶ୍ରୀମନ୍ଦିର ଓ ତତ୍ ସମ୍ବନ୍ଧୀୟ ବେଢ଼ା ମଧ୍ୟରେ

ବୃହଦାକାର ବୃକ୍ଷମାନ ଏବଂ ପାଦୁକ କୁଣ୍ଡ ଅତି ଅପରିଷ୍କାର ଅଛି । ଦୁଃଖର ବିଷୟ ଏହିପରି ଶ୍ରୀଯୁକ୍ତ ମହାମାନ୍ୟ ମେଜେଷ୍ଟର ସାହେବଙ୍କର ଶ୍ରୀମନ୍ଦିର ମଧ୍ୟରେ ଭ୍ରମଣ କରିବାର ଚଳନନାହିଁ କମ୍ପା ହିନ୍ଦୁ ମତାବଲମ୍ବୀ କ୍ଷମତା ପ୍ରାପ୍ତ ଶ୍ରୀମେଜେଷ୍ଟର ଭ୍ରମଣ ସମୟେ ଦୃଷ୍ଟିପାତ କରନ୍ତି ନାହିଁ ।

୧୫ । ୭ । ୭୪

ମୁଂ ପୁରୀ । ନି । କପିଳ ଚରଣ ବସୁ

୩୫୪ ।

ବିଜ୍ଞାପନ

ଯେବେ ଖୋସ ବନ୍ଦିଦ୍ୱାରା ପୂର୍ବରୁ ହସ୍ତାନ୍ତରିତ ନହୁଅଇ ତେବେ ତଳଲିଖିତ ବଙ୍ଗଳାମାନ ଯେ ଯାହା ସ୍ଥାନରେ ଆଗାମୀ ଜୁଲାଇ ମାସ ତା ୧୧ଖ ଶନିବାର ବେଳ ଘ ୭ । ୮ ଘଣ୍ଟା ସମୟରେ ନିମ୍ନ ସ୍ୱାକ୍ଷରକାରଙ୍କ ଦ୍ୱାରା ଡ଼ାକ ନିଲମରେ ବିକ୍ରୟ ହେବ । ଉକ୍ତ ବଙ୍ଗଳାମାନ ମୃତ ହାଓ୍ୟାର୍ଡ ସାହେବଙ୍କ ସମ୍ପତ୍ତି ଅଟଇ ଓ ଏ ସମ୍ପର୍କରେ ଯାହାଙ୍କର ଯାହା ଜାଣିବାର ଇଚ୍ଛା ହେବ ଅଗ୍ରିଗୁଡ଼ ଓ ଟୋଜା ସାହେବଙ୍କଠାରେ ତଦ୍ଦକଲେ ଜାଣିପାରିବେ ।

| | |
|---|---|
| ପଲଟନ ମଧ୍ୟରେ ବଙ୍ଗଳା | ଟେ। ୨ ଟା |
| ତୁଳସୀ ପୁରରେ ବଙ୍ଗଳା | ଟେ। ୧ ଟା |

କଟକ — ସ୍ୱାକ୍ଷର

ଲେଟନ କୋଠି ନ ୨୭ ମ୍ବର — ସି, ଜେ ମାନଲ୍

ତା ୧୫ଉଖ ଜୁନ ସନ ୧୮୭୪ — ଏନ, ଲେବାର

## ( ୯ମ ଭାଗ, ୨୨ । ୭ । ୧୮୭୪, ସଂଖ୍ୟା ୨୭ )

୩୫୫ । ପୁରୀ ମହାରାଜାଙ୍କର ଯେଉଁ ଘୋଷଣାପତ୍ରର ଉଲ୍ଲେଖ ଗତ ସପ୍ତାହରେ କରିଥିଲୁଁ ଅଦ୍ୟ ତାହା ପ୍ରକାଶିତ ହେଲା । ଘୋଷଣାପତ୍ରରୁ ଦେଖାଯିବ ଯେ ତାହା ସଭାରେ ଧାର୍ଯ୍ୟ ହୋଇଅଛି । ପୁରୀ ମହାରାଜାଙ୍କର କି ସଭା ଅଛି ଓ ସଭାର ନିୟମାନୁସାରେ କି ସବୁ କାର୍ଯ୍ୟ ଚଳିବ ଏପରି ପ୍ରଶ୍ନମାନ ଉଦୟ ହୋଇପାରେ । ବାସ୍ତବରେ ଏରୂପ ହେଲେତ ସୁଖକର ଅଟଇ କିନ୍ତୁ ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ପ୍ରକାଶିତ ନିୟମମାନ ଧାର୍ଯ୍ୟ ହେବା ସଭାର ସଭ୍ୟମାନେ ଶ୍ରୀଯୁକ୍ତ ବାବୁ ହରେକୃଷ୍ଣ ଦାସ ଅଶିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ, ବାବୁ ଶିବ ପ୍ରସାଦ ସିଂହ ମୁନସଫ, ବାବୁ ନନ୍ଦକିଶୋର ଦାସ ଡେପୁଟୀ କଲେକ୍ଟର, ମହନ୍ତ ନାରାୟଣ ଦାସ, ମହନ୍ତ ରାମକୃଷ୍ଣ ଦାସ ଏବଂ ବାବୁ

ଶଚୀଦାନନ୍ଦ ଦାସ ସିରସ୍ତାଦାର ଥିଲେ ଏବଂ କମିଶନର ସାହେବଙ୍କ ଉପଦେଶାନୁଯାରେ ତାହା ହୋଇଥିଲା ସୁତରାଂ ମହାରାଜା ସଭାର ପରାମର୍ଶରେ ସବୁକାର୍ଯ୍ୟ କରିବାକୁ ସମ୍ମତ ହୋଇଅଛନ୍ତି କି ନାହିଁ ତାହା ବୋଲିପାରି ନପାରେ ଓ ସଭାଟି ସବୁ ସମୟ କମିଟି ବସିଅଛି କମ୍ବା ଉକ୍ତ ବିଶେଷ କାର୍ଯ୍ୟ ସକାଶେ ଅଧିଷ୍ଠିତ ହୋଇଥିଲା ତାହା ମଧ୍ୟ ପ୍ରକାଶ ନାହିଁ । ତଥାଚ ମହାରାଜା ଯେ ସଭାର ମତ ଘେନି ଗୋଟିଏ କାର୍ଯ୍ୟ ସୁଦ୍ଧା କରିବାକୁ ଦୃଢ଼କଳ୍ପ ହୋଇଅଛନ୍ତି ଏ ସାମାନ୍ୟ ସୁଖ ଓ ପ୍ରଶଂସାର ବିଷୟ ନୁହଇ । ×

× × ×

ତଥାପି ପୁରୀ ରାଜଦରବାରର ଯେ କିଛି ଦୁର୍ବ୍ୟବହାର କଥା ଶୁଣାଯାଏ ଯେବେ ମହାରାଜା ଉପରଲିଖିତ ସମ୍ଭ୍ରାନ୍ତ ଓ ଗୁଣଶାଳୀ ବ୍ୟକ୍ତିଙ୍କ ସଭାର ପରାମର୍ଶାନୁସାରେ କର୍ମଚାରୀମାନ ନିଯୋଗ ଏବଂ ଯେଉଁ ନିୟମରେ ଯେଉଁ କର୍ମଚାରୀକୁ ଚାଲିବାକୁ ହେବ ଏବଂ ତାହାର କାର୍ଯ୍ୟର ଭଲମନ୍ଦ ବିଚାର ହୋଇପାରିବ ଏଥିର ନିୟମାବଳୀ ପ୍ରସ୍ତୁତକରି ସେ ନିୟମସବୁକୁ ବିନା ଆଳସ୍ୟ ଓ ବିନା ଅପେକ୍ଷାରେ ଦୃଢ଼ରୂପେ ପ୍ରତିପାଳନ କରନ୍ତି ତାହା ହେଲେ ରାଜଦରବାର ଉତ୍କୃଷ୍ଟ ଅବସ୍ଥାକୁ ଲଭିବ ସନ୍ଦେହ ନାହିଁ ଏବଂ ନିୟମ ପ୍ରତିପାଳନ କରିବାର ଅଭ୍ୟାସ ମହାରାଜାଙ୍କର ହେଲେ ଆଉ କୌଣସି ଅସୁବିଧା ଦେଖାଯିବ ନାହିଁ । ଏଥିପାଇଁ ଆମ୍ଭେମାନେ ମହାରାଜାଙ୍କୁ ବିଶେଷରୂପେ ଅନୁରୋଧ କରୁଅଛୁଁ କି ଯେମନ୍ତ ଏକ ବିଷୟରେ ସଭାର ମତ ନେଇ କାର୍ଯ୍ୟ କରିବାକୁ ତତ୍ପର ହୋଇଅଛନ୍ତି ତେମନ୍ତ ଅନ୍ୟାନ୍ୟ ବିଷୟରେ ମଧ୍ୟ ସଭାର ସାହାଯ୍ୟ ନେଉନ୍ତୁ । ବିଶେଷରେ ମହାରାଜାଙ୍କର ବୟସ ଅତ୍ୟନ୍ତ ଅଳ୍ପ, ବିଷୟ କାର୍ଯ୍ୟରେ ସ୍ୱୟଂ ପାରଦର୍ଶିତା ଲାଭ କରିନାହାନ୍ତି ଓ ତେମନ୍ତ ପୁରାତନ କର୍ମଚାରୀ କେହି ନାହିଁ କି ଯାହାଠାରେ ବିଶ୍ୱାସ ରଖି କିମ୍ବା ଯାହାର ପରାମର୍ଶ ନେଇ କର୍ମ କରିବେ । ଏପରି ସ୍ଥଳେ ସଭାର ସାହାଯ୍ୟ ନେବା ନିତାନ୍ତ ପ୍ରୟୋଜନୀୟ ଜଣାପାଏ ।

× × ×

୩୫୭ ।

ସାପ୍ତାହିକ ସଂବାଦ

ଯାଜପୁରଠାରେ ମୋଟେ ଗୃହଳ ଠିକାକୁ ସେ ୨୫ର ହୋଇଅଛି କିନ୍ତୁ ଲବଣର ମୂଲ୍ୟ ଅଧିକ ଓ ଲୁଣର ଦର ଦୁର୍ବସ୍ତାକୁ ଦେଇଅଛି ଅର୍ଥାତ୍ ମହଣ ୨।୫ଙ୍କା । ଓ ସେର ୨।୦ ଲେଖାଏ ଅଛି ।

୩୫୮ ।

ଭଜନ ହରିବୈଷ୍ଣବୀ ବୋଲନ୍ତି ଯେ ପୁରାଣ ନୂତନ ଚନ୍ଦାଳୟରେ

କାର୍ଯ୍ୟାରମ୍ଭ ହୋଇଲାଣି । ଏହା କୁଶ୍ୟାଇଟବେଣ୍ଟ ସାହା ରାମଚଣ୍ଡୀଙ୍କ ନିକଟରେ ଅଛି ଓ ବାବୁ ରାମଗୋପାଲ ଚୌଧୁରୀ ଏହାର ଅଧିକାରୀ ଅଟନ୍ତି । ଜଗନ୍ନାଥ ପତ୍ରିକା ନାମରେ ଖଣ୍ଡିଏ ସାପ୍ତାହିକ ସମ୍ବାଦପତ୍ର ବାହାରିବ ।

## ( ୯ମ ଭାଗ, ୪ । ୭ । ୧୮୭୪, ସଂଖ୍ୟା ୨୭ )

୩୬୮ । ସାପ୍ତାହିକ ସମ୍ବାଦ ।

ଗତକାଲି କଟକ ହାଇସ୍କୁଲର ଛାତ୍ରମାନଙ୍କୁ ବାର୍ଷିକ ପାରିତୋଷିକ ଦାନ ଉପଲକ୍ଷରେ ଯେଉଁ ସଭା ହୋଇଥିଲା ତହିଁପାଇଁ ଏ ନଗରର ଅନେକ ଭଦ୍ରଲୋକଙ୍କୁ ନିମନ୍ତ୍ରଣ ହୋଇଥିଲେ ସୁଦ୍ଧା କେବଳ ଜ ୫ ଣ ଇଂରାଜ ଓ ଶିକ୍ଷାବିଭାଗର କର୍ମଚାରୀ ଛଡ଼ା ଜ ୬ ଣ ଦେଶୀୟ ଲୋକ ଉପସ୍ଥିତ ହୋଇଥିଲେ । ସଭାର କାର୍ଯ୍ୟ ନିୟମିତ ରୂପେ ନିର୍ବାହ ହେଲା । ସଭାନ୍ତେ ରେଭେନ୍‌ସା ସାହେବ ଓ ବାବୁ କାଳିପଦ ବାନାର୍ଜୀ ବକ୍ତୃତା କରିଥିଲେ ।

## ( ୯ମ ଭାଗ, ୧୧ । ୭ । ୧୮୭୪, ସଂଖ୍ୟା ୨୮ )

୩୬୯ । ଉତ୍କଳ ଭାଷୋଦ୍ଧିପିନୀ ସଭା ।

ଗତ ସୋମବାର ରାତ୍ରରେ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଯନ୍ତ୍ରାଳୟରେ ଉତ୍କଳ ଭାଷୋଦ୍ଧିପିନୀ ସଭାର ପ୍ରଥମାଧିବେଶନ ହୋଇଥିଲା । ନଗରର ଦେଶୀୟ ବିଦେଶୀୟ ଅନେକ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ ହୋଇଥିବା ପ୍ରତ୍ୟେକେ କେବଳ ଜ୭ । ୮ଣ ଉପସ୍ଥିତ ହୋଇଥିଲେ । ଆଲସ୍ୟ ହେତୁରୁ ଅବା ତୁଚ୍ଛଜ୍ଞାନ କରି ଏମାନେ ଆସିଲେ ନାହିଁ ବୋଲିପାରୁ ନପାରେ କିନ୍ତୁ ଯେ କୌଣସି କାରଣରୁ ହେଉ ଏହାକୁ ଅବଶ୍ୟ ନିନ୍ଦନୀୟ ବୋଲିବାକୁ ହେବ ଏବଂ ଏକା ଏହି ସଭାରେ ନୁହଇ ଅନେକ ସଭାରେ ଏହିପରି ଦେଖାଯାଉଅଛି ଓ ପୁନଃ ୨ ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ଏ ରୀତି ବିରୁଦ୍ଧରେ ଲେଖିଅଛୁଁ । ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ମଧ୍ୟରୁ କେବଳ ବାବୁ କାଳିପଦ ବନ୍ଦୋପାଧ୍ୟାୟ ପତ୍ର ଦ୍ୱାରା ଏବଂ ବାବୁ ବିଚିତ୍ରାନନ୍ଦ ଦାସ ଓ ବାବୁ ସୁଦର୍ଶନ ଦାସ ମୌଖିକ ସମ୍ବାଦ ପଠାଇଥିଲେ; ଅନ୍ୟ ଲୋକଙ୍କର କଥା କିଛି ଶୁଣାନାହିଁ । ଯାହା ହେଉ ବାବୁ ହରିକୃଷ୍ଣ ଦାସ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ମହାଶୟ ସଭାକୁ ଆଗମନ କରିବାରୁ ତାହାଙ୍କୁ ସଭାପତି ପଦରେ ବରଣ କରାଯାଇ ସଭାର କାର୍ଯ୍ୟାରମ୍ଭ ହେଲା ଓ ସମ୍ପାଦକ ମହାଶୟ ବାର୍ଷିକ ବିଜ୍ଞାପନୀ ପାଠକଲେ । ତହିଁରୁ ପ୍ରକାଶ ହେଲା ଯେ ବିଦ୍ୟା-ଳୟର ପଣ୍ଡିତ ଓ ଛାତ୍ରମାନେ ଏଥିର ସଭ୍ୟ ଅଟନ୍ତି ଓ ସଭ୍ୟ ସଂଖ୍ୟା ପ୍ରାୟ ଜ୬୦ଣ

ଓ ତନ୍ମଧ୍ୟରୁ ପ୍ରାୟ ଚାଳିଶଜଣ ପ୍ରତି ସଭାରେ ଉପସ୍ଥିତ ହୋଇଥିଲେ । ଏହା ଅତି ଆନନ୍ଦର ବିଷୟ ଅଟଇ କାରଣ ଅନ୍ୟ କୌଣସି ସଭାରେ ଏରୂପ ନିୟମିତ ଉପସ୍ଥିତ ଦେଖାଯାଇ ନାହିଁ । ସପ୍ତାହରେ ଏକଥର ସଭାର ଅଧିବେଶନ ହେବାର ନିୟମ ଓ ଗତ ବର୍ଷରେ ୪୨ ଅଧିବେଶନ ହୋଇଥିଲା ଏହା ମଧ୍ୟ ସୁଖକର ଅଟଇ । ଆଉ ଯେ ସବୁ ରଚନା ଓ ବକ୍ତୃତାମାନ ସଭାରେ ଆଗତ ହୋଇଥିଲା ତହିଁର ବିଷୟ ସବୁ ଉତ୍ତମ ଅଟଇ ଓ ତହିଁରୁ ଦେଖାଯାଏ ଯେ ସେ ସବୁର ତର୍କ ବିତର୍କରେ ସଭ୍ୟ ମାନଙ୍କର ଜ୍ଞାନ ଲାଭ ହୋଇଥିବ । ଏ ସଭାଟି ସମ୍ପୂର୍ଣ୍ଣରୂପେ ଆଡ଼ମ୍ବର ଶୂନ୍ୟ ଓ ସଭ୍ୟମାନେ ଆପଣା ଉତ୍କର୍ଷ ସାଧନ ନିମିତ୍ତ ଏହା ସ୍ଥାପନ କରିଥିବାର ଦେଖାଯାଏ । ଯେବେ ଏହି ଭାବରେ ସଭା ଚଳଇ ତେବେ ଏହା ଦ୍ୱାରା ଯେ ଅନେକ ମଙ୍ଗଳର ସମ୍ଭାବନା ତହିଁରେ କିଛି ସନ୍ଦେହ ନାହିଁ । ପରକୁ ଶିକ୍ଷା ଦେବା ପୂର୍ବରୁ ଆମେ ଉପଯୁକ୍ତ ହେବା ଆବଶ୍ୟକ ଓ ଏହି ସଦୁପଦେଶକୁ ଗ୍ରହଣ କରି ସଭ୍ୟମାନେ କାର୍ଯ୍ୟ କରୁଅଛନ୍ତି । ×

× × ×

୩୬୦ ।

ପ୍ରେରିତପତ୍ର

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ ମହାଶୟ, ସମୀପେଷୁ ।

ମହାଶୟ, ଆମ୍ଭମାନଙ୍କ କଲେକ୍ଟର ମେ: ବିମ୍‌ସ୍ ସାହେବଙ୍କର ଦରବାରରେ ଦୁଇଜଣ ଉମେଦୱାର ଖଜାଞ୍ଚି, ଜଣେ ଏକଟିଂ ଖଜାଞ୍ଚି ଉପସ୍ଥିତ ଦେଖି ଆମ୍ଭେମାନେ ଆଶ୍ଚର୍ଯ୍ୟ ହେଉଅଛୁଁ । "ମୃତ୍ୟୁର ପୂର୍ବରୁ ଶ୍ରାଦ୍ଧ", କାର୍ଯ୍ୟକ୍ଷମ ଖଜାଞ୍ଚି ଉପସ୍ଥିତ ଥିବା ପ୍ରତ୍ୟକ୍ଷେ ଏପରି ଘଟନା ହେବାର କାରଣ କଣ ? ଅସଲ ଖଜାଞ୍ଚିଙ୍କୁ ଦୀନବନ୍ଧୁ ବାବୁଙ୍କ ସାମିଲ ଜାଲସାଜି କରି ହେବକି ? ଗବର୍ଣ୍ଣମେଣ୍ଟଙ୍କର ସ୍କନ୍ଧରେ କେତେଗୁଡ଼ିଏ ପେନ୍‌ସିଅନ୍‌ଖୋର ଉତ୍ପାଦନ କରିବାକୁ ମେ: ବିମ୍‌ସ କି ଶୁଭାଗମନ କରିଥିଲେ ? ମେ ବିମ୍‌ସ୍‌ଙ୍କ ଏପରି କାର୍ଯ୍ୟରେ ଗବର୍ଣ୍ଣମେଣ୍ଟଙ୍କର ବିଶେଷ ଦୃଷ୍ଟି ରଖିବା ଉଚିତ । × × ×

× × ଯାହା ହେଉ ମେ: ବିମ୍‌ସ୍‌ଙ୍କର ଏମନ୍ତ କାର୍ଯ୍ୟ ପ୍ରଣାଳୀ ସାଧାରଣଙ୍କ ଅପ୍ରିୟ ଏବଂ ଅସନ୍ତୋଷକର ତହିଁରେ କିଛିମାତ୍ର ସଂଶୟ ନାହିଁ ।

ତା ୩୦ ରିଖ ଜୁନ ୧୮୭୪
କଟକ

ଆପଣଙ୍କର ବଶମ୍ବଦ
କସ୍ୟଚିତ୍ ଭୃତ୍ୟ ଭୋଟିନଃ

୩୬୧ ।

ବିଜ୍ଞାପନ

ବୈଦେହୀଶ ବିଳାସ ନାମକ ପ୍ରସିଦ୍ଧ ଗ୍ରନ୍ଥ ଟୀକା ସହିତ ମୁଦ୍ରାଙ୍କନ ନିମିତ୍ତ ପ୍ରସ୍ତୁତ ଅଛି । ଶୀଘ୍ର ଯନ୍ତ୍ରାରୂଢ଼ ହେବ । ପୁସ୍ତକ ଟୀକା ସହିତ ୪୦୦ ପୃଷ୍ଠାର

ଉର୍ଦ୍ଧ ହେବ ଓ ମୁଦ୍ରାଙ୍କନର ବ୍ୟୟ ମଧ୍ୟ ବହୁତ ପଡ଼ିବ । ଏଯୋଗୁଁ ମା ୩ ସ ଅନ୍ତର ଏ ପୁସ୍ତକର ଏକ ଏକ ଭାଗ ବାହାର କରି ଛଅ ଭାଗରେ ଏକବର୍ଷ ମଧ୍ୟରେ ଅଥବା ତହିଁରୁ ଉତ୍ତାରୁ ଯେତେ ଶୀଘ୍ର ହୋଇପାରେ ସମ୍ପୂର୍ଣ୍ଣ କରିବାକୁ ସ୍ଥିର କରିଅଛୁଁ । ଯେଉଁମାନେ ବର୍ତ୍ତମାନ ଗ୍ରାହକ ହେବେ ସେମାନଙ୍କୁ ପ୍ରତ୍ୟେକ ଖଣ୍ଡ ୧୦ୟ ମୂଲ୍ୟରେ ଦିଆଯିବ ଓ ଅନ୍ୟମାନଙ୍କୁ ପ୍ରତିଖଣ୍ଡ ଟ ୧୵ ଦରରେ ବିକ୍ରୟ ହେବ । ସମ୍ପୂର୍ଣ୍ଣ ପୁସ୍ତକର ମୂଲ୍ୟ ଟ ୫ଟଙ୍କା ହେବ ।

× × ×

ଶ୍ରୀ ଗୌରୀଶଙ୍କର ରାୟ,
ସେକ୍ରେଟେରି

## ( ୯ମ ଭାଗ, ୧୮ । ୭ । ୧୮୭୪, ସଂଖ୍ୟା ୨୯ )

୩୭୨ । ଆମ୍ଭେମାନେ ଗତ ମାସର ଉତ୍କଳ ଦର୍ପଣ ପାଠକରି ଅତ୍ୟନ୍ତ ପ୍ରୀତି ଲାଭ କରିଅଛୁଁ । ଏହାର ରଚନାମାନ ଉତ୍ତରୋତ୍ତର ଭଲ ହେବାର ଦେଖାଯାଏ ଓ ଉତ୍ତମ ବିଷୟମାନ ମଧ୍ୟ ଏଥିରେ ସନ୍ନିବେଶିତ ହୋଇଅଛି କିନ୍ତୁ ଦୁଃଖର ବିଷୟ ଯେ ଏହାର ମୂଲ୍ୟ ବାର୍ଷିକ ଦୁଇଟଙ୍କା ମାତ୍ର ହେଲେହେଁ ଗ୍ରାହକମାନେ ଯଥାକାଳରେ ତାହା ନଦେଇ ଦର୍ପଣର ଅଧିକାରୀଙ୍କର ଉତ୍ସାହ ଭଙ୍ଗ କରୁଅଛନ୍ତି ।

୩୭୩ । ଏଡୁକେଶନ ଗେଜେଟରେ ଜଣେ ପତ୍ରପ୍ରେରକ କହିଅଛନ୍ତି ଯେ ଯେତେବେଳେ ନୂତନ କଳେବର ହୁଅଇ ପ୍ରାୟ ସ୍ନାନ ପାବାର କୃଷ୍ଣ ତ୍ରୟୋ-ଦଶୀଦିନ ନବକଳେବରରେ ବ୍ରହ୍ମ ପଦାର୍ଥ ପ୍ରବେଶ ହୁଅଇ ଓ ପୁରାତନ କଳେବର ଭୂମିସ୍ଥ ହୁଅଇ । ଏହି ସନାତନ ବିଧି ଅଟଇ କିନ୍ତୁ ଏବର୍ଷ ସେଦିନ ନୂତନ କଳେବର ପ୍ରସ୍ତୁତ ହୋଇ ନଥିବାରୁ ତହିଁର ତିନିଦିନ ଉତ୍ତାରୁ ସେହି କାର୍ଯ୍ୟ ନିର୍ବାହ ହୋଇଅଛି । ଏହି ସମୟକୁ ମଳମାସ ପଡ଼ିଥିଲା ସୁତରାଂ କୌଣସି ଶୁଭକାର୍ଯ୍ୟ ତହିଁରେ ହେବାର ଦେଖା ଯାଉନାହିଁ । ଆଉ ନବକଳେବରର ସକାଶେ ଯେଉଁ ଦିନ ଓ କ୍ଷଣ ଧାର୍ଯ୍ୟ ହୋଇ ଥିଲା ସେହି ସମୟରେ ତାହା ନହେବାରୁ ବ୍ରହ୍ମବସ୍ତୁ ପୂର୍ବ ଦେହ ତ୍ୟାଗ ପୂର୍ବକ ଅନ୍ୟ ଦେହ ନପାଇବାରୁ ତାହାଙ୍କର ତିରୋଧାନ ହେଲା କି ନାହିଁ ? ସେରୂପେ ହେଲେ ତାହାଙ୍କର ପୂଜାଦି ଓ ମହାପ୍ରସାଦ କିରୂପେ ହେବ ?

ପତ୍ରପ୍ରେରକ ଏହିରୂପ ତର୍କ କରି ତହିଁର ମୀମାଂସା ପାଇଁ ବିଦ୍ୱାନ ମଣ୍ଡଳୀଙ୍କୁ ଅନୁରୋଧ କରିଅଛନ୍ତି । ଏଥିରୁ ଆମ୍ଭେମାନେ ଦେଖୁଁ ଯେ ଆଷାଢ଼ମାସ ଦି୨ନ ଅମାବାସ୍ୟା ଦିନ ବ୍ରହ୍ମପଦାର୍ଥ ନବ କଳେବରରେ ସ୍ଥାପିତ ହୋଇଥିଲା ଏବଂ ତହିଁ ଆରଦିନଠାରୁ

ମଳମାସ ପଡ଼ିବାରୁ ମଳମାସରେ ଉକ୍ତ କାର୍ଯ୍ୟ ହୋଇଥିବାର ଯେଉଁ ଆପତ୍ତି ପତ୍ରପ୍ରେରକ କରନ୍ତି ତାହା ନିଷ୍ଫଳ ହୋଇଅଛି । ମାତ୍ର ଏକା କୃଷ୍ଣ ଚତୁର୍ଦ୍ଦଶୀ ଦିନ ସେ କାର୍ଯ୍ୟ ହେବାର ବିଧି ଅଛି କିମ୍ବା ଅନ୍ୟଦିନ ମଧ୍ୟ ହୋଇପାରେ ଆମ୍ଭମାନଙ୍କୁ ଜଣାନାହିଁ । ଯେବେ ମହାତ୍ମ୍ୟ ଅଥବା ଅନ୍ୟ ପୁସ୍ତକରେ ଏଥିର ନିଷ୍ଠିତ୍ର ବିଧାନ କେହି ଲେଖି ପଠାନ୍ତିଲେ ଆମ୍ଭେମାନେ ତାହା ପ୍ରକାଶ କରି ପତ୍ରପ୍ରେରକ ଏବଂ ଅନ୍ୟାନ୍ୟ ବ୍ୟକ୍ତିଙ୍କର ଭ୍ରମ ଖଣ୍ଡନ ପକ୍ଷରେ ଯତ୍ନଶୀଳ ହେବୁଁ । ଓଡ଼ିଶା ପଣ୍ଡିତମାନଙ୍କର ଏ ବିଷୟରେ ଭ୍ରମସ୍ୱୀକାର କରିବାର ନିତାନ୍ତ ଆବଶ୍ୟକ ।

୩୬୪ । ସାପ୍ତାହିକ ସମ୍ବାଦ ।

ପୂର୍ବେ ବଲାଙ୍ଗ ଘାଟରେ ଗୋଟିଏ ସରକାରୀ ଯାହାଜ ଥିଲା ଓ ତଦ୍ଦ୍ୱାରା ବାଣିଜ୍ୟ ସାମଗ୍ରୀର ଗତାୟାତର ବିଶେଷ ସୁବିଧା ହେଉଥିଲା । ବର୍ତ୍ତମାନ ସରକାର ସେ ଯାହାଜ ଅନ୍ୟ ସ୍ଥାନକୁ ନେଇ ଯିବାରୁ ଏଠା ମହାଜନ ଓ ସର୍ବସାଧାରଣଙ୍କର ବିଶେଷ କଷ୍ଟ ଓ କ୍ଷତି ହେଉଅଛି । ଏ ଯୋଗୁଁ ଶ୍ରୀଯୁକ୍ତ ବମ୍ସ୍ ସାହେବ ଗୋଟିଏ ଯାହାଜ ବଲାଙ୍ଗର ବନ୍ଦରକୁ ଅଣାଇବାର ଯଥେଷ୍ଟ ଯତ୍ନ କରୁଅଛନ୍ତି । ପ୍ରଶଂସନୀୟ ।

୩୬୫ । ବଂରାଜୀ ଓଡ଼ିଆ ଡିକସନେରି ବା ଅଭିଧାନ ବିକ୍ରୟର ବିଜ୍ଞାପନ ।

ଏହି ପୁସ୍ତକ ଅନେକାନେକ ସୁବିଖ୍ୟାତ ଡିକସନେରିମାନଙ୍କରୁ ସଂଗ୍ରହ ହୋଇ ତନ୍ମଧ୍ୟରେ ୩୨୫୦- ଶବ୍ଦରୁ ଅଧିକ ଇଂରାଜୀ ଶବ୍ଦର ବହୁଳ ଓଡ଼ିଆ ଅର୍ଥମାନ ଦିଆଯାଇ ଅଛି । × · × ଏହି ପୁସ୍ତକ ରଏଲ ଆଠପେଜି ଆକାରରେ ୪୧୦ ପୃଷ୍ଠା ଅଟେ । × × ×

ପ୍ରତ୍ୟେକ ଖଣ୍ଡର ମୂଲ୍ୟ ଡାକ ମାସୁଲ ଛଡ଼ା ୪୲ ।

ଶ୍ରୀଯୁକ୍ତ ବାବୁ ଭବାନୀ ପାଠକ, ବକ୍ସି ବଜାର କଟକ, ଶ୍ରୀଯୁକ୍ତ ଦାଶରଥି ରାଉତ, ମିଶନ ସ୍କୁଲ ହେଡ଼ମାଷ୍ଟର ମୁ: ସୁତାହାଟ କଟକ ଏବଂ ଏ ନଗରର ଅନ୍ୟାନ୍ୟ ପୁସ୍ତକ ବିକ୍ରେତା ମାନଙ୍କଠାରୁ ପ୍ରାପ୍ତ ହେବ ।

( ୯ମ ଭାଗ , ୨୫ । ୭ । ୧୮୭୪ , ସଂଖ୍ୟା ୩୦ )

୩୬୬ । ଶ୍ରୀଜଗନ୍ନାଥଙ୍କର କଳେବର ପରିବର୍ତ୍ତନ ଅମାବାସ୍ୟା ଦିନ ହୋଇଥିବାର ଆମ୍ଭେମାନେ ଗତ ସପ୍ତାହରେ ଲେଖିଥିଲୁଁ ଯେ ମଳ ମାସରେ ଉକ୍ତ କର୍ମ ହୋଇ ନାହିଁ । ଏଥିରୁ ସମ୍ବାଦ ପାଇଅଛୁଁ ଯେ ସେଦିନ ଅମାବାସ୍ୟା କେବଳ ଦଣ୍ଡ ୧।୩୮ ଥିଲା

ମାଚ ପରିବର୍ତ୍ତିନ କ୍ରିୟା ଗ୍ରହ ଶେଷକୁ ଅଥବା ସୋମବାର ପ୍ରାତଃ କାଳରେ ହୋଇ ଥିବାର ନିଶ୍ଚୟ ମଳ ମାସରେ ତାହା ହେବାର ଜଣାଯାଏ । ଦେଉଳ କରଣଙ୍କ କହିବାନୁସାରେ ସନ୍ଧ୍ୟୋପଶୀ ଉକ୍ତ କ୍ରିୟା ହେବାର ମାଦଳାପାଞ୍ଜିରେ ଲେଖାଅଛି କେବଳ ଏକଥର ତହିଁ ଉତ୍ତାରୁ ମାତ୍ର ମଳମାସ ପୂର୍ବରୁ ଏ କ୍ରିୟା ହୋଇଥିଲା । ଶୁଣିବାରେ ଗ୍ରାହ୍ୟ ବୋଲନ୍ତି ଯେ ଅମାବାସ୍ୟାରେ ହୋଇଅଛି ଓ ଏମନ୍ତ ହେବାର ରୀତି ଅଛି ମାତ୍ର ବାସ୍ତବରେ ଅମାବାସ୍ୟା ଗତ ହୋଇଥିଲା ସୁତରାଂ ମଳମାସରେ ତାହା ହେବାର ପ୍ରମାଣ ହୁଅଇ । ଯାହା ହେଉ ରଥଯାତ୍ରା ଶେଷହେଲେ ବାବୁ କେଦାରନାଥ ଦତ୍ତ ପଣ୍ଡିତଙ୍କ ସହିତ ଏ ବିଷୟରେ ଯୁକ୍ତି କରି ମିମାଂସା କରିବାର ମାନସ ରଖନ୍ତି ।

୩୬୭ । ଆମ୍ଭମାନଙ୍କର ଜଜ ସାହେବ ଇଂରାଜୀ ଅକ୍ଷରରେ ( ଯାହାକୁ ରୋମୀୟ ଅକ୍ଷର ବୋଲିଯାଏ ) ଓଡ଼ିୟାଭାଷା ଲେଖିବାର ନିୟମ ପ୍ରଚଳିତ କରିବାକୁ କୃତକଳ୍ପ ହୋଇ ଖଣ୍ଡେ ପୁସ୍ତକ ମୁଦ୍ରିତ କରାଇ ଅବଧାନ ମାନଙ୍କୁ ବିତରଣ କରିଅଛନ୍ତି ଏବଂ ସ୍ୱୟଂ ସେମାନଙ୍କୁ ଶିକ୍ଷା ଦେଉଅଛନ୍ତି । କେମନ୍ତ ଅଳ୍ପକାଳ ମଧ୍ୟରେ ଇଂରାଜୀ ଅକ୍ଷରରେ ଏଠାଲୋକେ ଓଡ଼ିୟା ଲେଖି ପାରିବେ ଏହା ଶିକ୍ଷା ଦେବା ପାଇଁ ସେ ଏମନ୍ତ ଯତ୍ନଶୀଳ ହୋଇଅଛନ୍ତି ଯେ ଏ ପକ୍ଷରେ କିଛି ମାତ୍ର ପରିଶ୍ରମ କରିବାକୁ ତ୍ରୁଟି କରୁ-ନାହାନ୍ତି । ଏରେ ବୃତ୍ତଶାଳୀରେ ପଢ଼ିବା ଉପଯୋଗୀ ଏକଖଣ୍ଡ ବ୍ୟାକରଣ ଏବଂ ଏକ ଖଣ୍ଡ ସାହିତ୍ୟ ପୁସ୍ତକ ସଂକଳନ କରିଅଛନ୍ତି, ସାହିତ୍ୟ ପୁସ୍ତକଖଣ୍ଡ ଆରବୀୟ ଉପନ୍ୟାସର ଅନୁବାଦିତ ହୋଇଅଛି । ଫଳ ଯାହାହେଉ ମାତ୍ର ସାହେବଙ୍କ ଅଧ୍ୟବସାୟ ଓ ଉତ୍ସାହ ଦେଖି ଆମ୍ଭେମାନେ ଚମତ୍କୃତ ହୋଇଅଛୁଁ । ଦେଶୀୟ ଲୋକଙ୍କ ଯୋଗେ ଯେବେ କଅଁତରେ ଏସବୁ ଗୁଣ ଥାନ୍ତା ତେବେ ଉତ୍କଳର ଉନ୍ନତି ସକାଶେ କାହାକୁ ଚିନ୍ତିତ ହେବାକୁ ପଡ଼ନ୍ତା ନାହିଁ ।

୩୬୮ । ବ୍ରହ୍ମପୁରଠାରୁ ଏକବ୍ୟକ୍ତି ଲେଖି ଅଛନ୍ତି ଯେ ମାନ୍ଦ୍ରାଜର ଶିକ୍ଷା ବିଭାଗର ଡାଇରେକ୍ଟର ସାହେବ ଗଞ୍ଜାମ ଜିଲ୍ଲା ଉତ୍କଳୀୟଙ୍କ ପ୍ରତି ସଦୟ ହୋଇ ତାଲୁକା ବିଦ୍ୟାଳୟମାନଙ୍କରୁ ବିଦ୍ୟା ଉଦ୍‌ଯୋଗୀ ଏବଂ ପ୍ରକୃତ ଉତ୍କଳୀୟ ଛାତ୍ରଗଣ ବ୍ରହ୍ମପୁର ଜିଲ୍ଲା ବିଦ୍ୟାଳୟର ଚତୁର୍ଥ ଶ୍ରେଣୀରେ ନିଯୁକ୍ତ ହେବା ନିମନ୍ତେ ଏବଂ ଉକ୍ତ ଛାତ୍ରଗଣଙ୍କୁ କିଛି ୨ ବୃତ୍ତି ଦେବା ନିମନ୍ତେ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟକୁ ଅନୁରୋଧ କରି-ଥିଲେ । ଏଥିରୁ ମାନ୍ଦ୍ରାଜ ଟାଇମସ୍ ପତ୍ରିକାରେ ଲେଖା ହୋଇଥିଲା ଯେ ଉତ୍କଳୀୟ ଛାତ୍ରଙ୍କ ସଂଖ୍ୟା ଊଣା ହେତୁରୁ ପୃଥକ ଶିକ୍ଷକର ପ୍ରୟୋଜନ ନାହିଁ । ତେଲେଙ୍ଗା ଶିକ୍ଷକଙ୍କ ଦ୍ୱାରା କାର୍ଯ୍ୟ ଚଳାଇବେ ମାତ୍ର ପତ୍ରପ୍ରେରକ ବୋଲନ୍ତି ଯେ ଶିକ୍ଷାର ସୁବିଧା ନହେଲେ ଛାତ୍ର ବୃଦ୍ଧି ହୋଇ ନପାରନ୍ତି । ଆଗେ ଓଡ଼ିୟା ଶିକ୍ଷକ ନିଯୁକ୍ତ କଲେ ଉକ୍ତ ବିଦ୍ୟାକୁ

ଯେଉଁମାନେ ଶିଖିବାର ଅଭିଳାଷ ରଖନ୍ତି ସେମାନେ ଆସିବେ । ଏଥିପାଇଁ ବ୍ରହ୍ମପୁରର ଛାତ୍ରମାନଙ୍କୁ ପତ୍ରପ୍ରେରକ ଅନୁରୋଧ କରି ଅଛନ୍ତି ଯେ ସେମାନେ ପ୍ରଧାନ ଶିକ୍ଷକଙ୍କ ଠାରେ ଆବେଦନ କରନ୍ତୁ ।

୩୬୯ । ବିଜ୍ଞାପନ ।

ଶ୍ରୀ ଜଗନ୍ନାଥ ଦାସଙ୍କ କୃତ ପ୍ରାକୃତ ଶ୍ରୀ ମଦ୍ଭାଗବତ ଏକାଦଶ ସ୍କନ୍ଧ ମୁଦ୍ରିତ ହୋଇ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ମୂଲ୍ୟ ୦ଘ୵ ଅଣା ।

ଗ୍ରହଣେଚ୍ଛୁମାନେ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଯନ୍ତ୍ରାଳୟରେ, ଉତ୍କଳ-ସୁହୃତ ଅଫିସରେ, ନିମ୍ନଲିଖିତ ଠିକଣାରେ ଆମ୍ଭଠାରେ, କଟକ ନର୍ମାଲ ସ୍କୁଲର ଭୂତପୂର୍ବପଣ୍ଡିତ ଗୋବିନ୍ଦ ରଥଙ୍କ ଠାରେ ଓ ଅନ୍ୟାନ୍ୟ ପୁସ୍ତକ ବିକ୍ରେତାଙ୍କ ନିକଟରେ ତଲ୍ଲସ କଲେ ଅନାୟାସରେ ପାଇ ପାରିବେ ।

କଟକ
୨୪।୭।୧୮୭୪

ଶ୍ରୀ ହରେକୃଷ୍ଣ ଦାସ
ନୂଆହାଟ, ଚୌଧୁରୀ ବଜାର

( ୯ମ ଭାଗ, ୧।୮।୧୮୭୪, ସଂଖ୍ୟା ୩୧ )

୩୭୦ । ଓଡ଼ିଶାର ଇତିହାସ ।

ଆମ୍ଭମାନଙ୍କର ସୁଯୋଗ୍ୟ କେନାଲ ରେଭିନ୍ୟୁ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ଜି. ଟୋଏନବି ସାହେବ ଓଡ଼ିଶାର ଇତିହାସ ନାମରେ ପୁସ୍ତକ ପ୍ରଚାର କରି ଅଛନ୍ତି ଓ ତହିଁର ଏକଖଣ୍ଡ ଆମ୍ଭମାନଙ୍କ ନିକଟକୁ ପଠାଇ ଥିବାରୁ ଆମ୍ଭେମାନେ କୃତଜ୍ଞତା ସହିତ ତାହା ସ୍ୱୀକାର କରୁଅଛୁଁ । ଏ ପୁସ୍ତକରେ ସନ ୧୮୦୩ ମସିହାଠାରୁ ସନ ୧୮୨୮ ମସିହା ପର୍ଯ୍ୟନ୍ତ ଓଡ଼ିଶାର ଯାବତ ବିବରଣ ପ୍ରକଟିତ ହୋଇଅଛି । ସନ ୧୮୦୩ ମସିହାରେ ଇଂରାଜମାନଙ୍କ ଶାସନାଧୀନରେ ଓଡ଼ିଶା ଆସିଲାରୁ ସେହି ଦିନଠାରୁ ଗ୍ରନ୍ଥ ଆରମ୍ଭ ହୋଇଅଛି । ଯେରୂପେ ଓଡ଼ିଶା ଇଂରାଜଙ୍କ ହସ୍ତଗତ ହେଲା ଓ ତହିଁଉତ୍ତାରୁ ଯେରୂପେ ଖୋରଧାରାଜା ବିଦ୍ରୋହାଚରଣ କରି ବନ୍ଦୀ ହେଲେ ଏବଂ ଜଗଦବନ୍ଧୁ ବିଦ୍ୟାଧରର ଗୋଳ କାହିଁକି ହେଲା ଓ ତାହା କିରୂପେ ନିବାରଣ ହେଲା, ପାଇକମାନେ କିରୂପେ ସାଧୁ ହେଲେ ଓ ପରିଶେଷରେ କିରୂପେ ଶାନ୍ତି ବିସ୍ତାର ହେଲା ଇତ୍ୟାଦି ବିଷୟ ଅତି ପାରିପାଟିରୂପେ ବର୍ଣ୍ଣିତ ହୋଇଅଛି । ଏସବୁ ବୃତ୍ତାନ୍ତ ପୁସ୍ତକର ପ୍ରଥମ ଭାଗରେ ଲେଖା ଯାଇଅଛି । ପୁସ୍ତକର ଦ୍ୱିତୀୟ ଭାଗରେ ରାଜସ୍ୱ

ସମ୍ପର୍କୀୟ କଥା ସବୁ ଅଛି । ଇଂରାଜଙ୍କ ଶାସନ ଗ୍ରହଣ ପୂର୍ବକ ମୁଗଲ ଓ ମରହଟ୍ଟାମାନଙ୍କ ଅମଳରେ କିରୂପେ ରାଜସ୍ୱ ଆଦାୟ ହେଉଥିଲା ଓ ଇଂରାଜମାନଙ୍କ ଅମଳରେ ତାହା କ୍ରମଶଃ କେମନ୍ତ ପରିବର୍ତ୍ତିତ ହେଲା ଓକେଉଁ ୨ ସନରେ ରାଜସ୍ୱ ଆଦାୟର କିପ୍ରକାର ବନ୍ଦୋବସ୍ତମାନ ହେଲା ଏକଥାମାନ ଅତି ବାହୁଲ୍ୟରୂପେ ସନ ୧୮୬୮ ମସିହାର ଶେଷ ପର୍ଯ୍ୟନ୍ତ ଲେଖା ଯାଇଅଛି । ଏହିବର୍ଷ ପର୍ଯ୍ୟନ୍ତ ପୁସ୍ତକ ଲେଖି କ୍ଷାନ୍ତ ହେବାର ହେତୁ ଗ୍ରନ୍ଥକର୍ତ୍ତା ଏହିରୂପେ ଲେଖିଅଛନ୍ତି ଯେ,ସନ ୧୮୬୮ ମସିହା ପର୍ଯ୍ୟନ୍ତ ସମୁଦାୟ ଓଡ଼ିଶା ଏକଜଣ କାଲେକ୍ଟରଙ୍କ ଅଧୀନରେ ଥିଲା । ଏହି ବର୍ଷରେ ଏ ପ୍ରଦେଶ ପୃଥକ ତିନିକଲା ଅର୍ଥାତ୍ ପୁରୀ କଟକ ଓ ବାଲେଶ୍ୱରରେ ବିଭାଗ ହୋଇ ତିନିଜଣ କଲେକ୍ଟର ନିଯୁକ୍ତ ହେଲେ । ସୁତରାଂ ଏବର୍ଷଠାରୁ ପ୍ରତ୍ୟେକ ଜିଲ୍ଲାର ବିବରଣ ପୃଥକ୍ ରୂପେ ବର୍ଣ୍ଣିତ ହେଲେ ଭଲ ହେବ । ଫଳତଃ ଏ ପୁସ୍ତକ ଖଣ୍ଡିକ ସେ ସବୁର ପୂର୍ବ ଭାଗ ସ୍ୱରୂପ ହୋଇଅଛି । ଆମ୍ଭମାନଙ୍କ ବିବେଚନାରେ ଏ ଶୃଙ୍ଖଳାଟି ଉତ୍ତମ ଅଟଇ । ଭୂମିରାଜସ୍ୱ ଛଡ଼ା ଏଥିରେ ଯାତ୍ରୀ ଟାକ୍ସ ଚୌକିଦାରୀ ଟାକ୍ସ ଅବକାରୀ ଲବଣ ପ୍ରଭୃତି ଅନ୍ୟ କର ସବୁର ସଂକ୍ଷେପ ବିବରଣ ମଧ୍ୟ ଅଛି । ପୁସ୍ତକର ତୃତୀୟ ଭାଗରେ ଅପରାଧୀଙ୍କର ଶାସନ, ପୁଲିସ, ଜେଲ, ସଡ଼କ, ପୁଲ, ଦୁର୍ଭିକ୍ଷ ଓ ବାଣିଜ୍ୟାଦିର ବିବରଣ ଲେଖାଯାଇ ଅଛି ଓ ଚତୁର୍ଥ ଭାଗରେ ଷ୍ଟାରଲିଙ୍ଗ ଓ ମିଲ ସାହେବଙ୍କ ରିପୋର୍ଟ, କଟକର ବନ୍ଦୋବସ୍ତ, ଓ ଗଡ଼ଜାତର ଅବସ୍ଥା ସମ୍ପର୍କୀୟ କାଗଜପତ୍ର ଏବଂ ବନ୍ଦୋବସ୍ତ ବିଷୟରେ ସନ ୧୮୦୪ ସାଲର ୧୨ ଆଇନ ଓ ସନ ୧୮୨୨ ର ୭ ଆଇନ ପୁନର୍ମୁଦ୍ରିତ ହୋଇଅଛି । ଏତଦ୍ରୂପେ ଦେଖାଯାଏ ଯେ ପୁସ୍ତକ ଖଣ୍ଡିକରେ ଯେମନ୍ତ ସୁଶୃଙ୍ଖଳାରେ ଆବଶ୍ୟକୀୟ ସମସ୍ତ ପ୍ରଧାନ ବିଷୟମାନେ ସନ୍ନିବେଶିତ ହୋଇଅଛି, ଏହା ତେମନ୍ତ ପ୍ରାଞ୍ଜଳଭାଷାରେ ରଚିତ ଓ ଏଥିରେ ପକ୍ଷପାତଶୂନ୍ୟ ମତମାନ ବ୍ୟକ୍ତ ହୋଇଅଛି । ତହିଁରେ ଉଦାହରଣ ସ୍ୱରୂପ ଇଂରାଜଙ୍କ ପ୍ରଥମାବସ୍ଥାର ଭୂମିକର ବନ୍ଦୋବସ୍ତ ଓ ତତ୍କାରଣରୁ ସ୍ଥାନୀୟ ପ୍ରାଚୀନ ଜମିଦାରଙ୍କର ଉଚ୍ଛିନ୍ନ ହେବା ପ୍ରଭୃତି ବିଷୟରେ ଯାହା ଲେଖା ଅଛି ପାଠକମାନେ ପଢ଼ିଲେ ଜାଣିପାରିବେ । ଆମ୍ଭେମାନେ ବିବେଚନା କରୁଁ ଯେ ଏ ପୁସ୍ତକ ଓଡ଼ିଆରେ ଅନୁବାଦିତ ହୋଇ ପ୍ରକାଶ ହେଲେ ଏଠା ସର୍ବସାଧାରଣଙ୍କର ଅନେକ ଉପକାରରେ ଆସିବ ।

## ୩୭୧ । ସାପ୍ତାହିକ ସମ୍ବାଦ ।

ନୂତନ ସରକାରୀ ହାଟରେ ଥିବା ପୁଷ୍କରିଣୀ ଗୃହପାଖରେ ପଥର ବନ୍ଧା ହେଉଥିଲା । ଗତ ବର୍ଷାରେ ଏକ ପାଖର ପଥ ପିଟ୍ଟ ଭାଙ୍ଗି ପଡ଼ିଅଛି । ଏସବୁ ବମ୍ସ୍ ସାହେବଙ୍କ ତରତରିଆ କାର୍ଯ୍ୟର ଅମଙ୍ଗଳ ଫଳ ଅଟଇ । ବାଉନ୍ଦ ମାତ୍ରରେ

ବୃଜାର ୨ ଟଙ୍କାର ଏସାରତ ଖର୍ଚ୍ଚ ହଉଅଛି ଏ ଅବା କ କଥା । ମାତ୍ର ସାମାନ୍ୟ କର୍ମରେ ସାହାଙ୍କର ଏପରି ଅପଟୁତା ସେ ବାରକ ମାନ୍ତ୍ରୀ କାର୍ଯ୍ୟକୁ କେଉଁ ପ୍ରକାରେ କହା କରନ୍ତି ।

୩୭୨ । ଜଗତର ମଣ୍ଡିମରେ ଅନେକ ପଇସାକଆ ·କେତାବ ହନୁମନ୍ତ ସମର୍ଥନ ଓ ଖ୍ରୀଷ୍ଟିଆନ ମତ ଖଣ୍ଡନରେ ବାହାରିଅଛି । ଏ ପୁସ୍ତକ ସବୁ ପଥର ଛାପାରେ ହୋଇଅଛି ଏବଂ ଚନ୍ଦପତ୍ରଦ୍ୱାରା ଶୋଭିତ ହୋଇଅଛି । ପ୍ରାୟ ୧୫ ଲକ୍ଷ ପୁସ୍ତକ ସମ୍ପ୍ରତି ଚଳବଚଳ ହେଉଅଛି । ଏଠାରେ ଭଗବତସବୁ କାହିଁକ ଏରୂପ କଷ୍ଟ କର ନାହାନ୍ତି ।

## ( ୯ମ ଭାଗ, ୧୫ । ୮ । ୧୮୭୪, ସଂଖ୍ୟା ୩୩ )

୩୭୩ । ଆମ୍ଭେମାନେ ଅତି ଆନନ୍ଦିତ ହୋଇ ଲେଖୁଅଛୁଁ ଯେ ଏ ନଗର ମଧ୍ୟରେ ଗୋଟିଏ ଶାଖା ଚିକିତ୍ସାଳୟ ସ୍ଥାପନ ହେବାର କର୍ତ୍ତୃପକ୍ଷଙ୍କଦ୍ୱାରା ସତ୍ନ ହେଉଅଛି । ଏ ପ୍ରସ୍ତାବ ପ୍ରଥମେ ଅଜ୍ଞରୀବ କମେଟିରେ ଉଦିତ ହେଲା ଓ ଡାକ୍ତର ସାହେବ ଶ୍ରୀଯୁକ୍ତ ବିମ୍ସ ସାହେବ କଲେକ୍ଟରଙ୍କ ନିକଟକୁ ଲେଖିବାରୁ ସେ ତାହା ସମ୍ମତ କରିଅଛନ୍ତି । ମାସିକ ଶୁଳ୍କଗୁଡ଼ାକ ପ୍ରାପ୍ତ ହେଲେ ଏଥିର କର୍ମ ଚଳିବ, ମାସିକ ଶୁଳ୍କ ସ୍ଥାୟୀ ହେବାର ସହିତ କିଛି ଆଦାୟ ହେବାର ଅଛିକଷ୍ଟ ଏଥିପାଇଁ ଏକକାଳୀନ ଦାନ ସଂଗ୍ରହ କରି ଏବଂ ଅଜ୍ଞରୀବ ଫଣ୍ଡ ଓ ଠାକୁର ( ଚୌକିଦାରୀ ) ଫଣ୍ଡରୁ କିଛି ଦଣ୍ଡ ନିଆଯାଇ କୌଣସି ବେଙ୍କରେ ସେଠଙ୍କା ସବୁ ଜମାକରି ତହିଁର ସୁଧରୁ ଶାଖା ଚିକିତ୍ସାଳୟ ଚଳାଇବାର ପ୍ରସ୍ତାବ ହୋଇଅଛି । କାଟମରସୁଲ ଫାର୍ମ ଅନ୍ୟବସ୍ତୁ ଉଚିତବ । ସେହି ସ୍ଥାନରେ ଏ ଚିକିତ୍ସାଳୟ ସ୍ଥାପନ ହେବ । ଏ ଉଭୟ ପ୍ରସ୍ତାବ ଅତି ଉତ୍ତମ ହୋଇଅଛି ଓ ଆମ୍ଭମାନଙ୍କର ସମ୍ପୂର୍ଣ୍ଣରୂପେ ମନୋନୀତ ଅଟଇ ।

ଅତି ଉଚ୍ଚ ସୁଧ ବାର୍ଷିକ ଶତକଡ଼ା ଟ୫୲ ଧରିଲେ ମାସିକ ଟ୪ ଙ୍କା ପ୍ରାପ୍ତି ଏକାଶେ ଟ୧୦୭୭୭ଙ୍କା ଆବଶ୍ୟକ ଓ ଗୃହ ନିର୍ମାଣ ପାଇଁ ଟ୧୦୦୦ଙ୍କା ଲଗିବାରେ ଏରୂପ ଟ୧୨୦୦୦ଙ୍କା ପ୍ରାପ୍ତି ହେଲେ ଏ ଚିକିତ୍ସାଳୟ ସ୍ଥାପନ ଓ ଚିରସ୍ଥାୟୀ ହେବ । ଏଥିକୁ ଅଜ୍ଞରୀବ ଫଣ୍ଡ ଓ ଚୌକିଦାରୀ ଫଣ୍ଡର ଦଣ୍ଡ ବ୍ୟତୀତ ସରକାରର ନିଜ ରାଜକୋଷରୁ ମଧ୍ୟ କିଛି ମିଳିବାର ଆଶା ଅଛି । ଅବଶିଷ୍ଟ ଟଙ୍କା ପ୍ରାପ୍ତି ସର୍ବସାଧାରଣଙ୍କ ଉପରେ ନିର୍ଭର କରଇ । ଏ ଚିକିତ୍ସାଳୟଟି ଯେ ଅତି ଆବଶ୍ୟକ ଓ ହିତଜନକ ଏବଂ ସେଥିରେ ଯେ ଏହି ନଗରର ପରମ ଉପକାର ହେବ ଏହା କୋଲ-ବାର ବାହୁଲ୍ୟ । ଅତଏବ ଆମ୍ଭେମାନେ ଅନୁରୋଧ କରୁଁ ଯେ ଏଠା ଧନୀ ବ୍ୟକ୍ତିମାନେ ଏଥିପାଇଁ ସ୍ୱେଚ୍ଛାପୂର୍ବକ ଦାନ ପ୍ରଦାନ କରନ୍ତୁ । କଦାପି କୁଣ୍ଠିତ ନ ହୁଅନ୍ତୁ ।

( ୯ମ ଭାଗ, ୨୨ । ୮ । ୧୮୭୪, ସଂଖ୍ୟା ୩୪ )

୩୨୪ । ଆମ୍ଭେମାନେ ଆନନ୍ଦର ସହିତ ପାଠକମାନଙ୍କୁ ଜଣାଉଅଛୁଁ ଯେ ବାଲେଶ୍ୱର ସମ୍ବାଦ ବାହିକାର ପୁନର୍ଜନ୍ମ ହୋଇଅଛି । ଚଳିତ ମାସର ତାରିଖରୁ ପତ୍ରିକା ବାହାରିବାର ଆରମ୍ଭ ହୋଇଅଛି । ଏହାର ଆକାର ମୂଲ୍ୟ ଓ ଅନ୍ୟାନ୍ୟ ଅବସ୍ଥା ଠିକ ପୂର୍ବପ୍ରାୟ ଅଛଇ କେବଳ ରାଜକୀୟ ସମ୍ବାଦ କିଛି ପ୍ରକାଶ ନାହିଁ । ମାତ୍ର ସମ୍ପାଦକ ଭରସା କରନ୍ତି ଯେ ରାଜକୀୟ ବଳ ମଧ୍ୟ ସେ ଶୀଘ୍ର ଲଭିବେ । ସମ୍ବାଦ-ବାହିକାର ପୁନର୍ଜନ୍ମ ହେଲା ସତ୍ୟ ମାତ୍ର ଏଥିପାଇଁ ଏହାର ପୂର୍ବ ଅସ୍ତିତ୍ୱମାନ ଲୋପ ହୋଇନାହିଁ । ସେସବୁ ମିଶିକରି ଏହାର ବୟସ ବର୍ଷ ହୋଇଅଛି ସୁତରାଂ ସାଧାରଣ ପୁନର୍ଜନ୍ମରେ ଯେ ପୂର୍ବ ବୃତ୍ତାନ୍ତ ବିସ୍ମୃତ ହେବାର ବୋଲାଯାଏ ତାହା ଏଠାରେ ଘଟି-ନାହିଁ । ତାହାହେତୁ ଆମ୍ଭେମାନେ ପ୍ରାର୍ଥନା କରୁଁ ଯେ ଯେଉଁମାନେ ବାହିକାକୁ ପ୍ରତି-ପାଳନ କରିଆସୁଥିଲେ ସେମାନେ ହଜିଲା ଧନ ପାଇଲାପରି ଏହାକୁ ସମଧିକ ଶ୍ରଦ୍ଧା ଓ ଅନୁଗ୍ରହ ସହିତ ପୁନର୍ଗ୍ରହଣ କରନ୍ତୁ ।

ଉପଯୋଗ ସ୍ଥଳେ ଗୋଟିଏ କୌତୁକର କଥା ଦେଖାଯାଏ । ବାହିକା ଓ ବିଦେଶୀର ବିବାଦ ସାପ-ନେଉଳ ସମ୍ପର୍କ ପଡ଼ିଗଲା ବଡ଼ ଚମତ୍କାରର କଥା । ସମ୍ବାଦବାହିକାରୁ ଜଣାଯାଏ ଯେ ବିଦେଶୀ ବାହାରିବା ସମୟରେ ଉକ୍ତ ପତ୍ରିକା ବନ୍ଦ ହେବାର ପ୍ରାପ୍ତିସ୍ୱୀକାର ମଧ୍ୟ ହୋଇପାରି ନଥିଲା । ବର୍ତ୍ତମାନ ବାହିକା ବାହାରିଲା ଦେଲରୁ ବିଦେଶୀଙ୍କର ଆଉ ଦେଖାନାହିଁ !! ସୁତରାଂ ଏ ଦୁଇ ପତ୍ରିକାର ଭେଟ ହେବା ବଡ଼ କଠିନ ଦେଖାଯାଏ । ଉତ୍କଳ ସୁତ ବୋଲନ୍ତି ଯେ କିଛିଦିନ ଉତ୍ତାରୁ ବିଦେଶୀ ଅନ୍ୟ ଛାପାଖାନାରେ ମୁଦ୍ରିତ ହୋଇ ବାହାରିବ ।

୩୨୫ । ଓଡ଼ିଶାର ଚାଉଳ ରପ୍ତାନି ।

ଗତ ଡିସେମ୍ବର ମାସରେ ଆମ୍ଭେମାନେ ଓଡ଼ିଶାରୁ ଚାଉଳ ରପ୍ତାନିର ଏକ ତାଲିକା ପ୍ରକାଶ କରିଥିଲୁଁ ଯେ ତଦନୁସାରେ ସନ ୧୮୬୮ । ୬୯ ମସିହାଠାରୁ ସନ ୧୮୭୨ । ୭୩ ମସିହା ପର୍ଯ୍ୟନ୍ତ ସର୍ବାପେକ୍ଷା ଅଧିକ ରପ୍ତାନି ସନ ୧୮୭୧ । ୭୨ ମସିହାରେ ଅର୍ଥାତ୍ ସାତଲକ୍ଷ ମହଣ ହୋଇଥିଲା ଓ ସନ ୧୮୭୨ । ୭୩ ମସିହାରେ ମ ୬୩୩୩୭ ମହଣ ହୋଇଥିଲା । ଗତ ବର୍ଷର ଗବର୍ଣ୍ଣମେଣ୍ଟ ବଙ୍ଗଳାର ଦୁର୍ଭିକ୍ଷ କମିଶ କୋଟି ଚାଉଳ ଏଠାରୁ ନେବାର ବନ୍ଦୋବସ୍ତ କରିଥିବାରୁ ଏଠାଲୋକେ ଭୟଗ୍ରସ୍ତ ହୋଇ ଅନୁମାନ କରିଥିଲେ ଯେ ଏତେ ଚାଉଳ ଏଠାରୁ ବାହାରି ଗଲେ ଅବଶ୍ୟ ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିବ । ମାତ୍ର ସୁଖର ବିଷୟ ଯେ ସେରୂପ କିଛି ଦୁର୍ଘଟନା ନହୋଇ

ପୂର୍ବ ବର୍ଷର ପ୍ରାୟ ଦ୍ୱିଗୁଣ ପରିମାଣରେ ଏଠାରୁ ଚାଉଳ ରପ୍ତାନି ହେଲା ଓ ଆମ୍ଭେମାନେ ଯାହା ଅନୁମାନ କରିଥିଲୁଁ ଯେ ଏ ରପ୍ତାନିଦ୍ୱାରା ଅନିଷ୍ଟ ନହୋଇ ବରଂ ଉପକାର ହେବ ଫଳେ ତାହାହିଁ ହୋଇଅଛି । ଗତବର୍ଷ ଅର୍ଥାତ୍ ସନ ୧୮୭୭ । ୭୪ ମସିହାରେ ଏଲ ଲିଖିତ ପରିମାଣରେ ଚାଉଳ ଓଡ଼ିଶାରୁ ରପ୍ତାନି ହୋଇଥିଲା ଯଥା:—

| | |
|---|---|
| କଟକ | ମ ୬୨,୩୨୯୪ |
| ପୁରୀ | ମ ୧୩୬୬୭୪ |
| ବାଲେଶ୍ୱର | ମ ୮୪୮୦୮୩ |
| ମୋଟ | ମ ୧୬୬୪୮୫୧ |

ଏହାଛଡ଼ା ଅନ୍ୟାନ୍ୟ ଆହାରୀୟ ଦ୍ରବ୍ୟ ଅର୍ଥାତ୍ ବ୍ରୀହି ଇତ୍ୟାଦି ମ ୩୮୬୨ ମଣ ରପ୍ତାନି ହୋଇଥିଲା । ଏସବୁ ଶସ୍ୟର ମୂଲ୍ୟ ସବସୁଦ୍ଧା ଟ ୨୦୪୪୯୩୬ ଙ୍କା ଅଟଇ ।

ଏଥିରୁ ଦେଖାଯାଏ ଯେ କେବଳ ଚାଉଳ ଇତ୍ୟାଦି ଖାଦ୍ୟ ଶସ୍ୟ ଦ୍ୱାରା ଦେଶର ଆବଶ୍ୟକୀୟ ଖର୍ଚ୍ଚ ନିର୍ବାହ ହୋଇ ଅନ୍ୟ ଦେଶରୁ କୋଡ଼ିଏ ଲକ୍ଷ ଟଙ୍କାରୁ ଅଧିକ ଆୟ ହୋଇଅଛି ଏବଂ ଏହି ଚାଉଳ ଯାହାକି ଘାଟକୁ ନେଇ ଦିବାପାଇଁ ଶକଟ ନୌକା ପ୍ରଭୃତି ଭଡ଼ାଦ୍ୱାରା କେତେ ଲୋକଙ୍କର ଉପକାର ହୋଇଥିବ । କିନ୍ତୁ ଦୁଃଖର ବିଷୟ ଯେ ଏତେ ଟଙ୍କାର କାରବାର ହୋଇଗଲା ମାତ୍ର ବାଲେଶ୍ୱରର କେତେ ଜଣ ମହାଜନ ଛଡ଼ା ଅନ୍ୟ ଓଡ଼ିଶାବାସୀ କେହି ଏ ଦ୍ରବ୍ୟର ବାଣିଜ୍ୟଦ୍ୱାରା ଲାଭ ପାଇଲେ ନାହିଁ । ଏପରି ନହେବାର ଦୋଷ ନିତାନ୍ତ ପକ୍ଷରେ ଏବର୍ଷ ପାଇଁ ଉଭୟ ଗବର୍ଣ୍ଣମେଣ୍ଟ ଓ ଲୋକଙ୍କର ଅଟଇ । ଗବର୍ଣ୍ଣମେଣ୍ଟ ଦୋଷ ଏହି ଯେ କଣ୍ଟ୍ରାକ୍ଟ ଦେବା ସମୟରେ ଏଅଞ୍ଚଳର ଦେଶୀୟ ବ୍ୟକ୍ତି କାହାରିକୁ ଲୋଡ଼ିଲେ ନାହିଁ । ଅବଶ୍ୟ ଏଠାରେ ପୂର୍ବରୁ କୌଣସି ଲୋକ ଏ କର୍ମର ଭାର ନେବାକୁ ଉପଯୁକ୍ତ ହୋଇ ନଥିଲେ ତଥାପି ଗବର୍ଣ୍ଣମେଣ୍ଟ କର୍ମଚାରୀଙ୍କୁ ଉଚିତ ଥିଲା ଯେ କାହାରିକୁ ଭାର ଦେଇ ଉପଯୁକ୍ତ କରିବାର ଚେଷ୍ଟା କରିଥାନ୍ତେ । ଲୋକଙ୍କର ଦୋଷ ଏହି ଯେ ପ୍ରାୟ ବ ୧୫ ବର୍ଷ ହେଲା ଅର୍ଥାତ୍ ପ୍ରେୟାଙ୍କ ସାହେବଙ୍କ କର୍ମ କଲା ଦିନରୁ ଏଠାରେ ଚାଉଳର କାରବାର ହୋଇଅଛି । ଅଦ୍ୟାପି ଏ ସ୍ଥାନୀୟ ଲୋକ କେହି ସେ ବ୍ୟବସାୟରେ ବୃହତ୍‌ରୂପେ ନିଯୁକ୍ତ ହେବାର ଦେଖା ଯାଉନାହିଁ । ଓଡ଼ିଶା କୃଷି ପ୍ରଧାନ ଦେଶ ଓ ଚାଉଳ କାରବାର ଅତି ସହଜ ଏବଂ ବିଶେଷ ଲାଭକର । ଯେବେ ଏପରି ବ୍ୟବସାୟରେ ଏଠା ଲୋକେ ଲିପ୍ତ ନହେବେ ତେବେ ଆଉ କେଉଁ କାର୍ଯ୍ୟ ସେମାନଙ୍କଦ୍ୱାରା ହେବ ? ଏଥିର ବିଚାର କାରଣ ଆମ୍ଭେମାନେ ଏଠାର ଧନୀ ଏବଂ ଧନାକାଂକ୍ଷୀ ବ୍ୟକ୍ତିଙ୍କୁ ବିଶେଷରୂପେ ଅନୁରୋଧ କରୁଅଛୁଁ ।

ଓ୨,୭ ।

## ବର୍ଷା ଓ ନଗର ରକ୍ଷା ।

ପ୍ରତିବର୍ଷ ବର୍ଷାକାଳରେ କଟକ ନଗରର ମହାଦୁର୍ଦ୍ଦଶା ଉପସ୍ଥିତ ହୁଅଇ । ଏବର୍ଷ ମଧ୍ୟ ସେହିପରି ହୋଇଅଛି । ବରଂ ବର୍ଷା ଅଧିକ ହେବାରୁ ଅଧିକ ଘରଦ୍ୱାର ଭାଙ୍ଗି ପଡ଼ିଅଛି ଓ ଅନେକ ସ୍ଥାନରେ ଅନ୍ୟାନ୍ୟ ବର୍ଷାପେକ୍ଷା ଅଧିକ ଜଳ ଜମା ହୋଇ ନାନା ପ୍ରକାର କ୍ଳେଶର କାରଣ ହୋଇଅଛି । ହାକିମମାନେ ବର୍ଷକୁ ବର୍ଷ ଯେ ଯାହା ବୁଦ୍ଧି ଓ କ୍ଷମତା ଅନୁସାରେ ଉପାୟ କରିବାକୁ ତ୍ରୁଟି କରି ନାହାନ୍ତି ତଥାପି ଏ ଦୁର୍ଦ୍ଦଶାରୁ ନଗର ମୁକ୍ତ ହେଉନାହିଁ । ଏହାର କାରଣ ଏହି ଜଣାଯାଏ ଯେ ନଗରର ଯେଉଁ ଅଂଶରେ ଯେଉଁବର୍ଷ ହାକିମଙ୍କର ସୁଦୃଷ୍ଟି ପଡ଼ିଅଛି ସେହି ଅଂଶରେ ଉପକାର ନିମନ୍ତେ କିଛି ଉପାୟ ହୋଇଅଛି । ସମୁଦାୟ ନଗରର ଜଳ ନିକାଶି ପକ୍ଷରେ କୌଣସି ବୃହତ୍ ଉପାୟ ଅବଧି କେହି ଭାବନା କରି ନାହାନ୍ତି । ସିଂହ ଡ୍ରେନେଜ ନାମକ ନାଳ କି ଯାହା ସୁତାହାଟ ତଳଦେଇ ବଜ୍ରକବାଟ ବାଟେ କାଠଯୋଡ଼ି ନଦୀ ସଙ୍ଗରେ ମିଳିଅଛି ତଦ୍ୱାରା ନଗରର ଏକ ଅଂଶର ଜଳ ବାହାରି ଯିବାର ଉପାୟ ହୋଇଅଛି ସତ୍ୟ ମାତ୍ର ଅପର ଅଂଶର ଜଳ ବାହାରି ଯିବାର କୌଣସି ଉପାୟ ହୋଇନାହିଁ । ଅନୁମାନ ହୁଅଇ ଯେ ଅନ୍ୟ ସବୁ ସ୍ଥଳରୁ କରନାଳମାନ ଏ ନାଳରେ ଯୋଗ ହେଲେ ସହରର ବହୁଜଳ ବାହାରି ଯାଇପାରେ କିନ୍ତୁ କି ଉପାୟରେ ତାହା ହେବ ଆମ୍ଭେମାନେ କହି ନପାରୁଁ । କଟକ ନଗରର ଅବସ୍ଥା ବିଶେଷ ପ୍ରକାରର ଅଟଇ । ଏହାର ପ୍ରାୟ ଚତୁର୍ଦ୍ଦିଗରେ ନଦୀ ଓ ସେ ନଦୀମାନ ବିଶେଷରେ କାଠଯୋଡ଼ି ନଦୀ ବୃଦ୍ଧି ହେଲେ ନଗର ଉପରେ ହାତେ ୮ । ୨୦ ଜଳ ଛିଡ଼ା ହୁଅଇ । ବର୍ଷା ଯେତେ ୨ ପ୍ରାୟ ନଦୀ ବଢ଼ଇ ସୁତରାଂ ଯେତେବେଳେ ନଗରରେ ବର୍ଷାପାଣି ଭରତି ହୁଅଇ ସେତେବେଳେ ନଦୀଜଳ ତହିଁରୁ ଅଧିକ ଉଚ୍ଚ ଥିବାରୁ ନଗରର ବର୍ଷା ପାଣି ବାହାରିଯିବା ତେଣିକି ଥାଉ ନଦୀଜଳ ନଗରରେ ପ୍ରବେଶ କରିବାର ଶଙ୍କା ହୁଅଇ । ନତାନ୍ତ ପକ୍ଷରେ ନଦୀଜଳ ଅଟକି ଦେବାରୁ ନାଳ ବାଟେ ବର୍ଷାପାଣି ନଦୀକୁ ଯାଇ ନପାରେ ଓ ନଦୀ ନଘଟିଲେ ନଗରର ପାଣି ବାହାରି ଯିବାର ଉପାୟ ନାହିଁ । ବୋଧହୁଅଇ ଏ ଅବସ୍ଥାରେ ନିବାରଣ ହେବାର ବଡ଼ କଠିନ ତେବେ ନଦୀ ଘଟିଲେ ନଗରର ପାଣିସବୁ ବାହାରି ଯିବାର ଉପାୟ ହୋଇପାରେ ଓ ଯେବେ ତେତିକି ହୁଅଇ ତେବେ ମଧ୍ୟ ଅନେକ ଉପକାର ଅଛି । ଆମ୍ଭମାନଙ୍କର ବର୍ତ୍ତମାନ ମାଜିଷ୍ଟ୍ରେଟ ବମ୍ସ ସାହେବ ନଗର ପରିଷ୍କାର ବିଷୟରେ ଅତ୍ୟନ୍ତ ଯତ୍ନଶୀଳ ଓ ସେ ଯେମନ୍ତ ପ୍ରତିଦିନ ପ୍ରାତଃ କାଳରେ ନଗରରେ ଭ୍ରମଣ କରନ୍ତି ଅଛନ୍ତି ଏମନ୍ତ ଶ୍ରୀଯୁକ୍ତ ଶୋର ସାହେବଙ୍କ ଉତ୍ତାରୁ କାହାରିକୁ କରିବାର ଦେଖା ଯାଇ ନାହିଁ । ମାଜିଷ୍ଟ୍ରେଟ ସାହେବ ସ୍ୱୟଂ ନଗରର ଦୁରବସ୍ଥା ବୁଲି ଦେଖି ଅଛନ୍ତି ମଙ୍ଗଳର ବିଷୟ ଅଟଇ ଓ ଆମ୍ଭେମାନେ ତାହାଙ୍କଠାରେ ଏତିକି ପ୍ରାର୍ଥନା କରୁଁ ଯେ ସେ

ଏମନ୍ତ କୌଣସି ବୃହତ୍ କାର୍ଯ୍ୟର ଅନୁଷ୍ଠାନ କରନ୍ତୁ କି ଯଦ୍ଦ୍ୱାରେ ନଗରର ଗୃହାଦିର ଜଳ ବାହାର ଯାଇପାରେ । ଏଥିପାଇଁ ଆବଶ୍ୟକ ହେଲେ ଜଣେ ସରବେଅର କିଂବା ଇଞ୍ଜିନିୟରର ସାହାଯ୍ୟ ନେଉନ୍ତୁ ଯେ ସେ ସବୁ ଆଡ଼ର ଲେବଲ ମାପ ନେଇ ପାଣି ବାହାରିବାର ଉପଯୁକ୍ତ ମାର୍ଗ ନିଷ୍ପନ୍ନ କରିଦେବ । ଏପରି କାର୍ଯ୍ୟ ଟାଉନ ଓଭର-ସିଅର ପ୍ରଭୃତିଙ୍କ ଦ୍ୱାରା ହୋଇନପାରେ । ଏଥିପାଇଁ ବିଶେଷ ସୁଶିକ୍ଷିତ ଲୋକର ଲୋଡ଼ା । ଟାଉନ 'ଟାକ୍ସ ଟଙ୍କା ନାନାଦି ସାମାନ୍ୟ କାର୍ଯ୍ୟରେ ବ୍ୟୟ ହୋଇ ଯାଉଅଛି କିନ୍ତୁ ଯେବେ ଏପରି ଗୋଟିଏ ବହୁବ୍ୟୟ ସାଧ୍ୟ କାର୍ଯ୍ୟ ତଦ୍ଦ୍ୱାରା ନିର୍ବାହ ହେବ ତେବେ ନଗରର ଚିରସ୍ଥାୟୀ ଉପକାର ହେବ ଏବଂ ଶ୍ରୀଯୁକ୍ତ ବିମ୍‌ସ ସାହେବଙ୍କର ନଗର ଭ୍ରମଣର ଶ୍ରମ ସଫଳ ହେବ ଓ ଏ କାର୍ଯ୍ୟଟି ତାହାଙ୍କର କୀର୍ତ୍ତି ସ୍ୱରୂପ ବହୁକାଳକୁ ରହିପିବ ।

୩୬୮ । ସାପ୍ତାହିକ ସମ୍ବାଦ ।

ପୁରୀରେ ରାମଗୋପାଳ ଗୃହଠାକୁରଙ୍କ ଛାପାଖାନାର କର୍ମାରମ୍ଭ ହେଲାଣି । ଏଥିରେ ବର୍ତ୍ତମାନ ଦେବନାଗର ଅକ୍ଷରରେ ଜୈନ ମାହାତ୍ମ୍ୟ ଏବଂ ଓଡ଼ିଆରେ ଚୈତନ୍ୟ ଚରିତାମୃତ ଛପା ହେଉଅଛି । ଅନେକ ଗୁଡ଼ିଏ ଫରମା ବାହାରିଲାଣି ।

୩୬୯ । ପୁରୀଠାରେ ସମୁଦ୍ର ଲହରୀ ଉପରେ ବାଣିଜ୍ୟ ଦ୍ରବ୍ୟାଦି ଯାତାୟାତ ନିମିତ୍ତ ଗୋଟିଏ ଟ୍ରାମବେ ବାଟ ନିର୍ମାଣ କରିବାର ପ୍ରସ୍ତାବ ହେବାରୁ ଶ୍ରୀଯୁକ୍ତ ବାବୁ ମାଣ୍ଡିଅ ବଣ୍ଡ ସାହେବ ତହିଁର ନକସା ଓ ବ୍ୟୟର ଆନୁମାନିକ ତାଲିକା ଗବର୍ଣ୍ଣମେଣ୍ଟଙ୍କ ଆଜ୍ଞାନୁସାରେ ପ୍ରସ୍ତୁତ କରୁଅଛନ୍ତି । ବାବୁ ହରଲାଲ ମିତ୍ର ଏ ବାଟର ପ୍ରସ୍ତାବ କରିଅଛନ୍ତି ।

୩୭୦ । ବିଜ୍ଞାପନ ।

ତଳଲିଖିତ ନୂତନ ପୁସ୍ତକମାନ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ହୋଇ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି ।

ଶବ୍ଦାଙ୍କନ ଅର୍ଥାତ୍ ଓଡ଼ିଆ ବ୍ୟାକରଣ , ୨ୟ ଭାଗ
ଯ.ଫ. ବ୍ରାଉନ ଜଜ ସାହେବଙ୍କ ପ୍ରଣୀତ ଠ଼ ।୵
ଶିଶୁପାଠ ଉତ୍କଳ ଓ ଇଂରାଜୀ ଉଭୟ ଅକ୍ଷରରେ
ମୁଦ୍ରିତ ଠ଼ ।୵
ବା° ଚୌତିଶା ଓ ନପୋଇ - ଶ୍ରୀ ଲୋକନାଥ ପାଣି
ଦ୍ୱାରା ପ୍ରକାଶିତ ଠ ୵

ଶ୍ରୀ ଗୌରୀ ଶଙ୍କର ରାୟ
ସମ୍ପାଦକ

## ( ୯ମ ଭାଗ, ୫।୯।୧୮୭୪, ସଂଖ୍ୟା ୩୬ )

୩୮୧ । ଆମ୍ଭେମାନେ ତଳଲିଖିତ ପରୱାନା ପାଇଅଛୁଁ ।

ନ୨୬୯ମ୍ବର କଟକ କଲେକ୍ଟରୀ
ନକଲ: ମୋହର

[illegible]

M.A.K.
D.C.

ମହାମାନ୍ୟ ଉପଯୁକ୍ତ ବାବୁ ଗୌରୀଶଙ୍କର ରାୟ
ଉତ୍କଳଦୀପିକା ସମ୍ପାଦକ ସମୀପେଷୁ ;

ଯେହେତୁ ଉତ୍କଳଦୀପିକା ହଜୁରର ଆବଶ୍ୟକ ନାହିଁ ଏଥିପାଇଁ ଲେଖା ଯାଉଅଛି କି ତୁମ୍ଭେ ଭବିଷ୍ୟତରେ ଉତ୍କଳଦୀପିକା ହଜୁରକୁ ନପଠାଇବ ।
ତା୩୧ରିଖ ମାହେ ଅଗଷ୍ଟ ସନ୧୮୭୪ମସିହା । ”

କୌଣସି ଗ୍ରାହକର ପତ୍ର ହୋଇଥିଲେ ପ୍ରକାଶ କରନ୍ତୁ ନାହିଁ ମାତ୍ର ଏ ଶ୍ରେଣିକ ସରକାରୀ ପରୱାନା ସୁଣି ହଜୁର କୌଡ଼ିଆ ଗ୍ରାହକ ନୁହନ୍ତି । ଶ୍ରୀଯୁକ୍ତ କମି-ଶନର ସାହେବଙ୍କ ଅନୁମତି ସହିତ ଆମ୍ଭେମାନେ ବନାମ୍ଳରେ ତିନିଜିଲ୍ଲାର କଲେକ୍-ଟରଙ୍କ ନିକଟକୁ ଖଣ୍ଡିଏ ଲେଖାଏଁ ପତ୍ରିକା ଉପହାର ସ୍ୱରୂପ ପ୍ରାୟ ତିନିବର୍ଷ ହେବ ପଠାଉଅଛୁଁ । ଏଥିମଧ୍ୟରେ ଏକଜିଲ୍ଲାର ମାଜୁଲ ପରୱାନା ମିଳିଲା ମାତ୍ର ଏଥିର କାରଣ ଆମ୍ଭମାନଙ୍କୁ ଜଣା ନାହିଁ । ପାଠକମାନେ ଆପଣା ୨ ସିଦ୍ଧାନ୍ତ କରିନେବେ ଓ ଯେବେ କେହି ଆମ୍ଭମାନଙ୍କର ସିଦ୍ଧାନ୍ତର ଅପେକ୍ଷା ରଖନ୍ତି ତେବେ ଆମ୍ଭେମାନେ ଏତିକି କହିପାରୁଁ ଯେ ସକଳ ଭବରେ ସାଧାରଣ ମଙ୍ଗଳସାଧକ ବୋଲି ଅପ୍ରୀତିକର ଦ୍ରବ୍ୟ ଉପହାର ସ୍ୱରୂପ ପ୍ରେରିତହେଲେ ତାହା ଗ୍ରହଣ କରିବାକୁ କେହି ବାଧ୍ୟ ନୁହନ୍ତି ଅଥଚ ପ୍ରୀତିକର ହେଉ ବା ଅପ୍ରୀତିକର ହେଉ ବିନା ମୂଲ୍ୟରେ କୌଣସି ଦ୍ରବ୍ୟ ଗ୍ରହଣ କରିବା ହାକିମଙ୍କ ରୀତିର ବିପରୀତ ଅଟଇ । ଏହାପରି କୌଣସି ଯୁକ୍ତି ହଜୁରଙ୍କ ମନରେ ଉଦୟ ହୋଇଥିବ ।

୩୮୨ । ଗତମାସ ଶେଷ ପକ୍ଷର ଉତ୍କଳ ହିତୈଷିଣୀରେ ଜଗନ୍ନାଥ ସେବକୀ ସଭା ସମ୍ପର୍କରେ ଯାହା ଲେଖାଅଛି ( ସେଥିସଙ୍ଗେ ଉତ୍କଳ ଦୀପିକା ମଧ୍ୟ ବିସ୍ମୃତ ହୋଇନାହିଁ ) ତହିଁର ଜଣାଯାଏ ଯେ ଲେଖକ ଏସବୁକୁ ଅନୁମୋଦନ କରନାହାନ୍ତି ।

ତାହାଙ୍କର ଭାବ ଏହିରୂପ ଜଣାପଡ଼େ ଯେ ପୁରୀ ରାଜା ଦେଉଳର ମାଲିକ, ସେ ଯାହା ଇଚ୍ଛା ତାହା କରିବେ, ସେହିପରି ସବୁ ରାଜାଙ୍କ ରାଜ୍ୟ ଛଡ଼ାଇ ନେବାକୁ ଚେଷ୍ଟା କରୁଅଛନ୍ତି । ଏଥିରେ ରାଜ୍ୟ ବିପ୍ଳବ ଘଟିବ ଏବଂ ଗବର୍ଣ୍ଣମେଣ୍ଟ ଏଥିରେ ହସ୍ତକ୍ଷେପଣ କଲେ ନିତାନ୍ତ ଗର୍ହିତ କାର୍ଯ୍ୟ କରିବେ । ସତ୍ୟ । କୌଣସି ରାଜ କର୍ମଚାରୀ ଅସଙ୍ଗତ ନିୟମ ପ୍ରଚାର କିମ୍ବା ଆଇନ ବିରୁଦ୍ଧ କାର୍ଯ୍ୟକଲେ ତହିଁର ପ୍ରତିକାର ନିମିତ୍ତ ସଭା ହେଉଅଛି ଓ ସମ୍ବାଦପତ୍ରମାନେ ଗର୍ଜି ଉଠୁଅଛନ୍ତି କିନ୍ତୁ ଯୁଗ ପ୍ରବର୍ତ୍ତିତ ନିୟମାନୁସାରେ ଧର୍ମ ପାଳିବାର ଭାର ଯାହାଙ୍କର ହସ୍ତରେ ଅର୍ପିତ ହୋଇଅଛି ସେ ଅକ୍ଷମ ଓ ସ୍ୱେଚ୍ଛାଚାରୀ ହେଲେ ତାଙ୍କ ବିରୁଦ୍ଧରେ ଯେଉଁମାନେ ପ୍ରତିକାର ଚେଷ୍ଟା କରିବେ ସେମାନେ କେବଳ ଉପହାସର ପାତ୍ର । କାଳର କି ସୁନ୍ଦର ମାହାତ୍ମ୍ୟ !

୬୮୩ । ଓଡ଼ିଶା ରେଲବେ ।

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ଶ୍ରବଣ କଲୁଁ ଯେ ସମ୍ବଲପୁରକୁ ରେଲବାଟ ଆଣିବାପାଇଁ ମଧ୍ୟପ୍ରଦେଶର ପ୍ରଧାନ କମିଶନର ଗବର୍ଣ୍ଣମେଣ୍ଟ ଇଣ୍ଡିଆରେ ପ୍ରସ୍ତାବ କରିଅଛନ୍ତି । ବୋଧହୁଏ ନାଗପୁରଠାରୁ ବିଳାସପୁର ପର୍ଯ୍ୟନ୍ତ ଯେଉଁ ରେଲବାଟ ନିର୍ମାଣ ହେଉଅଛି ତାହାକୁ ସମ୍ବଲପୁର ପର୍ଯ୍ୟନ୍ତ ବୃଦ୍ଧି କରିବାର ପ୍ରସ୍ତାବ ହୋଇଅଛି ଓ ଯେବେ ଏ ପ୍ରସ୍ତାବକୁ ଗବର୍ଣ୍ଣମେଣ୍ଟ ଅନୁମୋଦନ କରନ୍ତି ତେବେ ସମ୍ବଲପୁରଠାରୁ ବମ୍ବେଇ ପର୍ଯ୍ୟନ୍ତ ରେଲ ବାଟରେ ଯିବାଆସିବାର ସମ୍ପୂର୍ଣ୍ଣ ସୁବିଧା ହେବ ଓ କଲିକତା ଯିବାପାଇଁ ବାଟ କିଛି ବୁଲଣି ହେଲେମଧ୍ୟ ରେଲବାଟରେ ଗମନାଗମନ ଯେଉଁପ ସହଜ ଓ ପ୍ରୀତିକର ତହିଁରେ କଲିକତା ଯିବାକୁ କ୍ଳେଶ ହେବନାହିଁ । ଫଳତଃ ସମ୍ବଲପୁର ପର୍ଯ୍ୟନ୍ତ ଯେବେ ରେଲବାଟ ନିର୍ମାଣ ହୁଏଇ ତେବେ ଓଡ଼ିଶାକୁ ରେଲବାଟ ଆସିବାର ଅନେକ ସୁବିଧା ଅଛି ସନ୍ଦେହ ନାହିଁ । ବର୍ତ୍ତମାନ ସମ୍ବଲପୁରକୁ କଟକରୁ ଯିବା ପାଇଁ ଦୁଇଗୋଟି ବାଟଅଛି । ତହିଁମଧ୍ୟରୁ ଅନୁଗୁଳ ଦେଇ ଯେଉଁବାଟ ଯାଇଅଛି ସେ ଟିକିଏ ନିରାପଦ ହେବାକୁ ଶଙ୍କାଯୁକ୍ତ ଅଟଇ । ଏଥିପାଇଁ ବାଟଟି ସିଧା ହେଲେହେଁ ବହୁତ ଲୋକ ଗତାୟାତ କରିବାକୁ ସାହାସ କରନ୍ତି ନାହିଁ । ଅନ୍ୟବାଟ ମହାନଦୀର ଦକ୍ଷିଣ କୂଳରେ ସୋନପୁର ଦେଇ ପଡ଼ିଅଛି । ଏ ବାଟ ପାଖରେ ଲୋକଙ୍କର ବସତି, ଓ ପାହାଡ଼ ଓ ଘାଟି ପ୍ରାୟ ପଡ଼ଇ ନାହିଁ ବୋଲି ଶଙ୍କାଯୁକ୍ତ ନୁହଇ । ଏ ବାଟକୁ କଟକ ଟ୍ରାଙ୍କିକ ରୋଡ଼ ବା ଭୁଲାସଡ଼କ ବୋଲିଯାଏ । ବର୍ତ୍ତମାନ ପଶ୍ଚିମର ଯାତ୍ରୀସବୁ ଏହି ବାଟରେ ପୁରୀକୁ ଆସୁଅଛନ୍ତି । ଉଭୟ ବାଟରେ ପ୍ରାୟ ବୃହତ୍ ନଦୀ ନାହିଁ । କେବଳ କ୍ଷୁଦ୍ର ନାଳ ସବୁ ପଡ଼ଇ ତେବେ ଭୁଲା ରାସ୍ତାରେ ତେଲନଦୀ କିଞ୍ଚିତ ବଡ଼ ହେଲେହେଁ ଏହାର ବିସ୍ତାର ଅଧିକ ନୁହଇଁ । ସୁତରାଂ କଟକଠାରୁ କଲିକତା ପର୍ଯ୍ୟନ୍ତ ରେଲବାଟ

ନିର୍ମାଣ ପଥରେ ପ୍ରଧାନ ପ୍ରତିବନ୍ଧକ ଯେ ବୃହତ୍ ନଦୀମାନ ତାହା ଗଡ଼ଜାତ ବାଟେ ସମ୍ବଲପୁରକୁ ରେଲ ଯିବାରେ ପଡ଼ିବ ନାହିଁ । ଏପରି ରେଲ ବାଟ ନିର୍ମାଣ କରିବାର ଅଧିକାଂଶ ଉପକରଣ ଗଡ଼ଜାତ ମଧ୍ୟରେ ଗାଯ୍ୟାଯିବ ଯଥା - କାଠ, ପଥର ଓ ଚୂନ ପ୍ରାୟ ଖୋଜିବାକୁ ପଡ଼ିବ ନାହିଁ । କନ୍ଦମିତରଯେ ଅନୁସନ୍ଧାନ ହେଲେ ଲୁହା ଓ ପଥରକୋଇଲା ଅନେକ ସ୍ଥଳରେ ପ୍ରାପ୍ତି ହେବାର ଆଶାଅଛି । ଏପରି ଭୂମିର ମୂଲ୍ୟ ଦେବାକୁ ହେବ-ନାହିଁ । ଅଧିକାଂଶ ଜଙ୍ଗଲ ଜମି ପଡ଼ିବ ଓ ରାଜାମାନେ ଆପଣା ୨ ଇଲାକାର ଉନ୍ନତି ଦୃଷ୍ଟିରେ ଆଗ୍ରହ ପୂର୍ବକ ଉଠିନ୍ତା ଜମି ମଧ୍ୟ ଛାଡ଼ି ଦେବେ । ଏଥିରେ ଦେଖାଯାଏ ଯେ ପ୍ରସ୍ତାବିତ ରେଲବାଟ ନିର୍ମାଣ ହେବା ଅତି ସହଜ ଏବଂ ବାଟରେ ବିଶେଷ ଉପକାରର ମଧ୍ୟ ସମ୍ଭାବନା ଅଛି ।

ଓଡ଼ିଶା ଗଡ଼ଜାତର ଅବସ୍ଥା ଯେପରି ମନ୍ଦ ତାହା କାହାରିକୁ ଅବିଦିତ ନାହିଁ ଓ ତହିଁର ପ୍ରଧାନ କାରଣ ଏହି ଯେ ଏସବୁ ସ୍ଥାନ ଏପରି ଏକପାଖରେ ପଡ଼ିଅଛି ଯେ ସେଠାକୁ ଯିବା ଆସିବା କରିବାର କଠିନ ଏବଂ ଇଂରାଜଙ୍କ ଶାସନ ପ୍ରଣାଳୀର ବାହାରେ ଥିବାରୁ ମୁଗଲବନ୍ଦୀ ଲୋକେ କେହି ସାହାସ କରି ସେଠାରେ ବାଣିଜ୍ୟାଦି ବାହୁଲ୍ୟ ଉଦ୍ୟୋଗ କରିବାକୁ ପ୍ରବୃତ୍ତ ହୁଅନ୍ତି ନାହିଁ । ଏସବୁ ସ୍ଥାନକୁ ଭେଦକରି ରେଲବାଟ ଗଲେ ଗଡ଼ଜାତର ଉନ୍ନତି ଅବଶ୍ୟ ହେବ ଏଥିରେ ସନ୍ଦେହ ନାହିଁ । ଓଡ଼ିଶାର ଅଧିକାଂଶ ବାଣିଜ୍ୟ ଦ୍ରବ୍ୟ ଗଡ଼ଜାତରେ ଆସରେ ମାତ୍ର ଅଳ୍ପ ବ୍ୟୟରେ ପ୍ରଧାନ ୨ ବାଣିଜ୍ୟ ସ୍ଥାନକୁ ଦ୍ରବ୍ୟ ନେଇଯିବାର କୌଣସି ସୁବିଧା ନଥିବାରୁ ସେସବୁ ଦ୍ରବ୍ୟର ଆଦର ବଢ଼ୁନାହିଁ । ଯାହା ମହାନଦୀ ବା ବ୍ରାହ୍ମଣୀ ବାଟେ ମୁଗଲବନ୍ଦୀକୁ ଆସି ସଡ଼କ ଅଥବା ସମୁଦ୍ର ବାଟେ କଲିକତାକୁ ଯାଏ । ତହିଁରେ ଖର୍ଚ୍ଚା ବହୁତ ପଡ଼ଇ ସୁତରାଂ ଗଡ଼ଜାତ ଲୋକଙ୍କୁ ଅତି ଶସ୍ତା ମୂଲ୍ୟରେ ବିକ୍ରୟ କରିବାକୁ ହୁଅଇ ବୋଲି ତାହାଙ୍କର ଲାଭ ଅଧିକ ହୁଅଇନାହିଁ । ପ୍ରସ୍ତାବିତ ରେଲବାଟ ଫିଟିଲେ ମୁଗଲବନ୍ଦୀର ଏବଂ ମହାନଦୀର କୂଳପାଖର ଗଡ଼ଜାତ ସମସ୍ତର ବାଣିଜ୍ୟଦ୍ରବ୍ୟ ଅଳ୍ପବ୍ୟୟରେ ଏକାବେଳକେ ବମ୍ବେଇରେ ପ୍ରବେଶ ହେବ ଓ ବମ୍ବେଇ ମହାଜନ-ମାନେ ସମୃଦ୍ଧ ଧନୀ ଥିବାରୁ ଏ ପ୍ରଦେଶକୁ ବାଣିଜ୍ୟ ଉଦ୍ଦେଶ୍ୟରେ ଆସିବେ । ତହିଁରେ ବହୁତ ଧନର ସମାଗମ ହେବ । ମହାନଦୀର କୂଳଦେଇ ସମ୍ବଲପୁରକୁ ରେଲ ଗଲେ ଦେଖାଯାଏ ଯେ ଏକ ପାଖରେ ବାଙ୍କୀ, ଖଣ୍ଡପଡ଼ା, ଦଶପଲ୍ଲା, ବୌଦ୍ଧ, ସୋନପୁର ଏବଂ ଅନ୍ୟ ପାଖରେ ଆଠଗଡ଼, ତିଗିରିଆ, ବଡ଼ମ୍ବା, ନରସିଂହପୁର, ଅନୁଗୁଳ, ଆଠମଲ୍ଲିକ ଓ ରେଢ଼ାଖୋଲ ଗଡ଼ଜାତ ମାନଙ୍କର ସାକ୍ଷାତ୍ ଉପକାର ହେବ ଏବଂ ବାଣିଜ୍ୟ ପ୍ରଭାବରେ ଏ ରାଜ୍ୟମାନ ଉଠିନ୍ତା ହୋଇ ଯେମନ୍ତ ଧନାଗମ ହେବ ତେମନ୍ତ ଏସବୁ ସ୍ଥାନର ସଭ୍ୟତା ବୃଦ୍ଧି ହେବ । ଅତଏବ ଏତାଦୃଶ ଉପକାର

ଯେ କାର୍ଯ୍ୟରେ ହେବାର ଅଛି ଶୀଘ୍ର ତହିଁର ଅନୁଷ୍ଠାନ କରିବା ଗବର୍ଣ୍ଣମେଣ୍ଟଙ୍କ ପକ୍ଷରେ କି ପର୍ଯ୍ୟନ୍ତ ଉଚିତ ତାହା ଆମ୍ଭେମାନେ ସମୁଚିତରୂପେ ବ୍ୟକ୍ତ କରିନପାରୁଁ । ଏଥିପାଇଁ ଓଡ଼ିଶାର ରାଜା ଜମିଦାର ଓ ଅପର ସାଧାରଣଙ୍କୁ ଉଚିତ ଯେ ଏ ବିଷୟରେ ଶୀଘ୍ର ଗବର୍ଣ୍ଣମେଣ୍ଟଙ୍କୁ ଆବେଦନ କରନ୍ତୁ । ବର୍ତ୍ତମାନର ସୁଯୋଗକୁ ପରିତ୍ୟାଗ କଲେ ଆଉ ସମୟରେ ଗବର୍ଣ୍ଣମେଣ୍ଟଙ୍କୁ ଜାଗ୍ରତ କରିବାକୁ କଠିନ ହେବ । ଓଡ଼ିଶାର ମୁଗଲ-ବନ୍ଦୀ ସକାଶେ ନାଲ ଓ ସମୁଦ୍ର ବାଟେ କଲିକତାକୁ ଯିବାର ଯେଉଁ ସୁଯୋଗ ଗବର୍ଣ୍ଣ-ମେଣ୍ଟ କରିଅଛନ୍ତି ତାହାହିଁ ବର୍ତ୍ତମାନ ନିମିତ୍ତ ଯଥେଷ୍ଟ ଅଟଇ ଓ ଯେବେ ଗଡ଼ଜାତରେ ରେଲ ହୁଅଇ ତେବେ ଅଧିକାଂଶ ବାଣିଜ୍ୟ ଦ୍ରବ୍ୟ ସେବାଟେ ବାହାରିବ ଓ ପଶ୍ଚିମ ଓ ଉତ୍ତର ପ୍ରଦେଶର ଯାତ୍ରିମାନେ ସେହିବାଟେ ଗମନାଗମନ କରିବେ ସୁତରାଂ ନାଲ ବାଟର ଉକ୍ତ ଅନେକ ଉଣା ହୋଇଯିବ ଓ କଟକ ପୁରୀ ଏବଂ ଗଡ଼ଜାତରେ ବ୍ୟବହାର ହେଉଥିବା ଇଉରୋପୀୟ ଦ୍ରବ୍ୟମାନ ବମ୍ବେଇ ଠାରୁ ଆସିବ । କେବଳ କଲିକତା ଉପରେ ଓଡ଼ିଶାକୁ ନିର୍ଭର ରହିବାକୁ ହେବନାହିଁ ।

୩୮୪ । ସାପ୍ତାହିକ ସମ୍ବାଦ ।

ଗତ ଜୁଲାଇ ମାସର ଉତ୍କଳ ଦର୍ପଣ ଆମ୍ଭେମାନେ ପାଠକରି ଆନନ୍ଦିତ ହୋଇଅଛୁଁ । ପତ୍ରିକାକୁ ସୁପାଠ୍ୟ କରିବାକୁ ସମ୍ପାଦକ ଯେମନ୍ତ ଚେଷ୍ଟା କରଅଛନ୍ତି ତହିଁ ସଙ୍ଗେ ୨ ଏଥିର ଗ୍ରାହକ ସଂଖ୍ୟା ବଢ଼ିଲେ ବଡ ସୁଖକର ହେବ, ସର୍ବସାଧାରଣଙ୍କର ଏ ବିଷୟରେ ମନୋଯୋଗୀ ହେବାର ଉଚିତ ।

୩୮୫ । ଗତ ପ୍ରକାଶିତ ଉତ୍କଳ ହିତୈଷିଣୀ ଯଥା ସମୟରେ ବାହାରି ଅଛି ବଡ଼ ସୁଖର ବିଷୟ ଅଟଇ ତଥାଚ ଏଥିରେ ବ୍ୟକ୍ତ ହୋଇଅଛି ଯେ ଆମ୍ଭେମାନେ ଏହାର ହାନିର ତତ୍ପରରେ ଅଛୁଁ । କି ଭ୍ରମ !!

୩୮୬ । ବାଲେଶ୍ୱର ସମ୍ବାଦବାହିକାରୁ ଅବଗତ ହେଲୁଁ ଯେ ଗତ ମାସରେ ବାଲେଶ୍ୱରରେ ଭାରି ବୃଷ୍ଟି ଓ ନଦୀ ବଢ଼ି ହୋଇଥିଲା । ଚାରି ପାଞ୍ଚ ଦିନ ପର୍ଯ୍ୟନ୍ତ ନଈକୂଳ ମାନ ବୁଡ଼ି ରହିଥିଲା । ଜଣାଯାଏ ଯେ ଏଥିରେ ଶସ୍ୟର କ୍ଷତି ହୋଇନାହିଁ ।

( ୯ମ ଭାଗ, ୧୨ । ୯ । ୧୮୭୪, ସଂଖ୍ୟା ୩୭ )

୩୮୭ । ବନ୍ଦରର ବାଟେ ଦ୍ରବ୍ୟାଦି ଯାତାୟାତ କରିବାର ଅନେକ ସୁଯୋଗ ଗବର୍ଣ୍ଣମେଣ୍ଟ କରି ଦେଇ ଅଛନ୍ତି ଓ ବନ୍ଦରର ଠିକା ମଧ୍ୟ ବ୍ୟୟ କରୁଅଛନ୍ତି

ମାତ୍ର ଦୁଃଖର ବିଷୟ ଯେ ଫଳ ସେପରି ଭଲ ହେଉନାହିଁ । ସାଧାରଣ ସମୟରେ ଦ୧୦ନର ଊଣାରେ କଲିକତାର ଦ୍ରବ୍ୟ କଟକରେ ମିଳଇ ନାହିଁ ଓ ବର୍ଷା ଦିନର କଥା ତ ସ୍ୱତନ୍ତ୍ର । ଗତମାସ ତା ୨୧ ରିଖର ଜାହାଜରେ ଯେ ଦ୍ରବ୍ୟସବୁ କଲିକତାରୁ ଆସିଅଛି ତାହା ଅଦ୍ୟାପି କଟକରେ ପହୁଞ୍ଚି ନାହିଁ । ବର୍ଷା ଓ ବନ୍ୟା ଏଥିର କାରଣ ବୋଲି କଥିତ ହୁଅଇ କିନ୍ତୁ ଯତ୍ନ କଲେ ଯେ ଏପରି ଦୁର୍ଘଟନାରେ ସୁଦ୍ଧା ଦଶ ଦିନରେ ନଗ୍ଗିଘାଟେ ମାଲ ଆସିପାରେ ଏଥିରେ ସନ୍ଦେହ ନାହିଁ । ଏଥିପାଇଁ ଉଇଦର କମ୍ପାନିଙ୍କୁ ନିନ୍ଦା କରିବାକୁ ହେବ କାରଣ ସେ କଣ୍ଟ୍ରେକ୍ଟ ହୋଇ କେବଳ ନାଳକୁ ଗୃହି ବସିଲେ । ଫଳତଃ ଗବର୍ଣ୍ଣମେଣ୍ଟ ଯେବେ ବଡାଘର ବନ୍ଦରକୁ ଭଲ କରିବା ପାଇଁ ଏତେ ବ୍ୟୟ କରିଅଛନ୍ତି ତେବେ କଟକ ପର୍ଯ୍ୟନ୍ତ ମାଲ ଆସିବାର ସୁଯୋଗ କାହିଁକି କରୁନାହାନ୍ତି ? ଯେବେ ଏହା କରିବାକୁ ବହୁତ ବ୍ୟୟ ପଡ଼ିବ ତେବେ ଗବର୍ଣ୍ଣମେଣ୍ଟ ଜାଣିପାରିବେ ଯେ ବଡାଘରର ଉନ୍ନତି ସକାଶେ ଅର୍ଥ ବ୍ୟୟ କରିବା ଅନର୍ଥକ ବରଂ ତାହା ପରିତ୍ୟାଗ କରି ଅନ୍ୟ କୌଣସି ସୁଯୋଗ ଦେଖିବାର ଚେଷ୍ଟା କରନ୍ତୁ । ସ୍ଥଳପଥରେ କଲିକତାରୁ ମାଲ ଆସିବାକୁ ଯେ ବ୍ୟୟ ଓ ସମୟ ଲାଗଇ ତେବେ ବଡାଘର ବାଟେ ତହିଁର ଉଣା ନ ହେଲା ତେବେ ଏସ ବନ୍ଦର ଦ୍ୱାରା କେଉଁ ଉପକାର ହେବ ?

୩୮ । ସାପ୍ତାହିକ ସମ୍ବାଦ ।

ପଟାମୁଣ୍ଡାଇ ନାଏବ ସେଠା ସ୍କୁଲରେ ବଙ୍ଗଳା ଚଳାଇବାକୁ ଚେଷ୍ଟା କରୁଥିବାର ଜଣେ ପତ୍ର ପ୍ରେରକ ଲେଖି ଅଛନ୍ତି ଓ ଏହି ଉଦ୍ଦେଶ୍ୟରେ ସେ ସ୍କୁଲର ବିଲ ବଙ୍ଗଳାରେ ଲେଖି ପଠାଇଥିଲେ ମାତ୍ର ଜଏଣ୍ଟ ଇନସ୍ପେକ୍ଟର ତାହା ଫେରାଇ ଦେଲେ ।

## ( ୯ମ ଭାଗ, ୧୯ । ୯ । ୧୮୭୪, ସଂଖ୍ୟା ୩୮ )

୩୯ । ପୁରୁଷୋତ୍ତମ ଚନ୍ଦ୍ରିକା ନାମରେ ଖଣ୍ଡିଏ ପାକ୍ଷିକ ସମ୍ବାଦପତ୍ର ପୁରୀରେ ବାହାରିଅଛି ଓ ଆମ୍ଭେମାନେ ଏହାର ପ୍ରଥମ ଖଣ୍ଡ ପାଇଥିବାର କୃତଜ୍ଞତା ପୂର୍ବକ ସ୍ୱୀକାର କରୁଅଛୁଁ । ଏହାର ପ୍ରକାଶକ ବାବୁ ଖିରୋଦନାଥ ମିତ୍ର ଓ ଏହା ପୁରୀ ନିବାସୀ ବାବୁ ରାମଗୋପାଳ ଗୃହସ୍ଥାଙ୍କ ସ୍ଥାପିତ ଭକ୍ତି ପ୍ରଦାୟିନୀ ଯନ୍ତ୍ରାଳୟରେ ମୁଦ୍ରିତ । ଏହାର କଳେବର ୮ପେଜି ଏକ ଫର୍ମା ଅର୍ଥାତ ସାଧାରଣ ପୁସ୍ତକ ଆକାରରେ ଆଠପୃଷ୍ଠା ଓ ବାର୍ଷିକ ମୂଲ୍ୟ ଟ୩ଙ୍କା । ପତ୍ରିକାର ଉଦ୍ଦେଶ୍ୟ ପ୍ରକାଶ ନାହିଁ କିନ୍ତୁ ଏଥିରେ କେବଳ ଜଗନ୍ନାଥଙ୍କ ଯାତ୍ରାର ବିବରଣ ଲେଖା ଥିବାରୁ ଏହାକୁ ମାଦଳା ପାଞ୍ଜିର ଏକ ଅଂଶ ବୋଲିପାଇ ପାରେ ଓ ଭାଷା ଏମନ୍ତ ମନ୍ଦ ହୋଇଅଛି ଯେ ପଢ଼ିବାର

କଠିନ । ଆମ୍ଭେମାନେ ଜାଣୁ ଯେ ଯନ୍ତ୍ରାଳୟ ନୂତନ ସ୍ଥାପିତ ହୋଇଅଛି ଓ ବୋଧ ହୁଅଇ ନୂତନ କର୍ମଗୃହୀସବୁ ରଦ୍ଧ ଶିକ୍ଷା କରୁଅଛନ୍ତି ବୋଲି ଛପା ଏତେ ମନ୍ଦ ହୋଇଅଛି ମାତ୍ର ଏତେ ତର ୨ ହୋଇ ପତ୍ରିକା ବାହାର କରିବାର ପ୍ରୟୋଜନ କି ? ମାସେ ଅଧେ କର୍ମଗୃହୀଙ୍କୁ ଶିକ୍ଷା ଦେଇ ଅଥବା ଉପଯୁକ୍ତ ଲୋକ ରଖି ଭଲ ଛପା ହେଲେ ଉତ୍ତମ କାଗଜ ବାହାର କରିଥିଲେ ଭଲ ହୋଇଥାନ୍ତା ଓ ତହିଁରେ ଲୋକ-ଙ୍କର ଆଗ୍ରହ ବଢ଼ନ୍ତା । ଏଥିପାଇଁ ଆମ୍ଭେମାନେ ଭରସା କରୁ କି ପତ୍ରିକାର ଅଧିକାରୀମାନେ ଏମନ୍ତ ଯତ୍ନ କରନ୍ତୁ କି ଯହିଁରେ ତାହା ସର୍ବସାଧାରଣଙ୍କ ମନ ଓ ଆଖିକୁ ରୁଚିବ ଓ ତଦ୍ଦ୍ୱାରା ପତ୍ରିକା ଚିରସ୍ଥାୟୀ ହେବ ।

୩୯୦ । ଏ ଦେଶୀୟ ସିଭିଲ ସରଭିସ ।

ଏ ଦେଶୀୟ ସିଭିଲ ସର୍ଭିସ ପରୀକ୍ଷାର ଚଳିତ ବର୍ଷର ଫଲ ସମ୍ପର୍କରେ ବଙ୍ଗାଲ ଗବର୍ଣ୍ଣମେଣ୍ଟଙ୍କ ନିର୍ଦ୍ଧାରଣ ବାହାରିଅଛି । ତହିଁରୁ ଦେଖାଯାଏ ଯେ ଏବର୍ଷ ଜ୩୮୪ଣ ପରୀକ୍ଷା ଦେବାକୁ ଉପସ୍ଥିତ ହୋଇଥିଲେ ତହିଁ ମଧ୍ୟରୁ ଜ୨୦୦ଣ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି । ଉତ୍ତୀର୍ଣ୍ଣ ହେବା ବ୍ୟକ୍ତିଙ୍କ ମଧ୍ୟରେ ଜ୩୮ଣ ପ୍ରଥମ, ଜ୩୮ଣ ଦ୍ୱିତୀୟ, ଓ ଅବଶିଷ୍ଟ ଜ୧୨୪ଣ ତୃତୀୟ ଶ୍ରେଣୀରେ ଭୁକ୍ତ ହୋଇଅଛନ୍ତି । ଏମାନଙ୍କ ମଧ୍ୟରେ ଦୁଇଜଣ ଆସାମ ବାସୀ ଥିବାରୁ ସେମାନେ ସ୍ୱପ୍ରଦେଶରେ କର୍ମ କରିବେ । ବାକି ଜ୧୯୮ଣଙ୍କୁ ଗବର୍ଣ୍ଣମେଣ୍ଟ ବଙ୍ଗଳାର କମିଶନର ମାନଙ୍କ ମଧ୍ୟରେ ବାଣ୍ଟିଦେଇ ଅଛନ୍ତି । ଏରୂପେ ଓଡ଼ିଶା ବିଭାଗରେ ନିମ୍ନଲିଖିତ ବ୍ୟକ୍ତିମାନେ ପଡ଼ିଅଛନ୍ତି । ଯଥା

ପ୍ରଥମ ଶ୍ରେଣୀ

୧ । ଭୂୟାଁ ଅବଦୁର ରହିମାନ
୨ । ନନ୍ଦ କିଶୋର ଦାସ

ଦ୍ୱିତୀୟ ଶ୍ରେଣୀ

୧ । ଉମା ଚରଣ ଚକ୍ରବର୍ତ୍ତୀ
୨ । କୁମୁଦ ନାଥ ମୁଖୁର୍ଯ୍ୟା

ତୃତୀୟ ଶ୍ରେଣୀ

୧ । ମନ୍ମଥ ଚନ୍ଦ୍ର ଦାସ
୨ । ଉପେନ୍ଦ୍ର ଚନ୍ଦ୍ର ମଜୁମଦାର
୩ । ଗୋଲକ ନାଥ ମୁନ୍‌ସୀ
୪ । ଦୁର୍ଗାଦାସ ମୁଖୁର୍ଯ୍ୟା
୫ । ନାରାୟଣ ଚନ୍ଦ୍ର ନାୟକ
୬ । ଶ୍ରୀନାଥ ବାନୁର୍ଯ୍ୟା
୭ । ମହେନ୍ଦ୍ର ନାଥ ମଲ୍ଲିକ

× × ×

୩୯୧ । ସାପ୍ତାହିକ ସମ୍ବାଦ ।

ପୁରୁଷୋତ୍ତମଚନ୍ଦ୍ରିକାରୁ ପ୍ରକାଶ ଯେ ଜଗନ୍ନାଥଙ୍କ ଗୀତ ସମ୍ପୃକ୍ତ ପୂର୍ବାପେକ୍ଷା କିଛି ଭଲ ହେବାର ଦେଖାଯାଏ । ଆଗେ ପ୍ରାତଃକ୍ରିୟା ଅପରାହ୍ଣରେ

ବୁଇପ୍ରଦ୍ଧର ମଧ୍ୟରେ ତାହାସବୁ ସମାପ୍ତ ହେଉଅଛି । ଜଗନ୍ନାଥ ହେଉଥିଲେ ଏହେ ସେବକଗଣ ସବୁ ହେତୁକ ଯେବେ ଏତକ ଫଳ ହୋଇଥାଏ ତେବେ ସୁଦ୍ଧା ସବୁ ସଫଳ ହେବାର ବୋଲିପିବ । ମନ୍ଦିର ସୁପରିଣ୍ଟେଣ୍ଡେଣ୍ଟ ଅର୍ଥାତ୍ ପୁରୀର ମହାରାଜା ସହରର ପ୍ରାଣ ସମ୍ପନ୍ନାହ୍ଲାନ୍ତ ସତ୍ୟ ମାତ୍ର ଯେବେ ସେ ସଭାର ଅଭିପ୍ରାୟକୁ ଅବଗତ ହୋଇ ଆପଣାର କର୍ତ୍ତବ୍ୟ ଜାଣିବା ଓ ତଦ୍ଧିତ ପ୍ରକାର ଲେଡ଼ବାକୁ ଯତ୍ନ କରନ୍ତି ତେବେ ସେ ନିଶ୍ଚୟ ଜନସମାଜର ଆଦରଣୀୟ ହେବେ ।

୩୯୨ । ଉକ୍ତ ପତ୍ରିକାଙ୍କ ମତରେ ବନ୍ଧ ସ୍ଥାପନ ହେବାର କୌଣସି ଧନ ନିର୍ଣ୍ଣୟ ହୋଇନାହିଁ କେବଳ ନିଯୁମିତ ରୂପେ ସେବା ନିମନ୍ତେ ମାଦଳା ପାଞ୍ଜିରେ ଏକବଦନ ନର୍ଦ୍ଦିଷ୍ଟ ହୋଇଅଛି ମାତ୍ର ତାହା ଶାସ୍ତ୍ର ନୁହେ ଓ କୌଣସି ଶାସ୍ତ୍ରରେ ଏ ପ୍ରକାର ଧନ ନିରୂପଣ ହେବାର ଦେଖା ଯାଇନାହିଁ । ଏକଥା ସତ୍ୟ ହେଲେ ସବୁ ବିବାଦ ନିଷ୍ପତ୍ତି ହେଲା ।

## ( ୯ମ ଭାଗ, ୧୦ । ୧୦ । ୧୮୭୪, ସଂଖ୍ୟା ୪୧ )

୩୯୩ । ପୁରୁଷୋତ୍ତମଚନ୍ଦ୍ରିକାର ତୃତୀୟ ସଂଖ୍ୟା ଆମ୍ଭେମାନେ ଦେଖି ଆନନ୍ଦିତ ହୋଇଅଛୁଁ । ଏହାର ଛପା ପୂର୍ବାପେକ୍ଷା ଅନେକ ଭଲ ହୋଇଅଛି ଏବଂ ଏଥିରେ ଅନେକ ଗୁଡ଼ଏ ସ୍ଥାନୀୟ ସମ୍ବାଦ ଅଛି । ଆମ୍ଭେମାନେ ପ୍ରଥମ ସଂଖ୍ୟା ଦେଖି ଚନ୍ଦ୍ରିକାକୁ ମାଦଳା ପାଞ୍ଜି ପ୍ରାୟ ମଣିଥିବାର ସମ୍ପାଦକ ରୁଷ୍ଟ ହୋଇଅଛନ୍ତି ସତ୍ୟ ମାତ୍ର ଯେଉଁ ଅଂଶର ଆମ୍ଭେମାନେ ତୁଳନା କରିଥିଲୁଁ ତାହା ପରିତ୍ୟାଗ କରିଅଛନ୍ତି ସୁଖର ବିଷୟ ଅଟଇ । ବାଲ୍ୟାବସ୍ଥାରେ ଅନେକ ଦୋଷ ଦେଖାଗଲେ ମଧ୍ୟ ସାଧ୍ୟ ପକ୍ଷରେ ଯେଉଁ ବାଳକ ତ୍ରୁଟି କରଇ ତାହାକୁ ତାଡ଼ନା ସହିବାକୁ ହୁଅଇ ।

୩୯୪ । ପାଠ୍ୟପୁସ୍ତକର ଦୁର୍ଲଭତା ।

ବାଲେଶ୍ୱର ସମ୍ବାଦବାହିକା ଲେଖିଅଛନ୍ତି ଯେ ଛାତ୍ରବୃତ୍ତି-ବୃତ୍ତି ପରୀକ୍ଷା ନିମିତ୍ତ ଯେ ସମସ୍ତ ପୁସ୍ତକ ନିର୍ବାଚିତ ହୋଇଅଛି ସେସବୁ ବାଲେଶ୍ୱର ଅଞ୍ଚଳର ଅନେକ ପିଲମାନେ ଅଦ୍ୟାବଧି ପାଇନାହାନ୍ତି । ଏ ପୁସ୍ତକମାନଙ୍କ ମଧ୍ୟରୁ ଅଧି-କାଂଶ କଟକରେ ଥିବାରୁ ତାହା ପ୍ରାପ୍ତି ବିଷୟରେ ବଡ଼ ବ୍ୟାଘାତ ହୋଇଅଛି । ସମ୍ପାଦକ ଆହୁରି ଲେଖନ୍ତି କି ସ୍ୱୟଂ ବାବୁ ଅଛନ୍ତି ଯେ ପୁସ୍ତକପାଇଁ କଟକକୁ ପତ୍ର ଲେଖିଲେ ପୁସ୍ତକ ମିଳିବାର ତେଣିକି ଥାଉ ପତ୍ରର ଉତ୍ତର ପାଇବା ସୁଦ୍ଧା ତାହାର କପାଳରେ ଘଟଇନାହିଁ ।

ସମ୍ବାଦବାହିକାର ଉପରଲିଖିତ କାର୍ଯ୍ୟରେ ଆମ୍ଭେମାନେ ବଡ଼ ଦୁଃଖିତ ଓ ଲଜ୍ଜିତ ହୋଇଅଛୁଁ । ଓଡ଼ିଶା ବିଦ୍ୟାଳୟର ଅଧିକାଂଶ ପାଠ୍ୟ ପୁସ୍ତକ ଆମ୍ଭମାନଙ୍କ ଯନ୍ତ୍ରାଳୟରେ ବର୍ଦ୍ଧିତ ହୁଅଇ ଓ ଆମ୍ଭେମାନେ ନିଷ୍ଠାପୂର୍ବକ କହୁଅଛୁଁ ଯେ ପାଠ୍ୟ ପୁସ୍ତକ ଯୋଗାଇବା ବିଷୟରେ କଟକ ପ୍ରିଣ୍ଟିଂ କମ୍ପାନୀ କେତେବେଳେହେଁ ତ୍ରୁଟି କରିନାହାନ୍ତି । କମ୍ପାନୀଙ୍କର ନିୟମ ଏହି ଯେ କୌଣସି ବିଷୟରେ କେହି ପତ୍ର ଲେଖିଲେ ଶୀଘ୍ର ହେଉ ବା ବିଳମ୍ବ ହେଉ ( କାର୍ଯ୍ୟବଶତଃ କେବେ ବିଳମ୍ବ ହୋଇ ଥାଏ ) ଅବଶ୍ୟ ତହିଁର ଉତ୍ତର ପାଇବ । ଚଳିତ ବର୍ଷରେ ଯେତେଲୋକ କମ୍ପାନୀଙ୍କ ନିକଟକୁ ପୁସ୍ତକ ପାଇଁ ପତ୍ର ଲେଖିଅଛନ୍ତି ପ୍ରାୟ କାହାରିକୁ ନୈରାଶ ହେବାକୁ ହୋଇ ନାହିଁ । ଏମନ୍ତ କି ହାତର ଡାକ ମାହାସୁଲ ସୁଦ୍ଧା ଦିଆଯାଇ ପୁସ୍ତକ ଉଧାର ସ୍ୱରୂପ ପଠାଯାଇ ମାଏ । ପରେ ତହିଁର ମୂଲ୍ୟ ଆଦାୟ ହୋଇ ଅଛି ଓ ପୁସ୍ତକାର୍ଥୀଙ୍କ ସୁଯୋଗ ସକାଶେ କେବେ କେବେ ଅପର ସ୍ଥାନରୁ ଉଧାର ଆଣି ବିନା କମିଶନରେ ପରିଚିତ ଗ୍ରାହକଙ୍କୁ ଦିଆ ଯାଇଅଛି । ସମ୍ପାଦକ ବାଲେଶ୍ୱର ନଗରଠାରେ ଏହାର ଅନୁସନ୍ଧାନ କଲେ ଜାଣି ପାରିବେ, ତେବେ ବ୍ୟବସାୟର ନିୟମାନୁସାରେ କୌଣସି ଅପରିଚିତ ଲୋକ ଯେବେ ବିନା ଅଗ୍ରିମ ମୂଲ୍ୟରେ ପୁସ୍ତକ ପାଇନଥାନ୍ତି ସେକଥା କହି-ନପାରି । ସମ୍ପାଦକ ମହାଶୟ ଏଥିର ଅନୁସନ୍ଧାନ ନକରି ଯେପ୍ରଚ ମୋଟରେ କଟକୀ ପୁସ୍ତକ ବିକ୍ରେତାଙ୍କର ଦୁର୍ନାମ କରିଅଛନ୍ତି ତହିଁରେ କଟକ ପ୍ରିଣ୍ଟିଂ କମ୍ପାନୀଙ୍କର ମଧ୍ୟ ଦୁର୍ନାମ ହୋଇଅଛି । ଆମ୍ଭେମାନେ ଭରସାକରୁଁ ଯେ ସମ୍ବାଦବାହିକା ଏଥିର ଉପଯୁକ୍ତ ପ୍ରତିକାର କରିବେ, ନୋହିଲେ ତାଙ୍କ ଜାଣିବାରେ କେତେଥର ତାହାଙ୍କୁ ଅଥବା ଅନ୍ୟ ବ୍ୟକ୍ତିଙ୍କୁ ପୁସ୍ତକ କିଂବା ପତ୍ରର ଉତ୍ତର ଦେଇନାହୁଁ ତାହା ପ୍ରକାଶ କଲେ ସର୍ବସାଧାରଣ ଜାଣିପାରିବେ ଯେ ତାହାଙ୍କର ଲେଖା ଅସଙ୍ଗତ ନୁହଇ ଓ ପ୍ରିଣ୍ଟିଂ କମ୍ପାନୀ ବାସ୍ତବରେ ନିନ୍ଦାର ପାତ୍ର ଅଟନ୍ତି ।

ପୁସ୍ତକ ବିକ୍ରୟ ସୁବିଧା ସମ୍ପର୍କରେ ଆମ୍ଭମାନଙ୍କର କିଛି ବକ୍ତବ୍ୟ ଅଛି ଏ ପରେ ପ୍ରକାଶ କରିବୁଁ ।

୩୯୫ । ସାପ୍ତାହିକ ସମ୍ବାଦ ।

ଉତ୍କଳ ସୁହୃତ ଅବଗତ ହେଲୁଁ ଯେ ଆମ୍ଭମାନଙ୍କର କମିଶନର ଶ୍ରୀଯୁକ୍ତ ରିବନସା ସାହେବ କଲିକତା ମେଡ଼ିକାଲ ସ୍କୁଲ ଓ ମେଡିକାଲ କଲେଜରେ ପଢ଼ୁଥିବା କେଏଣ ଓଡ଼ିଶାବାସୀ ଛାତ୍ରଙ୍କୁ ପୁସ୍ତକ ଓ ଯନ୍ତ୍ରାଦି କ୍ରୟ କରିବାର ସାହାଯ୍ୟ ପାଇଁ ଟ୨୫ଙ୍କା ଲେଖାଏଁ ଦାନକରି ଅଛନ୍ତି । ଓଡ଼ିଶାବାସୀଙ୍କ ଉନ୍ନତି ପକ୍ଷରେ

ଆମ୍ଭମାନଙ୍କର କମିଶନରଙ୍କର ଦାନଶୀଳତା ଅସତ୍ୟ ସର୍ବସାଧାରଣ ବର୍ଷକୁ ବର୍ଷ ଦେଖି ଆସୁଅଛନ୍ତି ଓ ବର୍ତ୍ତମାନ ଦାନ ତହିଁର ଆଉ ଗୋଟିଏ ପ୍ରଶଂସନୀୟ ଉଦାହରଣ ଅଟେ । ଓଡ଼ିଶା ବାସୀମାନେ କେବେ ଏପ୍ରକାର ମହତ୍ତ୍ୱ କାର୍ଯ୍ୟର ଅନୁକରଣ କରିବେ ।

( ୯ମ ଭାଗ, ୩୧ । ୧୦ । ୧୮୭୪, ସଂଖ୍ୟା ୪୩ )

୩୧୬ । ଓଡ଼ିଶା ସର୍କାରେ ଜଣେ ସ୍ୱତନ୍ତ୍ର ସ୍କୁଲ ଇନସ୍ପେକ୍ଟର ନିଯୁକ୍ତ ହେବାରେ ଆମ୍ଭେମାନେ ଯେତେ ଆନନ୍ଦିତ ହୋଇଅଛୁଁ ବାବୁ ଚଣ୍ଡୀ ଚରଣ ବାନୁର୍ଯ୍ୟାଙ୍କ ବଦଳରେ ତହୁଁ ଅଧିକ ଦୁଃଖିତ ଅଛୁଁ । ନୂତନ ଇନସ୍ପେକଟରଙ୍କ କର୍ମରେ ରବର୍ଟ ପାଉ ସାହେବ କଷ୍ଟ ଦନପାଇଁ ନିଯୁକ୍ତ ହୋଇଅଛନ୍ତି । ଏ ମହାଶୟ ହୁଗୁଲୀ କଲେଜର ଅଧ୍ୟାପକ ଥିଲେ । ଏଠାର ଜଏଣ୍ଟ ଇନସ୍ପେକ୍ଟର ପଦ ଉଠିଗଲା ଓ ଏଜର ସାହେବ କଟକ ହାଇସ୍କୁଲର ପ୍ରଧାନ ଶିକ୍ଷକ ହେଲେ । ଏକାବେଳେକେ ଯେ ପ୍ରକାର ଏ କର୍ମ ସବୁର ବନ୍ଦୋବସ୍ତ ହୋଇଅଛି ତହିଁର ଏପ୍ରକାର ଅନୁମାନ ହେଉଛି କି ଯେମନ୍ତ ଏଜର ସାହେବଙ୍କୁ କର୍ମରେ ରଖିବାପାଇଁ ଚଣ୍ଡୀବାବୁ ସ୍ଥାନାନ୍ତରିତ ହୋଇଅଛନ୍ତି । ଯାହା ହେଉ ଚଣ୍ଡୀବାବୁ କଟକ ହାଇସ୍କୁଲର ପ୍ରଧାନ ଶିକ୍ଷକ ସ୍ୱରୂପ ଅନେକ ମଙ୍ଗଳ କରିଅଛନ୍ତି ଏବଂ ଆମ୍ଭେମାନେ ଆନନ୍ଦର ସହିତ ଶୁଣିଲୁଁ ଯେ ସ୍କୁଲର ବର୍ତ୍ତମାନ ଓ ପୂର୍ବଳ ଛାତ୍ରମାନେ ତାହାଙ୍କଠାରେ ଆପଣା ଭକ୍ତି ଓ କୃତଜ୍ଞତା ଦେଖାଇବା ସକାଶେ ଏକ ଅଭିନନ୍ଦନ ପତ୍ର ତାହାଙ୍କୁ ଅର୍ପଣ କରିବାକୁ ପ୍ରସ୍ତୁତ ଅଛନ୍ତି ।

୩୧୭ । ଶ୍ରୀଯୁକ୍ତ ରବର୍ଟ ପାଉ ସାହେବ କଷ୍ଟଦନ ପାଇଁ ଓଡ଼ିଶା ସ୍କୁଲ ସମୂହର ଇନସ୍ପେକ୍ଟର ନିଯୁକ୍ତ ହେବାର କାରଣ ସ୍ୱରୂପ କେହି କହନ୍ତି ଯେ ଏ ପଦରେ କୌଣସି ଓଡ଼ିଆକୁ ନିଯୁକ୍ତ କରିବା କମିଶନର ସାହେବଙ୍କର ଏକାନ୍ତ ଇଚ୍ଛା । ମାତ୍ର ଆପାତତଃ ବାବୁ ଙ୍କ ଜାଣିବାରେ ଏ ପଦର ଉପଯୁକ୍ତ କେହି ଓଡ଼ିଆ ନଥିବାରୁ ଉକ୍ତ ସାହେବଙ୍କୁ ଦିଆ ଯାଇଅଛି । ଯେବେ ଏକଥା ସତ୍ୟ ହୁଅଇ ତେବେ କମିଶନର ସାହେବଙ୍କ ବିଚାରକୁ ଧନ ବୋଲିବାକୁ ହେବ । ଓଡ଼ିଆଙ୍କ ଭଲ କରିବେ ବୋଲି ୨୮ ବର୍ଷ ହେଲା ଘୋଷି ହେଉଅଛନ୍ତି ଅଥଚ କାର୍ଯ୍ୟରେ କେବଳ ବନମାଳୀ ବାବୁ ଓ ନନ୍ଦ କିଶୋର ବାବୁ ଭିନ୍ନ କାହାରି ଭଲ କରିବାର ଦେଖା ନଥିଲା । କୌଣସି ଉଚ୍ଚ ପଦପାଇଁ ଏଠାରେ କି ଆଉ କୌଣସି ଓଡ଼ିଆ ଉପଯୁକ୍ତ ନାହାନ୍ତି ? ପୁଣି ଓଡ଼ିଆ ଶବ୍ଦର ଅର୍ଥରେ ଏହାଙ୍କ ବିଚାର ଏମନ୍ତ ଏକ ବାଗିଛା ଯେ ଓଡ଼ିଶାରେ ପୁରୁଷାନୁକ୍ରମେ ବାସ କରୁଥିବା ଅନେକ ଲୋକ ତାହା ମଧ୍ୟରେ ଆସୁ ନାହାନ୍ତି । ସେ ଯାହା ହେଉ ଓଡ଼ିଶାରେ ଇନସ୍ପେକ୍ଟର ହେବା ଯୋଗ୍ୟ କେହି ଓଡ଼ିଆ ନ ଥିଲେ କି ନାହିଁ କମିଶନର ସାହେବ କି,

ଏଥିର ଅନୁସନ୍ଧାନ କରିଥିଲେ ? ଆମ୍ଭମାନଙ୍କ ବିବେଚନାରେ ସେ ତାହାଁ କରିନାହାନ୍ତି କାରଣ କରିଥିଲେ ବାବୁ ମଧୁସୂଦନ ଦାସଙ୍କୁ କି ହେତୁରୁ ଅଯୋଗ୍ୟ ବିବେଚନା କଲେ ବୁଝାଯାଉନାହିଁ । ସେତ ଓଡ଼ିଆଙ୍କ ମଧ୍ୟରେ ବିଶ୍ୱବିଦ୍ୟାଳୟର ଉଚ୍ଚପଦ ପାଇଅଛନ୍ତି ତେବେ ସେ ଖ୍ରୀଷ୍ଟିୟାନ ହୋଇଅଛନ୍ତି ବୋଲି ଯେବେ ଅଯୋଗ୍ୟ ହୋଇଅଛନ୍ତି ତେବେ ତହିଁକି ବଳ କାହାର । କି ପ୍ରକାର ଗୁଣବିଶିଷ୍ଟ ହେଲେ ଇନସ୍ପେକ୍ଟର ହୋଇ ପାରେ ଯେବେ କମିଶନର ସାହେବ ତହିଁର ଖଣ୍ଡିଏ ବିଜ୍ଞାପନ ଦେଇ କର୍ମପ୍ରାର୍ଥୀଙ୍କୁ ଲୋଡ଼ିଥାନ୍ତେ ତେବେ ଆମ୍ଭମାନଙ୍କର ବିଶ୍ୱାସ ହୁଅଇ ଯେ ସେ ଅବଶ୍ୟ ଜଣେ ଓଡ଼ିଆ ପାଇଥାନ୍ତେ । ତାହା ନକରି ମନେ ମନେ ଓଡ଼ିଆଙ୍କୁ ଅଯୋଗ୍ୟ ବୋଲିବାର ଭଲ ହୋଇନାହିଁ । ଏଥିରେ କେବଳ ବାହ୍ୟକୁ ଦେଖାଇ ଦେଲେ ଯେ ସେ ଓଡ଼ିଆଙ୍କର ଭଲ କରିବାକୁ ଚେଷ୍ଟିତ ଅଛନ୍ତି ଅଥଚ ଭିତରେ ଓଡ଼ିଆଙ୍କ ମନ ମାରିଗଲା ।

## ( ୯ମ ଭାଗ, ୭ । ୧୧ । ୧୮୭୪, ସଂଖ୍ୟା ୪୪ )

୩୯୮ ।

### ସାପ୍ତାହିକ ସମ୍ବାଦ ।

ଗଲିତ ମାସ ଆରମ୍ଭଠାରୁ ଢେଙ୍କାନାଳରେ ଗୋଟିଏ ଡାକଘର ବସିଲା । ଏହି ଡାକଘର ପାଇଁ ଏକବର୍ଷରୁ ଅଧିକ ହେବ ମହାରାଜ ଡାକଘର ଅଧ୍ୟକ୍ଷଙ୍କୁ ଲେଖିଥିଲେ । ଏତେ ଦିନେ ତାହା ସଫଳ ହେଲା ସୁଖର ବିଷୟ ଅଟଇ । ଆଉ ଗଡ଼ଜାତମାନଙ୍କୁ କେବେ ଡାକ ଯାତାୟତର ସୁବିଧା ହେବ ?

୩୯୯ । ନାନା ସାହେବ ଗୁଆଲିୟରରେ ଧରା ପଡ଼ିଅଛି ମାତ୍ର ସେ ପ୍ରକୃତ-ରେ ନାନା ସାହେବ କି ଅନ୍ୟ କେହି ଅବଧି ସ୍ଥିର ହୋଇନାହିଁ । କେହି ତାହାକୁ ନିଶ୍ଚୟ କରି ଚିହ୍ନି ପାରିନାହାନ୍ତି ଓ ନାନା ଲୋକ ନାନା ପ୍ରକାର କହୁ ଅଛନ୍ତି ।

## ( ୯ମ ଭାଗ, ୧୪ । ୧୧ । ୧୮୭୪, ସଂଖ୍ୟା ୪୫ )

୪୦୦ ।

### ବାବୁ ଚଣ୍ଡି ଚରଣ ବାନ୍ନର୍ଯ୍ଯା ।

ଗତ ମଙ୍ଗଳବାର ସନ୍ଧ୍ୟାରେ କଟକ ହାଇସ୍କୁଲର ପୂର୍ବ ହେଡ଼ମାଷ୍ଟର ବାବୁ ଚଣ୍ଡି ଚରଣ ବାନ୍ନର୍ଯ୍ଯାଙ୍କୁ ଖଣ୍ଡିଏ ଅଭିନନ୍ଦନ ପତ୍ର ଦେବାପାଇଁ ଉକ୍ତ ସ୍କୁଲର ପୂର୍ବର ଓ ବର୍ତ୍ତମାନର ଛାତ୍ରମାନେ ଗୋଟିଏ ସଭା ଆହୂତ କରିଥିଲେ । ସଭା କଟକ ପ୍ରିଣ୍ଟିଂ କୋମ୍ପାନି ଦୋମହଲାରେ ହୋଇଥିଲା । ଆମ୍ଭେମାନେ ଏ ସଭାର ଉଦ୍ୟୋକ୍ତା ଓ କାର୍ଯ୍ୟ

ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ । ଏ ସଭାରେ ଏ ନଗରର ଅନେକ ଭଦ୍ରଲୋକ ଉପସ୍ଥିତ ଥିଲେ ଓ ସଭାଗୃହ ଏପରି ପୂର୍ଣ୍ଣ ହୋଇଥିଲା ଯେ ଅନେକ ସଭାରେ ସେପରି ଦେଖିବାରେ ଆସିନାହିଁ । ସ୍କୁଲର ଛାତ୍ର ଛଡ଼ା ଏତେ ଭଦ୍ରଲୋକଙ୍କ ସମାଗମରେ ସ୍ପଷ୍ଟ ପରିଚିତ ହେଉଅଛି ଯେ ବାବୁ ଚଣ୍ଡିଚରଣ ବାନାର୍ଜୀ କେବଳ ଛାତ୍ରଙ୍କର ପ୍ରେମାସ୍ପଦ ହୋଇଥିଲେ ଏମନ୍ତ ନୁହଇ. ଏଠାର ସମ୍ଭ୍ରାନ୍ତ ମଣ୍ଡଳୀରେ ତାହାଙ୍କର ସମ୍ମାନ ଓ ଆଦର ବିଶେଷ ଥିଲା ଓ ସମସ୍ତେ ତାହାଙ୍କ ସଦ୍‌ଗୁଣରେ ବଶୀଭୂତ ହୋଇଥିବାରୁ ତାହାଙ୍କର ବଦଳରେ ବିସ୍ତର ଦୁଃଖିତ ହୋଇଅଛନ୍ତି । ସଭାରେ ଉତ୍କଳୀୟଙ୍କ ସଂଖ୍ୟା ଅଳ୍ପ ଥିଲା ତହିଁର କାରଣ ଏହି ଯେ ସଭାର କାର୍ଯ୍ୟ ଇଂରାଜୀ ଭାଷାରେ ଚଳିବାର ଥିବାରୁ ଯେଉଁମାନେ ଇଂରାଜୀ ନଜାଣନ୍ତି ସେମାନଙ୍କୁ ଆମନ୍ତ୍ରଣ ହୋଇନଥିଲା ।

× × ×

୪୦୧ । ଦରବାର ଚର୍ଚ୍ଚା ।

ବର୍ତ୍ତମାନ ଏଠାର ଭଦ୍ରମଣ୍ଡଳୀରେ ଦରବାର ଚର୍ଚ୍ଚା ଏମନ୍ତ ଗାଢ଼ ରୂପେ ଲଗି ରହିଅଛି ଯେ ଆଉ ଚର୍ଚ୍ଚାମାନ ସ୍ମରଣ ପଥରେ ଆସୁନାହିଁ । ଦରବାରରେ କେଉଁ ଲୋକମାନଙ୍କୁ ଆମନ୍ତ୍ରଣ ହେବ ଯେତେବେଳେ ପ୍ରଥମେ ତହିଁର ଫର୍ଦ୍ଦ ପ୍ରସ୍ତୁତ ହେଲା ସେତେବେଳେ ଦରବାର ଫର୍ଦ୍ଦରେ ସ୍ଥାନ ପାଇବାପାଇଁ କେତେ ଲୋକ ବ୍ୟସ୍ତବ୍ୟସ୍ତ ହୋଇ ତହିଁର ଉଦ୍ୟମରେ ବୁଲୁଥିଲେ ସେ କଥା ଏକ ପ୍ରକାର ନିଷ୍ପତ୍ତି ହେଲା । ଏଣିକି ଏହି ଗଣ୍ଡଗୋଳ ଲଗିଅଛି ଯେ କାହାର ମର୍ଯ୍ୟାଦା କିରୂପ ଓ କିଏ କେଉଁଠାରେ ସ୍ଥାନ ପାଇବ । ରାଜା ଜମିଦାରଠାରୁ ସରକାରୀ ଚାକର ପର୍ଯ୍ୟନ୍ତ କୌଣସି ଶ୍ରେଣୀର ଲୋକ ମଧ୍ୟରେ ଏ ଚିନ୍ତାର ଅଭାବ ନାହିଁ । ମାନ ମର୍ଯ୍ୟାଦା ଉଦ୍ଦେଶ୍ୟ ସମସ୍ତେ ବ୍ୟସ୍ତ ଏବଂ ଅନେକ ସ୍ଥଳରେ ସେ ଚିନ୍ତା ଅକାରଣ ଥିବାର ଅନୁମାନ ହେଉନାହିଁ । ଆମ୍ଭେମାନେ ଦରବାର ଫର୍ଦ୍ଦ ଦେଖିନାହୁଁ ସୁତରାଂ ନିଶ୍ଚୟକରି କହି ନପାରୁଁ ମାତ୍ର ଯାହା ଶୁଣାଯାଉଅଛି ତହିଁରେ ଅନେକ ଲୋକଙ୍କର ଦୁଃଖିତ ହେବାର ଯଥାର୍ଥ କାରଣ ଅଛି ସନ୍ଦେହ ନାହିଁ । ଇଂରାଜଙ୍କ ମଧ୍ୟରେ ସେପରି ମନସ୍ତାପ କାହାରି ହୋଇଅଛି କି ନାହିଁ କହିନପାରୁଁ ମାତ୍ର ଦେଶୀ ଦାଏପେ ଇଂରାଜକର୍ମଚାରୀଙ୍କ ମଧ୍ୟରେ କାହାର କିରୂପ ମର୍ଯ୍ୟାଦା ତହିଁର ଏକ ପ୍ରକାର ନିଷ୍ପତ୍ତି ଶ୍ରୀ ଶ୍ରୀମତୀ ମହାରାଣୀଙ୍କ ପ୍ରଚାରିତ ସନ ୧୮୭୧ ମସିହା ମଇମାସ ତା ୬ରିଖର ଘୋଷଣା ପତ୍ରରେ ପ୍ରକାଶ ହୋଇଅଛି । ତଦନୁସାରେ ପୁରୀ ଓ ବାଲେଶ୍ୱର କଲେକ୍ଟରଙ୍କ ଠାରୁ କଟକ ଜଜଙ୍କ ମର୍ଯ୍ୟାଦା ଅଧିକ ହେଲେ ସୁଦ୍ଧା ପ୍ରଥମ ଲିଖିତ ଦୁଇ କର୍ମଚାରୀ ଲେଫ୍‌ଟେନାଣ୍ଟ ଗବର୍ଣ୍ଣରଙ୍କ

ପାର୍ଶ୍ୱରେ ଉଚ୍ଚ ସ୍ଥାନ ପାଇ ଅଛନ୍ତି ଓ କେଜ ସାହେବ ତଳକୁ ଖସି ଆସିଅଛନ୍ତି । ସେ ଯାହା ହେଉ ଇଂରାଜଙ୍କ କଥା ଆମ୍ଭମାନଙ୍କର ବିଚାର କରିବାର ପ୍ରୟୋଜନ ନାହିଁ । ଆମ୍ଭେମାନେ କେବଳ ଦେଶୀୟ ସ୍ୱାଧୀନ ଓ ସରକାରୀ କର୍ମକାରକଙ୍କ ବିଷୟରେ ଯେ ସବୁ ମତାମତ ଶୁଣୁଅଛୁଁ ତହିଁର ସଂକ୍ଷେପ ଲେଖୁଅଛୁଁ । କେବଳ ବୋଲିବାକୁ ହେବ ଯେ ସ୍ଥାନୀୟ କମିଶନର ଓ କଲେକ୍ଟରର ଅଚୁକ୍ତିଭୁକ୍ତ କର୍ମଚାରୀଙ୍କ ମଧ୍ୟରେ ଦେଶୀୟ ଓ ଇଂରାଜଙ୍କ ମଧ୍ୟରେ ଯେଉଁ ପ୍ରଭେଦ କରି ଅଛନ୍ତି ତାହା କୌଣସିମତେ ନ୍ୟାୟସଙ୍ଗତ ଜଣା ଯାଉନାହିଁ । ଯେଉଁ ନିୟମରେ ଉକ୍ତ ପ୍ରଭେଦ ହୋଇଅଛି ତହିଁରେ ଯେବେ ଏଠାରେ କେହି ଦେଶୀୟ ସିଭିଲିଆନ ଥାନ୍ତେ ତେବେ ତାହାଙ୍କୁ ମଧ୍ୟ ଇଂରାଜ ଅଚୁକ୍ତିଭୁକ୍ତ କର୍ମଚାରୀଙ୍କ ତଳେ ବସିବାକୁ ହୁଅନ୍ତା । ଏପରି ଅବସ୍ଥାରେ କେଉଁ କର୍ମଚାରୀ ଆପଣାକୁ ଅପମାନିତ ଜ୍ଞାନ ନ କରିବ । ଶ୍ରୀମତୀ ମହାରାଣୀଙ୍କ ଘୋଷଣାପତ୍ରାନୁସାରେ ଇଂରାଜ ଓ ଦେଶୀୟ କର୍ମଚାରୀଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ତେବେ ସ୍ଥାନୀୟ କର୍ତ୍ତୃପକ୍ଷମାନେ ଏ ରୀତି କେଉଁଠାରୁ ବାହାର କଲେ । ଏପରି କାର୍ଯ୍ୟ ଦେଖି ଯେବେ ଦେଶୀୟ ଲୋକମାନେ ତାହାଙ୍କଠାରେ ସ୍ୱଜାତି ପକ୍ଷପାତିତାର ଦୋଷ କଳ୍ପନା କରନ୍ତି ତେବେ ତାହା ଅସଙ୍ଗତ ବୋଧ ହେଉନାହିଁ । ବାସ୍ତବରେ ଯେପରି ଶୃଙ୍ଖଳା ହୋଇ ଅଛି ତହିଁରେ ଇଉରୋପୀୟ ଓ ସିଭିଲିଅନ ଜଣେ ଦେଶୀୟ ଅସିଷ୍ଟାଣ୍ଟ ଇଞ୍ଜିନିଅରଙ୍କ ଉପରେ ସ୍ଥାନ ପାଇଅଛି । ଆମ୍ଭମାନଙ୍କ ବିବେଚନାରେ ରାଜକର୍ମଚାରୀଙ୍କ ମଧ୍ୟରେ ଜାତି ବା ବର୍ଣ୍ଣର ପାର୍ଥକ୍ୟ ବିଚାର ତାଙ୍କ ପଦ ଓ ବେତନ ଅନୁସାରେ ଯେ ଯେଉଁ ସ୍ଥାନ ପାଇବାର ଉଚିତ ତାହାଙ୍କୁ ସେ ସ୍ଥାନ ଦେଇଥିଲେ ଭଲ ହୋଇଥାନ୍ତା ।

ଦେଶୀୟ ଲୋକଙ୍କ ମର୍ଯ୍ୟାଦା ପକ୍ଷରେ ଆଉ ଦେଖାଯାଏ ଯେ ଶ୍ରୀମତୀ ମହାରାଣୀ ଉପର ଲିଖିତ ଘୋଷଣା ଦେଲେ ତହିଁର କିଛି ସ୍ଥିର ନ କରି ସାଧାରଣ ଭାବେ କହି ଅଛନ୍ତି ଯେ ପ୍ରଚଳିତ ନିୟମାନୁସାରେ ଏମାନେ ମର୍ଯ୍ୟାଦା ପାଇବେ ଓ କୌଣସି-ଠାରେ ତର୍କ ଉପସ୍ଥିତ ହେଲେ ମହାମାନ୍ୟ ଗଭର୍ଣ୍ଣର ଜେନେରାଲ ତହିଁର ନିଷ୍ପତ୍ତି କରିବେ । ମାତ୍ର ଆଶ୍ଚର୍ଯ୍ୟର ବିଷୟ ଯେ କେତେ କେତେ ସ୍ଥାନରେ କେତେ ଦରବାର ହୋଇ ଗଲଣି କିନ୍ତୁ କୌଣସିଠାରେ ଏ ବିଷୟରେ କିଛି ନିୟମ ହେବାର ଦେଖାଯାଉ ନାହିଁ । ରାଜା ଜମିଦାରଙ୍କ ବିଷୟରେ କୌଣସି ସାଧାରଣ ନିୟମ ହୋଇ ନ ପାରେ ସତ୍ୟ ମାତ୍ର ସରକାରୀ କର୍ମକାରକଙ୍କ ବିଷୟରେ ନିୟମ ହେବାର କୌଣସି ବାଧା ନ ଥିଲା । କୌଣସି ନିୟମ ହୋଇ ନ ଥିବାରୁ ଏହା ଅନୁମାନ କରିବାକୁ ହେବ ଯେ ଉପରେ ସ୍ଥାନମାନଙ୍କରେ ଇଉରୋପୀୟ ଓ ଦେଶୀୟ ସରକାରୀ କର୍ମକାରକଙ୍କ ମଧ୍ୟରେ ନ୍ୟୂନାଧିକର ବିଚାର ହୋଇ ନ ଥିବାର ବର୍ତ୍ତମାନ ପ୍ରାୟ ଆଉ କୌଣସିଠାରେ ଉପସ୍ଥିତ ହୋଇନାହିଁ କେବଳ ମହକୁମା ଓ ବେତନ ଅନୁସାରେ ମର୍ଯ୍ୟାଦା ସ୍ଥିର ହୋଇଅଛି । ଏଠାପର

କୌଣସି ପ୍ରଭେଦ ହୋଇଥିଲେ ଅବଶ୍ୟ ସ୍ୱତନ୍ତ୍ର ନିୟମ ହୋଇଥାନ୍ତା । ଆମ୍ଭେମାନେ ବିବେଚନା କରୁଁ ଯେ ସ୍ଥାନୀୟ କର୍ତ୍ତୃପକ୍ଷମାନେ ଦେଶୀୟ କର୍ମଚାରୀଙ୍କର ମନଃପୀଡ଼ା ପ୍ରତି ଆସ୍ଥା କରି ମାନ୍ୟବର ଲେଫ୍‌ଟେନାଣ୍ଟ ଗବର୍ଣ୍ଣରଙ୍କୁ ତାହା ଅବଗତ କରାଉନ୍ତୁ ତାହା ହେଲେ ଏକପ୍ରକାର ନିସ୍ପତ୍ତି ହୋଇ ପାରିବ । ଯେବେ ସେପରି କିଛି ନକରି କେବଳ ହୁକୁମ ବଳରେ କାର୍ଯ୍ୟ କରିବେ ତେବେ ବଡ଼ ଅଶୋଭା ହେବେ ।

ରାଜା ଜମିଦାରଙ୍କ ମଧ୍ୟରେ କେବଳ ପୁରୀ ରାଜାଙ୍କର ବିଶେଷ ମନସ୍ତାପ ହେବାର କହୁତ ହୁଅଇ ଓ ସେହି ହେତୁରୁ ସେ ଦରବାରକୁ ଆସିବେ ନାହିଁ ବୋଲି ସ୍ଥିର କରି ଅଛନ୍ତି । ତାହାଙ୍କର ଅଭିଳାଷ ଯେ ଓଡ଼ିଶାର ସମସ୍ତ ରାଜାଙ୍କ ମଧ୍ୟରେ ସେ ଅଗ୍ରଗଣ୍ୟ ହୋଇ ସମସ୍ତଙ୍କ ଉପରେ ସ୍ଥାନ ପାଇବେ ମାତ୍ର ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କ କର୍ମଚାରୀମାନେ ସେପରି ମର୍ଯ୍ୟାଦା ଦେବାକୁ ପ୍ରସ୍ତୁତ ନାହାନ୍ତି । ଓଡ଼ିଶାର ପୂର୍ବ ଇତିହାସକୁ ସ୍ମରଣ କଲେ ପୁରୀର ରାଜାଙ୍କର ଦାବୀ ଅସଙ୍ଗତ ବୋଧ ହୁଅଇ ନାହିଁ କାରଣ ସେହିଁ ରାଜା ସମସ୍ତ ଓଡ଼ିଶା ଓ ବଙ୍ଗଳାର କିୟଦଂଶ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ ଓ ବର୍ତ୍ତମାନ ଯେଉଁମାନେ ଓଡ଼ିଶାରେ ରାଜା ବୋଲାଉ ଅଛନ୍ତି ସେମାନେ ତାହାଙ୍କର ଅଧୀନ ସ୍ୱରୂପ ସେବାରେ ନିଯୁକ୍ତ ଥିଲେ ତାହାଙ୍କ ବଂଶର ଉତ୍ତରାଧିକାରୀ ଏ ରାଜା ହୋଇ ଅଛନ୍ତି ଓ ଯଦ୍ୟପି କାଳର ପରିବର୍ତ୍ତନରେ ଏ ରାଜା କେତେକ ପୁରୁଷରୁ ରାଜ୍ୟ ଶୂନ୍ୟ ହୋଇ ପେନସନ ଭୋଗୀ ହୋଇଅଛନ୍ତି ତଥାଚ ଏହାଙ୍କର ମର୍ଯ୍ୟାଦା ଅନ୍ୟ ରାଜାଙ୍କଠାରୁ ଊଣା ହୋଇଅଛି ଏମନ୍ତ ବୋଲିବା କିଛି କଠିନ ବୋଧ ହେଉଅଛି । ଏହାମଧ୍ୟ ଆମ୍ଭେମାନେ ସ୍ୱୀକାର କରୁଁ ଯେ ପୁରୀ ରାଜା ଅପଣା ମର୍ଯ୍ୟାଦା ରକ୍ଷା କରିବାକୁ କୌଣସି ଚେଷ୍ଟା କରି ନାହାନ୍ତି ଓ ଜଗନ୍ନାଥ ମନ୍ଦିରର ଭାର ଯେ ତାହାଙ୍କୁ ଦିଆ ଯାଇ ଅଛି ତହିଁର କାର୍ଯ୍ୟ ଯଥା ବିହିତ ରୂପେ ନିର୍ବାହ କରି ନିଜ ଅଦୃଷ୍ଟ ହିନ୍ଦୁ ସମାଜର ପ୍ରୀତି ଓ ଭକ୍ତିର ଭାଜନ ହୋଇ ନାହାନ୍ତି ଯେ ତହିଁପାଇଁ ଗବର୍ଣ୍ଣମେଣ୍ଟ ତାହାଙ୍କ ପ୍ରତି ସୁଦୃଷ୍ଟି କରିବେ; ପକ୍ଷାନ୍ତରରେ ପାରଲୁଦ କେଉଁଝର ଓ ଢେଙ୍କାନାଳର ରାଜାମାନେ ସମୟୋଚିତ ସତ୍‌କର୍ମମାନଙ୍କର ଅନୁଷ୍ଠାନ କରି ଗବର୍ଣ୍ଣମେଣ୍ଟଙ୍କଠାରୁ ଉଚ୍ଚ ମର୍ଯ୍ୟାଦା ପ୍ରାପ୍ତ ହୋଇ ଅଛନ୍ତି ଓ ତନ୍ମଧ୍ୟରେ ଢେଙ୍କାନାଳର ବର୍ତ୍ତମାନ ରାଜା କି ସେ ମହାରାଜା ପଦ ପାଇ ଅଛନ୍ତି ସମସ୍ତଙ୍କଠାରୁ ଉଚ୍ଚ ମର୍ଯ୍ୟାଦା ପାଇବାର ଉଚିତ । ନହେଲେ ସେପରି ପଦ ଦେବା ବିଫଳ ଅଟଇ । ଏ ପ୍ରକାର ଅବସ୍ଥାରେ ପୁରୀ ରାଜାଙ୍କର ମର୍ଯ୍ୟାଦା ସ୍ଥିର କରିବା ଗବର୍ଣ୍ଣମେଣ୍ଟଙ୍କର ନିତାନ୍ତ ଉଚିତ ହେଉଅଛି । ପୁରୀ ରାଜାଙ୍କର ଉଚିତ ଯେ ବୃଥାରେ ଆପଣା ଉପରେ ଅଭିମାନ କରି ନବସି ଯହିଁରେ ଏ କଥାର ମୀମାଂସା ହୁଅଇ ତହିଁର ଉପାୟ କରନ୍ତୁ ନୋହିଲେ ଯାହା କିଛି ତାହାଙ୍କର ମାନ ଅଛି ତାହାସୁଦ୍ଧା ହରାଇ ବସିବେ ।

( ୯ମ ଭାଗ, ୨୧ । ୧୧ । ୧୮୭୪, ସଂଖ୍ୟା ୪୭ )

୪୦୨ । ଗତ ରବିବାରଠାରୁ ରାଜାମାନେ ଏନଗରକୁ ଆସିବାର ଆରମ୍ଭ କରିଅଛନ୍ତି ଓ ଏହାଙ୍କ ଆଗମନରେ ଆମ୍ଭମାନଙ୍କର କଲେକ୍ଟର ଶ୍ରୀଯୁକ୍ତ ବମ୍ସ ସାହେବ ବଡ଼ ବ୍ୟସ୍ତରେ ପଡ଼ି ଅଛନ୍ତି କାରଣ ରାଜାମାନଙ୍କୁ ଏଠାରେ ନିବାହକରି ବିଦାୟ କରିବେ ଏଥିର ଭଲ ଉପାୟ ପାଉନାହାନ୍ତି ଓ ଗୃହଆଡ଼ି ଏମନ୍ତ କଷ୍ଟ ପଡ଼ିଅଛି ଯେ ଲୁଚିବାକୁ ମସ୍ତକରେ ସ୍ଥାନ ସୁଦ୍ଧା ନାହିଁ । ପ୍ରତ୍ୟେକ ରାଜାଙ୍କ ପାଖରେ ଜଣେ ଲେଖାଏଁ କନଷ୍ଟବଲ ରଖାଇ ଦେଇଅଛନ୍ତି ଓ ଯେବେ ରାଜାଙ୍କ ସମ୍ମାନସଙ୍କାଶେ ତାହା ହୋଇଥାଏ ତେବେ ସୁଖର ବିଷୟ ଅଟଇ ମାତ୍ର ଶୁଣାଯାଏ ଯେ ସରକାରୀ ଅମଲ ଉପରିସ୍ଥି କନଷ୍ଟବଲ ପ୍ରଭୃତି ଚାକର ଓ ନଗରବାସିମାନେ ଯେମନ୍ତ ରାଜାଙ୍କ ନିକଟକୁ ପ୍ରାର୍ଥନା କରି ନଆସନ୍ତି କିମ୍ବା ପାରିତୋଷିକ ନ ନିଅନ୍ତି ଏହିକଥାର ସାବଧାନ କରିଣ କନଷ୍ଟବଲ ପହରା ହୋଇଅଛି । ଏ ଉପାୟ କେତେଦୂର ସଫଳ ହେବ ପାଠକମାନେ ବିବେଚନା କରିବେ । ଏପର ରାଜାମାନେ ଅଧିକ ଲୋକ ସଙ୍ଗରେ ରଖି ନପାରନ୍ତି ଏଥିପାଇଁ ବଡ଼ ତାକିଦ ହେଉଅଛି । ଅଧିକ ଲୋକ ଜମାହେଲେ ସହରରେ ଖାଦ୍ୟ ଦ୍ରବ୍ୟାଦ ଦୁର୍ମୂଲ୍ୟ ହେବ ଓ ଅନ୍ୟାନ୍ୟ ଅନିଷ୍ଟ ଘଟିପାରିବ କି ଯାହା ନିବାରଣ କରିବାକୁ ଜିଲ୍ଲାର ମାଜିଷ୍ଟ୍ରେଟ ସମର୍ଥ ହେବେନାହିଁ । ମହାମାନ୍ୟ ଲର୍ଡ ମେଓଙ୍କ ସନ୍ଦର୍ଶନ ଅପେକ୍ଷାରେ ଛନବର୍ଷତଳେ ଯେତେବେଳେ ଏ ନଗରରେ ଭାରି ସମାରୋହ ହୋଇଥିଲା ତେତେବେଳେ ଯେଉଁମାନେ ଏ ନଗରରେ ଥିଲେ ସେମାନେ ବିଲକ୍ଷଣ ଜାଣନ୍ତି ଯେ ଏରୂପ ସମାରୋହରେ ଦୁର୍ଭିକ୍ଷ ପଡ଼ଇନାହିଁ ଓ ଯଦ୍ୟପି କେତେକ ପ୍ରକାର ଖାଦ୍ୟ ଦ୍ରବ୍ୟର ମୂଲ୍ୟ କିଛି ବଢ଼ିଥିଲା କି ଯେମନ୍ତ ବର୍ତ୍ତମାନ ମଧ୍ୟ ବଢ଼ିଅଛି ମାତ୍ର ତଦ୍ଦ୍ୱାରା ନଗରବାସୀ କ୍ଷୁଦ୍ର ବ୍ୟବସାୟୀଙ୍କ ଲାଭ ଭିନ୍ନ ରାଜାଙ୍କର ଧନାଗାର ଶୂନ୍ୟ ହୋଇନାହିଁ । ରାଜାମାନେ ତାହାର ଯେମନ୍ତ ଆଧିକା ପ୍ରୟୋଜନ ତାହାକୁ ବୁଝିଁ ସଙ୍ଗରେ ମନୁଷ୍ୟ ଆଣିଅଛନ୍ତି ଓ ସେମାନଙ୍କର ନିବାହର ଉପାୟ ମଧ୍ୟ କରିଅଛନ୍ତି । ସେମାନେ କି ସାମାନ୍ୟ ଲୋକ ପ୍ରାୟ ହାତରେ ମୁଣି ଝୁଲାଇ ଆସି ଡାକ ବଙ୍ଗଳାରେ ଖାଇ ଶୋଇ ହୋଇଯିବେ ? ରାଜାମାନଙ୍କୁ ନିମନ୍ତ୍ରଣ କରିଆଣି ତାହାଙ୍କ ଉପରେ ଏତେ କର୍ତ୍ତୃତ୍ୱ କାହିଁକି ? ଆମ୍ଭମାନଙ୍କ ବିବେଚନାରେ ଗଡ଼ଜାତ ଲୋକେ ଯେତେ ନଗର ଦେଖିବାକୁ ଆସନ୍ତି ତେତେଭଲ ଓ ଏମନ୍ତ ସୁଯୋଗ ସେମାନେ ଆଉ କେବେ ପାଇବେ ଯେ ନଗରର ଉନ୍ନତି ଦେଖି ଆପେ ଉନ୍ନତ ହେବାର ଚେଷ୍ଟା କରିବେ ।

୪୦୩ । ଏ ନଗରର ଦେଶୀୟ ସମାଜ ।

କୌଣସି ବିଦେଶୀ ଯେବେ ଏ ନଗରର ଭଦ୍ର ସମାଜ ପ୍ରତି ଦୃଷ୍ଟି କରିବ ତେବେ ତାହା ମନରେ ନିଶ୍ଚୟ ଉଦୟ ହେବ ଯେ ଏଠା ଭଦ୍ରଲୋକମାନେ

ସମାଜ ବଦ୍ଧ ନୁହନ୍ତି ମାତ୍ର ପ୍ରତ୍ୟେକ ବ୍ୟକ୍ତି ସ୍ୱତନ୍ତ୍ର ଭାବରେ ରହି ଅଛନ୍ତି । କାହାର ସହିତ କାହାର ସମ୍ପର୍କ ନାହିଁ ଓ କେହି କାହା ଦୁଃଖ ସୁଖର ଭାଗୀ ନୁହଇ । ଏପରି ଅବସ୍ଥା ଯେ କେତେ ଶୋଚନୀୟ ତାହା ସମୁଚିତ ରୂପେ ବ୍ୟକ୍ତ ହୋଇ ନପାରେ ଓ ଏହି ହେତୁରୁ ଏଠା ଭଦ୍ରମଣ୍ଡଳୀ ଦ୍ୱାରା କୌଣସି ଉପକାର ହେଉନାହିଁ । ଏହି ନଗର ମଧ୍ୟରେ ଯେଉଁ ସାମାନ୍ୟ ସଂଖ୍ୟକ ଇଂରାଜମାନେ ବାସ କରଅଛନ୍ତି ସେମାନେ ସମାଜବଦ୍ଧ ହୋଇ ରହିଅଛନ୍ତି । କଲଟାରେ ପ୍ରତିଦିନ ସନ୍ଧ୍ୟାସମୟରେ ଏମାନଙ୍କର ଭେଟ ହୁଅନ୍ତି ଓ ନାନା ବିଷୟର କଥୋପକଥନ ଓ ନାନା ଆମୋଦ ପ୍ରମୋଦରେ କାଳହରଣ କରନ୍ତି । ଏହି ଚୋଟିଏ ସୁନ୍ଦର ନିୟମ ତାହାଙ୍କ ମଧ୍ୟରେ ଥିବାରୁ ସେମାନଙ୍କ ସାମାଜିକ ଅବସ୍ଥା କେଡ଼େ ସୁନ୍ଦର ହୋଇଅଛି । ସେମାନଙ୍କ ମଧ୍ୟରେ ଭ୍ରାତୃଭାବ ଦୃଢ଼ରୂପେ ରହି-ଅଛି ଓ ପରସ୍ପରରେ ସଦ୍ଭାବ ଥିବାରୁ ସମୟରେ କେହି କାହାର ସାହାଯ୍ୟ ନକରି ଥାନ୍ତି ରହିନପାରନ୍ତି । ମାତ୍ର ଦେଶୀୟ ଭଦ୍ରଲୋକଙ୍କ ମଧ୍ୟରେ ସେପରି କିଛି ନାହିଁ । ନିତ ବସି ଦୁଇ ଏକଦଣ୍ଡ ଆମୋଦ ଆହ୍ଲାଦ କରିବା ତେଣିକି ଥାଉ ଗୃହ ଛଅ ମାସରେ ଥରେ ଭେଟ ହେବା କଠିନ । ଏରୂପ ଅବସ୍ଥାରେ ଯେବେ କୌଣସି ବିଷୟରେ କେତେଗୁଡ଼ିଏ ଲୋକ ଏକତ୍ରିତ ହୁଅନ୍ତି କେହି କାହାର ମନ ପାଆନ୍ତି ନାହିଁ ବରଂ ମନକଥା କହିଲେ ଅନିଷ୍ଟ ଘଟିବ ଏମନ୍ତ ଆଶଙ୍କା କରି ନୀରବ ରହନ୍ତି । ଯେବେ ସର୍ବଦା ପରସ୍ପରରେ ଦେଖା ହେଉଥାନ୍ତା ଓ ଆପଣା ୨ ଦୁଃଖ ସୁଖ ବୁଝାବୁଝି ହେଉଥାନ୍ତେ ତେବେ ଏ ପ୍ରକାର ଘଟିବାର କୌଣସି କାରଣ ନଥିଲା । ମାତ୍ର ଦେଖାଦେଖି ହେବ ଅବା କେମନ୍ତେ । ଏଠାର ଅଧିକାଂଶ ଭଦ୍ରଲୋକଙ୍କ ରୀତି ଏହିପେ, ସେମାନେ କେବଳ ଉପସ୍ଥିତ ପ୍ରୟୋଜନ ଉଦ୍ଦେଶ୍ୟରେ ବୁଲି ବୁଲନ୍ତି ଏବଂ ଆପଣା ଠମତା କି ଆୟୁ ଅଧିକ ଜାଣିଲେ ଆପଣା ସମାଜ ମର୍ଯ୍ୟାଦାର ଲୋକ ନିକଟକୁ ଯିବାରେ ମର୍ଯ୍ୟାଦାର ହାନି ଜ୍ଞାନକରନ୍ତି । ଏହି ହେତୁରୁ ଦେଖାଯାଏ ଯେ ଜମିଦାରମାନେ ଡେପୋଟୀ ଓ ଅମଲାଙ୍କ ଘରକୁ ସାକ୍ଷାତ ପ୍ରତ୍ୟାଶାରେ ଦୌଡ଼ିଥାନ୍ତି ମାତ୍ର ଅନ୍ୟ ଜମିଦାର ନିକଟକୁ କେବେ ଯିବାକୁ ମାନସ ବଳାନ୍ତି ନାହିଁ । ଏହିପରି ଅମଲାମାନେ ସିରସ୍ତାଦାର ଓ ପେଶକାରଙ୍କ ଘରଟାରେ ସର୍ବଦା ଦେଖାଯାନ୍ତି ମାତ୍ର ସେମାନେ ଅମଲାଙ୍କ ଘରଟାକୁ ଯିବା ଅତି ବିରଳ । ଜମିଦାର-ମାନେ ସରକାରୀ ଚାକରଆଙ୍କଠାରୁ ଅନେକାଂଶରେ କ୍ଷମତାବାନ୍ ଏହା ଯେବେ ସେମାନେ ବୁଝି ପାରନ୍ତେ ତେବେ ଅମଲା କି ହାକିମଙ୍କ ଅନୁସରଣ କରିବାକୁ ଦୌଡ଼ନ୍ତେ ନାହିଁ । ବରଂ ସମସ୍ତ ଜମିଦାରମାନେ ଆପଣା ମଧ୍ୟରେ ଐକ୍ୟ ହୋଇ ଯହିଁରେ ଆପଣା-ମାନଙ୍କର ଯଥାର୍ଥ ମଙ୍ଗଳ ହୋଇନ୍ତେ ସରକାରୀ କର୍ମକାରକଙ୍କୁ ସେହି ବାଟରେ ଚଳାଇ ପାରନ୍ତେ । ଯେମନ୍ତ ଜମିଦାର ସେହିପରି ଅନ୍ୟାନ୍ୟ ଶ୍ରେଣୀର ଲୋକମାନଙ୍କ [illegible] ବୋଲିଯାଇ ପାରେ । ତେବେ ଜମିଦାରମାନେ ଏଠା ଭଦ୍ରଲୋକଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିବାରୁ ତାହାଙ୍କୁ ଉଦାହରଣ ଦେଉଅଛୁଁ । ଆମ୍ଭମାନଙ୍କର ଏକାନ୍ତ ଆଶା ଏହି

ଯେ ଏଠା ଭଦ୍ରଲୋକମାନେ ·ଆପଣା ମଧ୍ୟରେ ସଦ୍ଭାବ ରଖିବାର କୌଣସି ଉପାୟ କରନ୍ତୁ ସର୍ବଦା ଦେଖା ସାକ୍ଷାତ୍ ହେଲେ ସଦ୍ଭାବ ବୃଦ୍ଧି ହୁଅଇ ଓ ସଦ୍ଭାବ ବୃଦ୍ଧି ହେଲେ ପରସ୍ପରର ମଙ୍ଗଳ ସାଧିବାର ଇଚ୍ଛା ଜନ୍ମେ ଓ ତଦ୍ଦ୍ୱାରା ସାଧାରଣର ଉପକାର ହୁଅଇ । ବର୍ତ୍ତମାନ ଯେରୂପ ଅବସ୍ଥା ଅଛି ତହିଁରେ ଦେଖଯାଏ ଉତ୍କଳୀୟଙ୍କ ଅପେକ୍ଷା ବଙ୍ଗାଳି ମାନେ ଏ ବିଷୟରେ ଉତ୍କୃଷ୍ଟ ଅଟନ୍ତି ଅର୍ଥାତ୍ ଏମାନଙ୍କ ମଧ୍ୟରେ ଅଧିକ ସଦ୍ଭାବ ଲକ୍ଷିତ ହୁଅଇ ।

୪୦୪ । ସାପ୍ତାହିକ ସମ୍ବାଦ ।

ଯାଜପୁରରେ ମୋଟ ଗୁଡ଼ଲ ଦର ଏକଟଙ୍କାକୁ ୧୨।୪ର. ସନ ସେ୧୮ର ମିଳୁଅଛି ଚବର ଦର ପ୍ରାୟ କଟକ ପରି ଅଟଇ ।

୪୦୫ । କଥିତ ହୁଅଇ ଯେ ନାନା ସାହେବ ଧରହେଲା ଉତ୍ତାର ଷାଠିଏ ଜଣ ଫଟଗ୍ରାଫି ନେବାବ୍ୟକ୍ତି ତାହାର ପ୍ରତିମୂର୍ତ୍ତି ଚିତ୍ରକରି ନେଇଅଛନ୍ତି ଓ ଏକବ୍ୟକ୍ତି ଛଅଘଣ୍ଟା ମଧ୍ୟରେ ବିଲାତକୁ ଗୋଟିଏ ଫଟଗ୍ରାଫି ପଠାଇ ଅଛନ୍ତି ।

## ( ୯ମ ଭାଗ, ୫ । ୧୨ । ୧୮୭୪, ସଂଖ୍ୟା ୪୮ )

୪୦୬ । ଆମ୍ଭେମାନେ ଅତି ଆନନ୍ଦ ସହିତ ଉତ୍କଳ ହିତୈଷିଣୀରୁ ଅବଗତ ହେଲୁଁ ଯେ ବାବୁ ବୈଦ୍ୟନାଥ ପଣ୍ଡିତ ଆପଣା ଜମିଦାରୀ କଲ୍ଲା ଦର୍ପଣୀର ପ୍ରଜାଙ୍କ ଉପକାର ସକାଶେ ବଡ଼ଚଣାଠାରେ ଗୋଟିଏ ଦାତବ୍ୟ ବିଦ୍ୟାଳୟ ସ୍ଥାପନ କରିଅଛନ୍ତି ଓ ଗୋଟିଏ ଦାତବ୍ୟ ଚିକିତ୍ସାଳୟ ବସାଇବାକୁ ମନସ୍ଥ କରିଅଛନ୍ତି । ଏହି ଉପକାର କାର୍ଯ୍ୟର ବ୍ୟୟ ନିର୍ବାହ କାରଣ ବାର୍ଷିକ ଟ୫୦୦ଙ୍କା ଆୟର ଦୁଇଟି ମୌଜା ଖଞ୍ଜା କରିଦେବାର ମନସ୍ଥ କରିଅଛନ୍ତି । ବାର୍ଷିକ ଟ୫୦୦ଙ୍କା ହେଲେ ମାସକୁ ଟ୪୦ଙ୍କା ପଡ଼ୁଅଛି । ଏଥିରେ ଏକପ୍ରକାର କର୍ମ ଚଳିପାରେ ଓ ବୋଧ ହୁଅଇ ପ୍ରାର୍ଥନା କଲେ ଗବର୍ଣ୍ଣମେଣ୍ଟ ମଧ୍ୟ ସାହାଯ୍ୟ ଦେଇ ପାରନ୍ତି । ମାତ୍ର ଜମିଦାରୀ ଖଞ୍ଜା କରିଦେବା ଆମ୍ଭ-ମାନଙ୍କ ବିବେଚନାରେ ବ୍ୟୟ ନିର୍ବାହର ସହଜ ଉପାୟ ନୁହଇ । କାରଣ ଆଦୌ ମୌଜା ମାନଙ୍କର ଆବାଦୀ ଓ ଖଜଣା ଉସୁଲ ତତ୍ତ୍ୱକରିବା ନିମିତ୍ତ କିଛି ବ୍ୟୟ କରି-ବାର ପ୍ରୟୋଜନ ଓ ତହିଁ ଉତ୍ତାରେ ଧୋଇଯୋସକା ପ୍ରଭୃତି ନାନା ଦୈବୀ ଉତ୍ପାତର ହେତୁ ସମୟରେ କ୍ଷତି ହେବାର ସମ୍ଭାବନା । ମୌଜା ଖଞ୍ଜା ନକରି ଗବର୍ଣ୍ଣମେଣ୍ଟ କାଗଜରେ ଟଙ୍କା ଜମାକଲେ ଅଥବା ଜମିଦାରୀର ଲାଭରୁ ବାର୍ଷିକ ଟ୫୦୦ଙ୍କା

ଅଲଟା କରିଦେଲେ ବଡ଼ ଭଲ ହୁଅନ୍ତା । ସାହାହେଉ ବାବୁ ବୈଦ୍ୟନାଥ ପଣ୍ଡିତ ଯେଉଁ ମହତ୍ କାର୍ଯ୍ୟର ଅନୁଷ୍ଠାନ କରିବାକୁ ମନସ୍ଥ କରିଅଛନ୍ତି ତାହା ସାଙ୍ଗମତ ପୂର୍ଣ୍ଣକଲେ କଟକର ଜମିଦାରଙ୍କ ମଧ୍ୟରେ ସେ ଅଗ୍ରଗଣ୍ୟ ଓ ଆଦର୍ଶ ସ୍ୱରୂପ ହେବେ ସନ୍ଦେହ ନାହିଁ ।

୪୦୨ ।                    ଓଡ଼ିଶାର ସ୍କୁଲ ଇନସ୍ପେକଟର ।

ଓଡ଼ିଶା ସ୍କୁଲମାନଙ୍କ ସମୂହର ଇନସ୍ପେକଟର ପଦରେ ଜଣେ ଓଡ଼ିଆଙ୍କୁ ନିଯୁକ୍ତ କରିବାକୁ ଗଭର୍ଣ୍ଣମେଣ୍ଟଙ୍କ ଇଚ୍ଛା ଥିବା ବିଷୟ ଯେ ପୂର୍ବେ ଲେଖା ଯାଇଥିଲା ତାହା ନିକଟରେ କୃତକାର୍ଯ୍ୟ ହେବାର ଆଶା ଦେଖାଯାଏ । ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସାହେବ ଏ ପ୍ରଦେଶରେ ବିରାଜ ଥିବା ସମୟରେ ସେ ପଦ ବାବୁ ଜଗନ୍ମୋହନ ରାୟଙ୍କୁ ଯାଚିଲେ । ବାବୁ ମହାଶୟ ଅସମ୍ମତ ହେବାରୁ ବାବୁ ନନ୍ଦକିଶୋର ଦାସ ସୁରାଳ ଡେପୁଟୀ କଲେକ୍‌ଟରଙ୍କୁ ମନୋନୀତ କଲେ । ସେ କର୍ମର ମାସିକ ବେତନ ଟ୫୦୦୲ରୁ ଟ୧୫୦୦୲ ପର୍ଯ୍ୟନ୍ତ । ସାହେବ ମହୋଦୟଙ୍କ ଏ ପ୍ରଦେଶକୁ ଆସିବାର ପ୍ରଥମ ଫଳ ଏହି ଏକଟି, ସୁଖର କଥା ।

ଏ ବିଷୟରେ ଅନେକ ତର୍କ ବିତର୍କ ଲାଗି ଅଛି । କେହି କହନ୍ତି ଶିକ୍ଷା ବିଭାଗର ଇନସ୍ପେକ୍‌ଟରୀ ପ୍ରଧାନ କର୍ମ ଅଟଇ, ସେଥିପାଇଁ ବିଶେଷ ବିଦ୍ୱାନ ଲୋକ ଆବଶ୍ୟକ କାରଣ ସେ ବିଦ୍ୱାନ ନହେଲେ କିପରି ବିଦ୍ୟାଶିକ୍ଷା ବିଶେଷତଃ ଉଚ୍ଚଶିକ୍ଷା ସମ୍ବନ୍ଧରେ ଦୋଷାଦୋଷ ବୁଝି ପାରିବ । ଜଣେ ଓଡ଼ିଆଙ୍କୁ ସେ କର୍ମ ଦେବାକୁ ହେବ ବୋଲି ତହିଁର ଉପଯୁକ୍ତତା [illegible] କରିବା ଉଚିତ ନୁହେ ବରଂ ଓଡ଼ିଆମାନେ ଯେପରି ଅଧିକ ବିଦ୍ୱାନ [illegible] ଏପରି ଉଚ୍ଚକର୍ମର ଯଥାର୍ଥ ରୂପେ ଉପଯୁକ୍ତ ହୁଅନ୍ତି ସେଥିର ଉପାୟ କରିବାର ଉଚିତ । ଆମ୍ଭେମାନେ ମଧ୍ୟ ଏହି ବିବେଚନାରେ ବିଦ୍ୟାସଙ୍କ୍ରାନ୍ତ ଅତି ଉଚ୍ଚ ଉପାଧିଧାରୀ ବାବୁ ମଧୁସୂଦନ ଦାସଙ୍କୁ ମନୋନୀତ କରିଥିଲୁଁ । କିନ୍ତୁ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସାହେବଙ୍କ ବିବେଚନାରେ ସେ କର୍ମ ପାଇଁ ପାଣ୍ଡିତ୍ୟ ଆବଶ୍ୟକ ନାହିଁ, ଇନସ୍ପେକ୍‌ଟରୀ ଶିକ୍ଷା ବିଭାଗର ଏକପ୍ରକାର ହାକିମୀ କର୍ମ ଅଟେ, ତନ୍ନିମିତ୍ତ ଅଧିକ ପରିମାଣରେ କାର୍ଯ୍ୟ ଦକ୍ଷତା ଆବଶ୍ୟକ । ଏ ବିବେଚନାରେ ନନ୍ଦ କିଶୋର ବାବୁ ସେ କର୍ମର ସମ୍ପୂର୍ଣ୍ଣରୂପେ ଉପଯୁକ୍ତ ଅଟନ୍ତି । ବର୍ତ୍ତମାନ ତାଙ୍କର ଯୌବନାବସ୍ଥା, ଯାଙ୍କ ଠାରେ ଯେ କିଛି ଅଭାବ ଥିବ ତାହା ସେ ଅନାୟାସେ ପୂରଣ କରିପାରନ୍ତି । ଅତଏବ ତାଙ୍କୁ ନିଯୁକ୍ତ କରିବାରେ କେହି ଅସନ୍ତୁଷ୍ଟ ହେବାର କିଛି କାରଣ ଦେଖା ଯାଉନାହିଁ । କମିଶନର ସାହେବ ଲେକ ମନୋନୀତ କରିବାରେ ଯେପରି ହେଉନ୍ତି ସେ ଯେ ଏସ୍ଥଲେ ସେପରି ନହୁଡ଼ ନନ୍ଦକିଶୋର ବାବୁଙ୍କ ପାଇଁ ଅନୁରୋଧ କରିଅଛନ୍ତି ଏହା ସୌଭାଗ୍ୟ

ବଶସ୍ତ ଅଛନ୍ତି । ବର୍ତ୍ତମାନ ପ୍ରଶଂସିତ ବାବୁ ସେ ପଦରେ ଏକପ୍ରକାର ସ୍ୱରୂପ ରହିବେ ଓ ତହିଁର ପୂର୍ଣ୍ଣ ବେତନ ନପାଇ ତାଙ୍କ ଅସଲ କର୍ମର ବେତନ ଓ ଏକପ୍ରକାର ଉପରିଗର୍ଭା ପାଇବେ । ଅମ୍ଭେମାନେ ମନାସୁ ଅଛୁଁ ଯେ ସେ ସେଭର୍ମ ସକାଶେ ଆପଣାର ଉପଯୁକ୍ତତା ର ପରୀକ୍ଷା ଦେଇ ଶୀଘ୍ର ସେଥିରେ ବାହାଲ ହେଉନ୍ତୁ ଓ ଓଡ଼ିଶାର ମାନରକ୍ଷା କରନ୍ତୁ ।

୪୦୮ । ମେଳା ବର୍ଣ୍ଣନା ସମାରୋହ

ଗତ ଶନିବାର ରାତ୍ରିରେ ଏଠାରେ ବାବୁ ହରଦାନନ୍ଦ ଦାସଙ୍କ ବୃହତ୍ ଉଦ୍ୟାନରେ ଉଦ୍ଦ୍ୟାକ୍ତଙ୍କର ସମାରୋହ ହୋଇଥିଲା । ଏଥିର ଉଦ୍ୟମକାରୀ ବାବୁ ତାରକାନ୍ତ ବନ୍ଦ୍ୟାପାଧ୍ୟାୟ, ବାବୁ ବୃନ୍ଦାବନଚନ୍ଦ୍ର ମଣ୍ଡଳ, ମୌଲବୀ ଅବଦୁଲ କାଦର, ବାବୁ ହରଦାନନ୍ଦ ଦାସ ଓ ବାବୁ ହରମୋହନ ସିଂହ ଓ ବ୍ୟୟ ନିର୍ବାହକର୍ତ୍ତା ଏକା ବାବୁ ବୃନ୍ଦାବନଚନ୍ଦ୍ର ମଣ୍ଡଳ ଅଟନ୍ତି । ସେ ଉଦ୍ୟାନ ଯେପରି ପ୍ରଶସ୍ତ ଓ ନାନାଜାତି ବୃକ୍ଷ ଲତାରେ ସୁଶୋଭିତ ତାହା ଯେଉଁମାନେ ଦେଖି ଅଛନ୍ତି ସେମାନେ ଜାଣନ୍ତି ରାତ୍ରରେ ତାହା ଅଲୋକମୟ ହୋଇ ଥିବାରୁ ତହିଁର ଶୋଭା ଦ୍ୱିଗୁଣ ବୃଦ୍ଧି ହୋଇ ଥିଲା ।

× × ×

ଏ ସଭାକୁ ରାଜା, ଜମିଦାର, ଅମଲା ଇତ୍ୟାଦି ପ୍ରାୟ ସକଳ ଭଦ୍ର ଶ୍ରେଣୀର ଲୋକେ ଆମନ୍ତ୍ରିତ ହୋଇଥିଲେ ଓ ଏଠାରେ ଥିବା ପ୍ରାୟ ସମସ୍ତ ରାଜା ଓ ଅନ୍ୟାନ୍ୟ ଲୋକେ ଅନେକ ସମାଗତ ହୋଇ ସଭା ପୂର୍ଣ୍ଣ କରିଥିଲେ ।

× × ×

ଦରବାର ଭିନ୍ନ ଅନ୍ୟ କୌଣସି ସଭାରେ ଗଡ଼ଜାତ ରାଜାମାନେ ଏକତ୍ରିତ ହୋଇ ନଥିଲେ । ଏ ସଭାରେ ସେମାନେ ଓ ଭଦ୍ରମଣ୍ଡଳୀର ଅଧିକାଂଶ ବ୍ୟକ୍ତି ଏକତ୍ରିତ ହୋଇ ଥିବାରୁ ଏହାକୁ ଅଭିନବ ବୋଲିବାକୁ ହେବ । ବସ୍ତୁତଃ ଏପରି ସଭା ଏଠାରେ କେବେ ହୋଇ ନଥିଲା ।

× × ×

ଯଦିଚ ସଭାକାରୀଙ୍କ କଳ୍ପନାନୁସାରେ ଫଳସ୍ୱରୂପ ପ୍ରଦର୍ଶନ ହୋଇ ସୁଚାରୁରୂପେ ଦେଖାଯାଇଥାନ୍ତା ତେବେ ଏ ସଭା ଆହୁରି ହିତକାରକ ହୋଇଥାନ୍ତା । ବୋଧ- ହୁଏ ସମୟାଭାବରେ ସେ କଳ୍ପନା ସିଦ୍ଧ ହୋଇ ନ ପାରିଲା । ଯେ ପର୍ଯ୍ୟନ୍ତ ହୋଇ-

ଅଛି ତହିଁ କମିଶ୍ନ ସଭା ସର୍ଜନକାରୀମାନେ ଧନ୍ୟବାଦର ପାତ୍ର ଅଟନ୍ତି ସନ୍ଦେହ ନାହିଁ । ଆମ୍ଭମାନଙ୍କର ଏକାନ୍ତ ଇଚ୍ଛା ଏହି ଯେ ଏପରି ସଭା ଏ ପ୍ରଦେଶର ନାନାସ୍ଥାନରେ ପୁନଃ ପୁନଃ ହୋଇ ସମାଜର ଉନ୍ନତି ସାଧନ କରୁ ।

୪୦୯ ।          ସାପ୍ତାହିକ ସମ୍ବାଦ ।

ନାନା ସାହେବ ବୋଲି ଯେଉଁ ବ୍ୟକ୍ତି ଧରାପଡ଼ିଅଛି ତାହାର ପରିଚୟ ଅବଧି ନିଶ୍ଚୟ ରୂପେ ହୋଇନାହିଁ । ଗୃହର କମିଶ୍ନ ସେ ବ୍ୟକ୍ତି କାନପୁର ପ୍ରେରିତ ହୋଇ ଅଛି । ଅନେକ ଲୋକ ସନ୍ଦେହ କରନ୍ତି ଯେ ଏ ବ୍ୟକ୍ତି ବାସ୍ତବରେ ନାନା ସାହେବ ନୁହଇ ମାତ୍ର ତାହାର କେହି ସଙ୍ଗୀହେବ ଓ ନାନାର କଥା ଏହାଙ୍କୁ ଜଣାଥିବ । ସେ ବ୍ୟକ୍ତି ଆତ୍ମ ହତ୍ୟାର ଚେଷ୍ଟା କରିଥିଲେ ମାତ୍ର କୃତକାର୍ଯ୍ୟ ହୋଇ ନପାରିଲେ ।

## ( ୯ମ ଭାଗ, ୧୨ । ୧୨ । ୧୮୭୪, ସଂଖ୍ୟା ୪୯ )

୪୧୦ ।     ଲେପ୍ଟେନେଣ୍ଟ ଗବର୍ଣ୍ଣର ସାହେବଙ୍କୁ ଦେଖିବା ପାଇଁ ଅନଗୁଳ ବାଙ୍କୀ ଓ କନ୍ଧମାଳର ଜମାଂଶ ପ୍ରଧାନ ସରବରାକାର ଏବଂ କେତେ ଜଣ ପାଣ ସର୍ଦ୍ଦାର ଏଠାକୁ ଆସିଥିଲେ । ସାହେବ ମହୋଦୟ ସେମାନଙ୍କୁ ଦେଖି ସରକାରୀ ବ୍ୟୟରେ ଶିରୋପା ଦେଲେ । ପ୍ରଧାନ ସରବରାକାରମାନେ ଜଣକେ ୪୦ଙ୍କା ମୂଲ୍ୟର ମାଣିଆବନ୍ଧୀ ଯୋଡ଼ ଓ ପାଣ ସର୍ଦ୍ଦାର ମୋଟ ଧୋତି ଗୁଦର ଓ ଲାଲ ପାଗ ଓ କେହି ୨ ଲାଲ ବନାତ ପାଇ ଅଛନ୍ତି । ଏଥିର ମୋଟ ବ୍ୟୟ ୪୦୦ଙ୍କା ଅଟଇ । ଶିରୋପା ପ୍ରଥା ଗଡ଼ଜାତରେ ବିଶେଷ ପ୍ରବଳ ଓ ତହିଁରେ ରାଜଭକ୍ତି ବୃଦ୍ଧି ହୁଅଇ । ବୋଧହୁଏ ସେହି ହେତୁ ତହିଁର ଅନୁସରଣ କରାଯାଇ ଅଛି ।

୪୧୧ ।     ବାବୁ ବନମାଳୀ ସିଂହ ଅନଗୁଳ ତହସିଲଦାରୀ କର୍ମରେ ଇସ୍ତଫା ଦେଇ ପୁନର୍ବାର ଢେଙ୍କାନାଳ ମହାରାଜାଙ୍କର ଦେୱାନ ହୋଇ ଅଛନ୍ତି । ମହାରାଜା ବନମାଳୀ ବାବୁଙ୍କ କର୍ମରେ ଏମନ୍ତ ସନ୍ତୁଷ୍ଟ ହୋଇଥିଲେ ଯେ ତାଙ୍କର ସାହାଯ୍ୟ ବିହୀନେ ରାଜ୍ୟର ଚଳାଇବାକୁ ବଡ଼ କ୍ଲେଶକର ଜ୍ଞାନକଲେ, ଏଥିପାଇଁ ସେ କମିଶନର ସାହେବଙ୍କଠାରେ ପ୍ରାର୍ଥୀ ହୋଇ ବାବୁଙ୍କୁ ଆପଣା ପାଖକୁ ନେଇଗଲେ । ଏଥର କମିଶନର ସାହେବଙ୍କର ସାକ୍ଷାତରେ ବାବୁଙ୍କର ବେତନାଦି ବନ୍ଦୋବସ୍ତ କରି ମହାରାଜା ନେଇ ଯାଇ ଅଛନ୍ତି ଓ ଏମନ୍ତ ଅଙ୍ଗୀକାର ପତ୍ର ଦେଇ ଅଛନ୍ତି ଯେ କମିଶନର ସାହେବଙ୍କ ବିଚାରରେ ବନମାଳୀ ବାବୁଙ୍କ ମନ୍ଦାଚରଣ ପ୍ରମାଣ ନହେଲେ ମହାରାଜା କିମ୍ବା ତାଙ୍କର ଉତ୍ତରାଧିକାରୀମାନେ କେହି ବାବୁଙ୍କୁ କର୍ମରୁ ବାହାର କରିଦେଇ

ପାଇବେ ନାହିଁ । ବାବୁଙ୍କର ବେତନ ମାସିକ ୫୧୦ ଙ୍କା ହୋଇଅଛି ଏପର ନଗଦ ୬୨୨୦୦ଙ୍କା ବାବୁଙ୍କୁ ମହାରାଜା ଦାନ କରିବେ ଯେ ଏହିର ସୁଧ ମାସକୁ ୫୨୦ଙ୍କା ହେବ । ବାବୁ କର୍ମରେ ଥିବା ପର୍ଯ୍ୟନ୍ତ ବେତନ ଭୋଗ କରିବେ । ସେ ଓ ତାଙ୍କର ଉତ୍ତରାଧିକାରୀମାନେ ଚିରକାଳ ସକାଶେ ଦଶହଜାରଙ୍କା ଭୋଗ କରିବେ ଏହିରେ ମହାରାଜଙ୍କର କୌଣସି ଦାବୀ ନରହିବ । ସରକାରୀ କର୍ମରୁ ଛଡ଼ାଇ ନେବାର ମହାରାଜା ଏପରି ବୃତ୍ତିଦାନ କରିଅଛନ୍ତି । ଉପଯୁକ୍ତ ବେତନ ନଦେଲେ ଭଲ ଲୋକର କଦାଚ ମିଳିବାର ସମ୍ଭବ ନୁହଇ ଓ ମହାରାଜା ଉପରି କଥିତ ବନ୍ଦୋବସ୍ତରେ ବନମାଳୀବାବୁଙ୍କୁ ଧେନ ଦିବାରେ ସେ ଧନଠାରୁ ଗୁଣକୁ ଅଧିକ ମୂଲ୍ୟବୋଲି ମଣିବାର ଆଉ ଗୋଟିଏ ପରିଚୟ ଦେଇ ଅଛନ୍ତି । ଆମ୍ଭେମାନେ ଭରସାକରୁଁ ଯେ ଅନ୍ୟାନ୍ୟ ରାଜାମାନେ ତେଙ୍କ ନାଳ ମହାରାଜାଙ୍କର ଅନୁକରଣ କରି ଆପଣା ଆପଣା ରାଜ୍ୟରେ ଉପଯୁକ୍ତ ମନ୍ତ୍ରୀ ନିଯୁକ୍ତ କରନ୍ତୁ ।

୪୧୨ । ସାପ୍ତାହିକ ସମ୍ବାଦ ।

ବାବୁ ବନମାଳୀ ସିଂହ ଇସ୍ତଫା ଦେବାରୁ ଅନୁଗୁଳ ତହସିଲଦାରୀ କର୍ମରେ ବାବୁ ବିଚ୍ଛନ୍ଦ ପଟ୍ଟନାୟକଙ୍କୁ କମିଶନର ସାହେବ ମନୋନୀତ କରି ସମ୍ବଲପୁରକୁ ଚିଠି ଲେଖି ଅଛନ୍ତି ।

## (୯ମ ଭାଗ, ୨୭।୧୨।୧୮୭୪, ସଂଖ୍ୟା ୫୧)

୪୧୩ । ଅମ୍ଭେମାନେ ଶୁଣିଅଛୁଁ ଯେ ସରକାର ବାହାଦୂର ବର୍ତ୍ତମାନ ଏ ଜିଲ୍ଲାରେ ଶୁଖୁଆ ବେପାର ଆରମ୍ଭ କରି ଯେଉଁ ୨ ସ୍ଥାନରେ ଲବଣ ଯୋଗାନ ହେଉଅଛି ସେହି ୨ ସ୍ଥାନରେ ମାଛମାରି ଲବଣ ଦେଇ ଶୁଖୁଆ ପ୍ରସ୍ତୁତ କରିବା ସକାଶେ ଲୋକ ନିଯୁକ୍ତ କରିଅଛନ୍ତି । ଏ ଜିଲ୍ଲା କଲେକଟରଙ୍କର ତହିଁର ବନ୍ଦୋବସ୍ତ ହୋଇଅଛି । କାହିଁକି ଏ ବେପାରରେ ଗବର୍ଣ୍ଣମେଣ୍ଟ ମଣ୍ଡି ହୋଇଅଛନ୍ତି ଆମ୍ଭେମାନେ କହି ନପାରୁଁ । ଆମ୍ଭେମାନେ ଯାହା ଶୁଣିଲୁ ପାଠକମାନଙ୍କୁ ଜଣାଉଛୁଁ । ଯେବେ ଏକଥା ସବୁ ସତ୍ୟ ହୁଏଇ ତେବେ କାର୍ଯ୍ୟଟି ଏ ଜିଲ୍ଲା ପକ୍ଷରେ ସୁଖକର ଅଟଇ କାରଣ ଏଠାରେ ଶୁଖୁଆର ଗ୍ରାହକ ଅନେକ ଅଛନ୍ତି, ଅନୁମାନ ହୁଏଇ ଉପଯୁକ୍ତ ନିଷ୍କର ଧାରୁ ହେବ ଏବଂ ପୂର୍ବେ ଶୁଖୁଆ ଫସଲ ନଷ୍ଟ ହେବାର ଆକ୍ଷେପ ପ୍ରକାଶ କରି ଲବଣ ଓଜନରେ ଅଧିକ କର ଗୃହୀତ ହୋଇଥିବା ତହିଁର କାରଣ ସ୍ୱରୂପ ପ୍ରଦର୍ଶିତ କରିଥିଲେ । ସେହି ମତର ଏରୂପ ବେପାର ଆରମ୍ଭ ହୋଇଅଛି ।

## ବିଜ୍ଞାପନ

୪୨୪ । ପ୍ରସିଦ୍ଧ କବି ଉପେନ୍ଦ୍ର ଭଞ୍ଜ କୃତ ସୁଭଦ୍ରା ପରିଣୟ ନାମକ ପୁସ୍ତକ ଖଣ୍ଡିକ ସଂଶୋଧିତ ହୋଇ ଯନ୍ତ୍ରାରୂଢ଼ ଅଛି । ଗ୍ରାହକଗଣ ଅଳ୍ପଦାମରେ ପ୍ରାପ୍ତହୋଇ ପାରିବେ । ଇତି ।

୨୪ । ୧୨ । ୭୪ ଶ୍ରୀ ଭଗବତ ଦାଁ ।

## ( ୧୦ମ ଭାଗ, ୨।୧।୧୮୭୫, ସଂଖ୍ୟା ୧ )

୪୧୫ ଗବର୍ଣ୍ଣମେଣ୍ଟଙ୍କ ଶୁଖୁଆ ବେପାର ସମ୍ପର୍କରେ ଗତ ସପ୍ତାହରେ ଆମ୍ଭେମାନେ ଯାହା ଲେଖିଥିଲୁଁ ତହିଁ ସମ୍ପର୍କରେ ଅବଗତ ହୋଇଅଛୁଁ ଯେ ଉକ୍ତ ବେପାର ଗବର୍ଣ୍ଣମେଣ୍ଟ ସ୍ୱୟଂ ନକରି ଲବଣ ଗୋଲ୍ଲାନ ପ୍ରାୟ ତହିଁର କାରବାର ନିମନ୍ତେ ଲୋକଙ୍କୁ ପଟ୍ଟା ଦେବାକୁ ପ୍ରସ୍ତୁତ ଅଛନ୍ତି । ଯେଉଁ ୨ ସ୍ଥାନରେ ଲବଣ ଗୋଲ୍ଲାନ ହେଉଅଛି ସେହି ୨ ସ୍ଥାନରେ ମାଛମାରି ଶୁଖୁଆ ପ୍ରସ୍ତୁତ କରିବାପାଇଁ କେହି ପଟ୍ଟାର ପ୍ରାର୍ଥନା କଲେ ଗବର୍ଣ୍ଣମେଣ୍ଟର ପାଇ ପାରିବେ ଓ ଲବଣ କଣ୍ଟ୍ରାକ୍ଟକାରମାନଙ୍କୁ ଯେପରି ସୁଲଭ ଖର୍ଚ୍ଚା ଇତ୍ୟାଦି ଦେବାକୁ ହୁଅଇ ଶୁଖୁଆ ସକାଶେ ମଧ୍ୟ ସେହିପରି ଦେବାକୁ ହେବ ତେବେ ଚଳନ୍ତି ବର୍ଷପାଇଁ ଏକ ସ୍ଥାନର ଖର୍ଚ୍ଚା ଗବର୍ଣ୍ଣମେଣ୍ଟ କଣ୍ଟ୍ରାକ୍ଟକାରଠାରୁ ନ ନେଇ ଆପଣା ହାତରୁ ଦେବାକୁ ସ୍ୱୀକାର କରିଅଛନ୍ତି । ଶୁଖୁଆ ପ୍ରସ୍ତୁତ ସକାଶେ ଯେତେ ଲବଣର ପ୍ରୟୋଜନ ହେବ ତହିଁ ପାଇଁ ଗବର୍ଣ୍ଣମେଣ୍ଟ କଛି କର ନେବେ ନାହିଁ ସୁତରାଂ ପୂର୍ବେ ଯେ ଆମ୍ଭେମାନେ ଲେଖିଥିଲୁଁ କି ହଣ୍ଟର ସାହେବଙ୍କ ଲବଣ କର ଅଧିକ ହେତୁ ଶୁଖୁଆ ଫସଲ ନଷ୍ଟ ହେବାର ମତ ଏଥିର କାରଣ ଅଟଇ ସେହିକଥା ଯଥାର୍ଥ ଅଟଇ ।

୪୧୬ । ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ପାଠକମାନଙ୍କୁ ଜଣାଉଅଛୁଁ ଯେ ଗତ ସପ୍ତାହ ଶୁକ୍ରବାର ବଢ଼ଦିନ ରାତ୍ର ୯ ଘଣ୍ଟା ସମୟରେ ବାବୁ ମୁକୁନ୍ଦ ପ୍ରସାଦ ରାମ୍ବାହାଦୁର ମାନବଲୀଳା ସମ୍ବରଣ କରି ସ୍ୱର୍ଗାରୋହଣ କଲେ । ଏ ମହାଶୟ ଓଡ଼ିଶା ମଧ୍ୟରେ ଜଣେ ପ୍ରଧାନ ବ୍ୟକ୍ତି ଥିଲେ ଓ ଅନ୍ୟୂନ ପଞ୍ଚାଶବର୍ଷ ଓଡ଼ିଶା ଓ ବଙ୍ଗଳାରେ ସରକାରୀ କର୍ମକରି ସୁଖ୍ୟାତି ଲଭି ମାସକୁ ଟ ୨୨୫ଙ୍କା ଲେଖାଏଁ ପେନସନ ଓ ରାମ୍ବାହାଦୁର ପଦ ପାଇଥିଲେ ଓ ଏ ସବୁ ପ୍ରାୟ ବ ୨୨ବର୍ଷ ଭୋଗ କଲେ । ବାବୁଙ୍କର ଘର ମହାଗ୍ରାମରେ ଥିଲା ଓ ବୟସ ପ୍ରାୟ ୮୦ବର୍ଷ ହୋଇଥିଲା । ଏହାଙ୍କ ମୃତ୍ୟୁରେ ଓଡ଼ିଶାବାସୀ ବିଶେଷରେ ମହାଗ୍ରାମ ନିବାସୀ କାୟସ୍ଥଙ୍କର ଅନେକ କ୍ଷତି ହୋଇଅଛି । ×

× × ×

## ( ୧୦ମ ଭାଗ, ୨।୧।୨୮୭୫, ସଂଖ୍ୟା ୧ )

୪୧୭ । ଲେଫ୍ଟେନାଣ୍ଟ ସାହେବ କଣ କହିଗଲେ ।

ମାନ୍ୟବର ଲେଫ୍ଟେନାଣ୍ଟ ଗବର୍ଣ୍ଣର ସାହେବ ଓଡ଼ିଶା ସନ୍ଦର୍ଶନ କରି ଫେରିଯିବା ଦିନଠାରୁ ଯାହା ତାହାଙ୍କ ଉପରେ ଲିଖିତ ପତ୍ରରୁ ଆମ୍ଭେମାନେ ଶୁଣୁଅଛୁଁ

ଓ ଲୋକଙ୍କର ତୃପ୍ତି ନିମିତ୍ତ ଆମ୍ଭମାନଙ୍କର ଏକାନ୍ତ ମାନସ ଯେ ତାହାଁର କୌଶଳ ସବୁଶର ଦେଇଁ ମାତ୍ର ଆମ୍ଭେମାନେ ପୂର୍ବକୁ କହୁଅଛୁଁ ଯେ ସେ ପ୍ରଶ୍ନର ଯଥାର୍ଥ ଉତ୍ତର ଦେବାର ସମୟ ଉପସ୍ଥିତ ହୋଇନାହିଁ । ଏଠାରେ ସେ ଯାହା ସବୁ ଦେଖି ଶୁଣି ଓ ଯେତେ ଖଣ୍ଡ ଆବେଦନ ପତ୍ର ଘେନି ଯାଇଅଛନ୍ତି ଯେତେବେଳେ ସେ ସବୁର ଫଳ ପ୍ରକାଶ ହେବ ତେତେବେଳେ ପ୍ରଶ୍ନର ପ୍ରକୃତ ଉତ୍ତର ପ୍ରାପ୍ତ ହେବ । ସମ୍ପ୍ରତି ଆମ୍ଭେ-ମାନେ ଏହି ମାତ୍ର ବୋଲିପାରୁଁ ଯେ ଛୋଟଲାଟ ସାହେବ ଏଠାକୁ ଶୁଭାଗମନ କରିବାରେ ଓଡ଼ିଶାବାସୀ ଓ ଛୋଟଲାଟଙ୍କର ପରସ୍ପର ଉତ୍ତମରୂପେ ଚିହ୍ନା ଚିହ୍ନି ହୋଇଅଛି ।

× × ×

× × × × ×

× × । ସର ରିଚାର୍ଡ ଟେମ୍ପଲଙ୍କର ଗୋଟିଏ ମହତ୍ତ୍ୱ ଗୁଣ ଏହି ପ୍ରତ୍ୟକ୍ଷ ହେଉଅଛି ଯେ ଭିନ୍ନ ୨ ସମ୍ପ୍ରଦାୟର ଲୋକଙ୍କ ଅଭିନନ୍ଦନପତ୍ରମାନଙ୍କ ଉତ୍ତର-ରେ ସେ ଯାହା ଉତ୍ତର ଦେଇ ଅଛନ୍ତି ତାହାଁରେ ସେ ସମସ୍ତ ଜାତୀୟ ଓ ସମ୍ପ୍ରଦାୟର ଲୋକଙ୍କୁ ସମାନ ରୂପେ ଘେନିବାର ଲକ୍ଷଣ ରୂପେ ପ୍ରକାଶ ପାଇଅଛି । ମୁସଲମାନ ମାନଙ୍କୁ ବିଦ୍ୟାଶିକ୍ଷା ଦ୍ୱାରା ହିନ୍ଦୁଙ୍କ ସମାନ ହେବାକୁ ଅନୁରୋଧ କଲେ ଓ ଦେଶୀୟ ଖ୍ରୀଷ୍ଟିୟାନମାନଙ୍କୁ ସରକାରୀ ଚାକରିର ପ୍ରତ୍ୟାଶା ନ କରି କୃଷି ଓ ବ୍ୟବସାୟରେ ମନୋଯୋଗ ଦେବାକୁ କହିଲେ ଓ ଗବର୍ଣ୍ଣମେଣ୍ଟ ଆପଣା ଅଧୀନସ୍ଥ ନାନା ଜାତୀୟ ଓ ଧର୍ମାବଲମ୍ବୀ ପ୍ରଜାବର୍ଗଙ୍କୁ ସମାନରୂପ ଦେଖନ୍ତି ଏହିକଥା ସେ ପ୍ରକାଶ୍ୟ ଓ ଅପ୍ରକାଶ୍ୟ ରୂପେ ବାରମ୍ବାର କହି ଅଛନ୍ତି । ସର ରିଚାର୍ଡଙ୍କ ଆଉ ଗୋଟିଏ ଗୁଣ ଏହି ଯେ ଉଚ୍ଚ-ଇଂରାଜୀ ଶିକ୍ଷାର ବିରୋଧୀ ନୁହନ୍ତି ବରଂ ଏଠା ଲୋକମାନେ ଯେପରି ଶିକ୍ଷା ଲାଭ କରନ୍ତୁ ଏହାଙ୍କର ନିତାନ୍ତ ବାସନା ଓ କଟକ ହାଇସ୍କୁଲରେ ସେ ଯାହା ବ୍ୟକ୍ତ କରିଥିଲେ ତାହାଁରେ ସ୍ପଷ୍ଟରୂପେ ଛାତ୍ରମାନଙ୍କୁ ଉଚ୍ଚଶିକ୍ଷା ଲାଭକରିବା ପାଇଁ ଅନୁରୋଧ କରି କହି ଥିଲେ ଯେ ପ୍ରବେଶିକା ପରୀକ୍ଷା ଦେବାଦ୍ୱାରା କିଛି ଲାଭ ନାହିଁ ମାତ୍ର ତହିଁ ଉତ୍ତାର ବିଶ୍ୱବିଦ୍ୟାଳୟର ପରମାନ ପାଇବାର ପରୀକ୍ଷା ଦେବା ଉଚିତ; ଯେବେ ଛାତ୍ରମାନେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ଉତ୍ତାରେ ବିଦ୍ୟାଳୟ ପରିତ୍ୟାଗ ନକରି ଅଧ୍ୟୟନ କରିବେ ତେବେ ସମୟରେ ସେ ଏଠା ହାଇସ୍କୁଲକୁ କାଲେଜ କରି ପାରନ୍ତି । ଫଳତଃ ଯେଉଁ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ଆପଣା ଅଧୀନସ୍ଥ ସମସ୍ତ ଜାତୀୟ ଓ ସମ୍ପ୍ରଦାୟର ପ୍ରଜାଙ୍କୁ ସମାନରୂପେ ଦେଖନ୍ତି ଓ ଉଚ୍ଚଶିକ୍ଷା ଲଭିବା ଓ ସ୍ୱାଧୀନ ବ୍ୟବସାୟରେ ନିଯୁକ୍ତ ହେବାପାଇଁ ସମସ୍ତଙ୍କୁ ଉପଦେଶ ଦିଅନ୍ତି ତାହାଙ୍କଦ୍ୱାରା ଅବଶ୍ୟ ଅନେକ ମଙ୍ଗଳର ଆଶା ଅଛି ବିଶେଷ ସର ରିଚାର୍ଡ ଟେମ୍ପଲ ଶାସନ କାଳର ପ୍ରଥମାବସ୍ଥାରେ ଏ ପ୍ରଦେଶକୁ ଆସିଥିବାରୁ ଅବଶ୍ୟ ଏହିର ଅଧିକ ମଙ୍ଗଳ ସାଧିବେ ଏମନ୍ତ ଆଶା ହେଉଅଛି ।

କେବଳ ଗୋଟିଏ କଥାରେ ଲେଫ୍‌ଟେନେଣ୍ଟ ଗବର୍ଣ୍ଣରଙ୍କ କିଛି ଶୈଥିଲ୍ୟ ଦେଖାଗଲା । ସେ ଏ ଦେଶର ଅବସ୍ଥା ଯାହା ଆପେ ଦେଖିଲେ କିମ୍ବା ଆପଣା ଅଧୀନସ୍ଥ କର୍ମଚାରୀଙ୍କଠାରୁ ଶୁଣିଥିଲେ ତହିଁରେ ସେ କଣ୍ଡିନ୍ତ ହୋଇଗଲେ ଏ କଥାଟି ଭଲ ହୋଇନାହିଁ । ଏ ପ୍ରଦେଶୀୟ ସମ୍ଭ୍ରାନ୍ତ ଓ ବିଚକ୍ଷଣ ପ୍ରଧାନ ୨ ବ୍ୟକ୍ତିଙ୍କଠାରୁ ଅବସ୍ଥା ସମ୍ପର୍କୀୟ ସକଳ କଥା ଜାଣିବାକୁ ଯତ୍ନ କରିଥିଲେ ବଡ଼ ଭଲ ହୋଇଥାନ୍ତା । ତାହା ନ କରି କେତେ ଗୁଡ଼ିଏ ପ୍ରଶ୍ନ ବାବୁ ଜଗମୋହନ ରାୟଙ୍କୁ ପଚାରି ତାହାଙ୍କଠାରୁ ଏକା ଉତ୍ତର ନେଇ ଯେ ଚାଲିଗଲେ ଏ କଥା ବଡ଼ ଭଲ ହେଲା ନାହିଁ । ଏଥିପାଇଁ ଆମ୍ଭ-ମାନଙ୍କର ବେଳେ ୨ ସନ୍ଦେହ ହୁଅଇ ଯେ ସବୁ ଗବର୍ଣ୍ଣର ଟେମ୍ପଲ ଏଠାକୁ ଆସିଥିଲେ ଏଠାର ଅବସ୍ଥା ଭଲରୂପେ ଜାଣି ପାରିନାହାନ୍ତି ।

୪୧୮ । ସାପ୍ତାହିକ ସମ୍ବାଦ ।

ଯାଜପୁର ଅଞ୍ଚଳରେ ମହାଜନମାନେ ଚାଉଳ କିଣିବା ବନ୍ଦ କରି-ବାରୁ ମଫସଲରେ ଟଙ୍କାକୁ ସେ ୩ ୨ର ଓ ସହରରେ ସେ ୨।।ର ହୋଇଅଛି ।

୪୧୯ । ଇଂଲଣ୍ଡସ୍ଥ ତାରଡାକ ଯୋଗେ ସମ୍ବାଦ ପାଇଅଛନ୍ତି ଯେ ନାନା ସାହେବ କଲିକାରେ ଯେଉଁ ବ୍ୟକ୍ତି ଧରା ହୋଇଥିଲା ତାହାକୁ ରାଜମହଲ ଖଲାସ ଦିଆ ଯାଇଅଛି ମାତ୍ର ସେ ମହାମାନ୍ୟ ପ୍ରତିନିଧିଙ୍କ ଓ୍ୟାରେଣ୍ଟ କ୍ରମେ ସମ୍ପ୍ରତି ନଜରବନ୍ଦୀରେ ଅଛି ।

୪୨୦ । ବିଜ୍ଞାପନ

କଟକ କେରେଜ କୁମ୍ପାନିର କାଳିବଜାର ଆଡ଼ଗଡ଼ରେ ଏକ ଖଣ୍ଡ ଉତ୍ତମ ଫିଟିଂଗାଡ଼ୀ ତହିଁର ଯୋଡ଼ ଘୋଡ଼ା ସହିତ ବିକ୍ରୀ ନିମନ୍ତେ ମୌଜୁଦ ଅଛି ତହିଁର ମୂଲ୍ୟ ଏକହଜାର ଟଙ୍କାରୁ ଊର୍ଦ୍ଧ୍ୱ ହେବନାହିଁ । ତାହା ସଉକିନ ଧନୀବ୍ୟକ୍ତିଙ୍କ ବ୍ୟବହାର ଯୋଗ୍ୟ ଅଟେ । ଯଦ୍ୟପି କାହାର ଖରିଦ କରିବାର ବାସନା ହୁଏ ତେବେ ସେ ଗାଡ଼ୀ ଓ ଘୋଡ଼ାଙ୍କୁ ଉକ୍ତ ଆଡ଼ଗଡ଼ରେ ଆସି ଦେଖି ତହିଁର ମୂଲ୍ୟ ଆମ୍ଭସଙ୍ଗେ ସ୍ଥିର କରିପାରନ୍ତି ।

୧୭ । ୧୨ । ୭୪

ଶ୍ରୀ ରାଧାନାଥ ପାଲ
ମେନେଜର କେରେଜ କୁମ୍ପାନି କଟକ

**( ୧୦ମ ଭାଗ. ୯ । ୧ । ୧୮୭୫, ସଂଖ୍ୟା ୨ )**

୪୨୧ । ଗଲତ ବର୍ଷର ଆରମ୍ଭରୁ ଉତ୍କଳଦୀପିକା ପୂର୍ବ ଦେହ ତ୍ୟାଗ କରି ନୂତନ କଳେବର ଧାରଣ କରିଅଛି ଏବଂ ଅମ୍ଭେମାନେ ମୁକ୍ତକଣ୍ଠରେ ସ୍ୱୀକାର କରୁଅଛୁ

ଯେ ନୂତନ ବର୍ଷରେ ଅଧିକତର ଶୋଭା ପାଉଅଛି । ଏହାର କାଗଜ ଭଲ; ଛପା ପରିଷ୍କାର ଏବଂ ଆକାର ସାନ୍ତାଠିକ ଉତ୍କଳ ଦୀପିକା ପ୍ରାୟ ଅଟଇ । ପତ୍ରିକା ଖଣ୍ଡିକ ସାପ୍ତାହିକ ହେବାର ଆମ୍ଭଙ୍କି ଆନନ୍ଦର ବିଷୟ ଅଟଇ । ଅଥଚ ମୂଲ୍ୟ ଉଣା ଅଗ୍ରିମ ବାର୍ଷିକ ଟ ୨।। ମାତ୍ର । ଏ ସମସ୍ତ ପରିବର୍ତ୍ତନର ଯେଉଁ ହେତୁମାନ ସମ୍ପାଦକ ଦେଖାଇଅଛନ୍ତି ଆମ୍ଭେମାନେ ତହିଁରେ ସମ୍ପୂର୍ଣ୍ଣ ରୂପେ ଐକ୍ୟ ଅଟୁଁ ଓ ଭରସା କରୁଁ ଯେ ତାହାଙ୍କର ବର୍ତ୍ତମାନ ସାହସ ସଫଳ ପୂର୍ବକ ପତ୍ରିକା ଖଣ୍ଡି ଚିରସ୍ଥାୟୀ ହେଉ ।

୪୨୨ ।

ସାପ୍ତାହିକ ସମ୍ବାଦ ।

ବାବୁ ବିଷ୍ଣୁ ପଟ୍ଟନାୟକ ଅନୁଗୁଳର ତହସିଲଦାର ପଦରେ ନିଯୁକ୍ତ ହେବାର ଗବର୍ଣ୍ଣମେଣ୍ଟ ଗେଜେଟରେ ଛପା ହୋଇଅଛି ।

୪୨୩ ।

ବିଜ୍ଞାପନ ।

ସନ ୧୮୭୫ । ୭୬ ମସିହାର ନୂତନ ପଞ୍ଜିକା ଅର୍ଥାତ ଯାହା ଆଗାମୀ ୧ଲା ବୈଶାଖ ମାସଠାରୁ ପ୍ରଚଳିତ ହେବ ଉତ୍କଳ ଭାଷାରେ ମୁଦ୍ରିତ ହୋଇ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ପୁସ୍ତକାଳୟରେ ବିକ୍ରୟ ହେଉଅଛି ମୂଲ୍ୟ ଟ ୦।୵ ଓ ମୋଫସଲ ପାଇଁ ଡାକମାସୁଲ ଟ ୦୵

## ( ୧୦ମ ଭାଗ, ୨୩ । ୧ । ୧୮୭୫, ସଂଖ୍ୟା ୪ )

୪୨୪ । ଗତ ପ୍ରକାଶିତ କଲିକତା ଗେଜେଟରେ ବାବୁ ନନ୍ଦକିଶୋର ଦାସ ଓଡ଼ିଶା ସ୍କୁଲ ସମୂହର ଜଏଣ୍ଟ ଇନସ୍ପେକ୍ଟରର ନିଯୁକ୍ତ ହେବାର ଦେଖି ଏଠା ଲୋକେ ଯତ୍ପରୋନାସ୍ତି ଚମତ୍କୃତ ଓ କ୍ଷୋଭିତ ହୋଇଅଛନ୍ତି । ବାସ୍ତବରେ ଏ ଘଟନା ସକାଶେ କାହାକୁ ଧନ୍ୟବାଦ ଦେବାକୁ ହେବ ଆମ୍ଭେମାନେ ସ୍ଥିରକରି ପାରୁନାହୁଁ । ଆମ୍ଭମାନଙ୍କର କମିଶନର ରେବନସା ସାହେବ ଏଥିର ମୂଳ କାରଣ ଏକାପକ୍ଷରେ ହେଉ-ଅଛନ୍ତି ସନ୍ଦେହ ନାହିଁ କାରଣ ସେ ଏ ସମ୍ପର୍କରେ ସମ୍ବନ୍ଧରେ ସବୁ ପରାମର୍ଶ ଗବର୍ଣ୍ଣ-ମେଣ୍ଟଙ୍କୁ ଦେଇ ଥିଲେ ଯଦ୍ୟପି କି ପରିଶେଷରେ 'ଅତି ଲୋଭରେ ତନ୍ତ୍ରିମରେ' ପ୍ରବାଦଟି ତାହାଙ୍କ କାର୍ଯ୍ୟରେ ଘଟିଅଛି ତଥାଚ ବୋଲିବାକୁ ହେବ ଯେ ଲେପଟେନେଣ୍ଟ ଗବର୍ଣ୍ଣରଙ୍କଠାରୁ ଅଧିକ ଆଶା ଆମ୍ଭେମାନେ ରଖିଥିଲୁଁ । ଉକ୍ତ ମହାତ୍ମା ସ୍ୱୟଂ ଅଳ୍ପକାଳ ହେଲା ଏ ପ୍ରଦେଶକୁ ଆସି ଏଠାର ଅବସ୍ଥା ଦେଖି ଶୁଣି ଯାଇ ଯେ ଆପଣା ବଚନର କିଛି ଖଟାଇ ନପାରିଲେ ବଡ଼ ଦୁଃଖର ବିଷୟ ଅଟଇ । ଏଠାରେ ବିଦ୍ୟା ଶିକ୍ଷାର ଉନ୍ନତି କାରଣ **କମିଶନର** ସାହେବ ଅହରହ ଯତ୍ନବାନ ଓ ସେହି ଯତ୍ନର ପରବଶ ହୋଇ ସେ

ଏଠାରେ ପ୍ରଥମେ ଜଣେ ଜଏଣ୍ଟ ଇନସ୍ପେକ୍ଟର ଓ ଶେଷରେ ସ୍ୱତନ୍ତ୍ର ଜଣେ ଇନସ୍ପେକ୍ଟର ନିଯୁକ୍ତ କରିବାରେ ଓ ଯଦ୍ୟପି କ କଥିତ ବିବେଚନାରେ ତ୍ରୁଟି ଅଥଚ ଓଡ଼ିଶାର ହିତ-ମାନସ ପ୍ରଯୁକ୍ତ ଜଣେ ଉତ୍କଳୀୟଙ୍କୁ ଶେଷ ଲିଖିତ କର୍ମରେ ନିଯୋଗ କରିବାର ଗବର୍ଣ୍ଣ-ମେଣ୍ଟଙ୍କୁ ପରାମର୍ଶ ଦେଲେ ମାତ୍ର ତହିଁର ଏମନ୍ତ ଅର୍ଥ ହୋଇନପାରେ ଯେ ଉତ୍କଳୀୟ କେହି ଏ କର୍ମ ସକାଶେ ଯଥାବିହିତ ରୂପେ ଉପଯୁକ୍ତ ନାହାନ୍ତି ବୋଲି ଉକ୍ତ ପଦ ଉଠାଇ ଦେବା ତାହାଙ୍କର ମାନସ ଥିଲା । ମାତ୍ର ଲେଫ୍ଟେନେଣ୍ଟ ଗବର୍ଣ୍ଣର ତାହାହିଁ କରିଅଛନ୍ତି । ସେ ଏକଆଡ଼େ କମିଶନରଙ୍କୁ ବାଧିତ କରିବାକୁ ଯାଇ ଅନ୍ୟଆଡ଼େ ଗୁରୁ-ତର ଶିଙ୍କଟ ଢାଳି ଅଛନ୍ତି । ଇନସ୍ପେକ୍ଟରୀ ପଦର ଉପଯୁକ୍ତ କେହି ଓଡ଼ିଆ ନମିଳି-ବାରୁ ସେ ବାବୁ ନନ୍ଦକିଶୋର ଦାସଙ୍କୁ ଜଏଣ୍ଟ ଇନସ୍ପେକ୍ଟର ନିଯୁକ୍ତ କରିଅଛନ୍ତି ! ଏକର ସାହେବ ଜଏଣ୍ଟ ଇନସ୍ପେକ୍ଟର ହୋଇ କଣ ମନ୍ଦ ହୋଇଥିଲା ଯେ ଏତେ ଫେରଫାର କରି ନନ୍ଦକିଶୋର ବାବୁଙ୍କୁ ସେ କାର୍ଯ୍ୟରେ ଆଣିଲେ । ଏଥିରେ ନା ଓଡ଼ିଶାର ଉନ୍ନତି ହେଲା ନା ନନ୍ଦକିଶୋର ବାବୁଙ୍କର ଭବିଷ୍ୟତ ବୃଦ୍ଧିର ଭଲ ଉପାୟ ହେଲା । ନନ୍ଦକିଶୋର ବାବୁ ଡେପୁଟୀ କଲେକ୍ଟରୀ ପଦରେ ଉତ୍ତମ କାର୍ଯ୍ୟ କରୁଅଛନ୍ତି ଓ ତହିଁରେ ତାହାଙ୍କର ଉନ୍ନତିର ସୁବିଧା ଯେମନ୍ତ ଅଧିକ ଅଛି ତେମନ୍ତ ତାହାଙ୍କ ପଦ ବୃଦ୍ଧିରେ ଏଠା ଲୋକଙ୍କ ହର୍ଷ ହେବାର ଅଧିକ କାରଣ ଅଛି । ଜଏଣ୍ଟ ଇନସ୍ପେକଟରୀ କାର୍ଯ୍ୟ ସକାଶେ ତାହାଙ୍କୁ ତହିଁର ଆଣିବାର କୌଣସି ମତେ ଭଲ ହୋଇନାହିଁ ଓ ଯଦ୍ୟପି କ ଏମନ୍ତ ବୋଲିମାଏ ଯେ ଗବର୍ଣ୍ଣମେଣ୍ଟ ପ୍ରଥମେ ତାହାଙ୍କୁ ଏହି ଅଭିପ୍ରାୟରେ ନିଯୁକ୍ତ କରିଅଛନ୍ତି ଯେ ତାହାଙ୍କ କର୍ମ ଦେଖିଲେ ଉତ୍ତାରୁ ଭବିଷ୍ୟତରେ ଇନସ୍ପେକ୍ଟର କରିବେ ତେବେ ସେପରି ନିୟମରେ ଅନ୍ୟ କାହାରିକୁ ଏବର୍ଷ ଦେଇଥିଲେ ମନ୍ଦ ହୋଇନଥାନ୍ତା। କାରଣ ଆମ୍ଭମାନଙ୍କ ବିବେଚନାରେ ଓଡ଼ିଆଙ୍କ ମଧ୍ୟରେ ସେପରି ଲୋକର ଅଭାବ ନାହିଁ । ଯାହାହେଉ ଓଡ଼ିଶା ସକାଶେ ଜଣେ ସ୍ୱତନ୍ତ୍ର ଇନସ୍ପେକ୍ଟର ନିଯୁକ୍ତ ହୋଇ ଉକ୍ତ ପଦ ଯେ ଏତେଶୀଘ୍ର ଉଠିଗଲା ବଡ଼ ଦୁଃଖର ବିଷୟ ଅଟଇ ଓ ଏବିଷୟରେ କମିଶନର ଓ ଲେଫ୍ଟେନେଣ୍ଟ ଗବର୍ଣ୍ଣର ଉଭୟଙ୍କ ବିବେଚନା ଏଠା ସର୍ବସାଧାରଣଙ୍କ ମନୋନୀତ ହୋଇନାହିଁ ।

## ଓଡ଼ିଶାର ସମ୍ବାଦପତ୍ର ।

୪୨୫ । ଉତ୍କଳ ଦର୍ପଣର ଆକାର ପରିବର୍ତ୍ତନରେ ବାଲେଶ୍ୱର ସମ୍ବାଦ ବାହିକା ଆକ୍ଷେପ ପ୍ରକାଶକରି କହିଅଛନ୍ତି ଯେ ପରିବର୍ତ୍ତନଟି ଭଲ ହେଉନାହିଁ କାରଣ ଓଡ଼ିଶା-ରେ ଅନେକ ଗୁଡ଼ିଏ ସମ୍ବାଦପତ୍ର ଅଛି, ତଦ୍ଦ୍ୱାରା ସାହିତ୍ୟର ଉପକାର ହେଉନାହିଁ । ସାହିତ୍ୟର ଉତ୍କର୍ଷସାଧନ ନିମିତ୍ତ ଖଣ୍ଡିଏ ମାତ୍ର ମାସିକ ପତ୍ରିକା ଉତ୍କଳଦର୍ପଣ ଥିଲା

ତାହା ସ୍ଥଗିତ ହେବା ଅନୁଚିତ ହୋଇଅଛି । ଲେଖକ ସ୍ୱୀକାର କରନ୍ତି ଯେ ଦର୍ପଣକୁ ମାସିକ ପତ୍ରିକାରୂପେ ବାହାର କରିବାରେ ଅଧିକାରୀଙ୍କର କ୍ଷତି ହୋଇଥିଲା ମାତ୍ର ତାହାଙ୍କର ମତରେ ସାହିତ୍ୟର ଉନ୍ନତି ଅନୁରୋଧରେ ସେ ପ୍ରକାର କ୍ଷତି ସ୍ୱୀକାର କରିବା ଅଯୁକ୍ତ ହୁଅନ୍ତା । ମାସିକ ପତ୍ରିକା ଅନ୍ତତଃ ଖଣ୍ଡେ ଓଡ଼ିଶାରେ ରହିବା ଅବଶ୍ୟ ଓ ତାହା ସାହିତ୍ୟର ଉତ୍କର୍ଷ ସାଧନର ମହତ୍ ଉପାୟ ସନ୍ଦେହ ନାହିଁ । କିନ୍ତୁ ଯେଉଁଠାରେ ଗ୍ରାହକ ନାହାନ୍ତି ସେଠାରେ କିପରି ଉପକାର ହେବ ? ପାଠକବର୍ଗଙ୍କ ସଂଖ୍ୟା ଅଧିକ ନହେଲେ କୌଣସି ଉପକାର ନାହିଁ । ଯେବେ କେହି ବିନାମୂଲ୍ୟରେ ଅନେକ ସଂଖ୍ୟକ ମାସିକପତ୍ରିକା ବିତରଣ କରିପାରେ ତେବେ ଓଡ଼ିଆ ସାହିତ୍ୟର ଉନ୍ନତିର ସମ୍ଭାବନା ମାତ୍ର ସେ ପ୍ରକାର କରିବାକୁ କାହାର ବଳ ଅଛି । ମାସିକ ପତ୍ରିକାଠାରୁ ସାପ୍ତାହିକ ବା ପାକ୍ଷିକପତ୍ରିକା ଏଠାରେ ଅଧିକ ପରିମାଣରେ ପ୍ରଚଳିତ ଅଛି ଓ ସମ୍ବାଦ ଜାଣିବାପାଇଁ ଏଠା ଲୋକେ ସମଧିକ ଆଗ୍ରହପ୍ରକାଶ କରିବାର ଦେଖାଯାଏ । ଯେବେ ଏହିସବୁ ପତ୍ରିକା ସମସ୍ତେ ଏକାବାଟରେ ନିର୍ମଳ ସାହିତ୍ୟର ଉତ୍କର୍ଷପ୍ରତି ଦୃଷ୍ଟି ରଖନ୍ତି ତେବେ ଅନୁମାନ ହୁଏ ମାସିକ ପତ୍ରିକାଠାରୁ ଏସବୁ ପତ୍ରିକା ଦ୍ୱାରା ଅଧିକ ଉପକାର ହେବ, କାରଣ ତହିଁରେ ଉଭୟ ପ୍ରକାର ଲାଭ ହେବ ଓ କ୍ରମଶଃ ସୁମାର୍ଜିତ ହେବାର ସମ୍ଭାବନା । ଉତ୍କଳଦର୍ପଣ ଯେମନ୍ତ ସାପ୍ତାହିକ ପତ୍ରିକା ହୋଇଅଛି ଯେବେ ତହିଁ ସଙ୍ଗେ ୨ ଆପଣାର ମୂଳଉଦ୍ଦେଶ୍ୟ ରକ୍ଷାପ୍ରତି ସମୁଚିତ ଯତ୍ନବାନ୍ ହୁଏ ତେବେ ମାସିକପତ୍ରିକାର ଅଭାବ ମୋଚନ ହେବ ଏତିକି ନୁହଁଇ ମାତ୍ର ଏହାଦ୍ୱାରା ଅଧିକତର ଉପକାର ହେବ ଏମନ୍ତ ଆଶା ହେଉଅଛି । ହେଲେହେଁ ଆମ୍ଭମାନଙ୍କ ମନରେ ଆଉ ଗୋଟିଏ ଆପତ୍ତି ଉଦୟ ହେଉଅଛି; ତାହା ଏହି ଯେ ଓଡ଼ିଶାକୁ ସମ୍ବାଦପତ୍ର ବଳାଇଅଛି । ଏକେତ ଏ ପ୍ରଦେଶ ଅତି କ୍ଷୁଦ୍ର, ଦ୍ୱିତୀୟରେ ବିଦ୍ୱାନ ଓ ସଭ୍ୟ ଲୋକଙ୍କ ସଂଖ୍ୟା ଅତି ଅଳ୍ପ, ତୃତୀୟରେ ଅଧିକାଂଶ ଲୋକ ଧନହୀନ, ଚତୁର୍ଥରେ ଗମନାଗମନର ଅସୁଯୋଗର ଆପତ୍ତି ଧର ଛଡ଼ା ଅନ୍ୟପରେ ଅପରିଚିତ ସୁତରାଂ ଏପ୍ରକାର ସ୍ଥାନ ଓ ଲୋକଙ୍କ ମଧ୍ୟରେ ଅନେକ ଗୁଡ଼ିଏ ସମ୍ବାଦପତ୍ର ପ୍ରତିପାଳିତ ହେବାର ଅତ୍ୟନ୍ତ କଠିନ । ବସ୍ତୁତଃ ଦେଖାଯାଉଅଛି ଯେ ପ୍ରାୟ କୌଣସି ସମ୍ବାଦପତ୍ର ଆପଣା ବ୍ୟୟ ନିର୍ବାହ କରି ପାରୁନାହିଁ, ଅଧିକାରୀଙ୍କୁ ଲାଭ ଦେବା କଥା କିଏ ପଚାରେ । ଏସବୁ ଦେଖିଶୁଣି ଯେ ସମ୍ବାଦପତ୍ରର ସଂଖ୍ୟା ଅଧିକ ହେଉଅଛି ଏଥିରୁ କେବଳ ଏହି ଉପଲବ୍ଧି ହୁଏ ଯେ ଏଠା ଲୋକଙ୍କ ମଧ୍ୟରେ ଐକ୍ୟତା ନାହିଁ । ଯେବେ ତାହା ଥାନ୍ତା ତେବେ ଏକ ୨ ସ୍ଥାନର ଅଳ୍ପସଂଖ୍ୟକ କୃତବିଦ୍ୟ ଲୋକ ଏକମତ ହୋଇ ଏକଖଣ୍ଡ ପତ୍ରିକା ଚଳାଇଲେ ତାହାର ଅବସ୍ଥା ଭଲ ହୁଅନ୍ତା ଓ ଲୋକଙ୍କର ମଧ୍ୟ ଉପକାର ଅଧିକ ହୁଅନ୍ତା । ଆମ୍ଭମାନଙ୍କ ବିବେଚନାରେ ଏକଖଣ୍ଡ ପତ୍ରିକା ଓଡ଼ିଶା ପକ୍ଷରେ ଯଥେଷ୍ଟ ତହିଁରୁ ଅଧିକ ହେଲେ ତିନି ଜିଲ୍ଲାରେ ତିନିଖଣ୍ଡ ଏକ ପ୍ରକାରେ ଚଳିପାରେ । ଏଥିରୁ ବର୍ତ୍ତମାନ ତହିଁର ଦଶଗୁଣ ଅଧିକ ସମ୍ବାଦପତ୍ର ଅଛି ଓ

କେଶରୀର ଭାବଭଙ୍ଗୀ ପ୍ରାୟ ଏକପ୍ରକାର ଥିବାରୁ କେହି ଆଶାନୁରୂପ ଫଳ ପାଉନାହାନ୍ତି କି ଗ୍ରାହକମାନଙ୍କର ଆଗ୍ରହ ବଢ଼ୁନାହିଁ । ଆମ୍ଭେମାନେ ସ୍ୱୟଂ ସମ୍ପାଦକ ହେବାରୁ ଅଳ୍ପଶକ୍ତି ସତ୍ତ୍ୱେ ଉପରଲିଖିତ ଭାବପ୍ରକାଶ କରିଅଛୁଁ । ପ୍ରାର୍ଥନା କରୁଁ ଯେ ଅସ୍ମାନଙ୍କ ସହଯୋଗୀ ମାନେ ଆମ୍ଭମାନଙ୍କ କୌଣସି ମତାନ୍ତରକୁ ଦୋଷ ନଦେଇ ଆମ୍ଭମାନଙ୍କ ଗୁରୁତର ତ୍ରୁଟି ଥିଲେ ତାହା ଦେଖାଇଦେଇ ଆମ୍ଭମାନଙ୍କୁ ପରିବୋଧିତ କରିବେ ।

## ( ୧୦ମ ଭାଗ, ୬ । ୨ । ୧୮୭୫, ସଂଖ୍ୟା ୬ )

୪୨୬ । ସାପ୍ତାହିକ ସମ୍ବାଦ

ବାବୁ ବଛନ୍ଦ ପଟ୍ଟନାୟକ ଗତମାସ ତା ୩୦ ଶରେ ସମ୍ବଲପୁର ଠାରେ ଆପଣା କର୍ମର ଚାର୍ଯ ଦେଇ ଅନୁଗୁଳକୁ ଆସିଲେ । ଚଳିତମାସ ତା ୨ରିଖରେ ଅନୁଗୁଳରେ ପହଞ୍ଚି ଥିବେ ।

## ( ୧୦ମ ଭାଗ, ୧୩ । ୨ । ୧୮୭୫, ସଂଖ୍ୟା ୭ )

୪୨୭ । କଲିକତାକୁ ପ୍ରତିଦିନ ରାତ୍ର ଘ ୮ ଣ୍ଟା ସମୟରେ ଏ ନଗରରୁ ଡାକ ଯାଉଥିଲା । ମାତ୍ର ଦେଖାଗଲା ଯେ ଏ ନିୟମରେ କଲିକତାରେ ଡାକ ଯଥାସମୟରେ ନ ପହୁଞ୍ଚିବାରୁ ସେଠାରୁ ରେଲଗାଡ଼ିରେ ଯିବାର ଅସୁବିଧା ହେଲା । ଏଥିପାଇଁ ବଙ୍ଗଳାର ପୋଷ୍ଟମାଷ୍ଟର ଜେନେରଲ ଆଜ୍ଞା ଦେଇଅଛନ୍ତି ଯେ ଏଣିକି ପ୍ରତିଦିନ ସନ୍ଧ୍ୟା ଘ ୬ା ଣ୍ଟା ସମୟରେ ଡାକ ପ୍ରେରିତ ହେବ । ଅତଏବ ଅପରାହ୍ଣ ଘ ୫ା ଣ୍ଟା ମଧ୍ୟରେ ଯେ ସବୁ ଚିଠିପତ୍ର ଡାକଘରେ ପହୁଞ୍ଚିବ ସେ ସବୁ ସେ ଦିନ ପଠାଯିବ ଓ ତହିଁ ଉତ୍ତାରୁ ଯାହା ଡାକଘରେ ଦିଆଯିବ ତାହା ଆରଦିନକୁ ପଡ଼ି ରହିବ । ଏ ନିୟମଟି ଚଳିତ ମାସ ତା ୧୦-ରିଖରୁ ପ୍ରଚଳିତ ହୋଇଅଛି ଓ ଏଠା ପୋଷ୍ଟମାଷ୍ଟରଙ୍କ ଅନୁରୋଧ କ୍ରମେ ଆମ୍ଭେମାନେ ସର୍ବସାଧାରଣଙ୍କୁ ଏଥିର ବୃତ୍ତାନ୍ତ ଜଣାଇଲୁଁ ।

୪୨୮ । ବାବୁ ବନମାଳୀ ସିଂହ ପୂର୍ବେ ଏକ ବର୍ଷସୁଦ୍ଧା ଅନୁଗୁଳରେ କର୍ମକରି ଥାଆନ୍ତି କରୁ ବଡ଼ ଆନନ୍ଦର ବିଷୟ ଯେ ସେ ଏତେ ଅଳ୍ପକାଳ ମଧ୍ୟରେ ଆପଣା ଚରିତ୍ର ଓ କାର୍ଯ୍ୟଦ୍ୱାରା ସେଠା ନିବାସିଙ୍କର ବିଶେଷରୂପେ ପ୍ରୀତିର ଭାଜନ ହୋଇ ଅଛନ୍ତି । ତାହାଙ୍କ କର୍ମତ୍ୟାଗରେ ଜଣେ ପତ୍ରପ୍ରେରକ ଅତ୍ୟନ୍ତ ଦୁଃଖିତ ହୋଇ ଆମ୍ଭକୁ ଏ ପତ୍ର ଲେଖି ଅଛନ୍ତି ମାତ୍ର ତାହା ଅତି ଦୀର୍ଘ ଥିବାରୁ ସମସ୍ତ ପ୍ରକାଶ ନକରି ତଳ ଲିଖିତ କଥା ତହିଁରୁ ଉଦ୍ଧୃତ କଲୁଁ ଯଥା ।—

"ଶ୍ରୀ ବାବୁ ବନମାଲୀ ସିଂହ ତହସିଲଦାରୀ ପଦାଭିଷିକ୍ତ ହୋଇ ଅଧୀନ ରାଜ୍ୟ ଜନ ସମାଜର ପରମ ଉପକାର କରଣାର୍ଥେ ଦୃଢ଼ କଳ୍ପିତ ହୋଇ ପରମା-ହ୍ଲାଦତରେ ଅନନ୍ତ ଚେଷ୍ଟା ଓ ଅନୁଷଣ ପ୍ରଜାବର୍ଗଙ୍କୁ ସାକ୍ଷାତ ଦେଇ ସେମାନେ ବଦାନ୍ୟ ଓ ବୁଦ୍ଧି ବୃତ୍ତି ଓ ଶିକ୍ଷାଗୁର ପ୍ରବୃତ୍ତିରେ ଅନୁରକ୍ତ ହେବାର ଦୃଢ଼ଚିତ୍ତଙ୍ଗମ ପୂର୍ବକ ସଦୁପଦେଶ ଦେଇ ଓ ସଦସ୍ୟ ହୃଦୟରେ କେତେ ୨ ମକଦମାମାନ ସରଜମିନା ବଟେଲକରେ ତହିଁର ତତ୍ତ୍ୱ ଅବଗତାନ୍ତେ ଅପକ୍ଷପାତ ପୁରଃସର ନିଷ୍ପତ୍ତି କରି ଥିବାରୁ ଇଦାନିଂ ଈଷତ୍ କାଳ ମଧ୍ୟରେ ପ୍ରଜା ସମୂହର ଅସତ୍ ବୃତ୍ତିଚୟ ସଙ୍କୁଚିତ ହୋଇ ସଦାଚାର ଓ ବିନୟ ଓ ମେଧାର ସମୁନ୍ନତ ଓ ବର୍ଦ୍ଧନଶୀଳ ହେଉଥିବାର ସବାସା ।ରଣର ହେମାଲ୍ହାଦିତ ଓ ଓ ପରିତୋଷ ଓ ସନ୍ତୁଷ୍ଟ ଥିବା ପ୍ରତ୍ୟକ୍ଷେ ଆମ୍ଭ ଦୁର୍ଭାଗ୍ୟବଶତଃ ବାବୁ ମହୋଦୟ ସଦ୍‌ଗୁଣଶୀଳ ଓ ପ୍ରଜାବତ୍ସଲ ଓ ଦୟାଶୀଳ ଥିବାରୁ ଏହାଙ୍କୁ ଶ୍ରୀଯୁକ୍ତ ମହାମାନ୍ୟ ନୃପେନ୍ଦ୍ର ଚନ୍ଦ୍ର ମଣ୍ଡଳ ମହାରାଜା କାଛେ ଢେଙ୍କାନାଳ ସ୍ୱରାଜ୍ୟ ଭାର ଅର୍ପଣ କରି ନେଇ-ଯିବାର ସମ୍ବାଦ ଶ୍ରବଣ ପୂର୍ବକ ଅତ୍ୟନ୍ତ ଜନମଣ୍ଡଳୀର ଏହିମନ୍ତ ଭାବନା ଓ ମନସ୍ତାପ ଓ ବିଷାଦ ହୋଇଅଛି ଯେ ଏହା ପୁତ୍ରଶୋକରୁ ଅଧିକ କହିବାର ନାହିଁ । ଅଧିକନ୍ତୁ କେତେ ୨ ଲୋକ ଅନୁଗୁଳ ଓ ଢେଙ୍କାନାଳର ପୂର୍ବ ସୀମାରେ ଥିବାରେ ବାବୁ ମହୋ-ଦୟଙ୍କ ଦ୍ୱାରା ଆମ୍ଭ ଉନ୍ନତ ହେବା ସମ୍ଭାବନାରେ ଯେ ନେଇନାହିଁବା ଓ ତଦୁପ କେତେ ୨ ଲୋକ ପ୍ରଶଂସିତ ମହାରାଜା ଅଖିଳଗୁଣାକର ଥିବାର ଯେ ଗୁଣିକ ଲୋକ ତହିଁ ନେଇ ଯାଉଥିବା ଏବଂ କେତେ ୨ ଲୋକ ହେମ ଉଦ୍ଧୃତ ପ୍ରଶଂସିତ ଶ୍ରୀ କମିଶନର ସାହେବଙ୍କ ହଜୁରରେ ଦରଖାସ୍ତ କରିବାକୁ ମହୋଦୟଙ୍କୁ ଛାଡ଼ ନଦେବାର ଏପରି ସବସାଧାରଣ ବର୍ଗର ଓ କଟୋକେଥନ ହୋଇ ଯେ ଯେମନ୍ତ ବେଦନାରେ ଅଛନ୍ତି ଏବଂ ବାବୁ ମହୋଦୟ ବଦାନ୍ୟହୋଇ ଯିବା କାଳରେ ଯେପରି ଆମ୍ଭ ହୃଦୟ ବିଦୀର୍ଣ୍ଣ ପୁରଃସର ତାଙ୍କ ବିଚ୍ଛେଦ ବରହାନଳେ ବିଦଗ୍ଧ ହେବ ତାହା ଏ କଷ୍ଟ ଲେଖନୀ ଦ୍ୱାରା ଲେଖିବାର ଅକ୍ଷମ ।"

ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟମାନେ ଯେବେ ଏହି ପ୍ରକାର ବିଦ୍ୱାନ ଓ ସଚ୍ଚରିତ୍ର ଲୋକଙ୍କୁ ଗଡ଼ଜାତ ମାହାଲର ତହସିଲଦାରୀ କର୍ମରେ ନିଯୁକ୍ତ କରିବେ ତେବେ ଏ ସବୁ ସ୍ଥାନର ଉନ୍ନତିର ସମ୍ଭାବନା, ନଚେତ୍ ଏ ସବୁ ରାଜ୍ୟ ବର୍ତ୍ତମାନ ଯେମନ୍ତ ଜଙ୍ଗଲ ଅଛି ବହୁକାଳ ସେହିପରି ରହିବ ।

## ( ୧୦ମ ଭାଗ, ୨୦ । ୨ । ୧୮୭୫, ସଂଖ୍ୟା ୮ )

୪୨୯ । ସାପ୍ତାହିକ ସମ୍ବାଦ ।

ଗତ ସପ୍ତାହରେ ବଢ଼ମ୍ବା ରାଜା ଏନଗରରୁ ବୌଶର୍ଯ୍ୟ କାର୍ଯ୍ୟା-

ଓଲନ୍ଦରେ ଆସି ବାଲ୍ଲବଜାରରେ ବସା କରିଥିଲେ ତାହାଙ୍କ ସଙ୍ଗରେ ଥିବା ଜଣେ ଲୋକ ଜଣେ ପ୍ରତିବାସୀ ସହିତ କଳିଆ ଓ ମାର ପିଟ କରିବାରୁ ପୁଲିସ ତାହାକୁ ଧରି ଚାଲାଣ କରି ଓ ସେ ପାଗଲ ଥିବାର ପ୍ରକାଶ ହେବାରୁ ପାଗଲଖାନାକୁ ପଠାଯାଇଅଛି । ରାଜା କଟକକୁ ଆସି ଏସମସ୍ତ ବ୍ୟାପାର ଦେଖି, ବୋଧହୁଏ ନୌକାର ଅନିଷ୍ଟ ଆଶଙ୍କା କରି, ତତ୍‌ପରଦିନ ଆପଣା ଗଡ଼କୁ ପ୍ରସ୍ଥାନ କଲେ । ଗଡ଼ଜାତ ଲୋକଙ୍କର ସାହସ କେବେ ହେବ ?

## ( ୧୦ମ ଭାଗ, ୨୭ । ୨ । ୧୮୭୫, ସଂଖ୍ୟା ୯ )

### ବାଲେଶ୍ୱରବାସିଙ୍କର ପ୍ରାର୍ଥନା ପ୍ରତି ଲେଫ୍‌ଟେନେଣ୍ଟ ଗବର୍ଣ୍ଣରଙ୍କର ଉତ୍ତର ।

୪୩୮ । ମାନ୍ୟବର ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସାହେବଙ୍କର ଓଡ଼ିଶା ସନ୍ଦର୍ଶନ କାଳରେ ବାଲେଶ୍ୱରବାସିମାନେ ଯେତେପ୍ରକାର ଅଭାବମୋଚନ ନିମନ୍ତେ ତାହାଙ୍କଠାରେ ପ୍ରାର୍ଥୀ ହୋଇଥିଲେ ତହିଁର ଉତ୍ତର ସେମାନେ ପ୍ରାପ୍ତ ହୋଇଅଛନ୍ତି ଓ ଗତ ପ୍ରକାଶିତ ଉତ୍କଳଦର୍ପଣରେ ତାହା ମୁଦ୍ରିତ ହୋଇଅଛି । ଉତ୍ତରଟି କଠକଠାର ଗତ ନବମ୍ବରମାସ ତା ୨୪ରିଖରେ ପ୍ରେରିତ ହୋଇଥିବାର ଜଣାଏ ମାତ୍ର ଏତେକାଳ କାହିଁକି ଗୋପନ ଥିଲ ବୋଲିପାଇ ନପାରୁ । ପାଠକମାନଙ୍କ ଗୋଚରାର୍ଥେ ପ୍ରାର୍ଥନା ଓ ଉତ୍ତର ଦୁହିଙ୍କର ସଂକ୍ଷେପ ବିବରଣ ଲେଖୁଅଛୁ । ଯଥା:—

ପ୍ରାର୍ଥନା :— ୧ କଲିକତାରୁ ମେଦନୀପୁର ଓ କୋଲଘାଟ ବାଟେ ମାନ୍ଦ୍ରାଜକୁ ରେଲବାଟ ନିର୍ମାଣ । ୨ ଗଞ୍ଜାମ ଓ ସମ୍ବଲପୁରକୁ ଓଡ଼ିଶା ମଧ୍ୟରେ ଆଣି ଏକ ଶାସନର ଅଧୀନ କରିବା । ୩ ଶିକ୍ଷା ବିଷୟରେ ଓଡ଼ିଶାର ହୀନାବସ୍ଥା ଦୃଷ୍ଟିରେ ଏ ପ୍ରଦେଶ ପାଇଁ କିଛି ବିଶେଷ ଆନୁକୂଲ୍ୟ ପ୍ରକାଶ ପୂର୍ବକ ପ୍ରତ୍ୟେକ ଜିଲାଷ୍ଟେସନରେ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷୋପଯୋଗୀ ଏକ ୨ ଗବର୍ଣ୍ଣମେଣ୍ଟ ବିଦ୍ୟାଳୟ ସ୍ଥାପନ କରିବା । ୪ ଗଡ଼ଜାତରେ ବିଦ୍ୟାଶିକ୍ଷା ବିସ୍ତାର କରିବା କାରଣ କିଛି ବିଶେଷ ବିଧାନ କରିବା । ୫ ଉତ୍କଳୀୟ ବଙ୍ଗାଳିମାନଙ୍କ ମାତୃଭାଷା ଶିକ୍ଷା ନିମନ୍ତେ ବିଦ୍ୟାଳୟ ସ୍ଥାପନ କରିବା । ୬ ବୁଢ଼ାବଳଙ୍ଗନଦୀ ମୁହାଣରେ ଥିବା ଚଡ଼ାରୁ କାଟି ସବଦାରେ ଫୁଟ ପର୍ଯ୍ୟନ୍ତ ଜଳ ରହିବାର ଉପାୟ କରିବା । ୭ ବାଲେଶ୍ୱରରେ ଲବଣର ମାସୁଲ ନ୍ୟୂନ କରିବା । ୮ ଓଡ଼ିଶାରେ ଭୂମିର ବନ୍ଦୋବସ୍ତ ଚିରସ୍ଥାୟୀ କରିବା । ୯ ରାଜସ୍ୱ ଆଦାୟ ନିମନ୍ତେ ଜମିଦାରଙ୍କ ଉପରେ ଯେପରି ସୂର୍ଯ୍ୟାସ୍ତ ପରି କଠିନ ନିୟମ ଜାରିଅଛି ପ୍ରଜାଙ୍କ ଉପରେ କର ଆଦାୟ ପକ୍ଷରେ ସେହିପରି କିଛି ନିୟମ କରିବା ।

ମାନ୍ୟବର ସାହେବଙ୍କ ଉତ୍ତର :—

୧ । ନାଲବାଟେ କଲିକତାଠାରୁ ଓଡ଼ିଶା ପର୍ଯ୍ୟନ୍ତ ଗମନାଗମନର ସୁବିଧା ଗବର୍ଣ୍ଣମେଣ୍ଟ କରିଦେଉଅଛନ୍ତି । ଏଥିପାଇଁ ଓଡ଼ିଶାରେ ରେଲହେବାର ଆଶା ନାହିଁ କାରଣ ଏ ପ୍ରଦେଶ ସକାଶେ ଉକ୍ତ ପ୍ରକାର ସୁବିଧା କରିଦେବାରେ ଗବର୍ଣ୍ଣମେଣ୍ଟଙ୍କର ଅନେକ ବ୍ୟୟ ହେବ ।

୬ । ବୁଢ଼ାବଲଙ୍ଗ ନଦୀର ଚଡ଼ାକୁ ଭାଙ୍ଗିଦେବା ସାଧ୍ୟାୟତ୍ତ ନୁହେଁ । ନଦୀମୁହଁ ସଳଖ କଲେ ଉପକାର ହେବ ଏକଥା ମଦ କର୍ତ୍ତୃପକ୍ଷ କହନ୍ତି ତେବେ କାର୍ଯ୍ୟାରମ୍ଭ ହୋଇପାରେ ମାତ୍ର ଏଥିରେ ଲେଫ୍‌ଟେନେଣ୍ଟ ଗବର୍ଣ୍ଣରଙ୍କର ସନ୍ଦେହ ଅଛି ।

୭ । ଲବଣକର ବାଲେଶ୍ୱରରେ ଯାହା ଅଛି ତହିଁରେ ମହାଜନମାନଙ୍କର କ୍ଷତି ହେଉଅଛି ଏପରି ଆଶଙ୍କା ବୃଥା । ବାସ୍ତବରେ ଗତ ସନ ପ୍ରଚ୍ଛ ଏ ସନରେ ଶତକଡ଼ା ୫୦ ଗୁଣ ଲୋକ ଅଧିକା ପିଠେ । ଲୁଣ ଯୋଗାନ ସକାଶେ ବାଲେଶ୍ୱରର ଲୋକମାନେ ନେଇଥିବାର ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସାହେବ ଆନନ୍ଦିତ ହୋଇଅଛନ୍ତି ସୁତରାଂ ମହାଜନମାନଙ୍କର କ୍ଷତି ନହୋଇ ଲାଭ ହେବାର ନିଶ୍ଚୟ ଜଣାଯାଏ ।

୩ । ଶିକ୍ଷା ବିଷୟରେ ଓଡ଼ିଶା ସକାଶେ ଭିନ୍ନନିୟମ ହୋଇନପାରେ ଯେବେ ବଙ୍ଗାଳାରେ ସବଡିଭିଜନ ମାନଙ୍କରେ ପ୍ରବେଶିକା ଶିକ୍ଷା ପର୍ଯ୍ୟନ୍ତ ବିଦ୍ୟାଳୟମାନ ଥିବା ନଥିବାର ଡାଇରେକ୍ଟରଙ୍କଠାରୁ ଅନୁସନ୍ଧାନ କରିବେ ।

* । ଉତ୍କଳୀୟ ବଙ୍ଗାଳିମାନେ ମାତୃଭାଷା ଶିକ୍ଷାପାଇଁ ଗୃହାବହିତ ପ୍ରସ୍ତୁତହେଲେ ଗବର୍ଣ୍ଣ-ମେଣ୍ଟ ସାହାଯ୍ୟ କରିବେ ।

ଏଥିରୁ ଦେଖାଯାଏ ଯେ ବାଲେଶ୍ୱର ନିବାସିଙ୍କର ୯ଟି ପ୍ରାର୍ଥନା ମଧ୍ୟରୁ କେବଳ ୫ଟି ଅର୍ଥାତ୍ ୧, ୬, ୭, * ଓ ୩ ନମ୍ବରର ଉତ୍ତର ଦେଇଅଛନ୍ତି ବାକି ଗୁରୁତର ବିଷୟରେ କିଛି କହିନାହାନ୍ତି ମାତ୍ର ଉତ୍ତରର ଆରମ୍ଭରେ ଲେଖାଅଛି କି 'ଏହି ଲିପିରେ ଏପରି ଅନେକ ବିଷୟ ଅଛି କି ତାହା ମାନ୍ୟବର ମନୋଯୋଗପୂର୍ବକ ବିବେଚନା କରିବେ ।' ଏଥିରୁ ବୋଧ ହୁଅଇ କି ଯେ ସବୁ ବିଷୟର ଉତ୍ତର ଦେଇନାହାନ୍ତି ତାହା ମାନ୍ୟବର ମନୋଯୋଗ ପୂର୍ବକ ବିବେଚନା କରୁଅଛନ୍ତି ଭଲ ଏହାରପେ ମନକୁ ସାନ୍ତ୍ୱନା ଦେବାର ହେତୁ ଅଛି ସୁତରାଂ ବିଶ୍ୱାସ ଅଟଇ କିନ୍ତୁ ଯେସ୍ଥଳେ ଯେତେ ବିଷୟର ଉତ୍ତର ଦେଇଅଛନ୍ତି ସବୁ ନାସ୍ତି କରିଅଛନ୍ତି ସେସ୍ଥଳେ ତାହାଙ୍କ ବିବେଚନା ଦ୍ୱାରା

କୌଣସି କାର୍ଯ୍ୟ ସଫଳହେବାର ଆଶା ନାହିଁ । ବରଂ ଅତିଶୀଘ୍ର ଉତ୍ତର ଦେଇପାରୁ ବାର ଅନୁମାନ ହୋଇପାରେ ଯେ ଉକ୍ତ ଆବେଦନରେ ସେ ଆଉ କିଛି କରିବେ ନାହିଁ । ଯେ ସବୁ କମିଟିର ଉତ୍ତର ଦେଇଅଛନ୍ତି ତହିଁରେ ୧, ୬,ଓ ୭ ପ୍ରାର୍ଥନାର ଅଯୌକ୍ତିକତା ଦର୍ଶାଇ ଅଛନ୍ତି ଓ ପଞ୍ଚମ ପ୍ରାର୍ଥନାରେ ଯାହା କହିଅଛନ୍ତି ତାହା ମଧ୍ୟ ବଡ଼ ଅସଙ୍ଗତ ହୁଅଇ କିନ୍ତୁ ଚତୁର୍ଥ ପ୍ରାର୍ଥନାରେ ଯେ ମାନ୍ୟବର କିଛି ମାତ୍ର ଶଙ୍କୁଚନକଲେ ଏଥିରେ ଆମ୍ଭେମାନେ ବଡ଼ ଦୁଃଖିତ ହେଲୁଁ । ପ୍ରତ୍ୟେକ ସବଡିଭିଜନରେ ଇଂରାଜୀ ବିଦ୍ୟାଳୟ ନକରନ୍ତୁ ତହିଁରେ ବଡ଼ ଦୁଃଖ ନାହିଁ କିନ୍ତୁ ଓଡ଼ିଶାର ହୀନାବସ୍ଥାପ୍ରତି ଦୃଷ୍ଟି ନକରି ଯେ ବଙ୍ଗଳା ଓ ଓଡ଼ିଶାପ୍ରତି ଶିକ୍ଷାଦାନ ସମ୍ପର୍କରେ ଏକପ୍ରକାର ସାହାଯ୍ୟ ଦେବାକୁ ଦୃଢ଼ପ୍ରତିଜ୍ଞ ହେଲେ ଏଥିରେ ଆମ୍ଭେମାନେ ବଡ଼ ମନସ୍ତାପ ପାଇଲୁଁ । ମାନ୍ୟବର ଓଡ଼ିଶାରେ ପଦାର୍ପଣ କରି ଏଠାର ଅବସ୍ଥା କି କୌଣସି ପ୍ରକାରେ ବଙ୍ଗଳାଠାରୁ ମନ୍ଦ ଦେଖିଲେ ନାହିଁ ?

## ( ୧୦ମ ଭାଗ, ୬୦ । ୩ । ୧୮୭୫, ସଂଖ୍ୟା ୧୬ )

୪୩୨ । ଡାଲେରାମ ମିଶ୍ର ନାମରେ ଜଣେ ହିନ୍ଦୁସ୍ଥାନୀ ବ୍ରାହ୍ମଣ ପ୍ରାୟ ବ୬ ବର୍ଷ ହେବ ଆପଣା ପରିବାର ଘେନି ଏ ନଗରକୁ ଆସି ଅବସ୍ଥିତ କରିଅଛନ୍ତି । ମିଶ୍ର ମହାଶୟ ଶିଳ୍ପକର୍ମରେ ଅତିଶୟ ନିପୁଣ ଓ ଚିକିତ୍ସାରେ ମଧ୍ୟ ଏହାଙ୍କର ପାରଦର୍ଶିତା ସାମାନ୍ୟ ନୁହଇ । ଏହାଙ୍କଦ୍ୱାରା ପ୍ରସ୍ତୁତ ଶିଳ୍ପଦ୍ରବ୍ୟ ଏପ୍ରଦେଶର ଅନେକ ରାଜା ଓ ଭଦ୍ରଲୋକଙ୍କ ଘରେ ଶୋଭା ପାଉଅଛି । ମିଶ୍ରଙ୍କର ଗୋଟିଏ ମାତ୍ର କନ୍ୟା ଥିଲା ଗତ ହୋଇଅଛି ଓ ପୁତ୍ର ନାହିଁ । ସୁତରାଂ ସେ ଯାହାକିଛି ଉପାର୍ଜନ କରିଥିଲେ ସବୁ ଲଗାଇ ଏ ନଗର ବାଲୁ- ବଜାରରେ ଗୋଟିଏ ପ୍ରସ୍ତର ନିର୍ମିତ ବଡ଼ ମନ୍ଦିର ଓ ତଦାନୁସଙ୍ଗିକ ମୁଖଶାଳୀ ବେଢ଼ସେଇ ଘର ପ୍ରଭୃତି ପକ୍କା କୋଠାମାନ ପ୍ରସ୍ତୁତ କରି ତହିଁରେ ଠାକୁରମୂର୍ତ୍ତି ସ୍ଥାପନ କରିଅଛନ୍ତି । ଗତସପ୍ତାହରେ ମନ୍ଦିର ପ୍ରତିଷ୍ଠା ହେଲା ଓ ତଦୁପଲକ୍ଷରେ ମିଶ୍ର ମହାଶୟ ଯଥାସମ୍ଭବ ଭଲ ବ୍ୟୟ କରିଅଛନ୍ତି । ପ୍ରାୟ ସପ୍ତାହକାଳ ପ୍ରତିଷ୍ଠାର କ୍ରିୟାମାନ ହେଉଥିଲା ଓ ଅନେକ ଲୋକଙ୍କୁ ଭୋଜନ ଓ ବସ୍ତ୍ର ଦାନଦ୍ୱାରା ପରିତୃପ୍ତ କରାହୋଇଅଛି । ବାସ୍ତବରେ କେତେ- ଦିନ ନଗରରେ ଚହଳ ପଡ଼ିଯାଇଥିଲା ।

୪୩୬ । ଚିକିତ୍ସା ଶିକ୍ଷା ।

ଯେପରି ଡାକ୍ତା ପାଟନା ପ୍ରଭୃତି ସ୍ଥାନ ମାନଙ୍କରେ ଦାତବ୍ୟ ଚିକିତ୍ସା- ଳୟ ସଙ୍ଗେ ୨ ଗୋଟିଏ ଲେଖାଏଁ ବିଦ୍ୟାଳୟ ସ୍ଥାପନହୋଇ କେତେକ ଲୋକଙ୍କୁ ଚିକିତ୍ସା ଶିକ୍ଷା ଦିଆଯାଉଅଛି ସେହିପରି ଗୋଟିଏ ବିଦ୍ୟାଳୟ ଏନଗରରେ ସ୍ଥାପନ

ହେବାର ଅନେକ ଦିନରୁ ଆନ୍ଦୋଳିତ ହେଉଅଛି । ଏହିପୂର୍ବେ ଏବିଷୟରେ ଯେଉଁ ପ୍ରସ୍ତାବ ହୋଇଥିଲା ତାହା ଏଠାରେ ଅଧିକନ୍ତୁ କରିବାକୁ ଛାତ୍ର ମିଳିବେନାହିଁ ଏହି ଆଶଙ୍କାରେ ବିଫଳ ହୋଇଥିଲା ମାତ୍ର ସମ୍ପ୍ରତି ଏଠାର ସିଭିଲ ସାର୍ଜନ ଡାକ୍ତର ଷ୍ଟିୱାର୍ଟ ସାହେବଙ୍କ ବିଶେଷ ଉଦ୍ୟମରେ ଶ୍ରୀଯୁକ୍ତ କମିଶନର ସାହେବ ପୁନର୍ବାର ଏଠାରେ ଉକ୍ତ ପ୍ରକାର ବିଦ୍ୟାଳୟ ସ୍ଥାପନକରିବା କାରଣ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଅଛନ୍ତି ଓ ତେଲ୍ଲି ନିଜସ୍ତର ସମ୍ବାଦ ପାଇଅଛୁଁ ଯେ ଗବର୍ଣ୍ଣମେଣ୍ଟ ବଙ୍ଗାଳ ମେଡ଼ିକାଲ ଡିପାର୍ଟମେଣ୍ଟର ମତ ଜାଣିବା କାରଣ ଉକ୍ତ ପ୍ରସ୍ତାବକୁ ଏସ ମହକୁମାର ପ୍ରଧାନ କର୍ମଚାରୀଙ୍କ ନିକଟକୁ ପଠାଇଅଛନ୍ତି । ଆମ୍ଭେମାନେ ଭରସା କରୁଁ ଯେ ଗବର୍ଣ୍ଣମେଣ୍ଟ ଏପ୍ରସ୍ତାବଟିକୁ ଅନୁମୋଦନ କରି ଓଡ଼ିଶାବାସୀଙ୍କର ପରମୋପକାର କରିବେ ।

ଏଥିସମ୍ବନ୍ଧରେ ଆମ୍ଭେମାନେ ଡାକ୍ତର ଷ୍ଟିୱାର୍ଟ ସାହେବଙ୍କୁ ବିଶେଷ ଅନୁରୋଧ କରୁଅଛୁଁ କି ଯେମନ୍ତ ଉକ୍ତ ବିଦ୍ୟାଳୟ ସ୍ଥାପନ ଦ୍ୱାରା ଓଡ଼ିଆମାନଙ୍କୁ ଚିକିତ୍ସା ବିଦ୍ୟାରେ ପାରଗ କରିବାକୁ ଯତ୍ନଶୀଳ ହୋଇଅଛନ୍ତି ତେମନ୍ତ ଏଠାର କେତେଗୁଡ଼ିଏ ଦାଇମାନଙ୍କୁ ପ୍ରସବଚିକିତ୍ସାର ଶିକ୍ଷା ଶିକ୍ଷାଦେବାକୁ ମଧ୍ୟ ଯତ୍ନକରନ୍ତୁ । ଏ ପ୍ରଦେଶରେ ଭଲ ଦାଇ ନଥିବାରୁ କେତେ ପ୍ରସୂତି ଓ ଶିଶୁ ଯେ ନାଶ ହେଉଅଛନ୍ତି ତାହା ଯେଉଁମାନେ ଆମ୍ଭମାନଙ୍କ ପ୍ରକାଶିତ ମୃତ୍ୟୁତାଲିକା ମନୋଯୋଗ ପୂର୍ବକ ପାଠକରିଥିବେ ତାହାଙ୍କୁ ଅବିଦିତ ନାହିଁ ଓ ଏପରି ଦୁର୍ଘଟନା ଯେ କେବଳ ଦାଇଙ୍କ ଅଭାବରୁ ହେଉଅଛି ଏଥିରେ ଅଣୁମାତ୍ର ସନ୍ଦେହନାହିଁ । ବାସ୍ତବରେ ଆମ୍ଭମାନଙ୍କ ବିବେଚନାରେ ଅନ୍ୟାନ୍ୟ ଚିକିତ୍ସା ଶିକ୍ଷାର ଉପାୟ ହେବାରେ କିଛି ବିଳମ୍ବ ହେଲେ ମଧ୍ୟ ଯେବେ ପ୍ରସବ ଚିକିତ୍ସାର ଉପାୟ ଅଗ୍ରେ ହୁଅଇ ତେବେ ଏ ପ୍ରଦେଶର ବିସ୍ତର ମଙ୍ଗଳ ହେବ ଏବଂ ଯେସ୍ଥଳେ ପ୍ରତି ଜିଲ୍ଲାର ଚିକିତ୍ସାଳୟରେ କେତେଜଣ ଦାଇଙ୍କୁ ଶିକ୍ଷାବୃତ୍ତି ଦେଇ ଶିକ୍ଷାଦେବା ବିଷୟରେ ଅନେକଦିନରୁ ଗବର୍ଣ୍ଣମେଣ୍ଟଙ୍କର ଆଦେଶ ଅଛି ସେସ୍ଥଳେ କାହିଁକି ଯେ ଅଦ୍ୟାବଧି ଏଥିରେ କୌଣସି ବନ୍ଦୋବସ୍ତ ହେଉନାହିଁ ଆମ୍ଭେମାନେ କହିନପାରୁଁ । ଡାକ୍ତର ଷ୍ଟିୱାର୍ଟ ସାହେବ ଓଡ଼ିଆଙ୍କ ଉପକାର ନିମିତ୍ତ ଏବିଷୟରେ ମନଯୋଗୀ ହୋଇଅଛନ୍ତି ବଡ଼ ସୁଖର ବିଷୟ ଅଟଇ ମାତ୍ର ଯେବେ ସେ ଏ ଦୁଇକଥାକୁ କାର୍ଯ୍ୟରେ ପରିଣତ କରନ୍ତି ତେବେ ଓଡ଼ିଶାବାସୀମାନେ ଚିରକାଳ ତାହାଙ୍କଠାରେ କୃତଜ୍ଞ ରହିବେ ।

୪୩୩ ।

## ସାପ୍ତାହିକ ସମ୍ବାଦ ।

ବାବୁ ରମେଶ ଚନ୍ଦ୍ର ଦତ୍ତ ବଙ୍ଗଳାର କୃଷିଙ୍କ ଅବସ୍ଥା ବିଷୟରେ ଖଣ୍ଡିଏ ପୁସ୍ତକ ଲେଖି ଅଛନ୍ତି ସେ ତାହାର ସର୍ବଶେଷ ଅନୁସନ୍ଧାନଫଳ ଦେଖାଇବାକୁ ଜଣାଇବା କାରଣ ଶ୍ରୀଯୁକ୍ତ ଲେପ୍‌ଟେନେଣ୍ଟ ଗବର୍ଣ୍ଣର ସାହେବ ଜଣେ ଧାର୍ମିକ ...

କରୁଅଛନ୍ତି । ଏଥିରେ ବୋଧହୁଅଇ ଯେ ପ୍ରଜାଙ୍କପ୍ରତି ଲେଫ୍‌ଟେନେଣ୍ଟ ଗବର୍ଣ୍ଣରଙ୍କର ବିଶେଷ ଦୃଷ୍ଟି ଅଛି ।

( ୧୦ମ ଭାଗ, ୨୨ । ୩ । ୧୮୭୪, ସଂଖ୍ୟା ୧୩ )

୪୩୪ । ଗଡ଼ଜାତ କାହିଁରେ ଉନ୍ନତ ହେବ ?

× × ×

କେତେଗୁଡ଼ିଏ କୁପ୍ରଥା ବର୍ଜନ —

ମୁଆଳୀ — କୌଣସି ବ୍ୟକ୍ତି ସ୍ୱମ୍ପତ୍ତୀହିନ ହୋଇ ମରିଗଲେ ତାହାର ଭ୍ରାତା, ଭଗିନୀ, ସ୍ତ୍ରୀ, ଦୁହିତା, ଦୌହିତ୍ର କୁଟୁମ୍ବ ପ୍ରଭୃତି ଥିଲେ ମଧ୍ୟ ତାହାର ଧନ ରାଜଗାମୀ ହେବାକୁ ମୁଆଳ ବୋଲି ।

× × ×

( ୧୦ମ ଭାଗ, ୭ । ୪ । ୧୮୭୪, ସଂଖ୍ୟା ୧୭ ) *

୪୩୫ । ଏ ନଗରରେ ବାସ କରୁଥିବା ଜଣେ ଇଂରାଜ ଏ ନଗରର ବେପାରୀ ସାହେବ୍ ଘରପୋଡ଼ ଦେଖି ଆମ୍ଭମାନଙ୍କ ନିକଟକୁ ଏକ ଇଂରାଜୀପତ୍ର ଏହିମର୍ମରେ ଲେଖିଅଛନ୍ତି ଯେ ଏଠାଲୋକେ ଅଗ୍ନି ଲିଭାଇବା କିମ୍ବା ତହିଁର ବୃଦ୍ଧିକୁ ରୁଦ୍ଧ କରିବାର ଅତି ସହଜ ଉପାୟ ଜାଣନ୍ତି ନାହିଁ । ଅନ୍ୟାନ୍ୟ ଦେଶରେ ସେ ଭ୍ରମଣକରି ଦେଖିଅଛନ୍ତି ଯେ ଅସାବଧାନ ପୂର୍ବକ ଅଗ୍ନି ବ୍ୟବହାର କଲେ ତହିଁପାଇଁ ଏକ ସହସ୍ର ଟଙ୍କା ଅର୍ଥଦଣ୍ଡ ହୁଅଇ ମାତ୍ର ଏଠାରେ ସେରୂପ କିଛି ନାହିଁ । ନିଆଁ ଲିଭାଇବାର ସହଜ ଉପାୟ ଏହି ଯେ ନିଆଁ ବାହାରିଲେ ଉପସ୍ଥିତ ଲୋକେ ମାଟିଆ କି ପାଣି ଖୋଜିବାପାଇଁ ଇତସ୍ତତଃ ଦୌଡ଼ି ବୁଲିବାରେ କାଳହରଣ ନକରି ନିଆଁ ଉପରେ ପୁରୁଣା ଖଣ୍ଡା, ସତରଞ୍ଜି, ଖାଲୁଡ଼ା ପ୍ରଭୃତି ମୋଟାଲୁଗା କି ହେଁସ ଇତ୍ୟାଦି ଘୋଡ଼ାଇଦେଇ ଅବିଶ୍ରାନ୍ତ ରୂପେ ତହିଁ ଉପରେ ପ୍ରହାର କଲେ ତତ୍‌କ୍ଷଣାତ୍ ଅଗ୍ନିର ଗତି ରୁଦ୍ଧ ହେବ ଓ ଅଗ୍ନି ବାହାରି ପାରିବ ନାହିଁ । ଏ କାର୍ଯ୍ୟ ପ୍ରଥମେ କରିବାର ଉଚିତ । ପଛକୁ ଯେଉଁମାନେ ଆସି ଜମା ହେବେ ଜଳ ଆଣିବାର କର୍ମ ସେମାନେ କରିପାରନ୍ତି । ପତ୍ରପ୍ରେରକ ଲେଖନ୍ତି ଯେ ସେ ଅନେକ ଛଣ ଗଦା ଓ ଘରରେ ନିଆଁକୁ ପିଟି ଲିଭାଇ ଦେବା ସର୍ବଦା ସହଜ ଉପାୟ

* ଏହି ସଂଖ୍ୟାଠାରୁ **ରହି, କରିବାର, ରୂପ** ଆଦି ଶବ୍ଦର ବନାନ ପରିବର୍ତ୍ତନ କରି ଠିକ ବନାନ ଛାପିବାରେ ବ୍ୟବହାର କରାଯାଇଥିବାର ଦେଖାଯାଏ (ସମ୍ପାଦକ) ।

ବୋଲି ତାହାଙ୍କର ହୃଦୟଙ୍ଗମ ହୋଇଅଛି । କିଆଁ ଆତ୍ମହେବା ସମୟରେ ଏ ଜ୍ୱାଳାମୁଖି ବାଣଶିଖ ଫଳପ୍ରଦ ଅଟଇ ଓ ଏଠାରେକ ସମସ୍ତଙ୍କ ନିଘରେ ହୋଁସ ଶତ୍ରୁଅବେ୍ୟ ନିଷ୍ଟନ୍ଧୁ ଥାଏ ସୁତରାଂ ହୋଁସ ଘୋଡ଼ାଇ ପିଢ଼ା ଉପରର ଅଗ୍ନି ଲିଭାଇବା ଅବଶ୍ୟ ସହଜ ହୋଇ- ପାରେ ।

## ( ୧୦ମ ଭାଗ, ୧୫ । ୫ । ୧୮୭୫, ସଂଖ୍ୟା ୨୦ )

୪୮୬ । ସାପ୍ତାହିକ ସମ୍ବାଦ ।

ଆଜିକାଲି ଏନଗରରେ ଅନେକ ପୋଖରୀ ମରାମତି କାର୍ଯ୍ୟ ଲାଗିଅଛି ଓ ଏସବୁ ସରକାରୀ ବ୍ୟୟରେ ହେଉଅଛି । କମିସନର ସାହେବଙ୍କ ମିଉନିସିପାଲ କାର୍ଯ୍ୟମଧ୍ୟରେ ଏହାହିଁ ପ୍ରକୃତ ହିତକର ସୁତରାଂ ପ୍ରଶଂସନୀୟ କାର୍ଯ୍ୟ ଅଟଇ ।

୪୮୭ । ପଣ୍ଡିତ ଦୟାନନ୍ଦ ସରସ୍ୱତୀ ଆର୍ଯ୍ୟସମାଜ ନାମରେ ଗୋଟିଏ ସଭା ବମ୍ବେଇରେ ସ୍ଥାପନ କରିଅଛନ୍ତି । ଏଥିର ପ୍ରଧାନ କାର୍ଯ୍ୟ ଏକେଶ୍ୱର ଉପାସନା ଏବଂ ବେଦ ଅଧ୍ୟୟନ ଅଟଇ ।

## ( ୧୦ମ ଭାଗ, ୨୨ । ୧ । ୧୮୭୫, ସଂଖ୍ୟା ୨୧ )

୪୮୮ । ଓଡ଼ିଶାର ସମ୍ବାଦପତ୍ର ମାନଙ୍କ ଦୁରବସ୍ଥା ।

ଏହାପୂର୍ବେ ଆମ୍ଭେମାନେ ଥରେ ଲେଖିଥିଲୁଁ ଯେ ଓଡ଼ିଶାରେ ସମ୍ବାଦପତ୍ର ବାଲାଇଅଛି । ତହିଁରେ ଉତ୍କଳପୁତ୍ର ଆମ୍ଭମାନଙ୍କ ସହିତ ପ୍ରତିବାଦ କରିଥିଲେ ଓ ବାଣିଜ୍ୟ ନିୟମ ଆମ୍ଭମାନଙ୍କୁ ବୁଝାଇ ଦେଇ ଉପକାର କରିଥିଲେ । ଆଶ୍ଚର୍ଯ୍ୟର ବିଷୟ ଯେ ଦୁଇ ତିନିମାସ ଗତ ନହେଉଣୁ ଉତ୍କଳ ପୁତ୍ର ଅନାହାରରେ ମୃତ୍ୟୁ ଆଶଙ୍କାକରି 'ଥରେ ଚେତ' ପ୍ରବନ୍ଧରେ ଗ୍ରାହକମାନଙ୍କୁ ବିଶେଷରେ 'ଅଦିଆ ଗ୍ରାହକ ମାନଙ୍କୁ' ବିସ୍ତର କଟୁବାକ୍ୟ କହି ତାହାଙ୍କ ମନ ଦୁଃଖ ଭରି ନିନ୍ଦା କରିଅଛନ୍ତି ଓ ତହିଁ ସଙ୍ଗେ ୨ ଉତ୍କଳର ବ୍ରାହ୍ମଣଙ୍କ ପରି ପୁତ୍ର ହତ୍ୟା ଦୋଷ ଲଗିବାର ଭୟ ଦେଖାଇ ନରମ ଗରମ ବହୁତ କଥା କହିଅଛନ୍ତି । ଯେମନ୍ତ ଛଠାରେ ଲେଖା ଯାଇଅଛି ତହିଁରୁ ବୋଧ ହୁଅଇ ଯେ ପୁତ୍ରଙ୍କର ଗ୍ରାହକ ସମସ୍ତ ନହେଉନ୍ତୁ ଅଧିକାଂଶ ଅଦିଆ ଓ ଟଙ୍କା ନଦେଇ କାଗଜ ପଢ଼ିବାକୁ ଖୁସିପାନ୍ତି । ଏପ୍ରକାର ରୁଚି ଅବଶ୍ୟ ମନ୍ଦ ଅଟଇ କିନ୍ତୁ ପୁତ୍ର ଯେ ତାହାଙ୍କର ଶିକ୍ଷାଦାତା ହୋଇ ତାହାଙ୍କ କୁରୁଚିକ

ବଢ଼ାଇବାରେ ଉତ୍ସାହ ଦେଉଅଛନ୍ତି ଏହା ତାହାଙ୍କ ଚଳଚଳର ମନ୍ଦ ଅଟଇ । ସୁଦ୍ଧ ଯେବେ ବ୍ୟବସାୟର ନିୟମରେ ସମ୍ବାଦପତ୍ର ଚଳାଉଅଛନ୍ତି ତେବେ ତାହାଙ୍କର ଉଚିତ କି ଯେ ମୂଲ୍ୟ ଦେବ ତାହାକୁ ପତ୍ରିକା ଦେବେ ଓ ଯେ ମୂଲ୍ୟ ଦେବାକୁ କିନ୍ତୁ ନଦେବ ତାହା ନାମରେ ଅଦାଲତରେ ନାଲିଶ କରିବେ । ଏଥିରେ ତାହାଙ୍କର ଓ ଗ୍ରାହକଙ୍କର ମର୍ଯ୍ୟାଦା ସମାନ ରୂପେ ରକ୍ଷା ହେବ । ଯେବେ କେବଳ ଭିକ୍ଷା ଦେଇ ବଞ୍ଚି ୨ ପ୍ରାର୍ଥନା କରିବା ଅଭିପ୍ରାୟରେ ପତ୍ରିକା ବାହାର କରିଥାନ୍ତି ତେବେ ତହିଁରେ ତାହାଙ୍କର ଆଶା ପୂର୍ଣ୍ଣ ନହେଲେ କାହାରିକୁ କୁବାକ୍ୟ ନକହି ତୁନିହୋଇ ଘରକୁ ଫେରିଆସିବାର ଉଚିତ । ଫଳତଃ କୌଣସି ରୂପେ ଗ୍ରାହକମାନଙ୍କୁ ସାଧାରଣଙ୍କ ସାକ୍ଷାତରେ ଏପ୍ରକାର ବ୍ୟବହାର କରିବାର ଉଚିତ ନୁହଇ । ବିଶେଷ ଯେମନ୍ତ ଲୋକଙ୍କ ସହିତ ଯାହାର ବ୍ୟବହାର ସେମାନଙ୍କର ଚରିତ୍ରଦ୍ୱାରା ସେ ଲୋକର କଳନା କରିବା ଗୋଟିଏ ସାଧାରଣ ରୀତିଅଛି ସୁତରାଂ ଗ୍ରାହକଙ୍କୁ ନିନ୍ଦାକରିବା ସମ୍ବାଦପତ୍ର ଅଧିକାରୀଙ୍କ କଦାକାଳରେ ଶୋଭନୀୟ ନୁହଇ । ତେବେ ଏତିକି ବୋଲିଯାଇ ପାରେ ଯେ 'ଉତ୍କଳପୁତ୍ର' ଛନଉର୍ଦ୍ଧର ଶିଶୁମାନ, ବୃଦ୍ଧଜଣର କଥା କର୍କଶ ହେଲେ ମଧ୍ୟ ମିଷ୍ଟ ଜଣାଏ ଓ ଶିଶୁ ଗାଳଦେଲେ ସୁଦ୍ଧା ତାହା ମଧୁର ବୋଧ ହୁଅଇ । ଏଥିହିତୁ ସର୍ବସାଧାରଣ ଓ ଗ୍ରାହକମାନେ ପୁତ୍ରଙ୍କର କଥାକୁ କୌତୁକରେ ଉଡ଼ାଇଦେବେ ଓ ପଇସା ଦେଇ ବୋଧକରିବେ ଏମନ୍ତ ଆମ୍ଭେମାନେ ଆଶାକରୁଁ ।

ଯାହାହେଉ ଏକପତ୍ରରେ 'ପୁତ୍ର'ର କଥା ଧରିବା ନୁହଇ କିନ୍ତୁ 'ଉତ୍କଳହିତୈଷିଣୀ' ଯେ ଏତେବଡ଼ ନାମ ଧାରଣକରି ଆପଣାକୁ ବଡ଼ଦେବ ବୋଲିଲେ 'ସପରିବାରରେ ବିଳାପ କରିବା ଉଚିତ' ବୋଧକରି ପୁତ୍ର କହେ । ଶାଇବୁଲିଲେ ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ ଅଟଇ । ସେ କି ଭିକ୍ଷା ମାଗି ଛାପାଖାନାଟି ବସାଇଥିବାରୁ ସେହି ଭିକ୍ଷା ମାଗିବା ତାହାଙ୍କୁ ଛାଡୁନାହିଁ । ତାହାଙ୍କ କଥାରୁ ବୋଧ ହୁଅଇ ଯେମନ୍ତ ଆପଣା ପରିବାର ପ୍ରତିପାଳନ ସକାଶେ ସେ ଏ ବିଷୟର ଅନୁଷ୍ଠାନ କରିଥିଲେ ତାହା ସିଦ୍ଧ ନହେବାରୁ ବାଳକପ୍ରାୟ କ୍ରନ୍ଦନକରି ଚଳିହେଉଛନ୍ତି । ତାହାଙ୍କର ଅଭୀଷ୍ଟ ସିଦ୍ଧ ନହେବାର ଦେଖି ଆମ୍ଭେମାନେ ଦୁଃଖିତ ହେଉଅଛୁଁ ଉଆତ ତାହାଙ୍କଠାରେ ଏତିକି ଆଶାକରୁଁ ଯେ ସେ ବୀଭତ୍ସ କଥାରେ ନବୁଲି ଥରେ ଆପଣା ମର୍ଯ୍ୟାଦାପ୍ରତି ଦୃଷ୍ଟି ରଖନ୍ତୁ ।

କେବଳ କଟକର ସମ୍ବାଦପତ୍ରମାନଙ୍କୁ ଭିକ୍ଷାରୋଗ ଧରିଅଛି ଏମନ୍ତ ନୁହେ ବାଲେଶ୍ୱରର ବୃଦ୍ଧଶ୍ରେଣି ପତ୍ରିକାର ମଧ୍ୟ ଅବସ୍ଥା ଏହିପରି ଅଟଇ. ସମ୍ବାଦବାହିକା ଭିକ୍ଷୁ ଭଡଖାଇ ବଣିଜ ଶିଖିବାର ଓଲଗଣା କେତେଥର ଦେଲେଣି ଓ ଉତ୍କଳଦର୍ପଣ ଅନେକ ଆର୍ତ୍ତନାଦ କରି ଏକପ୍ରକାର ସଦରର ଗ୍ରାହକମାନଙ୍କଠାରେ କୃତକାର୍ଯ୍ୟ ଲଭି

ବର୍ତ୍ତମାନ ମୋଫସଲ ଗ୍ରାହକଙ୍କ ଦ୍ୱାରରେ କୃତାଞ୍ଜଳୀପୁଟେ ଦଣ୍ଡାୟମାନ ହୋଇଅଛନ୍ତି । ଏମାନଙ୍କ ଦ୍ୱାରେ ଏହାଙ୍କର ଆଶାପୂର୍ଣ୍ଣ ହେଲେ ଅମ୍ଭେମାନେ ଆନନ୍ଦିତ ହେବୁଁ ।

ପୁରୀର ସମ୍ବାଦପତ୍ରମାନ ତ ଆଉ ବାହାରୁନାହିଁ ସୁତରାଂ ତାହାଙ୍କର ଅବସ୍ଥା କଥା ବୋଲିବାର ହେଉ ନାହିଁ କିନ୍ତୁ ଯେତେବେ ଗ୍ରାହକମାନଙ୍କ ଅମନୋଯୋଗୀତ କ୍ରୁଟିରେ ଉକ୍ତ ସମ୍ବାଦପତ୍ରମାନ ରହିତ ହୋଇଥାଏ ତେବେ ମଧ୍ୟ ତହିଁର ଅଧିକାରୀମାନେ ପ୍ରଶଂସାର ଯୋଗ୍ୟ ଅଟନ୍ତି ।

ଓଡ଼ିଶାର ସମ୍ବାଦପତ୍ର ମାନଙ୍କର ଏରୂପ ଅବସ୍ଥା ଦେଖି ଆମ୍ଭେମାନେ ପରମେଶ୍ୱରଙ୍କଠାରେ ଏହି ପ୍ରାର୍ଥନା କରୁଅଛୁଁ କି ଯଦ୍ୟପି ଆମ୍ଭମାନଙ୍କୁ କିଛିକାଳ ବଞ୍ଚାଇ ରଖନ୍ତି ତେବେ ଯେମନ୍ତ ଏତେକାଳ ଆମ୍ଭମାନଙ୍କ ମର୍ଯ୍ୟାଦା ରକ୍ଷାକରି ଆସି ଅଛନ୍ତି ସେହି ଅନୁଗ୍ରହଟି ସର୍ବଦା ପ୍ରକାଶ କରନ୍ତୁ ।

୪୩୯ । ସାପ୍ତାହିକ ସମ୍ବାଦ

ବାବୁ ଯୋଗେଶ୍ୱର ଚନ୍ଦ୍ର ଚନ୍ଦ୍ର ପୁରୀର ଏକଟିଂ ମୁନସଫ ନିଯୁକ୍ତ ହୋଇ ଗତକାଲି ଏଠାରୁ ପୁରୀକୁ ଯାତ୍ରା କରିଅଛନ୍ତି ।

୪୪୦ । କିଛିଦିନ ହେଲା ଏ ନଗରକୁ ଗୋଟିଏ ଷ୍ଟିମ ଅଟାପେଷା କଳ ଆସିଅଛି ଓ ତହିଁରେ କାର୍ଯ୍ୟ ହେଉଅଛି ମାତ୍ର ବଜାର ଲୋକ ପ୍ରତି ଏଥିର ଉପକାର ପ୍ରକାଶ ପାଉନାହିଁ । ତେବେ କଳଟି ଜଣେ ଭଦ୍ରଲୋକଙ୍କ ଉଦ୍ଯୋଗ ହେବାନିମନ୍ତେ ଆସିଥିବାରୁ ଜବେଲା ଅଟା ଓ ମଇଦା ମିଳୁଅଛି । ଏତେକ ସାମାନ୍ୟ ଲାଭ ନୁହଇ ।

୪୪୧ । ପ୍ରେରିତ ପତ୍ର ।

ଶ୍ରୀଯୁକ୍ତ ଉତ୍କଳ ଦୀପିକାସମ୍ପାଦକ ମହାଶୟଙ୍କୁ

[illegible]

ଏତନ୍ନିମ୍ନଲିଖିତ ପଂକ୍ତିମାନଙ୍କୁ ସ୍ଥାନ ଦାନ ଦେଇ ଆମ୍ଭମାନଙ୍କୁ ସନ୍ତୁଷ୍ଟ ହୃଦୟକୁ କରାଇବା ହେଉନ୍ତୁ । ଏ କାଲରେ ଉତ୍କଳଲକ୍ଷୀ ବହୁତ ଅନାଦରଣୀୟ ସ୍ଥିତିରେ ଥିବାରୁ ଗବର୍ଣ୍ଣମେଣ୍ଟଙ୍କର ଏ ନ୍ୟୁନତା ବୁଝି, ଏ ଉତ୍କଳ ଭାଷା ମଧ୍ୟ ପରୀକ୍ଷାରେ ନିଯୁକ୍ତ କରାଇଲେ, ତଦ୍ଦ୍ୱାରା ଲୋକମାନେ ଉନ୍ନତି ସ୍ଥିତି ପାଇବେ ବୋଲି ଆଲୋଚନା କରି, ସେ

ଯେଉପ୍ରକାର ପରୀକ୍ଷା ନିର୍ଣ୍ଣୟ କଲେ; ଏ ବିଷୟକୁ ଆମ୍ଭେମାନେ ଗବର୍ଣ୍ଣମେଣ୍ଟ ଛାମୁକୁ ବହୁତ କୃତଜ୍ଞତାରୂପେ ନିବେଦନ କରୁଅଛୁଁ । ମାତ୍ର ଏ ଉପକାର କିଛି ସଫଳ ହୋଇ ପାରିଲ ନାହିଁ. ଏ ପରୀକ୍ଷା ଆରମ୍ଭ ହେବା ଦିନଠାରୁ, ପ୍ରଶ୍ନମାନେ ବହୁତ କଷ୍ଟରେ ଅର୍ଥ ମିଳୁଅଛି, ପଣ୍ଡିତମାନେ ମଧ୍ୟ ଅର୍ଥ କରିଣ ପାରିଲ ପରି କଠିନ ହୋଇଅଛି, ଏପରି ହେଲେ ପରୀକ୍ଷାର କୋପରି ଆମ୍ଭେମାନେ ଉତ୍ତୀର୍ଣ୍ଣ ହୋଇ ପାରିବୁଁ ! ଏହାର ସପ୍ରମାଣ ନିମନ୍ତେ ଏବରଷ ପ୍ରଶ୍ନ କାଗଜ ଏଥି ସହିତରେ ପଠାଇବାର ହେଲା, ବିଶେଷରେ ବିନ୍ତୀରଖି ଏ କାଗଜମାନଙ୍କୁ ଆପଣା ଅମୂଲ୍ୟ ପତ୍ରିକାରେ ମୁଦ୍ରିତ କରିଲେ, ଏ ହୋଇ ଅନ୍ୟାୟ ଜଗତ୍ ପ୍ରଖ୍ୟାତ କରାଇବା ହେଉନ୍ତୁ, ତତ୍ଫଳରେ ଆମ୍ଭଙ୍କୁ ଆସନ୍ତା ବରଷକୁ ହେଲେ ନ୍ୟାୟ ମିଳିବ ବୋଲି ଦୃଢ଼ ଚିନ୍ତ ହୋଇଅଛୁଁ ଚିନ୍ତାକୁ ଆଶିବା ହେବେ ।

ଛତ୍ରପୁର
୧୮୬୩ ସମ୍ବତ୍ସର
ଏପ୍ରେଲ ତା ୧୭

ତୁମ୍ଭର ଗୃହାଦାର
ଜିଜ୍ଞାସୁଗଣ

୪୪୨ । ମହାମାନ୍ଯବ ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ ମହାଶୟ, ସମୀପେଷୁ

ବିନୟ ପୂର୍ବକ ନିବେଦନଂ

ମହାଶୟ, ଆମ୍ଭେମାନେ ଶୁଣି ବଡ଼ ଆନନ୍ଦିତ ହେଲୁଁ ଯେ କନ୍ଧମାଳ ଇଲାକାର ତହସିଲଦାର ଶ୍ରୀଯୁକ୍ତ ବାବୁ ଦୀନବନ୍ଧୁ ପଟ୍ଟନାୟକ ଉତ୍କଳ ପୁସ୍ତକାବଳୀ ଗଣ୍ଡାମରେ ନିଯୁକ୍ତ ହେବା ନିମିତ୍ତ ଉପୁଲ ଭୁଣ୍ଡା ଠାରେ ପୁସ୍ତକାଳୟ ରଖିବାର ସଦୁପାୟ କରିବେ । ବାବୁ ମହାଶୟ ଏହା ତାହା କଲେ ତେବେ ଆମ୍ଭମାନଙ୍କର ଧନ୍ୟବାଦାର୍ହ ହେବେ ସନ୍ଦେହ ନାହିଁ । ଇତି

୧୨ । ୫ । ୭୫ ଶ୍ରୀ ବ—

( ୧୦ମ ଭାଗ, ୧ । ୭ । ୧୮୭୫ ,ସଂଖ୍ୟା ୨୭ )

୪୪୩ । ଜିଲ୍ଲ କମିଟୀଙ୍କ ଅଧିକାର ।

ଆମ୍ଭମାନଙ୍କ ପୂର୍ବ ଲେଫ୍ଟନେଣ୍ଟ ଗବର୍ଣ୍ଣର ସର ଜର୍ଜ କାମ୍ବଲ ଶିକ୍ଷା ବିଭାଗର ତତ୍ତ୍ୱାବଧାରଣ ନିମିତ୍ତ ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଲେଖାଏଁ କମିଟୀ ସ୍ଥାପନ

କରିଅଛନ୍ତି । ତାହାଙ୍କର ଅଧିକାର କା ପରିମାଣରେ ଅଛି ଶିକ୍ଷାବିଭାଗର ଡାଇରେକ୍ଟର ଅନ୍ୟାନ୍ୟ କେତେକ ବିଷୟ ସହିତ ବର୍ତ୍ତମାନ ଲେଫଟେନେଣ୍ଟ ଗବର୍ଣ୍ଣରଙ୍କ ନିକଟରେ ପ୍ରଶ୍ନ କରିବାରୁ ସର ରିଚାର୍ଡ ଟେମ୍ପଲ ଗତମାସ ତା ୧୯ରିଖରେ ଏକ ମନ୍ତବ୍ୟ ଲିପିବଦ୍ଧ କରିଅଛନ୍ତି ଯେ ତାହା ଉକ୍ତମାସ ତା ୨୬ରିଖର କଲିକତା ଗଜେଟରେ ଛ । ହୋଇ ଅଛି । ଆମ୍ଭେମାନେ ଏ ମନ୍ତବ୍ୟଟି ପାଠକରି ଅତିଶୟ ଆନନ୍ଦିତ ହୋଇଅଛୁଁ କାରଣ ଶିକ୍ଷାବିଭାଗର ପ୍ରଧାନ କର୍ମକର୍ତ୍ତାଙ୍କ ଠାରୁ ଯେ ସବୁ କ୍ଷମତା ସର ଜର୍ଜ କାମ୍ବେଲ ଛଡ଼ାଇ ନେଇଥିଲେ, ତହିଁର ଅଧିକାଂଶ ସର ରିଚାର୍ଡ ଟେମ୍ପଲ ସେମାନଙ୍କୁ ପ୍ରତ୍ୟର୍ପଣ କରି ଅଛନ୍ତି । ଏଣିକି ଶିକ୍ଷାବିଭାଗର ଡାଇରେକ୍ଟର ବଙ୍ଗଳା ଗବର୍ଣ୍ଣମେଣ୍ଟର ଜଣେ କର୍ମ ସ୍ୱରୂପ ନହୋଇ ଆପଣା ଖୁସିରେ କେତେଗୁଡ଼ିଏ କାର୍ଯ୍ୟ କରିବାର କ୍ଷମତା ପାଇଅଛନ୍ତି ମାସିକ ଟ୧୫୦ଙ୍କା ବେତନ ପର୍ଯ୍ୟନ୍ତ ଶିକ୍ଷକ ପ୍ରଭୃତି ଡାରେକ୍ଟର ସାହେବ ସ୍ୱୟଂ ନିଯୁକ୍ତ କରି ପାରିବେ । ଶିକ୍ଷାବିଭାଗର ଇନସ୍ପେକ୍ଟରମାନଙ୍କୁ ମଧ୍ୟ କେତେକ କ୍ଷମତା ଦିଆ ଯାଇଅଛି ମାତ୍ର ଜିଲ୍ଲା କମିଟିଙ୍କ ବିଷୟରେ ଏ ମନ୍ତବ୍ୟରେ ଯାହା ଲେଖାଅଛି ତାହା ସର୍ବାପେକ୍ଷା ଭଲ ଥିବା ଓ ସର୍ବସାଧାରଣଙ୍କର ଜାଣିବାର ଆବଶ୍ୟକ ଥିବାରୁ ତହିଁର ସଂକ୍ଷେପ ଆମ୍ଭେମାନେ ଏଠାରେ ଲେଖୁଅଛୁଁ । ଲେଫଟେନେଣ୍ଟ ଗବର୍ଣ୍ଣର ସାହେବ କହି ଅଛନ୍ତି ଯେ କମିଟୀର ଯାହା ଅଧିକାର ଅଛି ତାହା ସେ ସମ୍ପୂର୍ଣ୍ଣରୂପେ ରକ୍ଷା କରିବେ କାରଣ କମିଟୀର କାର୍ଯ୍ୟଦ୍ୱାରା ଦେଶୀୟ ଲୋକମାନେ ଶିକ୍ଷାବିଭାଗର ବିଷୟ ସମ୍ବନ୍ଧେ ମନନିବେଶ କରିବାର ସୁଯୋଗ ଅଛି । କମିଶନର ଓ କଲେକ୍ଟରମାନଙ୍କ କାର୍ଯ୍ୟ ଏହି ଯେ ଦେଶୀୟ ସଭ୍ୟମାନଙ୍କୁ କମିଟୀରେ ନିୟମିତ ରୂପେ ଉପସ୍ଥିତ ହେବା ପାଇଁ ପ୍ରବର୍ତ୍ତାଇବେ ଓ ସେମାନଙ୍କଦ୍ୱାରା କାର୍ଯ୍ୟ ଚଳାଇବେ । କମିଟୀର କାର୍ଯ୍ୟ ଯେମନ୍ତ ସଜୀବ ଓ ଯଥାର୍ଥ ପ୍ରକାରରେ ସମ୍ପନ୍ନ ହୁଅଇ ଏହା ଦେଖିବା ପାଇଁ କମିଶନର ଓ କଲେକ୍ଟରମାନେ ଯେବେ ତେବେ ସଭାରେ ଉପସ୍ଥିତ ହେବେ ମାତ୍ର ପ୍ରତି ସଭାରେ ସେମାନଙ୍କର ଉପସ୍ଥିତ ହେବାର ପ୍ରୟୋଜନ ନରହେ କାରଣ କେବେ ୨ ଦେଶୀୟ ସଭ୍ୟମାନଙ୍କୁ ଏକା କାର୍ଯ୍ୟ ଚଳାଇବାକୁ ଦେବା ଉତ୍ତମ ଅଟଇ ଯେ ତଦ୍ୱାରା ସେମାନେ ବିନା ସାହାଯ୍ୟରେ ଆପଣା ୨ ମନରୁ ବୁଦ୍ଧି କାର୍ଯ୍ୟ କରିବାକୁ ଅଭ୍ୟାସ କରିବେ । ଯେ ସମୟରେ କଲେକ୍ଟର ଏବଂ କମିଶନର ସଭାରେ ଅନୁପସ୍ଥିତ ଥିବେ ସେ ସମୟରେ ସଭାପତିର କାର୍ଯ୍ୟ କରିବାକୁ କଲେକ୍ଟର ଯେଉଁ ସଭ୍ୟକୁ ମନୋନୀତ କରିବେ ସେ ବ୍ୟକ୍ତି ଦେଶୀୟ ସଭ୍ୟଙ୍କ ମଧ୍ୟରୁ ଜଣେ କାର୍ଯ୍ୟକ୍ଷମ ବ୍ୟକ୍ତି ହେବାର ଉଚିତ ।

ଗବର୍ଣ୍ଣମେଣ୍ଟଙ୍କ ଉପରଲିଖିତ ମନ୍ତବ୍ୟ ପାଠକରି ଆମ୍ଭେମାନେ ବଡ଼ ଆନନ୍ଦିତ ହୋଇଅଛୁଁ । ସମସ୍ତ ସର୍କାରୀ କାର୍ଯ୍ୟରେ ଗବର୍ଣ୍ଣମେଣ୍ଟଙ୍କୁ ସାହାଯ୍ୟ କରିବା କାରଣ ଅନେକ ପ୍ରକାର କମିଟୀମାନ ନିଯୁକ୍ତ ହୋଇଅଛି, ଯଥା, ଟାଉନ

କମିଟୀ, ଦାତବ୍ୟ ଚିକିତ୍ସାଳୟ କମିଟୀ, ଶିକ୍ଷା କମିଟୀ ଇତ୍ୟାଦି କିନ୍ତୁ ସାଧାରଣ ବିଶ୍ୱାସ ଏହି ଯେ ଏ ସବୁ କମିଟୀର କୌଣସି ପୃଥକ୍ ଅସ୍ତିତ୍ୱ ନାହିଁ ବରଂ ଏ ଜିଲ୍ଲାର କମିଶନର ରେଭେନସା ସାହେବ ଏକଥା ଉତ୍ତମ ରୂପେ ଜାଣି ବାରମ୍ବାର ଗବର୍ଣ୍ଣମେଣ୍ଟଙ୍କୁ ଜଣାଇ ଅଛନ୍ତି ଯେ କମିଟୀମାନ କେବଳ ଭଣ୍ଡ ସଜ୍ଜା ଅଟନ୍ତି ଏହାଦ୍ୱାରା କୌଣସି କାର୍ଯ୍ୟ ସାଧନ ହୁଅଇ ନାହିଁ । ପ୍ରକୃତରେ ସରକାରୀ ପ୍ରଧାନ କର୍ମଚାରୀମାନେ ଯାହା କରନ୍ତି ସେଥିରେ ଏମାନେ କେବଳ ଆଜ୍ଞା ମଣିମା କରନ୍ତି କିନ୍ତୁ ଆମ୍ଭମାନଙ୍କ ବିବେଚନାରେ ଏଥିରେ କମିଟୀର ଦୋଷ ନାହିଁ ମାତ୍ର ହାକିମଙ୍କର ଦୋଷ । ଜିଲ୍ଲା କଲେକ୍ଟରଙ୍କୁ ସ୍ଥାନୀୟ ହର୍ତ୍ତା କର୍ତ୍ତା ବୋଲି ସମସ୍ତ ଲୋକେ ଜାଣନ୍ତି ବିଶେଷରେ ସଭାର ସଭ୍ୟମାନେ ପ୍ରାୟ ସମସ୍ତ ଜମିଦାର ଓ ଠେଉସୁଠି ଗବର୍ଣ୍ଣମେଣ୍ଟ କର୍ମଚାରୀ ଥିବାରୁ କଲେକ୍ଟରଙ୍କ ଅଧୀନ ବ୍ୟକ୍ତି ବୋଲ୍ପାଇ ଥାଆନ୍ତି । ସୁତରାଂ କଲେକ୍ଟର ସାହେବ କୌଣସି କଥା କହିଲେ କି ପ୍ରସ୍ତାବ କଲେ ତାହାର ପ୍ରତିବାଦ କରିବାକୁ କେହି ସାହସୀ ହୁଅନ୍ତି ନାହିଁ । ପ୍ରକୃତରେ ଅଧିକାଂଶ ସଭ୍ୟ କଲେକ୍ଟରଙ୍କ ମନଯୋଗାଇ ପାରିଲେ ଆପଣାର ଶ୍ରେୟ ବିବେଚନା କରି ସାହେବ ଯେଉଁ ବାଟରେ ଚାଲନ୍ତି ତାହାର ଅନୁଗାମୀ ହୁଅନ୍ତି । ହାକିମମାନେ ଯେବେ ଦେଶୀୟ ଲୋକଙ୍କୁ ଆପଣା ମତାନୁସାରେ କାର୍ଯ୍ୟ କରିବାକୁ ଉତ୍ସାହ ଦେଉଥାନ୍ତେ ଓ ସେମାନଙ୍କ ସ୍ୱାଧୀନତା ତାହାଙ୍କୁ ଦେଖାଉଥାନ୍ତେ ତାହାହେଲେ କଦାଚ କମିଟୀ ଭଣ୍ଡ ସଜ୍ଜ ହୁଅନ୍ତା ନାହିଁ । ଯାହାହେଉ ସର ରିଚ୍ଚର୍ଡ଼ ଟେମ୍ପଲ ସମ୍ପ୍ରତି ଯେଉଁ ଅଭିପ୍ରାୟ ବ୍ୟକ୍ତ କରିଅଛନ୍ତି ଯେବେ ଜିଲ୍ଲା ହାକିମମାନେ ତାହା ଯଥାର୍ଥରୂପେ ପ୍ରତିପାଳନ କରନ୍ତି ତେବେ କେବଳ କମିଟୀର ଦୁର୍ନାମ ଘୁଞ୍ଚିବ ଏମନ୍ତ ନୁହେ ମାତ୍ର ଯେଉଁ ଉଦ୍ଦେଶ୍ୟରେ କମିଟୀ ସ୍ଥାପିତ ହୋଇଅଛି ତାହା ସଫଳ ହେବ । ବର୍ତ୍ତମାନ ଯେରୂପ ନିୟମରେ କମିଟୀର କାର୍ଯ୍ୟ ଚାଲୁଅଛି ତହିଁରେ ଦେଶୀୟ ସଭ୍ୟମାନେ କେବଳ ବଦନାମର ଭାଗୀ ଅଟନ୍ତି । ସୁଖ୍ୟାତି ସଙ୍ଗେ ତାଙ୍କର କୌଣସି ସମ୍ପର୍କ ନାହିଁ ।

୪୪୪ ।

ସାପ୍ତାହିକ ସମ୍ବାଦ

ଏ ନଗରର ଅଦାଲତ କଚେରୀ ସମ୍ମୁଖରେ ଥିବା ପୋଖରୀର ସଂସ୍କାର ହେଉଅଛି । ସେଥିଦ୍ୱାରା ପାଣି ବୁହା ହେବାରେ ପୋଖରୀ ନସୁଖିବାରୁ ଧୂଆଁ କଳ ଯୋଗେ ଦଳକଳଦ୍ୱାରା ପାଣି ବୁହା ହେଉଅଛି ଓ କୌତୁକ ଦେଖିବା ପାଇଁ କଳ ପାଖରେ ବହୁତ ଲୋକ ଜମା ହୋଉଅଛନ୍ତି ।

୪୪୫ । ଉତ୍କଳ ଦର୍ପଣରୁ ଜଣାଗଲା ଯେ ବାବୁ ବୈକୁଣ୍ଠ ନାଥ ଦେ ବାଲେଶ୍ୱରକୁ ଗୋଟିଏ ବରଫ କଳ ଆଣି ଅଛନ୍ତି ।

## ( ୧୦ମ ଭାଗ, ୨୬ । ୬ । ୧୮୭୫, ସଂଖ୍ୟା ୨୭ )

୪୪୬ । ଗତ ସନ ୧୮୭୪ ମସିହା ଅକ୍ଟୁବର ମାସରେ ବଙ୍ଗ ଉପସାଗରରେ ଯେଉଁ ତୋଫାନ ହୋଇଥିଲା ତହିଁର ବିବରଣ କଲିକତା ଗେଜେଟରେ ଛପା ହୋଇଅଛି । ତହିଁରୁ ଦେଖାଗଲା ଯେ ଉକ୍ତ ତୋଫାନର ପ୍ରକୋପ ମେଦିନୀପୁରରେ ଭାରି ପ୍ରକାଶ ହୋଇଥିଲା ତହିଁର ଉଣା ବଳ କଲିକତା ଓଡ଼ିଶା ବର୍ଦ୍ଧମାନ ରାଜସାହି ଓ ଛୋଟନାଗପୁରରେ ପ୍ରକାଶ ପାଇଥିଲା । ଓଡ଼ିଶା ମଧ୍ୟରେ କେବଳ ବାଲେଶ୍ୱର ଜିଲାର ଉତ୍ତରାଂଶ ବାଲିଆପାଳ ଓ ଜଲେଶ୍ୱରରେ ତୋଫାନ ଅତିଶୟ ଭୟଙ୍କର ହୋଇଥିଲା । ଏଠାରୁ ତା୧୫ରିଖ ଅକ୍ଟୁବର ଦିନ ଦୁଇପ୍ରହରଠାରୁ ରାତି ଅଧପାଏ ତୋଫାନ ପ୍ରବଳଥିଲା । ପ୍ରାୟ ସମସ୍ତ ଘର ଭାଙ୍ଗି ଯାଇଥିଲା । ଗୃହପାଳିତ ପଶୁଙ୍କମଧ୍ୟରୁ ଅଧେ ମାରାପଡ଼ିଥିଲେ ଓ [illegible]୨୦ ଜଣ ମନୁଷ୍ୟ ମରିଥିଲେ । ମେଦିନୀପୁରରେ ସବୁଠାରୁ ଅନିଷ୍ଟ ଅଧିକ ହୋଇଥିଲା । ସେଠାରେ [illegible]୪୫ ଜଣ ମନୁଷ୍ୟ ଓ ୧୨,୫୦୦ ପଶୁ ମରିପଡ଼ିଥିଲେ ।

୪୪୭ । ବିଜ୍ଞାପନ ।

ବିଖ୍ୟାତ କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ଦ୍ୱାରା ବିରଚିତ ବିଦଗ୍ଧ ଚିନ୍ତାମଣି ନାମକ ପୁସ୍ତକ କଠିନ ଶବ୍ଦମାନଙ୍କ ଅର୍ଥସହିତ ମୁଦ୍ରିତ ଓ ଉତ୍ତମ ଜିଲଦବନ୍ଧା ହୋଇ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଯନ୍ତ୍ରାଳୟରେ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି ମୂଲ୍ୟ ୨ଟଙ୍କା ମାତ୍ର । ମୋଫସଲ ଗ୍ରାହକମାନେ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ସେକ୍ରେଟରୀ ଶ୍ରୀବାବୁ ଗୌରିଶଙ୍କର ରାୟଙ୍କ ନିକଟକୁ ଡାକମାସୁଲ ସହିତ ମୂଲ୍ୟ ପଠାଇଲେ ଅନାୟାସରେ ପାଇପାରିବେ ।

ତା ୨୪ରିଖ ଜୁନ
ସନ ୧୮୭୫ } ଶ୍ରୀ ଗୌରମୋହନ ରାୟ ।

## ( ୧୦ମ ଭାଗ, ୨୪ । ୭ । ୧୮୭୫, ସଂଖ୍ୟା ୩୦ )

୪୪୮ । ପୁରୀରୁ ସମ୍ବାଦ ପାଇଅଛୁଁ ଯେ ଆସିଷ୍ଟାଣ୍ଟ ଇଞ୍ଜିନିୟର ବାବୁ ପୂର୍ଣ୍ଣଚନ୍ଦ୍ର ସରକାର ଶ୍ରୀଜଗନ୍ନାଥଙ୍କ ମନ୍ଦିରର ଅବସ୍ଥା ଦେଖି ଗବର୍ଣ୍ଣମେଣ୍ଟଙ୍କୁ ରିପୋର୍ଟ କରିବା କାରଣ ପ୍ରେରିତ ହୋଇଅଛନ୍ତି । ତଦନୁସାର ସେ ସେଠାରେ ପହଞ୍ଚି ତଦାରଖ କରୁଅଛନ୍ତି । ଦେଉଳରୁ ଯେଉଁ ପଥର ପଡ଼ିଅଛି ତାହା ବସାଇବାକୁ କିଛିଦିନ ବିଳମ୍ବ

ହେବ ଓ ସେପର୍ଯ୍ୟନ୍ତ ଠାକୁର କେଉଁଠାରେ ରହିବେ ସ୍ଥିର ହୋଇନାହିଁ । ଅବଧି ଠାକୁରମାନେ ଗୁଣ୍ଡିଚାଘରୁ ଫେରି ନାହାନ୍ତି । ଗତ ତା ୨୧ରଖ ପର୍ଯ୍ୟନ୍ତ ଜଗମୋହନରେ ବନ୍ଧାହୋଇ ରହିଥିଲେ । ଯେଉଁମାନେ ମହାପ୍ରସାଦ ବିନା ଅନ୍ୟ ଅନ୍ନ ଭୋଜନ କରନ୍ତି ନାହିଁ ସେମାନଙ୍କର କ୍ଲେଶର ସୀମା ନାହିଁ । ଏ ଉତ୍ତାରୁ ସମ୍ବାଦ ପାଇଅଛୁଁ ଯେ ମନ୍ଦିରର ଦଦାରକ ଓ ସମ୍ପୂର୍ଣ୍ଣରୂପେ ମରାମତ ହେବାପର୍ଯ୍ୟନ୍ତ ଠାକୁରମାନେ ଜଗମୋହନରେ ରହିବେ ତହିଁଉତ୍ତାରୁ ରଥସବୁ ଫେରିଆସିବ । ବିଭାଗର ଏହି ବିଚାରରେ ମାଜିଷ୍ଟ୍ରେଟ ସାହେବ ସମ୍ମତ ହୋଇଅଛନ୍ତି ।

## ( ୧୦ମ ଭାଗ , ୨୮।୮।୧୮୭୪, ସଂଖ୍ୟା ୩୪ )

୪୪୯ । ବାଲେଶ୍ୱର ସମ୍ବାଦ ବାହିକାରୁ ଅବଗତ ହେଲୁଁ ଯେ ଉକ୍ତ ନଗରରେ ବାବୁ ଜଗଦାନନ୍ଦ ନାଥ ରାୟଙ୍କ ଯତ୍ନରେ ଗୋଟିଏ ସଭା ସ୍ଥାପିତ ହୋଇଅଛି । ଏସଭାର ସଭାପତି ବାବୁ ଶ୍ୟାମାନନ୍ଦ ଦେ ଓ ସମ୍ପାଦକ ବାବୁ ବୈକୁଣ୍ଠନାଥ ଦେ ଅଟନ୍ତି । ଏସଭାରେ ସହାରେ ଗୋଟିଏ ସାଧାରଣ ପୁସ୍ତକାଳୟ ସ୍ଥାପନ କରିବାର ସ୍ଥିର ହୋଇଅଛି । ଏଥିପାଇଁ ଟଙ୍କା ସଂଗୃହୀତ ହେଲେ ଗୋଟିଏ ଉପଯୁକ୍ତ ଘର ନିର୍ମାଣ ହେବ ଓ ତାହା ହେବା ପର୍ଯ୍ୟନ୍ତ ବାବୁ ମଦନମୋହନ ଦାସଙ୍କ ବଗିଚା ଘରେ ପୁସ୍ତକମାନରହି ପୁସ୍ତକାଳୟର କାର୍ଯ୍ୟ ଚଳିବାର ବନ୍ଦୋବସ୍ତ ହୋଇଅଛି । ଗତ ଦଶବର୍ଷ ମଧ୍ୟରେ ଓଡ଼ିଶାର ପ୍ରତ୍ୟେକ ଜିଲାରେ ଅନେକ ସଭାର ଅନୁଷ୍ଠାନ ହେବାର ଆମ୍ଭେମାନେ ଦେଖି-ଅଛୁଁ ମାତ୍ର ହତଭାଗିନୀ ଓଡ଼ିଶାର କପାଳକୁ ଗୋଟିଏ ସଭାସୁଦ୍ଧା ସ୍ଥିର ରହିପାରିନାହିଁ କିମ୍ବା କୌଣସି କାର୍ଯ୍ୟ ସାଧନ କରିନାହିଁ । ବର୍ତ୍ତମାନ ଉଲ୍ଲିଖିତ ସଭାଟି ସେପରିଦୁର୍ଗତିକୁ ନଭଜେ ଆମ୍ଭମାନଙ୍କର ଏକାନ୍ତମାନସ ତଥାଚ ଆମ୍ଭେମାନେ ସଭ୍ୟମାନଙ୍କୁ ଅନୁରୋଧ କରୁଁ ଯେ ପ୍ରସ୍ତାବିତ ବିଷୟଟିକୁ ଯେତେଶୀଘ୍ର ହୋଇପାରେ କାର୍ଯ୍ୟରେ ପରିଣତ କରନ୍ତୁ ତାହାହେଲେ ନିତାନ୍ତରେ ଦେବେ ସଭାପ୍ରତି ଭବିଷ୍ୟତକୁ ଲୋକଙ୍କର ଅନାସ୍ଥା ଜନ୍ମେ ତେବେସୁଦ୍ଧା ପୁସ୍ତକାଳୟଟି ରହିଯାଇ ବହୁକାଳ ପର୍ଯ୍ୟନ୍ତ ଲୋକଙ୍କର ଉପକାର ସାଧନ କରୁଥିବ । ଓଡ଼ିଶାର କୌଣସି ଜିଲାରେ ଆଜଯାଏ ପ୍ରକୃତ ସାଧାରଣ ପୁସ୍ତକାଳୟ ସ୍ଥାପନ ହୋଇନାହିଁ । କଟକରେ ଯାହାଅଛି ତାହା ସାଧାରଣ ବୋଲି ବୋଲହୋଇ ନପାରେ ଓ ଭଦ୍ରକରେ ଗୋଟିଏ ପୁସ୍ତକାଳୟ ବାବୁ ଗ୍ରସେ ସ୍ୱାବ ବୋଷ ଡେପୁଟି କଲେକ୍ଟରଙ୍କ ଅମଳରୁ ସ୍ଥାପିତ ହୋଇଅଛି ମାତ୍ର ତହିଁର ଅବସ୍ଥା ଯେ ଭଲ ଏମନ୍ତ ଆମ୍ଭେମାନେ କେବେ ଶୁଣିନାହୁଁ ପ୍ରତ୍ୟେକ ଜିଲାର ସଦରମୁକାମରେ ଗୋଟିଏ ଲେଖାଏଁ ଭଲ ପୁସ୍ତକାଳୟ ରହିବାର ଉଚିତ ଓ ସେବିଷୟରେ ଏଠାଲୋକେ ଶୀଘ୍ର ଯତ୍ନବାନ ହେଲେ ବଡ଼ ସୁଖର ବିଷୟ ହେବ ।

୪୫୦ । ସାପ୍ତାହିକ ସମ୍ବାଦ

କଟକ କଲେକଟେରୀ କଚେରୀରୁ ଗୋଲମାଲ ଛାଡ଼ୁ ନାହିଁ । ଗତ ସପ୍ତାହରେ ଜଣେ ମହାଜନ ସାହେବଙ୍କ ଜମାଦାର ଏକ ମକଦ୍ଦମା ଉପଲକ୍ଷରେ ଆପଣା କାରବାରର ଖାତାବହି ସବୁ ବାବୁ ରଙ୍ଗଲାଲଙ୍କର ମିଶଲକୁ ଦେଇ ଯାଇଥିଲା । ସେ ବହିମାନ ହଜି ଯିବାରୁ ତାହା ଯେ ଥାଇ ଦେବ ତାହାକୁ ଟ ୫୦୦ଙ୍କା ପାରିତୋଷିକ ଦେବାର ଘୋଷଣା ଦିଆ ଯାଇଅଛି ଓ ଏହି ହେତୁରୁ ରଙ୍ଗଲାଲ ବାବୁ ଡେପୁଟୀଙ୍କ ସମସ୍ତ ଅମଲା ଓ କମିଶନରଙ୍କର ଜମାଦାର ସସପେଣ୍ଡ ହୋଇଅଛନ୍ତି । ଶେଷ ଲିଖିତ ବ୍ୟକ୍ତି ସସପେଣ୍ଡ ହେବାର କାରଣ ଏହି ଯେ ତାହାଙ୍କର ଉକ୍ତ ମକଦ୍ଦମା ସହିତ କୌଣସି ପ୍ରକାର ସମ୍ବନ୍ଧ ଅଛି ବୋଲି ହାକିମଙ୍କର ବିଶ୍ୱାସ ହୋଇଅଛି । ଆଉ ଏକ ଗୋଲମାଲ ଏହି ଯେ ଗୋଟାଏ ସଉଦାଗରୀ ନଥି ଗତ ବର୍ଷ ଫଏସଲ ହୋଇ ମହାଫିଜ ଖାନାରେ ରଖା ଯାଇଥିଲା ବର୍ତ୍ତମାନ ଦେଖାଗଲା ଯେ ତହିଁରେ ହାକିମଙ୍କ ରାୟ ନାହିଁ । ରାୟ ଆଦୌ ନଥିଲେ ଥିଲା କି ନାହିଁ ଓ ଥିଲେ କେଉଁ ଆଡେ ଗଲା ତହିଁର ତଦନ୍ତ ହେଉଅଛି ।

୪୫୧ । ଯାଜପୁର ସମ୍ବାଦଦାତାଙ୍କଠାରୁ ଅବଗତ ହେଲୁ ଯେ ମୃତ ବାବୁ ଜଗନ୍ନାଥ ଦାସଙ୍କ ଶ୍ରାଦ୍ଧକର୍ମ ଉତ୍ତମରୂପେ ନିର୍ବାହିତ ହୋଇଅଛି କେବଳ ବର୍ଷା କାଳ ଥିବାରୁ ଅଧିକ ବ୍ରାହ୍ମଣ ଭୋଜନ କରି ପାରିନାହାନ୍ତି ।

## ( ୧୦ମ ଭାଗ, ୧୮ । ୯ । ୧୮୭୫, ସଂଖ୍ୟା ୩୮ )

୪୫୨ । ସାପ୍ତାହିକ ସମ୍ବାଦ

ଗତ ସପ୍ତାହରୁ ଏ ନଗରରେ ଜନରବ ଉଠିଅଛି ଯେ ଖୋରଧାର ସିରସ୍ତାଦାର ବାବୁ ରାସ ବିହାରୀ ନାୟକ କମିଶ୍ନରି ସିରସ୍ତାଦାର ହୋଇ ଆସୁଅଛନ୍ତି । ଏହାଙ୍କଠାରୁ ଅଧିକ ଉପଯୁକ୍ତ ଓଡ଼ିଆ ଆଉ କେହି କି ମିଳୁ ନାହାନ୍ତି ।

## ( ୧୦ମ ଭାଗ, ୧୬ । ୧୦ । ୧୮୭୫, ସଂଖ୍ୟା ୪୧ )

୪୫୩ । ଆମ୍ଭମାନଙ୍କ ବ୍ରହ୍ମପୁରସ୍ଥ ସମ୍ବାଦଦାତା ଉକ୍ତ ନଗରର ଅବସ୍ଥା ତଳ ଲିଖିତ ରୂପେ ବର୍ଣ୍ଣନା କରିଅଛନ୍ତି । ଯଥା —

"ଆମ୍ଭମାନଙ୍କର ଏହି ବ୍ରହ୍ମପୁର ନଗର ସଭ୍ୟତା ଓ ସୁଧାରରେ ବର୍ତ୍ତମାନ

ଅତି ଉତ୍କୃଷ୍ଟ ଦେଖାଯାଏ । ପୂର୍ବେ ଏରୂପ ନଥିଲା । ମାତ୍ର ଆଜିକାଲି ବୁଲିବାକୁ ଗଲେ ପ୍ରତି ଗଳିରେ ସଡ଼କ ଅଛି । ବର୍ଷାପାଣି ଯେରୂପ କୌଣସିଠାରେ ଅଟକି ନହେବ ଏଥି ସଡ଼କ ଦୁଇ ପାର୍ଶ୍ୱେ ପଥରବନ୍ଧା ଦୁଇ ୨ ନାଳ ଅଛି । ପ୍ରତିଦିନ ଦୁଇ ତିନିଥର ଧୌତ ହେବାରୁ ଅପକାର ପ୍ରାୟ ହୁଏ ନାହିଁ ଏବଂ ସଡ଼କ ପାର୍ଶ୍ୱେ ସୁରମ୍ୟ ବୃକ୍ଷ ସବ ସୁଶୋଭିତ କରଇ । ପୁଣି ସାୟଂକାଳ ଆଗମନେ ଯେତେବେଳେ ସଡ଼କ, ଗଳି ଦୁଇ-ପାର୍ଶ୍ୱରେ ଭୂମ୍ୟୋପରି ଦୀପ ସକଳ ଆଲୁଅପୂର୍ଣ୍ଣ ହୁଏ ସେତେବେଳ ଅତି ମନୋହର ଦିଶଇ ଓ ଗମନକାରୀଙ୍କର ଯିବା ଆସିବା ଅତି ସୁଗମ ହୁଅଇ । ଏହି ନଗରରେ ୨୦ରୁ ଅଧିକ ଗ୍ରାମ୍ୟ ପାଠଶାଳା, ଏକ ନଗ୍ର ପାଠଶାଳା ଓ ଏକ ଜିଲ୍ଲା ପାଠଶାଳା ଅଛି ଏଥିରେ ବିଦ୍ୟାର ସୁଫଳ ହୁଏ । ଏହି ଗ୍ରାମ୍ୟ ପାଠଶାଳାର ଶିକ୍ଷକମାନଙ୍କୁ ସାମୟିକ ପାରିତୋଷିକ ଦେଶୀୟ ଧନ ( Local Fund ) ରୁ ଦିଆଯାଏ, ନୂତନରେ ଏକ ଛାପାଖାନା ମଧ୍ୟ ସ୍ଥାପିତ ଅଛି ଯହିଁରେ ଇଂରାଜୀ, ଓଡ଼ିଆ ଓ ତେଲଙ୍ଗା ଛାପା ଛପା ହେଉଅଛି । ଆଉ କେତେ ବିଶେଷଜ୍ଞ ସମାଜରେ ଏକ ନୂତନ ପତ୍ରିକା ଉତ୍କଳ ଭାଷାରେ ପ୍ରକାଶିତ ହେବାର ସମ୍ଭାବନା ଅଛି । ମାତ୍ର ୧୦ ବର୍ଷ ପୂର୍ବେ ଏରୂପ ସୁଧାର ନଥିଲା । ମାତ୍ର ଯାହା ହେଉ ଏହି ସବ ସୁବିଧା ନିମନ୍ତେ ଆମ୍ଭେମାନେ ଏହି ନଗ୍ର ମ୍ୟୁନିସିପାଲ ସଭ୍ୟମାନଙ୍କୁ ଧନ୍ୟବାଦ କରିବାର ଉଚିତ ।”

ଏ ବିବରଣ ସହିତ କଟକ ନଗରର ବର୍ତ୍ତମାନାବସ୍ଥା ମିଶାଇ ଦେଖି ଆମ୍ଭେ-ମାନେ ହତାଶ ହେଉଅଛୁଁ । ଟାଉନ କମିଟୀ ଆପଣା କର୍ତ୍ତବ୍ୟ ପ୍ରତି ଦୃଷ୍ଟିପାତ କଲେ ଏହି ପ୍ରକାର ସୁଖ୍ୟାତିର ଭାଜନ ହୋଇପାରନ୍ତେ ମାତ୍ର କାହିଁକି କମିଟୀଦ୍ୱାରା କିଛି କାର୍ଯ୍ୟ ହେଉନାହିଁ ବୋଲି ଜାଣି ନପାରେ ।

## ( ୧୦ ଭାଗ, ୧୬ । ୧୦ । ୧୮୭୫, ସଂଖ୍ୟା ୪୧ )

୪୭୪ । ସାପ୍ତାହିକ ସମ୍ବାଦ

ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ଅବଗତ ହେଲୁଁ ଯେ କଲିକତାର ବାବୁ ପ୍ୟାରୀମୋହନ ସରକାର ମାନବଲୀଳା ସମ୍ବରଣ କରି ଅଛନ୍ତି । ସନ୍ନ୍ୟାସ ରୋଗରେ ହଠାତ୍ ତାହାଙ୍କର ମୃତ୍ୟୁ ହେଲା ଓ ସେ ସମୟରେ ତାହାଙ୍କର ବୟସ ୫୨ ବର୍ଷ ମାତ୍ର ହୋଇଥିଲା । ଶିକ୍ଷା ବିଭାଗରେ ବାବୁ ମହାଶୟଙ୍କ ସୁଖ୍ୟାତି ବିଶେଷ ହୋଇଅଛି ଓ ତାହାଙ୍କ ପ୍ରଣୀତ ଗଦ୍ୟ ପଦ୍ୟ ଇଂରାଜୀ ଗ୍ରନ୍ଥମାନ ବଙ୍ଗଳାର ସବୁ ବିଦ୍ୟାଳୟରେ ପ୍ରାୟ ପଠିତ ହେଉଅଛି । ବାବୁ ମହାଶୟ ଏଥିପୂର୍ବେ କଲିକତା

ହେୟାରସ୍କୁଲ ଓ ହିନ୍ଦୁ ସ୍କୁଲରେ ଶିକ୍ଷକ ଥିଲେ ଓ ତହିଁ ଉତ୍ତାରୁ ଅନେକ ବର୍ଷରୁ ପ୍ରେସି-ଡେନ୍ସି କଲେଜର ଜଣେ ପ୍ରଫେସର ପଦରେ ନିଯୁକ୍ତ ହୋଇଥିଲେ । ଏହାଙ୍କ ସମ୍ମାନ ନିମିତ୍ତି ଉକ୍ତ ବିଦ୍ୟାଳୟମାନ ଦୁଇଦିନ ବନ୍ଦ ହୋଇଥିଲା ।

## ( ୧୦ମ ଭାଗ, ୨୩ । ୧୦ । ୧୮୭୪, ସଂଖ୍ୟା ୪୨ )

୪୫୫ । କଲିକତାରେ ଗୋଟିଏ ପଶୁଶାଳା ସ୍ଥାପନକରିବା ନିମିତ୍ତ ଅନେକଦିନରୁ ପ୍ରସ୍ତାବ ହେଉଥିଲା । ଦୁଇ ତିନ ଲେଫ୍ଟେନେଣ୍ଟ ଗବର୍ଣ୍ଣର ଅଧିକାର ହୋଇକରି ଚାଲିଗଲେ । ପରିଶେଷରେ ସର୍ ରିଚାର୍ଡ଼ ଟେମ୍ପଲ ପ୍ରସ୍ତାବଟିକୁ କାର୍ଯ୍ୟରେ ପରିଣତ କରିବାର ଦେଖାଯାଏ । ସେଥିପାଇଁ କଲିକତା ନିକଟ ଟାଲିନାଲାର ପଶ୍ଚିମକୂଳରେ ଗୋଟିଏ ସ୍ଥାନ ବାଛି ରଖିଅଛନ୍ତି ଓ ସେଠାରେ ଘର ଇତ୍ୟାଦି ନିର୍ମାଣ ନିମିତ୍ତ ବର୍ତ୍ତମାନ ପାଞ୍ଚ ହଜାର ଟଙ୍କା ଦେବାକୁ ସ୍ୱୀକାର କରିଅଛନ୍ତି । ଏଥିରେ କର୍ମ ଆରମ୍ଭହେବ ଓ ଭବିଷ୍ୟତକୁ ଟଙ୍କା ଯେମନ୍ତ ଘଟୁଥିବ ସେରୂପ ତହିଁର ବିସ୍ତାର ହେଉଥିବ । ଲେଫ୍ଟେନେଣ୍ଟ ଗବର୍ଣ୍ଣର ଏ ବିଷୟରେ ଶୀଘ୍ର ଯତ୍ନଶୀଳ ହେବାର ହେତୁ ଏହିଯେ ଏକଜଣ ସାହେବ କି ତାହାଙ୍କର ନାମ ଷ୍ଟ୍ରେଣ୍ଡଲର ଅଟଇ ଅନେକପ୍ରକାର ପଶୁ ଆପଣା ନିକଟରେ ସଂଗ୍ରହକରି ରଖିଅଛନ୍ତି ଓ ସମସ୍ତକୁ ଅତି ବଦାନ୍ୟତା ସହକାରେ ଗବର୍ଣ୍ଣମେଣ୍ଟ ବଙ୍ଗାଳକୁ ଦାନ କରିବାକୁ ପ୍ରସ୍ତୁତଅଛନ୍ତି ସୁତରାଂ ଏହାଦ୍ୱାରା କାର୍ଯ୍ୟ ଆରମ୍ଭ ହେବ ଓ ତାହା ହେଲଠାରୁ ଆଉ ଲୋକମାନେ ଅନ୍ୟାନ୍ୟ ସ୍ଥାନରୁ ଭିନ୍ନ ୨ ପ୍ରକାରର ଜୀବଜନ୍ତୁ ସବୁ ପଠାଇଦେବେ । କଲିକତା ଭାରତବର୍ଷର ମହାନଗର ହୋଇଅଛି । ତହିଁରେ ଏପ୍ରକାର ଗୋଟିଏ ସ୍ଥାନ ରହିବା ଅତ୍ୟନ୍ତ ପ୍ରୟୋଜନୀୟ ଅଟଇ । ସମ୍ପ୍ରତି ବାବୁ ରାଜେନ୍ଦ୍ର ମଲ୍ଲିକ ବାହାଦୁର ଏବଂ ଲକ୍ଷ୍ନୌ ନବାବଙ୍କ ଘରନିକଟରେ ଗୋଟିଏ ଲେଖାଏଁ ପଶୁଶାଳା ଅଛି ମାତ୍ର ତଦ୍ୱାରା ବିଶେଷ ସାଧାରଣ ଉପକାର ହେଉନାହିଁ କାରଣ ସେସବୁ ବ୍ୟକ୍ତି ବିଶେଷର ଧର୍ମନ୍ତୁ ବିଧି ତାହା ସର୍ବସାଧାରଣ ଇଚ୍ଛାମତେ ବ୍ୟବହାର କରିନପାରନ୍ତି । ଗୋଟିଏ ସାଧାରଣ ପଶୁଶାଳା ହେଲେ ତଦ୍ୱାରା ବିଶେଷ ଉପକାର ସାଧିତ ହେବ ।

୪୫୬ । ସାପ୍ତାହିକ ସମ୍ବାଦ ।

ବାବୁ ରାଜକୃଷ୍ଣ ଲାଲ ଦାସ ଦ୍ୱିତୀୟ ଶ୍ରେଣୀର ଆସିଷ୍ଟାଣ୍ଟ ସର୍ଜନ କଟକ ହାସପାତାଲ ଓ ମେଡ଼ିକାଲ ସ୍କୁଲସକାଶେ ନିଯୁକ୍ତହୋଇ ଆସୁଅଛନ୍ତି ।

୪୫୭ । କଟକନଗରର ଶାଖା ଟଙ୍କଶାଳାୟ ସକାଶେ ନୂତନଘର ନିର୍ମାଣ ହେବାପର୍ଯ୍ୟନ୍ତ ଉକ୍ତ ଟଙ୍କଶାଳାୟ କଦମରସୁଲ ହତାମଧ୍ୟରେ ହେବ । ତହିଁପାଇଁ ଘରଭଡ଼ା

କରାଯାଉଅଛି । ମେଡ଼କାଲ ସ୍କୁଲ ମଧ୍ୟ ଆଗାମୀ ଜାନୁଏରୀ ମାସରୁ ଫିଟିବାର ସମ୍ଭାବନା ଦେଖାଯାଏ ।

( ୧୦ମ ଭାଗ, ୭ । ୧୧ । ୧୮୭୪, ସଂଖ୍ୟା ୪୪ )

୪୫୮ । ଆମ୍ଭେମାନେ ଗତସପ୍ତାହରେ ପୁରୀରାଜାଙ୍କର କଲିକତା ଯିବା-ବିଷୟରେ ସନ୍ଦେହକରିଥିଲୁଁ କିନ୍ତୁ ସମ୍ପ୍ରତି ବିଶ୍ୱସ୍ତସୂତ୍ରେ ଅବଗତ ହୋଇଅଛୁଁ ଯେ ରାଜା କଲିକତା ଯିବାକୁ ନିଶ୍ଚୟକରି ତହିଁର ବନ୍ଦୋବସ୍ତ କରୁଅଛନ୍ତି । ରାଜା ସମୁଦ୍ର ବାଟରେ ଯାହାଜରେ ଯିବେନାହିଁ ସ୍ଥଳପଥରେ ଯିବେ ଓ ଏହାଙ୍କ ସଙ୍ଗରେ ଦୁଇଶ କି ଅଢ଼େଇଶ ଲୋକଯିବେ । ପୁରୀରାଜା ଗତବର୍ଷ କଟକକୁ ଆସିବାକୁ ଅସମ୍ମତ ହୋଇ ଏବର୍ଷ କଲିକତା ପର୍ଯ୍ୟନ୍ତ ଯିବାକୁ ମନବଳାଇଲେ ଏଥିରେ ଆମ୍ଭେମାନେ ଆନନ୍ଦିତ ହୋଇଅଛୁଁ ଓ ବିଶେଷ ସୁଖର କାରଣ ଏହି ଯେ ଏଭ୍ରମଣରେ ତାହାଙ୍କର ଅନେକ କୁସଂସ୍କାର ଭାଙ୍ଗିଯିବ ଓ ସଭ୍ୟତା ଶିକ୍ଷାକରି ଆସିବେ । ଆମ୍ଭେମାନେ ବୋଧକରୁଁ ଯେ ପୁରୀରାଜାଙ୍କ ଦର୍ଶନ ସକାଶେ କଲିକତାର ଅନେକ ଧନୀ ଓ ଭଦ୍ରଲୋକମାନେ ତାହାଙ୍କ ବସାକୁ ଆସିବେନ୍ତି ମାତ୍ର ରାଜା ଯେବେ ଏଠାପରି ସମସ୍ତଙ୍କୁ ତଳେ ଛିଡ଼ାକରି ନରଖି ଯାହାର ଯେମନ୍ତ ମର୍ଯ୍ୟାଦା ତାହାଙ୍କୁ ତେମନ୍ତ ସମ୍ମାନଦେଇ ଶିଷ୍ଟସମ୍ଭାଷଣ କରିବେ ତାହା ହେଲେ ରାଜା ସମସ୍ତଙ୍କର ଭକ୍ତି ଭାଜନ ହେବେ ନୋହିଲେ ରାଜକୁମାରଙ୍କୁ ଦେଖି ଫେରି ଆସିବେ ଆଉ କୌଣସି ଉପକାର ହୋବନାହିଁ ।

୪୫୯ । ନେଟିଭ ସିବିଲ ସରବିସ ପରୀକ୍ଷା ।

ଡେପୁଟୀ କଲେକ୍ଟର ଓ ସବଡେପୁଟୀ କାନୁନଗୋଇ ଇତ୍ୟାଦି ପଦ ସକାଶେ ଯୋଗ୍ୟଲୋକ ଛାଣିନେବା ଆଶାରେ ଆମ୍ଭମାନଙ୍କର ପୂର୍ବ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସର ଜର୍ଜ କାମ୍ବେଲସାହେବ ଉପରି କଥିତ ନାମଧେୟରେ ଗୋଟିଏ ପରୀକ୍ଷାର ସୃଷ୍ଟି କରିଥିଲେ ଓ ସେହି ପରୀକ୍ଷାର ପ୍ରୟୋଜନୀୟ ବିଷୟ ସବୁର ଶିକ୍ଷାନିମନ୍ତେ କେତେକ ସ୍ଥଳରେ ବିଦ୍ୟାଳୟମାନ ମଧ୍ୟ ସ୍ଥାପନ କରିଥିଲେ । ଗତ ତିନିବର୍ଷରେ ଉକ୍ତ ପରୀକ୍ଷାମାନ ଗୃହୀତ ହୋଇଥିଲା ମାତ୍ର ତହିଁରେ ଦେଖାଗଲାଯେ ଅନେକଗୁଡ଼ିଏ ଲୋକ ପରୀକ୍ଷାରେ ଉତ୍ତୀର୍ଣ୍ଣହେଲେ ଓ ତାହାଙ୍କସକାଶେ ଉପଯୁକ୍ତ କର୍ମ ନପାଇବାରୁ ଆମ୍ଭମାନଙ୍କ ବର୍ତ୍ତମାନ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସର ରିଚର୍ଡ଼ ଟେମ୍ପଲସାହେବ ଗତବର୍ଷ ଭାରି ବ୍ୟସ୍ତ ହୋଇଥିଲେ

ଓ ଆଗାମିବର୍ଷରେ ଆଉ ପରୀକ୍ଷା ନେବେନାହିଁ ଏରୂପ ମଧ୍ୟ ଚିନ୍ତା କରିଥିଲେ । ସମ୍ପ୍ରତି ବୋଧ ହୁଅଇ ଯେ ପରୀକ୍ଷାରେ ବହୁତଲୋକ ଉତ୍ତୀର୍ଣ୍ଣ ହେବାରେ ଅସୁବିଧା ହେଲେହେଁ ପରୀକ୍ଷାର ଉପଯୋଗିତା ବିଷୟରେ ଗବର୍ଣ୍ଣମେଣ୍ଟଙ୍କର ସନ୍ତୋଷ ଜାତ ହୋଇଅଛି ଓ ଏହିଥିଁ ସର ରିଚର୍ଡ ଟେମ୍ପଲ ପୂର୍ବ ନିୟମର କେତେକ ପରିବର୍ତ୍ତନକରି ଏ ପରୀକ୍ଷାକୁ ଚିରସ୍ଥାୟୀକରିବାକୁ ମନସ୍ଥ କରିଅଛନ୍ତି । ଏବିଷୟରେ ତାହାଙ୍କ ମନ୍ତବ୍ୟ ଗତ ମାସର ତା ୨୯ ରିଖର ବଙ୍ଗଳା ଗବର୍ଣ୍ଣମେଣ୍ଟ ଗେଜେଟରେ ପ୍ରକାଶ ହୋଇଅଛି । ତହିଁରୁ ଦେଖାଯାଏ ଯେ ଲେଫଟେନେଣ୍ଟ ଗବର୍ଣ୍ଣରଙ୍କ ମତରେ ଦେଶରେ ଉଚ୍ଚଶିକ୍ଷାର ଉନ୍ନତି ଯେମନ୍ତ ବର୍ଷକୁ ବର୍ଷ ହେଉଅଛି ତେମନ୍ତ ସରକାରୀ ଉଚ୍ଚ ପଦାକାଙ୍କ୍ଷିମାନଙ୍କୁ ଉଚିତ ଯେ ଉଚ୍ଚଶିକ୍ଷାରେ ଉତ୍ତମରୂପେ ଯୋଗ୍ୟତା ଦେଖାଇବେ । ଅତଏବ ନିୟମ ହୋଇଅଛି ଯେ ବିଶ୍ୱବିଦ୍ୟାଳୟର ଉପାଧି ନପାଇଲେ କୌଣସିବ୍ୟକ୍ତି ଟ ୧୦୦ ଙ୍କାରୁ ଅଧିକ ବେତନର କର୍ମ ସକାଶେ ଉପଯୁକ୍ତ ହୋଇ ପାରିବନାହିଁ ଓ ତହିଁରୁ ଊଣା ବେତନ ସକାଶେ ମଧ୍ୟ ଫାଷ୍ଟ ଆର୍ଟସ ପରୀକ୍ଷା ନିତାନ୍ତ ପ୍ରୟୋଜନ । ଏ ଅଂଶରେ ପୂର୍ବ ଗବର୍ଣ୍ଣମେଣ୍ଟ ଅପେକ୍ଷା ବର୍ତ୍ତମାନର ଗବର୍ଣ୍ଣମେଣ୍ଟର ନିୟମକୁ ହିତକର ବୋଲିବାକୁ ହେବ । ବାସ୍ତବରେ ସର ଜର୍ଜ କାମ୍ବେଲଙ୍କ ସମସ୍ତ ନିୟମ ଉଚ୍ଚଶିକ୍ଷାର ପ୍ରତିକୂଳରେ ଥିଲା ମାତ୍ର ସର ରିଚର୍ଡ ଟେମ୍ପଲ ଉଚ୍ଚଶିକ୍ଷାର ଯଥାର୍ଥ ମର୍ଯ୍ୟାଦା ବୁଝି ଏ ଦେଶୀୟଲୋକଙ୍କୁ ଉତ୍ତରୋତ୍ତର ସମଧିକ ବଳରେ ଉଚ୍ଚଶିକ୍ଷା ଦିଗକୁ ଟାଣୁଅଛନ୍ତି । ନୂତନ ସିବିଲସର୍ବିସ ପରୀକ୍ଷାରେ ଗୋଟିଏ ପ୍ରଧାନ ପରିବର୍ତ୍ତନ ଉପରଲିଖିତ ନିୟମ ଅଟଇ । ଆଉଗୋଟିଏ ପ୍ରଧାନ ପରିବର୍ତ୍ତନ ଏହି ଯେ ପ୍ରତିବର୍ଷ କେତେଜଣ ପ୍ରାର୍ଥୀର ପ୍ରୟୋଜନ ତାହା ପୂର୍ବରୁ ସ୍ଥିର ହୋଇ ଘୋଷଣା ଦିଆଯିବ ଓ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ବ୍ୟକ୍ତିଙ୍କ ମଧ୍ୟରୁ ସର୍ବାପେକ୍ଷା ଭଲ ପରୀକ୍ଷା ଦେଇଥିବା ତେତିକ ଲୋକଙ୍କୁ ବାଛିନିଆଯିବ ଓ ଆଉ ସମସ୍ତେ ନିଷ୍ଫଳ ହେବେ । ପୂର୍ବେ ଯେତେ ପରୀକ୍ଷାର୍ଥୀ ନିୟମିତସଂଖ୍ୟା ଲାଭ କରିଥିଲେ ସେମାନେ ସମସ୍ତେ ଉତ୍ତୀର୍ଣ୍ଣ ହେଉଥିଲେ ତହିଁରେ ପଦାକାଙ୍କ୍ଷିଙ୍କର ସଂଖ୍ୟା ବୃଦ୍ଧି ହେଉଥିଲା ଅଥଚ ଗବର୍ଣ୍ଣମେଣ୍ଟ ତାହାଙ୍କୁ କର୍ମ ଦେଇ ନପାରିବାରୁ ତାହାଙ୍କର ମନସ୍ତାପ ଓ ଭଗ୍ନୋତ୍ସାହ ହେଉଥିଲା । ଯଦ୍ୟପି କି ଗବର୍ଣ୍ଣମେଣ୍ଟ ନିଶ୍ଚୟକରି କହିଅଛନ୍ତି କି କେବଳ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲାବୋଲି କେହି କର୍ମ ପାଇବାର ଆଶା କରିବନାହିଁ । ତଥାପି ଯେଉଁମାନେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ସେମାନଙ୍କର ଏପ୍ରକାର ଆଶା ଅନିବାର୍ଯ୍ୟରୂପେ ମନରେ ଉଦୟ ହେଉଅଛି । ଯେତେଜଣ କର୍ମଗ୍ରହର ପ୍ରୟୋଜନ ପୂର୍ବରୁ ତହିଁର ସଂଖ୍ୟା ପ୍ରକାଶକରି କେବଳ ତେତିକି ଲୋକଙ୍କୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହବାର ଜାଣିକଲେ ଆଉ କାହାରିମନରେ ବୃଥା ଆଶା ଜାତ ହେବନାହିଁ ଓ ଯେଉଁମାନେ ଉତ୍ତୀର୍ଣ୍ଣ ହେବେ ସେମାନଙ୍କର କାର୍ଯ୍ୟ ଲଭିବାର ପ୍ରକୃତ ଆଶା ଚରିତାର୍ଥ ହେବ । ଅଥଚ ପରୀକ୍ଷାର୍ଥୀଙ୍କ ମଧ୍ୟରେ ଯେଉଁମାନେ ସର୍ବାପେକ୍ଷା ଯୋଗ୍ୟ କେବଳ ସେହିମାନେ ଉଚ୍ଚକର୍ମ ପାଇବେ ।

ଉପରଲିଖିତ ବିଷୟମାନ ଆଲୋଚନା କଲେ ଅବଶ୍ୟ ସ୍ୱୀକାରକର-ବାକୁ ହେବ ସର ବର୍ତ୍ତ ଟେମ୍ପଲ ସର ଜର୍ଜଙ୍କ ସିବିଲ ସର୍ବିସ ନିୟମକୁ ଯଥାସାଧ୍ୟ ସୁମାର୍ଜିତ ଓ ହିତକର କରିଅଛନ୍ତି ।

**( ୧୦ମ ଭାଗ, ୧୩ । ୧୦ । ୧୮୭୪, ସଂଖ୍ୟା ୪୪ )**

୪୭୦ । ସାପ୍ତାହିକ ସମ୍ବାଦ

ବାବୁ ଯୋଗେଶ୍ୱର ଚନ୍ଦ୍ର ଚନ୍ଦ୍ର ଗତମାସ ସକାଶେ ଯାଜପୁରର ଏକଟିଂ ମୁନସଫ ନିଯୁକ୍ତ ହୋଇ ଗତ ସପ୍ତାହରେ ସେଠାକୁ ଯାଇଅଛନ୍ତି । ଏ ବାବୁ ପୁରୀରେ ମୁନସଫ ଥିବାବେଳେ ସେଠା ଲୋକେ ତାହାଙ୍କ ବିଚାର କାର୍ଯ୍ୟରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଥିଲେ ।

**( ୧୦ମ ଭାଗ, ୧୩ । ୧୧ । ୧୮୭୪, ସଂଖ୍ୟା ୪୪ )**

୪୭୧ । ବାବୁ ଶ୍ୟାମାନନ୍ଦ ଦେ ରାୟବାହାଦୂରଙ୍କ ୫୦୦୦ଟଙ୍କା ଦାନ ବିଷୟ ବାଲେଶ୍ୱରବାସିମାନେ ଯେମନ୍ତ ବ୍ୟବହାରରେ ଦେଇଥିଲେ ତାହା ଆମ୍ଭେମାନେ ଏଥିପୂର୍ବେ ଲେଖିଥିଲୁ । ସମ୍ପ୍ରତି ସେଠାର ସମ୍ବାଦପତ୍ର ସବୁରୁ ଜଣାଗଲା ଯେ ବାଲେଶ୍ୱର-ବାସିମାନେ କଲେକ୍ଟର ସାହେବଙ୍କ ଅନୁଗ୍ରହରୁ ତହିଁରୁ ମୁକ୍ତ ପାଇଅଛନ୍ତି । ସାହେବ ପ୍ରଶଂସିତ ବାବୁଙ୍କ ମତ ନେଇ ଉକ୍ତ ଟଙ୍କାକୁ ପ୍ରିନ୍ସଅବ ୱେଲ୍ସଙ୍କ ନାମରେ ଉତ୍ସର୍ଗକରି ତହିଁରୁ ଛାତ୍ରବୃତ୍ତି ଦେବାପାଇଁ ସ୍ଥିର କରିଅଛନ୍ତି । ଏଟଙ୍କାରେ ୫୪ଟଙ୍କିଆ ସୁଧର କାଗଜ ଖରିଦହେବ ଯେ ତଦ୍ଦ୍ୱାରା ମାସକୁ ୧୬ଟଙ୍କା ଆୟହେବ । ଏହି ୧୬ଟଙ୍କାରେ ଦୁଇଗୋଟି ଛାତ୍ରବୃତ୍ତି କଟକ ହାଇସ୍କୁଲରେ ଦିଆଯିବ । ବାଲେଶ୍ୱରରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଛାତ୍ରମାନଙ୍କମଧ୍ୟରୁ ଯେଉଁ ପିଲା ଗବର୍ଣ୍ଣମେଣ୍ଟ ବୃତ୍ତି ପାଇବ ନାହିଁ ଅଥଚ ଦୁଃଖୀ ଥିବ ସେହି ଏକା ଏ ବୃତ୍ତିପାଇବ । ପ୍ରତିବର୍ଷ ଏକଜଣ ଛାତ୍ର ଏରୂପ ବୃତ୍ତି ପାଇବ ଯେ ସେ ତାହା ଦୁଇବର୍ଷ ପର୍ଯ୍ୟନ୍ତ ଭୋଗ କରିପାରିବ ଓ କଟକ ହାଇସ୍କୁଲରେ ସର୍ବଦା ବାଲେଶ୍ୱରର ଏରୂପ ଦୁଇଜଣ ଛାତ୍ର ପାଠ କରୁଥିବେ । ବିଦ୍ୟା ସବୁ ଦାନଠାରୁ ଶ୍ରେଷ୍ଠ ଅଟଇ ଓ ରାୟବାହାଦୂରଙ୍କ ଟଙ୍କାରୁ ଚିରକାଳ ଉକ୍ତ ଦାନ ହେଉଥିବାର ବନ୍ଦୋବସ୍ତ ହୋଇଅଛି ବଡ଼ ସୁଖର ବିଷୟ ଅଟଇ ।

୪୭୨ । ସାପ୍ତାହିକ ସମ୍ବାଦ ।

କନ୍ଧମାଳର ତହସିଲଦାର ବାବୁ ଦୀନବନ୍ଧୁ ପଟ୍ଟନାୟକ ଉକ୍ରଷ୍ଟ

ସରକାରୀ କାର୍ଯ୍ୟ କରିଥିବାରୁ ଗବର୍ଣ୍ଣମେଣ୍ଟ ଇଣ୍ଡିଆ ତାହାଙ୍କୁ ରାୟ ବାହାଦୁର ପଦ ଦେଇ ଅଛନ୍ତି ।

## ( ୧୦ମ ଭାଗ, ୨୦ । ୧୧ । ୧୮୭୫, ସଂଖ୍ୟା ୪୭ )

୪୬୩ । ଓଡ଼ିଶାର କାରିଗର

ଗତ ବର୍ଷ ବାବଦ ଓଡ଼ିଶାର ସାଧାରଣ ଶାସନ ସମ୍ପର୍କୀୟ ବିଜ୍ଞାପନୀ ଉପରେ ଗବର୍ଣ୍ଣମେଣ୍ଟ ବଙ୍ଗାଳ ଯେଉଁ ମନ୍ତବ୍ୟ କଲିକତା ଗଜେଟରେ ଛପାଇ ଥିଲେ ତହିଁର ଏକ ସ୍ଥାନରେ ଆମ୍ଭେମାନେ ଦେଖିଲୁଁ ଯେ ବିଦେଶରୁ ନାନା ପ୍ରକାର ଶିଳ୍ପଜାତ ଦ୍ରବ୍ୟ ଆମଦାନୀ ହୋଇ ସୁଲଭ ମୂଲ୍ୟରେ ବିକ୍ରୟ ହେବାରୁ ଓଡ଼ିଶାର କାରିଗରମାନଙ୍କର ବିଶେଷ ଦୁରବସ୍ଥା ଘଟିଥିବାର କୌଣସି କଲେକ୍ଟର ଆପଣା ବିଜ୍ଞାପନରେ ଲେଖିଥିଲେ ଓ ଗବର୍ଣ୍ଣମେଣ୍ଟ ତହିଁର ବିସ୍ତାରିତ ଅବସ୍ଥା ବୁଝିବାପାଇଁ ମନ ବଳାଇ ଥିଲେ । ମାତ୍ର ଆମ୍ଭମାନଙ୍କର କମିଶନର ସାହେବ ତହିଁରେ ଐକ୍ୟ ହେଲେ ନାହିଁ । ତାହାଙ୍କ ବିବେଚନାରେ ଓଡ଼ିଶାରେ ଶିଳ୍ପକାର୍ଯ୍ୟର ଉନ୍ନତି ହେଉଅଛି, କାରିଗରମାନେ ଦୁଃଖ ପାଇବା ଅସମ୍ଭବ ଅଟଇ । ଏଥିର ଉଦାହରଣ ସ୍ୱରୂପ ସେ ଦେଖାଇଲେ ଯେ ପୂର୍ବାପେକ୍ଷା ସୁତା ଓ ତମ୍ବା ଇତ୍ୟାଦି ଧାତୁ ଅଧିକ ପ୍ରମାଣରେ ଆମଦାନୀ ହେଉଅଛି । କାରିଗରର ହାତ ନଲଗିଲେ ଏ ଦ୍ରବ୍ୟମାନ ଲୋକଙ୍କର ବ୍ୟବହାରରେ ଆସିବାର ନୁହଇ ସୁତରାଂ ଯେତେଲେ ଏ ସବୁ ଦ୍ରବ୍ୟର ଖର୍ଚ୍ଚ ବଢ଼ୁଅଛି ସେ ସ୍ଥଳେ କାରିଗରମାନେ ପୂର୍ବଠାରୁ ଅଧିକ କାର୍ଯ୍ୟ ପାଇଅଛନ୍ତି ବୋଲି ମାନିବାକୁ ହେବ । ସେମାନଙ୍କର ଦୁରବସ୍ଥା ଘଟିଥିବା କଦାଚ ବିଶ୍ୱାସ ହୋଇ ନପାରେ । ପୂର୍ବେ କି ପ୍ରମାଣରେ ଏ ସବୁ ଦ୍ରବ୍ୟ ଆସୁଥିଲା ଏବଂ ଏବେ କି ପରିମାଣରେ ଆସୁଅଛି ତାହା ନ ଜାଣିଲେ ଏ ଉଦାହରଣର ସାର୍ଥକତା ଆମ୍ଭେମାନେ ସମ୍ପାଦନ କରି ନପାରୁଁ । ବୋଧହୁଅଇ କଷ୍ଟମ ଇଲକାର ତାଲିକାରୁ କମିଶନର ସାହେବ ଆପଣା ମତ ନିଶ୍ଚୟ କରିଥିବେ । ମାତ୍ର ମାନ୍ଦ୍ରାଜ କଟକରୁ ଆସୁନଥିବା ସମୟରେ ଏ ସବୁ ଦ୍ରବ୍ୟ କି ପରିମାଣରେ ଆସୁଥିଲା ତହିଁର ତାଲିକା ଥିଲେ ସବିଶେଷ ଜଣା ପଡ଼ନ୍ତା । ବାସ୍ତବରେ ଯେବେ ଆମଦାନୀ ବଢ଼ିଥାଏ ତେବେ ତାହା ଏଠାରୁ ଅନ୍ୟ ସ୍ଥାନକୁ ବାହାର ଯାଉଅଛି କି ନାହିଁ ତହିଁର ଅନୁସନ୍ଧାନ ନହେଲେ ଏଠା କାରିଗରଙ୍କର ଉପାୟ ବଢ଼ିଅଛି ଏମନ୍ତ ସିଦ୍ଧାନ୍ତ ହୋଇ ନପାରେ । ସକଳରେ ଜାଣନ୍ତି ଯେ ବିଲାତି କପଡ଼ା ଆସିବାରୁ ଦେଶୀ ତନ୍ତମାନେ କିରୂପ ନିରୁପାୟ ହୋଇ ରହିଲେ ଓ ଯେତେ ନାଳ ଓ ବଣ୍ଣ କର୍ମ ଏ ଜିଲ୍ଲାରେ ନଥାନ୍ତା ତେବେ ଏମାନଙ୍କର ବଞ୍ଚିବାର

ଉପାୟ ନଥିଲା । ସୁତା ଆମଦାନୀ ଦ୍ୱାରା ଏମାନଙ୍କର ଅବସ୍ଥା ଭଲ ହେବାର ଥିଲେ ତନ୍ତି-ମାନଙ୍କର ଅବସ୍ଥାର ସୁମ୍ଭବିବୃଦ୍ଧି ଅବଶ୍ୟ ହୋଇଥାନ୍ତା। ମାତ୍ର ସେରୂପ କଛି ଦେଖିବାକୁ ଅସୁନାହିଁ । ତନ୍ତିମାନେ ନିଜ ସୂତା ପାଇ କେହ୍ନ୍ କଟା ବୁଣିବାର ବ୍ୟବସାୟ ଭଙ୍ଗି ଅଛନ୍ତି ଓ ଅନେକ ତନ୍ତୀ ବିଲାତୀ ସୂତାକାଣି ଲୁଗା ବୁଣୁଅଛନ୍ତି ସତ୍ୟ ମାତ୍ର ସେମାନ-ଙ୍କର ପରିଶ୍ରମାନୁସାରେ ମୂଲ୍ୟ ମିଳୁନାହିଁ ସୁତରାଂ ଲୁଗା ବିକ୍ରୟ କରୁ ୨ ମୁଣ୍ଡା ଅନା-ହବରେ କାଳ ଅଛନ୍ତି ଓ କଣ୍ଡୁଦନ ଥୋରଣ ହୋଇ ମହାଁ ଦେଖନ୍ତି ଯେ କୌଣସି ରୂପେ ଲଭ ହେଉନାହିଁ ତହୁଁ ଛାଡ଼ ବସନ୍ତି। ଏଥିରୁ ଦେଖାଯାଏ ଯେ ସୂତା କପଡ଼ା ଆମଦାନୀ ହେବାରୁ ତନ୍ତିଙ୍କର ମଙ୍ଗଳ ହୋଇନାହିଁ ବରଂ ଗୋଟିଏ ଅମଙ୍ଗଳ ହୋଇ ଅଛି କାରଣ ଶସ୍ତାରେ ସୂତା ପାଉ ନଥିଲେ ଏମାନେ ଏକାବେଳକେ ଏ ବ୍ୟବସାୟ ଛାଡ଼ିଦେଇ ଅନ୍ୟ ଉପାୟ ଦେଖନ୍ତେ ବେଲରେ ଏତେ ଉଚ୍ଛନ୍ନ ହୁଅନ୍ତେ ନାହିଁ । ଯେପ୍ରୂପ ସୂତା ଆମଦାନୀ ଦ୍ୱାରା ତନ୍ତିଙ୍କର ଅବସ୍ଥା ଭଲ ହୋଇନାହିଁ ସେହିପରି ତମ୍ବା ଖପର ଇତ୍ୟାଦ ଆସିବାରୁ ଥଠାରିଙ୍କର ଭଲ ହୋଇନାହିଁ ଓ ଦେବେ ଥଠାରିଙ୍କର ଅବସ୍ଥା ତନ୍ତିଙ୍କ ପରି ମନ୍ଦ ନୁହଇ ତେବେ ତହିଁର କାରଣ ବର୍ତ୍ତମାନର ଅଧିକ ଆମଦାନୀ ହେବା ନୁହଇ ମାତ୍ର ଭନ୍ନ ଦେଶରୁ କଂସା ପିତ୍ତଳ ବାସନ ଆମଦାନୀ ନହେବା ଅଟଇ । ଆମ୍ଭେମାନେ ଅନୁସନ୍ଧାନ କରି ଦେଖିଅଛୁଁ ଯେ ତମ୍ବା ଖପର ଇତ୍ୟାଦ ଆମଦାନୀ କରିବାରେ ଲଭ ହେଉନାହିଁ ଓ ଏହ କାରଣରୁ ଏ ଜିଲ୍ଲାର ପ୍ରାଚୀନ ବେପାରିମାନେ ଏ ବାଣିଜ୍ୟ ଏକାବେଳକେ ବହିତ କରିଅଛନ୍ତି ଅର୍ଥାତ୍ ଏ ଜିଲ୍ଲା ବିକ୍ରୟ ସକାଶେ ଅଣାନ୍ତି ନାହାନ୍ତି । ଯାହା ଏଠାର ବିକ୍ରୟ ହୁଅଇ ତାହା ଅନେକ ମହାଜନ ଅଲାଲ ପରିମାଣରେ ଅଣାନ୍ତି ମାତ୍ର ସେମାନଙ୍କର ବହୁତ ଲଭ ହୁଅଇ ନାହିଁ ଓ ଅନେକ ମହାଜନ ବାଡଦେଇଛି କମ ଲଭ ଅଥବା କଣ୍ଟିତ୍ କଷ୍ଟରେ ବିକ୍ରୟ କରନ୍ତି । ତେବେ କାରିଗରମାନେ କଂସା ପିତ୍ତଳ ଦ୍ରବ୍ୟ ଗଢ଼ିବାରେ ଲଭ ପାଉଥାନ୍ତେ ତେବେ ଉକ୍ତ ଧାତୁସବୁର ଦରଜଣା ହୁଅନ୍ତାନାହିଁ । ଅନ୍ୟାନ୍ୟ କାରିଗରଙ୍କ ସମ୍ପର୍କରେ ମଧ୍ୟ ଏହିରୂପ ବୋଲି ଜାଣିପାରେ । ଫଳତଃ ଏ ପ୍ରଦେଶରେ ବୁଲିବାକୁ ଗଲେ କୃଷିକାର୍ଯ୍ୟଗରଙ୍କର ଅବସ୍ଥା ଭଲ ଦେଖାଯିବ ମାତ୍ର କାରୀଗରଙ୍କ ଅବସ୍ଥା ବଡ଼ ମନ୍ଦ ଅଟଇ । ଅତଏବ ଆମ୍ଭେ-ମାନେ ବିବେଚନା କରୁଁ ଯେ କଲେକଟର ସାହେବ ପ୍ରକୃତ କଥା ଲେଖିଥିଲେ ଓ କମି-ଶନର ସାହେବ କିଛି ଅନୁସନ୍ଧାନ ନକରି ଗୋଟିଏ ମନଗଢ଼ା କଥାଦ୍ୱାରା ତହିଁର ଅନ୍ୟଥା ପ୍ରକାଶ କରିବାରୁ କେବଳ ଗବର୍ଣ୍ଣମେଣ୍ଟଙ୍କୁ ଭ୍ରମରେ ପକାଇଲେ ଏମନ୍ତ ନୁହଇ । କାରି-ଗରମାନଙ୍କର ଦୁର୍ଗ୍ୟରୁ ଗବର୍ଣ୍ଣମେଣ୍ଟ ମଧ୍ୟବା କୌଣସି ପ୍ରତୀକାର ଚିନ୍ତାକରନ୍ତେ ତହିଁରୁ ତମାନଙ୍କୁ ବଞ୍ଚିତ କରାଇଲେ । ଗୋଟିଏ ପ୍ରଦେଶର ପ୍ରଧାନ ଅଧିକାରୀମାନଙ୍କ ଦ୍ୱାରେ ଏପ୍ରକାର କାର୍ଯ୍ୟ କେମନ୍ତ ଅନିଷ୍ଟକର ତାହା ପାଠକମାନେ ଏଥିରୁ ଅନୁଭବ କରିବେ ।

୪୫୪ । ସାପ୍ତାହିକ ସମ୍ବାଦ ।

ଆମ୍ଭେମାନେ ଆନନ୍ଦର ସହିତ ଦେଖିଲୁଁ ଯେ ଗଙ୍ଗା ମଣ୍ଡିଆ ପୁଷ୍କରଣୀରୁ ପଲି ଉଠାଇଦେବାର ବନ୍ଦୋବସ୍ତ ମାଜିଷ୍ଟ୍ରେଟ ସାହେବ କରିଦେଇଅଛନ୍ତି । ଏଥିରେ ରୋଗ ଜାତହେବାର ଗୋଟିଏ ପ୍ରଧାନ କାରଣ ନିବାରିତ ହେବ ।

## ( ୧୦ମ ଭାଗ, ୪ । ୧୨ । ୧୮୬୫, ସଂଖ୍ୟା ୪୮ )

୪୫୫ । ଆମ୍ଭେମାନେ ଆନନ୍ଦର ସହିତ ଅବଗତ ହେଲୁଁ ଯେ ଏଥର ଆମ୍ଭମାନଙ୍କର କଲେକ୍ଟର ଶ୍ରୀଯୁକ୍ତ ବମ୍ସ ସାହେବ ପଟିଆ କିଲ୍ଲା କ୍ରୋକ୍ କରିବାକୁ ଯାଇ ସେଠାର ରାଜାଙ୍କୁ ଉତ୍ତମ ଜୀବନ ମାର୍ଗକୁ ଫେରାଇ ଆଣିବାକୁ ବହୁତ ଯତ୍ନ କରୁଅଛନ୍ତି । ପଟିଆ ରାଜାଙ୍କର ଗୁଣ ଗୌରବମାନ ଏ । ଲୋକଙ୍କୁ ଅବିଦିତ ନାହିଁ ଓ ପୂର୍ବେ ଏହି ପତ୍ରିକାରେ ସେହିର କେତେକ ବର୍ଣ୍ଣନା ହୋଇଥିଲା । ରାଜା ଆପଣା ରାଜ୍ୟର ଅଧିକାଂଶ ଶତ୍ରୁଙ୍କୁ କରି ସୁଦ୍ଧା ଋଣରୁ ମୁକ୍ତହୋଇ ନାହାନ୍ତି ବରଂ ଏତେବେଳ ପାଏ ଋଣ କରିବାକୁ କ୍ଷାନ୍ତ ନାହାନ୍ତି ଓ ସେ ଅର୍ଥ କୌଣସି ଉତ୍ତମ କାର୍ଯ୍ୟରେ ନ ଲଗାଇ ଗୃହୁକାରଙ୍କ ପ୍ରତିପାଳନ ଓ ଅନ୍ୟାନ୍ୟ ଅପବ୍ୟୟରେ ଉଡ଼ାଇ ଦେଇଅଛନ୍ତି । ଏ ସବୁ ବ୍ୟାପାର କଲେକ୍ଟର ସାହେବ ଦେଖି ତାହାଙ୍କଠାରୁ ଗୋଟିଏ ଏକରାରନାମା ଲେଖାଇ ନେଇଅଛନ୍ତି ଯେ ଋଣ ପରିଶୋଧ ହେବାପାଏ ସେ କଲେକ୍ଟର ସାହେବଙ୍କ ବନ୍ଦୋବସ୍ତରେ ରହିବେ ଓ କୌଣସି ବିଷୟରେ ହସ୍ତକ୍ଷେପଣ କିମ୍ବା ଆଉ ଋଣଗ୍ରହଣ କରିବେ ନାହିଁ । ରାଜ୍ୟର ନୂତନ ବନ୍ଦୋବସ୍ତ କାର୍ଯ୍ୟ ଉପସ୍ଥିତ ଅଛି ଯେ ତାହା କଲେକ୍ଟର ସାହେବଙ୍କ ଯୋଗେ ସମ୍ପନ୍ନ ହେବ । ରାଜାଙ୍କର ଗ୍ରହମାନେ ଅତ୍ୟନ୍ତ ବଳବାନ ଅଛନ୍ତି ଯେ ଏ ପ୍ରକାର ଏକରାର ନାମା ଲେଖିଦେଇ ସେ କଲେକ୍ଟରଙ୍କୁ ଆତ୍ମସମର୍ପଣ କଲେ ନୋହିଲେ ତାହାଙ୍କୁ କ୍ଲେଶ ଭୋଗ କରିବାକୁ ହୋଇଥାନ୍ତା ।

୪୫୬ । ପ୍ରେରିତପତ୍ର ।

ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ

ସମୀପେଷୁ,

ମହାଶୟ, ଆମ୍ଭେମାନେ ଉତ୍କଳଦୀପିକାରୁ ଅବଗତ ହେଲୁଁ ଯେ ଜଜନାଳର ତହସିଲଦାର ଶ୍ରୀଯୁକ୍ତ ବାବୁ ଦୀନବନ୍ଧୁ ପଟ୍ଟନାୟକ ମହାଶୟଙ୍କୁ ଗବର୍ଣ୍ମେଣ୍ଟରୁ ରାୟ ବାହାଦୁର ପଦ ମିଳିଅଛି । ଏହା ଆମ୍ଭମାନଙ୍କର ଆନନ୍ଦର ବିଷୟ । ସେହି କର୍ମଗୁଣ

ମାନଙ୍କ ମଧ୍ୟରେ ଏପରି ପଦ ଅତି ବିରଳ । ତନ୍ମଧ୍ୟରେ ଯେ ଉକ୍ତ ମହାଶୟ ଉତ୍ତମ କାର୍ଯ୍ୟ
କରିବାରୁ ମାନ୍ୟବର ଗବର୍ଣ୍ଣମେଣ୍ଟ ତାହାଙ୍କୁ ଉପାଧି ଦେଇଅଛନ୍ତି ଏଥିରେ ଆମ୍ଭେମାନେ
ବାବୁ ମହୋଦୟଙ୍କୁ ଧନ୍ୟବାଦ ନ ଦେଇ କ୍ଷାନ୍ତ ହୋଇନପାରୁଁ । ଯେତେବେଳେ ଏହି
ମାଳପ୍ରଦେଶରେ ନରବଳି ପ୍ରଥା ଚଳୁଥିଲା, ସେତେବେଳେ ପ୍ରଜାବିଦ୍ରୋହ ଏହିସ୍ଥଳରେ
ଏବଂ ଏହାର ନିକଟବର୍ତ୍ତୀ ସ୍ଥାନରେ ଲାଗିଥିଲା । ସେତେବେଳେ ଏହି ମହାଶୟଙ୍କ
ଦ୍ୱାରା ଗବର୍ଣ୍ଣମେଣ୍ଟଙ୍କର ଅନେକ ଉପକାର ସାଧିତ ହୋଇଅଛି । ଏ ସ୍ଥଳରେ ବିଦ୍ୟାର
ନାମମାତ୍ର ଜଣାନଥିଲା । ଏହାଙ୍କ ଆବେଦନରୁ ବଣିପଡ଼ାରେ ଏକ ସ୍କୁଲ ସ୍ଥାପିତହେଲା ।
ତଦୁତ୍ତରେ ଏହି ମହାଶୟ ଅବକାରି ଆଦାୟର ଉପାୟ ସ୍ଥିରକରି ସେହି ଆଦାୟରେ
ଗୋଟିଏ ସ୍କୁଲ ସ୍ଥାପନ କରିଅଛନ୍ତି । ସୁନଷ୍ଟ ଦେଶୀୟଲୋକଙ୍କୁ ନାନା କୌଶଳରେ
ଉପଦେଶ ଦେବାରୁ ସେମାନେ ପଥ ପ୍ରସ୍ତୁତ ନିମିତ୍ତ ଚାନ୍ଦା ଦେଉଅଛନ୍ତି । ପଥ ନିମିତ୍ତ
ଚାନ୍ଦାରୁ ଯେତେ ଟଙ୍କା ଆଦାୟ ହେଉଅଛି ସେତେ ଟଙ୍କା ଗବର୍ଣ୍ଣମେଣ୍ଟ ସାହାଯ୍ୟଦାନ
କରୁଅଛନ୍ତି । ଏହିକାର୍ଯ୍ୟ କରିବାକୁ କୌଣସି ସ୍ୱତନ୍ତ୍ର କର୍ମଚାରୀ ନିଯୁକ୍ତ ନାହାନ୍ତି ।
ତହସିଲଦାର ସ୍ୱୟଂ ଓଭରସିଅରପରି ବୁଲି ପ୍ରତ୍ୟେକ ସ୍କୁଲ ଓ ଆଉଟପୋଷ୍ଟ ଠାରୁ ପଥ
ନିର୍ମାଣ କରାଉଅଛନ୍ତି । ଘୁମସର, ଖେମୁଣ୍ଡି, ଶୁନସୁରା ଓ ବୌଦର ହାଟ ସହିତ କନ୍ଧ-
ମାଳର ହାଟ ସମ୍ମିଳନ କରାଇବାର ଉପାୟ ସ୍ଥିର କରିଅଛନ୍ତି । ଏହି ଦେଶ ଲୋକ
ଯେପରି ଏହି ବ୍ୟୟ ପ୍ରାପ୍ତ ହୋଇ କାର୍ଯ୍ୟକରନ୍ତି ସେପରି ଯତ୍ନ କରିଅଛନ୍ତି । ସ୍କୁଲମାନଙ୍କର
କପରି ଅଭିବୃଦ୍ଧି ହେବ ଇନସ୍ପେକ୍ଟର ପରି ତାହାର ନାନା ଉପାୟ ଅବଲମ୍ବନ କରୁ-
ଅଛନ୍ତି । ବଣିପଡ଼ାଠାରେ ଏକ ହାଟ ବସାଇଅଛନ୍ତି । ଅନ୍ୟାନ୍ୟ ସ୍ଥାନରେ କପରି ହାଟ
ନିର୍ମିତ ହେବ ତାହାର ସଦୁପାୟ ସ୍ଥିର କରୁଅଛନ୍ତି । ଏହି ସବୁ କାର୍ଯ୍ୟ ଦେଖି ଶୁଣି
ଉତ୍କଳମଣ୍ଡଳେଶ୍ବର ଦୟାବାନ୍ ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ ମହାଶୟ ତାହାଙ୍କୁ ଉତ୍ସାହ
ଦେବାରେ ଯତ୍ନ କରୁଅଛନ୍ତି । ଏଥିରୁ ଆମ୍ଭେମାନେ ଅନୁମାନ କରିଥିଲୁଁ ଅବଶ୍ୟ ଏହି
ମହାଶୟଙ୍କର ବେତନ ବର୍ଦ୍ଧିତ ହେବ । ମାନ୍ୟବର ଗବର୍ଣ୍ଣମେଣ୍ଟ ତାହା ( ରାୟ ବାହା-
ଦୁର ) ବାକ୍ୟରେ ପୂର୍ଣ୍ଣ କରିଅଛନ୍ତି କି ଅବଶିଷ୍ଟ ଅଛି ତାହା ଜଣାଯାଉନାହିଁ । ଯଦି
ଅବଶିଷ୍ଟ ଥାଏ ତେବେ ଗବର୍ଣ୍ଣମେଣ୍ଟଙ୍କ ଉତ୍ସାହ ଦାନକୁ ପ୍ରକୃତ ଦାନ ବୋଲିଯିବ ।
କାରଣ କି ଅସଭ୍ୟ ଜାତିଙ୍କୁ ସଭ୍ୟ ମାର୍ଗରେ ଆଣିବା ନିମିତ୍ତ ଗବର୍ଣ୍ଣମେଣ୍ଟରୁ ଅନ୍ୟାନ୍ୟ
ସ୍ଥଳରେ ଲକ୍ଷ ୨ ଟଙ୍କା ବ୍ୟୟ ହେଉଅଛି । ଏ ସ୍ଥଳରେ ମାସିକ ହଜାର ବା ବାରଶତ
ଟଙ୍କା ଜଣେ କର୍ମଚାରୀପ୍ରତି ବ୍ୟୟହେଲେ ଯଦି କାର୍ଯ୍ୟ ସବୁ ଉପରେ ୨ ସାଧିତ ହେବ
ତେବେ ବଡ଼ ସୁଖକର ଅଟେ ।

ଶ୍ରୀ ଗ. ପଟ୍ଟନାୟକ

ଶ୍ରୀ ବ. ମହାନ୍ତି

( ୧୦ମ ଭାଗ, ୧୮ । ୧୨ । ୧୮୭୫. ସଂଖ୍ୟା ୫୦ )

୪୬୭ । ଏଠା ରୋମାନ କାଥେଲିକ ସ୍କୁଲର ଛାତ୍ରମାନେ ପ୍ରତିବର୍ଷ ଏହି ସମୟରେ ନାଟ୍ୟକ୍ରୀଡ଼ା କରନ୍ତି । ଏବର୍ଷ ଏସପ୍ତାହରେ ଦୁଇଦିନ ତଦ୍ରୂପ କ୍ରୀଡ଼ା କରିଥିଲେ । ନାଟ୍ୟଶାଳା ସ୍କୁଲଗୃହରେ ହୋଇଥିଲା । ଆମ୍ଭେମାନେ ଦିନେ ସେମାନଙ୍କର କ୍ରୀଡ଼ା ଦେଖି ସନ୍ତୁଷ୍ଟ ହେଲୁଁ । ଇଂରାଜୀ ଟୋଡ଼ସ୍ କୃତ ନାଟ୍ୟପୁସ୍ତକର ଏକ କ୍ଷୁଦ୍ର ଅଂଶର ନାଟ୍ୟକ୍ରୀଡ଼ା ହୋଇଥିଲା ଓ ନର୍ତ୍ତକଙ୍କ ମଧ୍ୟରେ ଅଧିକାଂଶ ଫିରିଙ୍ଗି ହେଲେହେଁ ସେମାନେ ଇଂରାଜୀ କଥୋପକଥନ ଏବଂ ଆପଣା ଆପଣାର କାର୍ଯ୍ୟ ଉତ୍ତମରୂପେ କଲେ । କଲିକତାରେ ବଙ୍ଗାଳିମାନେ ନାଟ୍ୟଶାଳା ସ୍ଥାପନକରି ନାଟ୍ୟକ୍ରିୟା ଅତି ଉତ୍ତମରୂପେ କରୁଅଛନ୍ତି । ଏଠା ଲୋକଙ୍କର ଏପରି ରୁଚି ଓ ଯତ୍ନ କେବେ ହେବ ?

୪୬୮ । ଲାଖରାଜ ବାଜ୍ୟାପ୍ତି ।

ଲାଖରାଜ ବାଜ୍ୟାପ୍ତି ଉପରେ ପୂର୍ଣ୍ଣ ଜମା ଧାର୍ଯ୍ୟହେବାର ବୋର୍ଡ ସିଦ୍ଧାନ୍ତ କରିଥିବା ବିଷୟ ଏଥିପୂର୍ବେ ପାଠକମାନଙ୍କୁ ଜଣାଇଅଛୁଁ । ଏ ସିଦ୍ଧାନ୍ତ କଟକ ଖାସମହାଲର ସାନ ବନ୍ଦୋବସ୍ତ ସମ୍ପର୍କରେ ହୋଇଅଛି କିନ୍ତୁ ତାହା ଯେ କେବଳ ଖାସମହାଲ ଅନ୍ତର୍ଗତ ଲାଖରାଜ ବାଜ୍ୟାପ୍ତି ପ୍ରତି ଖଟିବ ଏମନ୍ତ ନୁହେ, ଏ ଦେଶର ସବୁପ୍ରକାର ଲାଖରାଜ ବାଜ୍ୟାପ୍ତି ପକ୍ଷରେ ଅଟଇ । ଏହେତୁ ଆମ୍ଭେମାନେ ସେ ବିଷୟରେ ଆଲୋଚନା କରିବାକୁ ପ୍ରବୃତ୍ତ ହୋଇଅଛୁଁ ।

ଗତ ବନ୍ଦୋବସ୍ତ ସମୟରେ ଲାଖରାଜଦାରମାନେ ଯେଉଁ ଲାଖରାଜ ଭୂମି ପକ୍ଷରେ ସନନ୍ଦ ଓ ପୂର୍ବକାଳରୁ ଯେ ଭୋଗ କରୁଥିବାର ପ୍ରମାଣ ଦର୍ଶାଇଲେ ସେ ଲାଖରାଜ ସବୁ ବାହାଲ ହେଲା । ଯେଉଁ ୨ ଜମିସବୁ ପକ୍ଷରେ ଲାଖରାଜ ସନନ୍ଦ ବା ପ୍ରମାଣ ନମିଳିଲା କେବଳ ଲାଖରାଜଦାର ତାହା ଅନେକ କାଳରୁ ଦଖଲ କରୁଥିବାର ସାବ୍ୟସ୍ତ ହେଲା, ସେ ଜମିରେ ୧ଧା ଜମା ଧାର୍ଯ୍ୟହୋଇ ତାହା ଲାଖରାଜ ବାଜ୍ୟାପ୍ତି ବୋଲାଇଲା । ଯେଉଁ ଲାଖରାଜ ଜମିପକ୍ଷରେ ଉପର୍ଯ୍ୟୁକ୍ତ ଦୁଇପ୍ରକାର ପ୍ରମାଣ ମଧ୍ୟରୁ କୌଣସି ପ୍ରକାର ପ୍ରମାଣ ନମିଳିଲା ତହିଁରେ ପୂର୍ଣ୍ଣଜମା ଧାର୍ଯ୍ୟହୋଇ ତାହା ଖାଲସା ଜମିଭୁକ୍ତ ହେଲା ଅର୍ଥାତ୍ ଉକ୍ତ ଜମିଗୁଡ଼ିକ ଜମିଦାରଙ୍କ ମହାଲ ଅନ୍ତର୍ଗତ ହେଲା ଓ ସେଥିପକ୍ଷରେ ଲାଖରାଜଦାରଙ୍କ ସ୍ୱାମିତ୍ୱ ସ୍ୱତ୍ୱ ଅଛି ସେ ସେଜମିକୁ ବିକ୍ରୟ ବନ୍ଧକ ବା କୌଣସି ପ୍ରକାରର ହସ୍ତାନ୍ତର କରିପାରେ ଓ ତାହାଠାରୁ କବୁଲିତ କରି ନେବା ବ୍ୟତୀତ ଜମିଦାରଙ୍କ ତାହା ଉପରେ ଆଉ କିଛି ଅଧିକାର ନାହିଁ ।

ଆମ୍ଭେମାନେ ଅନୁମାନ କରୁଅଛୁଁ ଯେ ଲଖରାଜ ବାଜେୟାପ୍ତିର ଉପରଲେଖିତ ସ୍ୱତ୍ୱାଧିକାରରୁ ଲୋକଙ୍କର ବିଶ୍ୱାସ ଜନ୍ମିଲା ଯେ ଲଖରାଜ ବାଜେୟାପ୍ତ ଅଧାଜମା ହେଉଥିବାରୁ ଅଟେ କୌଣସିକାଳେ ପୂର୍ଣ୍ଣଜମା ଧାର୍ଯ୍ୟ ନହେବ । ଏହି ବିଶ୍ୱାସରେ ଲଖରାଜ ବାଜେୟାପ୍ତିର କ୍ରୟ ବିକ୍ରୟ ବ୍ୟବହାର ଚଳୁଅଛି । ଏପରି ବିଶ୍ୱାସ ନଥିଲେ ଲୋକେ କାହିଁକି ଏତେ ମୂଲ୍ୟଦେଇ ଲଖରାଜ ବାଜେୟାପ୍ତି ଜମି କିଣନ୍ତେ ? କିନ୍ତୁ ଏ ବିଶ୍ୱାସ ଅତି ଭ୍ରମମୂଳକ ଅଟଇ । ଆମ୍ଭେମାନେ ଅନୁସନ୍ଧାନପୂର୍ବକ ବୁଝିଅଛୁଁ ଯେ ଲଖରାଜ ବାଜେୟାପ୍ତିର ଅଧାଜମା ଯେ କେବେହେଁ ବୃଦ୍ଧି ନହୋଇ ଚିରକାଳକୁ ସେହି ଜମା ରହିବ ଏପରି କିଛି ପ୍ରସଙ୍ଗ ବନ୍ଦୋବସ୍ତର କୌଣସି କାଗଜରେ ନାହିଁ ବରଂ ଏହାର ବିପରୀତ ପ୍ରସଙ୍ଗ ଅଛି । ଗବର୍ଣ୍ଣମେଣ୍ଟ ବନ୍ଦୋବସ୍ତ ସମୟରେ ଆଜ୍ଞା ଦେଇଥିଲେ ଯେ ଅଧାଜମା ଖାଲି ବନ୍ଦୋବସ୍ତ ପର୍ଯ୍ୟନ୍ତ ଧାର୍ଯ୍ୟ ହେବ ତତ୍ପରେ ପୂର୍ଣ୍ଣଜମା ବସିବ ହେବ ଓ ଏସବୁ ଜମିକୁ ଏପରି ଠିକ ଜରିବ କରିବାକୁ ହେବ କି ଯେପରି ପୂର୍ଣ୍ଣଜମା ଧାର୍ଯ୍ୟ କଲବେଳେ ଆଉ ଜରିବ କରିବାକୁ ନପଡ଼ିବ । ବାଜେୟାପ୍ତି ଲଖରାଜଦାରଙ୍କ ସଙ୍ଗେ ଯେଉଁ ପଟ୍ଟା କବୁଲିୟତ ହୋଇଅଛି ସେଥିରେ "ଏଜମା ଅନ୍ୟ ବନ୍ଦୋବସ୍ତ ପର୍ଯ୍ୟନ୍ତ ଦେଉଥିବ" ପ୍ରସଙ୍ଗ ଲେଖାଅଛି ତେଣିକି କଣହେବ ସେଥିର କିଛି ଉଲ୍ଲେଖ ନାହିଁ । ଏହି ସବୁ ଦୃଷ୍ଟିରେ ବୋର୍ଡ ମିମାଂସା କରିଅଛନ୍ତି କି ଲଖରାଜ ବାଜେୟାପ୍ତ ଭୂମିଉପରେ ବର୍ତ୍ତମାନ ପୂର୍ଣ୍ଣଜମା ଧାର୍ଯ୍ୟ ହୋଇପାରେ କିନ୍ତୁ ଏବେ ଜମା ଧାର୍ଯ୍ୟ କରିବାର ସରକାରର ଅଧିକାର ଥିଲେହେଁ ଏକାବେଳକେ ତାହା କରିବାର ଉଚିତ ବୋଧ ହେଉନାହିଁ । ପ୍ରଥମେ ଅଧାଜମା ଧାର୍ଯ୍ୟ ହେବାର ତାତ୍ପର୍ଯ୍ୟ ଏହିଯେ ଲଖରାଜଦାରମାନେ ଏଜମିକୁ ନିଷ୍କର ଭୋଗକରିଥିଲେ ପୂର୍ଣ୍ଣକର ଦେବାକୁ ହେଲେ ସେମାନଙ୍କୁ ବଡ଼ ବାଧକ ଓ ଗଣ୍ଡଗୋଳ ହୋଇଥାନ୍ତା ଏହେତୁ ସରକାର ଅଧାଜମା ଧାର୍ଯ୍ୟକଲେ ପୁଣି ଯେଉଁ ଦରରେ ବାଜେୟାପ୍ତି ଜମିର ବନ୍ଦୋବସ୍ତ ହୋଇଅଛି ତାହା ରୟତି ବା ଅନ୍ୟଜମିର ଦରଠାରୁ ଅନେକ ଗୁଣ ଅଧିକ ଓ ସେ ଗୁଣ ଦରରେ ଅଧାଜମା ସୁତରାଂ ବାଜେୟାପ୍ତି ଜମା ନାମ ମାତ୍ର ଅଟଇ । ଏସ୍ଥଳେ ରୈତ୍ୱାରୀ ନିୟମ ଅନୁସାରେ ସେ ଜମିରେ ପୂର୍ଣ୍ଣଜମା ଧାର୍ଯ୍ୟକଲେ ଲୋକଙ୍କୁ ବଡ଼ ବାଧକ ହେବ ଓ ଯେଉଁମାନେ ଚିରକାଳକୁ ବା ଦୀର୍ଘକାଳ ପର୍ଯ୍ୟନ୍ତ ସେହିପରି ଜମିରେ ଅଳ୍ପ ଜମାରେ ପଟ୍ଟା ଦେଇଅଛନ୍ତି ସେମାନେ ବିପଦରେ ପଡ଼ିବେ । ଯେ ସ୍ଥଳେ ବାଜେୟାପ୍ତି ଜମିର ପୂର୍ଣ୍ଣଜମା ଧାର୍ଯ୍ୟ ନ ହେବାର ସର୍ବସାଧାରଣର ବିଶ୍ୱାସ ଜନ୍ମି ଦେଶବ୍ୟାପୀ ତହିଁର ବ୍ୟବହାର ବହୁକାଳରୁ ହୋଇଆସୁଅଛି ସେସ୍ଥଳେ ସରକାରଙ୍କର ସେଥିପକ୍ଷରେ କିଛି ସୁବିଚାର କରିବାର ଉଚିତ । ଯେଉଁ ହେତୁରୁ ପ୍ରଥମେ ଅଧାଜମା ଧାର୍ଯ୍ୟହେଲା ସେହିହେତୁ ପୂର୍ଣ୍ଣଜମାର ପ୍ରତିବନ୍ଧକ ହୋଇପାରେ ଅତଏବ ଆମ୍ଭମାନଙ୍କ ବିବେଚନାରେ ଅନ୍ୟ ବନ୍ଦୋବସ୍ତରେ ସରକାର ବାଜେୟାପ୍ତି ଜମିଉପରେ ପୂର୍ଣ୍ଣଜମା ଧାର୍ଯ୍ୟ ନକରି ବାରଅଣାଜମା ଧାର୍ଯ୍ୟକଲେ ଭଲ

ହେବ । ତତଃପର ଯେ ବନ୍ଦୋବସ୍ତ ହେବ ତହିଁରେ ପୂର୍ଣ୍ଣଜମା କରିବେ ଓ ତାହା ଲୋକେ ସହିପାରିବେ । ଏକାବେଳକେ ପୂର୍ଣ୍ଣଜମା ବସାଇଲେ ଲୋକଙ୍କର ବିଶେଷ କଷ୍ଟ ଓ ଅସନ୍ତୋଷ ଜାତ ହେବ ଏବଂ ସର୍କାରଙ୍କର ପ୍ରଜାପ୍ରିୟତା ସୁଖ୍ୟାତି ହ୍ରାସ ହୋଇ- ପିବ ।

ବୋର୍ଡ ଆହୁରି ମିମାଂସା କରିଅଛନ୍ତି ଯେ ସନ ୧୮୬୭ ମସିହାର ୧୦ ଆଇନରେ ଯେ ସାଧାରଣ ବନ୍ଦୋବସ୍ତ ଆଉ ୩୦ବର୍ଷ ପର୍ଯ୍ୟନ୍ତ ସ୍ଥାୟୀ ହୋଇଅଛି ସେ ଆଇନ ଲଖିରାଜ ବାଜେୟାପ୍ତି ପ୍ରତି ନ ଖଟଇ । ଏ ମିମାଂସାରେ ଅମ୍ଭେମାନେ ଐକ୍ୟ ହୋଇନପାରୁଁ । ଏହା ଆଇନସିଦ୍ଧ ହେଉ ବା ନହେଉ ଯୁକ୍ତି ଓ ନ୍ୟାୟସିଦ୍ଧ ହେଉନାହିଁ । ଯେବେ ସକଳପ୍ରକାର ଜମିର ବନ୍ଦୋବସ୍ତ ସ୍ଥାୟୀ ରହିଲା ତେବେ ବାଜେୟାପ୍ତି ଜମିର କି ଦୋଷ ଯେ ତହିଁର ବନ୍ଦୋବସ୍ତ ବା ଜମିବସଣି ଚଞ୍ଚଳମାନ ହେବ । ଗତ ବନ୍ଦୋ- ବସ୍ତର କବୁଲିୟତିରେ ଅନ୍ୟ ବା ସାନି ବନ୍ଦୋବସ୍ତ ପର୍ଯ୍ୟନ୍ତ ଏହି ଜମା ଦେଉଥିବାର ଯେ ଲେଖାଅଛି ସେ "ଅନ୍ୟ ବା ସାନି ବନ୍ଦୋବସ୍ତ" ଶବ୍ଦର ସାଧାରଣ ବନ୍ଦୋବସ୍ତକୁ ବୁଝାଏ ସୁତରାଂ ସାଧାରଣ ବନ୍ଦୋବସ୍ତ ପର୍ଯ୍ୟନ୍ତ ଲଖିରାଜ ବାଜେୟାପ୍ତି ଜମିର ସାନି- ବନ୍ଦୋବସ୍ତ ହୋଇନପାରେ । ଯାହାହେଉ କୌଣସି କାଳେ ବାଜେୟାପ୍ତି ଜମିର ପୂର୍ଣ୍ଣ ଜମା ଧାର୍ଯ୍ୟହେବ ଏହା ନିଶ୍ଚୟ ଅଟେ । ଖୋର୍ଦ୍ଧା ଜମାବନ୍ଦୀ, ଠେକା, ଓ ଆଏମା ଜମିସବୁ ବା ଜବ୍ଦାପ୍ତି ଜମିତୁଲ୍ୟ ଅଟେ ଓ ସେ ସବୁରେ ମଧ୍ୟ ପୂର୍ଣ୍ଣଜମା ଧାର୍ଯ୍ୟ ହୋଇପାରିବ ଅତଏବ ଲୋକେ ଏଣିକି ସତର୍କହୋଇ ଏ ଜମିସବୁର କ୍ରୟ ବିକ୍ରୟ ଓ ଅନ୍ୟପ୍ରକାର ବ୍ୟବହାର କରନ୍ତୁ ।

୪୬୯ । **ବିଜ୍ଞାପନ**

ଏତଦ୍ବାରା ସର୍ବସାଧାରଣଙ୍କୁ ଅବଗତ କରାଉଅଛୁଁ ଯେ "ସ୍ୱଦେଶୀ" ନାମକ ଏକ ସାପ୍ତାହିକ ପତ୍ରିକା ସନ ୧୮୬୬ ମସିହା ଜାନୁଆରି ମାସ ତା ୫ ରିଖରୁ ପ୍ରକାଶିତ ହେବ । ଏହାର ସବିଶେଷ ବୃତ୍ତାନ୍ତ ଜାଣିବାକୁ ଇଚ୍ଛା ହେଲେ ନିମ୍ନ ସ୍ୱାକ୍ଷରିତ ବ୍ୟକ୍ତିଙ୍କଠାରେ ଅନୁସନ୍ଧାନ କଲେ ସବୁ ଜାଣି ପାରିବେ । ଏହାର ଆକୃତି ଉତ୍କଳ- ଦୀପିକା ପରି ହେବ ।

ବାର୍ଷିକ ମୂଲ୍ୟ

ଅଗ୍ରିମ ଦେୟ

ବ୍ରହ୍ମପୁର ଠାରେ ୨ ୮

ଡାକଦ୍ୱାରା ୩ ୩ ୫

ଡ଼ାକ୍ତିଙ୍କ ପ୍ରତିନିଧି ଦ୍ୱାରା ୨ ୨ ୫

**ଉକଳସ୍ୱମ ମହାନ୍ତି**
**ବ୍ରହ୍ମପୁର, ଗଞ୍ଜାମ**

ରଙ୍ଗପୁରର ସାବକ ଜଜ ଲେଭିନ ସାହେବ ଆପଣା ସିରସ୍ତାଦାରଙ୍କ ଦ୍ୱାରା ରାୟ ଲେଖାଇ ମକଦ୍ଦମା ଫଏସଲ କରୁଥିବା ଅପରାଧରେ ଏଥିପୂର୍ବେ ଧରା ପଡ଼ିଥିଲେ । ଗବର୍ଣ୍ଣମେଣ୍ଟ ଇଣ୍ଡିଆ ତାହାଙ୍କୁ ବାର୍ଷିକ ୫୭୦୦୦ଙ୍କା ପେନସନ ଦେଇ କାର୍ଯ୍ୟରୁ ବରଖାସ୍ତ କରିବାର ପ୍ରସ୍ତାବ କରିବାରୁ ବିଲାତର ସେକ୍ରେଟରୀ ତାହା ମଞ୍ଜୁର କରିଅଛନ୍ତି । ବାବୁ ସୁରେନ୍ଦ୍ର ନାଥ ବାନ୍ଦର୍ଯ୍ୟାଙ୍କୁ କେବଳ ବାର୍ଷିକ ୫୬୦୦ଙ୍କା ଦିଆ-ଗଲା !

---

## ( ୧୧ଶ ଭାଗ, ୨୨।୧।୧୮୭୭, ସଂଖ୍ୟା ୪ )

୪୨୦ । ଲଖିରାଜ ବାଜେୟାପ୍ତି ଜମିର ଜମା ।

ଆମ୍ଭେମାନେ ଯେ ଲଖରାଜ ବାଜେୟାପ୍ତି ଜମି ଉପରେ ପ୍ରଥମେ ପୂର୍ଣ୍ଣ ଜମା ଧାର୍ଯ୍ୟ ନହୋଇ କାଚାଅଣା ଜମା ଧାର୍ଯ୍ୟ କରିବା ସକାଶେ ଏଥିପୂର୍ବେ ଲେଖିଥିଲୁଁ ଶ୍ରୀଯୁକ୍ତ କମିଶନର ସାହେବ ତଦ୍ଦିପ୍ରତି ବିହିତ ବିବେଚନାକରି ସେଥିପ୍ରତି କୋହଳ ଜମାଧାର୍ଯ୍ୟ କରିବାର ପ୍ରସ୍ତାବ କରିଅଛନ୍ତି ଅର୍ଥାତ୍ ପ୍ରଥମ ଶ୍ରେଣୀର ଲଖରାଜ ବାଜେୟାପ୍ତି ଜମି ଉପରେ ଦ୍ୱିତୀୟ ଶ୍ରେଣୀ ରୟତ ଜମିର ନିରଖ ଅନୁସାରେ ଓ ଦ୍ୱିତୀୟ ଶ୍ରେଣୀର ଲଖରାଜ ଜମି ଉପରେ ତୃତୀୟ ଶ୍ରେଣୀ ରୟତି ଜମିର ନିରଖ ଅନୁସାରେ କ୍ରମଶଃ ଏହି ପ୍ରକାରରେ ଜମା ଧାର୍ଯ୍ୟ ହେବ । ଏଥି ଉତ୍ତାରେ ଯେ ବନ୍ଦୋବସ୍ତ ହେବ ତହିଁରେ ପୂର୍ଣ୍ଣ ଜମା ଧାର୍ଯ୍ୟ ହେବ ଓ ତାହା କବୁଲୟତରେ ସେହିପରି ନିୟମ ରହିବ । ଏ ଆଜ୍ଞା ବର୍ତ୍ତମାନ କଟକ ଖାସମହାଲ ଲଖରାଜ ବାଜେୟାପ୍ତି ସମ୍ବନ୍ଧରେ ହୋଇଅଛି ଓ ବୋର୍ଡ ଏଥିରେ ସମ୍ମତି ଦେଇଅଛନ୍ତି । ଆମ୍ଭେମାନେ ଭରସାକରୁଁ ଯେ ଜିଲାର ଆଗାମୀ ବନ୍ଦୋବସ୍ତରେ ଏହି ନିୟମରେ ସବୁ ଲଖରାଜ ବାଜେୟାପ୍ତି ଜମିର ବନ୍ଦୋବସ୍ତ ହେବ ।

୪୨୧ । ସ୍ୱଦେଶୀ

ଗତ ଦୁଇ ସପ୍ତାହ ହେଲା 'ସ୍ୱଦେଶୀ' ନାମରେ ଖଣ୍ଡିଏ ନୂତନ ସମ୍ବାଦପତ୍ର ପାଇବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏ ପତ୍ରିକାଖଣ୍ଡି ଗଞ୍ଜାମ ଜିଲା ବହରମପୁର ମାଣ୍ଡାପଲ୍ଲିରେ ଶ୍ରୀ ମହାରାମୃତସିନ୍ଧୁ ନାମକ ଯନ୍ତ୍ରାଳୟରେ ମୁଦ୍ରିତ ଓ ପ୍ରଚାରିତ ହୋଇଅଛି । ଏହାର କଳେବର ଠିକ ଆମ୍ଭମାନଙ୍କ ପରି ଅଟଇ ଓ ମୂଲ୍ୟ ଅତି ସୁଲଭ । ବାର୍ଷିକ ଅଗ୍ରିମ କେବଳ ୫୨ଙ୍କା ଅଟଇ । ଏହା ଠିକ୍ ସମ୍ବାଦପତ୍ର ନୁହଇ ବରଂ କେବଳ କେତେଗୁଡ଼ିଏ ସମ୍ବାଦ ଥିବାରୁ ଏହାକୁ ସମ୍ବାଦପତ୍ର କେହି କୋଲି ପାରନ୍ତି ନତୁବା ଏକ ପ୍ରକାରରେ ଏହା ସାମୟିକ ରଚନା ପ୍ରକାଶକ ପୁସ୍ତିକା ତୁଲ୍ୟ ଅଟଇ । ସମ୍ପାଦକ କହନ୍ତି ଯେ ଓଡ଼ିଶାରେ ସମ୍ବାଦପତ୍ର ଅନେକ ଅଛି ମାତ୍ର ଦେଶୀୟ ଲୋକଙ୍କ ମଧ୍ୟରେ ଅନେକ ବିଦ୍ୱାନ ଓ ପ୍ରବୀଣ ବ୍ୟକ୍ତି ଅଛନ୍ତି । ସେମାନଙ୍କ ଜ୍ଞାନାଲୋକ ତାହାଙ୍କ ମନ ମଧ୍ୟରେ ରହିଅଛି ବାହାରିବାର କୌଣସି ଉପାୟ ନାହିଁ । ସେହିସବୁ ଏ ପତ୍ରିକାରେ ପ୍ରକାଶ ହେବ ଓ ଏହା ସିଦ୍ଧି ନିମନ୍ତେ ସମ୍ପାଦକ ସର୍ବସାଧାରଣଙ୍କୁ ଆମନ୍ତ୍ରଣ କରିଅଛନ୍ତି କି ରଚନାଦି ସେମାନେ ପଠାଇଲେ ପତ୍ରିକାରେ ସ୍ଥାନ

ଯାଇବ । ଆମ୍ଭମାନଙ୍କ ବିବେଚନାରେ ଏ କଲ୍ପନାଟି ମନ୍ଦ ନୁହଇ ଓ ଏହା ସଫଳ ହେଲେ ଲୋକଙ୍କର ଅନେକ ଉପକାର ହେବ । ଆମ୍ଭେମାନେ ଭରସା କରୁଁ ଯେ ଗଞ୍ଜାମ ପ୍ରଦେଶର ରାଜକୀୟ ଓ ସାମାଜିକ ଅବସ୍ଥା ପ୍ରକାଶ କରିବା ସଙ୍ଗେ ୨ ଜ୍ଞାନ ଓ ସଭ୍ୟତା ଉନ୍ନତି ବିଧାୟକ ପ୍ରସ୍ତାବମାନ ଏ ପତ୍ରିକାରେ ବାହାରିଲେ ସକଳ ପ୍ରକାର ଅଭାବର ଯଥାର୍ଥ ପ୍ରତୀକାର ହେବ ।

ପତ୍ରିକାର ରଚନା ଓ ଭାଷା ସମ୍ପର୍କରେ ଆମ୍ଭେମାନେ ବର୍ତ୍ତମାନ କିଛି କହିବାକୁ ମାନସ ରଖୁଁ । ଖାଲି ଏକାଂଶ ପତ୍ରିକା ଦେଖି ତହିଁର ସମ୍ୟକ ବିଚାର ହୋଇ ନପାରଇ । ପୁଣି ନୂଆ ଆରମ୍ଭି କୌଣସି କାର୍ଯ୍ୟର ଅନୁଷ୍ଠାନ କଲେ ତହିଁରେ ଅନେକ ଅସୁବିଧା ଘଟଇ । କିଛିକାଳ ପତ୍ରିକା ଚଳିଲେ ତହିଁର ପ୍ରକୃତ ଅବସ୍ଥା ଜଣାଯିବ । ସମ୍ପ୍ରତି ଆମ୍ଭମାନଙ୍କର ଏହି ପ୍ରାର୍ଥନା ଯେ ପତ୍ରିକାଟି ଦୀର୍ଘଜୀବୀ ହେଉ ।

୪୭୨ । ଯୁବରାଜଙ୍କୁ ଭେଟି ।

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦ ସହିତ ଅବଗତ ହେଲୁଁ ଯେ ମଧୁପୁରର ରାଜା କଲିକତାକୁ ଯାଇ ଯୁବରାଜଙ୍କ ସଙ୍ଗେ ସାକ୍ଷାତ୍ କରି ଯେଉଁ ଭେଟି ଦେଇଥିଲେ ତାହା ଗୃହୀତ ହୋଇ ତହିଁର ଫେରନ୍ତ ବେଭାର ସ୍ୱରୂପ ଯୁବରାଜଙ୍କ ପ୍ରତିମୂର୍ତ୍ତି ଅଙ୍କିତ ଗୋଟିଏ ମୁଦ୍ରା କି ତକମା ରାଜାଙ୍କୁ ପାରିତୋଷିକ ମିଳିଅଛି । × × × ଓଡ଼ିଶାର ପ୍ରଧାନ ରାଜାମାନଙ୍କୁ ନିମନ୍ତ୍ରଣ ହୋଇଥିଲା ମାତ୍ର କେହି ଗଲେ ନାହିଁ ଓ କେବଳ ବ୍ୟାଘ୍ରଶ୍ୟାମ ନରେନ୍ଦ୍ର ଛଡ଼ା ପ୍ରଧାନ ଓଡ଼ିଆ ଜମିଦାରମାନେ କେହି କଲିକତାକୁ ଯାଇ ଯୁବରାଜଙ୍କ ସହିତ ସାକ୍ଷାତ୍ କଲେନାହିଁ । ମଧୁପୁର ରାଜା × × ଆପଣା ଇଚ୍ଛାରେ ନୈଷ୍ଠିକ ଯୌଗିକ ଓ ସ୍ୱୟଂ ଯୁବରାଜଙ୍କଠାରେ ରାଜଭକ୍ତି ପ୍ରଦର୍ଶନ କରିବା କାରଣ ଜଳାମାର୍ଗି ଲଗି କଲିକତାକୁ ଗଲେ ଓ ସେଠାରେ ଯୁବା ରାଜାଙ୍କପରି ବସାରେ ଲୋକ ନିଯୁକ୍ତ ଯୁବରାଜଙ୍କର ସମସ୍ତ ସାଧାରଣ କାର୍ଯ୍ୟରେ ଉପସ୍ଥିତ ହେଲେ ଏବଂ କେତେକ କର୍ମିତ ସୁନା ରୂପାର ତାଙ୍କଯି ସୁଦୃଶ୍ୟ ଦ୍ରବ୍ୟ ଗୋଟିଏ ଯଥା ନିଯମରେ ଭେଟି ଦେଲେ । × × ×

( ୧୧ଶ ଭାଗ, ୧୯ । ୨ । ୧୮୭୬, ସଂଖ୍ୟା ୮ )

୪୭୩ । ଓଡ଼ିଶାର ଦୁର୍ଦ୍ଦଶା କାହିଁକି ?

ଆମ୍ଭେମାନେ ଦେଖୁଁ ଯେ ଓଡ଼ିଶାର ଯେ କିଛି ଉନ୍ନତି ଗବର୍ଣ୍ଣମେଣ୍ଟଙ୍କ

ଦ୍ୱାରା ହୋଇ ପାରିବାର ସମ୍ଭବ ନେ ସମସ୍ତର ଅନୁଷ୍ଠାନରେ ବୁଝି ହେଉନାହିଁ ଓ ସେ ପକ୍ଷରେ ଗବର୍ଣ୍ଣମେଣ୍ଟଙ୍କର ଉଦ୍ୟମ ଆଶାନୁରୂପ ହୋଇ ନଥିବାର ଲୁଚାଗଲେ ମଧ୍ୟ ସ୍ୱୀକାର କରିବାକୁ ହେବ ଯେ ଗବର୍ଣ୍ଣମେଣ୍ଟ କ୍ରମେ କ୍ରମେ ଓଡ଼ିଶାର ଉନ୍ନତିପ୍ରତି ମନୋଯୋଗୀ ହୋଇ ପ୍ରୟୋଜନୀୟ କାର୍ଯ୍ୟ ସବୁ ଆରମ୍ଭ କରିଅଛନ୍ତି ଓ ସମୟରେ ପ୍ରୟୋଜନ ମତେ ବୃଦ୍ଧି ହୋଇ ପାରିବ । ଅ ୯ଙ୍କର ଦୁର୍ଭିକ୍ଷ ପୂର୍ବେ ଓଡ଼ିଶାକୁ ଗବର୍ଣ୍ଣମେଣ୍ଟ ଚିହ୍ନୁ ନଥିଲେ ତହିଁ ଉତ୍ତାରୁ ଓଡ଼ିଶାର ଭାଗ୍ୟ ଫେରିଲା ଓ ବର୍ଷକୁ ବର୍ଷ ନୂତନ ନୂତନ କାର୍ଯ୍ୟ ହେବାକୁ ଆରମ୍ଭ ହେଲା ।

ନାଲ, ବନ୍ଦର, ନୂତନ ସଡ଼କ, ମେଡ଼ିକାଲ ସ୍କୁଲ, ଜାରିବ ଟିନା ସ୍କୁଲ, ଆଦି ଫିଟିଅଛି ବା ଫିଟୁଅଛି ଏବଂ ଓଡ଼ିଆ ମହକୁମା ସବୁରେ ଏ ଦେଶବାସୀଙ୍କୁ ନିଯୁକ୍ତ କରିବା କାରଣ ହାକିମମାନେ ସର୍ବଦା ଚେଷ୍ଟିତ ଅଛନ୍ତି । ×

× × ×

× କିନ୍ତୁ ଦୁଃଖର ବିଷୟ ଯେ ଓଡ଼ିଶାବାସିମାନେ ଆପଣା କର୍ତ୍ତବ୍ୟପ୍ରତି ଥରେ ଲକ୍ଷ କରୁ ନାହାନ୍ତି ଓ ଆପଣାର ବୈଷୟିକ ବା ସାମାଜିକ ଉନ୍ନତିପ୍ରତି ଥରେ ନେତ୍ର-ପାତ କରୁ ନାହାନ୍ତି । କୃଷିର ଉତ୍କର୍ଷ ସାଧନ ଉଦ୍ଦେଶ୍ୟରେ ଜଳ ପ୍ରଣାଳୀମାନ ପ୍ରସ୍ତୁତ ହୋଇଅଛି ସତ୍ୟ କିନ୍ତୁ ଅଦ୍ୟାପି କେହି ଓଡ଼ିଆ ଜମିଦାର ବା ଧନୀ ବ୍ୟକ୍ତି ଉକ୍ତ ଜଳ ଦ୍ୱାରା ଉତ୍କୃଷ୍ଟ ପ୍ରକାର ଫସଲ ଉତ୍ପାଦନ କରିବାକୁ ଚେଷ୍ଟିତ ହୋଉନାହିଁ । ବନ୍ଦରମାନ ଫିଟି ଅଛି ସତ୍ୟ କିନ୍ତୁ କେହି ଓଡ଼ିଶାବାସୀ ଅଦ୍ୟାପି ବାଣିଜ୍ୟ କରିବାରେ ତଥା ବସ୍ତ୍ର ବୁଣେ ପ୍ରବୃତ୍ତ ହୋଇନାହିଁ । × × ×
× × । ପୂର୍ବାପେକ୍ଷା ବର୍ତ୍ତମାନକୁ କେତେ ପାର୍ସୀ, ତେଲଙ୍ଗା, ବଙ୍ଗାଳୀ ଓ ଇଂରାଜ ଓଡ଼ିଶାରେ କୋଠିମାନ ସ୍ଥାପନ କରି ଏ ଦେଶାନୁ ଉତ୍ପନ୍ନ ଦ୍ରବ୍ୟ ବିଦେଶକୁ ରପ୍ତାନି ପୂର୍ବକ ବିଲକ୍ଷଣ ଲାଭ କରୁଅଛନ୍ତି ମାତ୍ର ଓଡ଼ିଆମାନେ ଯେମନ୍ତ ପୂର୍ବେ ଥିଲେ ବର୍ତ୍ତମାନସୁଦ୍ଧା ସେହିପରି ଅଛନ୍ତି । × ×

× × ×

× × । ସ୍ୱୀକାର କରିବାକୁ ହେବ ଯେ ଏଠାରେ ଶିକ୍ଷାର ସୁଯୋଗ ଅଲ୍ପଦିନ ହେଲା ହୋଇଅଛି ଓ ଅଦ୍ୟାପି କେତେଗୁଡ଼ିଏ ଅର୍ଦ୍ଧଶିକ୍ଷିତବ୍ୟକ୍ତି ଭିନ୍ନ ଗବର୍ଣ୍ଣମେଣ୍ଟଙ୍କ ପ୍ରଚଣ୍ଡ ଶିକ୍ଷାର ଶେଷସୀମା ପର୍ଯ୍ୟନ୍ତ କେହି ପ୍ରବେଶ ହୋଇ ପାରି-ନାହିଁ ଓ ଶିକ୍ଷିତ ଲୋକଙ୍କ ସଂଖ୍ୟା ଅଧିକ ନହେଲେ ସାମାଜିକ ଉନ୍ନତିର ଆଶା ହୋଇ ନପାରେ ତଥାପି ଯେ ପରିମାଣରେ ଏଠାରେ ଲୋକ ଶିକ୍ଷା ପାଇଅଛନ୍ତି ସେପରିମାଣରେ ମଧ୍ୟ ତାହାଙ୍କ ଦ୍ୱାରା କୌଣସି କାର୍ଯ୍ୟ ହେବାର ଦେଖା ଯାଉନାହିଁ । ବାବୁ ଶରତ

ନନ୍ଦ ଦାସ ନବ୍ୟ ଶିକ୍ଷିତ ସମ୍ପ୍ରଦାୟର ଲୋକ ନଥିଲେ ତଥାଚ ତାହାଙ୍କ ଦ୍ୱାରା ଯେତେ ହିତ ସାଧିତ ହୋଇଅଛି ଆଉ କାହାରିଦ୍ୱାରା ସେପରି ହେବାର ଦେଣିକ ଥାଉ ସେ ମାର୍ଗରେ କାହାରିକୁ ଚିନ୍ତା କରିବାର ସୁଦ୍ଧା ଦେଖା ଯାଉନାହିଁ । ବର୍ତ୍ତମାନ ଓଡ଼ିଶାରେ ଅନେକ ଗୁଡ଼ିଏ ଓଡ଼ିଆ ଡେପୁଟି ଠାରୁ ସିରସ୍ତାଦାରୀ ପର୍ଯ୍ୟନ୍ତ ଉଚ୍ଚପଦମାନଙ୍କରେ ପ୍ରତିଷ୍ଠିତ ହୋଇଅଛନ୍ତି । ମାତ୍ର ଏହାଙ୍କ ଦ୍ୱାରା ସମାଜର କି ଲାଭ ହୋଇଅଛି ? ସାମାନ୍ୟ ଗୃହସ୍ଥଙ୍କପରି ବଡ଼ ଗୃହସ୍ଥମାନେ ମଧ୍ୟ ଆପଣା କୁଟୁମ୍ବ ପାଳିବା ଭିନ୍ନ ଆଉ କେଉଁ ମହତ୍ କାର୍ଯ୍ୟ କରୁଅଛନ୍ତି ? ବାବୁ ବିଚିତ୍ରାନନ୍ଦ ଦାସଙ୍କ ମୃତ୍ୟୁ ଉତ୍ତାରୁ ଜଣେ କେହି ଓଡ଼ିଆ ଏପରି ବାହାରି ନାହିଁ ଯେ କି ତାହାଙ୍କର ମାର୍ଗରେ ଗତି କରୁଅଛି । ସେ ଏକ କ୍ଷଣଜନ୍ମା ଥିଲେ ଯେ ତାହାଙ୍କ ଯୋଗେ କିଛିକାଳ ଓଡ଼ିଶାର ମୁଖ ସୁନ୍ଦର ଦିଶୁଥିଲା । ସେ ଆଖି ବୁଜିଲେ ସବୁ ଅନ୍ଧକାର ହୋଇଗଲା । ଶିକ୍ଷାର ଫଳ ଏଠାରେ ଫଳିଥିଲେ ଅବଶ୍ୟ ଅନ୍ୟ ପ୍ରକାର ଲୋକ କେହି ଅବଧି ବାହାରିଥାନ୍ତା । ଅତଏବ ଆମ୍ଭେମାନେ କହୁଁ ଯେ ଗବର୍ଣ୍ଣମେଣ୍ଟ ଓଡ଼ିଶାର ଉନ୍ନତି ନିମନ୍ତେ ଯେତେ କାର୍ଯ୍ୟ କରୁଅଛନ୍ତି ଓଡ଼ିଶାର ଲୋକମାନେ କୌଣସିଥିରେ ଯୋଗ ଦେଉନାହାନ୍ତି ଓ ସେରୂପ ଯୋଗ ନଦେବାରୁ ସେ ସବୁଦ୍ୱାରା ଯେ ପରିମାଣରେ ଉନ୍ନତିର ଆଶା ଗବର୍ଣ୍ଣମେଣ୍ଟ କରନ୍ତି ତାହା ପୂର୍ଣ୍ଣ ହେଉନାହିଁ ।

\+ \+ \+ \+ \+ \+ \+

## ( ୧୧ଶ ଭାଗ, ୧୯ । ୨ । ୧୮୭୭, ସଂଖ୍ୟା ୮ )

ସାପ୍ତାହିକ ସମ୍ବାଦ ।

୪୭୪ । ପୁରୀରାଜା ଏବଂ ସେବକଙ୍କ ମଧ୍ୟରେ ବିବାଦ ଲାଗିଅଛି ଓ ଆଉ ପିଠେର ଟେକିଟିକ ମୋକଦ୍ଦମା ଦାଏର ହୋଇଅଛି । ଏସବୁ ଗଣ୍ଡଗୋଳର କାରଣ କି ?

୪୭୫ । ଟିକେଠୀର ନରହତ୍ୟା ପ୍ରସଙ୍ଗ ଏଥିପୂର୍ବେ ଆମ୍ଭେମାନେ ଲେଖିଥିଲୁଁ । ସ୍ୱଦେଶୀରୁ ଜଣାଗଲା ଯେ ଟିକେଠୀ ରାଜାଙ୍କ ଭାଇ ଥାଟେରାଜାଙ୍କ ପ୍ରତି ଫାଶିର ଦଣ୍ଡ ହାଇ-କୋର୍ଟରୁ ହୋଇଅଛି ଓ ତାହାଙ୍କ ଦେୱାନ ୬ ବର୍ଷ କାରାଦଣ୍ଡ ବାସ ପାଇଥିଲେ ମାତ୍ର ସେ ଜେଲମଧ୍ୟରେ ଥିବା କୂଅରେ ପଡ଼ି ଆତ୍ମଘାତ ହୋଇଅଛନ୍ତି ।

୪୭୬ । ସ୍ୱଦେଶୀରୁ ଅବଗତହେଲୁଁ ଯେ ଶ୍ରୀଯୁକ୍ତ ମିଷ୍ଟର ସାହେବ ରମ୍ଭାଠାରୁ ପୁରୀକୁ ଜଳପଥରେ ଯିବା ଆସିବାଲାଗି ଖଣ୍ଡିଏ ଧୂଆଁକଳ ଜାହାଜ ଆଣିଅଛନ୍ତି । ଏଥିରେ ଲୋକମାନେ ତିନିଘଣ୍ଟା ମଧ୍ୟରେ ଦୁଇସ୍ଥାନ ମଧ୍ୟରେ ଯାତାୟାତ କରିପାରିବେ ।

ଏ ଜାହାଜ କେଉଁଠାରୁ ବାହାରି ପୁରୀର କେଉଁସ୍ଥାନରେ ଲୋକଙ୍କୁ ଓହ୍ଲାଇଦେବ ଓ ନିତ୍ୟ ଅବା କେତେଦିନ ଉତ୍ତାରୁ ଥରେ ଯାତାୟତ କରିବ ଏହିର ବିଶେଷ ସମ୍ବାଦ ସ୍ୱଦେଶୀ ଦେଇଥିଲେ ଭଲ ହୋଇଥାନ୍ତା ।

## ( ୧୧ଶ ଭାଗ, ୨୭ । ୨ । ୧୮୭୭, ସଂଖ୍ୟା ୯ )

ସ୍ୱଦେଶୀ ।

୪୬୭ । ସ୍ୱଦେଶୀ ପତ୍ରିକାରେ କେତେଗୁଡ଼ିଏ ପରିବର୍ତ୍ତନ ହୋଇଅଛି । ଗତ ସପ୍ତାହର ପତ୍ରିକାରେ ଇଂରାଜୀ ଓଡ଼ିଆ ଓ ତେଲେଙ୍ଗା ତିନଭାଷାରେ ପ୍ରବନ୍ଧମାନ ଲେଖା ହୋଇଅଛି ଓ ପତ୍ରିକାର କଲେବର ଦ୍ୱିଗୁଣ ହୋଇଅଛି । ସମ୍ପାଦକ ବୋଲନ୍ତି ଯେ ଏଣିକି ଏହାପରି ହେବ ମାତ୍ର ଏଥିପାଇଁ ପତ୍ରିକାର ମୂଲ୍ୟ ବଢ଼ାଇବା ଯୁକ୍ତିଯୁକ୍ତ ଜ୍ଞାନ ନକରି ସାପ୍ତାହିକ ସ୍ଥଳରେ ସମ୍ପ୍ରତି ପତ୍ରିକାକୁ ପାକ୍ଷିକ କରିଅଛନ୍ତି । ଭବିଷ୍ୟତରେ ଏହାର ଗ୍ରାହକମଣ୍ଡଳୀ ବୃଦ୍ଧି ହେଲେ ପୁଣି ସାପ୍ତାହିକ ହୋଇପାରିବ । ଆମ୍ଭେମାନେ ଅବଗତ ହେଲୁଁ ଯେ ବହ୍ମପୁରରେ ସ୍ଥାପିତ ହୋଇଥିବା ଦୁଇ ମାଦକସେବା ନିବାରିଣୀ ସଭାର ଉଦ୍ୟମରେ ଏ ପତ୍ରିକାଟି ବାହାରିଅଛି ଓ ଉକ୍ତ ଦୁଇସଭାର ଜଣେ ଜଣ ସଭ୍ୟ ସାହିତ୍ୟ-ସମାଜ ନାମରେ ପରିଚିତ ହୋଇ ଏପତ୍ରିକାର ସମ୍ପାଦକୀୟ କାର୍ଯ୍ୟ ନିର୍ବାହ କରୁଅଛନ୍ତି । ସୁତରାଂ ଅତି ନିସ୍ୱାର୍ଥଭାବରେ ଏବଂ କେବଳ ସାଧାରଣ ହିତସଙ୍କଳ୍ପରେ ଯେ ଏ ପତ୍ରିକାର ଆବିର୍ଭାବ ହୋଇଅଛି ଏଥିରେ ସନ୍ଦେହନାହିଁ ଏବଂ ବହୁତଲୋକ ଏଥିରେ ସଂଶ୍ଲିଷ୍ଟ ହୋଇଥିବାରୁ ଆଶା ହେଉଅଛି ଯେ ଦୀର୍ଘକାଳ ପର୍ଯ୍ୟନ୍ତ ପତ୍ରିକା ଚଳିପାରିବ । ×

× × ×

## ( ୧୧ଶ ଭାଗ, ୨୪ । ୩ । ୧୮୭୭, ସଂଖ୍ୟା ୧୩ )

୪୬୮ । ଖୋରଧା ବନ୍ଦୋବସ୍ତ ।

ଆମ୍ଭେମାନେ ଅବଗତ ହେଲୁ ଯେ ଓଡ଼ିଶାର କମିଶନର ସାହେବ ଗତ ସପ୍ତାହରେ ଖୋରଧାକୁ ଯାଇ ପୁରୀ କାଲେକ୍ଟର ଓ ସେଠା ଡେପୁଟୀକାଲେକ୍ଟର ପ୍ରଭୃତିଙ୍କ ସଙ୍ଗେ ପରାମର୍ଶକରି ଖୋରଧା ବନ୍ଦୋବସ୍ତର ସବୁ ଶୃଙ୍ଖଳାବାନ୍ଧିଦେଇ ଆସି-ଅଛନ୍ତି ।

× × ×

× × । ଆମ୍ଭେମାନେ ଏଥିପୂର୍ବେ ଖୋର୍ଦ୍ଧାରୁ ଆସିଥିବା ଏକ ପତ୍ରରେ ପାଠକରିଥିଲୁଁ ଯେ ବନ୍ଦୋବସ୍ତ ସକାଶେ ଅନ୍ୟ କର୍ମଚାରୀ ନିଯୁକ୍ତ ନକରି ସୁବାର୍ କଲେକ୍ଟର ଓ ଫେଲାନ୍ ସାହେବ ଡେପୁଟି କଲେକ୍ଟରଙ୍କ ଦ୍ୱାରା ଉକ୍ତ କର୍ମ ନିର୍ବାହ ହେବା ବିଷୟରେ ଗବର୍ଣ୍ଣମେଣ୍ଟ ଆଜ୍ଞା କଲେ ଭଲହେବ ସେଥି। ପ୍ରଜାମାନେ ଏରୂପ ପ୍ରାର୍ଥନା କରନ୍ତୁ । + + +

ବୋଧହୁଅଇ, ଆମ୍ଭେମାନେ ତାଙ୍କ ସହିତ ଐକ୍ୟ ମତ ହୋଇ କହୁଅଛୁଁ ଯେ କାଳେ ପ୍ରଜାଙ୍କ ମନୋନୀତ ଲୋକ ନିଯୁକ୍ତ ନହେବ ଅଥବା ଯେ ବ୍ୟକ୍ତି ନିଯୁକ୍ତ ହେବ ସେ କାର୍ଯ୍ୟକ୍ଷମ ନହେବ ତେବେ ପ୍ରଜାମାନଙ୍କର ଅନେକ କ୍ଷତି ଓ ଅନିଷ୍ଟ ହେବ ଏହି ଆଶଙ୍କାରେ ସେମାନେ ଅନ୍ୟଲୋକ ନିଯୁକ୍ତ ହେବା ଗୁରୁତରରେ ମତବ୍ୟକ୍ତ କରିଥିଲେ । ଏଥିରୁ ଦେଖାଯାଏ ଯେ କମିଶ୍ନର ସାହେବ ଯେଉଁମାନଙ୍କୁ ବନ୍ଦୋବସ୍ତ କର୍ମରେ ନିଯୁକ୍ତ କରିବାକୁ ମନୋନୀତ କରିଅଛନ୍ତି ସେମାନେ ସାଧାରଣ ବିବେଚନାରେ ସମସ୍ତେ ଉପଯୁକ୍ତ ହୁଅନ୍ତି ।

ବାବୁ ଭଗବତ ମହାନ୍ତି ଖୋର୍ଦ୍ଧାର ତହସିଲଦାର ବହୁତ ଦିନରୁ ଅଛନ୍ତି ଓ ସେକର୍ମରେ ତାହାଙ୍କର ସୁଖ୍ୟାତି ହେତୁରୁ ଗବର୍ଣ୍ଣମେଣ୍ଟ ପାରିତୋଷିକ ଦେଇଅଛନ୍ତି । ତାହାଙ୍କୁ ଖାସ ଡେପୁଟୀ କଲେକ୍ଟରୀ ପଦରେ ନିଯୁକ୍ତ କରିବା ଅନ୍ୟାୟ ବୋଲିଯାଇ ନପାରେ ଓ ଏଥିରେ କାହାରି ଆପତ୍ତି ନାହିଁ । ମାତ୍ର ବାବୁ ନିତ୍ୟାନନ୍ଦ ଦାସ ଓ ବାବୁ ରାସବେହାରୀ ନାୟକଙ୍କୁ ତହସିଲଦାର ଓ ଖାସ ସବ ଡେପୁଟୀ କର୍ମମାନଙ୍କରେ ନିଯୁକ୍ତ କରିବା ଆମ୍ଭମାନଙ୍କ ବିବେଚନାରେ ଯଥାର୍ଥ ହୋଇନାହିଁ । + +

+ + + +

ଏ ଘଟନାରେ ଆମ୍ଭମାନଙ୍କ ବିବେଚନାରେ ଆଶ୍ଚର୍ଯ୍ୟ କିଛି ନାହିଁ କାରଣ ଯେଉଁମାନେ କମିଶ୍ନରଙ୍କ ମନ ବୁଝିବାକୁ ଚେଷ୍ଟା କରିଥିବେ ସେମାନଙ୍କର ଅବଶ୍ୟ ମନସ୍କାମ ହୋଇଥିବ ଯେ ଖଣ୍ଡିଏ ବଡ଼ ଚାକିରୀ ଉପସ୍ଥିତ ହେଲେ ବାବୁ ନିତ୍ୟାନନ୍ଦ ଓ ବାବୁ ରାସବେହାରୀ ନାୟକଙ୍କ ନାମ ସାହେବଙ୍କ ଜିହ୍ୱାଗ୍ରେ ନୃତ୍ୟ କରଇ ମାତ୍ର ଅନେକ ଚେଷ୍ଟା କରି ସୁଦ୍ଧା ସେ ଏତେକାଳ ତାହାଙ୍କର କୌଣସି ଉପକାର କରିନଥିଲେ । ଏଥର ତାହାଙ୍କୁ ସୁଯୋଗ ମିଳିଲା, କେଉଁ ବିବେଚନାରେ ସେ ଛାଡ଼ି ଦିଅନ୍ତେ । ପ୍ରକୃତ ଓଡ଼ିଆଙ୍କୁ କର୍ମ ଦେବା ତାହାଙ୍କର ଗୋଟିଏ ସଂକଳ୍ପ ଏବଂ ଇଂରାଜୀ ସ୍କୁଲରେ ପଢ଼ା ହୋଇଥିବା ବ୍ୟକ୍ତି-ଙ୍କୁ କର୍ମଦେବା ଆଉ ଗୋଟିଏ ସଂକଳ୍ପ । ଏ ଉଭୟ ସଂକଳ୍ପ ଏହାଙ୍କୁ କର୍ମଦେବାରେ ସମ୍ପୂର୍ଣ୍ଣ ହେଲା । କୌଣସି ପଦାର୍ଥ ଲୋକ ମନୋନୀତ କରିବାର ଅନ୍ୟ ଯେ ସମସ୍ତ ବିବେଚନା ଅଛି ତାହା ସାହେବ ପ୍ରଶଂସିତଙ୍କଠାରେ ତେତେ ଆଦରଣୀୟ ହୁଅଇ ।

( ୧୨ଶ ଭାଗ, ୨୭ । ୫ । ୧୮୭୭, ସଂଖ୍ୟା ୨୨ )

୪୭୯ । ଉଡ଼ିଶାର କରଣମାନେ ।

ଉଡ଼ିଶାର କରଣମାନେ ବଙ୍ଗଳାର କାୟସ୍ଥଙ୍କ ଘରେ ପୁରୀ ସହିତ ତରକାରୀ ବ୍ୟବହାର କରିବାକୁ ଅଙ୍ଗୀକାର କରିଥିବା ବିଷୟରେ ଏଥିପୂର୍ବେ ଯାହା ଲେଖିଥିଲୁଁ ତହିଁରେ ଗୋଟିଏ ପ୍ରଧାନ କଥା ଜଣାନଥିବାରୁ ଛାଡ଼ି ଯାଇଥିଲୁଁ । ତାହା ଏହି ଯେ ବାବୁ ହରେକୃଷ୍ଣ ଦାସଙ୍କ ବସାରେ ଯେଉଁ ସଭା ହୋଇଥିଲା ତହିଁରେ ଏମନ୍ତ ସ୍ଥିର ହୋଇଥିଲା କି ବ୍ରାହ୍ମଣ ତରକାରୀ ପାକକଲେ ଉତ୍ତାରୁ ତାହା ଶ୍ରୀ ଶାଳଗ୍ରାମଙ୍କୁ ନିବେଦିତ ହେବ ତହୁଁ ପ୍ରସାଦ ସ୍ୱରୂପ ତାହା ବ୍ୟବହାର ହେବ । ବୋଧ ହୁଅଇ ତଦନୁସାରେ କାର୍ଯ୍ୟ ହୋଇଅଛି । ଫଳ ଏହି ଯେ ପ୍ରସାଦ ଭିନ୍ନ କୌଣସି ଦ୍ରବ୍ୟ କରଣମାନେ କାୟସ୍ଥଙ୍କ ଘରେ ଭୋଜନ କରିବେ ନାହିଁ । ପୁରୁଷୋତ୍ତମରେ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରତାପରୁ ବ୍ରାହ୍ମଣଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ଏକସଙ୍ଗରେ ବସି ଭୋଜନ କରୁଅଛନ୍ତି ଓ ଏଠାରେ ମଧ୍ୟ ଅନେକ ସ୍ଥଳରେ ଭିନ୍ନ ୨ ଜାତୀୟଲୋକ ଏକାଠି ବସି ପୁରୀରୁ ଆସିଥିବା ମହାପ୍ରସାଦ ଏକତ୍ରରେ ଭୋଜନ କରିବାର ଦେଖାଯାଇଅଛି । ଯେଉଁ ମହାପ୍ରସାଦ ପ୍ରତି ଏତେ ଭକ୍ତି ତାହାକୁ ଆପଣା ସମାନ ଜାତୀୟ ଲୋକର ଘରଠାରେ ବସି ସେବନ କରିବା ସକାଶେ ଅନ୍ୟ ଏକ ଠାକୁରଙ୍କର ମଧ୍ୟସ୍ଥ ଲୋଡ଼ାହେଲା କାହିଁକି ? ଯେବେ ତରକାରି ପୁରୀ ସହିତ ଶୁଦ୍ଧ ତେବେ ତାହାକୁ ମହାପ୍ରସାଦ ସଙ୍ଗେ ମିଶାଇବା ପାଇଁ କାହାରିକୁ ମଧ୍ୟସ୍ଥ ହେବାର ପ୍ରୟୋଜନ ନାହିଁ ଓ ଯେବେ ତାହା ଅନ୍ନପରି ଅଶୁଦ୍ଧ ତେବେ ଆମ୍ଭେମାନେ ପଚାରୁଁ ଯେ ଶ୍ରୀ ଶାଳଗ୍ରାମଙ୍କୁ ଭୋଗଦେଇ ଅନ୍ନାଦ ପ୍ରସାଦ କରଣମାନେ ସେବନ କରିବାକୁ ପ୍ରସ୍ତୁତ ଅଛନ୍ତି କି ନାହିଁ ? ଯେବେ ତାହା ନୁହେ ତେବେ ଶ୍ରୀ ଶାଳଗ୍ରାମଙ୍କ ପ୍ରସାଦର ମହିମା ମହାପ୍ରସାଦର କେତେଅଂଶ ହେବ ? କରଣ ମହାଶୟଙ୍କ ମଧ୍ୟରୁ କେହି ଏକଥା ବୁଝାଇଦେଲେ ବଡ଼ ସୁଖର ବିଷୟ ହେବ ।

୪୮୦ । ବାବୁ ଦୀନବନ୍ଧୁ ପଟ୍ଟନାୟକ

ବାବୁ ଦୀନବନ୍ଧୁ ପଟ୍ଟନାୟକଙ୍କୁ ରାୟ ବାହାଦୁର ପଦ ପ୍ରଦାନ [illegible] ହୋଇଥିବା ଦରବାରର ବିବରଣ ଏତେଦିନେ ଆମ୍ଭେମାନେ ଶ୍ରୀଯୁକ୍ତ କମିଶନର ସାହେବଙ୍କ ଅନୁଗ୍ରହରୁ ପ୍ରାପ୍ତହେଲୁଁ × × × × × । ପାଠକଙ୍କୁ ଜାଣିବା କାରଣ ସନନ୍ଦର ପ୍ରତିଲିପି ଓ ଖିଲତର ତାଲିକା ପ୍ରକାଶ କଲୁଁ ।

ସନନ୍ଦର ଅନୁବାଦ ।

ବାବୁ ଶ୍ୟାମବନ୍ଧୁ ପଟ୍ଟନାୟକ ଡେପୁଟିକଲେକ୍ଟର କଟକମାଳ ତୁମ୍ଭେ ଗଭର୍ଣ୍ଣମେଣ୍ଟଙ୍କର ଯେଉଁ କାର୍ଯ୍ୟମାନ କରିଅଛ ତାହା ଗର୍ବିତ କରିବା ସକାଶେ ଆମ୍ଭେ ତୁମ୍ଭଙ୍କୁ ସ୍ୱଜାତୀୟ ମର୍ଯ୍ୟାଦା ସ୍ୱରୂପ ରାୟ ବାହାଦୁର ଉପାଧି ପ୍ରଦାନ କଲୁଁ ।

ତାରିଖ ନବେମ୍ବର ସନ ୧୮ ୫ ମସିହା

( ଦସ୍ତଖତ ) ନର୍ଥବ୍ରୁକ
ଗଭର୍ଣ୍ଣର ଜେନେରାଲ, ଇଣ୍ଡିଆ

ଖିଲତର ତାଲିକା ।

| | |
|---|---|
| ସୁନ୍ଦର ହୀରା ପଦକ ସହିତ | ଟ ୨୩୫ |
| ମୁକ୍ତା ଓ ପନ୍ନାର ସିରପେଚ | ଟ ୧୫୦ |
| ସୁନାର ବାଜୁବନ୍ଧ ଏହିପରି ନାମ | |
| ଖୋଲା ହୋଇଅଛି ଏକଯୋଡ଼ା | ଟ ୨୦୦ |
| କାଶ୍ମୀରି ଯୋଡ଼ା | ଟ ୧୦୦ |
| ଢାଏକାମାନଙ୍କର ସମସ୍ତ ଫୁଲ ଓ ଜରିଦାର | ଟ ୩୦ |
| ନୀଳ କମରବନ୍ଧ ଝାଲର ଲଗା | ଟ ୨୦ |
| ତଲବାର ସୁନାର କର୍ମ ସହିତ | ଟ ୮୦ |
| ସରତାଳ ସୁନେଲି ଜରିକର୍ମ ହୋଇଅଛି | ଟ ୩୫ |
| | ଟ ୮୫୦ |

ଏ ଖିଲତ ସକାଶେ ରାୟବାହାଦୁର ମହାଶୟ ନଗଦ ଟ ୮୫୦ଙ୍କା ନଜରାନ ଦେଇଅଛନ୍ତି ।

୫୮୧ । ମୃତ ବାବୁ ସୁଦାମ ଚନ୍ଦ୍ର ପଟ୍ଟନାୟକ ❋

ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ଅବଗତ ହେଲୁଁ ଯେ ବାବୁ

❋ ମୃତ ବାବୁ ସୁଦାମ ଚନ୍ଦ୍ର ପଟ୍ଟନାୟକ ଇଞ୍ଜିନିୟରିଂ ପରୀକ୍ଷାରେ କଲିକତା ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କରି ପାଶ କରିଥିଲେ । ( ଉତ୍କଳଦୀପିକା ତା ୨୮ । ୮ । ୧୮୬୯ ର ବିବରଣୀ ଦେଖ ) ଏବଂ ଆସିଷ୍ଟାଣ୍ଟ ଇଞ୍ଜିନିୟର ହୋଇ କାର୍ଯ୍ୟ କରୁଥିଲେ ( ସମାଜ ଉତ୍କଳଦୀପିକା ୧୮ । ୧୧ । ୧୮୭୧ ର ବିବରଣୀ ଦେଖ )

( ସମ୍ପାଦକ )

ସୁଦାମ ଚନ୍ଦ୍ର ପଟ୍ଟନାୟକ ଅକାଳରେ କାଳଗ୍ରାସରେ ପତିତ ହୋଇଅଛନ୍ତି ଏବଂ ଏହାଙ୍କ ମୃତ୍ୟୁରେ ଓଡ଼ିଶାର ଗୌରବର କି ପର୍ଯ୍ୟନ୍ତ କ୍ଷତି ହୋଇଅଛି ତାହା ଆମ୍ଭେମାନେ ସମ୍ୟକ୍‌ରୂପେ ବ୍ୟକ୍ତ କରି ନପାରୁଁ । ଏ ମହାଶୟଙ୍କ ଘର ଭଦ୍ରକରେ ଅଟଇ । ସେହିଠାରେ ବିଦ୍ୟାଳୟରେ ପ୍ରଥମ ଶିକ୍ଷା ଲାଭକରି ବାଲେଶ୍ୱର ସ୍କୁଲରେ ଅଧ୍ୟୟନ କଲେ ଓ ସେଠାରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଲିକତା ସିଭିଲ ଇଞ୍ଜିନିଅରିଂ କଲେଜରେ ପ୍ରବେଶ ହେଲେ । ଏ କଲେଜର ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବିଶ୍ୱବିଦ୍ୟାଳୟର ଉପାଧିପାଇ ନିୟମିତ ରୂପେ କାର୍ଯ୍ୟକ୍ଷେତ୍ରରେ ପ୍ରବେଶ ହେଲେ ଏବଂ ଅତି ଅଳ୍ପକାଳ ମଧ୍ୟରେ କାର୍ଯ୍ୟକାରିତା ମହତ୍ ଗୁଣର ପରିଚୟ ଦେଇ ଅସିଷ୍ଟାଣ୍ଟ ଇଞ୍ଜିନିୟର ପଦରେ ନିଯୁକ୍ତ ହୋଇ ମାସକୁ ଟ ୪୦୦ଙ୍କା ଲେଖାଏଁ ବେତନ ପାଉଥିଲେ । ମୃତ୍ୟୁ ସମୟରେ ଏହାଙ୍କର କର୍ମ ଶୋନ ନାଳ ସମ୍ପର୍କରେ ତେହଟା ମୁକାମରେ ଥିଲା । ଜଳ ରୋଗ ଏହାଙ୍କର କାଳ ସ୍ୱରୂପ ଉପସ୍ଥିତ ହୋଇ ଏରୂପ ଦୁର୍ଘଟନା ଘଟାଇଲା । ମୃତ୍ୟୁ ସମୟରେ ବୟସ ବ ୨୪ । ୨୫ର୍ଷ ମାତ୍ର ହୋଇଥିଲା । ଏହାଙ୍କର ସନ୍ତାନାଦି କେହି ନାହିଁ । କେବଳ ଏକ ଯୁବତୀ ଭାର୍ଯ୍ୟା ସହିତ ଏହାଙ୍କର ପିତା ମାତା ଓ ଭାଇମାନେ ଶୋକସାଗରରେ ଭାସୁଅଛନ୍ତି ।

\+ \+ \+

୪୮୨ । ସାପ୍ତାହିକ ସମ୍ବାଦ

ବାଲେଶ୍ୱର ନିକଟ ପଣ୍ଡସଙ୍ଗାରେ ପିଠି ଫୋଡ଼ା ହୋଇ ଚଉଖି ପାଠୁଆ ପଡ଼ିବାର ସମ୍ବାଦ ଉତ୍କଳ ଦର୍ପଣରୁ ଅବଗତ ହେଲୁଁ । ସେଠାରେ ଇଂରାଜ-ଙ୍କର ଅଧିକାର ନାହିଁ ସୁତରାଂ ଏହାଙ୍କ ନିଷେଧ ରହି ନ ପାରିଲା ।

**( ୧୧ଶ ଭାଗ, ୫ । ୮ । ୧୮୭୬, ସଂଖ୍ୟା ୩୨ )**

୪୮୩ । ଏ ନଗରର ପାଏଖାନା

ଏ ନଗରର ପାଏଖାନାମାନ ମିଉନିସିପାଲିଟି ଅଧୀନରେ ଆସିବାର ସ୍ଥିର ହୋଇ ଉକ୍ତ ମହଲ୍ଲାମାନରୁ ତହିଁର ତାଲିକା ପ୍ରସ୍ତୁତ ହେଉଅଛି । ପ୍ରତ୍ୟେକ ଲୋକର ଅଗଣା ମଧ୍ୟରେ ଯେତେଟା ପାଇଖାନା ଅଛି ଓ ତାହା ପରିଷ୍କାର କରିବାପାଇଁ ମାସିକ ଯେତେ ବେତନ ମେହେନ୍ତରକୁ ଦିଆଯାଏ ଏଥିର ତାଲିକା ପ୍ରସ୍ତୁତ ହେଉଅଛି । ଅନୁସନ୍ଧାନ ଶେଷ ହେଲାଠାରୁ ଯେତେ ଜଣ ମେହେନ୍ତର ନିଯୁକ୍ତ କରିବାକୁ ହେବ ଠାଉର

କମିଟୀ ତହିଁର ବନ୍ଦୋବସ୍ତ କରିଦେବେ ଓ ଉକ୍ତ ମେହେନ୍ତରମାନେ ପ୍ରତିଦିନ ନିୟମିତ ରୂପେ ଏ କାର୍ଯ୍ୟ ନିର୍ବାହ କରିବେ, ମେହେନ୍ତରଙ୍କ ଦୌରାତ୍ମ୍ୟ ଏ ନଗରରେ ଯଥା ଓ ସେଥିପାଇଁ କେତେ ମକଦ୍ଦମା ମାମଲା ସୁଦ୍ଧା ହୋଇ ଯାଇଅଛି ତଥାତ ମେହେନ୍ତର-ମାନଙ୍କୁ ଆୟତ୍ତ କରିବା ସହଜ ହୋଇ ନାହିଁ । ଏ ବନ୍ଦୋବସ୍ତରେ ଲୋକଙ୍କର ବିଶେଷ ସୁବିଧା ହେବ ସନ୍ଦେହ ନାହିଁ । ତେବେ ଟାଉନ କମିଶନରଙ୍କୁ ଏକ ପ୍ରାର୍ଥନା କି ଲୋକମାନେ ମେହେନ୍ତର ବେତନ ଯେରୂପ ଦିଅନ୍ତି ତହିଁରୁ ଅତ୍ୟନ୍ତ ଅଧିକ ଖର୍ଚ୍ଚ । ଯେମନ୍ତ ତାହାଙ୍କଠାରୁ କିଆ ନଯାଏ କାରଣ ତାହା ହେଲେ ଏ ନିୟମର ଉପକାରିତା ପ୍ରକାଶ ହେବ ନାହିଁ ବରଂ ତନ୍ତ୍ରର ଦୋଷ ପଡ଼ିଲରୁ ଲୋକମାନେ ଅସନ୍ତୁଷ୍ଟ ହେବେ ।

( ୧୧ଶ ଭାଗ, ୧୨ । ୮ । ୧୮୭୭, ସଂଖ୍ୟା ୩୩ )

୪୮୪ । ଗୋପାଳଜୀ ମଠ ।

ଗୋପାଳଜୀ ମଠର ମହନ୍ତଙ୍କ ନାମରେ ଯେଉଁ ଦରଖାସ୍ତ ହେବାର କଥା ଏଥିପୂର୍ବେ ଆମ୍ଭେମାନେ ଲେଖିଥିଲୁଁ ଏ ସପ୍ତାହରେ ତହିଁର ବିଚାର ହୋଇ ଶ୍ରୀଯୁକ୍ତ ଜଜ ସାହେବ ଦରଖାସ୍ତକାରୀଙ୍କୁ ମହନ୍ତଙ୍କ ନାମରେ ନମ୍ବରୀ ମକଦ୍ଦମା କରିବାର ପାଇଁ ଆଦେଶ ଦେଇଅଛନ୍ତି ଓ ଗତ ଗୁଣବର୍ଷର ହିସାବ ଦିନ ମଧ୍ୟରେ ଦାଖଲ କରିବା ପାଇଁ ମହନ୍ତଙ୍କୁ ଆଜ୍ଞା ଦେଇଅଛନ୍ତି । ସୁତରାଂ ଦରଖାସ୍ତ ଖଣ୍ଡିକ ସଫଳ ହୋଇଅଛି ବୋଲିବାକୁ ହେବ ଓ ନମ୍ବରୀ ମକଦ୍ଦମା ଦାଏର ହେଲେ କେଷ୍ଟ୍ୟତନ୍ତ୍ର କି ହେବ ଦେଖିବାକୁ ଆସିବ । ସତ୍ୟବାଦୀର ମଠର ଅଧ୍ୟକ୍ଷ ମଧ୍ୟ ହେସାବ ଦାଖଲ କରିଅଛନ୍ତି ଓ ତାହାଙ୍କ ନାମରେ ନମ୍ବରୀ ମକଦ୍ଦମା ହେବାର ସମ୍ଭବ ହୁଏଇ । ଏ ମକଦ୍ଦମାମାନ ସଫଳ ହେଲେ ସଦାବର୍ତ୍ତି ମଠମାନଙ୍କର ବର୍ତ୍ତମାନ ଦୁରବସ୍ଥା ଅଧିକାଂଶରେ ମୋଚନ ହେବ ସନ୍ଦେହ ନାହିଁ ଓ ସେରୂପ ହେବା ସର୍ବସାଧାରଣଙ୍କର ବାଞ୍ଛନୀୟ ଅଟେ ।

( ୧୧ଶ ଭାଗ, ୧୨ । ୮ । ୧୮୭୭, ସଂଖ୍ୟା ୩୩ )

୪୮୫ । ଓଡ଼ିଶା ଗଭର୍ଣ୍ଣମେଣ୍ଟ ।

ଚଳିତମାସ ତା ୨୯ ଖର କଲିକତା ଗଜେଟରେ ଗତ ସନ ଅର୍ଥାତ ସନ ୧୮୭୫ । ୭୬ ମସିହା ବାବତ୍ ଓଡ଼ିଶା ଗଭର୍ଣ୍ଣମେଣ୍ଟ ମହାଲର ବାର୍ଷିକ ବିଜ୍ଞାପନୀ ଉପରେ ବଙ୍ଗଳା ଗଭର୍ଣ୍ଣମେଣ୍ଟଙ୍କର ମନ୍ତବ୍ୟ ବାହାରିଅଛି । ଆମ୍ଭେମାନେ ତହିଁରୁ ଅବଗତ ହେଲୁଁ ଯେ ଏହିବର୍ଷ ଫସଲର ଅବସ୍ଥା ସବୁବରେ ଉତ୍ତମ ଥିଲ ଓ ରାଜା-

ମାନେ ଆପଣା ୨ ରାଜ୍ୟର ଉନ୍ନତି ସକାଶେ ସାଧ୍ୟାନୁସାରେ ଯତ୍ନ କରିଅଛନ୍ତି ଓ ଲୋକମାନେ ଆନନ୍ଦରେ ରହିଅଛନ୍ତି ।

ପୂର୍ବବର୍ଷାପେକ୍ଷା ବାଙ୍କୀପଣ ବର୍ଷରେ ଦେବାଣୀ ଓ ଖଜଣା ସମ୍ପର୍କୀୟ ମକଦ୍ଦମା ଅଳ୍ପ ହୋଇଅଛି । ସନ ୧୮୭୪ । ୭୫ ମସିହାରେ ୨୨୮୦ ମାତ୍ର ସନ ୧୮୭୫ । ୭୬ । ରେ ୧୯୫୭ ମୋକଦ୍ଦମା ହୋଇଥିଲା । ବାଙ୍କୀ କଲ୍ଲାରେ ଅଧିକ ଊଣା ପଡ଼ିଅଛି ଅଥଚ ଗତ ବର୍ଷ ଏ କଲ୍ଲାରେ ବହୁତର ମୋକଦ୍ଦମା ହୋଇଥିଲା ମାତ୍ର ଏଥିର କାରଣ କିଛି ପ୍ରକାଶ ପାଇ ନାହିଁ । ମୋଟ ମୋକଦ୍ଦମା ମଧ୍ୟରୁ ୧୧୧ ଅପିଲ ହୋଇଥିଲା ଓ କେବଳ ୧୬ ମୋକଦ୍ଦମାରେ ଅଧସ୍ଥ ଅଦାଲତଙ୍କ ଆଜ୍ଞା ରଦ କା ତରମିମ ହୋଇଅଛି । ଏଥିରୁ ଫଳ ମୁଗଲବନ୍ଦିର କୌଣସି ମହକୁମାରେ ଦେଖା ଯିବାର ସନ୍ଦେହ ଓ ଏଥିରୁ ବୋଧହୁଏ ଜାରିର ବାସନା ଆସୁଅଛି ।

ଫଉଜଦାରୀ ମୋକଦ୍ଦମାର ଅଳ୍ପ ବୃଦ୍ଧି ଦେଖାଯାଏ ଓ ବାଙ୍କୀ କଲ୍ଲାରେ ଅଧିକ ଅପରାଧ ହୋଇଅଛି । ଏହି ଏକ କଲ୍ଲାରେ ଦେଓ୍ୟାନୀ ମୋକଦ୍ଦମା ଊଣା ଓ ଅପରାଧ ଅଧିକ ହେବାର କିଛି କାରଣ ପ୍ରକାଶ ହୋଇଥିଲେ ଭଲ ହୋଇଥାନ୍ତା । ହତ୍ୟା ଅପରାଧର ମଧ୍ୟ ଅଧିକ ଊଣା ଦେଖାଯାଏ ଏହା ବଡ଼ ସନ୍ତୋଷ ଜନକ ଅଟଇ ।

ସଡ଼କ ଇତ୍ୟାଦି ନିର୍ମାଣ ବିଷୟରେ କନ୍ଦମାନେ ଯେରୂପ ଯତ୍ନ କରୁଅଛନ୍ତି ତହିଁର ବିବରଣ ପାଠକମାନେ ଜାଣନ୍ତି । ଏହାଛଡ଼ା ମୟୂରଭଞ୍ଜ ରାଜା [illegible] ବ୍ୟୟ କରି ଗୋଟିଏ ସଡ଼କ ବାଲେଶ୍ୱର ଜିଲ୍ଲାରୁ ଆପଣା ଏଲକାରୁ ଗଲାଇ ଦେଇ ଅଛନ୍ତି ।

ଶିକ୍ଷାବିଷୟରେ ଢେଙ୍କାନାଳ ଓ କେଉଁଝର ରାଜାଙ୍କର ବିଶେଷ ସୁଖ୍ୟାତି ହୋଇଅଛି । କେଉଁଝରରେ ସ୍କୁଲର ବେତନ ସୁଦ୍ଧା ପିଲମାନେ ଦିଅନ୍ତି ନାହିଁ ଓ ପୁସ୍ତକ ସ୍ଲେଟ ପ୍ରଭୃତି ସବୁ ଖର୍ଚ୍ଚ ରାଜାଙ୍କ ହିସାବରେ ଖର୍ଚ୍ଚ ପଡ଼ଇ ।

ରାଜା ଓ ପ୍ରଜାମାନଙ୍କ ମଧ୍ୟରେ ବିଶେଷ ସଦ୍ଭାବ ଥିବାର ଜଣାଯାଏ ଓ ପରସ୍ପର ରାଜାଙ୍କ ମଧ୍ୟରେ ମଧ୍ୟ ସରହଦ ସୀମାନାର ତକିରାର ମଧ୍ୟ ଊଣା ପଡ଼ିଅଛି । କେଉଁଝରରେ ରାଜା ପ୍ରଜାଙ୍କର ସଦ୍ଭାବ ସବୁ ଠାରୁ ଅଧିକ ଓ ପ୍ରଜାମାନେ ଆପଣା ଇଚ୍ଛାରେ ବେଦା କରି ରାଜାଙ୍କର ସରକାରଙ୍କୁ ଦେଇଥିବା ଠିକା ସୁଝିବା ତହିଁର ପ୍ରଧାନ ପ୍ରମାଣ ଅଟଇ । କମିଶ୍ନର ସାହେବ ଏହାଙ୍କର ବିଶେଷ ପ୍ରଶଂସା କରିଅଛନ୍ତି ଏବଂ ଲେଖି ଅଛନ୍ତି ଯେ ଏମନ୍ତ ସୁଶାସନ ଅନ୍ୟ କୌଣସି ରାଜା ଦେଖାଇ ନାହିଁ କି ପ୍ରଜାମାନେ

କୌଣସିଠାରେ ଏ ପ୍ରକାର ସୁଖୀ ଓ ପ୍ରଭୁଭକ୍ତ ନାହାନ୍ତି । ମାନ୍ୟବର ଲେଫ୍‌ଟନେଣ୍ଟ ଗବର୍ଣ୍ଣର ଏହାଶୁଣି ବଡ଼ ଆନନ୍ଦିତ ହୋଇଅଛନ୍ତି ଓ ରାଜାଙ୍କୁ ତାହା ଜଣାଇ ଦେବାପାଇଁ ଆଜ୍ଞା ଦେଇ ଅଛନ୍ତି । ଏହାଛଡ଼ା ଶ୍ରୀଯୁକ୍ତ କମିଶ୍ନର ସାହେବ ଢେଙ୍କାନାଳର ମହାରାଜା ପାଲଲହଡ଼ାର ରାଜାବାହାଦୁର ଏବଂ ହିନ୍ଦୋଳ ଅଠମଲ୍ଲିକ ନରସିଂହପୁର ଖଣ୍ଡପଡ଼ା ତିଗିରିଆ ଓ ନୟାଗଡ଼ ରାଜାଙ୍କର ସୁଶାସନର ସୁଖ୍ୟାତି କରିଅଛନ୍ତି । କେବଳ ତାଳଚେର ଓ ଦଶପଲ୍ଲା ରାଜାଙ୍କର ଅଖ୍ୟାତି ହୋଇଅଛି । ତାଳଚେର ରାଜାଙ୍କର ବୟସ ଊଣାହେତୁ ଓ ସେ ମନ୍ଦଲୋକଙ୍କର କଥା ଶୁଣିବାରୁ ସେ ରାଜାଙ୍କର ଅବସ୍ଥା ମନ୍ଦ ହୋଇଅଛି କିନ୍ତୁ ସୁପରିଣ୍ଟେଣ୍ଡେଣ୍ଟ ସାହେବ ଯେ ସମସ୍ତ ବନ୍ଦୋବସ୍ତ ଏଣିକି କରିଅଛନ୍ତି ତହିଁରେ ରାଜାଙ୍କର ଦୋଷମାନ ଲୁଚି ଯିବାର ସମ୍ଭାବନା ଅଛି । ଦଶପଲ୍ଲା ବିଷୟ ଅତି ମନ୍ଦ ତାହାଙ୍କୁ ପୁନଃ ୨ ତାଗିଦ କଲେ ମଧ୍ୟ କିଛି ଭଲ ହୋଉନାହିଁ ଓ ଯେବେ ରାଜା ପୁନର୍ବାର ଅତ୍ୟାଗ୍ରହ କଲେ କି ଅନ୍ୟାୟ କର ନେଲେ ତାହାଙ୍କ ବିଷୟରେ ଭାରତ ଗବର୍ଣ୍ଣମେଣ୍ଟଙ୍କୁ ପଠାଯିବାର ଆଦେଶ ହୋଇଅଛି । ନୀଳଗିରି ଓ ରଣପୁରର ଅବସ୍ଥା ମଧ୍ୟ ଭଲ ନୁହଇ ଏ ରାଜାମାନଙ୍କର ସ୍ୱଭାବ ଦୁର୍ବଳ ଏବଂ ମନ୍ଦ ଲୋକଙ୍କ ପରାମର୍ଶରେ ଅଧିକ ପଡ଼ିବାର ଦେଖାଯାଏ ।

ଆମ୍ଭେମାନେ ଭରସା କରୁଁ କି ଗଡ଼ଜାତର ଯେଉଁ ରାଜାମାନେ ଏ ରିପୋର୍ଟରେ ନିନ୍ଦାର ଭାଜନ ହୋଇଅଛି ସେମାନେ ସତର୍କ ହୋଇ ଆପଣା ୨ କାର୍ଯ୍ୟ କରନ୍ତୁ ଯେମନ୍ତ କି ଭବିଷ୍ୟତରେ ତାହାଙ୍କର ଏପରି ଅଖ୍ୟାତି ରହିବ ନାହିଁ ।

(୧୧ଶଭାଗ, ୨୭ । ୧୮ । ୮୭୭, ସଂଖ୍ୟା ୩୬)

୪୮ । ରୋଡସେସ ।

କଟକ ଓ ବାଲେଶ୍ୱର ଜିଲ୍ଲାରେ ( ଟଙ୍କାରେ ଦୁଇପଇସା ) ରୋଡସେସ ଧାର୍ଯ୍ୟ ହୋଇଅଛି ମାତ୍ର ପୁରୀ ଜିଲ୍ଲାରେ ଅଧା ଦର ଅର୍ଥାତ୍ ଟଙ୍କାପ୍ରତି ଏକପଇସା ଲେଖାଁ ଏ କର ନିଆଯିବାର ଘୋଷଣା ଦିଆଯାଇଅଛି । ପୁରୀ ନିବାସୀମାନେ ଆପଣା କମିଟି ସଭ୍ୟମାନଙ୍କୁ ଓ କଲେକ୍ଟରଙ୍କୁ ଧନ୍ୟବାଦ ଦେଉନ୍ତୁ । ବଡ଼ ସୁଖର ବିଷୟ ଯେ ଓଡ଼ିଶା ମଧ୍ୟରେ ଏକସ୍ଥାନରେ ହେଲେ କମିଟି ସ୍ୱାଧୀନ ଭାବରେ ପୂର୍ବାପର ଅବସ୍ଥା ବିଗ୍ଭରକରି କାର୍ଯ୍ୟ କରୁଅଛନ୍ତି । ଅପର ଦୁଇ ଜିଲ୍ଲାର କମିଟି ଓ ହାକିମମାନେ ଅଧିକା କରନେଇ ପ୍ରଜାମାନଙ୍କୁ ଏବର୍ଷ କେଉଁ ଇନ୍ଦ୍ରସମ୍ପତ୍ତି ଦେବେ ଦେଖିବାରେ ଆସିବ । ପରିଶେଷରେ ଏମନ୍ତ ଘଟିବାରେ ଯେ ଲଭର ଗୁଡ଼କୁ ପିମ୍ପୁଡ଼ି ବୋହନେଇଯିବ ।

୧୮୭ । କଟକ ମିଉନିସିପାଲିଟି ।

ଏନଗରରେ ନୂତନ ଆଇନ (ସନ ୧୮୭୬ ମସିହା ଆ ୫ ଭନ ବଙ୍ଗଳା ବ୍ୟବସ୍ଥାପକ ସଭାର) ଜାରି ହେବାର ଆମ୍ଭେମାନେ ଏଥିପୂର୍ବେ ଲେଖିଥିଲୁଁ ମାତ୍ର ସେ ଆଇନ କଣ ଓ ତାହା ଜାରି ହେବାରେ କି ଫଳାଫଳ ହେବ ତାହା ଅଦ୍ୟାପି କାହାରିକୁ ଜଣାପଡ଼ି ନାହିଁ । ବାସ୍ତବରେ ଉକ୍ତ ଆଇନର ବଙ୍ଗଳା ତର୍ଜମା ଅଲଦିନ ହେଲା ବଙ୍ଗଳା ଗେଜେଟରେ ଛପା ହୋଇଅଛି ଓଡ଼ିଆ ତର୍ଜମା ଅଦ୍ୟାପି ଛପା ହୋଇନାହିଁ ଓ ଛପାହେଲେ ସନଠାରୁ ବୁଝିବାକୁ ଆହୁରି କେତେକେଦିନ ଲାଗିବ କାରଣ ଏଠା ଲୋକେ ଅଧିକାଂଶ ଏସମସ୍ତ ବହି କିଣିବାକୁ ତତ୍ପର ନୁହନ୍ତି ଓ ଦାମ ନ ପଡ଼ିଲେ ଆଦୌ ଜାଣିବାକୁ ଖୁସି ପାଆନ୍ତି ନାହିଁ । ଏମନ୍ତ ଅବସ୍ଥାରେ ଆଇନର ମର୍ମରୁ ଅବଗତ ହେବା ଏଠା ବାସିଙ୍କ ପକ୍ଷରେ ସହଜ ନୁହଇ । ମାତ୍ର ଦୁଃଖର ବିଷୟ ଯେ ଯାହାଙ୍କୁ ଆଇନ ଚଳାଇବାର ଭାର ଦିଆଯାଇଅଛି ସେମାନେ ଲୋକଙ୍କୁ ଆଇନର ମର୍ମରୁ ଅବଗତ କରାଇବା ସକାଶେ ଅଗ୍ରେ କୌଣସି ଉପାୟ ଅବଲମ୍ବନ ନ କରି ଆଇନାନୁସାର କାର୍ଯ୍ୟ କରିବାକୁ ପ୍ରସ୍ତୁତ ହୁଅନ୍ତି ଏବଂ ନଗରବାସିଙ୍କୁ ତାହା ପ୍ରତିପାଳନ କରିବାପାଇଁ ଆଦେଶ ଦିଅନ୍ତି । ଏମନ୍ତ ଅବସ୍ଥାରେ ହାକିମ ଓ ପ୍ରଜାଙ୍କ ମଧ୍ୟରେ ମନାନ୍ତର ଜନ୍ମିବାର ଆଶ୍ଚର୍ଯ୍ୟ ନୁହେ ଓ ତାହାହେଲେ ତହିଁ ପାଇଁ ଅବଶ୍ୟ ହାକିମ ଦୋଷୀ ଅଟନ୍ତି କାରଣ ସଙ୍ଗେ କଥା କହିବାକୁ ହେଲେ ଯେରୂପେ ସେ ବୁଝିବ ସେରୂପେ କହିବାର ଉଚିତ ନୋହିଲେ କହିବା ବ୍ୟକ୍ତିର ଦୋଷ କାରଣ କାଳ ତ ଅନ୍ୟଲୋକପର ସହଜରେ ବୁଝିବ ନାହିଁ ।

ଉପରୁକ୍ତ କଥା ଲେଖିବାର ହେତୁ ଏହି ଯେ ମିଉନିସିପାଲ ଆଇନ ଜାରିହେଲା ଉତ୍ତାରୁ ଆମ୍ଭମାନଙ୍କ ମାଜିଷ୍ଟ୍ରେଟ କଟକ ନଗରକୁ ପ୍ରଥମ ଶ୍ରେଣୀର ମିଉନିସିପାଲିଟିରେ ଆଣିବାପାଇଁ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କଲେ ମାତ୍ର ଲେଫଟେନେଣ୍ଟ ଗବର୍ଣ୍ଣର ଏ ଅନୁରୋଧକୁ ଏକାବେଳକେ ଗ୍ରାହ୍ୟ ନକରି ଉତ୍ତର ଲେଖି ପଠାଇଲେ କି ପ୍ରଥମ ଶ୍ରେଣୀ କରିବାର କି ହେତୁମାନ ଅଛି ଓ ତହିଁରେ ଲୋକଙ୍କର ଆପତ୍ତି ଅଛି କି ନାହିଁ ଏସମସ୍ତ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇଲେ ବିହିତ ଆଜ୍ଞା ହେବ । ଏ ଉତ୍ତର ପାଇ ମାଜିଷ୍ଟ୍ରେଟ ସାହେବ ଘୋଷଣା ଦେଇଆଛନ୍ତି କି ଏକମାସ ମଧ୍ୟରେ ଲୋକମାନେ ଆପତ୍ତି ନକଲେ ଲେଫଟେନେଣ୍ଟ ଗବର୍ଣ୍ଣର ଏନଗରକୁ ପ୍ରଥମ ଶ୍ରେଣୀର ମିଉନିସିପାଲିଟି କରିବେ । ମାତ୍ର ଏ ଘୋଷଣା ଯେ ପ୍ରକାରରେ ଦିଆଯାଇଅଛି ତାହା ଅତି କୌତୁକଜନକ ଅଟଇ । ପ୍ରଥମେ ଉପରଲିଖିତ ମର୍ମରେ କେତେ ଖଣ୍ଡ ଇସ୍ତାହାର ଜାରି ହୋଇଥିଲା କେଉଁଠାରେ ସେସବୁ ଲଟକାଇ ଦିଆଗଲା ତାହା ଲୋକେ ଜାଣନ୍ତିନାହିଁ ଓ ପ୍ରଜାମାନେ ତାହା ଦେଖିଅଛନ୍ତି କି ନାହିଁ ସନ୍ଦେହ କାରଣ ଅନେକ ଲୋକଙ୍କଠାରୁ ଆମ୍ଭେମାନେ ଶୁଣିଅଛୁ

ଯେ ସେମାନେ ଦେଖିନାହାନ୍ତି । ତହିଁଉତ୍ତାରୁ ଗତ ମଙ୍ଗଳବାର ନଗରମଧ୍ୟରେ ମୁନାଦି ଦିଆଗଲା; ମୁନାଦି ଦେବା ବ୍ୟକ୍ତି ବାସ୍ତବରେ କି କଥା କହିଅଛି ଆମ୍ଭେମାନେ ଶୁଣିନାହୁଁ କିନ୍ତୁ ଯେଉଁମାନେ ଶୁଣିଅଛନ୍ତି ତାହାଙ୍କମଧ୍ୟରୁ ଅଧିକଲୋକ ଏହି କଥା କହୁଅଛନ୍ତି ଯେ ଗାଡ଼ି ଘୋଡ଼ା ଗାଈ ଓ ବଳଦ ଉପରେ ଟେକ୍ସ ହେବ । ଏଥିପାଇଁ ଲୋକେ ଅତ୍ୟନ୍ତ କାତର ଅଛନ୍ତି ଓ ଅନେକ ବ୍ୟକ୍ତି ଆପଣାର ଗାଈ ବଳଦକୁ ମଫସଲ ପଠାଇବାର କିମ୍ବା ବିକ୍ରୟ କରିବାର ସ୍ଥିର କରିଅଛନ୍ତି । ମୁନାଦି ଦେବାର ଦୋଷରୁ ଅବଶ୍ୟ ଏରୂପ ଅମୂଳକ ବିଶ୍ୱାସ ଜାହାର ଅଛି ସନ୍ଦେହନାହିଁ କାରଣ ଆଇନରେ ଆଦୌ ଗାଈ ବଳଦ ଉପରେ ଟେକ୍ସ ହେବାର ବିଧାନ ନାହିଁ । କିନ୍ତୁ ଯାହାଙ୍କ ଆଜ୍ଞାରେ ଘୋଷଣା ଦିଆ-ଗଲା ସେ ଯେବେ ସାବଧାନ ହୋଇ କାର୍ଯ୍ୟ କରିଥାନ୍ତେ ତେବେ ଲୋକେ ଏରୂପ ଭ୍ରମରେ ପଡ଼ି କାତର ହୁଅନ୍ତେ ନାହିଁ । ଫଳତଃ ଯେଉଁଠାରେ ଘୋଷଣା ଏପରି ଅଶୁଦ୍ଧରୂପେ ଦିଆଯାଇଅଛି ସେଠାରେ ଲୋକଙ୍କଠାରୁ ଆପତ୍ତି ଆଶା କରିବା ବ୍ୟର୍ଥ ଅଟଇ । ଏପର ପ୍ରଥମରେ ଆମ୍ଭେମାନେ କହିଅଛୁଁ ଯେ ଲୋକେ ଅଦ୍ୟାପି ଆଇନରୁ ଅବଗତ ହୋଇନାହାନ୍ତି ଓ ଅବଗତ ହେବାର ଉପାୟ ମଧ୍ୟ ନାହିଁ । ଅନ୍ୟଲୋକର କଥା ତେଣିକି ଥାଉ ସ୍ୱୟଂ କମିଶନରମାନେ ଆଇନ ବୁଝିଅଛନ୍ତି କିନା ସନ୍ଦେହ । ଏମନ୍ତ ଅବସ୍ଥାରେ ଏନଗର ପ୍ରଥମଶ୍ରେଣୀର ମିଉନିସିପାଲିଟି ହେଲେ ଭଲ ହେବ କି ମନ୍ଦ ହେବ ଏହା କିଏ ଜାଣି-ପାରିବ ଯେ ସେ କ୍ଷେତ୍ରରେ ଆପତ୍ତି କରିବ । ବାସ୍ତବରେ ଆଇନଟି ଏମନ୍ତ ହୋଇଅଛି ଯେ ତାହାକୁ ଦୁଇ ତିନଘଣ୍ଟା କାଳ ଆମ୍ଭେମାନେ ଓଲଟ ପାଲଟ କରି ଦେଖିବାରେ ସୁଦ୍ଧା ତହିଁରୁ ସବୁ କଥା ନିଶ୍ଚୟ କରିପାରିଲୁ ନାହିଁ ଓ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀରେ କି ଭେଦ ଅଦ୍ୟାପି ଆମ୍ଭେମାନେ ଠିକକରି ଜାଣିନାହୁଁ । ଲୋକଙ୍କୁ ଅବକାଶ ନଦେଇ ଶ୍ରୀଯୁକ୍ତ ମାକ୍ମିଲ୍ଟେ ସାହେବ ଏହାକୁ ପ୍ରଥମ ଶ୍ରେଣୀର ମିଉନିସିପାଲିଟି କରିବାପାଇଁ ପ୍ରସ୍ତାବ କରିଅଛନ୍ତି ଏହା ଅତ୍ୟନ୍ତ ଅନ୍ୟାୟ ହୋଇଅଛି । ଏରୂପ କରିବା କେବଳ ତାହାଙ୍କ ସ୍ୱାଭାବିକ ତରତରିଆ ପଣର ପରିଚୟ ଦେଉଅଛି ନୋହିଲେ ଆଇନାନୁସାରେ ଏନଗର ପକ୍ଷରେ ଯେ ନିୟମମାନ ପ୍ରଚଳିତ ଅଛି ତାହା ଆଉ ଏକବର୍ଷ ପ୍ରବଳ ରହିବାରେ କିଛି ବାଧା ଦେଖା ଯାଉନାହିଁ । ପ୍ରଥମ ଶ୍ରେଣୀକୁ ଉନ୍ନତ ପାଇଲେ ଏନଗର ଯେବେ ସ୍ୱର୍ଗତୁଲ୍ୟ ହେବ ବୋଲି ସେ ଆଶା କରିଥାନ୍ତି ତେବେ ଆମ୍ଭେମାନେ ତାହାଙ୍କ ଶୁଭକାମନା ସକାଶେ ତାହାଙ୍କୁ ଧନ୍ୟବାଦ ଦେଉଅଛୁଁ ମାତ୍ର ଆମ୍ଭେମାନେ କହୁଁ ଯେ ସେ ସ୍ୱର୍ଗର ଉତ୍ତମ ପରିଚୟ ପାଇବା ପର୍ଯ୍ୟନ୍ତ ଆମ୍ଭମାନଙ୍କୁ କ୍ଷମାକରନ୍ତୁ ସ୍ୱର୍ଗକୁ ଘୋଷାଡ଼ି ନେଲେ ସୁଦ୍ଧା ଦେହରେ ପୀଡ଼ା ହେବ । ଆମ୍ଭେମାନେ ଏହି ଆଶା କରୁଁ ଯେ ବର୍ତ୍ତମାନ ଯେମନ୍ତ ଅଛି ତେମନ୍ତ ଥାଉ ଓ ଲୋକଙ୍କୁ ବୁଝାଇ ଦିଆଯାଉ ଯେ ଆଗାମୀ ବର୍ଷଠାରୁ ଏ ନଗର ପ୍ରଥମ ଶ୍ରେଣୀରେ ଆସିବାକୁ ହେବ ଓ ଜାହାର ଆପତ୍ତିଥିଲେ ନିୟମିତମାସ ମଧ୍ୟରେ ତାହା ଆଗତ କରିବେ ।

୪୮୮ । ସାପ୍ତାହିକ ସମ୍ବାଦ ।

ବାବୁ ବୈଦ୍ୟନାଥ ପଣ୍ଡିତ ଏନଗରର ହାଟ ନିର୍ମାଣର ବ୍ୟୟ ନିମିତ୍ତ ୫୧୦୦୦୯ ଦାନକରିବାକୁ ଅଙ୍ଗୀକାର କରିଅଛନ୍ତି ବୋଲି ଶୁଣାଯାଏ । ଏ ମହାଶୟ ପୂର୍ବେ ସ୍ୱର ଟାଉନ୍ହଲକାର ଟଙ୍କା ବ୍ୟୟକରି ଗୋଟିଏ ନୂତନ ହାଟ ବସାଇବେ ବୋଲି ଶୁଣା ଯାଇଥିଲା ତହିଁରେ ମାଲିକମାନଙ୍କର ଅମତ ହେବାରୁ ସରକାରୀ ହାଟକୁ ଉପରଲିଖିତ ଟଙ୍କା ଦାନ କରିଅଛନ୍ତି । ମାତ୍ର ଏପରି ଦାନକୁ ଆମ୍ଭେମାନେ ପ୍ରକୃତ ଦାନ କହି ନପାରୁଁ ।

୪୮୯ । ଡମପଡ଼ା ରାଜା ଓ ପ୍ରଜାଙ୍କର ଏପର୍ଯ୍ୟନ୍ତ ମେଳ ହୋଇନାହିଁ । ଲେଫ୍ଟେନେଣ୍ଟ ଗବର୍ଣ୍ଣର ସାହେବ ରାଜାଙ୍କଦ୍ୱାରା କାର୍ଯ୍ୟର ଜର୍ମ କବାହ ହେବାର ଯେ ଆଜ୍ଞା ଦେଇଥିବାର ପୂର୍ବେ ଲେଖିଥିଲୁଁ ସେ ଆଜ୍ଞା ବରୁଦ୍ଧରେ ପ୍ରଜାମାନେ ମହାମାନ୍ୟ ଲାଟସାହେବଙ୍କ ନିକଟରେ ଅପିଲ କରିଥିଲେ କିନ୍ତୁ ତାହା ଅଗ୍ରାହ୍ୟ ହେଲା ।

**( ୧୧ଶ ଭାଗ, ୨ । ୯ । ୧୮୭୭, ସଂଖ୍ୟା ୩୭ )**

୪୯୦ । ବାବୁ ତାରିକାନ୍ତ ବିଦ୍ୟାସାଗର ।

ଆମ୍ଭେମାନେ ଶୁଣିଅଛୁଁ ଯେ ବାବୁ ତାରିକାନ୍ତ ବିଦ୍ୟାସାଗର ପୁରୀ ରାଜାଙ୍କର ଦେବାନ ହୋଇଅଛନ୍ତି । କେଉଁ ଦିନ ଏପଦରେ ନିଯୁକ୍ତ ହେଲେ କେତେ ବେତନ ପାଇବେ ଓ କିପ୍ରକାର କ୍ଷମତା ଏହାଙ୍କୁ ଅର୍ପିତ ହୋଇଅଛି ଆମ୍ଭେମାନେ ଅବଗତ ହୋଇନାହୁଁ କେବଳ ଏତିକ ଶୁଣିଅଛୁଁ ଯେ ଦେବାନ ନିଯୁକ୍ତ ହୋଇଅଛନ୍ତି ଏବଂ ଅନ୍ୟାନ୍ୟ କର୍ମସହିତ ମନ୍ଦିରର ତତ୍ତ୍ୱାବଧାରଣ କରୁଅଛନ୍ତି । ତାରିକାନ୍ତ ବାବୁ ପୂର୍ବେ ଓଡ଼ିଶାର ଜଣେ ଉଚ୍ଚଶ୍ରେଣୀର ହାକିମ ଥିଲେ । ବଙ୍ଗଳାକୁ ବଦଳି ହୋଇବାର ବୟୋଧିକ ହେତୁରୁ ପେନସନ ନେଲେ ମାତ୍ର ଓଡ଼ିଶାର ଲୋଭ ଛାଡ଼ିପାରିଲେ ନାହିଁ । ଗତ କେତେବର୍ଷ ହେଲା ଜମିଦାରୀ ନାଯ୍ବ ଓ ବାହ୍ମଣ ସଜିହା ପ୍ରଭାରେ ଓଡ଼ିଶାରେ ରହିଅଛନ୍ତି କିନ୍ତୁ ଏତେବେଳେ ତାହାଙ୍କର ଉପଯୁକ୍ତ କର୍ମ ମିଳିଲା । ଦେବରାଜାଙ୍କର ଦେବାନ ବାହ୍ମଣ ପଣ୍ଡିତ ହେବାର ଦେଖି ଆମ୍ଭେମାନେ ଅନୁମାନ କରୁଅଛୁଁ ଯେ ସତ୍ୟ-ଯୁଗ ପୁନର୍ବାର ପ୍ରବେଶ ହେଲା । ଏରୂପ ସ୍ୱଭାବ ସମ୍ମିଳନ ଦ୍ୱାରା କି ଫଳ ଲାଭ ହେବ ଶୁଣିବାକୁ ଆମ୍ଭମାନଙ୍କର ବାସନା ରହିଲା ।

୪୯୧ । ସାପ୍ତାହିକ ସମ୍ବାଦ ।

ଡମପଡ଼ା ପ୍ରଜାଙ୍କର ଅପିଲ ଅଗ୍ରାହ୍ୟ ହୋଇଥିବାର ଗତସପ୍ତାହରେ ଲେଖା ହୋଇଥିଲା । ଡମପଡ଼ା ରାଜା ଆପଣା କଲକୁ ଗଡ଼ଜାତ ଭୁକ୍ତ କରିବା ପ୍ରାର୍ଥନା-

ରେ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସାହେବଙ୍କ ଆଜ୍ଞା ବଲୁଛରେ ଲାଟସାହେବଙ୍କ ସମୁରେ ଅପିଲ କରିଥିଲେ । ତାହାମଧ୍ୟ ଅଗ୍ରାହ୍ୟ ହୋଇଅଛି ।

## ( ୧୧ଶ ଭାଗ, ୯ । ୯ । ୧୮୭୭, ସଂଖ୍ୟା ୩୭ )

୪୯୨ । ଧାତ୍ରାହକ ସମ୍ବାଦ ।

ଅମ୍ଭେମାନେ ଅବଗତ ହୋଇଅଛୁଁ ଯେ ସତ୍ୟବାଦୀ ମଠର ସୁପରିଣ୍ଟେଣ୍ଡ୍ କୁ କମିଟି ବରଖାସ୍ତ କରିଅଛନ୍ତି । କମିଟିର ଏପରି କ୍ଷମତା ଅଛି କିନା ସନ୍ଦେହ ମାତ୍ର ଯେରୂପ ଅବସ୍ଥା ଶୁଣାଯାଏ ତଦ୍ଦ୍ବାରୁ ବୋଧ ହୁଏ ସୁପରିଣ୍ଟେଣ୍ଡ୍ ଭାର ଗ୍ରହଣ କରିବାକୁ ଯୋଗ୍ୟ ନୁହନ୍ତି ତେବେ ତାହାଙ୍କୁ ବରଖାସ୍ତ କରିବାରେ କାହିଁକି ?

୪୯୩ । ଗୋପାଳଜୀ ମଠର ମହନ୍ତଙ୍କ ନାମରେ ନମ୍ବରୀ ମୋକଦ୍ଦମା ଦାଏର ହୋଇଅଛି । ଏଥିରେ ମହନ୍ତ ଅଟଣା ପଦରେ ରହିବେ କି ନାହିଁ ସନ୍ଦେହ । ତାହାଙ୍କର ମହାଜନମାନେ ନାଲିସ୍ କରି ଅଟଣା ପାଉଣା ଆଦାୟ ନିମନ୍ତେ ତତ୍ପର ହୋଇଅଛନ୍ତି ।

## ( ୧୧ଶ ଭାଗ, ୧୬ । ୯ । ୧୮୭୭, ସଂଖ୍ୟା ୩୮ )

୪୯୪ । କଟକ ମିଉନିସିପାଲିଟି ।

ଆମ୍ଭେମାନେ ଶୁଣିଲୁଁ ଯେ ଏଠା ମିଉନିସିପାଲିଟି ପ୍ରଥମ ଶ୍ରେଣୀ ଭୁକ୍ତ ହେବା ବଲୁଛରେ ନଗରବାସିମାନେ ଅନେକ ଦରଖାସ୍ତ ଦେଇଅଛନ୍ତି । କିନ୍ତୁ ସେଥିରେ କଛିହିଁ ଯୁକ୍ତିଯୁକ୍ତ ହେତୁ ଦର୍ଶାଇ ନାହାନ୍ତି । କେବଳ ଆପଣାର ଦୁଃଖ ଗାଇ ଅଛନ୍ତି । ଆମ୍ଭେମାନେ ପୂର୍ବେ ଲେଖିଥିଲୁଁ ଯେ ଆଇନ ଓଡ଼ିଶାରେ ଜାରି ନହେବାକୁ ନଗରବାସିମାନେ କେହି ଆଇନ ବୁଝି ନାହାନ୍ତି । ତାହା ଏ ଦରଖାସ୍ତ ସବୁରୁ ସ୍ପଷ୍ଟ ଜଣା ଯାଉଅଛି । ଦରଖାସ୍ତର ମର୍ମରୁ ବୋଧ ହୁଏ ଯେ ଏଠା ମିଉନିସିପାଲିଟି ପ୍ରଥମ ଶ୍ରେଣୀର ହେଲେ ଟାକ୍ସ ବୃଦ୍ଧି ହେବ ନଗରବାସିଙ୍କର ଏରୂପ ସଂସ୍କାର ହୋଇଅଛି । ମାତ୍ର ଏହା ଭ୍ରମମୂଳକ ଅଟଇ । ବସ୍ତୁତଃ ଟାକ୍ସ କିମ୍ବା ଅନ୍ୟାନ୍ୟ ବିଷୟରେ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ମଧ୍ୟରେ ପ୍ରଭେଦ ନାହିଁ । କେବଳ ପୁଲିସ ଖର୍ଚ୍ଚ ପ୍ରଥମ ଶ୍ରେଣୀରେ ଅଧିକ ୨ୟ ଶ୍ରେଣୀରେ କିଛି ଊଣା ଅଟେ ଅର୍ଥାତ୍ ୧ମ ଶ୍ରେଣୀରେ ଯେତେ ଘର ଥିବ ତେତେ ଘର ଉପରେ ପ୍ରତି ଘର ଟଙ୍କା ଲେଖାଏଁ ଯେତେ ହେବ

ତେତେଟଙ୍କା ପର୍ଯ୍ୟନ୍ତ ଗୃହୀତ ଟାକ୍ସରୁ ପୁଲଘଙ୍କୁ ଦିଆଯାଇ ପାରିବ । ୨ୟ ଶ୍ରେଣୀରେ ଦ୍ଵିଗୁଣଠାରୁ ଅଧିକ ନହେବ । ଏହିରୂପ ୧ମ ଶ୍ରେଣୀରେ ମେଜେଷ୍ଟର ସାହେବ ପାଞ୍ଚଶତ ଟଙ୍କା ପର୍ଯ୍ୟନ୍ତ ୨ୟ ଶ୍ରେଣୀରେ ଦୁଇଶତ ଟଙ୍କା ପର୍ଯ୍ୟନ୍ତ ବିଲ ଏକାକୀ ସ୍ଵାକ୍ଷର କରିପାରିବେ । ୨ୟ ଶ୍ରେଣୀରେ କମିଶନରଙ୍କ ସଂଖ୍ୟା ଊନ୍‌୨୦ଣ ଓ ୧ମ ଶ୍ରେଣୀରେ ଊନ୍‌୩୦ଣ ପର୍ଯ୍ୟନ୍ତ ହୋଇପାରିବ । ଆମ୍ଭେମାନେ ଆଇନକୁ ଅନେକଥର ଦେଖି ଏହି କେତୋଟି ପ୍ରଭେଦ ନିଷ୍କର୍ଷ କରିଅଛୁଁ । ପୁଲିସ ଖର୍ଚ୍ଚ ଅଧିକ ହେବା ପକ୍ଷରେ ଯଥାର୍ଥ ଆପତ୍ତି ହୋଇପାରେ କାରଣ ସେଥିରେ ଅନେକ ଟଙ୍କା ଲଗିଲେ ସଡ଼କ ମରାମତି ନାଳ ସଫାଇ ଇତ୍ୟାଦି ହିତକର ଓ ଆବଶ୍ୟକୀୟ କାର୍ଯ୍ୟ ସକାଶେ ଟଙ୍କା ଅନଟନ ହେବ । ୧ମ ଶ୍ରେଣୀ ମିଉନିସିପାଲଟି ବିରୁଦ୍ଧରେ ଏହି ଗୋଟିଏ ଯୁକ୍ତିଯୁକ୍ତ ଆପତ୍ତି ଦେଖୁଅଛୁଁ ମାତ୍ର ଏ ଆପତ୍ତି କେହି ଦର୍ଶାଇ ନାହାନ୍ତି କାରଣ ଆଇନ ତ ସମ୍ୟକରୂପେ ବୁଝିବାର ସୁଯୋଗ ନାହିଁ । ଯାହା ହେଉ ମେଜେଷ୍ଟ୍ର ସାହେବ ଓ କମିଶନରମାନଙ୍କୁ ଏଥିରୁ ବୁଝି କରିବାର ଉଚିତ ଥିଲା । ବିଶେଷତଃ ଅର୍ଥାଭାବରୁ ନଗରର ସଡ଼କ ଇତ୍ୟାଦିର ଯେରୂପ ଦୁରବସ୍ଥା ହୋଇଅଛି ତହିଁ ଦୃଷ୍ଟିରେ କେବଳ ନାମ ବଡ଼କରିବା ପାଇଁ ୧ମ ଶ୍ରେଣୀଭୁକ୍ତ ନହୋଇ ୨ୟ ଶ୍ରେଣୀରେ ଥାଇ କାର୍ଯ୍ୟ ଦ୍ଵାରା ବଡ଼ ନାମର ବା ୧ମ ଶ୍ରେଣୀର ପରିଚୟ ଦେଲେ ଭଲ ହୁଅନ୍ତା । କମିଶନରମାନଙ୍କର ଗତ ଅଧିବେଶନରେ ଆପତ୍ତି ସକଳର ଇଂରେଜୀ ଅନୁବାଦ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସାହେବଙ୍କ ନିକଟକୁ ପ୍ରେରିତ ହେବାର ସ୍ଥିର ହୋଇଅଛି ।

## ( ୧୧ଶ ଭାଗ, ୭ । ୧୦ । ୧୮୭୬, ସଂଖ୍ୟା ୪୦ )

୪୯୫ । ଓଡ଼ିଶାର ବାର୍ଷିକ ବିଜ୍ଞାପନୀ

ସନ ୧୮୭୫ । ୭୬ ବାବଦ ଓଡ଼ିଶାର ବାର୍ଷିକ ସାଧାରଣ ବିଜ୍ଞାପନୀ କମିଶନ ସାହେବ ପଠାଇଥିଲେ । ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ତାହା ପାଠକରି ତହିଁ ବିଷୟରେ ଯାହା ଅଭିମତ ପ୍ରକାଶ କରିଅଛନ୍ତି ଗତ ସପ୍ତାହର କଲିକତା ଗେଜେଟରେ ତାହା ପ୍ରକାଶିତ ହୋଇଅଛି । ଆମ୍ଭେମାନେ ତହିଁର ସାରାଂଶ ପାଠକମାନଙ୍କୁ ଜଣାଉଅଛୁଁ । ଏହିଁରୁ ସମସ୍ତେ ଜାଣି ପାରିବେ ଯେ ଗବର୍ଣ୍ଣମେଣ୍ଟ ଓଡ଼ିଶାର ଅବସ୍ଥା କି ପର୍ଯ୍ୟନ୍ତ ମାତ୍ରରେ ଜାଣନ୍ତି ଲେଫ୍‌ଟେନାଣ୍ଟ ଗବର୍ଣ୍ଣର ଆପଣା ଅଭିମତ ବ୍ୟକ୍ତ କରିବା ପୂର୍ବେ ଶ୍ରୀଯୁକ୍ତ ରେବେନସା ସାହେବ କମିଶନରଙ୍କୁ ଧନ୍ୟବାଦ ଦେଇ କହିଅଛନ୍ତି କି ଓଡ଼ିଶାର ଅବସ୍ଥା ସେ ଉତ୍ତମରୂପେ ଜାଣିଅଛନ୍ତି ଏବଂ ଆପଣା ଅଧୀନସ୍ଥ ଲୋକଙ୍କ ହିତ ସକାଶେ ସେ ସର୍ବଦା ଯତ୍ନଶୀଳ ଅଛନ୍ତି ଓ ଆମ୍ଭମାନଙ୍କ ବିବେଚନାରେ ତାହା ଯଥାର୍ଥ ଅଟେ ।

ଲେଫ୍‌ଟେନେଣ୍ଟ ଗବର୍ଣ୍ଣର କହିଅଛନ୍ତି ଯେ ଗତ କେତେକ ବର୍ଷରୁ ପ୍ରତି ବର୍ଷ ଉତ୍ତମ ଫସଲ ଓଡ଼ିଶାରେ ହେଉଅଛି ଏବଂ ଥାନଲୁଗା ଓ ଅନ୍ୟାନ୍ୟ ଦ୍ରବ୍ୟର ଆମଦାନୀ ବୃଦ୍ଧି ହେଉଅଛି । ଏଥିରେ ଲୋକଙ୍କ ଅବସ୍ଥା ବର୍ଷକୁ ବର୍ଷ ଉନ୍ନତ ହେଉଅଛି ତଥା ; ମାଙ୍ଗବାହନ ପରିବର୍ତ୍ତିରେ ବର୍ତ୍ତମାନ ସବସବରେ ପିତ୍ତଳ ବାସନ ବ୍ୟବହାର ହେଉଅଛି ଓ ସ୍ତ୍ରୀ ଓ ବାଳକଙ୍କର ଅଳଙ୍କାର ବୃଦ୍ଧି ହେଉଅଛି । କାରିଗରମାନଙ୍କ ମଜୁରୀ ଏବଂ ଲୁଣର ଖର୍ଚ୍ଚ ବଢ଼ୁଅଛି ଏବଂ ଲୋକଙ୍କର ଆଦରଣୀୟ ଭୋଗ ଅର୍ଥାତ୍ ଅଫିମ ବର୍ଷକୁ ବର୍ଷ ଅଧିକ ଖର୍ଚ୍ଚ ହେଉଅଛି । ଏ ସମସ୍ତ ସୌଭାଗ୍ୟର ଚିହ୍ନ ଅଟଇ । କେବଳ ନିର୍ଦ୍ଦିଷ୍ଟ ବେତନରେ ନିର୍ବାହ କରୁଥିବା ନଗରବାସିମାନେ କ୍ଲେଶ ପାଉଅଛନ୍ତି କାରଣ ଉତ୍ତମ ଫସଲ ହେଲେ ମଧ୍ୟ ଏମାନେ ଶସ୍ତା ରେ ଦ୍ରବ୍ୟ କିଣିବାକୁ ପାଉନାହାନ୍ତି । ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ଲେଖିଅଛନ୍ତି ଯେ ବାଲେଶ୍ୱର ଓ କଟକ ଅପେକ୍ଷା ପୁରୀରେ ଉନ୍ନତିର ଚିହ୍ନ ଅଳ୍ପ ଦେଖାଯାଏ ଓ ପୁରୀର ବାଣିଜ୍ୟ ମଧ୍ୟ ଅଳ୍ପ ଅଟଇ ।

ଗତବର୍ଷ କଟକରେ ଦୁଇଲକ୍ଷ ମହଣ, ପୁରୀରେ ୯୬୦୦୦ ମହଣ ଓ ବାଲେଶ୍ୱରରେ ପ୍ରାୟ ୯୯୦୦୦ ମହଣ ଲୁଣ ଖର୍ଚ୍ଚ ହୋଇଥିଲା । ଲୋକସଂଖ୍ୟା ଅନୁସାରେ କଟକରେ ପ୍ରତିଜଣ ସେ ୫।୵ ପୁରୀରେ ସେ ୫॥୵ ଓ ବାଲେଶ୍ୱରରେ ସେ ୫୵ ଲୁଣଖର୍ଚ୍ଚ କରିଅଛନ୍ତି ।

ତାଳଚେରଠାରେ ପଥର କୋଇଲା ଖଣି ବାହାରିଥିଲା ମାତ୍ର ପରୀକ୍ଷା କରିବାରୁ ଦେଖାଗଲା ଯେ ସେଠାରେ ବାଣିଜ୍ୟ ଯୋଗ୍ୟ ଅଧିକ ପରିମାଣରେ କୋଇଲା ମିଳିବାର ଆଶା ନାହିଁ ଓ ସେ କୋଇଲା ମଧ୍ୟ ଅତି ନିକୃଷ୍ଟ ଅଟଇ ।

ଓଡ଼ିଶାର ଶ୍ରୀବୃଦ୍ଧି ବାଣିଜ୍ୟର ଉନ୍ନତିରୁ ଉତ୍ତମରୂପେ ପ୍ରକାଶ ପାଉଅଛି । ସନ ୧୮୭୯ । ୮୦ ସାଲରେ ଓଡ଼ିଶାର ନାନା ଜିଲ୍ଲାରେ ତଳଲିଖିତ ରୂପେ ବାଣିଜ୍ୟ ହୋଇଥିଲା, ଯଥା :—

| | ଆମଦାନୀ | ରପ୍ତାନୀ |
|---|---|---|
| କଟକ | ଟ ୩୧୦୨୬୬୬ | ଟ ୧୮୬୨୭୦ |
| ପୁରୀ | ଟ ୪୮୩୧୦ | ଟ ୨୨୫୨୪୪ |
| ବାଲେଶ୍ୱର | ଟ ୩୫୬୨୫୨ | ଟ ୩୬୪୦୬୦ |

ଏ ବାଣିଜ୍ୟ କ୍ରମଶଃ ବୃଦ୍ଧି ହୋଇ ସନ ୧୮୭୫।୭୬ ସାଲରେ ତଳ ଲିଖିତ ଅଙ୍କ ପର୍ଯ୍ୟନ୍ତ ଉଠିଥିଲା ଯଥା :—

| | ଆମଦାନୀ | ରପ୍ତାନୀ |
|---|---|---|
| କଟକ | ଟ ୧୩୮୦୬୫୩ | ଟ ୧୨୭୨୫୨୪ |
| ପୁରୀ | ଟ ୨୦୨୫୯ | ଟ ୨୦୦୮୪ |
| ବାଲେଶ୍ୱର | ଟ ୨୦୩୮୭୨ | ଟ ୧୭୯୯୯୫୭ |

ଲେଫଟେନେଣ୍ଟ ଗବର୍ଣ୍ଣର ବୋଲନ୍ତି କି ଆମଦାନୀର ବୃଦ୍ଧିରୁ ଲୋକଙ୍କର ସୌଭାଗ୍ୟର ପରିଚୟ ମିଳୁଅଛି ମାତ୍ର ଆମଦାନୀଠାରୁ ରପ୍ତାନୀ ଊଣା ପଡ଼ିବାରୁ ଆମ୍ଭେମାନେ ଅନୁମାନ କରୁଅଛୁଁ ଯେ ଦେଶରେ ଧନ ସଞ୍ଚୟ ହୋଇ ପାରୁନାହିଁ। କେବଳ ଲୋକଙ୍କର ସ୍ୱଚ୍ଛନ୍ଦତା ପୂର୍ବାପେକ୍ଷା ବଢ଼ିଅଛି ନୋହିଲେ ଅଧିକ ଧନବାନ ହୋଇବାର ବୋଲି ଯାଇ ନପାରେ । ବିଶେଷତଃ ଯେତେବେଳେ ସ୍ମରଣ କରିବାକୁ ହୁଅଇ ଯେ ଉଭୟ ଆମଦାନୀ ଓ ରପ୍ତାନୀ କାରବାର ଅଧିକାଂଶରେ ବିଦେଶୀୟମାନଙ୍କ ହାତରେ ଅଛି ସେତେବେଳେ ଅବଶ୍ୟ ବୋଲିବାକୁ ହେବ ଯେ ବାଣିଜ୍ୟର ଉନ୍ନତିଦ୍ୱାରା ଏ ଦେଶରେ ଲୋକଙ୍କର ଯେପରି ଉନ୍ନତି ହେବାର ଆଶା ହୁଅଇ ତାହା କାର୍ଯ୍ୟତଃ ହେଉନାହିଁ। ରପ୍ତାନୀ କାରବାର ବର୍ଷକୁ ବର୍ଷ ବୃଦ୍ଧି ହେବାରୁ ଚଷାଙ୍କର ସୌଭାଗ୍ୟ ହୋଇଅଛି ଏତିକ ଫଳ ଦେଖାଯାଏ ନତୁବା ଅପର ଶ୍ରେଣୀ ଲୋକଙ୍କ ପ୍ରତି ବାଣିଜ୍ୟର ବିସ୍ତାର ବିଶେଷ ହିତକର ହୋଇନାହିଁ।

ଚାନ୍ଦବାଲିବାଟେ କଲିକତାକୁ ଯିବା ଆସିବାର ସୁବିଧା ହେବାରୁ ପ୍ରତିବର୍ଷ ବହୁତ ଲୋକ ଏ ଦୁଇସ୍ଥାନ ମଧ୍ୟରେ ଗମନାଗମନ କରୁଅଛନ୍ତି. ଏବଂ ବର୍ଷକୁ ବର୍ଷ ଏହା ବୃଦ୍ଧି ହେଉଅଛି । ସନ ୧୮୭୩।୭୪ ରେ ୬୨୦୮୦୩ ଜଣ ଚାନ୍ଦବାଲିକୁ ଆସିଥିଲେ ଓ ୨୪୯୭୦ ଜଣ ସେଠାରୁ କଲିକତାକୁ ଯାଇଥିଲେ। ଗତବର୍ଷ ଅର୍ଥାତ୍ ସନ ୧୮୭୫।୭୬ରେ ୩୩୭୮୬ ଜଣ ଆସିଥିଲେ ଓ ୩୦୦୧୮ ଜଣ ଯାଇଥିଲେ। ବର୍ଷକୁ ବର୍ଷ ଅଧିକ ଓଡ଼ିଆ କଲିକତାକୁ ଯିବାଆସିବା କରିବା ଦ୍ୱାରା ଅନେକ ହିତସାଧନ ହେବାର ସମ୍ଭାବନା ଥିଲା ମାତ୍ର ଦେଖାଯାଏ ଯେ ନମ୍ନ ଶ୍ରେଣୀର ଲୋକ ଅଧିକାଂଶରେ ଯାତାୟାତ କରନ୍ତି। ଏଥିରେ ଅଧିକ ଉନ୍ନତିର ଆଶା କରିବା କିପରି ହୋଇପାରେ ?

ଓଡ଼ିଶାର କେତେକ ନଗର ଓ ମୋଫସଲରେ ଜନ୍ମ ମୃତ୍ୟୁର ତାଲିକା ପ୍ରସ୍ତୁତ ହୁଅଇ। ଲେଫଟେନେଣ୍ଟ ଗବର୍ଣ୍ଣର ସେ ତାଲିକା ସବୁକୁ ମନୋନୀତ ପ୍ରକାର ହୋଇଥିବାର ବୋଲନ୍ତି ମାତ୍ର କମିଶନର ସାହେବ ସେ ସବୁକୁ ଯଥାର୍ଥ

ବୋଲି ବିଶ୍ୱାସ କରନ୍ତିନାହିଁ । ଏଥିରେ ଗବର୍ଣ୍ଣମେଣ୍ଟ କମିଶନରଙ୍କୁ କହିଅଛନ୍ତି କି ଯେବେ ତାଲିକାମାନ ଭୁଲଅଛି ତେବେ ସେ ଦୋଷ ତାହାଙ୍କର ଅଟଇ କାରଣ ସେ ଆପଣା ଅଧିନସ୍ଥ କର୍ମଚାରୀଙ୍କୁ ସାବଧାନ ପୂର୍ବକ କାର୍ଯ୍ୟ କରିବାକୁ ଅନୁଜ୍ଞା କଲେ ଅବଶ୍ୟ ଶୁଦ୍ଧ ତାଲିକାମାନ ପ୍ରାପ୍ତ ହେବ । ଯେଉଁ ତାଲିକା ପ୍ରସ୍ତୁତ ହୋଇଅଛି ତହିଁର ଫଳ ଯଥା :—

| | ମୃତ୍ୟୁ ବାର୍ଷିକ ୧୦୦୦ ଲୋକ ମଧ୍ୟରେ | | ଜନ୍ମ ବାର୍ଷିକ ୧୦୦୦ ଲୋକ ମଧ୍ୟରେ | |
|---|---|---|---|---|
| | ମୋଫସଲରେ | ନଗରରେ | ମୋଫସଲରେ | ନଗରରେ |
| ବାଲେଶ୍ୱର | ୨୪.୩୧ | ୩୩.୧୮ | ୪୨.୩୩ | ୩୦.୧୦ |
| କଟକ | ୨୩.୬୭ | ୩୨.୯୭ | ୪୮.୦୨ | ୩୯.୭୨ |
| ପୁରୀ | ୨୮.୮୫ | ୨୫.୨୦ | ୪୧.୨ | ୨୨.୩୮ |

ଓଡ଼ିଶାରେ ସନ ୧୮୭୫ । ୭୬ ସାଲରେ ତଳଲିଖିତ ରୂପେ ରାଜସ୍ୱ ଆଦାୟ ହୋଇଥିଲା, ଯଥା :—

| | |
|---|---|
| ଭୂମିକର | ଟ୧୫୨୪୦,୨୯ |
| ଲୁଣର ମାସୁଲ | ଟ୨୨୧୧୪୭୨ |
| ଷ୍ଟାମ୍ପ ମାସୁଲ | ଟ୨୨୨ ୦୦ |
| ମାଦକ ଦ୍ରବ୍ୟର ମାସୁଲ | ଟ୨୯୩୭୬୫ |
| ଅଫିମ | ଟ୧୯୭୨୬୧ |
| | ଟ ୩୧୧୪୭୩୪ |

କେବଳ ପୂର୍ବଠାରୁ ମାସୁଲ ଭିନ୍ନ ଊଣା ହେବାରୁ ଲବଣରେ ଏକଲକ୍ଷ ଟଙ୍କା କ୍ଷତି ହୋଇଅଛି ନଚେତ୍ ଅନ୍ୟ ସମସ୍ତ ପ୍ରକାର ରାଜସ୍ୱ ଗତବର୍ଷ ଓ ପୂର୍ବବର୍ଷ ମାନଙ୍କଠାରୁ ବଢ଼ିଅଛି ।

ଲେଫ୍‌ଟେନେଣ୍ଟ ଗବର୍ଣ୍ଣର କହିଅଛନ୍ତି କି ଓଡ଼ିଆମାନେ ବସ୍ତ୍ର ଆସୁଥିଆନ୍ତି ଓ ପଦ୍ୟପି କି ଆସୁର ଦର ବଢ଼ିଅଛି ତଥାପି ଏଦ୍ରବ୍ୟର ଖର୍ଚ୍ଚ ଊଣା ପଡ଼ନାହିଁ ।

ଇରିଗେସନ ଇଲାକାରେ କାର୍ଯ୍ୟ ଏବର୍ଷ ଭଲ ହୋଇ ନଥିଲା । ଜଳ ନେବାର ବିଶେଷ ପ୍ରୟୋଜନ ହୋଇ ନଥିଲା ଏବଂ ନୌକା ମସୁଲ ମଧ୍ୟ ଊଣା ପଡ଼ିଅଛି । ସଡ଼କ ଓ ଗମନାଗମନର ସୁଯୋଗ ସମ୍ପର୍କରେ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ଲେଖିଅଛନ୍ତି କି କେଉଁଝର ଓ ମୟୂରଭଞ୍ଜ ରାଜାମାନେ ଆପଣା ବ୍ୟୟରେ ସଡ଼କମାନ ପ୍ରସ୍ତୁତ କରି ଏକ ବୃହତ୍ ଭୂମିଖଣ୍ଡର ସୁବିଧା କରିଅଛନ୍ତି । ଏପର ପଥକରର ଉଦ୍ଦେଶ୍ୟ ଲୋକେ ବୁଝିଅଛନ୍ତି ଓ ଜମିଦାରମାନେ ତଦନୁସାରେ କର୍ମ କରୁଅଛନ୍ତି ।

ଶିକ୍ଷା ସମ୍ପର୍କରେ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ଲେଖିଅଛନ୍ତି କି ବାଲେଶ୍ୱର ଜିଲ୍ଲା ଏ ପକ୍ଷରେ ଅଗ୍ରସର ହୋଇଅଛି । ଶ୍ରୀଯୁକ୍ତ ରେଭେନ୍‌ସା ସାହେବ କେତେଗୁଡ଼ିଏ ପ୍ରଥମ ଶିକ୍ଷାର ପୁସ୍ତକ ଓଡ଼ିଆ ଭାଷାରେ ପ୍ରସ୍ତୁତ କରାଇ ଥିବାରୁ ଅତ୍ୟନ୍ତ ଧନ୍ୟବାଦର ପାତ୍ର ହୋଇଅଛନ୍ତି ଏବଂ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ଭରସା କରନ୍ତି କି ଜଣେ ଡେପୁଟୀ କଲେକ୍ଟର ଏବଂ ଓଡ଼ିଶାର ଲୋକ ଶିକ୍ଷାବିଭାଗର ଇନସ୍ପେକ୍ଟର ପଦରେ ନିଯୁକ୍ତ ହୋଇଥିବାରୁ ଶିକ୍ଷାର ବିଶେଷ ଉନ୍ନତି ହେବାର ସମ୍ଭାବନା ଅଛି । କଟକ କଲେଜ ସକାଶେ ଯେଉଁମାନେ ଭେଟା ଦେଇଅଛନ୍ତି ତାହାଙ୍କ ମଧ୍ୟରେ ବାବୁ ନିମାଇ ଚରଣ ବୋଷ, ବାବୁ ବୃନ୍ଦାବନ ଚନ୍ଦ୍ର ମଣ୍ଡଳ, ରାଜା ଶ୍ୟାମାନନ୍ଦ ଦେ ବାହାଦୁର ଏବଂ ବାବୁ ମଦନ ମୋହନ ଦାସ ଅଧିକ ଟଙ୍କା ଦେଇଅଛନ୍ତି । କଟକ ଡାକ୍ତରଖାନାର କାର୍ଯ୍ୟ ନିର୍ବାହ ସମ୍ପର୍କରେ ଡାକ୍ତର ଷ୍ଟିଵାର୍ଟ ସାହେବଙ୍କର ପ୍ରଶଂସା ହୋଇଅଛି ।

ଜିଲ୍ଲାର ମାଜିଷ୍ଟ୍ରେଟମାନେ ଅନରେରି ମାଜିଷ୍ଟ୍ରେଟଙ୍କ ଠାରୁ ସାହାଯ୍ୟ ପାଇଥିବାର ସ୍ୱୀକାର କରିବାରେ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ଆନନ୍ଦିତ ହୋଇଅଛନ୍ତି । ଜମିଦାରଙ୍କ ଚରିତ୍ର ବିଷୟରେ ଜିଲ୍ଲା ହାକିମମାନେ ଉତ୍ତମ ରିପୋର୍ଟ କରିଅଛନ୍ତି ଏବଂ ରାଜା ଶ୍ୟାମାନନ୍ଦ ଦେ ବାହାଦୁର, ବାବୁ ନିମାଇ ଚରଣ ବୋଷ, ବାବୁ ବୈକୁଣ୍ଠନାଥ ଦେ, ବାବୁ ବୈଦ୍ୟନାଥ ପଣ୍ଡିତ, ମହନ୍ତ ନାରାୟଣ ଦାସ ଓ ସୁକିନ୍ଦାର ଜମିଦାରଙ୍କର ସୁଖ୍ୟାତି କମିଶନର ସାହେବ ଲେଖିଅଛନ୍ତି ।

ଆମ୍ଭମାନଙ୍କ ବିବେଚନାରେ ଏବର୍ଷର ରିପୋର୍ଟରେ କମିଶନର ସାହେବ ବାଲେଶ୍ୱର ପକ୍ଷରେ ଢଳିଅଛନ୍ତି ଓ କଟକ କଲେଜ ସକାଶେ ଭେଟା ଦେବା ଏବଂ ଜମିଦାର ମଧ୍ୟରେ ପରିଗଣିତ ହେବା ବିଷୟରେ କେବଳ ବାଲେଶ୍ୱର ବାସିଙ୍କର ଅଧିକ ସୁଖ୍ୟାତି ହେବା ଅନ୍ୟାନ୍ୟ ଜିଲ୍ଲାର ଲୋକଙ୍କ ପ୍ରତି ଅବିଚାର ହୋଇଅଛି ସନ୍ଦେହ ନାହିଁ । କଲେଜ ସକାଶେ ବାଲେଶ୍ୱର ଜମିଦାରମାନେ ସର୍ବାପେକ୍ଷା ଅଧିକ ଭେଟା ଦେଇନାହାନ୍ତି । କଟକର ଜମିଦାରମାନେ ଅନେକ ଟଙ୍କା ଦେଇଅଛନ୍ତି ଓ ବର୍ଦ୍ଧମାନ ଜମିଦାରଙ୍କୁ ଛାଡ଼ିଦେଲେ ସୁନ୍ଦା ଚୌଧୁରୀ ବିଶ୍ୱନାଥ ଦାସ ଏକହଜାର ଟଙ୍କା ଦେଇ ଅଛନ୍ତି । ବାଲେଶ୍ୱରରେ ଏହାଙ୍କଠାରୁ କେହି ଅଧିକ ଭେଟା ଦେଇନାହିଁ ଆଉ ଏହା ଦୁଃଖର ବିଷୟ ଯେ କମିଶନର ସାହେବ ଏହାଙ୍କ ନାମ ନଲେଖି କେବଳ ବାଲେଶ୍ୱରର ତିନି ଚାରି ଜଣ ଭଦ୍ର ଲୋକଙ୍କର ନାମ ଲେଖିଅଛନ୍ତି । ଉତ୍ତମ ଜମିଦାରଙ୍କ ନାମ ଲେଖିବାରେ ମଧ୍ୟ ଏହିପରି ତ୍ରୁଟି ହୋଇଅଛି । ଯେବେ ଏପରି ନାମ ଲେଖିବା ଆବଶ୍ୟକ ତେବେ ସାବଧାନ ପୂର୍ବକ ଭଲ ୨ ଜମିଦାରଙ୍କ ନାମ ଲେଖିବା ଉଚିତ୍ [illegible] ଏକ ଜଣର ନାମ ଲେଖି ଆଉ ଜମିଦାରଙ୍କୁ ଛାଡ଼ିଦେବା ଭଲ ହୋଇନାହିଁ । ଏଥିରେ ଭଲ ଜମିଦାରଙ୍କର ଅକାରଣ ମନୋଦୁଃଖ ଓ ନିରୁତ୍ସାହ ଜନ୍ମିପାରେ ।

## ( ୧୧ଶ ଭାଗ, ୧୪ । ୧୦ । ୧୮୭୭, ସଂଖ୍ୟା ୪୧ )

୪୯୬ । ପ୍ରାପ୍ତ ।

ଗତ ବର୍ଷରେ ଶ୍ରୀ ଜଗନ୍ନାଥଦେବ ରତ୍ନସିଂହାସନରୁ ଅନ୍ୟସ୍ଥାନରେ ଅବସ୍ଥିତକର ଉକ୍ତ ଦେବଙ୍କର ନିବେଦିତ ଅନାଦିମାନଙ୍କୁ ଯେଉଁ ବ୍ରାହ୍ମଣମାନେ ଭୋଜନ ଓ ସେବନ କରିଥିଲେ ସେହି ବ୍ରାହ୍ମଣମାନଙ୍କୁ ଷୋଡ଼ଶ ଶାସନସ୍ଥ ପଣ୍ଡିତ ଓ ଶିଷ୍ଟ ଦଣ୍ଡୀ ବ୍ରହ୍ମଗୃହୀମାନେ ସର୍ବଭୁକ୍ତ ପଂକ୍ତି ବାହ୍ୟ କରିଥିଲେ । ସେମାନେ ଏହି ଅପରାଧରୁ ମଧ୍ୟ ଅପମାନ ଓ ଆପଣାର ଅଜ୍ଞତା ସ୍ୱୀକାରକରି କେବଳ ଆଶାରେ ମାତ୍ର କାଳଯାପନ କରିଆସିଲେ । ବର୍ତ୍ତମାନ ଶ୍ରୀ ଜଗନ୍ନାଥ ମହାପ୍ରଭୁ ସ୍ୱ ସିଂହାସନରେ ଅବସ୍ଥିତ କରିବାରୁ ଉକ୍ତ ଷୋଡ଼ଶ ଶାସନ ପଣ୍ଡିତ ବ୍ରାହ୍ମଣ ଓ ଶିଷ୍ଟ ଦଣ୍ଡୀ ବ୍ରହ୍ମଗୃହୀ ଏମାନେ ଆନନ୍ଦପୂର୍ବକ ନିର୍ବିବାଦରୂପେ ମହାପ୍ରସାଦ କରି ଭୋଜନ ଓ ସେବନ କରୁଅଛନ୍ତି । ପୁନଶ୍ଚ ଯେଉଁ ବ୍ରାହ୍ମଣମାନେ ପଂକ୍ତି ବାହ୍ୟ ହୋଇଥିଲେ ସେମାନେ ପଣ୍ଡିତ ଓ ଦଣ୍ଡୀ ବ୍ରହ୍ମଗୃହୀ ଏମାନଙ୍କୁ ବହୁତ ପ୍ରାର୍ଥନା କରିବାରୁ ପଣ୍ଡିତ ଓ ବ୍ରହ୍ମଗୃହୀ ଅନୁଗ୍ରହ ପୂର୍ବକ ଏକ ଶିକ୍ଷା ଦେଲେ । ସେହି ଶିକ୍ଷାନୁସାରେ ପଂକ୍ତି ବହିଷ୍କୃତ ଓ କେବଳ ମାତ୍ରରେ କାଳଯାପନ କରିଥିବା ବ୍ରାହ୍ମଣମାନେ ସ୍ୱ ସ୍ୱ ଗ୍ରାମଦେବତାଙ୍କ ପାଇଁ ଗୁଣାଗାର ଦେଇ ଓ ଗାୟତ୍ରୀ ମନ୍ତ୍ର ଜପ କରି ସମାଜରେ ମିଶିଗଲେ ।

## ( ୧୧ଶ ଭାଗ, ୨୧ । ୧୦ । ୧୮୭୭, ସଂଖ୍ୟା ୪୨ )

୪୯୭ । ସାପ୍ତାହିକ ସମ୍ବାଦ ।

ପୁରୀର କଲେକ୍ଟର ଶ୍ରୀଯୁକ୍ତ ଆର୍ମଷ୍ଟ୍ରଂ ସାହେବ ଗତ ରବିବାର ସେଠାରେ ପହୁଞ୍ଚି ସୋମବାର କାର୍ଯ୍ୟଭାର ଗ୍ରହଣ କଲେ ଓ ପୁରୀର ଏକ୍‌ଟିଂ କଲେକ୍ଟର ଗତ ବୁଧବାର ଏ ନଗରଦେଇ ହିମ୍ମତ ରୋଡକୁ ଚାଲିଗଲେ । ଏ ମହାତ୍ମା ରଙ୍ଗପୁରରେ ନିଯୁକ୍ତ ହୋଇଅଛନ୍ତି ।

## ( ୧୧ଶ ଭାଗ, ୪ । ୧୧ । ୧୮୭୭, ସଂଖ୍ୟା ୪୪ )

୪୯୮ । ନୂତନ ଦାଖଲ ଖାରଜ ଆଇନ ।

ନୂତନ ଦାଖଲ ଖାରଜ ଆଇନ ଲୋକଙ୍କୁ ବ୍ୟସ୍ତ କରିବାର ଦେଖାଯାଏ । ଓଡ଼ିଶାର ଅଧିକାଂଶ ଲୋକଙ୍କର ଉଣା ଅଧିକରେ ଭୂମି ଅଛି ଓ ଅନେକ ଲୋକ ହେଲା

ଅଥବା ଅସୁବିଧା ହେତୁ ଦାଖଲ ଖାରଜ କରାଇ ନାହାନ୍ତି । ବର୍ତ୍ତମାନ ସମସ୍ତଙ୍କୁ ଦାଖଲ ଖାରଜ କରାଇବାକୁ ହେବ । କଲେକ୍ଟର ସାହେବ ବିଜ୍ଞାପନ ଦେଇ ଓ ଦର-ଖାସ୍ତର ଫରମ ଛପା କରାଇ ପ୍ରସ୍ତୁତ ଅଛନ୍ତି ଓ ଏହି ଛଅମାସ ମଧ୍ୟରେ କେତେ ଦର-ଖାସ୍ତ ଯେ ପଡ଼ିବ ତାହାର କଳନା ହେଉନାହିଁ । ଲାଟବନ୍ଦୀ ଗଲେ ଲୋକେ ଏ କର୍ମରେ ଲାଗିବେ ଓ ରୋଡ଼ସେସ ପଡ଼ୁଆର ଓ ଦାଖଲ ଖାରଜ ଜମିଛି କାଗଜ ସଙ୍କଳ କରିବାକୁ ଅବସର ପାଇବେ ନାହିଁ । ସରକାରଙ୍କର ଏଥିରେ ବିଲକ୍ଷଣ ଲାଭହେବ ଓ କଲେକ୍ଟରୀ ମହକୁମାର କାର୍ଯ୍ୟ ମଧ୍ୟ ବୃଦ୍ଧିହେବ । ଆମ୍ଭେମାନେ ଆଇନରେ ଦେଖିଅଛୁଁ ଯେ ଟ୧୦୦ଙ୍କା ପର୍ଯ୍ୟନ୍ତ ସଦର ମହକୁମାଯୁକ୍ତ ମହାଲମାନ ଓ ପଗୃଶ ମାଣରୁ ଊଣା ଲାଖରାଜ ସମସ୍ତ ଗଭର୍ଣ୍ଣମେଣ୍ଟ ଇଚ୍ଛାକଲେ ଛାଡ଼ଦେଇ ପାରନ୍ତି । ଯେବେ ଗବର୍ଣ୍ଣମେଣ୍ଟ ସେ ବିଧାନାନୁସାରେ କାର୍ଯ୍ୟ କରିଥାନ୍ତେ ତାହାହେଲେ ଆପାତତଃ ଅନେକ ଲୋକଙ୍କର ଉପକାର ହୋଇଥାନ୍ତା । କାରଣ କ୍ଷୁଦ୍ର କ୍ଷୁଦ୍ର ଜମିଦାର ଓ ଲାଖରାଜଦାରମାନେ (ଏହାଙ୍କର ସଂଖ୍ୟା ଅଧିକ ଅଟଇ) ଦାଖଲ ଖାରଜରଦାୟରୁ ରକ୍ଷା ପାଇଥାନ୍ତେ । ବଡ଼ ଜମିଦାର ଓ ଲାଖରାଜଦାରଙ୍କର ସବୁ ରେଜଷ୍ଟ୍ରୀ ହେଲା ଉତ୍ତାରୁ ହାକିମମାନେ ଅବସରକ୍ରମେ କ୍ଷୁଦ୍ର ସତ୍ତ୍ୱର ରେଜଷ୍ଟ୍ରୀ କରିବାକୁ ପ୍ରସ୍ତୁତ ହୁଅନ୍ତେ । ସ୍ଥାନୀୟ ହାକିମମାନେ ଏ ବିଷୟରେ ଯାହା ଯତ୍ନ କରୁନାହାନ୍ତି ବଡ଼ ଦୁଃଖର ବିଷୟ ଅଟଇ ଓ ଏତେବେଳେ ସୁଦ୍ଧା ଆମ୍ଭେ-ମାନେ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରୁଅଛୁଁ ଉକ୍ତ ବିଧାନାନୁସାରେ କାର୍ଯ୍ୟ କରନ୍ତୁ ।

## ( ୧୧ଶ ଭାଗ, ୧୧ । ୧୧ । ୧୮୭୬, ସଂଖ୍ୟା ୪୫ )

୪୯୮ । ବାଲିଯାତ୍ରା ।

ତୁଳମାସର ପୂର୍ଣ୍ଣିମାରେ ମହାନଦୀ ତଟବର୍ତ୍ତୀ ଗଡ଼ଗଡ଼ିଆ ଶିବାଳୟ ସନ୍ନିକଟରେ ଏ ନଗରୀସ୍ଥ ସ୍ତ୍ରୀ ପୁରୁଷମାନେ ସ୍ନାନଦାନ କାର୍ତ୍ତିକ ଓ ଦର୍ଶନ ବହୁକାଳରୁ କରିଆସୁଅଛନ୍ତି । ଏବର୍ଷ ମଧ୍ୟ ତଦ୍ରୂପ ହୋଇଥିଲା । ଅନ୍ୟାନ୍ୟ ବରଷଠାରୁ ବହୁତ ଲୋକ ସମବେତ ହୋଇଥିଲେ । କଟକରେ କୌଣସି ପ୍ରକାର ମେଳା ନାହିଁ । ପ୍ରକୃତ ପ୍ରସ୍ତାବରେ ବାଲିଯାତ୍ରାକୁ ଏକପ୍ରକାର ମେଳା କହିବାକୁ ହେବ । ଏହି ମେଳା ବହୁକାଳରୁ ପ୍ରଚ-ଳିତ । ଯଦ୍ୟ ପୁରାଣର ସୃଷ୍ଟିରୁ ଏହା ଯେ ପ୍ରକାଶ ହୋଇଅଛି ତହିଁରେ ବିଭୁକ୍ତ ନାହିଁ । କେହି କେହି କହନ୍ତି ଯେ ଚୈତନ୍ୟ ମହାପ୍ରଭୁ ପୁରୁଷୋତ୍ତମ ଗମନ ସମୟରେ ନଦୀପାର ହୋଇଥିବାରୁ ଗଡ଼ଗଡ଼ିଆଠାରେ ଏ ପର୍ବର ସୃଷ୍ଟି ହୋଇଅଛି । ସେ ବିଷୟ ଯାହା-ହେଉ ଏ ମେଳା କି ପ୍ରକାର ସମୃଦ୍ଧିଶାଳୀ ହେବ ସେ ବିଷୟରେ ଯତ୍ନ କରିବା କେତେ ଲୋକ କାଠଯୋଡ଼ିଠାରେ ଆଉ ଗୋଟିଏ ମେଳା ଅଲକାଳ ହେବ ସ୍ଥାପନ କରିଅଛନ୍ତି ।

ଏମାନେ କି ଆଧୁନିକ ଚୈତନ୍ୟ ହେବାର ସଙ୍କଳ୍ପ କରିଅଛନ୍ତି ? ମାତ୍ର ଏ ମେଳାରେ ସବାଙ୍ଗୀ ହେବାର ଯେ ଫଳ ତାହେ ଏହା କରିଦେଶ ବ୍ୟକ୍ତି ମାନଙ୍କେ ସ୍ୱୀକାର କରିବେ । ଗଡ଼ଗଡ଼ିଆଠାରେ ବାଲପାବା ସମାରୋହରେ ସମ୍ପନ୍ନ ହେବାର କହନ୍ତ । କଲକତାରେ ଯେପ୍ରକାର ମାଘ ମେଳା ହୁଏ ବାଲପାବା ସେହିପ୍ରକାର ଆଦର୍ଶରେ ସବାଦ୍ଧ କରିବାର ଏଠା ଭଦ୍ରଲୋକଙ୍କୁ ଦୁରୁହ ହେବ ତେବେ ସେମାନେ ଯେ କି ସକାଶେ ଉତ୍ସାହୀ ନହୁଅନ୍ତି ତାହା ଅନୁସନ୍ଧାନ କରିବାକୁ ହେଲେ ସ୍ୱୀକାର କରିବାକୁ ହେବ ଯେ ସେପ୍ରକାର ଉଦ୍‌ଯୋଗୀ କେହି ନାହିଁ, ଥିଲେ ମଧ୍ୟ ସମୃଦ୍ଧିଶାଳୀ ନାଗରିକ ଲୋକେ ଅକାତରରେ ସାହାଯ୍ୟ କରିବାକୁ କୁଣ୍ଠିତ ହେବେ ନୋହିଲେ ଚେଷ୍ଟାର ଅସାଧ୍ୟକ୍ରିୟା ନାହିଁ ।

ଏବର୍ଷ ଆମ୍ଭମାନଙ୍କ ମନରେ ଖ୍ରୀଷ୍ଟିଆନ ଓ ବ୍ରାହ୍ମମାନଙ୍କ ଉପଦେଶ ବାଲପାବାରେ ଶ୍ରବଣକରି ଦୁଇଗୋଟି ଭାବର ଉଦୟ ହୋଇଅଛି । ହିନ୍ଦୁଧର୍ମ ନିତାନ୍ତ ଦୃଢ଼ ହେଲେହେଁ କୌଣସିକ୍ରମେ ତାହା ଅଦ୍ୟାପି ଲୋପପ୍ରାପ୍ତ ହୋଇନାହିଁ; କେତେ ଅଂଶରେ ମତ ପରିବର୍ତ୍ତନ ହେଲେହେଁ ଏହି ଚନ୍ଦ୍ର ସୂର୍ଯ୍ୟରେ ହିନ୍ଦୁଧର୍ମର ମୂଲୋତ୍ପାଟନ ଯେ ହୁଏ ଏହା ସମ୍ଭବକୁ ଆସୁନାହିଁ । ହିନ୍ଦୁମାନେ ସମସ୍ତ ସ୍ଥାପିତ ଧର୍ମକୁ ଶ୍ରଦ୍ଧା କରନ୍ତି କାହାରି ହିଂସା କରନ୍ତିନାହିଁ ପୁଣି ଏମାନଙ୍କର ଅହିଂସା ପରମଧର୍ମ, ଯଦଚ ଖ୍ରୀଷ୍ଟିଆନ ପ୍ରଚାରମାନେ ନାନା ସ୍ଥଳରେ ଉପଦେଶ ଦେବାଦ୍ୱାରା ତହିଁର ଗୋଟିଏ ଅଙ୍ଗ ସ୍ୱରୂପ ଅଟନ୍ତି ତଥାଚ ସେଠାରେ ବ୍ରତ ଉଦ୍‌ଯାପନ କରୁଥିବା ହିନ୍ଦୁମାନଙ୍କୁ ତାହାଙ୍କ ଅନୁଷ୍ଠିତ କାର୍ଯ୍ୟର ବିପରୀତ କଥାକହି ମନଃପୀଡ଼ା ଦେବା ସେମାନଙ୍କର ନିଷ୍ଠୁରତା ବ୍ୟତିରେକେ କିଛି ନୁହଇ । ଏଥିରେ ଯେ କେତେଦୂର ପର୍ଯ୍ୟନ୍ତ ଫଳ ହେଉଅଛି ତାହା ଖ୍ରୀଷ୍ଟିଆନ ମିଶନାରିମାନେ ଉତ୍ତମରୂପେ ଜାଣନ୍ତି । ଉପଦେଶ ଦେବାର ଅନେକ ସମୟ ଅଛି ଦେଖି କାଳପାତ୍ର ବୁଝି ଉପଦେଶ ଦେଲେ କାହାର ଆପତ୍ତି ନାହିଁ ।

କେତେଗୁଡ଼ିଏ ବ୍ରାହ୍ମ ଧର୍ମାବଲମ୍ବୀ ଉପସ୍ଥିତ ହୋଇ ଉପଦେଶ ଦେଉଥିଲେ ଓ ସେମାନେ ଖ୍ରୀଷ୍ଟିଆନ ମାନଙ୍କର ପ୍ରତିଦ୍ୱନ୍ଦ୍ୱୀ ହୋଇଥିଲେ କି ନାହିଁ ଅମ୍ଭେମାନେ କହିନପାରୁଁ ମାତ୍ର ଦର୍ଶକମାନେ ଏହାଙ୍କୁ ଏକପ୍ରକାର ଖ୍ରୀଷ୍ଟିଆନ ସ୍ଥିର କରିଥିବାର ଭାବଭଙ୍ଗୀରୁ ଜଣା ଯାଉଥିଲା ।

## ( ୧୧ଶ ଭାଗ, ୨୪ । ୧୧ । ୧୮୭୭, ସଂଖ୍ୟା ୪୭ )

୪୦୦ । ଆମ୍ଭେମାନେ ଯାହା ଆଶଙ୍କା କରିଥିଲୁଁ କି ଏବର୍ଷ ଓଡ଼ିଶାରୁ ବହୁତର ଚାଉଳ ରପ୍ତାନି ହେବ ତାହା ପ୍ରତ୍ୟକ୍ଷ ଦେଖାଗଲଣି । ମହାଜନମାନେ ବହୁତର

ଚାଉଳ କିଣୁଥିବାରୁ ଦର କ୍ରମଶଃ ବୃଦ୍ଧି ହେଉଅଛି । ଏଥିରେ ପୁଣି ଗବର୍ଣ୍ଣମେଣ୍ଟଙ୍କ ସକାଶେ ଚାଉଳ କିଣିବାର ଜରୂର ହେଉଅଛି । ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଉକ୍ତ ପ୍ରଦେଶ ସକାଶେ କେତେ ଚାଉଳ କିଣି ନେବାପାଇଁ ତାରଡାକ ଯୋଗେ ସମ୍ବାଦ ଆସିଥିବାର ଶୁଣାଯାଏ, ଏବଧି ଏସମ୍ପର୍କରେ କିଛି କାର୍ଯ୍ୟ ହେବାର ଦେଖା ଯାଉନାହିଁ ମାତ୍ର ସମ୍ଭବ ହେଉଅଛି ଓ ସମସ୍ତ ଲକ୍ଷଣ ଦେଖା ଯାଉଅଛି ଯେ ଶୀଘ୍ର ବିସ୍ତର ଚାଉଳ ଖରିଦହୋଇ ମାନ୍ଦ୍ରାଜକୁ ଯିବ । ଉତ୍କଳଦର୍ପଣରୁ ଜଣାଗଲା ଯେ ବାଲେଶ୍ୱରରେ ମାରବାଡ଼ୀ ଓ ତେଲେଙ୍ଗା ମହାଜନମାନେ ଏତେ ଚାଉଳ କିଣୁଅଛନ୍ତି ଯେ ବର୍ଷାକାଳରେ ଯେମନ୍ତ ଉଚ୍ଚଦରରେ ଚାଉଳ ବିକ୍ରୟ ହେଉଥିଲା ବର୍ତ୍ତମାନ ମୂଲ୍ୟ ସେହିପରି ହୋଇଅଛି । ଅତ୍ୟନ୍ତ ଉତ୍ତମ କ୍ଷେତ ହୋଇଥିଲେହେଁ ଦର ନ୍ୟୁନ କରି ଶସ୍ତା ହେଉନାହିଁ । କିଣି-ଖିଆଙ୍କର ଏଥିରେ ବଡ଼ କଷ୍ଟ ହୋଇଅଛି ଓ ଆମ୍ଭର ହେବ ମାତ୍ର କୃଷିଙ୍କର ଲାଭଅଛି ଓ ଏମାନଙ୍କ ସଂଖ୍ୟା ଅଧିକ ସୁତରାଂ ସାଧାରଣ ଲାଭର କଥା । ତଥାପି ଦେଖିବାର ଉଚିତ ଯେମନ୍ତ କି ଅଧିକ ରପ୍ତାନି ଦ୍ୱାରା କିଣିଖିଆଙ୍କର ଅନାହାର ପୀଡ଼ା ନ ହୁଅଇ ।

— — —

୫୦୧ । ଦିଲ୍ଲି ଦରବାର

ତାଡ଼ିତାକରେ ସମ୍ବାଦ ଆସିଅଛି ଯେ ଦିଲ୍ଲି ଦରବାରରେ ଓଡ଼ିଶାର ତଳଲିଖିତ ଭଦ୍ରଲୋକମାନେ ତାହାଙ୍କ ନାମର ପାର୍ଶ୍ୱ ଲିଖିତ ପଦମାନ ପାଇ ଅଛନ୍ତି । ଯଥା ;—

ରାଜା କଲେ ମୟୁରଭଞ୍ଜ — ମହାରାଜା
,, ,, କେଉଁଝର — ମହାରାଜା
,, ,, ଆଳ — ରାଜା
,, ,, ସୁକିନ୍ଦା — ରାଜା
ବାବୁ ଶ୍ୟାମାନନ୍ଦ ଦେ ରାୟ ବାହାଦୂର — ରାଜା
,, କମାଇ ଚରଣ ବୋଷ — ରାୟ ବାହାଦୂର
,, ବୈଦ୍ୟନାଥ ପଣ୍ଡିତ — ରାୟ ବାହାଦୁର

କି ହେତୁରୁ ଏମାନଙ୍କୁ ପଦ ଦିଆଗଲା ଆମ୍ଭେମାନେ ନଜାଣୁ ଏବଂ ମଧୁପୁର ରାଜା, ପର୍ଜିଙ୍ଗର ଭଗବାନ ରାୟଙ୍କସିଂହ, ବାବୁ ଗୋଲକ ଚନ୍ଦ୍ର ବୋଷ ଓ ଏହିପରି ଆଉ କେତେକ ଲୋକଙ୍କର କି ଅପରାଧ ହେଲା ଯେ ସେମାନେ କିଛି ପଦ ପାଇଲେ ନାହିଁ । ଯେବେ କିଛି ବିଶେଷ ଗୁଣ ପ୍ରକାଶେ ପଦ ଦିଆ ଯାଇଥାନ୍ତା ତାହାହେଲେ ବାହାର କିଛି କହିବାର ନ ଥିଲା କିନ୍ତୁ ଯେ ସ୍ଥଳେ ଦେଖା ଯାଉଅଛି ଯେ କୌଣସି ଉତ୍କୃଷ୍ଟ ଗୁଣ ବା କାର୍ଯ୍ୟର କାରଣ ନହୋଇ କେବଳ ଏ ମହୋତ୍ସବ ଉପଲକ୍ଷରେ କେତେ ଜଣଙ୍କୁ ପଦ ଦେବାର ଇଚ୍ଛାହେଲା ବୋଲି ଦିଆ ଯାଇଅଛି ସେ ସ୍ଥଳେ ସମସ୍ତ ଲୋକଙ୍କୁ ପଦ ଦେଲେ ଭଲ ହୋଇଥାନ୍ତା କାରଣ ଫଳ ଏକ ପ୍ରକାର ହୋଇଥାନ୍ତା । ବାସ୍ତବରେ ମୁଗଲବନ୍ଦୀର ସମସ୍ତ ରାଜାଙ୍କୁ ପଦ ଦିଆ ନ ଯାଇ କେବଳ ଆଳ ଓ ସୁକିନ୍ଦାଙ୍କୁ ଦେବାରେ ଅନ୍ୟ ରାଜାମାନଙ୍କର ମନୋଦୁଃଖ ହୋଇ-ବାରେ ବିଶେଷରେ ମଧୁପୁରର ରାଜା ଏପରି ପଦ ପାଇବାର ଅଧିକ ଯୋଗ୍ୟ ଥିଲେ ।

୫୦୨ । ପ୍ରଶଂସାପତ୍ର ପ୍ରାପ୍ତି ।

ଏ ଦରବାରରେ ତଳ ଲିଖିତ ବ୍ୟକ୍ତିମାନେ ପ୍ରଶଂସାପତ୍ର ପାଇ ଅଛନ୍ତି । ଯଥା ;—

ରାଜା କଲେ ସୁକିନ୍ଦା
ରାଜା କଲେ ମଧୁପୁର
ବାବୁ ଭଗବାନ ରାଏଟ ସିଂହ
ମହନ୍ତ ନାରାୟଣ ଦାସ

| | |
|---|---|
| ବାବୁ ଶିବ ପ୍ରସାଦ ସିଂହ | ବାବୁ ମଧୁସୂଦନ ଖଣ୍ଡିଆ |
| ,, ତାରକାନ୍ତ ବିଦ୍ୟାସାଗର | ” ରାମଚନ୍ଦ୍ର ଆଢ଼ |
| ,, ହରବଲ୍ଲଭ ବୋଷ | ” ଲୋକନାଥ ରାୟ |
| ,, ବୈଦ୍ୟନାଥ ପଣ୍ଡିତ | ବାବୁ ନାରକଲ ମିଶ୍ର ଜଗନ୍ନାଥ |
| ,, ରାଧାଶ୍ୟାମ ନରେନ୍ଦ୍ର | ବାବୁ ବୈକୁଣ୍ଠ ନାଥ ଦେ |
| ଚୌଧୁରୀ ବଶ୍ଵନାଥ ଦାସ | ,, କୈଳାସ ଚନ୍ଦ୍ରରାୟ ମହାଶୟ |
| ବାବୁ କହ୍ନାୟାଲଲ ପଣ୍ଡିତ | ,, ନିମାଇ ଚରଣ ବୋଷ |
| ,, ଲକ୍ଷ୍ମୀନାରାୟଣ ରାୟ ଚୌଧୁରୀ | ,, ରାଧା ଚରଣ ଦାସ |
| ବାବୁ କାଳୀପଦ ବନ୍ଦୋପାଧ୍ୟାୟ | ,, ଅବଦୁଲ ଗନି |
| , ମହେଶ ଚନ୍ଦ୍ର ବନ୍ଦୋପାଧ୍ୟାୟ | ,, ମଦନ ମୋହନ ଦାସ |
| ଚୌଧୁରୀ ସଦ୍ଦେବ ମହାପାତ୍ର | ,, ବନମାଳୀ ସିଂହ |
| ମୁନସି ରସୁଲ ବକ୍ସ | କାନସିଂହ କେଉଁଝର ସର୍ଦ୍ଦାର |
| ଚୌଧୁରୀ କାଶୀନାଥ ଦାସ | ଧନୁସିଂହ କନ୍ଧମାଳ ସର୍ଦ୍ଦାର |

ଏମାନେ କଏ କେଉଁମାନେ ଯୋଗ୍ୟତା ନିମିତ୍ତ ପ୍ରଶଂସାପତ୍ରମାନ ପାଇଲେ ତାହା କମିଶନର ସାହେବ ସଭାରେ ବ୍ୟକ୍ତ କରିଥିଲେ । ଆମ୍ଭେମାନେ ଆଗାମୀ ସପ୍ତାହରେ ତାହା ପ୍ରକାଶ କରିବୁଁ । ବର୍ତ୍ତମାନ ପାଠକମାନଙ୍କୁ ଅବସର ଦିଆଗଲା ଯେ ସେମାନେ ଯାହାଙ୍କ ବିଷୟରେ ଯାହା ଜାଣନ୍ତି ତାହା ବିଚାର କରି କଏ କେତେଦୂର ଯୋଗ୍ୟ ତାହା ସ୍ଥିର କରନ୍ତୁ । ଏଥିନିମିତ୍ତ ଅବସର ଦିଆଯିବାର ଆଉ ଏକ କାରଣ ଏହି ଯେ ପ୍ରଶଂସାପତ୍ର ପାଇଥିବା ବ୍ୟକ୍ତିଙ୍କ ମଧ୍ୟରେ ଏପରି ଅନେକ ଲୋକ ଅଛନ୍ତି ଯେ ସେମାନେ କି ସକାଶେ ତାହା ପାଇଅଛନ୍ତି ସ୍ୱୟଂ ଅବଧି ସ୍ଥିର କରି ପାରି ନାହାନ୍ତି ।

## ( ୧୬ଶ ଭାଗ, ୩ । ୨ । ୧୮୭୭, ସଂଖ୍ୟା ୫ )

୨୦୩ । ମହାରାଜା ସୁଢ଼ଳ ଦେବ ।

ସମ୍ବଲପୁର ଅନ୍ତର୍ଗତ ବାମଣ୍ଡା ଗଡ଼ର ରାଜା ମହାରାଜା ସୁଢ଼ଳ ଦେବ ଦିଲ୍ଲୀ ଦରବାରରୁ ଆପଣା ଗଡ଼କୁ ଫେରିବା ଉପଲକ୍ଷରେ ଗତ ସପ୍ତାହ ଏ ନଗରକୁ ଆସିଅଛନ୍ତି । ଶ୍ରୀକ୍ଷେତ୍ର ଦର୍ଶନ କରି ଉକ୍ତରୁ ଫେରିଯିବେ । ଦିଲ୍ଲୀରେ ଏହାଙ୍କୁ ଶ୍ରୀମତୀ ଭିକ୍ଟୋରିଆଙ୍କ ପ୍ରତିମୂର୍ତ୍ତି ଅଙ୍କିତ ଗୋଟିଏ ସୁନାର ତକମା ଓ ଗୋଟିଏ ଉକ୍ତ ଝଣ୍ଡା ବିଶେଷ ଅର୍ଥାତ୍ ଦରବାର ଉପଢୌକନ ମିଳିଅଛି ।

× × ×

## ( ୧୨ଶ ଭାଗ, ୧୦ । ୨ । ୧୮୭୭, ସଂଖ୍ୟା ୭ )

୬୪ । ମହାରାଜା ଭଗୀରଥି ମହୀନ୍ଦ୍ର ବାହାଦୁର

ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ଶ୍ରବଣ କଲୁଁ ଯେ ଢେଙ୍କାନାଳର ମହାରାଜା ଭଗୀରଥି ମହୀନ୍ଦ୍ର ବାହାଦୁର ଗତ ସୋମବାର ରାତ୍ରିଶେଷରେ ମାନବଲୀଳା ସମାପ୍ତକରି ସ୍ୱର୍ଗଲୋକକୁ ଗମନ କରିଅଛନ୍ତି । ମହାରାଜା ଆଜକୁ ଛଅମାସ ହେବ ଭଗନ୍ଦର ରୋଗରେ ପୀଡ଼ିତ ଥିଲେ ଡାକ୍ତର ସାହେବ ଅନେକ ପରିଶ୍ରମ କରି ତାହାଙ୍କୁ ଏକପ୍ରକାର ଆରୋଗ୍ୟ କରି ଆଣିଥିଲେ । ସମ୍ପୂର୍ଣ୍ଣରୂପେ ରୋଗ ଛମା ହୋଇ ନଥିଲା ଏଥିମଧ୍ୟରେ ରାଜବାଟୀର କାର୍ଯ୍ୟବଶତଃ ସେ କଟକକୁ ବିଜେକଲେ ଓ ଏଠାରେ ଡାକ୍ତର ସାହେବ ପୁନର୍ବାର ପୀଡ଼ା ସ୍ଥାନରେ ଅସ୍ତ୍ରଚାଳନ କଲେ । ଏଥର ମହାରାଜାଙ୍କୁ ଅଧିକ ବାଧିବାରୁ ସେ ସତ୍ୱର ଆପଣା ଗଡ଼କୁ ଫେରିଗଲେ । ସେଠାରେ ପହୁଞ୍ଚିଲା ଉତ୍ତାରୁ ଜ୍ୱର ହୋଇ ପରିଶେଷରେ ଏହି ଦୁର୍ଘଟନାଟି ଘଟିଲା । ଏ ଶୋକାବହ ସମ୍ବାଦ ଶୁଣି ନଗରବାସିମାନେ ଭାରି ସନ୍ତାପିତ ହୋଇ ଅଛନ୍ତି । ତାହାଙ୍କ ଗଡ଼ ଲୋକଙ୍କ କଥା ଅବା କି କହିବା । ସେମାନେ ନିତ୍ୟ ତାହାଙ୍କର ସ୍ନେହ ଦୟା ଓ ଉଦାର ସ୍ୱଭାବର ଫଳ ଭୋଗ କରୁଥିଲେ ସୁତରାଂ ତାହାଙ୍କର ଶୋକର ସୀମା କି ? ବାସ୍ତବରେ ମହାରାଜା ଭଗୀରଥି ମହୀନ୍ଦ୍ର ବାହାଦୁର ଗଡ଼ଜାତ ରାଜାମାନଙ୍କ ଶିରୋମଣି ଓ ଗଡ଼ଜାତ ଉନ୍ନତିର ପ୍ରଥମ ହେତୁ ଥିଲେ । ଅଗ୍ରେ ତାହାଙ୍କ ରାଜ୍ୟରେ ଚିକିତ୍ସାଳୟ ବିଦ୍ୟାଳୟ ସଡ଼କ ପ୍ରଭୃତି ସାଧାରଣ ହିତକାର୍ଯ୍ୟର ଅନୁଷ୍ଠାନ ହେଲା ଓ କଟକ ହାଇ-ସ୍କୁଲରେ ସେ ଅଗ୍ରେ ଛାତ୍ର ବୃତ୍ତି ସ୍ଥାପନ କରି ବିଦ୍ୟା ପ୍ରତି ତାହାଙ୍କର ପ୍ରଗାଢ଼ ଅନୁରାଗର ପରିଚୟ ସର୍ବସାଧାରଣଙ୍କୁ ଦେଲେ । ସେ ସ୍ୱୟଂ ଯେମନ୍ତ ସଂସ୍କୃତ ଭାଷାରେ ପଣ୍ଡିତ ଥିଲେ ତେମନ୍ତ ପଣ୍ଡିତମାନଙ୍କର ଯଥାର୍ଥ ସମ୍ମାନ କରୁଥିଲେ ଓ ତାହାଙ୍କ ସାହାଯ୍ୟରେ ଅନେକେ ଲୋକ ପ୍ରଧାନ ପଣ୍ଡିତ ହୋଇ ଉଠିଲେ । ତାହାଙ୍କର ବଦାନ୍ୟତା ଯେମନ୍ତ ଆୟ ବ୍ୟୟର ଶୃଙ୍ଖଳା ତେମନ୍ତ ଥିଲା । ପ୍ରଜାମାନେ କର ଭାର କଷ୍ଟ ଦେଉନଥିଲେ ଓ ତାହାଙ୍କ ପାଳନ ଓ ରକ୍ଷା ବିଷୟରେ ଏମନ୍ତ ସୁବିଚାର ପୂର୍ବକ କାର୍ଯ୍ୟ କରୁଥିଲେ ଯେ ମୋଗଲବନ୍ଦୀ ପ୍ରଜାଙ୍କ ଠାରୁ ସେମାନେ ସୁଖୀଥିଲେ । ଫଳତଃ ତାହାଙ୍କର ଗୁଣ କୀର୍ତ୍ତନ କରିବାକୁ ଆମ୍ଭମାନଙ୍କର ଏ କ୍ଷୁଦ୍ର ପତ୍ରିକାରେ ସ୍ଥାନ ନାହିଁ ତାହା ଅପରି-ସୀମ ଓ ଓଡ଼ିଶାର ଚତୁର୍ଦ୍ଦିଗରେ ପ୍ରକାଶ । ଏପରି ମହାରାଜାଙ୍କୁ ହରାଇବସି କାହାର ଚିତ୍ତ ସ୍ଥିର ହେବ ? ଆମ୍ଭେମାନେ ମହାରାଜାଙ୍କଠାରେ ବିଶେଷ ଋଣୀ କାରଣ ତାହାଙ୍କ ବଦାନ୍ୟତାରେ ଏ ଯନ୍ତ୍ରାଳୟର ଉନ୍ନତି ହୋଇଅଛି । ସାଧାରଣ ହିତ ତାହାଙ୍କର ଏକମାତ୍ର ବ୍ରତ ଥିଲା ଓ ଏମନ୍ତ ଲୋକଙ୍କୁ ପରମେଶ୍ୱର ଯାହା ବୃଦ୍ଧ ବୟସ ପର୍ଯ୍ୟନ୍ତ

ବନ୍ଧୁବାଲୁ ନଦେଲେ ଏହା ଓଡ଼ିଶାର ଦୁର୍ଭାଗ୍ୟ ଅଟଇ । ହାୟ ! ଆଉ କି ଓଡ଼ିଶା ଏପରି ରଜା ପାଇବ !

## ( ୧୨ଶ ଭାଗ, ୨୪ । ୨ । ୧୮୭୭ ସଂଖ୍ୟା ୮ )

୬୦୫ । ମୟୂରଭଞ୍ଜର ମହାରାଜା ।

ଏଥି ପୂର୍ବ ଉତ୍କଳ ଦର୍ପଣରେ ପ୍ରକାଶ ହୋଇଥିଲା ଯେ ମୟୂରଭଞ୍ଜର ମହାରାଜା ଆପଣା ରାଜ୍ୟର ଉନ୍ନତି ପକ୍ଷରେ ବଡ଼ ମନ୍ବାନ ହୋଇଅଛନ୍ତି । ଏହିମଧ୍ୟରେ ସେ ଗଡ଼ରେ ଗୋଟିଏ ଇଂରାଜୀ ଓ ଓଡ଼ିଆ ସ୍କୁଲ ଏବଂ ମୋଫସଲରେ ଗୋଟିଏ ଓଡ଼ିଆ ସ୍କୁଲ ସ୍ଥାପନ କରିଅଛନ୍ତି । ଗଡ଼ରେ ଗୋଟିଏ ଭଲ ଡାକ୍ତରଖାନା ହୋଇଅଛି ଏବଂ ଏକଜଣ ସିବିଲ ସରଜନ ଟ୪୫୦ଙ୍କା ବେତନରେ ଗଡ଼ଜାତରେ ନିଯୁକ୍ତ କରିଅଛନ୍ତି । ଏଥିରେ ସମ୍ବାଦିକ କହୁଅଛନ୍ତି କି ଏତେ ବେତନ ଦେଇ ଗୋରା ଡାକ୍ତର ପ୍ରଥମେ ରଖିବା ଉଚିତ ହୋଇନାହିଁ । ଅଳ୍ପ ବ୍ୟୟରେ ମହାରାଜା ଜଣେ କଳା ଡାକ୍ତର ରଖି-ଥିଲେ ଭଲ ହୋଇଥାନ୍ତା । ଆମ୍ଭମାନଙ୍କ ବିବେଚନାରେ ପ୍ରଥମେ ଉଚ୍ଚ ବେତନ ଦେଇ ଉପଯୁକ୍ତ ଲୋକ ରଖିବାର ଉଚିତ । ଏଥିରେ କାର୍ଯ୍ୟ ଭଲ ହେବ ଓ ଲୋକଙ୍କର ଭକ୍ତି ଜନ୍ମିବ । ଏପରିକି ସୁଦ୍ଧା ରୂପେ କର୍ମ ଚଳିଲେ ଆସିଷ୍ଟାଣ୍ଟ ସରଜନ ଜଣେ ନିଯୁକ୍ତ କଲେ କ୍ଷତି ହେବନାହିଁ । ଏପର ହେବେ ମହାରାଜା ସ୍ୱାସ୍ଥ୍ୟରକ୍ଷା ଇତ୍ୟାଦି ବିଷୟରେ ଡାକ୍ତର ସାହେବଙ୍କ ମତନେଇ ଯଥାସାଧ୍ୟ ଗୋଟିଏ ୨ ଭଲ ଉପାୟ ସ୍ଥିରକରି ତାହା କାର୍ଯ୍ୟରେ ପରିଣତ କରନ୍ତୁ ତାହାହେଲେ ଅଧିକା ବେତନ ଦେବା ବାଧିବ ନାହିଁ ବରଂ ତାହାର ଯଥାର୍ଥ ଫଳମାନ ଦେଖାଯିବ । ଏଛଡ଼ା ଏନଗରକୁ ଆସିଥିବାବେଳେ ଏ[illegible] ମେଡ଼ି-କାଲ ସ୍କୁଲ ଏବଂ କଲେଜକୁ ଟ୫୦୦୦ଙ୍କା ଦାନ କରିଅଛନ୍ତି । ଏହିରେ ଉତ୍କୃଷ୍ଟ ଛାତ୍ର-ମାନଙ୍କୁ ବୃତ୍ତି ଦିଆଯିବ । ମହାରାଜାଙ୍କର ସାଧାରଣ ହିତକର କାର୍ଯ୍ୟ ଏବଂ ଆପଣା ପ୍ରଜାଙ୍କ ଉନ୍ନତିରେ ଯତ୍ନଶୀଳ ହେବାର ଶୁଣି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇ-ଅଛୁଁ ଏବଂ ଭରସା କରୁଁ ଯେ ମହାରାଜା ଏହିପରି କାର୍ଯ୍ୟରେ ସୁଖ୍ୟାତି ଲାଭକରି ଓଡ଼ି-ଶାରେ ଯେମନ୍ତ ସର୍ବାପେକ୍ଷା ବଡ଼ରାଜ୍ୟର ଅଧିକାରୀ ହୋଇଅଛନ୍ତି ସେହିପରି ସୁ-କୀର୍ତ୍ତିରେ ଅଗ୍ରଗଣ୍ୟ ହେଉନ୍ତୁ ।

## ( ୧୨ଶ ଭାଗ, ୧୭ । ୩ । ୧୮୭୭, ସଂଖ୍ୟା ୧୧ )

୬୦୭ । ବୋର୍ଡର ପ୍ରଧାନ ମେମ୍ବର ଶ୍ରୀଯୁକ୍ତ ସର୍ ସାହେବ ଶୀଘ୍ର କର୍ମତ୍ୟାଗ କରିବେ ଏବଂ ଦ୍ୱିତୀୟ ମେମ୍ବର ଶ୍ରୀଯୁକ୍ତ ମନ୍ସ ସାହେବ ଛ ମାସ ଛୁଟୀ ନେବେ । ଏମାନଙ୍କ

କର୍ମରେ ଶ୍ରୀଯୁକ୍ତ ବକଲଣ୍ଡ ଏବଂ ଶ୍ରୀଯୁକ୍ତ ରେବନସା ସାହେବମାନେ ନିଯୁକ୍ତ ହେବାର ସମ୍ଭାବନା ଅଛି କିନ୍ତୁ ଡେଲି ନିୟୁସ ଶୁଣିଅଛନ୍ତି କି ଏକଜଣଙ୍କ କର୍ମରେ ବଙ୍ଗଳା ଗବର୍ଣ୍ଣମେଣ୍ଟର ସେକ୍ରେଟରୀ ରେନଲଡ ସାହେବ ନିଯୁକ୍ତ ହେବାର କଥା ଅଛି ଓ ଆଉ କେହି କହନ୍ତି କି ବକଲଣ୍ଡ ସାହେବ ବୋର୍ଡକୁ ଯିବାକୁ ଇଚ୍ଛା ନ କରନ୍ତି । ତାହାହେଲେ ରେବନସା ସାହେବଙ୍କର ପଦୋନ୍ନତିର ଅନେକ ସମ୍ଭାବନା ଅଛି ଓ ତାହା ଘଟିଲେ ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହେବୁଁ କାରଣ ଏକପକ୍ଷରେ ସେ ବୋର୍ଡରେ ଥାଇ ଓଡ଼ିଶାର ମଙ୍ଗଳ କରିବାକୁ ଅଧିକ କ୍ଷମତା ପାଇବେ ଏବଂ ପକ୍ଷାନ୍ତରେ ଓଡ଼ିଶାରେ ଅତି ଦୀର୍ଘକାଳ ରହିବାରୁ କେତେଗୁଡ଼ିଏ ତାହାଙ୍କର କୁସଂସ୍କାର ଜନ୍ମିଅଛି ତାହା ଆଉ ରହିବ ନାହିଁ ।

ଶ୍ରୀଯୁକ୍ତ ରେବନସା ସାହେବ ବୋର୍ଡ଼କୁ ଗଲେ ଶ୍ରୀଯୁକ୍ତ ସମଥ ସାହେବ କମିଶ୍ନର ଏବଂ ଶ୍ରୀଯୁକ୍ତ ହେନବୀ ସାହେବ କଟକର କାଲେକ୍‌ଟର ହେବେ ଓ ଏସମସ୍ତ ବନ୍ଦୋବସ୍ତରେ ଆମ୍ଭମାନଙ୍କର ଲଭ ଅଛି ସନ୍ଦେହ ନାହିଁ ।

## ( ୧୨ଶ ଭାଗ, ୨୪ । ୩ । ୧୮୭୭, ସଂଖ୍ୟା ୧୨ )

୪୦୭ ।

### ରେବନସା ସାହେବ ।

ପ୍ରାୟ ଏକଯୁଗ ଓଡ଼ିଶାର କମିଶ୍ନର ପଦ ଭୋଗକାରୀ ଶ୍ରୀଯୁକ୍ତ ରେବନସା ସାହେବ ଗତ ବୁଧବାର ଗୋଧୂଳି ସମୟରେ କଲିକତାକୁ ଯାତ୍ରା କଲେ । ଏଥିପୂର୍ବେ ସେ ବୋର୍ଡର ମେମ୍ବର ସାକ୍ ସାହେବଙ୍କ କର୍ମରେ ନିଯୁକ୍ତ ହେବେ ବୋଲି ତାହାଙ୍କ ଯୋଗେ ସମ୍ବାଦ ପାଇଥିଲେ ମାତ୍ର ତହିଁପାଇଁ ଏତେ ତତ୍ପର ହୋଇପାଇ ନ ଥାନ୍ତେ । ଏହିମଧ୍ୟରେ ନୂତନ ବଜେଟର ମନ୍ତ୍ରୀତାରେ କେନାଲ ଓ ରେଲବାର ସମ୍ପର୍କରେ ବଙ୍ଗ ପ୍ରଦେଶରେ ଯେଉଁ ଟିକସ ବସିବାର ପ୍ରସ୍ତାବ ହୋଇଅଛି ଓ ଯହିଁର ଭାର ଓଡ଼ିଶାକୁ କେନାଲ ହେତୁରୁ ଅଧିକ ପରିମାଣରେ ସହିବାକୁ ହେବ ସେଥିର ପରାମର୍ଶ ଓ ସୁବ୍ୟବସ୍ଥା ସ୍ଥିର କରିବା କାରଣ ମାନ୍ୟବର ଲେଫଟେନେଣ୍ଟ ଗବର୍ଣ୍ଣର ସାହେବ ଏହାଙ୍କୁ ଶୀଘ୍ର କଲିକତାରେ ଉପସ୍ଥିତ ହେବାକୁ ପତ୍ର ଲେଖିବାରୁ ତଦନୁସାରେ ସେ ଓଡ଼ିଶାର କମିଶ୍ନର ସ୍ୱରୂପ ବର୍ତ୍ତମାନ ଯାଇଅଛନ୍ତି । ବୋଧ ହୁଏ ଆଉ ସେ ଫେର ଆସିବେ ନାହିଁ କାରଣ ଏକାଧିକ ସତ୍ତ୍ୱରୁ ସାକ୍ ସାହେବ କର୍ମତ୍ୟାଗ କରିବେ । ସମ୍ପ୍ରତି କମିଶ୍ନର ପଦର ଭାର ଆପଣା ହାତରେ ରଖି ଯାଇଛନ୍ତି । ଏଥିରେ କାହାରିକୁ ସମର୍ପ ଦେଇନାହାନ୍ତି । ଯେବେ ବଙ୍ଗଳାରୁ କେହି କମିଶ୍ନର ନିଯୁକ୍ତ ହୋଇ ଆସିବ ତେବେ ତାହାଙ୍କୁ କଲିକତାରେ ସମର୍ପ ଦେବେ ।

ଶ୍ରୀଯୁକ୍ତ ରେଭେନସା ସାହେବ ଓଡ଼ିଶାରୁ ତ୍ୟାଗ କରିବାରେ ଏଠାର ଅଧିବାସିଙ୍କର ଅବଶ୍ୟ ଦୁଃଖ ହୋଇଅଛି କାରଣ ସେ ଶାସନ କାର୍ଯ୍ୟରେ ଅପାରଗ ହେଲେହେଁ ଦୀର୍ଘକାଳ ଏଠାରେ ରହିବାରୁ ତାହାଙ୍କ ପ୍ରତି ଲୋକଙ୍କର ମମତା ଜନ୍ମିଥିଲା ଓ ସେ କାର୍ଯ୍ୟରେ ପାରନ୍ତୁ ବା ନପାରନ୍ତୁ ଓଡ଼ିଶାର ହିତ ଚିନ୍ତା ସର୍ବଦା କରୁଥିଲେ । ବିଶେଷତଃ ସାଧାରଣ ଶିକ୍ଷା ପ୍ରତି ଏହାଙ୍କର ବିଶେଷ ଦୃଷ୍ଟି ଥିଲା ଏବଂ ତହିଁର ସାକ୍ଷୀ ସ୍ୱରୂପ କଲେଜ ଓ ମେଡ଼ିକାଲ ସ୍କୁଲ ଇତ୍ୟାଦି କେତେଗୁଡ଼ିଏ କୀର୍ତ୍ତି ରହି ଯାଇଅଛନ୍ତି । ଏତଦ ଆଉ ଅନେକ ହିତକାରୀ ଅନୁଷ୍ଠାନ ତାହାଙ୍କ ଯୋଗେ ଓଡ଼ିଶାରେ ହୋଇଅଛି । ପ୍ରସ୍ତାବ ବାହୁଲ୍ୟ ଭୟରେ ଯଦ୍ୟପି ସେସବୁ ବର୍ତ୍ତମାନ ଲେଖିବାରୁ କ୍ଷାନ୍ତ ହେଲୁଁ ମାତ୍ର ସେସବୁ ଯଥାସମୟରେ ଏ ପତ୍ରିକାରେ ବାହାରିଅଛି ଓ ପାଠକମାନେ ଅନାୟାସରେ ସ୍ମରଣ କରିପାରନ୍ତି । ବର୍ତ୍ତମାନ ଆମ୍ଭମାନଙ୍କର ଆଶା ଏହି ଯେ ଗବର୍ଣ୍ଣମେଣ୍ଟ ଓଡ଼ିଶାପ୍ରତି ଅନୁଗ୍ରହକରି ଜଣେ ବିଚକ୍ଷଣ ଓ ନିରପେକ୍ଷ ଓ କାର୍ଯ୍ୟକ୍ଷମ ବ୍ୟକ୍ତିଙ୍କୁ ଏହାଙ୍କ ପଦରେ ନିଯୁକ୍ତ କରି ପାରନ୍ତୁ ଯେ ସେ ଶ୍ରୀଯୁକ୍ତ ରେଭେନସା ସାହେବଙ୍କର ଅନୁଷ୍ଠିତ ହିତକାର୍ଯ୍ୟମାନ ଅଚିରେ ସାର୍ଥକ କରିବେ ।

( ୧୨ଶ ଭାଗ, ୩୧ । ୩ । ୧୮୭୭, ସଂଖ୍ୟା ୧୩ )

୫୦୮ । ଆମ୍ଭେମାନେ ଯାହା କହିଥିଲୁଁ ତାହାହିଁ ପ୍ରତ୍ୟକ୍ଷ ହେଲା ଓ ତହିଁରେ ଆମ୍ଭମାନଙ୍କର ବାଞ୍ଛା ପୂର୍ଣ୍ଣହେଲା । ଗତ ମଙ୍ଗଳବାର ଶ୍ରୀଯୁକ୍ତ ବିମସ ସାହେବ ଓଡ଼ିଶାର କମିଶନରୀ ଏବଂ ଟୈଏନବୀ ସାହେବ କଟକର କଲେକ୍ଟରୀ କର୍ମର ଭାର ନେଲେ । ଏମାନେ ସମ୍ପ୍ରତି ଉକ୍ତ ପଦମାନଙ୍କରେ ଏକପ୍ରକାର ନିଯୁକ୍ତ ହେବାର ଶୁଣାଯାଏ ମାତ୍ର କେତେ ଦିନ ସକାଶେ ତାହା ବୁଝାଯାଇ ନପାରେ ଗଜେଟ ଆସିଲେ ସବିଶେଷ ଜଣାଯିବ ମାତ୍ର ନିଶ୍ଚୟ ବୋଧ ହୁଅଇ ଯେ ଶ୍ରୀଯୁକ୍ତ ରେଭେନସା ସାହେବ ଫେରି ନଆସିଲେ ଏ ବନ୍ଦୋବସ୍ତ ଅନ୍ୟଥା ହେବାର କୌଣସି ହେତୁ ନାହିଁ । ଶ୍ରୀଯୁକ୍ତ ବିମ୍ସ୍ ସାହେବ ଦୀର୍ଘ ସାତବର୍ଷରୁ ବାଲେଶ୍ୱର ଓ କଟକରେ କଲେକ୍ଟର କାର୍ଯ୍ୟ କରିଅଛନ୍ତି ଓ ଏଠାର ଲୋକଙ୍କଠାରେ ବିଶେଷ ପରିଚିତ । ଶ୍ରୀଯୁକ୍ତ ଟୈଏନବୀ ସାହେବ ମଧ୍ୟ ଅନେକ ଦିନ ଏ ଜିଲ୍ଲାର ଆସିଷ୍ଟାଣ୍ଟ ଓ ଜଏଣ୍ଟ ମାଜିଷ୍ଟ୍ରେଟ ରହି ଏ ଜିଲ୍ଲାର ଅବସ୍ଥାରୁ ବିଶେଷରୂପେ ଅବଗତ ହୋଇଅଛନ୍ତି ବିଶେଷ ଇରିଗେଶନ ରେଭିନ୍ୟୁ ସୁପରିଣ୍ଟେଣ୍ଡେଣ୍ଟ କର୍ମରେ ଥାଇ ପ୍ରଜାଙ୍କର ଅବସ୍ଥା ପ୍ରତ୍ୟକ୍ଷ ଦେଖିଅଛନ୍ତି ଓ ତାହାଙ୍କଠାରେ ଅଧିକ ଦୟା ରହିବାର ଜଣାଯାଇଅଛି । ପ୍ରଜାମାନଙ୍କୁ ଭାଗ୍ୟବାନ ବୋଲିବାକୁ ହେବ ଯେ ତାହାଙ୍କର ବେଦନା ଯେ ବୁଝିପାରନ୍ତି ଏମନ୍ତ ଲୋକ ତାହାଙ୍କର ଅବ୍ୟବହିତ ଶାସନକର୍ତ୍ତା ହୋଇଅଛନ୍ତି ।

## ( ୧୨ଶ ଭାଗ,୧୪ । ୪ । ୧୮୭୭, ସଂଖ୍ୟା ୧୫ )

*୦୫ । ଗତ ସପ୍ତାହର କଲିକତା ଗଜେଟରେ ହାକିମଙ୍କ ପରିବର୍ତ୍ତନ ଆଜ୍ଞାମାନ ବାହାରିଅଛି । ତହିଁରୁ ଦେଖାଯାଏ ଯେ ବୋର୍ଡର ମେମ୍ବର ସାକ୍ସ ସାହେବଙ୍କ କର୍ମରେ ଶ୍ରୀଯୁକ୍ତ ଡାମ୍ପିଅର ସାହେବ ନିଯୁକ୍ତ ହେଲେ ଓ ସେ ବିଲାତରୁ ଆସିବା ପର୍ଯ୍ୟନ୍ତ ଶ୍ରୀଯୁକ୍ତ ରେବେନସା ସାହେବ ଉକ୍ତ କର୍ମରେ ଏକଟିଂ ରହିଲେ । ରେବେନସା ସାହେବ ଯାବତ୍ ଉକ୍ତ କର୍ମରେ ରହିଲେ ତାବତ୍ ଶ୍ରୀଯୁକ୍ତ ସମସ୍ ସାହେବ ଓଡ଼ିଶାର କମିଶନର ଏବଂ ଶ୍ରୀଯୁକ୍ତ ଟେଏନବୀ ସାହେବ କଟକର କଲେକଟର ନିଯୁକ୍ତ ହେଲେ ।

× × ×

ଶ୍ରୀଯୁକ୍ତ ଓମ୍ନିଅଲ ସାହେବଙ୍କର ଛୁଟୀ ଆଉ ଚାରି ମାସ ଅଛି ଓ କଥିତ ହୁଅଇ ଯେ ସେ ଫେରିଆସିଲେ ରେବେନସା ସାହେବ ଛୁଟୀନେଇ ବିଲାତକୁ ଯିବେ ସୁତରାଂ ଓଡ଼ିଶା ବିଭାଗର ବନ୍ଦୋବସ୍ତ ହୋଇଅଛି ତାହା ଅଳ୍ପ କାଳ ସକାଶେ ନୁହଇ । ଫଳତଃ ବଡ଼ ସୁଖର ବିଷୟ ଯେ ଲେଫ୍ଟେନେଣ୍ଟ ଗବର୍ଣ୍ଣରଙ୍କଠାରୁ କଟକର କଲେକଟର ପର୍ଯ୍ୟନ୍ତ କେବଳ ଓଡ଼ିଆ ହାକିମମାନେ ନିଯୁକ୍ତ ହୋଇଅଛନ୍ତି ଏବଂ ଓଡ଼ିଶା ପକ୍ଷରେ ଏହା ଗୌରବର ବିଷୟ ଅଟଇ ।

*୨୦ ।

### ଟାଉନ କମିଟୀ ।

ଗତ ମାସ ତାରିଖରେ ଏ ନଗରସ୍ଥ ଟାଉନ କମିଟୀର ସଭା ହୋଇଥିଲା ତହିଁରେ ଯେ ସମସ୍ତ କାର୍ଯ୍ୟ ହେଲା ତହିଁର ବିବରଣର ଏକଖଣ୍ଡ ପ୍ରତିଲିପି ଆମ୍ଭେମାନେ ପାଇଥିବାରୁ ଶ୍ରୀଯୁକ୍ତ ଏକଟିଂ ମାଜିଷ୍ଟ୍ରେଟ ଟେଏନବୀ ସାହେବଙ୍କୁ ଧନ୍ୟବାଦ ଦେଉଅଛୁଁ । କାରଣ ଏଥିରୁ ଜଣାଯାଏ ପୂର୍ବର ଅବସ୍ଥା ପରିବର୍ତ୍ତନ ହୋଇଅଛି ଏବଂ ବର୍ତ୍ତମାନ ମାଜିଷ୍ଟ୍ରେଟଙ୍କର ଇଚ୍ଛା ଯେ କମିଟିର କାର୍ଯ୍ୟ ସର୍ବସାଧାରଣ ଅବଗତ ହେଉନ୍ତୁ । ଏଥିରୁ ନିଶ୍ଚିନ୍ତ ଏମନ୍ତ ଅନୁମାନ ହେଉଅଛି ଯେ ସର୍ବସାଧାରଣଙ୍କର ମତାମତ ଶୁଣିବା ତାହାଙ୍କର ବାଞ୍ଛା । ବାସ୍ତବରେ ଆମ୍ଭେମାନେ ଶୁଣିଅଛୁଁ ଯେ ଏଥର କମିଟିରେ ଅନେକ ସଭ୍ୟ ନିର୍ଭୟରେ ଆପଣା ମତାମତ ପ୍ରକାଶ କରିପାରିଥିଲେ ଓ ପୂର୍ବପର କାଷ୍ଠପିତୁଳା ପ୍ରାୟ ବସି ସଭାପତିଙ୍କ ପ୍ରସ୍ତାବରେ ମୁଣ୍ଡ ହଲାଇ ନଥିଲେ । ଏସମସ୍ତ ଶୁଭ ଲକ୍ଷଣ ଅଟଇ ଓ ଏଥିରେ ଟାକସ ଦାତାଙ୍କର ମଙ୍ଗଳ ହେବ ଏମନ୍ତ ଆଶା ହେଉଅଛି ।

ଏସଭାରେ ତଳଲିଖିତ କାର୍ଯ୍ୟମାନ ହୋଇଅଛି ଯଥା—

× × ×

× × ×

ଉପର ଲିଖିତ କାର୍ଯ୍ୟଗୁଡ଼ିକ ମୁଦ୍ରିତ ହୋଇଅଛି । ଶ୍ରୀଯୁକ୍ତ ରେଭେନସା ସାହେବ ଯାହାହେଉ ମିଉନିସିପାଲିଟିର ସେକ୍ରେଟରୀ ନିଯୁକ୍ତ ବିଷୟରେ ଆପତ୍ତି କରି ଟାଉନ ଫଣ୍ଡର ଉପକାର କରିଗଲେ ଏହା ବଡ଼ ସୁଖର କଥା ଅଟଇ । ଆମ୍ଭମାନଙ୍କର ଏକାନ୍ତ ପ୍ରାର୍ଥନା ଏହିପରି ଟାଉନକମିଟୀ କିଛିଦିନ ପରିଶ୍ରମ କରି ନଗରର ବର୍ତ୍ତମାନ ଦୁରବସ୍ଥାରୁ ମୋଚନ କରନ୍ତୁ ଓ ତାହା କରିବାପୂର୍ବ ଲୋକଙ୍କଠାରୁ ଅଧିକ ଟାକସ ଉସୁଲ କରିବାରୁ କ୍ଷାନ୍ତ ରହନ୍ତୁ ।

## ( ୧୨ଶ ଭାଗ, ୨୮ । ୪ । ୧୮୭୭, ସଂଖ୍ୟା ୧୭ )

୨୧୧ । ସାପ୍ତାହିକ ସମ୍ବାଦ

ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ଅବଗତ ହେଲୁଁ ଯେ ବାବୁ ରାଧାଶ୍ୟାମ ନରେନ୍ଦ୍ର ଗତ ଶନିବାର ଇହ ସଂସାରରୁ ବିଦାୟ ଗ୍ରହଣ କଲେ । ଏ ମହାଶୟ ଓଡ଼ିଶାର ଜଣେ ବିଖ୍ୟାତ ଲୋକଥିଲେ । ଇଂରାଜ ହାକିମଙ୍କଠାରେ ବିଶେଷ ରୂପେ ପରିଚିତ ଓ ସମ୍ମାନିତ ହୋଇଥିଲେ ଏବଂ ଦେବତା ବୈଷ୍ଣବ ସେବା ଓ ବୈରାଗିଙ୍କୁ ଦାନ କରିବାରେ ଏହାଙ୍କର ନାମ ବହୁତ ଦୂରଯାଏ ବାଜୁଥିଲା । ମୃତ୍ୟୁ ପୂର୍ବ ଦୁଇ ତିନିମାସରୁ ଅତ୍ୟନ୍ତ ପୀଡ଼ିତ ହୋଇ ପଡ଼େ ରହିଥିଲେ ଓ ଏହାଙ୍କର ବୟସ ପ୍ରାୟ ୮୦ ବର୍ଷ ହୋଇଥିଲା । ହାକିମମାନଙ୍କ ପାଖରେ ଭଲ ମନ୍ଦ କଥା କହିବାକୁ ତାଙ୍କର ବେଶ ସାହସ ଥିଲା । ସେପରି ସାହସୀ ଲୋକ ଆଉ ଜଣେ ସମ୍ପ୍ରତି ଓଡ଼ିଶାରେ ଦେଖା ଯାଉନାହିଁ ।

## ( ୧୨ଶ ଭାଗ, ୧୨ । ୫ । ୧୮୭୭, ସଂଖ୍ୟା ୧୯ )

୨୧୨ । ସାପ୍ତାହିକ ସମ୍ବାଦ

ବାର୍ତ୍ତା ଲହରୀ ।

ଗଞ୍ଜାମ ବ୍ରହ୍ମପୁରରେ ବାର୍ତ୍ତାଲହରୀ ନାମରେ ଗୋଟିଏ ନୂତନ ପାକ୍ଷିକ ପତ୍ରିକା ବାହାରିଅଛି ଓ ତହିଁର ପ୍ରଥମ ସଂଖ୍ୟା ଆମ୍ଭେମାନେ ପାଇଥିବାର କୃତଜ୍ଞତା ସହିତ ପ୍ରକାଶ କରୁଅଛୁଁ । ପତ୍ରିକା ଖଣ୍ଡିକ ଦୀର୍ଘଜୀବୀ ହେଉ ଏହି ପ୍ରାର୍ଥନା । ଏହା ସ୍ୱଦେଶୀ ପତ୍ର ଇଂରାଜୀ ଓଡ଼ିଆ ଏବଂ ତେଲଙ୍ଗା ଏହି ତିନି ଭାଷାରେ ମୁଦ୍ରିତ ହୋଇଅଛି ।

୬୧୩ । ଏ ପତ୍ରିକାର ସ୍ଥାନାନ୍ତରରେ ପାଠକମାନେ ଦେଖିବେ ଜଳକର ସମ୍ବନ୍ଧରେ ଗବର୍ଣ୍ଣମେଣ୍ଟ କେତେକ ବିଷୟ ତଦନ୍ତ କରିବା କାରଣ ଜଣେ କର୍ମଚାରୀ ପଠାଇବାକୁ ସ୍ଥିର କରିଅଛନ୍ତି । ସମ୍ପ୍ରତି ଅବଗତ ହେଲୁଁ ଯେ ଶ୍ରୀଯୁକ୍ତ ଟେଏନବୀ ସାହେବ ଉକ୍ତ କର୍ମରେ ନିଯୁକ୍ତ ହୋଇଅଛନ୍ତି ।

× × ×

( ୧୨ଶ ଭାଗ, ୧୯ । ୫ । ୧୮୭୭, ସଂଖ୍ୟା ୨୦ )

୬୧୪ ଶ୍ରୀଯୁକ୍ତ ଟେଏନବୀ ସାହେବଙ୍କ କର୍ମରେ ବାଲେଶ୍ୱରର କଲେକ୍ଟର ଶ୍ରୀଯୁକ୍ତ ନର୍ମାନ ସାହେବ ନିଯୁକ୍ତ ହୋଇଥିବାର ସମ୍ବାଦ ଗତ ସପ୍ତାହରେ କଲିକତା ଗେଜେଟରେ ବାହାରିଥିଲା । ମାତ୍ର ତାହାଙ୍କର ଆସିବାର ହେଲା ନାହିଁ । ଶୁଣାଯାଏ ଯେ ସେ ଏଠାକୁ ଆସିବାକୁ ଅନିଚ୍ଛୁକ ହେଲେ । ସମ୍ପ୍ରତି ଆମ୍ଭେମାନେ ଅବଗତ ହେଲୁଁ ଯେ ଏଚ, ଏସ, ବେଭନ ସାହେବ କଟକର ମାଜିଷ୍ଟ୍ରେଟ କଲେକ୍ଟର ପଦରେ ନିଯୁକ୍ତ ହୋଇ ଆସୁଅଛନ୍ତି ଓ ଆଗାମୀ ସୋମବାର ଏଠାରେ ପ୍ରବେଶ ହେବେ । ଏ ମହାଶୟ ଜଣେ ବି. ଏ. ଉପାଧିଧାରୀ ଅଟନ୍ତି ଏବଂ ମେଦିନୀପୁର ଜିଲ୍ଲାର ବନ୍ଦୋବସ୍ତ କର୍ମରେ ନିଯୁକ୍ତ ଥିଲେ । ଏକ ସମୟରେ ଏ ମହାଶୟ ବଙ୍ଗଳା ଗବର୍ଣ୍ଣମେଣ୍ଟର ସାନ ସେକ୍ରେଟରୀ ହୋଇଥିଲେ । ଏଥିରୁ ବୋଧହୁଅଇ ଲୋକଟି ବିଚକ୍ଷଣ ହେବେ । ନର୍ମାନ ସାହେବଙ୍କ ବଦଳି ସମ୍ବାଦ ଶୁଣି ଉତ୍କଳ ଦର୍ପଣ ବଡ଼ ଦୁଃଖିତ ହୋଇଥିଲେ ମାତ୍ର ବାଲେଶ୍ୱରର ସୁଭାଗ୍ୟରୁ ତାହାଙ୍କର ସେଠାରେ ରହିବାର ହେଲା ।

× × ×

( ୧୨ଶ ଭାଗ, ୩୦ । ୬ । ୧୮୭୭, ସଂଖ୍ୟା ୨୬ )

୬୧୫ । ଆଜିକାଲି ଏ ନଗରରେ ଚାଉଳ ଓ ତାହା ସଙ୍ଗେ ୨ ଅନ୍ୟାନ୍ୟ ଶସ୍ୟର ଦର ଏ ପ୍ରକାର ବୃଦ୍ଧି ହୋଇଅଛି ଯେ ବର୍ତ୍ତମାନ କାଳକୁ ଏକ ପ୍ରକାର ଛୋଟ ଦୁର୍ଭିକ୍ଷ ବୋଲାଯାଇ ପାରେ । ପ୍ରତି ଟଙ୍କାରେ ମୋଟ ଚାଉଳ ସେ ୧୨ । ୧୩ର ମିଳୁଅଛି ତଥାପି ବ୍ୟବସାୟୀ ମହାଜନମାନେ ଗହମ ଇତ୍ୟାଦି ଖରିଦ କରୁଅଛନ୍ତି । ଏହା ଦେଖି ବୋଧହୁଅଇ ଯେ ସମ୍ବଲପୁର ଆଦି ଉପର ଦେଶରୁ ବହୁ ସଙ୍ଗେ ୨ ଶସ୍ୟ ଆମଦାନୀ ହେଲେ ସୁଦ୍ଧା ଦର ଊଣା ହେବାର କିଛି ଭରସା ନାହିଁ । ଟଙ୍କାକୁ ୧୨ସେର ଚାଉଳ କଣି ଏଠା ଲୋକେ ଅଧିକ ଦିନ ନିର୍ବାହ ହେବା କଠିନ ଓ ଏଥିମଧ୍ୟରେ

କେତେ ଲୋକଙ୍କୁ ଏମନ୍ତ ବାଧିଲାଣି ଯେ ଦୁର୍ବଳ ପେଟପୂରା କରି ଖାଇ ନାହାନ୍ତି । ନୂତନ ଫସଲ ହେବା ପର୍ଯ୍ୟନ୍ତ ଏ ଅବସ୍ଥା ପରିବର୍ତ୍ତନ ହେବାର ଭରସା ନାହିଁ ।

## ( ୧୨ଶ ଭାଗ, ୨୮ । ୭ । ୧୮୭୭, ସଂଖ୍ୟା ୩୦ )

*୧୬ । ଚାଉଳ ଦର

ସମ୍ପ୍ରତି ନଗରପାଳ କେବଳ ଚାଉଳର ଚିନ୍ତାରେ ବ୍ୟସ୍ତ । ସାନ ବଡ଼ ସମସ୍ତେ ଏକା ଚାଉଳର ଦୁର୍ମୂଲ୍ୟ କଥା କହୁଅଛନ୍ତି । ଯେଉଁଠାରେ ଦେଖ ଏହି ଚର୍ଚ୍ଚା ଲଗିଅଛି ଓ ସର୍ବସାଧାରଣ ଏକମତ ହୋଇ ଏଥିପାଇଁ ହାକମଙ୍କୁ ଦୋଷୀ କରୁଅଛନ୍ତି । ସମସ୍ତଙ୍କର ଇଚ୍ଛା ଯେ ସରକାର ମା ୨ । ୩ ସ ପର୍ଯ୍ୟନ୍ତ ରପ୍ତାଣି ବନ୍ଦ କରି ଦେଉନ୍ତୁ । ଗତ ଗୁରୁବାର ଏକ ଜନରବ ଉଠିଲା ଯେ କମିଶନର ସାହେବ ରପ୍ତାଣି ସ୍ଥଗିତ କରି ଷ୍ଟେସରେ ଲେଖାଏ ବଳ କରିବାର ଆଜ୍ଞା ଦେଇଅଛନ୍ତି । ସେଦିନ ଠିକାକୁ ସେ ୧୬ ଠାରୁ ସେ ୧୬ର ପର୍ଯ୍ୟନ୍ତ ବିକ୍ରୟ ହେଲା । ଅପର କେହି କହନ୍ତି ଯେ ପଲ୍ଟନ ବଜାରରେ ସିପାହୀମାନଙ୍କ ବାହୁବଳରେ ଭାଉ ଶସ୍ତା ହୋଇ ଅଛି । ଯାହାହେଉ ଅବସ୍ଥା ଭଲ ନୁହଇ ଓ ଆମ୍ଭେମାନେ ଆଶାକରୁଁ ଯେ କମିଶନର ଓ କଲେକ୍‌ଟର ସାହେବ ଏମନ୍ତ କିଛି ବିଧାନ କରନ୍ତୁ କି ଯହିଁରେ ନଗରବାସିମାନେ ଏ ବିପଦକୁ ଅତିକ୍ରମ କରିବାକୁ ସକ୍ଷମ ହେବେ ଓ କୌଣସି ଭାରି ଅନିଷ୍ଟ ଜାତ ନହେବ ।

*୧୭ । ଏ ନଗରରେ ଚାଉଳର ଭାଉ ପୂର୍ବପ୍ରାୟ ରହିଅଛି ଓ ଲୋକଙ୍କର କଷ୍ଟ ଓ ଚିନ୍ତାର ସୀମା ନାହିଁ । ସମସ୍ତଙ୍କର ଆଶା ଏହିପରି ଗବର୍ଣ୍ଣମେଣ୍ଟ ରପ୍ତାଣି ବନ୍ଦ କରିଦେଇ ଏଠାରେ ଚାଉଳର ଭାଉ ଶସ୍ତା କରିଦେଉନ୍ତୁ ଓ ଏଥି ସଙ୍ଗେ ୨ କେହି ୨ ଦୁଷ୍ଟ ଲୋକ ଏମନ୍ତ ମିଛା ଜନରବ ଉଠାଇ ଦେଉଅଛନ୍ତି ଯେ ଶୀଘ୍ର ଭାଉ ଶସ୍ତା ନହେଲେ ଚାଉଳ ଗୋଦାମମାନ ଲୁଟ ହେବ । ଆମ୍ଭେମାନେ ଶୁଣିଲୁ ଯେ ଏ ବିଷୟର ଲିଖିତ ବେନାମୀ ବିଜ୍ଞାପନ କେତେକ ସ୍ଥାନରେ ଦିଆ ଯାଇଥିଲା । ସରକାରୀ ଉଚ୍ଚ କର୍ମକାରକମାନେ ଯଥାକାଳରେ ସାବଧାନ ହୋଇ ଚାଉଳ ଗୋଦାମ ମାନଙ୍କରେ ଜଗି ପହରି ଛିଡ଼ା କରିଦେଇ ଅଛନ୍ତି । ଖାଇବାକୁ ନପାଇଲେ ଦୁଃଖୀ ଲୋକମାନେ କ ନ କରି ପାରନ୍ତି । ଏଥିରେ ଯେ ତାହାଙ୍କର ଅଧିକ ଅନିଷ୍ଟ ହେବ ଓ ଯାହା ଅବା ମିଳୁଅଛି ତାହାସୁଦ୍ଧା ମିଳିବ ନାହିଁ ସେକଥା ମୂର୍ଖ ଲୋକଙ୍କୁ କିଏ ବୁଝାଇ ପାରିବ । ଫଳତଃ ଅବସ୍ଥା ବଡ଼ ମନ୍ଦ ହୋଇଅଛି । ଏଥିରେ ପୁଣି ବାଞ୍ଛିତମତ ବର୍ଷାକାଳର ବୃଷ୍ଟି ହେଉନାହିଁ । ଦିନପାକ ଭରି ଖରା ଓ ଅପରାହ୍ନ କାଳରେ କୌଣସି ଦିନ କୌଣସି ଏକ-

ବାଗରେ ବୃଷ୍ଟି ହେଉଅଛି । ଶ୍ରାବଣମାସରେ ଅନବରତ ବର୍ଷା ହେବାର ଆବଶ୍ୟକ ତାହା ନହେଲେ ବଆଳ ଫସଲ ଭଲ ହୁଅଇ ନାହିଁ । ସେପ୍ରକାର ବର୍ଷା ନହେବାରୁ ବଆଳର ଆଶା ଅତ୍ୟନ୍ତ ଊଣା ଦେଖାଯାଏ ଓ ଏ ପାଇଁ ଚାଉଳ ଆହୁରି ଦୁର୍ମୂଲ୍ୟ ହେଉଅଛି । ଲୋକେ ହାକିମଙ୍କର ଦୋଷ ଦେଉଅଛନ୍ତି ମାତ୍ର ହାକିମମାନେ ଯେ ନିଶ୍ଚିନ୍ତ ଅଛନ୍ତି ଏହା ଆମ୍ଭେମାନେ କହିନପାରୁଁ । ସେମାନେ ମଧ୍ୟ ପ୍ରଜାଙ୍କ ସକାଶେ ବ୍ୟସ୍ତ ଅଛନ୍ତି ମାତ୍ର ଉପାୟ କିଛି ଦିଶୁନାହିଁ । ଆମ୍ଭେମାନେ ବୋଧକରୁଁ ହାକିମମାନେ ମୋଫସଲରୁ ଶସ୍ତା ଦରରେ ଚାଉଳ କିଣିଆଣି ହାଟରେ ରଖି ସରକାରୀ ଚାକର ଓ ଦୁଃଖୀମାନଙ୍କୁ ବିକ୍ରୟକଲେ ଓ ତହିଁସଙ୍ଗେ ମହାଜନମାନଙ୍କୁ ସହର ମଧ୍ୟରେ ଚାଉଳ କିଣିବାର ନିଷେଧ କଲେ ଉପସ୍ଥିତ ଅନ୍ନକଷ୍ଟ ଅନେକ ପରିମାଣରେ ଊଣା ହୋଇପାରେ । ଏତିକ ମାତ୍ର ସଦୁପାୟ ଆମ୍ଭମାନଙ୍କ ବୁଦ୍ଧିକୁ ଆସୁଅଛି ଓ ନିତାନ୍ତ ଆଶା କରୁଁ ଯେ ଶ୍ରୀଯୁକ୍ତ କମିଶନର ଓ କଲେକ୍ଟର ସାହେବମାନେ ଏହାର ସୁବିଚାର କରିବେ ।

## ( ୧୨ଶ ଭାଗ, ୪ । ୮ । ୧୮୭୭, ସଂଖ୍ୟା ୩୧ )

୫୧୮ । ପ୍ରେରିତପତ୍ର ।

ମହାଶୟ, ଗତ ଶନିବାର ରାତ୍ର ୯ଘଣ୍ଟା ସମୟରେ କଟକ ପ୍ରିଣ୍ଟିଂ କୁମ୍ପାନିଙ୍କ ହଲରେ ବାବୁ ଶ୍ରୀପ୍ୟାରୀମୋହନ ଆଚାର୍ଯ୍ୟ “ମନୁଷ୍ୟ ଜୀବନର ଉଦ୍ଦେଶ୍ୟ” ଏହି ବିଷୟରେ ଗୋଟିଏ ବକ୍ତୃତା ଦେଇଥିଲେ । ତାହା ଶୁଣିବାକୁ କେତେଗୁଡ଼ିଏ ସ୍କୁଲ ବାଳକ ଓ କେତେକ ଶିକ୍ଷିତ ଏବଂ କେତେକ ସମ୍ଭ୍ରାନ୍ତ ବଙ୍ଗୀୟ ଯୁବକ ମଧ୍ୟ ଉପସ୍ଥିତ ଥିଲେ । ବକ୍ତୃତାଟି ବଙ୍ଗ ଭାଷାରେ ହୋଇଥିଲା । ବକ୍ତା ସୁଲଳିତ ଭାଷାରେ ପ୍ରାଞ୍ଜଳ ରୂପରେ ଆପଣାର ଭାବମାନ ପ୍ରକାଶ କରିଥିଲେ । ତାହା ଶୁଣି ଶ୍ରୋତାମାନେ ସାତିଶୟ ଉତ୍ସାହିତ ହୋଇଅଛନ୍ତି ।

× × ×

ବକ୍ତୃତା ଶେଷହେଲା ଉତ୍ତାରୁ ଉପସ୍ଥିତ ଭଦ୍ର ବ୍ୟକ୍ତିମାନେ ପ୍ରିଣ୍ଟିଂ କୁମ୍ପାନିଙ୍କୁ ବିଶେଷ ଧନ୍ୟବାଦ ଦେଇଥିଲେ କାରଣ ପ୍ରିଣ୍ଟିଂ କୁମ୍ପାନିଙ୍କର ହଲ ଥିବାରୁ ଏମନ୍ତ ସାଧାରଣ କାର୍ଯ୍ୟମାନ ସାଧିତ ହେଉଅଛି । ପ୍ରକୃତରେ ଆମ୍ଭେମାନେ କହୁଅଛୁଁ ପ୍ରିଣ୍ଟିଂ କୁମ୍ପାନୀ ଦେଶର ବିଶେଷ ମଙ୍ଗଳସାଧନ କରୁଅଛନ୍ତି । ଏମନ୍ତ ଗୋଟିଏ ସ୍ଥାନ ନଥିଲେ ସବୁ ବିଫଳ ହୁଅନ୍ତା । ସମ୍ପାଦକ ମହାଶୟ, ଆପଣଙ୍କୁ ଏଠାରେ ଗୋଟିଏ କଥା ପଚାରୁଅଛି । ଆପଣ ଅବଶ୍ୟ ଜାଣିଥିବେ, କଟକରେ ଗୋଟିଏ ଟାଉନହଲ

ହେବାଖାଇଁ ଦରବାର ସମୟରେ ଗୃହ ସଜ୍ଜିତ ହେଉଥିଲା, ସେ ବିଷୟରେ କଣ ହେଲା ? ତାହାର କି କିଛି ଆୟୋଜନ ହେଉଅଛି ? ସହରେ କି ଗୋଟିଏ ଟାଉନହଲ ହେବ ? ନା ମେଓ ଫଣ୍ଡ ଟଙ୍କା ମିଶନସ୍କୁଲକୁ ଗଲାପରି ଉକ୍ତ ଟଙ୍କା କୌଣସି ଗିର୍ଜାର ସାହାଯ୍ୟରେ ଲଗିବ ?

୫୧୯ । ସାପ୍ତାହିକ ସମ୍ବାଦ ।

ଆମ୍ଭମାନଙ୍କର ନୂତନ କଲେକ୍ଟର ଶ୍ରୀଯୁକ୍ତ ବଟନ ସାହେବ ଦେଶୀୟ ଭଦ୍ରଲୋକଙ୍କ ସହିତ ଯେପରି ସଦ୍ଭାବ କରିବାକୁ ଆରମ୍ଭ କରିଅଛନ୍ତି ଓଡ଼ିଶାର କୌଣସି ହାକିମ ପ୍ରାୟ ସେପରି କରିନାହାନ୍ତି । ଗତ ମାସରେ ସେ ଦେଶୀୟ ଭଦ୍ରଲୋକଙ୍କୁ ଆପଣା କୋଠିକୁ ଆମନ୍ତ୍ରଣ କରିଥିଲେ. ବୈଠକଟି କିପ୍ରକାର ହୋଇଥିଲା, ଏଥରେ ଜଣାଇବୁଁ ।

**( ୧୨ଶ ଭାଗ, ୨୫ । ୮ । ୧୮୭୭, ସଂଖ୍ୟା ୩୪ )**

୫୨୦ । ଅଭିନବ ବୈଠକ ।

ଗତ ସପ୍ତାହର ପତ୍ରିକାରେ ଆମ୍ଭମାନଙ୍କର କଲେକ୍ଟର ଶ୍ରୀଯୁକ୍ତ ବଟନ ସାହେବଙ୍କ କୋଠିରେ ଯେଉଁ ବୈଠକ ହେବାର ସମ୍ବାଦ ଆମ୍ଭେମାନେ ଲେଖିଥିଲୁଁ ତାହା ଅତି ସୁନ୍ଦରରୂପେ ନିର୍ବାହ ହୋଇଅଛି । ଇଂରାଜ ରାଜପୁରୁଷ ଓ ଦେଶୀୟ ଭଦ୍ରଲୋକ ସମସ୍ତେ ହୋଇ ଆମୋଦପ୍ରମୋଦ କରିବାର ଏହା ପ୍ରଥମ ଦେଖାଗଲା । ଏଠାରେ କାହିଁକି ପ୍ରଧାନ ନଗରମାନଙ୍କ ଛଡ଼ା ଅନ୍ୟ କୌଣସିଠାରେ ଏପରି ହେବାର ଶୁଣାନାହିଁ । କେବଳ ମେଦିନୀପୁରରେ ଶ୍ରୀଯୁକ୍ତ ହାରିଶନ ସାହେବ ଏ ବିଷୟର ଅନୁଷ୍ଠାନ କରିଥିଲେ । ଏହାପୂର୍ବେ ଏ ଜିଲ୍ଲାକୁ ଅନେକ ଦୟାମୃଦୁ, ସାଧୁ, ଓ ଦୟାବନ୍ତ ଇଂରାଜ ହାକିମ ହୋଇ ଆସିଥିଲେ ଓ ପିତାମାତା ତୁଲ୍ୟ ଲୋକଙ୍କୁ ପ୍ରତିପାଳନ ଓ ରକ୍ଷା କରିବାଦ୍ୱାରା ସମସ୍ତଙ୍କର ସ୍ନେହାସ୍ପଦ ହୋଇଥିଲେ, ଏମନ୍ତ କି ଏପର୍ଯ୍ୟନ୍ତ ସେମାନଙ୍କର ନାମ ସ୍ମରଣକରି ଲୋକେ ପୁଲକିତ ହେଉଅଛନ୍ତି ଓ ତାହାଙ୍କପାଇଁ ଝୁରୁଅଛନ୍ତି । ଅବଧି ମଧ୍ୟ ଏକ ୨ ହାକିମ ରହିଛନ୍ତି କି ଯାହାଙ୍କର ସଦ୍‌ଗୁଣମାନ ଭାବନାକରି ଲୋକେ ଆନନ୍ଦିତ ହେଉଅଛନ୍ତି । କିନ୍ତୁ ଏମାନେ ସମସ୍ତେ ଲୋକଙ୍କଠାରେ ହାକିମ ବୋଲି ପରିଚିତ । ଦେଶୀୟ ଭଦ୍ରଲୋକଙ୍କୁ ଆହ୍ୱାନକରି କୋଠିରେ ସାକ୍ଷାତ୍ ଦେଉଥିଲେ, ତାହାଙ୍କର ଘରର ଭଲମନ୍ଦ କଥା ବୁଝୁଥିଲେ ଓ ସୁବିବେଚକ ସତ୍ପରାମର୍ଶ ଦେଉଥିଲେ । ମାତ୍ର ଗୁରୁ ଲଘୁର ବିଚାର ଥିଲା ଓ ବାହ୍ୟିକରେ ଏକାବେଳି ହୋଇ

ଆମୋଦପ୍ରମୋଦ କରିନଥିଲେ । କେବଳ ଗତ ଜାନୁୟାରୀ ମାସର ଉତ୍ସବ ଉପଲକ୍ଷରେ ଯେଉଁ ମଜଲିସ ହୋଇଥିଲା ତହିଁରେ ଏଥର ସୂତ୍ରପାତ ହୋଇଥିଲା ଓ ଶ୍ରୀଯୁକ୍ତ ବିଡ଼ନ ସାହେବ ତାହାକୁ ବିସ୍ତାର ଓ ପରିବର୍ଦ୍ଧିତ କରିଅଛନ୍ତି । ବୈଠକ ହେବାର କିଛିଦିନ ପୂର୍ବରୁ ସେ ଆପଣା ମାନସ ଇଂରେଜ ଓ ଦେଶୀୟ ଭଦ୍ରଲୋକଙ୍କଠାରେ ବ୍ୟକ୍ତ କରିବାରୁ ସମସ୍ତେ ଶୁଣି ମହା ଆନନ୍ଦିତ ହେଲେ ଓ କି ପ୍ରକାରରେ ଏ ଅଭିନବ ବ୍ୟାପାରଟି ସୁସମ୍ପନ୍ନ ହେବ ଦେଖିବାକୁ ସମସ୍ତଙ୍କର କୌତୁକ ବଢ଼ିଲା । ବୈଠକର ଆମନ୍ତ୍ରଣପତ୍ର ଯେଉଁ ବେଳେ ବାହାରିଲା ତାହା ପାଠକରି ପ୍ରାୟ ସମସ୍ତେ କିଛି ବିରକ୍ତ ହେଲେ କାରଣ ଆମ୍ଭେମାନେ ଶୁଣିଲୁଁ ଯେ ସାହେବ ସ୍ୱୟଂ ପତ୍ରମାନ ପଠାଇନଥିଲେ ମାତ୍ର ତାହାଙ୍କ ଅନୁରୋଧରେ ବାବୁ ଉମାଲାଲ ବାନାର୍ଜୀ ସେ ପତ୍ରମାନ ଲେଖିଥିଲେ ଓ ଲେଖିବାର ଭଙ୍ଗୀରୁ ପତ୍ରଖଣ୍ଡିକ ଆମନ୍ତ୍ରଣପତ୍ର ଅପେକ୍ଷା ଅଧିକ ସମନପ୍ରାୟ ଜଣାଯାଉଥିଲା । ଯାହାହେଉ ଏଥିରେ ଶ୍ରୀଯୁକ୍ତ ବିଡ଼ନ ସାହେବଙ୍କର କୌଣସି ତ୍ରୁଟି ଲକ୍ଷିତ ନହେବାରୁ ଆମନ୍ତ୍ରିତ ବ୍ୟକ୍ତିମାନେ ତାହା ମନରେ ନଦେଇ ରାତ୍ର ଆଠଘଣ୍ଟା ସମୟରେ ସାହେବଙ୍କ କୋଠିରେ ପ୍ରବେଶ ହେଲେ । ଏ ନଗରବାସୀ ପ୍ରଧାନ ୨ ଜମିଦାର, ଅଦାଲତର ବଡ଼ ଓକିଲଙ୍କ ମଧ୍ୟରୁ ଦୁଇଜଣ, ସମସ୍ତ ଡେପୁଟୀ କଲେକଟର, ମୁନସଫ, ଶିକ୍ଷା ବିଭାଗର ଉଚ୍ଚ କର୍ମଚାରୀ ପ୍ରାୟ ପାଞ୍ଚଜଣ ଦେଶୀୟ ଲୋକଙ୍କ ମଧ୍ୟରେ ଏମାନଙ୍କୁ ଆମନ୍ତ୍ରଣ ହୋଇଥିଲା । ଆଉ ତିନିଜଣ ଓକିଲ ଓ ବାରିକମାତ୍ରକ ଏଲକାର ଦେଶୀୟ ଗଜେଟେଡ଼ କର୍ମଚାରୀମାନଙ୍କୁ କାହିଁକି ମିହ୍ନା ଦିଆଗଲା ଆମ୍ଭେମାନେ କହିନପାରୁ । ବିଶେଷରେ ବାବୁ ଦୀନନାଥ ସରକାରଙ୍କୁ ଆମନ୍ତ୍ରଣ ନହେବାରେ ଆମ୍ଭେମାନେ ଦୁଃଖିତ ହେଉଅଛୁଁ କାରଣ ସେ କେବଳ ବଡ଼ ଅଦାଲତରେ ଓକିଲ ନୁହନ୍ତି ଏଠାର ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ଅଟନ୍ତି । ଫଳତଃ କୌଣସି କାର୍ଯ୍ୟ ପ୍ରଥମ ଆରମ୍ଭ ହେଲେ କେତେକ ବିଶୃଙ୍ଖଳା ହୋଇଥାଏ, ଏଥିପାଇଁ ସେସବୁ ଧରିବା ନୁହଇ । ମୋଟକଥା ଏହି ଯେ ବୈଠକଟି ବଡ଼ ଉତ୍ତମ ହୋଇଥିଲା । ଆମନ୍ତ୍ରିତ ବ୍ୟକ୍ତିମାନେ କୋଠିରେ ପ୍ରବେଶ ହେବା ସମୟଠାରୁ ଫେରି ଆସିବା ପର୍ଯ୍ୟନ୍ତ ଶ୍ରୀଯୁକ୍ତ ବିଡ଼ନ ସାହେବ ଏମନ୍ତ ଚେଷ୍ଟା କରିଥିଲେ ଯେ ସମସ୍ତେ ଆଗାଗୋଡ଼ାକୁ ଆନନ୍ଦଲାଭ କରି ଆସିଲେ । ଶ୍ରୀଯୁକ୍ତ ବମଣ୍ଟ ସାହେବ, ମାକଫର୍ସନ ସାହେବ, ହେବ ସାହେବ, ଫେରର ସାହେବ, ହର୍ଣ୍ଣଲୀ ସାହେବ ପ୍ରଭୃତି ଇଂରେଜ ଭଦ୍ର ଲୋକମାନେ ମଧ୍ୟ ଉପସ୍ଥିତ ଥିଲେ । ପାଶା, ସତରଞ୍ଜ, ତାସ ପ୍ରଭୃତି ଖେଳରେ ସମସ୍ତେ ମତ୍ତଥିଲେ । ଇଂରେଜ ଓ ଦେଶୀୟ ଲୋକଙ୍କ କୌଣସି ପ୍ରଭେଦ ନଥିଲା । ସମସ୍ତେ ମିଶାମିଶି ହୋଇ ମହା ଆନନ୍ଦରେ ରାତ୍ର ଏଗାରଘଣ୍ଟା ପର୍ଯ୍ୟନ୍ତ ମତ୍ତଥିଲେ । ସଙ୍ଗୀତର ତାଦୃଶ ଚେଷ୍ଟା ନଥିଲା ତେବେ କନ୍ସର୍ଟ ସୀତାର ବାଦ୍ୟ ହୋଇଥିଲା ଓ ଶ୍ରୀଯୁକ୍ତ ହର୍ଣ୍ଣଲୀ ସାହେବ ପିଆନୋ ବଜାଇ ସଭାର ଆନନ୍ଦ ବଢ଼ାଇଥିଲେ । ଏ ବୈଠକଟି କି ପର୍ଯ୍ୟନ୍ତ ସୁଖକର ହୋଇଥିଲା ଆମ୍ଭେମାନେ ବ୍ୟକ୍ତ କରି ନପାରୁଁ । ଆମ୍ଭମାନଙ୍କର ଏହି ଆଶା ଯେ ଏପରି ବୈଠକମାନ ସମୟ ୨ ରେ

ହେଉଥାଉ ଓ ଇଂରାଜ ଓ ଦେଶୀୟ ଭଦ୍ର ଲୋକମାନେ ପରସ୍ପରକୁ ଆମନ୍ତ୍ରଣ କରି ସଦ୍ଭାବ ବର୍ଦ୍ଧନ କରନ୍ତୁ।

## (୧୨ଶ ଭାଗ, ୭।୧୦।୧୮୬୭, ସଂଖ୍ୟା ୪୦)

୫୨୧।

### ପାରିକୁଦ ଦୁର୍ଭିକ୍ଷ।

ଆମ୍ଭେମାନେ ଏପର୍ଯ୍ୟନ୍ତ ମାନ୍ଦ୍ରାଜ ଓ ବୋମ୍ବାଇର ଦୁର୍ଭିକ୍ଷ ବୃତ୍ତାନ୍ତ ଲେଖିଥିଲୁଁ। ବର୍ତ୍ତମାନ ଆମ୍ଭମାନଙ୍କ ଓଡ଼ିଶାର ଏକ ପ୍ରାନ୍ତଭାଗରେ ଦୁର୍ଭିକ୍ଷ ଉପସ୍ଥିତ। ଆମ୍ଭେମାନେ ଅତି ଦୁଃଖର ସହିତ ଅବଗତ ହେଲୁଁ ଯେ ପୁରୀଜିଲ୍ଲା ଅନ୍ତର୍ଗତ ପାରିକୁଦ ବଜରକୋଟ ଇତ୍ୟାଦି ଚିଲିକା ନିକଟସ୍ଥ ସ୍ଥାନମାନଙ୍କରେ ଅକାଳ ପଡ଼ିଅଛି। ସେ ଅଞ୍ଚଳର ଭୂମି ସ୍ୱଭାବତଃ ଫଳଦାୟୀ ନୁହେ। ସେଠା ଲୋକେ ଲବଣ ପୋକ୍ତାନି ଉପରେ ବିଶେଷରୂପେ ନିର୍ଭର କରନ୍ତି। ଲବଣ ପୋକ୍ତାନି ଉଠା ହେବା ସମୟରୁ ସେମାନେ କୃଷି ବ୍ୟବସାୟ କରି ଏକପ୍ରକାର ନିର୍ବାହ ହେଉଥିଲେ। ଏଥିରେ ଗତ ସମ୍ବତ୍ସର ଫସଲର ଉତ୍ପନ୍ନ ଅତ୍ୟଳ୍ପ ହେବାରୁ ସେମାନଙ୍କର କଷ୍ଟ ଆରମ୍ଭ ହେଲା। ସେଠାରେ ଏପରି କୌଣସି ମହାଜନ ନାହିଁ ଯେ ଲୋକଙ୍କୁ ଧାନ ଅଥବା ଋଣ ଦେଇ ସାହାଯ୍ୟ କରିପାରେ ସୁତରାଂ ସେମାନଙ୍କର କଷ୍ଟ ବୃଦ୍ଧି ହେଲା। ଏବଂ ଶେଷ ସେମାନେ ପଥ୍ୟ କଷ୍ଟରେ ପଡ଼ି ବୁଡ଼ି ଥିଲେ ଓ ହୋଇଥିଲେ ମରୁଡ଼ିରେ ସବୁ ନଷ୍ଟ ହୋଇଅଛି ଓ ଏଣିକି ବର୍ଷା ହେଲେ ମଧ୍ୟ ଫସଲ ହେବାର କିଛି ସମ୍ଭାବନା ନାହିଁ। × × ।

ପୁରୀରେ ଏ ସମ୍ବାଦ ପ୍ରବେଶ ହେବାରୁ ଦୁର୍ଭିକ୍ଷ ପୀଡ଼ିତ ବ୍ୟକ୍ତିଙ୍କ ସାହାଯ୍ୟ ସକାଶେ ଚାନ୍ଦା ସଂଗ୍ରହ କରିବା କାରଣ ଗତ ମାସ ତା ୨୪ରିଖରେ ସଭା ହୋଇଥିଲା। ଉକ୍ତ ସଭାରେ କଲେକ୍ଟର ଆର୍ମଷ୍ଟ୍ରଂ ସାହେବ ଜଣାଇଲେ ଯେ ଦୁର୍ଭିକ୍ଷ ପୀଡ଼ିତ ବ୍ୟକ୍ତିଙ୍କୁ ସାହାଯ୍ୟ ନକଲେ ସେମାନେ ଅନାହାରରେ ପ୍ରାଣତ୍ୟାଗ କରିବେ। ଚାନ୍ଦା ସଂଗ୍ରହକର ସେମାନଙ୍କର ସାହାଯ୍ୟ କାର୍ଯ୍ୟ ନିର୍ବାହ ସକାଶେ ରିଲିଫ୍ କମିଟି ସ୍ଥାପନ ହେଲା ଏବଂ କଟକ ଓ ବାଲେଶ୍ୱରରେ ଚାନ୍ଦା ସଂଗ୍ରହ କରିବା କାରଣ କଲେକ୍-ଟର ମାନଙ୍କୁ ପ୍ରାର୍ଥନା କରିବାର ପ୍ରସ୍ତାବ ହେଲା।

ଆମ୍ଭେମାନେ ଶୁଣି ଆନନ୍ଦିତ ହେଲୁଁ ଯେ ପୁରୀରେ ଅନେକ ଟଙ୍କା ଚାନ୍ଦା ହୋଇଅଛି ଓ ରିଲିଫ କମିଟିର ସେକ୍ରେଟେରୀ ଚାନ୍ଦା ସଂଗ୍ରହ ସକାଶେ କଟକ ଓ ବାଲେଶ୍ୱରର କଲେକ୍ଟର ମାନଙ୍କ ନିକଟକୁ ପତ୍ର ଲେଖିଅଛନ୍ତି। ଆମ୍ଭମାନଙ୍କର କଲେକ୍ଟର ସାହେବ ଚାନ୍ଦା ଫର୍ଦ୍ଦ ଏ ନଗରରେ ଫେରାଉ ଅଛନ୍ତି।

ଚାଉଳକୁଦ ଏତାବ ସ୍ଥାନ ଛଡ଼ା ଖୋର୍ଦ୍ଧାର ଅବସ୍ଥା ମଧ୍ୟ ମନ୍ଦ ଅଟେ ଓ ଓଡ଼ିଶାର ସର୍ବତ୍ରରେ ଗୁପ୍ତ ଦୁର୍ଭିକ୍ଷ ପ୍ରବେଶ ହେବାର କହିଲେ ଅତ୍ୟୁକ୍ତି ହେବ ନାହିଁ । ଦୁଃଖୀ କଙ୍ଗାଳିଆମାନେ ଓଳିଏ ଖାଇଲେ ଓଳିଏ ଉପବାସ ରହୁଅଛନ୍ତି । ମାଣ୍ଡାଗାଁରେ ଲୋକେ ଦୁଇ ଦିନ ଖାଇବାକୁ ନପାଇବାରୁ ମହାଜନର ଗୋଲା ଲୁଟିନେଲେ । ଅତଏବ ଆମ୍ଭେମାନେ ପ୍ରାର୍ଥନା କରୁଁ ଯେ ସର୍କାର ପୂର୍ବରୁ ସତର୍କ ହୋଇ ଦୁଃଖୀ ପ୍ରଜାଙ୍କ ରକ୍ଷାର୍ଥେ କିଛି ଉପାୟ କରନ୍ତୁ । ସୁଆବିଲରେ ରିଲିଫ କାର୍ଯ୍ୟର ପ୍ରସ୍ତାବ ହୋଇ ଥିବାର ଆମ୍ଭେମାନେ ଶୁଣୁଅଛୁଁ । ତଦ୍ରୂପ କାର୍ଯ୍ୟ ଓଡ଼ିଶାର ସକଳ ସ୍ଥାନରେ ଆରମ୍ଭ କରିବାର ଉଚିତ ।

( ୧୨ଶ ଭାଗ, ୨୦ । ୧୦ । ୧୮୭୭, ସଂଖ୍ୟା ୪୧ )

୫୨୨ । କରଣ ସମାଜ ।

କରଣମାନଙ୍କୁ ପୁନର୍ବାର ଆପଣା ସମାଜ ସଂସ୍କରଣ ପକ୍ଷରେ ଯତ୍ନଶୀଳ ହେବାର ଦେଖି ବଡ଼ ଆନନ୍ଦିତ ହୋଇଅଛୁଁ । ଗତମାସ ଶେଷରେ ଏକ ଦିନ ଶ୍ରୀବାବୁ ହରେକୃଷ୍ଣ ଦାସଙ୍କ ବସାଘରେ ତାହାଙ୍କ ଆହ୍ୱାନମତେ କରଣମାନଙ୍କର ସଭା ହୋଇଥିଲା । ପ୍ରାୟ ଚାଳିଶ ଜଣ ସଭାରେ ଉପସ୍ଥିତ ଥିଲେ । ସଭାର ଭାବରୁ ଜଣାଗଲା ଯେ ଅଧିକାଂଶ ଲୋକ ସଭାର ସପକ୍ଷରେ ଅଛନ୍ତି । ବିବାହର ବ୍ୟୟ ଲାଘବ ବିଷୟରେ ଅନେକ କଥୋପକଥନ ହୋଇ ଗୋଟିଏ କମିଟୀ ମନୋନୀତ ହେଲା ଯେ ସେମାନେ ବର୍ତ୍ତମାନ ପ୍ରଚଳିତ ବ୍ୟୟର ତାଲିକା ନାନା ସ୍ଥାନରୁ ସଂଗ୍ରହ କରିବେ ଓ ତାହା କିରୂପେ ସଂଶୋଧନ କରିବାକୁ ହେବ ତହିଁର ପ୍ରସ୍ତାବ କରିବେ । କମିଟିଙ୍କ ପ୍ରସ୍ତାବ ସଭାରେ ଆଗତ ହେଲେ ତହିଁର ବିବେଚନା ହେବ । କମିଟିରେ ଯୋଗ୍ୟ ଲୋକମାନେ ନିଯୁକ୍ତ ହୋଇଅଛନ୍ତି । ଏଣୁ ଭରସା ହୁଅଇ ଯେ କିଛି କାର୍ଯ୍ୟ ହୋଇପାରେ । ଆମ୍ଭମାନଙ୍କର ଏ ବିଷୟରେ ଅନେକ କଥା ବୋଲିବାର ଅଛି ତାହା ସମୟ ୨ ରେ ବ୍ୟକ୍ତ କରିବୁଁ । ସମ୍ପ୍ରତି ଆମ୍ଭମାନଙ୍କର ଆଶା ଏହି ଯେ ସଭ୍ୟମାନେ ଏକାନ୍ତ ଏଥିର ଚେଷ୍ଟାରେ ରହନ୍ତୁ ଓ ଅନ୍ୟାନ୍ୟ ସଭା ବିଶେଷରେ ଏହି ବିଷୟର ପୂର୍ବ ସଭାମାନ ଯେମନ୍ତ ଅକାଳେ ଲୋପ ପାଇଅଛି ତାହା ଯେମନ୍ତ ଏ ସଭା କପାଳକୁ ନଘଟିବ ଏ କଥାକୁ ତର୍କି ଥାଉନ୍ତୁ । କେବଳ ବିବାହର ବ୍ୟୟ ଊଣା କରିବା ପ୍ରଚୁର ନୁହଇ । ବୈବାହିକ ନିୟମରେ ଯେ କିଛି ଅସୁବିଧା ଓ ବୃଥା ଆଡ଼ମ୍ବର ବର୍ତ୍ତମାନ ଲକ୍ଷିତ ହେଉଅଛି ସେ ସମସ୍ତ ରହିତ ବା ସଂଶୋଧିତ କରିବାକୁ କମିଟୀ ଚେଷ୍ଟା କରନ୍ତୁ । ବାବୁ ହରେକୃଷ୍ଣ ଦାସ ଏ ଜିଲ୍ଲାର କରଣମାନଙ୍କ ମଧ୍ୟରେ ଭଲା ମାନ୍ୟଗଣ୍ୟ ବ୍ୟକ୍ତି ଅଟନ୍ତି ଓ ସମସ୍ତେ ତାହାଙ୍କୁ ମୁରବି ଭଳି

ଜ୍ଞାନ କରନ୍ତି । ତାହାଙ୍କଠାରୁ ଏ ହିତକର ପ୍ରସ୍ତାବ ବାହାରିବା ବଡ଼ ଉତ୍ତମ ହୋଇଅଛି ଓ ସେ ଯେମନ୍ତ ସ୍ୱଜାତୀୟଙ୍କ ମଙ୍ଗଳ ଉଦ୍ଦେଶ୍ୟରେ କାର୍ଯ୍ୟରେ ହସ୍ତପ୍ରବେଶ କରୁଅଛନ୍ତି ତେମନ୍ତ ଅଧ୍ୟବସାୟ ସହିତ ଏହାକୁ ସମ୍ପୂର୍ଣ୍ଣ କରନ୍ତୁ ଓ ଅନ୍ୟାନ୍ୟ ବିଦ୍ୱାନ ଓ ଦେଶ-ହିତୈଷୀ ଲୋକମାନେ ତାହାଙ୍କ ସଙ୍ଗେ ଯୋଗ ଦେଉନ୍ତୁ ଏତିକି ଆମ୍ଭମାନଙ୍କର ପ୍ରାର୍ଥନା ।

( ୧୨ଶ ଭାଗ, ୨୭ । ୧୦ । ୧୮୭୭, ସଂଖ୍ୟା ୪୨ )

୫୨୩ । ସନ ୧୮୭୬ । ୭୭ ବାବଦ ଓଡ଼ିଶାର ସାଧାରଣ ବିଜ୍ଞାପନୀ ।

ସନ ୧୮୭୬ । ୭୭ ବାବଦ ଓଡ଼ିଶାର ସାଧାରଣ ବିଜ୍ଞାପନୀ ଉପରେ ମାନ୍ୟବର ଲେପ୍ଟେନେଣ୍ଟ ଗବର୍ଣ୍ଣରଙ୍କ ନିର୍ଦ୍ଧାରଣ କଲିକତା ଗଜେଟରେ ପ୍ରକାଶିତ ହୋଇଅଛି । ଆମ୍ଭେମାନେ ତହିଁରୁ ନିମ୍ନଲିଖିତ ବୃତ୍ତାନ୍ତମାନ ସଙ୍କଳନ କଲୁ, ଯଥା:—

× × ×

ଶ୍ରମଜାତ ଦ୍ରବ୍ୟ— ଓଡ଼ିଶାରେ ଲବଣ ପ୍ରଧାନ ମାତ୍ର ଗଞ୍ଜାମ ଲବଣ ସହଜରେ ଏଠାକୁ ଆସିବାରୁ ଏଠା ଯୋଗାଣୀ ଅତ୍ୟନ୍ତ ଊଣା ପଡ଼ୁଅଛି । କଟକରେ ଆଦୌ ଯୋଗାଣୀ ନାହିଁ । ପୁରୀରେ ଯାହା ଯୋଗାଣୀ ହୋଇଅଛି ବିକ୍ରୟ ହେଉନାହିଁ କେବଳ ବାଲେଶ୍ୱରରେ ପଙ୍ଗାଲୁଣର ଯୋଗାଣୀ ସେଠା ଖର୍ଚ୍ଚ ପରିମାଣରେ ରହିଅଛି । ଓଡ଼ିଶାର ଲୋକସଂଖ୍ୟା ୩୦୩୫୬୯୦, ଲବଣ ବାର୍ଷିକ ଖର୍ଚ୍ଚ ମ୪୦୬୨୨୪ହଣ, ଯୋଗାଣି ହୋଇଥିଲା ମ ୨୩୯୭୧ହଣ ମାତ୍ର, ଏତିକ ସୁଦ୍ଧା ବିକ୍ରୟ ହେଲାନାହିଁ । ପୁରୀ ଲୁଣ ଅଧିକ ବିକ୍ରୟ ନହେବାରୁ ସେଠା କଟକର ଲୁଣ ମାସୁଲ ମହଣ ଟ୨। ସ୍ଥାନରେ ଟ୨୧ ଙ୍କା ବସାଇବାକୁ ଗବର୍ଣ୍ଣମେଣ୍ଟ ଇଚ୍ଛାପୂର୍ବକ ପ୍ରସ୍ତାବ ହୋଇ ବିଚାରାଧୀନ ଅଛି ।

ବାଣିଜ୍ୟ— ଗତ ସାତବର୍ଷ ମଧ୍ୟରେ ଓଡ଼ିଶାର ବାଣିଜ୍ୟ ଅନେକ ବୃଦ୍ଧି ହୋଇଅଛି; ଯଥା:—

| କଟକ | ଆମଦାନୀର ମୂଲ୍ୟ | ରପ୍ତାନୀର ମୂଲ୍ୟ |
|---|---|---|
| ସନ ୧୮୭୦ । ୭୧ | ଟ୧୦୩୨୫୫୬ | ଟ ୬୬୯୭୫୭ |
| ୧୮୭୪ । ୭୫ | ଟ୧୩୮୦୬୪୩ | ଟ ୧୨୭୧୫୭ |
| ୧୮୭୬ । ୭୭ | ଟ୧୯୮୮୦୪୯ | ଟ ୨୯୧୭୩୯୫ |

| ପୁରୀ | | |
|---|---|---|
| ସନ ୧୮୭୦ । ୭୧ | ଟ ୨୨୨୪୭ | ଟ ୨୨୩୯୨୨ |
| ୧୮୭୫ । ୭୬ | ଟ ୨୦୨୫୨ | ଟ ୨୯୯୧୮୩ |
| ୧୮୭୬ । ୭୭ | ଟ ୨୦୧୨୭୪ | ଟ ୭୩୨୫୭୦ |
| ବାଲେଶ୍ୱର | | |
| ସନ ୧୮୭୦ । ୭୧ | ଟ ୩୨୦୭୮୭ | ଟ ୪୪୩୦୭୦ |
| ୧୮୭୫ । ୭୬ | ଟ ୨୦୨୨୮୬୨ | ଟ ୧୬୯୯୨୫୭ |
| ୧୮୭୬ । ୭୭ | ଟ ୨୩୪୩୫୮୪ | ଟ ୪୦୨୧୨୨୭ |

ସନ ୧୮୭୬ । ୭୭ ରେ ମାନ୍ଦ୍ରାଜର ଦୁର୍ଭିକ୍ଷ ହେତୁ ଅଧିକ ରପ୍ତାନି ହୋଇଅଛି ଏବଂ ଏହାପୂର୍ବେ ବେହାରର ଦୁର୍ଭିକ୍ଷ ସମୟରେ ସନ ୧୮୭୪ । ୭୫ ରେ କିଛି ଅଧିକ ରପ୍ତାନି ହୋଇଥିଲା । ମାତ୍ର ସହଜ ବର୍ଷମାନଙ୍କରେ ମଧ୍ୟ କ୍ରମଶଃ ଓଡ଼ିଶାର ବାଣିଜ୍ୟ ବଢ଼ିବାର ଦେଖାଯାଏ ।

## ( ୧୨ଶ ଭାଗ, ୩ । ୧୧ । ୧୮୭୭, ସଂଖ୍ୟା ୪୩ )

୫୨୪ । ସାମ୍ବାହିକ ସମ୍ବାଦ ।

ଆଗାମୀ ମଙ୍ଗଳବାର ଆମ୍ଭମାନଙ୍କ କଲେକ୍ଟର ସାହେବଙ୍କ କୋଠିରେ ପୁନର୍ବାର ଦେଶୀୟ ଭଦ୍ରଲୋକଙ୍କ ବୈଠକ ହେବାର ସ୍ଥିର ହୋଇଅଛି । ଏଥର ଆମନ୍ତ୍ରିତ ବ୍ୟକ୍ତିଙ୍କର ଯଥାର୍ଥ ସମ୍ମାନ ହୋଇଅଛି କାରଣ ଆମନ୍ତ୍ରଣ ପତ୍ରମାନ ମେମ ସାହେବଙ୍କ ନାମରେ ବାହାରିଅଛି ।

## ( ୧୨ଶ ଭାଗ, ୧୦ । ୧୧ । ୧୮୭୭, ସଂଖ୍ୟା ୪୪ )

୫୨୫ । ପୁରୀ ଦୁର୍ଭିକ୍ଷ ।

ମାନ୍ଦ୍ରାଜର ଦୁର୍ଭିକ୍ଷ ସାହାଯ୍ୟ ସଭାରେ କଲିକତାରେ ଯେଉଁ ସଭା ବସିଅଛି ତହିଁର ଗତ ମାସ ତା ୨୫ ରିଖର ଅଧିବେଶନର ବିବରଣ ଡେଲି ନିୟୁସରେ ପ୍ରକାଶ ହୋଇଅଛି । ଆମ୍ଭେମାନେ ତହିଁରୁ ପୁରୀ ଦୁର୍ଭିକ୍ଷର ସବିଶେଷ ବିବରଣ ଅବଗତ ହୋଇ ବଡ଼ ଦୁଃଖିତ ହେଲୁଁ । ଜଣାଗଲା ଏ ଯେ ଚିଲିକା ଓ ସମୁଦ୍ର ମଧ୍ୟରେ ପୁରୀଜିଲ୍ଲାର ଯେଉଁ ଭୂମିଖଣ୍ଡ ଅଛି ତହିଁରେ ଦୁର୍ଭିକ୍ଷ ପଡ଼ିଅଛି । ପୁରୀ କଲେକ୍ଟର ବାବୁ କୁମୁଦ

ନାଥ ମୁଖୁର୍ଯ୍ୟା ସବଡେପୁଟୀ କଲେକ୍ଟରଙ୍କୁ ଉକ୍ତ ସ୍ଥାନକୁ ସାହାଯ୍ୟ ବିତରଣ ସକାଶେ ପଠାଇ ଅଛନ୍ତି । ସବଡେପୁଟୀ ମହାଶୟ ମାଲୁଦ ଓ ବଜରକୋଟ ପରଗଣାମାନ ଦେଖି ରିପୋର୍ଟ କରିଅଛନ୍ତି କି "ଯେତେ ଭୂମିରେ ଧାନ ଲଗିଥିଲା ତହିଁ ମଧ୍ୟରୁ ପନ୍ଦରଅଣା ବିଲର ଗଛ ଜଳିଗଲଣି । ବାକି ଏକଅଣା ଜମି କିଛି ଗହିର ଥିବାରୁ ତହିଁର ଗଛ ଅବଧି ସାଗୁଆ ବର୍ଣ୍ଣ ଦିଶୁଅଛି । ଏପରିଗଛ ୭।୮ ଖଣ୍ଡ ଗ୍ରାମରେ ଦେଖାଯାଏ ଓ ଯେବେ ଏ ଧାନ ଉତ୍ତୁରିପିବ ତେବେ ମୌଜା ବାସିମାନେ ଏକପ୍ରକାର ନିର୍ବାହ ହୋଇପିବେ । ଏ ଅଞ୍ଚଳର ଲୋକଙ୍କ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଅଟଇ । ଏମାନଙ୍କ ଘରେ ମୁଠାଏ ଧାନ ନାହିଁ ଓ ଏହାଙ୍କ ରୂପରୁ ଜଣାପାଏ ଯେ ଏହାଙ୍କ ହାତରେ ଧନ ମୁଣ୍ଡା ନାହିଁ । ଯାହା ହାତରେ ଅଳ୍ପ କିଛି ଥିଲା ତାହା ଏତେଦିନ ଉଚ୍ଚ ଦରରେ ଚାଉଳ କିଣି ଖାଇବାରେ ଖର୍ଚ୍ଚ ହୋଇ ଯାଇଅଛି । ଧାନଗଛ ଏମାନଙ୍କର ଏକମାତ୍ର ଜୀବନ ରକ୍ଷାର ଉପାୟ ଓ ଯେତେବେଳେ ତାହା ନଷ୍ଟ ହୋଇଅଛି ସେତେବେଳେ ଏମାନଙ୍କର ଅବସ୍ଥା ଜାଣିବା କିଛି କଠିନ ନୁହଇ । ବର୍ତ୍ତମାନ ସାତଗୋଟା ସାହାଯ୍ୟ କର୍ମ ଆରମ୍ଭ ହୋଇଅଛି ଅର୍ଥାତ ୭ଟା ପୋଖରୀ ଏବଂ ଗୋଟାଏ ବନ୍ଧ । ପୋଖରୀ ସବୁ ଗହିର ଓ ବୃଦ୍ଧି କରାଯାଉଅଛି ଓ ତହିଁର ଜଳ ନିକଟବର୍ତ୍ତୀ କ୍ଷେତକୁ ବୁହାଇ ଦିଆ ଯାଉଅଛି । ୮୦୦ ଲୋକ କାମ କରୁଅଛନ୍ତି କିନ୍ତୁ ଏହାର ତିନିଗୁଣ ଲୋକ କର୍ମ କରିବାକୁ ଆସୁଅଛନ୍ତି ମାତ୍ର ପ୍ରଚୁର ଟଙ୍କା ନଥିବାରୁ ସେମାନଙ୍କୁ ବାଧ୍ୟ ହୋଇ ଫେରାଇ ଦେଉଅଛୁ । ପ୍ରତିଦିନ ଏକଶତଟଙ୍କା ଖର୍ଚ୍ଚ କରିବାର ନିୟମ ହୋଇଅଛି ଏବଂ ଏଥିରେ ମୁଦ୍ଧା କେବଳ ଦଶଦିନର ଟଙ୍କା ହାତରେ ଅଛି । ଯେଉଁମାନେ କର୍ମ ପାଉ ନାହାନ୍ତି ତାହାଙ୍କୁ ଅନ୍ୟ ସ୍ଥାନକୁ ଯାଇ କର୍ମ କରିବାକୁ କହିଲେ ସେମାନେ ସମ୍ମତ ହେଉନାହାନ୍ତି । ସ୍ତ୍ରୀ ପୁତ୍ରଙ୍କୁ ଦୁଃଖରେ ଛାଡ଼ି ଅନ୍ୟତ୍ରକୁ ଯିବା ଅପେକ୍ଷା ଘରେ ମରିବାକୁ ସେମାନେ ପ୍ରସ୍ତୁତ ଅଛନ୍ତି ଓ କୋଳିଅ, ଶାଗ, କନ୍ଦା ଫଳ ଇତ୍ୟାଦି ଖାଇ ପ୍ରାଣ ବଞ୍ଚାଉ ଅଛନ୍ତି । ଆମ୍ଭେ ଅବଧି ଯାଜପୁରକୁ ଯାଇନାହୁଁ କିନ୍ତୁ ଶୁଣୁଅଛୁଁ ଯେ ସେଠାରେ ମଧ୍ୟ ଲୋକେ ବଡ଼ ଦୁଃଖ ପାଉ ଅଛନ୍ତି ।"

ପୁରୀ ସାହାଯ୍ୟ କମିଟୀର ସେକ୍ରେଟେରୀ ଏ ସମସ୍ତ ବିବରଣ କଲିକତାର କମିଟୀ ନିକଟକୁ ଲେଖି ପଠାଇବାରୁ ସେଠାରୁ ଟ୩୦୦୦ଙ୍କା ସାହାଯ୍ୟ ଆସିଅଛି । ଏଥିରେ ଅନେକ ଲୋକଙ୍କର ପ୍ରାଣ ବଞ୍ଚିବ କିନ୍ତୁ ଯେଉଁଠାରେ ପ୍ରତିଦିନ ଟ୧୦୦ଙ୍କା ନିଅଣ୍ଟ ସେଠାରେ ଟ୩୦୦୦ଙ୍କାରେ ଏକମାସ ନିର୍ବାହ ହେବାର କଠିନ । କିନ୍ତୁ ପକ୍ଷରେ ଆଗାମୀ ବଆଳି ପର୍ଯ୍ୟନ୍ତ ଅଠମାସ କାଳ ଏମାନେ କିପରି ବଞ୍ଚିବେ ଏଥିର ବିଧାନ କରିବାର ଆବଶ୍ୟକ । ସାଧାରଣତଃ ବୋଧହୁଅଇ ଯେ ଓଡ଼ିଶାର ସର୍ବତ୍ରରେ ଭଲ ଫସଲ ହେଲେ ଦୁଇବର୍ଷର ଅନଟନରେ ଲୋକଙ୍କୁ ଦୁର୍ଭିକ୍ଷ ବାଧିବ ଏମନ୍ତ ଅନୁଭବ

କରିବା ଅଯୌକ୍ତିକ ଅଟଇ । ବାସ୍ତବରେ ସାଧାରଣ କାଳରେ ବାଧିବାର କଥା ନାହିଁ କିନ୍ତୁ ମାନ୍ଦ୍ରାଜ ଦୁର୍ଭିକ୍ଷ ହେତୁ ଏକବର୍ଷକାଳ ଏଠାରୁ କଣ ଶସ୍ୟ ଆମ୍ଭମାନେ ପ୍ରଚୁର ଶସ୍ୟ ମଧ୍ୟରେ ଦୁର୍ଭିକ୍ଷ କଷ୍ଟ ସହ ଅସ୍ତବ୍ୟସ୍ତ ହୋଇଅଛନ୍ତି । ଏବର୍ଷ ଯେ ଶୁଭଲ ଅଧିକ ଶସ୍ୟ ହେବ ଏମନ୍ତ ଆଶା ଦଶୁନାହିଁ ଓ ଯାହାଙ୍କ ହାତରେ ଧାନ ଅଛି ସେମାନଙ୍କର ଟଙ୍କାର ଅଭାବ ନଥିବାରୁ ବିକ୍ରୀ କରିବାକୁ ବ୍ୟସ୍ତ ନାହାନ୍ତି ସୁତରାଂ ଯେବେ ବର୍ତ୍ତମାନ ପରି ବର୍ଷକପାକ ଭାଉ ତେଜ ରହଇ ତେବେ ଦେଶରେ ଶସ୍ୟ ଥିଲେସୁଦ୍ଧା ସେମାନଙ୍କ କ୍ଳେଶ ଘିବନାହିଁ ଓ ସାହାଯ୍ୟ କରିବାର ଆବଶ୍ୟକ ପଡ଼ିବ । ଅତଏବ ଆମ୍ଭେମାନେ ପୁରୀର ମଫସଲ ସ୍ଥାନର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଜ୍ଞାନ କରୁଁ ଓ ତହିଁପାଇଁ ଗବର୍ଣ୍ଣ-ମେଣ୍ଟଙ୍କର ପ୍ରସ୍ତୁତ ହେବାର ଆବଶ୍ୟକ ।

*୨୬ । ସାପ୍ତାହିକ ସମ୍ବାଦ ।

( ସାମାଜିକ ବୈଠକ )

ଗତ ମଙ୍ଗଳବାର ଶ୍ରୀଯୁକ୍ତ ବାଉନ ସାହେବଙ୍କ କୋଠିରେ ଯେଉଁ ବୈଠକ ହୋଇଥିଲା ତହିଁର କାର୍ଯ୍ୟରୁ ପୂର୍ବ ବୈଠକ ପ୍ରାୟ ହୋଇଥିଲା । ଏଥର ଇଂରାଜ ବଣେଶରେ ଚାକିରି କର୍ମଚାରୀଙ୍କ ସଂଖ୍ୟା ଊଣା ଥିଲା । ମାତ୍ର ଶ୍ରୀଯୁକ୍ତ ବାଉନ ଓ ହାଣ୍ଡଲ ସାହେବଙ୍କ ସୌଜନ୍ୟରେ ଆମନ୍ତ୍ରିତ ଦେଶୀୟ ଭଦ୍ରଲୋକମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛନ୍ତି ଓ ସମସ୍ତେ ସାହେବ ଦ୍ୱୟଙ୍କର ପ୍ରଶଂସା କରୁଅଛନ୍ତି । ଇଂରାଜମାନଙ୍କ ପ୍ରକୃତ ଜାତୀୟ ଧର୍ମ ଶ୍ରୀଯୁକ୍ତ ବାଉନ ସାହେବ ଏଠାରେ ପ୍ରଚାର କରିଦେଲେ ।

## ( ୧୨ଶ ଭାଗ, ୧୭ । ୧୧ । ୧୮୭୭, ସଂଖ୍ୟା ୪୫ )

*୨୭ । ପୁରୀ ନଗରର ପୁଷ୍କରିଣୀ ସମସ୍ତ ପରିଷ୍କାର

କରିବାର ପ୍ରସ୍ତାବ ।

ପୁରୀ ଜିଲ୍ଲାର କମିଟିର ଗତ ସେପ୍ଟେମ୍ବର ମାସ ତା୧୨ ରିଖର ଅଧିବେଶନର ବିବରଣ ଓଡ଼ିଆ ଗେଜେଟରେ ପ୍ରକାଶିତ ହୋଇଅଛି । ଆମ୍ଭେ-ମାନେ ଦେଖିଲୁ ଯେ କମିଟି ପୁରୀ ନଗରର ପୁଷ୍କରିଣୀ ସମସ୍ତ ପରିଷ୍କାର ବିଷୟରେ ବଡ଼ ଯତ୍ନବାନ ହୋଇଅଛନ୍ତି । ପୁରୀର ପ୍ରଧାନ ପୁଷ୍କରିଣୀ ମାନ ଗୋଟିଏ ୨ ତୀର୍ଥ ଅଟଇ ।

ସମସ୍ତ ଯାତ୍ରୀ ଏଠାରେ ସ୍ନାନ କରନ୍ତି ଓ ସେ ସବୁର ପାଣି ଅତ୍ୟନ୍ତ ଅପରିଷ୍କୃତ ଥିବାରୁ ତଦ୍ଦ୍ୱାରା ରୋଗ ଜାତ ହେବାର ସମ୍ଭବ ଜଣାଯାଉ। ବାସ୍ତବରେ ଏକାରଣରୁ ରୋଗ ବୃଦ୍ଧି ହେଉଅଛିବ ବୋଲି ସନ୍ଦେହ ନାହିଁ। ମାର୍କଣ୍ଡ ପୁଷ୍କରିଣୀ ସଂସ୍କାର ବିଷୟରେ ବର୍ତ୍ତମାନର ମହାରାଜାଙ୍କ ନିକଟକୁ କମିଟୀ ପତ୍ର ଲେଖିଥିଲେ। ତହିଁର ଉତ୍ତର ମହାରାଜାଙ୍କର ନିଜର ସେକ୍ରେଟେରୀ ଲେଖିଅଛନ୍ତି କି ମହାରାଜା କମିଟୀର ପ୍ରସ୍ତାବ ସଫଳ କରିବାକୁ ପ୍ରସ୍ତୁତ ଅଛନ୍ତି ଏବଂ ପୁଷ୍କରିଣୀକୁ ପରିଷ୍କାର କରିବାରେ କେତେ ବ୍ୟୟ ଲାଗିବ ତହିଁର ବୃତ୍ତାନ୍ତ ଜାଣିବାକୁ ଇଚ୍ଛା କରିଅଛନ୍ତି। ଏଥିରୁ ବୋଧ ହୁଅଇ ଯେ ମହାରାଜାଙ୍କ ବ୍ୟୟରେ ଉକ୍ତ ପୁଷ୍କରିଣୀର ସଂସ୍କାର କାର୍ଯ୍ୟ ସମ୍ପନ୍ନ ହେବ।

ଶ୍ୱେତଗଙ୍ଗାକୁ ପରିଷ୍କାର କରିବା ବିଷୟରେ ଶ୍ରୀଯୁକ୍ତ ସହ୍ଲାଣ୍ଡ ସାହେବଙ୍କ ମତ ଏହିପରି ତହିଁର ବନ୍ଧ ଅତି ଉଚ୍ଚ ଓ ପାଣି ବନ୍ଧ ତଳେ ଥିବାରୁ ତାହାକୁ ଶୁଖାଇବା ଅସାଧ୍ୟ ଅଟେ। ଏ ପାଇଁ ସେ ଉକ୍ତ ପୁଷ୍କରିଣୀକୁ ପୋତି ପକାଇବାର ପ୍ରସ୍ତାବ କରିଥିଲେ କିନ୍ତୁ ତହିଁରେ ମତଭେଦ ହେବାରୁ ପରିଶେଷରେ ଏହିପ୍ରକାର ଧାର୍ଯ୍ୟ ହୋଇଅଛି ଯେ ଉକ୍ତ ପୁଷ୍କରିଣୀକୁ ସମୁଦ୍ର ବାଲିରେ ପୋତି ପକାଇ ତହିଁ ମଧ୍ୟରେ ଗୋଟିଏ କୂଅ ପ୍ରସ୍ତୁତ ହେବ ଅର୍ଥାତ୍ ତାହାର ଆକାର ଅତ୍ୟନ୍ତ ଛୋଟ ହେବ। ଆମ୍ଭେମାନେ ଏ ପ୍ରସ୍ତାବରେ ତେତେ ଆନନ୍ଦିତ ହୋଇନାହୁଁ ଓ ହିନ୍ଦୁ ସଭ୍ୟମାନେ ଏଥିରେ ସମ୍ମତ ହେବାର ଦେଖି ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଅଛୁଁ। ଡାକ୍ତର ଦେ: ଗୁପ୍ତ ମହାଶୟ ଯଥାର୍ଥ କହିଅଛନ୍ତି ଯେ ସେହି ପୁଷ୍କରିଣୀ ପର୍ବଦିନ ମାନଙ୍କରେ ଯେପରି ବ୍ୟବହାର ହୁଅଇ ଉକ୍ତ କୂପ ଜଳଦ୍ୱାରା ସେହି ବ୍ୟବହାର ହୋଇପାରିବ କି ନାହିଁ ଏ ବିଷୟରେ ତାହାଙ୍କର ସନ୍ଦେହ ଅଛି। ବାସ୍ତବରେ ଯେଉଁ ତୀର୍ଥ ସ୍ନାନ କରିବା ଉଦ୍ଦେଶ୍ୟରେ ହୋଇଅଛି ତାହାକୁ ପୋତି ପକାଇ କୂଅରେ ପରିଣତ କଲେ ଯାତ୍ରୀମାନଙ୍କର ବଡ଼ ଦୁଃଖ ହେବ ଓ କୌଣସି ବ୍ୟକ୍ତିର ତାହା କରିବାର ଅଧିକାର ନାହିଁ। ଏପରି ପୁରୀ ନଗରର ବଡ଼ଆଡ଼େ ଯେଉଁ ପୁଷ୍କରିଣୀମାନ ନିର୍ମିତ ହୋଇଅଛି ସେସବୁ ସେହିର କୀର୍ତ୍ତିର କାର୍ଯ୍ୟର ଅନ୍ତର୍ଗତ ଅଟଇ ଓ ତହିଁର ଅଲୋପନ କରିବା ଉଚିତ ନୁହଇ। ଏଥିରେ ନଗରର ଶୋଭା କେତେକ ନଷ୍ଟ ହେବ। ବିଶେଷ ଯେତେବେଳେ ବଡ଼ ଘର ଫଣ୍ଡରେ ବାଇଶ ହଜାର ଟଙ୍କା ଜମା ଅଛି ସେତେବେଳେ ଗୋଟାଏ ପୁଷ୍କରିଣୀ ପରିଷ୍କାର ନିମନ୍ତେ କମିଟୀ ହତାଶ ହେବାର କୌଣସି କାରଣ ନାହିଁ। ଅନ୍ୟ ଉପାୟରେ ଜଳ ନ ଶୁଖିଲେ ପୋଲର କାରଖାନାକୁ ଗୋଟାଏ ଦମକଳ ମାଗିନେଇ [illegible] ଦେଇ ନେଇଗଲେ ଅଳ୍ପ ବ୍ୟୟ ଓ ସମୟରେ ସେ ପୋଖରୀ ଶୁଖାଯାଇପାରେ। ଆମ୍ଭେମାନେ କମିଟୀକୁ ଅନୁରୋଧ କରୁଅଛୁଁ ସେ ପୁଷ୍କରିଣୀଟିକୁ ପୋତି ନ ପକାଇ ତାହାକୁ ପରିଷ୍କାର କରାଇ ଗୋଟାଏ ପୁରାତନ କୀର୍ତ୍ତିର ବିନାଶ ସାଧନ ନକରନ୍ତୁ।

## ସମ୍ବାଦପତ୍ରରୁ ଓଡ଼ିଶାର କଥା

ପରିଶେଷରେ ବଡ଼ ଦୁଃଖର ବିଷୟ ଯେ ପୁରୀର ମହାରାଜା ଏ ପ୍ରସ୍ତାବରେ ସମ୍ମତ ହେଲେ । ହିନ୍ଦୁମାନେ ତାହାଙ୍କଠାରେ ଧର୍ମ ବିଷୟରେ ଅନେକ ଆଶା କରନ୍ତି ଓ ତାହାଙ୍କୁ ଚଳନ୍ତି ବିଷ୍ଣୁ ବୋଲି ମଣନ୍ତି ମାତ୍ର ହିନ୍ଦୁଙ୍କର ଧର୍ମ ରକ୍ଷା କରିବା ତେଣିକି ଥାଉ ଯେଉଁ ବଂଶର ପ୍ରତିନିଧି ସେ ହୋଇଅଛନ୍ତି, ଯହିଁ ହେତୁରୁ ତାହାଙ୍କର ଏତାଦୃଶ ସମ୍ମାନ ସେହି ବଂଶର ପୂର୍ବ ପୁରୁଷଙ୍କ କୀର୍ତ୍ତିକୁ ଲୋପ କରିବା ସକାଶେ ସେ ଅନାୟାସରେ ସମ୍ମତି ଦେଲେ ଏବଂ ନରେନ୍ଦ୍ର ପୁଷ୍କରିଣୀକୁ ଶ୍ୱେତଗଙ୍ଗା ବୋଲିବା ସକାଶେ ଲୋକଙ୍କୁ ବୁଝାଇବାକୁ ମଧ୍ୟ ପ୍ରସ୍ତୁତ ହେଲେ । ଏ ବିଷୟରେ ସେ ଯେଉଁ ପତ୍ର ଲେଖିଥିଲେ ତହିଁର ଅବିକଳ ପ୍ରତିଲିପି ଆମ୍ଭେମାନେ ଏ[illegible]ର ଉଦ୍ଧୃତ କଲୁଁ । ଏଥିର ଭାଷା ଓ ଭାବ ଉଭୟ କୌତୁକ ଜନକ ଅଟଇ ଓ ଏଥିପାଇଁ କାହାକୁ ଧନ୍ୟବାଦ ଦିଆଯିବ ଆମ୍ଭେମାନେ ସ୍ଥିର କରି ପାରୁନାହୁଁ । ଓଡ଼ିଶାର ପ୍ରଧାନ ରାଜ-ବଂଶରେ ଯେବେ ଓଡ଼ିଆ ଭାଷାର ଏପ୍ରକାର ଦୁର୍ଦ୍ଦଶା ଯେ ପାଞ୍ଚଧାଡ଼ି ଅଶୁଦ୍ଧ ଓ ଅଙ୍ଗତ ପାରଶୀ ନ ଲେଖିଲେ ଖଣ୍ଡେ ପତ୍ର ଲେଖାଯିବାର ଦୁସ୍ତର ତେବେ ଏ ଭାଷାକୁ ଏକା-ବେଳକେ ପରିତ୍ୟାଗ କରିବାର ଉଚିତ ।

ଉକ୍ତ ପ୍ରତିଲିପି ଯଥା —

"ସାହେବ ଓ୍ୟାଲ. ମନାକବ. ରଫଏଲ. ମନଫିଲ. ଫେଜ୍ହାପଞ୍. ଏଜାଉ. ସାଜ. ପାଦଅଲ. ତାପଦ୍ଧ ।

ବାବସକେ. ମୁଲକା. ବେହେଜାତ୍. ଆଜଲଡକେ. ଖୋଲିସେ. ମତାଲବ. ଅସ୍ତ. ମଜୁହୁକଣ. ଏଗେର୍. ଦାନ. ମେଆବେକେ. ହଜୁରର ଚଳିତ ମାସ ତା ୨୮ ରିଖ ପହୁଆନା ନରେନ୍ଦ୍ର ପୁଷ୍କରିଣୀକି ଶ୍ୱେତଗଙ୍ଗା ବୋଲି ସମ୍ବିଧାନ କରିବା ହୁକୁମ ପ୍ରବେଶ ହେବାରୁ ସେଥିରୁ ସମସ୍ତ ବିଷୟ ଓ୍ୟାକବ ହେଲୁଁ । ଶ୍ୱେତଗଙ୍ଗା ଜଳ ନିତାନ୍ତ ଅପରିଷ୍କାର ହୋଇଅଛି ସେଥିରେ କିଛି ସନ୍ଦେହ ନାହିଁ ମାତ୍ର ଶାସ୍ତ୍ରରେ ତୀର୍ଥ ବୋଲି ଲେଖା ଯାଇଥିବାରୁ ସମସ୍ତ ଲୋକେ ତୀର୍ଥ ବୋଲି ମାନନ୍ତି ଓ ସେ ଜଳରେ ସ୍ନାନାଦି କରନ୍ତି । ଶ୍ରୀ ହଜୁରର ଆଦେଶ ମତେ ବର୍ତ୍ତମାନ ନରେନ୍ଦ୍ର ପୁଷ୍କରିଣୀକି ଶ୍ୱେତଗଙ୍ଗା ବୋଲି ସମ୍ବିଧାନ କରିବାରେ ଓ ଲୋକମାନଙ୍କୁ ବୁଝାଇ ଦେବା ପ୍ରତି ଆମ୍ଭର କିଛି ଓଜର ନାହିଁ ଓ ଅମ୍ଭେମଧ୍ୟ ଲୋକମାନଙ୍କୁ ଓ ପଣ୍ଡିତ ରାଜଗୁରୁ ମାନଙ୍କୁ ବୁଝାଇ ଅଛୁଁ । ଏ ସକାଶେ ଏତଲ୍ଲା କାରଣ ନିବେଦନ କଲୁଁ ।

ସନ ୧୮୭୭ ମସିହା ଅଗଷ୍ଟ ମାସ ତା ୨୯ ରିଖ ।

ଶ୍ରୀ ମହାରାଜା ଦିବ୍ୟସିଂହ ଦେବ"

---

## ( ୧୩ଶ ଭାଗ, ୫ । ୧ । ୧୮୭୮, ସଂଖ୍ୟା ୧ )

୫୨୮ । ତଳଲିଖିତ ବିଜ୍ଞାପନଟି କଟକର କଲେକ୍ଟର ସାହେବଙ୍କ ଠାରୁ ପ୍ରାପ୍ତହୋଇ ସର୍ବସାଧାରଣଙ୍କ ଗୋଚରାର୍ଥେ ପ୍ରକାଶ କରୁଅଛୁଁ ।

ଫୋର୍ଟ ଉଇଲିୟମ, ତା ୨୮ରିଖ ଡିସେମ୍ବର ୧୮୭୭ ।

ସନ ୧୮୭୭ ସାଲର ଲବଣ ଆଇନର ୧୧ଧାରା ଅନୁସାରେ ମହାମାନ୍ୟ ଗବର୍ଣ୍ଣର ଜେନେରାଲ ଇନ୍ କାଉନସିଲ ଆଜ୍ଞା ଦେଇଅଛନ୍ତି କି ସନ ୧୮୭୪ ସାଲ ୭ଆଇନ ( ବଙ୍ଗଳା ) ଅନୁସାରେ ଦୟାକ୍ରମେ ଓଡ଼ିଶାରେ ପୋକ୍ତାନି ହୋଇଥିବା ଲୁଣ ଉପରେ ଆଜ ତାରିଖ ଓ ଏଥି ଉତ୍ତାରୁ ପ୍ରତି ବଙ୍ଗଳା ମହଣ ଉପରେ ତଳଲିଖିତ ପ୍ରକାର କର ଆଦାୟ ହେବ । —

( କ ) ସୁବର୍ଣ୍ଣରେଖାର ଦକ୍ଷିଣ ସୀମା ଓ ଲୁଣଭଦ୍ରା ନଦୀ ମଧ୍ୟସ୍ଥିତ କୌଣସି ସ୍ଥାନରେ ପୋକ୍ତାନ ହୋଇଥିବା ଲୁଣ ଉପରେ ଟ ୨।

( ଖ ) ଲୁଣଭଦ୍ରା ନଦୀ ଓ କଟକ ଜିଲ୍ଲାର ଦକ୍ଷିଣ ସୀମା ମଧ୍ୟସ୍ଥିତ କୌଣସି ସ୍ଥାନରେ ପୋକ୍ତାନ ହୋଇଥିବା ଲୁଣ ଉପରେ ଟ ୨।୵

( ଗ ) କଟକ ଜିଲ୍ଲାର ଦକ୍ଷିଣ ସୀମା ଓ ମହାନଦୀ ମଧ୍ୟସ୍ଥିତ କୌଣସି ସ୍ଥାନରେ ପୋକ୍ତାନ ହୋଇଥିବା ଲୁଣ ଉପରେ ଟ ୨।

( ଘ ) ମହାନଦୀ ଓ ଧାମରା ନଦୀ ମଧ୍ୟସ୍ଥିତ କୌଣସି ସ୍ଥାନରେ ପୋକ୍ତାନ ହୋଇଥିବା ଲୁଣ ଉପରେ ଟ ୨।୵

( ଙ ) ଧାମରା ଓ କାଁସବାଁସ ନଦୀ ମଧ୍ୟସ୍ଥିତ କୌଣସି ସ୍ଥାନରେ ପୋକ୍ତାନ ହୋଇଥିବା ଲୁଣ ଉପରେ ଟ ୩୧

( ଚ ) କାଁସବାଁସ ନଦୀ ଓ ବାଲେଶ୍ୱର ଜିଲ୍ଲାର ଉତ୍ତର ସୀମାସ୍ଥିତ କୌଣସି ସ୍ଥାନରେ ପୋକ୍ତାନ ହୋଇଥିବା ଲୁଣ ଉପରେ ଟ ୩୵

ମାନ୍ଦ୍ରାଜ ପ୍ରଦେଶରେ ଲୁଣର ମାସୁଲ ମହଣ ପ୍ରତି ଟ ୨। ଓ ବଙ୍ଗଳା ପ୍ରଦେଶରେ ଟ ୩୵ ହୋଇଅଛି । ମାନ୍ଦ୍ରାଜ ଲବଣ ଉଣା ମାସୁଲ ହେତୁ ପୁରୀ ଓ କଟକ ଜିଲ୍ଲାକୁ ଚୋରା ଅଥବା ଅନ୍ୟ ପ୍ରକାରରେ ଅଧିକ ଆମଦାନୀ ହେବାର ସମ୍ଭାବନା

ହେବାରୁ ତାହା କରାଇଣ ଉଦ୍ଦେଶ୍ୟରେ ଉପରେ ଲିଖିତ କଥନ ହୋଇଅଛି । ଇହା ହେଲେ ଏହାଦ୍ୱାରା ଓଡ଼ିଶାର ଲବଣ ହୋଲ୍ଡାର କଣ୍ଟ୍ରାକ୍ଟରମାନେ ଆପଣା ୨ ଲବଣ ବକ୍ରୟ କରିବାକୁ ଅଧିକ ସୁଯୋଗ ପାଇବେ ଓ ମାନ୍ଦ୍ରାଜ ଲବଣ ତାହାଙ୍କର ବାଧା ହୋଇ ପାରିବ ନାହିଁ ।

## ୬୨୯ । ଅଭିନବ ସାମାଜିକ ବୈଠକ

ଇଉରୋପୀୟ ସମାଜରେ ରାଜପୁରୁଷ ଓ ଦେଶୀୟ ଲୋକେ ଏକତ୍ର ମିଶି ଆମୋଦ ପ୍ରମୋଦ କରିବାର ପ୍ରଥା ଗତବର୍ଷ ଦରବାର ଉପଲକ୍ଷରେ ଏ ପ୍ରଦେଶରେ ପ୍ରଥମେ ଦେଖାଗଲା । ଶ୍ରୀମତୀ ମହାରାଣୀଙ୍କ ଭାରତେଶ୍ୱରୀ ପଦ ଗ୍ରହଣର ଗୋଟିଏ ସାକ୍ଷାତ୍ ସୁଫଳ ସ୍ୱରୂପ ଆମ୍ଭେମାନେ ଉକ୍ତ ଘଟନାକୁ ମନେ କରିଥିଲୁଁ । ତହିଁ ଉତ୍ତାରୁ ଶ୍ରୀଯୁତ ବାଉନ ସାହେବ ଏ ଜିଲାକୁ ଆସି ଦୁଇଥର ଦେଶୀୟ ଲୋକଙ୍କୁ ଆପଣା କୋଠିକୁ ନିମନ୍ତ୍ରଣ କରି ଖେଳ ଇତ୍ୟାଦି ଆମୋଦ କରିବା ଦ୍ୱାରା ଇଂରାଜ ଲୋକଙ୍କର ଦେଶୀୟ ଲୋକଙ୍କ ସହିତ ଅଧିକତର ସଦ୍ଭାବ ସ୍ଥାପନର ପଥ ପରିଷ୍କାର କଲେ । କିନ୍ତୁ ତହିଁରେ ମଧ୍ୟ ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ତୃପ୍ତି ଲାଭ ହୋଇ ନଥିଲା ଓ ଆମ୍ଭେମାନେ ଦେଶୀୟ ଲୋକଙ୍କ ଘରେ ଇଂରାଜମାନଙ୍କର ଆମନ୍ତ୍ରଣ ସ୍ୱୀକାର କରିବାର କଥା ଦେଖିବାକୁ ବଡ଼ ଆଶା କରୁଥିଲୁଁ । ଏପରି ଘଟନା କଟକରେ ଅବଧି ହୋଇ ନଥିଲା କେବଳ ବନ୍ଧୁତ୍ୱ ଜନିତ ଖେଳ ପରେ ବାବୁ ବୈଦ୍ୟନାଥ ପଣ୍ଡିତଙ୍କ ଘରଠାକୁ ସର୍କସ ଦେଖିବା ସକାଶେ ଇଂରାଜମାନେ ଆସିଥିଲେ ମାତ୍ର ସମ୍ପୂର୍ଣ୍ଣରୂପ ମିଶାମିଶି ହୋଇ ନଥିଲା । ଏହି ବର୍ଷ ବାଲେଶ୍ୱରରେ ଶ୍ରୀଯୁତ ବାମ୍ସ ସାହେବ ଦୁଇ ତିନିଜଣ ଦେଶୀୟ ସମ୍ଭ୍ରାନ୍ତ ଲୋକଙ୍କ ଘରକୁ ଯାଇଥିଲେ ମାତ୍ର ତହିଁର ଉଦ୍ଦେଶ୍ୟ ଭିନ୍ନ ଥିଲା । ଶ୍ରୀଯୁକ୍ତ ବାବୁ ଜଗନମୋହନ ବନ୍ଧୁଙ୍କ ଘରେ ଗତ ୪ । ୨ ଦିବସରେ ଯେଉଁ ବୈଠକ ହୋଇଥିଲା ତାହାକୁ ପ୍ରକୃତ ପ୍ରଥମ ସାମାଜିକ ବୈଠକ ବୋଲିବାକୁ ହେବ । ଯେଉଁମାନେ ତାହା ଦେଖିଅଛନ୍ତି ସେମାନେ ଏକ ବାକ୍ୟରେ କହିଅଛନ୍ତି କି କଟକରେ ଏହା ନୂତନ ଅଟଇ । ବାବୁ ଜଗନ୍ମୋହନ ବନ୍ଧୁ ଏ ନଗରର ସମ୍ଭ୍ରାନ୍ତ ଇଂରାଜଙ୍କୁ ଆମନ୍ତ୍ରଣ କରିଥିଲେ, ଏମାନଙ୍କର ସଂଖ୍ୟା ପ୍ରାୟ ଚାଳିଶ ହେବ । ଏହି ପରିମାଣରେ ଦେଶୀୟ ଭଦ୍ର ଲୋକଙ୍କୁ ମଧ୍ୟ ସେ ଆମନ୍ତ୍ରଣ କରିଥିଲେ । ବୈଠକର ଶୃଙ୍ଖଳା ପ୍ରାୟ ପୂର୍ବବତ ପରି ଥିଲା । ତେବେ ରୋଶନାଇର ଆଡ଼ମ୍ବର ବଡ଼ ହୋଇଥିଲା ଓ ଯେମନ୍ତ ସୁରୁଚି ପୂର୍ବକ ଘର ଓ ଅଗଣା ଝାଡ଼ ଲାଣ୍ଠନ ଲାଇଟେନ ଫୁଲ ଇତ୍ୟାଦିରେ ସୁସଜ୍ଜିତ ହୋଇଥିଲା ତହିଁ ସଙ୍ଗେ ତୁଳନା ଦେବାକୁ ଗତ ଦରବାର ଘର ଛଡ଼ା ଆଉ କିଛି ଦେଖିନାହୁଁ । ଫଳତଃ ଏମନ୍ତ ସୁନ୍ଦର ମଜଲିସ ଆମ୍ଭେମାନେ କେବେ

ଏଠାରେ ଦେଖିନାହୁଁ । ବାବୁଙ୍କର ହୋମଗଲ ବୈଠକ ଖାନାରେ ଜଳପାନର ସ୍ଥାନ ହୋଇଥିଲା ଓ ତଳର ବୈଠକଖାନା ଓ ଅଗଣାରେ ଖେଳ ଇତ୍ୟାଦିର ସମସ୍ତ ସାମଗ୍ରୀ ପ୍ରସ୍ତୁତ ଥିଲା । ପ୍ରାୟ ଆମନ୍ତ୍ରିତ ସମସ୍ତ ଉଚ୍ଚ ରାଜକର୍ମଚାରୀ ଓ ଅନ୍ୟାନ୍ୟ ଇଂରାଜମାନେ ଆସିଥିଲେ ଓ ଅତ୍ୟନ୍ତ ଆନନ୍ଦ ସହିତ ଖେଳିବା ନାଚ ଦେଖିବା ଓ ଇଚ୍ଛାମତେ ଜଳପାନ ଇତ୍ୟାଦି କରିବାରେ ମଗ୍ନ ହୋଇଥିଲେ । ଦେଶୀୟ ଓ ଇଂରାଜମାନେ ଯାହା ସଙ୍ଗେ ଯାହାର ହେବ ମିଶାମିଶି ହୋଇ ଆମୋଦ କରିବାରେ ରତ ହେଲେ । ସମସ୍ତ ମଜଲିସ ଏକ ଭ୍ରାତୃଭାବର ପ୍ରତିମୂର୍ତ୍ତି ହୋଇଥିଲା । ସାହେବମାନେ ସିତାର ଓ ବେହେଲା ବାଦ୍ୟ ଶୁଣି ଓ ଗୋଟିଏ ଓ ବାଳିକାଙ୍କର ନାଚଦେଖି ବହୁ ଆନନ୍ଦିତ ହୋଇଥିଲେ । ସବୁ ବ୍ୟାପାର ଲେଖିବାକୁ ସ୍ଥାନ ନାହିଁ । ମୋଟରେ ଏହି କଥା ବୋଲିବା ଯଥେଷ୍ଟ ଯେ ଇଂରାଜମାନେ ସ୍ୱଜାତିଙ୍କ ଘରକୁ ଯାଇ ଯେମନ୍ତ ନିଷ୍କପଟ ଭାବରେ ଆମୋଦ କରନ୍ତି ଏଠାରେ ଠିକ ସେହି ପ୍ରାୟ କରିଥିଲେ । ଜାତି ଦେଶ କି ବର୍ଣ୍ଣର କିଛିମାତ୍ର ପ୍ରଭେଦ ମନେ କରିବାର କୌଣସି ଚିହ୍ନ ଦେଖା ଯାଇ ନଥିଲା । ଇଂରାଜଙ୍କ ସାମାଜିକ ପ୍ରଥା ଅନୁସାରେ କ୍ଷୁଦ୍ର ବକ୍ତୃତାମାନ ହୋଇଥିଲା । ଉଭୟେ ଆମନ୍ତ୍ରଣରେ ଅତ୍ୟନ୍ତ ଆନନ୍ଦ ଲଭି ଓ ସଦ୍ଭାବ ବୃଦ୍ଧିର କଥା କହିଥିଲେ । ଏଥିରେ ବାବୁ ରାଜେନ୍ଦ୍ର ମିଶ୍ର ଆପଣା ବକ୍ତୃତାରେ ଇଂରାଜ କବି ସେକ୍ସପିୟରଙ୍କର ଏହି ବଚନଟି, ଯଥା —

" Are we not brothers ?
So man and man should be "

ଉଦାହରଣ ସ୍ୱରୂପ କହିବାରୁ ଉପସ୍ଥିତ ଇଂରାଜମାନେ ଆନନ୍ଦରେ ନାଚିଉଠିଲେ ଓ ତହିଁରେ ପ୍ରତ୍ୟକ୍ଷ ଦେଖାଗଲା ଯେ କେବଳ ଭ୍ରାତୃଭାବ ସେମାନଙ୍କ ମନରେ ସ୍ଫୁରି ରହିଥିଲା । ସଂକ୍ଷେପରେ ବକ୍ତବ୍ୟ ଏହି ଯେ ଏ ବୈଠକଟି ଆଶାତିରିକ୍ତ ସଫଳ ହୋଇ ଥିଲା ଓ ଦେଶୀୟ ଲୋକଙ୍କ ମଧ୍ୟରେ ବାବୁ ଜଗନ୍ମୋହନ ରାୟ ଯେମନ୍ତ ଏହିର ପ୍ରଥମ ଅନୁଷ୍ଠାନ କରିବା ସକାଶେ ସେମନ୍ତ ଏହାକୁ ଅତି ଚମତ୍କାର ରୂପେ ଆଦ୍ୟପ୍ରାନ୍ତ ନିର୍ବାହ କରିବା ସକାଶେ ପ୍ରଶଂସାର ଯୋଗ୍ୟ ହୋଇଅଛନ୍ତି । ଆମ୍ଭେମାନେ ଏପରି ଆଶାକରୁ ଯେ ସମୟ ୨ ରେ ଏହି ପରି ସାମାଜିକ ବୈଠକମାନ ଦେଖିବାରେ ଆସିବ ।

( ୧୩ଶ ଭାଗ, ୧୯ । ୧ । ୧୮୭୮, ସଂଖ୍ୟା ୩ )

୬୩୦ । ମିଳିଲା ନାହିଁ ।

ବଙ୍ଗଳାରେ ଲବଣ କର ଦୁଇ ଅଣା କମ ହୋଇ ମାତ୍ର ଏ ଜିଲ୍ଲା ବଙ୍ଗଳା ଅନ୍ତର୍ଗତ ଥାଇ ହୁଦ୍ଧା ତହିଁର ଫଳ ପାଇ ପାରିଲା ନାହିଁ । ବାସ୍ତବରେ ଏଠାରେ

ଲୁଣର ଭାଉ ଊଚ୍ଚ ହୋଇଅଛି । ତହିଁର କାରଣ ଏହି ଯେ ଏଠାରୁ ଲୋକେ ମାନ୍ଦ୍ରାଜ ଏଲେକାର ଲୁଣ ଖରିଦ କରନ୍ତି ସୁତରାଂ ସେଠାରେ ଲବଣ କର ବୃଦ୍ଧି ହେବାରୁ ଏଠାରେ ଲୁଣ ଦର ତେଜ ହୋଇଗଲା ।

## ( ୧୩ଶ ଭାଗ ୨୭।୧।୧୮୭୮, ସଂଖ୍ୟା ୪ )

୫୩୧ । ମୃତ ହରିବାବୁଙ୍କ କର୍ମରେ ବାବୁ ନନ୍ଦ କିଶୋର ଦାସ ଡେପୁଟୀ କଲେକଟର ନିଯୁକ୍ତ ହେଲେ । ସମସ୍ତେ ଜାଣିଥିଲେ ଯେ ବାବୁ ଜଗନ୍ ମୋହନ ରାୟଙ୍କ ସପକ୍ଷେ କମିଶ୍ନର ସାହେବ ଅନୁରୋଧ କରିଅଛନ୍ତି ସେ ଅବଶ୍ୟ ନିଯୁକ୍ତ ହେବେ । ମଣିଷର ଏ ଅନୁମାନ କାହିଁକି ବାହାରିଲା । ଆମ୍ଭେମାନେ ଅନୁମାନ କରୁଁ ଯେ କମିଶ୍ନର ସାହେବଙ୍କ ସହିତ ଉତ୍କଳ ଦୀପିକା ଦ୍ୱାରା ଗବର୍ଣ୍ଣମେଣ୍ଟ ଏ ବନ୍ଦୋବସ୍ତ କରିଅଛନ୍ତି । ଆମ୍ଭମାନଙ୍କ ବିବେଚନାରେ ଏ ବନ୍ଦୋବସ୍ତଟି ବଡ଼ ମନ୍ଦ ହୋଇନାହିଁ ଓ ଯେବେ କମିଶ୍ନର ସାହେବ ନନ୍ଦ କିଶୋର ବାବୁଙ୍କ ସ୍ଥାନରେ ଆଉ ଏକ ଜଣ ଓଡ଼ିଶା ବାସୀଙ୍କୁ ଡେପୁଟୀ କଲେକ୍-ଟର ପଦରେ ନିଯୁକ୍ତ କରାଇ ପାରନ୍ତି ତେବେ ତାହାଙ୍କର ବନ୍ଦୋବସ୍ତ ସମସ୍ତଙ୍କର ସୁଖକର ହେବ ।

୫୩୨ । ବାବୁ ଜଗନ୍ମୋହନ ରାୟଙ୍କୁ ହରିବାବୁଙ୍କ କର୍ମ ଦିଆ ନଯାଇ ନନ୍ଦ କିଶୋର ବାବୁଙ୍କୁ କାହିଁକି ଦିଆଗଲା ଏକଥା ନେଇ ଆଜିକାଲି ଏ ନଗରରେ ବଡ଼ ତର୍କ ବିତର୍କ ଚାଲିଅଛି । ପ୍ରକୃତ କଥା ଜଣାପଡ଼େ ନାହିଁ ସୁତରାଂ ଲୋକେ ଯେ ଯାହା ବୁଦ୍ଧି ଅନୁସାରେ କାରଣ ନିର୍ଦ୍ଦେଶ କରୁଅଛନ୍ତି । ବୁଝିବା ଲୋକେ ବୋଲନ୍ତି ବୟସ ଅଧିକ ହେବା ହେତୁରୁ ଜଗନ୍ମୋହନ ବାବୁଙ୍କର ବଦଳି ହେଲାନାହିଁ । କେହି ୨ କହନ୍ତି ଉତ୍କଳ ଦୀପିକାର କଥାକୁ ଗବର୍ଣ୍ଣମେଣ୍ଟ ନେଲେ ( ଆମ୍ଭମାନଙ୍କର ଏତେ ଭାଗ୍ୟ ) କାହାରି ମତରେ ଜଗନ୍ମୋହନ ବାବୁ ଓଡ଼ିଆ ହୋଇ ନାହାନ୍ତି ବୋଲି ଓ କେହି ୨ କହନ୍ତି ସେ କର୍ମଟା କେବଳ କରଣଙ୍କର ଏକଚାଟିଆ ନୁହେଁ । ବାହାର ଲୋକମାନେ ତେତେ ଚିନ୍ତାଶୀଳ ନୁହନ୍ତି ସୁତରାଂ କାରଣ ଖୋଜିବା ଦରକାର ନପାଇ କେହି କେହି କହୁଅଛନ୍ତି କି ନନ୍ଦ କିଶୋର ବାବୁ ଜଗନମୋହନ ବାବୁଙ୍କ ଠାରୁ ବହୁତ ଭଲ ସେ ହେଡ଼ ସ୍କୁଲରେ ଥିଲେ ଓ କେହି ୨ ଚୁପକରି କହୁ ଅଛନ୍ତି କି ଜଗନ-ମୋହନ ବାବୁ ସେତେ ଗୁଡ଼ାଏ ଟଙ୍କା ଟୁଙ୍କାକୁ ଉଡ଼ାଇ ଦେଲେ ସାହେବମାନେ ଖାଇ ପିଇ ମୁଣ୍ଡ ପୋଛିଦେଇ ଚାଲିଗଲେ । ବଡ଼ କାମ ହେବେ ବୋଲି କହି ଆଉ ଦେଲେ ନାହିଁ । ମଜା କାମ !!!

୫୩୩ । ଉତ୍କଳ ସଭାର ଅଧିବେଶନ ଓ ଉତ୍କଳ ଭାଷା !

ଗତ ସପ୍ତାହ ଶୁକ୍ରବାର ରାତ୍ରରେ ଛାପାଖାନା ଦୋମହଲରେ ଉତ୍କଳ

ସଭାର ପ୍ରଥମ ଷାଣ୍ମାସିକ ଅଧିବେଶନ ହୋଇଥିଲା । ଏଥିରେ ସଭ୍ୟମାନେ ପ୍ରାୟ ସମସ୍ତେ ବିଦ୍ୟାଳୟର ଛାତ୍ର ଓ କେତେକଜଣ ଶିକ୍ଷକ ଅଟନ୍ତି । ସେଦିନ ଉପସ୍ଥିତ ପ୍ରାୟ ସେହିମାନେ ଥିଲେ ଓ ବାହାରର ଭଦ୍ର ଲୋକ ଦୁଇ ତିନିଜଣରୁ ଅଧିକ ହେବେ ନାହିଁ । ବାବୁ ରାଧାନାଥ ରାୟଙ୍କୁ ସଭାପତି କରି ସଭାର କାର୍ଯ୍ୟାରମ୍ଭ ହେଲା ଓ ଷାଣ୍ମାସିକ ରିପୋର୍ଟ ପାଠ ହେଲା । ଆମ୍ଭେମାନେ ତହିଁରୁ ଅବଗତ ହେଲୁ ଯେ ଏହିଦିନରେ ଏ ନଗରରେ ଉତ୍କଳ ଭାଷୋନ୍ନତିବିଧାୟିନୀ ଓ ଆଉ ଗୋଟିଏ ସଭା ମିଳିତ ହୋଇ ନୂତନ ନାମରେ ସଂଘଟିତ ହୋଇଅଛି । ଏହା ସୁଖର ବିଷୟ ଅଟଇ । ଏମନ୍ତ ଭଦ୍ର ନଗରରେ ଗୋଟିଏ ସଭା ସ୍ଥାୟୀ ହେବାର ଦସ୍ତୁର ଥିବା ଅବସ୍ଥାରେ ଦୁଇ ଗୋଟି ସଭା କରିବା କେବଳ ଆତ୍ମବିଚ୍ଛେଦ ବୃଦ୍ଧି ଭିନ୍ନ ଆଉ କିଛି ନୁହଇ । ଏ ପ୍ରକାର ସଭା ଅଧିକ ଦିନ ରହି ପାରେ ପୁଣି ସଭ୍ୟମାନେ ଏମନ୍ତ ଭାବରେ ସଭାକୁ ଚଳାଉ ଅଛନ୍ତି ଯେ ପ୍ରାୟ ବିନା ବ୍ୟୟରେ ଏଥିର କାର୍ଯ୍ୟ ଚଳୁଅଛି ସୁତରାଂ ସଭ୍ୟମାନଙ୍କୁ କିଛି ଦେବା ସୁଦ୍ଧା ହେବାକୁ ହେଉନାହିଁ । ଏହା ମଧ୍ୟ ସଭା ଅଧିକ ଦିନ ରହିବାର ଶୁଭ ଲକ୍ଷଣ ଅଟଇ । ରିପୋର୍ଟ ପାଠ ଶେଷ ହେବା ଉତ୍ତାରୁ ବାବୁ ପ୍ୟାରିମୋହନ ଆଚାର୍ଯ୍ୟ ଉତ୍କଳ ଭାଷା ସମ୍ବନ୍ଧରେ ଗୋଟିଏ ବକ୍ତୃତା କଲେ । ବକ୍ତୃତାଟି ଶେଷ ହେବାକୁ ପ୍ରାୟ ଏକଘଣ୍ଟା ଲାଗିଥିଲା ସୁତରାଂ ଦୀର୍ଘଥିଲା । ପ୍ୟାରୀ ବାବୁଙ୍କ ବକ୍ତୃତା ଏଠା ଲୋକେ କେବେ ୨ ଶୁଣି ଅଛନ୍ତି ଅତଏବ ତାହାଙ୍କର ବକ୍ତୃତା କରିବାର କ୍ଷମତା ଅଛି ଏକଥା ବୋଲିବା ବାହୁଲ୍ୟ । ବାସ୍ତବରେ ସେ ଯେମନ୍ତ ପ୍ରକାରେ ବକ୍ତୃତା କଲେ ତହିଁରୁ ଜଣାଗଲା ଯେ ସେ ଅଭ୍ୟାସ କଲେ ଭବିଷ୍ୟତରୁ ଜଣେ ସୁବକ୍ତା ହେବେ ମାତ୍ର ବକ୍ତୃତାର ଭାବ ଆମ୍ଭମାନଙ୍କର ସୁଖକର ହେଲା ନାହିଁ । ବାସ୍ତବରେ ତହିଁରେ ସାରକଥା ଅତ୍ୟଳ୍ପ ଥିଲା ଓ ଅଧିକାଂଶ ଲୋକଙ୍କ ନିନ୍ଦାରେ ପରିପୂର୍ଣ୍ଣ ହୋଇଥିଲା । ବକ୍ତୃତା ଶୁଣିବା ବେଳେ ଆମ୍ଭମାନଙ୍କ ମନରେ ହେଉଥାଏ ଯେମନ୍ତ ବକ୍ତାଙ୍କୁ ବିଷମ ସନ୍ନିପାତ ଘଟିଅଛି ଯେ ଯାହା ଜିଭ ଅଗକୁ ଆସୁଅଛି ଥ ଥ କରି ପକାଇ ଦେଉଛନ୍ତି । ବକ୍ତା ପ୍ରଥମେ କହିଲେ ଯେ ପ୍ରାଚୀନ ଶିଳ୍ପ କାର୍ଯ୍ୟ ଓ ଭାଷା ସକାଶେ ଓଡ଼ିଶାର ଗୌରବ ରହିଅଛି । ଶିଳ୍ପ କାର୍ଯ୍ୟର ପରିଚୟ ଭୁବନେଶ୍ୱର ଓ ପୁରୀର ମନ୍ଦିରମାନ ଏବଂ ଭାଷାର ପରିଚୟ ପ୍ରାଚୀନ ଗ୍ରନ୍ଥମାନ । ମନ୍ଦିର ମାନଙ୍କ ଅଶ୍ଳୀଳ ମୂର୍ତ୍ତିର କଥା ଉପସ୍ଥିତ ହେବାରୁ ସେ ସମସ୍ତର ଗୌରବ ରହିଗଲା ନୋହିଲେ ମନ୍ଦିର ମାନଙ୍କର କି ପର୍ଯ୍ୟନ୍ତ ହଟହଟା ହୋଇଥାନ୍ତା ଆମ୍ଭେମାନେ କହି-ନପାରୁଁ । କିନ୍ତୁ ସେହି ଅଶ୍ଳୀଳତାର ଅପରାଧରେ ପ୍ରାଚୀନ ଲେଖନୀର ଏତେ ନିନ୍ଦା ହେଲା ଯେ ବୁଝିବା ଲୋକେ ନିଶ୍ଚୟ ମନରେ କରିଥିବେ ଯେ ସେଥିରୁ ଯଥାର୍ଥରେ ଆମ୍ଭମାନଙ୍କର କଳଙ୍କ ଅଟଇ । ସବୁ ଗ୍ରନ୍ଥକାର ଅପେକ୍ଷା ଉପେନ୍ଦ୍ର ଭଞ୍ଜ ଓ ସବୁ ଗ୍ରନ୍ଥ ଅପେକ୍ଷା ଲାବଣ୍ୟବତୀ ଅଧିକ ଗାଳି ଖାଇଲେ । କେବଳ ପ୍ରାଚୀନ ଉପରେ ଦେଇ ଗାଳିଟା ବାହାର ପାଇନାହିଁ । ଆଧୁନିକ ସମ୍ପ୍ରଦାୟ ମଧ୍ୟ ତାହାକୁ ଉତ୍ତର ହୋଇ-

ନାହାନ୍ତି । କେତେଲେକ ଗ୍ରନ୍ଥକାର କେତେଲେକ ଅନୁବାଦକ କେତେ ଦରିଦ୍ର କେହି ବସ୍ତ୍ରୋଧିକ କେତେ ଶିକ୍ଷିତ କେତେ କଲଣ ଏହିପରି କେତେଲେକ କେତେ ପ୍ରକାରେ ନିନ୍ଦା ପାଇଲେ ତହିଁର ସୀମା ନାହିଁ । ଫଳେ ବାସ୍ତବର ସାରକଥା ଆମ୍ଭେମାନେ ଏହି ବୁଝିଲୁଁ ଯେ ଓଡ଼ିଆ ଭାଷାରେ ପ୍ରାଚୀନ କାଳର ଏମନ୍ତ କିଛି ସମସ୍ତ ନାହିଁ ତାହାର ଭାଷାର ଉନ୍ନତି ପ୍ରକାଶେ କାର୍ଯ୍ୟରେ ଆସିବ ଓ ବର୍ତ୍ତମାନ କାଳରେ ଏତେ ପ୍ରତିବନ୍ଧକ ଦେଖାଯାଏ ଯେ ସେ ସମସ୍ତ ଅତିକ୍ରମ କରି ସଭ୍ୟ ରୂପ ଅନୁସାରେ ଭାଷା ସଗଠିତ ହେବା କଠିନ । ତେବେ ଓଡ଼ିଶାର ସବ ଶ୍ରେଣୀର ଲୋକ ଯୋଗ ଦେଇ ଚେଷ୍ଟା କଲେ କିଛି କରିପାରିବେ ।

ଏଥି ଉତ୍ତାରୁ ବାବୁ ଚତୁର୍ଭୁଜ ପଟ୍ଟନାୟକ ସଂକ୍ଷେପରେ ଆପଣା ମନୋଭାବ ବ୍ୟକ୍ତ କରିଥିଲେ । ପ୍ୟାରୀ ବାବୁ ବଙ୍ଗାଳୀ ବାହ୍ମଣ ହୋଇ ଏ ଦେଶରେ ରହିଥିବାରୁ ଓଡ଼ିଆ ଭାଷା ପ୍ରତି ତାହାଙ୍କର ମନ ଓ ଉତ୍ସାହ ପ୍ରକାଶେ ତାହାଙ୍କୁ ଧନ୍ୟବାଦ ଦେଲେ ଓ ତାହାଙ୍କ ନିକଟରେ କୃତଜ୍ଞତା ସ୍ୱୀକାର କଲେ କିନ୍ତୁ ତାହାଙ୍କ ମତରେ ସମ୍ପୂର୍ଣ୍ଣ ରୂପେ ଐକ୍ୟ ହୋଇଲ ନାହିଁ । ସେ କହିଲେ କି ପ୍ରାଚୀନ ଓଡ଼ିଆ କାବ୍ୟକୁ ବଡ଼ା ମହାଶୟ ଯେତେ ନିନ୍ଦା କଲେ ତାହା ତେତେ ନିନ୍ଦନୀୟ ହୁଅଇ ! ତହିଁରେ ଅଶ୍ଳୀଳତାର ଦୋଷ ଲକ୍ଷିତ ହୁଅଇ ସତ୍ୟ ଓ ତାହା ସେ ସମୟର ରୁଚି ହେତୁରୁ ହୋଇଅଛି ମାତ୍ର ତହିଁରେ ଉତ୍କୃଷ୍ଟ ଭାବ ଓ ବିଷୟ ଅନେକ ଅଛି । ସେ ସବୁ ଯେ କ୍ରମେ ଲୋପ ହେଉଅଛି ତହିଁ ପ୍ରକାଶେ ଶିକ୍ଷା ବିଭାଗ ଦାୟୀ ଅଟନ୍ତି । ଆମ୍ଭମାନଙ୍କ ବିବେଚନାରେ ପଟ୍ଟନାୟକ ମହାଶୟ ଯଥାପେକ୍ଷ ରୂପେ ପ୍ରାଚୀନ କବିତାର ବିଚାର କରି ଅଛନ୍ତି ଏବଂ ଆମ୍ଭେମାନେ ସଭ୍ୟ ଓ ଶିକ୍ଷିତ ସମ୍ପ୍ରଦାୟଙ୍କୁ ଅନୁରୋଧ କରୁଅଛୁଁ ଯେ ସେମାନେ ଶ୍ରମ ସ୍ୱୀକାର ପୂର୍ବକ ପ୍ରାଚୀନ କାବ୍ୟମାନ ପାଠ କରି ତହିଁର ଦୋଷଭାଗ ପରିତ୍ୟାଗ ପୂର୍ବକ ଗୁଣଭାଗକୁ ଗ୍ରହଣ କରନ୍ତୁ । ଏଥିକୁ ମଧ୍ୟ ଆମ୍ଭମାନଙ୍କର ଏହି ଅନୁରୋଧ ଯେ ନାନା ଆଦିରସ ଘଟିତ ଓଡ଼ିଆ ଗ୍ରନ୍ଥରୁ ଏକ ୨ ଛନ୍ଦ ଦାହାର କରି ତହିଁର ପ୍ରକୃତ ସମାଲୋଚନା ପ୍ରବୃତ୍ତ କରିବାର ଚେଷ୍ଟା କରନ୍ତୁ । ତାହାହେଲେ ଯେମନ୍ତ ଗୁଣଭାଗ ଦେଖି ଅନେକ ଲୋକଙ୍କର ସେ ସମସ୍ତ ପୁସ୍ତକ ପଢ଼ିବାକୁ ଉତ୍ସାହ ହେବ ତେମନ୍ତ ବିଶୁଦ୍ଧ ରୁଚି ଶିକ୍ଷା କରି ତହିଁର ଦୋଷଭାଗ ପରିତ୍ୟାଗ କରିବାକୁ ସତର୍କତା ଜନ୍ମିବ । ସମ୍ପ୍ରତି ଯାହା ଅମ୍ଭେମାନେ ଦେଖୁଅଛୁଁ ଓ ଶୁଣୁଅଛୁଁ ତହିଁରେ ଏମନ୍ତ ଅନୁମାନ ହୁଅଇ ଯେ ଅଶ୍ଳୀଳତାର ପ୍ରକୃତ ଅର୍ଥ ବୁଝିବାରେ ଅନେକ ଗୋଳମାଳ ଅଛି । କାହାରିମତରେ ଆଦିରସ ଘଟିତ କବିତା ମାତ୍ରକେ ଅଶ୍ଳୀଳ ଓ କାହାରି ମତରେ କେବଳ ସ୍ତ୍ରୀ ପୁରୁଷର ଗୁପ୍ତ ବ୍ୟବହାରର ବର୍ଣ୍ଣନା ଅଶ୍ଳୀଳ ଅଟଇ । ଆଦିରସ ଘଟିତ କବିତା କେଉଁ ଅବସ୍ଥାରେ ଅଶ୍ଳୀଳତାକୁ ପ୍ରାପ୍ତ ହୁଅଇ ଏହାର ପ୍ରକୃତ ଜ୍ଞାନ ସର୍ବ-

ସାଧାରଣରେ ପ୍ରଚାର କରିବାକୁ ସଭା ହୋଇ କରିଲେ ଅନେକ ଉପକାର ହୋଇ-
ପାରେ ।

୫୩୪ । ସାପ୍ତାହିକ ସମ୍ବାଦ ।

ଘୁମସୁରରୁ ସମ୍ବାଦ ପାଇଅଛୁଁ ଯେ ଉପଯୁକ୍ତ କମିଶନର ଓ ସୁଯୋଗ୍ୟ କଲେକ୍ଟର ସାହେବମାନେ ସେ ଅଞ୍ଚଳର ଅବସ୍ଥା ଦେଖି ଦୁର୍ଭିକ୍ଷ ସାହାଯ୍ୟ ନିମନ୍ତେ କେତେକ ବନ୍ଦୋବସ୍ତ କରି ଆସିଅଛନ୍ତି ମାତ୍ର ତାହା କାର୍ଯ୍ୟରେ ପରିଣତ ହୋଇ- ନାହିଁ । ଏଥିମଧ୍ୟରେ ରାଜାଙ୍କର ଗୋଟିଏ ପୁତ୍ର ଜାତ ହୋଇ ଥିବାରୁ ରାଜା ଏକ ହଜାର ଟଙ୍କା ଦାନ କରି ଅଛନ୍ତି ଓ ତହିଁରେ ପୁଷ୍କରିଣୀ ଇତ୍ୟାଦି କେତେକ କର୍ମ ହୋଇ- ଥିବାରୁ ପ୍ରଜାଙ୍କର ଅନେକ ସାହାଯ୍ୟ ହେଉଅଛି ।

ଏହି ପତ୍ରରୁ ଅବଗତ ହେଲୁ ଯେ ମାଲେଗଡ଼ ଓ ରସେଲକୋଣ୍ଡା ଏଲାକା- ରେ କୋଡ଼ିଏ ଗୋଟା ପୁଷ୍କରିଣୀ ଏବଂ ଏକ ବୃହତ ନାଲା ପ୍ରସ୍ତୁତ ହେଉଅଛି । ଏଥିର ସମସ୍ତ ଶ୍ରେଣୀର ଦୁଃଖୀ ଅକ୍ଷମ ପ୍ରଜାଙ୍କୁ ଟଙ୍କା ଦାନ ଦିଆ ଯାଉଅଛି । ଏଥିରେ ଆଜି ପର୍ଯ୍ୟନ୍ତ ପ୍ରାୟ ଦଶ ବାରହଜାର ଟଙ୍କା ଖର୍ଚ୍ଚ ହେଲଣି କିନ୍ତୁ ଘୁମସୁରରେ କେବଳ ଏ ପର୍ଯ୍ୟନ୍ତ ସାହାଯ୍ୟ କର୍ମରେ ଛଅଶ ଟଙ୍କା ବ୍ୟୟ କରାଯାଇଅଛି । ଆମ୍ଭମାନଙ୍କ ବିବେ- ଚନାରେ ସବୁ ଦୁର୍ଭିକ୍ଷ ପୀଡ଼ିତ ସ୍ଥାନରେ ସମାନ ଭାବରେ ସାହାଯ୍ୟ ଦେବାର ଉଚିତ ।

( ୧୩ଶ ଭାଗ, ୯ । ୨ । ୧୮୭୮, ସଂଖ୍ୟା ୬ )

୫୩୫ । ଏ ନଗରରେ ଗତବର୍ଷ ଠାରୁ ବାରବ୍ୟାରି ନିୟମରେ ଶ୍ରୀ ସରସ୍ୱତୀ ପୂଜା ହୋଇ ଆସୁଅଛି । ଗତବର୍ଷ ଏହି ଉପଲକ୍ଷରେ ବସନ୍ତ ପଞ୍ଚମୀ ଓ ତହିଁ ଉତ୍ତାରୁ ଦୁଇ ରାତି ଏ ନଗରବାସୀ ଭଦ୍ର ଲୋକମାନେ ବଡ଼ ଆମୋଦ କରିଥିଲେ କିନ୍ତୁ ସେ ସବୁ ଆମୋଦ କେବଳ ପୁତୁଳା ନାଚର ବାଇନାଚକୁ ଅବଲମ୍ବନ କରି ପ୍ରକାଶ ହୋଇ ଥିଲା । ବର୍ତ୍ତମାନର ସଭ୍ୟ ରୁଚି ପ୍ରତି ଦୃଷ୍ଟି କରି ଏବଂ ବୋଧ ହୁଏ ପୂଜାର ପ୍ରସଙ୍ଗ ହୋଇ ଏବର୍ଷ ହେତୁରୁ ଏଠା ଭଦ୍ର ମଣ୍ଡଳୀଙ୍କ ଯତ୍ନରେ ନାଟକମାନ ହେଲେ । ଏହି ହେତୁରୁ ଗତ ବସନ୍ତ ପଞ୍ଚମୀ ରାତିରେ ତାହାଙ୍କ ପୂଜା ଉପଲକ୍ଷରେ ଏକ ନୂତନ ଭାନୁମତୀ ଦେଖାଗଲା । ଓଡ଼ିଶାରେ ନାଟକର ଅଭିନୟ ଏତେ ଶୀଘ୍ର ହେବ ବୋଲି ସ୍ୱପ୍ନରେ ସୁଦ୍ଧା ଜାଣି ନଥିଲେ । ନାଟକର ଅଭିନୟ କପିଳ ହୁଅଇ ୫୦। ୬୦ ଲୋକ ପ୍ରାୟ ଦେଖି ନାହାନ୍ତି ଓ ଯଦ୍ୟପି ବା ଦୁଇ ମାସ ତଳେ ଏକ ଦଳ ଲୋକ କଲିକତାରୁ ବାଲେଶ୍ୱର

ପର୍ଯ୍ୟନ୍ତ ନାଟକର ଅଭିନୟ ଦେଖାଇବା ସକାଶେ ଆସିଥିଲେ ଓ ଏଠାକୁ ଆସିବେ ବୋଲି ଶୁଣା ଯାଉଥିଲା ମାତ୍ର ଘଟଣାକ୍ରମେ ତାହା ହେଲା ନାହିଁ । କିନ୍ତୁ ଏ ନଗର-ବାସୀ ଯୁବକ ବୃନ୍ଦଙ୍କୁ ଆମ୍ଭେମାନେ ଅଶେଷ ଧନ୍ୟବାଦ ଦେଉଅଛୁ ଯେ ସେମାନେ ଅତି ଅଳ୍ପକାଳ ମଧ୍ୟରେ ଏକ ଦଳ ପ୍ରସ୍ତୁତକରି ପଥ ବାଟରେ ନାଟକର ଅଭିନୟ ଆମ୍ଭମାନଙ୍କୁ ଦେଖାଇ ଆଶାତିରିକ୍ତ ସୁଖ ପ୍ରଦାନ କଲେ । ଏହି ବସନ୍ତ ପଞ୍ଚମୀ ଦିବସରେ ଓଡ଼ିଶାରେ ନାଟକର ଅଭିନୟ ପ୍ରଥମଥର ହେଲା । ଏ ସକାଶେ ଏ ଦିନଟି ଚିରସ୍ମରଣୀୟ ହୋଇ ରହିଲା ଏବଂ ସ୍ୱୟଂ ସରସ୍ୱତୀଙ୍କୁ ବିଧି ପୂର୍ବକ ପୂଜା ଦ୍ୱାରା ଆହ୍ୱାନ କରି ତାହାଙ୍କ ସମ୍ମୁଖରେ ପ୍ରଥମ ଥର ଅଭିନୟ ହେଲା । ଏଥିରୁ ଆଶା ହୁଅଇ ଯେ ଉତ୍ତରୋତ୍ତର ଏହାର ବୃଦ୍ଧି ହେବ ଓ ଏହାଦ୍ୱାରା ସଙ୍ଗୀତ ଓ ସାହିତ୍ୟର ଉନ୍ନତି ହେବ । ଆମ୍ଭେମାନେ କହୁଅଛୁଁ ଯେ ଅଳ୍ପ କାଳ ମଧ୍ୟରେ ଏହା ସାଧିତ ହୋଇଅଛି । ବାସ୍ତବରେ ଦୁଇମାସ ପୂର୍ବରେ କେହି ଜାଣୁ ନଥିଲେ ଯେ ଏଠାରେ ନାଟକର ଅଭିନୟ ହେବ । ବଙ୍ଗଳାରେ ଏକ ୨ ଜଣ ଧନି ଲୋକର ସହାୟତାରେ ପ୍ରଥମେ ଏହି କାର୍ଯ୍ୟ ହୋଇଥିଲା ଓ କେହି ୨ ଧନବାନ୍ ଏଥିରେ ସର୍ବସ୍ୱ ବ୍ୟୟକରି ଫକୀର ହୋଇଅଛନ୍ତି । ଏଠାରେ ସେପରି କେହି ଉତ୍ସାହଦାତା ନଥିଲା କିନ୍ତୁ କେତେକଜଣ କୃତବିଦ୍ୟ ଯୁବାଙ୍କ ଅସୀମ ସଙ୍କଳ୍ପ ଓ ଯତ୍ନରେ ଏଠାରେ ଅଭିନୟ ସମ୍ଭବ ହେଲା । ଏମାନେ ଆପଣା ମଧ୍ୟରେ ଏକ ଦଳ ବାନ୍ଧି ଅଭିନୟ ଦେଖାଇବେ ବୋଲି ସ୍ଥିର ସଙ୍କଳ୍ପ ହୋଇ ତହିଁର ବ୍ୟୟ ସକାଶେ ଆପଣା ମଧ୍ୟରେ ଚାନ୍ଦା କଲେ ଓ ଏଠାର ଭଦ୍ର ଲୋକମାନେ ମଧ୍ୟ ତାହାଙ୍କ ପ୍ରାର୍ଥନା ମତେ ଚାନ୍ଦା ଦେଇ ତାହାଙ୍କର ଉତ୍ସାହ ବଢ଼ାଇଲେ । ତହିଁର ଫଳ ଗତ ବସନ୍ତ ପଞ୍ଚମୀ ରାତ୍ରରେ ଦେଖାଗଲା । ନୂଆ ତମାସା ହେବ ବୋଲି ନଗରବାସୀ ଭାଙ୍ଗିଲା ପଡ଼ି-ଗଲେ ଓ ଟିକେଟ ସଂଗ୍ରହ କରିବା ପାଇଁ ସମସ୍ତେ ବ୍ୟସ୍ତ ହେଲେ । ରାତ୍ରି ଦଶଘଣ୍ଟା ବେଳକୁ ମଣ୍ଡପରେ ତିଳେ ସ୍ଥାନ ନଥିଲା ଓ ଭିଡ଼ରେ ବାଟ ଚାଲିବା କଠିନ ହେଲା । ଖେଳ ଆରମ୍ଭ ହୁଅନ୍ତେ ଲୋକେ ଏମନ୍ତ ମନୋନିବେଶ ପୂର୍ବକ ଦେଖିବାରେ ମଗ୍ନ ହେଲେ ଯେ ଅଭିନୟର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅଧିକାଂଶ ଲୋକ ବସିରହିଲେ । ମଝି ୨ ରେ କରତାଳି ଓ ଅନ୍ୟାନ୍ୟ ଚିହ୍ନ ଦ୍ୱାରା ସମସ୍ତେ ଆନନ୍ଦ ପ୍ରକାଶ କଲେ । ବାବୁ ମନ ମୋହନ ବସୁଙ୍କ କୃତ ରାମାଭିଷେକ ନାଟକରୁ ଅଭିନୟ ହୋଇଥିଲା ଓ ପ୍ରଥମ ଉଦ୍ୟମରେ ଯେ ଅଭିନୟକାରୀମାନେ ଏତାଦୃଶ ଆନନ୍ଦ ପ୍ରଦାନ କରିବାକୁ ସକ୍ଷମ ହେଲେ ଏଥିରେ ସମସ୍ତେ ତାହାଙ୍କର ପ୍ରଶଂସା ଓ ସାଧୁ ଘୋଷଣା କଲେ । ଆମ୍ଭେମାନେ ଆଶାକରୁଁ କି ଯେଉଁମାନେ ଏତାଦୃଶ କୃତକାର୍ଯ୍ୟତା ଲାଭ କରିଅଛନ୍ତି ସେମାନେ ଏତିକରେ ସନ୍ତୁଷ୍ଟ ନହୋଇ କ୍ରମଶଃ ଏଥିର ଉନ୍ନତି ସାଧନ କରନ୍ତୁ ଓ ଏହାଙ୍କ ଯୋଗେ ଓଡ଼ିଶାରେ ନାଟକର ସୃଷ୍ଟି ଓ ତହିଁ ସଙ୍ଗେ ୨ ନାଟକରଚନାର ପ୍ରବୃତ୍ତି ବଢ଼ାଇ ଦେଉ ।

## ( ୧୩ଶ ଭାଗ, ୧୭ । ୨ । ୧୮୭୮, ସଂଖ୍ୟା ୭ )

୫୩୬ । ଭାରତେଶ୍ୱରୀ ଅଟ୍ଟାଳିକା ।

ଶ୍ରୀମତୀ ଭାରତେଶ୍ୱରୀ ପଦ ଗ୍ରହଣ ସ୍ମରଣାର୍ଥେ ଏ ନଗରରେ ଯେଉଁ ଅଟ୍ଟାଳିକା ନିର୍ମାଣ ହେବାର ପ୍ରସ୍ତାବ ଗତବର୍ଷ ହୋଇଥିଲା ତହିଁରେ ଯେଉଁମାନେ ଚାନ୍ଦା ଦେବାକୁ ସ୍ୱୀକୃତ ହୋଇଅଛନ୍ତି ସେମାନଙ୍କର ନାମ ଓ ଚାନ୍ଦାର ଓ୍ୟାସିଲବାକୀ ଅତିରିକ୍ତ ପତ୍ରିକାରେ ପ୍ରକାଶିତ ହେଲା । ମୋଟରେ ଟ ୧୦୪୯୧୩୯ଙ୍କା ଚାନ୍ଦା ସ୍ୱାକ୍ଷରିତ ଓ ତହିଁ ମଧ୍ୟରେ କେବଳ ଟ ୪୭୮୬୫/୭ ଆଦାୟ ହୋଇ ଟ ୫୮୨୬୮୨ ବାକି ଅଛି । ଚାନ୍ଦା ଏତେ ବାକି ରହିବାର ଉଚିତ ନଥିଲା କିନ୍ତୁ ଉସୁଲର ଉଦ୍ୟମ ମଧ୍ୟ ଭଲ ହୋଇନାହିଁ । ଏଣୁ ଅର୍ଥାଭାବରେ କାର୍ଯ୍ୟାରମ୍ଭ ହୋଇ ପାରୁନାହିଁ । କେବଳ ନକ୍ସା ଓ ଇଷ୍ଟିମିଟ ହୋଇ ରହିଅଛି । ଏଣିକି କେତେ ହାକିମମାନେ କିଛି ଅଧିକ ତତ୍ପର ହୋଇଅଛନ୍ତି ଓ ସ୍ୱୟଂ କମିଶନର ସାହେବ ଚାନ୍ଦାଦାତାଙ୍କ ନିକଟରେ ଶୀଘ୍ର ଚାନ୍ଦା ଦେବାକାରଣ ଅନୁରୋଧ କରିଅଛନ୍ତି । ମାତ୍ର ଆମ୍ଭେମାନେ ବିବେଚନା କରୁଁ ଓ ସୁବିଧାଯୁକ୍ତ ବର୍ତ୍ତମାନ ସୂଚନା ପ୍ରାର୍ଥନା କରୁଅଛୁଁ କି ଅବିଳମ୍ବେ ଚାନ୍ଦା ଦାତାଙ୍କର ସଭା ହୋଇ ଗୋଟିଏ କାର୍ଯ୍ୟ ନିର୍ବାହକ କମିଟି ନିଯୁକ୍ତ ହେଉ । ଉକ୍ତ କମିଟି ଯେମନ୍ତ ଚାନ୍ଦା ଆଦାୟ କରିବେ ତେମନ୍ତ ଅଧିକ ଚାନ୍ଦା ସଂଗ୍ରହ କରିବାର ଚେଷ୍ଟା କରିବେ ଏବଂ କାର୍ଯ୍ୟ ଆରମ୍ଭ ଓ ସମାପ୍ତ କରିବେ । ଯେତେ ଟଙ୍କା ଚାନ୍ଦା ସ୍ୱାକ୍ଷରିତ ହୋଇଅଛି ତାହା ପ୍ରସ୍ତାବିତ ଘର ସକାଶେ ପ୍ରଚୁର ନୁହେ ମାତ୍ର ଘରର କାର୍ଯ୍ୟାରମ୍ଭ ହେଲେ ଆହୁରି ଚାନ୍ଦା ପ୍ରାପ୍ତ ହେବ ସନ୍ଦେହ ନାହିଁ ବିଶେଷରେ ମହାରାଜା ଓ ରାଜାମାନେ ଅନେକ ଅଳ୍ପ ଟଙ୍କା ସ୍ୱାକ୍ଷର କରିଅଛନ୍ତି ଏବଂ ଆଉ କେତେକ ଜମିଦାର ଓ ଅନ୍ୟାନ୍ୟ ଦେବା ଭଳି ଲୋକମାନେ ରହିଯାଇ ଅଛନ୍ତି । ଏ ସମସ୍ତଙ୍କଠାରୁ ଉପଯୁକ୍ତ ରୂପ ଚାନ୍ଦା ପ୍ରାପ୍ତି ହେବାର କିଛି ସନ୍ଦେହ ନାହିଁ କେବଳ କାର୍ଯ୍ୟାରମ୍ଭ କରିବାର ବନ୍ଦୋବସ୍ତ ହେବାର ଆବଶ୍ୟକ ।

ପରିଶେଷରେ ଆମ୍ଭେମାନେ ଚାନ୍ଦା ଦାତାଙ୍କୁ ଅନୁରୋଧ କରୁଅଛୁଁ କି ସେମାନେ ଆପଣା ୨ ଚାନ୍ଦା ଓ ବାକିର ପରିମାଣ ଏତତ୍ସଙ୍ଗେ ପ୍ରକାଶିତ ହିସାବ ତାଲିକାରୁ ଦେଖି ବାକିଦାରଙ୍କ ମଧ୍ୟରୁ ଶୀଘ୍ର ଅନ୍ତର ହେଉନ୍ତୁ । ଆମ୍ଭେମାନେ ପ୍ରତି ମାସରେ ଏହିପରି ଓ୍ୟାସିଲ ବାକି ପ୍ରକାଶ କରିବାର ମାନସ କଲୁଁ ।

## ( ୧୩ଶ ଭାଗ, ୨୩ । ୨ । ୧୮୭୮, ସଂଖ୍ୟା ୮ )

୫୩୭ । ଗତ କଲିକତା ଗେଜେଟରେ ଦେଖାଗଲା ଯେ ବାବୁ ନନ୍ଦକିଶୋର

ବାସଙ୍କ କର୍ମରେ ଆଜ ଏକଜଣ ଡେପୁଟୀ କଲେକ୍ଟରେ ନିଯୁକ୍ତ ହୋଇଅଛନ୍ତି, ଏଥିରୁ କେତେଲୋକ ଅନୁମାନ କରନ୍ତି କି ବାବୁ ନନ୍ଦକିଶୋର ଦାସ ଅସିଷ୍ଟାଣ୍ଟ ସୁପରି-ଣ୍ଟେଣ୍ଡେଣ୍ଟ ପଦରେ ନିଯୁକ୍ତ ହେବାଦ୍ୱାରା ଡେପୁଟୀ କଲେକ୍ଟରୀ ଶ୍ରେଣୀରୁ ବହିଷ୍କୃତ ହେଲେ। ଯେବେ ଏପରି ହୋଇଥାଏ ତେବେ ତାହାଙ୍କର ଭଲ ହେଲା ନାହିଁ। ଆପାତତଃ ଏକଶ ଟଙ୍କା ଅଧିକା ପାଇଲେ କିନ୍ତୁ ଡେପୁଟୀ କଲେକ୍ଟର୍‌ରେ ଥିଲେ କାଳେ ୭।୮ଶତ ଟଙ୍କା ବେତନ ପାଇପାରନ୍ତେ ତହିଁରୁ ବଞ୍ଚିତ ହେଲେ। ଶ୍ରୀଯୁକ୍ତ ରେଭନସା ସାହେବ ୧୨ବର୍ଷରୁ ଉର୍ଦ୍ଧ୍ୱ କାଳ ଏଠାରେ ରହି କେବଳ ଏକ ଜଣ ଓଡ଼ିଶାବାସିକୁ ଡେପୁଟୀ କଲେକ୍ଟରୀ ପଦ ଦେଇଥିଲେ ଓ ସେ ସ୍ୱୟଂ ଯେବେ ତାହା ହରାଇଲେ ତେବେ ତାହାଙ୍କର କୀର୍ତ୍ତି ଆଉ କି ରହିଲା ? ଓଡ଼ିଶାବାସୀ କେତେ-ଲୋକଙ୍କୁ ଡେପୁଟୀ କଲେକ୍ଟରୀ ପଦରେ ନିଯୁକ୍ତ କରାଇଦିବା ତାହାଙ୍କର ଉଚିତ। ମାନ୍ୟବର ଇଡନ ସାହେବଙ୍କୁ ସେ ବୁଝାଇ କହିଲେ ଅବଶ୍ୟ ତାହାଙ୍କର କଥା ରହିବ ଏବଂ ଓଡ଼ିଶାରୁ ଯେତେବେଳେ ସେ ପରିତ୍ୟାଗ କରିବେ ସେତେବେଳେ ଲୋକଙ୍କ ମନରୁ ପାଶୋରି ଯିବେ ନାହିଁ।

୫୩୮। ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ଏଠାକୁ ଆସି କି କରିବେ ଏଚିନ୍ତା କେବଳ ଆମ୍ଭମାନଙ୍କୁ ଲାଗିନାହିଁ। କଟକରୁ ପ୍ରେରିତ ଖଣ୍ଡିଏ ପତ୍ର ଗତମାସ ତା୧୯-ରିଖର ଇଣ୍ଡିଆନ ମିରରରେ ପ୍ରକାଶିତ ହୋଇଅଛି। ତହିଁରେ ଲେଖାଅଛି ଲେଫ୍‌ଟେ-ନେଣ୍ଟ ଗବର୍ଣ୍ଣର ଏଠାକୁ ଆସିବେବୋଲି ରୋଶନାଇ ଇତ୍ୟାଦି ଅଭ୍ୟର୍ଥନାର ଉଦ୍ୟମ-ମାନ ଲାଗିଅଛି। ଏଠାରେ ଚାଉଳ ଟଙ୍କାକୁ ସେ ୮ରୁ ଠାରୁ ସେ ୧୨ର ପର୍ଯ୍ୟନ୍ତ ହୋଇ ଅଛି ଓ ଏକ ପ୍ରକାର କ୍ଷୁଦ୍ର ଦୁର୍ଭିକ୍ଷ ପଡ଼ିବବୋଲି ଶଙ୍କା ହେଉଅଛି। ଛୋଟ ଲାଟ-ସାହେବଙ୍କର ଶୁଭାଗମନ ଫଳରେ କି ହେବ ସମ୍ପ୍ରତି ବୋଲିବା କଠିନ। ଉତ୍କଳଦୀପିକା ରେଲବାଟ ସକାଶେ ମୁଖ୍ୟବୋଲି ହେଉଅଛନ୍ତି କିନ୍ତୁ ଜାହାଜଵାଲାମାନେ ତହିଁରେ ବାଧାଦେଇ ପାରନ୍ତି ଓ ଇରିଗେଶନ ମହାଲୁମା ପକ୍ଷରେ ଏହା ଆନନ୍ଦକର ହେବନାହିଁ। ଲୋକେ କାଳକାଳ ଦେଖିବେବୋଲି ଡରୁ ଅଛନ୍ତି। ବୃଷ୍ଟିମାନେ କହନ୍ତି କି ବର୍ଷାକାଳରେ କୃଷି ହୁଅଇ ଓ କାଲ ଜଳରେ ଜମି ନଷ୍ଟପାଏ। ପାଠକେ ଭାଷା ଆପଣା କଥା କହିବ। ଏହିପରି ରେଲବାଟ ସମ୍ପର୍କରେ କେତେକଥା ହେବ। କେହି ସମ୍ବଲପୁର ବାଟରେ କେହି ପୁରୀରୁ ସାବଡ଼ା ପର୍ଯ୍ୟନ୍ତ ରେଲ ନେବାକୁ ପରାମର୍ଶ ଦିଅନ୍ତି। ଏଥିର ତର୍କ ବିତର୍କ ଲାଗି ରହିଅଛି ଗୋଟିଏ ନିଶ୍ଚିତ ପ୍ରସ୍ତାବ ଛୋଟଲାଟଙ୍କ ସାକ୍ଷାତରେ ଉପସ୍ଥିତ ହେବ। ସର ସରଗୃର୍ଡ ଟେମ୍ପଲଙ୍କ ପାରେ ଖଣ୍ଡିଏ ଏହିପରି ଆବେଦନ ପତ୍ର ଦିଆଯାଇଥିଲା। ସେଥିରେ କିଛିଫଳ ହେବାର ଦେଖି କି ଥାଉ ଖଣ୍ଡିଏ ଉତ୍ତର ସୁଦ୍ଧା ମିଳିଲା ନାହିଁ। ଦେଖାଯିବ ଏଥର କି ଘଟିବ। ଓଡ଼ିଶାର କପାଳ ମନ୍ଦ ସବୁ ହଠହଠା ଯାକ

ଏକ୍ସଟାରେ । ବଙ୍ଗାଳୀବାବୁମାନେ ରେଲ ଗାଡ଼ି ଉପରେ ବାଠ ଘଣ୍ଟାକରେ ଗଲେ କିନ୍ତୁ ଓଡ଼ିଶାକୁ ମାଲ ବୁଆଗଲେ ଯେ ଢଙ୍ଗରେ ଗଲେ ଦିନକ ବାଟକୁ ଦେଢ଼ଦିନ ଲାଗିବ ଏବଂ ବାହ୍ୟାଡ଼ ହେଲେ ହାଇ ୨ ମଣି ବାବୁମାନେ ପଡ଼ିବ । ପୁଣି ଧାଡ଼ିରୁ ଟାକସ ଦେଇ ଏପରି ମାଲକୁ ରଖିବାକୁ ହେବ ।

୫୩୯ । ସମ୍ପ୍ରତି ଏହାପରି ସ୍ଥିର ହେବାର ଶୁଣାଯାଏ ଯେ ମାନ୍ୟବର ଲେପ୍‌ଟେନେଣ୍ଟ ଗବର୍ଣ୍ଣର ଏ ନଗରକୁ ଶୁଭାଗମନ ସମୟରେ ଉଲ ଲିଖିତ ଦେଶ-ମାନଙ୍କରେ ଉଲ ଲିଖିତ କାର୍ଯ୍ୟମାନ ହେବ ଯଥା —

× × ×

× × × ×

ଆମ୍ଭମାନଙ୍କର ଇଚ୍ଛା ଯେ ଏକଦାନ ଲେପ୍‌ଟେନେଣ୍ଟ ଗବର୍ଣ୍ଣର କେବଳ ନଗର ମଧ୍ୟରେ ଭ୍ରମଣ କରି ସମସ୍ତ ଅବସ୍ଥା ଦର୍ଶନ କରନ୍ତେ । କେତେକାଳରୁ ଏଠାରେ ମ୍ୟୁନିସିପାଲିଟି ବସିଅଛି ଏବଂ ତଦ୍ୱାରା ନଗରର କେତେ ଉନ୍ନତି ସାଧନ ହୋଇଅଛି ଓ ଲୋକେ ଟାକ୍ସ ଦେଇ କେମନ୍ତ ସୁଖରେ ଅଛନ୍ତି ତାହା ଦେଖିବାର ଉଚିତ । ଗରିବ ଲୋକଙ୍କ ଠାରୁ ଏହି ମନସ୍ତାପ ସର୍ବଦା ଶୁଣୁଅଛୁଁ ଯେ ଲେପ୍‌ଟେନେଣ୍ଟ ଗବର୍ଣ୍ଣର ସେମାନଙ୍କର ଦୁରବସ୍ଥା ଦେଖିବାର ଅବକାଶ ପାଇବେ ନାହିଁ । ବଡ଼ଲୋକମାନେ ତାହାଙ୍କୁ ଭୋଜନାଇ ଦେଖାଇ ଭୁଲାଇଦେବେ । ଏକଦିନ ଷ୍ଟେଟେଷ୍ଟସାହେବ ନଗର ଭ୍ରମଣ କରିବାର ସ୍ଥିର ହେଲେ ତାହାଙ୍କ ମନରେ କଷ୍ଟଦୁଃଖ ରହିବନାହିଁ ।

୫୪୦ । ଲେପଟେନେଣ୍ଟ ଗବର୍ଣ୍ଣର ଏଠାକୁ ଆସି କ'ଣ ଦେଖିବେ ?

ଆଜିକାଲି ଏହିକଥା ସହରରେ ଲାଗି ରହିଅଛି । ମାନ୍ୟବର ଇଡେନ ସାହେବଙ୍କ ପକ୍ଷରେ କଟକ ନୂତନ ନୁହଇ । ବର୍ଷ ତଳେ ସେ ଏଠାକୁ ଆସି ପ୍ରାୟ ୮ । ୧୦ ମାସ କଲେକଟର ମାଜିଷ୍ଟ୍ରେଟ ହୋଇଥିଲେ । ଏ ନଗରର ସେ ସମୟର ଛବି ତାହାଙ୍କ ମନରେ ଅବଶ୍ୟ କିଛି ୨ ରହିଥିବ ! କିନ୍ତୁ ଏହିକାଳ ମଧ୍ୟରେ ଏ ନଗରର ଶୋଭା କେତେ ବୃଦ୍ଧି ହୋଇଅଛି ତାହାଦେଖି ସେ ଅବଶ୍ୟ ଚମତ୍କୃତ ହେବେ । ଆଗେ ସଡ଼କ ଧୂଳିଆଖରେ ପ୍ରାୟ କେବଳ କାହ୍ନଡର ଥିଲା ଏବେ ପ୍ରାୟ କୋଠା । ଏହାଛଡ଼ା ଆଉ ଅନେକ ଉନ୍ନତି ହୋଇଅଛି । ସମସ୍ତ ପ୍ରକାରରେ ନଗରର ଶୋଭା ବୃଦ୍ଧି ହୋଇଅଛି । ଏସବୁ ଦେଖି ତାହାଙ୍କ ମନରେ ଅବଶ୍ୟ ଦୃଢ଼ ବିଶ୍ୱାସ ହେବ ଯେ ନଗରର ସୌଭାଗ୍ୟ ବହୁଳ ପରିମାଣରେ ବୃଦ୍ଧି ହୋଇଅଛି । ଯଥାର୍ଥ ବିବେଚନା କଲେ ଏଥିରେ କିଛି ସନ୍ଦେହ ନାହିଁ କିନ୍ତୁ କାଲକୁ ଯାହା ବୋଲିବାକୁ ଭୟ ହେଉଅଛି ।

ବାସ୍ତବରେ ଲୋକେ ଯାହା ଇଙ୍ଗିତ କରି କହନ୍ତି କି 'ସବୁସୁଖ କେବଳ ଅନ୍ନ କଷ୍ଟ' ଆମ୍ଭମାନଙ୍କ କପାଳକୁ ତାହାହିଁ ଘଟିଅଛି । ଭଲ ଘର ଭଲ ଲୁଗା ଭଲ ସଜ ସବୁ ଭଲ କେବଳ ପେଟକୁ ଦାନା ମିଳୁନାହିଁ । ପୂର୍ବକାଳରେ ସବୁକଥାର କଷ୍ଟଥିଲା ଅର୍ଥାତ ଯେତେ ପ୍ରକାର ଲୁଗା ଓ ସଜ ହେବାର ଦ୍ରବ୍ୟ ବର୍ତ୍ତମାନ ଦେଖିବାରେ ଆସୁଅଛି ତାହା କିଛି ନଥିଲା କିନ୍ତୁ ଖାଇବାର କଷ୍ଟ ନଥିଲା ।

× × × × × ×

ଏଠାର ଭଦ୍ରଲୋକମାନେ କପଡ଼ ଭଲ ଲୋକନାଚ ଓ ଅନ୍ୟାନ୍ୟ ପ୍ରକାର ମର୍ଯ୍ୟାଦା ଦେଖାଇବେ ଏହିକଥା ଘେନି ବ୍ୟସ୍ତ । ସେମାନଙ୍କର ମତ ଏହି ଯେ ତାହାଙ୍କୁ ସମ୍ମାନ ଦେଖାଇବା ନଗର-ବାସିଙ୍କର କର୍ତ୍ତବ୍ୟ କର୍ମ ।

× × × × × × ×

ଏ ମତଟି ବାସ୍ତବରେ ମହତ୍ ଅଟଇ ଓ ସମସ୍ତ ଭାଗ୍ୟବାନ ଲୋକଙ୍କର ଉଚିତ୍ ଅଟଇ ଯେ ଏଥିର ଅନୁସରଣ କରନ୍ତୁ ତାହାହେଲେ ଅଭ୍ୟର୍ଥନା କାର୍ଯ୍ୟଟା ବଡ ଚକ୍‌କଣ ହେବ ।

\+ + +

ସେ ବିଶେଷ କି ଦେଖିବାକୁ ଆସୁଅଛନ୍ତି ଆମ୍ଭେମାନେ କହିନପାରୁଁ ଓ କି କି ତାହାଙ୍କର ଦେଖିବାର ଉଚିତ ତାହା ସୁଦ୍ଧା ଆମ୍ଭେମାନେ ସ୍ଥିରକରି ପାରୁନାହୁଁ । କେବେ ଆମ୍ଭେମାନେ ଏହି ପ୍ରାର୍ଥନା କରୁଁ କି ଯାହା ଦେଖିବେ ଯେମନ୍ତ ଆପଣା ଆଖିରେ ଦେଖନ୍ତୁ ପରର ଆଖିରେ କିଛି ଦେଖିଲେ ଭଲ ହେବ ନାହିଁ । ମାନ୍ୟବର ଇଡନ ସାହେବଙ୍କୁ ଏ...। ଲୋକେ ସମସ୍ତେ ଜାଣନ୍ତି ଓ ତାହାଙ୍କର ବିଚକ୍ଷଣତାର କଥା କାହାରିକୁ ଅଗୋଚର ନାହିଁ । ସେ ଆମ୍ଭମାନଙ୍କର ପୁରୁଣା ବନ୍ଧୁ ସୁତରାଂ ତାହାଙ୍କ ଠାରେ ଲୋକେ ବିଶେଷ ଆଶା ରଖନ୍ତି ତାହା ଯେମନ୍ତ କୌଣସି ଅଂଶରେ ପୂର୍ଣ୍ଣ ହେଉ ।

\+ + +

## ୫୪୧ । ସାପ୍ତାହିକ ସମ୍ବାଦ

ଗତ ରବିବାର ବାବୁ ଗୋଲକଚନ୍ଦ୍ର ବୋଷଙ୍କ ଘରଠାରେ ରାମାଭିଷେକ ନାଟକର ଆଉ ଥରେ ଅଭିନୟ ହୋଇଥିଲା । ଏଠାରେ ମଧ୍ୟ ଅନେକ ଦର୍ଶକ ଉପସ୍ଥିତ ଥିଲେ ଓ ସମସ୍ତେ ସନ୍ତୁଷ୍ଟ ହେବାର ଜଣାଯାଏ । ଆମ୍ଭେମାନେ ଦେଖୁଁ ଯେ ନାଟକାଭିନୟରେ ଏଠା ଲୋକଙ୍କର ବିଲକ୍ଷଣ ରୁଚି ହୋଇ ଆସୁଅଛି । ଗଡଜାତ ରାଜାମାନଙ୍କୁ କଟକ ଲଗିବା ଧରିବାର ସମୟରେ ଦେଖାଯିବ ।

( ୧୩ଶ ଭାଗ, ୨ । ୩ । ୧୮୭୮. ସଂଖ୍ୟା ୯ )

୪୪୨ ।

## ଆମ୍ଭମାନଙ୍କର ଅଭାବ କଣ ?

ସମ୍ବାଦ ବାହିକାରୁ ଅବଗତ ହେଲୁଁ ଯେ ଏଥି ମଧ୍ୟରେ ରାଜା ଶ୍ୟାମାନନ୍ଦ ଦେ ଗୋଟିଏ ସଭା ଆହୂତ କରି ଓଡ଼ିଶାରେ ଯେ ସମସ୍ତ ଅଭାବ ଅଛି ସେସବୁ ପୂରଣ କରିବା ସକାଶେ ଲେଫ୍‌ଟେନେଣ୍ଟ ଗବର୍ଣ୍ଣରଙ୍କ ନିକଟକୁ ଆବେଦନ ପଠାଇବାର ପ୍ରସ୍ତାବ କରିଥିଲେ । ଯେ ସମସ୍ତ ଅଭାବ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବାକୁ ହେବ ସଭାରେ ତାହା ସ୍ଥିର ହୋଇଅଛି । ବୋଧ ହୁଏ ଅଳ୍ପ ଦିନରେ ଆବେଦନ ପତ୍ର ପ୍ରକାଶ ହେବ ସର୍ବସାଧାରଣ ସମସ୍ତ କଥା ଜାଣି ପାରିବେ । ମାତ୍ରହେଉ ବାଲେଶ୍ୱର ବାସି-ମାନେ ଏହିପକ୍ଷରେ ମନୋଯୋଗୀ ହୋଇଅଛନ୍ତି ସୁଖର ବିଷୟ ଅଟଇ । କିନ୍ତୁ କଟକ ବାସୀଙ୍କର ଅବସର କାହିଁ ଯେ ଅଭାବର ଚିନ୍ତା କରିବେ ? ଲେଫଟେନେଣ୍ଟ ଗବର୍ଣ୍ଣର ଆସିବେ ଏହି ଭାବରେ ସେମାନେ ଭୋଳ ହୋଇଅଛନ୍ତି । ସଡ଼କର ଆବର୍ଜ୍ଜନା ଧୂଳିରେ ଧୂସର ହୋଇ ପତାକା ଓ ତୋରଣ ଲଗାଇବା ଓ ଦେବତାକୁ ଆଣି ଓ ଫୁଲ ଝୁଲାଇବାରେ ପ୍ରମତ୍ତ ରହିଅଛନ୍ତି । କେମନ୍ତେ ଘୋଷଣା କରିବେ କେମନ୍ତେ ଦରବାର ଓ ମଜଲିସ କରିବେ ଏହି ଚର୍ଚ୍ଚାରେ ସେମାନେ ବ୍ୟସ୍ତ ଏପରି ସୁଖ ସମୟରେ କି ଅଭାବ ମନରେ ପଡ଼ିବ । ବାଲେଶ୍ୱରବାସୀଙ୍କୁ ଯେ ସ୍ଥଳେ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର-ଙ୍କର ଦର୍ଶନ ଅଭାବ ହୋଇଅଛି ସେସ୍ଥଳେ ସହସ୍ର ଅଭାବ ମନରେ ଉଠୁଅଛି । ଯେତେ ଭଲ ଯାଉନ୍ତି ବାଳକୁ ଓ ତାହାଙ୍କ ଭାବନା ଶୁଣିଲେ ଅବା ଆମ୍ଭମାନଙ୍କର କିଛି ଅଭାବ ମନେ ପଡ଼ିବ । ମାତ୍ର ବର୍ତ୍ତମାନ ଯେ ଭାବରେ ଆମ୍ଭେମାନେ ମତ୍ତ ଅଛୁଁ ସେହି ଭାବ ବଡ଼ ସୁଖ ଲାଗୁଅଛି ଅଭାବ କଥା ମନକୁ ଛୁଇଁ ପାରୁନାହିଁ । ବାସ୍ତବରେ ଆମ୍ଭମାନଙ୍କର କି କିଛି ଅଭାବ ଅଛି ? କିଛିତ ବୁଝି ପାରୁ ନାହିଁ । ମୁସଲମାନମାନଙ୍କ ଅମଳ ଅଥବା ମରହଟ୍ଟାଙ୍କ ଅମଳ ସଙ୍ଗେ ବର୍ତ୍ତମାନର ଅବସ୍ଥାକୁ ତୁଳନା କଲେ ତାହାତ କିଛି ଦିଶୁନାହିଁ ବରଂ ତହିଁର ବିପରୀତ ଜଣା ଯାଉଅଛି । ଏତେ କାହିଁକି ଦଶ ପନ୍ଦରବର୍ଷ ସଙ୍ଗେ ବର୍ତ୍ତମାନ କାଳକୁ ତୁଳନା କଲେ ସୁଦ୍ଧା ଆମ୍ଭେମାନେ କେତେ ସୁଖ କେତେ ଉନ୍ନତିର ଚିହ୍ନ ଦେଖୁଅଛୁ ଓ ଏସବୁ ଯାହାଙ୍କର ଶାସନର ସୁଫଳ ଅଟଇ ତାହାଙ୍କର ପ୍ରତାପ ଅକ୍ଷୁଣ୍ଣ ଭାବରେ ଭାରତବର୍ଷରେ ବିରାଜୁଥାଉ ତାହାହେଲେ ଆମ୍ଭମାନଙ୍କର ଆଉ କେତେ ପ୍ରକାର ଉନ୍ନତି ହେବ ତାହାର ସୀମା କିଏ ନିର୍ଣ୍ଣୟ କରିବ । ଯେଉଁ ଶ୍ରୀମତୀ ଭାରତେଶ୍ୱରୀଙ୍କର ନିରପେକ୍ଷ ଏବଂ ଦୟାଶୀଳ ଶାସନରୁ ଆମ୍ଭମାନଙ୍କର ସୁଖ ସମୃଦ୍ଧି ହେଉଅଛି ଏ ପ୍ରଦେଶରେ ସେହି ଶାସନର ଭାର ଯାହାଙ୍କ ହସ୍ତରେ ଅଛି ତାହାଙ୍କୁ ଦେଖିଲାବେଳେ କି ଅଭାବ ମନେ ପଡ଼ିବ । ଯେତେବେଳେ ରାଜଭକ୍ତି ଓ ପ୍ରେମର ଉଚ୍ଛ୍ୱାସ

ଅନ୍ତଃକରଣରେ ଏମନ୍ତ ବେଗରେ ଉଠୁଅଛି ଯେ ଅଭାବର ଚିହ୍ନ ମାତ୍ର ବର୍ଣ୍ଣନାହିଁ । ଏହି ଶାସନକର୍ତ୍ତାମାନେ ଆମ୍ଭମାନଙ୍କ ସକାଶେ ସମୟ ୨ ରେ ମହାନୁଭବ ଆମ୍ଭମାନଙ୍କର ନାନା ଅଭାବ ମୋଚନ କରିଅଛନ୍ତି ଏବଂ ଏଣିକି ଆଉ ଯାହା ଅଭାବ ଦେଖିବେ ତାହା ଅବଶ୍ୟ ସମୟରେ ପୂର୍ଣ୍ଣ କରିବେ । ଯେତେକେ ସୁଦ୍ଧା ଏମାନେ ଦେଇଅଛନ୍ତି ତହିଁ ପାଇଁ ଆମ୍ଭମାନଙ୍କର ଧନ୍ୟବାଦ ଦେବା ଅବଶ୍ୟ ଉଚିତ । ସେ ଆମ୍ଭମାନଙ୍କର ଅବସ୍ଥା ଦେଖିଲେ ଅବଶ୍ୟ ଅଭାବର କଥା ବୁଝି ପାରିବେ । ଫଳତଃ ଅଭାବର ସୀମା ନାହିଁ ଯେତେ ଭଲ ହେଉଥିବ ଅଭାବର ସୀମା ତେତେ ବଢୁଥିବ । ସୁତରାଂ ସେଥିର ଅଭାବ ଠେଲି ବୁଲିଲେ ଶେଷ ସମ୍ଭବ ନାହିଁ । ଯେବେ ଆମ୍ଭେମାନେ ଅଭାବର ଚିନ୍ତା ନକରି କେତେ ଅଭାବ ମୋଚନ ହୋଇଅଛି ତହିଁ ପ୍ରତି ଦୃଷ୍ଟି କରିବୁଁ ତେବେ ମନର ଭ୍ରମ ଭାଙ୍ଗିଯିବ । ଏଥିର ଦେଖିଲେ ଆଉ ଅଭାବ ଥିବାର ତ ମନେ ପଡୁନାହିଁ । ତେବେ ଆଉ ୨ ଲୋକଙ୍କର ସୁବିଧା ଦେଖି ଏତିକି ଇଚ୍ଛା ହେଉଅଛି କି ଓଡ଼ିଶା ଯେବେ କଲିକତା ବା ବମ୍ବେର ସଙ୍ଗରେ ରେଲ ଦ୍ୱାରା ଯୋଗ ହୁଅନ୍ତା ତେବେ ଯେ ୨ କା ଯେଣେ ଇଚ୍ଛା ତେଣେ ଚାଲି ଯାନ୍ତୁ ଆଉ କୌଣସି ଅଭାବ ଆମ୍ଭମାନଙ୍କ ମନକୁ ବାଧନ୍ତା ନାହିଁ ।

୬୪୩ । **ପୁରୀର ରାଜାଙ୍କ ମକଦ୍ଦମା ।**

ଆମ୍ଭେମାନେ ଶୁଣି ଦୁଃଖିତ ହେଲୁଁ ଯେ ପୁରୀର ମହାରାଜା କୌଣସି ଗୁରୁତର ଅପରାଧ କରି ହାଜତରେ କଏଦ ଅଛନ୍ତି, ସେ ଯେପରି ଘୃଣିତ ଓ ନିଷ୍ଠୁର କାର୍ଯ୍ୟ କରିଥିବାର କଥିତ ହୁଅଇ ତାହା ଶ୍ରବଣ ମାତ୍ରକେ ଶରୀର କମ୍ପିତ ହେଉଅଛି । ତହିଁର ବୃତ୍ତାନ୍ତ ଏହି — ଗତମାସ ତା ୨୩ରିଖ ରାତିରେ ସେ ଜଣେ ବୈଷ୍ଣବଙ୍କୁ ଡକାଇ ନଅର ମଧ୍ୟକୁ ନେଇଗଲେ ଓ ତାଙ୍କୁ ଅନେକ ମାଡ଼ମାରି ତାହା ଦେହରେ ଅନେକ ସ୍ଥାନରେ ନିଆଁ ଦେଲେ । ଏହିକାଳେ ରାଜାଙ୍କର ନିଷ୍ଠୁରତା ଶେଷ ହେଲାନାହିଁ ସେ ତାହା ଗୁହ୍ୟାଙ୍ଗ ରନ୍ଧ୍ର ମଧ୍ୟରେ ତେଲ ପୁରାଇ ଲୁହାଗଜ ଗଳାଇଲେ ଓ ମଳଦ୍ୱାରରେ ତେଲ ପୁରାଇ ତହିଁରେ ନିଆଁ ଲଗାଇଲେ ଓ ତାହା ମୁହଁ ମଧ୍ୟରେ ବାଲି ପୁରାଇଲେ । ସେ ମୃତପ୍ରାୟ ହେଲାରୁ ତାଙ୍କୁ ନଅର ବାହାରେ ଫୋପାଡ଼ି ଦେଲେ । ସେ ରାତି ମାକ ସେହିପରି ଅବସ୍ଥାରେ ପଡ଼ି ରହିଲା । ପ୍ରଭାତରେ ତାଙ୍କୁ ଜଣେ କନଷ୍ଟେବଲ ଦେଖି ଡାକ୍ତରଖାନାକୁ ନେଇଗଲା ସେ ଉଠିକୁ ଉକ୍ତ ବୃତ୍ତାନ୍ତମାନ କହିବାରୁ ତଦନ୍ତ ଲାଗିଲା ଓ ମାଜିଷ୍ଟ୍ରେଟ ସାହେବ ସ୍ୱୟଂ ନଅର ମଧ୍ୟକୁ ଯାଇ ତଦନ୍ତ କଲେ ସେହି ଦିନ ଅର୍ଥାତ ୨୫ରିଖ ରାଜା ଗ୍ରେଫ୍ତାର ହୋଇ ହାଜତକୁ ଗଲେ । ଡାକ୍ତର ପ୍ରପୀଡ଼ିତ ବ୍ୟକ୍ତିକୁ ପରୀକ୍ଷା କରି କହିଲେ ଯେ ତାହାର ବଞ୍ଚିବାର ଆଶା ନାହିଁ ଓ ସେ ବର୍ତ୍ତମାନ ଜୀବଦଶାରେ ଅଛି କି ନା ଆମ୍ଭମାନଙ୍କୁ ଗୋଚର ନାହିଁ ।

ଯେଉଁବ୍ୟକ୍ତି ଆପଣଙ୍କୁ ଦେବତା ମଣି ଓ ଭ୍ରମ୍ରୀ ଅପମାନ କରି ମନୁଷ୍ୟ ସଭାକୁ ଆସିବାର ଅପମାନ ବୋଧ କରନ୍ତି ଓ ଯାହାଙ୍କୁ ମୂର୍ଖଲୋକେ ଗଲନ୍ତି ବଶ୍ୟ କହନ୍ତି ସେ ସାମାନ୍ୟ ମନୁଷ୍ୟଠାରୁ ହୀନ ହୋଇ ଏପରି ସମୁଚିତ ବ୍ୟବହାର କଲେ ଅତି ଆଶ୍ଚର୍ଯ୍ୟର ବିଷୟ ଅଟେ । ଓ ହୋ ହୋ ସେ କି ନମ୍ରାଚରଣ ନକଲେ ! କାଳର କି ଗତି ! ତାହାଙ୍କ ବୃଥା ଅଭିମାନ ଓ ଅହଙ୍କାର ରହି ଗଲା । କିଛି ମାସ-ପୂର୍ବେ ସେଠାର କଲେକ୍ଟର ସାହେବ ଭାରେଡ଼ିଶ୍ଵରାଙ୍କ ବାର୍ଷିକ ଉତ୍ସବ ଉପଲକ୍ଷରେ ସେଠାରେ ଏକ ମହାନ ସଭାକରି ରାଜାଙ୍କୁ କେତେ ଆଦର ପୂର୍ବକ ଆହ୍ଵାନ କଲେ କିନ୍ତୁ ରାଜା ବୃଥା ଗାରିମାରେ ସଭାକୁ ଯିବାର ଅପମାନ ମଣି ସଭାକୁ ଯୋଗ କଲେ ନାହିଁ । ଏବେ ହାଜତରେ ବନ୍ଦୀହୋଇ କଷ୍ଟିଅଛନ୍ତି । ସେ ମାହାତ୍ମ୍ୟ ଓ ମୂର୍ଖ ଲୋକେ ତାଙ୍କୁ ଯେପରି ମଣନ୍ତି ସେ ଓଡ଼ିଶାର ରାଜବଂଶୀୟ ହୋଇବାରୁ ତାଙ୍କୁ ପ୍ରଧାନ ଓ ମାନନୀୟ ବ୍ୟକ୍ତି ସ୍ଵରୂପ ମାନିବାକୁ ହେବ । ଏପରି ବ୍ୟକ୍ତିର ଏପରି ଦୁର୍ବ୍ୟବହାର ଓ ଏପରି ଦୁର୍ଦ୍ଦଶା ବଡ଼ ଦୁଃଖର ବିଷୟ ସନ୍ଦେହ ନାହିଁ ।

ରାଜା କାହିଁକି ଏପରି ଦୁଷ୍କର୍ମରେ ପ୍ରବୃତ୍ତ ହେଲେ ଅନେକଲୋକେ ପ୍ରଶ୍ନ କରୁଅଛନ୍ତି । ଆମ୍ଭେମାନେ ଶୁଣୁଅଛୁଁ ଯେ ସେ ଟେଣ୍ଟୁର ଆପଣାର ଲୌକିକ ମହିମାର ଏକ ବୃତ୍ତାନ୍ତ ବ୍ୟବସ୍ଥାପ୍ରାପ୍ତ ଅଟେ । ରାଜା କୁସଂସ୍କାର ଓ ଅଜ୍ଞାନତା ବଶତଃ ମନୁଷ୍ୟର ମିଥ୍ୟା ମହିମାରେ ବିଶ୍ଵାସ କରି ଆପଣା କାମନା ସିଦ୍ଧି ସକାଶେ ତାଙ୍କୁ ନଅରକୁ ଏଥିପୂର୍ବେ ଡକାଇ ଥିଲେ ଓ ସେ ଅନେକଥର ନଅରକୁ ଗତାଗତ କରିଥିଲେ । ସେ ନଅର ମଧ୍ୟରେ କି ଅପରାଧ କଲା ତାହା ପ୍ରକାଶ ହୋଇନାହିଁ । ଲୋକେ ନାନାପ୍ରକାର କାରଣ ନର୍ଦ୍ଦେଶ କରୁଅଛନ୍ତି । ସେ ମାହାତ୍ମ୍ୟ ରାଜା ଏପରି ଘଣିତ ଓ ଦୁର୍ନାମବନ୍ଧକ କାର୍ଯ୍ୟ କରିବାର ଉଚିତ ନଥିଲା । ରାଜା ଯେବେ ଆପେ ଦେବତା ହୋଇବାର ଗାରିମା କରନ୍ତି ତେବେ ଭଣ୍ଡ ବାବାଜୀର ଅନୁସରଣ କଲେ କାହିଁକି ଓ ତାହାର ଉପାସନା କାହିଁପାଇଁ ଆପଣାକୁ ଶାନ୍ତି ନଦେଇ ତାଙ୍କୁ ଏତେ ଶାନ୍ତି ଦେଲେ କାହିଁକି ? କୁସଂସ୍କାର କେଡ଼େ ଅନିଷ୍ଟକର ! କେବେ ତାହା ଦୂରୀକୃତ ହେବ ଓ କେବେ ଏ ଦେଶୀୟ ଲୋକଙ୍କର ଜ୍ଞାନ ଉଦୟ ହେବ !

## ( ୧୩ଶ ଭାଗ, ୯ । ୩ । ୧୮୭୮, ସଂଖ୍ୟା ୧୦ )

୫୪୪ । ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସାହେବଙ୍କର କଟକ ଯାତ୍ରା

× × × ×

× × ×

ଲୁଇସ ସାହେବ ଅଭିନନ୍ଦନ ପତ୍ରପାଠ ଶ୍ରବଣରେ ପ୍ରୀତ ହୋଇ ଉତ୍ତର ଦେଲେକି ଆପଣମାନେ ଯେ ଆମ୍ଭଙ୍କୁ ଆନ୍ତରିକ ସମ୍ମାନ କଲ ଏଥିରେ ଆମ୍ଭେ ଆନନ୍ଦିତ ହୋଇ ଆପଣମାନଙ୍କୁ ଧନ୍ୟବାଦ ଦେଉଅଛୁଁ । ଆମ୍ଭଙ୍କୁ ସମ୍ମାନ କରିବାଦ୍ୱାରା ଆପଣମାନେ ଶ୍ରୀମତୀ ଭାରତେଶ୍ୱରୀଙ୍କୁ ସମ୍ମାନ କରିଅଛ । + + + + । ଆମ୍ଭେ କଟକକୁ ଭୁଲିନାହୁଁ ଓ ଏ ଦେଶର ହିତ ଚିନ୍ତା ସର୍ବଦା ଆମ୍ଭ ମନରେ ଅଛି ।

ଯୋବ୍ରାଠାରୁ ହାତୀଖାନା ପର୍ଯ୍ୟନ୍ତ ତେଲ ରୋଶନି ହୋଇଥିଲା । + + + + + । ଗୃହାଦିଙ୍କାରୁ ପାଗଲଖାନା, ଜେହେଲଖାନା, ଡାକ୍ତରଖାନା ଓ ଥାନାରେ ଉତ୍ତମ ରୋଶନି ହୋଇଥିଲା । ହାତୀଖାନା ଓ ଲାଲବାଗରେ ସୁନ୍ଦର ଫାଟକମାନ ପ୍ରସ୍ତୁତ ହୋଇଥିଲା ।

ତା ୨ରିଖ ରାତ୍ରି ଘଣ୍ଟା ସମୟରେ ଲାଲବାଗ କୋଠିରେ ଦେଶୀ ସଭା, ଦରବାର ପୂର୍ବ ନିର୍ଦ୍ଦେଶାନୁସାରେ ହେଲା । + +

× × × ×

+ + । ମୟୂରଭଞ୍ଜ ଓ କେନ୍ଦୁଝରର ରାଜାମାନେ ମହାରାଜା ପଦ ଓ ତଦୁପଯୁକ୍ତ ଖିଲାତ ଓ ଆଳିର ରାଜା ଓ ଶ୍ୟାମାନନ୍ଦ ଦେ ରାଜା ପଦ ଓ ଖିଲାତ ଓ ବାବୁ ବୈଦ୍ୟନାଥ ପଣ୍ଡିତ ଓ ବାବୁ [illegible] ବୋଷ ରାୟ ବାହାଦୁର ପଦ ଓ ଖିଲାତ ପାଇଲେ । ଏ କାର୍ଯ୍ୟ ଶେଷ ହେଲାରୁ ଲୁଇସ ସାହେବ ସୁଦୀର୍ଘ ଓ ଉତ୍ତମ ବକ୍ତୃତା କଲେ ଓ ତାହାର ଓଡ଼ିଆ ଅନୁବାଦ ବାବୁ ନନ୍ଦକିଶୋର ଦାସ ପାଠ କଲେ । ତାହା ଆମ୍ଭେମାନେ ସ୍ଥାନାନ୍ତରରେ ପ୍ରକାଶ କଲୁଁ । ସେଥିରୁ ପାଠକମାନେ ଆନନ୍ଦ ପୂର୍ବକ ଜାଣିବେ ଯେ ଲୁଇସସାହେବ ଏଠା ଲୋକଙ୍କର ପ୍ରଶଂସା କରିଅଛନ୍ତି ଓ ଏଠାରେ ବଳାତ୍କାର ଜଳକର ବସିବ ନାହିଁ ଓ କଲିକତାରୁ କଟକ ପର୍ଯ୍ୟନ୍ତ ସମୁଦ୍ର କୂଳରେ ଗୋଟିଏ ନାଳ ହେବ କି ନାହିଁର ପ୍ରସଙ୍ଗ ଆମ୍ଭେମାନେ ପୂର୍ବ ସପ୍ତାହରେ ଲେଖିଥିଲୁଁ । ଆଉ ରେଲୱେ ଓଡ଼ିଶାରେ ହେବନାହିଁ ଓ ମଧ୍ୟ ଲୁଇସ ସାହେବ ଏହି ପ୍ରକାର ମତ କଥୋପକଥନରେ ପ୍ରକାଶ କରିଅଛନ୍ତି । ସେ କହନ୍ତି ଓଡ଼ିଶାରେ ଅନେକ ନଦୀଯୋଗୁଁ ରେଲବାଟ ହୋଇ ନପାରେ ଓ ସମ୍ବଲପୁର ଦେଇ ରେଲ କଲେ ୨୦କୋଟି ଟଙ୍କା ଲାଗିବ କଲିକତାରୁ ଘାଟକୁ ଗଡ଼ଜାତ ଦେଇ ଅଳ୍ପ କାଳରେ ହୋଇ ନପାରିବ ଓ ବର୍ଷ ମଧ୍ୟରେ ରେଲ ଗଲେ ଲାଭ ନାହିଁ । ପ୍ରସ୍ତାବିତ ନାଳରେ ଲକ୍ଷ ଟଙ୍କା ଲାଗିବ ଓ କଲିକତା କଟକରୁ ଦୂର ଦିନର ବାଟ ହେବ । ଲୁଇସ ସାହେବଙ୍କର ଏହିରୂପ ଅଭିମତ ପ୍ରତ୍ୟେକ ଲୋକଙ୍କର ଆଶା ଭରସା ଦୁରାଶା ମାତ୍ର । × × ×

× × × ×

ମଧୁପୁର ଓ ଡମପଡ଼ା ରାଜାଙ୍କ ଉପରେ ରାଜା ଶ୍ୟାମାନନ୍ଦ ଦେଙ୍କର ଆସନ ହେବାରୁ ବୋଧହୁଏ ସେହି ଅଭିମାନରେ ସେମାନେ ଦରବାରରେ ଉପସ୍ଥିତ ନହେଲେ । ସୁକିନ୍ଦାର ରାଜାଙ୍କୁ ରାଜାପଦ ଓ ଖିଲାତ ଦେବାର ଥିଲା କିନ୍ତୁ ସେ ଏଠାକୁ ଆସି ଅତି ପୀଡ଼ିତ ହୋଇଥିବାରୁ ଦରବାରରେ ଉପସ୍ଥିତ ହୋଇ ନପାରିଲେ ।

+ + । ସୋମବାର କଲେଜରେ ବଜେ କରି ଛାତ୍ରମାନଙ୍କୁ ବାର୍ଷିକ ପାରିତୋଷିକ ବିତରଣ କଲେ ଓ କଲେଜକୁ ଆଉ ଦୁଇବର୍ଷ ପର୍ଯ୍ୟନ୍ତ ରଖିବା କାରଣ ଇଣ୍ଡିଆ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିବାର କହିଲେ । କିନ୍ତୁ କି ପ୍ରକାରେ କଲେଜର ଉନ୍ନତି ଓ ସ୍ଥାୟିତ୍ୱ ହେବ ତହିଁର ବ୍ୟବସ୍ଥା ଆବଶ୍ୟକ । ବର୍ତ୍ତମାନର ବନ୍ଦୋବସ୍ତରେ କଲେଜର ସ୍ଥାୟିତ୍ୱ ସନ୍ଦେହଯୁକ୍ତ ଅଟଇ ।

ସୋମବାର ରାତିରେ ଦରବାର ଗୃହରେ ଦେଶୀୟ ମଜଲିସ ହେଲା ।

× × × × ×

ଲାଟସାହେବ ରାତ୍ର ୯ ଘଟିକା ସମୟରେ ମଜଲିସରେ ବିରାଜମାନ ହେଲେ । ତହୁଁ ରାମା-ଭିଷେକ ନାଟକର ଅଭିନୟ ଆରମ୍ଭହେଲା । ସମ୍ପୂର୍ଣ୍ଣ ନାଟକର ଅଭିନୟରେ ଅନେକ-କ୍ଷଣ ଲାଗଇ ବୋଲି ବାଛି ୨ ସାତୋଟି ଗର୍ଭାଙ୍କର ଅଭିନୟ ହେଲା ପାଞ୍ଚୋଟି ଛାଡ଼-ଦିଆଗଲା ତଥାପି ତିନିଘଣ୍ଟା ଲାଗିଲା । ଅଭିନୟରେ ଲାଟସାହେବ ଓ ଅନ୍ୟ ଇଂରେଜ ଦେଶୀୟ ଭଦ୍ର ବ୍ୟକ୍ତିମାନେ ସମୟ ସମୟରେ କରତାଳି ଓ ଅନ୍ୟାନ୍ୟ ଚିହ୍ନଦ୍ୱାରା ସନ୍ତୋଷ ପ୍ରକାଶ କରୁଥିଲେ । ନାଟ୍ୟମଣ୍ଡପ ପଟନିକା ଏଠା କାରିଗରଦ୍ୱାରା ସୁନ୍ଦର ରୂପେ ଚିତ୍ରିତ ହୋଇଥିବାରୁ ସମସ୍ତେ ପ୍ରଶଂସା କଲେ । × ×

× × × × ×

+ + । ଅଭିନୟ ଶେଷରେ ସ.ହେବ ମହୋଦୟ ଓ ଅନ୍ୟାନ୍ୟ ସାହେବ ମେମମାନେ ଜଳପାନାଦି କରି ଅଭିନୟ ଇତ୍ୟାଦିରେ ଅତି ସନ୍ତୁଷ୍ଟ ହୋଇ ଥିବାର କହି ପ୍ରସ୍ଥାନ କଲେ । ଦୁଇ ଏକ ବଙ୍ଗଦେଶୀୟ ଦର୍ଶକ ଅଭି-ନୟକୁ ତୁଚ୍ଛକରି ନିନ୍ଦାକଲେ ମାତ୍ର ସେମାନେ ବୃଥା ଅହଂକାରୀ ଓ ଅନ୍ୟର କାର୍ଯ୍ୟକୁ ନିନ୍ଦା କରିବାର ସେମାନଙ୍କର ସ୍ୱଭାବ ବୋଲିବାକୁ ହେବ କାରଣ ଅନ୍ୟ ବଙ୍ଗାଳିଙ୍କ ମୁଖରୁ ପ୍ରଶଂସା ଶୁଣିଅଛୁଁ । ଯେଉଁ ମହାପୁରୁଷଙ୍କ ପାଇଁ ଏତେ କାଣ୍ଡ ହୋଇଥିଲା ସେ ଯେବେ ଆନ୍ତରିକ ସନ୍ତୋଷ ପ୍ରକାଶକଲେ ତେବେ ସେପରି ନିନ୍ଦୁକ ଲୋକଙ୍କୁ କିଏ ପଚାରେ ? କଟକ କଲିକତା ନୁହେ ଓ କଟକର ନାଟ୍ୟାଭିନୟ କଲିକତାର ନାଟ୍ୟା-ଭିନୟ ତୁଲ୍ୟ ସମ୍ଭବରେ ହୋଇ ନପାରେ ଦେଶକାଳ ପାତ୍ର ବିବେଚନାରେ ଆମ୍ଭେ-ମାନେ କହୁଁ ଯେ ଅଭିନୟ ଯଥୋଚିତ ଉତ୍ତମ ରୂପେ ହୋଇଅଛି । +

+ + +

## ( ୧୩ଶ ଭାଗ, ୧୭।୩।୧୮୭୮, ସଂଖ୍ୟା ୧୧ )

୪୫ । ସୁକିନ୍ଦା ରାଜାଙ୍କର ପରଲୋକ ।

ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ଅବଗତ ହେଲୁଁ ଯେ ସୁକିନ୍ଦାର ରାଜା ଗତ ଦରବାର ସମୟରେ ଏଠାରୁ ପୀଡ଼ିତ ହୋଇ ଗଡ଼କୁ ଯାଇ ସେଠାରେ ମାନବଲୀଳା ଶେଷ କରିଅଛନ୍ତି । ଏହାଙ୍କର ଭଣଜା ଅର୍ଥାତ୍ ରଙ୍ଗଡ଼ା ରାଜାଙ୍କର କନିଷ୍ଠ ପୁତ୍ର ରାଜପାଦରେ ଅଭିଷିକ୍ତ ହୋଇଅଛନ୍ତି । ସୁକିନ୍ଦା ରାଜାଙ୍କର ଅକାଳ ମୃତ୍ୟୁ ବଡ଼ ଦୁଃଖର ବିଷୟ ଅଟଇ । ମୋଗଲବନ୍ଦୀ ରାଜାଙ୍କ ମଧ୍ୟରେ ସେ ଅତି ଉତ୍ତମ ଥିଲେ ଏବଂ ସେ ଅତି ସହଜରେ ବାବୁ ନାରାୟଣ ପ୍ରସାଦ ଲାଲଙ୍କ ସାହାଯ୍ୟରେ ଆପଣା କିଲାର ବନ୍ଦୋବସ୍ତ କରି କିଛି ଦିନରେ ଟ ୧୧୦୦୦ ଜମାରୁ ଟ ୨୦୦୦୦ ଙ୍କା ପର୍ଯ୍ୟନ୍ତ ବୃଦ୍ଧି କଲେ । ପ୍ରଜାମାନଙ୍କ ଠାରୁ ଅନ୍ୟାୟ ରସୁମମାନ ନେବାର ମଧ ରହିତ କରିଥିଲେ । ଏହିସବୁ କାରଣରୁ ତାହାଙ୍କ ଉପରେ ପ୍ରଜାମାନେ ଯେମନ୍ତ ସନ୍ତୁଷ୍ଟ ଥିଲେ ଗବର୍ଣ୍ଣମେଣ୍ଟ ତେମନ୍ତ ତାହାଙ୍କ ଗୁଣରେ ସନ୍ତୁଷ୍ଟ ହୋଇ ତାହାଙ୍କର ସମ୍ମାନ ବଢ଼ାଇ ଥିଲେ । ଗତବର୍ଷ ସେ ରାଜା ପଦ ପାଇଥିଲେ ଓ ଗତ ଦରବାରରେ ଖିଲତ ଓ ସନନ୍ଦ ପାଇଥାନ୍ତେ ମାତ୍ର ଦୈବ ତାହା ଘଟାଇ ଦେଲାନାହିଁ । ଦରବାର ପୂର୍ବରୁ ଦାରୁଣ ରୋଗ ତାହାଙ୍କୁ ଆକ୍ରମଣ କରି ଶେଷରେ ପ୍ରାଣ ନେଇ ଗଲା ।

୪୬ । ପୁରୀ ମହାରାଜାଙ୍କ ମୋକଦ୍ଦମା ।

ପୁରୀର ମହାରାଜା ଚଳିତ ମାସ ତା ୧୧ ରିଖରେ ଦୌରା ସୁପୁର୍ଦ୍ଦ ହୋଇଅଛନ୍ତି । କେଉଁଠାରେ କେବେ ଦୌରାର ବିଚାର ହେବ କିଛି ସ୍ଥିର ହୋଇ-ନାହିଁ । ଚଳିତ ମାସରେ କଟକ ଓ ପୁରୀର ଦୌରା ହେବାର ଥିଲା ତାହା ହୋଇ ନାଇଅଛି । ପୁଣି ଆଗାମୀ ମେ ମାସରେ ଦୌରା ହେବ । ତେତେକାଳ ଅବଶ୍ୟ ମହାରାଜାଙ୍କୁ ହାଜତରେ ବସି ଅପେକ୍ଷା କରିବାକୁ ହେବ । ମାତ୍ର ଆମ୍ଭେମାନେ ଶୁଣୁ-ଅଛୁଁ ଯେ ଏହି ମାସରେ ବିଶେଷ ଦୌରା ବସାଇ ଏ ମକଦ୍ଦମା ବିଚାର କରିବାର ଯତ୍ନ ହେଉଅଛି । ଯଦି ତାହା ସିଦ୍ଧ ହୁଅଇ ତେବେ ମହାରାଜାଙ୍କୁ ଅଧିକ ଦିନ ଚିନ୍ତିତ ରହିବାକୁ ହେବ ନାହିଁ । ଯାହା ହେବାର ଗୋଟାଏ ଶୀଘ୍ର ହୋଇଯିବ । ଅପରାଧଟି ବଡ଼ କଠିନ ହୋଇଅଛି । ପ୍ରଥମେ ମହାରାଜାଙ୍କ ଉପରେ ଦଣ୍ଡ ବିଧିର ୩୨୬ ଧାରା ଅନୁସାରେ ଅଭିଯୋଗ ହୋଇଥିଲା । ଏଥି ମଧ୍ୟରେ ଚଳିତମାସ ତା ୧୦ ରିଖରେ ଗୁଣ୍ଡୁ-ଚିବ ମରିଗଲେ । ସୁତରାଂ ଅପରାଧ ଗୁରୁତର ହୋଇ ମହାରାଜାଙ୍କ ଉପରେ ୩୦୨ ଧାରା ଅନୁସାରେ ଅଭିଯୋଗ ହୋଇଅଛି । ମହାରାଜାଙ୍କ ସହିତ ଆହୁରି ଜଣେ ଦୌରା ସୁପୁର୍ଦ୍ଦ ହୋଇଅଛନ୍ତି ।

ଏ ପ୍ରସ୍ତାବ ଲେଖା ହେଲା ଉତ୍ତାରୁ ଅବଗତ ହେଲୁଁ ଯେ ଏହି ମାସ ତା ୨୬ ରିଖରେ କଟକରେ ଦୌରା ହେବାର ସ୍ଥିର ହୋଇଅଛି । ମହାରାଜାଙ୍କ ପକ୍ଷରେ ଯେଉଁ ବାରିଷ୍ଟର କଲିକତାରୁ ଅଣାଇବାର ବନ୍ଦୋବସ୍ତ ହେଉଅଛି ।

( ୧୩ଶ ଭାଗ, ୨୩ । ୩ । ୧୮୭୮, ସଂଖ୍ୟା ୧୨ )

୫୪୭ । ପୁରୀ ମହାରାଜା ।

ଗତ ରବିବାର ପୁରୀ ମହାରାଜା ହାଜତ କଏଦୀ ଅବସ୍ଥାରେ ଏ ନଗରରେ ପ୍ରବେଶ ହେଲେ । ପୁରୀଠାରୁ କାଠଯୋଡ଼ି କୂଳ ପର୍ଯ୍ୟନ୍ତ ପାଲିଙ୍କିରେ ଆସିଥିଲେ ସେଠାରୁ ମୁନସି ଅଜିଜଖାନ ଇନସ୍ପେକ୍ଟରଙ୍କ ଓ କେତେଜଣ କନଷ୍ଟେବଲ ମହାରାଜାଙ୍କୁ ଏକ ଭଡ଼ା ଗାଡ଼ିରେ ବସାଇ ସନ୍ଧ୍ୟା ସମୟରେ ଜେଲଖାନାକୁ ଘେନି ଆସିଲେ । ମହାରାଜା ଆସିବା ବେଳେ ବହୁତ ଲୋକ ତାହାଙ୍କୁ ବାଟରେ ଦେଖୁଥିଲେ ଓ ଜେଲଖାନା ସମ୍ମୁଖରେ ଏତେ ଲୋକ ଜମା ହୋଇଗଲେ ଯେମନ୍ତ ଯାତ୍ରା ଲାଗିଥିବା ପ୍ରାୟ ଦିଶିଲା । ଓଡ଼ିଶାର ସର୍ବ ପ୍ରଧାନ ମାନ୍ୟ ବ୍ୟକ୍ତିର ଏ ପ୍ରକାର ଦୁର୍ଦ୍ଦଶା ଦେଖି ସମସ୍ତେ ସନ୍ତାପିତ ହେଉଥିଲେ । ଜେଲଖାନା ଭିତରେ ମହାରାଜାଙ୍କୁ ଗୋଟିଏ ପୃଥକ କୋଠରି ଦିଆ ଯାଇଅଛି ଓ ଏକଜଣ ପାଚକ ଓ ଜଣେ ଚାକର ତାହାଙ୍କ ସେବା ନିମିତ୍ତ ଦିଆ ଯାଇଅଛି ।

୫୪୮ । ଦେଶୀୟ ଭାଷାର ସମ୍ବାଦପତ୍ର ମାନଙ୍କ ଉପରେ କଠକଣା ।

ଦେଶୀୟ ଭାଷାରେ ପ୍ରଚଳିତ ହେଉଥିବା ସମ୍ବାଦପତ୍ର ମାନଙ୍କ ଉପରେ ଏଥି ମଧ୍ୟରେ ଅକସ୍ମାତ୍ ଚୋଟ ପଡ଼ିଗଲା । ଗତ ମାସ ତା ୧୫ ରିଖ ପୂର୍ବ ଏଥିର କିଛି ମାତ୍ର ସନ୍ଧାନ ଜଣାଯାଇ ନଥିଲା । ସେହି ଦିନ ଭାରତବର୍ଷୀୟ ବ୍ୟବସ୍ଥାପକ ସଭାରେ ଦେଶୀୟ ସମ୍ବାଦପତ୍ର ମାନଙ୍କୁ ଦମନ କରିବା ଉଦ୍ଦେଶ୍ୟରେ ମାନ୍ୟବର ଆର୍ବଥନଟ ସାହେବ ଏକ ଆଇନର ପାଣ୍ଡୁଲିପି ଉପସ୍ଥିତ କଲେ ତତ୍‌କ୍ଷଣାତ୍ ଏହାର ବିଚାର ହେଲା ଓ ସଭ୍ୟମାନେ ସମସ୍ତେ ଏକମତ ହେବାରୁ ସେହି ସଭାରେ ତାହା ବିଧିବଦ୍ଧ ହେଲା । ତାର ଡାକ ଯୋଗେ ଇଂଲଣ୍ଡକୁ ଏ ସମ୍ବାଦ ଯାଇ ସେଠାରୁ ଆଇନ ମନୋନୀତ ହୋଇ ଆସିଅଛି । ଆଇନ ଜାରି ସଙ୍ଗେ ୨ ତାହା ବମ୍ବେଇ, ଉତ୍ତର ପଶ୍ଚିମ, ଅଯୋଧ୍ୟା ଓ ବଙ୍ଗଳାରେ ଜାରି ହେବାର ଘୋଷଣା ପତ୍ର ମଧ୍ୟ ଇଣ୍ଡିଆ ଗେଜେଟରେ ବାହାରିଅଛି । ଆମ୍ଭେମାନେ ଅବକାଶ ଅଭାବରୁ ଏ ସପ୍ତାହରେ ଆଇନର ମର୍ମ ପାଠକ ମାନଙ୍କୁ ଜଣାଇବାକୁ ଅକ୍ଷମ ହେଲୁଁ । ଆମ୍ଭେମାନେ ଏ ସମ୍ବାଦ ଶୁଣି ଯେମନ୍ତ ଚମକି

ଉଦ୍ବିଗ୍ନ ପାଠକମାନେ ମଧ୍ୟ ସେହିପରି ହେବେ । ଦେଶୀୟ ଭାଷାରେ ପ୍ରଚଳିତ ସମ୍ବାଦପତ୍ର ଦ୍ୱାରା ଗବର୍ଣ୍ଣମେଣ୍ଟଙ୍କ ଏମନ୍ତ କି କଷ୍ଟ ହୋଇଅଛି ଯେ ତହିଁପାଇଁ ଏକାଏକରେ ଏମନ୍ତ ଗୋଟିଏ ଆଇନ ଜାରି କରିବାର ଆବଶ୍ୟକ ହେଲା ଏତିକି ବଡ଼ ବ୍ୟସ୍ତ ଜଣା ଯାଉଅଛି ।

୪୪୬ । ପୁଣି ଗୋଟାଏ ନାଲ ।

ଆମ୍ଭମାନଙ୍କ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର କାହିଁକି ଆସିଥିଲେ କି କରି-ଗଲେ ବହୁତ ଲୋକ ଏକଥା ପଚାରୁଅଛନ୍ତି । ପ୍ରକାଶ୍ୟରେ ଦେଖାଗଲା ଯେ ଦରବାର ହେଲା, ମଜଲିସ ହେଲା, ରୋଷନାଇ ହେଲା, ନାଚଗାନ ହେଲା କିନ୍ତୁ ବିଶେଷ କାର୍ଯ୍ୟ କି ହେଲା ? ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ଆଉ ଗୋଟାଏ ନାଲ ଫିଟାଇବା ସକାଶେ ଏ ପ୍ରଦେଶକୁ ଆସିଥିଲେ । ଏ ନାଲ ଫିଟାଇଲେ ଓଡ଼ିଶାର କି ଉପକାର ହେବ ତାହା ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସାହେବ ଆପଣା ଦର-ବାର ବକ୍ତୃତାରେ ସଂକ୍ଷେପରେ କହିଅଛନ୍ତି । ଓଡ଼ିଶାର ଅବସ୍ଥା ଦେଖି ସାହେବ ଅତ୍ୟନ୍ତ ଆନନ୍ଦିତ ହୋଇଅଛନ୍ତି ଓ ତାହାଙ୍କର ବିଶ୍ୱାସ ହୋଇଅଛି ଯେ ଓଡ଼ିଶା ପରି ଭାରତ ବର୍ଷର କୌଣସି ପ୍ରଦେଶ ଅଳ୍ପ କାଳରେ ଏତେ ଉନ୍ନତି ଲାଭ କରିନାହିଁ । ଏ ପ୍ରକାର ଉନ୍ନତି କେବଳ ବାଣିଜ୍ୟ ବିସ୍ତାର ଦ୍ୱାରା ହୋଇଅଛି । ବାଣିଜ୍ୟ ବିସ୍ତାରର ପ୍ରଧାନ କାରଣ ଦ୍ରବ୍ୟାଦି ଆମଦାନି ରପ୍ତାନିର ସୁବିଧା, ସଡ଼କ ଓ ନାଲ ଓ ସମୁଦ୍ରର ସଂଯୋଗ-ରେ ତାହା ହୋଇଅଛି । କିନ୍ତୁ ଅତିଅଳ୍ପ କାଳରେ ଓଡ଼ିଶାର ସମସ୍ତ ବନ୍ଦର ଦେଇ କଲିକତାକୁ ଯିବାର ସେମନ୍ତ ସୁବିଧା ନାହିଁ । ଯେବେ ସମସ୍ତ ବନ୍ଦରକୁ ଯିବା ଆସିବାର ସୁବିଧା ହେବ ଓ କଲିକତାରୁ କଟକ ମଧ୍ୟରେ ଅଳ୍ପ ସମୟରେ ଗତାୟାତ ହୋଇ-ପାରିବ ତେବେ ଓଡ଼ିଶାର ଆହୁରି ବହୁତ ଉନ୍ନତି ହେବ ଓ କୌଣସି ଅଭାବ ରହିବ ନାହିଁ । ଏହି ସକାଶେ ସେ ଆହୁରି ଗୋଟିଏ ନାଲ ଖୋଳାଇବାର ପ୍ରସ୍ତାବ କରିଅଛନ୍ତି । ଉକ୍ତ ନାଲ କେନ୍ଦ୍ରାପଡ଼ା ନାଲଠାରୁ ବାହାରି ଗୁବଦି ଶାଖାନାଲ ଗଣ୍ଡାକିଆ ଦେଇ ଧାମରାରେ ଯୋଗ ହେବ । ସେଠାରେ ବ୍ରାହ୍ମଣୀ ନଦୀରେ ମିଶିବ ସୁତରାଂ ଚାନ୍ଦବାଲିର ବାଟ ସହଜ ହେବ । ଧାମରାଠାରୁ ନାଲ ବାହାରି ବାଲେଶ୍ୱରରେ ବୁଢ଼ାବଳଙ୍ଗ ନଦୀରେ ମିଶିବ ଓ ସେଠାରୁ ସୁବର୍ଣ୍ଣରେଖା ଦେଇ ପିପିଲିଠାରେ ପ୍ରବେଶ ହେବ । ସେଠାରୁ ବାଗଦା ନଦୀ ତହିଁରୁ କାଳୀନଗରରେ ପ୍ରବେଶ ହେବ ଓ ସେଠାରୁ ଗୁଆଖାଳି ପର୍ଯ୍ୟନ୍ତ ମେଦିନୀ ନାଲ ସମ୍ପ୍ରତି ପ୍ରସ୍ତୁତ ହୋଇଅଛି ସେହିବାଟେ [illegible] କଲିକତାରେ ପହୁଞ୍ଚି ପାରିବ । ଏରୂପେ ଦେଖାଯାଏ ଯେ ଏ ନାଲ ସମୁଦ୍ର କୂଳେ ୨ ଚାନ୍ଦବାଲି ପର୍ଯ୍ୟନ୍ତ ଯିବ ଓ କଲିକତାରୁ କଟକ ପର୍ଯ୍ୟନ୍ତ ଜଳପଥରେ ଯାତାୟାତର

ଯେମନ୍ତ ସୁବିଧା ହେବ ତେମନ୍ତ ଓଡ଼ିଶାର ଏକ ବନ୍ଦରଠାରୁ ଅନ୍ୟ ବନ୍ଦରକୁ ଯିବାର ମଧ୍ୟ ସୁବିଧା ହେବ । ପ୍ରସ୍ତାବିତ ନାଳରେ ତେତିଶ ଲକ୍ଷ ଟଙ୍କା ବ୍ୟୟ ହେବ ଏମନ୍ତ ଇଷ୍ଟିମେଟ ହୋଇଅଛି ଏବଂ କହିତ ହୁଅଇ ଯେ ଏହାଦ୍ୱାରାହିଁ ଦୁଇଦିନ ମଧ୍ୟରେ କଲିକତାରୁ କଟକକୁ ଆସିବାର ସୁବିଧା ହେବ । ରେଲବାଟ ସକାଶେ ଆମ୍ଭେମାନେ ପୁନଃ ୨ ପ୍ରାର୍ଥନା କରୁଅଛୁଁ ଓ ଲେଫଟେନେଣ୍ଟ ଗବର୍ଣ୍ଣରଙ୍କ ସାକ୍ଷାତରେ ଅନେକ ସମ୍ଭ୍ରାନ୍ତ ବ୍ୟକ୍ତି ତହିଁ ସକାଶେ ପ୍ରାର୍ଥନା କରିଥିଲେ କିନ୍ତୁ ଲେଫଟେନେଣ୍ଟ ଗବର୍ଣ୍ଣର କହିଲେ ଯେ ତହିଁରେ ତିନି କୋଡ଼ିଏ କୋଟି ଟଙ୍କା ବ୍ୟୟ ହେବ ଓ ନଦୀସବୁ ବନ୍ଧାଇବା ବଡ଼ କଠିନ କର୍ମ ହେବ ସୁତରାଂ ଓଡ଼ିଶାରେ ତାହା ହୋଇନପାରେ । ଅତଏବ ପାଠକମାନେ ଦେଖିବେ ଯେ ଓଡ଼ିଶାରେ ରେଲବାଟ ହେବାର କୌଣସି ସମ୍ଭାବନା ନାହିଁ । ଲୋକେ ଭାଳିଲେ କି ହେବ ଯାନପୁରୁଷମାନେ ନବୁଝିଲେ କେବେ ତାହା ଘଟଣା ହେବନାହିଁ । ଆଉ ହିତବନ୍ଧୁମାନେ ଅବା କି କରିବେ । ଓଡ଼ିଶାର ଯେମନ୍ତ କପାଳ ସେହିପରି ଫଳ ଭୋଗ କରିବ । ସମ୍ପ୍ରତିରେ ରେଲବାଟ ଚିନ୍ତା ହେଉଅଛି । କିନ୍ତୁ ଓଡ଼ିଶା କପାଳରେ ଯେ ନାଳ ଲେଖା ଅଛି ତାହା ଛଡ଼ା ସେ ଆଉ କିଛି ପାଇବ ନାହିଁ । ସେଥିର ସର୍ ରିଚର୍ଡ଼ ଟେମ୍ପଲ ହାଇଲେବେଲ ନାଳର କଥା ବୁଝିବାକୁ ଆସିଥିଲେ ଓ ସେହିବାଟେ କଲିକତା ସହିତ କଟକ ଯୋଗ ହେବାର କିଛି ଆଶା ଥିଲା ମାତ୍ର ଅଦ୍ୟାପି ତାହା ଶେଷ ହେଲନାହିଁ । ଏହି ମଧ୍ୟରେ ଆଉ ଯୋଗାଏ କାଣ୍ଡ ବାହାରିଲା । ହାଇଲେବେଲ ନାଳଟାକୁ ସମୁଦ୍ର କୂଳେ ନେଲେ ବୋଲେ କି ଅଧିକ ସୁବିଧା ହେବ ଆମ୍ଭେମାନେ ବୁଝିନାହୁଁ କିନ୍ତୁ ଆମ୍ଭମାନଙ୍କର ବିଶ୍ୱାସ ହେଉନାହିଁ ଯେ ସମୁଦ୍ର କୂଳରେ ନାଳ ଦୀର୍ଘସ୍ଥାୟୀ ହେବ ଏବଂ ସେବାଟରେ ଦୁଇଦିନରେ କଲିକତାରୁ କଟକକୁ ଆସିବାର ସୁଯୋଗ ହେବ । ନଦୀ ବଢ଼ି ସମୟରେ ନାଳ ସବୁର ଯେ ସମସ୍ତ ଦୁର୍ଦ୍ଦଶା ଦେଖାଯାଏ ତାହା ମନେ କଲେ ନାଳଦ୍ୱାରା ବିସ୍ତର ଉପକାର ହେବାର ସମ୍ଭାବନା ନାହିଁ । ଗବର୍ଣ୍ଣମେଣ୍ଟ ଅବଶ୍ୟ ଭଲ ଅନୁସନ୍ଧାନ କରି ଏ କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛନ୍ତି କିନ୍ତୁ ଆମ୍ଭେମାନେ ଭାବୁଥିଲୁଁ ଯେ ରେଲବାଟର ସୁବିଧା ନାଳବାଟରେ କଦାପି ହୋଇ ପାରିବ ନାହିଁ କିନ୍ତୁ ନାଳ ହେତୁରୁ ଆମ୍ଭେମାନେ ରେଲ ବାଟରୁ ବଞ୍ଚିତ ହେଲୁଁ । ଯଥାର୍ଥ ନାଳ ଆମ୍ଭମାନଙ୍କର କାଳ ହୋଇଅଛି ।

ପରିଶେଷରେ ବକ୍ତବ୍ୟ ଏହି କି ବଳପୂର୍ବକ ଜଳକର ଗ୍ରହଣ କରିବେ ନାହିଁ ବୋଲି ଲେଫ୍ଟେନେଣ୍ଟ ଗବର୍ଣ୍ଣର ଯାହା ଭରସା ଦେଇଅଛନ୍ତି ଯଦ୍ୟପି ତାହା କାର୍ଯ୍ୟରେ ଦେଖାଯାଏ ତେବେ ନାଳ ଯେତେ ବାହା ଗୁଣା ହେଉ ତାହା ମନକୁ ବାଧିବ ନାହିଁ । କିନ୍ତୁ ଯେ ଭରସା ଯେ କିଷ୍ଟମ୍ ପୂର୍ଣ୍ଣ ହେବ ଲେଫ୍ଟେନେଣ୍ଟ ଗବର୍ଣ୍ଣର ଏମନ୍ତ କହି ନାହାନ୍ତି । ତାହାଙ୍କ ବକ୍ତୃତାର ଭାବ ଏହିପରି ଲୋକେ ଇଚ୍ଛା ପୂର୍ବକ ଜଳ

ନେଲେ ବଳପୂର୍ବକ କର ନେବାକୁ ସେ ଇଚ୍ଛା କରାଇବେ ନାହିଁ । ମାତ୍ର ଯେବେ ନ ନେବେ ତେବେ କି ହେବ ? ଗତବର୍ଷର ଅବସ୍ଥା ସ୍ୱତନ୍ତ୍ର ଥିବାରୁ ଲୋକେ ପୂର୍ବ ବର୍ଷାପେକ୍ଷା ଦ୍ୱିଗୁଣ ଜଳ ନେଇଥିଲେ । ସେପରି ଅବସ୍ଥା ସବୁବର୍ଷ ଘଟିବ ନାହିଁ ଓ ସୁକାଳରେ ଜଳ ନେବାକୁ ଲୋକେ ଆଗ୍ରହୀ ନହେଲେ ବଳପୂର୍ବକ ତାହାଙ୍କଠାରୁ କର ନିଆଯିବ । ସୁତରାଂ ଦରବାର ବକ୍ତୃତାରୁ କଣ୍ଠିତ ସିଦ୍ଧାନ୍ତ ହେଉନାହିଁ ଯେ ବଳାତ୍କାର ଜଳକରରୁ ଆମ୍ଭେମାନେ ନିଷ୍କୃତି ପାଇଅଛୁଁ ।

୪୫୦ । ସାପ୍ତାହିକ ସମ୍ବାଦ

ପୁରୀ ମହାରାଜଙ୍କ ମକଦ୍ଦମା ଚଳାଇବା କାରଣ କଲିକତାରୁ ଇଭାନସ୍ ସାହେବ ବାରିଷ୍ଟର ଆସୁଅଛନ୍ତି । ପ୍ରତିଦିନ ଏକ ହଜାର ଟଙ୍କା ତାହାଙ୍କ ସହିତ ଚୁକ୍ତି ହୋଇଅଛି ଏପରି ବାଟଖର୍ଚ୍ଚ ଦେବାକୁ ହେବ । ଶୁଣିଲୁଁ ଯେ ଅଗ୍ରେ ଦଶହଜାର ଟଙ୍କା ନେଇ କଲିକତାରୁ ଯାତ୍ରା କରିଅଛନ୍ତି । ଏଠାକୁ ଏଥିପୂର୍ବେ କେହି ବାରିଷ୍ଟର ଆସିନଥିଲେ ସୁତରାଂ ଏଥର ଅଭିନବ ଇଭାନସ ଦେଖିବା ପାଇଁ ଅନେକ ଲୋକ ଆସିବେ ତହିଁରେ ପୁଣି ପୁରୀ ମହାରାଜାଙ୍କର ମୋକଦ୍ଦମା ଏଥିଯୋଗୁଁ ଆହୁରି ଭିଡ଼ହେବ ।

( ୧୩ଶ ଭାଗ, ୩୦ । ୩ । ୧୮୭୮, ସଂଖ୍ୟା ୧୩ )

୪୫୧ । ପୁରୀ ମହାରାଜାଙ୍କ ମକଦ୍ଦମା ଆଜିକାଲି ସମସ୍ତଙ୍କର ମନ ଆକର୍ଷଣ କରିଥିବାରୁ ଆମ୍ଭେମାନେ ଏ ସପ୍ତାହରେ ଅନ୍ୟାନ୍ୟ ବିଷୟ ପରିତ୍ୟାଗ କରି ଯେତେ ଦୂର ପାରିଲୁଁ ସେଥିର ବିବରଣ ଲେଖିଲୁଁ । ସାକ୍ଷୀମାନଙ୍କ ଜବାନବନ୍ଦୀ ସମ୍ପୂର୍ଣ୍ଣରୂପେ ଲେଖିବାକୁ ଏ କ୍ଷୁଦ୍ର ପତ୍ରିକାରେ ସ୍ଥାନ ହେବନାହିଁ ବୋଲି ତାହା ସମସ୍ତ ଇଂରେଜୀରେ ବସି ଲେଖି ଆଣିବାର ଚେଷ୍ଟାରୁ କ୍ଷାନ୍ତ ହୋଇଥିଲୁଁ । ଯାହା ଶୁଣିଅଛୁଁ ତହିଁରୁ ଯେତେ କଥା ସ୍ମରଣ ହେଲା ତାହା ସଂକ୍ଷେପରେ ଲେଖିଲୁଁ । ଏଥିରେ କୌଣସି ଅଂଶରେ ତ୍ରୁଟି ହୋଇଥିଲେ ପାଠକମାନେ କ୍ଷମା କରିବେ । କେବଳ ସବାଲ ଜବାବ ଅବିକଳ ଲେଖା ହୋଇଥିଲେ ପାଠକଙ୍କର ମନ ତୃପ୍ତ ହୋଇଥାନ୍ତା । ତାହା ନହେବାରୁ ସୁତରାଂ ଯେ ଜବାନବନ୍ଦୀ ସବୁ ଅସମ୍ପୂର୍ଣ୍ଣ ଅବସ୍ଥାରେ ରହିଅଛି । କେବଳ ସ୍ଥୂଳ କଥାରେ ଅଧିକ ବିଶ୍ୱାସିତା ପଡ଼ିବ ନାହିଁ ଏହି ଆମ୍ଭମାନଙ୍କର ବିଶ୍ୱାସ ।

୪୫୨ । ପୁରୀ ମହାରାଜାଙ୍କର ଦେବା ବାସ୍ତ ।

ବିଶେଷ ଦୌରାର ଅଧିବେଶନ ଅନେକ କାଳରୁ ଦେଖାଯାଇ ନଥିଲା । ପୁରୀ ମହାରାଜାଙ୍କର ବିଚାର ସକାଶେ ସମ୍ପ୍ରତି ତାହା ଦେଖାଗଲା କରୁ ବର୍ତ୍ତମାନ

ଦୌରାଟି କେବଳ ଅସମୟରେ ହେବାରୁ ଏପରି ହୋଇଅଛି ଏମନ୍ତ ନୁହେ ଦୌରାର ନିୟମିତ ସମୟରେ ଏ ମକଦ୍ଦମା ପଡ଼ିଥିଲେ ମୁଦ୍ଧା ଏହା ବିଶେଷ ଦୌରା ବୋଲି ବାଚ୍ୟ ହୋଇଥାନ୍ତା । ବାସ୍ତବରେ ଏପରି ଦୌରା ମିଶଲ ଏ ନଗରରେ କେବେ ଦେଖା ଯାଇନାହିଁ ବୋଲି ପୁରାତନ ଲୋକମାନେ ମୁଦ୍ଧା କହୁଅଛନ୍ତି । ଏ ବିଶେଷ ଦୌରା ଅଧିବେଶନରେ ସମସ୍ତ ବନ୍ଦୋବସ୍ତ ବିଶେଷ ପ୍ରକାରରେ ହୋଇଅଛି । ଦୌରା ମିଶଲର ବିଶେଷ ବନ୍ଦୋବସ୍ତ ବିଶେଷ ପୁଲିସ ନିୟୋଗ ବିଶେଷ ଦର୍ଶକଙ୍କର ଭିଡ଼ । ଶ୍ରୀମତୀ ଭିକ୍ଟୋରି-ଶ୍ୱରୀଙ୍କ ପକ୍ଷରୁ ମୋକଦ୍ଦମା ଚଳାଇବାପାଇଁ ସରକାରି ଓକିଲ ଛଡ଼ା ଏଠାର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ଗ୍ରେବସ ସାହେବ ନିଯୁକ୍ତ ହୋଇଅଛନ୍ତି ଏପରି ସୁଦ୍ଧା ଡେପୁଟୀ କଲେକ୍ଟର ବାବୁ ନବୀନଚନ୍ଦ୍ର ସେନ ଏବଂ ଫୌଜଦାରୀ ସିରସ୍ତାଦାର ବାବୁ କ୍ଷେତ୍ର-

ମୋହନ ଘୋଷ ଶ୍ରୀଯୁକ୍ତ ଗ୍ରେବସ ସାହେବଙ୍କ ସାହାଯ୍ୟ ସକାଶେ ଆସିଅଛନ୍ତି । ମହାରାଜା ଓ ତାହାଙ୍କ ସଙ୍ଗୀ ଅପରାଧୀଙ୍କ ସକାଶେ ଶ୍ରୀଯୁକ୍ତ ଇବାନ୍‌ସ ସାହେବ ଓ ହଣ୍ଡ୍ଲି ସାହେବ ବାରିଷ୍ଟରମାନେ ଆସିଅଛନ୍ତି ଏବଂ ସରକାର ଓକିଲ ଛଡ଼ା ଏଠା ବଡ଼ ଅଦାଲତର ସମସ୍ତ ଓକିଲ ନିଯୁକ୍ତ ହୋଇଅଛନ୍ତି ମୁତରାଂ ଫରିୟାଦୀ ପକ୍ଷର ଗୁରୁଜଣ ଓ ଆସାମୀଙ୍କ ପକ୍ଷରେ ଓକିଲ ମୁକ୍ତାର ହୋଇ ଜାଃ ୧୦ଣ ନିଯୁକ୍ତ ଅଛନ୍ତି । ଏପରି ଦୁଇଆଡ଼େ ଜାଃ ୧୪ଣ ହାକିମ ଓ ଅମଲା ଜାଃ ୪ଣ ଆସେସର ଦୁଇଜଣ ଓ ଆସାମୀ ଜାଃ ୧୦ଣ ଓ ଚପ୍ରାସି କନେଷ୍ଟେବଲ ଜେନ ମିଶଲ ଉପରେ ପ୍ରାୟ ଜାଃ ୪୦ଣ ବସୁଅଛନ୍ତି । ମହାରାଜା ଏକଖଣ୍ଡ ଚୌକିରେ ବସୁଅଛନ୍ତି ଏବଂ ଦୁଇ ଗୁରୁଜଣ ଭଦ୍ର ଇଂରାଜ ଦର୍ଶକ ମଧ୍ୟ ଆସୁଅଛନ୍ତି । ଭଦ୍ରଲୋକଠାରୁ ନିତାନ୍ତ ନୀଚଲୋକ ପର୍ଯ୍ୟନ୍ତ ଏ ମୋକଦ୍ଦମାର ଫଳ ଜାଣିବାକୁ ବାଂଗ୍ର ଓ ବିଚାରର କୌତୁକ ଦେଖିବାକୁ ଆସୁଛନ୍ତି ।

ପ୍ରଥମ ଦୌରାର ବୈଠକ ଚଳିତମାସ ତା ୧୭ରିଖରେ ହେଲା । ସେଦିନ ବେଳ ଘ ୯ ଣ୍ଟା ସମୟରୁ କଚେରୀକୁ କର୍ମଗୃହୀ ଛଡ଼ା ନାନା ପ୍ରକାର ଦର୍ଶକଙ୍କର ଆସିବାର ଆରମ୍ଭ ହେଲା । ଅନେକଲୋକ କଚେରୀକୁ ନଯାଇ ଜେଲଖାନା ସମ୍ମୁଖରେ ବସି ରହିଲେ ଯେ ହାଜତରୁ ଯିବାବେଳେ ରାଜାଙ୍କର ଦର୍ଶନ କରିବେ । ସମସ୍ତ ଶ୍ରେଣୀର ଲୋକଙ୍କର ସମାନ ରୂପ ଉତ୍ସାହ ଜନ୍ମିଥିଲା । ଆମ୍ଭେମାନେ ଦେଖିଲୁଁ ଯେ ଅନେକ ଦୋକାନୀ ମୁଲିଆ ପ୍ରଭୃତି ଆପଣା ୨ ବୋଝ ପସରା ଇତ୍ୟାଦି ଓଳ୍ହାଇ ରଖି ରାଜାଙ୍କ ବାଟକୁ ଗୃହିଁ ରହିଥିଲେ ଓ ଏହି ଅବସ୍ଥାରେ ଏକଘଣ୍ଟାରୁ ଅଧିକକାଳ ରହିଲେ ମୁଦ୍ଧା କାହାରି ବାହାରି ଯିବାକୁ ମନ ବଳିଲା ନାହିଁ । ଯେତେବେଳେ ରାଜାଙ୍କର ପାଲିକୀ ଅଦାଲତକୁ ଯାଉଥିଲା ଲୋକେ ଗୁରୁଆଡ଼ ବେଢ଼ି ଉଚ୍ଚ ସ୍ୱରରେ ହରିବୋଲ ଧ୍ୱନି କରି ପଛରେ ଦୌଡ଼ୁଥିଲେ । ରାଜାଙ୍କ ପାଲିକୀ ସଙ୍ଗେ ୨ ପ୍ରାୟ ଶାଙ୍ଗ-ହଜାର ଲୋକ ଅଦାଲତର ଗୁରୁଦିଗରେ ବେଢ଼ିଗଲେ । ଶାନ୍ତିରକ୍ଷା ସକାଶେ

କେତେଗୁଡ଼ିଏ ଅଧିକା ପୁଲିସ କର୍ମଚାରୀ ଆସିଥିଲେ କିନ୍ତୁ ଲୋକଙ୍କୁ ସମ୍ଭାଳି ଅନ୍ତରରେ ରଖିବା ବଡ଼ କଠିନ କର୍ମ ହୋଇଥିଲା । କେତେବେଳେ ଯାଏ ହରିବୋଲ ଧ୍ୱନିକରି ପୁଲିସର ପୁନଃ ୨ ତାଡ଼ନାରେ ଲୋକେ ସ୍ଥିର ହେଲେ କିନ୍ତୁ ଅଧିକାଂଶ ଲୋକ ଖରାରେ ଏହିପରିଠାରେ ଅପେକ୍ଷା କରି ଥରେ ପାଣି ଖାଇଲେ ଯଥାପି ଘରକୁ ଫେରିଲେନାହିଁ । କରେଟା ଭାଙ୍ଗିବା ସମୟରେ ଏହିପରି ଭିଡ଼ ହୋଇଥିଲା ଓ ସମସ୍ତେ ରାଜାଙ୍କର ମୁକ୍ତି ପ୍ରାର୍ଥନା କରୁଥିଲେ । ପୁରୀର ମହାରାଜାଙ୍କୁ ଓଡ଼ିଶାର ମହାରାଜା ବୋଲିଯାଏ ଓ ଯଦ୍ୟପି କି ଅନେକ ବର୍ଷ ହେଲା ସେ ରାଜ୍ୟଶୂନ୍ୟ ରାଜା ହୋଇଅଛନ୍ତି ତଥାପି ଅବଧି ଯେ ଲୋକଙ୍କର ରାଜଭକ୍ତି କିଛିମାତ୍ର ଊଣା ହୋଇନାହିଁ ତହିଁର ଅଭ୍ରାନ୍ତ ଉଦାହରଣ ଏହି ଦୌରା ମିଶିଲରୁ ମିଳୁଅଛି । ଅପରାଧ ଯେମନ୍ତ ଗୁରୁତର ଓ ମହାରାଜା ତାହା କରିଅଛନ୍ତି କି ନାହିଁ ତହିଁର ବିଚାର ଉପରକୁ ଲୋକଙ୍କର ମନ ଯାଉନାହିଁ କେବଳ ମହାରାଜାଙ୍କର ବର୍ତ୍ତମାନ ଦୁରବସ୍ଥା ସମସ୍ତଙ୍କୁ ଅସହ୍ୟ ବୋଧ ହେଉଅଛି ବୋଲି ତହିଁରୁ ରାଜା ମୁକ୍ତ ହେଉନ୍ତୁ ଏହିକଥା ସମସ୍ତେ ମନାସୁ ଅଛନ୍ତି । ବାସ୍ତବରେ ଓଡ଼ିଆମାନଙ୍କ ରାଜଭକ୍ତିରୁ ଉତ୍କୃଷ୍ଟ ନାହିଁ । ପ୍ରଥମ ଦିନର ଭିଡ଼ ଅନ୍ୟାନ୍ୟ ଦିନର ମିଶିଲରେ ନଥିଲା ତଥାପି ମହାରାଜଙ୍କର ଯିବା ଆସିବା ସମୟରେ ପ୍ରତିଦିନ ଦୁଇତିନିଶତ ଲୋକରୁ ଊଣା ହୋଇନାହିଁ । ଜଜ ସାହେବ ଯେବେ ପୂର୍ବରୁ ସତର୍କ ନହୋଇ ଅଧିକା ପୁଲିସ ଅଣାଇ ନଥାନ୍ତେ ତେବେ ଲୋକଙ୍କ ଭିଡ଼ରେ ମିଶିଲରେ ବସି ମୋକଦ୍ଦମା କରିବା କଠିନ ହୁଅନ୍ତା ।

ଆମ୍ଭେମାନେ ଆମ୍ଭଙ୍କରୁଁ ଯେ ଏ ବିଶେଷ ଦୌରାର ବିଶେଷ ସମାଲୋଚନାର ପତ୍ରିକା ଉପରେ ଲିଖିତ ବର୍ଣ୍ଣନାରୁ ପାଠକମାନେ ଜାଣିପାରିବେ । ଏଥର ବିଚାରର କଥା କହୁଅଛୁଁ ।

ତା ୨୭ ରିଖ ବେଳ ଦ ୧୧୮ ଶା ସମୟରେ ମୋକଦ୍ଦମାର ବିଚାର ଆରମ୍ଭ ହେଲା । ପ୍ରଥମେ ଫରିୟାଦୀ ପକ୍ଷରୁ ନିଯୁକ୍ତ ଗ୍ରେଭସ ସାହେବ ମୋକଦ୍ଦମା ଆରମ୍ଭକରି ସଂକ୍ଷେପ ବିବରଣ ଓ ଯେ ସମସ୍ତ ପ୍ରମାଣ ଦ୍ୱାରା ତାହା ସାବ୍ୟସ୍ତ କରିବେ ତାହା ଅଦାଲତଙ୍କୁ ଜଣାଇଲେ । ତହୁଁ ପ୍ରଥମ ସାକ୍ଷୀର ବୟାନବନ୍ଦୀ ନିଆଗଲା । ଏ ସାକ୍ଷୀ ପୁରୀ ଚକିସ୍ତାଲିନ୍ଦର ଜଣେ କମାଉଣ୍ଡର, ସେ କହିଲା ଯେ ଶିରୁଦାସ ବାବାଜୀକୁ ପାଲଙ୍କରେ ପକାଇ ପୁଲିସ ହାସପାତାଲକୁ ଆଣିଲେ । ସେଦିନ ତାହା ଗୁହ୍ୟଦ୍ୱାର ବାଟେ ଖଣ୍ଡ ସୋଲ ବାହାରିଲା । ଦୁଇଦିନ ଉତ୍ତାରୁ ଟୋଲିକ ଦେବାରେ ଆହୁରି ପାଞ୍ଚଖଣ୍ଡ ସୋଲ ବାହାରିଲା । ଶିରୁଦାସର ଉଦରପୀଡ଼ା ଓ ଯନ୍ତ୍ରଣା ହୋଇଥିଲା ସେହିପୀଡ଼ାରେ ସେ ଚଳିତମାସ ତା ୧ ରିଖରେ ମରିଗଲା । ସେହି ସୋଲଗୁଡ଼ୁ

ବାହାନ୍ତିକି ସେସବୁ ମେହେତର ଜମାଥିଲା ତାହାଠାରୁ ମାକଷ୍ଟେନ୍‌ଙ୍କ ନିକଟକୁ ଅସି ବୋତଲରେ ବନ୍ଦ ହୋଇଥିଲା । କୌଣସି ମିଶଲରେ ତାହାକୁ ସେ ଚିହ୍ନିଲି ଓ ତଶ୍ରେ ବାକ୍ସ ଖୋଲାକୁ ସେ ବିଶେଷ ରୂପେ ଚିହ୍ନିଥିଲା ।

୨ୟ ସାକ୍ଷୀ ପୁଲିସ ଗୋଇନ୍ଦେନ୍ଦ ଇନ୍‌କାର ଫର୍ଣ୍ଣିକଟ ଲଣ୍ଡିନ୍ଦ୍ରୁ ବେକ ସାହେବ । ସେ ରାଜାଙ୍କ ନଅରର ଖଣ୍ଡେ ନକସା ମାକଷ୍ଟେନ୍‌ଙ୍କ ଆଜ୍ଞାନୁସାରେ ପ୍ରସ୍ତୁତ କରି ଆଣିଥିଲା, ଅଦାଲତରେ ତାହା ଦାଖଲ ଓ ତସଦିକ କଲା । ମୃତ ବ୍ୟକ୍ତିକୁ ନଅରର ମଧ୍ୟରେ ଯେଉଁ ସ୍ଥାନରେ ଯେ ପ୍ରକାର ପୀଡ଼ା ଦିଆ ଯାଉଥିଲା ତାହାଙ୍କୁ ପୁଲିସ ଇନସ୍ପେକ୍‌ଟର ଠାରୁ ଅବଗତ ହୋଇ ନକସାରେ ଚିହ୍ନିତ କରିଥିବାର ସେ ବ୍ୟକ୍ତ କଲା ।

ଏଥି ଉତ୍ତାରୁ ଡ୍ରେବସ ସାହେବ ଛଅ ଖଣ୍ଡ ଦଲିଲ ଦାଖଲ କଲେ ଓ ସେ ସମସ୍ତ ଅଲ୍ପ ତର୍କ ବିତର୍କ ଉତ୍ତାରୁ ଅଦାଲତରେ ଗୃହୀତ ହେଲା । ସେ ସବୁ ମୃତ ବ୍ୟକ୍ତିର ଇଜାହାର ଅଟେ ଯାହା ହାସପାତାଳରେ ସ୍ୱୟଂ ମାକଷ୍ଟେନ ସାହେବ ତାହାଠାରୁ ନେଇଥିଲେ । ତହିଁରେ ସେ ଲେଖାଇ ଅଛି ଯେ ରାଜା ତାହାକୁ ଭରବାନ-ପୁର ମଠ ଠାରୁ ଡକାଇଆଣି ନଅର ମଧ୍ୟସ୍ଥିତ ଚାଟା ଘରେ ସ୍ୱୟଂ ଓ ଆଉଣା ଲୋକ ଦ୍ୱାରା (ଯେଉଁମାନେ ଆସାମୀ ହୋଇଅଛନ୍ତି) ମାଡ଼ ମାରି ଗୁହ୍ୟ ଦ୍ୱାରରେ ଖୋଲା ଇନ୍ଦ୍ରିୟରେ ଚୂନ ଖଡ଼ିକା ପୁରାଇ ମଶାଲରେ ଦେହର ନାନା ସ୍ଥାନ ପୋଡ଼ିଦେଇ ମେହେ-ତର ଦ୍ୱାରା ବନ୍ଧା ଓ ମୂତ୍ର ଖଆଇ ଖିଡ଼ିକୀ ବାଟେ ଦାଣ୍ଡକୁ ବାହାର କରି ଦେଇଥିଲେ । ରାଜା କାହିଁକି ଏପ୍ରକାର ପୀଡ଼ା ଦେଲେ ତହିଁର ସେ ହେତୁ କହିନାହିଁ । ଏଥିପୂର୍ବେ ରାଣୀଙ୍କ ଡକାଇବା ଅନୁସାରେ ସେ ଏକ ଥର ନଅରକୁ ଆସିଥିଲା ଓ ରାଜାଙ୍କ ଦୋହି ଆରୋଗ୍ୟ କରିବାପାଇଁ ରାଣୀ ତାହାକୁ କହିଥିଲେ । ଆସାମୀମାନଙ୍କ ମୁହଁ ଦେଖି ମାକଷ୍ଟେନ ସାହେବଙ୍କୁ ଚିହ୍ନାଇ ଦେଇଥିଲା କାହାର ନାମ କହିପାରି ନଥିଲା । ଏହି ଛଅଖଣ୍ଡ ଇଜାହାର ମଧ୍ୟରୁ ଏକଖଣ୍ଡ ବିଷୟରେ ଆଇନ ଘଟିତ ତର୍କ ହେବାରୁ ସବ-ଇନସ୍ପେକ୍‌ଟର ରାମରାଓ ତାହା ଆପଣା ସାକ୍ଷ୍ୟ ଦ୍ୱାରା ତସଦିକ କଲା ।

ଚତୁର୍ଥ ସାକ୍ଷୀ ଗୋପୀ ସିଂହ ଆପଣା ଜୋବାନବନ୍ଦୀରେ କହିଲା କି ସେ ରାଜାଙ୍କ ନଅରର ଠିକା ଚପରାସୀ ଥିଲା । ସେଜିଆପଟ ତାହାକୁ କହିଲା ଯେ ନାରାୟଣ ବାବନପଟ କହିଲେ ଯେ ପୁନାଙ୍ଗ ତୋଟା ବାବାଜିଙ୍କୁ ଡାକିଆଣ । ଏହା ଶୁଣି ସେ ଦୁହେଁ ପୁନାଙ୍ଗ ତୋଟା ବାବାଜିଙ୍କ ନିକଟକୁ ଯାଇ ରାଜା ଡାକୁଅଛନ୍ତି

କହିବାରେ ସେ କହିଲା 'ମୁଁ ନୁହେଁ ଭଗବାନପୁର ବାବାଜୀଙ୍କୁ ଡାକୁଥିବେ' ଏହା କହି ସେ ବାବାଜୀଙ୍କୁ ଚିହ୍ନାଇ ଦେବାରୁ ଗୋପୀ ସିଂହ ଓ ସେକଜାନୁପଠ ବାବାଜୀଙ୍କୁ ସଙ୍ଗେ ଘେନି ଆସିଲେ । ବାଟରେ ଗୃହଜଣ ଲୋକ ତାଙ୍କ ସଙ୍ଗେ ମିଶିଲେ । ଏପରି ଜମ୍ବଣ ସଙ୍ଗେହୋଇ ଆସିଲେ । ବାଟରେ ବାବାଜି ଭାଙ୍ଗ ଓ ଗଞ୍ଜେଇ ଖାଇ ସନ୍ଧ୍ୟା ଉତ୍ତାରୁ ପୁରୀରେ ଆସି ପହଞ୍ଚିଲେ । ବାଟରେ ଥାନାଠାରେ ଗିରିଧାରୀ ଲାଲ ସବଇନସ୍ପେକ୍‌ଟରଙ୍କ ସହିତ ସାକ୍ଷାତ ହୋଇଥିଲା । ନଅର ଦ୍ୱାରରେ ପ୍ରବେଶ ହୁଅନ୍ତେ ବାବାଜୀ ଓ ତାଙ୍କ ସଙ୍ଗୀମାନେ ସେଠାରେ ବସିଲେ, ସେକଜାନୁପଠ ନଅର ଭିତରକୁ ଗଲା । ଗୋପୀସିଂହ ପହରିବାଲାଙ୍କୁ ଡାକିବାକୁ ଦେଇ ଆପଣା ବସାକୁ ଚାଲିଗଲା । ନଅର ଦ୍ୱାରେ ପହଞ୍ଚିବା ବେଳେ ଦାଣ୍ଡ ବାରନ୍ଦାରେ କଚେରୀ ଲାଗିଥିଲା ତହସିଲଦାର ବସି କଚେରୀ କରୁ-ଥିଲେ । ଏ ଗୁହା ଉପରେ ଅନେକ ଜେରା ସବାଲ ହୋଇଥିଲା ତହିଁରେ ରଜାଙ୍କ ନଅରର ଅନେକ ଚଳି ବିଧାନର କଥା ବାହାରିଲା । ଅନ୍ୟାନ୍ୟ କଥା ମଧ୍ୟରେ ଏ ଗୁହା କହିବାରୁ ଜଣାଗଲା ଯେ ରଜାଙ୍କ ନଅରର ସମସ୍ତ ପାଇଖାନାର ଦ୍ୱାର ଦାଣ୍ଡ ଦଗକୁ ଅଛି ମେହେନ୍ତର ଦାଣ୍ଡଆଡୁ ପାଇଖାନା ଝାଡ଼ି ନେଇଯାଏ । ନଅର ଭିତରକୁ ହାଡ଼ ଗଲେ ଅଥବା ବିଷ୍ଠା ଆସିଲେ ଘର ମାରୁଥିବ ରଜାଙ୍କ ନଅରରେ ଏସବୁ କଥାର ବଡ଼ ପରହେଜ ଇତ୍ୟାଦି ।

ତା୨୭ରିଖରେ ଗୋପୀ ସିଂହ ଉପରେ ଜେରା ସବାଲ ହେବା ଉତ୍ତାରୁ ପଞ୍ଚମ ଗୁହା ନୀଳା ବେହେରା କହିଲା କି ସେ ଜାନକୀଦେଇପୁର ବଜାରରେ ପାନଗୁଆ କିଣୁଥିଲା ଏମନ୍ତ ସମୟରେ ଦେଖିଲା ଯେ ବାବାଜୀ ଓ ତାଙ୍କ ସଙ୍ଗେ ଛୋଟନାଏକ ବାଳକୃଷ୍ଣ ମିଶ୍ର ଓ ନିଧି ମିଶ୍ର ଗୋପୀ ସିଂହ ଚପରାସି ଓ ମାହାରଥୀ ଆସୁଅଛନ୍ତି । ବାବାଜୀ କହିଲେ ପୁରୀ ରଜାଙ୍କ ଡାକରା ଆସିବାରୁ ଯାଉଅଛନ୍ତି 'ତୁ ସଙ୍ଗେ ଆସିବୁ ତ ଆ' ସେଠାରୁ ସେ (ନୀଳା) ତାଙ୍କ ସଙ୍ଗରେ ଗଲା । ପୁରୀ ସଦର ଥାନାଠାରେ ବାବାଜୀ ଗିରିଧାରୀ ବାବୁଙ୍କ ସଙ୍ଗେ କଥାବାର୍ତ୍ତା କରି ନଅର ଦ୍ୱାରକୁ ଗଲେ । ବାବାଜୀ ବାରନ୍ଦାରେ ବସିଲେ, ସଙ୍ଗମାନେ ତଳେ ବସିଲେ । ମାହାରଥୀ ଭିତରକୁ ଯାଇ ପୁଣି ଲେଉଟି ଆସି ଏକା ବାବାଜୀଙ୍କୁ ଭିତରକୁ ଘେନି ଗଲା ଓ ଗୋପୀ-ସିଂହ ତାଙ୍କ ପାଖରେ ବସି ରହିଲା । ବିଳମ୍ବ ହେବାରୁ ତାହାଙ୍କୁ ନିଦ ମାଡ଼ିଲା ତହୁଁ ପହରିବାଲା ଜଣକୁ କହି ସେହି ବାରନ୍ଦାରେ ସେମାନେ ଶୋଇଲେ । ବାବାଜୀ ଘରୁ ଆସିବା ବେଳେ ଖଣ୍ଡେ ଲୁଗା ଅଣ୍ଟାରେ ବେଢ଼ାଇ ଥିଲେ ଓ ଖଣ୍ଡେ କାନ୍ଧରେ ପକାଇ ଥିଲେ । ଜନସନ୍ଧ ମାଳୀ ତାହାଙ୍କ ବେକରେ ଥିଲା । କଚେରୀକୁ ଆସିଥିବା ମାଳୀକୁ ବାବାଜୀଙ୍କ ବେକର ମାଳୀ ବୋଲି ଚିହ୍ନିଲା । ରାତ୍ରି ଦୁଇପ୍ରହର ବେଳେ ବାବାଜୀଙ୍କ ଡାକଶୁଣି ତାହାର (ନୀଳାର) ନିଦ ଭାଙ୍ଗିଲା ବାବାଜୀ ଡାକୁଥିଲେ 'ନୀଳାରେ ପଡ଼ିତରେ

ଯାଉଁ ଆସ ମୁଁ ମରିଗଲି' ସେ ଏପରି ଡାକଶୁଣି ସଙ୍ଗୀମାନଙ୍କୁ ଉଠାଇ ଦେଇ ବାରଣ୍ଡାକୁ ବେଉଁପଡ଼ି ବାବାଜୀଙ୍କ ନିକଟକୁ ଗଲି । ଆଉ ଲୋକମାନେ ତାହା ପଛେ ପଛେ ଗଲେ । ଦେଖିଲା ବାବାଜୀ ଲମ୍ବାଲମ୍ବା ହୋଇ ମାଟିରେ ପଡ଼ିଅଛନ୍ତି ଗଣ୍ଡିରୁ ସେଠା ବାହାରି କରୁଅଛନ୍ତି । ଦେଖିଲା ନାନା ସ୍ଥାନ ପୋଡ଼ିଯାଇ ଫୋଟକା ହୋଇଅଛି ସେ ଆଦେଶ ବୃଦ୍ଧଲ ମାଟିରେ ପଡ଼ା ଛଡ଼େଇଲ ବାବାଜୀ ତହିଁ ଉପରେ ଲୋଟୁଥିଲେ । ପାଣି ମାଗନ୍ତେ ପଞ୍ଚିତ ପାଣି ଅଣି ଦେଲା । ବାବାଜୀ ପିଇଲା ଉତ୍ତାରୁ ଜଣା ଯାଇ ଚିହ୍ନୋଟ ବାବୁଙ୍କୁ ଥାନାରୁ ଡାକିଆଣିଲା । ଗନ୍ଧାଧାରୀ ବାବୁ କନଷ୍ଟେବଲ ସଙ୍ଗେ ନେଇ ଆସି ଆଲୁଅ କାଳି ବାବାଜୀଙ୍କ ଅବସ୍ଥା ଦେଖି କୃପାସିନ୍ଧୁ ବାବୁ ସବ ଇନସ୍ପେକ୍ଟରଙ୍କୁ ଡାକିବା ଲାଗି ଜଣେ କନଷ୍ଟେବଲ ପଠାଇଲେ । କୃପାସିନ୍ଧୁ ଆସି ଖଣ୍ଡେ ପାଲିଙ୍କି ଅଣାଇ ବାବାଜୀଙ୍କୁ ଥାନାରୁ ନେଇଗଲା । ସେଠାରେ ଇଜାହାର ନେଇ ଡାକ୍ତରଖାନାକୁ ନେଇଗଲା । ଓ କଲା ଡାକ୍ତର ସବୁ ଦାଖଲ ପାଇ ତତ୍‌କ୍ଷଣାତ୍ ଆସି ତାହାଙ୍କୁ ଔଷଧ ଦେବାରେ ୩୬ । ଗଣ ଖଣ୍ଡ ସୋଲ ବାହାରିଲା । । ୫ସ ଗୃହରେ ଦାବାଜୀଙ୍କ ନିକଟରେ ନାହିଁ ଘରକୁ ଗଲା । ନଅର ଦ୍ୱାରେ ଆଠଘଣ୍ଟା ଟବଲେ ସେମାନେ ପହଞ୍ଚୁଥିଲେ । କେବଳ ଗୃହ ପାଞ୍ଚଜଣ ପହରାବାଲା ଦ୍ୱାରେଠାରେ ଥିଲେ ବାରଣ୍ଡାରେ କେହି ନଥିଲେ କି କିଛି କଟେଣ୍ଟି ହେଉ ନଥିଲା । ଏ ଗୁହା ଉପରେ ଅନେକ କୋଟି ସବାଲ ହୋଇଥିଲା ତହିଁରେ ଶେଷକୁ ସେ ଉତ୍ତର ନଦେଇ କହିଲା ମୁଁ ପିଲା ମୋତେ ଆଉ କିଛି ପଚାରନ୍ତୁ ନାହିଁ ଯାହା ଜାଣି-ଥିଲି କହିଲି ଆଉ କିଛି କହିପାରିବି ନାହିଁ । ଏଥିରୁ ବାଚାଳିଙ୍କର ପଗୃରିଲେ କି ତୁ ହେତବ ବ୩୨ଶ ବୟସ ଥିବା ପ୍ରତ୍ୟୟେ ପିଲା ହେଲୁ ତେବେ କେବେ ମନୁଷ୍ୟ ହେବୁ ବୋଲି ଆଗା ରଖ୍ଥ ଏଥିର ଉତ୍ତରରେ ମଧ୍ୟ ସେ କହିଲି ମୁଁ ପିଲା ଅଟେ ।

ଏହାପରେ ଅପରାହ୍ନ କାଳରେ ପଣ୍ଡିତ ନାୟକଙ୍କର ସୋବାନବନ୍ଦୀ ହେଲା । ସେ କହିଲି କି ଆସଣା ଘରଠାରେ ଥିଲି ବାବାଜୀ ଡାକିବାରୁ ତାହାଙ୍କ ସଙ୍ଗେ ଆସିଲି ଜାନକୀ ଦେଇପୁରଠାରେ ଜଣା ବେଦେହୀ ସଙ୍ଗେ ଦେଖାହେଲି । ସେଠାରୁ ବାବାଜୀଙ୍କର ଡାକ୍ତରଖାନାରେ ରହିବା ପର୍ଯ୍ୟନ୍ତ ସମସ୍ତ କଥା ଯେମନ୍ତ ଜଣା ବେଦେହୀ କହିଅଛି ସେହିପରି କହିଲି । ଏ ନେକିର କହିବାମତେ ଯେଉଁଠାରେ ପ୍ରଥମେ ସେ ବାବାଜୀଙ୍କୁ ଦେଖିଥିଲି ସେଠାରେ ବାବାଜୀ ପାଲିଙ୍କିରେ ବସି ନଥିଲେ । ସେମାନେ ବାବାଜୀଙ୍କି ପାଲିଙ୍କିଖାନା ପାଖକୁ ନେଇଆସିଲେ ସେଠାରୁ ବାବାଜୀ ପାଲିଙ୍କିରେ ଗଲେ । କୋଟି ସବାଲରେ ଏହାଙ୍କୁ ପଚାରିଗଲି କି ଜଣମି ବ୍ୟକ୍ତିପାଖରୁ ପାଲିଙ୍କି ନେଇ ଯିବା ନା ପାଲିଙ୍କି ପାଖକୁ ଜଣମିକୁ ନେଇଆସିବା ବୁଦ୍ଧିର କାର୍ଯ୍ୟ । ତହିଁରେ ସେ ଉତ୍ତର ଦେଲି କି ଉଭୟ ବଧି ସମାନ । ଏ ଗୁହା ମଧ୍ୟ କୋଟି ସବାଲରେ କହିଁର ଅସ୍ତ-ବ୍ୟସ୍ତ ହୋଇଥିଲି ।

ତା ୨୮ ରିଖରେ ନିଧି ମିଶ୍ର ଓ ବାଳକୃଷ୍ଣ ମିଶ୍ରଙ୍କର ଜୋବାନବନ୍ଦୀ ହେଲା । ଏମାନେ ଗ୍ରାମଠାରୁ ବାବାଜୀଙ୍କ ସଙ୍ଗେ ଆସିବାର ଓ ଜାଲା ବେହେରା ସଙ୍ଗେ ଭେଟ ହେବା ସମୟଠାରୁ ଡାକ୍ତରଖାନାରେ ବାବାଜୀଙ୍କର ରହିବା ପର୍ଯ୍ୟନ୍ତ ସବୁକଥା ଉପରେ ଲେଖା ପ୍ରାୟ କହିଲେ । ଜେରସବାଲରେ ନିଧି ମିଶ୍ର କହିଲେ କି ସେ ଏକା ଆପଣା ଗ୍ରାମରୁ କଟକକୁ ଆସିଥିଲେ ଏକା ବସାକରି ରହିଥିଲେ କୌଣସି ଗୁହାକି କନେଷ୍ଟବଲ ତାହାସଙ୍ଗେ ନଥିଲେ । କିନ୍ତୁ ବାଳକୃଷ୍ଣ ଉପରେ ଜେରସବାଲ ହେବାରେ ସେ କହିଲେ କି ନିଧିମିଶ୍ର ତାହାର ଭାଇ ହୁଅଇ । ଦୁହେଁ ଏବଂ ତାହା ଗ୍ରାମର ଅନ୍ୟ ଗୁହାମାନେ ସଙ୍ଗହୋଇ କଟକକୁ ଆସିଲେ । ନିଧି ମିଶ୍ର ଓ ସେ ( ବାଳକୃଷ୍ଣ ମିଶ୍ର ) ଏକା ବସାରେ ରହି ଏକା ହେସାଲରେ ଖାଉଥିଲେ ଓ ସେହି ଗଣ୍ଡାରେ ନାରାୟଣ ମହାନ୍ତି ଓ ଦରଶନ ସିଂହ କନଷ୍ଟବଲମାନେ ଥିଲେ । ହାସପାତାଳରେ ଥିଲାବେଳେ ନିଧିମିଶ୍ର ଆଟେ ମହାପ୍ରସାଦ ମନ୍ଦିରରୁ କିଣିଆଣି ଖାଉଥିବାର କହିଥିଲେ । ବାଳକୃଷ୍ଣ କହିଲେ ସେ କମ୍ଭା ନିଧିମିଶ୍ର ମହାପ୍ରସାଦ କିଣିବାକୁ ଯାଇ ନଥିଲା । ପଣ୍ଡିତ ନାୟକ ନାମରେ ଜଣେବ୍ୟକ୍ତି ତାହା କିଣି ଆଣିଲା । ଏ ପଣ୍ଡିତ ଗୁହା ଛଡ଼ା ଆଉ ଜଣେ ଅଟେ ତାହାର ଘର ସେହି ଗ୍ରାମରେ । ଗୃହସାଈ ପଣ୍ଡିତ ସେହି ଗ୍ରାମରେ ଥିବାର ବାଳକୃଷ୍ଣ କହିଲା । ଏ ପଣ୍ଡିତ ଆରଦିନ ସକାଳେ ଡାକ୍ତରଖାନାରେ ଆସି ମିଳିଲା । ଏହି ନୂଆ ପଣ୍ଡିତ ଓ ଗୁହା ପଣ୍ଡିତ ଘେନି ବାଳକୃଷ୍ଣ ଉପରେ ଅନେକ ସବାଲ ହେଲା ଓ ତାହା ଶୁଣିବାକୁ ବଡ଼ କୌତୁକ ହୋଇଥିଲା ।

ଏହିଦିନ ଅପରାହ୍ନ କାଳରେ ନାରାୟଣ ମହାନ୍ତି ଓ ଦର୍ଶନ ସିଂହ କନେଷ୍ଟବଲମାନଙ୍କର ଜୋବାନବନ୍ଦୀ ହେଲା । ନାରାୟଣ ମହାନ୍ତି କହିଲେ କି ରାତି ଘଂଣ୍ଟାଠାରୁ ଦୁଇଘଣ୍ଟା ପର୍ଯ୍ୟନ୍ତ ତାହାର ପାହାରା ଥିଲା । ମନ୍ଦିର ସିଂହଦ୍ୱାର ଠାରେ ତାହାରି ଓ ଦର୍ଶନ ସିଂହର ପାହାରା ମିଶିଥିଲା । ଏଗାରଘଣ୍ଟା ସମୟରେ ସେ ଦୁହେଁ ସେଠାରେ ଛିଡ଼ାହୋଇ କଥାବାର୍ତ୍ତା କରୁଥିଲେ ଏମନ୍ତ ସମୟରେ ବାପରେ ମାଲେ ବୋଲି ଡକାପାଡ଼ି ବାବାଜୀ ନହବତଖାନା ପାଖରେ ପଡ଼ିଗଲେ ସେମାନେ ଧାଇଁଯାଇ ପଚାରିବାରେ ସେ କହିଲେ 'ମୋତେ ପାଣିଦେଲେ ମୁଁ କହିବି' । ଅଧଘଣ୍ଟାଯାଏ ପାଣି ଖୋଜିଲେ ଦୋକାନ ପଡ଼ ଯାଇଥିବାରୁ ପାଣି ମିଳିଲା ନାହିଁ, ତହୁଁ କନେଷ୍ଟବଲ ଦୁହେଁ ବାବାଜୀର ଦୁଇବେଣୀ ଧରି ଥାନାଆଡ଼କୁ ଚଲାଇ ନେଇଗଲେ ରଥଗଡ଼ାଠାରେ ବାବାଜୀ ପହୁଞ୍ଚିଲା ଓ ପଣ୍ଡିତକୁ ଡାକିବାରେ ସେମାନେ ନଅର ଦ୍ୱାର ବାହାରକୁ ଦେଲେ ପଡ଼ ଦୌଡ଼ିଆସିଲେ । ତହିଁ ଉତ୍ତାରୁ ଜାଲା ବେହେରା ଇତ୍ୟାଦିଙ୍କର କହିବାମତେ ମୁନ୍ସି ହେଡ଼କନେଷ୍ଟବଲ ଓ ସବଇନସ୍ପେକଟର ଆସି ପାଲିଙ୍କିରେ ଘେନିଗଲେ । ନାରାୟଣ ମହାନ୍ତି ସେହିଠାରୁ କହିଲା ଓ ଦର୍ଶନ ସିଂହ ବାବାଜୀକୁ ଥାନାରେ ଛାଡ଼ି

ରଜାଙ୍କର ନଅର ଖବର ଦେବାକୁ ଆସିଲ । ନାରାୟଣ ସିଂହ କୋଟବାଲଙ୍କର ଘରୁ ଝଡ଼ବଦ୍ରେଇ ଗଲ । ସମସ୍ତ ବିଷୟରେ ସେ କେତେ କଥା କହିଲ କିଛି ଭୁଲି ନାହାନ୍ତି ନାହିଁ । ତାହା କହିବା ଅନୁସାରେ ପ୍ରାୟ ଏକଘଣ୍ଟା କାଲ ଏକ ୨ ଘଡ଼ିରେ ବାଉଁଶ ବାଜୁଥିଲ । ପ୍ରଥମେ ବକସୀଖାନା ଘରେ ବାଜି ବାଜିଲ ତହିଁ ଅଧଘଣ୍ଟାରେ ନଅର ଘଡ଼ିରେ ବାର ବାଜି ପୂର୍ଣ୍ଣ କେତେବେଳେ କୋଟଖାନା ଘଡ଼ିରେ ବାଜିବାକୁ । ସୁତରାଂ ବର୍ତ୍ତମାନ ଏହାପର ଆଗପଛ ହୋଇ ବାଜୁଥାଏ । ଘ ୧୦ଣ୍ଟା ସମୟରେ ରଜାଙ୍କ ନଅରଦ୍ୱାର ବାରଣ୍ଡାରେ କଟେଣ୍ଟ ହେଉଥିବାର ଓ ସେପୋଲେ ଜଳ । ବେହେରା ଓଗେର କାହାକୁ ଦେଖି ନଥିବାର ମଧ୍ୟ କହିଲା । ନାରାୟଣ ସିଂହ କହିଲା ବାବାଜୀ ଥରେ ବାପରେ ମାଆଲୋ କହିଥିଲା ଖଥରଡ଼ା ପର୍ଯ୍ୟନ୍ତ ଆଉ କିଛି କହି ନଥିଲା । ମାତ୍ର ଦର୍ଶନ ସିଂହ କହିଲାକି ନହବତଖାନା ଠାରୁ ଖଥରଡ଼ା ପର୍ଯ୍ୟନ୍ତ ଅନୁକ୍ଷଣେ ବାପୋଲୋ ମାଆଲୋ କହୁଥିଲା ।

ତା ୨୯ରିଖରେ ପ୍ରଥମେ ଗିରିଧାରୀ ଲାଲ ଦାସ ହେଡ କନେଷ୍ଟବଲର ଯୋବାନବନ୍ଦୀ ହେଲା । ସେ କହିଲାକି ତା ୨୮ରିଖ ଫେବ୍ରୁଏରୀ ସନ୍ଧ୍ୟା ସମୟରେ ବାବାଜୀଙ୍କୁ ତାହାଙ୍କ ସଙ୍ଗୀ ବୃନ୍ଦଜଣ ଓ ରଜାଙ୍କ ଚପରାଶୀ ଓ ଆଉକେତେ ଲୋକଙ୍କ ସହିତ ଥାନା ଦ୍ୱାରଠାରେ ଦେଖି ଥିଲା । ବାବାଜୀ କଥାବାର୍ତ୍ତା କରି ନଅର ଆଡ଼କୁ ଗଲେ । ସେହି ରାତ୍ର ଘ ୧୨ ୨ ଣ୍ଟା ସମୟରେ ସେ ନିଦ୍ରାରୁ ଉଠି ଥାନା ବାରଣ୍ଡାରେ ବସିଥିଲା । ଜଣେ ବେହେରା ଆସି ବାବାଜୀ କଥା କହିବାରୁ ସେ କନଷ୍ଟେବଲ ସଙ୍ଗେ ଘେନି ଖଥରଡ଼ା ପଡାକୁ ଯାଇ ବାବାଜୀ ଓ ସଙ୍ଗ ଲୋକଙ୍କୁ ଏବଂ କନଷ୍ଟେବଲାଙ୍କୁ ଦେଖିଲା । ଦଆସିଲାଇ ଜାଳି ବାବାଜୀଙ୍କ ହାଲ ଦେଖି କୃପାସିନ୍ଧୁ ସବଇନସ୍ପେକ୍ଟରଙ୍କୁ ଡକାଇ ପଠାଇଲା । କୃପାସିନ୍ଧୁ ଆସି ବାବାଜୀଙ୍କୁ ତଦାରକ କରି ଖଟୁଲି ମାଗାଇ ଆଣାଇ ବାବାଜୀଙ୍କୁ ଥାନାକୁ ଘେନିଗଲ । ସେଠାରେ ବାବାଜୀର ଇଜାହାର ନିଆଗଲ ତହୁଁ ସେ ( ଗିରିଧାରୀ ) ବାବାଜୀଙ୍କୁ ସେହି ପାଲକିରେ ହାସପାତାଳକୁ ନେଇଗଲ । ସଙ୍ଗରେ କୃପାସିନ୍ଧୁ ବାବାଜୀଙ୍କ ସଙ୍ଗୀ ବୃନ୍ଦଜଣ ଏବଂ କନଷ୍ଟେବଲମାନେ ଥିଲେ । କୃପାସିନ୍ଧୁ ଡାକ୍ତରଙ୍କୁ ବସାରୁ ଡାକିଆଣି ବାବାଜୀଙ୍କୁ ତାହାଙ୍କ ତକଲ୍ଲାରେ ରଖିଦେଲେ । କୋଟୱାଲଙ୍କ ଗିରିଧାରୀ କହିଲ କି ପ୍ରଥମ ଇତଲାର ରିପୋର୍ଟ ଆପଣା ହାତରେ ଲେଖିଥିଲ । ଉକ୍ତ ରିପୋର୍ଟ ଆଦ୍ୟନ୍ତ ବାବାଜୀ ସମ୍ମୁଖରେ ବାବାଜୀ ପାଲକୀ ସହିତ ଥାନା ଦ୍ୱାରରେ ଥିବା ସମୟରେ ଲେଖିଥିଲ । ସେ ରିପୋର୍ଟରେ ଜଳ ବେହେରାର ଯେ କଥା ଲେଖାଅଛି ତାହା ସେ ( ଗିରିଧାରୀ ) ଆପଣା ମନରୁ ଲେଖି ଥିଲ ଅର୍ଥାତ ପୂର୍ବେ ଜଳ ବେହେରା ଯାହା କହିଥିଲ ତାହାକୁ ମନେକରି ଲେଖିଥିଲ ଆଉ ବାବାଜୀର କଥା ଯାହା ଲେଖାଅଛି ତାହା ବାବାଜୀ ଇଜାହାର ଦେବା ସମୟରେ

ବାବାଜୀଙ୍କ କଥା ଶୁଣି କୃପାସିନ୍ଧୁ ଯେମନ୍ତ ବତାଇ ଦେଉଥିଲେ ସେହିପରି ସେ ( ଗିରିଧାରୀ ) ଲେଖିଥିଲେ ।

ଏଥିଉତ୍ତାରୁ କୃପାସିନ୍ଧୁ ଦାସ ସବଇନସ୍ପେକଟରର ଯୋବାନବନ୍ଦୀ ହେଲା । ଏ ଗୁହା ଗିରିଧାରୀର ଡାକବିମତେ ବାବାଜୀଙ୍କ ନିକଟକୁ ଆସିଚାଠାରୁ ହାଇପାତାଳରେ ବାବାଜୀଙ୍କୁ ପହଞ୍ଚାଇ କଲା ତାଙ୍କରଙ୍କ ଜିମା କରିବା ପର୍ଯ୍ୟନ୍ତ ସବୁ ବୃତ୍ତାନ୍ତ ଉପରେ ଯେମନ୍ତ ଲେଖାଅଛି ସେହିପରି କହିଲା । ଜେରସବାଲରେ କହିଲି ମୋ ସେ ବାବାଜୀଙ୍କୁ ଘେନି ଥାନାକୁ ଆସି ଇକାହାର ନେବା ସମୟରେ ପ୍ରଥମ ଇତଲାଇ ରିପୋର୍ଟ କେତେଦୂର ଲେଖା ହୋଇଥିବାର ଦେଖିଥିଲି ତହିଁ ତଳକୁ ଗିରିଧାରିଲାଲ ବାବାଜୀଙ୍କ ଇଜାହାର ଲେଖିଲି । ସେ ( କୃପାସିନ୍ଧୁ ) ପଚାରୁ ଥାଏ ବାବାଜୀ ଯାହା ଉତ୍ତର ଦେଉଥାଏ ଗିରିଧାରୀ ତାହାଶୁଣି ଲେଖୁଥାଏ । ସେ କଣ ଗିରିଧାରୀକୁ ବତାଇ ଦେଇନାହିଁ । ଯେଉଁଦିନ ଡାକ୍ତରଖାନାରେ ଆସାମୀମାନଙ୍କୁ ବାବାଜୀ ମାଜିଷ୍ଟ୍ରେଟଙ୍କୁ ଚହ୍ନାଇଦେଲେ ସେଦିନ ସକାଳ ବେଳେ ସେ ଜ ୧୫ଣ ରଜାଙ୍କର ଗୃହର ସେଠାରୁ ଘେନି ଯାଇଥିଲା । ସେମାନଙ୍କୁ ବାବାଜୀଙ୍କ ସମ୍ମୁଖରେ ଛିଡ଼ାକରି ଦେବାରେ ବାବାଜୀ ତହିଁରୁ ଗୃହଜଣଙ୍କୁ ଚହ୍ନାଇ ବାକି ଜ ୧୧ଣ ମଧ୍ୟରେ କେହି ଅପରାଧୀ ନଥିବାରୁ ସେମାନେ ଫେରିଗଲେ । ମାଜିଷ୍ଟ୍ରେଟ ସାହେବ ଯୋବାନ-ବନ୍ଦୀ ଫରମରେ କମ୍ବା ସାଦା କାଗଜରେ ବାବାଜୀର ଇଜାହାର ଲେଖିଥିଲେ ତାହା ସେ ଠିକ କରି କହି ପାରିଲା ନାହିଁ ।

ଏଥିଉତ୍ତାରୁ ରାମରାଓ ଇନସ୍ପେକ୍ଟରର ଯୋବାନବନ୍ଦୀ ହେଲା ଏ ଗୁହା ନଅରର ନକଶା ଦେଖି ଯେଉଁସ୍ଥାନରେ ଯେସମସ୍ତ ଘଟନା ହେବାର ବାବାଜୀ ଚହ୍ନାଇ ଦେଇଥିଲେ ସେସବୁ ଅଦାଲତରେ ଚହ୍ନାଇ ଦେଲା ଓ ଆସାମୀ ଚହ୍ନୋଟ ହେବାଦିନ ମାଜିଷ୍ଟ୍ରେଟଙ୍କ ସାକ୍ଷାତକୁ ଆଠଜଣ ହିନ୍ଦୁ ଓ ଜ ୭ଣ ହାଡ଼ି ଘେନି ଯାଇ-ଥିବା ଓ ତହିଁ ମଧ୍ୟରୁ ଜଣକୁ ବାବାଜୀ ଚିହ୍ନାଇ ଦେଇଥିବାର କହିଲା । ଜେର-ସବାଲରେ କହିଲା କି ବାବାଜୀ ଚହ୍ନାଇଦେବା ସମୟରେ ହଲଫ କରିଥିଲେ କି ନାହିଁ ସେ କଥା ତାହାକୁ ଜଣାନାହିଁ । ଯେଉଁ ୨ ଆସାମୀଙ୍କୁ ବାବାଜୀ ଚହ୍ନାଇ ଦେଇଥିଲେ ସେମାନଙ୍କୁ ଅଦାଲତରେ ଉପସ୍ଥିତ ଥିବା ଆସାମୀମାନଙ୍କ ମଧ୍ୟରୁ ବାଛି ଚହ୍ନାଇ ଦେଲା । ଏ ଗୁହା ଉପରେ ନକ୍ସା ଏବଂ ଆସାମୀଙ୍କ ଚହ୍ନୋଟ ବିଷୟରେ ଅନେକ ଜେରି ସବାଲ ହୋଇ ଥିଲା ମାତ୍ର କିଛି କୌତୁକ ଜନକ କଥା ବାହାରି ନଥିଲା

ଏ ଉତ୍ତାରୁ ବିଦ୍ୟାଧର ଜୟସିଂହର ଯୋବାନବନ୍ଦୀ ହେଲା । ଏ ଗୁହା କେବଳ କଟାସିଆ ଗଳରେ ଖିଡ଼କିଦ୍ୱାର ସାମନାରେ ଚଣ୍ଡୀହାର ମାଳ ବନ୍ଧା

ଓ ଧୂଳିମିଶ୍ରିତ ହୋଇ ପଡ଼ିଥିବାର ଦେଖି ଭଲଲୋକଙ୍କ ସାକ୍ଷାତରେ ତାହାକୁ ଉଠାଇ ଆଣି ଥାନାରେ ଦେବାର କହିଲୁ ଓ ସେହି ମାଲ ଅଦାଲତରେ ଦେଖି ଚହ୍ନିଲୁ । ଜେଗ୍ରବାଲରେ ଏ ଗୁହା କହିଲେକ ଉକ୍ତ ରାତ୍ରି ସକାଳେ ନାରାୟଣ ବାବନପଣ୍ଡାଙ୍କୁ ନଅର ଭିତରୁ ବାହାର ନିକଟରେ ଥିବା ଚୋହାଏ ଦୋକାନ ଭିତରକୁ ଯିବାର ଦେଖିଥିଲୁ କିନ୍ତୁ ମାର୍କଣ୍ଡେୟଙ୍କ କଚେରୀରେ ଯୋବାନବନ୍ଦୀ ଦେବାବେଳେ ଏକଥା କହିନଥିଲୁ ଏବଂ ନାରାୟଣ ବାବନପଣ୍ଡାଙ୍କୁ କଚେରୀରେ ଦେଖିଥିଲୁ କି ନାହିଁ ମନେ ନାହିଁ ।

ଏହାପରେ ଶେଷ କାଟେ.ରେ ବାବୁ ମଣିରାମ ଘୋଷାଲ ନାଇବ ଡାକ୍ତରଙ୍କର ଜୋବାନବନ୍ଦୀ ହେଲୁ । ଏ ଡାକ୍ତର କହିଲେ ଯେ ଶିବଦାସ ବାବାଜୀ ଦେହରେ ମାଡର ଚହ୍ନ ଥିଲୁ । ଦେହ ସ୍ଥାନ ୨ ରେ ଚୋଟ ପାଇଥିଲୁ ଏବଂ ଗଣ୍ଠିରୁ ରକ୍ତ ଓ ପୋଲ ବାହାରୁଥିଲୁ । ନାଡ଼ୀ ଦୁର୍ବଳ ଥିଲୁ ଓ ବଡ ଦୁଃଖ ପାଉଥିଲୁ । ସେ ( ଡାକ୍ତର ) ତିନି ଗୃହଥର ଔଷଧ ଦେବାରେ ସକାଳବେଳାକୁ କିଛି ଭଲ ହୋଇ-ଥିଲୁ । ପଣ୍ଡିତ ଛଡ଼ା ଆଉ ଦୁଇଜଣ ସନ୍ନ୍ୟାସୀ ବାବାଜୀଙ୍କ ସଙ୍ଗରେ ଡାକ୍ତରଖାନାକୁ ଆସି ସେବା କରୁଥିଲେ । ଏହିଉତ୍ତାରୁ ପ୍ରତିଦିନ ଅନେକ ଲୋକ ମୋପବଳକୁ ବାବାଜୀଙ୍କ ନିକଟକୁ ଯିବା ଆସିବା କରୁଥିଲେ । ବାବାଜୀଙ୍କୁ ଡାକ୍ତର ପଚାରିବାରେ ସେ ସେହି-ରାତ୍ରରେ ସଂକ୍ଷେପରେ କହିଥିଲୁ ଯେ ରାଜା ତାହାଙ୍କୁ ଏପରି କଷ୍ଟ ଦେଇଅଛନ୍ତି ।

ବେଳ ନ ଅଣ୍ଟିବାରୁ ଏଦିନ ଏ ମୁହାଁ ଉପରେ ଜେରାସବାଲ ହୋଇ ପାରିଲୁ ନାହିଁ ।

## ( ୧୩ଶ ଭାଗ, ୭ । ୪ । ୧୮୭୮, ସଂଖ୍ୟା ୧୪ )

୪୭୩ । ପୁରୀ ମହାରାଜାଙ୍କ ମୋକଦ୍ଦମା ।

ମାର୍ଚ୍ଚ ତାରିଖରେ ଶନିବାର ନେଟିବ ଡାକ୍ତର ମଣିରାମ ବାବୁଙ୍କ ଉପରେ ଜେରାସବାଲ ହେଲୁ । ତହିଁରେ ସେ ପ୍ରକାଶ କଲେ ଯେ ବାବାଜୀ ହାସ-ପାତାଳକୁ ଆସିବାର ଏକଘଣ୍ଟା ମଧ୍ୟରେ ସବୁ ପୋଲ ବାହାରିଗଲା ଓ ତାହାଙ୍କୁ ଔଷଧ ଦେବାରେ ଆରଦିନ ସକାଳକୁ ତାହାର ନାଡ଼ି ଭଲ ଏବଂ ଶରୀର ଅନେକ ଭୁଲିଗଲା ହୋଇଥିଲା । ଦୁଇଦିନ ପୋଷାକ ବନ୍ଦ ହୋଇଥିଲା ତହିଁ ଉତ୍ତାରୁ ଆଉ ପାଇଖାନା ପୋଲ ବାହାରିଲା ଓ ଜୁଲାପ ଦେବାରେ ପେଟ ପରିଷ୍କାର ହୋଇଗଲା । ଦୁଇଚାରି ପ୍ରତିଦିନ ଦୁଇ ତିନିଥର ଲେଖାଏଁ ହେଉଥିଲା, ତହିଁରେ କିଛି କଷ୍ଟ ନଥିଲା, ପୋଡ଼ା ଘା ସବୁ ଭଲ ହେଉଥିଲା ପଛକୁ ମନ୍ଦ ହେଲା ଓ ଦୁଇ ଏକଦିନ ଛଡ଼ା ଜ୍ୱର ହେଉ-ଥିଲା । ସେ ଜ୍ୱର ଏ ଦେଶର ସାଧାରଣ ଜ୍ୱର ପ୍ରାୟ ଥିଲା । ପଛକୁ ଧନୁଷ୍ଟଙ୍କାର

ବାତ ଜାତ ହେବାରୁ ତହିଁର ଦୁଇଦିନ ମଧ୍ୟରେ ତାହାଙ୍କ ମୃତ୍ୟୁ ହେଲା । ଏ ବାତ ସାମାନ୍ୟ କାରଣରୁ ହୁଅଇ । ଏ ସ୍ଥଳେ ଘୋଡ଼ା ଘା ଦ୍ୱାରା ଶରୀର ଦୁର୍ବଳ ହୋଇ-ଥିବାରୁ ଏ ବାତ ଜାତ ହେବାର ଜଣାଯାଏ । ମୃତ ବ୍ୟକ୍ତିର ବୟସ ଅଧିକ ଥିଲା । ତାହାର କୋଷ ବୃଦ୍ଧି ହୋଇଥିଲା ଏବଂ ମୂତ୍ରାଶୟ ମଧ୍ୟ ବିକୃତ ଅବସ୍ଥାକୁ ପ୍ରାପ୍ତ ହୋଇଥିଲା । ସୁତରାଂ ମୂତ୍ରତ୍ୟାଗ କାର୍ଯ୍ୟ କରିବାକୁ ଅକ୍ଷମ ହୋଇଥିଲା । ମଳଦ୍ୱାରରେ ଘୋଲ ପୁରାଇ ଦେବା ଓ ସେହି ଘୋଳର ଉପରିଭାଗ କ୍ଷତଶଯ୍ୟା ଥିବାରୁ ତାହା ଛାଡ଼ିବାକୁ ଯିବାବେଳେ ମଳଦ୍ୱାର ବାଟେ ଲିଙ୍ଗ ଯିବାରୁ ପୀଡ଼ା ଅଧିକ ହୋଇଥିଲା । ମଳଦ୍ୱାର ମଳକଣ୍ଟକ ବେଗରେ କଟା ଯିବାର ବିଧାନ ଅଛି । ତହିଁରେ ଅନେକ ଭୂଲ କଟାଯାଏ କିନ୍ତୁ ସେପ୍ରକାର କାଟି ଦେବା ସାଙ୍ଘାତିକ ନୁହଇ । ଯେତେ ଘୋଳ ବାବାଜୀ ପେଟରୁ ବାହାରିଥିଲା ତାହା ଅନାୟାସରେ ଏକଲେଖକର ପେଟରେ ରହିପାରେ ତହିଁରେ ପ୍ରାଣ ସଂଶୟ ହେବନାହିଁ । ଘୋଳରେ ତେଲ ଅଥବା ଚର୍ବି ଲଗାଇ ଦେଲେ ସହଜରେ ମଳଦ୍ୱାର ବାଟେ ଗଳିଯିବ ତହିଁରେ ପୀଡ଼ା ହେବନାହିଁ । ଘୋଳ ଯେତେବେଳେ ବାବାଜୀ ଦେହରୁ ବାହାରୁଥିଲା ସେତେବେଳେ ତାହାର ପେଟରେ ମଳବନ୍ଧ ହେଲେ ସେ ଯେମନ୍ତ କୁନ୍ଥାଉଥାଏ ସେହିପରି କୁନ୍ଥାଉ ଥିଲା । ବାବାଜୀ ପ୍ରତିଦିନ ଦୁଧ ଓ ସୁଜି ସାଗୁ ଖାଉଥିଲା । ବାବାଜୀଙ୍କ ମୃତ୍ୟୁ ଉତ୍ତାରୁ ତାହାଙ୍କ ଦେହ ଡାକ୍ତରଖାନାରେ ଚିର୍ ହୋଇ ତଦାରକ ହୋଇଥିଲା । ତଦାରକ ସମୟରେ ମହନ୍ତ ନାରାୟଣ ଦାସ ଉପସ୍ଥିତଥିଲେ । ବାବୁ ତାରାକାନ୍ତ ବିଦ୍ୟାସାଗର ଆସି-ନଥିଲେ । ମହନ୍ତ ନାରାୟଣ ଦାସ ମୁର୍ଦ୍ଦାର ଚିର୍ହେବା ସ୍ଥାନରେ ବସିବା ଓ ତାହା ଦେଖିବାକୁ ଘୃଣା କରନ୍ତି ନାହିଁ । ତାହାଙ୍କର ବିଶେଷ କୁସଂସ୍କାର ନାହିଁ । ସେ ଚୋଗା ଜୋତା ପିନ୍ଧନ୍ତି, ଇତ୍ୟାଦି ।

ଏଥି ଉତ୍ତାରୁ ପୁରୀର ସିଭିଲ ସର୍ଜନ ଡାକ୍ତର ଡି: ଏନ୍ ଗୁପ୍ତଙ୍କର ଜୋବାନବନ୍ଦୀ ହେଲା । ଗୁପ୍ତ ମହାଶୟ ମୃତବ୍ୟକ୍ତିର ଅବସ୍ଥା ଯେରୂପ ଦେଖିଥିଲେ ତାହା ଲେଖି ପଠାଇଥିଲେ ଓ ମୁର୍ଦ୍ଦାର ତଦାରକ ରିପୋର୍ଟ ଯାହା କରିଥିଲେ ସେ ସମସ୍ତ ତସଦିକ କଲେ ଓ କହିଲେ କି ବାବାଜୀ ଯେପରି ଅବସ୍ଥାରେ ଆସିଥିଲା ତହିଁରୁ ବଞ୍ଚିବା ଅପେକ୍ଷା ମରିବାର ସମ୍ଭାବନା ଅଧିକ ଜଣା ପଡ଼ିଥିଲା । ମୃତ୍ୟୁର କାରଣ ଧନୁ-ଷ୍ଟଙ୍କାର ବାତ ନିର୍ଣ୍ଣୟ କରିଥିଲେ । ତହିଁରେ ତାହାଙ୍କର ନିଶ୍ୱାସ ବନ୍ଦହୋଇ ପ୍ରାଣ ବାହାର ଯାଇଥିଲା । ଜେରା ସଓ୍ୱାଲରେ କହିଲେ କି ଏକ ଏକ ପ୍ରକାର ପୀଡ଼ା ସ୍ୱତନ୍ତ୍ର ରୂପେ ଅତ୍ୟନ୍ତ ଗୁରୁତର ନଥିଲା କିନ୍ତୁ ସବୁ ମିଶି ସାଙ୍ଘାତିକ ହୋଇଥିଲା । ଯେତେ ପ୍ରକାର ଯନ୍ତ୍ରଣା ବାବାଜୀକୁ ଦିଆ ଯାଇଥିଲା ତହିଁ ମଧ୍ୟରେ ଘୋଡ଼ା ଘା ଅତ୍ୟନ୍ତ ଗୁରୁତର ଥିଲା । ଏହିପରି ଆଉ କେତେ କହିଲେ ସମସ୍ତ ମନେ ପଡ଼ୁନାହିଁ ।

ଏହିଦିନ ଅପରାହ୍ନ କାଳରେ ଆସାମି ମାନଙ୍କଠାରୁ ଜବାବ ନିଆ-
ଗଲା ଅର୍ଥାତ୍ ସେମାନେ ମାଜିଷ୍ଟ୍ରେଟ ସାହେବଙ୍କ ନିକଟରେ ଯେଉଁ ଜବାବ ଦେଇଥିଲେ
ତାହା ସେମାନଙ୍କୁ ଶୁଣାଇ ଦିଆଗଲା ଓ କିଛି ଜବାବ ଦେବାକୁ ଅଛି ତାହା ଜିଜ୍ଞାସା କରା-
ଗଲା । ଏହି ପ୍ରକାରରେ ମୃଦୋଇ ପକ୍ଷରେ ମୋକଦ୍ଦମା ଶେଷ ହେଲା ଓ ଏଦିନ କୋର୍ଟ
ହୋଇ ଆସିବାରୁ ଏହିଠାରେ କାର୍ଯ୍ୟ ସ୍ଥଗିତ ହେଲା ।

ସୋମବାର ଦିନ ପ୍ରଥମ କଚେରୀରେ ମାନ୍ୟବର ଇବାନସ୍ ସାହେବ
ବାରିଷ୍ଟର ଆସାମିଙ୍କ ପକ୍ଷରୁ ବକ୍ତୃତା କଲେ । ଏହାଙ୍କ ବକ୍ତୃତା ଶୁଣିବା ସକାଶେ
ଅନେକ ଭଦ୍ର ଲୋକ କଚେରୀକୁ ଆସିଥିଲେ । ଅନ୍ୟାନ୍ୟ ଇଂରାଜ ଭଦ୍ର ଲୋକଙ୍କ
ମଧ୍ୟରେ କଲେକ୍ଟର ବେଡ଼ନ ସାହେବ ଓ ଏସେକ୍ଟ ଡିଲେଟ ସାହେବ ଉପସ୍ଥିତ ଥିଲେ
ବକ୍ତୃତାଟି ଅତ୍ୟନ୍ତ ଦୀର୍ଘ ଓ ତହିଁରେ ଘଣ୍ଟା କାଳ ଲାଗିଥିଲା । ସାହେବ ଯେଉଁ
ରୀତରେ ବକ୍ତୃତା କଲେ ତାହା ଶୁଣିବାକୁ ଅତ୍ୟନ୍ତ ପ୍ରୀତିକର ହୋଇଥିଲା ଓ ଅନେକ
ବୁଦ୍ଧି କୌଶଳ ଓ ଉତ୍କୃଷ୍ଟ ଯୁକ୍ତିମାନ ସେ ଦେଖାଇଥିଲେ । ଏତେ ଦୀର୍ଘ ବକ୍ତୃତାର
ସଂକ୍ଷେପ ବିବରଣ ଦେବା ଆମ୍ଭମାନଙ୍କ ପକ୍ଷରେ ଦୁଃସାଧ୍ୟ ବ୍ୟାପାର ଅଟଇ ଓ ଦ୍ୱିତୀୟ
କଷ୍ଟ ଯେ ବକ୍ତୃତାଟି ଲେଖିନେବାର କୌଣସି ଉପାୟ ହୋଇ ନଥିଲା, ତାହା ହୋଇ-
ଥିଲେ ତାହାଙ୍କର ସମସ୍ତ କଥା ଆଦ୍ୟପ୍ରାନ୍ତ ଲୋକେ ପାଠକରି ମନକୁ ତୃପ୍ତ କରନ୍ତେ ।
ମହାରାଜା କେମନ୍ତ ମହତ୍ ବଂଶର ଲୋକ, ଓଡ଼ିଶାରେ ଏହାଙ୍କର କିପରି ମର୍ଯ୍ୟାଦା
ଏବଂ ଏହାଙ୍କର ପୂର୍ବ ଚରିତ୍ର କି ପ୍ରକାର ଥିଲା ଏ ସମସ୍ତ ପ୍ରଥମେ ବର୍ଣ୍ଣନା କରି ହଣ୍ଟର
ସାହେବଙ୍କ ଓଡ଼ିଶା ବିଷୟକ ପୁସ୍ତକରୁ ଏକଭାଗ ପାଠକରି ସେ ସବୁ ସମର୍ଥିତ କଲେ ।
ହିନ୍ଦୁଧର୍ମର ନିୟମମାନ ରକ୍ଷା କରିବା ପକ୍ଷରେ ମହାରାଜା କେମନ୍ତ ଦୃଢ଼ରୂପେ ଯତ୍ନବାନ
ହିନ୍ଦୁମାନଙ୍କ ମଧ୍ୟରେ ତାହାଙ୍କର କେମନ୍ତ ସମ୍ମାନ ଅଛି ତାହା ଅଦାଲତଙ୍କୁ ଜଣା-
ଇଲେ, ତହିଁ ଉତ୍ତାରୁ ମୋକଦ୍ଦମାର ବିବରଣ ମଧ୍ୟରେ ପ୍ରବେଶ କରି ପ୍ରଥମେ ମୃଦୋଇ
ପକ୍ଷରୁ ଆଗତ ହୋଇଥିବା ସାକ୍ଷାତ୍ ପ୍ରମାଣର ଆଲୋଚନା କଲେ । ସାକ୍ଷାତ୍ ପ୍ରମାଣ
କେବଳ ମୃତ ଶିବୁଦାସ ବାବାଜୀର ଯୋବାନବନ୍ଦିମାନ ଅଟଇ । ଯେ ତିନିଥର ମାଜି-
ଷ୍ଟ୍ରେଟ ସାହେବଙ୍କଠାରେ ଯୋବାନବନ୍ଦୀ ଦେଇଥିଲା । ଏହିସବୁ ଯୋବାନବନ୍ଦିରେ
କେତେ ୨ ଅମେଳ ଅଛି ସେ ସମସ୍ତକୁ ଲକ୍ଷ କରି କହିଲେ ଯେ ଶିବୁଦାସ ପ୍ରଥମେ
ଯାହା କହିଥିଲା ପଛକୁ ତହିଁର ବିପରୀତ କେତେକଥା କହିଅଛି ଓ କେତେ କଥା
ଫେର ବଦଳ କରିଅଛି ଯେମନ୍ତ କି ମୋକଦ୍ଦମାକୁ କ୍ରମଶଃ ସଜାଡ଼ି କଠିନ କରି-
ଆଣିବା ତାହାର ଅଭିପ୍ରାୟ ଥିଲା । ମୃତ୍ୟୁ କାଳରେ ତାହାଠାରୁ ଯେଉଁ ଯୋବାନବନ୍ଦୀ
ନିଆଯାଇଥିଲା ତହିଁରେ କେବଳ ପୂର୍ବର ଯୋବାନବନ୍ଦିକୁ ସଂଶୋଧନ କରିବା ଭଳି
ଆଉ କିଛି କହିନାହିଁ । ଏତେକ ସକାଶେ ଯୋବାନବନ୍ଦୀ ଦେବାର ଆବଶ୍ୟକ ନଥିଲା ।

ସେ ପ୍ରଥମେ କହିଥିଲା ରଜା ନିଜେ ତାହାକୁ ଲଙ୍ଗଳା କରି ମାଡ଼ ମାରିଲେ ଓ ତାହା ମୁହଁରେ ମୂତି ଦେଲେ, ତହିଁ ଉତ୍ତାରୁ କହିଲା ହାଡ଼ିମାନେ ତାହାକୁ ଲଙ୍ଗଳା କଲେ ଓ ଜଣେ ହାଡ଼ି ତାହା ମୁହଁରେ ବାଡ଼ା ଦେଲା । ରଜା ପାଖରେ ଛିଡ଼ା ହୋଇ ଥାନ୍ତି ଓ ତାହାଙ୍କ ଲୋକମାନେ ମାରପିଟ କରୁଥାନ୍ତି । ପ୍ରଥମେ କହିଥିଲା ଜା ୮ । ୧୦ଣ ଦଣ୍ଡେ କହିଲା ଜା୧୦ । ୧୨ଣ ତାହାକୁ ଧରି ପୀଡ଼ା ଦେଲେ । ସମସ୍ତ ଆସାମୀମାନଙ୍କୁ ଧରାଇଦେବା ସକାଶେ ଏପରି କହିଥିଲା । ସ୍ୱୟଂ ରଜା ହାଡ଼ିଙ୍କ ସଙ୍ଗେ ମିଶି ଏ ବ୍ୟକ୍ତିକୁ ପୀଡ଼ା ଦେବାର ଅତ୍ୟନ୍ତ ଅସମ୍ଭବ ବୋଲି ସେ ଅନେକ ଯୁକ୍ତି ଦ୍ୱାରା ଦେଖାଇଲେ । ରଜା ହିନ୍ଦୁଧର୍ମର ଶ୍ରେଷ୍ଠ ଓ ବୈରାଗୀ ମଧ୍ୟ ହିନ୍ଦୁ ଧର୍ମାନୁସାରେ ମାନୀମାନ୍ ବ୍ୟକ୍ତି ତାହାଙ୍କୁ ରଜା ପୀଡ଼ା ଦେବାର ଆଦୌ ଅସମ୍ଭବ ପୁଣି ଏମନ୍ତ କଠିନ ହିନ୍ଦୁ ହାଡ଼ି ସଙ୍ଗରେ ମିଶି ମାରପିଟ କରିବା ଆହୁରି ଅସମ୍ଭବ, ହାଡ଼ି କମ୍ବା ବାଡ଼ା ଅଗଣାକୁ ଆସିଲେ ତାହା ଅପବିତ୍ର ହେବ । ଘର ଭିତରକୁ ହାଡ଼ି ଓ ବାଡ଼ା ନେଇ ଏପରି ବ୍ୟବହାର କରିବା ଅତ୍ୟନ୍ତ ଘୃଣାର ବିଷୟ ଓ ତାହା କଦାଚ ସମ୍ଭବ ହୋଇନପାରେ । ଟଙ୍କୋଟ ବିଷୟରେ ବାରିଷ୍ଟର ସାହେବ ଅନେକ ସୁନ୍ଦର ଯୁକ୍ତିମାନ ଦେଖାଇଲେ । ସେ କହିଲେ କି ଏକେ ଅନ୍ଧକାର ରାତ୍ରି, କେବଳ ଗୋଟାଏ ମଶାଲର ଆଲୁଅ ଥିଲା । ତହିଁରେ ସେ ବ୍ୟକ୍ତିକୁ ଯେତେପିବା ମାତ୍ରକେ ମାରପିଟ ହେଲା ଓ ଯେଉଁ ଲୋକମାନେ ମାରପିଟ କଲେ ଓ କଦର୍ଯ୍ୟ ରୂପେ ତାହାକୁ ପୀଡ଼ା ଦେଲେ ସେ ଲୋକମାନଙ୍କୁ ପୂର୍ବରୁ ସେ ଚିହ୍ନି ନଥିଲା । ହଠାତ୍ ବିପଦ ପଡ଼ିଲା, ଏ ଅବସ୍ଥାରେ ସେ ଯେ ସମସ୍ତ ଅପରାଧୀମାନଙ୍କୁ ନିଶ୍ଚୟ କରି ଚିହ୍ନିଥିବ ଏହା ବିଶ୍ୱାସ କରିବା ବଡ଼ କଠିନ ଅଟଇ । ସାଧାରଣ ଅବସ୍ଥା-ରେ ତାହା ହୋଇନପାରେ । ସେ କେବଳ ସମସ୍ତଙ୍କୁ ଚିହ୍ନିଅଛି ଏମନ୍ତ ନୁହେଁ, କେଉଁ ବ୍ୟକ୍ତି କି କାର୍ଯ୍ୟ କରିଅଛି ତାହା ସୁଦ୍ଧା ନିଶ୍ଚୟ କରି କହିଅଛି । ଏକବ୍ୟକ୍ତି ପିଠିରେ ପ୍ରହାରକଲା ତାହାକୁ କପରି ଦେଖିଲା ଯେ ଚିହ୍ନିବାକୁ ସମର୍ଥ ହେଲା । ଯେଉଁ ବ୍ୟକ୍ତି ସୋଲ ପୁରାଇଲା ତାହାକୁ ମଧ୍ୟ ଚିହ୍ନିଅଛି କିନ୍ତୁ ଯେ ସ୍ଥଳେ ଡାକ୍ତର ପ୍ରମାଣ ଦେଇ ଅଛନ୍ତି କି ତାହାର ଅଣ୍ଡକୋଷ ନଡ଼ିଆ ପରି ବଡ଼ ଥିଲା ସେସ୍ଥଳେ ସମ୍ଭବ ହୁଅଇ ଯେ ତାହାକୁ ଚିତକରି ପକାଇଲେ ଅଣ୍ଡକୋଷ ମଳଦ୍ୱାରକୁ ରୋଧ କରିବ ସୁତରାଂ ମୁହଁ ମାଡ଼ି ନପକାଇଲେ ସୋଲ ପୁରାଇବାର ସୁବିଧା ନଥିଲା । ତେବେ ଯେଉଁ ବ୍ୟକ୍ତି ସୋଲ ପୁରାଇଥିଲା ତାହାକୁ ସେ କପରି ଚିହ୍ନିଲା ? ପୁଲିସ ଯେ ସମସ୍ତ ଲୋକଙ୍କୁ ହାସ-ପାତାଳକୁ ନେଇଥିଲେ ତାହାଙ୍କ ମଧ୍ୟରୁ ସେ ଜଣେ ଆସାମିକୁ ବାଛିଦେଲା । କପରି ତାହାକୁ ପୀଡ଼ା ସମୟରେ ମନେ ରଖିଥିଲା ଓ କି ଲକ୍ଷଣ ବା ଭାବ ଦେଖି ତାହାକୁ ଚିହ୍ନିଲା ତାହା କିଛି ମୃତବ୍ୟକ୍ତି କହିନାହିଁ । କେବଳ ହଁ କିନା ଏତିକି କହିଥିଲା ଅଥବା ସେହି ବୁଢ଼ା ଓ ସେହି ହୁଲିଆ କହିଥିଲା ଇନସ୍ପେକ୍ଟରଙ୍କ ଜୋବାନବନ୍ଦିରୁ ଏତିକି ଜଣାଯାଏ । ଏପରି ଟଙ୍କୋଟକୁ ସନ୍ତୋଷଜନକ ବୋଲି କହିହୋଇ ନପାରେ ଓ ଏଥି ଉପରେ

ନିର୍ଭର କରି ଦର୍ମ୍ମକରିବା ବଡ଼ କଠିନ ବ୍ୟାପାର । ମୃତ୍ୟୁକାଳର ଯୋବାନବନ୍ଦୀରୁ ମାତବର କରି ନେବା ମଧ୍ୟ ହବୁ ସମ୍ବନ୍ଧରେ ନିରାପଦ ହୁଅଇ । ମୃତ୍ୟୁ କାଳରେ ପରକାଳ ଭୟରେ ଲୋକର ବୁଦ୍ଧି ନହରଇ ଏଣୁ ସତ୍ୟ ବୋଲିବାର ଆଶା ହୁଅଇ । କିନ୍ତୁ ବର୍ତ୍ତମାନ ସମୟରେ ଏକଥା ଅନେକ ଲୋକ ବିଶ୍ୱାସ କରନ୍ତି ନାହିଁ ଓ ପଞ୍ଚାବର ଏକ ମୋକଦ୍ଦମାରେ ଦେଖାଅଛି ଯେ ଏକଜଣ ମରିବାବେଳେ ଦାଉ ସାଧିବା ଇଚ୍ଛାରେ ଆପଣା ଶତ୍ରୁମାନଙ୍କୁ ଦୋଷରେ ପକାଇଗଲା । ଏହି ସମସ୍ତ କାରଣରୁ ସାକ୍ଷାତ ପ୍ରମାଣରୁ ବିଶ୍ୱାସ ଯୋଗ୍ୟ ହେବାର ବୋଧ ହେବା ଅସମ୍ଭବ ଓ ଏତଦ୍ଭିନ୍ନ ସାକ୍ଷାତ ପ୍ରମାଣ ଆଉ କିଛି ନାହିଁ । ଅନ୍ୟ ପ୍ରମାଣ ମଧ୍ୟରେ ଗୋପୀ ସିଂହ ଓ ବାବାଜୀଙ୍କର ଗୁରୁଜଣ ଭକ୍ତ । ଏମାନଙ୍କ ସମ୍ବନ୍ଧରେ ବାରିଷ୍ଟର କହିଲେ ଯେ ଗୋପୀ ସିଂହ ପ୍ରକୃତରେ ପ୍ରେରିତ ହୋଇଥିଲେ ସୁନାର ତୋଡ଼ା ବାବାଜୀଙ୍କ ନିକଟରୁ କାହିଁକି ଗଲା ଓ ସେ କି ରୂପେ ଭଗବାନପୁର ମଠ ବାବାଜୀଙ୍କୁ ଡାକିବାକୁ କହିଲେ ଓ କିରୂପେ ଅବା ତାହା ଜାଣିଲେ କିଛି ପ୍ରକାଶ ପାଉନାହିଁ । ଯେବେ ପ୍ରକୃତରେ ଗୋପୀ ସିଂହ ପାଇଥାଏ ତେବେ ସୁନାର ତୋଡ଼ାକୁ ନିବାର ପ୍ରୟୋଜନ ନଥିଲା ଏବଂ ଯେଉଁ ବ୍ୟକ୍ତି ଏକ ନଗର ମଧ୍ୟରେ ପୁଲିସ ଥାନା ନିକଟରେ କାହାରିକୁ ପୀଡ଼ା ଦେବାକୁ ଇଚ୍ଛା କରଇ ସେ ବ୍ୟକ୍ତି ପ୍ରକାଶ୍ୟ ରୂପେ ନିନ୍ଦିତ ହୁଦାଧାରୀ ଚପରାସିକୁ ମଠରୁ ତାହାକୁ ଡକାଇ ଆଣିବା ଏବଂ ତାହା ସଙ୍ଗେ ବହୁଜଣ ଲୋକ ଆସିବାକୁ ଦେବା ଏବଂ ସେମାନଙ୍କୁ ପିଣ୍ଡାରେ ବସାଇ ରଖିବା ଅସମ୍ଭବ । ଅଳ୍ପ ବୁଦ୍ଧିର ଲୋକ ସୁଦ୍ଧା ଏମନ୍ତ କରିବ ନାହିଁ । ଗୁଣ୍ଡା ଲଗାଇ ଅପରାଧ କରିବାକୁ କିଏ ନିବ ଏବଂ ବାବାଜୀ ମଧ୍ୟ କାହିଁକି ଗୁଣ୍ଡା ସଙ୍ଗେ କରି ଆଣିବେ ? ଏ ଗୁଣ୍ଡାମାନେ ଯେବେ ଆସିଥିଲେ ତେବେ ସିଂହଦ୍ୱାର ପାଖର କଦାଚ ନଥିଲେ । ସେଠାରେ ଥିଲେ କଚେରୀ ହେବାର ଦେଖିଥାନ୍ତେ ଓ କଚେରୀ ଯେ ବାସ୍ତବରେ ହୋଇଥିଲା ତାହା ସେହି ଇଲକାର କନଷ୍ଟେବଲ କହିଅଛି । ପୁଲିସ କର୍ମଚାରୀ ଯେଉଁମାନେ, ଏ ମୋକଦ୍ଦମାକୁ ଗଢ଼ିଅଛନ୍ତି, ତାହାଙ୍କ ପ୍ରମାଣ ଉପରେ ନିର୍ଭର କରିପାରି ନପାରେ । ପୁଲିସ ମୋକଦ୍ଦମା ଗଢ଼ିବାରେ ଯେମନ୍ତ ତତ୍ପର ତାହା କାହାରିକୁ ଅବିଦିତ ନାହିଁ, ସ୍ୱୟଂ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ଗତ ବର୍ଷର ବିଜ୍ଞାପନୀ ଦୃଷ୍ଟିରେ ସେମାନଙ୍କୁ [illegible] ନିନ୍ଦା କରିଅଛନ୍ତି । ପୁଲିସର ଶକ୍ତି ମୋକଦ୍ଦମାର ପ୍ରକୃତ ଅବସ୍ଥା ବାହାର କରିବା ଅପେକ୍ଷା ମୋକଦ୍ଦମା ଗଢ଼ିବା ବିଷୟରେ ଅଧିକ ଅଟଇ । ଦୁଇଜଣ କନଷ୍ଟେବଲ ଓ ହେଡ଼ କନଷ୍ଟେବଲ ଓ ସବ ଇନସ୍ପେକ୍ଟର ମାନେ ଯେପ୍ରକାର ଅସଙ୍ଗତ ଯୋବାନବନ୍ଦୀ ଦେଇଅଛନ୍ତି ତହିଁରୁ ପୁଲିସର କାର୍ଯ୍ୟ ପ୍ରକାଶ ପାଉଅଛି । ପଛେ ପୁଲିସ ଦ୍ୱାରା କିଛି ବ୍ୟତିକ୍ରମ ହୁଅଇ ଏଥିପାଇଁ ଜଣେ ଦଫୋଠୀ ତାହାଙ୍କ ସଙ୍ଗରେ ଆସିଅଛନ୍ତି ନୋହିଲେ ଦଫୋଠୀ ଆସିବାର ଅନ୍ୟ କିଛି ପ୍ରୟୋଜନ ଦୃଷ୍ଟ ହେଉନାହିଁ । ପୁଲିସର ପ୍ରମାଣ ଉପରେ ଏହି ସମସ୍ତ ଦୋଷ ଦେଇ ଡାକ୍ତରଙ୍କ ଯୋବାନବନ୍ଦୀର ଉଲ୍ଲେଖ କରି କହିଲେ

ଏହାଦ୍ୱାରା ଏମନ୍ତ ପ୍ରକାଶ ପାଉନାହିଁ ଯେ ତାହାଙ୍କୁ ସାଂଘାତିକ ପୀଡ଼ା ଦିଆଯାଇ ଥିଲା ଓ ଯେବେ କି ତାହାର ମୃତ୍ୟୁ ହୋଇଅଛି ତେବେ ଉକ୍ତ ମୃତ୍ୟୁ ସେହି ପୀଡ଼ା ହେତୁରୁ ନିଶ୍ଚୟ ଘଟିଅଛି ଏମନ୍ତ ବୋଲିଯାଇ ନପାରେ । ଏ ଉତ୍ତାରୁ ଏ ମୋକଦ୍ଦମାର ଆଲୋଚନାଧୀନ ବିଷୟର ଅନେକ ତର୍କ ବିତର୍କ କରି କହିଲେ ଯେ ଏ ଅପରାଧ ଧା ୩୦୬ର ମଧ୍ୟରେ ଆସୁନାହିଁ । ପୁଲିସର ପ୍ରଥମ ଇତଲାଇ ରିପୋର୍ଟକୁ ଧରି ଅନେକ ତର୍କ ବିତର୍କ କରି ଦେଖାଇଲେ ଯେ ତହିଁରେ ଯାହା ଲେଖାଅଛି ତାହା ମୋକଦ୍ଦମାର ପଛ ଅବସ୍ଥା ସଙ୍ଗେ ମିଶୁନାହିଁ ଓ ଏକସ୍ଥାନରେ ଗୋଟିଏ ଗୁରୁତର କାଟକୁଟ ହୋଇଥିବାରୁ ତହିଁପ୍ରତି ଅଧିକ ସନ୍ଦେହ ଜନ୍ମାଇଲେ । ସାକ୍ଷିମାନେ ରାଜାଙ୍କ ଅଗଣାକୁ ଯିବା ଓ ସେଠାରେ ବାବାଜୀ ମୁହଁ ଧୋ ବନ୍ଧା ଦେବା ଆଦୌ ଅସମ୍ଭବ ଓ ତହିଁର ପ୍ରମାଣ ନଥିବାର ଆଉ ଏକ ହେତୁ ଏହି ଦେଖାଇଲେ, କି ଯେତେବେଳେ ଭକ୍ତମାନେ ବାବାଜୀଙ୍କ ପ୍ରାର୍ଥନା ମତେ ଜଳ ଦେଲେ ବାବାଜୀ ତତ୍‌କ୍ଷଣାତ୍ ତାହା ପାନ କଲେ ମୁହଁରେ ବନ୍ଧା ଲଗି-ଥିଲେ କଦାଚ ତାହା କରନ୍ତେ ନାହିଁ ପ୍ରଥମେ ମୁହଁ ଧୋଇଥାନ୍ତେ । ଏହାରୁ ସେ ଅନେକ ବିଚକ୍ଷଣ ଯୁକ୍ତି ଦ୍ୱାରା ମୁଦେଇର ସାକ୍ଷୀଙ୍କୁ ବିଶ୍ୱାସଯୋଗ୍ୟ ନଥିବାର ଦେଖାଇ ବାରିଷ୍ଟର ସାହେବ କହିଲେ କି ବାବାଜୀଙ୍କର ଏପରି ଦୁର୍ଦ୍ଦଶା କିଏ କଲା ତାହା ଦେଖାଇବା ମୁଦାଲିଙ୍କର କର୍ମ ନୁହଇ, ପଞ୍ଚାଶ ପ୍ରକାରରେ ଏହା ହୋଇପାରେ ।

ରାଜାଙ୍କର ଶତ୍ରୁ ଯେବେ ବାବା ଥିଲା ତେବେ ରାଜାଙ୍କର ଭକ୍ତମାନେ କୌଣସିଠାରେ ତାହାଙ୍କୁ ଦଣ୍ଡ ଦେଇଥିବେ । ରାଜାଙ୍କ ନଅରକୁ ବିନା ଅନୁମତିରେ ପଶି ଆସିଥିଲେ ରାଜାଙ୍କର ଚାକରମାନେ ତାହାଙ୍କୁ ଅଜାଣତରେ ଦଣ୍ଡ ଦେଇଥିବେ । ଯେଉଁଠାରେ ରାଜା-ଙ୍କର ଅଶୀ ଜଣ ଚାକର ଅଛନ୍ତି ତହିଁ ମଧ୍ୟରୁ କିଏ କଲା କହିବା ବଡ଼ କଠିନ ଅଟଇ । ନଅରରେ ମଧ୍ୟ ଯେଉଁ ଚାକରମାନେ ଅଛନ୍ତି ସେମାନେ ଦଣ୍ଡ ଦେଇଥିଲେ ଅସମ୍ଭବ ହେବନାହିଁ । ଶତ୍ରୁତା କରି ରାଜାଙ୍କ ନାମ ଲଗାଇ ଦେବା ମଧ୍ୟ ଅସମ୍ଭବ ନୁହେ ଓ ଅନ୍ୟ ଲୋକଙ୍କୁ ରାଜାଙ୍କ ଚାକର ମନେକରି ରାଜାଙ୍କ ନାମ କହିବା କିଛି ବିଚିତ୍ର ନୁହଇ । ଏହିପରି ଅନେକ ଅନୁମାନ ହୋଇପାରେ । କପଟ ହୋଇଅଛି ଆସାମିମାନେ ତାହା ଦେଖାଇ ନପାରନ୍ତି । ସେମାନେ କେବଳ ଆପଣା ନିର୍ଦ୍ଦୋଷିତା ପ୍ରମାଣ କରିପାରନ୍ତି । ଏ ବିଷୟରେ ରାଜାଙ୍କର ଉତ୍ତମ ପ୍ରମାଣ ତାହାଙ୍କ ଚାକର ବାଳକ ଓ ଅମଲା ମାନଙ୍କ ସାକ୍ଷୀ ଅଟଇ । ଏହିମାନେ ରାଜାଙ୍କ ନିକଟରେ ଉପସ୍ଥିତ ଥାନ୍ତି ସୁତରାଂ ରାଜା କେଉଁ ସମୟରେ କି କରିଥିଲେ ଏମାନଙ୍କ ଛଡ଼ା ଆଉ କେହି କହିବାକୁ ସମର୍ଥ ନୁହଇ । ଅତଏବ ଏହିପରି ଲୋକଙ୍କର ଯୋବାନବନ୍ଦୀ କରାଇବୁ ଓ ଅନ୍ୟ ଆସାମିମାନେ ମଧ୍ୟ ଯେ ଯେଉଁଠାରେ ସେଦିନ ଥିଲେ ସେଠାର ଲୋକଦ୍ୱାରା ଆପଣା ୨ ନିର୍ଦ୍ଦୋଷିତା ପ୍ରମାଣ କରିବେ ।

ଏହିରୂପେ ବାନ୍ଧଣଲ ଥାନାର କଲ୍ପିତ ଶେଷରେ ତୋହ୍ନଦନ କା୨ । ୩ ଣ ଗୁହାର ଗୋବାନବନ୍ଦୀ କରାଇଲେ । ଏମାନେ ରାଜାଙ୍କ ଅନ୍ଦରର ପାର୍ଶ୍ଵ ବାରଣ୍ଡାରେ ରାତ୍ରି ଘ୧୧ଣ୍ଟା ପର୍ଯ୍ୟନ୍ତ କଚେରୀ କରୁଥିବାର କହିଲେ । ଏମାନଙ୍କ କଥାରେ ଏତିକ ପ୍ରଭେଦ ହେଲା ଯେ କଚେରୀ ଆସିଥିବା ୨ଜଣ ଲୋକ ଏକ ଘଣ୍ଟାରେ ପିବାର ଜଣେ କହିଲା ଓ ଅପର ଜଣ କହିଲା କି ସେମାନେ ଏକଘଣ୍ଟା ଅନ୍ତରରେ ଆଗ ପଛ ହୋଇ ଯାଇଥିଲେ, ଏହାଛଡ଼ା ତହସିଲଦାର କହିଲେ କଚେରୀରେ ବସି ଲୋକର ବନ୍ଦୋବସ୍ତ କରୁଥିଲେ କିନ୍ତୁ ତାହାଙ୍କ ମୋହରର କହିଲା କି ତହସିଲଦାର କଚେରୀରୁ ଯାଇ ଦୋକାନରେ ବନ୍ଦୋବସ୍ତ କଲେ ।

ମଙ୍ଗଳବାର ଦିନ ରାଜାଙ୍କର ଦେୱାନ ପୂର୍ଣ୍ଣଚନ୍ଦ୍ର ଖଟୁଣି ଓ ମହାସୁଆରଙ୍କ ଗୋବାନବନ୍ଦୀ ହେଲା । ଏମାନେ ସନ୍ଧ୍ୟାଠାରୁ ରାତ୍ରି ଘ୧୨ଣ୍ଟା ପର୍ଯ୍ୟନ୍ତ ରାଜାଙ୍କର ନିତ୍ୟକର୍ମର କଥା କହିଲେ ଜାହାରକୁ ରାଜା ମାରପିଟ କରିବାର ଜାଣନ୍ତି ନାହିଁ ବୋଲି ସାକ୍ଷ ଦେଲେ । କେବଳ ଖଟୁଣି କେଳୁଚରଣଙ୍କ ଦାସ୍ତାନ କଥା କିଛି ଜାଣୁ ନଥିବାର କହିଲା । ବାବୁ କୁଳମଣି ଆଚାର୍ଯ୍ୟ ସାକ୍ଷ ଦେଲେ ଯେ କୌଣସି ହାଜତ ଘର କି ଅଗଣାକୁ ହାଇଟଲେ ମାଲୁମ ହେବ । କେବଳ ପାଇଖାନା ଘାଟରେ ପାଇ-ଖାନାକୁ ଯାଇହୁଏ ।

ନ ୨ମ୍ବର ଆସାମୀ ରାମଚନ୍ଦ୍ର ଶୁଣ୍ଡି ଅର ଗୋନ୍ଦୀପୁର ବାସୀ ଉଦାରଚନ୍ଦ୍ର କରିବାକୁ ଯାଇ ଆଠଘଣ୍ଟାରୁ ଘ୧୨ଣ୍ଟା ପର୍ଯ୍ୟନ୍ତ ନଅଲରେ ଅନୁପସ୍ଥିତ ହେବାର ଦୁଇ-ଜଣ ସାକ୍ଷଦେଲେ ଏବଂ ଏମାନଙ୍କରୁ ଏକଜଣର ସାକ୍ଷରୁ ପ୍ରକାଶ ହେଲା ଯେ ନ ୪ମ୍ବର ଆସାମୀ ଦୈତାରି ସିଂହ ଘ ୯ଣ୍ଟା ଠାରୁ ଘ ୧୨ଣ୍ଟା ପର୍ଯ୍ୟନ୍ତ ନଅଲ ଦ୍ୱାରରେ ପହରା ଦେଉଥିଲା ।

ନ ୪ମ୍ବର ଆସାମୀ ଭଗବତୀ ଘରଠାରେ ନାଚ ଦେଖିବାକୁ ଯାଇ ଥିବାର ଦୁଇଜଣ ସାକ୍ଷ ଦେଲେ ।

ବୁଧବାରଦିନ ନ ୫ମ୍ବର ଆସାମୀ ତାହା ସହୋଦରର ବେଖରେ ତାହା ସଙ୍ଗେ ରାତ୍ରରେ ଶୋଇଥିବାର ସାକ୍ଷଦେଲେ ।

ନ ୬ମ୍ବର ଆସାମୀ ସେଦିନ ଅତ୍ୟନ୍ତ ପୀଡ଼ିତ ହୋଇ ଏକାନ୍ତ ଶଯ୍ୟାରେ ପଡ଼ିଥିବାର ସାକ୍ଷ୍ୟ ଦେଲେ ।

ନ ୭ମ୍ବର ଆସାମୀ ସେ ସମୟରେ ମୋଫସଲରେ ଆପଣା ବୃତ୍ତି ଜମିର ଧାନ ମଳାଇ ଭାଗ ନେଉଥିବାର ଦୁଇଜଣ ସାକ୍ଷ୍ୟ ଦେଲେ ।

ନଂ ୮ନମ୍ବର ଆସାମୀ ପଣ୍ଡିତଜୀଙ୍କ ମଠରେ ରାତ୍ର ଘଣ୍ଟାଠାରୁ ୧୨ଘଣ୍ଟା ପର୍ଯ୍ୟନ୍ତ ଆଉ ସେଠାରେ ଭୋଜନ କରିବାର ଦେଖାଯାଇଲେ । ଏ ଦୁଇସାକ୍ଷୀ ଆସାମୀର ସଫାଇ କଲେ ମାତ୍ର ଏକବ୍ୟକ୍ତି କହିଲା କି ମୁଁ ମଠର ପୂଜାହାରୀ । ଅନ୍ୟ-ବ୍ୟକ୍ତି କେହି ନୁହେ ଓ ସେଠାରେ ସର୍ବଦା ନଥାଏ ।

ନଂ ୯ ଓ ୧୨ନମ୍ବର ସାତ୍ର ଆସାମୀଙ୍କ ପକ୍ଷରୁ ଜଣେ ସାକ୍ଷୀ ସାକ୍ଷ୍ୟଦେଲା ଯେ ତାହାର ଝିଅର ସପ୍ତମଙ୍ଗଳା ଉପଲକ୍ଷେ ଏ ମୋକଦ୍ଦମା ଉଦୟ ହେବାଦିନ ଅର୍ଥାତ୍ ଶନିବାର ରାତ୍ରରେ ତାହାଘରେ ଜାତିଭୋଜ ଥିଲା । ଅନେକ ସାଧୁ ନିମନ୍ତ୍ରିତ ହୋଇ ଆସିଥିଲେ । ଆସାମୀମାନେ ସେଦିନ ସନ୍ଧ୍ୟା ସମୟରୁ ପ୍ରାୟ ସକାଳ ପର୍ଯ୍ୟନ୍ତ ତାହା ଘରଠାରେ ଥିଲେ । ଏମାନେ ପୁରୀ ରାଜାଙ୍କ ଚାକର ନୁହନ୍ତି । ନଂ ୧୦ନମ୍ବର ଆସାମୀ ପୂର୍ବେ ଚାକର ଥିଲା ମାତ୍ର ୧୧ବର୍ଷ ହେବ ଚାକର ନାହିଁ । ନଂ ୯ନମ୍ବର ଆସାମୀ ପୁଅ ହେଲ୍ଥ ଅଫିସରେ ଚାକରୀ କରେ ବାପପୁଅ ଦୁହେଁ ସେ କର୍ମ କରନ୍ତି ।

ଏହିରୂପେ ସଫାଇ ସାକ୍ଷୀମାନଙ୍କ ଜୋବାନବନ୍ଦୀ ଶେଷହେଲାରୁ ମାନ୍ୟବର ଲବାନ୍ସ ସାହେବ ତାହାପର ଏକଘଣ୍ଟା ପର୍ଯ୍ୟନ୍ତ ବକ୍ତୃତା କରି ଆସାମିମାନଙ୍କ ଉପରେ ଅପରାଧ ପ୍ରମାଣ ନହେବାର ଯୁକ୍ତିମାନ ଦର୍ଶାଇଲେ । ସେ କହିଲେ ଯେ ସଫାଇ ସାକ୍ଷୀଙ୍କର ଜୋବାନବନ୍ଦୀ ସନ୍ତୋଷଜନକ ହୋଇଅଛି ଓ ଯଦ୍ୟପି ତାହାର ୨ କଥାରେ ଅଳ୍ପ ଅମେଳ ଲକ୍ଷିତ ହୁଅଇ ତାହା ସାମାନ୍ୟ ଥିବାରୁ ଧର୍ତ୍ତବ୍ୟ ନୁହେ । ଆସାମିମାନେ ଯେ ଯେଉଁ ଠାରେ ଉକ୍ତ ରାତ୍ରରେ ଥିବାର କହନ୍ତି ତାହା ସେ ପ୍ରମାଣ କରିଅଛନ୍ତି ଓ ମୁଦେଇ ପକ୍ଷରୁ ତଦ୍ବିପରୀତ କିଛି ପ୍ରମାଣ ନାହିଁ ଓ କୌଣସିରୂପେ ମୁଦେଇ ପକ୍ଷରୁ ଦର୍ଶିତ ହୋଇନାହିଁ ଯେ ସେମାନେ ଉକ୍ତ ରାତ୍ରର ଘଟଣା ସମୟରେ ନଅର ମଧ୍ୟରେ ଥିଲେ । ଯେବେ ସେମାନେ ସେଠାରେ ଥାଆନ୍ତେ ତେବେ ଅବଶ୍ୟ ମୁଦେଇ ପକ୍ଷରୁ ତାହା ପ୍ରମାଣ କରାଇବାର ଚେଷ୍ଟା ହୋଇଥାନ୍ତା । ଆସାମିମାନେ ସେଠାରେ ନଥିବାର ସାକ୍ଷାତ୍ ପ୍ରମାଣ ଦେଇଅଛନ୍ତି । ସାଧୁମାନେ ରାଜାଙ୍କର ଚାକର ନୁହନ୍ତି । ସେମାନଙ୍କୁ ପୁଲିସ କାହିଁକି ଧରିଆଣିଲା ପ୍ରକାଶ ନାହିଁ । ରାଜା ଅତ୍ୟନ୍ତ ହିନ୍ଦୁ ଅଟନ୍ତି ଆଜିକାଲିକା ଇଂରାଜୀପଢ଼ା ବାବୁଙ୍କ ପରି ସଭ୍ୟ ହୋଇନାହାନ୍ତି । ସାଧୁଙ୍କ ସଙ୍ଗେ ମିଶିବା ଅତ୍ୟନ୍ତ ଅସମ୍ଭବ କଥା । ଏପରି ଯୁକ୍ତିମାନ ଦେଖାଇ ପର-ଶେଷରେ କହିଲେ କି କେହି ୨ ସୋସିଆଲ ହାକିମ ଅଳ୍ପ ପ୍ରମାଣରେ ଦଣ୍ଡଦେଇ ଆସାମିଙ୍କୁ କହନ୍ତି ଅପିଲ କର । ଏପରି କହିବା ଅତ୍ୟନ୍ତ ଅନ୍ୟାୟ ଅଟଇ । ସମସ୍ତ ହାକିମଙ୍କର ଉଚିତ କି ବିଚାର କରିବା ବେଳେ ମନେ କରିବେ ଯେମନ୍ତ ତାହାଙ୍କ ଉପରେ ଆଉ କେହି ବିଚାର କରିବାକୁ ନାହିଁ । ଏମନ୍ତ ମନେକରି ଉତ୍ତମ ବିଚାର ପୂର୍ବକ

ଦଣ୍ଡଦେବେ । ଏହା ମଧ୍ୟ ଭାବିବାର ଉଚିତ ଯେ ରାଜାଙ୍କ ଯଦି ଜଣେ ବାନ୍ଧୁଙ୍କୁ ଯନ୍ତ୍ରଣାରେ ଦଣ୍ଡ ଦିଆଯାଇ ନପାରେ ସେହିପରି କି ଜଣେ ସାମାନ୍ୟ ଲୋକ ଓ ଜଣେ ଜିଲା-ସାହେବଙ୍କ ମଧ୍ୟରେ ପ୍ରଭେଦ ସେହିପରି ରାଜା ଓ ଅନ୍ୟ ଲୋକଙ୍କର ପ୍ରଭେଦ ଅଛି । ପ୍ରକୃତ ପ୍ରମାଣ ବିନା ଦଣ୍ଡ ଦିଆଯାଇ ନପାରେ ।

ଗୁରୁବାର ଦିନ ଶ୍ରୀଯୁକ୍ତ ଗ୍ରେବସ୍ ସାହେବ ମାନ୍ୟବର ଇବାନ୍ସ ସାହେବଙ୍କ ବକ୍ତୃତାର ଉତ୍ତର ଦେଲେ । ସାହେବଙ୍କ ବକ୍ତୃତା କରିବାର କ୍ଷମତା ନାହିଁ ସୁତରାଂ ତାହା ଶୁଣିବାରୁ ଲୋକ ପ୍ରୀତିକର ହୋଇ ନଥିଲା । ସେ କହିଲେ ଯେ ମୃତର ପକ୍ଷରୁ ମୋକଦ୍ଦମା ଉତ୍ତମରୂପେ ପ୍ରମାଣ ହୋଇଅଛି ଓ ସାକ୍ଷୀଙ୍କ ମଧ୍ୟରେ ଯଦ୍ୟପି କେତେକ କଥା ଅମେଳ ହୋଇଅଛି ତଦ୍ୱାରା ସେମାନଙ୍କ ସାଧାରଣ ସତ୍ୟକଥାର ବ୍ୟତିକ୍ରମ ହେଉନାହିଁ । ମୃତ ବ୍ୟକ୍ତିକୁ ପୀଡ଼ାଦେବାବେଳେ ସୁରଦଣ୍ଡା ଲଗିଥିଲା ଓ ମଶାଲର ଆଲୁଅ ଥିଲା ସୁତରାଂ ସେ ଆସାମୀମାନଙ୍କୁ ଚିହ୍ନି ଅଛି ଆଉ ସେ ବେରାଗୀ ଥିଲା ଅତଏବ ମିଛ କହିବାର ଲୋକ ନୁହେ । ତାହାର ଏଣ୍ଡ ଯୋବାନବନ୍ଦୀରେ ବିଶେଷ ଅମେଳ କିଛି ନାହିଁ । ହାକିମମାନେ ବ୍ରାହ୍ମଣମାନଙ୍କୁ ଛୁଇଁବାର ଓ ପୀଡ଼ା ଦେବାର ବୃତ୍ତାନ୍ତ ଇତିହାସରୁ ଜଣା ଯାଏ । ସଦାଇ ସାକ୍ଷୀଙ୍କର ଯୋବାନବନ୍ଦୀ ବିଶ୍ୱାସଜନକ ନୁହେ । ସେମାନଙ୍କ କଥାରେ ଯେତେ ଯେତେ ଅମେଳ ଥିଲା ତାହାସବୁ ସାହେବ ଧରି ଦେଖାଇ ସେମାନଙ୍କ ସତ୍ୟତା ପ୍ରତି ସନ୍ଦେହ କଲେ । ରାଜାଙ୍କୁ ଲୋକେ ଯେମନ୍ତ ମାନନ୍ତି ତାହାଙ୍କ ସପକ୍ଷରେ ସାକ୍ଷଦେବ ବିଚିତ୍ର ନୁହେ । ଚନ୍ଦ୍ରକୋଠ ବିଷୟରେ କୌଣସି ସ୍ପଷ୍ଟ ହୋଇ ନଥିବାର ସେ କହିଲେ । ପୁନାଙ୍ଗଡ଼ୋଠା ବାବାଜିଙ୍କୁ ଡାକ ପଠାଇବାର ଏହି ହେତୁ ସେ ଅନୁମାନ କଲେ ଯେ ତଦ୍ୱାରା ପ୍ରକୃତ କଥା ଗୋପନ କରିବା ଚେଷ୍ଟା ହୋଇଥିଲା । ଆଇନ ସହିତ ବିଷୟରେ ମଧ୍ୟ ଲୁଇସ୍ କଥା କହିଲେ ଓ ନଥିର ବାରଦାରେ ସେଦିନ କଟେଦା ହେଉ ନଥିବାର ପ୍ରତିପନ୍ନ କଲେ । ଏହାଙ୍କ ତର୍କ-ବିତର୍କରେ ପ୍ରାୟ ଦୁଇଘଣ୍ଟା କାଳ ଅତିବାହିତ ହେଲା ।

ଉଭୟ ପକ୍ଷର ତର୍କବିତର୍କ ଶେଷ ହେବାରୁ ଜଜ ସାହେବ ଆସେସର ମାନଙ୍କର ମତ ପଚାରିଲେ । ତହିଁରେ ବାବୁ କାଳୀ ମୋହନ ଘୋଷାଲ ପ୍ରଥମରେ ଓ ବାବୁ ବେହାରୀଲାଲ ପଣ୍ଡିତ ତହିଁ ଉତ୍ତାରୁ ମତ ଦେଲେ ଯେ ଆସାମୀମାନେ ସମସ୍ତେ ନିର୍ଦ୍ଦୋଷୀ, ଏହାଙ୍କ ବିରୁଦ୍ଧରେ ପ୍ରମାଣ ଯଥେଷ୍ଟ ନୁହେଁ ଏବଂ ବାବାଜିଙ୍କୁ ଏ ପ୍ରକାର ପୀଡ଼ାଦେଇ ମାରି ପକାଇବାର ପ୍ରମାଣ କୌଣସି ପ୍ରକାଶିତ ହୋଇନାହିଁ । ଜଜ ସାହେବଙ୍କର ପ୍ରଶ୍ନର ଉତ୍ତରରେ ଏମାନେ କହିଲେ ଯେ ପୀଡ଼ା ହେବା ବିଷୟରେ ଡାକ୍ତରଙ୍କ ଯୋବାନବନ୍ଦୀ ବିଶ୍ୱାସଯୋଗ୍ୟ ଅଟଇ ମାତ୍ର ବାବାଜୀ ନଥିଲା ମଧ୍ୟରୁ ଯିବାର ପ୍ରମାଣ ବିଶ୍ୱାସ ଯୋଗ୍ୟ ନୁହଇ ।

ଏ ଉତ୍ତାରୁ ମୋକଦ୍ଦମା ମୁଲତବୀ ରହିଲା । ଜଜ ସାହେବ କହିଲେ ଯେ ଏ ଗୁରୁତର ମୋକଦ୍ଦମାର ରାୟ ଲେଖିବାକୁ ସମୟ ଲାଗିବ ଅତଏବ ସେ ଶନିବାର ଅଥବା ସୋମବାର ରାୟ ଲେଖିଥାଣି ଅଦାଲତଙ୍କ ଆଜ୍ଞା ଶୁଣାଇ ଦେବେ ।

( ୧୩ଶ ଭାଗ, ୧୩ । ୪ । ୧୮୭୮, ସଂଖ୍ୟା ୧୫ )

୬୭୪ । ପୁରୀ ମହାରାଜାଙ୍କ ମୋକଦ୍ଦମା ।

ଗତ ସପ୍ତାହରେ ଆମ୍ଭେମାନେ ଆସେସରଙ୍କ ରାୟ ପର୍ଯ୍ୟନ୍ତ ସମସ୍ତ ବୃତ୍ତାନ୍ତ ପାଠକମାନଙ୍କୁ ଜଣାଇ ଅଛୁଁ । ଜଜସାହେବ ଶନିବାର କିମ୍ବା ସୋମବାର ରାୟ ଦେବାକୁ କହିଥିଲେ । ଅତଃପର ଶୁଣାଗଲା ଯେ ମଙ୍ଗଳବାର ଦିନ ହୁକୁମ ହେବ, ଏଥିପାଇଁ ଅନେକ ସେହିଦିନ କଚେରୀକୁ ଯିବାର ସ୍ଥିର କରିଥିଲେ କିନ୍ତୁ ଗତ ସୋମ-ବାର ଘଂ୧ଣ୍ଟା ସମୟରେ ଶ୍ରୀଯୁକ୍ତ ଜଜସାହେବ କଚେରୀକୁ ଆସନ୍ତେ ଜଣାଗଲା ଯେ ସେହିଦିନ ଆଜ୍ଞା ହେବ । ଜଜସାହେବଙ୍କ ପଛେ ୨ ମାଜିଷ୍ଟ୍ରେଟ ଆସି ଅଦାଲତରେ ପ୍ରବେଶ ହେଲେ ଓ କ୍ରମେ ପୁଲିସ ଇନସ୍ପେକ୍ଟର ଓ ୨୦ । ୨୫ ଜଣ କନଷ୍ଟବଲ କଚେରୀରେ ଆସି ଜମା ହେଲେ । ତାହା ଦେଖି ଆସପାଶର କେତେଲୋକ ମଧ୍ୟ ଜମା ହୋଇ ପଡ଼ିଲେ । ଜଜସାହେବ ରାୟ ଦେବାରେ କିଛିକାଳ ବିଳମ୍ବ କରିବାରେ ସମସ୍ତେ ମନ୍ଦ ସମ୍ବାଦ ଶୁଣିବାକୁ ଏକପ୍ରକାର ପ୍ରସ୍ତୁତ ହୋଇଥିଲେ ଓ କନଷ୍ଟେବଲମାନେ ସେ କାଳରେ ଠିକ ଯମଦୂତ ପ୍ରାୟ ଦିଶିଲେ । ଆସାମୀମାନଙ୍କୁ କଚେରୀରେ କନଷ୍ଟବଲ-ମାନେ ହାଜର କରିଦେବାରୁ ଜଜସାହେବ ପୂର୍ବପରି ଆଉ ରାଜାଙ୍କୁ ଚୌକି ନ ଦେଇ ଛିଡ଼ା ରଖିଲେ । ତହୁଁ ସମସ୍ତଙ୍କର ବିଶ୍ୱାସ ହେଲା ଯେ ଆଉ ରାଜାଙ୍କର ନିସ୍ତାର ନାହିଁ । ଏହା ଭିତରୁ ୨ ଜଜସାହେବ ମିସଲ ଉପରେ ଆସି ବସିଲେ ଏବଂ ସବଡିଭିଜନ ଜଜ ଓ ମାଜିଷ୍ଟ୍ରେଟ ସାହେବମାନେ ମିସଲର ଏକ ପାର୍ଶ୍ୱରେ ବସିରହିଲେ । ଜଜସାହେବ ଆସାମୀମାନଙ୍କ ମଧ୍ୟରୁ ଏକ ୨ ଜଣର ନାମ ଧରି ଅଦାଲତର ଆଜ୍ଞା ଶୁଣାଇ ଦେଲେ ଓ ସିରସ୍ତାଦାର ତାହା ଓଡ଼ିଆ ଭାଷାରେ ସେମାନଙ୍କୁ ବୁଝାଇ ଦେଲେ । ରାଜା ଦିବ୍ୟସିଂହଦେବ ଓ ତାହାଙ୍କ ଚାକରଙ୍କ ମଧ୍ୟରୁ ଚାରିଜଣ ଅର୍ଥାତ୍ ସୁରଜନ ଉପାଧ୍ୟା ଜମାଦାର ଗୋପୀ ଘୁଡ଼ଚଢ଼ି ଗୋପାଳ ଦାସ ହାତିଦମେଠ ଏବଂ ନାରାୟଣ ବାମନପତି ସୁରେନ୍ଦ୍ର ଏପରି ପାଞ୍ଚଜଣଙ୍କ ଉପରେ ଯାବଜ୍ଜୀବନ ଦ୍ୱୀପାନ୍ତର ବାସର ଆଜ୍ଞା ହେଲା ଓ ଅନ୍ୟ ପାଞ୍ଚଜଣଙ୍କୁ ଖଲାସ ଦିଆଗଲା । ଯେଉଁମାନେ ଖଲାସ ପାଇଲେ ସେମାନଙ୍କୁ ତତକ୍ଷଣାତ୍ ଅନ୍ତର କରିଦେଇ ଦଣ୍ଡ ପାଇଥିବା ଆସାମୀମାନଙ୍କୁ ମାଜିଷ୍ଟ୍ରେଟ ସାହେବ ସ୍ୱୟଂ ପୁଲିସ ଦ୍ୱାରା କାରାଗାରକୁ ପଠାଇଦେଲେ । ରାଜାଙ୍କୁ ଅନ୍ୟ ଦିନ ପ୍ରାୟ ପାଲକି-ରେ ବସାଇ ନେଇଗଲେ ।

ଆସାମୀମାନେ ଅନ୍ତରିତ ହୁଅନ୍ତେ ବାରିଷ୍ଟର ଓ ଉକିଲଙ୍କ ଦେଖିବା ସକାଶେ ଜଜସାହେବ ଆପଣା ରାୟକୁ ମେଜ ଉପରେ ରଖିଦେଇ ମିଛଲରୁ ଉଠିଚାଲି ଗଲେ । ରାୟଟି ଅତ୍ୟନ୍ତ ଦୀର୍ଘ ୪୧ ଖଣ୍ଡ ଫୁଲସ୍କାପ କାଗଜର ଦୁଇପିଠିରେ ଲେଖାଅଛି ସୁତରାଂ ତାହା ପାଠ କରିବାକୁ ବିଳମ୍ବ ହେବବୋଲି ଜଜସାହେବ ମେଜ ଛାଡ଼ି ଉଠିଗଲେ । ରାୟଟି ଯେମନ୍ତ ଦୀର୍ଘ ତେମନ୍ତ ସୁରଚିତ ହୋଇଅଛି । ଜଜସାହେବ ଆପଣା ମତ ସମର୍ଥନ କରିବା ସକାଶେ ଅନେକ ଯୁକ୍ତି ଦେଖାଇ ଅଛନ୍ତି ଓ ଏହାକୁ ସର୍ବାଙ୍ଗ ସୁନ୍ଦର ଓ ଅକାଟ୍ୟ କରିବାପାଇଁ ଅନେକ ଶ୍ରମ ସ୍ୱୀକାର କରିଅଛନ୍ତି । ଆମ୍ଭେ-ମାନେ ସ୍ଥାନାଭାବରୁ ଏଡ଼େ ବଡ଼ ରାୟର ଅବିକଳ ଅନୁବାଦ ନଦେଇ ତହିଁର ସଂକ୍ଷେପ ବିବରଣ **କୌତୁକୀ** ପାଠକଙ୍କ ତୃପ୍ତି ନିମିତ୍ତ ଲେଖୁଅଛୁ, ଯଥା—

ଏ ମୋକଦ୍ଦମାରେ ରାଜା ଓ ତାହାଙ୍କ ସଙ୍ଗ ଲୋକମାନେ ଦୋଷୀ ହେବାର ସାକ୍ଷାତ୍ ପ୍ରମାଣ ଶିବଦାସର ଯୋବାନବନ୍ଦୀ ଅଟଇ । ତାହାକୁ ଅବିଶ୍ୱାସ କରିବାର କାରଣ ନାହିଁ କାରଣ ସେ ଯାହା କହିଅଛି ଅନ୍ୟ ପ୍ରମାଣ ଦ୍ୱାରା ତହିଁର ପୋଷକତା ହୋଇଅଛି ଓ ତାହାର ପୃଥକ୍ ୨ ଯୋବାନବନ୍ଦରେ ଯାହା ଅମେଳ ଅଛି ତାହା ଉକ୍ତ ଲୋକର ଦୁରବସ୍ଥା ବିବେଚନାରେ ଅସ୍ପର୍ଶ ହୁଅଇ । ନାନାପ୍ରକାର ପୀଡ଼ା ପାଇ ଯାହାର ପ୍ରାଣ ଛଟପଟ କରୁଅଛି ତାହାର କଥାରେ ସାମାନ୍ୟ ଅମେଳ ଘଟିବାର ବିଚିତ୍ର କି ? ତାହାର ସ୍ଥୂଳ ବିବରଣରେ ଅମେଳ ନାହିଁ ଓ ଅନ୍ୟ ପ୍ରମାଣ ଦ୍ୱାରା ତାହା ସାବ୍ୟସ୍ତ ହୋଇଅଛି । ବିଚାରର ସୁବିଧା ନିମିତ୍ତ ଜଜ ସାହେବ ତାହାର ଇଜାହାରକୁ ତିନିଭାଗରେ ବିଭକ୍ତ କରିଅଛନ୍ତି ଯଥା, ପ୍ରଥମ— ପୀଡ଼ାର ସତ୍ୟତା ; ଦ୍ୱିତୀୟ— ପୀଡ଼ାର ସ୍ଥାନ ; ତୃତୀୟ— ପୀଡ଼ାଦାତା । ଡାକ୍ତରଙ୍କ ଯୋବାନବନ୍ଦୀ ଦ୍ୱାରା ପୀଡ଼ାର ସତ୍ୟତା ପ୍ରମାଣ ହୋଇଅଛି ଓ ତହିଁରୁ ଏହାମଧ୍ୟ ପ୍ରକାଶ ଯେ ସେ ପ୍ରକାର ପୀଡ଼ା କେହି ଆପେ ଆପଣାକୁ ଦେଇ ନପାରେ ।

ପୀଡ଼ାର ସ୍ଥାନ ଶିବୁଦାସ କହିବା ଅନୁସାରେ ରାଜାଙ୍କ ନଅର ଅଟଇ । ଗୋପୀ ସିଂହ ବାବାଜୀଙ୍କୁ ଡାକି ଆଣିବାର କହିଅଛି ଓ ତାହାର ଦୁଇଜଣ ଶିଷ୍ୟ ନଅର ଭିତରକୁ ଯିବାର ଦେଖି ଅଛନ୍ତି । କପାସିନ୍ଧୁ ଗଳିର ତାହାର ଗଳାର ମାଳି ତିନିସରି ପାଦ୍ଧୁ ପାଇଅଛି ଏବଂ ମନ୍ଦିରର ସିଂହଦ୍ୱାର ପାଖରେ ଦୁଇଜଣ କନଷ୍ଟେ-ବଲ ତାହାକୁ ଦେଖି ସେଠାରୁ ଧରିଆଣି ନଅର ସମ୍ମୁଖରେ ପକାଇବାର ଓ ସେଠାରେ ଦୁଇଜଣ ଶିଷ୍ୟଙ୍କୁ ନଅର ବାହାରୁ ଧାଇଁଆସି ବାବାଜୀଙ୍କୁ ଭେଟିବାର ଦେଖିଅଛନ୍ତି । ବାବାଜୀ ନଅରକୁ ଯିବାବେଳେ ସେମାନେ ସଙ୍ଗରେ ନଥିଲେ ତେବେ ତାହାର ଡାକ ଶୁଣନ୍ତେ କିପରି ଦୌଡ଼ି ଆସିଲେ ଏବଂ ଡାକ୍ତର ମଧ୍ୟ ସେହି ରାତରେ ଉକ୍ତ ଶିଷ୍ୟମାନଙ୍କୁ

ଦେଖିହେବାର କହୁଅଛୁ । ଏମାନଙ୍କ ସାମନେ ଏବାଦିକ କେତେକ ସାମାନ୍ୟ କ୍ଷେତ୍ରରେ ଅମେଳ ଅଛି ମାତ୍ର ତହିଁ ସକାଶେ ସେମାନଙ୍କର ସାଧାରଣ ସତ୍ୟତା ପ୍ରତି ଦୋଷ ଖୋଜି ନପାରେ । ଦେଶୀୟ ବ୍ରାହ୍ମଙ୍କ ଠାରୁ ଠିକ ସତ୍ୟ ମିଳିବାର ଦୁଃସାଧ୍ୟ ଓ ବଶୂଳ ସମ୍ବନ୍ଧରେ ଡାକମର ଏମନ୍ତ ଦେଖିବାର ଆବଶ୍ୟକ ନାହିଁ ଯେ ସ୍ତ୍ରୀମାନେ ନିର୍ମଳ ସତ୍ୟ କହୁଅଛନ୍ତି କି ନା ମାତ୍ର ଏତିକି ଦେଖିବାର ଉଚିତ ଯେ ଚତୁର୍ଦ୍ଦିଗର ଘଟଣା ବୁଝିଲେ ତାହାଙ୍କର କଥା ବିଶ୍ୱାସଯୋଗ୍ୟ କି ନା । ଏଠାରେ ସେପରି ବିଶ୍ୱାସ କରିବାର କାରଣ ଅଛି । ଗୋଟି ସିଂହ ଏକେ ହାରବଳରେ ପଡ଼ିବଟବୋଲି ସାବଧାନ ସୂଚକ ଘୋଷାନବଣୀ ଦେଇଅଛି ଏବଂ ନାରାୟଣ ମହାନ୍ତି କନଷ୍ଟବଲ ମୁଦାଲିଙ୍କର ଅଙ୍ଗୀକାର ଦ୍ୱାରା ଛପିବାର ଅନୁମାନ ହୁଏ । ସୁତରାଂ ନଅର ମଧ୍ୟରେ ଏ ଅପରାଧ ହୋଇଥିବାର ସ୍ଥିର ହେଲା ।

ଯେଉଁମାନେ ଅପରାଧ କରିଅଛନ୍ତି ତାହାଙ୍କ ମଧ୍ୟରେ ରାଜା ଯେ ପ୍ରଧାନ ଏ ବିଷୟରେ ସନ୍ଦେହ ହୋଇ ନପାରେ । ରାଜାଙ୍କ ନାମ ବାବାଜୀ ପ୍ରଥମରୁ କହୁଅଛି ଅଥଚ ରାଜାଙ୍କ ସଙ୍ଗେ କୌଣସି ବିଶେଷ ଶତ୍ରୁତା ଥିବାର ଜଣାନାହିଁ । ବାବାଜୀର କଥାରୁ ଜଣାଯାଏ ଯେ ସେ ପୂର୍ବେ ଥରେ ରାଣୀଙ୍କ ନଅରକୁ ଯାଇଥିଲ ଓ ରାଜାଙ୍କ-ଅଗୋଚର ସକାଶେ କିନ୍ତି ହୁକୁମ ଦେଇଥିଲ । ଏହି କଥାରୁ କେହି ଖଳ ଲୋକ ରାଜାଙ୍କ ମନରେ ବଢ଼ାଇ କହିଥିବ ଓ ରାଜା ଅଳ୍ପ ବୟସର ଲୋକ ସୁତରାଂ ତହିଁରେ ବିଗାଡ଼ିତ ହୋଇ ତାହାଙ୍କୁ ଶାସ୍ତି ଦେବାପାଇଁ ସ୍ଥିରକରି ବାବାଜିଙ୍କୁ ନଅର ମଧ୍ୟରୁ ଡକାଇ ଆଣି ଏପରି ଶାସ୍ତି ଦେଇଅଛନ୍ତି । ଦୁଇ ବିରାଜିତ ହୋଇଥିବାରୁ ସେ ସ୍ୱଚ୍ଛନ୍ଦରେ ଅପଣା ସାକ୍ଷାତରେ ତାହାଙ୍କୁ ପୀଡ଼ା ଦେବାକୁ ସ୍ଥିର କରିଥିଲେ ସୁତରାଂ ସମସ୍ତ କାର୍ଯ୍ୟ ତାହାଙ୍କ ସମ୍ମୁଖରେ ହୋଇଥିଲା । ସ୍ୱୟଂ ଦେଖିବାର ଇଚ୍ଛା ନଥିଲେ ନଅରକୁ ନ ଆଣି ଅନ୍ୟସ୍ଥାନରେ ପୀଡ଼ା ଦେବାପାଇଁ ଭୃତ୍ୟଙ୍କୁ ଆଜ୍ଞା ଦେଇଥିଲେ ଚଳି ହୋଇଥାନ୍ତା । ଅତଏବ ରାଜା ଯେ ସେଠାରେ ଥିଲେ ଏ ବିଷୟରେ ସନ୍ଦେହ ନାହିଁ ଏବଂ ନଅର ମଧ୍ୟରେ ଅନ୍ୟ କେହି ରାଜାର ବେଶଧାରୀ ଉପସ୍ଥିତ ଥିବାର ଅସମ୍ଭବ । ଯେପ୍ରକାର ଶାସ୍ତି ଦିଆ ଯାଇଥିଲା ତାହା ଅଳ୍ପ ସମୟର କାର୍ଯ୍ୟନୁହେ । ତହିଁରେ ବାସ୍ତବରେ ଅନେକ ଘଣ୍ଟା ଲାଗିଥିଲା ସୁତରାଂ ଉତ୍ତମ ଆଲୁଅ ନହେଲେ ସେପରି ପୀଡ଼ା ଦେବାର ଅସମ୍ଭବ ସୁତରାଂ ପୀଡ଼ାଦାତାଙ୍କୁ ଚିହ୍ନିବାର ସକଳ ପ୍ରକାର ସୁଯୋଗ ଥିଲା ଅବଶ୍ୟ ବାବାଜୀ ପୀଡ଼ାଦାତାଙ୍କୁ ଦେଖି ଚିହ୍ନିଥିବ । ତେବେ ତକସାଲାମରେ ପ୍ରଥମେ ଉପସ୍ଥିତ କରାଯିବା ଜଣ ମଧ୍ୟରୁ ଗୃହିଣୀଙ୍କୁ ଯେପରି ଉତ୍ତମ ରୂପେ ବାବାଜୀ ଚିହ୍ନିଥିଲେ ଶେଷରେ ଜଣେ ମଧ୍ୟରୁ ଜଣଙ୍କୁ ସେପରି ଠିକ୍ ଠାକ୍ କରି ନଥିଲେ । ପ୍ରଥମ ଲିଖିତ ବ୍ୟକ୍ତିମାନଙ୍କୁ ଧରିକରି ଛାଡ଼ାଇଦେବାରେ ବାବାଜୀ ଏମନ୍ତଙ୍କୁ ନିର୍ବାଚନ କର ବଟିର ?

ଗଚ୍ଛି ଥିଲା କିନ୍ତୁ ଶେଷ ଲିଖିତ ଜଂ୧୪ଣ ବ୍ୟକ୍ତି ଜଣ ୨ କରି ତାହା ନିକଟରୁ ଆସି ହେବାରେ ତାହାଙ୍କ ମଧ୍ୟରୁ କାହାକୁ ହଁ ଓ କାହାକୁ ନା କହିଲ ସୁତରାଂ ଏ ତଦନ୍ତ ତେତେ ସନ୍ତୋଷ ଜନକ ନୁହଇ ଏହି ସନ୍ଦେହରେ ଶେଷ ଲିଖିତ ଆସାମିମାନେ ଖଲାସ ପାଇଲେ । ସଫାଇ ଗୁଡ଼ା କାହାରିକୁ ଜଜ ସାହେବ ବିଶ୍ୱାସ କରି ନାହାନ୍ତି । ଏହିପରେ ଆସାମିଙ୍କ ଦୋଷ ପ୍ରମାଣ କଲେ କିନ୍ତୁ ରାଜା ବାବାଜିଙ୍କୁ ଶାସ୍ତି ଦେଇ ଖିଡ଼କି ବାଟରେ ବାହାର କରି ଦେଇଥିବାରୁ ବାରିଷ୍ଟର କହିଥିଲେ ଯେ ଏଥିରୁ ରାଜାଙ୍କର ବାବାଜିଙ୍କୁ ପ୍ରାଣରୁ ମାରିବାର ଇଚ୍ଛା ପ୍ରକାଶ ହେଉନାହିଁ । ଏହି ଯୁକ୍ତିକୁ ଜଜ ସାହେବ ପ୍ରବଳ ଜ୍ଞାନକଲେ । ଏଥିପାଇଁ ଫାଶିର ଦଣ୍ଡ ନଦେଇ ଯାବଜ୍ଜୀବନ କାରାବାସର ଦଣ୍ଡ ଦେଲେ ।

ଆମ୍ଭେମାନେ ଜଜ ସାହେବଙ୍କ ବିଚାରର ଭଲମନ୍ଦ କହିବାର ମାନସ ରଖୁନାହୁଁ ପୁଣି ହାଇକୋର୍ଟରେ ଅପିଲ ହେବାର ଥିବାରୁ କହିବାର ଉଚିତ ନୁହଇ କିନ୍ତୁ ଏକଥା ଆମ୍ଭେମାନେ ଅବଶ୍ୟ କହିବୁଁ ଯେ ଏ ଆଜ୍ଞା ଶୁଣି ଏ ନଗରର ଆବାଳ ବୃଦ୍ଧବନିତା ସମସ୍ତେ ଯତ୍ପରୋନାସ୍ତି ସନ୍ତାପିତ ହୋଇଅଛନ୍ତି ଓ ସମୁଦାୟ ଓଡ଼ିଶାର ଏହିଭାବ ଜଣାଯାଏ । ଏକଜଣ ସକାଶେ ଛୋଟବଡ ସମସ୍ତ ଲୋକଙ୍କୁ ଏପରି ଦୁଃଖିତ ହେବାର କେବେହେଁ ଦେଖା ଯାଇନାହିଁ । ବିଦେଶୀୟମାନେ ଲୋକଙ୍କର ଏ ପ୍ରକାର ଭାବ ଦେଖି ଆଶ୍ଚର୍ଯ୍ୟ ହେଉଅଛନ୍ତି କିନ୍ତୁ ଆମ୍ଭମାନଙ୍କ ବିବେଚନାରେ ଏହିରେ ବିଚିତ୍ର କିଛି ନାହିଁ । ଯେଉଁ ବଂଶର ପ୍ରବଳ ପ୍ରତାପ ଏକ ସମୟରେ ସମୁଦାୟ ଓଡ଼ିଶା କାହିଁକି ଗୋଦାବରୀ ଠାରୁ ତ୍ରିବେଣୀ ପର୍ଯ୍ୟନ୍ତ ରାଜ୍ୟ ଖଣ୍ଡରେ ବିସ୍ତୀର୍ଣ୍ଣ ଥିଲା କେତେ ୨ ରାଜାଙ୍କର ମଉଡମଣି ହୋଇଗଲେ ଏବଂ ଯେଉଁ ବଂଶର ଅସାଧାରଣ କୀର୍ତ୍ତି ଅବଧି କେବଳ ପ୍ରତ୍ୟକ୍ଷ ରହିଅଛି ଏମନ୍ତ ନୁହେ ଲକ୍ଷ ୨ ଲୋକଙ୍କର ପୂଜ୍ୟ ଓ ପ୍ରଶଂସାର ପାତ୍ର ହୋଇଅଛି ସେହି ବଂଶର ବର୍ତ୍ତମାନ ପ୍ରତିନିଧି ଆଜି ସାମାନ୍ୟ ଲୋକପରି ଯାବଜ୍ଜୀବନ କାରାବଦ୍ଧ ହେଲେ ଏମନ୍ତ କଠିନ ହୃଦୟର ଲୋକ କିଏ ଅଛି ଯେ ଏହା ଦେଖି ତାହାର ମନ ଚଞ୍ଚଳିତ ନହେବ । ତାହାଙ୍କର ଦୁରବସ୍ଥା ଭାବିଲେ କାହାର ନୟନରୁ ଅଶ୍ରୁ ପତନ ନହେବ । ଆପଣାର ବନ୍ଧୁ କି ସୁହୃଦର ଆଜ୍ଞାନୁସାରେ ଦଣ୍ଡହେଲେ କି ମନରେ ଖେଦ ଜାତହୁଅଇ ନାହିଁ ନା ସହାନୁଭୂତି ଛାଡ଼ି ପଳାଏ । ଶତ ୨ ବର୍ଷ ପୂର୍ବେ ଯେ ତାହାଙ୍କର ରାଜା ଥିଲେ ସେହି ବଂଶର ଲୋକ ପ୍ରତି ଓଡ଼ିଆଙ୍କର ଅବଧି ଏତାଦୃଶ ଭକ୍ତି ଓ ସ୍ନେହ ରହିଅଛି ଏହା ଦେଖି ନିଶ୍ଚୟ ବୋଲି ଯାଇ ପାରେ ଯେ ଏମାନଙ୍କର ରାଜଭକ୍ତି ଅତ୍ୟନ୍ତ ପ୍ରବଳ ଓ ଏମନ୍ତ ପ୍ରଜା ବର୍ତ୍ତମାନ ଯାହାଙ୍କର ଶାସନାଧୀନରେ ରହିଅଛନ୍ତି ତାହାଙ୍କର ପ୍ରିୟପାତ୍ର ହେବେ ସନ୍ଦେହ ନାହିଁ । କାରଣ ଯେଉଁ ପ୍ରଜାମାନେ ବହୁକାଳର ରାଜାଙ୍କୁ ସୁଦ୍ଧା ଅମାନ୍ୟ କରୁ ନାହାନ୍ତି ସେ ଯେ ବର୍ତ୍ତମାନ ଯେଉଁ ରାଜାଙ୍କର ଶାସନରେ

ଥାଇ ତହୁଁ ଅଧିକ ସୁଖ ସ୍ୱଚ୍ଛନ୍ଦତା ଭୋଗ କରୁଅଛନ୍ତି ତାହାଙ୍କୁ ଅଧିକ ଭକ୍ତି ଓ ପ୍ରେମ କରିବେ ଏହା ବୋଲିବାର ବାହୁଲ୍ୟ ।

( ୧୩ଶ ଭାଗ, ୨୦ । ୪ । ୧୮୭୮, ସଂଖ୍ୟା ୧୬ )

**୫୬୫ ।** ଗଙ୍ଗାମନ୍ଦିର ପୁଷ୍କରିଣୀର ସଂସ୍କାର ।

ଯେମନ୍ତ ଅନକଷ୍ଟ ହେବାରୁ ମହାଜନ ଓ ଚଷାଙ୍କର ଲଭ ହେଉ-ଅଛି ତେମନ୍ତ ଜଳ କଷ୍ଟ ହେବାରୁ ଆଜିକାଲି ଏ ନଗରରେ କୁମ୍ଭାର ମାନଙ୍କର ବଡ଼ ଲଭର ସମୟ ପଡ଼ିଅଛି । ଅଧିକାଂଶ କୂଅରେ ପାଣି ନାହିଁ, ଲୋକେ ଜଳପାଇଁ ଏହା ତାହା ଦ୍ୱାରରେ ଅନୁସରଣ କରୁଅଛନ୍ତି । ସଙ୍ଗତି ସମ୍ପନ୍ନ ଲୋକେ କୌଣସିମତେ ଆପଣା କୂଅକୁ ଉତ୍ଖୋଳାଇ ବା ନୂଆ କରି ନେଉଅଛନ୍ତି କିନ୍ତୁ ଯେଉଁମାନେ ଦନାଦ ଖର୍ଚ୍ଚର ଗୃହଜଳ ଯୋଗାଇ ପାରୁନାହାନ୍ତି ସେମାନଙ୍କର କୁମ୍ଭାରକୁ ଠଙ୍କା ଦେବାର ବଳ କାହିଁ ? ନଦୀରେ ପ୍ରତିଦିନ ସକାଳୁଁ ବାରୁଣି ଯାତ୍ରାପରି ଲୋକ ଜମା ହେଉଅଛନ୍ତି ତଥାପି ନଗରବାସୀ ସମସ୍ତଙ୍କ ପକ୍ଷରେ ସୁବିଧା ନୁହଇ । ବୃଦ୍ଧ ବୃଦ୍ଧିଲୋକ ସ୍ନାନ କରିବାକୁ ଯାଇ ମୂଳ ହରାଇବାର ଶଙ୍କାରେ ପଡ଼ୁଅଛନ୍ତି । ନଗରର ବଡ଼ ୨ ପୁଷ୍କରିଣୀମାନ ପ୍ରାୟ ଶୁଖିଲ ପଡ଼ିଅଛି । ଏ ସମୟରେ ଅମ୍ଭମାନଙ୍କ ବିବେଚନାରେ ମିଉନିସିପାଲ୍‌ଟିକୁ କିଛି ସାହାଯ୍ୟ କରିବାର ଉଚିତ । ଜଳକଷ୍ଟ ନିବାରଣ କରିବା ମିଉନିସିପାଲ୍‌ଟିର ଗୋଟିଏ ପ୍ରଧାନ କାର୍ଯ୍ୟ ଅଟଇ ଓ ନଗରର ନାନା ଭାଗରେ ଦୁଇ ଚାରୋଟି ପୁଷ୍କରିଣୀ ଏକ ସମୟରେ ସଂସ୍କାର କରିଦେଲେ ବଡ଼ ଉପକାରର କଥା ହେବ । ଆମ୍ଭେମାନେ ଅବଗତ ହୋଇ-ଅଛୁଁ ଯେ ଗଙ୍ଗାମନ୍ଦିର ପୁଷ୍କରିଣୀର ସଂସ୍କାର ସକାଶେ ବିଶେଷ ଭେଦା ଦ୍ୱାରା ଏ ନଗର-ବାସୀ ଭଦ୍ର ଲୋକଙ୍କ ଠାରୁ ଦୁଇ ତିନିବର୍ଷ ହେବ କେତେଠଙ୍କା ସଂଗୃହିତ ହୋଇ ମିଉନିସପଲ ପାଣ୍ଠିରେ ଜମା ଅଛି । ଏହିକାଳରେ ସେ ଠଙ୍କା ବ୍ୟୟ କରିବାର ନିତାନ୍ତ ପ୍ରୟୋଜନ ହୋଇଅଛି । ଉକ୍ତ ପୁଷ୍କରିଣୀଟି ନଗରର ମଧ୍ୟସ୍ଥଳରେ ଅଟଇ ଓ ଏଥିରେ ଭଲଜଳ ହେଲେ ବିସ୍ତର ଉପକାର ହେବ । ଆମ୍ଭେମାନେ ମିଉନିସିପାଲ୍ କମିସ୍ନର ଓ ମାଜିଷ୍ଟ୍ରେଟଙ୍କୁ ଅତ୍ୟନ୍ତ ଅନୁରୋଧ କରୁଅଛୁଁ ଯେ ଏ ପୁଷ୍କରିଣୀର ସଂସ୍କାର ବିଷୟରେ ଆଉ ହେଳା ନକରି ଏହିମାସରେ କାର୍ଯ୍ୟାରମ୍ଭ କରି ଦେଉନ୍ତୁ । ମିଉନିସିପାଲ୍‌ଟିରେ ବର୍ତ୍ତମାନ ଠଙ୍କା ଅଛି ଓ ଜଳକଷ୍ଟ ଭାରି ହୋଇଅଛି । ଏ ସମୟରେ ଏ କାର୍ଯ୍ୟଟି ନକଲେ ଆଉ କେଉଁ କାଳରେ ହେବ । ଅନ୍ତତଃ ନଗର ମଧ୍ୟରେ ଦୁଇ ତିନୋଟି ବଡ଼ ପୁଷ୍କରିଣୀ ସର୍ବଦା ଭଲ ଅବସ୍ଥାରେ ରଖିବାର ଉଚିତ ଓ ଯେବେ ଏକାବର୍ଷରେ ସବୁ ହୋଇ ନପାରେ ତେବେ ପ୍ରତିବର୍ଷ ଗୋଟିଏ ଲେଖାଏଁ ହେଲେସୁଦ୍ଧା କାର୍ଯ୍ୟ ଚଳିବ ।

## ( ୧୩ଶ ଭାଗ ୨୭ । ୪ । ୧୮୭୮, ସଂଖ୍ୟା ୧୭ )

୫୫୬ । ସୁଦ୍ଧୀ ରଜାଙ୍କର ଅପିଲ ।

ସୁଦ୍ଧୀ ରଜାଙ୍କର ଅପିଲ ମୋକଦ୍ଦମା ଆଗାମୀ ସୋମବାର ହାଇକୋର୍ଟରେ ବିଚାର ହେବାର ଦିନ ସ୍ଥିର ହୋଇଅଛି କିନ୍ତୁ ସେଦିନ ବିଚାର ହେବାର ସମ୍ପୂର୍ଣ୍ଣ ସମ୍ଭାବନା ନାହିଁ । ଯେଉଁଦିନ ଅପିଲ ଦାଏର ହେଲା ସେଦିନ ଗବର୍ଣ୍ଣମେଣ୍ଟଙ୍କ ପକ୍ଷରୁ ବାବୁ ଜଗଦାନନ୍ଦ ମୁଖର୍ଜୀ ଜୁନିୟର ସରକାର ଉକିଲ କହିଲେ ଯେ ଶୀଘ୍ର ମକଦ୍ଦମା ବିଚାର ଦିନ ସ୍ଥିର ହେବା ବିଷୟରେ ସେ ଆପତ୍ତି କରିବାକୁ ଲିଗେଲ ରିମେମବ୍ରାନସରଙ୍କ ନିକଟରୁ ଅନୁମତି ପାଇଅଛନ୍ତି । ଅବଶ୍ୟ ମକଦ୍ଦମା ସମ୍ପର୍କୀୟ ଏକଖଣ୍ଡ କାଗଜ ତାହାଙ୍କ ଅଫିସରେ ପହୁଞ୍ଚି ନାହିଁ ଓ ଜଣେ କୌନସଲ ନିଯୁକ୍ତ କରିବାର କଥା ଅଛି ଅତଏବ ତୈୟାରୀ ହେବା ସମୟ ନମିଳିଲେ କୌଣସି ସୁଯୋଗ ହୋଇ ନପାରେ । ଏକଥା ଶୁଣି ହାଇକୋର୍ଟର ଜଜମାନେ ଆଜ୍ଞା ଦେଇଅଛନ୍ତି କି କୌଣସି ପକ୍ଷ ମୁହଲତ ପ୍ରାର୍ଥନା କଲେ ତାହା ଦିଆଯାଇ ପାରିବ । ସୁତରାଂ ମକଦ୍ଦମାଟି ନିଶ୍ଚୟ ତାରିଖରେ ପଡ଼ିବାର ବିସ୍ତର ସମ୍ଭାବନା ନାହିଁ ।

ଏ ମକଦ୍ଦମାର ବିଷୟ କଲିକତାର ଇଂରାଜୀ ସମାଚାର ପତ୍ର ମାନଙ୍କରେ ଛପା ହୋଇଅଛି ଏବଂ ଇଣ୍ଡିଆନ ଡେଲିନିୟୁସ ଏ ବିଷୟର ଅନେକ ପ୍ରଶଂସା କରି ଅନ୍ୟାନ୍ୟ କଥାମଧ୍ୟରେ ଲେଖିଅଛନ୍ତି ଯେ ହାଇକୋର୍ଟରେ ଯେବେ ନିଜ ଅପିଲ ନକରିବେ ତେବେ ଭଲ ପରାମର୍ଶର କାର୍ଯ୍ୟ ହେବ । ଆମ୍ଭେମାନେ ଏହାର ମର୍ମ ବୁଝି ପାରିଲୁ ନାହିଁ । ଯାବଜ୍ଜୀବନ କାରାବାସ ଦଣ୍ଡଠାରୁ ଅଧିକ ଦଣ୍ଡ ଆଇନରେ ନାହିଁ ଓ ଯେବେ ସମ୍ପାଦକଙ୍କ ମତରେ ଫାଶୀଦଣ୍ଡକୁ ଅଧିକ ବୋଲିଧରିବ ତେବେ ଏ ମକଦ୍ଦମାରେ ଫାଶୀ ନହେବାର କାରଣ ସେ ନିଜେ ଲେଖିଅଛନ୍ତି । ଏହାର ଅପିଲରେ ଭଲ ଭିନ୍ନ ମନ୍ଦ ହେବାର ଆଶଙ୍କା ନାହିଁ । ପରନ୍ତୁ ସାଧାରଣ ମତରେ ଫାଶୀଠାରୁ ଯାବଜ୍ଜୀବନ କାରାବାସ ଦଣ୍ଡ ସମ୍ଭ୍ରାନ୍ତ ବ୍ୟକ୍ତି ପକ୍ଷରେ ଗୁରୁତର ଅଟଇ । ଫାଶୀ ବାସ୍ତବରେ ଦଣ୍ଡ ନୁହଇ କେବଳ ଏକ ନିଷ୍ଠୁର ହତ୍ୟାକାଣ୍ଡ । ଏଥିପାଇଁ ଅନେକ ସଭ୍ୟ ଦେଶରେ ଏ ଦଣ୍ଡ ଉଠିଯାଇ ଅଛି ଓ ବିଲାତରେ ମଧ୍ୟ କେତେଥର ଉଠାଇ ଦେବାର ପ୍ରସ୍ତାବ ହୋଇଲାଣି । କେବଳ ସଭ୍ୟ ଏକମତ ନହେବାରୁ ଉଠି ଯାଉନାହିଁ ।

## ( ୧୩ଶ ଭାଗ, ୪ । ୫ । ୧୮୭୮, ସଂଖ୍ୟା ୧୮ )

୫୫୭ । ସୁଦ୍ଧୀ ରଜାଙ୍କ ମକଦ୍ଦମା ।

ସୁଦ୍ଧୀ ରଜାଙ୍କ ମକଦ୍ଦମା ଗତ ସୋମବାର ଦିନ ହେଲାନାହିଁ । ଶ୍ରୀମତୀ

ହରତେଶ୍ୱରୀଙ୍କ ପକ୍ଷରୁ ମକଦ୍ଦମା ଚଳାଇବା ସକାଶେ ସ୍ୱୟଂ ଆଡ଼ଭୋକେଟ ଜେନେ-ରାଲ ପାଲ ସାହେବ ନିଯୁକ୍ତ ହୋଇ ଅଛନ୍ତି ଓ ତାହାଙ୍କ ପ୍ରାର୍ଥନା ମତେ ହାଇକୋର୍ଟ ଏକ ସପ୍ତାହ ମହଲତ ଦେଇ ଅଛନ୍ତି । ଆଗାମୀ ସୋମବାର ମକଦ୍ଦମା ପଡ଼ିବ ଓ ରାଜାଙ୍କ କପାଳରେ କି ଅଛି ଶୀଘ୍ର ଜଣାହେବ । ସମସ୍ତେ ହାଇକୋର୍ଟର ସୁବିଚାରକୁ ଚାହିଁ ବସିଅଛନ୍ତି । ଏ ସମ୍ବାଦ ଲେଖାହେଲା ଉତ୍ତାରୁ ଅବଗତ ହେଲୁଁ ଯେ ରାଜାଙ୍କ ମକଦ୍ଦମା ହାଇକୋର୍ଟର ଫୁଲବେଞ୍ଚ ଅଧିବେଶନରେ ବିଚାରିତ ହେବ । ପ୍ରଧାନ ଜଜ ଗାର୍ଥ ସାହେବ ଏବଂ ଅନ୍ୟ ଦୁଇଜଣ ଜଜ ଯାକ୍‌ସନ ଓ ଏନ୍‌ସିଲ ସାହେବ ମକଦ୍ଦମାର ବିଚାର କରିବେ ।

୫୫୮ । କଟକରୁ ଚାନ୍ଦବାଲି ପର୍ଯ୍ୟନ୍ତ ଜାହାଜ ବନ୍ଦୋବସ୍ତ ।

ଗବର୍ଣ୍ଣମେଣ୍ଟଙ୍କ ଆଜ୍ଞାକ୍ରମେ କଟକଠାରୁ ଚାନ୍ଦବାଲି ପର୍ଯ୍ୟନ୍ତ ପ୍ରତି-ସପ୍ତାହରେ କେନାଲ ଓ ନଦୀବାଟେ ଜାହାଜ ଯାତାୟତ କରିବାର ବନ୍ଦୋବସ୍ତ ହୋଇଅଛି । ଏକଥା ଆମ୍ଭେମାନେ ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲୁଁ । କେନ୍ଦ୍ରାପଡ଼ା ନାଲ ଫିଟିବାର ପ୍ରାୟ ଦଶବର୍ଷ ହେଲା ଏତାବତ୍ କାଳ ସାଧାରଣଙ୍କର ଯିବା ଆସିବାର କୌଣସି ବନ୍ଦୋବସ୍ତ ନହେବାରୁ ବଡ଼ କଷ୍ଟ ଜଣା ଯାଉଥିଲା ମଧ୍ୟ ଆମ୍ଭେ କେତେଥର ଏ ବିଷୟରେ ପ୍ରସ୍ତାବ କରିଥିଲୁଁ । ତାହାହେଉ ଏତେଦିନେ ସେପରି ବନ୍ଦୋବସ୍ତ ହେଲା ବଡ଼ ସୁଖର ବିଷୟ ଅଟଇ । ଏ ବନ୍ଦୋବସ୍ତରେ କଟକଠାରୁ କଲିକତାକୁ ଛଦିନରେ ଯିବାର ସୁବିଧା ହେଲା । ଏହି ମାସ ଆରମ୍ଭରୁ ଏ ନିୟମ ପ୍ରଚଳିତ ହେଲା ଓ ଗତ ବୁଧବାର କେତେଗୁଡ଼ିଏ ଯାତ୍ରୀ ନେଇ ଜାହାଜ ଚାନ୍ଦବାଲିକୁ ଗଲା । ଆମ୍ଭେମାନେ ଆଶାକରୁଁ ଯେ ଏଥି ସଙ୍ଗେ ୨ ପ୍ରତ୍ୟେକ ଲକ ସ୍ଥଳଠାରେ ମନୁଷ୍ୟ ନେବାର ଓ ଓହ୍ଲାଇ ଦେବାର ନିୟମ ହେଉ ତାହାହେଲେ ନାଲଦ୍ୱାରା ଲୋକଙ୍କର ଅନେକ ଉପକାର ହେବ ଓ ନାଲର କାର୍ଯ୍ୟକାରିତା ସର୍ବସାଧାରଣ ବିଲକ୍ଷଣ ରୂପେ ବୁଝି ପାରିବେ ।

**( ୧୩ଶ ଭାଗ, ୨୪ । ୪ । ୧୮୭୮, ସଂଖ୍ୟା ୨୧ )**

୫୫୯ । ପୁରୀ ରାଜାଙ୍କ ମକଦ୍ଦମାରେ ହାଇକୋର୍ଟର ନିଷ୍ପତ୍ତି ।

ମୋକଦ୍ଦମାର ସମସ୍ତ ବିବରଣ ଏଥି ପୂର୍ବେ ଲେଖା ଯାଇଅଛି । ବର୍ତ୍ତ-ମାନ କେବଳ ହାଇକୋର୍ଟର ଜଜମାନଙ୍କର ନିଷ୍ପତ୍ତିର ସାରାଂଶ ପ୍ରକାଶ କରୁଅଛୁଁ । ଯଥା:—

ବିଚାରପତି ସର ରିଚର୍ଡ଼ ଗାର୍ଥ— ଆମ୍ଭ ବିବେଚନାରେ ନୈତିକ ଆସାମିଙ୍କ ସମ୍ପର୍କରେ ସେସନ ଜଜଙ୍କ ବିଚାର ବାହାଲ ରହିବାର ଉଚିତ । ଶିବୁଦାସ

ପଞ୍ଚାନନ ଗ୍ରାମରେ କେତେବର୍ଷ ହେଲା ବାସ କରୁଥିଲା । ଏ ଲୋକ ଅତି ପବିତ୍ର ଥିଲା ଓ ସହସ୍ର ସହସ୍ର ଲୋକ ଆରୋଗ୍ୟ ଲାଭ କରିବା କାରଣ ଏହାଙ୍କ ନିକଟକୁ ଯାଉଥିଲେ । ବିଗୁରପତି (ଏହିଠାରେ ଶିବୁଦାସ ମଠରୁ ବାହାରିବାଠାରୁ ମନ୍ଦିପିବା ପର୍ଯ୍ୟନ୍ତ ଯେ ସମସ୍ତ ଘଟନା ଯୋବାନବନ୍ଦୀରୁ ପ୍ରକାଶ ପାଇଅଛି ସେ ସମସ୍ତ ବର୍ଣ୍ଣନ କରି) କହିଅଛନ୍ତି କି ଶିବୁଦାସର ଯୋବାନବନ୍ଦୀ ତାହାର ଗୁରୁଜଣ ସାକ୍ଷୀ ଓ ଗୋସ୍ୱାମି ଦ୍ୱିଜବର ଗୁହାରି ଦ୍ୱାରା ସମସ୍ତ ପ୍ରଧାନ ବିଷୟରେ ପୋଷକତା ହୋଇଅଛି ଓ ତାହା ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ଗ୍ଲାନସନ ସାହେବ ତର୍କ କରନ୍ତି କି ପୁରୀ ରାଜାଙ୍କ ପରି ଜଣେ ପବିତ୍ର ଓ ମହତ୍ ଲୋକଠାରେ ଏପରି ଅପରାଧ ହେବା ଅସମ୍ଭବ । ଆମ୍ଭେ ଏକଥାରେ ଐକ୍ୟ ଅଛୁଁ ଓ ଆମ୍ଭେ ଏହା ଅସମ୍ଭବ ଜ୍ଞାନ କରନ୍ତୁ ଯଦ୍ୟପି କି ରାଜାଙ୍କର ସ୍ୱଭାବ ଦୟାଶୀଳ ଏବଂ ଧାର୍ମିକ ଥିବାର ପ୍ରମାଣ ହୋଇଥାନ୍ତା କିମ୍ବା ସର୍ବସାଧାରଣରେ ଏମନ୍ତ ପ୍ରକାଶ ଥାନ୍ତା ଯେ ପ୍ରମାଣର ଆବଶ୍ୟକ ହୁଅନ୍ତା ନାହିଁ । ଅସାମୀ ପକ୍ଷରୁ ଜଣେ ବଙ୍ଗ ପ୍ରଦେଶର ବିଖ୍ୟାତ ବାରିଷ୍ଟର ନିଯୁକ୍ତ ହୋଇଥିଲେ ସେ ରାଜଗୁରୁ ଅଥବା ଅନ୍ୟ ଗୁହାଙ୍କୁ ରାଜାଙ୍କ ଚରିତ୍ର ବିଷୟରେ ପ୍ରଶ୍ନ କରିଥାନ୍ତେ ଅଥବା ଦୁଇଜଣ ସାକ୍ଷୀ ଦେଇ-ଥାନ୍ତେ । ତାହା ନକରିବା ବଡ଼ ଭାରି କଥା ଅଟଇ ଓ ଏଥିରୁ ଅନେକ ଅର୍ଥ ହୋଇ-ପାରେ । ରାଜା ପବିତ୍ର ଲୋକ ବୋଲି ଏପରି ଅପରାଧ କରିବା ଅସମ୍ଭବ କାରଣ ଏଥିରେ ଲୋକଙ୍କଠାରେ ତାହାଙ୍କର ମର୍ଯ୍ୟାଦା ନଷ୍ଟ ହୁଅନ୍ତା । କିନ୍ତୁ ଏମନ୍ତ ହୋଇପାରେ ଯେ ରାଜା ଆପଣା ପବିତ୍ରତା ଏବଂ ଲୋକଙ୍କ ବିଶ୍ୱାସର ବଳରେ ମନେ କରିଥିବେ ଯେ ସେ ଏପରି ଅପରାଧ କଲେ କେହି ତାହା ବିଶ୍ୱାସ କରିବେ ନାହିଁ ସୁତରାଂ ନିର୍ଭୟରେ ଆପଣାର କୁପ୍ରବୃତ୍ତିକୁ ଚରିତାର୍ଥ କରିଥିବେ । ଗ୍ଲାନସନ ସାହେବଙ୍କ ଦ୍ୱିତୀୟ ଆପତ୍ତି ଏହି ଯେ ଅପରାଧ ବିଷୟରେ ଏକା ଶିବୁଦାସର ସାକ୍ଷ ଅଛି । ମାତ୍ର ଆମ୍ଭ ବିବେଚନାରେ ତାହା ନୁହେଁ । ଚିହ୍ନମାନ ତାହାର ହାସପାତାଲରେ ପଡ଼ି ରହିବା ଏବଂ ଡାକ୍ତରଙ୍କ ଓ ତାହାର ସାକ୍ଷୀ ଏବଂ ଅନ୍ୟାନ୍ୟ ପ୍ରମାଣରୁ ଶିବୁଦାସର କଥା ସତ୍ୟ ବୋଲି ନିଃସନ୍ଦେହ ଜଣା ଯାଉଅଛି । ରାଜା ତାହାକୁ ପୀଡ଼ା ଦେଇ ନଥିଲେ କଦାଚ ତାହାଙ୍କ ନାମରେ ଏମନ୍ତ ଅଭିଯୋଗ କରନ୍ତା ନାହିଁ । ଗ୍ଲାନସନ ସାହେବ ବୋଲନ୍ତି ଯେ କାହା ଦ୍ୱାରା କିପରି ଶିବୁଦାସର ଏ ଅବସ୍ଥା ହେଲା ତାହା ଆସାମିମାନେ କହିବାକୁ ବାଧ୍ୟ ନୁହନ୍ତି । ମାତ୍ର ବାବାଜୀ ପ୍ରାୟ ଧାର୍ମିକ ଲୋକ କାହିଁକି ମୃତ୍ୟୁ କାଳରେ ଏପରି କହିବ ତାହାର କିଛି କାରଣ ପ୍ରଦର୍ଶିତ ନହେବା ସ୍ଥଳେ ଅବଶ୍ୟ ତାହାର କଥାକୁ ବିଶ୍ୱାସ କରିବାକୁ ହେବ । ବାରିଷ୍ଟରମାନେ ଆହୁରି କହିଅଛନ୍ତି କି ବାବାଜୀର ସାକ୍ଷୀମାନେ ବିଶ୍ୱାସ ଯୋଗ୍ୟ ନୁହନ୍ତି କାରଣ ସେମାନେ ଶୋଇଥିବା ବାରଣ୍ଡାରେ କଏଦୀ ହେବା କଥାକୁ ଅସ୍ୱୀକାର କରିଅଛନ୍ତି । ଆମ୍ଭ ବିବେଚନାରେ ଏ ଆପତ୍ତି ଗୁରୁତର ନୁହଇ ଯେହେତୁ ୫୬ଫୁଟ ଲମ୍ବା ବାରଣ୍ଡାର ଏକପାଖରେ ଛୋଟିଏ ସାମାନ୍ୟ ଘଟଣା ଆଲୁଅରେ ଗୁରୁ ପାଞ୍ଚଜଣ

ବସି କଚେରୀ କରିବା କଥା ଏମନ୍ତ ପ୍ରଧାନ ବ୍ୟାପାର ହୋଇଲା ଯେ ତାହା ସମସ୍ତଙ୍କର ମନକୁ ଆକର୍ଷଣ କରିବ । ବିଶେଷ ସେଦିନ କଚେରୀ ହେବା ନଥିଲା ଦୂର ଦିଗଲାଗି ଲୋକ ଆସିଥିଲେ ଓ ୪୦ । ୫୦ଙ୍କା ଯୋଗରେ ଆଦାୟ ହୋଇଥିଲା । ଏଥିପାଇଁ ରାଜା ଦଶଘଣ୍ଟା ପର୍ଯ୍ୟନ୍ତ କଚେରୀ ହେବା ମନକୁ ଆସୁନାହିଁ । ଜନ୍‌ସନ ସାହେବ କହନ୍ତି କି ପୁଲିସ ଷଡ଼ଯନ୍ତ୍ର କରି ରାଜାଙ୍କ ନାମରେ ଏ ମକଦ୍ଦମା କରିଅଛନ୍ତି ମାତ୍ର ଆମ୍ଭ ବିବେଚନାରେ ତାହା ନିତାନ୍ତ ଅମୂଳକ । ପୁଲିସ ସଙ୍ଗେ ରାଜାଙ୍କର ଶତ୍ରୁତା ଥିବାର ପ୍ରକାଶ ନାହିଁ ଏ ରାଜାଙ୍କପରି ଦାନଶୀଳ ଲୋକଙ୍କ ନାମରେ ପୁଲିସ ମିଥ୍ୟା ଅଭିଯୋଗ କଲେ ନଗର-ବାସୀ ସମସ୍ତେ ପୁଲିସ ଉପରେ ଖଡ୍ଗ ହସ୍ତ ହୁଅନ୍ତେ ଏପରି ଶଙ୍କା ଅବଶ୍ୟ ପୁଲିସ କରନ୍ତେ । ଅତଏବ ଆମ୍ଭ ବିବେଚନାରେ ରାଜାଙ୍କ ଉପରେ ଅପରାଧ ପ୍ରମାଣ ହେଉଅଛି । ନ୨ମ୍ବର ଆସାମୀ ସୁନ୍ଦରଜନ ଉପାଧ୍ୟା ଉପରେ ମଧ୍ୟ ବଳିଷ୍ଠ ପ୍ରମାଣ ଅଛି । ସେ ଲୋକ ମୋଟା ଓ ବଳବାନ ଏବଂ ତାହାର ଚେହେରା ଲମ୍ବା ପ୍ରକାର ଅଟଇ । ବାବାଜୀ ନଅର ମଧ୍ୟକୁ ଯିବାବେଳେ ତାହାକୁ ଦେଖିଥିଲା, ପୀଡ଼ା ସମୟରେ ତାହାକୁ ଦେଖିଲା ସୁନାର ସେହି ଗୃହରେ ବାବାଜୀ ଯେ ଶୋଇଥିଲା ଓ ଗୋଳମାଳ ଶୁଣି ତାହା ବୁଝିବାକୁ ଗଲାନାହିଁ । ଅତଏବ ଏ ବ୍ୟକ୍ତିକୁ ଚିହ୍ନିବା ବିଷୟରେ କିଛି ସନ୍ଦେହ ନାହିଁ । ନ୩ମ୍ବର ଆସାମୀ ନାରାୟଣ ବାହାନଟେ ୬୯ ବର୍ଷର ବୁଢ଼ା ଦାଢ଼ି ଓ ମୁଣ୍ଡବାଳ ପାଚି ଯାଇଛି ଅତଏବ ଏହାର ଚେହେରା ମଧ୍ୟ ନିର୍ଦ୍ଦିଷ୍ଟ ପ୍ରକାରର ଅଟଇ । ବାବାଜୀ ଏହାକୁ 'ଏହି ବୁଢ଼ା' ବୋଲି ଚିହ୍ନିଲା ଓ ଏହାର ସଫାଇ କିଛି କାର୍ଯ୍ୟର ନୁହଇ ବରଂ ସକାଳେ ନଅର ଭିତରୁ ବାହାର ଯିବାର ଦେଖା ଯାଇଥିଲା । ଅତଏବ ଏହାର ଚିହ୍ନଟ ବିଷୟରେ ସନ୍ଦେହ ନାହିଁ । ଅନ୍ୟ ଦୁଇଜଣ ଆସାମିଙ୍କୁ ଆମ୍ଭେ ଦୋଷୀ କରନ୍ତୁ ମାତ୍ର ଆମ୍ଭର ସାଙ୍ଗୀ ବାବୁରପଣ୍ଡିଙ୍କ ସନ୍ଦେହ ହେବାରୁ ସେମାନଙ୍କୁ ଛାଡ଼ି ଦେଉଅଛୁଁ । ପରିଶେଷରେ ବକ୍ତବ୍ୟ ଏହିଯେ ଆସାମୀମାନେ ଶିବୁଦାସଙ୍କୁ ବଧ କରିବାର ମନସ୍ଥ କରିନଥିବେ କିନ୍ତୁ ଯେପରି ପୀଡ଼ା ତାହାକୁ ଦେଲେ ସେଥିରେ ମୃତ୍ୟୁ ହେବ ବୋଲି ତାହାଙ୍କୁ ଜଣା ନଥିଲେହେଁ ଯେଦ୍ୟପି ବାସ୍ତବରେ ମୃତ୍ୟୁ ଘଟନା ହେଲା ଓ ମୃତ୍ୟୁ ଘଟିବାରେ ଏମନ୍ତ ସମ୍ଭାବନା ଥିଲା ତେବେ ସେମାନେ ହତ୍ୟା ଅପରାଧକରିଅଛନ୍ତି ।

ଚେମ୍ବରଟେ—ଜାନସନ ସାହେବ— ମୋକଦ୍ଦମାର ପ୍ରଧାନ ଘଟନା-ମାନ ବର୍ଣ୍ଣନା କରି କହିଅଛନ୍ତି ଯେ ରାଜାଙ୍କ ଚିହ୍ନଟ ବିଷୟରେ ଭୁଲହେବା ଅସମ୍ଭବ ବିବେଚନା କରି ବାରିଷ୍ଟରମାନେ ସମୁଦାୟ ମୋକଦ୍ଦମାକୁ ମିଥ୍ୟାହେବାର ତର୍କ କରିଅଛନ୍ତି । ଏଥିକୁ ମୋକଦ୍ଦମା ମିଛ ହୋଇଥିଲେ ଏହା ପୂର୍ବରୁ ରଚିତ ଏବଂ ସମସ୍ତଙ୍କ ସହିତ ତହିଁର ମନ୍ତ୍ରଣା ହୋଇଥିବ । କାରଣ ପୀଡ଼ା ଉତ୍ତାରୁ ଶିବୁଦାସ ତାହା ରଚନା କରିବାକୁ ଅବକାଶ ପାଇନଥିଲା ଅତଏବ ସେ ପୂର୍ବରୁ ଅପଣା ସଙ୍ଗିମାନଙ୍କୁ ନଅର

ଦ୍ୱାରରେ ବସାଇ ରଖିଥିବ । କୌଣସି ଲୋକଦ୍ୱାରା ଗାଞ୍ଜା ପାଇଲା ଉତ୍ତାରୁ ତତ୍କ୍ଷଣାତ୍ ଆପଣା କମ୍ପକୁ ଦମାନ ରାଜାଙ୍କ ଉପରେ ଅପରାଧ ପକାଇ ଦେବାକୁ ସବୁକଥା ସ୍ଥିର କରିଥିବ । ମାତ୍ର କି ସକାଟେଶ ଏହା କହନ୍ତି । ରାଜାଙ୍କୁ ଲୋକେ ଜଳନ୍ତ ବିଷ୍ଣୁ ବୋଲି ମାନନ୍ତି । ତାହାଙ୍କ ସଙ୍ଗେ କାହାରି ବିବାଦ ବା ମନାନ୍ତର ଥିବାର ପ୍ରକାଶନାହିଁ ଓ ବ୬୪ବର୍ଷର ଜଣେ ଯୁବାକୁ ଅପରାଧ କଲେ ତହିଁରେ ବାବାଜୀ କିମ୍ବା ଅନ୍ୟ କୌଣସି ବ୍ୟକ୍ତିର କିଛି ଲାଭର ସମ୍ଭାବନା ନାହିଁ । ଏଣୁ ଏପରି ଆପତ୍ତି ଅଦାଲତରେ ଆଗତ କରିବା କେବଳ ଅଦାଲତକୁ ଅପମାନ କରିବା ତୁଲ୍ୟ ଅଟଇ । ଆଉ ରାଜାଙ୍କ ମହତ୍ତ୍ୱ ଓ ପବିତ୍ର ଚରିତ୍ରହେତୁରୁ ଏପରି ଅପରାଧ ଅସମ୍ଭବ ଥିବାର ଯେ ଆପତ୍ତି ହୋଇଅଛି ତହିଁକି ବକ୍ତବ୍ୟ ଏହିଯେ କୌଣସି ପ୍ରମାଣ ନଦେଇ ଏପରି ଆପତ୍ତି କରିବାର ଦେଖି ଆମ୍ଭେ ଆଶ୍ଚର୍ଯ୍ୟ ହେଲୁଁ । କଥିତ ହୋଇଅଛି ଯେ ମାର୍କଷ୍ଟେଣ୍ଟ ସାହେବ ନଅଁଲୁ ଯିବାବେଳେ ରାଜାଙ୍କର ଖାଦ୍ୟ ସାମଗ୍ରୀ ମାଗୁଥିଲେ ମାତ୍ର ରାଜା ଏମନ୍ତ ଧର୍ମ ପରାୟଣ ଯେ ଗୋଟିଏ ଚଢ଼େଇକୁ ସୁଦ୍ଧା ଦୁଃଖ ଦଅନ୍ତି ନାହିଁ ଏପରି ପ୍ରମାଣ କରିବାର ଚେଷ୍ଟା ହୋଇ ନାହିଁ । ଆଉ ଯେମନ୍ତ ରାଜାଙ୍କ ପକ୍ଷରେ ଏପରି ଅପରାଧ କରିବା ଅସମ୍ଭବ ସେମନ୍ତ ଜଣେ ବୃଦ୍ଧ ଧାର୍ମିକ ବୈରାଗୀ ପକ୍ଷରେ ଦେବତୁଲ୍ୟ ପୁରୀରାଜାଙ୍କ ଉପରେ ଏପରି ମିଥ୍ୟା ଅଭିଯୋଗ କରିବା ଅସମ୍ଭବ । ଅତଏବ ରାଜାଙ୍କର ଅପରାଧ ବିଷୟରେ କିଛି ସନ୍ଦେହ ନାହିଁ । ଅନ୍ୟ ଅପରାଧୀଙ୍କ ମଧ୍ୟରୁ ସୁଦର୍ଶନ ଉପାଧ୍ୟା ଓ ନାରାୟଣ ବାହିନପତିର ମୂର୍ତ୍ତି ଯେପରି ଚିହ୍ନିତ ରୂପେ ଜଜ ସାହେବ ଲେଖିଅଛନ୍ତି ଅନ୍ୟ ଦୁଇଜଣଙ୍କର ସେପରି ଲେଖାନାହିଁ ଓ ଶିବୁଦାସ ଏହାଙ୍କୁ ପୂର୍ବେ ଦେଖିଥିଲା ଏମନ୍ତ ସମ୍ଭବ ହେଉନାହିଁ ଏବଂ ଏ ଦୁଇଜଣ ବିଷୟରେ ଅନ୍ୟ କୌଣସି ପ୍ରକାର ଗୌଣ ପ୍ରମାଣ ନ ଥିବାରୁ ଆମ୍ଭେ ଏହାଙ୍କୁ ସନ୍ଦେହର ଫଳ ଦେଲୁଁ । ଆମ୍ଭ ବିବେଚନାରେ ମୋକଦ୍ଦମାର ତଦାରଖ ଅଥବା ବିଗୁରର ଦୋଷ ହେତୁରୁ ଏପରି ଫଳ ଘଟିଅଛି । ଶେଷୋକ୍ତରେ ଆସେସରଙ୍କ ବିଷୟରେ ଆମ୍ଭର ବକ୍ତବ୍ୟ ଏହି ଯେ ହିନ୍ଦୁ ଆସେସରଙ୍କ ପକ୍ଷରେ ଏ ମୋକଦ୍ଦମାର ବିଗୁର ବଡ଼ ଦାୟ ଅଟଇ ଏବଂ ବିଶେଷ ରୂପେ ଯୋଗ୍ୟ ଥିବା ଆସେସର ଏଥିପାଇଁ ନିଯୁକ୍ତ ହୋଇ ଥିବାର କୌଣସି ଚିହ୍ନ କାଗଜାତରୁ ପାଇବା ଯାଉନାହିଁ ।

ବିଗୁରପତି ଏନସଲି ସାହେବ—ମୋକଦ୍ଦମାର ବୃତ୍ତାନ୍ତମାନ ପୂର୍ବସ୍ଥାନ୍ତୁ ବର୍ଣ୍ଣନକରି କହୁଅଛନ୍ତି କି ଶିବୁଦାସ ଙ୍କ ଥର ଯୋବାନବନ୍ଦୀରେ କେତେଗୁଡ଼ିଏ ଗୁରୁତର ଅମେଳ ଅଛି ଓ ସମ୍ଭବ ହୁଅଇ ଯେ ସତ୍ୟସଙ୍ଗେ ମିଥ୍ୟା ଯୋଗକରି ଅତ୍ୟୁକ୍ତିର ଦୋଷରେ ପଡ଼ିଅଛି । ମାତ୍ର ଏହା ଆଶ୍ଚର୍ଯ୍ୟ ନୁହେ । ଏ ଦେଶରେ ସଚରାଚର ଦେଖା-ଯାଏ ଯେ କୌଣସି ଘଟନାର ମୂଳ ସତ୍ୟ ଥିଲେହେଁ ଯେତେଥର ତାହା କଥିତ ହୁଅଇ କ୍ରମଶଃ ବୃଦ୍ଧି ହେଉଥାଏ ଏବଂ ବାବାଜୀର ଅବସ୍ଥା ବିବେଚନା କଲେ ସେ-

ସେପ୍ରକାର ଘଟିବା ଆଶ୍ଚର୍ଯ୍ୟ ନୁହେଁ । କିନ୍ତୁ ଏକ ବ୍ୟକ୍ତିର ଇଜହାରର ଏକକଥା ମିଥ୍ୟା ହେଲେ ତାହାର ସମସ୍ତ କଥା ମିଥ୍ୟା ହେବ ଏପରି ନିୟମ ବିଲାତରେ ପ୍ରଚଳିତ ଅଛି ଏଠାରେ ତାହା ପ୍ରଚଳିତ କରିବାଠାରୁ ସମସ୍ତ ଫଉଜଦାରୀ ଅଦାଲତ ଉଠାଇ ଦେବା ଭଲ । ଅତଏବ ଆମ୍ଭ ବିବେଚନାରେ ଶିବୁଦାସର ଅନ୍ୟ ଇଜହାରମାନ ଅଶୁଦ୍ଧ ହୋଇଥିଲେହେଁ ତା ୨୪ରିଖରେ ସେ ଯାହା ଇଜହାର ଦେଇଅଛି ତାହା ସତ୍ୟ ଅଟଇ । ଅତଏବ ରାଜାଙ୍କ ଅପରାଧ ବିଷୟରେ କିଛି ସନ୍ଦେହ ନାହିଁ । ଅନ୍ୟ ଆସାମିଙ୍କ ମଧ୍ୟରୁ ଦୁଇଜଣର ଅକୁଚ ଚିହ୍ନିତ ପ୍ରକାରର ଅଟଇ । ଶନିବାର ଦିନ ସେମାନେ ନଅର ମଧ୍ୟରେ ଥିବାର ଅନ୍ୟ ପ୍ରମାଣ ଅଛଇ ଅତଏବ ଏହାଙ୍କ ଉପରେ ଅପରାଧ ପ୍ରମାଣ ହେଲା ଓ ଗୋପୀ ରାଉତ ଓ ଗୋପାଳଦାସ ପକ୍ଷରେ ସନ୍ଦେହ ହେବାରୁ ସେମାନଙ୍କୁ ଛାଡ଼ ଦିଆଗଲା ।

ପାଠକମାନେ ଦେଖିବେ ଯେ ହାଇକୋର୍ଟ ଆସାମିଙ୍କର ସମସ୍ତକଥା ଶୁଣି ଅତ୍ୟନ୍ତ ଧୀର ଭାବରେ ଏ ମୋକଦ୍ଦମାର ବିଚାର କରିଅଛନ୍ତି କିନ୍ତୁ ଆମ୍ଭମାନଙ୍କର ଦୁଇ ତିନ ବିଷୟରେ ସନ୍ଦେହ ରହିଗଲା । ଇଭାନ୍ସ ସାହେବ ରାଜାଙ୍କର ଚରିତ୍ର ବିଷୟରେ କିଛି ପ୍ରମାଣ ଦେଇନାହାନ୍ତି ; ଯେବେ ସେ ଦେଇଥାନ୍ତେ ଓ ସେ ପ୍ରମାଣ ତୃପ୍ତି ଜନକ ହୋଇଥାନ୍ତା ତେବେ କିସ ହୁଅନ୍ତା । ଯେବେ ତହିଁରେ ରାଜା ମୁକ୍ତି ପାଇ ପାରନ୍ତେ ତେବେ କି ବାରିଷ୍ଟରଙ୍କ ଅକ୍ଷମତାରୁ ସେ ଦଣ୍ଡ ପାଇବାର ବୋଲାଯିବ ? ସୁରଜନ ଉପାଧ୍ୟା ଓ ନାରାୟଣ ବାହାନଟଙ୍କର ବିଶେଷ ଚିହ୍ନ କିଛି ଶିବୁଦାସର ଯୋବାନବନ୍ଦିରେ ନାହିଁ ଓ ସେପରି ଆଉ କେହିଲୋକ ଚିହ୍ନିତ ହେବାକୁ ଆଣୀତ ହୋଇଥିବା ଲୋକଙ୍କ ମଧ୍ୟରେ ଥିଲା କି ନାହିଁ ତହିଁର ନିଦର୍ଶନ ନାହିଁ । ପୁଲିସ ଇନସ୍ପେକ୍ଟର ଓ ଜଜ ସାହେବ ଏକ ବ୍ୟକ୍ତିକୁ ଡେଙ୍ଗା ଓ ଅନ୍ୟ ବ୍ୟକ୍ତିକୁ ବୁଢ଼ା ବୋଲି ଚିହ୍ନିତ କରିଦେବାରୁ କି ଏମାନେ ଧରା ପଡ଼ିଲେ ଓ ସେହିପରି ଅନ୍ୟ ଦୁଇବ୍ୟକ୍ତିଙ୍କ ମଧ୍ୟରୁ ଜଣକୁ ବାଙ୍ଗରା ଓ ଜଣକୁ ଭେଣ୍ଡା ବୋଲି ଜଜ ସାହେବ ଲେଖିଥିଲେ ସେମାନେ ଦଣ୍ଡ ପାଇବାର କି ଅଟକ ଥିଲା ? ଯେଉଁମାନେ ଆସେସର ନିଯୁକ୍ତ ହୋଇ ଥିଲେ ସେମାନେ ଯେ ଯୋଗ୍ୟ ନିରପେକ୍ଷ ଏବଂ କୁସଂସ୍କାରବିହୀନ ଲୋକ ଏବଂ ସରଳ ଭାବରେ ଆପଣା ମତ ଦେଇଥିଲେ ଏଥିର ସନ୍ଦେହ ନାହିଁ । ଜଜ ସାହେବ ଯେବେ ତାହାଙ୍କର ପରିଚୟ ଆପଣା ରାୟରେ ଲେଖିଥାନ୍ତେ ତେବେ ବିଚାରପତି ଯାକସନ ସାହେବ କି ଆପଣା ମତର କୌଣସି ଅଂଶ ପରିବର୍ତ୍ତନ କରନ୍ତେ ? ଏହି ସନ୍ଦେହମାନ ଭଞ୍ଜନ ହୋଇଥିଲେ ଆମ୍ଭେମାନେ ବଡ଼ ଆନନ୍ଦିତ ହୋଇଥାନ୍ତୁ ଆଉ ସମସ୍ତ ବିଷୟରେ ମାନ୍ୟବର ବିଚାରପତିମାନେ ଯାହା ବ୍ୟକ୍ତ କରିଅଛନ୍ତି ତାହା ସମ୍ପୂର୍ଣ୍ଣ ଯୁକ୍ତି ଯୁକ୍ତ ଅଟଇ ସନ୍ଦେହ ନାହିଁ ।

## ( ୧୩ଶ ଭାଗ, ୮ । ୬ । ୧୮୭୮, ସଂଖ୍ୟା ୨୩ )

*୬୦ । ହିନ୍ଦୁ ପେଟ୍ରିଅଟର ଜଣେ ପତ୍ରପ୍ରେରକ ଲେଖିଅଛନ୍ତି କି 'ମେଦିନୀ-ପୁର ଜିଲ୍ଲାର କାନ୍ଥି ସବଡିଭିଜନ ବାଲେଶ୍ୱର ସଙ୍ଗେ ମିଶିବାର ପ୍ରସ୍ତାବ ହେଉଅଛି । ଏ କଥା ସତ୍ୟ ହେଲେ ଭଲ ହେବ ନାହିଁ କାରଣ ଏଥିରେ ସରକାରଙ୍କର କିଛି ଲାଭ ନାହିଁ ଅଥଚ ଲୋକଙ୍କର ଅନର୍ଥକ ଠକୁଣ ଓ ବ୍ୟୟ ଅଧିକ ହେବ । କାନ୍ଥି ବାଲେଶ୍ୱର ସଙ୍ଗେ ଯୋଗହେଲେ ବାଲେଶ୍ୱରରେ ଜଣେ ସ୍ୱତନ୍ତ୍ର ଜଜ ରହିବାର ପ୍ରୟୋଜନ ହେବ ।' ଅତଏବ ଉକ୍ତ ପତ୍ରପ୍ରେରକ ପ୍ରସ୍ତାବ କରନ୍ତି ଯେ କାନ୍ଥିକୁ ବାଲେଶ୍ୱର ସଙ୍ଗେ ଯୋଗ ନକରି ବାଲେଶ୍ୱର ଜିଲ୍ଲାକୁ ମେଦିନୀପୁର ସଙ୍ଗେ ମିଶାଇଦେଲେ ଭଲହେବ । କାରଣ ଦୁଇଜିଲ୍ଲା ପରସ୍ପରକୁ ନିକଟବର୍ତ୍ତୀ ଅଟନ୍ତି । ଏଥିକୁ ହିନ୍ଦୁପେଟ୍ରିଅଟ ବୋଲନ୍ତି କି ବାଲେଶ୍ୱର ଓ ମେଦିନୀପୁରର ରାଜସ୍ୱ ସଂକ୍ରାନ୍ତ ନିୟମମାନ ପୃଥକ ଥିବାରୁ ଏ ଦୁଇଜିଲ୍ଲାକୁ ଏକତ୍ର କରିବା ସୁବିଧା ହେବ ନାହିଁ । ଆମ୍ଭେମାନେ ଆଶାକରୁଁ କି ଯେ କୌଣସି ବନ୍ଦୋବସ୍ତରେ ଯେତେ ସ୍ଥାନରେ ଓଡ଼ିଆଙ୍କ ବସତି ଏବଂ ଓଡ଼ିଆଭାଷା ପ୍ରଚଳିତ ଅଛି ସେସମସ୍ତଙ୍କୁ ଓଡ଼ିଶା ଅନ୍ତର୍ଗତ କଲେ ଓଡ଼ିଶାର ଅନେକ ଉପକାର ହେବ ।

## ( ୧୩ଶ ଭାଗ, ୧୫ । ୬ । ୧୮୭୮, ସଂଖ୍ୟା ୨୪ )

*୬୧ କଟକ ମେଡିକଲ ସ୍କୁଲ ।

କଟକ ମେଡିକଲ ସ୍କୁଲରେ ତିନୋଟି ବୃତ୍ତି ଖାଲିଥିଲା । ଗତ ମାସ ଓଗଷଦନ ପୂର୍ଣ୍ଣହେଲା । ତହିଁକି ଲକ୍ଷ କରି ଜଣେ ପତ୍ରପ୍ରେରକ ଏହି ପ୍ରଶ୍ନ କରୁଅଛନ୍ତି କି "ଯେଉଁମାନେ ପ୍ରାୟ ୧୦ । ୧୨ ପୁରୁଷରୁ ଅଧିକ ଏହି ଓଡ଼ିଶାରେ ଗତ କଲେଣି ଏବଂ ଓଡ଼ିଆଙ୍କ ସଙ୍ଗେରେ ମିଶି ଗଲେଣି ଏବଂ ଯେଉଁମାନଙ୍କୁ ସ୍ୱଭାବତଃ ଓଡ଼ିଆବୋଲି ଜଣାଯାଏ ସେମାନେ କିପରି ଜୀବନ ଧାରଣ କରିବେ ।" ଶ୍ରୀଯୁକ୍ତ ରେବନ୍‌ସା ସାହେବ ଏମାନଙ୍କୁ ଓଡ଼ିଆବୋଲି କହୁ ନଥିଲେ, ବୋଧହୁଅଇ ଡାକ୍ତର ଷ୍ଟିୱାର୍ଟ ସାହେବ ସେହି ମତାବଲମ୍ବୀ ଅଟନ୍ତି । ମାତ୍ର ଆମ୍ଭମାନଙ୍କର ନୂତନ କମିଶ୍ନର ଶ୍ରୀଯୁକ୍ତ ସ୍ମିଥ ସାହେବ ସେପରି ନୁହନ୍ତି, ତେମନ୍ତ ହୋଇଥିଲେ ସେ କି ବାବୁ କାର୍ତ୍ତିକଚନ୍ଦ୍ର ରାୟ-ଚୌଧୁରୀଙ୍କୁ ଏତେ ଶୀଘ୍ର ସବଡେପୁଟୀ କରାଇ ଦିଅନ୍ତେ ? ନୂତନ କମିଶ୍ନରଙ୍କ ମତରେ ଯେଉଁମାନେ ଦୁଇଏକ ପୁରୁଷ ଓଡ଼ିଶାରେ ବାସ କରିଅଛନ୍ତି ସେମାନେ ଓଡ଼ିଆ, ସ୍ଥାନୀୟ ସମସ୍ତ ହାକିମ ଏହିମତକୁ ଅବଲମ୍ବନ କଲେ ଏ ପକ୍ଷରେ କାହାରି କିଛି ଗୁହାରି କରିବାର ବାଟ ଥିବ ନାହିଁ ।

## ( ୧୩ଶ ଭାଗ, ୧୩ । ୭ । ୧୮୭୮, ସଂଖ୍ୟା ୨୮ )

### ୫୭୨ । ଉତ୍କଳର ଆଶା ଓ ନୈରାଶ୍ୟ

ଗତ ସପ୍ତାହ ଗୁରୁବାର ସନ୍ଧ୍ୟା ସମୟରେ ପ୍ରିଣ୍ଟିଂ କମ୍ପାନିଙ୍କ କୋଠାରେ ଉତ୍କଳ ସଭାର ବାର୍ଷିକ ଅଧିବେଶନ ହୋଇଥିଲା । ବାବୁ ରାଧାନାଥ ରାୟ ସଭାପତି ପଦରେ ବରଣ ହେବା ଉତ୍ତାରୁ ସଭାର ବାର୍ଷିକ ବିଜ୍ଞାପନ ସମ୍ପାଦକ ମହାଶୟ ପାଠ କଲେ । ତଦନନ୍ତରୁ ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ ଶୀର୍ଷାଙ୍କିତ ବିଷୟରେ ଗୋଟିଏ ବକ୍ତୃତା କଲେ । ପ୍ୟାରୀ ବାବୁଙ୍କ ବକ୍ତୃତା କରିବା ଉକ୍ତ ବିଷୟରେ ଅନେକ-ଥର ଆମ୍ଭେମାନେ ଲେଖିଅଛୁଁ ସୁତରାଂ ସେ ମତରେ ଆଉ କିଛି ବୋଲିବା ଅନାବଶ୍ୟକ କେବଳ ସେ ଯେଉଁ କଥାମାନ ଉକ୍ତ ବକ୍ତୃତାରେ କହିଥିଲେ ତାହା କିଞ୍ଚିତ୍ ପାଠକଙ୍କୁ ଜଣାଇବାର ଆବଶ୍ୟକ ବିବେଚନା କରି ଏ ପ୍ରସ୍ତାବର ଅବତାରଣା କରୁଅଛୁଁ । ପ୍ରଥମେ ବିଷୟଟି ଦୁର୍ବୋଧାକ୍ରାନ୍ତ ପରି ଜଣା ଯିବାରୁ ଆମ୍ଭେମାନେ ବ୍ୟସ୍ତ ହୋଇଥିଲୁଁ କିନ୍ତୁ ସବିଶେଷ ଅବଗତ ହେବାରୁ ସେ ବ୍ୟସ୍ତ ଦୂରୀଭୂତ ହେଲା । ବକ୍ତା ମହାଶୟ କହିଲେ କି ପୃଥିବୀ ସଙ୍ଗେ ତୁଳନାକଲେ ଉନ୍ନତ ପ୍ରସଙ୍ଗରେ ବର୍ତ୍ତମାନ ଉତ୍କଳର ବାଲ୍ୟାବସ୍ଥା ଏବଂ ଭାରତବର୍ଷ ସଙ୍ଗେ ତୁଳନାକଲେ ଯୌବନାବସ୍ଥା ଅଟଇ । ଏଥିରେ ମର୍ମ ଏହି ଯେ ଇଉରୋପ ଓ ଆମେରିକାରେ ଯେମନ୍ତ ଉନ୍ନତ ହୋଇଅଛି ଓଡ଼ିଶା ତାହା ଶିକ୍ଷା କରୁଅଛି ଓ ଭାରତବର୍ଷର ଅନ୍ୟାନ୍ୟ ସ୍ଥାନପରି ଓଡ଼ିଶାର କେତେକ ଉନ୍ନତ ହୋଇଥିଲେ ବଙ୍ଗଳା କିମ୍ବା ବମ୍ବେଇ ସଙ୍ଗେ ସମକକ୍ଷ ହୋଇନାହିଁ । ଯଥା ଉପେନ୍ଦ୍ର ଭଞ୍ଜପରି ଜଣେ କବି ଓଡ଼ିଶାରେ ହୋଇ ଥିଲେହେଁ ସେ କାଳିଦାସ କିମ୍ବା ବ୍ୟାସଙ୍କ ସରି ନୁହନ୍ତି । କିନ୍ତୁ ବର୍ତ୍ତମାନ କାଳରେ ଓଡ଼ିଶା ଉନ୍ନତ ଜଗତକୁ ପଦଗୃଳନା କରୁଅଛି; ନ କରିବ କାହିଁକି ତାହା ତ ଏ ଯୁଗର ଧର୍ମ ଅଟଇ ଅର୍ଥାତ୍ ଉନ୍ନତ ଉନବିଂଶ ଶତାବ୍ଦୀର ଧର୍ମ ଅଟଇ । ଆଜିକାଲି ଗୃହିଆଡ଼ୁ ଉନ୍ନତିର ପରିଚୟ ପ୍ରାପ୍ତ ହେଉଅଛି । ଯାପାନ ଦ୍ୱୀପ ଉନ୍ନତିକି ଲଭିଲି, ଶ୍ୟାମର ରାଜା ଉନ୍ନତିର ବିଶେଷ ଚେଷ୍ଟା କରୁଅଛନ୍ତି ଏବଂ ଏତେ ଅସଭ୍ୟ ଯେ ଓଡ଼ିଶାର କନ୍ଧମାନେ ସେମାନେ ସୁଦ୍ଧା ସ୍ୱେଚ୍ଛା ପୂର୍ବକ କର ଦେଇ ଶିକ୍ଷାଲୟ ଦ୍ୱାରା ଆପଣାର ଉନ୍ନତିର ଚେଷ୍ଟା କରୁଅଛନ୍ତି । ଏହି କାଳର ମାହାତ୍ମ୍ୟରେ ଓଡ଼ିଶା ଉନ୍ନତ ଜଗତକୁ ବୃଦ୍ଧି କରୁଅଛି । ଏହାର ଆଶା ଅନ୍ୟାନ୍ୟ ଦେଶପରି ଉନ୍ନତ ହେବ କିନ୍ତୁ ଭାରି ନୈରାଶ୍ୟ ଏହା ସଙ୍ଗେ ୨ ରହିଅଛି । ଯଥା;— ଏଠାରେ ମଧ୍ୟମ ଶ୍ରେଣୀ ଲୋକର ସଂଖ୍ୟା ଅତ୍ୟନ୍ତ ଊଣା, ମଧ୍ୟମ ଶ୍ରେଣୀରେ ବ୍ରାହ୍ମଣ କରଣ ଖଣ୍ଡାୟତ, ଏହାଙ୍କ ଦ୍ୱାରା ସର୍ବଦେଶରେ ଉନ୍ନତି ସାଧିତ ହୁଅଇ । ଆଉ ଏଠାଲୋକ ଶ୍ରମଶୀଳ ନୁହନ୍ତି, ଏହାଙ୍କର ଅଧ୍ୟବସାୟ ବାଣିଜ୍ୟାଦିର ଆଡମ୍ବର ଏଠାରେ ନାହିଁ । ସ୍ତ୍ରୀ ଶିକ୍ଷାର ଉନ୍ନତ ହୋଇନାହିଁ ।

ଇତ୍ୟାଦି କାରଣରୁ ବକ୍ତା ଉତ୍କଳର ଉଦାହରଣ ନୈରାଶ୍ୟ ପ୍ରକାଶ କଲେ । ଏହାଙ୍କ ବକ୍ତୃତା ଶେଷ ହେଲା ଉତ୍ତାରୁ ସଭାପତି ରାଧାନାଥ ରାୟ କେତେଗୁଡ଼ିଏ ସଦ୍ ଯୁକ୍ତି ଦେଖାଇ ବକ୍ତାଙ୍କ ପ୍ରଦର୍ଶିତ କେତେକ ହେତୁର ଅସାରତା ଦେଖାଇଲେ ଓ ନୈରାଶ୍ୟର କାରଣ ନଥିବାର ପ୍ରତିପନ୍ନ କଲେ । ରାଧାନାଥବାବୁ ବକ୍ତା ନୁହନ୍ତି ସୁତରାଂ ଅଳ୍ପ କଥାରେ ଆପଣାମତ ପ୍ରକାଶକରି କ୍ଷାନ୍ତ ରହିଲେ କିନ୍ତୁ ତାହାଙ୍କର ମଧୁର ବଚନରେ ସମସ୍ତେ ସନ୍ତୁଷ୍ଟ ହୋଇଥିଲେ ଏବଂ ପ୍ରତି କଥାରେ ତାହାଙ୍କର ନମ୍ର, ସ୍ୱଭାବ ଓ ଗମ୍ଭୀର ବୁଦ୍ଧିର ପରିଚୟ ପାଇ ଶ୍ରୋତାମାନେ ମୋହିତ ହେଲେ ।

## ( ୧୩ଶ ଭାଗ, ୧୦ । ୮ । ୧୮୭୮, ସଂଖ୍ୟା ୩୨ )

୬୭୩ । ସାପ୍ତାହିକ ସମ୍ବାଦ ।

ପୁରୀର ରାଜା ପ୍ରେସିଡେନ୍‌ସି ଜେଲର ଛାପାଖାନାରେ ଡିଷ୍ଟ୍ରିବ୍ୟୁଟର ଅର୍ଥାତ୍ ଅକ୍ଷର ବାଣ୍ଟିବାର କର୍ମ କରୁଅଛନ୍ତି ।

## ( ୧୩ଶ ଭାଗ, ୧୭ । ୮ । ୧୮୭୮, ସଂଖ୍ୟା ୩୩ )

୬୭୪ । ପୁରୀ ରାଜା ।

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦ ସହିତ ହିନ୍ଦୁ ପେଟ୍ରିୟଟରେ ପାଠ କଲୁଁ ଯେ ପୁରୀର ରାଜାଙ୍କୁ କ୍ଷମା ଦେବା କାରଣ ଗବର୍ଣ୍ଣମେଣ୍ଟଙ୍କ ସମୀପରେ ଆବେଦନ ପତ୍ରମାନ ଶୀଘ୍ର ଉପସ୍ଥିତ ହେବ । ଏ ଆବେଦନ ପତ୍ରମାନଙ୍କରେ ଭାରତବର୍ଷର ସ୍ୱାଧୀନ ଓ କରଦ ମହାରାଜା ଓ ରାଜାମାନେ ଏବଂ ଅନ୍ୟାନ୍ୟ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ସ୍ୱାକ୍ଷର କରିବେ । ଭରସା ହୁଅଇ ଗବର୍ଣ୍ଣମେଣ୍ଟ ଏମାନଙ୍କ ଅନୁରୋଧ ରକ୍ଷା କରିବାକୁ କୁଣ୍ଠିତ ହେବେନାହିଁ ।

## ( ୧୩ଶ ଭାଗ, ୨୪ । ୮ । ୧୮୭୮, ସଂଖ୍ୟା ୩୪ )

୬୭୫ । ହିନ୍ଦୁ ପେଟ୍ରିୟଟ ଲେଖିଅଛନ୍ତି କି ପୁରୀର ରାଣୀ ଅର୍ଥାତ୍ ଦଣ୍ଡ ପାଇଥିବା ରାଜାଙ୍କ ମାତା ଶ୍ରୀଜଗନ୍ନାଥଙ୍କ ମନ୍ଦିରର ସେବା ଇତ୍ୟାଦି ଯଥା ନିୟମରେ ଚଳାଇ ଆସୁଅଛନ୍ତି ମାତ୍ର ଗବର୍ଣ୍ଣମେଣ୍ଟ ରାଜାଙ୍କ ଦଣ୍ଡ ପାଇବା ସମୟଠାରୁ ଅବଧି କେତେମାସର ପେନସନ ଅଟକାଇ ରଖିଅଛନ୍ତି । ବାସ୍ତବରେ ରାଣୀ ଉତ୍ତମରୂପେ

ମଦରର କାର୍ଯ୍ୟ ଚଳାଉଅଛନ୍ତି ଓ ତାହାଙ୍କ ଠାରୁ ଅଧିକ କେହି କରି ପାରିବନାହିଁ । ଆମ୍ଭେମାନେ ଶୁଣିଅଛୁଁ ଯେ କମିଶନର ସାହେବ ରାଣୀଙ୍କୁ ପେନସନ ଦେବା ଓ ମଦରର ସମସ୍ତ ଭାର ଅର୍ପଣ କରିବା ବିଷୟରେ ଗବର୍ଣ୍ଣମେଣ୍ଟଙ୍କୁ ରିପୋର୍ଟ କରିଅଛନ୍ତି । ଏପର୍ଯ୍ୟନ୍ତ ସେବେ କୌଣସି ଆଜ୍ଞା ଆସି ନଥାଏ ତେବେ କମିଶନର ସାହେବ ଦାଦନ ସ୍ୱରୂପ ଟଙ୍କା ଦେଉଥାଉନ୍ତୁ । ଏହାର କିଛି ସମ୍ବନ୍ଧରେ ପେନସନ ବନ୍ଦକରି ରଖିବା ଭଲ ନୁହଇ ।

୬୬ । ଆମ୍ଭେମାନେ ଶୁଣୁଅଛୁଁ ଯେ କନ୍ଧମାଳର ସଦର ମୁକାମରେ ଗୋଟିଏ ପୋଷ୍ଟାଫିସ ନାହିଁ କିମ୍ବା ଡାକ ଟିକେଟ ମିଳଇ ନାହିଁ । ଯାହାର ପ୍ରୟୋଜନ ହୁଏ ସେ ରସୁଲକୁଣ୍ଡାରୁ ଅଣାଇ ରଖିଥାଏ ଓ ପ୍ରୟୋଜନ ସମୟରେ ସବୁ ଯାଇଥିଲେ ଅଭିଯୋଗ ହୁଅଇ । ଯେଉଁ କନ୍ଧମାଳର ଶାସନ ସକାଶେ ସରକାର ତହସିଲ କଚେରୀ ଡାକ୍ତରଖାନା ସ୍କୁଲ ଇତ୍ୟାଦି ବସାଇ ଅଛନ୍ତି ଏବଂ ଯେଉଁ ସ୍ଥାନର ଲୋକ ନିତାନ୍ତ ବଣୁଆ ହେଲେହେଁ ସ୍ୱେଚ୍ଛା ପୂର୍ବକ ଚାନ୍ଦା ଦେଇ ସ୍କୁଲ ବସାଇବା ଓ ନାନା ଦିଗକୁ ଯାତ୍ରୀମାନ ପଠାଇବାର ଚେଷ୍ଟା କରୁଅଛନ୍ତି ସେଠାରେ ଗୋଟିଏ ଡାକଘର ନଥିବା କେମନ୍ତ କଥା । ଗମନାଗମନର ସୁଯୋଗ ସହିତ ସମ୍ବାଦ ଚଳାଇବାର ସୁଯୋଗ କରିବା ଉଚିତ । ତାହା ନହେଲେ ବାଣିଜ୍ୟର ସୁବିଧା ହେବା ଅସମ୍ଭବ । ଆମ୍ଭେମାନେ ଭରସା କରୁଁ ଯେ ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ ସାହେବ ଏଥି ପକ୍ଷରେ ମନୋଯୋଗୀ ହେବେ । ଆପାତତଃ ଜଣେ ସ୍କୁଲ ମାଷ୍ଟରଙ୍କୁ ପୋଷ୍ଟାଫିସର ଭାର ଦେଲେ ଅଳ୍ପ ବ୍ୟୟରେ କାର୍ଯ୍ୟ ଚଳିପାରେ । ପଛକୁ ଡାକଘରର କାର୍ଯ୍ୟ ବିସ୍ତାର ହେଲେ ସ୍ୱତନ୍ତ୍ର ଲୋକ ଉପଯୁକ୍ତ ବେତନରେ ନିଯୁକ୍ତ ହେବ ।

( ୧୩ଶ ଭାଗ, ୩୧।୮।୧୮୭୮, ସଂଖ୍ୟା ୩୫ )

୬୭ । ସୁହୃଦ ସମାଜ ।

ଏହି ନାମରେ ଗୋଟିଏ ସଭା ଏ ନଗରରେ ସ୍ଥାପିତ ହୋଇଅଛି । ଏଥିର ସଭ୍ୟ ଏ ନଗରବାସୀ କେତେକ ଓଡ଼ିଆ ବଙ୍ଗାଳୀ ଏବଂ ଦେଶୀୟ ଭଦ୍ର ଲୋକ ଅଟନ୍ତି । ଏ ପ୍ରଦେଶର ମଙ୍ଗଳକର ବିଷୟମାନ ଆଲୋଚନା କରିବା ଏବଂ ଏ ପ୍ରଦେଶ ସହିତ ସମ୍ପର୍କ ରଖିଥିବା ପ୍ରସଙ୍ଗ ସମସ୍ତର ତର୍କ ବିତର୍କ କରିବା ଏ ସଭାର ଉଦ୍ଦେଶ୍ୟ ଅଟଇ । ଗତ ସପ୍ତାହ ଶୁକ୍ରବାର ଏ ସଭାର ଅଧିବେଶନ ହୋଇଥିଲା । ତହିଁରେ ଏହି କଥାର ତର୍କ ବିତର୍କ ହୋଇଥିଲା ଯେ ମ୍ୟୁନିସିପାଲିଟିର ବ୍ୟୟ ନିମନ୍ତେ କର ଦ୍ୱାରା ଆଦାୟ କରିବାର ଯେ ଗବର୍ଣ୍ଣମେଣ୍ଟ ନିୟମ କରିଅଛନ୍ତି ତହିଁରେ ଲୋକଙ୍କର ଭାବ କିରୂପ ଏବଂ କେଉଁ କର ଦ୍ୱାରା ତାହା ଆଦାୟ ହେଲେ ଭଲ ହେବ । ବର୍ତ୍ତମାନ ଏହି ଉଦ୍ଦେଶ୍ୟରେ

ଲାଇସେନ୍ସ ଟାକ୍ସ ହୋଇଅଛି ଏହି କର ଥିବା ଉଚିତ କିମ୍ବା ଏଥି ବଦଳରେ ଅନ୍ୟ କୌଣସି ଟାକ୍ସ ଯଥା ମନୁଷ୍ୟ ଉପରେ କି ଗୃହସ୍ଥ ଉପରେ କି ହଳ ଉପରେ ଟାକ୍ସ ଅଥବା ବିବାହ ଟାକ୍ସ କି ସଦାବର୍ତ୍ତି ଜମିର ଟାକ୍ସ ଉଚିତ ହେବ । ସଭ୍ୟମାନଙ୍କର ମତ ଏହି ହେଲା ଯେ ସଦାବର୍ତ୍ତି ଭୂମିର ଟାକ୍ସ ସର୍ବାପେକ୍ଷା ଉଚିତ । ସାଧାରଣ ହିତ ସକାଶେ ହୋଇଥିବା ଦାନ ଅପବ୍ୟୟିତ ହେଉଅଛି, ତାହାର କିଛି ପ୍ରତୀକାର ହେଉ-ନାହିଁ ବଡ଼ ଦୁଃଖର ବିଷୟ ଅଟଇ । ଏଥିରେ ଅନ୍ତତଃ ଏକଲକ୍ଷ ଟଙ୍କା ବର୍ଷରେ ଆୟ ହେବ ଓ ତାହା ଦୁର୍ଭିକ୍ଷ ସାହାଯ୍ୟ ନିମିତ୍ତ ଯଥେଷ୍ଟ ଅଟେ । ଏଥି ଉତ୍ତାରୁ ବିବାହ ଟାକ୍ସ ଭଲ ବୋଲି ଅନେକ ସଭ୍ୟଙ୍କ ମତ ହେଲା ଏବଂ ଲୋକସଂଖ୍ୟା ଉପରେ ଟାକ୍ସ ବସାଇବା ମଧ୍ୟ କେତେକ ସଭ୍ୟଙ୍କ ମନକୁ ଘେନିଲା । ଜଣପ୍ରତି ବର୍ଷକେ ଏକ ପଇସା ଲେଖାଁଏ ଟାକ୍ସ କଲେ କୋଡ଼ିଏ ହଜାରରୁ ଅଧିକ ଟଙ୍କା ମିଳିପାରେ ।

ସାକ୍ଷାତ୍ ଟାକ୍ସ ଅପେକ୍ଷା ଦ୍ରବ୍ୟାଦି ଦ୍ୱାରା କର ନେବାର ରୀତିକୁ ସଭ୍ୟମାନେ ପ୍ରଶଂସା କଲେ । ସମସ୍ତେ ଏକମତ ହୋଇ କହିଲେ ଯେ ଲୁଣର ମାସୁଲ ଗବର୍ଣ୍ଣମେଣ୍ଟ ଊଣା କରିଦେବାରେ ଲୋକଙ୍କର ତାଦୃଶ ଉପକାର ହୋଇନାହିଁ କିନ୍ତୁ ଅନେକ ରାଜସ୍ୱ ଅନର୍ଥକ କ୍ଷତି ହୋଇଅଛି । ବରଂ ଦୁଇ ଗୁଣ୍ଡଅଣାରେ ବଢ଼ାଇ ଲାଇସେନ୍ସ ଟାକ୍ସ ନେଇ ନଥିଲେ ଲୋକେ ତେତେ କଷ୍ଟ ମଣନ୍ତେ ନାହିଁ ଯାହାକି ଲାଇସେନ୍ସ ଟାକ୍ସ ବସିବାରୁ ହୋଇଅଛି ।

## ( ୧୩ଶ ଭାଗ, ୧୪ । ୯ । ୧୮୭୮, ସଂଖ୍ୟା ୩୭ )

୫୬୮ । ସଦାବର୍ତ୍ତି ଭୂମିର ଆୟବ୍ୟୟ ଶାସନ ।

ସଦାବର୍ତ୍ତି ଭୂମିର ଆୟବ୍ୟୟ ଶାସନ କିପ୍ରକାରରେ ହେବ ଅର୍ଥାତ୍ ଅପବ୍ୟୟ ଇତ୍ୟାଦି ନିବାରଣ ପକ୍ଷରେ ଯେଉଁ ଆଇନ ବର୍ତ୍ତମାନ ପ୍ରଚଳିତ ଅଛି ତାହାର କି ପରିବର୍ତ୍ତନ ଆବଶ୍ୟକ ଓ କେଉଁ ଉପାୟରେ ଅପବ୍ୟୟ ସମସ୍ତ ନିବାରଣ ହେବ ଏଥିର ବିଚାର ସୁହୃଦ ସମାଜର ଗତ ଅଧିବେଶନରେ ହୋଇଥିଲା । ସଭା ସ୍ଥିର କଲେଯେ ଏଥିପାଇଁ ଗବର୍ଣ୍ଣମେଣ୍ଟଠାରେ ଆବେଦନପତ୍ର ଦେବାର ଉଚିତ ଓ ଗବର୍ଣ୍ଣମେଣ୍ଟରେ ଯେ ସମସ୍ତ ପ୍ରସ୍ତାବ କରିବାକୁ ହେବ ତାହା ସ୍ଥିର କରିବା କାରଣ କେତେଜଣ ସଭ୍ୟଙ୍କୁ ଭାର ଦିଆ ଯାଇଅଛି । ସେମାନଙ୍କ ପ୍ରସ୍ତାବ ସଭାରେ ଧାର୍ଯ୍ୟ ହେଲା ଉତ୍ତାରୁ ଗବର୍ଣ୍ଣମେଣ୍ଟଙ୍କୁ ଦରଖାସ୍ତ ଯିବ । ସଦାବର୍ତ୍ତି ସମ୍ପତ୍ତିର ଅପବ୍ୟୟ ଏଠା ଲୋକଙ୍କର ଗୋଟିଏ ଭାରି ଦୁଃଖର ବିଷୟ ଓ ଯଦ୍ୟପି କି ଦଶବର୍ଷରୁ ଅଧିକ ହେବ ଲୋକମାନେ ଗବର୍ଣ୍ଣମେଣ୍ଟରେ

ସୁଦ୍ଧା ୨ ଆବେଦନ କରି ଥକି ଗଲେଣି ତଥାପି ତହିଁର କିଛି ବିହିତ ଅବଧି ହୋଇ-ନାହିଁ । ସୂକ୍ଷ୍ମବୁଦ୍ଧି ସମାଜ ଦ୍ୱାରା ଯେବେ ଏହି କାର୍ଯ୍ୟଟି ସାଧନ ହୁଅଇ ତେବେ ବହୁକାଳ ନିମନ୍ତେ ଏହାର ଗୋଟିଏ କୀର୍ତ୍ତି ରହିଯିବ । ହିସାବ କରି ଦେଖାଯାଇ ଅଛି ଯେ ଏହି କଟକ ଜିଲ୍ଲାରେ ପ୍ରାୟ ତିନିଲକ୍ଷ ଟଙ୍କା ଆୟର ସଦାବର୍ତ୍ତ ବା ଦେବୋତ୍ତର ସମ୍ପତ୍ତି ଅଛି । ଏତେ ଟଙ୍କା ଭୂତ ଖାଇ ଯାଉଅଛି ଓ ସମସ୍ତେ ଦେଖୁଥିଲେହେଁ କିଛି କରିପାରୁ ନାହାନ୍ତି । ଏହା ସାମାନ୍ୟ ଦୁଃଖର ବିଷୟ ନୁହଇ । ଏତେ ଟଙ୍କା ସାଧାରଣ କାର୍ଯ୍ୟରେ ଲାଗିଲେ କେତେ ମଙ୍ଗଳ ହୁଅନ୍ତା । ଯେଉଁମାନେ ଦାନ କରିଥିଲେ ସେମାନେ ଏହି ଆଶା କରିଥିଲେ ଯେ ଏହାଦ୍ୱାରା ଜନସମାଜର ମଙ୍ଗଳ ଚିରକାଳ ହେଉଥିବ ଓ ତଦ୍ଦ୍ୱାରା ତାହାଙ୍କର ନାମ ଓ ଧର୍ମ ଜାଗ୍ରତ ରହିବ । ମାତ୍ର କାର୍ଯ୍ୟତଃ ଏହା ନାଓ୍ୟାରିସୀ ମାଲ ହୋଇଅଛି । ଯାହା ହାତରେ ଯାହା ପଡ଼ିଲା ସେ ଇଚ୍ଛାମତ ତହିଁର ବ୍ୟବ-ହାର କଲା । ଗବର୍ଣ୍ଣମେଣ୍ଟ ଧର୍ମ ବିଷୟରେ ସମ୍ପର୍କ ରଖିବେ ନାହିଁ ବୋଲି ନିଶ୍ଚିନ୍ତ ରହିଲେ ଓ ଯେଉଁ ଖଣ୍ଡେ ଆଇନ କରିଦେଲେ ତାହାକୁ ଧରି ଚଳିବା ଏମନ୍ତ କଠିନ ଯେ ଏତେ ଅପବ୍ୟୟ ହେଉଥିବା ପ୍ରତ୍ୟକ୍ଷେ କେହି ନାଲିଶ କରିବାକୁ ସାହସ କରୁ-ନାହିଁ । ଉକ୍ତ ଆଇନରେ ଅନ୍ୟାୟକାରୀର ସମସ୍ତ ସୁବିଧା, ଯେ ତାହା ନାମରେ ନାଲିଶ କରିବ ତାହାକୁ କେବଳ କ୍ଳେଶ ଭୋଗ କରିବାକୁ ହେବ । ସଭାର ପ୍ରସ୍ତାବ ନିଷ୍ପନ୍ନ ହୁଏ ଧାର୍ଯ୍ୟ ହେଲେ ତହିଁର ବିବରଣ ପାଠକମାନେ ଜାଣିପାରିବେ ।

( ୧୩ଶ ଭାଗ, ୧୨ । ୧୦ । ୧୮୭୮, ସଂଖ୍ୟା ୪୦ )

୫୭୪ ।

## ପୁରୀ ରାଜା ।

ପୁରୀର କଏଦୀ ରାଜା ଦ୍ୱୀପାନ୍ତରକୁ ପ୍ରେରିତ ହୋଇଅଛନ୍ତି । ଗତ ମାସ ତା୪ ଦିନରେ ସାତାରା ନାମକ ଜାହାଜରେ ସେ ପୋର୍ଟ ବ୍ଲେୟାରରେ ପହୁଞ୍ଚିଲେ । ପୋର୍ଟ ବ୍ଲେୟାର ଆଣ୍ଡାମାନ ଟାପୁର ଏକ ନଗର ଅଟଇ । ଏହିଠାରେ ଇଂରାଜଙ୍କର ଉପନିବେଶ ଓ ଜେଲଖାନା ଓ ଅନ୍ୟାନ୍ୟ କଚେରୀମାନ ଅଛି । ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ସମ୍ବାଦ ପତ୍ରରେ ପାଠ କଲୁଁ ଯେ ଜାହାଜରେ ନେଇଯିବା କାଳରେ ରାଜାଙ୍କୁ ଭରି ଲୁହାର ବେଡ଼ି ପିନ୍ଧାଇ ଦିଆଯାଇଥିଲା ଓ ରାଜା ବାତୁଳ ବୋଲି ଛଳ କରିଥିଲେ । ଯେତେବେଳେ ଟାପୁରେ ପହୁଞ୍ଚି ଜେଲଖାନାର ହାକିମଙ୍କୁ ଅର୍ପିତ ହେଲେ ତେତେବେଳେ ବସ୍ତ୍ରର କଡ଼ାକଡ଼ା କଲେ, ଅନ୍ୟ ଆଜ୍ଞା ପର୍ଯ୍ୟନ୍ତ ତାହାଙ୍କୁ ଅନ୍ୟ କଏଦୀଙ୍କଠାରୁ ପୃଥକ୍ ନିର୍ଜନ କୋଠରୀରେ କଏଦ ରଖା ଯାଇଅଛି । କପାଳର ଲେଖା ମେଣ୍ଟିବାର ନୁହଇ ।

( ୧୩ଶ ଭାଗ, ୨୮ । ୧୨ । ୧୮୭୮, ସଂଖ୍ୟା ୫୧ )

୫୨୦ । ଭୁବନେଶ୍ୱରୀ ମନ୍ଦିର ।

ଆମ୍ଭେମାନେ ଏଥିପୂର୍ବେ ଭୁବନେଶ୍ୱରୀ ମନ୍ଦିର ନିର୍ମାଣ ସମ୍ପର୍କୀୟ କାର୍ଯ୍ୟ ନିର୍ବାହ ସକାଶେ ନିଯୁକ୍ତ ହୋଇଥିବା କମିଟୀର ସଭ୍ୟମାନଙ୍କର ଯେଉଁ ତାଲିକା ଦେଇଥିଲୁଁ ତହିଁରେ ଭ୍ରମକ୍ରମେ ମୟୁରଭଞ୍ଜର ମହାରାଜାଙ୍କର ନାମ ଛାଡ଼ି ଯାଇଥିଲୁଁ । ତହିଁ ଉତ୍ତାରୁ ଆଉ ଦୁଇଜଣ ସଭ୍ୟ ନିଯୁକ୍ତ ହୋଇଥିବାରୁ ବର୍ତ୍ତମାନ କମିଟୀରେ ଯେଉଁମାନେ ଅଛନ୍ତି ତାହାଙ୍କର ନାମ ତଳେ ଲେଖାଗଲା, ଯଥା:—

ଶ୍ରୀଯୁକ୍ତ ମାକଫର୍ସନ ସାହେବ —ସଭାପତି
- „ ମହାରାଜା କଲେ ମୟୁରଭଞ୍ଜ
- „ „ „ କେଉଁଝର
- „ ବାବୁ ବୈଦ୍ୟନାଥ ପଣ୍ଡିତ ରାୟବାହାଦୁର
- „ ଚୌଧୁରୀ କାଶିନାଥ ଦାସ
- „ ବାବୁ ଜଗନମୋହନ ରାୟ
- „ „ ନନ୍ଦକିଶୋର ଦାସ
- „ „ ଅନ୍ନଦା ପ୍ରସାଦ ଘୋଷ
- „ „ ହରିବଲ୍ଲଭ ବୋଷ
- „ „ ଗୌରୀ ଶଙ୍କର ରାୟ

କୁମାର ବୈକୁଣ୍ଠ ନାଥ ଦେ, ବାଲେଶ୍ୱର
ମହନ୍ତ ନାରାୟଣ ଦାସ, ପୁରୀ

ଏ କମେଟୀ ମଧ୍ୟରେ ଯେଉଁ ଦୁଇଜଣ ମହାରାଜା ଅଛନ୍ତି ସେମାନେ ଉତ୍କୃଷ୍ଟ ସମ୍ମାନ ସୂଚକ ପଦ ଶ୍ରୀମତୀ ଭିକ୍ଟୋରିଆଙ୍କ ପଦ ଗ୍ରହଣ ଉତ୍ସବ କାଳରେ ପାଇଅଛନ୍ତି । ଅତଏବ ଭିକ୍ଟୋରିଆ ମନ୍ଦିର ସଙ୍ଗତ ସେମାନେ ବିଶେଷ ରୂପେ ସଂଯୁକ୍ତ ରହିଅଛନ୍ତି ଓ ଏଦ୍ୱାରା ତାହାଙ୍କର କୀର୍ତ୍ତି ମଧ୍ୟ ପ୍ରକାଶ ପାଉଥିବ । ସୁତରାଂ ସେମାନଙ୍କୁ ଏ ଅଟ୍ଟାଳିକା ନିର୍ମାଣ ବିଷୟରେ ଅଧିକ ମନୋଯୋଗୀ ହେବାର ଉଚିତ । ଏଥିରୁ ମୟୁରଭଞ୍ଜର ମହାରାଜା ଆଜିକାଲି ଓଡ଼ିଶାର ତିଳକ ହୋଇଅଛନ୍ତି ଏବଂ ଯେସ୍ଥଳେ ସେ ଶ୍ରୀଯୁକ୍ତ ରେବେନସା ସାହେବଙ୍କ ନାମରେ କୋଡ଼ିଏ ହଜାର ଟଙ୍କା ଦେବାକୁ ଅଙ୍ଗୀକାର କରିଅଛନ୍ତି ସେସ୍ଥଳେ ଶ୍ରୀମତୀ ଭିକ୍ଟୋରିଆଙ୍କଠାରେ ରାଜଭକ୍ତି ଓ ତହିଁସଙ୍ଗେ ଆପଣାର ଉଚ୍ଚ ମର୍ଯ୍ୟାଦା ଲଭିବ କୃତଜ୍ଞତା ପ୍ରଦର୍ଶନ ସ୍ୱରୂପ ତଦ୍ରୂପ ଉପଯୁକ୍ତ

ଦାନ କରିବେ ଏଥିରେ ସନ୍ଦେହ ନାହିଁ । କେଉଁଝରର ମହାରାଜା ଏତେକାଳ ଋଣ ଶୁଝିବାରେ ଲାଗିଥିଲେ କେବଳ ଏକ ବର୍ଷ ତହିଁରୁ ନିଷ୍କୃତି ପାଇଅଛନ୍ତି । ଏଥି ସକାଶେ ଯଦ୍ୟପି କି ସେ ମୟୂରଭଞ୍ଜର ମହାରାଜାଙ୍କ ସଙ୍ଗେ ସରି ହୋଇ ପାରିବେ ନାହିଁ ତଥାପି ଏ ମହତ୍ ଅନୁଷ୍ଠାନରେ ସେ ସାଧ୍ୟାନୁସାରେ ତ୍ରୁଟି କରିବେନାହିଁ ଏମନ୍ତ ଅନୁମାନ ହେଉଅଛି । ଶ୍ରୀମତୀ ଭାରତେଶ୍ୱରୀ ଯେମନ୍ତ ଯଥାର୍ଥ ଯୋଗ୍ୟ ପାତ୍ର ଦେଖି ଉଚ୍ଚ ସମ୍ମାନ ଦେଇଅଛନ୍ତି ତେମନ୍ତ ତାହାଙ୍କର ନାମ ଯେ ସେମାନଙ୍କ ଦ୍ୱାରା ଚିରସ୍ମରଣୀୟ ହେବ ଏଥିରେ ବିଚିତ୍ର କି ଅଛି । ଅତଏବ ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ହେଉଅଛି କି ଏହି ଦୁଇ ମହାରାଜାଙ୍କଠାରୁ କମିଟି ଆଶାନୁରୂପ ଉତ୍ସାହ ପାଇ ଶୀଘ୍ର ଅଟ୍ଟାଳିକା ନିର୍ମାଣ ବିଷୟରେ ଯତ୍ନଶୀଳ ହେବେ ।

---

୫୭୧ । ଆମ୍ଭେମାନେ ଶୁଣି ଆନନ୍ଦିତ ହେଲୁଁ ଯେ ଆମ୍ଭମାନଙ୍କର କଲେକ୍ଟର ନୋଲାନ ସାହେବ ଗୃହଜଣ ପ୍ରବେଶିକା ପରୀକ୍ଷା ଓ ଜଣେ ଏଲ· ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରଙ୍କୁ ଆପଣା କଚେରୀରେ ଉମେଦବାର କର୍ମରେ ନିଯୁକ୍ତ କରି ଆଜ୍ଞା ଦେଇଅଛନ୍ତି ଯେ କର୍ମ ଖାଲି ହେଲେ ଆଗେ ଏମାନଙ୍କୁ କର୍ମ ଦିଆଯିବ । ନିକଟରେ ଯେ କେତେକ କର୍ମଖାଲି ହୋଇଥିଲା ସେ ସବୁରେ ସୁଶିକ୍ଷିତ ବ୍ୟକ୍ତିଙ୍କୁ ନିଯୁକ୍ତ କରିଅଛନ୍ତି । ଏଥିରୁ ବୋଧହୁଏ ଯେ ଶିକ୍ଷାପ୍ରତି ତାଙ୍କର ଆଦର ଓ ଉତ୍ସାହ ପ୍ରଦାନ ଅଛି । ଏହିପରି ସକଳ କର୍ମଗୃହମାନେ ଅଶିକ୍ଷିତ ଉମେଦୱାର ବା ଅନୁସରଣିଆ ବା ସୁପାରସ ବ୍ୟକ୍ତିମାନଙ୍କୁ ପରିତ୍ୟାଗକରି ଶିକ୍ଷିତ ବ୍ୟକ୍ତିମାନଙ୍କୁ ନିଯୁକ୍ତ କଲେ ବିଦ୍ୟାଶିକ୍ଷାର ଉତ୍ସାହ ଓ ଉନ୍ନତି ହେବ ଏବଂ କଚେରୀରେ କର୍ମ ମଧ୍ୟ ଅତି ଉତ୍ତମରୂପେ ଚଳିବ ।

୫୭୨ । ନଗର କାର୍ଯ୍ୟ ।

ଏ ନଗରର ସଡ଼କ, ଗଳି ରାସ୍ତା ଇତ୍ୟାଦି ମରାମତି ପକ୍ଷରେ ଶ୍ରୀଯୁକ୍ତ ହାଗ୍ରିଲ ସାହେବ ଜଏଣ୍ଟ ମେଜେଷ୍ଟ୍ରେଟଙ୍କର ବିଶେଷ ଯତ୍ନଦେଖି ଆମ୍ଭେମାନେ ଅତି ଆନନ୍ଦିତ ହୋଇଅଛୁଁ । ଶ୍ରୀଯୁକ୍ତ ଜମସ ସାହେବ କେବଳ ଭୋଟରେ ମାତ୍ର ସଡ଼କସବୁକୁ ପ୍ରାୟ ଛଡ଼ାଇ ଦେଇଥିଲେ । ଆଉ କାର୍ଯ୍ୟ ତେତିକି ଥିଲା ବର୍ଷା ସମୟରେ ନର୍ଦ୍ଦମା ସଫାଇ ଯେ ନିତାନ୍ତ ଆବଶ୍ୟକ ତାହା ସୁଦ୍ଧା ବର୍ଜିତ ହୋଇଥିଲା । ହାଗ୍ରିଲ ସାହେବ ମିଉନିସିପାଲଟିର ସହକାରୀ ସଭାପତି ହେଲଦିନୁ ସେ ସଡ଼କର ସଂସ୍କାର କାର୍ଯ୍ୟରେ ଉଦ୍‌ଯୋଗୀ ହୋଇ ଅନେକ ସଡ଼କ ସୁଧରାଇଲେଣି ଏବଂ ବର୍ତ୍ତମାନ ନର୍ଦ୍ଦମାଖୋଳାଇ କର୍ମ ଲଗିଅଛି । ବର୍ଷାଋତୁ ପୂର୍ବରୁ ଏକାର୍ଯ୍ୟ ଆରମ୍ଭ ହେବା ଭଲ ହୋଇଅଛି ।

ନଗରର ବର୍ଷାଜଳ ସମ୍ପୂର୍ଣ୍ଣରୂପେ ନିର୍ଗତ ହେବା ସକାଶେ ବୃହତ୍‌ନାଳ ଖୋଳା ହେବାର ପୂର୍ବେ ପ୍ରସ୍ତାବ ହୋଇଥିଲ ଓ ତନ୍ନିମନ୍ତେ ଏବର୍ଷ ବଜେଟରେ ଅନେକ ଟଙ୍କା ମଞ୍ଜୁର ହୋଇଥିଲ । ସେ କର୍ମ ଆରମ୍ଭ ହୋଇଅଛି ଓ ତତ୍ସଙ୍ଗେ ୨ ଗଳି ରାସ୍ତାର ମୋହଡ଼ମାନ ମଧ୍ୟ ଖୋଳା ହେଉଅଛି । କେତେକ ନୂତନ ପୋଲ ପ୍ରସ୍ତୁତ ହେଉଅଛି ଓ ପୁରାତନ ପୋଲର ସଂସ୍କାର ହେଉଅଛି । କ୍ଷୁଦ୍ର ୨ ପୋଲମାନ ପୋଡହୋଇ ପଡ଼ିଥିଲା ସେସବୁ ପରିଷ୍କାର ହେଉଅଛି । ଗଳି ରାସ୍ତାର ମୋହଡ଼ା ଖୋଳାଇବାରେ ସେ ରାସ୍ତାମାନ ମଧ୍ୟ ମରାମତ ହୋଇ ଯାଉଅଛି । ସକାଳ କରେଷ୍ଟା ହେଉ ଥିଲେହେଁ ହାଣ୍ଟ୍ରଲ ସାହେବ ଅବସର ଅନୁସାରେ ସହରରେ ଭ୍ରମଣ କରି ସକଳ କାର୍ଯ୍ୟ ଦେଖି ଉତ୍ତମରୂପେ କରାଉ ଅଛନ୍ତି । ଏଥିପାଇଁ ଆମ୍ଭେମାନେ ତାଙ୍କୁ ପ୍ରଶଂସା କରୁଅଛୁଁ । ଆମ୍ଭମାନଙ୍କର କହିବାର ଏହି ଯେ ଯେଉଁ ପୋଲ ସବୁ ଭଙ୍ଗା ହୋଇଅଛି କିଂବା ଯେଉଁଠାରେ ନୂତନ ପୋଲ ସକାଶେ ସଡ଼କ ଖୋଳା ହେଉଅଛି ସେ ଖୋଳାସ୍ଥାନର ଦୁଇ ପାର୍ଶ୍ୱରେ ବାଡ଼ ବା କଣ୍ଟା ଅଟକ ଦିଆହୋଇ ନ ଥିବାର ଅନେକସ୍ଥଳେ ଦେଖୁଅଛୁଁ । ଏହେତୁ ରାତିରେ ଏଥିରେ ମନୁଷ୍ୟ ଓ ପଶୁ ପଡ଼ିଯିବାର ସମ୍ଭବ ଓ ଜଣେ ପଡ଼ିବାର ଶୁଣିଲୁଁ ଏବଂ କେତେକ ସ୍ଥଳେ ଗତାୟାତର ବଡ଼ ଅସୁବିଧା ଘଟୁଅଛି । ଏଥିର କିଛି ବ୍ୟବସ୍ଥା କରିବାର ଆବଶ୍ୟକ । ଆଉ ଗୋଟିଏ କଥା ଏହି ଯେ ଯେଉଁ ନର୍ଦ୍ଦମା ବା ନାଳସବୁ କିଛି ଗଭୀରରେ ଖୋଳା ହୋଇଅଛି ବିଶେଷ ବର୍ଷାରେ ଅତଡ଼ା ଖାଇ ପୋତହୋଇ ପଡ଼ିବାର ସମ୍ଭବ । ତହିଁର ଦୁଇପାର୍ଶ୍ୱରେ ପଥର ବସିଲେ ଏ ଆଶଙ୍କା ନ ରହନ୍ତା ଓ ସେସବୁ ଚିରସ୍ଥାୟୀ ହୁଅନ୍ତା । କିନ୍ତୁ ତହିଁରେ ଅନେକ ଟଙ୍କା ଲାଗିବ ଓ ଏହା ପ୍ରାୟ ହୋଇ ନପାରିବ । ତେବେ ଯେଉଁ ସ୍ଥାନମାନଙ୍କରେ ନାଳକୁ ବିଶେଷ ପାଣି ଗଡ଼ିବ କେବଳ ସେହିସ୍ଥାନମାନଙ୍କରେ ପଥର ବସାଇ ଦେଲେ ଅଧିକ ଅତଡ଼ା ଖାଇ ନପାରିବ ଓ ଏଥିରେ ଅନେକ ବ୍ୟୟ ନ ପଡ଼ିବ । ହାଣ୍ଟ୍ରଲ ସାହେବ ଅବଶ୍ୟ ଉଚିତ ବ୍ୟବସ୍ଥା କରିବେ ଆମ୍ଭମାନଙ୍କ ବୋଲିବା ବାହୁଲ୍ୟ ।

## ( ୧୪ଶ ଭାଗ, ୧୧ । ୧୦ । ୧୮୭୯, ସଂଖ୍ୟା ୪୧ )

୫୭୩ । ଗତ ସୋମବାର ଏଠା ଉତ୍କଳ ସଭାର ମାସିକ ଅଧିବେଶନ ଉପଲକ୍ଷରେ ପ୍ରିଣ୍ଟିଂ କମ୍ପାନୀଙ୍କ ଦୋମହଲରେ ଏକ ସଭା ହୋଇଥିଲ । ବାବୁ ସୁଦର୍ଶନ ଦାସ ସଭାପତିର ଆସନ ଗ୍ରହଣ କରିଥିଲେ । ବାବୁ ରାମଶଙ୍କର ରାୟ “ ଏକତା ଓ ଓଡ଼ିଶା ” ବିଷୟରେ ଗୋଟିଏ ରଚନା ପାଠ କରିଥିଲେ । ରଚନାଟି ମନ୍ଦ ହୋଇ ନଥିଲେହେଁ ତାହା ଅତି ଚଞ୍ଚଳରେ ପଢ଼ାଯାଇ ଥିବାରୁ ଶ୍ରୋତାମାନେ ତାହାଙ୍କ ପଶ୍ଚାତ୍‌ଗାମୀ ହେବାକୁ ଅତ୍ୟନ୍ତ କଷ୍ଟକର ଜ୍ଞାନ କରିଥିଲେ ଓ ବୋଧ ହୁଅଇ ଏଥିପାଇଁ ରଚନାର

ସମସ୍ତ ଭାବ ସେମାନଙ୍କ ମନରେ ଦୃଢ଼ରୂପେ ସ୍ଥାନ ପାଉନାହିଁ । ଏଠା ଧନୀ ଲୋକଙ୍କପ୍ରତି କିଛି କଟାକ୍ଷ ହୋଇଥିଲା । ଯାହାଙ୍କ ସାହାଯ୍ୟ ନନେଲେ କାର୍ଯ୍ୟ ଚଳିବ ନାହିଁ ତାହାଙ୍କ ମନ ଘେନାଇ ଉଚିତ କହିବାର ବିହିତ । କଠିନ ପ୍ରକ୍ରିୟାର ସର୍ବଦା ସୁଫଳ ଲାଭ ହୁଅଇ ନାହିଁ । ସେ ଯାହାହେଉ ଉତ୍କଳ ଭାଷାରେ ଖଣ୍ଡିଏ ଉତ୍ତମ ଅଭିଧାନ ପ୍ରଣୟନ ଓ ଏ ନଗରରେ ଗୋଟିଏ ପୁସ୍ତକାଳୟ ସ୍ଥାପନ ବିଷୟରେ ସଭା ଯତ୍ନବାନ୍ ହୋଇ ଅଛନ୍ତି ବଡ ସୁଖର ବିଷୟ ଅଟଇ ଏବଂ ଶେଷୋକ୍ତ କାର୍ଯ୍ୟଟି କିରୂପେ ସାଧିତ ହେବ ତାହା ସ୍ଥିର କରିବାଗାଇଁ ଗୋଟିଏ କମିଟୀ ନିଯୁକ୍ତ ହୋଇଅଛି । ଆମ୍ଭେମାନେ ଭରସାକରୁଁ ଯେ ଏ ବିଷୟରେ ସର୍ବସାଧାରଣ ସଭାକୁ ସାହାଯ୍ୟ କରିବାଦ୍ୱାରା ଏ ନଗରର ଗୋଟିଏ ପ୍ରଧାନ ଅଭାବ ଦୂର କରିବେ ।



## ( ୧୫ଶ ଭାଗ, ୬ । ୩ । ୧୮୮୦, ସଂଖ୍ୟା ୧୦ )

*୭୪ । ଉଗତ ଉଦେଶୀର ସମ୍ପାଦକ ବାବୁ ଦୀନନାଥ ବନ୍ଦ୍ୟୋପାଧ୍ୟାୟ ବହୁକାଳରୁ ପୀଡ଼ାଗ୍ରସ୍ତ ଥିଲେହେଁ ସାଧାରଣ ହିତକର କାର୍ଯ୍ୟରୁ ଏକାବେଳକେ ନିଶ୍ଚିନ୍ତ ହୋଇନାହାନ୍ତି । ଏଥି ମଧ୍ୟରେ ଗଙ୍ଗାମନ୍ଦର ପୁଷ୍କରଣୀର ପଙ୍କୋଦ୍ଧାର ବିଷୟରେ ଏକ ଆବେଦନ ପତ୍ର ଗତ ଫେବୃଆରୀ ତା ୨୩ ରିଖରେ ମାନ୍ୟବର ଲେଫ୍ଟେନାଣ୍ଟ ଗବର୍ଣ୍ଣରଙ୍କ ନିକଟକୁ ପଠାଇଅଛନ୍ତି ଏବଂ ତେଲପ୍ରତି ଉକ୍ତ ପୁଷ୍କରିଣୀର ବର୍ତ୍ତମାନାବସ୍ଥା ଅତ୍ୟନ୍ତ ଶୋଚନୀୟ ଥିବାରୁ ଗବର୍ଣ୍ଣମେଣ୍ଟଙ୍କ ଟଙ୍କା ବ୍ୟୟ କରିବାର ଯୁକ୍ତି ଦେଖାଇ ଅଛନ୍ତି । ବାସ୍ତବରେ ଏ ପୁଷ୍କରଣୀ ଯେ ସମ୍ପ୍ରତି ସାକ୍ଷାତ୍ ଯମପୁର ହୋଇଅଛି ଏହା କହିବା ବାହୁଲ୍ୟ, ମିଉନିସିପାଲିଟି ଦୁଇଦିନ ଫ୍ରେଲ୍ଲ ଜଳ କଢ଼ାଉ ଅଛନ୍ତି ମାତ୍ର ତାହା ନିତାନ୍ତ ଅଣସ୍ଥାୟୀ । ଏହାକୁ ସମ୍ପୂର୍ଣ୍ଣ ସଂସ୍କାର କରାଇବାର ଶୀଘ୍ର ଉପାୟ ନକଲେ ଭାବୀ ବିପଦର ଆଶଙ୍କା । ପୁଷ୍କରିଣୀଟି ନଗରର ମଧ୍ୟସ୍ଥଳରେ ଅଛି ସୁତରାଂ ଏଥିର ଦୂଷିତବାୟୁ ଅଳ୍ପ ଲୋକ ଭୋଗ କରୁନାହାନ୍ତି ।

## ( ୧୫ଶ ଭାଗ, ୧୩ । ୩ । ୧୮୮୦, ସଂଖ୍ୟା ୧୧ )

*୭୫ । ଗଙ୍ଗାମନ୍ଦର ପୁଷ୍କରଣୀ ।

ଗଙ୍ଗାମନ୍ଦର ପୁଷ୍କରଣୀର ବର୍ତ୍ତମାନାବସ୍ଥା ଯେ ଅତି ଭୟଙ୍କର ଏବଂ ଶୀଘ୍ର ତହିଁର ପ୍ରତିକାର ଆବଶ୍ୟକ ହାକିମମାନଙ୍କଠାରୁ ପ୍ରଜା ପର୍ଯ୍ୟନ୍ତ ଏଥିରେ ଦ୍ୱିମତ ନାହିଁ କେବଳ ସଂସ୍କାରର ଖର୍ଚ୍ଚା କି ଯାହା ପାଞ୍ଚ ହଜାରରୁ ଊଣା ହେବନାହିଁ କେଉଁ-ଠାରୁ ଆସିବ ଏହି ପ୍ରଶ୍ନ ହେଉଅଛି । ଆମ୍ଭେମାନେ କହୁଁ ଏ ଟଙ୍କା ଗବର୍ଣ୍ଣମେଣ୍ଟ ଦେବେ । ପୁଷ୍କରଣୀଟି ଖାସମାହାଲ ମଧ୍ୟରେ ଅଛି । ଗବର୍ଣ୍ଣମେଣ୍ଟ ତହିଁର ଜମିଦାର ।

ଅପର ଜମିଦାରଙ୍କୁ ପ୍ରଜାଙ୍କ ହିତ ଉଦ୍ଦେଶ୍ୟରେ ଏହିପରି କର୍ମ କରିବାକୁ ଗବର୍ଣ୍ଣମେଣ୍ଟ ଆଦେଶ ଦଅନ୍ତି ଆପଣା ବେଳକୁ ଅନ୍ୟପ୍ରକାର କରିବା ବଡ଼ ଅନ୍ୟାୟ, ଗବର୍ଣ୍ଣମେଣ୍ଟଙ୍କୁ ଜମିଦାରମାନଙ୍କ ଆଦର୍ଶ ହେବା ଉଚିତ । ଅପର କେହି ବ୍ୟକ୍ତିର ସମ୍ପତ୍ତି ଏହି ପୁଷ୍କରିଣୀ ହୋଇଥିଲେ ଗବର୍ଣ୍ଣମେଣ୍ଟ କର୍ମଚାରୀମାନେ କେତେ ପ୍ରକାରେ ତାହାକୁ ଏହାର ସଂସ୍କାର କରାଇବା ବାଧ୍ୟ କରନ୍ତେ ଏବଂ ହୋଇପାରେ ଯେ ମିଉନିସିପାଲିଟି ତାହା ଉପରେ ଆଇନ ଜାରିକରି ତାହାର ଜଳଠାରୁ ପର୍ଯ୍ୟନ୍ତ ଚକ୍ରାନ୍ତ କରିବାର ଉପାୟ କରିଥାନ୍ତେ । କେବଳ ଗବର୍ଣ୍ଣମେଣ୍ଟ ଜମିଦାର ଥିବାରୁ କେହି କିଛି କହୁନାହାନ୍ତି । ସ୍ଥାନୀୟ ହାକିମ-ମାନେ ଯେମନ୍ତ ବୁଝି ଅଛନ୍ତି ଯେ ସରକାର କେବଳ ଖଜଣା ଆଦାୟ ଦଅନ୍ତି ନାହିଁ ଆମ୍ଭେମାନେ ନିଶ୍ଚୟ ଅନୁମାନ କରୁଅଛୁଁ ଯେ ସ୍ଥାନୀୟ ହାକିମମାନେ ରିପୋର୍ଟ କଲେ ଗବର୍ଣ୍ଣମେଣ୍ଟ ଅବଶ୍ୟ ଆପଣା ପ୍ରଜା ଏବଂ ଜେଲ ଓ ଡାକ୍ତରଖାନାର ହିତ ନିମିତ୍ତ ଆବ-ଶ୍ୟକୀୟ ଖର୍ଚ୍ଚ ଦେବେ ।

## ( ୧୯ଶ ଭାଗ, ୧୯ । ୫ । ୧୮୮୦, ସଂଖ୍ୟା ୨୦ )

୫୨୬ । ଗଙ୍ଗାମନ୍ଦିର ପୁଷ୍କରିଣୀ ।

ଗଙ୍ଗାମନ୍ଦିର ପୁଷ୍କରିଣୀର ଦୁରବସ୍ଥା ସମ୍ପର୍କରେ ପାନବାବୁ ଗବର୍ଣ୍ଣ-ମେଣ୍ଟଙ୍କୁ ଯେଉଁ ଆବେଦନ ପତ୍ର ପଠାଇଥିଲେ ତହିଁର କୈଫିୟତ ତଲବ ହୋଇଅଛି ଏବଂ ତାହା ମିଉନିସିପାଲିଟିର ବିଚାରାଧୀନରେ ଅଛି । ଏହି ମଧ୍ୟରେ ପୁଷ୍କରିଣୀର ଦଳ କାଢ଼ି ଦିଆଯାଇ ତାହା ଚିକ୍କଣ ଦିଶୁଅଛି । ଯେବେ ଏତିକରେ ହାକିମମାନେ ଭୁଲି ପଡ଼ନ୍ତି ତେବେତ ସବୁ ହେଲା ମାତ୍ର ପ୍ରକୃତ ଅବସ୍ଥା ଦେଖିବାକୁ ହେଲେ ଉକ୍ତ ପୁଷ୍କ-ରିଣୀର ପଙ୍କୋଦ୍ଧାର ବିନା କଦାଚ ଭଲ ହେବନାହିଁ । ତାହା ବହୁ ବ୍ୟୟସାଧ୍ୟ ମାତ୍ର ଗବର୍ଣ୍ଣମେଣ୍ଟ ତହିଁକି ଅକ୍ଷମ ନୁହନ୍ତି । କଲମର ଏକ ଟାଣରେ ଖାସମହାଲର ଅଢ଼େଇ-ହଜାର ଜମାକୁ ଦଶହଜାର କରି ପାରିଲେ, ଜମିଦାର ସ୍ୱରୂପ ପ୍ରଜାଙ୍କ ସୁବିଧା ନିମିତ୍ତ ଗୋଟାଏ ପୁଷ୍କରିଣୀ ଉତ୍ତମ ଅବସ୍ଥାରେ ରଖି ପାରିବେ ନାହିଁ ଏ କେମନ୍ତ କଥା । ବର୍ଷକର ଅଧିକା ଜମା ଛଡ଼ଦେଲେତ ବହି । ବର୍ଷକୁ କିଛି, ଏଥିପାଇଁ କୁଣ୍ଠିତ କାହିଁକି ? ମିଉନିସିପାଲିଟିର ଆସ୍ଥ ଏ ବୃହତ୍ କାର୍ଯ୍ୟକୁ ସରି ନୁହଇ ।

## ( ୧୯ଶ ଭାଗ, ୧୨ । ୬ । ୧୮୮୦, ସଂଖ୍ୟା ୨୪ )

୫୨୭ । ଗଡ଼ଜାତ ଡାକର ବନ୍ଦୋବସ୍ତ ।

ଏଥିପୂର୍ବେ ବାଙ୍କି ଓ ଅନୁଗୁଳ କିଲ୍ଲାମାନ ସରକାରଙ୍କର ଖାସ-ତହସିଲରେ ଥିବାରୁ କେବଳ ସେହିଠାରେ ଡାକଘରମାନ ଥିଲା ଏବଂ କନ୍ଧମାଳକୁ

ନିସୁଲକୁଣ୍ଡା ବାଟେ ଡାକ ଯାତାୟାତ କରୁଥିଲା । କୌଣସି ଗଡ଼ଜାତ ରଜା ଆପଣା କଲ୍ଲାରେ ଡାକଘର ବସାଇ ନଥିଲେ । ଚାର ସ୍ୱର୍ଗୀୟ ଢେଙ୍କାନାଳର ମୃତ ମହାରଜା ଆପଣା କଲ୍ଲା ମଧ୍ୟରେ ବିଦ୍ୟାଳୟ ଡାକସ୍ଥାଳୀୟ ପ୍ରଭୃତି ସାଧାରଣ ହିତକର କାର୍ଯ୍ୟ-ମାନଙ୍କର ଅନୁଷ୍ଠାନ ସଙ୍ଗେ ୨ ଆପଣା କଲ୍ଲାରେ ଡାକ ଯାତାୟାତର ବନ୍ଦୋବସ୍ତ କଲେ । ମହାରାଜା ବଙ୍ଗଳା ଓଡ଼ିଆ ଓ ନାଗରୀ ଭାଷାର ଅନେକ ସମ୍ବାଦ ପତ୍ର ଓ ପୁସ୍ତକ ଯାନ ଅଣାଉ ଥିବାରୁ ଡାକର ବନ୍ଦୋବସ୍ତ ତାହାଙ୍କ ପକ୍ଷରେ ଅତ୍ୟନ୍ତ ପ୍ରୟୋଜନୀୟ ହୋଇଥିଲା ଓ ଆରମ୍ଭରେ ସ୍କୁଲ ମାଷ୍ଟର ଦ୍ୱାରା ଅଳ୍ପ ବ୍ୟୟରେ ଉକ୍ତ କାର୍ଯ୍ୟ ନିର୍ବାହ କରି ନେଉଥିଲେ । ତହିଁ ଉତ୍ତାରୁ ମୟୂରଭଞ୍ଜ କେଉଁଝର ଖଡ଼ ଓ ତାଳଚେର ପ୍ରଭୃତି ରଜାମାନେ କ୍ରମେ ୨ ଆପଣା ୨ ବ୍ୟସ୍ତୁ ଏବଂ ଗଡ଼ରେ ଏକ ୨ ଡାକଘର ସ୍ଥାପନ କଲେ । ବର୍ତ୍ତମାନ ଦେଖାଯାଏ ଯେ ଉକ୍ତ କଲ୍ଲାମାନଙ୍କ ଛଡ଼ା ନୀଳଗିରି, ଝିଗିରିଆ, ରଣପୁର, ଆଠମଲ୍ଲିକ ପ୍ରଭୃତି ସ୍ଥାନକୁ ଡାକ ଯାତାୟାତ କରୁଅଛି । ଆଉ ନୟାଗଡ଼, ଖଣ୍ଡପଡ଼ା, ବଡ଼ାମ୍ବା, ନରସିଂହପୁର, ଦଶପଲ୍ଲା ପ୍ରଭୃତି ସ୍ଥାନରେ ଡାକ ବାକ୍ସ ଥିଲେ-ହେଁ ଅତ୍ୟନ୍ତ ବିଳମ୍ବ ଓ ଅନିଶ୍ଚିତ ରୂପେ ଡାକ ଯାତାୟାତ କରୁଅଛି ।

ସମସ୍ତ ଗଡ଼ଜାତକୁ ନିୟମିତ ରୂପେ ଡାକ ଯାତାୟାତ କରିପାରେ ଏହା ଅତ୍ୟନ୍ତ ବାଞ୍ଛନୀୟ ଏବଂ ଏଥିରେ ଗଡ଼ଜାତର ଉନ୍ନତିର ସମ୍ଭାବନା । ଆମ୍ଭେମାନେ ଆନନ୍ଦ ସହିତ ଅବଗତ ହେଲୁଁ ଯେ ଗଡ଼ଜାତର ସୁପ୍ରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ସ୍ମିଥ ସାହେବ ସମସ୍ତ ଗଡ଼ଜାତ ଡାକଦ୍ୱାରା ଯୋଗ କରିବା କାରଣ ଭାର ଗ୍ରହଣ କରି ଉପର ହୋଇଅଛନ୍ତି ଏବଂ ଯେମନ୍ତ ବ୍ୟଗ୍ରତା ସହିତ କାର୍ଯ୍ୟ କରୁଅଛନ୍ତି ତହିଁରେ ଅନୁମାନ ହୁଅଇ ଯେ ଶୀଘ୍ର ଏ ବନ୍ଦୋବସ୍ତ ସମ୍ପୂର୍ଣ୍ଣ ହେବ । ମାତ୍ର ସାହେବ ପ୍ରଶଂସିତ ଯେଉଁ ପ୍ରଣାଳୀରେ କାର୍ଯ୍ୟାରମ୍ଭ କରିଅଛନ୍ତି ତାହା ଅନେକ ରଜାଙ୍କ ପକ୍ଷରେ କଷ୍ଟକର ହେବାର ଦେଖାଯାଏ ଏବଂ ରଜାମାନେ ତହିଁପାଇଁ ଦୁଃଖିତ ଅଛନ୍ତି । ବାସ୍ତବରେ ଏକ ଏକ ରଜାଙ୍କୁ ବାର୍ଷିକ ଯେତେ ଟଙ୍କା ଦେବାପାଇଁ ସାହେବ ଅନୁରୋଧ କରିଅଛନ୍ତି ତାହା ସେମାନଙ୍କ ଅବସ୍ଥା ପ୍ରତି ଅଧିକ ଏବଂ ସାହେବଙ୍କ ଖାତିରରେ ଦେବାକୁ ବାଧ୍ୟ ହେଲେହେଁ ଏପ୍ରକାର ଚିରସ୍ଥାୟୀ ଦାୟିତ୍ୱ ଗ୍ରହଣ କରିବାକୁ କୁଣ୍ଠିତ ହେଉଅଛନ୍ତି । ଆମ୍ଭେମାନେ ମଧ୍ୟ ରଜାଙ୍କ ଓଜରକୁ ଅଯୌକ୍ତିକ ଜ୍ଞାନ କରୁନାହୁଁ । ସବୁ କଲ୍ଲାର ଅବସ୍ଥା ଏପରି ନୁହଇ ଯେ ଗୋଟିଏ ଲେଖାଏଁ ସ୍ୱତନ୍ତ୍ର ଡାକଘର ରକ୍ଷିପାରେ ଏବଂ ସବୁ କଲ୍ଲାରେ ଗୋଟିଏ ଲେଖାଏଁ ସ୍ୱତନ୍ତ୍ର ଡାକଘର ସକାଶେ ଉପଯୁକ୍ତ କାର୍ଯ୍ୟ ମଧ୍ୟ ନାହିଁ । ଏଥି ଉତ୍ତାରୁ ରଜା-ମାନଙ୍କର ଜାଗିରଖିଆ ପାଇକମାନେ ଅଛନ୍ତି ଯେ ଡାକ ନେବା ଦେବା ତାହାଙ୍କର ଗୋଟିଏ କାର୍ଯ୍ୟ ଅଟଇ । ବେତନ ଦେଇ ଡାକଘର ବସାଇଲେ ସେମାନଙ୍କର ଜାଗିର ବାଜ୍ୟାପ୍ତି କରିବା ଦ୍ୱାରା ସେ ଟଙ୍କା ଉଠାଇବାକୁ ହେବ ମାତ୍ର ତାହା କୌଣସିମତେ

ନିରାପଦ ଓ ସୁଶୃଙ୍ଖଳିତ କାର୍ଯ୍ୟ ହୁଅନ୍ତା । ପୁଣି ରାଜାମାନେ ଆପଣା ବ୍ୟୟରେ ଡାକଘର ବସାଇଲେ ତାହାଙ୍କର ସମସ୍ତ ଚିଠିପତ୍ର ବିନା ମାସୁଲରେ ଯିବା ଆସିବା କରିବା ଉଚିତ କିନ୍ତୁ କାର୍ଯ୍ୟତଃ ତାହା ହୋଇ ନ ପାରେ ଏବଂ ହେବାର ଉଚିତ ନୁହଇ । ଡାକଘର ଗବର୍ଣ୍ଣମେଣ୍ଟ ଇଣ୍ଡିଆଙ୍କର ଗୋଟିଏ ଖାସ ମହାଲୁମା. ଏଥିନିମନ୍ତେ ଯେତେ ବିସ୍ତାର ହୋଇ ଗବର୍ଣ୍ଣମେଣ୍ଟଙ୍କର ତେତେ ଲାଭ ଏବଂ ସାଧାରଣ ପ୍ରୟୋଜନ ବୁଝିଲେ ଗବର୍ଣ୍ଣମେଣ୍ଟ ତହିଁର ସୁବିଧା କରିଦେବାକୁ ବାଧ୍ୟ । ଏହି ବିବେଚନାରେ ଗବର୍ଣ୍ଣମେଣ୍ଟ ପ୍ରାୟ ସମସ୍ତ ଜିଲ୍ଲାରେ ଡାକ ବାକ୍ସମାନ ରଖାଇ ସାମାନ୍ୟ ପରିମାଣରେ ଚିଠିପତ୍ର ଯିବା ଆସିବାର ସୁବିଧା କରିଦେଇ ଅଛନ୍ତି କିନ୍ତୁ ଲୋକ ବିଶେଷର ପ୍ରୟୋଜନକୁ ତାହା ପ୍ରଚୁର ନୁହଇ । ଏଥିପାଇଁ ରାଜାମାନଙ୍କଠାରୁ କିଛି କିଛି ସାହାଯ୍ୟ ନେବା ଅନ୍ୟାୟ ନୁହଇ କିନ୍ତୁ ତାହା ଏହି ସର୍ତ୍ତରେ ହୋଇପାରେ ଯେ ଡାକଘରର ବ୍ୟୟ ଆପେ ୨ କିଛି ହେବାର ସମ୍ଭବ ହେଲେ ସେ ସାହାଯ୍ୟର ଆଉ ପ୍ରୟୋଜନ ହେବନାହିଁ । ପୁଣି ପ୍ରତ୍ୟେକ ରାଜାର ଗଡ଼ରେ ଡାକଘର ସ୍ଥାପନ ପକ୍ଷରେ ସମ୍ପ୍ରତି ଗୋଟିଏ ଭିନ୍ନ ପ୍ରତିବନ୍ଧକ ରହିଅଛି ଏବଂ ଆମ୍ଭମାନଙ୍କ ବିବେଚନାରେ ଡାକଘର ଫିଟାଇବା ପୂର୍ବରୁ ତହିଁର ସୁବିଧା କରିବା ଉଚିତ । କଟକଠାରୁ ସମସ୍ତ ଗଡ଼ଜାତକୁ କିମ୍ବା ଏକ ଗଡ଼ଠାରୁ ଅନ୍ୟ ଗଡ଼କୁ ଯାତାୟାତ ସକାଶେ ସଡ଼କ ବାଟ ନାହିଁ । ବାଟର ସୁବିଧା ନହେଲେ କେବଳ ଡାକର ପ୍ରୟୋଜନ ବୃଦ୍ଧି ହେବା ସମ୍ଭବ ନୁହଇ ଏବଂ ଶୀଘ୍ର ଡାକ ଯାତାୟାତ ମଧ୍ୟ କରି ନପାରେ । ଆଗେ ସଡ଼କ ହେଲେ ବାଣିଜ୍ୟର ବୃଦ୍ଧି ସୁତରାଂ ଡାକର ପ୍ରୟୋଜନ ବୃଦ୍ଧି ହେବ । ଯେତେ ଦିନ ତାହା ହୋଇନାହିଁ ତେତେଦିନ କେବଳ ଡାକଘର ଫିଟିଲେ ଯେ ଅଧିକ କାର୍ଯ୍ୟ ହେବ ଏମନ୍ତ ଆଶା କରିପାରି ନପାରେ । ଏହି ସମସ୍ତ ବିବେଚନାରେ ଆମ୍ଭେମାନେ କହୁଁ ଯେ ସମ୍ପ୍ରତି ରାଜାମାନଙ୍କୁ ଅଧିକ ଖର୍ଚ୍ଚାନ୍ତ ନକରାଇ ଏକ ୨ ମଧ୍ୟ ସ୍ଥଳରେ ଗୋଟିଏ ଲେଖାଏଁ ଡାକଘର ସ୍ଥାପନକରି ଚତୁର୍ଦ୍ଦିଗସ୍ଥ ରାଜାଙ୍କୁ ଆପଣା ଆପଣା ଜିଲ୍ଲା ସଙ୍ଗେ ଯୋଗ ରଖିବା ପାଇଁ ବାଧ୍ୟ କରାଯାଉ । ତାହା ହେଲେ ଅଳ୍ପ ବ୍ୟୟରେ ଆପାତତଃ କାର୍ଯ୍ୟ ଚଳିବ ଏବଂ କାହାରିକୁ ତାହା ବାଧିବ ନାହିଁ । ଉଦାହରଣ ସ୍ୱରୂପ ବୋଲି ଯାଇପାରେ ଯେ ମହାନଦୀର ଦକ୍ଷିଣ କୂଳରେ କଣ୍ଟିଲୋ ଗୋଟିଏ ପ୍ରଧାନ ଗ୍ରାମ । ଏଠାରେ ବାଣିଜ୍ୟ କାର୍ଯ୍ୟ ମଧ୍ୟ ଅଧିକ ପରିମାଣରେ ଚଳଇ । ଏଠାରେ ଗୋଟିଏ ଡାକଘର ହେଲେ ଖଣ୍ଡପଡ଼ା ବଡ଼ମ୍ବା ନରସିଂହପୁର ଓ ଦଶପଲ୍ଲା ଚାରିଆଡ଼କୁ ସୁବିଧା ହେବ । ରାଜାମାନେ କେବଳ ପାଇକ ଖଞ୍ଜିଦେଲେ ଅନାୟାସରେ ଅଳ୍ପ ବ୍ୟୟରେ କାର୍ଯ୍ୟ ହେବ । ଗଡ଼ ଛଡ଼ା ଜିଲ୍ଲାର ଅନ୍ୟାନ୍ୟ ଗ୍ରାମରେ ଚିଠିପତ୍ର କିଛିକାଳ ସକାଶେ ନାମମାତ୍ର ବୋଲିବାକୁ ହେବ । ସୁତରାଂ ଗଡ଼ ସଙ୍ଗରେ ଯୋଗ ହେଲେ ଯଥେଷ୍ଟ ହେଲା । ଏହିପରି ଭୁଞ୍ଜପୁରରେ ଏକ ଡାକଘର ହେଲେ ହିଣ୍ଡୋଳ ଢେଙ୍କାନାଳ ହିନ୍ଦୋଳ ଏବଂ ତାଳଚେରର ପର୍ଯ୍ୟନ୍ତର ସୁବିଧା ହେବ । ଏପରି ମଧ୍ୟସ୍ଥଳ ମାନଙ୍କରେ

ଗୋଟିଏ ୨ ଡାକଘର ବସାଇବାର ସମ୍ପୂର୍ଣ୍ଣ ବ୍ୟୟ ଯେବେ ଗବର୍ଣ୍ଣମେଣ୍ଟ ଆପାତତଃ ଦେଇ ନପାରନ୍ତି ତେବେ କିଛି ଅଂଶ ରାଜାମାନଙ୍କଠାରୁ କିଛି ୨ ନେଲେ ମଧ୍ୟ ଚଳିପାରେ । ଖୋର୍ଦ୍ଧା ବୋଲଗଡ଼ରେ ଡାକଘର ଅଛି । ସେଠାରୁ ନୟାଗଡ଼ ଓ ରଣପୁରକୁ ଡାକ ଯାତାୟତର ସୁବନ୍ଦ ବନ୍ଦୋବସ୍ତ ହୋଇପାରେ । ସ୍ଥୂଳ କଥା ଏହି ହେଉଅଛି କି ରାଜାମାନଙ୍କୁ ଡାକଘର ଦ୍ୱାରା କାରବାର କରିବାକୁ ବାଧ୍ୟ କଲେ କ୍ରମଶଃ ଡାକଘର ପ୍ରତି ସେମାନଙ୍କର ମନ ବଢ଼ିବ । ସେମାନଙ୍କ ସହିତ ଯେତେ ସରକାରୀ ଚିଠିପତ୍ର ଦୁଆର ସମସ୍ତ ଡାକରେ ଯିବା ଆସିବା ହେଉ ଏବଂ କେଉଁଠାରୁ ଡାକରେ କେତେଦିନେ ଚିଠି ଯିବା ଆସିବା କରୁଅଛି ସୁପ୍ରିଣ୍ଟେଣ୍ଟ ମହାଶୟମାନେ ତହିଁପ୍ରତି ଦୃଷ୍ଟି ରଖନ୍ତୁ ଓ ସମୟ ସମୟରେ ଆବଶ୍ୟକ ହେଲେ ରାଜାମାନଙ୍କୁ ସେ ବିଷୟରେ ତାଗିଦ ହେଉ । ତାହାହେଲେ କ୍ରମଶଃ ଡାକଘରର ଆଦର ବଢ଼ିବ । ଏ ସମସ୍ତ ଚେଷ୍ଟା କରିବା ପୂର୍ବେ ରାଜାମାନଙ୍କୁ ତଦ୍ବିଷୟ ଜଣାଇଦେବା କିମ୍ବା ସେମାନଙ୍କର ମୂର୍ଖତା ବଶତଃ ସ୍ଥିର ଅର୍ଥଦଣ୍ଡ ତାହାଙ୍କଠାରୁ ନେବା କିଛି କଠିନ ବୋଧ ହେଉଅଛି ।

**( ୧୪ଶ ଭାଗ, ୨୧ । ୮ । ୧୮୮୦, ସଂଖ୍ୟା ୩୪ )**

୫୨୮ । ପ୍ରେରିତ ପତ୍ର

ମହାଶୟ, ଏହି କଟକରେ ପଣ୍ଡିତ ତାରାକାନ୍ତ ବିଦ୍ୟାସାଗର, ବାବୁ ମହେଶ୍ୱର ରାୟ, ବାବୁ ଜଗନ୍ମୋହନ ରାୟ ପ୍ରଭୃତି ଭଦ୍ର ୨ ଲୋକମାନେ ଦାନ ସଂଗ୍ରହ କରି ଗୋଟିଏ ବଙ୍ଗଳା ପୁସ୍ତକର ଲାଇବେରି ସ୍ଥାପନ କରିଥିଲେ, ଉକ୍ତ ଲାଇବ୍ରେରୀରେ ପ୍ରାୟ ୩ । ୪ ସହସ୍ର ଟଙ୍କାର ପୁସ୍ତକମାନ ସଂଗ୍ରହକରି ସାଧାରଣ ଲୋକମାନଙ୍କର ଗୋଟିଏ ପ୍ରଧାନ ଅଭାବ ମୋଚନ କରିଥିଲେ । କିଛିକାଳ ପରେ ବିଦ୍ୟାର ଯାହାଜା ମେଃ ଅର୍ମଷ୍ଟ୍ରଂ ସାହେବ କଟକଜନବାସୀ ବାବୁ ଇଶାନଚନ୍ଦ୍ର ବାନୁର୍ଯ୍ୟାଙ୍କ ପୁତ୍ର କାଳୀପଦ ବନ୍ଦୋପାଧ୍ୟାୟଙ୍କ ଆବଦାନରେ ଭୁଲିଯାଇ ଏହି ସାଧାରଣଙ୍କ ସମ୍ପତ୍ତି ତାଙ୍କ ହସ୍ତରେ ଅର୍ପଣ କରିଥିଲେ । ବର୍ତ୍ତମାନ ଉକ୍ତ ସାଧାରଣଙ୍କ ଅର୍ଥରେ ସଂଗୃହୀତ ପୁସ୍ତକମାନ କାଳୀବାବୁ ସ୍ୱୋପାର୍ଜିତ ସମ୍ପତ୍ତି ସଦୃଶ ଭୋଗ ଦଖଲ କରୁଅଛନ୍ତି । ସାଧାରଣ ସମ୍ପତ୍ତିରୁ ସାଧାରଣଙ୍କୁ ବଞ୍ଚିତକରି, ସେ ସ୍ୱୋପାର୍ଜିତ ଅଥବା ପୈତୃକ ସମ୍ପତ୍ତିର ସଦୃଶ ଆପେ ଭୋଗ କରିବା ଏବଂ ଯଥେଚ୍ଛାରୂପରେ ଉକ୍ତ ବହୁମୂଲ୍ୟ ପୁସ୍ତକମାନ ନଷ୍ଟ କରିବାର ତାହାଙ୍କର କି ଅଧିକାର ଅଛି । ଯାହାହେଉ ଏପରି ଗର୍ହିତ କାର୍ଯ୍ୟ ଏପରି ନ୍ୟାୟ ବିରୁଦ୍ଧକାର୍ଯ୍ୟ, ସଭ୍ୟ ସମାଜରେ ପାଦପାକ ହେବା ସାଧାରଣର ଆଶ୍ଚର୍ଯ୍ୟ ବିଷୟ ନୁହେ ! ଯାହା ହେଉ ଏହି ବିଷୟ ଆମ୍ଭମାନଙ୍କ ସ୍ଥାନୀୟ କର୍ତ୍ତୃପକ୍ଷମାନଙ୍କର ବିଶେଷତଃ ମାନନୀୟ ମେଜେଷ୍ଟର ମେଃ ପର୍ସି ସାହେବଙ୍କର ଏ ବିଷୟରେ ଅନୁସନ୍ଧାନ

ନେତା ଏବଂ ସାଧାରଣଙ୍କ ସମ୍ପତ୍ତି କାଳୀବାବୁ ସ୍ୱୟଂ ଅଧିକାର କରି ନ ପାରିବାର କୌଣସି ବ୍ୟବସ୍ଥା କରିବାର ଉଚିତ ।

ଦ୍ୱିତୀୟତଃ କାଳୀବାବୁଙ୍କର ଆଉ ଗୋଟିଏ ଆଶ୍ଚର୍ଯ୍ୟ ରୀତି ଦେଖି ଆମ୍ଭେମାନେ ଆଶ୍ଚର୍ଯ୍ୟ ହେଉଅଛୁଁ । 'ହିତୈଷିଣୀ ପ୍ରେସ' ନାମରେ ଗୋଟିଏ ପ୍ରେସ ସାଧାରଣଙ୍କ ଶେୟାରରେ ସ୍ଥାପିତ ହୋଇ ତାହା ସାଧାରଣଙ୍କ ସମ୍ପତ୍ତିରେ ଗଣ୍ୟ ନହୋଇ ବର୍ତ୍ତମାନ କାଳୀବାବୁ ତାହା ସ୍ୱୋପାର୍ଜିତ ସମ୍ପତ୍ତିର ନ୍ୟାୟ ବ୍ୟବହାର କରୁଅଛନ୍ତି । ବର୍ତ୍ତମାନ ତାହା ସାଧାରଣଙ୍କ ସମ୍ପତ୍ତି ତାହା କାହାକୁ ଜାଣିବାକୁ ମଧ୍ୟ ଦେଉ ନାହାନ୍ତି । ସ୍ଥାନୀୟ କର୍ତ୍ତୃପକ୍ଷମାନେ ଏପ୍ରେସ କାହାର ଜାଣନ୍ତି ? କାଳୀବାବୁ କି ଭାବରେ ପରିଚୟ ଦେଉଥାନ୍ତି ? ମାହାତେଜ କାଳୀବାବୁଙ୍କ ଏପରି ପର୍ଣ୍ଣିକ ସ୍ୱିଗଠ ଆମ୍ଭମାନଙ୍କୁ ବହୁବାଧ ଜଣାଅଛି କିନ୍ତୁ ସାଧାରଣର ସାଧାରଣ ପ୍ରେସ ବିଷୟରେ ମନୋଯୋଗୀ ହେବା ଉଚିତ ।

ତୃତୀୟତଃ ଉଚ୍ଚ ସ୍କୁଲ ଯେତେବେଳେ ଉଠିଗଲା ତେତେବେଳେ ତହବିଲ କାହାକୁ ବୁଝାଇ ଦେଇଥିଲା ? ଉକ୍ତ ସ୍କୁଲରେ ଗବର୍ଣ୍ଣମେଣ୍ଟର ଏଡ୍ ଥିଲା । ଆମ୍ଭେମାନେ ସ୍ଥାନୀୟ ଡିଏଣ୍ଟ ଇନସ୍ପେକ୍ଟରଙ୍କୁ ଅନୁରୋଧ କରୁଁ ସେ ଯେମନ୍ତ ଏହିର ତଦନ୍ତ କରନ୍ତି । ତାହାଙ୍କୁ ଏ ବିଷୟରେ ନିଶ୍ଚେଷ୍ଟ ଦେଖିଲେ ଅଗତ୍ୟା ଆମ୍ଭେମାନେ ଏ କଥା ଟେଷ୍ଟଲଟ ସାହେବଙ୍କ କର୍ଣ୍ଣରେ ଉଠାଇବାରେ ତ୍ରୁଟି କରିବା ନାହିଁ ।—

କ୍ରମଶଃ

କଟକ<br>୫ । ୮ । ୮୦

ନିବେଦନ<br>ଶ୍ରୀ ଦୀନାନାଥ ବନ୍ଦ୍ୟୋପାଧ୍ୟାୟ —

## ( ୧୫ଶ ଭାଗ, ୪ । ୯ । ୧୮୮୦, ସଂଖ୍ୟା ୩୬ )

୫୨୯ । ସରକାରୀ ଯାହାଜର ବନ୍ଦୋବସ୍ତ ।

ନାଳଯୋଗୁଁ ଓଡ଼ିଶାରେ ରେଲବାଟ ହେଉନାହିଁ ଏବଂ ନାଳଦ୍ୱାରା ଗଞ୍ଜାମରୁ କଲିକତା ପର୍ଯ୍ୟନ୍ତ ଯାତାୟାତର ଯେ ସୁବିଧା ହେବାର ଥିଲା ଏବଂ ଯହିଁ ପାଇଁ ବଙ୍ଗଳାର ଲେଫ୍ଟନାଣ୍ଟ ଗବର୍ଣ୍ଣର ଖୁବ ବ୍ୟଗ୍ର ହୋଇଥିଲେ ତାହାମଧ୍ୟ ଦେଖିବାକେ ଆସିଲା ନାହିଁ । ତେବେ କଟକରୁ ଚାନ୍ଦବାଲି ପର୍ଯ୍ୟନ୍ତ ସରକାରୀ ଯାହାଜ ଯାତାୟାତ କରିବାର ଯେଉଁ ବନ୍ଦୋବସ୍ତ ହୋଇଅଛି ଏବଂ ଯହିଁରେ ଗବର୍ଣ୍ଣମେଣ୍ଟଙ୍କର ଲଉ

ହେବାର ଏଥି ମଧ୍ୟରେ ଦେଖା ଯାଇଅଛି ତଦ୍ଦ୍ୱାରା ସର୍ବସାଧାରଣଙ୍କର ଗୋଟିଏ ଭାରି ଉପକାର ହୋଇଅଛି ଏବଂ ଯେବେ ଗବର୍ଣ୍ଣମେଣ୍ଟ କର୍ମଚାରୀମାନେ ଯଥୋଚିତ ମନୋଯୋଗୀ ହୁଅନ୍ତି ତେବେ ଏ ବନ୍ଦୋବସ୍ତ ଦ୍ୱାରା ଯେମନ୍ତ ଲୋକଙ୍କର ବହୁତର ସୁବିଧା ସେମନ୍ତ ସରକାରଙ୍କର ବହୁତର ଲାଭ ହେବ । ଏହି ଜାହାଜ ବାଟହେତୁ ସମ୍ପ୍ରତି କଟକ ଓ କଲିକତା ଚାରିପାଞ୍ଚ ଦିନ ଛଡ଼ାରେ ରହିଅଛି ଏବଂ ଏଥିପାଇଁ ଯାହାଜ ଭ୍ରମଣରେ ନାନା କଷ୍ଟ ଥିଲେହେଁ ଲୋକେ ଆଗ୍ରହ ପୂର୍ବକ ଯାତାୟାତ କରୁଅଛନ୍ତି । ସମ୍ପ୍ରତି ଏ ବାଟରେ ଭ୍ରମଣପ୍ରତି ଯେ ସମସ୍ତ ଅସୁବିଧା ଅଛି ତାହା ଗବର୍ଣ୍ଣମେଣ୍ଟଙ୍କୁ ଜଣାଇ ଆଶା କରୁଁ ଯେ ଶୀଘ୍ର ଏଥିର ବିହିତ ଉପାୟ ଅବଲମ୍ବିତ ହେବ ।

ପ୍ରତ୍ୟେକଲୋକ ଫୁଲଡ଼ାରେ ପଥିକମାନଙ୍କର ବ୍ୟବହାର ନିମିତ୍ତ ଖଣ୍ଡିଏ ଲେଖାଏଁ ଟିକଟଘର ହେବାର ଆବଶ୍ୟକ ଯେ ସେମାନେ ଯାହାଜକୁ ଗୃହିବସିବା ବେଳେ ଖରିବର୍ଷାରୁ ରକ୍ଷାପାଇବେ । କାରଣ ଯାହାଜ ପହୁଞ୍ଚିବାର ସମୟ ଠିକ ନଥିବାରୁ ପଥିକମାନେ ଦୀର୍ଘକାଳ ଅପେକ୍ଷା କରି ରହନ୍ତି । ଗଣ୍ଡାକଆରେ ଦୀର୍ଘକାଳ ଯାହାଜ ନ ଅଟକି ନେବାପାଇଁ ଅଟକିବାର ଉଚିତ କାରଣ ଏଠାରେ ଆହାରାଦିର ସମସ୍ତଦ୍ରବ୍ୟ ପ୍ରାପ୍ତହୁଅଇ ମାତ୍ର ଗଣ୍ଡାକଆ ବଜାରରେ ସ୍ଥାନ ନଥିବାରୁ ପଥିକମାନେ ବଡ଼ କଷ୍ଟ ଭୋଗକରନ୍ତି । ବର୍ତ୍ତମାନ କେବଳ କଲିକତା ଯାତାୟାତର ସୁବିଧା ଦୃଷ୍ଟିରେ ସପ୍ତାହରେ ଏକଥର ଗୃହବାଲକୁ ଯାହାଜ ଯାଉଅଛି କିନ୍ତୁ ଯେବେ ଉକ୍ତ ୨ ଦିନରେ ସପ୍ତାହ ମଧ୍ୟରେ ଦୁଇଥର ଯାତାୟାତ କରିବ ତେବେ ମନୁଷ୍ୟ ଓ ବାଣିଜ୍ୟ ଉଭୟ ପକ୍ଷରେ ବହୁତର ସୁବିଧା ହେବ ଏବଂ ଯାହାଜ ଦୁଇପାଖର ଲୋକମାନେ ଜିଲ୍ଲା ମଧ୍ୟରେ ଗମନାଗମନ କରିବାକୁ ବିଶେଷ ସୁଯୋଗ ପାଇବେ ଏ ସମସ୍ତ ଉପାୟ କରିବାରେ ଗବର୍ଣ୍ଣମେଣ୍ଟଙ୍କର କିଛି ଅଧିକା ବ୍ୟୟ ହେବ ସତ୍ୟ ମାତ୍ର ଆମ୍ଭମାନଙ୍କ ଦୃଢ଼ ବିଶ୍ୱାସ ଯେ ତଦ୍ଦ୍ୱାରା ଅଧିକ ଲାଭ ହେବ । ଆଉ ହାଇଲେଭଲ କେନାଲ ଯେତେଦୂର ଫିଟି-ଅଛି ତହିଁ ମଧ୍ୟରେ ଗମନାଗମନ ସକାଶେ ଖଣ୍ଡିଏ ଧୂଆଁକଳ ଯାହାଜ ନିଯୁକ୍ତ କରିବା ଉଚିତ, ଠେଣାବୋଟ ଯେତେ ଶୀଘ୍ର ଯାଏନାହିଁ ବୋଲି ଲୋକେ ତହିଁରେ ଭ୍ରମଣ କରିବାକୁ ସୁଖପାନ୍ତି ନାହିଁ ସୁତରାଂ ସେ ନାଳଦ୍ୱାରା ଗମନାଗମନର ସୁବିଧା ହେଉନାହିଁ ।

( ୧୫ଶ ଭାଗ, ୭ । ୧୧ । ୧୮୮୦, ସଂଖ୍ୟା ୪୪ )

୫୮୦ ।

ଉତ୍କଳୀୟ କରଣ ସମାଜ ।

ଉତ୍କଳୀୟ କରଣମାନଙ୍କର କେତେଗୁଡ଼ିଏ ସାମାଜିକ ରୀତି ସଂଶୋଧନ କରିବା ଏବଂ ଉତ୍କଳୀୟ କରଣ ବର୍ଗୀୟ କାୟସ୍ଥ ଏବଂ ହିନ୍ଦୋସ୍ଥାନୀ ଲାଲଙ୍କ

ମଧ୍ୟରେ ସମତା ସପ୍ରମାଣ କରିବା ଓ ତଦ୍ୱାରା ପରସ୍ପର ମଧ୍ୟରେ ଆହାର ବ୍ୟବହାରରେ ବର୍ତ୍ତମାନ ଯେତେ ଅନ୍ତର ଦେଖାଯାଏ ତାହା ଯଥୋଚିତ ରୂପେ ଦୂର କରିବା ପାଇଁ ମୃତ ବାବୁ ବଚହାନନ୍ଦ ଦାସ ଅନେକ ଚେଷ୍ଟା କରିଥିଲେ ଏବଂ ଏହି ସମସ୍ତ ଉଦ୍ଦେଶ୍ୟ ସଫଳ କରିବା ଆଶାରେ ସେ ଅନେକ ପରିଶ୍ରମ ଓ ବ୍ୟୟ ସ୍ୱୀକାର କରି ଶାସ୍ତ୍ରୀୟ ପୁସ୍ତକ ରଚନା କରିଥିଲେ । ଦୁର୍ଭାଗ୍ୟ ବଶତଃ ସେ ପୁସ୍ତକ ଅବଧି ମୁଦ୍ରିତ ନ ହେବାରୁ ସର୍ବସାଧାରଣଙ୍କ ନିକଟରେ ଉପସ୍ଥିତ ହୋଇ ପାରିନାହିଁ ଏବଂ ବାବୁଙ୍କ ଉତ୍ତାରୁ ଅନ୍ୟ କେହି ଉତ୍କଳବାସୀ ସେହିପଥରେ ଯତ୍ନବାନ ହେବାର ଦେଖା ଯାଉନାହିଁ । କିନ୍ତୁ କାଳର କି ଚମତ୍କାର ଶକ୍ତି । ଏକ ସମୟରେ ଯାହା ବହୁ ଯତ୍ନରେ ସାଧନ ହେବାର ଦୁଷ୍କର ଅନ୍ୟ ସମୟରେ ତାହା ଆପଣା ସୁଖେ ସଂଘଟିତ ହୁଅଇ । ବହୁକାଳ ପୂର୍ବେ ଉତ୍କଳୀୟ ଏବଂ ବଙ୍ଗୀୟ କରଣମାନେ ପରସ୍ପରଙ୍କ ଘରେ ସାମାଜିକ ଉତ୍ସବରେ ମହା-ପ୍ରସାଦ ଭିନ୍ନ କଞ୍ଚା ଭୋଜନ କରୁ ନଥିଲେ । କ୍ରମେ ନିସକୁଡ଼ି ଦ୍ରବ୍ୟ ଭୋଜନର ପ୍ରଥା ପ୍ରଚଳିତ ହେଲା, ମାତ୍ର ବ୍ୟଞ୍ଜନ ବିହୀନେ ପୁରୀ ଇତ୍ୟାଦି ମିଷ୍ଟାନ୍ନ ସେବା ତୃପ୍ତିକର ନୁହେ ଓ ତାହା ଚଳାଇବା ପକ୍ଷରେ ଯତ୍ନ ହେବାରୁ ଏହି ସିଦ୍ଧାନ୍ତ ହେଲା ଯେ ଉତ୍କଳୀୟ ବ୍ରାହ୍ମଣ ପାକ କରିଥିବା ବ୍ୟଞ୍ଜନ ପ୍ରଚଳିତ ହୋଇ ପାରେ । ଏହି ନିୟମ କେତେ ବର୍ଷହେଲା ପ୍ରଚଳିତ ହୋଇ ଆସୁଅଛି ଏବଂ କେତେ ବଙ୍ଗୀୟ ବ୍ରାହ୍ମଣ ପାକ କରିଥିବା ଦ୍ରବ୍ୟପ୍ରତି ଉତ୍କଳୀୟ କରଣମାନଙ୍କର ଆପତ୍ତି ଥିଲା । ସମ୍ପ୍ରତି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ସହିତ ଦେଖିଲୁଁ ଯେ ଉତ୍କଳୀୟମାନେ ଏ ଆପତ୍ତିକୁ ପରିତ୍ୟାଗ କରିଅଛନ୍ତି । ଗତ ଅମାବାସ୍ୟାର ପରଦିନ କାଳୀପୂଜା ଉପଲକ୍ଷରେ ଶ୍ରୀ ବାବୁ ସୀତା-କାନ୍ତ ମୁଖର୍ଜୀଙ୍କ ଘରଠାରେ ତାହାଙ୍କ ଆମନ୍ତ୍ରଣ ମତେ ଅନ୍ୟାନ୍ୟ ଜାତୀୟ ଭଦ୍ରଲୋକ ମଧ୍ୟରେ ଅନେକ କରଣ ସମବେତ ହୋଇଥିଲେ ଏବଂ ସେମାନେ କୌଣସି ପ୍ରକାର ଦ୍ୱିଧା ନ କରି ଆହ୍ଲାଦ ସହିତ ବଙ୍ଗୀୟ ବ୍ରାହ୍ମଣଙ୍କ ହସ୍ତରେ ପ୍ରସ୍ତୁତ ହୋଇଥିବା ଡାଲି ଏବଂ ସକଳ ପ୍ରକାର ବ୍ୟଞ୍ଜନ ଗ୍ରହଣ କଲେ । ଏଥିର କେବଳ ଅନ୍ନର ବ୍ୟବଧାନ ରହିଲା ଏବଂ ମା କାଳୀଙ୍କ ପ୍ରସାଦରୁ ଅଳ୍ପକାଳ ମଧ୍ୟରେ ଏହା ଅନ୍ତର୍ଦ୍ଧାନ ହେବ ଏମନ୍ତ ଆମ୍ଭମାନଙ୍କର ଦୃଢ଼ ଆଶା ଅଛଇ । ବାସ୍ତବରେ ଉତ୍କଳୀୟ ଏବଂ ବଙ୍ଗୀୟ ବ୍ରାହ୍ମଣଙ୍କ ମଧ୍ୟରେ ପ୍ରଭେଦ ଜ୍ଞାନ କରିବା କରଣ ପକ୍ଷରେ ଶୋଭନୀୟ ନୁହଇ । ବଙ୍ଗୀୟ କାୟସ୍ଥମାନେ ଉତ୍କଳୀୟ ବ୍ରାହ୍ମଣଙ୍କ ହସ୍ତରେ ଭୋଜନ କରିବାର ରୀତି ଅନେକ ଦିନରୁ ପ୍ରଚଳିତ କରିଅଛନ୍ତି । ହିନ୍ଦୁସ୍ଥାନୀ ଲାଲାମାନେ ଉତ୍କଳୀୟ ବ୍ରାହ୍ମଣଙ୍କୁ ପୁରୋହିତ ସୁଦ୍ଧା କରି ସାରିଲେଣି । ଏଥିର ଉତ୍କଳୀୟ କରଣମାନେ ବଙ୍ଗୀୟ ବ୍ରାହ୍ମଣଙ୍କୁ ଅଙ୍ଗୀକାର କଲେ ବଡ଼ ସୁଖର ବିଷୟ ଅଟଇ । ଏ ଉତ୍ତାରୁ କାୟସ୍ଥ କରଣ ଓ ଲାଲାଙ୍କ ମଧ୍ୟରେ ସକଳ ପ୍ରକାର ଖାଦ୍ୟ ଦ୍ରବ୍ୟ ଭୋଜନ ବିଷୟରେ ଅଉ କୌଣସି ପରନ୍ତୁ

ରହିବା ଉଚିତ ନୁହଇ । ପଶ୍ଚିମ ପ୍ରଦେଶରେ କେବଳ ଅନ୍ନ ରୁଟି ଓ ଡାଲକୁ ସଙ୍କୁଚିତ ବୋଲନ୍ତି । ଏ ଦ୍ରବ୍ୟମାନ ସ୍ୱଜାତୀୟଛଡ଼ା ଅନ୍ୟ କାହାର ସଙ୍ଗେ କେହି ଭୋଜନ କରନ୍ତି ନାହିଁ । ମାତ୍ର ପୁରୀ ଓ ମାଂସ ପ୍ରଭୃତି ସକଳ ପ୍ରକାର ବ୍ୟଞ୍ଜନ ଏକ ଆସନରେ ବସି ସମ ଶ୍ରେଣୀର ଭିନ୍ନ ୨ ଜାତୀୟ ଲୋକମାନେ ଭୋଜନ କରନ୍ତି ଓ ବଜାରରୁ ରନ୍ଧା ବ୍ୟଞ୍ଜନ କ୍ରୟକରି ସମସ୍ତେ ଭୋଜନ କରନ୍ତି । ଏ ନିୟମ ସର୍ବତ୍ରରେ ପ୍ରଚଳିତ ହେବା ବାଞ୍ଛନୀୟ ଅଟଇ ।

## ( ୧୪ଶ ଭାଗ, ୨୦ । ୧୧ । ୧୮୮୦, ସଂଖ୍ୟା ୪୭ )

୪୮୧ । ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦ ସହିତ ଗତ କଲିକତା ଗେଜେଟରେ ପାଠକଲୁଁ ଯେ ବାବୁ ହରେକୃଷ୍ଣ ଦାସ ଯେ କି ସବଡେପୁଟୀ ହୋଇ ଦାଖଲ ଖାରଜ ମାମଲା ନିକାଶ କରୁଥିଲେ ଅନ୍ୟ ଆଜ୍ଞା ପର୍ଯ୍ୟନ୍ତ ଡେପୁଟି କଲେକ୍ଟର ନିଯୁକ୍ତ ହୋଇ ଏହି ଜିଲ୍ଲାକୁ ଆସୁଅଛନ୍ତି । ଆମ୍ଭେମାନେ ଶୁଣିଲୁଁ ଯେ ବାବୁଙ୍କୁ ଏପଦ ଦେବା କାରଣ ଏଠାରୁ କିଛି ପ୍ରସ୍ତାବ ହୋଇନଥିଲା, ଲେଫ୍‌ଟେନାଣ୍ଟ ଗବର୍ଣ୍ଣର ସ୍ୱୟଂ ତାହାଙ୍କୁ ଏ ଉଚ୍ଚପଦ ଦେଇଛନ୍ତି । ଆମ୍ଭେମାନେ ଆଶାକରୁଁ ଯେ ବାବୁଙ୍କୁ ଏ କର୍ମରେ ବାହାଲ କରି ମାନ୍ୟବର ସର ଇଡ଼ନ ସାହେବ ଓଡ଼ିଶା ପ୍ରତି ସୁଦୃଷ୍ଟି ରଖିଥିବାର ଅଧିକତର ପରିଚୟ ଦେବେ । ଓଡ଼ିଶାବାସୀ କେବଳ ଦୁଇଜଣ ଡେପୁଟୀ କଲେକ୍ଟର ଥିଲେ । ଏହାଙ୍କୁ ଯୋଗ ତିନି ଜଣ ହେଲେ । ଅନ୍ତତଃ ଓଡ଼ିଶା ସକାଶେ ଯେତେ ଜଣ ଡେପୁଟୀ ପ୍ରୟୋଜନ ସେତେ ଜଣ ଓଡ଼ିଶାବାସୀଙ୍କୁ ନିଯୁକ୍ତ କଲେ ଆମ୍ଭମାନଙ୍କର ଆଶା ପୂର୍ଣ୍ଣହେବ ।

୪୮୨ । କିଲ ବାଙ୍କୀ

ବାଙ୍କୀ କିଲ୍ଲାକୁ ପୁରୀଜିଲ୍ଲା ସାମିଲ କରିବାକୁ କମିଶନର ସାହେବ ଗବର୍ଣ୍ଣମେଣ୍ଟରେ ପ୍ରସ୍ତାବ କରିଅଛନ୍ତି । କି ଅଭିପ୍ରାୟରେ ଏ ପ୍ରସ୍ତାବ ହୋଇଅଛି ଜଣା ପଡ଼ୁନାହିଁ । ବୋଧହୁଏ ବାଙ୍କୀରୁ ଅଫିସମାନ ଉଠାଇ ନେଲେ ଗବର୍ଣ୍ଣମେଣ୍ଟଙ୍କର ଖର୍ଚ୍ଚ କମ ହେବ, ମାତ୍ର ଆମ୍ଭମାନଙ୍କର ସ୍ମରଣ ହେଉଅଛି ଏ ପ୍ରସ୍ତାବ ଅନେକଦିନ ପୂର୍ବରୁ ଥରେ ହୋଇଥିଲା କିନ୍ତୁ ନାନା ପ୍ରକାର ଅସୁବିଧା ଦୃଷ୍ଟି ହେବାରୁ ତାହା କାର୍ଯ୍ୟରେ ପରିଣତ ହେଲାନାହିଁ । ବର୍ତ୍ତମାନ ବାଙ୍କୀ ଖୋରଧା ସାମିଲ ହେଲେ ବାଙ୍କୀବାସୀଙ୍କର କି ଉପକାର ହେବ ଜଣା ପଡ଼ୁନାହିଁ ମାତ୍ର ଅସାଧାରଣ କଷ୍ଟ ହେବା ସମ୍ପୂର୍ଣ୍ଣ ସମ୍ଭବ ଦେଖାଯାଏ । ଏକେ ତ ଖୋରଧାକୁ ସୁବିଧାଜନକ ପଥନାହିଁ । ପୁଣି ବାଙ୍କୀକିଲ୍ଲା

ମହାନଦୀର ଉତ୍ତର ଓ ଦକ୍ଷିଣ ତୀରରେ ଅବସ୍ଥିତ ଥିବାରୁ ବର୍ଷାକାଳରେ ଗତାୟାତ ଆତ୍ୟନ୍ତ କଷ୍ଟକର, ଏପର ସ୍ଥଳେ ନଗରକୁ ଅପିଲ ଓ ମୁନସଫୀ ମକଦ୍ଦମା କରିବାକୁ ଗଲେ ବାଙ୍କୀର ପଶ୍ଚିମ ସୀମା ଓ ଉତ୍ତର ସୀମାନ୍ତ ଲୋକମାନଙ୍କୁ ୬୦ । ୭୦ ମାଇଲ ପଥ ଅତିକ୍ରମ କରିବାକୁ ହେବ, ସେଠାରୁ ପୁଣି କଟକ ଯାତ୍ରା, ଏପରି ଅବସ୍ଥା ଦୃଷ୍ଟିରେ ଦେଖା ଯାଉଅଛି ବାଙ୍କୀବାସୀମାନେ ମାମଲ ମକଦ୍ଦମାରୁ ବଞ୍ଚିତ ନହି ଯାହାର ଯାହାଠାରେ ଦେଣା ପାଉଣା ଥିବ ତାକୁ ବିସର୍ଜନ କରି କେବଳ ଛଟପଟ ହୋଇ ଗୃହରେ କାଳଯାପନ କରିବେ । ଅତଏବ ଆମ୍ଭେମାନେ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରୁଅଛୁଁ ଯେ କଟକ ଗଡ଼ଜାତ ବାଙ୍କୀ ପ୍ରଜାଙ୍କୁ ଏକାଠବଳକେ ମୁଗଲବନ୍ଦୀ ପ୍ରଜାଙ୍କ ସାମିଲ କରି ଆଇନ ଓ ଟାକ୍ସ ଜାଲରେ ବନ୍ଧ କରନ୍ତୁ । ଏହାକଲେ ଉଦାର ଇଂରାଜ ଗବର୍ଣ୍ଣମେଣ୍ଟଙ୍କର ମହତ୍ତ୍ୱ ବୃଦ୍ଧି ହେବନାହିଁ ବିଶେଷତଃ ବାଙ୍କୀ ପ୍ରଜାଙ୍କର ଏହି ବିଶ୍ୱାସ ଯେ ସେମାନଙ୍କର ଆଏଦା ବନ୍ଦୋବସ୍ତ ପର୍ଯ୍ୟନ୍ତ କୌଣସି ପରିବର୍ତ୍ତନ ହେବନାହିଁ । ଯଦବା ଗବର୍ଣ୍ଣମେଣ୍ଟ ବାଙ୍କୀକୁ କୌଣସି ଜିଲ୍ଲା ସାମିଲ କରିବାକୁ ସ୍ଥିର କରିଥାନ୍ତି ତେବେ ଆମ୍ଭେମାନେ ବୋଲୁଅଛୁଁ ତାକୁ କଟକଜିଲ୍ଲା ସାମିଲ କଲେ ପ୍ରଜାଙ୍କର କେତେକ ପରିମାଣରେ କଷ୍ଟ ନିବାରଣ ହେବ. କାରଣ କି କଟକ ଗତାୟାତ ପକ୍ଷରେ ସୁବିଧାଜନକ ଜଳପଥ ମହାନଦୀ ରହିଅଛି, ବାଣିଜ୍ୟ ବ୍ୟବସାୟରେ ବାଙ୍କୀ ଲୋକଙ୍କର କଟକସଙ୍ଗେ ଅଧିକ ସମ୍ପର୍କଅଛି, ବାଙ୍କୀ କଟକକୁ ଅଧିକ ଦୂର ନୁହେ. ଉତ୍ତର ପାର୍ଶ୍ୱରେ ବାଙ୍କୀର ପୂର୍ବସୀମା ଫୁଲବାଡ଼ି, କଦଳୀବାଡ଼ି ଓ ଓଡ଼ିଆ ପ୍ରଭୃତି ଗ୍ରାମମାନ କଟକରୁ ପ୍ରାୟ ଛ କ୍ରୋଶ ଅନ୍ତର । ଦକ୍ଷିଣ ତୀରର ପୂର୍ବସୀମା ହରିରାଜପୁର ପ୍ରଭୃତି କଟକରୁ ପ୍ରାୟ ୯ କ୍ରୋଶ ଅନ୍ତର ଉତ୍ତର ତୀରର ପଶ୍ଚିମ ସୀମା ବନ୍ଧଲୋ ପ୍ରଭୃତି ଗ୍ରାମମାନ ପ୍ରାୟ ୧୦ କ୍ରୋଶ ଅନ୍ତର ଏବଂ ଦକ୍ଷିଣତୀରର ପଶ୍ଚିମସୀମା ବୈଦ୍ୟେଶ୍ୱର ଓ କଳାପଥର ପ୍ରଭୃତି ଗ୍ରାମମାନ କଟକରୁ ପ୍ରାୟ ୧୫ କ୍ରୋଶରୁ ଅଧିକ ଦୂରବର୍ତ୍ତୀ ନୁହେ । ମହାନଦୀର ଉଭୟ ପାର୍ଶ୍ୱରେ ବାଙ୍କୀର ଅବସ୍ଥିତ ଉତ୍ତର ଦକ୍ଷିଣରେ ପ୍ରାୟ ୫ କ୍ରୋଶ ହେବ, ସୁତରାଂ ବାଙ୍କୀର ସମସ୍ତ ବାସିନ୍ଦାଙ୍କ ପକ୍ଷରେ କଟକ ଗତାୟାତ ସୁବିଧା ଜନକ ଅଟେ, ପୁଣି ବାଙ୍କୀର ନିକଟବର୍ତ୍ତୀ ଡମପଡ଼ା କଲ୍ଲି କଟକ ସାମିଲ ଥାଇ ଏକପ୍ରକାର ଚଳୁଅଛି, ଏହି ସମସ୍ତ ଆଲୋଚନାରେ ଆମ୍ଭେମାନେ ବିବେଚନା କରୁଁ କି ବାଙ୍କୀ କି କୌଣସି ମୁଗଲବନ୍ଦୀ ଏଲାକାସଙ୍ଗେ ମିଶାଇବା ନିତାନ୍ତ ଆବଶ୍ୟକ ହେଲେ ସୁଦ୍ଧା ସଙ୍ଗେ ଯୋଗ ନକରି କଟକ ସହିତ ଯୋଗ କରିବାର ଉଚିତ, ତହିଁରେ କେତେକ ମଙ୍ଗଳ ଅଛି । ତଥାପି ଅପର ଗଡ଼ଜାତ ମଧ୍ୟରୁ ଏକା ବାଙ୍କୀବାସୀଙ୍କୁ ଟାକ୍ସ ଓ ଷ୍ଟାମ୍ପ ଦେବାକୁ ବାଧ୍ୟ କରିବା ଉଚିତ ହେଉନାହିଁ; ସେମାନଙ୍କୁ ଏ ସମସ୍ତ ଦାୟରୁ ମୁକ୍ତ ରଖିବା କାରଣ ସ୍ୱତନ୍ତ୍ର ନିୟମ କରିବା ଆବଶ୍ୟକ ହେଉଅଛି । ଉପସଂହାରରେ ଏହି ପ୍ରାର୍ଥନା

ଯେ ଆମ୍ଭମାନଙ୍କର ଦୟାଳୁ ଗବର୍ଣ୍ଣମେଣ୍ଟ ଏହି ବିଷୟ ଅନୁମୋଦନ କରିବା ପୂର୍ବରୁ ଆମ୍ଭମାନଙ୍କ ଲଗିତ ବିଷୟପ୍ରତି ଥରେ ଦୃଷ୍ଟିପାତ କରିବେ ।

---

## ( ୧୭ଶ ଭାଗ, ୧୫ । ୧ । ୧୮୮୧, ସଂଖ୍ୟା ୩ )

୫୮୩ । ସାପ୍ତାହିକ ସଂବାଦ ।

ଆମ୍ଭେମାନେ ଶୁଣୁଅଛୁଁ ଯେ ବାବୁ ଦୀନନାଥ ବାନୁର୍ଜୀ ପୁଣି ଗଙ୍ଗା-ମଧର ପୁଷ୍କରଣୀ ବିଷୟରେ ଷ୍ଟେଠଲିଠ ସାହେବଙ୍କ ନିକଟକୁ ଏକ ଦରଖାସ୍ତ ପଠାଇଥିଲେ ଏବଂ ତହିଁର ରିପୋର୍ଟ ସ୍ଥାନୀୟ ହାକିମଙ୍କଠାରୁ ତଲବ ହୋଇଅଛି । ଥରକୁଥର ରିପୋର୍ଟ ତଲବ କରିବାରେ ଲାଭ କିସ ଆମ୍ଭେମାନେ ବୁଝି ପାରୁନାହୁଁ । ଏ ପୁଷ୍କରଣୀର ଦୁରବସ୍ଥା କହିଲେ ସରିବ ନାହିଁ । ସମୟ ୨ ରେ ଦୁର୍ଗନ୍ଧରେ ବାଟ ଚାଲିବା କଷ୍ଟ ହୁଅଇ ମାତ୍ର ସ୍ଥାନୀୟ ହାକିମଙ୍କର ତହିଁ ପ୍ରତି ଆସ୍ଥା ନାହିଁ । ଏସ୍ଥଳେ କିପରି ଲାଭ ହେବ ।

## ( ୧୭ଶ ଭାଗ, ୨୨ । ୧ । ୧୮୮୧, ସଂଖ୍ୟା ୪ )

୫୮୪ । ବେହାର ପ୍ରଦେଶର ଲୋକମାନେ ଅନେକ ଦିନରୁ ଗୁହାରି କରୁ-ଥିଲେ କି ସେ ପ୍ରଦେଶର ସରକାରୀ କର୍ମମାନ ସେମାନେ ନପାଇ ବଙ୍ଗାଳମାନେ ପାଉଥିଲେ । ଏଥି ସମ୍ପର୍କରେ ବଙ୍ଗାଳି ଓ ବେହାରୀଙ୍କ ମଧ୍ୟରେ କେତେ ଦିନ ଭିନ୍ନ ବାଦ ବିସମ୍ବାଦ ଲଗିଥିଲା । ସମ୍ପ୍ରତି ଗବର୍ଣ୍ଣମେଣ୍ଟ ବଙ୍ଗାଳଙ୍କ ଆଜ୍ଞାକ୍ରମେ ବେହାରୀମାନଙ୍କର ସମସ୍ତ ଦୁଃଖ ବିଗତ ହୋଇଅଛି । ଗବର୍ଣ୍ଣମେଣ୍ଟ ଜେଲ ପୁଲିସ ରେଜିଷ୍ଟ୍ରି ମିଉନିସି-ପାଲିଟି ପ୍ରଭୃତି ସମସ୍ତ ବିଭାଗର ପ୍ରଧାନ କର୍ମଗୃହୀଙ୍କ ପ୍ରତି ଆଦେଶ ଦେଇଅଛନ୍ତି କି ପ୍ରତିବର୍ଷ ସେମାନେ କମିଶନରଙ୍କ ନିକଟକୁ ଏହି ମର୍ମରେ ଏକ ତାଲିକା ପଠାଇବେ କି ଉକ୍ତ ବର୍ଷ ତାହାଙ୍କ ଅଧୀନରେ କେତେ କର୍ମ ଖାଲି ହୋଇଥିଲା ଓ କିଏ ସେଥିରେ ନିଯୁକ୍ତ ହେଲା । ଯଦ୍ୟପି ବେହାରର ଲୋକ ନିଯୁକ୍ତ ନହୋଇ ବଙ୍ଗାଳୀ ନିଯୁକ୍ତ ହୋଇ-

ଥାଏ ତେବେ କି କାରଣରୁ ଏପରି ହେଲା ତାହା ସୁଦ୍ଧା ଲେଖି ପଠାଇବେ । ହିନ୍ଦୁ ପେଟ୍ରିଅଟ ମାନ୍ୟବର ଲଉନ ସାହେବଙ୍କର ଏପରି ଆଜ୍ଞାରେ ଦୁଃଖିତ ହୋଇଅଛନ୍ତି ମାତ୍ର ଆମ୍ଭେମାନେ ଓଡ଼ିଶାର କଥା ମନେକରି ଏ ଆଜ୍ଞାକୁ ଯୁକ୍ତିଯୁକ୍ତ ମନେକରୁଁ । ଏକ ସମୟରେ ଓଡ଼ିଆମାନେ ଏହି ଦୁଃଖ ପାଉଥିଲେ ଏବଂ ସେ ସମୟରେ ହାକିମମାନେ ଓଡ଼ିଶାର ପକ୍ଷପାତୀ ହୋଇ ନଥିଲେ ଅବଧି ଓଡ଼ିଆଙ୍କର ଯାହା କିଞ୍ଚିତ ଉନ୍ନତ ହୋଇଅଛି ତାହାସୁଦ୍ଧା ହୋଇ ନଥାନ୍ତା । ଯେବେ ଉଚ୍ଚଶିକ୍ଷା ଲାଭ କରିବାର ସମାନ ସୁଯୋଗ ଓଡ଼ିଆ ବଙ୍ଗଳା ଓ ବେହାରରେ ଏକ କାଳରେ ଦିଆ ଯାଇଥାନ୍ତା ତେବେ ସେମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ରଖିବାର ଉଚିତ ହୁଅନ୍ତା ନାହିଁ କିନ୍ତୁ ଯେ ସ୍ଥଳେ ତାହା ନହେଲା ସେ ସ୍ଥଳେ ଯେଉଁଠାର ଲୋକଙ୍କୁ ଅଧିକ ସୁଯୋଗ ଦିଆଗଲା ସେମାନଙ୍କ ସଙ୍ଗେ ଅନ୍ୟ ସ୍ଥାନର ଲୋକମାନେ ଯେ ସମକକ୍ଷ ହେବେ ଏହା କି ପ୍ରକାରରେ ଆଶା କରାଯାଇ ପାରେ ସୁତରାଂ ଫଳ ଏହି ହେବ ଯେ ସେମାନେ ସକଳ ସ୍ଥାନର ସରକାରୀ କର୍ମମାନ ଅଧିକାର କରିବେ ଓ ସେଠା ଲୋକମାନେ ଗଡ଼ି ମରିବେ । ଅତଏବ ଗବର୍ଣ୍ଣମେଣ୍ଟଙ୍କ ସାହାଯ୍ୟ ବିନା ସ୍ଥାନୀୟ ଲୋକଙ୍କର କର୍ମ ପାଇବାର ଉପାୟ ନାହିଁ । ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଏପରି କିଛି ନିୟମ କରି ନଥିବାରୁ ଗଞ୍ଜାମ ଜିଲାର ସମସ୍ତ ସରକାରୀ କର୍ମ ଏକା କମା ବ୍ରାହ୍ମଣମାନେ ଅଧିକାର କରିଅଛନ୍ତି ଓ ସେଠା ଲୋକମାନେ କୌଣସି ପ୍ରକାରରେ ମୁଣ୍ଡ ଟେକି ପାରୁନାହାନ୍ତି । ଯେ ସ୍ଥଳେ ଏପ୍ରକାର ପ୍ରତ୍ୟକ୍ଷ ମନ୍ଦ ଫଳ ଦେଖା ଯାଉଅଛି ସେ ସ୍ଥଳେ ହିନ୍ଦୁ ପେଟ୍ରିଅଟଙ୍କ ସହିତ ଆମ୍ଭେମାନେ କଦାଚ ଐକ୍ୟ ହୋଇ ନପାରୁଁ ।

## ( ୧୭ଶ ଭାଗ, ୨୯ । ୧ । ୧୮୮୧, ସଂଖ୍ୟା ୪ )

୪୮୫ । ଗଙ୍ଗାମନ୍ଦିର ପୁଷ୍କରିଣୀ ପୁଣି କେତେକଦିନ ହେଲା ମାଡ଼ ଉଠିଛି । ଜଳ ପଚିଯାଇ ଦୁର୍ଗନ୍ଧରେ ବାଟ ଚାଲିବା ହେଉନାହିଁ । ଗତ ଗୁରୁବାର ଦିନ ହେଲା ମିଉନିସିପାଲଟୀରୁ କୁଲି ଲଗି ଜଳ ଛଙ୍କି ମାଟିରେ ପୋତି ପକାଉଅଛନ୍ତି । ଯେବେ ଏ ପୁଷ୍କରିଣୀକୁ ପରିଷ୍କାର କରିବାର ଅନ୍ୟ କିଛି ଭଲ ଉପାୟ ନହୋଇ ପାରେ ତେବେ ଆମ୍ଭମାନଙ୍କ ବିବେଚନାରେ ଜଳ ଛଙ୍କିବା କାରଣ ବର୍ଷାକାଳ ପର୍ଯ୍ୟନ୍ତ କେତେକ ଜଣ କୁଲି ସର୍ବଦା ନିଯୁକ୍ତ ରହିବାର ଉଚିତ । ତାହାହେଲେ ଦୁର୍ଗନ୍ଧମୟ ପଦାର୍ଥ ଏଥିରେ ଜମା ହୋଇ ଲୋକଙ୍କୁ ବିରକ୍ତ କରିପାରିବ ନାହିଁ ।

## ( ୧୭ଶ ଭାଗ, ୧୯ । ୨ । ୧୮୮୧, ସଂଖ୍ୟା ୮ )

୪୮୬ । ବଙ୍ଗ ଦେଶର ପୋଷ୍ଟମାଷ୍ଟର ଜେନେରାଲ ଏ ମାସ ଆରମ୍ଭରେ

ଏଠାରୁ ଆସିଥିଲେ । ତେଲ କସ୍ତୁସବୁ ଜଣାଗଲା ଯେ ଓଡ଼ିଶାର ଗଡ଼ଜାତ ମାନଙ୍କରେ ଡାକ ଯାତାୟାତର ସୁବଧା ଓ ବସ୍ତାର କରିବା ତାଙ୍କର ଆଗମନର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ସେ ଏଠାରେ କ କ ବନ୍ଦୋବସ୍ତ କରିଗଲେ ତାହା ଜଣା ଯାଇନାହିଁ କନ୍ତୁ ଏଥି ମଧ୍ୟରେ ଗଡ଼ଜାତର କେତେକ ସ୍ଥଳରେ ନୂତନ ଡାକଘରମାନ ଖିଟିବାର ଦେଖି ଆମ୍ଭେମାନେ ଆନନ୍ଦିତ ହୋଇଅଛୁଁ । ଉତ୍ତମ ସଡ଼କ ନିର୍ମାଣ ଏବଂ ଡାକର ବନ୍ଦୋବସ୍ତ ଗଡ଼ଜାତ ମାନଙ୍କର ଉନ୍ନତି ସାଧନ ନିମିତ୍ତରେ ଅତ୍ୟନ୍ତ ପ୍ରୟୋଜନ ହୋଇଅଛି । ଗଡ଼-ଜାତ ସୁପ୍ରିଣ୍ଟେଣ୍ଡେଣ୍ଟ ଏ ବିଷୟରେ ବିଶେଷ ମନୋଯୋଗୀ ହେଲେ ଏ କାର୍ଯ୍ୟମାନ ବସ୍ତର ପରିମାଣରେ ଆଗସର ହୋଇପାରେ ।

## ( ୧୭ଶ ଭାଗ, ୫ । ୩ । ୧୮୮୧, ସଂଖ୍ୟା ୧୦ )

**୫୨ ।** ଗଞ୍ଜାମର ଓଡ଼ିୟାମାନଙ୍କର ଉନ୍ନତି ନହେବାର ଦାୟୀ କିଏ ?

ଆମ୍ଭେମାନେ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କୁ ଦାୟୀ କରିଥିଲୁଁ । ଏଥିକୁ ମଞ୍ଜୁଷା ହେଡ଼ଦେଓ୍ୟାନ ପ୍ରତିବାଦ କରି ଖଣ୍ଡିଏ ପ୍ରତ୍ର ଲେଖିଅଛନ୍ତି, ତାହା ଯଥା-ସ୍ଥାନରେ ପ୍ରକଟିତ କଲୁଁ । ପାଠକମାନେ ତାହା ବିବେଚନା କରିବେ । ଆମ୍ଭେମାନେ ଅବଶ୍ୟ ବୋଲିବୁଁ ଯେ ସେ ମତରେ ଐକ୍ୟ ହୋଇ ନପାରୁଁ । ଓଡ଼ିୟାମାନଙ୍କର ଉନ୍ନତି ପ୍ରତି ଆସ୍ଥା ନାହିଁ ବୋଲି ଯାହା ଲେଖାଅଛି ତାହା ନିତାନ୍ତ ଅମୂଳକ ନୁହେଁ ମାତ୍ର ସେପରି ଘଟିବାର କାରଣ କି ଲେଖକ କିଛି ମାତ୍ର ଅନୁସନ୍ଧାନ କରିନାହାନ୍ତି । ଅତି ଅଳ୍ପକାଳ ପୂର୍ବ ପର୍ଯ୍ୟନ୍ତ ଗଞ୍ଜାମ ଜିଲ୍ଲାର ସମସ୍ତ ସରକାରୀ କାର୍ଯ୍ୟ ତେଲୁଗୁ ଏବଂ ଇଂରାଜୀ ଭାଷାରେ ଚାଲୁଥିଲା, ଓଡ଼ିୟା ଯେ ସେଠାକାର ଦେଶଭାଷା ତାହା ଗବର୍ଣ୍ଣମେଣ୍ଟ ଆଦୌ ସ୍ୱୀକାର କରି ନଥିଲେ । ସମ୍ପ୍ରତି ଯେଉଁବର୍ଷ କି ସେ ଭାବ କେତେକ ପରିମାଣରେ ବିଦୂରିତ ହୋଇ ଓଡ଼ିୟା ଭାଷାପ୍ରତି ଗବର୍ଣ୍ଣମେଣ୍ଟଙ୍କର ସୁଦୃଷ୍ଟି ପଡ଼ିଅଛି ଏବଂ ବିଦ୍ୟା-ଳୟମାନଙ୍କରେ ଓଡ଼ିୟା ଶିକ୍ଷା ଦେବାର ବନ୍ଦୋବସ୍ତ ହୋଇଅଛି ମାତ୍ର ଅଦ୍ୟାପି ସରକାରୀ କଚେରୀମାନଙ୍କରେ ଓଡ଼ିୟାଭାଷା ନାମମାତ୍ର ପ୍ରଚଳିତ ହୋଇଅଛି । ସୁତରାଂ ଓଡ଼ିୟା-ମାନଙ୍କର ଆଦର ନାହିଁ । ଏହି ଉତ୍କଳ ଦେଶରେ ଯେତେବେଳେ କଚେରୀର ଭାଷା ପାରସୀ ଥିଲା ତେତେବେଳେ ବଙ୍ଗଳାରୁ ବଙ୍ଗାଳୀ ଓ ମୁସଲମାନମାନେ ଏଠା କଚେରୀମାନଙ୍କରେ ଏକାଧିପତ୍ୟ କରୁଥିଲେ । ଓଡ଼ିୟାଙ୍କର କଚେରୀରେ ପ୍ରବେଶ କରି-ବାର ସାଧ୍ୟ ନଥିଲା । ଯେଉଁ ଦିନଠାରୁ ଗବର୍ଣ୍ଣମେଣ୍ଟ ସୁବିଚାର ପୂର୍ବକ ଯାବନ୍ତ କଚେରୀର ଭାଷା ଓଡ଼ିୟା କରିଦେଲେ ଏବଂ ହାକିମମାନେ ଓଡ଼ିୟାଙ୍କ ସମର୍ଥନ କରି ସେମାନଙ୍କୁ ଏକ ୨ ଉଚ୍ଚ କର୍ମରେ ନିଯୁକ୍ତ କଲେ ସେଦିନ ଠାରୁ କ୍ରମଶଃ ଓଡ଼ିୟାଙ୍କର ନିଦ ଭାଙ୍ଗିଲା ଏବଂ ଏତେବେଳେ ଓଡ଼ିଶାର କଚେରୀମାନଙ୍କରେ ବହୁପରିମାଣରେ

ଓଡ଼ିଆମାନେ ପ୍ରବେଶ ହୋଇଅଛନ୍ତି ଏବଂ ଓଡ଼ିଆଙ୍କ ମଧ୍ୟରେ ଲେଖାପଢ଼ାର ଚର୍ଚ୍ଚା ଦିନେ ୨ ବୃଦ୍ଧି ହୋଇଅଛି । ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଏବଂ ତାହାଙ୍କ ଅଧୀନ ଗଞ୍ଜାମ ଜିଲ୍ଲାର ଉଚ୍ଚପଦସ୍ଥ ହାକିମମାନେ ଏହାପରି ଓଡ଼ିଆଙ୍କ ପକ୍ଷ ଅବଲମ୍ବନ କଲେ ଓଡ଼ିଆଙ୍କର ବର୍ତ୍ତମାନ ଦୁଃଖ ଯେ ଅତିଶୀଘ୍ର ଅନ୍ତର୍ହିତ ହେବ ଏକଥା ବୋଲିବା ବାହୁଲ୍ୟ । ସମ୍ପ୍ରତି ଗଞ୍ଜାମ ଜିଲ୍ଲାରେ ଓଡ଼ିଆମାନେ ନିତାନ୍ତ ହୀନ ଓ ଘୃଣିତ ଅବସ୍ଥାରେ ରହିଅଛନ୍ତି । ସରକାରୀ କଚେରିମାନ ଦେଖି ସେମାନଙ୍କର ଆଉ ଭରସା ନାହିଁ ଯେ କୌଣସି କାଳରେ ତମାଙ୍କର ଆଧିପତ୍ୟ ହ୍ରାସ ହେବ ଓ ସେମାନେ ସରକାରୀ କର୍ମରେ ନିଯୁକ୍ତ ହେବେ । ଆମ୍ଭେମାନେ ପ୍ରତ୍ୟକ୍ଷରେ ଦେଖିଲୁଁ ଯେ ତମା ଏବଂ ଓଡ଼ିଆଙ୍କ ମଧ୍ୟରେ କୌଣସି ପ୍ରକାର ସହାନୁଭୂତି ନାହିଁ । ଉଭୟଙ୍କଠାରେ ଘୃଣାଭାବ ସମ୍ପୂର୍ଣ୍ଣ ଜାଗ୍ରତ ରହିଅଛି । ଓଡ଼ିଆମାନେ ତମାଙ୍କୁ ପ୍ରପୀଡ଼କ ମନେ କରନ୍ତି ଏବଂ ତମାମାନେ ଓଡ଼ିଆଙ୍କୁ ଚିରବଶ୍ୟାରେ କରି ରଖିବାକୁ ଚେଷ୍ଟା କରନ୍ତି । ସରକାରୀ କର୍ମମାନ ତମାଙ୍କର ଏକାଧିପତ୍ୟରେ ନଥିଲେ ଏହିଭାବ କଦାଚ ଜାତ ହୁଅନ୍ତା ନାହିଁ । ଏଥିସକାଶେ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଦାୟୀ ଅଟନ୍ତି । ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ବ୍ରହ୍ମପୁର କଲେଜରୁ କେତେ ୨ ଓଡ଼ିଆ ପାଠକରି ବାହାରି ଅଛନ୍ତି । ଯେବେ ସରକାରୀ କାର୍ଯ୍ୟବିତରଣ କରିବା ସମୟରେ ହାକିମମାନେ ଏମାନଙ୍କୁ ଅଗ୍ରଗଣ୍ୟ କରିବେ ତେବେ ଓଡ଼ିଆମାନେ ଶିକ୍ଷା କରିବାକୁ ଆହୁରି ଉତ୍ସାହିତ ହେବେ ଏବଂ କ୍ରମଶଃ ଏମାନଙ୍କର ଉନ୍ନତି ହେବ । ଦୁର୍ବଳ ବୃକ୍ଷକୁ ଛିଡ଼ାକରି ରଖିବା ସକାଶେ ପ୍ରଥମେ ଖଣ୍ଡେ ଠାଣ କାଠ କି ବାଉଁଶର ପ୍ରୟୋଜନ ହୁଅଇ । ଥରେ ସେ ମୁଣ୍ଡଟେକି ପାରିଲେ ଆଉ ସାହାଯ୍ୟ ଲୋଡ଼ଇ ନାହିଁ । ଗଞ୍ଜାମ ଜିଲ୍ଲା ଓଡ଼ିଆଙ୍କର ଠିକ ସେହି ପ୍ରଥମାବସ୍ଥା । ଏତେବେଳେ ତାହାଙ୍କୁ ସାହାଯ୍ୟ ନଦେଲେ କିପରି ସେମାନେ ଛିଡ଼ାହୋଇ ପାରିବେ । ଅତଏବ ଆମ୍ଭେମାନେ ବଡ଼ଜେନା ସାମନ୍ତ ଏବଂ ତାହାଙ୍କପରି ଓଡ଼ିଆଙ୍କର ହିତାକାଂକ୍ଷୀ ବ୍ୟକ୍ତିମାନଙ୍କୁ ଅନୁରୋଧ କରୁଁ ଯେ ସେମାନେ ଓଡ଼ିଆଙ୍କୁ ରାଜଦରବାର ଏବଂ ସରକାରୀ କାର୍ଯ୍ୟାଳୟମାନଙ୍କରେ ନିଯୁକ୍ତ କରାଇବାର ଯଥାସାଧ୍ୟ ଚେଷ୍ଟା କରନ୍ତୁ । ତାହାହେଲେ ସେମାନେ ଅବିଳମ୍ବେ ଦେଖିବେ ଯେ ଓଡ଼ିଆମାନଙ୍କୁ ଯେପରି ନିର୍ବୋଧ ମନେ କରୁଅଛନ୍ତି ବାସ୍ତବରେ ତେତେ ନୁହନ୍ତି ।

ପ୍ରେରିତ ପତ୍ର ।

ମାନ୍ୟବର ଶ୍ରୀମଦୁତ୍କଳ ଦୀପିକା ସମ୍ପାଦକ ମହାଶୟ, ସମୀପେଷୁ

ପ୍ରାର୍ଥନା ଏହିପେ ଦୟାପୂର୍ବକ ଆପଣଙ୍କ ପତ୍ରିକାରହିରେ ସ୍ଥାନଦାନ ଦେବେ ।

ମହାଶୟ, ଗଳିତ ମାସ ତା୨୦ରିଖର ଆପଣଙ୍କ ପତ୍ରିକାରୁ ଆମ୍ଭେ ପାଠକରି ଦେଖିଲୁ ଯେ ଗଞ୍ଜାମ ଜିଲାର ଦୁଃଖୀ ଓଡ଼ିୟାମାନଙ୍କୁ ହବୋଚମା-ଯୋଗ୍ୟ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ କଚ୍ଛ ସରକାରୀ କର୍ମ ନଦେଇ କମାମାନଙ୍କୁ ସେ କର୍ମରେ ନିଯୁକ୍ତ କରନ୍ତି । ଏ ହେତୁରୁ ଗଞ୍ଜାମ ଜିଲ୍ଲ ଓଡ଼ିୟାମାନେ ମୁଣ୍ଡ ଟେକି ପାରୁନାହାନ୍ତି ବୋଲି ଲେଖି ବିଖ୍ୟାତ କରିବା ହେଲେ । ଆମ୍ଭେ ସ୍ୱୟଂ ଓଡ଼ିଆ ଗଞ୍ଜାମ ଜିଲ୍ଲରେ ଜନ୍ମ ହେଲେହେଁ ନିସ୍ପକ୍ଷପାତରେ ଲେଖୁଅଛୁଁ ତଦ୍‌ଯଥା, ଏ ଜିଲାର ରାଜାମାନଙ୍କର ବିଦ୍ୟାଭ୍ୟାସ କରିବା ଏବଂ ବିଦ୍ୟାଭ୍ୟାସ କରାଇବା ବିଦ୍ୟାଭ୍ୟାସ କରୁଥିବା ବାଳକ ମାନଙ୍କୁ ସନ୍ତୁଷ୍ଟ ହୋଇ କିଞ୍ଚିତ୍ ଦାନ କରିବା ବିଷୟରେ କିଞ୍ଚିତ୍ ହେଲେ ଶ୍ରଦ୍ଧା ନାହିଁ । ଆଙ୍ଗ୍ଲୋୟ ବିଦ୍ୟାଶାଳାଟି ଏ ସ୍ୱଦୁର୍ଗମାନଙ୍କରେ ବସାଇବାର ଦୂରେ ଥାଉ ସ୍ୱଦେଶ ଭାଷା ବିଦ୍ୟାଶାଳା ମଧ୍ୟ କେହି କରିନାହାନ୍ତି । ରାଜାମାନଙ୍କର ଯାହ ଏପରି, ବ୍ରାହ୍ମଣ କ୍ଷତ୍ରିୟ କରଣ ଇତ୍ୟାଦି ପୁରଜନମାନେ ମଧ୍ୟ ସ୍ୱ ବାଳକମାନଙ୍କୁ କୌଣସି ବିଦ୍ୟା ପଢ଼ାଇ-ବାରେ ନିଯୁକ୍ତ କରନ୍ତି ନାହିଁ । ତଥାଚ ଅଙ୍ଗ୍ରେଜୀ ବିଦ୍ୟାଟିର ଏମନ୍ତ ନିସ୍ପୃହା ଯେ କହନ୍ତି କି ଆମ୍ଭ ପିଲାଏ ସେ ପାଠ ପଢ଼ିଲେ ଜାତି ତ୍ୟାଗକରି ଖ୍ରୀଷ୍ଟିଆନ ହେବେ । ଏଥି ମଧ୍ୟରେ ମଞ୍ଜୁଷା ଶ୍ରୀମହାରାଜା ସି: ଆଇ: ଇ ଏକ ଆଙ୍ଗ୍ଲୋ ବର୍ଣ୍ଣାକ୍ୟୁଲର ସ୍କୁଲ ଅର୍ଥାତ୍ ଅଙ୍ଗ୍ରେଜୀ ତେଲୁଗୁ ଓଡ଼ିଆ ସଂସ୍କୃତ ପଢ଼ାଇବା ନିମିତ୍ତ ଏକ ସ୍କୁଲ ସ୍ୱ ଦ୍ରବ୍ୟରେ ସ୍ଥାପନ କରି ମାସିକ ୪୧୧୫୯ଙ୍କା ବେତନ ଦେଇ ଜଣେ ମାଷ୍ଟର ରଖି ଅସ୍ୱଦେଶୀୟ ନୌକରବର୍ଗ ଏବଂ ସ୍ୱ ପଟ୍ଟନଶସ୍ଥ ବ୍ୟକ୍ତିମାନଙ୍କୁ ଡକାଇ ସେମାନଙ୍କୁ ଅନେକ ପ୍ରକାରେ ସୁଉପଦେଶ ଦେଇ ତାହାଙ୍କ ବାଳକମାନଙ୍କୁ ପାଠଶାଳାରେ ଭର୍ତ୍ତି କରାଇ ବ୧୮ର୍ଷ ହେଲାନି ଏଥିରେ ମଧୁସୂଦନ ରାଜେ ଜଣେ, ରାମଚନ୍ଦ୍ର ତ୍ରିପାଠୀ ଜଣେ, ଚକ୍ରପାଣି ପଟ୍ଟନାୟକ ଜଣେ, ଦୀନବନ୍ଧୁ ଆଚାର୍ଯ୍ୟ ଜଣେ, ଫିଫ୍ରଗ୍ରେଡ଼ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବାରୁ ଶ୍ରୀରାଜା ମହୋଦୟ ସି: ଆଇ: ଇ: ଅତି ସନ୍ତୋଷ ହୋଇ ସେମାନଙ୍କୁ ସୁବର୍ଣ୍ଣ କଙ୍କଣ ଗୋଟିଏ ଲେଖାଏଁ ପାରିତୋଷିକ ଦେଇଥିଲେ । ସେଥିରେ ମଧୁସୂଦନ ରାଜେ ମଞ୍ଜୁଷାରେ ଆସିଷ୍ଟାଣ୍ଟ ଦେଓ୍ୱାନ, ଜୟପୁରରେ ରାମଚନ୍ଦ୍ର ତ୍ରିପାଠୀ ସ୍କୁଲମାଷ୍ଟର ଏସ୍କୁଲର ଫଳ ଆମ୍ଭେ ଏତକ ଦେଖିଛୁଁ । ବସ୍ତୁତରେ ଅମ୍ଭ ମହାରାଜାଙ୍କ ସ୍କୁଲରେ ପଞ୍ଚାଶଟି ବାଳକ ପାଠ ପଢ଼ୁଅଛନ୍ତି । ପ୍ରତିଦିନରେ ୧୫ । ୨୦ ବାଳକ ଆବସେଣ୍ଟ ମାଷ୍ଟରମାନେ ରାଜା ମହୋଦୟଙ୍କଠାରେ ପ୍ରତ୍ୟହରେ ବାଳକମାନେ ନଆସିବାର ବୋବାଳି ପାଡ଼ନ୍ତି । ମହାରାଜା ମହୋଦୟ ପ୍ରତିନିତ୍ୟରେ ପିଲାମାନଙ୍କ ପିତାଙ୍କୁ କିମ୍ବା ତାଙ୍କ ଜ୍ୟେଷ୍ଠ ଭ୍ରାତାଙ୍କୁ ଡକାଇ ଅନେକ ପ୍ରକାର ସୁଉପଦେଶ ଦେଲେ ହେଲେ ମୋର ପିଲା ସ୍କୁଲକୁ ଗଲେ ବାନ୍ତି କରୁଛି, ମୋର ପିଲା ସ୍କୁଲକୁ ଗଲେ ଜ୍ୱର ଆସୁଛି ଏହିପରି ଅନେକ ପ୍ରକାର ମାୟା ବଚନ କହି ପିଲାଙ୍କୁ କେତେମାସ ବିଦ୍ୟାଶାଳାକୁ

ପଠାନ୍ତି ନାହିଁ । ବାଳକମାନେ କାହିଁକି ଅବା ଘଣ୍ଟା ଖେଳ ଛାଡ଼ି ପାଠ ପଢ଼ିବେ ? ମହା-ରାଜା ସି: ଆଇ: ଇ ମଧ୍ୟ ଅନେକ ଚରକ୍ତ ହୋଇ ସାରିଲେଣି । ଆମ୍ଭ ଓଡ଼ିଆଙ୍କ ଏପରି ଚେଷ୍ଟା । ଗଞ୍ଜାମ ଜିଲାରେ କେଉଁ ଓଡ଼ିଆ ବ୍ୟକ୍ତି କେଉଁ ପାଦ କରି ବସିଛି ଯେ ମହା ଦୟାବନ୍ତ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କୁ ତୁଚ୍ଛାରେ ନିନ୍ଦା କରିବା । ଭସ୍ମାସୁର ପ୍ରାୟ ଗଞ୍ଜାମ ଜିଲାନ୍ତଃପାତି ଓଡ଼ିଆମାନେ ସ୍ୱେଚ୍ଛାରେ ନାଶ ହେଉଅଛନ୍ତି । ଓଡ଼ିଆ ପରମ ବୁଦ୍ଧିବୋଧ ।

ଯଥାର୍ଥବାଦୀ

ଶ୍ରୀ ନାରାୟଣ ବଡ଼ଜେନା ସାମନ୍ତ

## ( ୧୭ଶ ଭାଗ, ୧୯ । ୩ । ୧୮୮୧, ସଂଖ୍ୟା ୧୨ )

୫୮୮ । ପ୍ରେରିତ ପତ୍ର

ମହାଶୟ, କନ୍ଧମାଳ ଉତ୍କଳର ପଶ୍ଚିମ ପ୍ରାନ୍ତରେ ଅବସ୍ଥିତ । ତାହା ଘୁମୁସର, ଖେମଣ୍ଡି ଓ କଳାହାଣ୍ଡି ମ ଲର ସହିତ ସମ୍ମିଳିତ ହୋଇ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଅଛି । କଟକ ଓ ଗଞ୍ଜାମଜିଲା ଠାରୁ କନ୍ଧମାଳ ଉଚ୍ଚସ୍ଥାନ । ଗ୍ରାମମାନ ପର୍ବତର ଉପତ୍ୟକାରେ ଅବସ୍ଥିତ । ଏହିସ୍ଥାନ ନିବିଡ଼ ଅରଣ୍ୟରେ ପରିପୂରିତ । ବ୍ୟାଘ୍ର ଭଲ୍ଲୁକ ବରାହ ଓ ଅନ୍ୟାନ୍ୟ ବନ୍ୟ ପଶୁଙ୍କର ଅଭାବନାହିଁ । ଏହାର କୌଣସି ୨ ଅଂଶରେ ଗଯୂଳ ଓ ଅରଣ୍ୟ ହସ୍ତୀ ଦେଖାଯାନ୍ତି । ଏ ସ୍ଥାନର ଭୂମି ଅନୁର୍ବର ନୁହେ କିନ୍ତୁ ବନ ଓ ପର୍ବତାକୀର୍ଣ୍ଣ ହେବାରୁ ଅଳ୍ପ ପରିମାଣ ଭୂମିରେ ଶସ୍ୟ ହୁଏ । ଏ ଭୂମିରୁ ଶସ୍ୟ ଆଦାୟ କରିବା କଷ୍ଟର୍ କଷ୍ଟକର । ତାହା ବୁଭୁକ୍ଷାନ୍ୱିତ ବନ୍ୟ ପଶୁଙ୍କ ମୁଖରୁ ଉଦ୍ଧାର୍ଣ୍ଣ କରାଇବାକୁ ହୁଏ । ଏତନ୍ନିମିତ୍ତ କୃଷକଙ୍କୁ ବହୁ ଅଧିକ ଯତ୍ନ ଓ ପରିଶ୍ରମ କରି ଆବଶ୍ୟକ । କନ୍ଧମାଳ ମଧ୍ୟରୁ ଅଧିକ ପରିମାଣରେ ହଳଦି ଆଦାୟ ହୋଇ କଟକ ଗଞ୍ଜାମ ଓ ସମ୍ବଲପୁର ଜିଲାମାନଙ୍କୁ ନୀତହୁଏ । ଅନ୍ୟାନ୍ୟ ପଣ୍ୟଦ୍ରବ୍ୟ ଏଠାରୁ ପ୍ରେରିତ କିମ୍ବା ବିଦେଶୀୟ ଦ୍ରବ୍ୟ ଆନୀତ ହେବାର କୌଣସି ସୁଯୋଗ ନଥିଲା କିନ୍ତୁ କେତେକ ପଥ ପ୍ରସ୍ତୁତ ହେବାରୁ ବାଣିଜ୍ୟ କାର୍ଯ୍ୟର ପ୍ରାରମ୍ଭ ହୋଇଅଛି । ବିଦେଶୀୟ ଦ୍ରବ୍ୟ ମଧ୍ୟରୁ ଲବଣର ବ୍ୟାପାର ଅଧିକ, ବସ୍ତ୍ର ବ୍ୟବସାୟୀମାନଙ୍କର କ୍ରମଶଃ ଦିନରୁ ଦିନ ପାଦ ବିକ୍ଷେପ ହେଉଅଛି । ମାର୍ଗର ସୁବିଧା କରାଇ ଦେବାକୁ ଅତ୍ୟନ୍ତ ଆବଶ୍ୟକ, ତାହା-ହେଲେ କନ୍ଧମାଳବାସୀଙ୍କ ପ୍ରତି ବଡ଼ ଉପକାର ହେବ । କ୍ରମଶଃ

ବଶମ୍ବଦ

୯ । ୨ । ୮୧ ଶ୍ରୀ—

## ( ୧୭ଶ ଭାଗ, ୯ । ୭ । ୧୮୮୧, ସଂଖ୍ୟା ୨୮ )

୫୮୯ । ଭଦ୍ରେଶ୍ୱରୀ ଅଟ୍ଟାଳିକା ।

ଆଗାମୀ ମଙ୍ଗଳବାର ପ୍ରାତଃକାଳରେ ଭଦ୍ରେଶ୍ୱରୀ ଅଟ୍ଟାଳିକା ସମ୍ବନ୍ଧରେ ଗୋଟିଏ ସଭା ଶ୍ରୀଯୁକ୍ତ କଲେକ୍‌ଟର ସାହେବ ଆହ୍ୱାନ କରିଅଛନ୍ତି । ବିଜ୍ଞାପନର ଆଭାଷରୁ ବୋଧହୁଅଇ ଅଟ୍ଟାଳିକା ସମ୍ଭାଗେ ସ୍ୱାଧୀନ ଭେଦା ମଧ୍ୟରୁ ଉଶୁଳ ହୋଇ-ଥିବା ପ୍ରାୟ ୫୨୦୦୦ଙ୍କା ଅନ୍ୟ କୌଣସି କାର୍ଯ୍ୟରେ ଲଗାଇବାର ପ୍ରସ୍ତାବ ହେବ । ଅଟ୍ଟାଳିକା ନିର୍ମାଣ ପ୍ରସ୍ତାବଟି ପାଞ୍ଚବର୍ଷରୁ ଉପସ୍ଥିତ ହୋଇ ଅଦ୍ୟାପି କାର୍ଯ୍ୟରେ ପରିଣତ ହୋଇନଥିବା ଯଦ୍ୟପି କି ଦୁଃଖ ଓ ଲଜ୍ଜାର ବିଷୟ ଅଟଇ ତଥାପି ଓଡ଼ିଶାର ଅବସ୍ଥା ଦୃଷ୍ଟିରେ କିଛି ଛାଡ଼ ଦେବା ଉଚିତ ହେଉଅଛି ଏବଂ ଆମ୍ଭେମାନେ ଆନନ୍ଦ ସହିତ ଦେଖୁଅଛୁ ଯେ ଭେଦା କ୍ରମଶଃ ବଢୁଅଛି । ଅଳ୍ପଦିନ ମଧ୍ୟରେ ଅନ୍ତତଃ ୧୫ । ୧୬ ହଜାର ଟଙ୍କା ପୂର୍ଣ୍ଣ ହେବ ଏବଂ ତହିଁରେ ଅନାୟାସରେ ଗୋଟିଏ ଉତ୍ତମ ଘର ହୋଇପାରେ ଏବଂ ତହିଁରେ ପୁସ୍ତକାଳୟ ହୋଇ ଏ ନଗରର ଗୋଟିଏ ମହତ୍ ଅଭାବ ପୂର୍ଣ୍ଣ କରିବ । ଅତଏବ ଏ ଟଙ୍କା ଅନ୍ୟ କୌଣସି ମତେ ନିୟୋଗ କରିବା ଉଚିତ ନୁହଇ ଏବଂ ଆମ୍ଭେମାନେ ଆଶାକରୁଁ କି ନଗରବାସୀ ଭେଦାଦାତାମାନେ ସଭାରେ ଉପସ୍ଥିତ ହୋଇ ଆପଣା ସଙ୍କଳ୍ପ ଦୃଢ଼ରୂପେ ରକ୍ଷାକରିବେ ।

## ( ୧୭ଶ ଭାଗ, ୧୬ । ୭ । ୧୮୮୧, ସଂଖ୍ୟା ୨୯ )

୫୯୦ । ଭଦ୍ରେଶ୍ୱରୀ ଅଟ୍ଟାଳିକା ।

ଏଥିନିମିତ୍ତ ଯେଉଁ ସଭା ହେବାର ଥିଲା ଆମ୍ଭେମାନେ ଗତ ସପ୍ତାହରେ ପାଠକମାନଙ୍କୁ ଜଣାଇଥିଲୁଁ ଗତ ମଙ୍ଗଳବାର କଲେଜ ଗୃହରେ ଉକ୍ତ ସଭାହେଲା । ଦୁଃଖର ବିଷୟ ଯେ ୧୦ । ୧୨ ଜଣ ଦେଶୀୟ ଭଦ୍ରଲୋକ ଉପସ୍ଥିତ ହୋଇଥିଲେ ଏବଂ ଇଂରାଜଙ୍କ ମଧ୍ୟରେ କେବଳ ଶ୍ରୀଯୁକ୍ତ ସ୍ମିଥ ସାହେବ କମିଶନର ଥିଲେ । ସ୍ୱୟଂ କଲେକ୍‌ଟର ଗ୍ରାଣ୍ଟ ସାହେବ କି ଯେ ସଭା ଆହ୍ୱାନ କରିଥିଲେ ସେ ଉପସ୍ଥିତ ହେଲେ ନାହିଁ । ଯାହାହେଉ ସଭାର କାର୍ଯ୍ୟ ଉତ୍ତମରୂପେ ନିର୍ବାହିତ ହେଲା । ବାବୁ ଜଗମୋହନ ରାୟ ସମସ୍ତଙ୍କ ମନୋନୀତ ମତେ ସଭାପତିର ଆସନ ଗ୍ରହଣ କଲେ ଏବଂ ସଭାର କାର୍ଯ୍ୟ ଆରମ୍ଭ ହେଲା । ଏହି ବିଷୟର ଭେଦା ସଗ୍ରହ ଉଦ୍ୟୋଗ ନିମିତ୍ତ ନିଯୁକ୍ତ ହୋଇଥିବା

ସବକମିଟୀଙ୍କ ରିପୋର୍ଟ ପଠିତ ହେଲା ଏବଂ ତହିଁରୁ ଜଣାଗଲା କି ପୂର୍ବେ ଟ୧୪୦୦୦ଙ୍କା ଚାନ୍ଦା ସ୍ୱାକ୍ଷରିତ ହୋଇଥିଲା । ତହିଁଉତ୍ତାରୁ ଆଉ ଟ୧୦୦୦୦ଙ୍କା ପର୍ଯ୍ୟନ୍ତ ଚାନ୍ଦା ସ୍ୱାକ୍ଷରିତ ହୋଇଅଛି ଅଥବା ହେବାର ଅଛି, ଏରୂପେ ମୋଟ ଟ୨୪୦୦୦ଙ୍କା ଚାନ୍ଦା ମଧ୍ୟରୁ କେତେକ ଚାନ୍ଦା ଦାତାଙ୍କ ସ୍ଥାନାନ୍ତରିତ ଏବଂ ଅନ୍ୟାନ୍ୟ କାରଣରୁ ପ୍ରାୟ ୩ । ୪ ହଜାର ଟଙ୍କା କଟିଗଲେ ସୁଦ୍ଧା ଅନ୍ତତଃ ଟ୨୦୦୦୦ଙ୍କା ଚାନ୍ଦା ଆଦାୟ ହୋଇପାରିବ । ମୟୂରଭଞ୍ଜ ଏବଂ କେନ୍ଦୁଝରର ମହାରାଜାମାନେ ଏବଂ ଆଠମଲ୍ଲିକ ଓ ଆଠଗଡ଼ର ରାଜାମାନେ ବିଶେଷ ବଦାନ୍ୟତା ସହିତ ଚାନ୍ଦା ଦେଇଅଛନ୍ତି ଅବା ଦେବେ ।

ସଭାର ବିବେଚନାରେ ଏହି କୋଡ଼ିଏ ହଜାର ଟଙ୍କା ମଧ୍ୟରେ ବାଞ୍ଛିତ ଅଟ୍ଟାଳିକା ଏବଂ ତହିଁ ସଂଲଗ୍ନରେ ଉଦ୍ୟାନ ହୋଇ ପାରିବାର ନିଶ୍ଚୟ ହେବାରୁ ତାହା ଧାର୍ଯ୍ୟ ହେଲା ଏବଂ ସ୍ୱାକ୍ଷରିତ ଚାନ୍ଦା ଉସୁଲ, ନୂତନ ଚାନ୍ଦା ସଂଗ୍ରହ ଏବଂ ପ୍ରସ୍ତାବିତ ଅଟ୍ଟାଳିକାର ନକ୍‌ସା ଏବଂ ଇଷ୍ଟିମେଟ ପ୍ରସ୍ତୁତ କରିବା କାରଣ ସବ କମିଟୀକୁ ଭାର ଦିଆଗଲା । କମିଟୀ ଶୀଘ୍ର ଟଙ୍କା ଉସୁଲ କଲେ ଗୃହ ନିର୍ମାଣ କାର୍ଯ୍ୟ ଆରମ୍ଭ ହେବ । ଆମ୍ଭେମାନେ ସଭାର ବିବରଣରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛୁଁ କାରଣ ଯଦ୍ୟପି ଅଟ୍ଟାଳିକାଟି ନହେବାର ସ୍ଥିର ହୁଅନ୍ତା ତେବେ ଓଡ଼ିଶାର ଗୋଟିଏ ଭାରି କଳଙ୍କ ହୁଅନ୍ତା ସନ୍ଦେହ ନାହିଁ । ଏଥର ଚାନ୍ଦାଦାତାଙ୍କୁ ପ୍ରାର୍ଥନା ଯେ ସେମାନେ ଶୀଘ୍ର ୨ ଆପଣା ସ୍ୱାକ୍ଷରିତ ଟଙ୍କା ପଠାଇ ଦେଉନ୍ତୁ ଏବଂ ଯେଉଁମାନେ ଅବଧି ଚାନ୍ଦା ସ୍ୱାକ୍ଷର କରି ନାହାନ୍ତି ସେମାନେ ଯଥାସାଧ୍ୟ ଦାନ କରିବାଦ୍ୱାରା ଏ ମହତ୍ ଅନୁଷ୍ଠାନଟିକୁ ସଫଳ କରନ୍ତୁ ଚାନ୍ଦା ଫର୍ଦ୍ଦ ଆଗାମୀ ସପ୍ତାହେ ପ୍ରକାଶ କରିବାର ଇଚ୍ଛା ରହିଲା ।

( ୧୭ଶ ଭାଗ, ୨୪ । ୯ । ୧୮୮୧, ସଂଖ୍ୟା ୩୯ )

୬୧ । ଧାତ୍ରୀଦ୍ଧକ ସମ୍ବାଦ ।

ଓଡ଼ିଶାର ପ୍ରଥମ ଏବଂ ଏ ପର୍ଯ୍ୟନ୍ତ ଏକମାତ୍ର ଏମ୍. ଏ. ଓ ବି. ଏଲ୍. ଉପାଧିଧାରୀ ବାବୁ ମଧୁସୂଦନ ଦାସ ଗତ ସପ୍ତାହରୁ ଏ ନଗରକୁ ଆସି ଏଠା ଅଦାଲତମାନଙ୍କରେ ଓକିଲାତି କରିବା ଆରମ୍ଭ କରିଅଛନ୍ତି । ଏଥିପୂର୍ବେ ଏ ମହାଶୟ ହାଇ-କୋର୍ଟର ଜଣେ ଅନୁବାଦକ ଥିଲେ ଏବଂ ଜଣେ ପଚଲାରେ ଓକାଲତି ମଧ୍ୟ କରୁ-ଥିଲେ । ଏତେଦିନେ ଓଡ଼ିଶାର ଅଦାଲତରେ ଜଣେ ଶିକ୍ଷିତ ଉଚ୍ଚଶ୍ରେଣୀର ଉକୀଲ ଦେଖି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ ।

୫୯୨ ।

## Notice

Is hereby given that Babu Madhusudan Das M. A. B. L. will deliver a lecture in English on Monday the 26th inst. at 7½ P. M. at the premises of the Cuttack Printing Company's hall on "Unification of Indian Alphabets." Gentlemen interested in the matter are respectfully requested to be punctual in their attendance to secure proper seats.

Cuttack
24. 9. 81

Ram Sankar Ray

## ( ୧୬ଶ ଭାଗ ,୨୭ । ୧୧ । ୧୮୮୧, ସଂଖ୍ୟା ୪୭ )

୫୯୩ ।

### ଗଙ୍ଗାମଣ୍ଡଳର ପୁଷ୍କରିଣୀ ।

ଏ ପୁଷ୍କରିଣୀଟି ଏ ନଗରର ମଧ୍ୟସ୍ଥଳରେ ବିରାଜିତ । ତାହା ଅପରିଷ୍କାର ଥିବା ଓ ତହିଁର ସଂସ୍କାର ଅତି ଆବଶ୍ୟକ ଥିବା ବିଷୟରେ ଆମ୍ଭେମାନେ ଏଥିପୂର୍ବେ ପୁନଃ ୨ ଲେଖିଥିଲୁଁ । କିନ୍ତୁ କେହି କର୍ଣ୍ଣପାତ କଲେ ନାହିଁ । ତହୁଁ ବାବୁ ଜାନକୀନାଥ ବନ୍ଦୋପାଧ୍ୟାୟ ଗବର୍ଣ୍ଣମେଣ୍ଟରେ ଏ ବିଷୟରେ ଆବେଦନ କରିବାରେ ଗବର୍ଣ୍ଣମେଣ୍ଟ ଏଥିର ରିପୋର୍ଟ ତଲବ କଲେ ମାତ୍ର ସ୍ଥାନୀୟ ହାକିମମାନେ କିବା ଭୟରେ ଟକ୍‌କ-ଗୁକଣ ରିପୋର୍ଟଟିଏ ପଠାଇଦେଲେ । ସୁତରାଂ ଗବର୍ଣ୍ଣମେଣ୍ଟ ତୁନିହୋଇ ରହିଲେ ଓ ଜାନକୀ ବାବୁଙ୍କର ଶ୍ରେୟସ୍କର ଶ୍ରମ ନିଷ୍ଫଳ ହେଲା । ସ୍ଥାନୀୟ ହାକିମଙ୍କ ରିପୋର୍ଟଟି ଟକ୍‌କଣ ହେଲା ବୋଲି କି ପୁଷ୍କରିଣୀଟି ଟକ୍‌କଣ ହେବ ? କଦାପି ହୋଇ ନପାରେ, କ୍ରମେ ଏବେ ଦୁର୍ଗନ୍ଧମୟ ହେଲା ଯେ ଜଜ୍ ସାହେବ ଆପଣା କଚେରୀ ଛାଡ଼ି ପଳାଇଗଲେ । ସେ ପୁଷ୍କରିଣୀଟି ଅଦାଲତ କଚେରୀକୁ ନିକଟ, ତହିଁର ଦୁର୍ଗନ୍ଧ କଚେରୀ ପର୍ଯ୍ୟନ୍ତ ବିସ୍ତାର ହେଲା ଓ ସେଠାରେ ବସିବାର କଷ୍ଟ ହେଲା । ଏହେତୁ ପ୍ରାୟ ପନ୍ଦରଦିନ ହେଲା ଅଦାଲତ କଚେରୀ କମିଶନରଙ୍କରେ ହେଉଅଛି । ଜଜ ଓ ଆଲ୍ଲି ସାହେବ ଦୋମହଲର ଉପ୍ରୋ-କ୍ଷୁଦ୍ର କୋଠରିରେ ଓ ମୁନସଫମାନେ ଡେରାରେ କଚେରୀ କରୁଅଛନ୍ତି । ଏଥିରେ ଅମଲା ଓକିଲ ଓ ମାମଲତକାରଙ୍କୁ ବଡ଼ କଷ୍ଟ ହେଉଅଛି । କେବଳ ଠିକା ଗଉଡ଼ମାନଙ୍କୁ ଯୋର ପଡୁଅଛି । ସେମାନଙ୍କର ଦର ଓ ଆଦର ଭାରି ବଢ଼ିଅଛି । ବୋଧହୁଏ ସେମାନେ ଟକ୍‌କଣ ରିପୋର୍ଟ ଲେଖିବା ହାକିମଙ୍କୁ ଆଶୀର୍ବାଦ କରୁଥିବେ । ଶ୍ରୀଯୁକ୍ତ ଶୋର୍‌ସାହେବ କଲେକ୍ଟର ଥିବା ସମୟରେ ଏ ପୁଷ୍କରିଣୀ ସଂସ୍କାର କରାଇଥିଲେ ।

ସେହିବନ୍ଧୁ ଆଜକୁ ପ୍ରାୟ ଦେଡ଼ବର୍ଷ ହେବ ତହିଁର ଆଉ ସଂସ୍କାର ହୋଇନାହିଁ । ଜଳସାହେବ ଏପରି ଭରବର ହେବାରୁ ବର୍ତ୍ତମାନ ତହିଁର ଗାଲ କଡ଼ା ହୋଇଅଛି ଓ ଦୁର୍ଗନ୍ଧ କିଛି ଉଣା ପଡ଼ିଅଛି କିନ୍ତୁ ଆଉ କିଛି ଦିନେ ପୁଣି ପୂର୍ବବତ୍ ଦୁର୍ଗନ୍ଧମୟ ହେବ । ଏବେ ତହିଁର ପଙ୍କୋଦ୍ଧାରଣ ନହେଲେ ତାହାର ଅବସ୍ଥା ସୁଧରିବ ନାହିଁ । ଆମ୍ଭେମାନେ ଶୁଣିଲୁଁ ଏ ବିଷୟରେ କେହି ୨ କମିଶନର ସାହେବଙ୍କୁ ମୌଖିକ ପ୍ରାର୍ଥନା କରିଥିଲେ କିନ୍ତୁ ସାହେବ ନାକି ଉତ୍ତର ଦେଲେ । କାହିଁକି ? ସେ ପୁଷ୍କରିଣୀ ସରକାରୀ ଅଟଇ ଓ ତହିଁର ମଛଦଆ କର ସରକାର ନେଉଅଛନ୍ତି, କି ସକାଶେ ତହିଁର ସଂସ୍କାର ନ କରିବେ । ତାହା କୌଣସି ଲୋକବିଶେଷରେ ହୋଇଥିଲେ ମେଜେଷ୍ଟର କାର୍ଯ୍ୟବିଧି ଆଇନାନୁସାରେ ତାହାପ୍ରତି ନୋଟିସ ଜାରି କରିଥାନ୍ତେଣି । ମ୍ୟୁନିସିପାଲିଟି କି ଏ ପୁଷ୍କରିଣୀର ସଂସ୍କାର ସକାଶେ ଦାୟୀ ନୁହନ୍ତି ? ଅବଶ୍ୟ ଅଟନ୍ତି । କୌଣସି ଏକପକ୍ଷ ପ୍ରତି ଏଥିର ବ୍ୟୟ ନିର୍ବାହ କରିବା କଠିନ ହେବ ଅତଏବ ଆମ୍ଭେମାନେ ପୁଣିଥରେ ପ୍ରାର୍ଥନା କରୁଅଛୁଁ ଯେ ଗବର୍ଣ୍ଣମେଣ୍ଟ ଓ ମ୍ୟୁନିସିପାଲିଟି ଦୁହେଁ ମିଶି ଏ ପୁଷ୍କରିଣୀଟିର ପଙ୍କୋଦ୍ଧାରଣ କରାନ୍ତୁ । ସେମାନେ ଏ କାର୍ଯ୍ୟରେ ଅଗ୍ରସର ହେଲେ ଏଠା ଧନୀମାନେ ମଧ୍ୟ କିଛି ସାହାଯ୍ୟ କରିପାରନ୍ତି ।

( ୧୭ଶ ଭାଗ, ୩୧ । ୧୨ । ୧୮୮୧. ସଂଖ୍ୟା ୫୨ )

୯୧୪ । ମୃତବାବୁ ପ୍ୟାରି ମୋହନ ଆଚାର୍ଯ୍ୟ ।

ଆମ୍ଭେମାନେ ଅତ୍ୟନ୍ତ ଦୁଃଖରେ ସହିତ ଏ ସମ୍ବାଦ ଲେଖିବାକୁ ବାଧ୍ୟ ହୋଇଅଛୁଁ । ଏମନ୍ତ ଶୋକାବହ ସମ୍ବାଦ ଏତେଶୀଘ୍ର ଆମ୍ଭମାନଙ୍କୁ ଲେଖିବାକୁ ପଡ଼ିବ ଏହା ସ୍ୱପ୍ନର ଅଗୋଚର ଥିଲା କିନ୍ତୁ ଦୈବୀ ଘଟଣାକୁ ଅତିକ୍ରମ କାହାର । ବାବୁ ପ୍ୟାରୀ ମୋହନ ଆଚାର୍ଯ୍ୟ ତୋମପଡ଼ା ମୁକାମରେ ଆଠ ଦଶଦିନ ଜ୍ୱର ଭୋଗକରି ଆରୋଗ୍ୟ ଲଭ ନିମିତ୍ତ ଗତ ଶନିବାର ଏ ନଗରସ୍ଥ ଆପଣା ଘରକୁ ଆସିଥିଲେ ଏବଂ ତାହାଙ୍କର ପୀଡ଼ା ପ୍ରକାଶ୍ୟରେ କଠିନ ବୋଧ ହେଉ ନଥିବାରୁ ତହିଁର ସମ୍ବାଦ ଅତ୍ୟଳ୍ପ ଲୋକ ପାଇଥିଲେ ଓ ତାହାଙ୍କ ଚିକିତ୍ସା ଘରେ ୨ ହେଉଥିଲା । ଗତ ଗୁରୁବାର ପ୍ରାତଃକାଳରେ ତାହାଙ୍କର ମୃତ୍ୟୁ ସମ୍ବାଦ ଏମନ୍ତ ଆଶ୍ଚର୍ଯ୍ୟ ରୂପରେ ରଟନା ହେଲା କି ଯେଉଁମାନେ ପୂର୍ବ ରାତ୍ରିରେ ତାହାଙ୍କ ସଙ୍ଗେ କଥାବାର୍ତ୍ତା କରିଥିଲେ ସେମାନେ ସୁଦ୍ଧା ତଟସ୍ଥ ହେଲେ । ତାହାଙ୍କୁ ଗୁରୁ ସନ୍ନିପାତ ଧରିବା ଏବଂ ଚିକିତ୍ସକମାନେ ତାହା ଠଉରାଇ ନପାରିବାର ଆମ୍ଭେମାନେ ଅନୁମାନ କରୁଁ । ଯାହାହେଉ ତହିଁର ବିଚାର ବର୍ତ୍ତମାନ ଅନାବଶ୍ୟକ । ଓଡ଼ିଶା ଅତ୍ୟନ୍ତ ହତଭାଗିନୀ ଯେ ପ୍ୟାରୀ ବାବୁଙ୍କପରି ପୁତ୍ରକୁ

ହରାଇଲୁ । ଏହାଙ୍କର ବୟସ କେବଳ ୪୩ ବର୍ଷ ଥିଲା ଏବଂ ଏହି ଅଳ୍ପକାଳ ମଧ୍ୟରେ ସେ ଯେମନ୍ତ କାର୍ଯ୍ୟକଳାପ ଦ୍ୱାରା ଆପଣାଙ୍କୁ ଓଡ଼ିଶା ଏବଂ ଦକ୍ଷିଣରେ ପରିଚିତ କରିଅଛନ୍ତି ସେସମସ୍ତ ଏହି ପତ୍ରିକାର ପାଠକମାନେ ବିଲକ୍ଷଣ ସ୍ମରଣ ରଖିଥିବେ ତାହାଙ୍କୁ ବର୍ଣ୍ଣନାର ପ୍ରୟୋଜନ ନାହିଁ । ସେ କେବଳ ବକ୍ତୃତା ଦ୍ୱାରା ନୁହେ ମାତ୍ର କାର୍ଯ୍ୟଦ୍ୱାରା ଓଡ଼ିଶାର ଜଣେ ପରମ ବନ୍ଧୁ ବୋଲି ଜଣା ଯାଇଅଛନ୍ତି ଏବଂ ଏତେବେଳ ପର୍ଯ୍ୟନ୍ତ ତାହାଙ୍କ ସ୍ଥାପିତ ବିଦ୍ୟାଳୟଟି ବିଦ୍ୟମାନ ରହି ତାହାଙ୍କର ମହତ୍ତ୍ୱ, ସ୍ୱଦେଶାନୁରାଗ, ଉଦାରତା ଏବଂ ମନୁଷ୍ୟତାର ସାକ୍ଷ ଦେଉଅଛି । କେତେ ଦୁଃଖୀ ବାଳକ ଏଥିରେ ବିଦ୍ୟାଲାଭ କରୁଥିଲେ ସେମାନଙ୍କ ଦଶା ଭାବିବା ବେଳକୁ ହୃଦୟ ବିଦୀର୍ଣ୍ଣ ହେଉଅଛି । ଓଡ଼ିଶାର କିଏ ସାମାନ୍ୟ ବେତନ ଭୋଗୀ ଲୋକ ଏତେ ମହତ୍ ଅନୁଷ୍ଠାନର ବ୍ରତୀ ହୋଇଥିଲେ କି ଯାହା ବଡ଼ ୨ ରାଜା ଜମିଦାରଙ୍କଠାରେ ଦେଖା ଯାଉନାହିଁ । ଶ୍ୟାମବାବୁ ଯେମନ୍ତ ସୁଶିକ୍ଷିତ ହୋଇ ସ୍ୱାଧୀନତା ଓ ଧର୍ମକୁ ଅବଲମ୍ବନ କରି ଚଳୁଥିଲେ ତହିଁରେ ଆମ୍ଭମାନଙ୍କର ବିଶ୍ୱାସ ଥିଲା ଯେ ଭବିଷ୍ୟତରେ ତାହାଙ୍କଦ୍ୱାରା ଓଡ଼ିଶାର ଅନେକ କାର୍ଯ୍ୟ ହୁଅନ୍ତା । ବର୍ତ୍ତମାନ ସେ ଆଶା ବିଫଳ ହେଲା । ପରମେଶ୍ୱର ଯେମନ୍ତ ଅକାଳରେ ତାହାଙ୍କୁ ଏ ପୃଥିବୀରୁ ଘେନିଗଲେ ତେମନ୍ତ ତାହାଙ୍କୁ ସ୍ୱର୍ଗୀୟ ସୁଖଦାନ କରନ୍ତୁ ଏବଂ ତାହାଙ୍କର ବୃଦ୍ଧ ପିତାମାତା ଏବଂ ଅଳ୍ପ ବୟସ୍କା ପତ୍ନୀଙ୍କୁ ଏହି ଅସହନୀୟ ଶୋକକୁ ଶାନ୍ତରୂପେ ବହନ କରିବାକୁ ବଳୀୟାନ୍ କରନ୍ତୁ ଏହି ମାତ୍ର ଆମ୍ଭମାନଙ୍କର ପ୍ରାର୍ଥନା ।

---

# ବାଲେଶ୍ୱର ସଂବାଦ ବାହିକା ।

## ପାକ୍ଷିକ ସମ୍ବାଦ ପତ୍ରିକା ।

"ଅବନ ମବନପାଳାଃ ପାନ୍ତୁ ବୃଷ୍ଟିଂ ବଧନ୍ତୁ"

" ଜଗତୀ ଜଳଧାରାଲ ଶସ୍ୟ ପୂର୍ଣ୍ଣାସ୍ତୁ ଭୂମି ।"

( ୩ୟ ଭାଗ, ୧ । ୭ । ୧୮୭୨, ସଂଖ୍ୟା ୧ )

ବାର୍ଷିକ ଅଗ୍ରିମ ମୂଲ୍ୟ ୫୩୯
ଷାଣ୍ମାସିକ ୫୨୯
ତ୍ରୈମାସିକ ୫୧୯

୪୯୪ । ସର୍ବସାଧାରଣଙ୍କ ଗୋଚରାର୍ଥେ ବିଜ୍ଞାପନ

ବଙ୍ଗଦେଶର ମାନ୍ୟବର ଶ୍ରୀଯୁକ୍ତ ଲେଫଟେନେଣ୍ଟ ଗବର୍ଣ୍ଣର ସାହେବଙ୍କ ଅନୁମୋଦନ କ୍ରମେ ବାଲେଶ୍ୱର ସଂବାଦ ବାହିକା ନାମ୍ନୀ ପତ୍ରିକା ଅଦ୍ୟାବଧି ଆଂଶିକ ସରକାରୀ ଓ ଆଂଶିକ ସାଧାରଣ ସମ୍ବାଦବାହିକା ବୋଲି ସ୍ଥାପିତ ହେଲା । ଅତଏବ ସର୍ବସାଧାରଣଙ୍କୁ ଜଣାଉଅଛୁଁ ଯେ ଭବିଷ୍ୟତ କ୍ରମେ ଉକ୍ତ ପତ୍ରିକାର ସରକାରୀ ଅଂଶରେ ଯାହା ପ୍ରକାଶ ହେବ ସେ ସମସ୍ତଙ୍କୁ ସରକାରୀ ଅଭିପ୍ରାୟ ଓ ଆଜ୍ଞା ଜାଣି ପ୍ରତିପାଳନ କରିବେ ।

---

BALASORE, Printed at P. M. Senaputy & Co's
Balasore Ootkal Press.

ଯେଉଁ ବିଧାନମାନ ପ୍ରଚଳିତ ଅଛି ସର୍କାର୍ ଯେବେ ସେଥିମଧ୍ୟରୁ କୌଣସି ବିଧାନକୁ ରହିତ କରିବେ ତେବେ ତହିଁର ସ୍ପଷ୍ଟବୋଧ ଜନକ କାରଣମାନ ଉକ୍ତ ସରକାରୀ ଅଂଶରେ ଲେଖାଯିବ । ଯେବେ ସେହି ବିଧାନ ପରିବର୍ତ୍ତରେ ଅନ୍ୟ କୌଣସି ବିଧାନ ପ୍ରଚଳିତ ହେବ ସେହି ନବ ପ୍ରଚଳିତ ବିଧାନର ଉପଯୋଗିତା ଲେଖା-ଯିବ ଆଉ କୌଣସି ନୂତନ ବିଧାନ ବାହାରିଲେ ତହିଁର ପ୍ରୟୋଜନ ମଧ୍ୟ ପ୍ରକାଶ ହେବ

ସରକାର ଯେବେ କୌଣସି ନୂଆ ଆଇନ ପ୍ରଚାର କରନ୍ତି ଫଳରେ ଯାହାହେଉ, ପ୍ରଜାମାନଙ୍କର ହିତ ସାଧନ ଓ ଅନିଷ୍ଟ ନିବାରଣ ବ୍ୟତୀତ ସରକାରଙ୍କର ଅନ୍ୟ ଉଦ୍ଦେଶ୍ୟ ନଥାଏ । ଯେଉଁ ବିଧାନ ପ୍ରକାଶହୁଏ ସେ ସମସ୍ତ ଦ୍ୱାରା ଯେ ପ୍ରଜାବର୍ଗର ଭଲ ବ୍ୟତୀତ ମନ୍ଦ ହୁଏ ନାହିଁ ଏହା ଆମ୍ଭେମାନେ ଅସ୍ୱୀକାର କରୁନାହୁଁ । ସରକାର ସର୍ବଜ୍ଞ ନୁହନ୍ତି । ତାଙ୍କର କଳ୍ପନା ଓ ଅନୁମାନ ମନୁଷ୍ୟର କଳ୍ପନା ଓ ଅନୁମାନ ଛଡ଼ା ଆନ କିଛି ନୁହେ । ଏଥିରୁ ପ୍ରଜାମାନେ ଛୁନହୋଇ ରହିଲେ ସରକାରଙ୍କର ଦୃଷ ନାହିଁ । ଅପିଚ ଏହାମଧ୍ୟ ବକ୍ତବ୍ୟ ଯେ ଆଇନମାନଙ୍କୁ ସମ୍ପୂର୍ଣ୍ଣମତେ ପରୀକ୍ଷାକରି ତତ୍‌ସମସ୍ତଙ୍କର ଉଦ୍ଦେଶ୍ୟ ବୁଝିବାର ସର୍ବସାଧାରଣଙ୍କ ପକ୍ଷରେ ସହଜ ନୁହେ । ସର-କାରଙ୍କ ଆଇନ ସମ୍ବନ୍ଧରେ ପ୍ରଜାମାନଙ୍କ ମନରେ ବହୁତ କୁସଂସ୍କାର ଥିବାର ଜଣା-ଯାଏ । ସରକାରଙ୍କ ଅଭିପ୍ରାୟ ନ ଜାଣିବା ହେତୁରୁ ଏହି କୁସଂସ୍କାର ଜାତ ହୋଇଅଛି । ଏଣିକି ଏହି ଅଭିପ୍ରାୟ ଦ୍ୱାରା କ୍ରମରେ ଉକ୍ତ କୁସଂସ୍କାରମାନ ରହିତ ହେବାର ସମ୍ଭାବନା । ସରକାର କେମନ୍ତ ପ୍ରଜାବତ୍ସଳ ପ୍ରଚଳିତ ବିଧାନମାନଙ୍କର ଯଥାର୍ଥ କାରଣ ପ୍ରକାଶ ହେଲେ ପ୍ରଜାମାନେ ତାହା ଅନାୟାସରେ ବୁଝିପାରିବେ । ବାସ୍ତବ ଏହି ପତ୍ରିକା ହାକିମ ଓ ପ୍ରଜାମାନଙ୍କର ପରସ୍ପର ବାର୍ତ୍ତାବହ ହେବ ।

ଆମ୍ଭେ ବହୁଦିନ ଏ ପ୍ରଦେଶରେ ଅବସ୍ଥାନ କରି ବୁଝିଅଛୁଁ ହାକିମ-ମାନେ କୌଣସି ସାଧାରଣ ହିତକର କର୍ମ ଆରମ୍ଭ କଲା ମାତ୍ରକେ ସେଥିର ବିରୁଦ୍ଧରେ ନାନା ପ୍ରକାର ମିଥ୍ୟା ସମ୍ବାଦମାନ ପ୍ରକାଶ ହୋଇ ଯେଉଁମାନେ କ ଦେଶର ଅବସ୍ଥା ଭଲରୂପେ ଜାଣନ୍ତି ନାହିଁ ସେମାନଙ୍କର ମନକୁ ସନ୍ଦେହଯୁକ୍ତ କରାଏ ଭଲ; କରିବାକୁ ପାଇ ଶେଷକୁ ହାକିମମାନେ ଅକାରଣ ନିନ୍ଦାର ଭାଗୀ ହୁଅନ୍ତି । ଏହା ଅତି ଦୁଃଖର ବିଷୟ ଅଟେ । ପ୍ରଜାମାନଙ୍କ ମଧ୍ୟରେ ଅନେକ ଲୋକ ମୂର୍ଖ ଓ ଆପଣା ଗର୍ଜୀ ଥିବାରୁ ଏହି ଅନିଷ୍ଟ ହେଉଅଛି । ମୂର୍ଖ ଲୋକମାନେ କୌଣସି ଭଲକାର୍ଯ୍ୟର ମର୍ମବୁଝି ପାରନ୍ତି-ନାହିଁ ପୁଣି ଆପଣା ଗର୍ଜୀ ଲୋକମାନେ ଆପଣା ହିତସାଧନ ନିମନ୍ତେ ସବୁବେଳେ ବ୍ୟସ୍ତ ଥାଆନ୍ତି । ସାଧାରଣଙ୍କର ମଙ୍ଗଳ ଚିନ୍ତିବା ପାଇଁ ସେମାନଙ୍କର ଅବକାଶ ନଥାଏ ।

ସୁତରାଂ ହାକିମମାନଙ୍କର କାର୍ଯ୍ୟ ଦ୍ୱାରା ଅପଣା ଗବର୍ଣ୍ଣର ଟିକିଏମାତ୍ର ବ୍ୟାଘାତ ଦେଖିଲ-କ୍ଷଣି ଅମର୍ଷିତ ହୁଅନ୍ତି ରାଜଶାସନକୁ ଅକାରଣ ଉପଦ୍ରବ ରଟାଇ ଦେଇ ସମ୍ବାଦ ପତ୍ରିକା-ମାନଙ୍କରେ ଦୁଃଖ ପ୍ରକାଶ କରନ୍ତି । ଏହି ଆଶଙ୍କା ଖଣ୍ଡନ ସଙ୍କାଶ ଅବଶ୍ୟ ସାଧାରଣଙ୍କର ମଙ୍ଗଳୋଦ୍ଦେଶ୍ୟରେ ଆମ୍ଭେମାନେ ସମୟ ସମୟ ଆଇନ ଅନୁବାଦ କରାଇ ବାଲେଶ୍ୱର ସମ୍ବାଦ ବାହିକାରେ ପ୍ରକାଶ କରିବାର ଭାର ଗ୍ରହଣ କଲୁଁ ।

ଆମ୍ଭେମାନେ ଏଦେଶକୁ ଆସିଲା ଦିନୁଁ ଯଦ୍ୟପି ସାନ ବଡ଼ ସମସ୍ତ ଲୋକଙ୍କ ସହିତ ସାକ୍ଷାତ କରି ଅନେକ ଗୂଢ଼ ଏ ଗୁରୁତର ବିଷୟମାନ ଜାଣି ଅଛୁଁ ଓ ପ୍ରକାଶ କରିଅଛୁଁ ତଥାଚ ଆହୁରି ଅନେକ ବିଷୟ ଅପ୍ରକାଶ ଥିବାର ଜଣାପାଏ । ଉତ୍କଳ ଭାଷାରେ ଆମ୍ଭର ବ୍ୟୁତ୍ପତ୍ତି ଥିଲେ ମଧ୍ୟ ଅମ୍ଭ ପକ୍ଷରେ ତହିଁର ବ୍ୟବହାରିକ ଦକ୍ଷତା ଲଭିବାର କଠିନ ଅଟେ । ଯେହେତୁକ ଆମ୍ଭମାନଙ୍କର ଉଚ୍ଚାରଣ ଅସ୍ପଷ୍ଟତା ତହିଁର ପ୍ରଧାନ ପ୍ରତିବନ୍ଧକ ହୋଇଅଛି । ଇଉରୋପୀୟ ଲୋକେ ଏଦେଶରେ ଭାଷାରେ ସହସ୍ର ବ୍ୟୁତ୍ପନ୍ନ ହେଉନ୍ତୁ ପଛକେ ଦେଶୀୟ ଲୋକେ ସେମାନଙ୍କର ଉଚ୍ଚାରଣ ଅସ୍ପଷ୍ଟତା ହେତୁରୁ ତାହାଙ୍କର କଥା ସହଜରେ ବୁଝି ପାରନ୍ତି ନାହିଁ । ପୁଣି ଆଇନର ମର୍ମ ବାକ୍ୟରେ ବୁଝାଇବାର ସୁବିଧା ଏ ଦେଶରେ ନାହିଁ, ଆମ୍ଭର ପଦର ଅର୍ଥ ମଧ୍ୟ ନ୍ୟୂନହେ ସୁତରାଂ ଯାହା ମନ୍ତବ୍ୟ ତତ୍ସମସ୍ତ ଉତ୍କଳଭାଷାରେ ଉକ୍ତ ପତ୍ରିକାରେ ନିୟମିତ ରୂପରେ ପ୍ରକାଶ କରିବୁଁ ।

ଯେବେ କେହି ଆଇନ ଅର୍ଥାତ୍ ବ୍ୟବସ୍ଥା ପ୍ରଭୃତି ବିଷୟରେ କୌଣସି ସନ୍ଦେହ ରଖିଥିବେ ତେବେ ତାହା ଉକ୍ତ ପତ୍ରିକାରେ ଅଥବା ଅନ୍ୟ ପତ୍ରିକାରେ ପ୍ରକାଶକଲେ ସେଥିର ଉତ୍ତର ଏହି ପତ୍ରିକାରେ ଦେବୁଁ ।

ବାଲେଶ୍ୱର
୨୦ ଜୁନ ୧୮୭୨

ଜାନ ବୀମ୍ସ
କଲେକ୍ଟର ଜିଲେ ବାଲେଶ୍ୱର

## ( ୭ମ ଭାଗ, ୧ । ୮ । ୧୮୭୪, ସଂଖ୍ୟା ୧ )

*୧୯୬ । ସମ୍ବାଦ ବାହିକାର ପୁନର୍ଜନ୍ମ ।

ଆମ୍ଭେମାନେ ପୁନର୍ବାର ଆଜିଠାରୁ ସମ୍ବାଦବାହିକାକୁ ପାଠକମାନଙ୍କ ହସ୍ତରେ ସମର୍ପଣ କଲୁଁ । ସନ ୧୮୭୩ ମସିହା ନବେମ୍ବର ମାସ ଆଦ୍ୟରୁ ୧୮୭୪ ଜୁଲାଇ ଶେଷ ପର୍ଯ୍ୟନ୍ତ ୯ ମାସକାଳ, ସମ୍ବାଦବାହିକା ପକ୍ଷରେ କାଳ ସ୍ୱରୂପ ହୋଇଥିଲା । ଯେପ୍ରକାର ଘଟନା ଘଟିଥିଲା ଏଥିରେ ସମ୍ବାଦବାହିକା ଯେ ପୁନର୍ବାର ପ୍ରକାଶିତ ହେବ ଏହା ଆମ୍ଭେମାନେ ସ୍ଥିର କରି ପାରିନଥିଲୁଁ ; କିନ୍ତୁ କରୁଣାମୟ ପରମେଶ୍ୱରଙ୍କ କୃପାରୁ ପୁନର୍ବାର ପ୍ରକାଶ କରିବାକୁ ସାହାସୀ ହେଲୁଁ ।

ଏଥିପୂର୍ବେ ସମ୍ବାଦ ବାହିକା ପି, ଏମ ଷେନାପତି ଏଣ୍ଡ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ହେଉଥିଲା, କୌଣସି ସାମାନ୍ୟ କାରଣରୁ ଉକ୍ତ କୋମ୍ପାନୀଙ୍କ ମଧ୍ୟରେ ଗୃହବିବାଦ ଉପସ୍ଥିତ ହେଲା, ତହିଁରେ କମ୍ପାନୀର ଅଂଶିଦାରମାନେ କିଷ୍ଟ ସହ ସନ୍ଧି ବାନ୍ଧିଥିବା ଭିତରୁ ବହିଷ୍କୃତ ହେଲେ !!! ସେମାନଙ୍କ ସଙ୍ଗରେ ସମ୍ବାଦବାହିକା ମଧ୍ୟ ତଳକୁ ମୁହଁପୋତି ରହିଥିଲା !!! ବର୍ତ୍ତମାନ କାଲେଣ୍ଟରଙ୍କର "ଉତ୍କଳ ପ୍ରିଣ୍ଟିଂ କମ୍ପାନୀ" ନାମରେ ଆଉ ଗୋଟିଏ ଛାପାଖାନା ସ୍ଥାପିତ ହେବାରୁ ସମ୍ବାଦବାହିକା ମୁଖଟେକି ପାଠକମାନଙ୍କ ଅନୁଗ୍ରହ ଦୃଷ୍ଟି ଲଭିବା କାରଣ ପୁନର୍ବାର ପ୍ରକାଶିତ ହେଲା । ପାଠକେ ! ସମ୍ବାଦବାହିକାକୁ କୃପାଦୃଷ୍ଟିରେ ଅନାଉନ୍ତୁ, ଏହି ଆମ୍ଭମାନଙ୍କର ଏକାନ୍ତ ପ୍ରାର୍ଥନା ।

ଉପସଂହାର ସ୍ଥଳେ ଆମ୍ଭମାନଙ୍କ କଲେକ୍ଟର ଓ ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ନମ୍ପିନ ସାହେବଙ୍କଠାରେ ଏତିକି ପ୍ରାର୍ଥନା ଯେ, ଆମ୍ଭମାନଙ୍କ ଭୂତପୂର୍ବ କଲେକ୍ଟର ଓ ମାଜିଷ୍ଟ୍ରେଟ ମହାତ୍ମା ଶ୍ରୀଯୁକ୍ତ ବୀମ୍ସ ସାହେବ ସମ୍ବାଦବାହିକା ପ୍ରତି ଯେରୂପ କଟାକ୍ଷ ପାତ କରୁଥିଲେ ଓ ଏହାର ପୋଷଣ ବିଷୟରେ ଯେପ୍ରକାର ଯତ୍ନ କରୁଥିଲେ, ପ୍ରଶଂସିତ ମହୋଦୟ ସମ୍ବାଦବାହିକା ପ୍ରତି ସେରୂପ କଟାକ୍ଷପାତ କରି ତାହାର ପୋଷଣ ବିଷୟରେ ସେହି ପ୍ରକାର ଯତ୍ନ କରନ୍ତୁ ।

*୧୯୭ । ବଦେଶୀ

ଆମ୍ଭେମାନେ ବଦେଶୀ ନାମକ ମାସିକ ପତ୍ରିକାର ପ୍ରଥମ ସଂଖ୍ୟା ଯଥା ସମୟରେ ପ୍ରାପ୍ତ ହୋଇଥିଲୁଁ ; ଆକ୍ଷେପର ବିଷୟ ଯେ ସମ୍ବାଦବାହିକା ସେହି

ପ୍ରସ୍ତୁତରେ ବଡ଼ ହୋଇ ଯିବାରୁ ଆମ୍ଭେମାନେ ତାହା ପାଇବାର ଅଙ୍ଗୀକାର କରିପାରୁ ନାହୁଁ ; ଏଣୁ ବିଦେଶୀ ସମ୍ପାଦକ ଆମ୍ଭମାନଙ୍କ ଉପରେ କ୍ରୋଧକରି ପାରିବେ ନାହିଁ ।

୪୯୮ । ଉତ୍କଳ ସଂସ୍କାରକ

ଉତ୍କଳ ସଂସ୍କାରକ ନାମକ ଆଉ ଗୋଟିଏ ପାକ୍ଷିକ ସମ୍ବାଦ ପତ୍ରିକା ବାଲେଶ୍ୱର ଉତ୍କଳ ପ୍ରିଣ୍ଟିଂ କୁମ୍ପାନୀଙ୍କ ଯନ୍ତ୍ରାଳୟରୁ ପ୍ରକାଶିତ ହେବ । ସେହି ପତ୍ରିକାର ମେନେଜର ବାବୁ ମାଳକମଲ ଦାସ ଓକିଲ ଅଟନ୍ତି । ସେହି ପତ୍ରିକା ଏହିମାସ ତା୧୫-ରିଖରେ ପ୍ରକାଶିତ ହେବାର କଥା ଥିଲା ; କିନ୍ତୁ ସମ୍ବାଦ ବାହିକା ପ୍ରକାଶିତ ହେବାର ତାରିଖ ଓ ସଂସ୍କାରକର ବାହାରିବାର ତାରିଖ ପ୍ରାୟ ଏକଦିନରେ ପଡ଼ିବାରୁ କାର୍ଯ୍ୟରେ ବ୍ୟାଘାତ ହେବାର ସମ୍ଭାବନା ; ଏଣୁ କାର୍ଯ୍ୟର ସୁବିଧା ନିମନ୍ତେ ସମୟ ବଦଳ କରି ଯାଉଅଛି । ଏହା ମାସ ତା୮ରିଖ ଓ ତା୨୪ରିଖରେ ପ୍ରକାଶିତ ହେବ ଓ ବାହିକା ମାସର ୧ମ ଓ ୧୬ଶ ତାରିଖରେ ପ୍ରକାଶିତ ହେବ ; ତାହାହେଲେ କାର୍ଯ୍ୟରେ କୌଣସି ବିଶୃଙ୍ଖଳା ଘଟିବ ନାହିଁ, ମଧ୍ୟ ପାଠକମାନେ ନିୟମିତ ସମୟରେ ପତ୍ରିକାମାନ ପାଇ ପାରିବେ ।

୪୯୯ । ଓଡ଼ିଶାର ଦେବାଳୟ ମାନଙ୍କରେ ସାହାଯ୍ୟ ଦାନର ସମ୍ବନ୍ଧ ପରିବର୍ତ୍ତନ ।

ଏହି ଉଡ଼ିଶ୍ୟା ଦେଶ ଚତୁର୍ଥ ପୁଣ୍ୟ କ୍ଷେତ୍ରରେ ବିଭକ୍ତ ହୋଇଅଛି । ୧ । ପାର୍ବତୀ କ୍ଷେତ୍ର, ୨ । ଶିବକ୍ଷେତ୍ର, ୩ । ବିଷ୍ଣୁ କ୍ଷେତ୍ର ଓ ୪ । ସୂର୍ଯ୍ୟକ୍ଷେତ୍ର । ପାର୍ବତୀ କ୍ଷେତ୍ରର ପ୍ରଧାନସ୍ଥଳ ଯାଜପୁର, ଶିବକ୍ଷେତ୍ରର ପ୍ରଧାନ ସ୍ଥାନ ଭୁବନେଶ୍ୱର, ବିଷ୍ଣୁ କ୍ଷେତ୍ରର ପ୍ରଧାନସ୍ଥାନ ପୁରୀ ଏବଂ ସୂର୍ଯ୍ୟକ୍ଷେତ୍ରର ପ୍ରଧାନ ସ୍ଥାନ କଣାରକ ଅଟେ । ଏହି ଚତୁଃକ୍ଷେତ୍ରର ଅନ୍ତର୍ଗତ ଦେବାଳୟ ମାନଙ୍କର ବ୍ୟୟ ନିର୍ବାହ ନିମନ୍ତେ ପୂର୍ବେ ଅନେକ ଦେବୋତ୍ତର ଭୂମି ଥିଲା, ମୁସଲମାନ ରଜାମାନେ ତାହା ହରଣ କରି ନଥିଲେ ତହିଁଉତ୍ତାରୁ ମହା-ରାଷ୍ଟ୍ରୀୟମାନଙ୍କ ରାଜତ୍ୱ ସମୟରେ ଦେବୋତ୍ତର ଭୂମି ଅତ୍ୟନ୍ତ ଅଧିକ ହୋଇଥିଲା । ଅନନ୍ତର ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଇଂ ୧୮୦୩ ସାଲରେ ଉଡ଼ିଶ୍ୟା ଅଧିକାର କରିବା ସମୟରେ ଅନେକ ଦେବୋତ୍ତର ଭୂମି ନିଜ ରାଜ୍ୟରେ ସାମିଲ କରିଦେଇ ସେବାର ବ୍ୟୟ ନିର୍ବାହ ନିମନ୍ତେ ନଗଦ ଟଙ୍କା ଦେବାପାଇଁ ସ୍ୱୀକୃତ ହେଲେ । ସେହି ଦିନଠାରୁ ଚତୁଃ-କ୍ଷେତ୍ରର ଅଧୀନସ୍ଥ ୩୩ ଗୋଟି ଦେବାଳୟର ବ୍ୟୟ ନିର୍ବାହ ନିମନ୍ତେ ସରକାର ବାହା-ଦୂର ନଗଦ ଟଙ୍କା ଦେଇ ଆସୁଅଛନ୍ତି । ସରକାର ବାହାଦୁର ଯେଉଁ ସମୟରେ

ଉଡ଼ିଶ୍ୟା ଅଧିକାର କଲେ ସେ ସମ୍ବନ୍ଧରେ ତାହାଙ୍କର କିଛି ଖବର ହୋଇନଥିଲା ; ଯେହେତୁ ସରକାର ବାହାଦୁରଙ୍କ ସୈନ୍ୟମାନେ ଉଡ଼ିଶ୍ୟାରେ ପହୁଞ୍ଚିଲା ଛଣି ମରହଟ୍ଟା-ମାନେ ଉଲଟେ ପଳାଇଗଲେ । ସେହି ସମ୍ବନ୍ଧରେ ବୁଦ୍ଧିମାନ ବ୍ରାହ୍ମଣ ସେନାପତି ଜଗନ୍ନାଥ ମନ୍ଦିର ରକ୍ଷା ନିମନ୍ତେ ନଗଦ ଟଙ୍କା ଦେବାର ବନ୍ଦୋବସ୍ତ କରନ୍ତେ ଉତ୍କଳୀୟମାନେ ଅତ୍ୟନ୍ତ ଆହ୍ଲାଦିତ ହୋଇ ଇଂରେଜ ମାନଙ୍କର ଅଧୀନ ହେଲେ । ସେହି ସନ ସେପ୍ଟେମ୍ବର ମାସର ତାରିଖରେ ଉଡ଼ିଶ୍ୟାର ରାଜା ଜଗନ୍ନାଥ ଦେବଙ୍କ ଦ୍ୱାର ଫିଟାଇ ଦେଲେ । ସରକାର ବାହାଦୁର ଆନନ୍ଦସହିତ ମନ୍ଦିରର ସମସ୍ତ ଭାର ପଣ୍ଡା-ମାନଙ୍କ ହସ୍ତରେ ଦେଲେ । ତହିଁ ଉତ୍ତାରେ ଗଡ ହୁଅନ୍ତେ ଲର୍ଡ ଓଏଲେସ୍ଲି ବାହାଦୁର ବିଲାତ ପ୍ରସ୍ଥାନ କଲେ । ବାର୍ଲୋ ସାହେବ ମନ୍ଦିରର ଭାର ଗ୍ରହଣ କଲେ ।

ଗଭର୍ଣ୍ଣମେଣ୍ଟ ଦେବାଳୟରେ ମାସକୁମାସ ନଗଦ ଟଙ୍କା ଦେଉଥିଲେ । ଏତେବେଳେ ବର୍ଷରେ ଗୃହ କର୍ତ୍ତି କରି ସେହିଟଙ୍କା ଦେବାପାଇଁ ନିୟମ କରୁଅଛନ୍ତି । ଏଥିରେ ଦେବ ସେବାରେ ବ୍ୟାଘାତ ହେବ ବୋଲି ମାଧବ ପଣ୍ଡା ଓ ଗୋବିନ୍ଦ ପଣ୍ଡା ଓଗେର କେତେକ ଜଣ ଦରଖାସ୍ତ କରିଅଛନ୍ତି । ସରକାର ବାହାଦୁର ଯେଉଁଠାରେ ଦାନ ସ୍ୱୀକାର କରିଅଛନ୍ତି ସେଠାରେ ଦାନ ପାତ୍ରର ସହିତରେ ଉପକାର ହେବ ଏହିରୂପ କରିବା ଉଚିତ । ଯେଉଁ କାର୍ଯ୍ୟ ନିମନ୍ତେ ଦତ୍ତ ହୋଇଅଛି ସମ୍ପୂର୍ଣ୍ଣ ପରିବର୍ତ୍ତନ କଲେ ଯଦି ସେହି କାର୍ଯ୍ୟରେ ବ୍ୟାଘାତ ଘଟିଲା ତେବେ ଦାନରେ ପ୍ରୟୋଜନ କି ? ସରକାର ବାହାଦୁରଙ୍କ ଭଣ୍ଡାର କେତେଥର ଶୂନ୍ୟ ହୋଇଅଛି । କର୍ଜ କରି ଯୁଦ୍ଧର ବ୍ୟୟ ସମ୍ପନ୍ନ କରି ଯାଇଅଛି । ତହିଁରେ ସୁଦ୍ଧା ଉଡ଼ିଶ୍ୟାର ଦେବାଳୟରେ ମାସିକ ଦାନ ବନ୍ଦ କରି ପାରିନାହିଁ । ଏତେବେଳେ ଆମ୍ଭମାନଙ୍କ ଗଭର୍ଣ୍ଣମେଣ୍ଟ ସ୍ୱଚ୍ଛଳ ଅବସ୍ଥାରେ ଯେ ଏପରି କଠୋର ନିୟମ କରିବାକୁ ସ୍ଥିର କରିଅଛନ୍ତି ଏହା ବଡ଼ ଦୁଃଖର ବିଷୟ ।

ସରକାର ବାହାଦୁର ଉଡ଼ିଶ୍ୟା ଅଧିକାର ସମୟରେ ଦେବସେବା ପାଇଁ ନଗଦ ଟଙ୍କା ଦେବା ନିମନ୍ତେ ଯେରୂପ ଅଙ୍ଗୀକାର କରିଅଛନ୍ତି ସେହିରୂପ ଅନ୍ୟାନ୍ୟ ରାଜାମାନଙ୍କର ରାଜସ୍ୱ ହସ୍ତଗତ କରି ସେମାନଙ୍କୁ ପେନସନ ଦେବାପାଇଁ ଅଙ୍ଗୀକାର କରିଅଛନ୍ତି । ବୃତ୍ତିଭୋଗୀ ରାଜା ବା ସେମାନଙ୍କର ଉତ୍ତରାଧିକାରୀମାନେ ବୃତ୍ତିଟଙ୍କା ପାଇ କେହି ମଦ୍ୟପାନ କେହି ବା କୁଳ କୁଆସୁଣୀଙ୍କ ସତୀତ୍ୱ ନଷ୍ଟ କେହି ବା ସରକାର ବାହାଦୁରଙ୍କ ବିରୁଦ୍ଧରେ ପରାମର୍ଶ କରୁଅଛନ୍ତି । ସେମାନଙ୍କୁ ଯଥା ସମୟରେ ଟଙ୍କା ଦେବାପାଇଁ ସମ୍ପୂର୍ଣ୍ଣ ପରିବର୍ତ୍ତନ ହେଉନାହିଁ । ଆଉ ଯେଉଁ ଦତ୍ତ ଧନ ସତ୍କାର୍ଯ୍ୟରେ ବ୍ୟୟ ହେଉଅଛି ସେଥି ନିମନ୍ତେ ସମସ୍ତର ପରିବର୍ତ୍ତନ ହେଉଅଛି । ସରକାର ବାହାଦୁର

ଉଡ଼ିଶ୍ୟାର ଦେବାଳୟ୍ମାନଙ୍କ ନିମନ୍ତେ ଯେଉଁ ଅର୍ଥ ପ୍ରଦାନ କରୁଅଛନ୍ତି ତଦ୍ଦ୍ୱାରେ ଅନେକ ଦୁଃଖୀ ଲୋକ ପ୍ରାଣଧାରଣ କରୁଅଛନ୍ତି । ଏମନ୍ତ ସ୍ଥଳେ ଦଶ ଟଙ୍କା ବରଷକୁ ଗୃହିଥର ଦେଲେ ଯେଉଁ କାର୍ଯ୍ୟ ନିମନ୍ତେ ତାହା ଦିଆ ଯାଉଅଛି ସେହି କାର୍ଯ୍ୟରେ ଯେ ବ୍ୟାଘାତ ଘଟିବ ଏଥିରେ କିଛିମାତ୍ର ସନ୍ଦେହ ନାହିଁ ।

ଯେଉଁମାନେ ମାସକୁ ମାସ ବୃତ୍ତି ବା ବେତନ ପାଉଅଛନ୍ତି ସେମାନେ ବୃତ୍ତି ଟଙ୍କା ପାଇବା ସମୟରେ ଅଧିକ ବ୍ୟୟ କରନ୍ତି, ମାସର ଶେଷକୁ ଧାର ଉଧାର ନକଲେ ଚଳେ ନାହିଁ । ସେହିରୂପ ତିନମାସ ଉତ୍ତାରୁ ଥରେ ଦଶ ଟଙ୍କା ଦିଆ-ଗଲେ ଟଙ୍କା ପାଇବା ଦିନଠାରୁ ଦେଢ଼ କି ଦୁଇମାସ ମଧ୍ୟରେ ସେହି ଟଙ୍କା ସବୁ ବ୍ୟୟ ହୋଇଯିବ, ଶେଷ ମାସ ନିମନ୍ତେ ଗୋଟିଏ ପଇସା ହାତରେ ଥିବନାହିଁ । ଇଂରେଜ-ମାନେ ଯେରୂପ ପରିମିତବ୍ୟୟୀ ଓ ଭବୀ ବିଷୟରେ ଚିନ୍ତାଶୀଳ, ଉଡ଼ିଶ୍ୟା ବାସୀମାନେ ସେରୂପ ପରିମିତବ୍ୟୟୀ ନୁହନ୍ତି କିମ୍ବା ଭବିଷ୍ୟତକୁ ଗୃହିଁ ଧନ କାଟି ପାରନ୍ତି ନାହିଁ; ଏମନ୍ତ ସ୍ଥଳେ ତିନି ମାସ ଅନ୍ତେ ଥରେ ଟଙ୍କା ଦେଲେ ସେବା କାର୍ଯ୍ୟରେ ବ୍ୟାଘାତ ଘଟିବ କିନା, ଏ ବିଷୟରେ ସରକାର ବାହାଦୁର ପୁନର୍ବିଗ୍ରୃର କରନ୍ତୁ ।

୬୦୦ । ଏବର୍ଷ ସର୍ଭେ ପରୀକ୍ଷାରେ ୩୮୫ ମଧ୍ୟରୁ ୨୦୦ଜଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ସେଥିମଧ୍ୟରୁ ଓଡ଼ିଶା କଲେଜରେ ନିମ୍ନଲିଖିତ ବ୍ୟକ୍ତିମାନେ ପଢ଼ୁଅଛନ୍ତି ଯଥା:— ୧ମ ଶ୍ରେଣୀର, ଭୂମ୍ୟା ଅବଦୁଲ ରହେମାନ ଖାଁ ଓ ନନ୍ଦ କିଶୋର ଦାସ । ୨ୟ ଶ୍ରେଣୀର, ଉମାଚରଣ ଚକ୍ରବର୍ତ୍ତୀ ଓ କୁମୁଦ ନାଥ ମୁଖର୍ଜ୍ଜୀ । ୩ୟ ଶ୍ରେଣୀର, ମଧୁମନ ଚନ୍ଦ୍ର ଦାସ, ଜତେନ୍ଦ୍ର ଚନ୍ଦ୍ର ମଜୁମଦାର, ଗୋଲୋକ ନାଥ ମୁଖର୍ଜ୍ଜୀ, ନାରାୟଣ ଚନ୍ଦ୍ର ନାୟକ, ଶ୍ରୀନାଥ ବାନୁର୍ଜ୍ଜୀ ଓ ଉପେନ୍ଦ୍ର ନାଥ ମଲ୍ଲିକ ।

## ( ୧୧ଶ ଭାଗ, ୧୩ । ୬ । ୧୮୭୮, ସଂଖ୍ୟା ୨୪ )

୬୦୧ । କଣେ ବନ୍ଧୁଙ୍କଠାରୁ ଅବଗତ ହେଲୁଁ ଯେ, "କାନ୍ଥି ଅଞ୍ଚଳରେ କେତେ ଓଡ଼ିୟା ଅଛନ୍ତି ଓ କାନ୍ଥି ସବଡିଭିଜନ ବାଲେଶ୍ୱର ସହିତ ମିଶିଲେ ସେଠା-କାର ନିବାସିମାନଙ୍କର କି ଅସୁବିଧା ହେବ" ସ୍ଥାନବାସୀମାନଙ୍କଠାରୁ ପୋଲିଶ କର୍ମଗୃହଙ୍କ ଦ୍ୱାରି ଏ ବିଷୟର ସନ୍ଧାନ ନିଆ ଯାଉଅଛି । ଏଣୁ ସେଠା ନିବାସୀମାନଙ୍କ ମନରେ ବିଶ୍ୱାସ ହୋଇଅଛି ଯେ, କାନ୍ଥି ଅଞ୍ଚଳ ବାଲେଶ୍ୱର ଜିଲ୍ଲ ସଙ୍ଗେ ନିଶ୍ଚେ ମିଶିବ । ଆମ୍ଭମାନଙ୍କ ବିବେଚନାରେ ଦାନ୍ତୁଣ ଥାନାକୁ ମଧ୍ୟ ବାଲେଶ୍ୱର ଜିଲ୍ଲ ସଙ୍ଗେ ମିଶାଇ ଦେବା ଉଚିତ; ଯେହେତୁ ସେହି ଥାନା ଇଲକାର ଅଧିବାସୀମାନେ ପ୍ରାୟ ଓଡ଼ିୟା ଅଟନ୍ତି ।

( ୧୧ଶ ଭାଗ, ୫ । ୯ । ୧୮୭୮, ସଂଖ୍ୟା ୩୭ )

୬୦୨ । ମସ୍କାରକରୁ ଅବଗତ ହୋଇ ଅତ୍ୟନ୍ତ ଦୁଃଖର ସହିତ ପ୍ରକାଶ କରୁଅଛୁଁ ଯେ ଆମ୍ଭମାନଙ୍କ କମିଶନର ସାହେବ ପୁରୀର ବନ୍ଦୀ ରାଜାଙ୍କ ମାତାଙ୍କୁ ପେନସନ ଆଦି ଦେବା ବିଷୟରେ ସଦରକୁ ଯେଉଁ ରିପୋର୍ଟ କରିଥିଲେ ସଦରରେ ତାହା ନାମଞ୍ଜୁର ହୋଇଅଛି । ଦେବରାଜାଙ୍କ ପରିବାରଙ୍କ ନିମନ୍ତେ ସରକାର ବାହା-ଦୁର ଯେଉଁ ବୃତ୍ତି ନିରୂପଣ କରିଅଛନ୍ତି ତାହା ରାଜବଂଶ ନିମନ୍ତେ, ବ୍ୟକ୍ତି ବିଶେଷ ନିମନ୍ତେ ନୁହେ । ତେବେ କାହିଁକି କମିଶନର ସାହେବଙ୍କ ପ୍ରାର୍ଥନା ଅଗ୍ରାହ୍ୟ ହେଲା ତାହା କିଛି ଜଣା ପଡୁନାହିଁ । ପକ୍ଷାନ୍ତରେ ଅନୁମାନ କରୁଁ ସରକାର ବାହାଦୁର ଜଗନ୍ନାଥ ଦେବଙ୍କ ମନ୍ଦିରର ଭାର କୌଣସି ବେତନଭୋଗୀ କର୍ମଚାରୀଙ୍କ ଉପରେ ନ୍ୟସ୍ତ କରିବେ ।

---

( ପାକ୍ଷିକ ସମ୍ବାଦପତ୍ର )

# ଉତ୍କଳ ପୁତ୍ର

ଅଗ୍ରିମ ମୂଲ୍ୟ ଟ୧ଙ୍କା
ପଶ୍ଚାଦେୟ ଟ୧୵
ଡାକମାସୁଲ ଟ୦୵

( ୧ମ ଭାଗ, ୧୬।୫।୧୮୭୩, ସଂଖ୍ୟା ୩ )

୬୦୩ । ବିଗତ ସପ୍ତାହର ଅମୃତବଜାର ପତ୍ରିକାର “ଉଡ଼ିଆ” ଇତି-
ଶିରୋନାମାର ଏକ ପ୍ରେରିତ ପତ୍ର ପାଠକରି ଅତ୍ୟନ୍ତ ଚମତ୍କୃତ ହୋଇଅଛୁଁ । ପୁନର୍ବାର
ଶ୍ରୀ ଦୀନାନାଥ ବନ୍ଦ୍ୟୋପାଧ୍ୟାୟ “ବଲବଲେଇ” ଉଠିଅଛନ୍ତି ଯେ ଉତ୍କଳୀୟ ବ୍ରାହ୍ମଣ-
ମାନେ ନିର୍ବାସିତ, ମହାନ୍ତିମାନେ ଅନାର୍ଯ୍ୟ ଓ ବିଗତ ମାର୍ଚ୍ଚମାସ ତା୨୨ରିଖ ଦୀପିକା
ପତ୍ରପ୍ରେରକ ସଂସ୍କୃତ ପୁରାଣାନଭିଜ୍ଞ । ସେ ଯେ କାହିଁକି ଉତ୍କଳୀୟଙ୍କର ଆର୍ଯ୍ୟତ୍ୱ ବା
ଅନାର୍ଯ୍ୟତ୍ୱ ଘେନି ଏତେ ବ୍ୟସ୍ତ ହେଉଅଛନ୍ତି, ଆମ୍ଭେମାନେ କିଛି ବୁଝି ପାରୁନାହୁଁ ।
ଯଦ୍ୟପି କି ବାବୁ ମହାଶୟ ସ୍ୱୀୟ “ଜାତି ତତ୍ତ୍ୱ” ଶାସ୍ତ୍ରର ପରିଚୟ ଦେବାକୁ ମନସ୍ଥ
କରନ୍ତି ତେବେ ତାଙ୍କର ଏ ଉଦ୍ୟମରେ କିଞ୍ଚିତ୍ ସେ ମାନସ ସାଧିତ ହେବାର କଷ୍ଟ
ସାଧ୍ୟ, ପୁଣି ଯଶଃଲାଭ ଇଚ୍ଛାଥିଲେ ଏ ନିନ୍ଦନୀୟ ଉପାୟଦ୍ୱାରା କି ସେ ବାଞ୍ଛା ସଫଳ
ହେବ ? ପ୍ରକୃତ ସତ୍ୟାକାଙ୍କ୍ଷୀ ହୋଇଥିଲେ ସେ ଭିନ୍ନ କଥା, କିନ୍ତୁ ଯେଉଁ ଅସମ୍ଭବ ଓ
ବିପରୀତ ବ୍ୟାପ୍ତିରେ ଉପାଧ୍ୟାୟ ମହାଶୟ ଉପସ୍ଥିତ ହେଉଅଛନ୍ତି, ତାହାଦ୍ୱାରା ତ ଏ
ମହଦ୍‌ବାସନାର ପରିଚୟ ମିଳୁନାହିଁ । ପୁନଶ୍ଚ ପାଠ କଲୁଁ ଉପସଂହାରସ୍ଥଳେ ବାବୁ
ସାହେବ ଆର୍ଯ୍ୟପଣିଆ ସୂକ୍ଷ୍ମ ପ୍ରକାଶ କରିଅଛନ୍ତି । ବାହାବା ! ବାହାବା !! ବାବୁଙ୍କର
ଉକ୍ତ ବିଷୟରେ ନିଜର ସ୍ଥୈର୍ଯ୍ୟତା ଜାଣି ନପାରିଲୁ ଉପଯୁକ୍ତ ପ୍ରମାଣ ଦର୍ଶାଇ ବାବୁଙ୍କ
ମତଖଣ୍ଡନ କରିବାକୁ ମାନସ ବଳିଲା ନାହିଁ ।

( ୧ମ ଭାଗ, ୧ । ୭ ।୧ । ୮୭୩, ସଂଖ୍ୟା ୭ )

୭୦୪ ।

ଗଡ଼ଜାତର ଅବସ୍ଥା

ଆମ୍ଭମାନଙ୍କର ଜଣେ ଗଡ଼ଜାତବାସୀ ବନ୍ଧୁ ଗଡ଼ଜାତ ସମ୍ବନ୍ଧରେ ଲେଖିଅଛନ୍ତି ଯେ "ଗଡ଼ଜାତର ଅବସ୍ଥା ଅତି ଶୋଚନୀୟ, ଗଡ଼ଜାତ ସବୁ ବିଷୟରେ ଅନୁନ୍ନତ ହୋଇ ରହିଅଛି, ଉନ୍ନତି ଓ ସଭ୍ୟତାର ମୁଖ୍ୟ ସୋପାନ ସ୍ୱରୂପ ସ୍କୁଲ ସୁଦ୍ଧା ଖାସମାହାଲ ଗଡ଼ଜାତ ଓ କନ୍ଧମାଳ, ପୁଣି ଢେଙ୍କାନାଳ, କେନ୍ଦୁଝର ଓ ଆଠଗଡ଼ ଛଡ଼ା ଅନ୍ୟ କୌଣସିଠାରେ ସ୍ଥାପିତ ହେବାର ଦେଖା ଯାଏନାହିଁ । ତେବେ ଅଳ୍ପ ଦିନ ହେଲା ଦଶପଲ୍ଲା ରାଜା ଗୋଟିଏ ପାଠଶାଳା ବସାଇ ଅଛନ୍ତି ଓ ମଧ୍ୟ ସ୍ୱୟଂ ଉଦ୍ଯୋ-ହିତ ହୋଇ ଖଣ୍ଡିଏ ବର୍ଣ୍ଣବୋଧକ ଘେନି ପଢ଼ା ଆରମ୍ଭ କରିଅଛନ୍ତି । ଏହା ଅତି ପ୍ରଶଂସନୀୟ ଅଟେ । ନୟାଗଡ଼ରେ ଗୋଟିଏ ସ୍କୁଲ ଅତି ଅଳ୍ପଦିନ ସକାଶେ ଥିଲା କିନ୍ତୁ ବର୍ତ୍ତମାନ ଉଠିଯାଇ ତତ୍ ପରିବର୍ତ୍ତିରେ ରଣପୁର ରାଜ୍ୟପରି ସେଠାରେ ୫ କି ୭ ଜଣ ପଢ଼ିବା ଭଳି ଗୋଟିଏ କ୍ଷୁଦ୍ର ଚାଟଶାଳୀ ବସିଅଛି । ନୟାଗଡ଼ ରାଜା ଇଂରାଜୀ ପଢ଼ି, ସୁଶିକ୍ଷିତ ହୋଇ ଶେଷକୁ ଏପରି କରିଅଛନ୍ତି । ଏହାଠାରୁ ଅଧିକ ଦୁଃଖର କଥା ଆଉ କଣ ହୋଇପାରେ । ଏଠାରେ ମୋହର ଆଉ କିଛି ବକ୍ତବ୍ୟ ଅଛି । ଗଡ଼ଜାତର ରାଜା-ମାନେ ଦୋଳ, ଗୁଣ୍ଡିଚା ଯାତ୍ରା, ଚନ୍ଦନ ଓ ରାମ ନବମୀରେ, ଶୀତଳ ଷଷ୍ଠୀ ଓ ଚମ୍ପକ ଦ୍ୱାଦଶୀ ବାଣରେ, ଆଖଡ଼ା ପିଲା ଓ ଅନ୍ୟାନ୍ୟ ବାଜେ ବିଷୟରେ ଯେତେ ଟଙ୍କା ଝଣ ୨ କରି ଗଣୁଅଛନ୍ତି, ତହିଁର ଅଷ୍ଟମାଂସର ଏକଅଂଶ ଯେବେ ପାଠଶାଳାର ସଂସ୍ଥାପନରେ ଦେଶର ଉନ୍ନତିରେ ବ୍ୟୟ କରନ୍ତେ, ତେବେ କି ସୁଖର କଥା ହୁଅନ୍ତା । ଏସବୁ କେବଳ ନାମରେ ରାଜା, କାର୍ଯ୍ୟରେ ରାଜା ନୁହନ୍ତି । ଢେଙ୍କାନାଳ ମହାରାଜା ଏଙ୍କମାନଙ୍କର ଯଥାର୍ଥ ଅନୁକରଣୀୟ ଅଟନ୍ତି ; କିନ୍ତୁ ଏକଥା ନିଶ୍ଚୟ, କମିଶ୍ନର ସାହେବ ବାଡ଼ି ବାଡ଼େଇ ପାଠ ନ ଧରାଇଲେ, ସ୍ୱ ମନରୁ କାହିଁ ଏମାନେ କିଛି କରିବେ ନାହିଁ, ଖଟ ଧରି ପଡ଼ିଥିବେ ।

ଆଉ ଦୁଇ ଏକ ରାଜାଙ୍କର ବ୍ୟବହାର କଥା ଶୁଣିବ ? ରଣପୁର ରାଜା ତ ରାଜାରେ ଗଣ୍ୟ ; ତାଙ୍କର ରାତି ଦିନ ଓ ଦିନ ରାତି । ରାଜକାର୍ଯ୍ୟ ବୁଝିବା ବିଷୟରେ ଭୁନହୋଇ ବସିବା ମାତ୍ର ସାର । ବର୍ଷକେ ମଧ୍ୟରେ ଦୁଇ ତିନଥର ଦାଣ୍ଡକୁ ବାହାରିବାର କଷ୍ଟ । କେବଳ ଗମ୍ଭିରୀ ବଇଁସରି ଘରେ ବସିଅଛନ୍ତି । ଆହୁରି ଓଦେ ଶୁଣ ! ଦେଖିଅଛୁଁ, ବଡ଼ ଲୋକମାନେ ହାତୀ ଘୋଡ଼ା ପାଲିଙ୍କି ଚଢ଼ି ବୁଲନ୍ତି, କିନ୍ତୁ ବଡ଼ମ୍ବାର ରାଜାଙ୍କଠାରେ ଗୋଟିଏ ଆଶ୍ଚର୍ଯ୍ୟ କଥା ଦେଖିଲୁଁ । ତାଙ୍କର ଶଗଡ଼ ଚଢ଼ି,

ସ୍ୱନ୍ଦ୍ରଂ ଓ ଓ କର ବଳଦ ଅଡ଼ାଇବାରେ ବଡ଼ ଆମୋଦ ଓ ବଡ଼ ପ୍ରେମ ; ବୋଧହୁଏ, ଜମିମାନଙ୍କର ସନ୍ତୋଷ ଜନ୍ମାଇବା ସକାଶେ ସବୁ ରାଜା ଏପରି କରୁଅଛନ୍ତି, ଆଉ ଲଣ୍ଡନ ଉପ୍ରୁ ହୁଏତ କେଳାଙ୍କ ସୁଖ ଜନ୍ମାଇବା ସକାଶେ ରାଜା ଗଧ ଉପରେ ଚଢ଼ି ବୁଲି ପାରନ୍ତି ।

ଖଣ୍ଡପଡ଼ାର ରାଜଗାଡ଼ ବଡ଼ ବିଶୃଙ୍ଖଳ ଅବସ୍ଥାରେ ରହିଅଛି । ଏହାର ଓ ଅନ୍ୟାନ୍ୟ ଗଡ଼ଜାତ କଥା ବାରନ୍ତରେ ବିସ୍ତୃତଭାବେ ଲେଖି ପଠାଇବି ।”

ଆମ୍ଭମାନଙ୍କର ଏଠାରେ କମିଶନର ସାହେବଙ୍କ ପ୍ରତି ଏତିକି ମାତ୍ର ନିବେଦନ ଯେ ଗଡ଼ଜାତ ପ୍ରତି କିଛି ବିଶେଷ ଦୃଷ୍ଟିପାତ କରନ୍ତୁ ।

## ( ୧ମ ଭାଗ, ୧ । ୮ । ୧୮୭୩, ସଂଖ୍ୟା ୮ )

୭୨୬ । ଓଡ଼ିଶାସଙ୍ଗେ ସଂଯୁକ୍ତ ହେବା ଗଞ୍ଜାମର ଇଚ୍ଛା ।

ଗତ ସଂଖ୍ୟାରେ ଆମ୍ଭେମାନେ ଗଞ୍ଜାମ ଓ ସମ୍ବଲପୁର ଓଡ଼ିଶା ସଙ୍ଗେ ମିଳନର ଆବଶ୍ୟକତା ଓ ମିଳିତ ହେଲେ ବହୁ ଶୁଭଫଳର ମଧ୍ୟ ଆଶା ସଂକ୍ଷେପ-ରେ ଦେଖାଇଥିଲୁଁ । ଏହି ସଂଖ୍ୟାରେ ପୁଣି ଏ ବିଷୟରେ କିଛି କହିବାକୁ ବାସନା ନଥିଲି ମାତ୍ର ଗଞ୍ଜାମରୁ ସହସା ଏଥି ସମ୍ବନ୍ଧରେ ଖଣ୍ଡିଏ ପତ୍ର ପ୍ରାପ୍ତ ହେବାରୁ ଆଉ ଯତ୍ କିଞ୍ଚିତ୍ କହିବାକୁ ମାନସ ବଳାଉ ଅଛୁ ।

ଗଞ୍ଜାମସ୍ଥ ପତ୍ର ପ୍ରେରକ ଲେଖିଅଛନ୍ତି ଯେ “ସମ୍ପ୍ରତି ଉତ୍କଳୀୟ ମାନଙ୍କ ଦୁରବସ୍ଥା ମୋଚନରେ ଭାରତ ଗବର୍ଣ୍ଣମେଣ୍ଟ ବ୍ୟସ୍ତ । କପରି ଓଡ଼ିଆମାନଙ୍କର ଉନ୍ନତ କରିବେ ଏହି ଉପାୟରେ ସେମାନଙ୍କୁ ଚିନ୍ତିତ ହେବାକୁ ହେଉଅଛି । ତଥାପି ବାଞ୍ଛିତ ଫଳ ପ୍ରାପ୍ତ ହେବାର ସୁକଠିନ । ହେବ ନାହିଁ କାହିଁକି ? ଅଧୁନା ଓଡ଼ିଶା ଦେଶ ତିନି ଖଣ୍ଡରେ ବିଭକ୍ତ, ପ୍ରତ୍ୟେକ ଖଣ୍ଡରେ ବିଦ୍ୟା ବୃଦ୍ଧି କରିବାର ଉଲଟର ଗୋଟିଏ ପ୍ରଧାନ କାରଣ । ତନିମିତ୍ତେ ପ୍ରତ୍ୟେକ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷାକୁ ସ୍ଥାନ ନଦେଲେ ହେବନାହିଁ । ଏପରି ହେଲେ କେତେକାଳକୁ ଯେ ତେତେଦୂର ପଡ଼ିଯାଇବେ ଜଣା ପଡୁନାହିଁ । ଅତଏବ ଆମ୍ଭେମାନେ ବୋଲୁଁ ସମସ୍ତ ଓଡ଼ିଶା ଦେଶ ଏକ ପ୍ରେସିଡେନ୍ସିର ଅନ୍ତର୍ଗତ ହେଲେ ଏକ ପ୍ରକାର ବ୍ୟୟ ହେବ ଏବଂ ତଦ୍ଦ୍ୱାରା ଗବର୍ଣ୍ଣମେଣ୍ଟଙ୍କ ଅଭିପ୍ରାୟ ସିଦ୍ଧ ହେବ । ନଚେତ୍ ତିଗୁଣ-ମାତ୍ର ବ୍ୟୟ, କୌଣସି ଅଂଶରେ ଓଡ଼ିଆମାନେ ଶୀଘ୍ର ଉନ୍ନତ ହୋଇ ପାରିବେ ନାହିଁ । କି ଅଦ୍ଭୁତ ତାହା

କେହି ବୁଝିବେ ନାହିଁ, କେବଳ ଓଡ଼ିଆମାନେ ମନୋଯୋଗୀ ହୁଅନ୍ତୁ ଏତିକ ମାତ୍ର ଶୁଣାଯିବ ।” ଏଥିର ସ୍ଥୂଳ ମର୍ମ ଗ୍ରହଣ କଲେ ଏହା ପ୍ରତୀୟମାନ ହୁଏ ଯେ, ଗଞ୍ଜାମବାସିଙ୍କର, ଗଞ୍ଜାମ ଓଡ଼ିଶା ସଙ୍ଗେ ସଂଯୁକ୍ତ ହେଉ, ଏଥିରେ ଅନିଚ୍ଛା ନାହିଁ ବରଂ ଅତ୍ୟନ୍ତ ଆଗ୍ରହ । ସେମାନଙ୍କର ଏପରି ଇଚ୍ଛା ଅତି ପ୍ରୀତିକର ଓ ପ୍ରଶଂସନୀୟ ଅଟେ ; ମାତ୍ର ଏ ଇଚ୍ଛା ଫଳବତୀ ହେବା ଇଣ୍ଡିଆ ଗବର୍ଣ୍ଣମେଣ୍ଟଙ୍କ ଉଦାର ବିଚାର ଓ ଆମ୍ଭମାନଙ୍କ ଚେଷ୍ଟା ଉପରେ ନିର୍ଭର କରୁଅଛି ।

ବର୍ତ୍ତମାନ ଏଠାରେ ଆଉର ଗୋଟିଏ କଥା ଆମ୍ଭମାନଙ୍କ ମନରେ ଉଦୟ ହେଉଅଛି । ସମ୍ବଲପୁରୀଙ୍କର ଏ ମିଳନ ବିଷୟରେ କି ଇଚ୍ଛା ? ପୁଣି ସେମାନେ ଏ ପ୍ରସ୍ତାବରେ ଅନିଚ୍ଛୁକ ଅବା କାହିଁକି ହେବେ ତହିଁର କୌଣସି କାରଣ ତ ଆମ୍ଭମାନଙ୍କୁ ଦିଶୁନାହିଁ ; ବରଂ ଗଞ୍ଜାମବାସିଙ୍କ ଅପେକ୍ଷା ସମ୍ବଲପୁରଙ୍କ ସଙ୍ଗେ ଆମ୍ଭମାନଙ୍କର ଦୃଢ଼ତର ସମ୍ବନ୍ଧ ରହିଅଛି, ଏକଥା ବୋଧହୁଏ ସେମାନେ ଅସ୍ୱୀକାର କରିବାକୁ ସାହସୀ ହେବେ ନାହିଁ । ଆହୁରି ଏଥିପୂର୍ବେ ସୁଦ୍ଧା ସମ୍ବଲପୁର ଓଡ଼ିଶାର ସଂଯୁକ୍ତ ଥିଲା, ୧୮୬୨ ସାଲରୁ କେବଳ ଏହା ଓଡ଼ିଶାରୁ ବିଚ୍ଛିନ୍ନ ହୋଇଅଛି । ପୁଣି ପରସ୍ପରର ମିଳନରେ ପରସ୍ପରର ଶୁଭ ଅଧିକ ପରିମାଣରେ ସଂଘଟିତ ହେବ କି ନାହିଁ, ସେମାନେ ନିକେ ୨ ବିଚାର କରି ଦେଖିଲେ ଏ ବିଷୟରେ ସହଜରେ ଧରି ପଡ଼ିବ ଓ ‘ନୀତି କଥା’ର ବୃଦ୍ଧର ଛଅ ପୁତ୍ରଙ୍କ କାଠିଗୋଛ ଭାଙ୍ଗିବା ଗଳ୍ପ ପଢ଼ିଲେ ଏଥିରେ ଆଉ ସନ୍ଦେହ ରହିବ ନାହିଁ ।

ଏଥି ସମ୍ବନ୍ଧରେ ଅନ୍ୟାନ୍ୟ ବିଷୟ ସମ୍ବନ୍ଧାନୁସାରେ ଲେଖିବାକୁ ଯତ୍ନବାନ ହେବୁଁ, କିନ୍ତୁ ବର୍ତ୍ତମାନ ଗଞ୍ଜାମ ପତ୍ରପ୍ରେରକଙ୍କ ସଙ୍ଗେ ଐକ୍ୟ ହୋଇ ଉପସଂହାରରେ ଏତିକ କହୁଅଛୁଁ ଯେ “ଆମ୍ଭମାନଙ୍କ ଗବର୍ଣ୍ଣମେଣ୍ଟ ଏ ନିୟମ ଏକତ୍ର କରିବାକୁ କାହିଁକି ମନୋଯୋଗ କରୁନାହାନ୍ତି ? ଏପରି କଲେ ପ୍ରଜାବର୍ଗଙ୍କର ପ୍ରତ୍ୟେକ ଭକ୍ତିଭାଜନ ହେବେ ସନ୍ଦେହ ନାହିଁ । ଦେଶ ହିତୈଷିମାନେ ଗବର୍ଣ୍ଣମେଣ୍ଟଙ୍କ ପୂର୍ବକୃତ ପ୍ରସ୍ତାବକୁ ଭରସା କରିଅଛନ୍ତି, କିନ୍ତୁ ଆବେଦନ କାହିଁକି କରୁନାହାନ୍ତି ?” ପୁନଶ୍ଚ ଆମ୍ଭମାନଙ୍କର ନିବେଦନ ଏହି ଯେ ଏ ଦେଶୀୟ ଅନ୍ୟାନ୍ୟ ସମ୍ବାଦପତ୍ରର ସମ୍ପାଦକ ଓ କେତେକ ଦେଶ ହିତସାଧିକା ସଭାର ସଭ୍ୟମାନେ ଏ ବିଷୟରେ ସ୍ୱମତ ପ୍ରକାଶ କରି ଏ ମହତ୍ କାର୍ଯ୍ୟ ସାଧନରେ ଯଥାବିଧି ଉପାୟ ଅବଲମ୍ବନ କରନ୍ତୁ । ସୁଯୋଗ୍ୟ ଦୀପିକା ସମ୍ପାଦକ ଏ ବିଷୟ ଥରେକର ଅଧିକ ଉତ୍ଥାପନ କରିଥିଲେ ଓ ତାଙ୍କୁ ମଧ୍ୟ ଏଠାରେ ବିଶେଷ ପ୍ରାର୍ଥନା ଯେ ସେ ଏଥିରେ ବିଶେଷ ଉଦ୍‌ଯୋଗୀ ହେଉନ୍ତୁ ।

## ( ୧ମ ଭାଗ, ୧୭ । ୮ । ୧୮୭୩, ସଂଖ୍ୟା ୯ )

୬୨୬ । ଜଗତସିଂହପୁର

କଟକଜିଲ୍ଲା ଅନ୍ତର୍ଗତ ଜଗତ୍ ସିଂହପୁରର ସବଡ଼ିଭିଜନ ଉଠାଇ ଦେବା ନିମନ୍ତେ ଲେଫ୍‌ଟେନାଣ୍ଟ ଗବର୍ଣ୍ଣର ଆଜ୍ଞା ଦେଇଅଛନ୍ତି କିନ୍ତୁ ଶୁଣିଲୁଁ କମିଶନର ସାହେବ ଏଥିର ପ୍ରତିବାଦ କରି ଏହି ଉପବିଭାଗଟିକି ରଖିବା ନିମନ୍ତେ ବେଙ୍ଗଲ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଅଛନ୍ତି । ଆମ୍ଭେମାନେ ମଧ୍ୟ କମିଶନରଙ୍କର ସୁବୁଦ୍ଧି ବିଚାର ଓ ମତରେ ଐକ୍ୟ ହୋଇ କହୁଅଛୁଁ ଯେ ଏହାକୁ ଉଠାଇଦେଲେ ଅନେକ ଅନିଷ୍ଟ ଜାତର ସମ୍ଭାବନା । ଏତେକ ସେ ଅଞ୍ଚଳର ଲୋକେ ଅନେକ ଦୁଃଖ ଓ ଭୁତପୂର୍ବ ବହୁଦର୍ଶୀ ମାକେଞ୍ଜି ଓ ଗ୍ରାଣ୍ଟ ନାମକ ଲେଫ୍‌ଟେନାଣ୍ଟ ସାହେବମାନଙ୍କ ରାଜନୀତିକି ଅନୁସରଣ କଲେ, ଏ ଅବସ୍ଥାରେ ଉକ୍ତ ଉପବିଭାଗକୁ ଉଠାଇ ନଦେବା ସର୍ବୋତୋଭାବେ କର୍ତ୍ତବ୍ୟ । ସୁଶିକ୍ଷିତ ପ୍ରଜାଙ୍କ କଷ୍ଟ ନିବାରଣ ସଦ୍‌ବିଚାରକ ଗବର୍ଣ୍ଣମେଣ୍ଟର ଏକ ମହତ୍ ଉଦ୍ଦେଶ୍ୟ ହୁଏ ତେବେ ଏ ଉପବିଭାଗକୁ ଉଠାଇଦେବା କୌଣସି ମତେ ଯୁକ୍ତିସିଦ୍ଧ ବୋଧହେଉନାହିଁ । ଆହୁରି ଉକ୍ତ ଉପବିଭାଗ ଯୋଗୁଁ, ତତ୍ପାର୍ଶ୍ୱବର୍ତ୍ତୀ ସ୍ଥାନମାନଙ୍କରେ ବିଦ୍ୟାଶିକ୍ଷା ଓ ପାଶ୍ଚାତ୍ୟ ସଭ୍ୟତାର ଅଙ୍କୁର ଉଦ୍‌ଗମ ହେଉଅଛି, କିନ୍ତୁ ଉଠିଗଲେ ସେ ଅଞ୍ଚଳୀୟ ପ୍ରଜାମାନେ ଆଜ ଯାହା ଅଛନ୍ତି କାଲ ସେହିପରି ରହିବେ, ଉନ୍ନତି ଶୀଘ୍ର ଲକ୍ଷିତ ହେବନାହିଁ ଆମ୍ଭେମାନେ ଅଧିକ କି ଲେଖିବା । ବହୁଦର୍ଶୀ ମହାଶୟ କାମ୍ବେଲ ଓଡ଼ିଶା କମିଶନରଙ୍କ ଏହି ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କଲେ ଯଥେଷ୍ଟ ହେବ, ଲେଫ୍‌ଟେନାଣ୍ଟ ସାହେବଙ୍କୁ ଏତିକି ପ୍ରାର୍ଥନା ।

## ( ୧ମ ଭାଗ, ୧୪ । ୧୦ । ୧୮୭୩, ସଂଖ୍ୟା ୧୩ )

୬୨୭ । ଯାଜପୁର ।

ଏହି ଶିରୋନାମାଙ୍କିତ ସ୍ଥାନଟି ଓଡ଼ିଶାର ବହୁକାଳରୁ ବିରାଜମାନ ହୋଇଅଛି । ଏହା ଏକ ସମୟରେ ଓଡ଼ିଶା ରାଜାମାନଙ୍କର ରାଜଧାନୀ ଥିଲା । ଅଦ୍ୟାବଧି ଏହି ନଗରର ପ୍ରାୟ ଦୁଇକ୍ରୋଶ ପଶ୍ଚିମରେ କେଶରୀ ବଂଶୀୟ ରାଜାମାନଙ୍କ ରାଜ-ପ୍ରାସାଦର ଭଗ୍ନାବଶେଷ ଦୃଷ୍ଟିଗୋଚର ହୁଏ । ଶିଳ୍ପ ନୈପୁଣ୍ୟର କୀର୍ତ୍ତି ସ୍ୱରୂପେ ଅନେକ ମନୋହର ଆକୃତିର ଏହା ଉପରେ ଦେଖି ପାଉଅଛୁ । ପୂର୍ବେ କିପରି ସୁନ୍ଦର ପ୍ରସ୍ତର ମୂର୍ତ୍ତିମାନ ଏ ଦେଶରେ ଖୋଦିତ ହେଉଥିଲା ସେଥିର ପ୍ରମାଣ ସ୍ୱରୂପେ ଏଠା ଅଲଣ ସ୍ତମ୍ଭ, ଗରୁଡ ଓ ଅନ୍ୟାନ୍ୟ କେତେକ କଳାପାହାଡ଼ର ଦୁର୍ଦ୍ଦାନ୍ତ ହସ୍ତରୁ ଅର୍ଦ୍ଧଭଗ୍ନ

ମୂର୍ତ୍ତି ମଧ୍ୟ ଅଦ୍ୟାପି ଦୃଷ୍ଟିଗମ୍ୟ ହୁଅଇ। ବୌଦ୍ଧମାନଙ୍କର ଓଡ଼ିଶାରେ ପ୍ରବଳାଧିପତ୍ୟର ଚିହ୍ନ ସ୍ୱରୂପ ପ୍ରସ୍ତର ଖୋଦିତ ସନ୍ତୁମାଧବ ନାମକ ଏକ ପ୍ରକାଣ୍ଡ ବୌଦ୍ଧମୂର୍ତ୍ତି ଅଦ୍ୟା-ପାଏ ଉକ୍ତ ନଗରସ୍ଥ ଜଣେ ଦୁଃଖୀ ପ୍ରଜାର ବାଡ଼ିଭିତରେ ଅପରିଷ୍କାର ସ୍ଥାନରେ ପଡ଼ି ରହିଅଛି। ଏହି ସ୍ଥାନରେ ଉତ୍ତର ପଶ୍ଚିମାଞ୍ଚଳରୁ ଦଶସହସ୍ର ବ୍ରାହ୍ମଣମାନେ ଆଣିତ ହୋଇ ମହାଯଜ୍ଞ ଆରମ୍ଭ ହୋଇଥିଲା ଏପରି ଅନୁମିତ ହୁଏ। ଏଠା ଲୋକେ ଯାହାକୁ ବ୍ରହ୍ମାକୁଣ୍ଡ ବୋଲି ନିର୍ଦ୍ଦେଶ କରନ୍ତି, ସେହି ମହାକୁଣ୍ଡରେ ଉକ୍ତ ମହାଯଜ୍ଞର କାର୍ଯ୍ୟ ନିର୍ବାହିତ ହୋଇଥିଲା। ଏହା ଓଡ଼ିଶାର ଅନ୍ୟତର ପ୍ରଧାନ ତୀର୍ଥସ୍ଥଳ।

ଏଥର ଆଧୁନିକ ଅବସ୍ଥାସମ୍ବନ୍ଧରେ ଦୁଇ ଚାରିକଥା କହିଲେ, ବୋଧହୁଏ ପାଠକମାନଙ୍କର ବିରକ୍ତି ଜନ୍ମି ନପାରେ। ପ୍ରଥମେ ଯାଜପୁରର ଦକ୍ଷିଣ ସୀମା କିମ୍ବାନାଳ ନାମକ ଏକ କ୍ଷୁଦ୍ରନଦୀ ପାରହୋଇ ଦେଖିଲେ ବୋଧହୁଏ ଯେ ପ୍ରାୟ ଏ ନଗରରେ ଗୃହାଦି କିଛିହିଁ ନାହିଁ। କେବଳ ଦୀର୍ଘ ୨ ତରୁରାଜି ଓ ନାନା ପ୍ରକାର ଗୁଳ୍ମଲତା ନୟନର ଶୋଭା ବର୍ଦ୍ଧନ କରେ। କ୍ରମଶଃ ପ୍ରବେଶ ହେଲେ ଗୋଟି ୨ ହୋଇ ଗୃହ ଦୋକାନ ନୟନଗୋଚର ହୁଏ। ଏସ୍ଥାନର ଜଳବାୟୁ ଅତି ପ୍ରୀତିକର ଓ ସ୍ୱାସ୍ଥ୍ୟ ଜନକ; ଓଡ଼ିଶା ପକ୍ଷରେ ଏହା ଦାର୍ଜିଲିଂ ଅଟେ। ଏଠି ପ୍ରାୟ ୧୦।୧୨ ହଜାର ଲୋକ ବାସ କରନ୍ତି। ସଦର ଅଂଶର ଗୋଟିକେତେ ବସ୍ତି ଛଡ଼ା ଅନ୍ୟାନ୍ୟ ବସ୍ତିମାନ ପ୍ରାୟ ଏକ ୨ ବୃକ୍ଷଲତାଦିର ଦୁର୍ଗ ମଧ୍ୟରେ ଅବସ୍ଥିତ ହୋଇଅଛି। ଏସ୍ଥାନ କିଛି ପ୍ରସ୍ତରମୟ ଥିବାରୁ ଅଧିକ ସଂଖ୍ୟକ ସର୍ପ ଏଠାରେ ଦେଖାଯାନ୍ତି। ଏଠାରେ ବ୍ରାହ୍ମଣଙ୍କ ବସ୍ତି ପ୍ରାୟ ଛଅଶ ସାତଶ ଘର ହେବ। ଏମାନଙ୍କ ମଧ୍ୟରୁ ଅଧିକାଂଶ ଘାଟିଆ ବ୍ରାହ୍ମଣ ନାମରେ ଖ୍ୟାତ। ଏମାନେ ସୁରାପାନ କରନ୍ତି ବୋଲି ଏକ ପ୍ରବାଦ ଅଛି। ପୁରୀ ପଣ୍ଡାଙ୍କ ପରି ବୈତରଣୀ ଯାତ୍ରୀଙ୍କ ଉପରେ ଏମାନଙ୍କର ଜୀବନୋପାୟ ନିର୍ଭର କରେ। ସ୍ୱୀୟ ୨ ପିଲାମାନଙ୍କୁ ସ୍କୁଲ ପଢ଼ାଇବାକୁ ଏମାନେ ଅନିଚ୍ଛୁକ। ଏମାନଙ୍କ ଘର ମାନଙ୍କରେ ଯାତ୍ରୀ ଖବରଣୀ ନାମକ ଯେଉଁ ତାଳପତ୍ର ପୋଥୀମାନ ଅଛି ସେ ସବୁର ଅନେକ ଐତିହାସିକ ସତ୍ୟ ବାହାରି ପାରେ। କିନ୍ତୁ ଉକ୍ତ ପଣ୍ଡାମାନେ ଏପରି କୁସଂସ୍କାରା-ପନ୍ନ ଯେ କଦାପି କାହାରିକୁ ସେ ସବୁ ଦେଖିବାକୁ ଦିଅନ୍ତି ନାହିଁ।

ଏସ୍ଥାନ ଚାନ୍ଦବାଲି ନିକଟ ଥିବା ଓ ବୈତରଣୀନଦୀ ଯୋଗୁଁ ବାଣିଜ୍ୟ ପକ୍ଷରେ ବଡ଼ ଉପଯୋଗୀ। ଭାରତବ୍ୟାପୀ ମାଡ଼ୁଆରିମାନେ ଏଠାରେ ଯାଇ ବିଲାତି ଲୁଗା ବେପାର ଓ ବଙ୍ଗାଳିମାନେ ଚନ୍ଦ୍ରକୋଣୀ ଲୁଗା ଓ ଅନ୍ୟାନ୍ୟ କାରବାର ଆରମ୍ଭ କରିଅଛନ୍ତି। ଆଉସବୁ ସହର ସ୍ଥାନପରି ଅନ୍ୟାନ୍ୟ ବ୍ୟବହାରିକ ଦ୍ରବ୍ୟମାନ ସୁପ୍ରାପ୍ୟ, କିନ୍ତୁ ଖାଦ୍ୟ ସାମଗ୍ରୀ ଭଲ ମିଳଇନାହିଁ ଓ ଜାଳିବା କାଠ ଅତି

ମହାର୍ଘ; ଏ ଦେଶରେ ସ୍ତ୍ରୀ ପୁରୁଷଙ୍କର ସର୍ବସ୍ୱ ଧନ ଗୁଣ୍ଡି ଏଠାରେ ଅତି ଉତ୍ତମ ପ୍ରସ୍ତୁତ ହୁଏ । ଏଥିଦ୍ୱାରା ଜଣେ ବଧବା ଏ ନଗରରେ ଦୋମହଲା କୋଠା ବାନ୍ଧି ବଡ଼ମ୍ବୁବତୀ ହୋଇ ଉଠିଅଛି । ଏଠାରେ ପଞ୍ଚାନ୍ନଣ ଠାକୁର ରୋଷାଇରେ ପଡ଼ଇ ।

ଇଂରାଜ ଆଇନ ବ୍ୟବସ୍ଥାପକଙ୍କ କୃପାରୁ ଏଠି ମଧ୍ୟ ଚୌକିଦାରୀ ଟେକ୍ସ ଆଦାୟ ହୁଅଇ । ନବୀନ ବାବୁ ଡେପୁଟି ମାଜିଷ୍ଟ୍ରେଟ ଆର୍ମଷ୍ଟ୍ରଂ ସାହେବ ଆସିଷ୍ଟାଣ୍ଟ ମାଜିଷ୍ଟ୍ରେଟ ଏ ଦୁହେଁ ଯେତେବେଳେ ଏ ଅଞ୍ଚଳରେ ଭାରପ୍ରାପ୍ତ ହୋଇଥିଲେ, ସେତେବେଳେ ସେମାନେ ସହରରେ କଣ୍ଟ ସଡ଼କମାନ ପ୍ରସ୍ତୁତ କରି ଓ ( Sign-Board ) ଅର୍ଥାତ୍ ବାଟ ଚିହ୍ନ ପଟ୍ଟା ବସାଇ ଏହାକୁ ସୁସଜ୍ଜିତ କରିଥିଲେ । ବର୍ତ୍ତମାନ ସେଥି ଉପରେ ଆଉ କିଛି ଉନ୍ନତି ହେବାକୁ ନାହିଁ । କିନ୍ତୁ ଆକ୍ଷେପର ବିଷୟ ଏହି ଯେ ଏବେ ବାଟଚିହ୍ନ କାଠଫଳ ସହରରେ ସୁଦ୍ଧା ନାହିଁ !! ଏଠି ବର୍ତ୍ତମାନ ମୁନସଫି କଚେରୀ, ଡାକ୍ତରଖାନା, ଡାକଘର, ସ୍କୁଲ ପ୍ରଭୃତି ସଂସ୍ଥାପିତ ହୋଇଅଛି କିନ୍ତୁ ସ୍କୁଲର ଅବସ୍ଥା ଭଲ ନୁହେ । ସେଠା ବଡ଼ଲୋକମାନଙ୍କ ଔଦାସ୍ୟ ଏଥିର ମୂଳକାରଣ ଅର୍ଥାତ୍ ସେମାନେ ଗୃହ ଭିତରେ ବସନ୍ତି ନାହିଁ କି ସ୍କୁଲ ସମ୍ବନ୍ଧରେ କୌଣସି ଭ୍ରୂକ୍ଷେପ କରନ୍ତି ନାହିଁ । ବାସ୍ତବିକ ବଡ଼ଲୋକଙ୍କ ଉଦାସୀନତା ଆମ୍ଭମାନଙ୍କ ଉନ୍ନତିର ଭରି ପ୍ରତିବନ୍ଧକ ହୋଇଅଛି, କେବେ ଏମାନେ ଜାଗ୍ରତ ହେବେ ? ଜମିଦାରଙ୍କ ଅତ୍ୟାଚାର ମଧ୍ୟ ଏଠାରେ କିଛି ୨ ଶୁଣାଯାଏ ।

**( ୧ମ ଭାଗ, ୩ । ୧୨ । ୧୮୭୬, ସଂଖ୍ୟା ୧୭ )**

୬୯ । ଗତ ପତ୍ରରେ ଗୁଡ଼ଲର ମୂଲ୍ୟ କଟକରେ ବୃଦ୍ଧି ହେବାର ଲେଖିଥିଲୁଁ । ଶ୍ରୀଯୁକ୍ତ କମ୍ସ ସାହେବଙ୍କ ଯୋଗୁଁ ଏଥର ତାହା କିଛି ଊଣା ପଡ଼ିଅଛି । ସାହେବ ମହୋଦୟ କର୍ଣ୍ଣେଲ ଓ ମୋହରରଙ୍କ ଦ୍ୱାରା କଟକକୁ ଆଣୁଥିବା ଗୁଡ଼ଲବାଲଙ୍କୁ ମାଣ୍ଡୋୟାଡ଼ କି ବଦେଶୀ ମହାଜନକୁ ଦେବାକୁ ବାରଣ କଲରୁଁ ଗୁଡ଼ଲ ଏଠାକୁ ଆସୁଅଛି ଓ ଦର୍ଣ୍ଡିଦାରମାନେ ସ୍ୱୀୟ ଦୁରଭିସନ୍ଧି ଆଉ କୌଣସିମତେ ସିଦ୍ଧ କରିପାରୁ ନାହାନ୍ତି ।

---

## ( ୨ୟ ଭାଗ, ୩ । ୭ । ୧୮୭୪, ସଂଖ୍ୟା ୪ )

୬୦୯ । ଆମ୍ଭେମାନେ " ଧର୍ମବୋଧିନୀ " ନାମକ ପତ୍ରିକା ଖଣ୍ଡିକ ପଢ଼ି ଅତ୍ୟନ୍ତ ପ୍ରୀତିଲାଭ କରିଅଛୁଁ । ଏହାର ଲିଖନ ରୀତି ଅତି ସୁନ୍ଦର ଓ ମଧୁର ହୋଇ-ଅଛି । ବାଲେଶ୍ୱର ଉତ୍କଳ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ଏହା ମୁଦ୍ରିତ ହୋଇଅଛି । ଏହାର ଅଗ୍ରୀମ ବାର୍ଷିକ ମୂଲ୍ୟ ଠ୦୵ ଅଣାମାତ୍ର, କାଗଜଖଣ୍ଡି ଯେପରି ଚିରଜୀବୀ ହୁଅଇ ଏହି ଆମ୍ଭମାନଙ୍କର ଏକାନ୍ତ ବାସନା ।

## ( ୨ୟ ଭାଗ, ୧୫ । ୭ । ୧୮୭୪, ସଂଖ୍ୟା ୭ )

୬୧୦ । ଶୁଣାଯାଏ ଶ୍ରୀଯୁକ୍ତ ବମ୍‌ସ ସାହେବ ବପୀନ ବହାରୀ ବାବୁ ସରକାରୀ ଓକିଲଙ୍କୁ ନାପସନ୍ଦକରି ତାଙ୍କ କର୍ମରେ ବାବୁ ହରିବଲ୍ଲଭ ବୋଷଙ୍କୁ ମନୋ-ନୀତ କରିଅଛନ୍ତି ।

## ( ୨ୟ ଭାଗ, ୫ । ୮ । ୧୮୭୪, ସଂଖ୍ୟା ୮ )

୬୧୧ । ବାବୁ ମଧୁସୂଦନ ରାଉତରାୟ ଖୋର୍ଦ୍ଧାର ଗରଲ ସବରେଜିଷ୍ଟ୍ରର ନିଯୁକ୍ତ ହୋଇଅଛନ୍ତି ।

୬୧୨ । ଆମ୍ଭେମାନେ ଦେଖି ଆନନ୍ଦିତ ହେଲୁଁ ଯେ ବାବୁ ସୁଦାମଚନ୍ଦ୍ର ପଟ୍ଟନାୟକ ଆସିଷ୍ଟାଣ୍ଟ ଇଞ୍ଜିନିୟର, ଓଡ଼ିଶା ଠ୫୦୯ଙ୍କା ବଙ୍ଗ ମଧ୍ୟ ଦୁର୍ଭିକ୍ଷ ନିବାରଣୀ ସଭାକୁ ପ୍ରଦାନ କରିଅଛନ୍ତି ।

## ( ୨ୟ ଭାଗ, ୧୯ । ୮ । ୧୮୭୪, ସଂଖ୍ୟା ୯ )

୬୧୩ ।

### କେହି ଶୁଣିବେ କି ?

ଆଜିକାଲି ଯେଉଁମାନଙ୍କୁ ଓଡ଼ିଶା ଉନ୍ନତି କି ଓଡ଼ିଶାର ବିଦ୍ୟାଶିକ୍ଷା କି ଓଡ଼ିଆ ଭାଷାର ଶ୍ରୀବୃଦ୍ଧି ସାଧନ ପ୍ରଭୃତି କେତେକ ବିଷୟମାନଙ୍କର ଆଲୋଚନା ବା କଥାବାର୍ତ୍ତା କରିବାର ମଧ୍ୟ ୨ ଦେଖାଯାଏ ସେମାନେ ଆଉ କଥା ମଧ୍ୟରେ ଏହି କଥାଟିକି ମୂଳକରି କହନ୍ତି, ଯେ ଓଡ଼ିଶା, ସମ୍ବଲପୁର ଗଞ୍ଜାମ ଏ ତିନି ଦେଶ ଏକତ୍ରୀଭୂତ ନହେବାଯାଏ ଉତ୍କଳ ଦେଶ ପ୍ରକୃତ ଉନ୍ନତି ସୋପାନକୁ ଉତ୍ଥିତ ହୋଇ ପାରିବ ନାହିଁ । ମଧ୍ୟ ସେମାନଙ୍କର ଏ କଥାଟି ତୁଚ୍ଛ କି ସାମାନ୍ୟ କଥା ନୁହେଁ । ଏଥିର ଓଜନ ଓ ଗୁରୁତ୍ୱ ଅଛି । ଯେତେବେଳେ ତିନି ଦେଶୀୟ ଲୋକ ଏକ ଉତ୍କଳ ଅକ୍ଷରରେ ଯାବତୀୟ କଥାର ଲିଖନ ପଠନ କରୁଅଛନ୍ତି ଓ ଯେଉଁମାନେ କି ଏକ ପ୍ରକାର ବ୍ୟବହାର ଦ୍ୱାରା ସମାଜରେ ଚଳବଚଳ ହେଉଅଛନ୍ତି ସେମାନଙ୍କୁ ଯେ ତିନି ସ୍ଥାନରେ ତିନି ଗବର୍ଣ୍ଣମେଣ୍ଟର ତିନି ପ୍ରକାର ରହିବା କେତେଦୂର ଅବିଧେୟ ତାହା ଜନସାଧାରଣ ବିବେଚନା କରନ୍ତୁ

× × ×

× × × ×

ଥରକୁ ଥର ସମ୍ବଲପୁର, ଗଞ୍ଜାମ ଓଡ଼ିଶା ସଙ୍ଗେ ମିଳିବାର ପ୍ରସ୍ତାବ ଉଠୁଅଛି ମାତ୍ର ସେ-କଥା ନା ଦେଶୀୟ ଲୋକ ଶୁଣୁଅଛନ୍ତି ନା ଗବର୍ଣ୍ଣମେଣ୍ଟ ଶୁଣୁଅଛନ୍ତି ? ଏଥର କେହି ଶୁଣିବେ କି ?

୬୧୪ ।

ଦେଓଘାଟଲାରରେ ଗୋଟିଏ ଟକସାଲ ବସିବାର କଥା ହୋଇ ଅଛି । ଏଥିପ୍ରକାରେ ଶ୍ରୀଯୁକ୍ତ ଟମସ୍ ସାହେବ ମୂଳଧନ ସଂଗ୍ରହ ବିଷୟରେ ଉଦ୍‌ଯୋଗୀ ଅଛନ୍ତି ।

## ( ୨ୟ ଭାଗ, ୧୬ । ୯ । ୧୮୭୪, ସଂଖ୍ୟା ୧୧ )

୬୧୫ ।

### ଗଡ଼ଜାତ ରେଲୱେ

ନାଗପୁର ଚିଫକମିଶନର ମରିସ ସାହେବ ସମ୍ବଲପୁର ପର୍ଯ୍ୟନ୍ତ ରେଲୱେ ବିସ୍ତାର କରିବା ସକାଶେ ଇଣ୍ଡିଆ ଗବର୍ଣ୍ଣମେଣ୍ଟଙ୍କୁ ପ୍ରସ୍ତାବ କରି ଅଛନ୍ତି ।

× × ×

ଦୀପିକା ଉକ୍ତ ପ୍ରସ୍ତାବର ବିଷୟ ପାଠକମାନଙ୍କୁ ଜଣାଇବା ଛଲେ ସମ୍ବଲପୁର ରେଲଦ୍ୱାରା ନାଗପୁର ସୁତରାଂ ବମ୍ବେଇ ସଙ୍ଗେ ଯୁକ୍ତହେଲେ, ଓଡ଼ିଶା ଗଡ଼ଜାତ ମଧ୍ୟଦେଇ ସମ୍ବଲପୁରଠାରୁ କଟକ ପର୍ଯ୍ୟନ୍ତ ରେଲୱେ ପ୍ରସ୍ତୁତ କରିବାର ପ୍ରସ୍ତାବ କରି ଏଠା ରଜା ଜମିଦାର ଓ ଅପର ସାଧାରଣଙ୍କୁ ଶୀଘ୍ର ଗବର୍ଣ୍ଣମେଣ୍ଟଙ୍କୁ ଏ ବିଷୟ ପ୍ରାର୍ଥନାରେ ଆବେଦନ ପତ୍ର ପଠାଇବାକୁ ଅନୁରୋଧ କରିଅଛନ୍ତି । ବସ୍ତୁତଃ ଏପ୍ରସ୍ତାବ ଅତି ଉତ୍ତମ ଅଟଇ ଓ ସମସ୍ତଙ୍କର ଏଥିରେ ସହାନୁଭୂତି ପ୍ରକାଶ କରିବାର ଆବଶ୍ୟକ । ନାଗପୁରରୁ ସମ୍ବଲପୁର ଓ ଗଡ଼ଜାତ ଦେଇ କଟକ ପର୍ଯ୍ୟନ୍ତ ରେଲ ଖୋଲିଲେ ଯେ ଏହା ଗବର୍ଣ୍ଣମେଣ୍ଟଙ୍କ ସମ୍ବନ୍ଧରେ ଲାଭଜନକ ଓ ଦେଶୀୟ ଲୋକଙ୍କ ପ୍ରତି ବାଣିଜ୍ୟ ବ୍ୟବସାୟ, ସଭ୍ୟତା ବୃଦ୍ଧି, ଯାତାୟାତ ଇତ୍ୟାଦି ସବୁ ବିଷୟରେ ହିତକର ହେବ ଏଥିରେ କାହାର ଦ୍ୱିମତ ହୋଇ ନପାରେ ବିଶେଷତଃ ଯେପରି ଦୀପିକା ଦର୍ଶାଇ ଅଛନ୍ତି ଗଡ଼ଜାତ ଦେଇ ରେଲ ପ୍ରସ୍ତୁତ କରିବାକୁ ଅନ୍ୟାନ୍ୟ ସ୍ଥାନଠାରୁ ଊଣା ବ୍ୟୟ ପଡ଼ିବାର ସମ୍ଭବ ଯେହେତୁ ପଥର, ଚୂନ, କାଠ, ପଥର କୋଇଲା ଇତ୍ୟାଦି ଗଡ଼ଜାତମାନଙ୍କରେ ସୁଲଭ ଅଟଇ ମଧ୍ୟ ଭୂମି ବିନା ମୂଲ୍ୟରେ ରଜାଙ୍କଠାରୁ ମିଳିପାରେ ।

× × ×

( ୨ୟ ଭାଗ, ୧୭।୯।୧୮୭୪, ସଂଖ୍ୟା ୧୧ )

୬୧୭ । ଇଂରାଜଙ୍କ ଦ୍ୱାରା ଓଡ଼ିଶା ଶାସନ ।

ଭାରତବର୍ଷର ଯେଉଁଠାରେ ଇଂରାଜ୍ୟ ସ୍ଥାପିତ ହୋଇଅଛି ସେହିସ୍ଥାନ କ୍ରମଶଃ ବିଶାଳ ଉନ୍ନତି ଲାଭଅଛି । କି ରାଜନୈତିକ, କି ସାମାଜିକ ସବୁ-ବିଷୟର ଉନ୍ନତି ଇଂରାଜାଧିକୃତ ସ୍ଥାନମାନଙ୍କରେ ପ୍ରତ୍ୟକ୍ଷ ଭୂତ ହେଉଅଛି ।

ଓଡ଼ିଶା ମଧ୍ୟ ପ୍ରାୟ ୭୧ବର୍ଷହେଲା ଇଂରାଜଙ୍କ ହସ୍ତଗତ ହେଲାଣି, ବର୍ତ୍ତମାନ ପ୍ରଥମ ଦେଖାଯାଉ ଏମାନଙ୍କ ଶାସନର ଫଳ କି ପ୍ରକାର ଫଳଅଛି ଓ ଏଠା ଶାସନକର୍ତ୍ତା କିଏ କତଦୂର ସେମାନଙ୍କ କର୍ତ୍ତବ୍ୟ ସାଧନ କରି ଲବ୍ଧପ୍ରତିଷ୍ଠ ହୋଇ-ଅଛନ୍ତି ।

ଇଂରାଜ ଶାସନ ପ୍ରଚଳିତ ହେଲାଦିନୁଁ ଓଡ଼ିଶାର ଲକ୍ଷ୍ମୀ ପୁଣି ଆକାରାନ୍ତରରେ ଶନୈଃ ୨ ଉଦିତ ହେବାକୁ ଆରମ୍ଭ ହୋଇଅଛି । ପ୍ରଜାଙ୍କ ପୁରୀ ଜଗନ୍ନାଥ ରଥଚକ୍ର ତଳେ ପ୍ରାଣବିସର୍ଜନ, ମେରିୟା ନରବଳୀ, ସହମରଣ ପ୍ରଭୃତି ଦେଶୀୟ

କେତେଗୁଡ଼ିଏ କୁପ୍ରଥା ଏକାବେଳକେ ଦୂରୀକୃତ ହୋଇଅଛି; ଆଧୁନିକ ପାଶ୍ଚାତ୍ୟ ସଭ୍ୟତା ଓ ପାଶ୍ଚାତ୍ୟ ବିଦ୍ୟାଚର୍ଚ୍ଚା ପ୍ରତି ଲୋକଙ୍କର ଆଗ୍ରହ ଦିନକୁ ଦିନ ବଢୁଅଛି; ନାନା-ରୂପ ଅସ୍ୱାସ୍ଥ୍ୟକର ଓ ଉନ୍ନତି ପ୍ରତିଷେଧକ କୁସଂସ୍କାରମାନଙ୍କର ତିରୋଭାବ କ୍ରମେ ୨ ଦେଖା ଯାଉଅଛି; ମାତ୍ର ତଥାପି ସାଧାରଣତଃ ଲୋକଙ୍କୁ ଏପ୍ରକାର କହିବାର ଶୁଣାଯାଏ ଯେ ଭାରତର ଅନ୍ୟାନ୍ୟ ସ୍ଥାନସ୍ଥ ଲୋକଙ୍କ ପ୍ରାୟ ଓଡ଼ିଶାବାସିଏ ତାଦୃକ୍ ଶାସନର ସୁଫଳ ଭୋଗକରି ପାରିନାହାନ୍ତି । ଏହି କଥା ସମ୍ପୂର୍ଣ୍ଣ ଅସତ୍ୟ ନୁହେ । ଅନ୍ୟାନ୍ୟ ସ୍ଥାନସ୍ଥ ଲୋକଙ୍କୁ ଇଂରାଜମାନେ ୫୦ବର୍ଷ ଶାସନ କରି ଯେଉଁ ସବୁ ଉନ୍ନତିକର ବିଷୟମାନ ପ୍ରଦାନ କରିଅଛନ୍ତି ତଦଧିକକାଳ ଆମ୍ଭେମାନେ ସେମାନଙ୍କ ଆଜ୍ଞାବହ ପ୍ରଜା ରହି ମଧ୍ୟ ପାଇ ପାରିନାହୁଁ ।

ଆଜି ଆମ୍ଭେମାନେ ଇଂରାଜଙ୍କୁ ପ୍ରଶ୍ନ କରୁଅଛୁଁ, ବଙ୍ଗଳାରେ, ଉତ୍ତର ପଶ୍ଚିମରେ, ପଞ୍ଜାବରେ, ବିଦ୍ୟାଶିକ୍ଷାରେ ଯେଉଁ ମହତ୍ ୨ ଉପାୟମାନ ସେମାନେ ବିଧାନ କରିଅଛନ୍ତି, ତହିଁର ଅର୍ଦ୍ଧେକ କି ଆମ୍ଭମାନଙ୍କ ସକାଶେ କରିଅଛନ୍ତି ? ଉକ୍ତ ଦେଶମାନଙ୍କରେ ରେଲ ଇତ୍ୟାଦି ଦ୍ୱାରା, ପରସ୍ପର ଯିବା ଆସିବାର, ସମ୍ପତ୍ତି ରକ୍ଷିବାର ଯେଉଁସବୁ ସୌଗମ୍ୟ କରିଅଛନ୍ତି ତହିଁର ଷୋଡ଼ଶାଂଶ କି ଏ ଦୁଃଖୀ ଦେଶକୁ ଦେଇ ଅଛନ୍ତି ?— କିରୂପେ ଏ ଦେଶୀୟ ଲୋକେ ଉନ୍ନତିଶୀଳ ହେବେ, କିରୂପେ ଏମାନେ ଉଚ୍ଚ ରାଜକୀୟ କର୍ମମାନଙ୍କରେ ଅଧିଷ୍ଠିତ ହେବେ, କିରୂପେ ଉଚ୍ଚଶିକ୍ଷା ଲଭିବେ ଓ ଲଭିବାକୁ ଉତ୍ସାହୀ ହେବେ, ଏ ବିଷୟମାନଙ୍କରେ କେତେଜଣ ଇଉରୋପୀୟ ଚିନ୍ତା-ଯୁକ୍ତ ଥିବାର ଦେଖାଯାନ୍ତି ? — କପୋତ ଚକ୍ଷୁରେ ଅନ୍ୱେଷଣ କଲେ ଦୁଇ ତିନିଜଣ ଅବା ବାହାରିଲେ ବାହାରି ପାରନ୍ତି ।

ଇଂରାଜମାନଙ୍କର ଓଡ଼ିଶା ଶାସନ ରୀତିର ଆହୁରି ଗୋଟିଏ କଥା ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ ଏମାନେ ଓଡ଼ିଶାବାସିଙ୍କ ଅଭିଲାଷ ପ୍ରତି ତାଦୃଶ ଗୁରୁତ୍ୱ ପ୍ରଦାନ କରନ୍ତି ନାହିଁ । ଅନ୍ୟାନ୍ୟ ବିଷୟ ମଧ୍ୟରେ ଏକ ଭାଷା କଥିତ କଟକ, ଗଞ୍ଜାମ, ସମ୍ବଲପୁର ଏହି ତିନିସ୍ଥାନକୁ ତିନି ଭିନ୍ନ ୨ ଗବର୍ଣ୍ଣମେଣ୍ଟ ଅଧୀନରେ ରଖିବାକୁ ଦେବା, ବର୍ଷ ହେବାର ପର ଏଠା ଭୂମ୍ୟଧିକାରୀ ଓ ପ୍ରଜାଙ୍କୁ ଅନେକ ପରିମାଣରେ ଦାରିଦ୍ର୍ୟ ମୋଚକ ଭୂସମ୍ପତ୍ତିରସ୍ଥଳ ଏକ ସ୍ଥିରତମ ବନ୍ଦୋବସ୍ତ ନକରିବା, ଏଥିର ଏକ ୨ ପ୍ରକୃଷ୍ଟ ପ୍ରମାଣ । ଆଜି ଏକ ବିଷୟରେ ଅଧିକ ଲେଖିବା ବାହୁଲ୍ୟ ମାତ୍ର । ସ୍ଥୂଳରେ ନ୍ୟାୟର ସହିତ ବିବେଚନା କଲେ ଓଡ଼ିଶାବାସିଙ୍କର ଅବସ୍ଥା, ଇଂରାଜଙ୍କ ଆସିବା ପୂର୍ବ ଅବସ୍ଥା ଅପେକ୍ଷା ଯେ ଅନେକ ଅଂଶରେ ଉନ୍ନତ ଓ ଭୟଶୂନ୍ୟ ହୋଇଅଛି, ଏବିଷୟରେ ଦ୍ୱିଧା ଉପସ୍ଥିତ କରିବାକୁ କାହାରି ସାମର୍ଥ୍ୟ ନାହିଁ ।

ଏଦେଶ ଅନେକ ଭଲ ୨ ଇଂରାଜଶାସକଙ୍କ ଦ୍ୱାରା ଶାସିତ ହୋଇ ଅଛି । ମାତ୍ର ସେମାନଙ୍କ ମଧ୍ୟରୁ କଲେକ୍ଟର ଉଇଲକିନ୍‌ସନ ସାହେବ, କମିଶନର ମିଲ, ରିକେଟ୍‌ସ, ଶୋର ସାହେବସବୁ ଓଡ଼ିଶାରେ ଚିରସ୍ମରଣୀୟ ହୋଇ ଅଛନ୍ତି । ମିଲ ସାହେବ ପ୍ରଥମେ ଏ ଦେଶବାସିଙ୍କୁ ଇଂରାଜୀ ଶିକ୍ଷାଦେବ ଉଦ୍ଦେଶ୍ୟରେ କଟକ ଇଂରାଜୀସ୍କୁଲ ସ୍ଥାପନ କରାଇ ଅଛନ୍ତି, ରିକେଟ୍‌ସ ସାହେବ ଏ ଦେଶବାସିଙ୍କୁ ଉଚ୍ଚ-କର୍ମରେ ନିୟୋଗ କରିବାର ଉପାନୁଷ୍ଠାନ ବିଧାନ କରିଅଛନ୍ତି ଓ ଅଦ୍ୟାବଧି ସେ ଓଡ଼ିଶାକଥା ବିସ୍ମୃତ ନହୋଇ ସମୟ ସମୟରେ ତାଙ୍କର ବୃଦ୍ଧ ବନ୍ଧୁମାନଙ୍କଠାରୁ ସମ୍ବାଦ ଲେଖିଥାନ୍ତି; ଶୋର ସାହେବ କି ବିଦ୍ୟାଶିକ୍ଷା, କି ଶାସନ, କି ଦେଶୋନ୍ନତି ସବୁ ଉଦ୍ଦେଶ୍ୟ ହୃଦୟରେ ରଖି ଓଡ଼ିଶାବାସିଙ୍କ ଉନ୍ନତି ନିମନ୍ତେ ଯଥାସାଧ୍ୟ ଚେଷ୍ଟା କରିଅଛନ୍ତି । ଖୋର୍ଦ୍ଧା ବନ୍ଦୋବସ୍ତ ଓ ତାଙ୍କର ଅନ୍ୟାନ୍ୟ କାର୍ଯ୍ୟଦ୍ୱାରା ଉଇଲକିନ୍‌ସନ ସାହେବ ଓଡ଼ିଶାବାସିଙ୍କ ସହିତ କେତେଦୂର ହୃଦ୍ୟତା ଦେଖାଇ ପାରିଅଛନ୍ତି ତାହା ବର୍ଣ୍ଣନାତୀତ । ଏମାନେ ଏଠାରୁ ଗୋଟି ୨ ହୋଇ ଅନ୍ତର୍ହିତ ହେଲେଣି, ମାତ୍ର ତଥାପି ଏମାନଙ୍କର ନାମ ଓଡ଼ିଶାର ଆବାଲବୃଦ୍ଧବନିତାଙ୍କ ନିକଟରେ ଚିରସ୍ମରଣୀୟ ହୋଇ ରହିଅଛି ।

ଏଠାରେ ମଧ୍ୟ କହିବାର ବିହିତ ଯେ ଆମ୍ଭମାନଙ୍କର ଆଧୁନିକ ଶାସନକର୍ତ୍ତା ଶ୍ରୀଯୁକ୍ତ କମିଶନର ରେଭେନ୍‌ସା ସାହେବ, ତାଙ୍କର ଓଡ଼ିଶାଧ୍ୱଂସକାରୀ ୬୬ ସାଲର ଦୁର୍ଭିକ୍ଷ ସମୟର କାର୍ଯ୍ୟ ଅପ୍ରୀତିକର ହେଲେସୁଦ୍ଧା, ଓଡ଼ିଶାର ହିତୈଷୀ ଅଟନ୍ତି । ତାଙ୍କ ଚେଷ୍ଟାରେ କଟକ ନର୍ମାଲ ସ୍କୁଲ, ଓ ହାଇସ୍କୁଲ ଏଠାରେ ସ୍ଥାପିତ ହୋଇଅଛି, ଓଡ଼ିଆ-ଭାଷା ଏ ଦେଶରେ ସ୍ୱୀକୃତ ରହିଅଛି । ମେଡିକାଲ ସ୍କୁଲରେ ଏଠା ବାସିଏ ପଢ଼ି-ପାରିବା ଉପଯୋଗୀ କେତୋଟି ଛାତ୍ରବୃତ୍ତି ସଂସ୍ଥାପନ କରାଇ ଅଛନ୍ତି; ପୁଣି ବର୍ଷକୁ ବର୍ଷ କେତେକ ବର୍ଷ ହେଲା ଓଡ଼ିଆ ଛାତ୍ରଙ୍କୁ ପଢ଼ିବା ନିମନ୍ତେ ଉତ୍ସାହ ଦେବା ସକାଶେ ୫୧୦୦୯ କରି ଦେଇଅଛନ୍ତି । ଉଚ୍ଚକର୍ମରେ ଏ ଦେଶବାସିଙ୍କୁ ନିଯୁକ୍ତ କରିବା ତାଙ୍କର ଇଚ୍ଛା ବୋଲି ପ୍ରକାଶ୍ୟ ସଭାରେ କହିଥାନ୍ତି ମଧ୍ୟ ତାଙ୍କର ଡିପ୍ଟି ପୁଲିସ ଏକ ଜଣଙ୍କୁ ଦେଇ ଅଛନ୍ତି । ମାତ୍ର ତାଙ୍କର ଏକ ମହତ୍ ଦୋଷ ଏହି ଯେ ସେ କଥାରେ ଯେତେ କହନ୍ତି କାର୍ଯ୍ୟରେ ସେତେ କରନ୍ତି ନାହିଁ ଓ ମଧ୍ୟେ ୨ କାହାରି ୨ ଚକ୍ଷୁଲଜ୍ଜାରେ ପଡ଼ି ଥାନ୍ତି ।

ଉପସଂହାରରେ ଏତିକ କହିବାର ଯେ ଇଂରାଜମାନେ ଯେମନ୍ତ ଏ ଦେଶକୁ ଶୁଭ କ୍ଷଣରେ ଈଶ୍ୱରଙ୍କ କୃପାରେ ଆସିଅଛନ୍ତି ସେହିପରି କ୍ରମଶୋନ୍ନତି ପ୍ରତି ଦୃଷ୍ଟି ରଖିବାକୁ ତ୍ରୁଟି ନକରନ୍ତୁ । ଓଡ଼ିଶା ତୁମ୍ଭମାନଙ୍କର କୃପାଦୃଷ୍ଟିର ଦୂରରେ

ନାହିଁ । ତୁମ୍ଭମାନଙ୍କ ଶାସନରେ ଯେପରି ଆମ୍ଭେମାନେ ଅନେକ ଅଂଶରେ ସୁସ୍ଥତାକୁ ଲଭିଅଛୁଁ ସେହିପରି ଆପଣଙ୍କ ଉଦାରତା ଗୁଣରେ ଉତ୍କଳ ଭାରତର ସର୍ବୋଚ୍ଚ ଜାତିମାନଙ୍କ ସଙ୍ଗେ ବିଦ୍ୟା, ଗୌରବ ମାନମର୍ଯ୍ୟାଦା ସବୁ ବିଷୟରେ ସମକକ୍ଷ ହେବାକୁ ସମର୍ଥ ହେବେ । ଏହା ଦେଖିବାକୁ କିଏ ନ ଚାହିଁବ ?

## ( ୨ୟ ଭାଗ, ୧୮ । ୧୧ । ୧୮୭୪, ସଂଖ୍ୟା ୧୬ )

୬୨୭ । ଓଡ଼ିଶା ଓ ଗଡ଼ଜାତ ଶାସନ ।

× × ×

ରେଭେନସା ସାହେବ ଏବର୍ଷ ପ୍ରାୟ ସବୁ ଗଡ଼ଜାତ ପରିଭ୍ରମଣ କରି ଅଛନ୍ତି ଓ ତାଙ୍କ ରିପୋର୍ଟରୁ ଜଣାପଡ଼େ ଯେ ସମସ୍ତ ରାଜାମାନେ ସେମାନଙ୍କ ରାଜ୍ୟ ସମ୍ବନ୍ଧର ଶାସନ କାର୍ଯ୍ୟ କେତେ ୨ ଅତି ତତ୍ପରତାର ସହିତ ଦେଖନ୍ତି ଏବଂ ଗଡ଼ଜାତ ମଧ୍ୟରେ ଅପରାଧ ସଂଖ୍ୟା ଊଣା ହେବାରୁ ଶାସନ ଉତ୍ତମରୂପେ ଚଳୁ ଥିବାର ଛୋଟ ଲାଟସାହେବ ସନ୍ତୋଷ ଜଣାଇଅଛନ୍ତି । ଆମ୍ଭମାନଙ୍କ ବିବେଚନାରେ କମିଶନରଙ୍କ ରିପୋର୍ଟ ଓ ଛୋଟ ଲାଟଙ୍କ ବିଶ୍ୱାସ ସତ୍ତ୍ୱେ ଗଡ଼ଜାତ ଶାସନର ଅବସ୍ଥା ଭଲ ନାହିଁ । କେବଳ ଢେଙ୍କାନାଳ ମହାରାଜା ଓ ଆଉ ଦୁଇ ତିନି ରାଜାଙ୍କୁ ଛାଡ଼ି ଅନ୍ୟାନ୍ୟ ରାଜାଏ ସମ୍ୟକ୍ ରୂପେ ଆପଣା ୨ ଶାସନ କାର୍ଯ୍ୟ ପ୍ରତି ଦୃଷ୍ଟି ରଖନ୍ତି କି ନାହିଁ ସନ୍ଦେହ । ତେବେ କମିଶନର ସାହେବ ଗଡ଼ଜାତ ଗସ୍ତକୁ ଯିବାବେଳେ, ସେମାନେ ତଡ଼ବଡ଼ ହୋଇ ତାଙ୍କ ପାଖରେ ତତ୍ପରତା ଦେଖାନ୍ତି ।

ଗଡ଼ଜାତ ରାଜାଙ୍କଠାରୁ କର ଆଦାୟ ବିଷୟ ଅତି ସନ୍ତୋଷ ଜନକ । ସବୁ ମିଶିକି ବର୍ଷକରେ ପ୍ରାୟ ଟ ୩୨୪୯।୮/୧୧ ଆଦାୟ ହୋଇ ଆଗତୁର ୫୧,୦୦୦ଟଙ୍କା ଆଦାୟ ହୋଇଅଛି । କେନ୍ଦୁଝର ରାଜାଙ୍କ ଗଡ଼ରେ ବିଦ୍ରୋହ ଘଟଣା ଯୋଗୁଁ ତାଙ୍କ ଉପରେ ସରକାରର ଯେଉଁ ପାଉଣା ହୋଇଥିଲା ତାଙ୍କ ରାଜ୍ୟରେ ଏବର୍ଷ ଫସଲ କିଛି ଊଣା ହୋଇ ଥିଲେ ମଧ୍ୟ, ସେ ଏବର୍ଷ ଟଙ୍କା ଆଦାୟ ଦେଇ ଅଛନ୍ତି ।

× ×

× × × ×

ମୟୂରଭଞ୍ଜ ଅନ୍ତର୍ଗତ ବାମନଘାଟୀ ମହାଲ ସିଂଭୂମ ଡେପୁଟି କମିଶନରଙ୍କ ଅଧୀନରେ ଅଛି, ସେଥିର ଶାସନ କାର୍ଯ୍ୟ ଉତ୍ତମ ଚଳୁଅଛି ଓ ସେଥି ଜମାରୁ ଟ ୪,୦୦୦ଟଙ୍କା ରାଜା ପାଉଅଛନ୍ତି ।

× × ×

ଗଡ଼ଜାତରେ ଦେଓ୍ୱାନୀ ମକଦ୍ଦମା ମୋଟ ୨୦୨୨ ହୋଇଅଛି । ଏଥିର ଅଧିକାଂଶ ବାଙ୍କୀ ଓ ଅନୁଗୁଳରେ । ବାଙ୍କୀ ଓ ଅନୁଗୁଳରେ ପ୍ରତ୍ୟକ୍ଷ ଇଂରେଜ-ଶାସନ ଅଛି ବୋଲି ଫୌଜଦାରୀ ଓ ଦେଓ୍ୱାନୀ ମକଦ୍ଦମାର ପ୍ରକୃତ ଅବସ୍ଥା ଜଣା-ପଡ଼ିଅଛି । ଅନ୍ୟାନ୍ୟ ଗଡ଼ଜାତ ମାନଙ୍କର ଯେପରି ଅପରାଧର ସଂଖ୍ୟା କମିଶ୍ନର ଅବଗତ ହୋଇଅଛନ୍ତି ସେଥିର ପ୍ରକୃତ ସଂଖ୍ୟା ନିଶ୍ଚୟ ଅଧିକ ଅଟେ ।

ଗଡ଼ଜାତରେ ୬୮ ଗୋଟା ସ୍କୁଲ ଓ ସେ ସବୁରେ ୨୩୪୧ ପିଲା ପଢ଼ୁଥିବାର ରିପୋର୍ଟ ହୋଇଅଛି । ଆମ୍ଭେମାନେ ବୋଧକରୁଁ ଗଡ଼ଜାତସ୍ଥ ପାଠଶାଳାମାନ ମଧ୍ୟ ଏ ସଂଖ୍ୟାର ଅନ୍ତର୍ଭୁକ୍ତ ହୋଇଅଛି, ନୋହିଲେ ପ୍ରକୃତ ମଧ୍ୟମ କି ଉଚ୍ଚ ଶ୍ରେଣୀର ସ୍କୁଲ ଗଡ଼ଜାତରେ ଏତେ କାହିଁ ? ରିପୋର୍ଟ ଅନୁସାରେ ବୌଦ୍ଧ ଓ କେନ୍ଦୁଝରରେ ଅଧିକ ସ୍କୁଲ ଓ ଢେଙ୍କାନାଳର ସ୍କୁଲ ଓଡ଼ିଶାରେ ସର୍ବୋତ୍କୃଷ୍ଟ (?) ।

ଗଡ଼ଜାତ ରଜାଏ ବିଶେଷତଃ ଢେଙ୍କାନାଳ ଓ ମୟୂରଭଞ୍ଜ ରଜା-ଦ୍ୱୟ ବାଟ ନିର୍ମାଣ କରିବାର ଅବଗତ ହୋଇ ଛୋଟ ଲାଟ ଆନନ୍ଦିତ ହୋଇଅଛନ୍ତି । ଢେଙ୍କାନାଳ ମହାରଜା ଏକ ସଡ଼କ ବ୍ରାହ୍ମଣୀ ନଦୀ ପର୍ଯ୍ୟନ୍ତ ନିର୍ମାଣ କରିଅଛନ୍ତି ଓ ଓ ଅନ୍ୟ ଏକ ବାଟ କଟକ ବାଟ ସଙ୍ଗେ ଯୋଗ କରିବାର ଆରମ୍ଭ କରିଅଛନ୍ତି । ବାରି-ପଦାଠାରୁ ବାଲେଶ୍ୱର ପର୍ଯ୍ୟନ୍ତ ୨୫ ମାଇଲ ବାଟ ମୟୂରଭଞ୍ଜ ରଜାଙ୍କ ଦ୍ୱାରା ନିର୍ମିତ ହୋଇଅଛି । କଳମାହାଲବାସିମାନେ ସେଠା ବାଟ ରକ୍ଷାର୍ଥ ଇଚ୍ଛା ପୂର୍ବକ ରୋଡ଼ ଟେକ୍ସ ଦେବାକୁ ମାନସ କରି ଅଛନ୍ତି, କମିଶ୍ନରଙ୍କର କଥା ପ୍ରଧାନଙ୍କ ସଙ୍ଗେ ସେ ବିଷୟରେ ଯୋଗର ଫଳ କି ହେବ, ଛୋଟ ଲାଟ ସାହେବ ତାହା ଔତ୍ସୁକ୍ୟର ସହିତ ଦେଖିବେ । ଇଚ୍ଛାପୂର୍ବକ ଟେକ୍ସ ଦେବା କଥା ଏହି ନୂଆ ଶୁଣା ଯାଉଅଛି !

ଗଡ଼ଜାତ ପାଣଙ୍କ ଅବସ୍ଥା ଉନ୍ନତ ଓ ଅନୁଗୁଳ ଚମ ବ୍ୟବସାୟୀ ପଠାଣଙ୍କ ଗାଈ ବିଷଦ୍ୱାରା ମାରିବା ଏହି ବିଷୟ ଦ୍ୱୟରେ କମିଶ୍ନରଙ୍କ ଉଦ୍ୟୋଗ ଫଳପ୍ରଦ ହେବ ବୋଲି ଛୋଟଲାଟ ସାହେବ ଆଶା କରନ୍ତି ।

× × ×

× × ×

ରଜାମାନଙ୍କର ସ୍ୱଭାବ ଓ କାର୍ଯ୍ୟଦକ୍ଷତାର ପ୍ରଶଂସା କରି, ବିଶେଷତଃ ଢେଙ୍କାନାଳ ମହାରଜ ସମସ୍ତଙ୍କର ଅନୁକରଣୀୟ ହେବାର ଲେଖିଅଛନ୍ତି । ପ୍ରକୃତ ଢେଙ୍କାନାଳ ମହାରଜା ସବୁପ୍ରକାର ପ୍ରଶଂସାର ଯୋଗ୍ୟ, ସନ୍ଦେହ ନାହିଁ । ମାତ୍ର

ଅନ୍ୟାନ୍ୟ ରାଜାଏ ସେ ସର୍ବତୋଭାବେ ପ୍ରଶଂସାର୍ହ ଏହା କିଏ କରୁପେ ବୋଲିବ ।

× × ×

ଆମ୍ଭମାନଙ୍କର କମିଶନର ରା' ଭନ୍ସା ସାହେବ ଯେଉଁ ରିପୋର୍ଟ ଦସ୍ତ ଦେ'ଇଅଛନ୍ତି ତାହା ସେ ବହୁଦର୍ଶିତାର ଓ ଓଡ଼ିଶାର ପ୍ରକୃତ ଅବସ୍ଥା ବୁଝିବାର ପରିଚୟ ଦେଉଅଛି ଏହା କହିବା ବାହୁଲ୍ୟ ମାତ୍ର । କିନ୍ତୁ ତାଙ୍କ ଗଡ଼ଜାତ ରିପୋର୍ଟ ପାଠ କରି ଆମ୍ଭେମାନେ କିଞ୍ଚିତ୍ ବିସ୍ମିତ ହୋଇଅଛୁଁ । ଏହିକି ଜଣାଯାଏ ଯେ ସାହେବ ମହାଶୟ ଗଡ଼ଜାତମାନଙ୍କର ଅବସ୍ଥାର ଭିତରେ ତେତେ ନ ପଶି ଉପର ଚାକ୍ ଚକ୍ୟ ଦେଖି ସବୁ ରାଜାଙ୍କ ଗୁଣରେ ମୁଗ୍ଧ ହୋଇ ଯାଇ ଅଛନ୍ତି । ତାଙ୍କୁ ଆମ୍ଭେ-ମାନେ ଅନୁରୋଧ ଓ ପ୍ରାର୍ଥନା କରୁଁ ଯେ ତାଙ୍କମାନଙ୍କର ଭିତରର ଅବସ୍ଥା ଦେଖି ସେମାନଙ୍କୁ ପ୍ରଶଂସା କି ନିନ୍ଦା ଯାହା କରିବାର ହୁଏ କରିବେ । ଉଛାକୁ ସେମାନେ ସବୁ ବିଷୟରେ ଅମନୋଯୋଗୀ, ଏଥିକୁ କମିଶନର ସେମାନଙ୍କୁ ଲମ୍ବ ୨ କଥାରେ ପ୍ରଶଂସା କରିଥିବାର ଦେଖିଲେ, ସେମାନେ ଆଉ କାହାରି କୌଣସି ଉପଦେଶାଦି ନ ଶୁଣି, ହୁଏତ ଅଧିକ ଅଳସୁଆ ଓ ରାଜ୍ୟ ଶାସନରେ ଅଧିକ ଯଥେଚ୍ଛାଚାରିତା ଓ ଡାଛିଲ୍ଲି ପ୍ରକାଶ କରିବେ ।

**( ୨ୟ ଭାଗ, ୧୬।୧୨।୧୮୭୪, ସଂଖ୍ୟା ୧୭ )**

୬୨୮ । ଓଡ଼ିଶା ଇନସ୍ପେକ୍ଟରୀ ।

ଆମ୍ଭେମାନେ ଶୁଣି ବଡ଼ ଆନନ୍ଦିତ ହେଲୁଁ ଯେ ଲେପ୍ଟେନାଣ୍ଟ ଗଭ-ର୍ଣ୍ଣର ଟେମ୍ପଲଙ୍କର ଆନ୍ତରିକ ଇଚ୍ଛା ଯେ ଜଣେ ଉପଯୁକ୍ତ ଓଡ଼ିଶାବାସୀଙ୍କୁ ଓଡ଼ିଶା ଇନସ୍ପେକ୍ଟରୀ କାର୍ଯ୍ୟ ପ୍ରଦାନ କରିବେ । ମଧ୍ୟ ତାଙ୍କର ଇଚ୍ଛା ଏତେ ଦୂର ବଳବତୀ ଯେ ସେ ଓଡ଼ିଶାକୁ ଆସିବା ସମୟରେ ପ୍ରଥମତଃ ବାବୁ ଜଗମୋହନ ରାୟଙ୍କୁ ଉକ୍ତ କାର୍ଯ୍ୟ ଦେଇଥିଲେ । ମାତ୍ର ବାବୁ ମହାଶୟ ନାନାପ୍ରକାର ଚିନ୍ତାକରି ଉକ୍ତ କାର୍ଯ୍ୟ ଗ୍ରହଣ କରିବାକୁ ଅସ୍ୱୀକୃତ ହେଲେ । ତଦନନ୍ତର ଲେପ୍ଟେନାଣ୍ଟ ସାହେବ ବାବୁ ନନ୍ଦକିଶୋର ଦାସଙ୍କୁ ଉକ୍ତ କାର୍ଯ୍ୟରେ ନିଯୁକ୍ତ କରିବା ବିଷୟରେ ଡାଇରେକ୍ଟରଙ୍କ ସଙ୍ଗେ ପରାମର୍ଶ କରିବେବୋଲି ସ୍ଥିର କରିଅଛନ୍ତି । କଣ ହୁଏ ଦେଖାଯାଉ ।

ବର୍ତ୍ତମାନ ଏଥି ସମ୍ବନ୍ଧରେ ଆମ୍ଭେମାନେ ଯେପରି ଦେଖୁଅଛୁଁ ନାନା ମୁନିଏ ନାନାମତ ପ୍ରକାଶ କରିଅଛନ୍ତି । କିନ୍ତୁ ଗୋଟିଏ କୌତୂହଳାକ୍ରାନ୍ତ ବିଷୟ ଏହି

ଯେ ଅଧିକାଂଶ ଲୋକେ ନନ୍ଦକିଶୋର ବାବୁଙ୍କ ଇନସ୍ପେକଟରୀ ହେବା ଶୁଣି ତେତେ ପ୍ରଫୁଲ୍ଲ ବଦନ ହୋଇ ନାହାନ୍ତି ।

ନିର୍ଦ୍ଦେଷ ଭାବରେ କହିବାକୁ ଗଲେ ଆମ୍ଭେମାନେ ମଧ୍ୟ ଏ ପ୍ରସ୍ତାବରେ ତାଦୃଶ ସନ୍ତୁଷ୍ଟ ନାହୁଁ । ହେତୁ କି ଏହାଦ୍ୱାରା ଆଦୌ ନନ୍ଦକିଶୋର ବାବୁଙ୍କର ଅନିଷ୍ଟ କରିବାର ହୋଇଅଛି ଓ ପ୍ରକୃତଃ ଶିକ୍ଷାବିଭାଗ ପ୍ରତି ନ୍ୟାୟ ହୋଇନାହିଁ ।

ନନ୍ଦକିଶୋର ବାବୁଙ୍କର କିପ୍ରକାର ଅନିଷ୍ଟ ହୋଇଅଛି ବୋଲି ଯଦି କେହି ପ୍ରଶ୍ନ କରନ୍ତି, ଆମ୍ଭେମାନେ ସେକଥା ଏହି ପ୍ରକାରେ ବୁଝାଇବା ଯେ ଦେଖ ନନ୍ଦକିଶୋରବାବୁ ସରକାରୀ ଚାକିରିର ଯେଉଁ ଧାଡ଼ି ଗ୍ରହଣ କରିଅଛନ୍ତି, ସେଥି-ପକ୍ଷରେ ସେ ଅତ୍ୟନ୍ତ ଉପଯୁକ୍ତ । ସେ ଧାଡ଼ିରେ ରହିଲେ, ସେ ଯେ ପ୍ରକାର କାର୍ଯ୍ୟ ଦକ୍ଷ ଲୋକ, ଲବ୍ଧପ୍ରତିଷ୍ଠ ହୋଇ ସେ ଜୁଡ଼ିସିଆଲ ବିଭାଗରେ ଆପଣାର ପଦୋନ୍ନତି ଅନତିବିଳମ୍ବରେ କରିପାରିବେ । ଉକ୍ତ ଧାଡ଼ି ଛାଡ଼ିଦେଇ ସାଧାରଣ ଶିକ୍ଷା ବିଭାଗରେ କାର୍ଯ୍ୟାରମ୍ଭ କଲେ, କାମ୍ବ୍ରିଜ ଅକ୍ସଫୋର୍ଡ ପ୍ରଭୃତି ବିଶ୍ୱବିଦ୍ୟାଳୟସ୍ଥ ବ୍ୟକ୍ତିଙ୍କ ସଙ୍ଗେ ଶିକ୍ଷା ବିଷୟରେ ସମକକ୍ଷ ହୋଇ ଯେ ଶୀଘ୍ର ଆପଣାର ଉନ୍ନତି ସାଧନରେ ଓ ପଦ ମର୍ଯ୍ୟାଦା ସ୍ଥିର ରଖିବାରେ ସେ ସମ୍ପୂର୍ଣ୍ଣ ସମର୍ଥ ହେବେ, ଏହା କଦାପି ସମ୍ଭବପର ନୁହେ । ଏହେତୁରୁ ହିଁଏତ ଜଗମୋହନ ବାବୁ ଉକ୍ତ କାର୍ଯ୍ୟ ଗ୍ରହଣ କରିବାକୁ ଅସ୍ୱୀ-କାର କରିଅଛନ୍ତି ।

ପ୍ରକୃତଃ ଦେଖ ଆଇନାଦି ବ୍ୟବସାୟ ତ୍ୟାଗକରି କେବଳ ଶିକ୍ଷା ବ୍ୟବସାୟର ଆଶ୍ରୟ ଦେଇ ସମଗ୍ର ଜୀବନ ସେଥିରେ ଯେଉଁମାନେ କ୍ଷେପଣ କରିବାକୁ ପ୍ରସ୍ତୁତ ହେଲେ, ସେମାନେ ଯଦି ପଛକୁ ପଡ଼ିରହି ଅନ୍ୟ ବିଭାଗୀୟ ଲୋକେ ଶିକ୍ଷା-ବିଭାଗର ଭଲ ଭଲ କାର୍ଯ୍ୟ ପାଇଲେ ତେବେ ସେମାନଙ୍କର ଶ୍ରମ ବୃଥାଗଲା ଓ ସୁତରାଂ ସେମାନଙ୍କ ପ୍ରତି ଅନ୍ୟାୟ ସାଧିବାର ହେଲା ।

ଯଦି ସର୍ ଟେମ୍ପଲ ସାହେବ ଜଣେ ଓଡ଼ିଶାବାସିଙ୍କୁ ଦେବାସକାଶେ କୃତସଂକଳ୍ପ ହୋଇଥାନ୍ତି, ତେବେ ଆଜକାଲି କଲିକତା ବିଶ୍ୱବିଦ୍ୟାଳୟର ଓଡ଼ିଶା-ବାସିଏ ଉପାଧି ଦେଇ ବାହାରିବାକୁ ଆରମ୍ଭ କରିଅଛନ୍ତି । ସେମାନଙ୍କ ମଧ୍ୟରୁ ଉପଯୁକ୍ତ-ବ୍ୟକ୍ତିଙ୍କୁ କ୍ରମଶଃ ଶିକ୍ଷାବିଭାଗରେ ପଦବଢ଼ାଇ, ଏ କାର୍ଯ୍ୟରେ ନିଯୁକ୍ତ କରନ୍ତୁ । ମଧ୍ୟ ଏହି ପ୍ରକାରେ ଓଡ଼ିଶାବାସିଙ୍କୁ ଉତ୍ସାହ ଦେବାର ଉଚିତ ।

କିମ୍ବା ଯଦି ନନ୍ଦକିଶୋର ବାବୁଙ୍କୁ ଉପଯୁକ୍ତ ଡେପୁଟୀ କଲେକ୍ଟର

ଦେଖି ପଦୋନ୍ନତି ଦେବାର ଅଭିପ୍ରାୟ ଥାଏ ତାହାହେଲେ ତାଙ୍କୁ ତାଙ୍କ ଧାଡ଼ରେ ଉନ୍ନତ କରାଉନ୍ତୁ, ମଧ୍ୟ ଏ ପ୍ରକାର ଉନ୍ନତ ହେବାର ସେ ସମ୍ପୂର୍ଣ୍ଣ ଯୋଗ୍ୟପାତ୍ର ।

ମଧ୍ୟ ଇନସ୍ପେକ୍ଟରୀ ସମ୍ବନ୍ଧରେ ଆମ୍ଭମାନଙ୍କ ବିବେଚନାରେ, ବର୍ତ୍ତିମାନ ଯେ ବନ୍ଦୋବସ୍ତ ହୋଇଅଛି ତାହା ଅତି ଉତ୍ତମ ଅଟଇ; ଉକ୍ତ ବନ୍ଦୋବସ୍ତକୁ ପରିବର୍ତ୍ତନ କରିବାର ଆବଶ୍ୟକତା ଦେଖା ଯାଉନାହିଁ ।

---

# ବିଦେଶୀ ।

( *God's Children all* )

## ପାକ୍ଷିକପତ୍ର

{ ଅଗ୍ରିମ ବାର୍ଷିକ ମୂଲ୍ୟ ଠ୧୯ଙ୍କା
  ମଫସଲ ଡାକ ମାସୁଲ ଠ୦୷ ଅଣା

( ୧ମ ଭାଗ, ୧୫ । ୧୧ । ୧୮୭୩, ସଂଖ୍ୟା ୧ )

୬୨୯ । **Ourselves.**

We are not at all disposed to make extravagant promises to the public. If there is anything which we dislike more than another it is the practice of "thundering in the Preface." Suffice it to say that we have the good of Orissa at heart and shall always endeavour to promote it in our humble way. We shall also try to establish love and friendship among the different sections of the community. We can assure our readers that party spirit or race antagonism will find the least favour with us. We shall never forget that all men are the sons of the same Father and as such have equal claims on our regard and affection. We shall never hesitate to criticise the acts of public men, but shall always give out our opinion with a strict adherence to justice and impartiality.

୬୩୦ । ଉତ୍କଳରେ ଦୁର୍ଭିକ୍ଷର ଆଶଙ୍କା ।

× × ×

× × ×

ସମସ୍ତ ଉତ୍କଳର ବର୍ତ୍ତିମାନ ଲୋକସଂଖ୍ୟା ୪୩୧୭୯୯୯ ଜନଙ୍କରେ

ଋଷିଙ୍କ ସଂଖ୍ୟା ୭୧୩୧୮୨ । ଯଦ୍ୟପି ଋଷିଙ୍କର ଆନୁମାନ କରି ଧାନ୍ୟ ଋଷର ଜମି ଧରିପାଏ ଏବଂ ଫି ମାଣରେ ତିଶ ମହଣ ଧାନ ଉତ୍ପନ୍ନ ହୁଏ ତାହା ହେଲେ ୪୯୦୫— ୪୫୭୦ ମହଣ ଧାନ ଉତ୍ପନ୍ନ ହେବାର ସମ୍ଭାବନା କିନ୍ତୁ ଉତ୍କଳବାସୀ ପ୍ରତ୍ୟେକ ଲୋକ-ଙ୍କର ମାସିକ ଏକ ମହଣ ଧାନ ବ୍ୟୟ ଧରିଲେ ବର୍ଷକୁ ଉପରୋକ୍ତ ଉତ୍କଳୀୟ ଲୋକ-ମାନଙ୍କର ବାର୍ଷିକ ନିତ୍ୟ ବ୍ୟୟ କାରଣ ୫୯୮୧୫୯୮ ମହଣ ଧାନ ଆବଶ୍ୟକ ହେବ । ଏବର୍ଷ ଉତ୍କଳରେ ଏତାଧିକ ଧାନ କି ଉତ୍ପନ୍ନ ହୋଇଅଛି ? କୌଣସି ଋପେ ବିଶ୍ୱାସ ହୁଏ ନାହିଁ । ଯଦ୍ୟପି ସେହିପରି ଧାନ ଜନ୍ମିଥାଏ ତାହାହେଲେ ଋଷିମାନେ ରାଜସ୍ୱ ଆଦାୟ ସକାଶେ ଉତ୍ପନ୍ନ ଧାନ୍ୟର ଅର୍ଦ୍ଧାଂଶ ବିକ୍ରୟ କରିବାକୁ ତ୍ରୁଟି କରିବେ ନାହିଁ ଏବଂ ସେହି ବିକ୍ରିତ ଧାନ୍ୟ ଦେଶ ବିଦେଶରେ ପ୍ରେରଣ ହୋଇଯିବ । ଅବଶିଷ୍ଟ ଯେ ଅର୍ଦ୍ଧାଂଶ ଥିବ ତାହା ଉପରେ ଯେ ବର୍ଷ ଦେଶର ହାଣ ପଡ଼ିଲେ ଉତ୍କଳରେ ଯେଉଁ ପ୍ରକାର ଭୟଙ୍କର ଦୁରବସ୍ଥା ଘଟିବ ତାହା ସ୍ମରଣ କଲେ ହୃଦୟରେ ଭୟର ଉଦ୍ରେକ ହୁଏ ।

ଯାହାହେଉ ଆମ୍ଭେମାନେ ଏହି ସମୟରେ ଦୟାବାନ୍ ମେଃ କେମ୍ବେଲ ସାହେବଙ୍କୁ ଅନୁରୋଧ କରୁଁ ସେ ଏହି ସମୟଠାରୁ ଉତ୍କଳର ରପ୍ତାନି ବନ୍ଦ କରି ଦେଶକୁ ରକ୍ଷା କରନ୍ତୁ ଏବଂ ଶ୍ରୀଯୁକ୍ତ କମିଶନର ମେଃ ରେଭେନସା ସାହେବ ଶୀଘ୍ର ଏହାର ସଦୁପାୟ କରିବାରେ ଯତ୍ନବାନ ହୁଅନ୍ତୁ । ଭୂତପୂର୍ବ ଲେଫ୍ଟେନାଣ୍ଟ ଗବର୍ଣ୍ଣର ପୁଣ୍ୟାତ୍ମା ସିସିଲ ବିଡନ ସାହେବ ଏବଂ ମେଃ ରେଭେନ୍ସା ସାହେବ ମାନଙ୍କର ବୁଦ୍ଧିରେ ସନ ୧୨୭୩ ସାଲରେ ଉତ୍କଳ ଦେଶ ଯେତେଦୂର କ୍ଷତିଗ୍ରସ୍ତ ହୋଇଅଛି ଶତବର୍ଷରେ ଇଂରାଜ ଗବର୍ଣ୍ଣ-ମେଣ୍ଟ ସେ କ୍ଷତି ପୂରଣ କରିବାକୁ ସମର୍ଥ ହେବେ ନାହିଁ । ସେହି କଥା ସ୍ମରଣ କରନ୍ତୁ ଏବଂ ଅବିଳମ୍ବେ ସକଳ ନିୟମ, ଆଇନ କାନୁନ ପଙ୍କରେ ପୋତି ପକାଇ ସତ୍ୱର ନିକାଟି ୨ ନରହତ୍ୟା ନିବାରଣର ଉପାୟ ଅବଲମ୍ବନ କରନ୍ତୁ । ×

\+ \+ \+

( ୨ୟ ଭାଗ, ୧୪ । ୭ । ୧୮୭୪, ସଂଖ୍ୟା ୭ )

୭୨୮ । କଟକ ନିମଚୌଡ଼ି ନିକଟରେ ଯେ ଜୁମାମସିଦ ଅଛି ତାହାର ସମ୍ମୁଖରେ ଦୋକାନମାନ ଭାଙ୍ଗିଦେଇ ମେଃ ବିମ୍ସ ଯେପରି ମସୀଦର ଶ୍ରୀବୃଦ୍ଧି ସାଧନ — ସହରର ଶ୍ରୀବୃଦ୍ଧି ସାଧନ — ସଡ଼କର ଶ୍ରୀବୃଦ୍ଧି ସାଧନ କରିଅଛନ୍ତି ସେହିପରି ଗୋଟିଏ ବହୁଦର୍ଶୀ ଏବଂ ଅତି ସୁବିଜ୍ଞ ବିଚାରକଙ୍କର କର୍ମ କରିଅଛନ୍ତି । ମସୀଦର ମଧ୍ୟରେ ଆଉ କୌଣସି ଗୁପ୍ତଚର ରହି କହିପାରିବେ ନାହିଁ । ଆମ୍ଭେମାନେ ଏଥିପାଇଁ ମେଃ ବିମ୍ସଙ୍କୁ ପରିଣାମଦର୍ଶୀ ବୋଲି ପ୍ରଶଂସା କରୁଁ ।

# ଉତ୍କଳ ହିତୈଷିଣୀ

## ( ୩ୟ ଭାଗ, ୨୪ । ୮ । ୧୮୭୩, ସଂଖ୍ୟା ୨ )

୬୨୨ । ଜଗତ୍‌ସିଂହପୁର ସବଡିଭିଜନ

ଜଗତ୍‌ସିଂହପୁର ସବଡିଭିଜନରେ ମୋକଦ୍ଦମା କମ ହେବାରୁ ଡିଭିଜନଟି ଉଠାଇ ଦେବାକୁ ସ୍ଥାନୀୟ ଗବର୍ଣ୍ଣମେଣ୍ଟ ଆଜ୍ଞା ଦେଇଅଛନ୍ତି । ଅବଶ୍ୟ ମୋକଦ୍ଦମା ନହେଲେ ଗବର୍ଣ୍ଣମେଣ୍ଟ କି ନିମନ୍ତେ ଏତେ ବ୍ୟୟ କରି ଡିଭିଜନ ସେଠାରେ ରଖିବେ । ଆମ୍ଭେମାନେ ଅବଗତ ହେଲୁଁ ଯେ କେନ୍ଦ୍ରାପଡ଼ା ସବଡିଭିଜନରେ ମକଦ୍ଦମା ସଂଖ୍ୟା ଅତି ବଢ଼ିଲ । ହରିହରପୁର ଦୁଇଥାନା ମଧ୍ୟରୁ ଯେବେ ଏକ ଥାନା କଟକ ସଦର ସବଡିଭିଜନର ଅନ୍ତର୍ଗତ କରି ଦିଆଯାଏ ଓ ଅନ୍ୟଟିକୁ କେନ୍ଦ୍ରାପଡ଼ାର ଅନ୍ତର୍ଗତ କରି ଦିଆଯାଏ ତାହାହେଲେ କାର୍ଯ୍ୟ ପୂର୍ବବତ୍ ସୁଶୃଙ୍ଖଳରୂପେ ନିର୍ବାହ ହେବାକୁ ପାରେ । ଜଗତସିଂହପୁର ସବଡିଭିଜନ ହେଲା ଦିନଠାରୁ ଅନେକ ପ୍ରଜା ଓ ଜମିଦାରମାନଙ୍କୁ ନାନାଦି ପ୍ରକାର କଷ୍ଟ ଭୋଗ କରିବାକୁ ହେଉଅଛି । ଏକ ତାଲୁକର ଗୃଷୀ ନାମରେ ନାଲିଶ କରିବାକୁ ହେଲେ ତାହାର ଯୋଡ ସେହି ତାଲୁକର ଭିନ୍ନ ୨ ମୌଜାରେ ଥିଲେ ଜମିଦାର ଓ ପ୍ରଜାଙ୍କୁ କେନ୍ଦ୍ରାପଡ଼ା ଓ ଜଗତସିଂହପୁର ଦୁଇ ସବଡିଭିଜନ ଦେଖିବାକୁ ହୁଅଇ । ଏଥିରେ କି ସାମାନ୍ୟ କଷ୍ଟଭୋଗ କରିବାକୁ ହୁଏ ।

## ( ୩ୟ ଭାଗ, ୨୪ । ୧୧ । ୧୮୭୩, ସଂଖ୍ୟା ୮ )

୬୨୩ । ସ୍ଥାନୀୟ ସମ୍ବାଦ

ତାଳଚେର କିଲ୍ଲାର ରାଜା ଦୟାନିଧି ବୀରବର ହରିଚନ୍ଦନ ମାନବ-ଲୀଳା ସମ୍ବରଣ କରିଅଛନ୍ତି ଶୁଣି ଅତ୍ୟନ୍ତ ଦୁଃଖିତ ହେଲୁଁ । ମହାରାଜାଙ୍କର ରାଜ୍ୟ

ଶୃଙ୍ଖଳା ଉତ୍କଳୀୟ ରାଜାମାନଙ୍କ ମଧ୍ୟରେ ଅଦ୍ଵିତୀୟ ଥିଲା । ତାହାଙ୍କୁ କୌଣସି ୨ ଲୋକ ରାଜର୍ଷି ବୋଲନ୍ତି । ଏ ନାମଟି ତାହାଙ୍କ ପକ୍ଷେ ଅନୁପଯୁକ୍ତ ନୁହେ । ମହାରାଜା ଅତ୍ୟଳ୍ପ ବୟସରେ ରାଜ୍ୟାଭିଷିକ୍ତ ହୋଇ ଯାବତ ଜୀବନ ପର୍ଯ୍ୟନ୍ତେ ଆପଣାର ଅନ୍ୟ ସ୍ଥୂଳ ଅନୁଜମାନଙ୍କୁ ଆହାର ବ୍ୟବହାର ମର୍ଯ୍ୟାଦା ସମ୍ଭ୍ରମ ଏବଂ କ୍ଷମତା କାହିଁରେ ଆପଣା ଅପେକ୍ଷା ନ୍ୟୂନ କରିବାକୁ ଦେଇନାହାନ୍ତି । ତାଙ୍କର ଦୟା ଓ ଧର୍ମ ଓ ସଦ୍-ବିବେଚନା ବିଷୟରେ ତାଙ୍କର ଦୟାନିଧି ନାମ ମଧ୍ୟ ଉପଯୁକ୍ତ ଥିଲା । ଶୁଣିଲୁଁ ସେ ତାଙ୍କର ପୁତ୍ର ରାଜ୍ୟଭାର ଗ୍ରହଣ କରିଅଛନ୍ତି । ଆମ୍ଭମାନଙ୍କର ଏକାନ୍ତ ଇଚ୍ଛା ଯେ ନବ୍ୟ ରାଜା ପିତାଙ୍କ ନିୟମର ଅନୁଗାମୀ ହୋଇ ଆପଣା ଖୁଡ଼ୁତାମାନଙ୍କୁ ପିତୃତୁଲ୍ୟ ଜ୍ଞାନକରି ସେମାନଙ୍କର ଆଜ୍ଞାନୁବର୍ତ୍ତୀ ହୋଇ କାର୍ଯ୍ୟ କରିବେ ଓ ଖୁଡ଼ୁତାମାନେ ମଧ୍ୟ ଆପଣା ଭ୍ରାତୃଧର୍ମ ପ୍ରତିପାଳନ ପୂର୍ବକ ସମୁଚିତ ବ୍ୟବହାର କରିବେ, ତେବେ ଉତ୍କଳର ଶ୍ରୀବୃଦ୍ଧି ହେବ ଓ ଅନ୍ୟାନ୍ୟ ରାଜାମାନେ ତାଙ୍କ ଆଦର୍ଶରେ କାର୍ଯ୍ୟ କରିବାକୁ ପ୍ରବୃତ୍ତ ହେବେ ।

---

# THE ORISSA PATRIOT,

## 1874

Vol. 4, Cuttack, Thursday, January 8th, 1874, No I

୨୨୪ ।

### Famine in Oris a

The information of the distress due to scarcity of the people of the perganah Soso in the district of balasore having reached us but too late for insertion in the editorial columns of our last issue we made but a bare mention of it in the Epitome of News.

It has all the while been our expectation to find Orissa escape from the contagion of famine which has so dreadfully been startling at the face of her sister province Bengal. We thought that her misery is at an end, her past sins having been expatiated by the sacrifice of enormous Souls in 1866, and that she would now enjoy perfect calm and tranguility for years to come. The present year having proved a bumper season, there has been all joy and full of hopes. But like the sudden flash of lightening which throw all in dismay the intelligence of the distress of purgannah Soso and its neighbourhood has disturbed the equanimity of her sweet repose. Affected with the gloomy accounts of the state of crops in Bengal, Orissa has since the last two months been making preparations for the export of a large quantity of rice to that country inspite of the remonstrances of the press against such an exportation. But lo, the long dreaded famine has at last made its way into this

country also. It has been stated that distress is confined at present to an area of about 100 sq. miles and that the aggregate number of sufferers from it does not exceed 37000. Mr. Ravenshaw, it is said, has reported to Government to open public works in that pergannah for the support of able-bodied men, while for the maintenance of those who cannot work, money is being raised by subscription. On the 26th December last a meeting was convened of both the European and native gentlemen residing at Cuttack at the Govt. Circuit house. The meeting we are sorry to say, was not largely attended that day owing to many people not having been at the Station on account of the Christmas holidays. Still however the amount subscribed at that one sitting was not less than Rs 1300/-. The Subscription Book is now in course of circulation and it is hoped that about Rs 3000/- is most likely to be raised from Cuttack. We hope Balasore and Puri will not be slow in contributing their mite in such a noble cause of suffering humanity. It is not yet known in what way the money is to be expended. Some are, it appears, in favour of adopting the House - Relief system. But from our experience of the past we feel persuaded to believe that such a system will not answer the purpose well. We reserve our comments on relief measures to be organised for the next.

———

# EXTRACT

( From the Friend of India )

625. Sir, - In your ( Overland ) paper of the 3rd October there is an article headed "Our misgovernment of Orissa" in which I find the two following sentences :— "For seventy years our whole Government of Orissa has been a tale of woe according to the confessions of our own officials." "Even Sir George Campbell and Mr. Scalcb, who are for the first time attempting to do justice to Orissa will confess that the same bungling which mark [illegible] Revenue Administration in the beginning of the century has characterised the renewal of the periodical Settlement and without the same excuse." I shall not adopt the prevailing fashion of the day and accuse you of gross ignorance and misrepresentation or wilful perversion of truth or disgraceful injustice. I have arrived at the conclusion that hard words do not, on the whole, carry conviction, but on the contrary, injure the cause it was intended they should promote. So I shall use soft words only and say that it appears to me and to the few surviving friends who were employed with me for several years on

the Settlement of Orissa that you have been a little misinformed when you say that the Authorities of the present day are now for the first time attempting to do justice to Orissa.

Previous to 1835 an attempt had been made to do justice to parts of orissa. Khoorda had been settled by William Wilkinson and he had established among a people who had twice risen in rebellion against us, a character for resolution, jusice and loving-kindess, which lives to this day. If ever on this earth an attempt to do justice was made and made with success, it was the settlement of Khoordah by Wilkinson. He has been dead many years but his name is as familiar to the people of Khoorda and Pooree as the name of Juggernath and comands the respect equally of Mahomedans and Hindus.

In 1835 the settlement of the remaining districts of Orissa was made over to me as Commissioner and the District officers. It was determined to settle the province in conformity with the provisions of Regulatien 7 of 1822 and 9 of 1833. To use the words of the preamble to Regulation 7 of 1822 "It was the wish and intention of Government that, in reviewing the existing Settelment, the efforts of the Revenue Officers should chiefly be directed not to any general and extensive enbancement of the jumma but to the objects of equalising the public burthens and of ascertaining, settling and recording the rights, interests, privileges and properties of all persons and classes owning, occupying managing or cultivating the land" Here was an attempt on the part of the Government to do justice to Orissa! The

duty of carrying out the wish was entrusted to us. We were heartily and right honestly and ably helped by many native Assistants. We ascertained and recorded the rights and interests of all classes. The Settlement when made was again and again approved by the Authorities in India and in England. All classes of the people acquiesced. On the expiration of the 30 years term, it was renewed for another term of 30 years without a single alteration.

I must not speak of our attempt to do justice to Orissa as I have spoken of Wilkinson's attempts. Neither you nor your readers would regard my representations as conveying any proof of success, but I may quote the evidence of unconcerned witnesses, recorded at different times under varied circumstances which must I think tell those who care to know the truth that an attempt was made to do justice to Orissa, and not altogether without success.

Dr. W. Hunter in his work on Orissa published in 1872 writes : Putting aside very quietly the theories of distant bureaucrats the local officers Proceeded to laboriously construct a system in accordance with actual fact —. The result of this system has been to render land an intensely marketable article in Orissa. The thirty years Settlement of 1836 gave a definite market value to the soil, a value which the renewal of that settlement in 1866 has greatly increased ... ... ... ..., It became the ambition of every well-to do peasant and shopkeeper to buy land, instead of burying their little hoards of money under their floors they invested them in the purchase of two or three fields.

Land is now as marketable an article in Orissa as paddy or piece goods. ... ... ... . Under native rule the quasi proprietory right was never worth above three year's purchase. When we obtained Orissa the soil was worth only the amount that could be realised from the crop standing on it, land in Orissa now sells for 15 years Purchase and upwards. ... ... ... . After various suggestions and experiments it was determined to place the cultivator's right ef occupancy on precisely the same footing as the landowner's right of ownership by giving him a title direct from Government. Accordingly at the Settlement of 1836 all resident tenants and hereditory cultivators of whatever sort who chose to apply received a palm-leaf lease stating the quantity of land and the rent. Not-with-standing the great increase of population about a third of the husbandmen are still supposed to hold their land on this firm tenure. In Orissa they ( the manuscript archives ) disclose the process which has converted the most persistently troublesome province of the Mogul Empire into the most peaceful one of our own. Every class connected with the soil has found its title strengthened by contact with British rule. What were formerly uncertain claims have grown into valuable marketable rights. By a wise limitation of our State-ownership we have reared up a permanent proprietory body composed of mutually hostile classes but each of which, from the great Seigneurs down to the resident husbandmen, holds its lands under documents issued by British Officials. While therefore the structure has its foundation

on the depths of immemorial usage it stands above ground as a conspicuous and beneficent creation of English Rule"

Such is the evidence of Dr. Hunter. He never has been concerned in the management of the province. He knows nothing of those who made the Settlement. He certainly had no object in recording anything but the plain truth.

The Commissioners appointed to enquire into the famine of 1866 are even more earnest in their praise of the settlement. They write "Thirty years ago a temporary Settlement, almost more minute and careful than that of the North-Western Province, was made by most able and experienced men, perhaps more than any Settlement which has been made in India, it stereotyped the rights of all classes high and low as they actually existed.

The record of the rights made at the Setlement seems to have given great satisfaction to all parties and the apportionment of the assessment appears also to have been good according to the ideas of those days, at the same time we think it must be considered that it was not very light according to modern ideas. The settlement being such as has been described, the country enjoyed great general peace and contentment under it. Comparing our observation of Orissa with all the accounts of very severe famines in other parts of India the apparent escape of the greater part of the

province from agricultural disorganisation of a very lasting character appears very remarkable, and may, we think, be in a great degree owing to the definition and protection of the rights of all classes under the settlement which has lasted nearly 30 years."

If this is not proof that an attempt was made many years ago to do justice to Orissa, and that our whole Government of Orissa has, not been one tale of owe, it is difficult to say where proof is to be looked for. When I visited the province in 1853 on special duty, 14 years after I left it, the reception I met with from the people was by no means such as to make me think that 12 years of my administration among them was held to have been a period of woe. On the contrary the month I spent among them is looked back to as one of the happiest among my happy recollections of India.

Recently it has become know that some of the zemindars of Orissa have been in the habit of imposing illegal cesses upon their ryots, and in some cases have entirely set aside the settlement and levied increased rent. It is proposed to punish them by ejecting them from their Estates, revising the settlement, and holding the Estates, for a period under khas management Whether such proceedings wou'd be legal appears doubtful, but assuredly, the alleged delenquency being proved the punishment would in every respect be most appropriate. All I would say is-donot fall into the mistake so common and so injurious to Government and governed. Do not denounce a

whole class because some among them have shewn themselves to be unworthy ; do not punish many because a few have been guilty of extortion, Make an example of those convicted but continue the accustomed privileges and truth to those against whom no misconduct is proved ; or more -- shew increased confidence in them in as much as they resisted the temptation to which the guilty succumbed.

Perhaps it would have been better had the renewal of the Settlement for another period of 30 years been proceeded by a revision of all engagements but in consequence of the famine, the state of the province was such that the Famine Commissioners declared it to be their opinion that the immediate declaration of the continuance of the existing Settlement as the best arrangement possible, for the circumstances were such that suffieient revision could not be carried out and that the Settlement made with such minuteness and care, if equitable without being very light 30 years ago, must now be light as well as equitable. And so after full discussion, with the sole object of being just to Orissa, the Settlement without any revision was renewed for another period of 30 years.

I ask you then to do us justice. For upwards of 30 years it has been a great pleasure to us to observe approval of our work expressed at various times, in various places, by various classes. It is hard now to be told by THE FRIEND OF INDIA that we did not succeed It is much worse, to be told that

we never tried ———— that the first attempt to do justice to Orissa is being made now !

I am, Sir, your most obedient Servant,
Surbiton, Kingston—Thames, 6th NOV. 1873
Henry Ricketts, (Quondam) Commr. in Orissa. ❊

---

( ୪ର୍ଥ ଭାଗ, ୨୪ । ୧ । ୧୮୭୪, ସଂଖ୍ୟା ୨ )

୬୨୬ ।  ବଙ୍ଗଳାରେ ପେରଟ ହୋର୍‌, ମାର୍ଶମେନ ଓ ଉପ ଉତ୍କଳରେ ସେପର୍‌ ଲେସି, ବକ୍‌ଲ ଓ ସଚ୍ଚନ । ଅବଗତ ହେଲୁଁ ସେହ୍ନାସ୍ପଦ ରେବରେଣ୍ଡ ବକ୍‌ଲ ସାହେବ ବିଲାତକୁ ଯିବାର ବାସନା କରୁଅଛନ୍ତି । ଆମ୍ଭେମାନେ ବକ୍‌ଲ ସାହେବଙ୍କୁ କି ଆଉଥରେ ଦେଖିବାକୁ ପାଇବା ? ହାୟରେ, ତାହାଙ୍କ ସେ ମଧୁର ଭାଷା କିଏ କହିବ ! ସେ ସମଭାବତା କାହାର ଉପମେୟ ହେବ ? ଧର୍ମରେ ବକ୍‌ଲ ସାହେବ ପ୍ରକୃତ ଖ୍ରୀଷ୍ଟିୟାନ୍‌, ଦେଶୀୟ ଖ୍ରୀଷ୍ଟୀୟାନଙ୍କର ମନ୍ତ୍ର ହେଲେହେଁ ବକ୍‌ଲ ସାହେବ ହିନ୍ଦୁମାନଙ୍କର ବନ୍ଧୁ, ମୁସଲମାନଙ୍କର ଭ୍ରାତା । ଆମ୍ଭେମାନେ କହୁଅଛୁ ଯେ, ରେବରେଣ୍ଡ ବକ୍‌ଲ ସାହେବ ଓଡ଼ିଶାର ସ୍ମରଣୀୟ ପଦାର୍ଥ ।

---

❊ Cf. Appendix. A

୭୨୨ । ଆମ୍ଭେମାନେ ଅବଗତ ହେଲୁଁ ଯେ ତୋମପଡ଼ା ପ୍ରଜା ବଦୋବସ୍ତ ପୂର୍ବପରି ରହିଅଛି, ପ୍ରଜାମାନେ ରାଜାଙ୍କୁ କର ଦେଉନାହାନ୍ତି । ଏ ଗୋଳଯୋଗର କାରଣ କଣ ? ଶ୍ରୀଯୁକ୍ତ ବମସ୍ ସାହେବଙ୍କ ପରି ବିଚକ୍ଷଣ ଲୋକ ଯେବେ ଏ ସାମାନ୍ୟ କଥାର ନିଷ୍ପତ୍ତି କରି ନପାରିଲେ ତେବେ ଯେ ଆଉ କିଏ ଏ କଥା ସନ୍ତୋଷ କରିବ ଆମ୍ଭେମାନେ କହି ନପାରୁଁ । ତୋମପଡ଼ାଟି କିରୂପ ମହାଲ ? ସେ କି ମୋଗଲବନ୍ଦି, କିମ୍ବା କି ଗଡ଼ଜାତ ପରି ?

ଇଂରେଜଙ୍କ ଅମଳଦାରିରେ ମୋଗଲବନ୍ଦିର ରାଜା ଓ ଜମିଦାର-ମାନେ ଲୋପକୁ ପ୍ରାପ୍ତହେଲେ ଏହାର କାରଣ କି ? ଅବଶେଷରେ ଗଡ଼ଜାତର ରାଜ୍ୟ କି ଯାହାର ବାର୍ଷିକ ଆୟୁ ଲକ୍ଷାଧିକଟଙ୍କା ସେ ପାଞ୍ଚଲକ୍ଷ ଟଙ୍କାକୁ ନିଲାମ ହେଲା, ଏଟି କାହା ଦୋଷରୁ ? ଗଡ଼ଜାତ ରାଜା ଏବେ ମୋକଦ୍ଦମାରେ ଜଡ଼ିତ ଅଛନ୍ତି । ଗୋଟିଏ ମୋକଦ୍ଦମା ଯାହା ହେଲା ତାହା ପାଠକମାନଙ୍କ ଅବିଦିତ ନାହିଁ । ଏବେ ଆଉ ଗୋଟିଏ ମାମଲା ଦାୟେର ଅଛି । ଦେଖାଯାଉ ଦେବତାମାନଙ୍କର କେବଳ ଜଳ ବାୟୁରେ ଜୀବ ନିଷ୍ପତ୍ତି ହେବାକୁ ହୁଏ ନାହିଁ ।

## ଗତବର୍ଷର ସମାଲୋଚନା

( ଗତ ପ୍ରକାଶିତର ପର । )

୭୨୮ । ଭୂମି ।

ଗତ ବର୍ଷରେ ଭୂମି ସଂକ୍ରାନ୍ତ ମହାଗୋଳଯୋଗ ହୋଇଅଛି । ଏବର୍ଷରେ ଆବୁଆବ ରୋଗର ଉତ୍ପତ୍ତି । ଜମିଦାର ଶତ୍ରୁତା । ପ୍ରଜା ମହାରାଣୀଙ୍କର, ମହାରାଣୀ ପ୍ରଜାଙ୍କର । ପାବନାର ପ୍ରଜାମାନଙ୍କର ଗୋଳଯୋଗ ଓଡ଼ିଶାର ତୋମପଡ଼ାର ପ୍ରକାଶ । ଯାହାହେଉ ଓଡ଼ିଶାର ଦୋହାଇରୁ ଓ ଏକ୍ଟିଙ୍ଗ ସେକ୍ରେଟରୀଙ୍କ ସହାୟତାରେ ବଙ୍ଗଳାର ଜମିଦାରମାନେ ବଞ୍ଚିଗଲେ । ଓଡ଼ିଶାର ଦୋହାଇରେ ଓ ଓଡ଼ିଶାର ଛିଡ଼ରେ ବଙ୍ଗଳାର ଦୁର୍ଭିକ୍ଷରେ ଅନେକ ଉପକାର ହେବାର ସମ୍ଭାବନା ଇହା କହିଲେ ଅତ୍ୟୁକ୍ତି ହେବନାହିଁ । ଲର୍ଡ ନର୍ଥବ୍ରୁକ ଭୂମିସଂକ୍ରାନ୍ତ ବିଷୟରେ ଉତ୍ତମ ଅବଗତ ହେବାର ଦେଖାଯାଏ କାରଣ ସେ ବୁଝିପାରି ଅଛନ୍ତି ଯେ ପ୍ରଜାଙ୍କୁ ଭୂମିକର ଅସହ୍ୟ ହେଲାଣି, ବୃଦ୍ଧିର ଉପାୟ ନାହିଁ ବରଂ ଲଘୁହେଲେ ପ୍ରଜାମାନେ ସନ୍ତୋଷ ହେବେ, ଜମିଦାରମାନେ କଷ୍ଟର ଓ ଉତ୍କଳ କି ଯହିଁରେ ଜମିଦାରମାନଙ୍କ ସତ୍ତ୍ୱ ନାହିଁ ସେମାନେ କି ଯୋଗରେ ଛାଡ଼ ପାଇବାର ଉଚିତ ଅବଶ୍ୟ ଛାଡ଼ ପାଇ ନ ପାରନ୍ତି ? ଗବର୍ଣ୍ଣମେଣ୍ଟଙ୍କୁ

ବିବେଚନା କରିବାର ଉଚିତ ଯେ ଛାଡ଼ି ନଦେଲେ ପ୍ରଜାମାନଙ୍କର କଷ୍ଟ । ବିଦେଶୀମାନେ କି ସନ୍ଧାନତ୍ୱ ବୁଝିପାରନ୍ତି ? ଆମ୍ଭେମାନେ **ବିଦେଶୀ**ଙ୍କ କଥା ଗ୍ରହଣୀୟ ହୃଦୟ ମଧ୍ୟରେ ରଖିଅଛୁଁ । ଗତ ଥର **ବିଦେଶୀ** କହିଛନ୍ତି ଯେ ଓଡ଼ିଶାର ଜମିଦାରମାନେ ତହସିଲଦାର **ବିଦେଶୀ**ଙ୍କୁ କହନ୍ତୁ ଯେ ସେ **ପୁନ** କଥା ଶୁଣନ୍ତୁ ନଚେତ୍ ନିମ୍ନସ୍ଥ ପାଠ କରନ୍ତୁ । ରିକେଟ୍ସ୍ ସାହେବ ରିପୋର୍ଟ କରିଅଛନ୍ତି ଯେ —

"Unless I entirely misunderstand the meaning and intent of the proclamation of 1805, pro prietory right was vested in those who were admitted to engage direct with Government for the revenue of the Estates or villages of which they held possession under the Mahartta sway. The whole of the Bengal Revenue Regulations having been extended to Cuttack by section 36, Regulation XII of 1805, the zemindaree tenuers then created became similar to the superior tenures of Bengal, and the authority of the zemindars over their under-tenants restricted as in that province, they were vested with all the privileges and authority of proprietors, subject only to the limitation to be found in the Bengal Protecting Regulations."

ଯଦି ଓଡ଼ିଶାର ଜମିଦାରମାନେ ଭୂମିର ସ୍ୱତ୍ୱାଧିକାରୀ ହୁଅନ୍ତି ତେବେ ଆଉ କଏ ? ବିଦେଶୀ କମିଶନର ମିକଜଏଲ ସାହେବଙ୍କ କଥା ଥରେ ମନଦେଇ ଶୁଣନ୍ତୁ—

"If the proprietory right, which, if not created, was guaranteed by our regulations to the persons engaging as zemindars, is to be preserved as inviolable as good faith demands, no such partition as that declared by the collecctor of central Cuttack can be upheld, for it at once annihilates malikana as far as

zemindar is concerned, that it divests him of the profits of a proprietor and turns him into a mere tehsildar or gatherer of tax on wages of 7½% out of which he may have to pay tullubana, may have his personal property sold, may have his zemindari sold and may go to jail, all for 7½% while the Moquddam who draws 22½%, goes intact unless after prosecution in a summary suit that may be on the file for years. The English terms landholder, landlord, proprietor, all of which have been used in the Regulations when speaking of zemindars or the malikhan zemin, are very much at variance with that interference and interposition between landlord and tenant which has been and continue to be exercised. This Government, although as fully empowered to legislate for and between the two parties of landlord and tenant as is the British parliament to pass an Act against the payment of wages in kind, had no more assumed to iteslf the right of declaring how much the tenant should pay to the landlord than the British Parliament has said what amount of wages shall be paid to work people. Until Regulation XII of 1822, when a declaration was published that collectors should (after survey and inspection) fix what rates cultivators were to pay to zemindars, from which the latter to receive 20% malikana, besides percentage for the expenses of collection, all the rest going to treasury, it had been left to the landlords and tenants to settle among themselves how much rent was to be paid. This law was in fact to declare Government the actual proprietor, reducing the zemindar to the condition of a

a tehsildar on wages fixed on a rate by percentage ; and if so, there is as much right now to fix that percentage at 7½ as there was to declare it 30, leaving the difference to the (Sub - proprietor I cannot call him) person of the same grade, that is the Moquddum. No man who inherited or purchased an estate can interpret our law as vesting him with anything short of a proprietory right or less than an ownership in the soil, subject to the payment of revenue to the state, the residue being his income. But when Government give up 20 or 30 percent and yet allow that, or the chief portion of it, to be assigned to other than the recorded zemindars, the violation of faith will, in their estimation, be as great, and will be in its effects to them the same, as if the Regulation which constituted proprietory rights had been abrogated and annulled."

ଯଦି ବର୍ତ୍ତମାନ ଗବର୍ଣ୍ଣମେଣ୍ଟ କହନ୍ତି ଯେ ଜମିଦାରମାନଙ୍କର ଭୂମିରେ ସତ୍ୱ ନାହିଁ ତେବେ ଗବର୍ଣ୍ଣମେଣ୍ଟ ସ୍ୱୀକୃତ ଭଙ୍ଗ କରିବେ . ଓ ଲୋକଙ୍କର ତାଙ୍କ କାର୍ଯ୍ୟ ଉପରେ ଯେଉଁ ଅବିଶ୍ୱାସ ଜନ୍ମିଅଛି ତାହା ଗୁରୁତର ହୋଇ ଉଠିବ । ଏଥିରେ ଯଦି **ବିଦେଶୀ** ତାହାଙ୍କର ଭୂଲ ସ୍ୱୀକାର ନକରନ୍ତି ତେବେ ସେ ଆଉ ଗୋଟିଏ ଦେଖନ୍ତୁ ତାହା ଏହି— ✻

Vol 16. 4. 1874 No. 7.

୬୨୯ । ଲାଙ୍ଗୁଲି ହନୁମାନ ଦେବଙ୍କ ସମ୍ମୁଖ ଲାଲବାଗ କଚେରୀ ଘାଟ ଜାରି ଥିଲା । ସେଠାରେ ବଡ଼ ସାହେବଙ୍କ ବାସସ୍ଥାନ ଥିଲା, ସେ ଘାଟ ଜାରିଥିଲା । ଗବର୍ଣ୍ଣମେଣ୍ଟ ସେ ଘର କ୍ରୟକରି କଚେରି କରିବା ଦିନରୁ ଘାଟ ଜାରିଥିଲା ମାତ୍ର ଏବେ ମାଜିଷ୍ଟ୍ରେଟ ସାହେବ ସେ ଘାଟ ବନ୍ଦ କରିଅଛନ୍ତି । ଏଥିରେ ଲୋକମାନଙ୍କର ଯତ୍ପରୋନାସ୍ତି

---

( ✻ The following pages are wanting )

କଷ୍ଟ ହେଉଅଛି । ବାରବର୍ଷ ଯେଉଁ ରାସ୍ତା ଜାଉଥାଏ, ସେ କି ସାଧାରଣ ରାସ୍ତାନୁହେଁ ?

Vol. IV 16. 5. 1874 No. 9

630. Of all the Provinces Orissa is the most unfortunate in many respects particularly in its boundary. The Orissa boundary question has several times attracted the notice of Government. Its boundary has been for many times enlarged and cut short, but it seems that no justice has been done to the Uryah-speaking inhabitants. Orissa under the Lords of Elephants extended from the Tribeni in the Hooghly to the Godaveri in the South and from Sonepur in the west to the Bay. The Sanscrit Koolinga Desa was the recognised Orissa of the Mahomedan conquerors of India. But it appears to some that Chilka Lake on the south forms a well-defined natural boundary. But this argument falls to the ground when we take the language of the people to the south of Chilka into consideration It is a fact that southern migrators of Orissa gave to the country their language and their King and the Dukhini Uryah is the pure Uryah language and a dynastic connection of a southern with a northern Orissa Chieftain is considered most respectable. Telugu is a quite separate language and it is quite distinct from the five northern Brahmanical languages of Northern India. Whatever may be the physical demarcation of Orissa philologically and ethnologically Chilka is not the proper line of demarcation of this 'terra incognita'. It also looks absurd that a part of the southern migrators should reside on the other side of the natural boundary

and the rest sould penetrate to the north and both the factions should at the same time speak the common language. The arrangement on the other hand that the language of Orissa made a reaction to the south by conquest stands not when the southern Uryah is considered to be the model language.

Vol. IV, 16th July 1874 No 13

୬୩୧ । କଟକ ନଗର

ଶ୍ରୀଯୁକ୍ତ ବମସ୍ ସାହେବ କଟକରେ ମାଜିଷ୍ଟ୍ରେଟ ହୋଇ କଟକ ନଗରର ଶ୍ରୀବୃଦ୍ଧି କରିବାରେ ଅନେକ ଯତ୍ନ କରୁଅଛନ୍ତି । ସେ ନିତ୍ୟ ସାୟଂ ପ୍ରାତଃ କାଳରେ ନଗର ଭ୍ରମଣ କରି ନଗରବାସିମାନଙ୍କର ସ୍ୱାସ୍ଥ୍ୟରକ୍ଷା ପକ୍ଷରେ ନାନାନ ଉପାୟମାନ ରଚନା କରୁଅଛନ୍ତି । ଏ ନଗରର ପୁଷ୍କରିଣୀମାନଙ୍କର ସଂସ୍କାର କରି ମେଃ ବମସ୍ ସାହେବ ନଗରବାସିମାନଙ୍କର କୃତଜ୍ଞତାର ପାତ୍ର ହୋଇଅଛନ୍ତି । ରାଜପଥମାନ ସଂସ୍କାର କରିବାରେ ମେଃ ବମସ୍ ସାହେବ ତ୍ରୁଟି କରୁନାହାନ୍ତି ଏବଂ ଯେଉଁମାନେ ଆପଣା ଗୃହ ବର୍ଦ୍ଧନ କରି ରାଜପଥ ଆତ୍ମସାତ୍ କରୁଅଛନ୍ତି ତାହା ପକ୍ଷରେ ତାହାଙ୍କର ତୀକ୍ଷ୍ଣ ଦୃଷ୍ଟି ପଡ଼ୁଅଛି । ଏ ନଗରର ପଥମାନ ଏରୂପ ସଂକୀର୍ଣ୍ଣ ହୋଇଅଛି ଯେ ଦୁଇଗୋଟି ଶକଟ ବିପରୀତ ଦିଗରେ ଗତାୟାତ କଲେ ପଥିକମାନଙ୍କର ଗମନାଗମନ ପକ୍ଷରେ କଷ୍ଟକର ହୋଇପଡ଼େ । ଆମ୍ଭେମାନେ ଭରସା କରୁଁ ଯେ ମାନ୍ୟବର ବମସ୍ ସାହେବ ଯେରୂପ ରାଜପଥ ସଂସ୍କାର କରିବାକୁ ଅଭିଳାଷ କରୁଅଛନ୍ତି, ସେହିପ୍ରକାର ପଥମାନ ପ୍ରସ୍ତର ଦ୍ୱାରା ସଂସ୍କାର ନକଲେ ପୂର୍ବ ନିର୍ମିତ ପଥମାନ ଅବିଳମ୍ବେ ନିତାନ୍ତ ଦୁରବସ୍ଥାକୁ ପ୍ରାପ୍ତ ହେବ । ଏ ନଗରର ଅନେକ ଭୂମ୍ୟାଧିକାରୀମାନେ ଆପଣାର ଭୂମି ପତିତ ରଖିଥିବା ହେତୁରୁ ତହିଁରେ ନାନାପ୍ରକାର ଗଛମାନ ଉତ୍ପନ୍ନ ହୋଇଅଛି ଓ ଲୋକେ ସେ ସ୍ଥାନମାନଙ୍କରେ ବହିର୍ଦେଶ ଯିବାରୁ ଓ ଏ ବର୍ଷା ସମୟରେ ପାଣି ଜମିବାରୁ ସେ ସ୍ଥାନମାନ ନିତାନ୍ତ ଜଘନ୍ୟ ଓ ଅସ୍ୱାସ୍ଥ୍ୟକର ହୋଇ ପଡ଼ୁଅଛି; ଅତଏବ ଉକ୍ତ ସ୍ଥାନମାନଙ୍କ ପ୍ରତି ଆମ୍ଭମାନଙ୍କର ମାଜିଷ୍ଟ୍ରେଟ ସାହେବଙ୍କର ଦୃଷ୍ଟି ପଡ଼ିବାର ଉଚିତ । ଏ ନଗରରେ ଲୋକେ ସାଧାରଣତଃ ଆପଣାର ଗୋବତ୍ସମାନ ଛାଡ଼ିଦେଇ ଥାନ୍ତି ; ସେମାନେ ରାଜପଥରେ ସର୍ବଦା ଭ୍ରମଣ କରନ୍ତି ; ତହିଁରେ ରାଜପଥରେ ଗମନାଗମନ ପକ୍ଷରେ ଦୁରବସ୍ଥା ଓ କଷ୍ଟକର ଓ ମଧ୍ୟ ରାଜପଥ ଅପରିଷ୍କାର ହୁଅଇ ; ଅତଏବ ଏ ବିଷୟରେ ଆମ୍ଭମାନଙ୍କର ମାଜିଷ୍ଟ୍ରେଟଙ୍କର ଦୃଷ୍ଟିପାତ ହେବାର ବିଧେୟ ହେଉଅଛି ।

ବହୁକାଳରୁ ଏ ନଗରର ବର୍ଷାର ଅତିରିକ୍ତ ଜଳର ଗମନାଗମନ ନିମିତ୍ତ ଯେ ପାଣିର ମାହାଣ୍ଟ ଥିଲା ତାହା ବର୍ତ୍ତମାନ ବନ୍ଦ ହେବାରୁ ନାନାନ ସ୍ଥାନରେ ପାଣି ଜମୁଅଛି ଓ ପାଣି ଜମିବାରୁ ନଗରର ସ୍ଥାନେ ୨ ବର୍ଷା ସମୟରେ ନିତାନ୍ତ ଅସ୍ୱାସ୍ଥ୍ୟକର ହୋଇ-ପଡ଼େ; ପ୍ରତିବର୍ଷ ରାଜପଥ ପାର୍ଶ୍ୱରେ ନୟନରୋଚକ ପରିଷ୍କାର ହୁଅଇ ସତ୍ୟ ମାତ୍ର ତହିଁରେ ବର୍ଷାର ଅତିରିକ୍ତ ପାଣି ଉତ୍ତମରୂପେ ନିଃସୃତ ହୁଅଇ ନାହିଁ, କିମ୍ବା ଉକ୍ତ ପାଣି ଅବାଧରେ ପୂର୍ବ ଖୋଦିତ **ସପ୍ତାଙ୍ଗିଲ ଓ ଗୁପ୍ତି ପୁଲରେ** ପଡ଼ଇ ନାହିଁ। ପୂର୍ବେ ଲାଲବାଗ ହତାଠାରୁଁ ଉପର ଉକ୍ତ ଦୁଇଗିଲରେ ନଗରର ଯାବତୀୟ ପାଣି ଅବାଧରେ ନିର୍ଗତ ହେଉଥିଲା; ବର୍ତ୍ତମାନ ସ୍ୱାଭାବିକ ପାଣିପଥ ବନ୍ଦ ହେବାରୁ ଯେଉଁ ବର୍ଷ ଅତିରିକ୍ତ ବର୍ଷା ହୁଅଇ ସେ ବର୍ଷ ଉକ୍ତ ପଥ ପାର୍ଶ୍ୱ ଗୃହମାନ ଭଗ୍ନ ହୁଅଇ। ଅତଏବ ଆମ୍ଭମାନଙ୍କର ମାଜିଷ୍ଟ୍ରେଟ ନାନାନ କାର୍ଯ୍ୟ ଦ୍ୱାରା ଏ ଯେରୂପ ନଗରର ଶୋଭାବର୍ଦ୍ଧନ କରଅଛନ୍ତି ଓ ଯେରୂପ ଏ ନଗରସ୍ଥ ଜୁମା ମସଜିଦ୍ ନିକଟବର୍ତ୍ତୀ ଗୃହମାନ ଭଗ୍ନ କରି ମସଜିଦ୍‌କୁ ପଥିକମାନଙ୍କର ନୟନଗୋଚର କରି ବାଲୁବଜାରର ଶୋଭାବର୍ଦ୍ଧନ କରିଅଛନ୍ତି ସେହିପ୍ରକାର ଉକ୍ତ ଗିଲମାନ ପରିଷ୍କାର କରି ମେଃ ବିମସ୍ ସାହେବ ନଗରର ଶୋଭା-ବର୍ଦ୍ଧନ କରନ୍ତୁ ଓ ଲୋକମାନଙ୍କର ସ୍ୱାସ୍ଥ୍ୟରକ୍ଷା ପକ୍ଷରେ ଯତ୍ନ କରନ୍ତୁ; ଏହି ଆମ୍ଭ-ମାନଙ୍କର ଇଚ୍ଛା।

୬୩୨। ପ୍ରେରିତ ପତ୍ର

ମାନ୍ୟବର ଉତ୍କଳ ହିତୈଷିଣୀ ସମ୍ପାଦକ ମହାଶୟ, ସମୀପେଷୁ

ବର୍ତ୍ତମାନ ଏହି କଟକ ନଗରରେ ଯେ ଦିନକୁ ଦିନ ସମାଜର ଉନ୍ନତି ହେଉଅଛି, ଏହା ଦେଶ ପକ୍ଷରେ ମଙ୍ଗଳଜନକ ବ୍ୟାପାର ଅଟେ। କିଛିଦିନ ହେଲି ଉର୍ଦ୍ଦୁ ସ୍କୁଲରେ ଜ୍ଞାନଦାୟିନୀ ନାମକ ସଭାର ବାର୍ଷିକ ଅଧିବେଶନ ହୋଇଥିଲା, ସେହି ମନ୍ଦିରରେ ଆଧୁନିକ ଅନେକ ଶିକ୍ଷିତ ଯୁବକବୃନ୍ଦ ଉପସ୍ଥିତ ଥିଲେ। ସଭାର କାର୍ଯ୍ୟ ଉତ୍ତମରୂପେ ନିର୍ବାହ ହେଲା। ସଭାଟି ହାଇସ୍କୁଲର କେତେକ ଛାତ୍ରଙ୍କ ଦ୍ୱାରା ଚଳୁଅଛି ଏବଂ ସଭାଦ୍ୱାରା ଗୋଟିଏ ବିଦ୍ୟାଳୟ ମଧ୍ୟ ହୋଇଅଛି। ଦୁଃଖର ବିଷୟ ଏହି ଯେ ଏତଦ୍ଦେଶୀୟ ବଡ଼ ୨ ଲୋକମାନେ ଆମନ୍ତ୍ରିତ ହେଲେ ମଧ୍ୟ କେହି ଏଠାକୁ ଆଗମନ କରି ନଥିଲେ।

ଉତ୍କଳ ଭାଷୋଦ୍ଦୀପିକା ସଭାର ବାର୍ଷିକ ଅଧିବେଶନ ପ୍ରିଣ୍ଟିଂ କୁମ୍ପାନୀଙ୍କ ଯନ୍ତ୍ରାଳୟରେ ଚଳିତମାସ ତା୯ରିଖ ଦିନ ହୋଇଥିଲା। ଏକ ମହାତ୍ମା ସାଧୁଚରଣଙ୍କ ଦ୍ୱାରା ମନୋନୀତ ହୋଇ ସଭାପତିଙ୍କ ଆସନ ଗ୍ରହଣ କଲେ। ସଭାପତିଙ୍କ ମୁଖରୁ କେବଳ

ବଙ୍ଗ ଭାଷା ବାହାର ହୁଏ, ସେତେବେଳେ ମୋ ମନରେ ନାନାରୂପ ଭାବ ଉଦୟ ହେଲା । ଏ କେତେ ଉତ୍କଳ ଭାଷୋଚ୍ଛେଦିଣୀ ପୁଣି ସଭାପତି ଜଣେ ଏତଦ୍ଦେଶୀୟ ପ୍ରକୃତ ଓଡ଼ିଆ । ହେଲେ ସଭାର କାର୍ଯ୍ୟ ସମସ୍ତରେ ବଙ୍ଗଭାଷା ବ୍ୟବହାର କରୁଅଛନ୍ତି, ଏହାଠାରୁ ଆଉ ବଳି କଅଣ ଗର୍ହିତ କାର୍ଯ୍ୟ କି ଅଛି ? ସଭ୍ୟମାନଙ୍କରେ ସଭାପତିଙ୍କ ସ୍ୱାର୍ଥ ହେଉଁ କାର୍ଯ୍ୟ ସାଧିତ ହୁଏ ସେ ଦିବସ ଉକ୍ତ ସଭାରେ ଆମ୍ଭେ ତାହା କିଛି ଦେଖିଲୁ ନାହିଁ । ସାଧାରଣ ସଭ୍ୟବୃନ୍ଦ ଏଥିରେ ଶଙ୍କାଗ୍ରସ୍ତ ହେଲପରି ବୋଧ ହେଲା । ଆଉ ଯେଉଁମାନେ ଦେଶହିତୈଷୀ ବୋଲି ଲୋକେ କହୁଥାନ୍ତି ସେମାନଙ୍କ ମଧ୍ୟରେ କେହି ଦେଖାନଥିଲେ କିମ୍ବା ତହାର ଦେଉନଥିଲେ । ଏହିମାନେ ସବୁ ଦେଶହିତୈଷୀ ?

କଟକ — ଜଣେ ଦର୍ଶକ

୧୩ । ୨ । ୭୪

Vol. IV, 16. 12. 1874, No. 23

633. Orissa is most indigent of all provinces of India. The main cause that can be assigned for her poverty is the backwardness of trade and the inconvenient means of carrying it on. By the assistance of our enlightened and benign British Government commerce is now a days found to thrive in other parts of India and to ameliorate the condition of the people, we mean by connecting different provinces of India by railway lines, the Government has encouraged the people to carry on trade on a large scale ; but what is done for Orissa ? Although Orissa abounds with many articles of merchandise by the blessing of the Almighty she is most unlucky in obtaining encouragement and favour from the Government. Certainly she has many products and some manufactures that can be exported to foreign markets for sale, but not the suitable means

which would stimulate her sons to engage in the matter in quetions. On the other hand she is in need of many of the products and manufactures of the other provinces of India but being destitute of the safest means of traffic, she has not the fortune to enjoy them in full extent, for a trader of the North Western Province or Punjab labors under great difficulties and incurs much unnecessary expense in conveying his goods to Cuttack; and does not therefore expect to profit comparatively to the same degree as he does from his trade with the other Provinces. This is a discouraging thing after all. A Railway would clear off all the incoveniences and act upon the people in the shape of a stimulant to trade. A few years age when the broad question of uniting all the different provinces of India by the construction of Railways was mooted by the Government of India, Mr. Whitten ardently seconded the scheme and submitted his plan showing therein the different places that might be connected at a moderate cost. Unfortunately for Orissa the matter in question was preceded by the Irrigation Canal project which was at last put into execution. It was undertaken by the Irrigation and Canal Company but within a short time the Company became bankrupt, the work was conveniently purchased at an enormous cost by the British Government. The High Level Canal which would be serviceable to the country is still incomplete and the branch Canals which have been dug out with the view of irrigating lands, though very plausible in theory have not proved so useful in practice for the country is all over intersected with rivers and requires little artificial

watering. But on the other hand they prove useful in some other direction by tending in a great measure to fecilitcte export and import articles of merchandise from False point to Cuttack. We feel much obliged to the Government for the construction of the Chandbali Road which has promoted commerce in a great degree and afforded every means of communication between Orissa and Bengal. Benefit from extension of Railway lines is expected to surpass all the combined benefits that are now beings derived from these means. Cannot Orissa expect such an indulgence from her Rulers when her sister provinces are increasing in prosperity through commercial channels ? She can equally claim the attention of her merchandise rulers and can pay by degrees for all the consideration that she will have from them. Sir Richard Temple is the first Governor who visited Orissa in the early part of his reign actuated no doubt with good motives. In the grand Durbar held here on the 25th ultimo, His Honour advised the Garjat Rajahs, among other things to construct good roads in their respective dominions for promoting commerce and rendering the communication between the men of the highlands and the plains easy and commodious. Such roads will undoubtedly do some good to the limited few but can by no means improve the condition of the people at large of Orissa unless His Honour inaugurates the work of road-laying for which he has been memorialised by the extension of the railroad from Sambalpore to False Point a distance of about 230 miles via Sonepore and Cuttack This

road will establish commercial relations among the different towns of the Garjat Mahals and save the Government from much expense, as the existing road from Harabhanga to Burmool is a plain rocky road excavated from the Hills at an enormous cost.

---

# APPENDIX- A

(Opinion of John Beams on Dr. Hunter)

"About this time we received a visit from that vivacious but not very accurate writer, Dr. W. W Hunter, who during a stay of seven days subjected me to such an unceasing fire of questions that on his departure I solemnly forbade any one to ask me any more questions."

× × ×

"Hunter's Orissa in two volumes, was the result of his visit. It is a clever, brilliantly written work, though containing many inaccuracies. I supplied him with a mass of facts, and so did the Collectors of Cuttack and Puri, but he put all our contributions into an Appendix in small type and made very little use of them in the text of his work."

---

( Memoirs of a Bengal Civilian, P.197 )

# APPENDIX— B

Memoirs of a Bengal Civilian.

( Autobiography of John Beames )

( pp. 232 - 234 )

Starting of a new Market at Cuttack.

( 1874 )

Meanwhile I was busy with improvements in the town of Cuttack. The old market, a strange, ill-arranged mass of low, dark, stone vaults had fallen into the hands of a close corporation of Koyals, as they were called. The word means 'weighers', and their function under the native Government had been to weigh all grains brought to market. No sales could take place unless the grain was weighed by these men, who levied a small fee for the service and paid a few to the native ruler for the appointment. They acquired power by degrees, as in India such middlemen always do, and presumed to regulate the market rates and prices and in many ways interfere with business, tyranize our traders, demand heavy payments on various pretexts and in many ways oppress and defraud the people. When I proposed to rebuild their market

they objected and produced an ancient document granting them the proprietory right in the building. It was impossible to say whether this document was genuine or not (probably not) but when I consulted the law officers, I was advised that there was no legal means of contending it, as through the carelessness of former Collectors the Koyals had been allowed to remain in possession long enough to establish a prescriptive right to the buildings, as well as to the exclusive exercise of their functions. This market was built against the outer side of the great wall surrounding the park in which Lal Bagh - the Commissioner's residence - stood. Attached to this ancient wall, and dating from the sixteenth century or earlier, there were several other half ruined ancient buildings empty and disused. strange, tall, gloomy structures of dark red stone. I at first thought of making use of these for an opposition market, but they were found to be too ruinous to be put into repair and inconveniently shaped and situated. So I had to search elsewhere and at length, at the eastern end of the town - the old market was at the wstern end - I found a large, neglected patch of ground grown over with jungle which was said to have been the site of the Maratha Government's Law Courts. It was the property of the Government, so I could do what I liked with it. On clearing the jungle and digging up the soil the workmen came upon six or seven beautifully carved capitals of pillars and by degrees unearthed the drums of pillars themselves, together with numerous finely carved fragments of sandstone and great quantities of laterite

blocks which had evidently been used for building. With these materials I set to work and designed a handsome market which was built on this site. It was of laterite, a lofty hall with chambers for warehousing grain, and in front a long, wide portico supported by pillars above-mentioned which were duly priced together. A little on one side we found a deep ancient tank lined with laterite and adorned with carvings of gods, goddesses, men and animals. All this was restored, cleaned out the tank, rebuilt the ghats or steps and made a very handsome place of it. I put an inscription over the front of the market house and opened it as a public market free from all interference of the Koyals, In India one never remains long enough in any place to see the fruits of one's work. I donot know whether the new market was successful or not. It began well and was doing well as long as I remained in Cuttack.

---

# ପ୍ରବୋଧ ଚନ୍ଦ୍ରିକା

( ସନ ୧୮୫୭ସାଲ, ଡିସେମ୍ବର, ସଂଖ୍ୟା ୨୪ )

୧ । ଶିକ୍ଷାକମିଶ୍ଡ ମଞ୍ଜୁର ।

ଖୋରଧା ଜିଲ୍ଲାର ନୂତନ ବନ୍ଦୋବସ୍ତ ହୋଇ ଯେଉଁ ଜମା ଧାର୍ଯ୍ୟ ହୋଇଅଛି ସେଥି ମଧ୍ୟରୁ ଶ୍ରୀଯୁକ୍ତ କମିଶନର ସାହେବଙ୍କ ପରାମର୍ଶ ଅନୁସାରେ ବାର୍ଷିକ ୫୧୮୦ଙ୍କା ସ୍କୁଲମାନଙ୍କରେ ଖରଚ ହେବା ଲାଗି ଗବର୍ଣ୍ଣମେଣ୍ଟ ସମ୍ମତି ପ୍ରକାଶ କରି-ଅଛନ୍ତି ।

---

# ଉତ୍କଳ ଦୀପିକା

( ୧ମ ଭାଗ, ୧୧ । ୮ । ୧୮୬୬, ସଂଖ୍ୟା ୨ )

୨ । ପ୍ରେରିତ ପତ୍ର ।

× × । ଆମ୍ଭ ନିବାସ ଭୂମି ମହାଗ୍ରାମ ଯାହାକି ମାହାଙ୍ଗା ନାମରେ ସଦର୍ଵତର ବିଖ୍ୟାତ ଅଛି ସେଠାରେ ଗୋଟିଏ

ଇଙ୍ଗରାଜୀ ବାଳୋତ୍ସାହ ଇସ୍କୁଲ ଗତ ଦୁଇ ବର୍ଷର ସ୍ଥାପନ ହୋଇଥିବାର ଆପଣଙ୍କ ମଧ୍ୟ ଗୋଚରରେ ଥିବ । × ×

କଟକ
୨।୮।୧୮୬୬

ଶ୍ରୀ ଜଗମୋହନ ଲାଲ
ଇସ୍କୁଲ ସେକ୍ରେଟରୀ

## ( ୨ୟ ଭାଗ, ୫।୧।୧୮୬୭, ସଂଖ୍ୟା ୧ )

୩ । କଟକ ସ୍କୁଲ ମେମ୍ବର ।

ଶ୍ରୀଯୁକ୍ତ ଡବଲିଉ. ସି. ଲେସି ସାହେବ କଟକ ସ୍କୁଲର ଜଣେ ମେମ୍ବର ନିଯୁକ୍ତ ହୋଇଅଛନ୍ତି ।

## ( ୨ୟ ଭାଗ, ୧୨।୧।୧୮୬୭, ସଂଖ୍ୟା ୨ )

୪ । ପ୍ରବେଶିକା ପରୀକ୍ଷା ଫଳ ।

ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାର ଫଳାଫଳ ପ୍ରକାଶ ହୋଇଅଛି । କଟକରେ ଜ[illegible]ଣ ବାଲେଶ୍ୱରରେ ଦୁଇଜଣ ଓ ପୁରୀରେ ୧ ଜଣ ପରୀକ୍ଷାର୍ଥୀ ଥିଲେ । ଏଥି ମଧ୍ୟରୁ କେବଳ କଟକର ୩ଜଣ ପରୀକ୍ଷୋତ୍ତୀର୍ଣ୍ଣ ହୋଇଅଛନ୍ତି । ଏ ତିନି ଜଣଙ୍କ ମଧ୍ୟରୁ ସୁଦ୍ଧା କେହି ପ୍ରଥମ ବିଭାଗରେ ନାହାନ୍ତି । ପରୀକ୍ଷାର ଫଳ ଅତିଶୟ ଅସନ୍ତୋଷ ଜନକ ଓ ଶିକ୍ଷକମାନଙ୍କର ପ୍ରଶଂସାର ବିଷୟ ନୁହେ ।

କଟକର ତିନିଜଣଙ୍କ ମଧ୍ୟରୁ
ଦୁର୍ଗାପ୍ରସାଦ ସିଂହ — ଦ୍ୱିତୀୟ ବିଭାଗ
ଅନ୍ତର୍ଯ୍ୟାମୀ ପଟ୍ଟନାୟକ — ତୃତୀୟ ବିଭାଗ
ବଳଭଦ୍ର ରାୟ — ତୃତୀୟ ବିଭାଗ

## ( ୨ୟ ଭାଗ, ୨୬।୧। ୧୮୬୭, ସଂଖ୍ୟା ୪ )

୫ । ସାପ୍ତାହିକ ସମ୍ବାଦ ।

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ଜଣାଉଅଛୁଁ ଯେ ଓଡ଼ିଶା ପ୍ରଦେଶର ସ୍କୁଲ ସମୂହ ନିମିତ୍ତ ଓଡ଼ିଆ ପୁସ୍ତକ ପ୍ରସ୍ତୁତ ଓ ମୁଦ୍ରିତ କାରଣ ଏକ ସମାଜ

ହୋଇଅଛି । କଲିକତା ସ୍କୁଲ ବୁକ ସୋସାଇଟିର ଆଦର୍ଶରେ ଏ ସଭା ସ୍ଥାପନ ହୋଇ-
ଅଛି ଓ ଏଥିର ନାମ କଟକ ସ୍କୁଲବୁକ କମିଟି ହୋଇଅଛି । ଗତ ଗୁରୁବାର ସନ୍ଧ୍ୟା
ସମୟରେ ଶ୍ରୀଯୁକ୍ତ ବାବୁ କାଳିପଦ ବନ୍ଦୋପାଧ୍ୟାୟଙ୍କ ବଇଠକ ଖାନାରେ ଉକ୍ତ ବାବୁଙ୍କ
ନିମନ୍ତ୍ରଣାନୁସାରେ ଏ ନଗରର କେତେକ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଏଥିର ଅନୁଷ୍ଠାନ
କରିଅଛନ୍ତି । ଏ କମିଟିର ମୂଳଧନ ଆପାତତଃ ଟ ୧୩୦୦୦ ସ୍ଥିର ହୋଇ ପ୍ରତିଅଂଶ
ଟ ୧୦୦ଙ୍କା ଲେଖାଏଁ ଅଂ ୧୩୦ ଶରେ ବିଭକ୍ତ ହୋଇଅଛି । ଏଥିମଧ୍ୟରୁ ପ୍ରାୟ ଅଂ ୭୦ ଶ
ତତ୍କ୍ଷଣାତ୍ ଉପସ୍ଥିତ ସଭ୍ୟମାନେ ଗ୍ରହଣ କଲେ ଅବଶିଷ୍ଟ ଅଂଶମାନଙ୍କର ଗ୍ରାହକ
ନିମନ୍ତ୍ରଣ ହୋଉଅଛି । ଆମ୍ଭେମାନେ ଭରସା କରୁଁ ଯେ ଉତ୍କଳବାସି ଦେଶହିତୈଷୀ
ମହାଜନମାନେ ଏ ବିଷୟରେ ଯଥୋଚିତ ଅନୁରାଗ ପ୍ରକାଶ ପୂର୍ବକ ଏ କମିଟିର ଅଭି-
ପ୍ରାୟ ସିଦ୍ଧି କରିବେ ଓ ତଦ୍ଦ୍ୱାରା ଉତ୍କଳଭୂମିର ଉନ୍ନତି ପଥରେ ଯତ୍ନବାନ ହେବେ ।
କଟକ ପ୍ରିଣ୍ଟିଂ କମ୍ପାନିକୁ ଉଚିତ ଯେ ଏ ଅନୁଷ୍ଠାନରେ ସେମାନେ ସର୍ବାପେକ୍ଷା
ଅଧିକ ଯତ୍ନବାନ୍ ହେବେ କାରଣ ଏଥିରେ ସେମାନଙ୍କ କଳନା ସିଦ୍ଧ ଓ ଲାଭ ହେବାର
ସମ୍ପୂର୍ଣ୍ଣ ଭରସା ଅଛି ।

୭ । ଶିକ୍ଷା ସମ୍ବନ୍ଧ ୧୮୭୫ ଓ ୧୮୭୬ ସାଲର ବାର୍ଷିକ ରିପୋର୍ଟରେ
ତଳଲିଖିତ ମହାଶୟମାନେ ଓଡ଼ିଶାର ବିଦ୍ୟାଳୟମାନଙ୍କ ଉନ୍ନତି ବିଷୟରେ ବିଶେଷ
ମନୋଯୋଗ କରିଥିବାର ଦକ୍ଷିଣ ପଶ୍ଚିମ ଡିଭିଜନର ଇନସ୍ପେକ୍ଟର ସାହେବ ଲେଖି
ଅଛନ୍ତି ।

ବାବୁ ଜଗମୋହନ ରାୟ ଡେପୁଟି କଲେକ୍ଟର ଓ ମେଜେଷ୍ଟ୍ରେଟ — ଭଦ୍ରକ
,, ହରଚନ୍ଦ୍ର ଘୋଷ ,, ,, — କଟକ
,, ଦୁର୍ଯ୍ୟୋଧନ ଦାସ ,, ,, — କେନ୍ଦ୍ରାପଡ଼ା
,, ପ୍ରସନ୍ନ କୁମାର ଗାଙ୍ଗୁଲି ମୁନସଫ — ଏଜନ
,, ଗୋଲୋକ ଚନ୍ଦ୍ର ବୋଷ ଜମିଦାର — କୁଆଁପାଳ
,, ଈଶାନ ଚନ୍ଦ୍ର ବନ୍ଦୋପାଧ୍ୟାୟ ଉକିଲ — ଜଜ ଅଦାଲତ
,, ଶିବ ପ୍ରସାଦ ସିଂହ ମୁନସଫ — ପୁରୀ

ଦେଖାଯାଏ ଯେ ବିଦ୍ୟାଶିକ୍ଷା ବିଷୟରେ ଅଧିକାଂଶ କେବଳ ସର-
କାରୀ କାର୍ଯ୍ୟକାରକ ମନୋଯୋଗୀ ହୋଇଅଛନ୍ତି । ସରକାରୀ ଚାକରମାନଙ୍କର
ଆଜିକାଲି ଏତେ କର୍ମ କରିବାକୁ ହୁଏ ଯେ ସେମାନଙ୍କର କଚେରୀର କର୍ମ ଛଡ଼ା ଅନ୍ୟ
କର୍ମରେ ମନୋନିବେଶ କରିବାକୁ ବିଶେଷ ଅବସର ନଥାଏ । ଅତଏବ ଜମିଦାର
ମହାଜନ ଓ ଅନ୍ୟାନ୍ୟ ଧନୀ ସମ୍ଭ୍ରାନ୍ତ ସ୍ୱାଧୀନ ବ୍ୟକ୍ତିମାନେ ଯତ୍ନ ନକଲେ ପ୍ରଦେଶର
ବିଦ୍ୟା ଶିକ୍ଷାର ଉନ୍ନତି ହୋଇନପାରେ ।

## ( ୨ୟ ଭାଗ, ୨ । ୩ । ୧୮୭୭, ସଂଖ୍ୟା ୯ )

୭ । ସାପ୍ତାହିକ ସଂବାଦ ।

ଓଡ଼ିଶାରେ ଗୋଟିଏ କଲେଜ କିମ୍ବା ହାଇସ୍କୁଲ ସଂସ୍ଥାପନ ବିଷୟରେ ଗାଟେଲଷ୍ଟରରୁ ଖଣ୍ଡିଏ ପତ୍ର ଆମ୍ଭେମାନେ ପାଇଅଛୁଁ । ଯେତେହେତୁ ଉକ୍ତ ବିଷୟରେ ଗବର୍ଣ୍ଣମେଣ୍ଟ ବିଦ୍ୟାଳୟ ସମୂହର ଡାଇରେକ୍ଟର ବଙ୍ଗଲା ଗବର୍ଣ୍ଣମେଣ୍ଟକୁ ପ୍ରସ୍ତାବ ପଠାଇଅଛନ୍ତି ଓ ତାହାର ବିଚାର ହେଉଅଛି ଏଥିରେ ଭରସା ହୁଅଇ ଯେ ଶୀଘ୍ର ଏ ଦେଶରେ ଗୋଟିଏ କଲେଜ ଅଥବା ହାଇସ୍କୁଲ ସ୍ଥାପନ ହେବ ।

## ( ୨ୟ ଭାଗ, ୧୭ । ୮ । ୧୮୭୭, ସଂଖ୍ୟା ୩୩ )

୮ । ଓଡ଼ିଶାର ହାଇସ୍କୁଲ ।

ଯାହାହେଉ କ୍ରମେ କ୍ରମେ ରାଜପୁରୁଷମାନେ ଓଡ଼ିଶାର ଉନ୍ନତିସାଧନ ପକ୍ଷରେ ଯତ୍ନ କରୁଅଛନ୍ତି । ଏତେ କାଳରେ ଆମ୍ଭେମାନେ ସାଧାରଣ ସାକ୍ଷାତରେ ବ୍ୟକ୍ତ କରି ପାରିଲୁଁ ଯେ ଓଡ଼ିଶା ପ୍ରଦେଶରେ ଗବର୍ଣ୍ଣମେଣ୍ଟ ଗୋଟିଏ ଉଚ୍ଚ ବିଦ୍ୟାଳୟ ସ୍ଥାପନ କରିବାର ଅନୁମତି ଦେଇଅଛନ୍ତି । ଏ ସଂବାଦ ଅତି ଆନନ୍ଦଜନକ ସନ୍ଦେହ ନାହିଁ । ଏ ଉଚ୍ଚ ବିଦ୍ୟାଳୟ କଟକ ହାଇସ୍କୁଲ ନାମରେ ଖ୍ୟାତ ହେବ ଓ କଟକ ନଗରରେ ଏହା ସ୍ଥାପନ ହେବ ଓ ଆସନ୍ତା ଜାନୁଆରୀ ମାସରୁ କାର୍ଯ୍ୟାରମ୍ଭ ହେବ । କର୍ମ ଚଳିବା ନିମିତ୍ତ ଗବର୍ଣ୍ଣମେଣ୍ଟ ତଳଲିଖିତ ମତେ ଶିକ୍ଷକଙ୍କର ବେତନ ଓ ଅନ୍ୟ ଖର୍ଚ୍ଚ ପାଇଁ ଟଙ୍କା ମଞ୍ଜୁର କରିଅଛନ୍ତି । ଯଥା :—

| | | | | | |
|---|---|---|---|---|---|
| ପ୍ରଧାନ ଶିକ୍ଷକ | ମାସିକ | ଟ ୩୦୦୲ | ଷଷ୍ଠ ଶିକ୍ଷକ | ମାସିକ | ଟ ୫୦୲ |
| ଦ୍ୱିତୀୟ ,, | ,, | ଟ ୨୦୦୲ | ସପ୍ତମ ,, | ,, | ଟ ୩୦୲ |
| ତୃତୀୟ ,, | ,, | ଟ ୧୫୦୲ | ଅଷ୍ଟମ ,, | ,, | ଟ ୨୫୲ |
| ଚତୁର୍ଥ ,, | ,, | ଟ ୧୦୦୲ | ପ୍ରଧାନ ପଣ୍ଡିତ | ,, | ଟ ୫୦୲ |
| ପଞ୍ଚମ ,, | ,, | ଟ ୭୫୲ | ଦ୍ୱିତୀୟ ,, | ,, | ଟ ୩୦୲ |

ବାକେ ଖର୍ଚ୍ଚା ମାସିକ ଟ ୧୫୦୲

× × × ×

ସମ୍ପ୍ରତି ଆମ୍ଭେମାନେ ଓଡ଼ିଶା ପ୍ରଦେଶର ଛାତ୍ରମାନଙ୍କୁ କହୁଅଛୁଁ ଯେ କଲିକତାକୁ ନଯାଇ ଉଚ୍ଚଶିକ୍ଷା ପାଇ ପାରିବେ ଏହି ଆଶାରେ ଉତ୍ସାହିତ

ହୋଇ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ଯତ୍ନ କରନ୍ତୁ । ତାହାହେଲେ ଶୀଘ୍ର ହାଇସ୍କୁଲ ସ୍ଥାପନର ଫଳ ଲଭହେବ ।

## ( ୩୩ଶ ଭାଗ, ୪ । ୧ । ୧୮୭୮, ସଂଖ୍ୟା ୧ )

୯ । ଓଡ଼ିଶାରେ ବଙ୍ଗଭାଷାର ଶିକ୍ଷା ।

ଓଡ଼ିଶା ପ୍ରଦେଶର ବିଦ୍ୟାଳୟ ସମ୍ବନ୍ଧ ସତ୍ତ୍ରାନ୍ତର ଏକ ଗୁରୁତର ପ୍ରସ୍ତାବ ସମ୍ପ୍ରତି ବଙ୍ଗଳା ଗବର୍ଣ୍ଣମେଣ୍ଟର ବିବେଚନାଧୀନ ଅଛି । ଶିକ୍ଷା ବିଭାଗର ଡାଇରେକଟର ଏବଂ ଏ ପ୍ରଦେଶର ଇନସ୍ପେକ୍ଟର ଗବର୍ଣ୍ଣମେଣ୍ଟରେ ପ୍ରସ୍ତାବ କରିଅଛନ୍ତି ଯେ ଓଡ଼ିଶାର ସ୍କୁଲ ସମସ୍ତରେ ବଙ୍ଗଭାଷାର ଅଧ୍ୟୟନ ବଳାତ୍କାର ରୂପେ ଚଳନ ହେଉ ଏବଂ ବଙ୍ଗ ପୁସ୍ତକମାନ ଏ ସମସ୍ତ ବିଦ୍ୟାଳୟର ପାଠ୍ୟ ପୁସ୍ତକ ବୋଲି ଧାର୍ଯ୍ୟ ହେଉ । ଗବର୍ଣ୍ଣମେଣ୍ଟ ସହସା ଏପ୍ରସ୍ତାବରେ ସମ୍ମତ ନଦେଇ ଶ୍ରୀଯୁକ୍ତ କମିଶନରଙ୍କ ଅଭିପ୍ରାୟ ଜାଣିବା ସକାଶେ ଏ ବିଷୟର କାଗଜପତ୍ରମାନ ତାହାଙ୍କ ନିକଟକୁ ପଠାଇ ଅଛନ୍ତି ।

ଏରୂପ ପ୍ରସ୍ତାବର ପ୍ରକୃତ ହେତୁ ଅମ୍ଭେମାନେ କିଛି ନପାରୁଁ ଜାଣି । ଡାଇରେକ୍ଟର ଓ ଇନସ୍ପେକ୍ଟର ଗବର୍ଣ୍ଣମେଣ୍ଟରେ କି କି କାରଣ ଦର୍ଶାଇ ଅଛନ୍ତି ତାହା ଆମ୍ଭେମାନେ ଜାଣି ପାରିନାହୁଁ । ଆମ୍ଭମାନଙ୍କୁ ବୋଧହୁଅଇ ଉତ୍କଳରେ ସ୍କୁଲର ଶିକ୍ଷୋପଯୋଗୀ ଅଧିକ ପୁସ୍ତକ ନଥିବାର ପ୍ରାୟ ଏବଂ ହୋଇଅଛି ଅଥବା ଭୂତପୂର୍ବ ଜଣେ ଇନସ୍ପେକ୍ଟର ଯାହା ବ୍ୟକ୍ତକରି ଥିଲେ ଯେ ଉତ୍କଳଭାଷା ଭାଷା ନୁହଇ ସେହି କଥାକୁ ବର୍ତ୍ତମାନ ଉକ୍ତ ପଦରେ ଥିବା କର୍ମଚାରୀ ଗ୍ରହଣ କରିଅଛନ୍ତି । ଯାହାହେଉ ଏ ପ୍ରସ୍ତାବ ଓଡ଼ିଶାର ଭବିଷ୍ୟମଙ୍ଗଳ ଆଶାର ମୂଳୋତ୍ପାଟନ କରିବାର ଉଦ୍ୟମ କରିଅଛି ଏବଂ ଶୀଘ୍ର ଏଥିର ଅନ୍ୟଥା ନହେଲେ ରକ୍ଷାନାହିଁ ।

ଆମ୍ଭେମାନେ ଯେଉଁ ଦୁଇ କାରଣ ଉପରେ କଳ୍ପନା କରିଅଛୁଁ ସେଥି ମଧ୍ୟରୁ କେହି ଯୁକ୍ତିସିଦ୍ଧ ନୁହଇ ତାହା ପାଠକମାନେ ଅବଶ୍ୟ ବୁଝି ପାରିବେ । ବ୍ରିଟିଶ ଅଧିକାର ଏଠାରେ ସ୍ଥାପନ ହେଲାବେଳେ ସେମାନଙ୍କର ସୁଶାସନ ପ୍ରଣାଳୀର ଲୋକମାନେ ନାନାପ୍ରକାର ବିଦ୍ୟା ଓ ଜ୍ଞାନ ଶିକ୍ଷାକଲେ ଓ ଯେ ଯେ ସ୍ଥାନରେ ଏକମାତ୍ର ଲୋକ ଲେଖାପଢ଼ା ଜାଣୁ ନଥିଲେ ସେ ସମସ୍ତ ସ୍ଥାନରେ ସୁଦ୍ଧା ବିଦ୍ୟାଳୟ ସ୍ଥାପନ ଓ ସ୍ଥାନୀୟ ଭାଷାର ପୁସ୍ତକାଦି ରଚନା ଓ ଲିଖନ ପଠନ ହେଉଅଛି । ସେହି ଗବର୍ଣ୍ଣମେଣ୍ଟ ଓଡ଼ିଶା ଦେଶର ଉପକାରାର୍ଥେ ବିଦ୍ୟାଳୟ ସ୍ଥାପନ କରି ଆପଣା ପ୍ରଜାଙ୍କୁ ଶିକ୍ଷିତ କରିବା

କାରଣ ବହୁଳ ଅର୍ଥବ୍ୟୟ କରୁଅଛନ୍ତି କିନ୍ତୁ ଯାହାଙ୍କର ଉପରେ ଶିକ୍ଷାର ଭାର ଅଛି ସେମାନେ ଦେଶର ଭାଷା ଉଠାଇ ଦେବାକୁ ଚେଷ୍ଟା କରୁଅଛନ୍ତି, ଏହା କି ସାମାନ୍ୟ ଦୁଃଖର ବିଷୟ ! ଶିକ୍ଷା ଦେବା ନିମିତ୍ତ ନିଯୁକ୍ତ ଥିବା ବ୍ୟକ୍ତିମାନେ ବିପରୀତ ଆଚରଣ କରି କିପରି ବେତନ ଗ୍ରହଣ କରୁଅଛନ୍ତି ଆମ୍ଭମାନଙ୍କୁ ଏହିମାତ୍ର ଚମତ୍କାର ବୋଧ-ହେଉଅଛି । ବଙ୍ଗଦେଶରେ ଯେତେବେଳେ ପ୍ରଥମ ବିଦ୍ୟାଶିକ୍ଷାର ଆରମ୍ଭ ହେଲା ଓ ଗବର୍ଣ୍ଣମେଣ୍ଟ ବିଦ୍ୟାଳୟମାନ ସ୍ଥାପନ କଲେ ସେତେବେଳେ କି ପାଠୋପଯୋଗୀ ପୁସ୍ତକମାନ ସେ ଦେଶରେ ଥିଲା ? ସେଠାରେ ତ ଅନ୍ୟଭାଷା ଶିକ୍ଷାଦେବାର କେହି ପ୍ରସ୍ତାବ କଲେନାହିଁ । ତେବେ ଏଠାରେ ଏପ୍ରକାର ହେବାର କାରଣ କି ? ଗବର୍ଣ୍ଣ-ମେଣ୍ଟଙ୍କ ଇଚ୍ଛା ଯେ ଆପଣା ଅଧୀନ ସକଳ ଦେଶର ଲୋକଙ୍କୁ ସୁଶିକ୍ଷିତ କରିବେ ଏବଂ ତହିଁରେ ଯେ ସମସ୍ତ ବାଧା ବ୍ୟତିକ୍ରମ ଘଟିବ ତାହା ଖଣ୍ଡନ କରିବେ ମାତ୍ର ଯାହାଙ୍କୁ ଏ କର୍ମର ଭାର ଦେଇ ଅଛନ୍ତି ସେମାନେ ଖଣ୍ଡନ ବିଷୟରେ ଅକ୍ଷମ ଥିବାର କୌଣସି ରୂପେ ଆଶା ଅନ୍ୟ ରକ୍ଷା ନିମିତ୍ତ ସୁବିଧା କରୁଅଛନ୍ତି । ଏତେ ଦିନ ଏଠାରେ ବିଦ୍ୟାଳୟ ସ୍ଥାପନ ହେଲା ଓ ଉତ୍କଳ ପୁସ୍ତକର ଅଭାବ ବିଷୟ ପୁନଃ ପୁନଃ ଡେପୁଟି ଇନସ୍ପେକ୍ଟରମାନେ ଇନସ୍ପେକ୍ଟର ଓ ଡାଇରେକ୍ଟରଙ୍କୁ ଜଣାଇଲେ କିନ୍ତୁ ଅବଧି ସେମାନେ ଭାଷା ପୁସ୍ତକ ରଚନା ବିଷୟରେ କିଛିମାତ୍ର ଉପାୟ କଲେନାହାନ୍ତି ଏବଂ ଅଦ୍ୟାପି ମିସିନରୀମାନେ ଏ ନଗରକୁ ଆସି ନଥାନ୍ତେ ତେବେ ପ୍ରାୟ ଏକଖଣ୍ଡ ପୁସ୍ତକ ଉତ୍କଳ ଭାଷାରେ ଥାନ୍ତା ନାହିଁ, କୌଣସି ବିଷୟ ସାଧନ ପକ୍ଷରେ ଉପାୟ ନକରି ପରିତ୍ୟାଗ କରିବା କାପୁରୁଷର କର୍ମ ଅଟଇ ମାତ୍ର ଦୁଃଖର ବିଷୟ ଯେ ଜ୍ଞାନବାନ କର୍ମ-କର୍ତ୍ତାମାନେ ପାଠଶାଳାର ପିଲାର ଆଚରଣ ଧରିଅଛନ୍ତି ଅର୍ଥାତ୍ ସେମାନେ ଯେପରି ଖଡ଼ି ନଥିବା ବାହାନାରେ ପାଠଶାଳାକୁ ଯିବାପାଇଁ ଅସ୍ୱୀକାର କରନ୍ତି ଏ କର୍ମକର୍ତ୍ତାମାନେ ଠିକ୍ ସେହିରୂପ ଉପଯୁକ୍ତ ପୁସ୍ତକ ନଥିବା ବାହାନା କରୁଅଛନ୍ତି ।

× × ×

( ୩ୟ ଭାଗ, ୧୧ । ୧ । ୧୮୬୮, ସଂଖ୍ୟା ୨ )

୧୦ । ପ୍ରବେଶିକା ପରୀକ୍ଷା ।

ଏ ବର୍ଷର ଫଳ ଗତ ମାସ ତା ୨୮ଶେ କଲିକତା ଗେଜେଟରେ ପ୍ରକାଶ ହୋଇଅଛି । ସେଥିରେ ଦେଖାଗଲା ଯେ ଏବର୍ଷ ସର୍ବ ସୁଦ୍ଧା ୮୨୩ଜଣ ଛାତ୍ର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ପରୀକ୍ଷାର୍ଥୀମାନଙ୍କର ସଂଖ୍ୟା ପ୍ରାୟ ୧୫୦୦ ଥିଲା । ଅତଏବ ଅଧକରୁ କିଛି ଅଧିକ ଛାତ୍ର ଫଳ ଲାଭ କରିଅଛନ୍ତି । ଓଡ଼ିଶାରେ ୯ଜଣ ଛାତ୍ର ପରୀକ୍ଷା ଦେଇଥିଲେ, ତହିଁ ମଧ୍ୟରୁ ୭ଜଣ କୃତାର୍ଥ ହୋଇଅଛନ୍ତି, ଅର୍ଥାତ୍ ବାଲେଶ୍ୱର

ସ୍କୁଲର ୨ ଜଣ ଏବଂ କଟକ ସ୍କୁଲର ୪ ଜଣ । ଏଥିରେ ବାଲେଶ୍ୱରର ୨ ଜଣ ପରୀକ୍ଷାର୍ଥୀ ମଧ୍ୟରେ ଏକଜଣ ପ୍ରଥମ ଶ୍ରେଣୀ ଓ ଅନ୍ୟ ଜଣ ଦ୍ୱିତୀୟ ଶ୍ରେଣୀରେ ସ୍ଥାନ ପାଇଅଛି ଏବଂ କଟକ ୪ ଜଣ ମଧ୍ୟରୁ ତିନିଜଣ ଦ୍ୱିତୀୟ ଶ୍ରେଣୀ ଓ ଏକ ଜଣ ତୃତୀୟ ଶ୍ରେଣୀରେ ପରୀକ୍ଷା ଦେଇଅଛି ।

## ( ୩ୟ ଭାଗ, ୧୮ । ୧ । ୧୮୭୮, ସଂଖ୍ୟା ୩ )

୧୧ । ଆମ୍ଭେମାନେ ଆନନ୍ଦର ସହିତ ଜଣାଉଅଛୁଁ ଯେ କଟକ ହାଇସ୍କୁଲରେ ଅବିଳମ୍ବେ ଶିକ୍ଷା ପ୍ରଦାନ ହେବ । ପ୍ରଧାନ ଶିକ୍ଷକ ପଦରେ ଶ୍ରୀଯୁକ୍ତ ବାବୁ ଚଣ୍ଡୀଚରଣ ବାନୁର୍ଯ୍ୟା ନିଯୁକ୍ତ ହୋଇ ଆସୁଅଛନ୍ତି । ଏ ମହାଶୟ କଲିକତା ସହରର ସ୍କୁଲର ତୃତୀୟ ଶିକ୍ଷକ ଥିବାର ଶୁଣାଯାଏ । ସଂସ୍କୃତ ପଢ଼ାଇବା ନିମିତ୍ତ ପ୍ରଧାନ ପଣ୍ଡିତଙ୍କ ମଧ୍ୟ କଲିକତାରୁ ଶୀଘ୍ର ଆସିବାର ସମ୍ଭାବନା ଅଛି । ହାଇସ୍କୁଲରେ ଯେ ବେତନରେ ଯେତେ କର୍ମଚାରୀମାନ ରହିବାର ଗବର୍ଣ୍ଣମେଣ୍ଟ ମଞ୍ଜୁର ହୋଇଅଛି ସେ ସମସ୍ତ ଏକାବେଳକେ କାର୍ଯ୍ୟରେ ପରିଣତ ହେବାର ଦେଖାଯାଉ ନାହିଁ କାରଣ ଡାଇରେକ୍ଟର ସାହେବ ଅବସର ମତେ କ୍ରମଶଃ କର୍ମଚାରୀ ନିଯୁକ୍ତ କରିବାର ଦେଖାଯାଏ ଏବଂ ପ୍ରଧାନ ଶିକ୍ଷକଙ୍କୁ ମାସିକ ଟ୩୦୦୲ ସ୍ଥଳେ ଟ୨୫୦୲ରେ ନିଯୁକ୍ତ କରିଥିବାରୁ ଏ ଶଙ୍କାର ଆହୁରି ବୃଦ୍ଧତର ହେଉଅଛି ।

× × ×

ପ୍ରବେଶିକା ପରୀକ୍ଷାରେ ଯେଉଁ ୬ ଜଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି ବୋଧ ହୁଅଇ ସମସ୍ତେ ଅଧ୍ୟୟନ କରିବେ । ଏମାନଙ୍କ ମଧ୍ୟରୁ କେବଳ ଏକଜଣ ଛଡ଼ା ସମସ୍ତେ ତୃତୀୟ ଶ୍ରେଣୀର ଛାତ୍ରବୃତ୍ତି ପାଇଅଛନ୍ତି । ମାସକୁ ଟ୧୦୲ଙ୍କା ଲେଖାଏଁ ପାଇବେ ଅତଏବ ଅଧ୍ୟୟନ ନକରିବାର କୌଣସି କାରଣ ନାହିଁ । ଆମ୍ଭେମାନେ ଭରସା କରୁ ଏମାନେ ଯେମନ୍ତ ହାଇସ୍କୁଲ ଆରମ୍ଭ କରିଅଛନ୍ତି ତେମନ୍ତ ଯତ୍ନ ଓ ପରିଶ୍ରମ ସହକାରରେ ଏଥିର ମର୍ଯ୍ୟାଦା ରକ୍ଷା କରିବେ ।

## ( ୩ୟ ଭାଗ, ୨୫ । ୧ । ୧୮୭୮, ସଂଖ୍ୟା ୪ )

୧୨ । କଟକ ହାଇସ୍କୁଲ ।

ଏ ବିଦ୍ୟାଳୟରେ ଶିକ୍ଷା ପ୍ରଦାନ କାର୍ଯ୍ୟ ଗତ ସୋମବାର ଠାରୁ ଆରମ୍ଭ ହେଲା । ସମ୍ପ୍ରତି କଟକରେ ଥିବା ପରୀକ୍ଷୋତ୍ତୀର୍ଣ୍ଣ ୪ଜଣ ବାଳକ ଏଠାରେ ପାଠ କରୁଅଛନ୍ତି ଏବଂ ଅବିଳମ୍ବରେ ବାଲେଶ୍ୱରର ଦୁଇଜଣ ଛାତ୍ର ଆସିବାର କଥାଅଛି ।

× × ×

ଏସ୍ଥଳେ ଆମ୍ଭେମାନେ ଆନନ୍ଦର ସହିତ ଅବଗତ ହୋଇଅଛୁଁ ଯେ ବାଲେଶ୍ୱର ସ୍କୁଲର ଜଣେ ଛାତ୍ର ଯେ କି ଏହାପୂର୍ବ ଏକବର୍ଷରେ ପ୍ରବେଶିକା ପରୀକ୍ଷା ଦେଇଥିଲେ ସମ୍ପ୍ରତି ଡାଇନ୍ନୁଲରେ ଅଧ୍ୟୟନ କରିବା କାରଣ ଆସୁଅଛନ୍ତି । ଏହାଙ୍କ ନାମ ରାଧାନାଥ ରାୟ । ଅନ୍ୟାନ୍ୟ ବାଳକମାନେ ଏହାଙ୍କ ପ୍ରଦର୍ଶିତ ପ୍ରଶଂସନୀୟ ମାର୍ଗର ଅନୁବର୍ତ୍ତୀ ହେଲେ କେତେ ସୁଖର ବିଷୟ ହେବ କହିନପାରୁଁ ।

## ଅତିରିକ୍ତ

## ୨୫ । ୧ । ୧୮୭୮

୧୩ ।

### ପ୍ରେରିତ ପତ୍ର

ମହାଶୟ, ଆପଣଙ୍କ ଗଲତ ମାସ ପ୍ରଥମ ସପ୍ତାହରେ "ଉତ୍କଳଭାଷା ଏ ଦେଶସ୍ଥ ବିଦ୍ୟାଳୟମାନଙ୍କରୁ ଉଠାଇ ଦେଇ ତତ୍ ପରିବର୍ତ୍ତିରେ ବଙ୍ଗଭାଷା ପ୍ରଚଳିତ କରିବା" ଏହି ପ୍ରସ୍ତାବ ପାଠକରି ଆମ୍ଭେମାନେ ଯତ୍ପରୋନାସ୍ତି ଦୁଃଖିତ ହେଲୁ । ଏମନ୍ତ କି ଆମ୍ଭର ମାତୃଭାଷା ପ୍ରତି ଏରୂପ ଦୌରାତ୍ମ୍ୟ ଦେଖି ଘୃଣା ଓ କ୍ରୋଧର ସହିତ ରକ୍ତ ଉଷ୍ଣ ହୋଇଉଠିଲା ; ନହେବ ବା କିପାଇଁ ? ମାତାର ବନ୍ଧନାବସ୍ଥା ଦେଖି ପ୍ରତିକାରର କ୍ଷମତା ନଥିଲେ ସୁଦ୍ଧା ପୁତ୍ର କି ନୀରବ ହୋଇପାରେ ? ଏହି ଦୁରପନେୟ ଭାବି ଦୁର୍ଘଟନା ନିବାରଣ କରିବା ପକ୍ଷରେ ଆମ୍ଭେମାନେ ଦୁର୍ବଳ ହୋଇ ସୁଦ୍ଧା ଲେଖଣୀ ଧରିବାକୁ ବାଧ୍ୟ ହେଲୁ ।

ଆମ୍ଭମାନଙ୍କର ଗୁଣଜ୍ଞ ଡାଇରେକ୍ଟର ଓ ଇନସ୍ପେକ୍ଟର ମହାତ୍ମା-ମାନେ କହନ୍ତି ଯେ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେ । ଯେ ଦେଶ ବଙ୍ଗଦେଶଠାରୁ ବେହାର ଓ ସରକାର ବିଜୀ ପର୍ଯ୍ୟନ୍ତ ବଙ୍ଗସାଗର ଉପକୂଳରେ ବହୁଦୂର ବିସ୍ତାରିତ ହୋଇଅଛି, ଯହିଁରେ କୋଟି କୋଟି ଲୋକ ବାସ କରନ୍ତି ଓ ଯେ ଦେଶର ଉଲ୍ଲେଖ ପୁରାତନ କାଳର ଇତିହାସାଦି ଗ୍ରନ୍ଥମାନଙ୍କରେ ଉଲ୍ଲିଖିତ ହୋଇଅଛି ସେହି ଦେଶରେ ଯେ ଭାଷା ପ୍ରଚଳିତ ଅର୍ଥାତ୍ ଓଡ଼ିଆ ଭାଷା ସେ କି ଭାଷା ନୁହେ ? ତେବେ ଏହି ଭାଷାରେ ସାହିତ୍ୟ, ଅଙ୍କ, ଜ୍ୟୋତିଷାଦି ବିଦ୍ୟାର ଭୂରି ଭୂରି ପୁସ୍ତକ କେଉଁଆଡୁ ଅଇଲା ? ଯେ ଭାଷା କାବ୍ୟକାନନର ବନଦେବୀ ସ୍ୱରୂପ ସଂସ୍କୃତ ଭାଷାର କନ୍ୟା, ସେ କି ଭାଷା ନୁହେ ? ଯେ ଭାଷାର କୁସୁମସୁକୁମାର ବପୁ ଦୀନକୃଷ୍ଣ, ଉପେନ୍ଦ୍ରଭଞ୍ଜ ପ୍ରଭୃତି କବିମାନେ ବିବିଧ ଅଳଙ୍କାରରେ ଭୂଷିତ କରିଅଛନ୍ତି, ଯାହାର କମନୀୟ ରୂପମାଧୁରୀ

ଦେଖି କାବ୍ୟରସାମୋଦୀ ବ୍ୟକ୍ତିମାନଙ୍କର ଚିତ୍ତକ୍ଷେତ୍ର ଆନନ୍ଦ ରସରେ ପ୍ଲାବିତ ହୋଇଯାଏ, ସେକି ଏକ ସ୍ୱତନ୍ତ୍ର ଭାଷା ନୁହେଁ ? ତେବେ ସାମ୍ବଲପୁରୀ ଭାଷା ଭାଷା, ତାହାର ଉନ୍ନତି କରାଯିବ, ତାହାହେଲେ ଟେଲିଗ୍ରାଫର ଅକ୍ଷର ପରି ନୂଆ ଅକ୍ଷର ଆବିଷ୍କାର କରିବାକୁ ହେବ, ମାତ୍ର ଉତ୍କଳ ଭାଷାର ଅବନତି ଚେଷ୍ଟା କରାଯିବ କାରଣ ତାହାରେ ନାନା ପ୍ରକାର ଗ୍ରନ୍ଥ ଅଛି; ଶାସ୍ତ୍ର ଅଛି ଏବଂ ତାହା ପ୍ରଶସ୍ତ ରୂପେ ପ୍ରଚଳିତ ହୋଇଅଛି । ଅନ୍ଧ ଆଗରେ ଆଲୁଅ ଅନ୍ଧାର ସମାନ ।

× × ×

( ୧୩ଶ ଭାଗ, ୧।୨।୧୮୭୮, ସଂଖ୍ୟା ୫ )

୧୪ ।

ଓଡ଼ିଶାରେ ବଙ୍ଗଲାଭାଷାର ଶିକ୍ଷା ।

ଏ ପ୍ରସ୍ତାବରେ ଅସ୍ମଦ୍ଦେଶୀୟ ଲୋକମାନେ କି ପର୍ଯ୍ୟନ୍ତ ବ୍ୟସ୍ତ ଓ ଶଙ୍କାଯୁକ୍ତ ହୋଇଅଛନ୍ତି ତାହା ସକଳରେ ଜଣା ଯାଉଅଛି । ଗତ ସପ୍ତାହର ଅଙ୍କିତ ପତ୍ରିକାରେ ବାଲେଶ୍ୱରର ଜଣେ ପତ୍ର ପ୍ରେରକଙ୍କ ପତ୍ରରୁ ତତ୍ରତ୍ୟ ଲୋକଙ୍କର ଅଭିପ୍ରାୟ ଉତ୍ତମରୂପେ ପ୍ରକାଶ ପାଉଅଛି । ବାଲେଶ୍ୱର ବଙ୍ଗଦେଶର ନିକଟବର୍ତ୍ତୀ ଓ ସେଠାରେ ବଙ୍ଗଭାଷାର ଲିଖନ ପଠନ ଯଥେଷ୍ଟ ପରିମାଣରେ ହୁଅଇ କିନ୍ତୁ ସେମାନେ ଉତ୍କଳ ଭାଷାକୁ ସ୍ୱତନ୍ତ୍ର ଭାଷା ଜ୍ଞାନ କରୁଅଛନ୍ତି ଏବଂ ଏହା ସେମାନଙ୍କର ମାତୃଭାଷା ହେବାରୁ ତହିଁପ୍ରତି ଅତ୍ୟାଗୃହର ଉପକ୍ରମ ଦେଖି କାତର ହୋଇଅଛନ୍ତି । ଏହି ନଗରରେ ମଧ୍ୟ ଗତ ରବିବାର ଏ ସ୍ଥାନର ପ୍ରଧାନ ପ୍ରଧାନ ବ୍ୟକ୍ତିମାନେ ଏକ ସଭାକରି ଶିକ୍ଷା ବିଭାଗର କର୍ମଗୃହୀଙ୍କ ପ୍ରସ୍ତାବ ବିରୁଦ୍ଧରେ କମିଶ୍ନରଙ୍କ ନିକଟରେ ଆବେଦନ କରିବାର ସ୍ଥିର କରିଅଛନ୍ତି । ଏ ସମସ୍ତ ଲୋକଙ୍କ ବିବେଚନା କି ଗ୍ରାହ୍ୟର ଉପଯୁକ୍ତ ନୁହଇ ? ଶିକ୍ଷା ବିଭାଗର କର୍ମଗୃହୀମାନେ ଯାହା କହିବେ ସେହି କଥା କି ସତ୍ୟ ହେବ ? ଏମାନେ ଉଚ୍ଚପଦ ପାଇଲେ ବୋଲି କି ଏମାନଙ୍କ ବୁଦ୍ଧି ସର୍ବାପେକ୍ଷା ଶ୍ରେଷ୍ଠ ହେଲା ? ଦେଶୀୟ ଲୋକଙ୍କର ଏ ବିଷୟରେ ଯେଉଁପ ମନର ଚେଷ୍ଟା ଦେଖା ଯାଉଅଛି ତଦ୍ଦ୍ୱାରା ସ୍ପଷ୍ଟ ପ୍ରକାଶ ଯେ ଏମାନେ ମାତୃଭାଷାର ସ୍ନେହ କଦାଚ ତ୍ୟାଗକରି ପାରିବେ ନାହିଁ ସୁତରାଂ ଏ ଦେଶରେ ବଙ୍ଗ ଭାଷାରେ ଶିକ୍ଷା ଦେଲେ ଅର୍ଥବ୍ୟୟ ମାତ୍ର ସାର ହେବ, ଅତ୍ରତ୍ୟ ଲୋକଙ୍କର ଉପକାର ହେବନାହିଁ । ଯେବେ କୌଣସି ଉପକାରର ସମ୍ଭାବନା ଥାଆନ୍ତା ତାହାହେଲେ ଏମାନେ କିପାଁ ଆପତ୍ତି କରନ୍ତେ । ଇଂରେଜୀ କି ପାରସି ଶିକ୍ଷା କରିବାକୁ ତ କାହାରି ଆପତ୍ତି ନାହିଁ ।

ଉତ୍କଳ ଭାଷାରେ ବିଦ୍ୟାଳୟର ପାଠୋପଯୁକ୍ତ ପୁସ୍ତକ ନଥିବା ବଙ୍ଗଭାଷା ଚଳାଇବାର କାରଣ ହୋଇଅଛି ମାତ୍ର ଯେଉଁମାନେ ଏରୂପ ଯୁକ୍ତି କରନ୍ତି ସେମାନେ ଦେଶ କାଳ ବିବେଚନା କରନାହାନ୍ତି ଦୁଃଖର ବିଷୟ ଅଟଇ । ବଙ୍ଗ ଦେଶରେ ଏତେକାଳର ଗବର୍ଣ୍ଣମେଣ୍ଟ ବିଦ୍ୟାଳୟ ସ୍ଥାପନ କରିଅଛନ୍ତି ଏବଂ ଉପଯୁକ୍ତ ପୁସ୍ତକ ରଚନା ନିମନ୍ତେ କେତେଟଙ୍କା ବ୍ୟୟ କରିଅଛନ୍ତି ତାହା କି ବିଚାରର ଯୋଗ୍ୟ ନୁହଇ ? ଏକା ସ୍କୁଲବୁକ ସୋସାଇଟୀ କେବଳ ପୁସ୍ତକ ଯୋଗାଇବା ନିମନ୍ତେ ୨୫୦୦୦ଙ୍କା ଲେଖାଏଁ ଗତ ବିଂଶବର୍ଷର ପାଇ ଆସୁଅଛନ୍ତି । ଓଡ଼ିଶାରେ କର୍ତ୍ତୃନ୍ମାନ ସାହାଯ୍ୟ କରିଥିଲେ କି ପୁସ୍ତକର ଅଭାବ ଅଦ୍ୟାପି ରହନ୍ତା ? ତଥାଚ ଓଡ଼ିଶାବାସିମାନେ ଆପଣା ଭାଷା ଉନ୍ନତି ପକ୍ଷରେ ଅଳସ କରନାହାନ୍ତି । କଟକରେ ଏକ ମୁଦ୍ରାଯନ୍ତ୍ର ବସି ଏତେବେଳେ ସେଥିରେ ସୁନ୍ଦର ପାଠୋପଯୋଗୀ ପୁସ୍ତକ ମୁଦ୍ରିତ ହେଉଅଛି ଏବଂ ବାଲେଶ୍ୱରକୁ ମଧ୍ୟ ଏକ ମୁଦ୍ରାଯନ୍ତ୍ର ଆସିଲାଣି । ଅବିଳମ୍ବରେ କାର୍ଯ୍ୟ ଆରମ୍ଭ ହେବ ଏବଂ ଅଳ୍ପକାଳରେ ଆବଶ୍ୟକୀୟ ପୁସ୍ତକମାନ ପ୍ରାପ୍ତ ହୋଇ ପାରିବ । ଏଥିରେ ଯେବେ ଗବର୍ଣ୍ଣମେଣ୍ଟ ସାହାଯ୍ୟ କରନ୍ତି ତେବେ ଆହୁରି ଶୀଘ୍ର ହେବାର ସମ୍ଭାବନା । ଆମ୍ଭେମାନେ ଏତେକାଳ ଶିକ୍ଷାର ଅଭାବ ସହ୍ୟ କଲୁଁ ଆଉ ଦୁଇ ତିନବର୍ଷରେ ଆମ୍ଭମାନଙ୍କର କିଛି କ୍ଷତି ହେବନାହିଁ । ତେବେ କି ହେଉଛନ୍ତି ଗବର୍ଣ୍ଣମେଣ୍ଟ ଦେଶୀୟ ଲୋକଙ୍କ ଇଚ୍ଛା ବିପକ୍ଷରେ କାର୍ଯ୍ୟକରି ବିଦ୍ୟାଳୟ ପ୍ରତି ମନ୍ଦ ସଂସ୍କାର ଜନ୍ମାଇବେ ।

ଗବର୍ଣ୍ଣମେଣ୍ଟ ଶିକ୍ଷା ବିଭାଗର କର୍ମକର୍ତ୍ତାଙ୍କ ମତାନୁଗାମୀ ହୋଇ ନିତାନ୍ତରେ ଯଦି ବଙ୍ଗଭାଷାରେ ଶିକ୍ଷା ଦିଅନ୍ତି ତେବେ ଆମ୍ଭମାନଙ୍କର ଭାଷା ଲୋପ ହୋଇଯିବ ବୋଲି ଆମ୍ଭେମାନେ ଚିନ୍ତିତ ନୋହୁଁ । ମୁସଲମାନଙ୍କ ଶାସନ ବିସ୍ତାର ହେବା ସମୟରେ ଇଂରାଜମାନେ ଏ ଦେଶକୁ ଗ୍ରହଣ କରିବାର ୪୦ ବର୍ଷ ପର୍ଯ୍ୟନ୍ତ ପାରସ୍ୟ ଭାଷାରେ ସରକାରୀ ସମସ୍ତ କାର୍ଯ୍ୟ ହେଉଥିଲା ଏବଂ ଧନ ଉପାର୍ଜନ ଆଶାରେ ବିସ୍ତର ଲୋକ ଆପଣା ପୁତ୍ରାଦିଙ୍କୁ ଉକ୍ତ ଭାଷାରେ ଶିକ୍ଷା ଦେବାର ଯତ୍ନ କରିବାର ଉତ୍କଳଭାଷାର ଅନାଦର ହୋଇଥିଲା । ତଥାପି ତାହା ଲୋପ ହେଲାନାହିଁ । କିପରି ଅବା ଲୋପ ହେବ ? ମାଣିକ୍ୟକୁ ଅନ୍ଧାର ଘରରେ ଲୁଚାଇ ରଖିବାର ଚେଷ୍ଟା କଲେ ତାହା କି ଲୁଚି ରହି ପାରିବାର ପଦାର୍ଥ ?

× × × ×

ଉପସଂହାର ସ୍ଥଳେ ଆମ୍ଭେମାନେ ମଧ୍ୟପ୍ରଦେଶର ଶାସନକର୍ତ୍ତାଙ୍କୁ ପ୍ରଶଂସା ନକରି କ୍ଷାନ୍ତ ହୋଇ ପାରୁନାହୁଁ । ଉକ୍ତ ପ୍ରଦେଶାନ୍ତର୍ଗତ ସମ୍ବଲପୁର ବିଭାଗରେ ଉତ୍କଳ ଭାଷାର ଶିକ୍ଷା ଦିଆ ଯାଉଅଛି ଏବଂ ସେ ସ୍ଥାନର କମିଶନ ଅଚ୍ଛ

ସ୍ୱୀକାର ପୂର୍ବକ ଉତ୍କଳ ଦେଶୀୟ ଜଣେ ସୁଶିକ୍ଷିତ ବ୍ୟକ୍ତି ଶ୍ରୀ ବାବୁ ଚକ୍ରଧର ପଟ୍ଟନାୟକଙ୍କୁ ଶିକ୍ଷା ସଂକ୍ରାନ୍ତ ଇନସ୍ପେକ୍ଟର ନିଯୁକ୍ତ କରିଅଛନ୍ତି । ପଟ୍ଟନାୟକ ମହାଶୟଙ୍କ ଉଦ୍ୟମରେ ଏହିବର୍ଷ ମଧ୍ୟରେ ତିନି ଶ୍ରେଣୀ ବିଦ୍ୟାଳୟର ପାଠୋପଯୋଗୀ ପୁସ୍ତକ ପ୍ରସ୍ତୁତ ହୋଇଲାଣି ଏବଂ ଆହୁରି କେତେ ପୁସ୍ତକ ହେବାର ସମ୍ଭାବନା ଅଛି । ବଙ୍ଗ ଦେଶର ଡାଇରେକ୍ଟର ଯେବେ ମଧ୍ୟପ୍ରଦେଶର ପ୍ରଦର୍ଶିତ ଦୃଷ୍ଟାନ୍ତର ଅନୁଗାମୀ ହୁଅନ୍ତେ ତେବେ ଅବଶ୍ୟ ବିଲକ୍ଷଣ ସୁବିଧା ହୋଇପାରନ୍ତା ।

## ( ୩ୟ ଭାଗ, ୮ । ୨ । ୧୮୭୮, ସଂଖ୍ୟା ୬ )

୧୫ । କଟକରେ ନରମାଲ ସ୍କୁଲ ସ୍ଥାପନ ।

ଓଡ଼ିଶା ପ୍ରଦେଶର ସ୍କୁଲ ସମୂହ ନିମିତ୍ତ ଉପଯୁକ୍ତ ଶିକ୍ଷକ ଯୋଗାଇବା ଅଭିପ୍ରାୟରେ କଟକ ନଗରରେ ଏକ ବୃହତ୍ ନରମାଲ ସ୍କୁଲ ସ୍ଥାପନ କରିବାର ପ୍ରସ୍ତାବ ହେବାରୁ ଗବର୍ଣ୍ଣମେଣ୍ଟ ଅନୁମୋଦନ କରିଅଛନ୍ତି ଏବଂ ସେଥିର ବ୍ୟୟ ନିମିତ୍ତ ମାସିକ ଟ୧୦୦୦ଟଙ୍କା ଖର୍ଚ୍ଚ ଦେବାକୁ ସ୍ୱୀକୃତ ହୋଇଅଛନ୍ତି । ଏ ବିଦ୍ୟାଳୟରେ ଓଡ଼ିଶାର ପ୍ରତ୍ୟେକ ଜିଲ୍ଲା କାରଣ ଜ୨୦ଣ ଲେଖାଏଁ ଜ୬୦ଣ ଶିକ୍ଷକ କାର୍ଯ୍ୟରେ ଉପଯୁକ୍ତ ହେବାପାଇଁ ଅଧ୍ୟୟନ କରିବେ ।

## ( ୩ୟ ଭାଗ, ୪ । ୪ । ୧୮୭୮, ସଂଖ୍ୟା ୧୪ )

୧୬ । ଉତ୍କଳ ଭାଷାର ଉନ୍ନତି କିରୂପେ ସମ୍ଭବ ।

ଆମ୍ଭେମାନେ ଏଥିପୂର୍ବ ପତ୍ରିକାରେ ଉତ୍କଳଭାଷା ଶିକ୍ଷା ବିଷୟରେ ହେତୁମାନ ଦର୍ଶାଇ ଅଛୁଁ । ସେଥିରୁ ବୋଧ ହୋଇଥିବ ଯେ ଏ ପ୍ରଦେଶର ଭାଷା ଅବଧି ଉନ୍ନତାବସ୍ଥାକୁ ପ୍ରାପ୍ତ ହୋଇନାହିଁ ବୋଲି ତାହା ପରିତ୍ୟାଗର ପଦାର୍ଥ ନୁହଇ । ସମ୍ପ୍ରତି ସରକାରୀ କର୍ମଚାରୀମାନେ ଏ ବିଷୟରେ ତର୍କବିତର୍କ କରି ନାନା ପ୍ରକାର ଅଭିପ୍ରାୟ ବ୍ୟକ୍ତ କରିଅଛନ୍ତି କିନ୍ତୁ ସମସ୍ତଙ୍କର ଇଚ୍ଛା ଏରୂପ ଜଣାଯାଏ ଯେ କୌଣସି ରୂପେ ଉତ୍କଳ ଭାଷା ଶୀଘ୍ର ବଙ୍ଗଭାଷା ପରି ଉଜ୍ଜ୍ୱଳ ହୋଇ ପ୍ରକାଶ ପାଉ । କିରୂପେ ଏ ଆଶାପୂର୍ଣ୍ଣ ହେବ ବର୍ତ୍ତମାନ ତାହାର ବିଚାର କରିବାର ଆବଶ୍ୟକ । ଏହିନିମିତ୍ତ ଅଦ୍ୟ ଆମ୍ଭେମାନେ ଆପଣା ଅଭିପ୍ରାୟ ପ୍ରକାଶ କରିଅଛୁଁ ।

ଆମ୍ଭମାନଙ୍କର ଜାଣିବାରେ ନିମ୍ନଲିଖିତ ଉପାୟମାନଙ୍କ ଦ୍ୱାରା ଉତ୍କଳ ଭାଷାର ଉନ୍ନତି ହୋଇପାରେ ।

୧ । କି ସରକାରୀ କି ଗୃହାଦାର ସମସ୍ତ ବିଦ୍ୟାଳୟରୁ ବଙ୍ଗଭାଷା ଏକା ବେଳକେ ଉଠାଇ ଦେବା ।

୨ । ଉତ୍କଳ ଭାଷାରେ ପୁସ୍ତକାଦି ରଚନା କରିବାକୁ ସମୁତ୍ସୁକ ଥିବା ବ୍ୟକ୍ତିମାନଙ୍କୁ ଗବର୍ଣ୍ଣମେଣ୍ଟର ଯଥୋପଯୁକ୍ତ ସାହାଯ୍ୟ କରିବା ।

୩ । କେଉଁ ପୁସ୍ତକ ବିଦ୍ୟାଳୟରେ ଚଳିବାର ଉପଯୁକ୍ତ ସେଥିର ନିର୍ଣ୍ଣୟ ସ୍କୁଲ ଇନ୍‌ସ୍ପେକ୍ଟରଙ୍କ ଦ୍ୱାରା ନହୋଇ ଏ ପ୍ରଦେଶର କୁଇଟିକି ସମ୍ଭ୍ରାନ୍ତ ବ୍ୟକ୍ତିଙ୍କୁ ଉକ୍ତ ନିର୍ଣ୍ଣୟର ଭାର ଦେବା ।

୪ । ଶିକ୍ଷା ବିଭାଗର ସମସ୍ତ ବିଜ୍ଞାପନ ଓ ଆଜ୍ଞାମାନ ସାଧାରଣ ଗୋଚରାର୍ଥେ ଭାଷା ସମ୍ବାଦପତ୍ରରେ ପ୍ରକାଶ କରିବା ।

ପ୍ରଥମ ପ୍ରସ୍ତାବରେ ଆମ୍ଭମାନଙ୍କର ଉପକାର ଏହି ଅଛି ଯେ ବଙ୍ଗ ଭାଷା ଉଠିଗଲେ ଶିକ୍ଷା ବିଭାଗର କର୍ମଚାରୀମାନେ ଉତ୍କଳ ଭାଷାର ଉନ୍ନତି ଚେଷ୍ଟା କରିବାକୁ ବାଧ୍ୟ ହେବେ । ବର୍ତ୍ତମାନ ଏ କର୍ମଚାରୀମାନେ ବଙ୍ଗଦେଶରୁ ଆସୁଥିବାରୁ ଏ ଦେଶୀୟ ଭାଷା ଜାଣନ୍ତି ନାହିଁ ଏବଂ ବିଦ୍ୟାଳୟରେ ବଙ୍ଗଳା ପଠନ ହେଉଥିବାରୁ ଉତ୍କଳ ପକ୍ଷରେ ଆସ୍ଥା କରନ୍ତି ନାହିଁ । କେବଳ ଉତ୍କଳ ଭାଷା ପଠନ ହେଲେ ସେମାନେ ଅବଶ୍ୟ ଉତ୍କଳ ବିଦ୍ୟା ଶିକ୍ଷା କରିବେ ନତୁବା କର୍ମ ତ୍ୟାଗ କରିବେ । ସୁତରାଂ ଓଡ଼ିୟା ଭାଷାର ଆଦର ବଢ଼ିବ । କେହି କେହି କହନ୍ତି ଯେ ଉତ୍କଳ ଭାଷାରେ ଯଥେଷ୍ଟ ପୁସ୍ତକ ନାହିଁ ଅତଏବ ଏ ସମୟରେ ବଙ୍ଗଳା ଭାଷା ଉଠାଇ ଦେଲେ ବିଦ୍ୟାଳୟ ସବୁ ବନ୍ଦ କରିବାକୁ ପଡ଼ିବ ମାତ୍ର ବିବେଚନା କରି ଦେଖିଲେ ଏ ପ୍ରଦେଶର ଭାଷାବିଦ୍ୟାଳୟ ନିମିତ୍ତ ଯଥେଷ୍ଟ ପୁସ୍ତକ ଅଛି ଅର୍ଥାତ୍ ବଙ୍ଗଳାରେ ଯେପ୍ରକାର ପୁସ୍ତକମାନ ପଠିତ ହୁଅଇ ଓଡ଼ିଶା ଭାଷାରେ ସେପ୍ରକାର ପୁସ୍ତକ ପ୍ରାପ୍ତ ହୁଅଇ ଏବଂ କ୍ରମଶଃ ଉତ୍କଳ ପୁସ୍ତକର ଏ ପ୍ରକାର ବୃଦ୍ଧି ହେଉଅଛି ଯେ ଅଳ୍ପକାଳରେ ପ୍ରାୟ ଶିକ୍ଷାର ଉପଯୋଗୀ ସମସ୍ତ ପୁସ୍ତକ ପ୍ରାପ୍ତ ହେବ । ଯେଉଁମାନେ ଓଡ଼ିଶାର ଏଅବସ୍ଥା ଜାଣିପାରି ନାହାନ୍ତି ଓ ନୟନ ମୁଦ୍ରିତ କରି କହନ୍ତି ଯେ ଉତ୍କଳ ଲୋକମାନେ ଆପଣା ଭାଷାର ଉନ୍ନତି ନିମିତ୍ତ କିଛି କରିନାହାନ୍ତି ସେମାନଙ୍କୁ ଆମ୍ଭେମାନେ ଏତିକି କହୁଅଛୁଁ ଯେ ଥରେ କଟକ ପ୍ରିଣ୍ଟିଂ କୁମ୍ପାନିର କାର୍ଯ୍ୟ ଏବଂ ବାଲେଶ୍ୱରର ଛାପାଖାନା ସ୍ଥାପନର ଉଦ୍‌ଯୋଗକୁ ଆଲୋଚନା କରନ୍ତୁ । ତାହାହେଲେ ସେମାନଙ୍କର ଭ୍ରମ ଦୂର ହେବ । ବଙ୍ଗଭାଷାର ଉନ୍ନତି ନିମିତ୍ତ ଗବର୍ଣ୍ଣମେଣ୍ଟ ଓ ସ୍ୱଦେଶୀୟ ହିତୈଷୀମାନେ ଯେ ପରିମାଣରେ ସାହାଯ୍ୟ କରିଅଛନ୍ତି ତାହାର କୌଣସି ଅଂଶ ଏଠାରେ ପ୍ରାପ୍ତ ହୋଇନଥିଲେ ସୁଦ୍ଧା ଏଦେଶର ଲୋକମାନେ ଆପଣା କର୍ତ୍ତବ୍ୟ କରିଅଛନ୍ତି, ଏହା ସାମାନ୍ୟ ସୁଖ୍ୟାତିର ବିଷୟ ନୁହଇ ।

ଦ୍ୱିତୀୟ ପ୍ରସ୍ତାବରେ କିଛି ବାକ୍ୟ ବ୍ୟୟ କରିବାର ପ୍ରାୟ ଆବଶ୍ୟକ

ନାହିଁ । ଗବର୍ଣ୍ଣମେଣ୍ଟ ସାହାଯ୍ୟ ଦେଲେ ଯେ ବିସ୍ତର ପୁସ୍ତକର ସୃଜନ ହେବ ଏହା ସମସ୍ତେ ଅନୁଭବ କରିପାରିବେ । ସମ୍ପ୍ରତି ଅନେକ ଲୋକ ପୁସ୍ତକ ରଚନାରେ ପ୍ରବୃତ୍ତ ହୋଇଅଛନ୍ତି କିନ୍ତୁ ମୁଦ୍ରାଙ୍କନର ବ୍ୟୟ ଦେଇ ପାରୁନାହାନ୍ତି ବୋଲି ସେମାନଙ୍କର ପରିଶ୍ରମ ବିଫଳ ଓ ଉତ୍ସାହ ଭଙ୍ଗ ହେଉଅଛି । ଯଦ୍ୟପି ସେମାନେ ଆପଣା ପରିଶ୍ରମର କିୟଦଂଶ ପ୍ରାପ୍ତ ହୋଇପାରନ୍ତି କିମ୍ବା ନିତାନ୍ତ ପକ୍ଷରେ ପୁସ୍ତକ ମୁଦ୍ରାଙ୍କନର ବ୍ୟୟ ନିର୍ବାହ କରିପାରନ୍ତି ତାହାହେଲେ ବିସ୍ତର ପୁସ୍ତକ ପ୍ରଚୁର ହେବ । ଧନାର୍ଜ୍ଜନାପେକ୍ଷା ନାମ ବିଖ୍ୟାତ ନିମନ୍ତେ ବିସ୍ତର ଲୋକ ପୁସ୍ତକ ପ୍ରଣୟନର କଳ୍ପନା କରନ୍ତି । କେବଳ ଅର୍ଥ ଅକର୍ତ୍ତବ୍ୟ ସ୍ଥଳରେ ତାହା ସିଦ୍ଧ ହୁଅଇ ନାହିଁ । ଗବର୍ଣ୍ଣମେଣ୍ଟ ପୁରସ୍କାର ଦେବାକୁ ପ୍ରସ୍ତୁତ ହେଲେ ବିସ୍ତର ପୁସ୍ତକ ପ୍ରଚୁର ହେବ ସନ୍ଦେହ ନାହିଁ ।

ତୃତୀୟ ପ୍ରସ୍ତାବରେ ଆମ୍ଭମାନଙ୍କର ଉଦ୍ଦେଶ୍ୟ ଏହି ଯେ ଉତ୍କଳ ପୁସ୍ତକର ଦୋଷଗୁଣ ବିଚାର ବିଦେଶୀୟ ଲୋକଙ୍କଦ୍ୱାରା ଉତ୍ତମ ହେବନାହିଁ । ଅନେକ ମନ୍ଦପୁସ୍ତକ ନାନା କାରଣରୁ ଭଲବୋଲି ପରିଗଣିତ ହେବ । ଦେଶଭାଷାକୁ ସମ୍ୟକରୂପେ ଜାଣିନଥିବା ବ୍ୟକ୍ତିଙ୍କୁ କେହି ସହଜରେ ପ୍ରତାରିତ କରି ପାରିବେ ନାହିଁ । ସୁତରାଂ ପକ୍ଷପାତିତା ଚଳିବ କୌଣସି ଭରସା ନରହିବ ।

ଚତୁର୍ଥତଃ ପ୍ରସ୍ତାବ ଗ୍ରହଣ କଲେ ଆମ୍ଭେମାନେ ଆଶାକରୁ ଯେ ଏ ଦେଶୀୟ ଲୋକମାନେ ଶିକ୍ଷାବିଭାଗର ଅନେକ ବିଷୟ ଜାଣି ପାରିବେ । ବର୍ତ୍ତମାନ ଅସ୍ମଦ୍ଦେଶୀୟ ଲୋକମାନେ ସାଧାରଣ ଶିକ୍ଷା କାର୍ଯ୍ୟ କିରୂପେ ଚଳୁଅଛି ଜାଣି ନ ପାରିବାରୁ ଏ ବିଷୟରେ ମନୋଯୋଗୀ ହେଉନାହାନ୍ତି । ଯେବେ କୌଣସି ଉପାୟ ଦ୍ୱାରା ଏ ବିଭାଗର ନାନା ସମ୍ବାଦ ସମୟ ସମୟରେ ତାହାଙ୍କୁ ଜ୍ଞାତ କରାପାଏ ତେବେ ନିଶ୍ଚିତଃ ସେମାନେ ଶିକ୍ଷାକାର୍ଯ୍ୟ ସଂକ୍ରାନ୍ତ ବିଷୟମାନ ଭାବନା କରିବେ ସୁତରାଂ ଏ କଥାମାନଙ୍କରେ ଅବହେଳା ଜନ୍ମିବ ନାହିଁ ।

ଆମ୍ଭେମାନେ ଭରସାକରୁଁ ଯେ ଏ ପ୍ରଦେଶର କମିଶନର ଉପର୍ଯ୍ୟୁକ୍ତ ପ୍ରସ୍ତାବମାନ ଆପଣା ମନରେ ବିଚାର କରନ୍ତୁ ଏବଂ କୌଣସି ପ୍ରସ୍ତାବ ତାହାଙ୍କ ବିବେଚନାରେ ଗ୍ରାହ୍ୟର ଯୋଗ୍ୟ ହେଲେ ତାହା ପ୍ରତିପାଳନ ହେବା ପକ୍ଷରେ ଯତ୍ନବାନ୍ ହେଉନ୍ତୁ । ଉତ୍କଳ ଦେଶର ଉନ୍ନତି ଚେଷ୍ଟା ସେ ଯେରୂପ କରୁଅଛନ୍ତି ଏବଂ ଏ ଦେଶର ବାଳକମାନଙ୍କୁ ସୁଶିକ୍ଷିତ ହେବାପାଇଁ ଯେରୂପ ଉତ୍ସାହ ଦେଉଅଛନ୍ତି ଏଥିରେ ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଭରସା ହେଉଅଛି ଯେ ଏ ସମ୍ବନ୍ଧରେ ତାହାଙ୍କ ଦ୍ୱାରା ଏକ ବୃହତ୍ କାର୍ଯ୍ୟ ସାଧନ ହେଲେ ତାହାଙ୍କ ନାମ ଚିରସ୍ମରଣୀୟ ହେବ ।

୧୭। ଓଡ଼ିଶାର ଉଲ୍ଲିଖିତ ଭଦ୍ରଲୋକମାନେ ସାଧାରଣ ଶିକ୍ଷା କାର୍ଯ୍ୟରେ ସାହାଯ୍ୟ ଓ ସହାୟ ପ୍ରଦାନ କରିଥିବାର ଦକ୍ଷିଣ ପଶ୍ଚିମାଞ୍ଚଳର ଇନସ୍ପେକ୍ଟର ରିପୋର୍ଟ କରିଅଛନ୍ତି।

କଟକ ଓ ବାଲେଶ୍ୱର — ଜାଜପୁରର ଆସିଷ୍ଟାଣ୍ଟ କଲେକ୍ଟର ଆର୍ମଷ୍ଟ୍ରଂ ସାହେବ। କେନ୍ଦ୍ରାପଡ଼ାର ଆସିଷ୍ଟାଣ୍ଟ କଲେକ୍ଟର ଜି. କେ ବେବର୍ଡ଼ର ସାହେବ। ବାବୁ ଗୋଲକ ଚନ୍ଦ୍ର ବୋଷ, ବାବୁ ଶିବ ପ୍ରସାଦ ସିଂହ ଏବଂ ବାବୁ ବୃନ୍ଦାବନ ମଣ୍ଡଳ।

ପୁରୀ ଅନୁଗୁଳରେ — ବାବୁ ରମାକାନ୍ତ ଚଟ୍ଟୋପାଧ୍ୟାୟ, ବାବୁ ଉଦୟଚାନ୍ଦ ଦତ୍ତ, ବାବୁ ପ୍ରସନ୍ନ ଚନ୍ଦ୍ର ଗାଙ୍ଗୁଲି, ବାବୁ ନରସିଂହ ଚରଣ ଦାସ ଓ ବାବୁ କୃଷ୍ଣ ମୋହନ ରାୟ।

## ( ୩ୟ ଭାଗ, ୧୮।୪।୧୮୬୮, ସଂଖ୍ୟା ୧୬ )

୪୮। କଟକ ହାଇସ୍କୁଲର ବାର୍ଷିକ ପାରିତୋଷିକ ଦାନ।

ଗତ ସୋମବାର ବେଳ ଘ ୧୧ଟା ସମୟରେ କଟକ ହାଇସ୍କୁଲ ଗୃହରେ ଏ ସଭା ହୋଇଥିଲା। ଅନ୍ୟାନ୍ୟ ଲୋକ ମଧ୍ୟରେ ନଗରବାସୀ ବହୁତ ବିଲାତ ମେମ ଓ ପ୍ରଧାନ ୨ ଇଂରାଜମାନେ ଆଗମନ କରିଥିଲେ ଏବଂ ଏ ଦେଶୀୟ ଗବର୍ଣ୍ଣମେଣ୍ଟ କର୍ମଚାରୀ ଓ ଜମିଦାର ମଧ୍ୟ ଅନେକ ଉପସ୍ଥିତ ଥିଲେ। ଶ୍ରୀଯୁକ୍ତ କମିଶ୍ନର ସାହେବ ସଭାପତି ସ୍ୱରୂପେ ସଭାର କାର୍ଯ୍ୟାରମ୍ଭ କରି ପ୍ରଥମେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ବାଳକମାନଙ୍କୁ ପ୍ରଶଂସାପତ୍ର ପ୍ରଦାନ କଲେ ଏବଂ ତଦନନ୍ତର ଇଂରାଜୀ ଓ ବଙ୍ଗଳା ଏ ଉଭୟ ବିଦ୍ୟାଳୟର ଯେ ସମସ୍ତ ବାଳକମାନେ ଉତ୍ତମରୂପେ ପରୀକ୍ଷା ଦେଇଥିଲେ ସେ ସମସ୍ତଙ୍କର ପ୍ରାପ୍ୟ ପାରିତୋଷିକ ବିତରଣ କଲେ। ଏଥିରେ ପ୍ରାୟ ଅର୍ଦ୍ଧଘଣ୍ଟାର ଅଧିକ ସମୟ ଗତ ହେଲା। ଗବର୍ଣ୍ଣମେଣ୍ଟଙ୍କ ଦତ୍ତ ପୁରସ୍କାର ବାଣ୍ଟିସାରି ସଭାପତି ମହାଶୟ ଆପଣା ହାତରୁ ୫୧୦୦ଙ୍କା ବାହାର କରି ଇଂରାଜୀ ସ୍କୁଲର ପ୍ରତ୍ୟେକ ଶ୍ରେଣୀର ଛାତ୍ର ସର୍ବୋତ୍କୃଷ୍ଟ ଉତ୍କଳ ବାଳକଙ୍କୁ ପ୍ରଦାନକଲେ। ଉପସ୍ଥିତ ଦେଶୀୟ ସଭ୍ୟମାନଙ୍କ ମଧ୍ୟରୁ କେତେକ ଲୋକ ପ୍ରାୟ ୫୨୫୧ କି ୫୭୦୧ଙ୍କା ସରିକ ଉପଯୁକ୍ତ ବାଳକମାନଙ୍କୁ ପ୍ରଦାନ କରି ସଭାକୁ ସନ୍ତୁଷ୍ଟ କଲେ। ସଭାପତି ଏବଂ ଅନ୍ୟାନ୍ୟ ସଭ୍ୟ-ମାନଙ୍କର ଏରୂପ ବଦାନ୍ୟତା ସଦନୁଷ୍ଠାନ ଦେଖି ଛାତ୍ରମାନେ ବୋଧହୁଅଇ ମୌନାବ-ଲମ୍ବନରେ ଅକୃତଜ୍ଞତାର ଆଶଙ୍କା କରି ଇଂରାଜ ବିଦ୍ୟାଳୟର ଏକଜଣ ଛାତ୍ର ଇଂରାଜୀ

ଭାଷାରେ ଏବଂ ଅନ୍ୟ ଏତଦ୍ଦେଶୀୟ ଏକଜଣ ଛାତ୍ର ଉତ୍କଳ ଭାଷାରେ ଏକଏକ ଖଣ୍ଡ ପଦ୍ୟ ପାଠକରି ଦତ୍ତକବିତ୍ତରେ ସଭାପତିଙ୍କର ଶିକ୍ଷା ବିଷୟରେ ପଦ୍ୟ ଓ ଉତ୍ସାହର ପ୍ରସଙ୍ଗ ବ୍ୟକ୍ତକରି ତାହାଙ୍କୁ ଧନ୍ୟବାଦ ଦେଲେ ଓ ସଭାପତି ଅତି ଆନନ୍ଦ ସହକାରେ ଉକ୍ତ ଦୁଇପଦ ଗ୍ରହଣକରି ସେମାନଙ୍କର ସମ୍ମାନ କଲେ ଏବଂ ସେମାନଙ୍କୁ କେତେକ ହିତବାକ୍ୟ କହି ଆପଣା ସ୍ନେହର ପରିଚୟ ଦେଲେ ।

ଏ ସକାଳ ବ୍ୟାପାର ଶେଷ ହେଲାର ସେକ୍ରେଟେରୀ ଶ୍ରୀ ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ଗତବର୍ଷର ବିଜ୍ଞାପନ ପାଠହେଲା । ସେଥିରୁ ଜଣାଗଲା ଯେ ଗତବର୍ଷ ସ୍କୁଲର କାର୍ଯ୍ୟ ସର୍ବାଂଶରେ ଉତ୍ତମ ଚଳିଅଛି । ଛାତ୍ରଙ୍କ ସଂଖ୍ୟା ଓ ସ୍କୁଲର ଆୟ ଅଧିକ ହୋଇଅଛି, ଶିକ୍ଷକମାନେ କାର୍ଯ୍ୟ ସାଧନଦ୍ୱାରା ପ୍ରଶଂସା ପାଇଅଛନ୍ତି ଏବଂ ହାଇସ୍କୁଲ ସ୍ଥାପନ ହେବାରେ ଏମାନଙ୍କର ବେତନବୃଦ୍ଧି ହୋଇ-ଅଛି ।

ଅନନ୍ତର ସଭାପତି ମହାଶୟ ଗୋଟିଏ ସୁଦୀର୍ଘ ଓ ସଦ୍‌ବକ୍ତୃତା ପ୍ରଦାନ କଲେ । × × × । ଏକ ଏକ ବିଷୟରେ ତାଙ୍କର ମନୋଭାବ ଯେମନ୍ତ ବ୍ୟକ୍ତ କଲେ ସେଥିରୁ ତାଙ୍କର ଗମ୍ଭୀର ବୁଦ୍ଧି ଓ ଆମ୍ଭମାନଙ୍କର ହିତଚେଷ୍ଟାର ପରିଚୟ ପ୍ରାପ୍ତ ହୁଅଇ । ପାଠକମାନଙ୍କର ଜାଣିବା କାରଣ ବକ୍ତୃତାର ସାରାଂଶ ଏଠାରେ ବର୍ଣ୍ଣନା କରୁଅଛୁଁ ।

ପ୍ରଥମରେ ଗତବର୍ଷର ପରୀକ୍ଷାର ଫଳ ଉତ୍ତମ ବିବେଚନାରେ ଏବଂ ଏଠାରେ ହାଇସ୍କୁଲ ସ୍ଥାପନ ହେବାରେ ସନ୍ତୁଷ୍ଟ ପ୍ରକାଶ କଲେ ଏବଂ ପ୍ରବେଶିକା ପରୀକ୍ଷାରେ ଶୃରଜଣ ଉତ୍ତୀର୍ଣ୍ଣ ହୋଇଥିବାରୁ ତନ୍ନିମିତ୍ତ ସ୍କୁଲର ପ୍ରଧାନ ଶିକ୍ଷକ ବାବୁ ଶ୍ୟାମମୋହନ ବନ୍ଦ୍ୟୋପାଧ୍ୟାୟଙ୍କର ପରିଶ୍ରମନାସ୍ତି ପ୍ରଶଂସା କଲେ ଏବଂ ଉକ୍ତବି-ଦ୍ୟାଳୟର ବିଦ୍ୟାଳୟର ଉନ୍ନତି ଦେଖିବାଲାଗି ନିତାନ୍ତ ବ୍ୟଗ୍ରତା ପ୍ରକାଶ କଲେ ଏବଂ ଏପଥରେ ଯେପ୍ରତି ଯେଉଁ ଉପାୟମାନ କରିବାର ପ୍ରସ୍ତାବ ହୋଇଅଛି ବା ଶୀଘ୍ର ହେବ ସେ ସମସ୍ତର ବିବରଣ ଓ ହିତାହିତ ଅତି ସୁନ୍ଦର ରୂପେ ବ୍ୟକ୍ତକଲେ ଯଥା :—

୧ । ବର୍ତ୍ତମାନ ଛାତ୍ର ଓ ଶିକ୍ଷକଙ୍କ ସଂଖ୍ୟା ବୃଦ୍ଧିରେ ସ୍କୁଲ ଗୃହକୁ ବଢ଼ାଇବାର ପ୍ରସ୍ତାବ ।

୨ । ଏ ପ୍ରଦେଶରେ ବିଦ୍ୟାଳୟ ସମ୍ବନ୍ଧରେ ବଙ୍ଗଭାଷା ଶିକ୍ଷାଦେବା ପ୍ରସଙ୍ଗରେ ସଭାପତି କହିଲେ ଯେ ତାହାଙ୍କ ବିବେଚନାରେ ବଙ୍ଗଭାଷାର କୌଣସି ପ୍ରୟୋଜନ ନାହିଁ । ଏହାକୁ ଏକାବେଳକେ ଉଠାଇ ଦେବାର କର୍ତ୍ତବ୍ୟ । ସମସ୍ତ

ଲୋକଙ୍କୁ ସ୍ୱଦେଶୀୟ ଭାଷା ଶିଖିବାର ଉଚିତ ଏବଂ ଯାହାର କୌଣସି ବିଦେଶୀୟ ବିଦ୍ୟା ଅଭ୍ୟାସ କରିବାର ଆବଶ୍ୟକ ହେବ ସେ ଇଂରେଜୀ ସ୍କୁଲକୁ ଆସିବ । ବଙ୍ଗଳା ଭାଷା ଶିଖି ଏ ଦେଶୀୟ ଲୋକଙ୍କର କିଛି ଉପକାର ନାହିଁ । ଏତେଦିନ ବଙ୍ଗଳା ଭାଷା ଉଠାଇ ନଦେବାର ଏହି କାରଣ ବ୍ୟକ୍ତ ହୋଇଅଛି ଯେ ଉତ୍କଳ ଭାଷାରେ ଶିକ୍ଷୋପ-ଯୋଗୀ ଅନେକ ଓ ଉତ୍ତମ ପୁସ୍ତକ ନାହିଁ କିନ୍ତୁ ବର୍ତ୍ତମାନ ଯେତେ ପୁସ୍ତକ ଉତ୍କଳ ଭାଷାରେ ପ୍ରାପ୍ତ ହୁଅଇ ଏବଂ କଟକ ପ୍ରିଣ୍ଟିଂ କୁମ୍ପାନୀ ଯେତେ ପୁସ୍ତକ ମୁଦ୍ରିତ କରିଅଛନ୍ତି କିମ୍ବା ମୁଦ୍ରିତ କରିବେ ବୋଲି ପ୍ରସ୍ତୁତ କରିଅଛନ୍ତି ଏଥିରୁ ବୋଧହୁଅଇ ଯେ ଏ ଅଭାବ ଅଧିକ କାଳ ରହିବ ନାହିଁ । ବିଶେଷରେ ବର୍ତ୍ତମାନ ଏ ଦେଶର କେତେକ ଲୋକ ଇଂରାଜୀ ଓ ବଙ୍ଗଳା ଭାଷାରେ ଶିକ୍ଷା ଲାଭ କରିଥିବାରୁ ଅତ୍ୟଳ୍ପ କାଳରେ ପ୍ରଚୁର ପୁସ୍ତକ ପ୍ରଚାର କରିବାର ଆଶା ଦେଖା ଯାଉଅଛି । ଏ ଅବସ୍ଥାରେ ବଙ୍ଗଭାଷା ଶିଖିବାର କୌଣସି କାରଣ ନାହିଁ ।

୩ । କଟକ ହାଇସ୍କୁଲରେ ଭୂମିମାପ ଓ ଜରିପ ଶିକ୍ଷା ଦେବାପାଇଁ ପ୍ରସ୍ତାବ ଗବର୍ଣ୍ଣମେଣ୍ଟକୁ ଯାଇଅଛି ।

୪ । ଆଇନ ଶିକ୍ଷାଦେବା ନିମିତ୍ତ ହାଇସ୍କୁଲରେ କୌଣସି ସୁଯୋଗ କରି ଦେବାପାଇଁ ଏକଖଣ୍ଡ ଅବେଦନପତ୍ର ସଭାପତିଙ୍କ ନିକଟକୁ ଆସିଥିବାରୁ ତାହା ଗ୍ରାହ୍ୟ କରି ସେ କହିଲେ ଯେ ଗବର୍ଣ୍ଣମେଣ୍ଟକୁ ଉକ୍ତ ପ୍ରସ୍ତାବ ପଠାଇବା ପାଇଁ ଏ ଦେଶର ସ୍କୁଲ କମିଟି ସ୍ଥିର କରିଅଛନ୍ତି ।

× × ×

ପ୍ରଜାମାନଙ୍କ ଅଜ୍ଞାନତା ନାଶ କରିବା ନିମିତ୍ତ ସେମାନଙ୍କୁ ବିଦ୍ୟାଶିକ୍ଷା ଦେବାର ଏକ ସହଜ ଉପାୟର ପ୍ରସ୍ତାବ ହୋଇଅଛି ।

ଏ ଉପାୟର ନାମ ଗୁରୁଶିକ୍ଷା ପ୍ରଣାଳୀ ଅଟଇ । କଟକ ନଗରରେ ଏକ ବୃହତ୍ ବିଦ୍ୟାଳୟ ସ୍ଥାପନକରି ସେଠାରେ ଅବଧାନ ଏବଂ ବିଦ୍ୟାଳୟର ଶିକ୍ଷକ କାର୍ଯ୍ୟାକାଂକ୍ଷୀମାନଙ୍କୁ ଶିକ୍ଷା ଦିଆଯିବ ।

× × ×

ଏହିରୂପେ ଶିକ୍ଷା ସମ୍ବନ୍ଧୀୟ ପ୍ରଧାନ ୨ ବିଷୟର ଆଲୋଚନା କରି ସଭାପତି ବକ୍ତୃତା ଶେଷକଲେ ଏବଂ ତଦୁତ୍ତାରେ ଶ୍ରୀଯୁକ୍ତ ପାଦ୍ରୀ ବକଲି ସାହେବ ସ୍ୱାଭାବିକ ସଦ ବକ୍ତୃତାଦ୍ୱାରା ପାଦ୍ରୀମାନଙ୍କଦ୍ୱାରା ଏ ଦେଶର ଶିକ୍ଷାକାର୍ଯ୍ୟ ଯେ ପର୍ଯ୍ୟନ୍ତ ଅଗ୍ରସର ହୋଇଅଛି ସେଥିର ପରିଚୟ ଦେଲେ ।

× × ×

ପାଦ୍ରୀ ବକ୍‌ଲ ସାହେବଙ୍କ ଉତ୍ତାରେ ପାଦ୍ରୀ କେମ୍ପଲ ସାହେବ ଅନେକ ଅଧୀନରେଥିବା ବାଳକାବିଦ୍ୟାଳୟର ପତ୍ର ସାମାନ୍ୟ ପରିଚୟ ଦେଇ ବିଦ୍ୟା ଶିକ୍ଷାଦାନ ବିଷୟରେ ଆପଣାର ଅନୁରାଗ ପ୍ରକାଶ କଲେ ।

× × ×

( ୩ୟ ଭାଗ, ୫ । ୯ । ୧୮୭୮, ସଂଖ୍ୟା ୩୭ )

୧୯ । ପ୍ରାଚୀନ ଶିଳ୍ପକାର୍ଯ୍ୟର ଅନୁସନ୍ଧାନ

ପାଠକମାନେ ଅବଗତ ଅଛନ୍ତି ଯେ କେତେକଦିନ ହେଲା ବିଲାତର ସେକ୍ରେଟେରୀଙ୍କ ଆଜ୍ଞାନୁସାରେ ହିନ୍ଦୁସ୍ଥାନର ପ୍ରଧାନ ପ୍ରାଚୀନ ମନ୍ଦିର ଓ ଅନ୍ୟ ପ୍ରକାର ଶିଳ୍ପକାର୍ଯ୍ୟର ତାଲିକା ଓ ବିବରଣ ପ୍ରସ୍ତୁତ କରିବାର ଉଦ୍ୟମ ହେଉଅଛି ଓ ସେଥିପାଇଁ କେତେଜଣ ଉପଯୁକ୍ତ ଫଟୋଗ୍ରାଫି ଚିତ୍ରକର ଏବଂ ସାଙ୍ଗନେବା ବ୍ୟକ୍ତିମାନେ ନିଯୁକ୍ତ ହୋଇଅଛନ୍ତି । ଓଡ଼ିଶାରେ ଏପ୍ରକାର ଅନେକ ପ୍ରାଚୀନ ଅଟ୍ଟାଳିକା ଓ ଶିଳ୍ପକାର୍ଯ୍ୟ ଅଛି ଏବଂ ସେ ସମସ୍ତର ବିବରଣ ଜଣାଗଲେ ପୂର୍ବକାଳର ଇତିହାସ ପକ୍ଷରେ ଅନେକ ସାହାଯ୍ୟ ହେବ ବୋଲି କଲିକତା ନଗରର ସୁବିଖ୍ୟାତ ବାବୁ ରାଜେନ୍ଦ୍ରଲାଲ ମିତ୍ର ବଙ୍ଗଳା ଗବର୍ଣ୍ଣମେଣ୍ଟକୁ ଜଣାଇଥିଲେ କି ଯେବେ ତାହାଙ୍କପ୍ରତି ଆଦେଶ ହେବ ସେ ଓଡ଼ିଶାର ପ୍ରାଚୀନ ଶିଳ୍ପକାର୍ଯ୍ୟ ସନ୍ଦର୍ଶନ କରି ଯଥାସାଧ୍ୟ ସେ ସମସ୍ତର ଚିତ୍ରପଟ ଏବଂ ବିବରଣ ସଂଗ୍ରହ କରିବେ ।

ଶ୍ରୀ ରାଜେନ୍ଦ୍ର ବାବୁଙ୍କ ଜାଣିବାରେ ଓଡ଼ିଶାର ଉଲ୍ଲିଖିତ ସ୍ଥାନମାନ ପ୍ରାଚୀନ ବିବରଣ ଅନୁସନ୍ଧାନକାରୀଙ୍କର ଦର୍ଶନ କରିବାର ଆବଶ୍ୟକ ଯଥା—

୧ । ଜଲେଶ୍ୱର — ଏଠାରେ ପୂର୍ବ ପଠାଣ ଶାସନ ସମୟର ଗୋଟିଏ ମସଜିଦ୍ ଏବଂ ଗୋଟିଏ ପୁରାତନ ଦୁର୍ଗର ଅବଶିଷ୍ଟାଂଶ ଅଛି । ତାହାର ଇତିହାସ ଜଣାନାହିଁ ।

୨ । ବାଲେଶ୍ୱର — ଏହାକୁ ନୀଳ ରାଜାର ରାଜଧାନୀ ବୋଲି କଥିତ ଅଛି । ଏଠାରେ ଗୋଟିଏ ମାଟିଢିପ ଅଛି ସେଥି ଉପରେ ରାଜାଙ୍କର ନଅର ଥିବାର କୁହାଯାଏ ମାତ୍ର ଏହା ବୌଦ୍ଧମାନଙ୍କର କୀର୍ତ୍ତି ହୋଇପାରେ ।

୩ । ଯାଜପୁର — ଏ ଗୋଟିଏ ହିନ୍ଦୁ ତୀର୍ଥସ୍ଥାନ । ଏଠାରେ ଅନେକ ମନ୍ଦିର ଅଟ୍ଟାଳିକା ଓ ଗୋଟିଏ ଚମତ୍କାର ସ୍ତମ୍ଭ ଅଛି ।

୪ । ଚଉଦୁଆର — କଟକ ନିକଟରେ । ଏସ୍ଥଳ ବୌଦ୍ଧମାନଙ୍କର ନଗରଥିଲା । ଏଠାରେ ଅନେକ ପୁରାତନ ଶିଲକାର୍ଯ୍ୟର ଚିହ୍ନପ୍ରାପ୍ତ ହୁଅଇ ।

୫ । କଟକ — ଏସ୍ଥଳର ପ୍ରାଚୀନ ଦୁର୍ଗ ଓ ସାରଙ୍ଗଗଡ଼, ଚଢ଼ାଗଡ଼ ଓ ନଗରଜ ପ୍ରଭୃତି ସ୍ଥଳରେ ବୌଦ୍ଧମାନଙ୍କର କୀର୍ତ୍ତିର ଚିହ୍ନ ଥିବାର ଜଣାଯାଏ ।

୬ । ବୈତ୍ୟପୁର — କେନ୍ଦ୍ରାପଡ଼ା ନିକଟରେ । ଏଠାରେ ପୁରାତନ ମନ୍ଦିରମାନ ଅଛି ।

୭ । କଣାରେଖ — ଏଠାରେ ଏକ କୃଷ୍ଣବର୍ଣ୍ଣ ମନ୍ଦିର ଏବଂ ଅନ୍ୟାନ୍ୟ ଭଗ୍ନାଟ୍ଟାଳିକା ଅଛି ।

୮ । ପୁରୀ — ଗୁଣ୍ଡିଚାଘର ଓ ଖୋରଧା ସହିତ ।

୯ । ଖଣ୍ଡଗିରି — ଏ ସ୍ଥଳରେ ଚମତ୍କାର ଗୁମ୍ଫାମାନ ଅଛି ।

୧୦ । ଭୁବନେଶ୍ୱର — ଏଠାରେ ପୂର୍ବକାଳର ବହୁତ ମନ୍ଦିରମାନ ଅଛି । ଗୋଟିଏ ୨ ବାର କି ଚୌଦଶ ବର୍ଷ ପୂର୍ବରୁ ହୋଇଅଛି ।

୧୧ । ଧବଳଗିରି — ଏଠାରେ ପଥରର ପାହାଡ଼ ଅଛି । ସେଥି-ଉପରେ କି କି ବୃତ୍ତାନ୍ତ ଲେଖାଅଛି ।

୧୨ । ଉଦୟଗିରି — ପ୍ରା ଅଳଚ ଆଲମଗିରି ପର୍ବତ ଓ ସେଥିରେ ଥିବା ଗୁମ୍ଫାମାନ ।

ବାବୁ ରାଜେନ୍ଦ୍ରଲାଲ ମିତ୍ର ଗବର୍ଣ୍ଣମେଣ୍ଟରେ ପ୍ରସ୍ତାବ କରିଅଛନ୍ତି ଯେ ଯଦ୍ୟପି ଗବର୍ଣ୍ଣମେଣ୍ଟ ତାହାଙ୍କୁ ଏ କାର୍ଯ୍ୟର ଭାରଦଅନ୍ତି ତେବେ ସେ ବିନା ବେତନରେ ଆଗାମୀ ଦୁର୍ଗା ପୂଜା ଓ ଶୀତକାଳର କଲେଜ ବନ୍ଦ ସମୟରେ ବୋର୍ଡରୁ ଛୁଟିନେଇ ଏକାର୍ଯ୍ୟ କରିବେ । ତାହାଙ୍କର ପାଥେୟ ଏବଂ ଜରିପ, ମାପ, ଓ ଭୂମିଖନନ, ଜଙ୍ଗଲ କାଟିବା, ଏବଂ ଅନ୍ୟାନ୍ୟ ବ୍ୟୟ ଦୁଇମାସର ଟ୧୨୦୦ଙ୍କାରୁ ଅଧିକ ପଡ଼ିବନାହିଁ । ଚିତ୍ରକାରଙ୍କର ବେତନ ଓ ପାଥେୟ ଖର୍ଚ୍ଚା ପ୍ରାୟ ଟ୧୫୦୯ ପଡ଼ିବ ଏବଂ ସେ ସ୍ୱୟଂ ଫଟୋଗ୍ରାଫି ଚିତ୍ର ବିଷୟ ଜାଣି ଥିବାରୁ ଏଥିରେ ମଧ୍ୟ ବସ୍ତୁର ବ୍ୟୟ ହେବନାହିଁ ।

ଶ୍ରୀଯୁକ୍ତ ଲେଫ୍‌ଟେନାଣ୍ଟ ଗବର୍ଣ୍ଣର ଏପ୍ରସ୍ତାବ ଗବର୍ଣ୍ଣର ଜେନେରାଲଙ୍କ ନିକଟକୁ ପଠାଇ ସେଥିର ସମୁଚିତ ପୋଷକତା କଲେ ଏବଂ ଲେଖିଲେ ଯେ ରାଜେନ୍ଦ୍ର ବାବୁ ଏକାର୍ଯ୍ୟଭାର ନେବାକୁ ସମ୍ୟକ୍‌ରୂପେ ଉପଯୁକ୍ତ ଅଟନ୍ତି । ଅତଏବ ତାହାଙ୍କର

ଏ ସାଧାରଣ ଉପକାରଜନକ ପ୍ରସ୍ତାବ ଗ୍ରାହ୍ୟ କରିବାର ଉଚିତ । ଶ୍ରୀଯୁକ୍ତ ଗବର୍ଣ୍ଣର ଜେନେରଲ ସାହେବ ବାବୁଙ୍କର ପ୍ରସ୍ତାବ ଗ୍ରହଣ କରିବା ନିମିତ୍ତ ଲେଫଟନାଣ୍ଟ ଗବର୍ଣ୍ଣରଙ୍କୁ ଅନୁରୋଧ କରିଅଛନ୍ତି ଏବଂ ଲେଖିଅଛନ୍ତି ଯେ ଗବର୍ଣ୍ଣମେଣ୍ଟ ଫଣ୍ଡରୁ ବାବୁଙ୍କୁ ଧନ୍ୟବାଦ ଦେବେ ।

ଆମ୍ଭେମାନେ ଉପର୍ଯ୍ୟୁକ୍ତ ସମ୍ବାଦ ତେଲ ନିଉସରେ ପାଠକରି କି ପର୍ଯ୍ୟନ୍ତ ଆନନ୍ଦ ହେଲୁଁ କହିନପାରୁ । ଓଡ଼ିଶାର ପୂର୍ବ ବୃତ୍ତାନ୍ତମାନ ଜଣାପିବାର ସମ୍ଭବ ହୋଇଅଛି ଏହା ଅନୁମାନ କରି ଓଡ଼ିଶାବାସୀ ସମସ୍ତେ ଆନନ୍ଦିତ ହେବେ ସନ୍ଦେହ ନାହିଁ । ଏଥିରେ ଯେପରିକି ଦେଖାଯାଏ ଯେ ଜଣେ ବଙ୍ଗଦେଶୀୟ ଲୋକ ଆମ୍ଭମାନଙ୍କର ବୃତ୍ତାନ୍ତ ଜାଣିବାପାଇଁ ସ୍ୱୟଂ ବ୍ୟୟ ଓ କ୍ଲେଶ ସ୍ୱୀକାର କରିଅଛନ୍ତି ସେଥିପାଇଁ ଆମ୍ଭେମାନେ ଦ୍ୱିଗୁଣ ଅହ୍ଲାଦିତ ହେଉଅଛୁଁ । ଆମ୍ଭେମାନେ ଏ ସମ୍ବାଦ ସର୍ବସାଧାରଣଙ୍କୁ ଜଣାଇ ଏହି ପ୍ରାର୍ଥନା କରୁଅଛୁଁ ଯେ ଯେତେବେଳେ ରାଜେନ୍ଦ୍ର ବାବୁ ଓଡ଼ିଶାରେ ପ୍ରବେଶ ହେବେ ତେତେବେଳେ ଏ ଦେଶୀୟ ଲୋକମାନେ ଯାହାଙ୍କୁ ଯେଉଁଠାରେ ସୁଯୋଗ ହେବ ବାବୁଙ୍କସଙ୍ଗେ ସାକ୍ଷାତ୍ କରି ତାହାଙ୍କ ଅନୁସନ୍ଧାନ କରିବା ବିଷୟରେ ଯାହାକୁ ଯାହା ଜଣାଥିବ ଆଗ୍ରହ ପୂର୍ବକ ସକଳ କଥା ତାହାଙ୍କୁ ଜଣାଇବେ ଏବଂ ଯଥାରୂପ ତାହାଙ୍କର ସମ୍ମାନ ଓ ତାହାଙ୍କଠାରେ କୃତଜ୍ଞତା ପ୍ରକାଶ କରିବେ ଯେ ସେଥିରେ ତାହାଙ୍କର ଅଧିକ ଉତ୍ସାହ ବର୍ଦ୍ଧନ ହେବ ଏବଂ ଏ ଦେଶର ଲୋକ ଯେ ତାହାଙ୍କ ହିତକାର୍ଯ୍ୟ ଗ୍ରହଣ କରିବାକୁ ଅକ୍ଷମ ନୁହନ୍ତି ତାହା ପ୍ରକାଶ ହେବ ।

ଯେତେବେଳେ ରାଜେନ୍ଦ୍ର ବାବୁଙ୍କ ପରି ଅନ୍ୟଦେଶୀୟ ଏକ ଏକ ବ୍ୟକ୍ତି ସାଧାରଣ ହିତକାର୍ଯ୍ୟରେ ଇଚ୍ଛାସହିତ ପରିଶ୍ରମ ଓ ବ୍ୟୟ ସ୍ୱୀକାର କରିବେ ତେତେବେଳେ ଏ ଦେଶର କେତେ ଉନ୍ନତିହେବ ବ୍ୟକ୍ତ କରିବାର ଅଶକ୍ତ ଅଟଇ ।

୬୦ । ସାପ୍ତାହିକ ସମ୍ବାଦ ।

'ବୋଧ ଦାୟିନୀ'

ଆମ୍ଭେମାନେ ବାଲେଶ୍ୱର ନଗରଠାରୁ 'ବୋଧ ଦାୟିନୀ' ନାମ୍ନୀ ଖଣ୍ଡିଏ ମାସିକ ପତ୍ରିକାର ପ୍ରଥମଖଣ୍ଡ ପ୍ରାପ୍ତ ହେବାର କୃତଜ୍ଞତାପୂର୍ବକ ସ୍ୱୀକାର

କରୁଅଛୁଁ । ଅସମୟରେ ପତ୍ରିକା ପାଇବାରୁ ଏ ସମ୍ବାଦରେ ସେଥିର ସମ୍ୟକ ପରିଚୟ ପାଠକମାନଙ୍କୁ ଦେଇ ନ ପାରିଲୁଁ । ପତ୍ରିକା ଖଣ୍ଡି ସମସ୍ତଙ୍କର ପ୍ରୀତିଭାଜନ ହେଉ ଏହି ଆମ୍ଭମାନଙ୍କର ପ୍ରାର୍ଥନା ।

## ( ୩ୟ ଭାଗ, ୧୯ । ୯ । ୧୮୭୮, ସଂଖ୍ୟା ୩୮ )

୨୧ ।

### ବିଜ୍ଞାପନ

ଭଦ୍ରମାସ ପ୍ରଥମ ତାରିଖଠାରୁ ବାଲେଶ୍ୱର ଉତ୍କଳ ପ୍ରେସରେ 'ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦ ବାହିକା' ନାମ୍ନୀ ଖଣ୍ଡେ ମାସିକ ପତ୍ରିକା ପ୍ରକାଶିତ ହେବାକୁ ଆରମ୍ଭ ହୋଇଅଛି । ତାହାର ବାର୍ଷିକ ମୂଲ୍ୟ (ମାସୁଲ ସହିତ) ଟ ୨।. ଷାଣ୍ମାସିକ ଟ ୧। ଓ ତ୍ରୈମାସିକ ଟ୦।୮/ ମାତ୍ର । ଯେଉଁମାନେ ଗ୍ରାହକ ହେବାକୁ ଇଚ୍ଛା କରନ୍ତି ନିମ୍ନଲିଖିତ ସ୍ୱାକ୍ଷରକାରୀ ନିକଟକୁ ପତ୍ର ପଠାଇଲେ ପ୍ରାପ୍ତ ହୋଇ ପାରିବେ । ଇତି ।

ବାଲେଶ୍ୱର<br>ଉତ୍କଳପ୍ରେସ } ଶ୍ରୀ ଫକୀର ମୋହନ ସେନାପତି

## ( ୩ୟ ଭାଗ, ୧୭ । ୧୦ । ୧୮୭୮, ସଂଖ୍ୟା ୪୧ )

୨୨ ।

### ଉତ୍କଳ ଦେଶର ପୁରାତନ ଶିଳ୍ପ କାର୍ଯ୍ୟର ଅନୁସନ୍ଧାନ ।

ଆମ୍ଭେମାନେ ଅଳ୍ପକାଳ ହେଲା ପାଠକମାନଙ୍କୁ ଜଣାଇଥିଲୁଁ ଯେ ଓଡ଼ିଶାର ତୀର୍ଥସ୍ଥାନ ସମୂହରେ ଥିବା ପୁରାତନ ଶିଳ୍ପ କାର୍ଯ୍ୟର ଅନୁସନ୍ଧାନ କାରଣ ଶ୍ରୀଯୁକ୍ତ ବାବୁ ରାଜେନ୍ଦ୍ର ଲାଲ ମିତ୍ର ଦୁର୍ଗୋତ୍ସବ କଚେରୀ ବନ୍ଦ ସମୟରେ ଆସନ୍ତେ । ବାସ୍ତବରେ ବାବୁଙ୍କର ସେହିପ୍ରକାର ମନସ୍ଥ ଥିଲା କିନ୍ତୁ ଦୁର୍ଗୋତ୍ସବ ସମୟକୁ ବର୍ଷାକାଳ ଶେଷ ହୋଇ ନଥିବାରୁ ଭ୍ରମଣ ପକ୍ଷରେ ନାନାପ୍ରକାର କ୍ଳେଶର ଆଶଙ୍କା ଥିବାରୁ ସେ ଇଚ୍ଛାକୁ ପରିତ୍ୟାଗ କରି ଶୀତକାଳରେ ଏ ସ୍ଥାନକୁ ଆସିବାର ସ୍ଥିର କରିଅଛନ୍ତି । ଯେଉଁ ମହତ୍ ଉଦ୍ଦେଶ୍ୟରେ ଏ ବାବୁ ଆସୁଅଛନ୍ତି ତାହା ପୂର୍ବରୁ ଜଣାଇଅଛୁଁ ଏବଂ ତଦ୍ଦ୍ୱାରା ଯେ କେତେ ଉପକାର ହେବ ତାହା ପ୍ରାୟ ସମସ୍ତେ ଅନୁଭବ କରିପାରନ୍ତି । ଆମ୍ଭମାନଙ୍କ ଦେଶରେ ପୂର୍ବେ ଯେ ସମସ୍ତ ଘଟନା ହୋଇ ଯାଇଅଛି ସେଥିର କିଛି ମାତ୍ର ବର୍ଣ୍ଣନା କୌଣସି ଇତିହାସରେ ପ୍ରାପ୍ତ ହୁଅଇ ନାହିଁ । ଫଳତଃ ସେ ସମୟର ଲୋକ ଆପଣା ଆପଣାର ବୃତ୍ତାନ୍ତ ଲେଖିରଖିବା ପକ୍ଷରେ କିଛି ଯତ୍ନ କରି ନଥିଲେ ।

ଏପରି ଅବସ୍ଥାରେ ପୂର୍ବର ଇତିହାସ ଜାଣିବାର କୌଣସି ଉପାୟ ନାହିଁ । ତେବେ ସୌଭାଗ୍ୟ ବଶତଃ ସେମାନେ ଉକ୍ତ ସ୍ଥାନରେ ଯେଉଁ ଦୀର୍ଘ ସମସ୍ତ ପ୍ରାୟ ଅଧିକ କୁପେ ନିର୍ମାଣ କରି ରଖିଯାଇ ଅଛନ୍ତି କେବଳ ସେହି ସବୁର ପୂର୍ବର ଚରିତ୍ର ଯଥା ସମ୍ଭବ ଜାଣିପାରିବାର ଆଶା ହେଉଅଛି ଏବଂ ବୋଧ ହୁଅଇ ଉକ୍ତ କାର୍ଯ୍ୟମାନ ସନ୍ଦର୍ଶନ ଓ ଅନେକ ଅଟ୍ଟାଳିକାରେ ପ୍ରସ୍ତରରେ ଖୋଳା ହୋଇଥିବା ଅକ୍ଷରମାନ ପଠନ ଓ ବୟୋଃଧିକ ଲୋକମାନେ ଆପଣା ପିତା ଓ ପିତାମହ ଆଦିଙ୍କଠାରୁ କୌଣସି କାର୍ଯ୍ୟ ବିଷୟରେ ଯାହା ଅବଗତ ହୋଇଥିବେ ସେ ସମସ୍ତ ଶ୍ରବଣ କଲେ କେତେ ପୂର୍ବ ବୃତ୍ତାନ୍ତ ଜଣାଯାଇପାରେ । ଶ୍ରୀଯୁକ୍ତ ରାଜେନ୍ଦ୍ର ବାବୁ ଏ ତିନ ପ୍ରକାର ଉପାୟ ଅବଲମ୍ବନ କରିବାରେ ତ୍ରୁଟି କରିବେ ନାହିଁ କିନ୍ତୁ ଯେଉଁଠାରେ ପୂର୍ବକାଳର କୌଣସି ଅଟ୍ଟାଳିକା କି ମୂର୍ତ୍ତି ଅଛି ସେଠାର ପୁରାତନ ଓ ଜ୍ଞାନୀ ଲୋକମାନେ ଯେ ଯାହା ଜାଣନ୍ତି ସେ ସମସ୍ତ ଏକାବେଳକେ ଅବଗତ ହେବାର କଠିନ ଓ ବାବୁଙ୍କ ସଙ୍ଗେ ସମସ୍ତଙ୍କର ସାକ୍ଷାତ୍ ହୋଇପାରିବା ମଧ୍ୟ ସମ୍ଭବ ନୁହଇ କାରଣ ଆପଣ କେଉଁ ଦିନ ଓ କେତେ-ବେଳେ କେଉଁଠାରେ ପଡ଼ିଥାଏ ତାହାର କିଛି ସ୍ଥିର ନାହିଁ । ଅତଏବ ଆବଶ୍ୟକ ଯେ କୌଣସି ପୁରାତନ ଅଟ୍ଟାଳିକା କି ମୂର୍ତ୍ତି ବିଷୟରେ ଯେ ଯାହା ଜାଣନ୍ତି ତାହା ପୂର୍ବରୁ ପ୍ରକାଶ ହେଉ ଏହି ଅଭିପ୍ରାୟରେ ଆମ୍ଭେ ଅସତ୍ୟ ସୁବିଜ୍ଞ ଓ ବିଦ୍ୱାନ୍ ଦେଶାନୁରାଗୀ ମହାଶୟଙ୍କୁ ପ୍ରାର୍ଥନା କରୁଅଛୁଁ ଯେ ସେମାନେ ଏକ ୨ ଦେବତା କି ମନ୍ଦିର ସ୍ଥାପନ କି ପ୍ରକାଶ ହେବା ବିଷୟରେ ଯାହା ଯେଉଁ ଠାରୁ ସଂଗ୍ରହ କରିପାରିବେ ତାହା ଲିପିବଦ୍ଧ କରି ଆମ୍ଭମାନଙ୍କ ନିକଟକୁ ପଠାଇଲେ ଆମ୍ଭେ ପତ୍ରିକାରେ ପ୍ରକାଶ କରିବୁଁ ନଚେତ୍ ବାବୁଙ୍କ ନିକଟକୁ ପଠାଇଦେବେ । ଏ ଦେଶସ୍ଥ ଜମିଦାରମାନଙ୍କୁ ମଧ୍ୟ ପ୍ରାର୍ଥନା କରୁଅଛୁଁ ଯେ ସେମାନେ ଆପଣା ଜମିଦାରୀରେ ଥିବା କୌଣସି ପୁରାତନ ଶିଳ୍ପ କାର୍ଯ୍ୟ ବିଷୟରେ ତାହାଙ୍କ ପ୍ରଜା ମଧ୍ୟରେ ଯେଉଁମାନେ କୌଣସି ବୃତ୍ତାନ୍ତ ଅବଗତ ଥିବେ ସେମାନଙ୍କୁ ପାରିଲେ ବାବୁଙ୍କଠାରେ ଉପସ୍ଥିତ କରିବେ ନହେଲେ ତାହାଙ୍କର କାହାଣୀ ଲେଖି ପଠାଇଦେବେ । ଏ ଅନୁସନ୍ଧାନ ଯେ ପ୍ରକାର ହିତକର ସେହି ପ୍ରକାର କଠିନ ବ୍ୟାପାର ଅଟଇ ଅତଏବ ସମସ୍ତଙ୍କର ଏଥିରେ ଯୋଗଦେବାର ଉଚିତ ଅଟଇ ।

( ୩ୟ ଭାଗ, ୨୧ । ୧୧ । ୧୮୬୮, ସଂଖ୍ୟା ୪୭ )

୨୩ । ଓଡ଼ିଶାର ପୁରାତନ କାର୍ଯ୍ୟର ଅନୁସନ୍ଧାନ ।

ଏ କାର୍ଯ୍ୟସାଧନ ନିମିତ୍ତ କଲିକତାରୁ ଶ୍ରୀଯୁକ୍ତ ସୁବିଖ୍ୟାତ ବାବୁ

ରାଜେନ୍ଦ୍ର ଲାଲ ମିତ୍ରଙ୍କର ଆଗମନର କଥା ଆମ୍ଭେମାନେ ପୂର୍ବରୁ ପାଠକମାନଙ୍କୁ ଜଣାଇଥିଲୁ । ଗତ ସପ୍ତାହରେ ପ୍ରଶଂସିତ ବାବୁ ଏ ନଗରରେ ପ୍ରବେଶ ହୋଇ ବୁଧବାର ଦିନ ଭୁବନେଶ୍ୱରକୁ ଯାତ୍ରା କଲେ । ଏହାଙ୍କ ସଙ୍ଗରେ ଏକଜଣ ଇଂରାଜ ଓ ଦେଶୀୟ ଶିଳ୍ପିକର ଖଲାସି ଇତ୍ୟାଦ ପ୍ରାୟ ୪୦ଜଣ ଲୋକ ଅଛନ୍ତି । ବାବୁ ମହାଶୟ ମନ୍ଦିରର ଫଟୋଗ୍ରାଫ ନକସା ପ୍ରସ୍ତୁତ କରିବେ ଓ ଯେଉଁ ମନ୍ଦିର କ ପଥରରେ ଯାହା କିଛି ଲେଖାଥିବ ତାହା ଲେଖିନେବେ ଏବଂ ପ୍ରତ୍ୟେକ ସ୍ଥାନରେ ପୁରାତନ ଲୋକଙ୍କଠାରୁ ଉକ୍ତ ମନ୍ଦିରର ଯେ ସମସ୍ତ ବୃତ୍ତାନ୍ତ ପ୍ରାପ୍ତ ହେବେ ତାହା ଶ୍ରବଣ କରି ସେଥିର ଇତିହାସ ଲେଖିବେ ।

ଶିଳ୍ପିକରମାନେ ସାହେବଙ୍କ ଅଧିନରେ ଥାଇ ବାବୁଙ୍କର ଆଜ୍ଞାନୁସାରେ ମନ୍ଦିରମାନଙ୍କର ଅବିକଳ ମୂର୍ତ୍ତି ନିର୍ମାଣ କରିବେ । ବାବୁଙ୍କର ଅଭିପ୍ରାୟ ଏହି ଯେ ସେ ଭୁବନେଶ୍ୱର, ଖଣ୍ଡଗିରି, କୋଣାର୍କ, ପୁରୁଷୋତ୍ତମ ଓ କଣାରେଖାଦି ସ୍ଥାନର କାର୍ଯ୍ୟ ଶେଷକରି ପୁନର୍ବାର କଟକରେ ଉପସ୍ଥିତ ହେବେ ଏବଂ ଏଠାରୁ ସ୍ଥଳପଥରେ ଯାଜପୁର ଓ ବାଲେଶ୍ୱର ହୋଇ କଲିକତାକୁ ଗମନ କରିବେ । ମୂର୍ତ୍ତି ଗଠନ କାର୍ଯ୍ୟ ଏତେ ଶୀଘ୍ର ହୋଇ ନପାରିବା ହେତୁରୁ ଶିଳ୍ପିକରମାନେ ପ୍ରାୟ ଦୁଇ ତିନିମାସ ଏଠାରେ ରହିବେ ।

ଫଳେତପରେ ବାବୁଙ୍କର ଓଡ଼ିଶାକୁ ଆଗମନ କରିବାର ଉଦ୍ଦେଶ୍ୟ ଓ କାର୍ଯ୍ୟ ଏହି ଅଟଇ ମାତ୍ର ଆମ୍ଭେମାନେ ଶୁଣି ଆଶ୍ଚର୍ଯ୍ୟ ହେଲୁଁ ଯେ ଅନେକ ଲୋକମାନେ ଅବଧି ପ୍ରକୃତ କଥା ବୁଝି ନପାରି ବାବୁଙ୍କର ଆଗମନରେ ନାନାପ୍ରକାର ଆଶଙ୍କା କରି କହିଅଛନ୍ତି, କେହି କହନ୍ତି ଯେ ଏ ମହାଶୟ ଲଖରାଜ ଡେପୋଟି କଲେକ୍ଟର ନିଯୁକ୍ତ ହୋଇ ଆସିଅଛନ୍ତି ଓ କେହି କହନ୍ତି ଯେ ସଦାବର୍ତ୍ତ ମଠର ଅବସ୍ଥା ତତ୍ତ୍ୱାବଧାରଣ ଏହାଙ୍କର କାର୍ଯ୍ୟ ଅଟଇ । ବାସ୍ତବରେ ଏପରି କୌଣସି କାର୍ଯ୍ୟପାଇଁ ଗବର୍ଣ୍ଣମେଣ୍ଟ ଏହାଙ୍କୁ ଓଡ଼ିଶାକୁ ପ୍ରେରଣ କରିନାହାନ୍ତି କିମ୍ବା କାହାର ଲଖରାଜ ବାଜ୍ୟାପ୍ତ କରିବା କି ମଠର ମହନ୍ତଙ୍କୁ ବାହାର କରି ବନ୍ଦୋବସ୍ତ କରିବା କିମ୍ବା ସଦାବର୍ତ୍ତ କି ଲଖରାଜ ସମ୍ପର୍କରେ କୌଣସି ପ୍ରକାର ହସ୍ତକ୍ଷେପ କରିବାପାଇଁ ଏହାଙ୍କୁ କ୍ଷମତା ଦିଆଯାଇନାହିଁ ଓ ଏ ସମସ୍ତ ବିଷୟରେ ତାହାଙ୍କର କୌଣସି ସମ୍ପର୍କ ନାହିଁ । ଉତ୍କଳର ପ୍ରାଚୀନ ଇତିହାସ ପ୍ରକାଶ ହେବ ଏବଂ ପୁରାତନ କୀର୍ତ୍ତି ସମୂହର ବୃତ୍ତାନ୍ତ ଜଣାଯିବ ଓ ଗବର୍ଣ୍ଣମେଣ୍ଟ ଓ ସର୍ବସାଧାରଣ ସେ ସମସ୍ତର ଶିଳ୍ପ ନୈପୁଣ୍ୟର ପରିଚୟ ପାଇବେ କେବଳ ଏହି ସମସ୍ତ ବିଷୟ ସାଧନ କାରଣ ବାବୁ ରାଜେନ୍ଦ୍ର ଲାଲ ମିତ୍ର ସ୍ୱୟଂ ଉତ୍ସାହୀ ହୋଇ ବିନା ବେତନରେ ଦେଶଭ୍ରମଣର କ୍ଳେଶ ସ୍ୱୀକାର କରିଅଛନ୍ତି ଏବଂ ଯଥାସାଧ୍ୟ

ପରିଶ୍ରମରେ ତ୍ରୁଟି କରୁନାହାନ୍ତି । ଏହାଙ୍କ ପରିଶ୍ରମ ସଫଳ ହେଲେ ଆମ୍ଭମାନଙ୍କର କେତେ ଉପକାର ଅଛି ତାହା କହି ନ ପାରେ । ଓଡ଼ିଶାର ପୂର୍ବ ଗୌରବାନ୍ୱିତ ଇତିହାସ ଯେତେ ପ୍ରକାଶ ହେବ ପୁରାତନ ଚମତ୍କାର କୀର୍ତ୍ତିମାନଙ୍କର ପ୍ରତିମୂର୍ତ୍ତି ଓ ବିବରଣ ଦେଶ ବିଦେଶରେ ଯେତେ ପ୍ରଚାର ହେବ ଅନ୍ୟାନ୍ୟ ଦେଶର ବିଦ୍ୱାନ ଓ ଦେଶହିତୈଷୀ ମଣ୍ଡଳୀରେ ଓଡ଼ିଶାର ତେତେ ଆଦର ବଢ଼ିବ ଓ କ୍ରମେ ଭିନ୍ନ ଦେଶର ଲୋକମାନେ ଯେତେ ଏ ପ୍ରଦେଶର ପରିଚୟ ପାଇବେ ସେମାନଙ୍କର ତେତେ ଅନୁରାଗ ବଢ଼ିବ । ଏରୂପ ହେଲେ ଓଡ଼ିଶାର ଦୁର୍ଦ୍ଦଶା କ୍ରମଶଃ ମୁକ୍ତ ହେବ ଏବଂ ଅନ୍ୟାନ୍ୟ ଦେଶର ଲୋକମାନେ ସୁଦ୍ଧା ଏହାର ଉନ୍ନତିର ଚେଷ୍ଟା କରିବେ ସନ୍ଦେହ ନାହିଁ । ଅତଏବ ଆମ୍ଭେମାନେ ଓଡ଼ିଶାର ସମସ୍ତ ଜମିଦାର ଓ ଅନ୍ୟାନ୍ୟ ବ୍ୟକ୍ତିଙ୍କୁ ଏହି ଅନୁରୋଧ କରୁଅଛୁଁ ଯେ ସେମାନେ ଯଥାସାଧ୍ୟ ଏ ହିତକର ବ୍ୟାପାରରେ ବାବୁଙ୍କର ସହାୟତା କରନ୍ତୁ ଓ ବାବୁଙ୍କର ଆସିବାର ଯେ ସମସ୍ତ ଅଳୀକ ଭୟର କଳ୍ପନା କରିଅଛନ୍ତି ତାହା ପରିତ୍ୟାଗ ପୂର୍ବକ ଯାହାଙ୍କୁ ଯେ ବିଷୟ ଜଣାଅଛି କିମ୍ବା ଯାହାଙ୍କ ଠାରେ ଯେ ପୁସ୍ତକ ପୂର୍ବ ବୃତ୍ତାନ୍ତ ବିଷୟରେ ଅଛି ତାହାର ମର୍ମ ବାବୁଙ୍କୁ ଅବଗତ କରାନ୍ତୁ ।

## ( ୩ୟ ଭାଗ, ୧୨ । ୧୨ । ୧୮୭୮, ସଂଖ୍ୟା ୪୯ )

୨୪ ।

### କଟକ ନର୍ମାଲ ସ୍କୁଲ

ଆମ୍ଭେମାନେ ଅତି ଆନନ୍ଦର ସହିତ ପାଠକମାନଙ୍କୁ ଜଣାଉଅଛୁଁ ଯେ ଆମ୍ଭମାନଙ୍କର ଗବର୍ଣ୍ଣମେଣ୍ଟ ଓଡ଼ିଶାରେ ଶିକ୍ଷୋନ୍ନତି ସାଧନ ପକ୍ଷରେ ଅତିଶୟ ଯତ୍ନବାନ୍ ହୋଇଅଛନ୍ତି । ଏହା ଗତ ଦୁର୍ଭିକ୍ଷର ମହାଫଳ ସ୍ୱରୂପ ଅଟଇ କାରଣ ସେ ଦୁର୍ଘଟନା ହୋଇ ନଥିଲେ ଓଡ଼ିଶା ପ୍ରତି ଗବର୍ଣ୍ଣମେଣ୍ଟଙ୍କର ଏରୂପ ଶୁଭବୁଦ୍ଧି ହୋଇ ନଥାନ୍ତା । ଚଳିତ ବର୍ଷାରମ୍ଭରେ କଟକ ହାଇସ୍କୁଲ ସ୍ଥାପନ ହୋଇ ଏ ଦେଶରେ ଇଂରାଜୀ ଭାଷା ଶିକ୍ଷାର ଯେମନ୍ତ ସୁଗମ ହୋଇଅଛି ତାହା କାହାରିକୁ ଅଗୋଚର ନାହିଁ କିନ୍ତୁ ବର୍ଷ ଶେଷ ନହେଉଣୁ ଆମ୍ଭେମାନେ ଆଉରି ଗୋଟିଏ ହିତକର କଥା ଶ୍ରବଣ କଲୁ, ଏହା ସାମାନ୍ୟ ହର୍ଷର ବିଷୟ ନୁହଇ । ଆଗାମୀ ଜାନୁଏରୀ ମାସରେ କଟକରେ ଗୋଟିଏ ନର୍ମାଲ ସ୍କୁଲ ସ୍ଥାପନ ହେବ ଓ ଆପାତତଃ ଏଥିରେ ପାଞ୍ଚଜଣ ଅଧ୍ୟାପକ ନିଯୁକ୍ତ ହେବାର ବନ୍ଦୋବସ୍ତ ହୋଇଅଛି । ଯେଉଁମାନେ ଭବିଷ୍ୟତରେ ଓଡ଼ିଶାରେ ଶିକ୍ଷକ ନିଯୁକ୍ତ ହେବାର ଅଭିଲାଷୀ ହେବେ ସେମାନଙ୍କୁ ଏଠାରେ ଶିକ୍ଷା

କରିବାକୁ ହେବ ଓ ଗୁରୁ ପାଠଶାଳା ନିୟମ ଏଠାରେ ପ୍ରଚଳ ହେବ ବୋଲି ମଫ-
ସଲରେ ଯେଉଁ ଗୁରୁଙ୍କ ଅବଧାନ ହେବେ ସେମାନେ ମଧ୍ୟ ଏଠାରେ ଶିକ୍ଷା ପାଇବେ ।
ସାଧାରଣ ବିଦ୍ୟାଶିକ୍ଷା ବୃଦ୍ଧି ପକ୍ଷରେ ଏ ବିଦ୍ୟାଳୟ ଅତ୍ୟାବଶ୍ୟକ ଥିଲି ଓ ତାହା
ସ୍ଥାପନ ହେବାରେ ଅବଶ୍ୟ ସମସ୍ତେ ଆନନ୍ଦିତ ଅଛନ୍ତି ସନ୍ଦେହ ନାହିଁ ।

ଇନସ୍ପେକ୍ଟର ସାହେବ ଏ ବିଦ୍ୟାଳୟ ସ୍ଥାପନ ନିମିତ୍ତ ସ୍ୱୟଂ
କଟକକୁ ଆସି କିଛିକାଳ ଅବସ୍ଥିତି କରିବେ । ବୋଧ ହୁଅଇ ଶିକ୍ଷକ ନିଯୁକ୍ତି କାର୍ଯ୍ୟ
ଏହିଠାରେ ସମାଧାନ ହେବ । ଆମ୍ଭେମାନେ ତାହାଙ୍କୁ ଏହି ଅନୁରୋଧ କରୁଅଛୁଁ
ଯେ ଓଡ଼ିଶାର ହତଭାଗ୍ୟ ପଣ୍ଡିତଙ୍କର କଥା ଯେମନ୍ତ ସେ ବିସ୍ମୃତ ନହେବେ । ନର୍ମାଲ
ସ୍କୁଲ ଭିନ୍ନ ଶିକ୍ଷା ନିମିତ୍ତ ସ୍ଥାପନ ହେଉଅଛି ଓ ଏଥିରେ ଅବଶ୍ୟ ଲୋକଙ୍କୁ ଶିକ୍ଷକ
ପଦରେ ନିଯୁକ୍ତ କରିବା ସର୍ବମତରେ ବିଧେୟ । ଏଠାରେ ଅନେକ ଲୋକ ଏପରି
ଅଛନ୍ତି ଯେ ସେମାନେ ସଂସ୍କୃତ ଭାଷା ଉତ୍ତମରୂପେ ଜାଣନ୍ତି ଓ ଓଡ଼ିଆ ତାହାଙ୍କର
ମାତୃଭାଷା ହେବାରୁ ବଙ୍ଗ ଅଥବା ଅନ୍ୟ ବିଦେଶୀୟ ଲୋକଙ୍କଠାରୁ ସର୍ବପ୍ରକାରରେ
ଉତ୍କୃଷ୍ଟ ମାତ୍ର ସେମାନଙ୍କୁ ଏତାବତ୍ କାଳ କେହି ପଚାରି ନାହାନ୍ତି ଓ ଆମ୍ଭମାନଙ୍କର
ହିତ ସାଧକମାନେ ବଙ୍ଗ ଦେଶରୁ ପଣ୍ଡିତ ଆଣାଇ ଏମାନଙ୍କୁ ସମ୍ପୂର୍ଣ୍ଣ ରୂପେ ନୈରାଶ୍ୟ
କରିଅଛନ୍ତି । ଇନସ୍ପେକ୍ଟର ସାହେବ ଯେବେ ଏହିଥର ଏ ଦୁର୍ଭାଗ୍ୟ ପଣ୍ଡିତଙ୍କ
ପକ୍ଷରେ ବିଚାର କରିବେ ତେବେ କେବଳ ଏମାନଙ୍କର ବହୁ ଆୟାସସାଧ୍ୟ ବିଦ୍ୟୋ-
ପାର୍ଜନ ସାର୍ଥକ ହେବ ଏମନ୍ତ ନୁହଇ, ଓଡ଼ିଶାର ଲୋକମାନେ ସାହେବ ମହୋଦୟଙ୍କ
ନ୍ୟାୟର ଯଥେଷ୍ଟ ପ୍ରଶଂସା କରିବେ ।

## ୨୫ । ସମ୍ବଲପୁରରେ ଓଡ଼ିଆଶିକ୍ଷା ବିସ୍ତାର

ମଧ୍ୟପ୍ରଦେଶର ଜିଲ୍ଲାସମୂହ ପ୍ରତି ଗବର୍ଣ୍ଣମେଣ୍ଟର ଯେପ୍ରକାର ଦୃଷ୍ଟି ଅଛି
ସେପରି ଆମ୍ଭମାନଙ୍କ ପ୍ରତି ସୁଦ୍ଧା ନାହିଁ । ସେ ପ୍ରଦେଶରେ ଅଦ୍ୟାପି ଆଇନକାନୁ ହୋଇ-
ନାହିଁ ଓ ଲୋକମାନେ ଅପେକ୍ଷାକୃତ ଅନେକ ଅସଭ୍ୟାବସ୍ଥାରେ ଅଛନ୍ତି ମାତ୍ର ଆମ୍ଭେ-
ମାନେ ବହୁକାଳର ପ୍ରଜା ହୋଇଲେହେଁ ଆମ୍ଭମାନଙ୍କ ଉନ୍ନତି ସାଧନ ପକ୍ଷରେ ତେତେଦୂର
ହେଉନାହିଁ । ମଧ୍ୟପ୍ରଦେଶର ଗୋଟିଏ ଜିଲ୍ଲା ସମ୍ବଲପୁର ଆମ୍ଭମାନଙ୍କର ନିକଟବର୍ତ୍ତୀ
ଅଟେ । ସେଠାସଙ୍ଗେ ଆମ୍ଭମାନଙ୍କର ବ୍ୟବସାୟଦ୍ୱାରା ସଂଯୋଗ ଥିବାରୁ ସେଠାର
ଅବସ୍ଥାର ଅନେକ ପରିଚୟ ପାଉଅଛୁଁ ଓ କେତେବର୍ଷ ହେଲା ବିଦ୍ୟା ଶିକ୍ଷାର ଯେରୂପ
ସଦୁପାୟମାନ ସେଠାରେ ହୋଇଅଛି ତାହା ପ୍ରତିବର୍ଷ ବିସ୍ତର ଶିକ୍ଷକ ଏଠାରୁ ନିଯୁକ୍ତ
ହୋଇ ଯିବାରୁ ଆମ୍ଭେମାନେ ଏକ ପ୍ରକାର ଜ୍ଞାତ ହେଉଅଛୁଁ । କିନ୍ତୁ ସମ୍ପ୍ରତି ସମ୍ବଲ-

ସୁରଲ ବିଦ୍ୟାଳୟ ସମ୍ବନ୍ଧର ବାର୍ଷିକ ରିପୋର୍ଟର ସାରାଂଶ ପଢ଼ାନ୍ତରେ ପାଠକେ ଅବଗତ ହେଲେ ଯେ ଏଠାରେ ବିଦ୍ୟା ଶିକ୍ଷା କାର୍ଯ୍ୟ ଅସାଧାରଣ ରୂପେ ଚଳୁଅଛି । ଗତ ଛଅ ବର୍ଷରେ ୨୪୯ ବିଦ୍ୟାଳୟ ସ୍ଥାପନ ହେଲା ଏବଂ ୧୩,୨୭୭ ଛାତ୍ର ଅଧ୍ୟୟନ ନିମିତ୍ତ ନାମ ଲେଖାଇଲେ । ଲୋକମାନେ ଶିକ୍ଷା ନିମିତ୍ତ ଆଗ୍ରହ ଥିବାର ଜଣାଯାଏ କାରଣ ସମସ୍ତ ବାର୍ଷିକ ବ୍ୟୟ ଟ ୧୯୬୦୦ଙ୍କା ମଧ୍ୟରୁ ଟ ୭୨୦୦ଙ୍କା ସେମାନେ ଚାନ୍ଦାକରି ଦେଉ ଅଛନ୍ତି । ବିଦ୍ୟାଳୟ ଗୃହମାନ ଉତ୍ତମ ରୂପେ ନିର୍ମିତ ହୋଇଅଛି ଓ ସେସବୁ ଗ୍ରାମ୍ୟ ବାଳକ ବାଳିକାରେ ପରିପୂର୍ଣ୍ଣ । ସନ ୧୮୭୫ ମସିହାରେ ସ୍କୁଲର ସଂଖ୍ୟା ୨୪୧ ଓ ଛାତ୍ରସଂଖ୍ୟା ୭୯୦୦ ଥିଲା । ଅତଏବ ଶେଷ ତିନବର୍ଷରେ ବିଦ୍ୟାଦାନ କାର୍ଯ୍ୟ ବିସ୍ତର ବଢ଼ିବାର ପ୍ରକାଶ ହୁଅଇ । ଉକ୍ତ ଜିଲ୍ଲାର ଲୋକସଂଖ୍ୟା ଉପରେ ଛାତ୍ରର ଭାଗହାର କଲେ ପ୍ରତି ୭୨ ଲୋକରେ ଏକଜଣ ବିଦ୍ୟାଭ୍ୟାସ କରୁଥିବାର ଉପଲବ୍ଧି ହୁଅଇ । ଭାରତର ଅନ୍ୟ କୌଣସି ସ୍ଥାନରେ ପ୍ରାୟ ଏରୂପ ଫଳ ଦେଖା ନଯାଏ । ଇନସ୍ପେକ୍ଟର ଜେନେରାଲ ଲେଖନ୍ତି ଯେ ସେ ଜିଲ୍ଲାର ଅନ୍ତର୍ଗତ ଗଡ଼ଜାତ ରାଜାମାନେ ଆପଣା ରାଜ୍ୟରେ ବିଦ୍ୟାଶିକ୍ଷା ଦେବା ନିମିତ୍ତ ଶିକ୍ଷକ ପ୍ରାର୍ଥନା କରୁଅଛନ୍ତି ଓ ଏ ଜିଲ୍ଲା ଲୋକମାନେ ବିଦ୍ୟା ପ୍ରତି ଏରୂପ ଭକ୍ତି ପ୍ରକାଶ କରିବାରୁ ସମ୍ବଲପୁରର ଲୋକମାନେ ଅତ୍ୟନ୍ତ ବୁଦ୍ଧିଜୀବ ଥିବାର ପ୍ରମାଣ ହୁଅଇ । ଅସ୍ମଦ୍ଦେଶୀୟ ଗଡ଼ଜାତ ରାଜାମାନେ ଏଥିରୁ ଶିକ୍ଷାଗ୍ରହଣ କରନ୍ତୁ । ଏଠାରେ ଢେଙ୍କାନାଳ ବ୍ୟତିରେକେ ଆଉ କୌଣସି ରାଜା ଗୋଟିଏ ବିଦ୍ୟାଳୟ ଆପଣା ରାଜ୍ୟରେ ସ୍ଥାପନ କରିବାର ଶୁଣାଯାଏ ନାହିଁ । ବୋଧହୁଅଇ ପ୍ରଜାଙ୍କୁ ବିଦ୍ୟାଲାଭର ଉପଯୁକ୍ତ ପାତ୍ର ଏମାନେ ଜ୍ଞାନ କରନ୍ତି ନାହିଁ ।

ମାତ୍ର ସମ୍ବଲପୁରରେ ଯେମନ୍ତ ବିଦ୍ୟାଦାନର ଉପାୟମାନ ହୋଇଅଛି ତଦନୁସାରେ ଫଳ ହେଉଅଛି କି ନାହିଁ ଆମ୍ଭମାନଙ୍କର ସନ୍ଦେହ ହୁଅଇ । ବାଳକମାନେ ଶିକ୍ଷା ଲାଭକରି କି ପର୍ଯ୍ୟନ୍ତ ବ୍ୟୁତ୍ପତ୍ତି ଅର୍ଜି ଅଛନ୍ତି ତାହା ରିପୋର୍ଟରେ ପ୍ରକାଶ ନାହିଁ । ୨୦ ସହସ୍ର ଟଙ୍କାରେ ଯେତେବେଳେ ୨୪୯ ବିଦ୍ୟାଳୟ ନିର୍ବାହ ହେଉଅଛି ସେସ୍ଥଳେ ସେ ବିଦ୍ୟାଳୟମାନ ଉତ୍କୃଷ୍ଟ ହୋଇଥିବ ସମ୍ଭବ ହେଉନାହିଁ । ସ୍କୁଲ ପ୍ରତି ହାରାହାରି ବାର୍ଷିକ ଟ ୮୦ ମାତ୍ର ପଡ଼ୁଅଛି । ଏସ୍ଥାନରେ ଗୋଟିଏ ୨ ଗୁରୁଶାଳାରେ ପ୍ରାୟ ଏତେ ମୁଦ୍ରା ବର୍ଷରେ ବ୍ୟୟ ହୁଅଇ । ଏରୂପ ବିଦ୍ୟାଳୟରେ ଯେ ଶିକ୍ଷାକାର୍ଯ୍ୟ ଉତ୍ତମ ରୂପେ ଚଳୁଥିବ ଆଶା ଅତିରିକ୍ତ ଅଟଇ । ଆମ୍ଭେମାନେ କେତେବର୍ଷହେଁ ସମ୍ବଲପୁରରୁ ଖଣ୍ଡିଏ ପ୍ରେରିତପତ୍ର ପାଉନାହୁଁ । ଯେବେ ସେ ଅଞ୍ଚଳରେ ଉପଯୁକ୍ତ ଶିକ୍ଷକମାନେ ଥାଆନ୍ତେ ବୋଧହୁଅଇ କାହାରିଠାରୁ କିଛି ରଚନା ଆସୁଥାନ୍ତା ଓ ଉତ୍କଳ ଭାଷାରେ କେହି ୨ କୌଣସି ପୁସ୍ତକ ପ୍ରକାଶ କରିଥାନ୍ତେ ମାତ୍ର ଏମାନ କିଛି ଦେଖାଯାଏ ନାହିଁ । ଏକା ବିଚ୍ଛନ୍ଦ ବାବୁ ଇନସ୍ପେକ୍ଟରଙ୍କର ପୁସ୍ତକ ଅନୁବାଦ କରିବାର କ୍ଷମତା ଥିବାର

ଦେଖାଯାଏ ଅଥବା ସେ କାର୍ଯ୍ୟ ଦ୍ୱାରା ବାଧ ଅଛନ୍ତି ନହୁବା ଶିକ୍ଷା ବିଭାଗର ହେତୁରୁ ଆମ୍ଭେମାନେ ଅନ୍ୟ କୌଣସି ରୂପେ ଜାଣିନାହିଁ । ଭରସା କରୁଁ ବିଦ୍ୟାଳୟର ହରପ୍ରାପ୍ତ କର୍ମଚାରୀମାନେ ଏ ବିଷୟରେ ଆମ୍ଭମାନଙ୍କର ଯେଉଁ ସନ୍ଦେହ ଅଛି ତାହା ଖଣ୍ଡନ କରିଇବେ ନତୁବା ଯେଉଁରୂପେ ପ୍ରକୃତ ତଥ୍ୟ ପ୍ରକାଶ ହୁଅଇ ସେଥିର ଚେଷ୍ଟା କରିବେ ।

( ୩ୟ ଭାଗ, ୧୯।୨।୧୮୬୮, ସଂଖ୍ୟା ୫୦ )

୨୫ । କଟକ ନର୍ମାଲ ସ୍କୁଲ

ଆମ୍ଭେମାନେ ଗତ ସପ୍ତାହରେ ନୂତନ ନର୍ମାଲ ସ୍କୁଲ ସ୍ଥାପନର ସମ୍ବାଦ ଦେଇଅଛୁଁ । ମାତ୍ର ସେ ସମୟରେ ଆମ୍ଭେମାନେ ଏ ସ୍କୁଲ ସମ୍ପର୍କୀୟ ସକଳ କଥା ଜ୍ଞାତ ହୋଇ ନଥିଲୁଁ । ଅତଏବ ଶିକ୍ଷକ ନିଯୁକ୍ତ ପକ୍ଷରେ ଯାହା ଲେଖିଥିଲୁଁ ତାହା କେତେକ ସଂଶୋଧନ କରିବାର କର୍ତ୍ତବ୍ୟ ବୋଧ ହେଉଅଛି ।

ନର୍ମାଲସ୍କୁଲ ଯେବେ କେବଳ ସଂସ୍କୃତ ଭାଷା ଶିକ୍ଷା ନିମିତ୍ତ ସ୍ଥାପନ ହୋଇଥାନ୍ତା ତେବେତ ସେଥିରେ ଶିକ୍ଷକ ହେବାପାଇଁ ଏ ପ୍ରଦେଶରେ ବହୁତ ସୁଯୋଗ୍ୟ ବ୍ୟକ୍ତି ପ୍ରାପ୍ତ ହୁଅନ୍ତା । ମାତ୍ର କେବଳ ସଂସ୍କୃତ କି ଓଡ଼ିଆ ଭାଷା ଶିକ୍ଷା ଦେବାପାଇଁ ଏ ବିଦ୍ୟାଳୟ ହୋଇନାହିଁ । ଉତ୍କଳ ଦେଶରେ ବିଦ୍ୟାପ୍ରଚାର ନିମିତ୍ତ ଉପଯୁକ୍ତ ଶିକ୍ଷକ ପ୍ରସ୍ତୁତ କରିବା ଏ ବିଦ୍ୟାଳୟର ଉଦ୍ଦେଶ୍ୟ ଅଟଇ । ଅତଏବ ଭାବି ଶିକ୍ଷକଙ୍କ ଶିକ୍ଷକତା କାର୍ଯ୍ୟ ପାଇଁ ବର୍ତ୍ତମାନ ସ୍କୁଲରେ ଲୋକର ପ୍ରୟୋଜନ ଅଛି ଓ ସେ ପ୍ରକାର ଲୋକ ଏଠାରେ ପ୍ରାପ୍ତ ହେବ ଏହା ଅନୁମାନ ହୁଅଇ ନାହିଁ । ଏ ସ୍ଥାନର ପଣ୍ଡିତମାନେ ସାହିତ୍ୟ ମାତ୍ରରେ ପରିଶ୍ରମ କରନ୍ତି ଅଥବା ନ୍ୟାୟ ଶାସ୍ତ୍ରରେ ସମଧିକ ବ୍ୟୁତ୍ପତ୍ତି ଲାଭ କରନ୍ତି ଓ ଲୋକଙ୍କ ସଙ୍ଗେ ଅନର୍ଥକ କଳହ କରନ୍ତି । ସାଂସାରିକ ବ୍ୟାପାରରେ ଏହାଙ୍କର ବିଦ୍ୟା କାର୍ଯ୍ୟରେ ଲାଗଇ ନାହିଁ । କେବଳ ଧର୍ମ କର୍ମ କିମ୍ବା ପୂଜାହୋମ ଯଜ୍ଞାଦ କରିବା କାରଣ ଯେତିକି ବିଦ୍ୟାର ପ୍ରୟୋଜନ ସେତିକି କାର୍ଯ୍ୟରେ ଲଗଇ । ଅଙ୍କ ଜ୍ୟୋତିଷ, ପଦାର୍ଥବିଦ୍ୟା କିମ୍ବା ବିଜ୍ଞାନ ଶାସ୍ତ୍ରରେ କାହାର ପରିଶ୍ରମ ନାହିଁ ଏବଂ ଇଂରେଜମାନଙ୍କ ପ୍ରସାଦରୁ ସମ୍ପ୍ରତି ଭାରତବର୍ଷରେ ଅଙ୍କ ବିଜ୍ଞାନ ଶାସ୍ତ୍ରର ଯେତେଦୂର ଉନ୍ନତି କରିଅଛି ତହିଁର ପରିଚୟସୁଦ୍ଧା ଏ ଦେଶୀୟ ପଣ୍ଡିତମାନେ ପାଇନାହାନ୍ତି । ଅତଏବ ଏହାଙ୍କ ଦ୍ୱାରା ନର୍ମାଲ ସ୍କୁଲର ଶିକ୍ଷକତା କାର୍ଯ୍ୟ ଚଳିବା ବର୍ତ୍ତମାନ କଠିନ ଅଟଇ । ଏହି ସମସ୍ତ କାରଣରୁ ଆମ୍ଭମାନଙ୍କୁ ବୋଧହେଉଅଛି ଯେ ପ୍ରଧାନ ଶିକ୍ଷକ-ମାନଙ୍କୁ ବଙ୍ଗଦେଶରୁ ଅଣାଇବା ଆବଶ୍ୟକ ହୋଇଅଛି । ଏହାଙ୍କଠାରେ ଅଧ୍ୟୟନ

କଲେ ଏ ଦେଶୀୟ ପଣ୍ଡିତମାନେ ଯେ ଶୀଘ୍ର ଶିକ୍ଷାଦେବା ଛାଡ଼ି ଏବଂ ଅଙ୍କ ଓ ପଦାର୍ଥ-ବିଦ୍ୟା ଶିକ୍ଷାକରି ଭବିଷ୍ୟତରେ କର୍ମ ଖାଲିହେଲେ ସେଥିରେ ନିଯୁକ୍ତ ହୋଇ ଉତ୍ତମ ରୂପେ କାର୍ଯ୍ୟ ଚଳାଇବେ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଆମ୍ଭେମାନେ ଯେ ପୂର୍ବ ସପ୍ତାହରେ ସେମାନଙ୍କର ଆଶା ବର୍ଦ୍ଧନକଲୁ ଏ ସପ୍ତାହରେ ତାହାର ମୂଳ ଛେଦନ କଲୁଁ ଏଥିରେ ବଡ଼ ଦୁଃଖିତ ଅଛୁଁ । କିନ୍ତୁ ଦେଶର ପ୍ରକୃତ ହିତବାଞ୍ଛା ଆମ୍ଭମାନଙ୍କର କର୍ତ୍ତବ୍ୟ ଅଟଇ, ଲୋକ ବିଶେଷରେ ହାନି ଲାଭର ବିଚାର କରିବା ଆମ୍ଭମାନଙ୍କର କାର୍ଯ୍ୟ ନୁହଇ । ସୁତରାଂ ଦେଶପକ୍ଷରେ ଯାହା ମଙ୍ଗଳ ହେବ ତାହା ଅବଶ୍ୟ କରିବୁଁ । ବାସ୍ତବରେ ଯେବେ ବର୍ତ୍ତମାନର ଉତ୍କଳ ପଣ୍ଡିତଙ୍କ ଦ୍ୱାରା ନର୍ମାଲ ସ୍କୁଲ ଚଳିପାରେ ତେବେ ନର୍ମାଲ ସ୍କୁଲ ସ୍ଥାପନର ପ୍ରୟୋଜନ କି ଅଛି ? ପଣ୍ଡିତମାନେ ଯେବେ ଶିକ୍ଷା ଦେବାକୁ ଉପଯୁକ୍ତ ଅଛନ୍ତି ତେବେ ଆଉ କି ଶିକ୍ଷା କରିବେ ? ଅତଏବ ଏହାଙ୍କଠାରୁ ଉପଯୁକ୍ତ ଲୋକ ଆସିବା କର୍ତ୍ତବ୍ୟ । କେବଳ ଆମ୍ଭେମାନେ ଏହି ପ୍ରାର୍ଥନା କରୁଁ ଯେ କର୍ତ୍ତୃପକ୍ଷମାନେ ଜଳଦେବାକୁ ଅଙ୍ଗୀକାର କରି ମୃଗତୃଷ୍ଣା ଦ୍ୱାରା ଅସ୍ମଦ୍ଦେଶୀୟଙ୍କୁ ପ୍ରତାରିତ ନକରନ୍ତୁ ।

---

## ( ୪ର୍ଥ ଭାଗ, ୯ । ୧ । ୧୮୭୯, ସଂଖ୍ୟା ୨ )

### ୨୭ । ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷା ।

ଗତ ସପ୍ତାହରେ ଗଜେଟରେ ଏ ପରୀକ୍ଷାର ଫଳ ପ୍ରକାଶ ହୋଇ ଅଛି । ସେଥିରୁ ଦେଖାଯାଏ ଏବର୍ଷ ସର୍ବସୁଦ୍ଧା ୮୯୩ ବାଳକ ଉତ୍ତୀର୍ଣ୍ଣ ହୋଇଅଛନ୍ତି ଏଥିମଧ୍ୟରେ ପ୍ରଥମ ଶ୍ରେଣୀରେ ୧୪୬ ଜଣ ବାଳକ, ଦ୍ୱିତୀୟ ଶ୍ରେଣୀରେ ୪୩୪ ଜଣ ବାଳକ ଓ ତୃତୀୟ ଶ୍ରେଣୀରେ ୩୧୩ ବାଳକ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ପରୀକ୍ଷା ପ୍ରାର୍ଥୀଙ୍କ ସଂଖ୍ୟା ବିବେଚନାରେ ଏଫଲ ଉତ୍ତମ ହୋଇଅଛି ଏବଂ ଏବର୍ଷ ଯେଉଁରୂପ ଶୃଙ୍ଖଳାରେ ସାହିତ୍ୟର ପ୍ରଶ୍ନ ଦିଆ ଯାଇଥିଲା ଏଥିରୁ ବୋଧ ହୁଅଇ ଯେ କେବଳ ପୁସ୍ତକ କଣ୍ଠସ୍ଥ କରି ବାଳକମାନେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇନାହାନ୍ତି ।

ଅନ୍ୟାନ୍ୟ ଜିଲାର ଅବସ୍ଥା ପାହା ହେଉ ଓଡ଼ିଶା ପ୍ରଦେଶର ଫଳ ଅତି ଉତ୍ତମ ହୋଇଅଛି । କଟକ ଓ ବାଲେଶ୍ୱରର ସର୍ବସୁଦ୍ଧା ଜ ୧୯ ଣ ବାଳକ ପରୀକ୍ଷା ଦେବା କାରଣ ଉପସ୍ଥିତ ହୋଇଥିଲେ । ଏଥିମଧ୍ୟରୁ ଜ ୧୦ ଣ ଉତ୍ତୀର୍ଣ୍ଣ ହୋଇ କେବଳ ତିନିଜଣ ବଞ୍ଚିତ ହେଲେ । ପରୀକ୍ଷାରେ ସଫଳ ହୋଇଥିବା ବାଳକଙ୍କ ନାମ ଓ ଶ୍ରେଣୀ ତଳେ ଦିଆଗଲା—

| ଦ୍ୱିତୀୟ ଶ୍ରେଣୀ | | ତୃତୀୟ ଶ୍ରେଣୀ | |
|---|---|---|---|
| କାଳୀପ୍ରସନ୍ନ ବାନ୍ର୍ଯ୍ୟା | କଟକସ୍କୁଲ | ହରିଶ୍ଚନ୍ଦ୍ର ବିଶ୍ୱାସ - | କଟକ ସ୍କୁଲ |
| ଆନନ୍ଦ ବଲ୍ଲଭ ଘୋଷ | ,, | କାର୍ତ୍ତିକ ଚନ୍ଦ୍ର ରାୟ ଚୌଧୁରୀ | ,, |
| ଗୋପୀ ମୋହନ ସେନ | ,, | କଳପତ୍ରୁ ଦାସ | ,, |
| କଶୋରୀ ମୋହନ ସେନ | ,, | ଦୁର୍ଗା ଚରଣ ଦାସ | ବାଲେଶ୍ୱର ସ୍କୁଲ |
| ଅବଦୁଲ ହମାନ ଖାନ | ବାଲେଶ୍ୱର ସ୍କୁଲ | | |
| ହରିଶ୍ଚନ୍ଦ୍ର ସରକାର | ,, | | |

ଏଛଡ଼ା ବାଲେଶ୍ୱର ସ୍କୁଲର ଜଣେ ଶିକ୍ଷକ ବାବୁ ରାଧାନାଥ ରାଏ ଏଲ୍. ଏ. ଉପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।

କେବଳ ଦୁଃଖର ବିଷୟ ଏହିପେ ଏତେ ଲୋକ ମଧ୍ୟରୁ କେହି ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ନହେଲେ । ଜ ୧୦ ଣ ମଧ୍ୟରୁ ଅନ୍ତତଃ ପକ୍ଷରେ ଦୁଇ ତିନିଜଣ ହେବାର ଉଚିତ ଥିଲା । ତଥାପି ଯାହା ହୋଇଅଛି ଏହା ସନ୍ତୋଷଜନକ ଅଟଇ ଓ ଏଥିରେ ହାଇସ୍କୁଲର ଶୀଘ୍ର ଉନ୍ନତ ହେବାର ଆଶା ଥିବାରୁ ଆମ୍ଭେମାନେ ଅତିଶୟ ଆନନ୍ଦିତ ହୋଇଅଛୁଁ । ବିଶେଷତଃ ଏରୂପ ଉତ୍ତମ ଫଳ ସକାଶେ ପ୍ରଧାନ ଶିକ୍ଷକଙ୍କର ପ୍ରଶଂସା ହେଉଅଛି । କଟକ ସ୍କୁଲର ପ୍ରଧାନ ଶିକ୍ଷକ ବାବୁ ଚଣ୍ଡୀ ଚରଣ ବନ୍ଦ୍ୟୋପାଧ୍ୟାୟ ପ୍ରଥମ ବର୍ଷରେ ଆପଣା ପରିଶ୍ରମର ଯେରୂପ ଫଳ ଦର୍ଶାଇ ଅଛନ୍ତି ସେଥିରେ ଆମ୍ଭେମାନେ ତାହାଙ୍କୁ ଧନ୍ୟବାଦ ଦେଉଅଛୁଁ ।

**( ୪ର୍ଥ ଭାଗ, ୧୭ । ୧ । ୧୮୭୯, ସଂଖ୍ୟା ୩ ଅତିରିକ୍ତ )**

୨୮ ।

ପ୍ରେରିତ ପତ୍ର

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ ମହାଶୟ, ସମୀପେଷୁ ନିବେଦନମିଦଂ ।

ଏହିକ ଆମ୍ଭ ଲିଖିତ ଏହି କେତେକ ପଂକ୍ତିକୁ ସଂଶୋଧନ ପୂର୍ବକ

ଆପଣଙ୍କ ଜଗଦ୍‌ବିଖ୍ୟାତ ସେବିକାରେ ସ୍ଥାନ ଦାନକରି ଚିରବାଧିତ କରିବା ହେବେ।

ଶ୍ରୀଯୁକ୍ତ ଗବର୍ଣ୍ଣମେଣ୍ଟ ମହାଶୟ ଏହି ଉତ୍କଳ ଦେଶ ମଧ୍ୟରେ କଟକ ମୁକାମରେ ଆମ୍ଭମାନଙ୍କ ମାତୃଭାଷାର ବୃଦ୍ଧି ନିମନ୍ତ ଏବଂ ଏତଦ୍ଦେଶୀୟ ବିଦ୍ୱାନମାନଙ୍କର ଉନ୍ନତି ବିଷୟରେ କରୁଣାର୍ଦ୍ରମାନସ ପୂର୍ବକ କୃପାକଟାକ୍ଷ ନିକ୍ଷେପ କରି ଗୋଟିଏ ହାଇସ୍କୁଲ ସ୍ଥାପନ କରିଥିଲେ ଏବଂ ଏବର୍ଷକୁ ପୁନରପି ଏକ ନର୍ମାଲ ସ୍କୁଲ ସ୍ଥାପନ ବିଷୟରେ ଅତି ଉତ୍ସୁକ ହୋଇ ବହୁବ୍ୟୟ ସ୍ୱୀକାର ପୂର୍ବକ ଆଜ୍ଞା କରିଅଛନ୍ତି। ପ୍ରାୟ ଅଳ୍ପ ଦିନରେ ଏ ସ୍କୁଲର କାର୍ଯ୍ୟ ଚଳିବ। ଏ ସ୍କୁଲରେ ଜଣେ ପଣ୍ଡିତ ନିଯୁକ୍ତ ହୋଇ ଅଛନ୍ତି ଏବଂ ଏକଜଣ ଟ୧୫୦ଙ୍କା ବେତନରେ ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତ ହୋଇ ଅଛନ୍ତି। ଇନସ୍ପେକ୍‌ଟର ସାହେବ ସ୍ୱୟଂ ଆସି ଏଠାରେ ଅଧିବାସ କରିଅଛନ୍ତି। ଏସ୍କୁଲର କର୍ମ ଚଳିଲେ ତାହା ସନ୍ଦର୍ଶନ କରି ଏଠାରୁ ପ୍ରତ୍ୟାଗମନ କରିବେ। ଏ ଅତି ଆନନ୍ଦର ବିଷୟ ଯେହେତୁ ଦେଶର ହିତନିମିତ୍ତ ଏତେ କର୍ମାନୁଷ୍ଠାନ ହେଉଅଛି ମାତ୍ର ଏ ସକଳ ବିଷୟର ଉଦ୍‌ଥାପନ କାରକ ଦେଶହିତୈଷୀ ଶ୍ରୀଯୁକ୍ତ କମିଶନର ରାବେନଶା ସାହେବ ଅଟନ୍ତି ତାହାଙ୍କ ହିତ ଚେଷ୍ଟାରେ ଏ ଦେଶର ଏପର୍ଯ୍ୟନ୍ତ ଉନ୍ନତି ସାଧନ ହେଉଅଛି ନହେଲେ ଗତ ସମ୍ବତ୍ସରରେ ଏ ସ୍ଥାନର କର୍ମକାରକ ବଙ୍ଗଦେଶୀୟମାନେ ଯେପରି ଚେଷ୍ଟା କରିଥିଲେ ଆଜି ପର୍ଯ୍ୟନ୍ତ ଉତ୍କଳ ଭାଷାର ନାମ ନଥାନ୍ତା। ଏହି ଉତ୍କଳ ଭାଷା ଅରକ୍ଷିତା ହୋଇ ଦେଶ ତ୍ୟାଗର ଉନ୍ମୁଖୀ ହୋଇଥିଲା କେବଳ ଉକ୍ତ ସାହେବ ମହୋଦୟଙ୍କ ସାହାଯ୍ୟରୁ ନିଜ ଦେଶରେ ଅନୁରାଗିଣୀ ହୋଇ ରହିବାର ଇଚ୍ଛା କରୁଅଛି କିନ୍ତୁ ଦୁଃଖର ବିଷୟ ଏହି ଯେ ଏ କର୍ମର ଅଧ୍ୟକ୍ଷତା ବଙ୍ଗଦେଶୀୟ ବ୍ୟକ୍ତିଙ୍କ ହସ୍ତରେ ଅର୍ପଣ ହୋଇଅଛି। ଏଣୁକରି ଆମ୍ଭମାନଙ୍କର ବିଶ୍ୱାସ ସ୍ଥିର ହେଉ-ନାହିଁ ଯେ ଉତ୍କଳ ଭାଷାର ଶୀଘ୍ର ଉନ୍ନତି ହେବ ଯେହେତୁ ଦେଶରେ ବ୍ୟବହାର ଅଛି କି "ଯେ ଘର ପୋଡ଼ି ଦିଅଇ, ସେ ଘର ତୋଳିବା ସନ୍ତୋଷ ଦିଅଇ ନାହିଁ" ଏଣୁ ପ୍ରକାଶ ଯେ ଯେଉଁମାନେ ଉତ୍କଳ ଭାଷାକୁ ଘୃଣା କରନ୍ତି ଏବଂ ଉତ୍କଳ ପଣ୍ଡିତ ମାନଙ୍କୁ ଘୃଣା କରନ୍ତି ତାହାଙ୍କ ଦ୍ୱାରି ଯେ ଏ ଦେଶର ଉନ୍ନତି ହେବ ଏ କଦାଚ ସମ୍ଭବ ହେଉନାହିଁ ତାହାର ପ୍ରତ୍ୟକ୍ଷ ଏହି ଦେଖନ୍ତୁ ଯେ ଗୁରୁ ଟ୍ରେନିଂ ଅର୍ଥାତ୍ ଯହିଁରେ ଅବଧାନମାନେ ପଢ଼ିବେ ତହିଁରେ ପୂର୍ବତନ ବଙ୍ଗଳା ସ୍କୁଲର ପ୍ରଧାନ ପଣ୍ଡିତ ତାରିଣୀ ବାବୁଙ୍କୁ ପ୍ରଧାନ ଶିକ୍ଷକ କରି ନିଯୁକ୍ତ କରିଅଛନ୍ତି। ବିବେଚନା କଲେ ଉକ୍ତ ବାବୁ ଉତ୍କଳ ଭାଷାର ବିନ୍ଦୁମାତ୍ର ଜାଣନ୍ତି ନାହିଁ ଏବଂ ସଂସ୍କୃତ ଭାଷାର ବ୍ୟୁତ୍ପତ୍ତି ସଙ୍ଗେ ସେ ମହାଶୟଙ୍କର ପ୍ରାୟ ଜନ୍ମାନ୍ତରରେ ସାକ୍ଷାତ ହୋଇନାହିଁ।

କେବଳ ବଙ୍ଗଭାଷା ତାହାଙ୍କର ମାତୃଭାଷା ହେତୁକ ତାହା ଜାଣନ୍ତି ଏବଂ କେତେକ ଅଂଶ ଇଂରେଜୀ ଜାଣନ୍ତି। ଏହା ବ୍ୟତିରେକେ ଉତ୍କଳ

ସଂସ୍କୃତ ଏ ଦୁଇ ବିଷୟରେ ନିତାନ୍ତ ଅପାରଗ, ମଧ୍ୟ ଯେ ସୁପରିଣ୍ଟେଣ୍ଡେଣ୍ଟ ଦ୍ୱାରିକା ନାଥ ବାବୁ ସେ ମହାଶୟ ଉତ୍କଳ ବା ସଂସ୍କୃତ ଏ ଦୁଇ ବିଦ୍ୟାର ଗନ୍ଧମାତ୍ର ଜାଣନ୍ତି ନାହିଁ । ଯେବେ ବୋଲି କି ସେ କିପରି ପୁରୀ ଜିଲ୍ଲା ବିଦ୍ୟାଳୟର ତତ୍ତ୍ୱାବଧାରକ ହୋଇଥିଲେ ତାହାର କାରଣ ଏହି ଯେ କିଛିଦିନ ଏହି ଦେଶରେ ବାସକରି ଅଛନ୍ତି ଏବଂ ଇଂରାଜୀ ଭାଷା କିଛି ଭଲ ଜାଣନ୍ତି । ଏ ହେତୁରୁ ତାହାଙ୍କୁ କର୍ମ ଦିଆ ଯାଇଥିଲା ଏମନ୍ତ ବୋଧ ହୁଅଇ । ଏ ବିଷୟରେ ଯେବେ କିଛି ଅମୂଳକ ବୋଧ ହୁଅଇ ତେବେ ଅସତ୍ୟ କର୍ମକାରକାଧ୍ୟକ୍ଷ ଶ୍ରୀଯୁକ୍ତ କମିଶ୍ନର ସ୍ୱୟଂ ଏ ଦୁଇ ବ୍ୟକ୍ତିଙ୍କୁ ପରୀକ୍ଷା କରି ଉତ୍କଳ ସଂସ୍କୃତ ଏ ଦୁଇ ବିଷୟରେ କିରୂପ ପାରଗ ଅଛନ୍ତି ବିବେଚନା କରନ୍ତୁ ଏବଂ ସେ ଯେଉଁ କର୍ମକାରକମାନଙ୍କୁ ନିଯୁକ୍ତ କରିଅଛନ୍ତି ସେମାନଙ୍କ ମଧ୍ୟରେ କେତେଜଣ ଉତ୍କଳ ଭାଷାର ଏବଂ ସଂସ୍କୃତ ତାତ୍ପର୍ଯ୍ୟ ବୋଧକ ଅଛନ୍ତି ତାହା ବିବେଚନା କଲେ ମଧ୍ୟ ସୁପରିଣ୍ଟେଣ୍ଡେଣ୍ଟଙ୍କ ବିଦ୍ୟା ଜଣାଯିବ ସନ୍ଦେହ ନାହିଁ । ଯେବେ କହନ୍ତି କି ଏହି ଦେଶୀୟ ପଣ୍ଡିତମାନେ ଅଛନ୍ତି ଅବଶ୍ୟ ଉତ୍କଳ ଭାଷା ଜାଣିଥିବେ ତାହାହେଲେ ଏତଦ୍ଦେଶୀୟ ମୂର୍ଖମାନେ ମଧ୍ୟ ଉତ୍କଳ ଭାଷା ଜାଣନ୍ତି ତ ସେମାନଙ୍କୁ କର୍ମ ଦେବାରେ ସନ୍ଦେହ କି ? ଅସତ୍ୟ ପ୍ରାଚୀନ କବି ଉପେନ୍ଦ୍ରଭଞ୍ଜ ପ୍ରଭୃତି କବିଗଣଙ୍କ ରଚିତ ଭାଷାଗ୍ରନ୍ଥ ବୈଦେହୀଶ ବିଳାସ ପ୍ରଭୃତିର ପ୍ରଶ୍ନ ଦିଆଯାଇ ପରୀକ୍ଷା କରାଗଲେ କର୍ମାଧ୍ୟକ୍ଷ କିବା ପ୍ରଧାନ ପଣ୍ଡିତ କିବା ଅନ୍ୟାନ୍ୟ ପଣ୍ଡିତ ସମସ୍ତଙ୍କର ଭାଷାର ଭାବଭଙ୍ଗୀ ଅର୍ଥରେ ଯେପରି ବିଦ୍ୟାଅଛି ତାହା ପ୍ରକାଶ ହେବ । ଏପରି ବିବେଚନା କରୁଁ ଯେ ଯେରୂପ ବନ୍ଦୋବସ୍ତ ହୋଇଅଛି ସେହିପରି କର୍ମ ଚଳିଲେ ଗବର୍ଣ୍ଣମେଣ୍ଟଙ୍କର ଅନେକ ଦ୍ରବ୍ୟ ଖର୍ଚ୍ଚ ହେବ ସତ୍ୟ ମାତ୍ର ଏ ଦେଶର ବିଦ୍ୟା ବୃଦ୍ଧି ଦୂରେ ଥାଉ ବିଦ୍ୟାଳୟର ମୂଳୋତ୍ପାଟନର ସମ୍ଭାବନା, କାରଣ ଏହି ଯେ ବର୍ତ୍ତମାନରେ ଏ ସ୍ଥାନରେ ଯେଉଁ ପଣ୍ଡିତମାନେ ଅଛନ୍ତି ସେମାନେ ସକଳ ବିଦ୍ୟାରେ ପାରଗ ହେଲେହେଁ ସେମାନଙ୍କୁ କର୍ମ ନଦେଇ କେବଳ ଅନୁରୋଧିମାନଙ୍କୁ କର୍ମରେ ନିଯୁକ୍ତ କରିଅଛନ୍ତି ଏମନ୍ତ ଜାଣି ଏଣିକି ଯେଉଁମାନେ କର୍ମକାରକ ହେବାକୁ ଚେଷ୍ଟା କରିବେ ସେମାନେ ବିଦ୍ୟା ଅଧ୍ୟୟନ ଛାଡ଼ି ଯେରୂପ ବାବୁମାନଙ୍କର ଅନୁଗ୍ରହ ପାତ୍ର ହେବେ ସେହିପରି ଚେଷ୍ଟା କରିବେ ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । ଏଣୁକରି ଆମ୍ଭେମାନେ ପ୍ରାର୍ଥନା କରୁଁ ଯେ ଶ୍ରୀଯୁକ୍ତ ଗବର୍ଣ୍ଣମେଣ୍ଟ ଯେପରି ଦ୍ରବ୍ୟ ବ୍ୟୟରେ ଉଦାରଭାବକୁ ଗ୍ରହଣ କରିଅଛନ୍ତି ସେହିପରି ଏତଦ୍ଦେଶ-ହିତୈଷିମାନେ ଏ ଦେଶର ଉନ୍ନତି ବିଷୟରେ ମନୋଯୋଗ ପୂର୍ବକ ଚେଷ୍ଟା କରି ଏତଦ୍ଦେଶ ନିବାସୀ କୌଣସି ଉପଯୁକ୍ତ ବ୍ୟକ୍ତିକୁ ଏ ଉକ୍ତ କର୍ମର ଭାରଦେଲେ ଅବଶ୍ୟ ଏ ଦେଶର ଶ୍ରୀବୃଦ୍ଧି ଅଳ୍ପ ଦିବସ ମଧ୍ୟରେ ହେବାର ସମ୍ଭାବନା ଏବଂ ଶ୍ରୀଯୁକ୍ତ କମିଶ୍ନର ମହୋଦୟଙ୍କୁ ଏହି ପ୍ରାର୍ଥନା ଯେ ଏ ଉକ୍ତ ବିଷୟରେ ଆପଣ ମାନସିକ ପରିଶ୍ରମ ସ୍ୱୀକାର

କରି ଆମ୍ଭମାନଙ୍କ ପ୍ରାର୍ଥନାକୁ ସଫଳ କଲେ ଶତବାଧିତ ହେବୁଁ । ଇତି ।
ଅଲମତିବିସ୍ତରେଣ । ।କି। କସ୍ଯଚିଦ୍ଦେଶହିତୈଷିଣଃ ।

## ( ୪ର୍ଥ ଭାଗ, ୨୩ । ୧ । ୧୮୬୯, ସଂଖ୍ୟା ୪ )

୨୯ । ଦେଶୀୟ ଭାଷା ପୁସ୍ତକ ବୃଦ୍ଧି କାରଣ ।

ଆମ୍ଭେମାନେ ଗତ ସପ୍ତାହର ଏଡ୍ଡୁକେଶନ ଗଜେଟରେ ନିମ୍ନଲିଖିତ ସମ୍ବାଦଟି ଉଦ୍ଧୃତ କଲୁଁ ।

"ଇଣ୍ଡିଆ ଗବର୍ଣ୍ଣମେଣ୍ଟ ଅନୁସନ୍ଧାନ କରିଥିଲେ ଯେ ବଙ୍ଗଦେଶ ମଧ୍ୟରେ ଦେଶୀୟ ଭାଷାରେ ପୁସ୍ତକ ଅନୁବାଦିତ କରିବା ନିମିତ୍ତ କି କି ଉପାୟ କରା ହୋଇଅଛି ଏବଂ ସମ୍ପ୍ରତି ଆଉ କି କି କରି ଆବଶ୍ୟକ ? ଲେଫ୍ଟେନେଣ୍ଟ ଗବର୍ଣ୍ଣର ମହୋଦୟ ଉତ୍ତର ଦେଇଅଛନ୍ତି ଯେ ଦେଶୀୟ ଭାଷାର ଉନ୍ନତି ନିମିତ୍ତ ସୋସାଇଟୀରେ ମାସିକ ୫୨୫୦ଟଙ୍କା ଏବଂ ଡିରେକ୍ଟର ସାହେବଙ୍କ ହସ୍ତେ ବାର୍ଷିକ ୫ହଜାର ଟଙ୍କା ଦିଆ ହୋଇଥାଏ । ବଙ୍ଗଭାଷାରେ ଆପଣା ଇଚ୍ଛାରେ ଉତ୍ତମୋତ୍ତମ ଗ୍ରନ୍ଥ ସକଳ ପ୍ରସ୍ତୁତ ହୋଇ ଉଠୁଅଛି ଏବଂ ବଙ୍ଗଳାରେ ଯେ ସକଳ ଗ୍ରନ୍ଥ ରଚିତ ହେଉଅଛି ତାହା ଶୀଘ୍ରରେ ଓଡ଼ିଆ ଭାଷାରେ ଅନୁବାଦିତ ହୋଇବ । ବିହାର ପ୍ରଦେଶରେ ଉତ୍ତର ପଶ୍ଚିମାଞ୍ଚଳର ହିନ୍ଦି ଏବଂ ଉର୍ଦ୍ଦୁ ପୁସ୍ତକ ସମସ୍ତ ପ୍ରଚଳିତ ହେବ ।"

କିନ୍ତୁ ଏତିକରେ କି ଆମ୍ଭମାନଙ୍କର ଲେଫ୍ଟେନେଣ୍ଟ ଗବର୍ଣ୍ଣର ଚରିତାର୍ଥ ହେଲେ ? ବଙ୍ଗଦେଶ ପକ୍ଷରେ ସେ ଯାହା କହିଅଛନ୍ତି ତାହା ସତ୍ୟ ଅଟଇ ମାତ୍ର ଓଡ଼ିଶା ପକ୍ଷରେ ତାହାଙ୍କର ଆଶା ପୂର୍ଣ୍ଣ ହେବାକୁ ଅନେକ ବିଳମ୍ବ ଅଛି କାରଣ ଏଠା ଲୋକେ ଆପଣା ଇଚ୍ଛାରେ ପୁସ୍ତକ ଅନୁବାଦ କି ରଚନା କଲେ ତାହା ମୁଦ୍ରିତ କରିବାର ବ୍ୟୟ ପାଇବେ ନାହିଁ ବୋଲି ସେଥିରେ ପ୍ରବୃତ୍ତ ହୁଅନ୍ତି ନାହିଁ ଓ ସୋସାଇଟୀକୁ ଅର୍ପଣ କଲେ ମଧ୍ୟ ସହଜରେ ମୁଦ୍ରିତ ହୁଅଇ ନାହିଁ । ଯଦ୍ୟପି ଲେଫ୍ଟେନେଣ୍ଟ ଗବର୍ଣ୍ଣରଙ୍କ ମତରେ ବଙ୍ଗଦେଶରେ ଯେ ୨ ଉତ୍ତମ ପୁସ୍ତକମାନ ହେଉଅଛି ତେବେ ବଙ୍ଗଦେଶ ପାଇଁ ସୋସାଇଟୀକୁ ମାସିକ ୫୨୫୦ଟଙ୍କା ଓ ଡାଇରେକ୍ଟରଙ୍କୁ ବାର୍ଷିକ ୫୦୦୦ଟଙ୍କା ଦେବାର ପ୍ରୟୋଜନ କି ? ଯେବେ ଏହାର କୌଣସି ଅଂଶ ଓଡ଼ିଶା କାରଣ ଦିଆଯାନ୍ତା ତେବେ ଅବଶ୍ୟ ଉତ୍କଳ ପୁସ୍ତକ ଅଧିକ ରଚନା ହୁଅନ୍ତା । କଲିକତା ସୋସାଇଟୀ ଉତ୍କଳ ପୁସ୍ତକର ଦୋଷଗୁଣ ବିଚାର କରିବାକୁ ସମର୍ଥ ନୁହନ୍ତି ଏବଂ ତାହାଙ୍କର ଉତ୍କଳ ପୁସ୍ତକ ବିଷୟରେ ଅନୁରାଗ ମଧ୍ୟ ନାହିଁ । ଯେଉଁପ ହୋଇଥିଲେ ଉତ୍କଳ ପୁସ୍ତକ ରଚନା କାରଣ ସେମାନେ ଅବଶ୍ୟ ପୁରସ୍କାର ଦେବାକୁ ସମ୍ମତ

ହୁଅନ୍ତେ ଓ ଯେବେ ମୁଦ୍ରିତସ୍ଥ କତାନ୍ତ ପତ୍ରରେ ଏକ ସହସ୍ର ଟଙ୍କା କେବଳ ଉତ୍କଳ ପୁସ୍ତକ ରଚନା କାରଣ ପୁରସ୍କାର ଦେବାର ଘୋଷଣା କରାଯାନ୍ତା ତେବେ ଅଳ୍ପ କାଳରେ ଅନେକ ଉତ୍କଳ ଭାଷା ପୁସ୍ତକ ରଚିତ ହୁଅନ୍ତା ସନ୍ଦେହ ନାହିଁ । ଏ ବିଷୟରେ ଗତବର୍ଷ କଟକବାସିମାନେ ଶ୍ରୀଯୁକ୍ତ କମିଶ୍ନର ସାହେବଙ୍କଠାରେ ଏକ ଆବେଦନ ପତ୍ର ଅର୍ପଣ କରିଥିଲେ ମାତ୍ର ଅବଧି ସେଥିରେ ଗବର୍ଣ୍ଣମେଣ୍ଟ ମନୋଯୋଗ କରିନଥିବାର ଜଣାଯାଏ । ଆମ୍ଭେମାନେ କମିଶ୍ନର ସାହେବଙ୍କୁ ଅନୁରୋଧ କରୁଅଛୁଁ ଯେ ଏ କଥାମାନ ପୁନଃ ପୁନଃ ଗବର୍ଣ୍ଣମେଣ୍ଟଙ୍କୁ ସ୍ମରଣ କରାନ୍ତୁ ତାହାହେଲେ ଗବର୍ଣ୍ଣମେଣ୍ଟ ଅବା କୌଣସି କାଳରେ ଓଡ଼ିଶା ପ୍ରତି ଦୟା ପ୍ରକାଶ କରିପାରନ୍ତି ।

୩୦ । ସାପ୍ତାହିକ ସମ୍ବାଦ

କଟକ ଓ ବାଲେଶ୍ୱର ସ୍କୁଲରେ ଯେଉଁ ବାଳକମାନେ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ତହିଁ ମଧ୍ୟରୁ ନିମ୍ନଲିଖିତ ବାଳକମାନେ ଦ୍ୱିତୀୟ ଶ୍ରେଣୀ ଅର୍ଥାତ୍ ମାସିକ ୧୦ଙ୍କା ମୂଲ୍ୟର ଛାତ୍ରବୃତ୍ତି ପାଇଅଛନ୍ତି । ଯଥା —

| କଟକ ସ୍କୁଲ | ବାଲେଶ୍ୱର ସ୍କୁଲ |
|---|---|
| ଗୋପୀ ମୋହନ ସେନ | ହରିଶ୍ଚନ୍ଦ୍ର ସରକାର |
| କିଶୋରୀ ମୋହନ ସେନ | ଆବଦୁଲ ରହମାନ |
| ଆନନ୍ଦବଲ୍ଲଭ ଘୋଷ | |
| କାଳୀପ୍ରସନ୍ନ ଚାଟୁର୍ଯ୍ୟା | |
| କାର୍ତ୍ତିକ ଚନ୍ଦ୍ର ରାୟଚୌଧୁରୀ | |

## ( ୪ର୍ଥ ଭାଗ, ୭ । ୨ । ୧୮୭୯, ସଂଖ୍ୟା ୭ )

୩୧ । ସମ୍ବଲପୁର ବିଦ୍ୟାଳୟମାନଙ୍କର ଅବସ୍ଥା ।

ଏତଦ୍ବିଷୟରେ ଆମ୍ଭେମାନେ ଦୁଇମାସ ତଳେ ଯାହା ଲେଖିଥିଲୁଁ ସେଥିରେ ତତ୍ରତ୍ୟ ବିଦ୍ୟାଳୟ ସମ୍ବନ୍ଧର ଇନସ୍ପେକ୍ଟର ପ୍ରତିବାଦ କରି ଖଣ୍ଡିଏ ପତ୍ର ପଠାଇ ଅଛନ୍ତି । ଅଦ୍ୟ ତାହା ପ୍ରକାଶକରି ପାଠକମାନଙ୍କୁ ଅନୁରୋଧ କରୁଅଛୁଁ ଯେ ତାହା ମନୋଯୋଗ ପୂର୍ବକ ପାଠ କରିବେ ଓ ଆମ୍ଭମାନଙ୍କ ଲେଖାରେ ଯଦ୍ୟପି କିଛି ଭ୍ରାନ୍ତି ଜାତ ହୋଇଥିବ ତାହା ବୋଧକରୁଁ ଖଣ୍ଡନ ହେବ । ଉତ୍କଳ ଭାଷାର ଉନ୍ନତି କାରଣ ସେଠାରେ ଅନେକ ଯତ୍ନ ହେଉଅଛି ସନ୍ଦେହ ନାହିଁ ଓ ତାହା ଆମ୍ଭେ

ପୁନଃ ପୁନଃ ଲେଖୁଅଛୁଁ କିନ୍ତୁ ଆମ୍ଭେମାନେ ସେଠାରେ ବିଦ୍ୟା ଶିକ୍ଷାର ଫଳ କିଛି ନ ଦେଖିବାର ସନ୍ଧାନ ହୋଇନାହୁଁ । ସମ୍ପ୍ରତି ପାଠ୍ୟ ପୁସ୍ତକର ଫର୍ଦ୍ଦ ଦେଖି ବୋଧହୁଅଇ ଯେ ଏ ପ୍ରଦେଶଠାରୁ ସେଠାର ବାଳକଙ୍କୁ ଅଲଶିକ୍ଷା କରିବାକୁ ହେଉ-ନାହିଁ । ପତ୍ରପ୍ରେରକଙ୍କ ଲେଖିବା ଭଙ୍ଗୀରୁ ଜଣାଯାଏ ଯେ ସମ୍ବଲପୁରରୁ ପ୍ରେରିତପତ୍ର ନଆସିବାର କାରଣ ସ୍ୱତନ୍ତ୍ର ଅଟଇ । ଆମ୍ଭମାନଙ୍କର ଶଙ୍କା ହେଉଅଛି ଯେ ଆଇନ ବାହାର୍ଭୂତ ଦେଶ ଥିବାରୁ ସେଠାରେ ରାଜପୁରୁଷମାନେ କିଛି ସ୍ୱେଚ୍ଛାଗ୍ରସ୍ତ ବ୍ୟବହାର କରନ୍ତି ଓ ସେସବୁ ଜନସମାଜରେ ପ୍ରକାଶ ହେଲେ ପତ୍ରପ୍ରେରକ ତାହାଙ୍କ କୋପ ଦୃଷ୍ଟିରେ ପଡ଼ିବେ ଏହି ଭୟରେ କେହି କିଛି ଲେଖନ୍ତି ନାହିଁ ।

## ( ୪ର୍ଥ ଭାଗ, ୧୩ । ୨ । ୧୮୬୯, ସଂଖ୍ୟା ୭ )

୩୨ । ନୂତନ ପୁସ୍ତକର ସମାଲୋଚନା ।

### ଭ୍ରମ ଭଞ୍ଜନ

ଏହି ନାମରେ ଏକଖଣ୍ଡ ଉତ୍କଳ ପୁସ୍ତକ ଆମ୍ଭେମାନେ ପ୍ରାପ୍ତହୋଇ ଅଛୁଁ । ଗ୍ରନ୍ଥ ରଚକର ନାମ ବାବୁ ଜଗନ୍ମୋହନଲାଲ କଟକ ପ୍ରିଣ୍ଟିଂ କମ୍ପାନିର ଯନ୍ତ୍ରାଳୟରେ ମୁଦ୍ରିତ ଏବଂ ସୁବିଖ୍ୟାତ ଇଂରାଜ କବି ପାର୍ଣ୍ଣେଲ ସାହେବଙ୍କ ସନ୍ୟାସି ନାମକ କବିତାରୁ ଏଥିର ବିଷୟ ଗ୍ରହଣ ହୋଇ ଉତ୍କଳ ପ୍ରଦେଶ ପ୍ରଚଳିତ ନାନାପ୍ରକାର ଛନ୍ଦ ଗୀତରେ ରଚନା ହୋଇଅଛି ।

ଆମ୍ଭେମାନେ ଏ ଗ୍ରନ୍ଥକୁ ଅତି ସମାଦର ସହିତ ଗ୍ରହଣ କରିଅଛୁଁ । ସମ୍ପ୍ରତି ଉତ୍କଳ ଦେଶର ହିତାକାଂକ୍ଷୀମାନେ ସାଧାରଣ ବିଦ୍ୟାଳୟ ଓ ବାଳକମାନଙ୍କର ଶିକ୍ଷା ନିମିତ୍ତ ଅନେକ ପୁସ୍ତକ ରଚନା କରିଅଛନ୍ତି ମାତ୍ର ଦୁଃଖର ବିଷୟ ଯେ ଦୁଇ ଏକଖଣ୍ଡ ପୁସ୍ତକ ଭିନ୍ନ ଆଉ ସମସ୍ତ ବଙ୍ଗପୁସ୍ତକର ଅବିକଳ ଅନୁବାଦ ଅଟଇ । ବଙ୍ଗଳା-ସଙ୍ଗେ ଉତ୍କଳର ପ୍ରାକାଶ୍ୟ ବାହୁଲତା ଅଲ୍ପ ଜଣାଯିବାରୁ ଅନୁବାଦ କର୍ତ୍ତାମାନେ ଏହିରୂପ ପୁସ୍ତକ ରଚନାର ଉପାୟ ସହଜ ଜ୍ଞାନକରି ସେଥିରେ ପ୍ରବୃତ୍ତ ହେଉଅଛନ୍ତି ଏବଂ ବସ୍ତୁତଃ ଅବିକଳ ଅନୁବାଦ ଯେ କେଡ଼େ କଠିନ ତାହା ସେମାନେ ଜ୍ଞାନକରନ୍ତି ନାହିଁ । ଏଥିର ଏହିଫଳ ହୋଇଅଛି ଯେ ପ୍ରଚଳିତ ଉତ୍କଳ ଭାଷା ବଙ୍ଗଳାର ଭାବଭଙ୍ଗୀକୁ ପ୍ରାପ୍ତ ହୋଇ ଏକ ପ୍ରକାର ନୂତନ ଭାଷା ସୃଜନା ହେଉଅଛି । ଗ୍ରନ୍ଥକର୍ତ୍ତାମାନେ ବଙ୍ଗଳାଭାଷାରେ ଶିକ୍ଷା ପ୍ରାପ୍ତହୋଇ ବଙ୍ଗଳା ଭାଷା ଗ୍ରନ୍ଥ ଅନୁବାଦ କରିବା ସମୟରେ ଅନେକ ବଙ୍ଗଳା ଶବ୍ଦ ଓ ଭାବ ପ୍ରକାଶର ନିୟମକୁ ଉତ୍କଳ ମନେକରି ସେ ସମସ୍ତର

ମଣ୍ଡଳୀର ହୋଇଥିବା ନାହିଁ ସୁତରାଂ ଏହାର ଉତ୍କଳଭାଷାରେ ଅନେକ ଛନ୍ଦ ହୋଇଅଛି । ଯେବେ ଅନୁବାଦ ନକରି କେବଳ ବିଷୟ ଗ୍ରହଣ ପୂର୍ବକ ଅନୁବାଦକର୍ତ୍ତାମାନେ ପୁସ୍ତକ ରଚନାର ମନୁଷ୍ୟଙ୍କୁ ତୃପ୍ତି କରନ୍ତେ ତେବେ ବହୁତ ବଙ୍ଗଳା ମିଶ୍ରିତ ଉତ୍କଳ ପୁସ୍ତକ ଦେଖାଯାନ୍ତା ! ଯାହାହେଉ "ଭ୍ରମଭଞ୍ଜନ" ଏଦୋଷରୁ ମୁକ୍ତ ହୋଇଅଛି । କେବଳ ବଙ୍ଗ ପୁସ୍ତକର ଅନୁବାଦ ନୁହଇବୋଲି ଯେ ଏହା ଭଲହେଲା ଏମନ୍ତ ନୁହେ ମାତ୍ର ଗ୍ରନ୍ଥକର୍ତ୍ତା ଅବିକଳ ଅନୁବାଦକୁ ଉତ୍ତମ ଜ୍ଞାନ ନକରି ଜାଣିଶୁଣି ତ୍ୟାଗ କରିବାରୁ ଏରୂପ ଗ୍ରନ୍ଥ ହୋଇଅଛି । ଏପୁସ୍ତକର ଅନ୍ୟାନ୍ୟ ଯେ କିଛି ଦୋଷଥାଉ ଓ ଦୋଷ-ଶୂନ୍ୟ ଅଟଇ ବୋଲି ଆମ୍ଭେମାନେ କହୁନାହୁଁ ଏହାର ଗୋଟିଏ ଗୁଣ ଏହିଯେ ଉତ୍କଳର ପୂର୍ବାପର କବିତା ରୀତିକୁ ଅନୁସରଣ କରିଅଛି । ଯଦ୍ୟପି କି ଆମ୍ଭମାନଙ୍କ ମତରେ ଉତ୍କଳର ପୂର୍ବରଚିତ କବିତା ସମସ୍ତ ରକ୍ଷା କରିବା ନୂତନ କବିତା କରିବାଠାରୁ ମହତ ଅଟଇ ଏବଂ ନୂତନ କବିତା ଅପେକ୍ଷା ପୁରାତନ କବିତାମାନ ଉଦ୍ଧୃତ କରି ବାଳକ-ମାନଙ୍କୁ ଶିକ୍ଷା ଦେବା ଉତ୍ତମ ଉପାୟ ଅଟଇ ତଥାଚ ଅମ୍ଭେମାନେ ଏପୁସ୍ତକକୁ ବିଦ୍ୟାଳୟ ପାଠ୍ୟ ପୁସ୍ତକ କରିବାର ଅନୁରୋଧ କରୁଅଛୁଁ କାରଣ ଏପରି କବିତାମାନ ପାଠ କଲେ ବାଳକମାନେ କ୍ରମେ ଉପେନ୍ଦ୍ରଭଞ୍ଜାଦିଙ୍କର କବିତାର ମର୍ମ ଗ୍ରହଣ କରିବାକୁ ସକ୍ଷମ ହେବେ ।

( ୪ର୍ଥ ଭାଗ, ୨୦ । ୨ । ୧୮୭୯, ସଂଖ୍ୟା ୮ )

୩୩ । ଉତ୍କଳ ହିତୈଷିଣୀ ।

ଏହି ନାମରେ ଖଣ୍ଡିଏ ନୂତନ ପତ୍ରିକା ଗତ ମଙ୍ଗଳବାର ଜନ୍ମଗ୍ରହଣ କରିଅଛି । କଟକ ପ୍ରୋଷାଇଟୀ ଏହାର ପ୍ରବର୍ତ୍ତକ ଅଟନ୍ତି ଓ ପତ୍ରିକା ବିନାମୂଲ୍ୟରେ ଏକମାସ ବଣ୍ଟନ ହେବାର ନିୟମ ଥିବାରୁ ବୋଧହୁଅଇ ସମସ୍ତେ ଏହାର ଦର୍ଶନଲାଭ କରିପାରିବେ ଅତଏବ ବିଶେଷ ପରିଚୟ ଦେବାର ଅମ୍ଭେମାନେ କ୍ଷାନ୍ତହେଲୁଁ ଏ ପତ୍ରିକା ପ୍ରଚାରର ଉଦ୍ଦେଶ୍ୟାଦି ଆମ୍ଭେମାନେ ଜାଣିନାହୁଁ ଓ ମଧ୍ୟ ଦୋହରା ପାଇଟି ବଢ଼ାଇ ହରବହର ମର୍ତ୍ତି ସଜାଇବା ହେତୁ ନିଶ୍ଚୟ କରିନପାରୁଁ । ପ୍ରବର୍ତ୍ତକମାନେ ପ୍ରଥମ ସଂଖ୍ୟାରେ ଆତ୍ମ ପରିଚୟ ଓ ପତ୍ରିକା ପ୍ରଚାରର ଉଦ୍ଦେଶ୍ୟ ବ୍ୟକ୍ତ କରିଥିଲେ ମନର ସଂଶୟ ହଟିଥାନ୍ତା । ଭରସାକରୁଁ ଆଗାମୀ ସଂଖ୍ୟାରେ ଏ ସମସ୍ତ ଜାଣି-ପାରିବୁଁ ।

ଯାହାହେଉ ଆମ୍ଭେମାନେ ଏଠାର ସମ୍ବାଦପତ୍ରର ବୃଦ୍ଧି ଦେଖି ଆନନ୍ଦିତ ହେଲୁଁ, ତିନି ବର୍ଷ ପୂର୍ବରେ ଏଠାରେ ଏକଖଣ୍ଡ ପତ୍ରିକା ଚଳିବା ପକ୍ଷରେ

ଶଙ୍କା ଜାତ ହେଉଥିଲା ମାତ୍ର ବର୍ତ୍ତମାନ ଉତ୍କଳରେ ଛଅଖଣ୍ଡ ପତ୍ରିକା ହେଲା ଓ ଆଗାମୀ ସୋମବାରରେ ଆଉ ଖଣ୍ଡିଏ ଇଂରାଜୀ ପତ୍ରିକା ବାହାରିବାର ଉଦ୍ୟମ ହେଉଅଛି । ଆମ୍ଭମାନଙ୍କର ଏକାନ୍ତ ପ୍ରାର୍ଥନା ଏହି ଯେ ସମସ୍ତେ ଦୀର୍ଘାୟୁ ହେଉନ୍ତୁ !

୩୪ ।

## ଆଇନ ଉପଦେଶକ

ଉତ୍କଳର ଆଉ ଗୋଟିଏ ଅଭାବ ସମ୍ପ୍ରତି ଗବର୍ଣ୍ଣମେଣ୍ଟ ମୋଚନ କରିଅଛନ୍ତି । ଏଠାରେ ଆଇନ ଉପଦେଷ୍ଟା ଜଣେ ନିଯୁକ୍ତ ନ ଥିବାରୁ ଉଚ୍ଚ ଶ୍ରେଣୀର ଓକିଲତି ପରୀକ୍ଷା ଦେବାର ଯେଉଁ ଅସୁବିଧା ଥିଲା କି ସେ ବିଷୟରେ ମାଷ୍ଟ ସ ପୂର୍ବେ ଉତ୍କଳର ଲୋକମାନେ ହାଇକୋର୍ଟକୁ ଯେଉଁ ଆବେଦନପତ୍ର ପଠାଇଥିଲେ ତାହା ଦୂରୀକୃତ ହୋଇଅଛି । ବର୍ତ୍ତମାନ କଟକ ହାଇସ୍କୁଲରେ ଆଇନର ଉପଦେଶ ଦେବା କାରଣ ଗବର୍ଣ୍ଣମେଣ୍ଟ ରାଜକୃଷ୍ଣ ମୁଖୋପାଧ୍ୟାୟଙ୍କୁ ୨୧୫୦ଙ୍କାରେ ନିଯୁକ୍ତ କରି ଏସ୍ଥାନକୁ ପଠାଉ ଅଛନ୍ତି । କଟକ କମିଟି ଓ ବିଶେଷରେ ଶ୍ରୀଯୁକ୍ତ କମିଶନର ବିବନ୍ଧା ସାହେବ ଏ ବିଷୟରେ ଯେଉଁପ ମନୋଯୋଗୀ ହୋଇଥିଲେ ତାହା ଶୀଘ୍ର ସଫଳ ହେଲା ଆନନ୍ଦର ବିଷୟ ଅଟଇ ।

( ୪ର୍ଥ ଭାଗ, ୧୩ । ୩ । ୧୮୭୨, ସଂଖ୍ୟା ୧୧ )

୩୫

## ଉତ୍କଳ ଭାଷାର ଉନ୍ନତି ପ୍ରତି ବ୍ୟାଘାତ ।

ଉତ୍କଳ ଭାଷାର ଉନ୍ନତି ପକ୍ଷରେ ବର୍ତ୍ତମାନ ଗବର୍ଣ୍ଣମେଣ୍ଟ ଓ ଦେଶୀୟ ଲୋକମାନେ ଯେଉଁପ ଯତ୍ନ କରୁଅଛନ୍ତି ତହିଁର ସୀମା ନାହିଁ । ଅଳ୍ପକାଳ ମଧ୍ୟରେ ଉତ୍କଳରେ ଯେମନ୍ତ ବିଦ୍ୟାଳୟ ସ୍ଥାପନ ଓ ଉତ୍କଳ ଭାଷାରେ ପୁସ୍ତକ ମୁଦ୍ରିତ କାର୍ଯ୍ୟ ହେଉଅଛି ଏହାଦେଖି ସମସ୍ତଙ୍କର ବିଶ୍ୱାସ ହୁଅଇ ଯେ ଅଚିରେ ଉତ୍କଳ ଭାଷାର ଉନ୍ନତି ହେବ । ତଥାପି ଆମ୍ଭେମାନେ ବୋଧକରୁଁ ଯେ ଅଦ୍ୟାପି ପ୍ରକୃତ ଉପାୟର ଅନୁସରଣ ହୋଇନାହିଁ ଓ ଭାଷାର ଉନ୍ନତି ବିଷୟରେ ଏକ ଗୁରୁତର ପ୍ରତିବନ୍ଧକ ରହିଅଛି ।

ଏଥିର ସବିଶେଷ ଦେବା ପୂର୍ବରୁ ଆମ୍ଭେମାନେ କେତେକ ଲୋକର ଭ୍ରମ ସଂଶୋଧନ କରିବାର ଉଚିତ ବିବେଚନା କରୁଅଛୁଁ । ପାଠକମାନଙ୍କ ସ୍ମରଣ ଥିବ ଯେ ଗତ ଡିସେମ୍ବର ମାସରେ କଲିକତାବାସୀ ସୁବିଖ୍ୟାତ ବାବୁ ରାଜେନ୍ଦ୍ରଲାଲ ମିତ୍ର ଏ ପ୍ରଦେଶକୁ ଆସି କଟକ ଡିବେଟିଂ କ୍ଲବରେ ଗୋଟିଏ ବକ୍ତୃତା କରିଥିଲେ ।

ଶଙ୍କା ଜାତ ହେଉଥିଲା ମାତ୍ର ବର୍ତ୍ତମାନ ଉତ୍କଳରେ ଛଅଖଣ୍ଡ ପତ୍ରିକା ହେଲା ଓ ଆଗାମୀ ସୋମବାରରେ ଆଉ ଖଣ୍ଡିଏ ଇଂରାଜୀ ପତ୍ରିକା ବାହାରିବାର ଉଦ୍ୟମ ହେଉଅଛି । ଆମ୍ଭମାନଙ୍କର ଏକାନ୍ତ ପ୍ରାର୍ଥନା ଏହି ଯେ ସମସ୍ତେ ଦୀର୍ଘାୟୁ ହେଉନ୍ତୁ !

୩୪ ।

## ଆଇନ ଉପଦେଶକ

ଉତ୍କଳର ଆଉ ଗୋଟିଏ ଅଭାବ ସମ୍ପ୍ରତି ଗବର୍ଣ୍ଣମେଣ୍ଟ ମୋଚନ କରିଅଛନ୍ତି । ଏଠାରେ ଆଇନ ଉପଦେଷ୍ଟା ଜଣେ ନିଯୁକ୍ତ ନ ଥିବାରୁ ଉଚ୍ଚ ଶ୍ରେଣୀର ଉକିଲଙ୍କ ପରୀକ୍ଷା ଦେବାର ଯେଉଁ ଅସୁବିଧା ଥିଲା କି ସେ ବିଷୟରେ ମା ୬ ସ ପୂର୍ବେ ଉତ୍କଳର ଲୋକମାନେ ହାଇକୋର୍ଟକୁ ଯେଉଁ ଆବେଦନପତ୍ର ପଠାଇଥିଲେ ତାହା ସ୍ୱୀକୃତ ହୋଇଅଛି । ବର୍ତ୍ତମାନ କଟକ ହାଇସ୍କୁଲରେ ଆଇନର ଉପଦେଶ ଦେବା କାରଣ ଗବର୍ଣ୍ଣମେଣ୍ଟ ରାଜକୃଷ୍ଣ ମୁଖୋପାଧ୍ୟାୟଙ୍କୁ ୧୫୦ ଟଙ୍କାରେ ନିଯୁକ୍ତ କରି ଏଠାକୁ ପଠାଇ ଅଛନ୍ତି । କଟକ କମିଟି ଓ ବିଶେଷରେ ଶ୍ରୀଯୁକ୍ତ କମିଶନର ରେଭେନ୍ସା ସାହେବ ଏ ବିଷୟରେ ଯେପରି ମନୋଯୋଗୀ ହୋଇଥିଲେ ତାହା ଶୀଘ୍ର ସଫଳ ହେଲା ଆନନ୍ଦର ବିଷୟ ଅଟଇ ।

( ୪ର୍ଥ ଭାଗ, ୧୩ । ୩ । ୧୮୭୧, ସଂଖ୍ୟା ୧୧ )

୩୫

## ଉତ୍କଳ ଭାଷାର ଉନ୍ନତି ପ୍ରତି ବ୍ୟାଘାତ ।

ଉତ୍କଳ ଭାଷାର ଉନ୍ନତି ପକ୍ଷରେ ବର୍ତ୍ତମାନ ଗବର୍ଣ୍ଣମେଣ୍ଟ ଓ ଦେଶୀୟ ଲୋକମାନେ ଯେପରି ଯତ୍ନ କରୁଅଛନ୍ତି ତହିଁର ସୀମା ନାହିଁ । ଅଳ୍ପକାଳ ମଧ୍ୟରେ ଉତ୍କଳରେ ଯେମନ୍ତ ବିଦ୍ୟାଳୟ ସ୍ଥାପନ ଓ ଉତ୍କଳ ଭାଷାରେ ପୁସ୍ତକ ମୁଦ୍ରିତ କାର୍ଯ୍ୟ ହେଉଅଛି ଏହା ଦେଖି ସମସ୍ତଙ୍କର ବିଶ୍ୱାସ ହୁଅଇ ଯେ ଅଚିରେ ଉତ୍କଳ ଭାଷାର ଉନ୍ନତି ହେବ । ତଥାପି ଆମ୍ଭେମାନେ ବୋଧ କରୁଁ ଯେ ଅଦ୍ୟାବଧି ପ୍ରକୃତ ଉପାୟର ଅନୁସରଣ ହୋଇନାହିଁ ଓ ଭାଷାର ଉନ୍ନତି ବିଷୟରେ ଏକ ଗୁରୁତର ପ୍ରତିବନ୍ଧକ ରହିଅଛି ।

ଏଥିର ପରିଚୟ ଦେବା ପୂର୍ବରୁ ଆମ୍ଭେମାନେ କେତେକ ଲୋକର ଭ୍ରମ ସଂଶୋଧନ କରିବାର ଉଚିତ ବିବେଚନା କରୁଅଛୁଁ । ପାଠକମାନଙ୍କ ସ୍ମରଣ ଥିବ ଯେ ଗତ ଡିସେମ୍ବର ମାସରେ କଲିକତାବାସୀ ସୁବିଖ୍ୟାତ ବାବୁ ରାଜେନ୍ଦ୍ରଲାଲ ମିତ୍ର ଏ ପ୍ରଦେଶକୁ ଆସି କଟକ ଡିବେଟିଂ କ୍ଲବରେ ଗୋଟିଏ ବକ୍ତୃତା କରିଥିଲେ ।

ଆମ୍ଭେମାନେ ତାହାଙ୍କ ଇଂରାଜୀ ବକ୍ତୃତା କରିବାର କ୍ଷମତାକୁ ପ୍ରଶଂସା କରୁଥିଲୁଁ ମାତ୍ର ସେ ସ୍ୱଦେଶୀୟ, ସୁତରାଂ ଗୋଟିଏ ବକ୍ତୃତା କରିଥିଲେ ବୋଲି ତାହାଙ୍କ ମତାମତର ଆଲୋଚନା କରୁନଥିଲୁଁ । ଅଳ୍ପକାଳ ହେଲା ଜାଣିପାରିଲୁଁ ଯେ ତାହାଙ୍କ ମତକୁ ଅନେକ ଲୋକ ଉତ୍କୃଷ୍ଟ ଜ୍ଞାନକରି ସେଥିର ଅନୁଗାମୀ ହୋଇଅଛନ୍ତି । ସୁତରାଂ ଏତେବେଳେ ତାହାଙ୍କ ମତର ଭ୍ରମ ଦର୍ଶାଇବା ଆବଶ୍ୟକ ହେଲା ।

ବାବୁ ରାଜେନ୍ଦ୍ରଲାଲ ମିତ୍ର ସେଦିନ ସଭାରେ ବ୍ୟକ୍ତ କଲେ ଯେ "ଉତ୍କଳର ଯଥାର୍ଥ ହିତାକାଙ୍କ୍ଷୀ ଯେ ହେବେ ସେ ସର୍ବାଗ୍ରେ ଉତ୍କଳ ଭାଷା ଉଠାଇ ଦେଇ ବଙ୍ଗ ଭାଷା ପ୍ରଚଳ କରିବାର ଚେଷ୍ଟା କରିବେ କାରଣ ତାହାଙ୍କ ମତରେ ଯେତେବେଳ ଉତ୍କଳ ଭାଷା ଉଠି ଯାଇନାହିଁ ତେତେବେଳ ଏ ଦେଶର ଉନ୍ନତି ହେବା ଅସମ୍ଭବ । ସେ ଆପଣା ମତର ପୋଷକତାରେ ଏହି ହେତୁ ଦର୍ଶାଇଲେ ଯେ ଦୁର୍ଭିକ୍ଷ କମିଶନରଙ୍କ ଗଣନାନୁସାରେ ଉତ୍କଳର ଲୋକସଂଖ୍ୟା ବର୍ତ୍ତମାନ କୋଡ଼ିଏ ଲକ୍ଷ ଅଟଇ ଓ ଏଥିରୁ ସ୍ତ୍ରୀ ବାଳକ ଇତ୍ୟାଦି ମିହାଁ ଦେଲେ କେବଳ ଦଶ ବାର ଲକ୍ଷ ଲୋକ ଲେଖାପଢ଼ା ଜାଣିବାର ସମ୍ଭବ କିନ୍ତୁ ଏତିକି ଲୋକ କି ଗୋଟିଏ ସ୍ୱତନ୍ତ୍ର ଭାଷା ରଖିପାରନ୍ତି ? ଅଳ୍ପ ଗ୍ରାହକ ଥିବାରୁ ଏଠାରେ କେହି ନୂତନ ପୁସ୍ତକାଦି କରି କୃତକାର୍ଯ୍ୟ ହେବାର ଅସମ୍ଭବ । ବଙ୍ଗ ଦେଶ ବହୁ ବିସ୍ତୃତ ଓ ସେଠାର ଲୋକସଂଖ୍ୟା ଅଧିକ ବୋଲି ସେଠାରେ ଭାଷାର ଏତାଦୃଶ ଉନ୍ନତି ହୋଇଅଛି । ଯେବେ ଉତ୍କଳରେ ବଙ୍ଗଭାଷା ପ୍ରଚଳ ହୁଅଇ ତେବେ ବଙ୍ଗ ଦେଶର ପୁସ୍ତକମାନ ଏଠାରେ ଚଳିବ ଓ ଏଠା ଲୋକେ ଅନାୟାସରେ ଉତ୍ତମ ପୁସ୍ତକ ପାଇପାରିବେ । ଏହାର ଉଦାହରଣ ସ୍ୱରୂପ ଉକ୍ତ ବାବୁ କହିଲେ ଯେ ବଙ୍ଗଦେଶରେ ଗତ ଛଅମାସରେ ପ୍ରାୟ ୬୩୦୦ଖଣ୍ଡ ବଙ୍ଗ ପୁସ୍ତକ ମୁଦ୍ରିତ ହେଲା କିନ୍ତୁ ଉତ୍କଳରେ ୩।୪ଖଣ୍ଡରୁ ଅଧିକ ନହେଲା ; ଏଥିର ସ୍ପଷ୍ଟ ପ୍ରମାଣ ଯେ ଉତ୍କଳ ଭାଷା କଦାପି ଉନ୍ନତ ହୋଇନପାରେ ।"

ଆମ୍ଭେମାନେ ଜ୍ଞାନ କରିଥିଲୁଁ ଯେ ରାଜେନ୍ଦ୍ର ବାବୁ ଉତ୍କଳକୁ ଆସି ଏଠାର ଅନେକ ବିଷୟ ଅବଗତ ହୋଇଅଛନ୍ତି କିନ୍ତୁ ଉପର୍ଯ୍ୟୁକ୍ତ କଥାମାନ ଶୁଣି ବିସ୍ମୟ ହେଲୁଁ । ବାସ୍ତବରେ ସେ ଆପଣା ଅନ୍ତର୍ଗତ ଭାବ ବ୍ୟକ୍ତ କଲେ କିମ୍ବା ସ୍ୱଦେଶାନୁରାଗୀ ହୋଇ ମିଥ୍ୟା କାରଣ ପ୍ରଦର୍ଶନ ପୂର୍ବକ ଆପଣା ମତ ସ୍ଥାପନ କରିବାକୁ ଚେଷ୍ଟା କଲେ ତାହା ସ୍ଥିର କରିବା କଠିନ ବୋଧ ହେଉଅଛି । ଯେତେବେଳେ ସେ ଉତ୍କଳର ଲୋକସଂଖ୍ୟାର କଥା କହିଲେ ସେ କି ଜାଣୁନଥିଲେ ଯେ ଉକ୍ତ ଲୋକସଂଖ୍ୟା କେବଳ ମୁଗଲବନ୍ଦୀର ଅଟଇ ଓ ଉତ୍କଳଭାଷା ପ୍ରଚଳିତ ଥିବା ଦେଶର ଉତ୍ତର ସୀମା ମେଦିନୀପୁର ଦକ୍ଷିଣ ସୀମା ଗଞ୍ଜାମ ଓ ପୂର୍ବ ପଶ୍ଚିମରେ ବଙ୍ଗ ଅଖାତଠାରୁ

ସମ୍ବଲପୁର ପର୍ଯ୍ୟନ୍ତ ବିସ୍ତୃତ ? ଯେବେ ଏକଥା ତାହାଙ୍କୁ ଜଣା ନଥିଲା ତେବେ ସେ ଅକାରଣ ଶ୍ରୋତାମାନଙ୍କୁ ଆପଣା ଅଜ୍ଞାନତାର ଭାଗୀକରି ଭ୍ରମ ଅର୍ପଣ କରିଅଛନ୍ତି । ଯାହାର ଯେଉଁ ବିଷୟରେ ଜ୍ଞାନ ନାହିଁ ତାହାର ସେ ବିଷୟରେ କୌଣସି କଥା କହିବାର ଅନୁଚିତ ଅଟଇ । ପ୍ରକୃତରେ ଦେଖାଯାଏ ଯେ ଉତ୍କଳଭାଷା ପ୍ରଚଳିତ ହବା ଭୂମିଖଣ୍ଡର ଆୟତନ ବଙ୍ଗ ପ୍ରଚଳିତ ଦେଶର ଦ୍ୱିଗୁଣ ହୁଅଇ ଅତଏବ ଉତ୍କଳ ଭାଷା ଉନ୍ନତି ହେବାର ସମ୍ପୂର୍ଣ୍ଣ ସମ୍ଭାବନା ଅଛି । ଆଉ ପୁସ୍ତକ ମୁଦ୍ରାଙ୍କନର ବିଷୟ ଯାହା ଉଲ୍ଲେଖ କଲେ ତାହା ଆମୂଳ ଭ୍ରମାତ୍ମକ ଅଟଇ । ଆମ୍ଭେମାନେ ସ୍ପଷ୍ଟ ରୂପେ କହୁଅଛୁଁ ଯେ ବଙ୍ଗଦେଶ ପ୍ରତି ଗବର୍ଣ୍ଣମେଣ୍ଟଙ୍କର ଯେତେଦିନ ହେଲା ସୁଦୃଷ୍ଟି ପଡ଼ିଅଛି ଉତ୍କଳ ପ୍ରତି ତାହା ହୋଇନାହିଁ ସୁତରାଂ ଉତ୍କଳ ପଛକୁ ପଡ଼ି ରହିଅଛି ଯେବେ ପ୍ରଥମରୁ ଦୁଇ ପ୍ରଦେଶ ପ୍ରତି ସମାନ ଦୃଷ୍ଟି ଥାନ୍ତା ଓ ସେଥିରେ ଉତ୍କଳ ଅବସ୍ଥା ବଙ୍ଗ ପ୍ରତି ନ୍ୟୂନ ହୁଅନ୍ତା ତେବେ ରାଜେନ୍ଦ୍ର ବାବୁଙ୍କ କଥା ଶୋଭା ପାନ୍ତା କିନ୍ତୁ ସେ କାଳ ଓ ଅବସ୍ଥା ପ୍ରତି ବିବେଚନା ନ କରି ସମାନ ଫଳ ପାଇବାର ଆଶା କଲେ ତାହା କିରୂପେ ପୂର୍ଣ୍ଣ ହେବ ? ଦୁର୍ଭିକ୍ଷ ପଡ଼ିଲା ଦିନୁ ଗବର୍ଣ୍ଣମେଣ୍ଟଙ୍କର ଏ ଦେଶ ପ୍ରତି କଟାକ୍ଷପାତ ହେଲାରୁ ଯେରୂପ ଏହାର ଉନ୍ନତି ଦେଖାଯାଏ ଯେବେ ଦଶବର୍ଷ ପୂର୍ବରେ ଏହି କାର୍ଯ୍ୟମାନଙ୍କର ଅନୁଷ୍ଠାନ ହୋଇଥାନ୍ତା ତେବେ ରାଜେନ୍ଦ୍ର ବାବୁ ସ୍ୱ ମତ ସ୍ଥାପନାର୍ଥେ ପ୍ରଭୃତ ଅଧିକ ବେଶୀ ବ୍ୟସ୍ତ ହୁଅନ୍ତେ । ଅତଏବ ଆମ୍ଭେମାନେ କହୁଅଛୁଁ ଯେ ରାଜେନ୍ଦ୍ର ବାବୁଙ୍କ ମତ ଅତ୍ୟନ୍ତ ଭ୍ରମମୂଳକ ଓ ଯେଉଁମାନେ ସେଥିର ଅନୁଗାମୀ ହେଉଅଛନ୍ତି ସେମାନେ ନିରର୍ଥକ ଲୁହୁଡ଼ିରେ ପଡ଼ି କେବଳ ଆପଣା ହସ୍ତପଦକୁ କ୍ଳେଶ ଦେଉଅଛନ୍ତି ।

ତେବେ ଉତ୍କଳ ଭାଷା ଉନ୍ନତି ପ୍ରତି କି ବ୍ୟାଘାତ ଅଛି ? ଆମ୍ଭ-ମାନଙ୍କ ବିଶ୍ୱାସ ଏହି ଯେ ବର୍ତ୍ତମାନ ଉତ୍କଳ ଭାଷା "ତିନିଥେଣ୍ଟିଆ କାକୁଡ଼ି ବାଡ଼ି" ପ୍ରାୟ ଲୋକଙ୍କୁ କ୍ଷତିଗ୍ରସ୍ତ ହେଉଅଛି । ଏହାର ଉପରେ ତିନି ଗବର୍ଣ୍ଣମେଣ୍ଟ ହୋଇଅଛନ୍ତି, ଏକଭାଗ ବଙ୍ଗଳା ଗବର୍ଣ୍ଣମେଣ୍ଟ ହସ୍ତେ, ଏକଭାଗ ମଧ୍ୟ ପ୍ରଦେଶର ଗବର୍ଣ୍ଣମେଣ୍ଟ ହସ୍ତେ ଏବଂ ଅନ୍ୟ ଏକଭାଗ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ହସ୍ତେ ହେବାରୁ ଏହାର ସର୍ବାଙ୍ଗ ସମାନ ରୂପେ ଗଠନ ହେଉନାହିଁ । ଏକ ୨ ସ୍ଥାନରେ ଏକ ୨ ପ୍ରଥା ପ୍ରଚଳିତ ଏବଂ ଏକ ଏକ ପ୍ରକାର ପୁସ୍ତକ ପଠିତ ହୁଅଇ । କେଉଁ ନିୟମ ଭଲ ଅବା ମନ୍ଦ ଜାଣିବାର ଉପାୟ ନାହିଁ ସୁତରାଂ ଉତ୍କଳ ଭାଷା ଦୁଇଦଳ କୁଣିଆ ହୋଇ ଉପବାସ ଭୋଗୁଅଛି । କେହି ଏହାର ଚର୍ଚ୍ଚା କରିବାକୁ ନାହିଁ । ଏରୂପ ଅବସ୍ଥା ଅତି ଶୋଚନୀୟ ଓ ଆମ୍ଭ-ମାନଙ୍କ ମତରେ ଶୀଘ୍ର ଏହାର ପ୍ରତିକାର କରିବାର ଉଚିତ ।

ଏ ପ୍ରସ୍ତାବ ଦୀର୍ଘ ହୋଇଯିବା ଭୟରେ ଅମ୍ଭେମାନେ ଅଦ୍ୟ ଏହି-

ଠାରେ ଛାତ୍ର ହେଲେ । ଆଉ ଯାହା ବକ୍ତବ୍ୟ ଅଛି ଆଗାମୀ ସପ୍ତାହରେ ପ୍ରକାଶ କରିବୁଁ ।

( ୪ର୍ଥ ଭାଗ, ୨୦ । ୩ । ୧୮୭୯, ସଂଖ୍ୟା ୧୨ )

୩୨ । ଉତ୍କଳ ଭାଷାର ଉନ୍ନତିପ୍ରତି ବ୍ୟାଘାତ ।

ଆମ୍ଭେମାନେ ଗତ ସପ୍ତାହରେ ବ୍ୟକ୍ତ କରିଥିଲୁଁ ଯେ ଉତ୍କଳଭାଷାର ଉନ୍ନତିସାଧକ ତିନି ଗବର୍ଣ୍ଣମେଣ୍ଟ ହେବାରୁ ଏକାର୍ଯ୍ୟ ସୁଚାରୁରୂପେ ହେଉନାହିଁ, ଏରୂପ କହିବାର ତାତ୍ପର୍ଯ୍ୟ ଏହିଯେ ଐକ୍ୟତା ଦ୍ୱାରା ଯେପରି କାର୍ଯ୍ୟ ସଫଳ ହୁଅଇ ଭିନ୍ନ ୨ ହୋଇ କାର୍ଯ୍ୟ କଲେ ସେରୂପ ହୁଏନା । କେହି ଅବା ପ୍ରତିବାଦ କରିବେ ଯେ ତିନି ଗବର୍ଣ୍ଣମେଣ୍ଟ ଏକତ୍ରରେ କାର୍ଯ୍ୟ କରନ୍ତିଲେ କୌଣସି ଗୋଟିଏ ଭ୍ରମର ଫଳ ସମସ୍ତଙ୍କୁ ଭୋଗ କରିବାକୁ ହୁଅନ୍ତା । ମାତ୍ର ସ୍ୱତନ୍ତ୍ର ରୂପେ କାର୍ଯ୍ୟ ହେଉଥିବାରୁ ସେପରି ଶଙ୍କାର କାରଣ ନାହିଁ ଏବଂ ତିନି ପ୍ରକାର ନିୟମରେ କାର୍ଯ୍ୟ ଚାଲୁଥିବାରୁ ତୁଳନାଦ୍ୱାରା ଏକ ୨ ସମୟରେ ଏକ ୨ ସ୍ଥାନର ନିୟମ ଉତ୍କୃଷ୍ଟ ଜଣାଯିବ ଓ ଅପର ସ୍ଥାନର କର୍ମଚାରୀମାନେ ସେହାର ଅନୁସରଣ କଲେ କ୍ରମଶଃ ସୁପ୍ରଣାଳୀ ସ୍ଥାପନ ଓ ତାହାର ଉତ୍ତରୋତ୍ତର ବୃଦ୍ଧି ହେଉଥିବ । କଳ୍ପନାନୁସାରେ ଏ ଯୁକ୍ତିର ଯାହା କିଛି ବଳ ହେଉ କାର୍ଯ୍ୟତଃ ତାହା ଦେଖା ଯାଉନାହିଁ । ଏ ତିନି ଗବର୍ଣ୍ଣମେଣ୍ଟର ଶିକ୍ଷାକାର୍ଯ୍ୟ ଏକାବେଳେ ପ୍ରକାଶ କରିବାର କୌଣସି ଚେଷ୍ଟା ହୋଇନାହିଁ ବୋଲି କେଉଁଠାରେ କିରୂପ କାର୍ଯ୍ୟ ଚାଲୁଅଛି ତାହା ଜଣାଯିବାର କଠିନ । ସବୁଠାରେ ତତ୍ତ୍ୱାବଧାରକମାନେ ଅଲଗା ୨ ନିୟମରେ ଚାଲୁଅଛନ୍ତି । ଏମାନଙ୍କ ମଧ୍ୟରେ କୌଣସି ସମ୍ପର୍କ ନଥିବାରୁ ଏକ ଅନ୍ୟର କାର୍ଯ୍ୟର ସମ୍ପୂର୍ଣ୍ଣରୂପେ ଅଜ୍ଞାତ ସୁତରାଂ ଭିନ୍ନ ୨ ନିୟମର ତୁଳନାଦ୍ୱାରା ଯେ କୌଣସି ଉପକାର ହୁଅନ୍ତା ତାହା ହେବାର ସମ୍ଭାବନା ନାହିଁ । ଯଦ୍ୟପି ଏପରି ଆପତ୍ତି ହୁଅଇ ଯେ ତିନି ଗବର୍ଣ୍ଣମେଣ୍ଟ ସକଳ କାର୍ଯ୍ୟର ଭିନ୍ନ ୨ ନିୟମର ଅନୁବର୍ତ୍ତୀ ହେଉଅଛନ୍ତି ଏକା ଶିକ୍ଷା ବିଷୟରେ କିରୂପେ ଏକାବେଳେ କାର୍ଯ୍ୟ କରିବେ । ଏଥିରେ ଅନେକ ବିଶୃଙ୍ଖଳା ହୋଇପାରେ । ଆମ୍ଭେମାନେ ବୋଧକରୁଁ କି ଯେପରିକି ଏକ ଭାଷାରେ ଶିକ୍ଷା ଦେବାର ସ୍ଥିର ହୋଇଅଛି ସେହିପରି ଶିକ୍ଷା ବିଷୟରେ ସମୁଦାୟ ସ୍ଥାନକୁ ଏକ କର୍ମଚାରୀର ଅଧୀନ ହେବା ଉଚିତ କିନ୍ତୁ ଆମ୍ଭେମାନେ କହୁଁ ଯେ ନିତାନ୍ତ ପକ୍ଷରେ ତିନି ସ୍ଥାନର ଅବସ୍ଥା ଜାଣିବାର କୌଣସି ଉପାୟ ହେଉ ତାହାହେଲେ ଆମ୍ଭମାନଙ୍କର ଉଦ୍ଦେଶ୍ୟ ସାଧନ ହେବ । ଶିକ୍ଷା ପ୍ରଣାଳୀର ଉତ୍ତମାଧମ ଦ୍ୱାରା ଯାହା କିଛି ଉନ୍ନତିର ବ୍ୟାଘାତ ହେଉ ଉତ୍ତମ ପୁସ୍ତକ ଓ ଶିକ୍ଷକର ଅଭାବ ଅତି ଶୋଚନୀୟ ଅଟଇ ଓ ଏହି ଅଭାବମୋଚନ

ବିଷୟରେ ଆମ୍ଭେମାନେ ତିନି ଗବର୍ଣ୍ଣମେଣ୍ଟର ସାହାଯ୍ୟ ପ୍ରାର୍ଥନା କରୁଅଛୁଁ । କଟକରେ ଯେଉଁ ନର୍ମାଲ ସ୍କୁଲ ସ୍ଥାପନ ହୋଇଅଛି ତନ୍ନିମନ୍ତେ ଅଚିରେ ଉପଯୁକ୍ତ ଶିକ୍ଷକର ଅଭାବ ମୋଚନ ହେବ କେବଳ ଏ ସଙ୍ଗେ ଆବଶ୍ୟକ ଏହି ଯେ ଗଞ୍ଜାମ ଓ ସମ୍ବଲପୁରକୁ ଏସ୍ଥାନର ଶିକ୍ଷକ ମନୋନୀତ ହୋଇଗଲେ ସମସ୍ତ ଉତ୍ତମ ଶିକ୍ଷକ ପାଇବେ ଓ ନର୍ମାଲ ସ୍କୁଲରେ ଆଗ୍ରହ ପୂର୍ବକ ବହୁଲୋକ ଶିକ୍ଷାଲାଭ କରିବାକୁ ଆସିବେ । କିନ୍ତୁ ପୁସ୍ତକର ଅଭାବ ମୋଚନ କରିବାର କୌଣସି ଉପାୟ ହୋଇନାହିଁ । ବର୍ତ୍ତମାନ ଉତ୍କଳ ବିଦ୍ୟା-ଳୟ ନିମନ୍ତେ କଲିକତାର ସ୍କୁଲ ବୁକ ସୋସାଇଟୀ ପୁସ୍ତକ ଯୋଗାଉ ଅଛନ୍ତି ଏବଂ ଏହି ପୁସ୍ତକମାନ ଗଞ୍ଜାମସ୍କୁଲ ସମ୍ବନ୍ଧରେ ପ୍ରଚଳିତ ଥିବାର ଜଣାଯାଏ । ମାତ୍ର ସ୍କୁଲବୁକ ସୋସାଇଟୀ ଉତ୍କଳ ପୁସ୍ତକର ଯେ ଯଥାର୍ଥ ପରୀକ୍ଷକ ନୁହନ୍ତି ତାହା ସେମାନଙ୍କ ପ୍ରଚ୍ଛନ୍ନିତ ପୁସ୍ତକର ପ୍ରମାଣିତ ହେଉଅଛି । ସେଥିରେ ମଧ୍ୟ ସେମାନଙ୍କର ଅପରାଧନାହିଁ, ସେମାନେ ସ୍ୱୟଂ ଉତ୍କଳ ଭାଷାରେ ଅଜ୍ଞାତ ଥିବାରୁ କୌଣସି ନୂତନ ପୁସ୍ତକ ତାହାଙ୍କ ନିକଟକୁ ପ୍ରେରିତ ହେଲେ ସେଥିର ବିଚାରପାଇଁ ଏସ୍ଥାନର କୌଣସି ବ୍ୟକ୍ତିଠାକୁ ପଠାଇ ଦିଅନ୍ତି ଓ ସେ ହୁଏତ ଅନ୍ୟକୁ ବିଚାର କାରଣ ଅର୍ପଣ କରନ୍ତି । ଶେଷରେ ପୁସ୍ତକର ଯଥାର୍ଥ ବିଚାର ନହୋଇ ବିଚାରକର୍ତ୍ତା ଅନେକ ସ୍ଥଳରେ ଆପଣା ଅନୁଗତ ଜନର ପକ୍ଷପାତ ପୂର୍ବକ କାର୍ଯ୍ୟ କରନ୍ତି ଓ ମଧ୍ୟ ଉତ୍ତମ ପୁସ୍ତକ ରଚନା କାରଣ ସୋସାଇଟୀ ପୁରସ୍କାର ଦେବାର ଘୋଷଣା ଦେଖା ନଯାଏ ଏହି ହେତୁମାନଙ୍କର ସୋସାଇଟୀ ଦ୍ୱାରା ଉତ୍କଳ ପୁସ୍ତକର ଉନ୍ନତି ପ୍ରାୟ ଅସମ୍ଭବ ଅଟଇ । ସମ୍ବଲପୁର ବିଦ୍ୟାଳୟମାନଙ୍କର ପୁସ୍ତକ ସେଠା ଗବର୍ଣ୍ଣମେଣ୍ଟ ଆପଣା ବ୍ୟୟରେ ମୁଦ୍ରିତ କରି ଯୋଗାଉ ଅଛନ୍ତି । ଏଥିରେ ସମ୍ବଲ-ପୁରର ଡେପୁଟି କମିଶନର ଓ ବିଦ୍ୟାଳୟର ଇନସ୍ପେକ୍ଟରଙ୍କର ବହୁ ଉତ୍ସାହ ଦେଖା-ଯାଏ । ଏମନ୍ତ କି ଦୁଇବର୍ଷ ମଧ୍ୟରେ ଯେତେ ପୁସ୍ତକ ରଚିତ ଓ ମୁଦ୍ରିତ ସେଠାରେ ହୋଇଅଛି ତାହା ଅତି ପ୍ରଶଂସନୀୟ ଅଟଇ । ମାତ୍ର ଏ ସ୍ଥାନରେ ପୁସ୍ତକର ସଂଖ୍ୟା ବୃଦ୍ଧି କରିବାର ଯେପରି ଯତ୍ନ ଦେଖାଯାଏ ଗୁଣ ବିଷୟରେ ସେପରି ଯତ୍ନ ନାହିଁ ଅତଏବ ଉତ୍ତମ ପୁସ୍ତକର ଅଭାବ ଦୂର ହେବାର ଉପାୟ ଏଠାରେ ହୋଇନାହିଁ ।

ଏ ସମସ୍ତ କଥା ଆଲୋଚନା କରି ଆମ୍ଭମାନଙ୍କର ଏହି ବିଶ୍ୱାସ ହେଉ ଅଛି କି ଯଦ୍ୟପି ବିଦ୍ୟାଳୟର ଉତ୍କଳ ପାଠ୍ୟପୁସ୍ତକ ଯୋଗାଇବାର ଭାର ଏକ କମିଟୀକୁ ଅର୍ପିତ ହୁଅଇ ଏହାର ସଭ୍ୟମାନଙ୍କ ମନୋନୀତ ଭିନ୍ନ କୌଣସି ପୁସ୍ତକ ବିଦ୍ୟାଳୟରେ ପଠିତ ନହୁଏ ଓ ଯଦ୍ୟପି ତିନି ଗବର୍ଣ୍ଣମେଣ୍ଟ ସମ୍ମତିରେ ଏ କମିଟୀକୁ ସାହାଯ୍ୟ କରନ୍ତି ତାହାହେଲେ ଅବଶ୍ୟ ଉତ୍ତମ ପୁସ୍ତକ ପ୍ରାପ୍ତ ହେବ । ଏକମିଟୀ କଟକ ନଗରରେ ସ୍ଥାପନ ହେବ ଓ ଅନ୍ୟୂନ ତିନି ଗୃହଜଣ ସମ୍ଭ୍ରାନ୍ତ ଓ ବିଦ୍ୱାନ ଲୋକ ସେଥିରେ ଅବୈତନିକ ସଭ୍ୟହୋଇ କାର୍ଯ୍ୟ କରିବେ ଏବଂ ଶିକ୍ଷାବିଭାଗର ତତ୍ତ୍ୱାବଧାରକ

ଏବଂ ସ୍ଥାନୀୟ କଲେକ୍ଟରଙ୍କ କମ୍ପା କମିଶ୍ନର କମିଟୀର କାର୍ଯ୍ୟ ଓ ଆବ୍ଶ୍ୟକୀୟ ବୁଝିବାର କ୍ଷମତା ପାଇବେ ଯେମନ୍ତ କି ଗବର୍ଣ୍ଣମେଣ୍ଟର ଅନାବଶ୍ୟକ ବ୍ୟୟ ନହୁଅଇ ତାହା ହେଲେ ସୁନ୍ଦର ମତେ କାର୍ଯ୍ୟ ଚଳିବ ସନ୍ଦେହ ନାହିଁ । ଏଥିରେ ଗବର୍ଣ୍ଣମେଣ୍ଟର ଅଧିକ ବ୍ୟୟ ନହେବ । ସ୍କୁଲବୁକ ସୋସାଇଟୀକୁ ଯେ ଧନ ଦିଆ ଯାଉଅଛି ବରଂ ପୁସ୍ତକ କମିଟି ସେଥିରେ ଅଧିକ ବ୍ୟୟ କରିବାର ଅନାବଶ୍ୟକ କାରଣ ସେଠାରେ ଆଗେ ୨ ପୁସ୍ତକ ଛପା ହେଉଅଛି । ଅତଏବ ସେଥିରେ ଉପଯୁକ୍ତ ଅଂଶ ଏବଂ ସମ୍ବଲପୁରରେ ଯାହା ବ୍ୟୟ ହେଉଅଛି ସେ ଟଙ୍କା ଏ କମିଟୀକୁ ଦେଲେ କାର୍ଯ୍ୟ ଆରମ୍ଭ ହେବ ଏବଂ କ୍ରମେ ପୁସ୍ତକ ବିକ୍ରୟଦ୍ୱାରା ଧନ ବର୍ଦ୍ଧିତ ହୋଇ ଅଳ୍ପକାଳରେ ଯଥେଷ୍ଟ କାର୍ଯ୍ୟ ଚଳିବ । ଏଥିରେ ପୁସ୍ତକର ମୂଲ୍ୟ ଊଣା ହେବାର ସମ୍ଭାବନା ଓ ତାହାହେଲେ ବହୁତ ଲୋକ ପୁସ୍ତକ କ୍ରୟ କରି ପାଠ କରିବେ ।

ଏଠାରେ ଅମ୍ଭେମାନେ ଯାହା ପ୍ରସ୍ତାବ କଲୁ ତାହା ଆମ୍ଭମାନଙ୍କର ସ୍ୱକପୋଳକଳ୍ପିତ ନୁହଇ । ଏ ଦେଶର ସମ୍ଭ୍ରାନ୍ତ ଓ ବିଦ୍ୟାନୁରାଗିଙ୍କର ଏହି ମତ ଅଟଇ ଓ ସେମାନେ ମା ୭ । ୮ ସ ହେଲା ଏ ବିଷୟରେ କମିଶ୍ନରଙ୍କ ଦ୍ୱାରା ଗବର୍ଣ୍ଣମେଣ୍ଟକୁ ଏକ ଆବେଦନପତ୍ର ଦେଇଥିଲେ ମେ ସେଥିରେ ଏହିରୂପ ପ୍ରାର୍ଥନା ଥିଲା ଓ ଆମ୍ଭେ-ମାନେ ଶୁଣିଥିଲୁଁ ଯେ ସ୍କୁଲବୁକ ସୋସାଇଟୀ ଏଥିରେ ସନ୍ତୁଷ୍ଟହୋଇ ଏ ନଗରରେ ଗୋଟିଏ ଶାଖା ସ୍ଥାପନ କରିବାର ଅଭିପ୍ରାୟ କମିଶ୍ନର ସାହେବଙ୍କୁ ଜଣାଇଥିଲେ ମାତ୍ର ତଦବଧି ଏହାର ଆଉ କୌଣସି ପ୍ରସଙ୍ଗ ଶୁଣାନାହିଁ । ବୋଧହୁଅଇ କର୍ତ୍ତୃପକ୍ଷମାନେ ନାନା କାର୍ଯ୍ୟରେ ବ୍ୟସ୍ତଥିବା ଏହାକୁ ବିସ୍ମୃତ ହୋଇଅଛନ୍ତି । ନହେଲେ ଏତାଦୃଶ ଗୁରୁତର କାର୍ଯ୍ୟରେ ଏ ପ୍ରକାର ବିଳମ୍ବ ହେବାର ଆଉ କି କାରଣ ହୋଇପାରେ ? ସେ ଯାହାହେଉ ବର୍ତ୍ତମାନ କିନ୍ତୁ କାଳାତୀତ ହୋଇନାହିଁ । ବାସ୍ତବରେ ଉତ୍କଳ ଭାଷାର ଉନ୍ନତି ସାଧନର ଏହି ସମୟ ଅଟଇ । ଅତଏବ ଆମ୍ଭମାନଙ୍କର ଗବର୍ଣ୍ଣମେଣ୍ଟ ଏ ବିଷୟରେ ଶୀଘ୍ର ମନୋଯୋଗୀ ହେଲେ ଅନେକ କାର୍ଯ୍ୟହେବ ।

## ( ୪ର୍ଥ ଭାଗ ୨୭ । ୩ । ୧୮୭୪, ସଂଖ୍ୟା ୧୩ )

୩୬ । କଟକ ହାଇସ୍କୁଲର ବାର୍ଷିକ ପାରିତୋଷିକ ଦାନର ସଭା ।

ଗତ ବୁଧବାର ଏହି ଉପଲକ୍ଷରେ କଟକ ହାଇସ୍କୁଲ ଗୃହରେ ଏକ ବୃହତ୍ ସଭା ରଚନା ହୋଇଥିଲା । ଏ ନଗରସ୍ଥ ଦେଶୀୟ ଓ ବିଦେଶୀୟ ସମସ୍ତ ଧନାଢ଼୍ୟ ଓ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କୁ ପୂର୍ବରୁ ନିମନ୍ତ୍ରଣ ହୋଇଥିଲା ଓ ଯଦ୍ୟପି କି ବହୁତ ଲୋକ ଅନୁପସ୍ଥିତ ହେଲେ ତଥାପି ସଭାର କାର୍ଯ୍ୟ ଚଳିବାରେ ବ୍ୟାଘାତ ହୋଇନାହିଁ ।

ଉପସ୍ଥିତ ଥିବା ମଧ୍ୟରେ ଇଂରାଜଙ୍କ ସଂଖ୍ୟା ଅଧିକ ଓ ତାହା ଦୁଃଖର ହେତୁ ହୋଇଥିଲା କାରଣ ସେମାନେ ଅସ୍ୱଦେଶୀୟମାନଙ୍କପ୍ରତି ଏ ସମସ୍ତ ବ୍ୟାପାରରେ ଦୃଷ୍ଟାନ୍ତସ୍ଥଳ ଅଟନ୍ତି । ତାହାଙ୍କୁ ଆଦର୍ଶ କରି ଆମ୍ଭେମାନେ ନାନା ହିତକର ବିଷୟରେ ଯୋଗ ଦେବାକୁ ଶିକ୍ଷା କରୁଅଛୁଁ । ଯାହାହେଉ ଇଂରାଜଙ୍କ ମଧ୍ୟରୁ ଶ୍ରୀଯୁକ୍ତ ଗବର୍ଣ୍ଣର ସାହେବ ସଭାପତି ଓ ଶ୍ରୀ ଆର୍ମଷ୍ଟ୍ରଂ ସାହେବ ସେକ୍ରେଟେରୀ ଶ୍ରୀ ମାକଫର୍ସନ ସାହେବ କଲେକ୍ଟେର ଓ ପାଦ୍ରି ବକ୍ଲ ସାହେବ ଓ କେମ୍ବଲ ସାହେବ ଏବଂ ଜଣେ ପଲଟନର ସାହେବ ଓ ବାଉକ ମାଷ୍ଟର ଚଣ୍ଡ ସାହେବ ଉପସ୍ଥିତ ଥିଲେ ଏବଂ ଦେଶୀୟ ସମ୍ପ୍ରଦାୟ ମଧ୍ୟରୁ ଢେଙ୍କାନାଳର ମହାରାଜ, କୁଇଗଡ଼ର ପ୍ରଧାନ ୨ ଜମିଦାର ଓ ହାକିମ ଅମଲା ପ୍ରଭୃତି ଆଗମନ କରିଥିଲେ ସଭାଗୃହ ଭଦ୍ର ମଣ୍ଡଳୀରେ ପୂର୍ଣ୍ଣ ହୋଇଥିଲା ଓ ଯେବେ ସମସ୍ତ ଆମନ୍ତ୍ରିତ ବ୍ୟକ୍ତି ଆସିଥାନ୍ତେ ତେବେ ସ୍କୁଲର କାର୍ଯ୍ୟାଧ୍ୟକ୍ଷମାନେ ସ୍ଥାନ ଯୋଗାଇବାକୁ କଠିନ ଜ୍ଞାନ କରନ୍ତେ ସନ୍ଦେହ ନାହିଁ ।

ସଭାପତି ମହାଶୟ ରୀତିମତ ସଭାର କାର୍ଯ୍ୟାରମ୍ଭ କରି ପ୍ରତ୍ୟେକ ବାଳକକୁ ତାହାର ପ୍ରାପ୍ୟ ପୁରସ୍କାର ସ୍ୱହସ୍ତରେ ଅତ୍ୟାନନ୍ଦରେ ଦାନପୂର୍ବକ ଆସନରୁ ଗାତ୍ରୋତ୍ଥାନ କରି ତଳଲିଖିତ ଅଭିପ୍ରାୟରେ ଆପଣା ଅଭିମତ ପ୍ରକାଶ କଲେ ପାଠକମାନେ ଏହାକୁ ପାଠ କଲେ ବିଦ୍ୟାଳୟର ସମସ୍ତ କଥାରେ ଅବଗତ ହେବେ । ସଭାପତିଙ୍କ ବକ୍ତୃତାର ମର୍ମ ଏହି ଯେ ବର୍ଷାନ୍ତେ ପୁନର୍ବାର ଏରୂପ ସଭାର ସଭାପତି ହୋଇ ପୁରସ୍କାର ବଣ୍ଟନ କରିବାକୁ ସମର୍ଥ ହେବାରୁ ସେ ଅତିଶୟ ଆନନ୍ଦ ହେଲେ । ଛାତ୍ରମାନେ ବର୍ଷକୁ ବର୍ଷ ସମଧିକ ପରିଶ୍ରମ ପୂର୍ବକ ବିଦ୍ୟାଲାଭ କରିବାରୁ ତାହାଙ୍କର ଚିତ୍ତ ପ୍ରଫୁଲ୍ଲ ହୋଇଅଛି ବିଶେଷରେ ଉତ୍କଳ ବାଳକମାନେ ଯେ ଏବର୍ଷ ପ୍ରାୟ ସମସ୍ତ ଶ୍ରେଣୀରେ ପୁରସ୍କାର ପାଇଅଛନ୍ତି ଏହା ଅତି ଆନନ୍ଦର ବିଷୟ ଏମନ୍ତ କହିବାରେ କେହି ମନେ ନ କରିବେ ଯେ ସେ ବଙ୍ଗ ବାଳକଙ୍କର ବିପକ୍ଷରେ ଉତ୍କଳ ବାଳକଙ୍କୁ ରଖିବାକୁ ବାଞ୍ଛା କରନ୍ତି ଏରୂପ ନିବେଦନ ନୁହଇ ତାହାଙ୍କର ଭାବ ଏହି ଯେ ବଙ୍ଗ ବାଳକମାନେ ପୂର୍ବେ ସମସ୍ତେ ଅଗ୍ରସର ହୋଇ ଉତ୍କଳୀୟଙ୍କୁ ପଛରେ ପକାଇ ଦେଉଥିଲେ ଏବର୍ଷ ଜଣାଗଲା ଯେ ଏବେ ଉତ୍କଳୀୟମାନେ ସମ ଯୋଗ୍ୟ ହୋଇ ଅଗ୍ରସର ହେବେ । ଗତବର୍ଷ ହାଇସ୍କୁଲ ସ୍ଥାପନ ହେଲା ଏବଂ ଜଣେ ଆଇନ ଉପଦେଷ୍ଟା ନିମନ୍ତେ ଯେ ପ୍ରସ୍ତାବ ହୋଇଥିଲା ତାହା ସମ୍ପ୍ରତି ସିଦ୍ଧ ହୋଇଅଛି ଏହା ବଡ଼ ସୁଖର ବିଷୟ ଅଟଇ । ନବ୍ୟ ସମ୍ପ୍ରଦାୟ ମଧ୍ୟରୁ କେତେକ ଲୋକ ଆଇନ ଶିକ୍ଷାକରି ଉକିଲ ହେବାର ଅତି ପ୍ରୟୋଜନୀୟ ଯେହେତୁ ବର୍ତ୍ତମାନ ଅହଙ୍କାର ଉକାଲତିର ଅବସ୍ଥା ଶୋଚନୀୟ ଅଟଇ । ଆହୁରି ଗୋଟିଏ ଅଭାବ ମୋଚନ ପକ୍ଷରେ ଯତ୍ନ ହୋଇଅଛି ବୋଧହୁଏଇ ଅଚିରେ ତାହା ଫଳପ୍ରଦ ହେବ । ଜମିମାପ ବିଦ୍ୟା ଶିକ୍ଷା ନିମନ୍ତେ ଏଠାରେ କୌଣସି

ଉପାୟ ନାହିଁ ଅଥଚ ଭୂମିମାପ କର୍ମ ଏଠାରେ ଅତି ପ୍ରୟୋଜନୀୟ । ବାଲକ ମାଷ୍ଟର ଓ ଅମିନ ଏବଂ ଅନ୍ୟାନ୍ୟ ସରକାରୀ କର୍ମରେ ଏରୂପ ବ୍ୟକ୍ତିର ପ୍ରୟୋଜନ ହୁଅଇ । ଏପରି ଜଳସେଚନ କାର୍ଯ୍ୟ ସମ୍ପର୍କରେ ବହୁତ କଉବ କର୍ମ ଜାଣିବା ବ୍ୟକ୍ତିର ଆବଶ୍ୟକ ହେବ । ଏ ସମସ୍ତ ବିବେଚନାରେ ଏହି ସ୍କୁଲରେ ମାପ ଶିକ୍ଷା ଦେବାପାଇଁ ଗୋଟିଏ ସ୍ୱତନ୍ତ୍ର ଶ୍ରେଣୀ ହେବାର ପ୍ରସ୍ତାବ ହୋଇଅଛି ଭରସା ହୁଅଇ ଶୀଘ୍ର ଗ୍ରାହ୍ୟ ହେବ । ଆଉ ଏକ ଆନନ୍ଦର ବିଷୟ ଏହି ଯେ ଢେଙ୍କାନାଳର ମହାରାଜ ଅସାଧାରଣ ବଦାନ୍ୟତା ପ୍ରଦର୍ଶନ ପୂର୍ବକ ମାସିକ ୫ ୩୦୦ଙ୍କା ଛାତ୍ରବୃତ୍ତି ଦେବାଉକି ଗବର୍ଣ୍ଣମେଣ୍ଟ ପ୍ରଂଶସା ଲେଟ ଅଥାତ୍ ଷ୍ଟାମ୍ପ କାଗଜ କ୍ରମ୍ବଦ୍ଧ କମିଟି ହସ୍ତରେ ସମର୍ପଣ କରିଅଛନ୍ତି ଏ ଧନ କେବଳ ଏକବର୍ଷ କି ଦୁଇବର୍ଷ ନିମିତ୍ତ ନୁହେ ମାତ୍ର ଚିରସ୍ଥାୟୀ ଅଟଇ। ବର୍ତ୍ତମାନ ଦୁଇଜଣ ପ୍ରବେଶିକା ପରୀକ୍ଷା ଦେଇଥିବା ଛାତ୍ର ୫୧୦ଙ୍କା ଲେଖାଏଁ ୫୨୦ଙ୍କା ପାଉଅଛନ୍ତି ଏବଂ ବାଙ୍କ ସ୍କୁଲର ଦୁଇଜଣ ଛାତ୍ର ଅଧି ଏଠାରେ ପାଠ କରିବା ପାଇଁ ତାହାଙ୍କୁ ଜଣଙ୍କେ ୫୫ଙ୍କା ଲେଖାଏଁ ଦିଆ ଯାଉଅଛି । ଏଥିରେ ଭରସା ହୁଅଇ ଯେ ଗଡ଼ଜାତର ଲୋକ ବିଦ୍ୟାଲୟ କରିବାକୁ ସକ୍ଷମ ହେବେ । କିନ୍ତୁ ଯେବେ ଗଡ଼ଜାତର ଅନ୍ୟାନ୍ୟ ରାଜା ଓ ଅଧିକାରୀମାନେ ଏ ପ୍ରକାର ମଙ୍ଗଳକାର୍ଯ୍ୟରେ କିଞ୍ଚିତ୍ ୨ ଦାନ କରନ୍ତି ତେବେ ଅତିଶୀଘ୍ର ଯେ ଗଡ଼ଜାତର ଅବସ୍ଥା ଉନ୍ନତ ହେବ ଏଥିରେ ସନ୍ଦେହ କି ଅଛି । ହାଇସ୍କୁଲ ଗୃହରେ ବର୍ତ୍ତମାନ ସ୍ଥାନ ନ ହେବାରୁ ଏ ଘରକୁ ବଢ଼ାଇବାର ସ୍ଥିର ହୋଇ ଏଥିର ନକସା ଇତ୍ୟାଦି ପ୍ରସ୍ତୁତ ହୋଇଅଛି । ଏ ଉତ୍ତାରୁ ସଭାପତି କହିଲେ ଯେ ସେ ଏକବର୍ଷର ବିଦାୟ ଗ୍ରହଣକରି ସ୍ୱଦେଶକୁ ଯାଉଅଛନ୍ତି ସେଠାରେ ଆପଣା ବନ୍ଧୁବାନ୍ଧବ ଓ ପୁତ୍ରମାନଙ୍କୁ ଦର୍ଶନକରି କିଛୁକାଳ ସେମାନଙ୍କ ସଙ୍ଗେ ସୁଖଭୋଗ କରି ଫେରି ଆସିବେ । ଏଠାରେ ଯାହା ଏ ଦେଶର ବାଳକଙ୍କ ଶିକ୍ଷାରେ ଯେମନ୍ତ ଯତ୍ନ କରୁଥିଲେ ତଦପେକ୍ଷା ଆପଣା ବାଳକଙ୍କ ଶିକ୍ଷାର ତତ୍ତ୍ୱ କରିବା ଅଧିକ ମଣନ୍ତି କିନ୍ତୁ ସେ ଅନୁପସ୍ଥିତ ସମୟରେ ଉତ୍କଳକୁ ପାଶୋରିବେ ନାହିଁ ଓ ଆଗାମୀ ବର୍ଷ ଏହି ବାର୍ଷିକ ସଭାରେ ବସିବାକୁ ଭରସା କରନ୍ତି । ପରିଶେଷରେ ଶିକ୍ଷକଙ୍କୁ ଧନ୍ୟବାଦ ଦେଇ ସେ କ୍ଷାନ୍ତ ହେଲେ ।

ସଭାପତିଙ୍କ ବକ୍ତୃତାର ମର୍ମ ଏହି ଓ ଏହା ଯେ ଉପସ୍ଥିତ ସଭ୍ୟଙ୍କ ମନୋରଞ୍ଜକ ହୋଇଅଛି ତାହା କହିବା ବାହୁଲ୍ୟ । ବାସ୍ତବରେ ଉତ୍କଳ ବିଦ୍ୟୋନ୍ନତି କାରଣ ଶ୍ରୀଯୁକ୍ତ ରିବନଶା ସାହେବ ଯେରୂପ ଯତ୍ନ ଓ ପରିଶ୍ରମ କରିଅଛନ୍ତି ତହିଁର ତୁଳନା ନାହିଁ ଓ ଆମ୍ଭେମାନେ ଯଥୋଚିତରୂପେ କୃତଜ୍ଞତା ପ୍ରକାଶ କରିବାକୁ ବଚନ ପାଉନାହୁଁ ।

ସଭାପତି ଆସନ ଗ୍ରହଣ କଲ୍ଲାଉ ଶ୍ରୀଯୁକ୍ତ ପାଦ୍ରି ବକ୍‌ଲି ସାହେବ ଗାତ୍ରୋତ୍ଥାନ କରି ସ୍ୱାଭାବିକ ସଦ୍‌ବକ୍ତୃତା ପୂର୍ବକ ଛାତ୍ରମାନଙ୍କୁ ଉପଦେଶ ଦେଲେ ଯେ ବିଦ୍ୟାଳୟ ପରିତ୍ୟାଗ ସଙ୍ଗେ ୨ ଯେମନ୍ତ ଜ୍ଞାନୋପାର୍ଜନ କରିବାକୁ ପରିତ୍ୟାଗ ନ କରନ୍ତୁ । ମନୁଷ୍ୟର ଜୀବନର ପ୍ରତ୍ୟେକ ନିଶ୍ୱାସ ଜ୍ଞାନଲାଭ କାରଣ ହୋଇଅଛି ଏହିରେ ହେଳା କରିବା କଦାଚ ବିଧେୟ ନୁହେ । ଯେ ଯେତେ ଜ୍ଞାନଲାଭ କରିବେ ସେ ତେତେ ଆପଣାକୁ ଉନ୍ନତ କରିବେ । ଏକଥା ସମସ୍ତଙ୍କୁ ସ୍ମରଣ ରଖିବାର ଉଚିତ । ତଦୁତ୍ତାରୁ ସଭାପତିଙ୍କ ବିଲାତ ଗମନର କଥା ଉଲ୍ଲେଖ କରି ଆପଣା ପୁତ୍ର ମିତ୍ରଙ୍କୁ କୁଶଳ-କାମ୍ୟ ଓ ବିଦ୍ୟାଳୟଭିତରେ ଯତ୍ନବାନ୍ ଦେଖି ନିରୁଦ୍‌ବେଗରେ ଏଠାକୁ ଫେରି ଆସିବା କାରଣ ଆଶୀର୍ବାଦ କରି ଆସନ ଗ୍ରହଣ କଲେ ।

ଦେଶୀୟ ସମ୍ପ୍ରଦାୟ ପକ୍ଷରୁ ବାବୁ ସଚ୍ଚିଦାନନ୍ଦ ଦାସ ସଭାପତିଙ୍କ ବିଦ୍ୟା ବିଷୟରେ ଯତ୍ନ କାରଣ ତାହାଙ୍କୁ ଧନ୍ୟବାଦ ଦେଇ ଛୁଟି ଶେଷ ହେଲ୍ଲାଉ ପୁନର୍ବାର ଏହି ନଗରକୁ ଫେରି ଆସିବାକୁ ଅନୁରୋଧ କଲେ ଏବଂ କହିଲେ ସଭାପତିଙ୍କ ପ୍ରତ୍ୟାଗମନ ବିଷୟରେ ଅବିତ୍ୟ ଲୋକଙ୍କର ବିଶ୍ୱାସ ହେଉନାହିଁ ।

ପାଦ୍ରି କେମ୍ବଲ ସାହେବ ଅଳ୍ପ କଥାରେ ଅତି ସୁନ୍ଦର ରୂପେ କହିଲେ ଯେ ସଭାପତି ମହାଶୟ ଉତ୍କଳ ଭାଷା ଉନ୍ନତି ପକ୍ଷରେ ବିଶେଷ ଯତ୍ନ କରି ବିଶେଷ ଧନ୍ୟବାଦ ପାଇବାର ଉପଯୁକ୍ତ ହୋଇଅଛନ୍ତି ଓ ସେ କୁଶଳରେ ଏ ନଗରକୁ ଫେରିଆସିବେ ଏହି ସମସ୍ତଙ୍କର ବାଞ୍ଛା ।

ଶ୍ରୀଯୁକ୍ତ ବର୍ଣ୍ଣ ସାହେବ ଛାତ୍ରମାନଙ୍କ ହସ୍ତାକ୍ଷର ଲକ୍ଷ୍ୟକରି କହିଲେ ଯେ ସ୍କୁଲର ଅନେକ ବାଳକ ସମ୍ବନ୍ଧ ସମ୍ବନ୍ଧରେ ତାହାଙ୍କ ନିକଟକୁ କର୍ମର ପ୍ରାର୍ଥନା କରିବାକୁ ଯାନ୍ତି ମାତ୍ର ଦୁଃଖର ବିଷୟ ଯେ କାହାରି ହସ୍ତାକ୍ଷର ସୁନ୍ଦର ଦେଖା ଯାଉନାହିଁ । ଭଲ ଅକ୍ଷର ଲେଖି ନପାରିଲେ କେରାନିଗିରିର ଚେଷ୍ଟା କରିବା ବୃଥା ଓ କେରାନିଗିରୀ ଅଧିକାଂଶ ସ୍କୁଲ ଛାତ୍ରର ଜୀବନୋପାୟ ହୋଇଅଛି । ଶିକ୍ଷକମାନଙ୍କର ମଧ୍ୟ ଏହିରେ କେତେକ ଅଶ୍ୟାତ ହେଉଅଛି । ଅତଏବ ସୁନ୍ଦର ଅକ୍ଷର ଲେଖିବା ଗୋଟିଏ ପ୍ରଧାନ କର୍ମ ଅଟଇ ଓ ଏ ଅଂଶରେ ବିଶେଷ ଚେଷ୍ଟା ହେବାର ଉଚିତ । ସେ ଆହୁରି କହିଲେ ଯେ ମାପଶିକ୍ଷା ଏଠାରେ ଦେବାର ଉପାୟ ହେଉଅଛି ତାହା ହେଲେ ଯେଉଁମାନେ ଏହା ଶିକ୍ଷା କରିବେ ସେମାନେ ଅନାୟାସରେ ବାନ୍ଧକ ମାପୁଆରେ ଭଲ କର୍ମ ପାଇବେ ଏ କର୍ମର ଉପଯୁକ୍ତ ହେବା କାରଣ କ୍ଷେତ୍ରତତ୍ତ୍ୱ ଓ ବୀଜଗଣିତ ଓ ଅଙ୍କବିଦ୍ୟାର ଅନ୍ୟାନ୍ୟ ଶାଖାର ସାଧାରଣ ଜ୍ଞାନ ପାଇବାଲାଗି ବାଳକବୃନ୍ଦଙ୍କୁ ଉପଦେଶ ଦେଇ ବକ୍ତୃତା ଶେଷ କଲେ ।

ପତ୍ରଶେଷରେ ଆମ୍ଭମାନଙ୍କର ସୁଯୋଗ୍ୟ ଆଇନ ଉପଦେଷ୍ଟା ବାବୁ ରାଜକୃଷ୍ଣ ମୁଖୋପାଧ୍ୟାୟ ବାଳକମାନଙ୍କୁ ସମ୍ବୋଧନ କରି କହିଲେ ଯେ ଭାରତବର୍ଷର ଉନ୍ନତିର ଉପାୟ ସେମାନଙ୍କ ହସ୍ତରେ ସମର୍ପିତ ରହିଅଛି । ଏହାର ପୂର୍ବ ଗୌରବାନ୍ବିତ କାଳ ଅତୀତ ହେଲାଣି ଏବେ ଏହା ଇଂରେଜମାନଙ୍କ ହସ୍ତରେ ପଡ଼ିଅଛି । କିନ୍ତୁ ସେମାନେ ଓ ହିନ୍ଦୁ ଏକ ଆର୍ଯ୍ୟ ଜାତିର ଭିନ୍ନ ଶାଖା ମାତ୍ର । ଭାରତବର୍ଷୀୟମାନେ ଏହାର ଜ୍ୟେଷ୍ଠ ଶାଖା ଅଟନ୍ତି । ଯେବେ ଅଦ୍ୟତନ ଲୋକମାନେ ଆପଣା କର୍ତ୍ତବ୍ୟ ସାଧନରେ ତତ୍ପର ହେବେ ତେବେ ତାହାଙ୍କର ଦୁର୍ଗତି ରହିବ ନାହିଁ । ଅତଏବ ସମସ୍ତଙ୍କୁ ଜାଗରିତ ହୋଇ ଉନ୍ନତି ସାଧନ କରିବାକୁ ଉପଦେଶ ଦେଲେ ।

ଏହିରୂପେ ବକ୍ତୃତାମାନ ଶେଷ ହୋଇଲା । ଶ୍ରୀଯୁକ୍ତ ରାବନ୍‌ଶା ସାହେବ ତାହାଙ୍କର ନିୟମିତ ପୁରସ୍କାର ନଗଦ ୫୧୦୦ଙ୍କା ପ୍ରଧାନ ଶିକ୍ଷକଙ୍କୁ ଅର୍ପଣ କରି ତାହାର ବଣ୍ଟନ ବିଷୟରେ କମିଟିଙ୍କୁ ଭାର ଦେଲେ । ଶ୍ରୀ ବାବୁ ଜଗନ୍ମୋହନ ରାୟ ବକ୍ତୃତା ପାଠ କରିଥିବା ବାଳକଙ୍କୁ କେତେକ ପୁସ୍ତକ ପୁରସ୍କାର ଦେଲେ ମାତ୍ର ଦୁଃଖର ବିଷୟ ଯେ ଆଉ କେହି ଦେଶୀୟ ବ୍ୟକ୍ତି କିଛି ଦେଲେ ନାହିଁ । ଗତବର୍ଷ ଓ ତହିଁ ପୂର୍ବ ବର୍ଷରେ ଅନେକ ଲୋକ ପୁରସ୍କାର ଦେଇଥିଲେ ଓ ବର୍ଷକୁ ବର୍ଷ ଏହା ବୃଦ୍ଧି ହେବାର ଆମ୍ଭେମାନେ ଆଶା କରିଥିଲୁଁ କିନ୍ତୁ ତହିଁର ବିପରୀତ ଫଳ ଦେଖି ଦୁଃଖିତ ହେଲୁଁ ।

## (୪ର୍ଥ ଭାଗ, ୩ । ୪ । ୧୮୬୯, ସଂଖ୍ୟା ୧୪ )

୩୮ । କଟକର ସାଧାରଣ ଶିକ୍ଷାକାର୍ଯ୍ୟ କମିଟୀର ଆଉ ପାଞ୍ଚୋଟି ସଭ୍ୟ ନିଯୁକ୍ତ ହେବାର ଗତ ସପ୍ତାହରେ ଗଜେଟରେ ଜାଣିଲୁଁ, ଯଥା —

ବାବୁ କାଳୀପଦ ବନ୍ଦୋପାଧ୍ୟାୟ
" ଦୀନାନାଥ ସରକାର
" ସଚ୍ଚିଦାନନ୍ଦ ଦାସ
" ଗଣ୍ଡୀଚରଣ ବନ୍ଦୋପାଧ୍ୟାୟ
" ଦ୍ୱାରିକାନାଥ ଚକ୍ରବର୍ତ୍ତୀ ।

## ( ୪ର୍ଥ ଭାଗ, ୮ । ୫ । ୧୮୬୯, ସଂଖ୍ୟା ୧୧ )

୩୯ । ସାପ୍ତାହିକ ସମ୍ବାଦ

ଉତ୍କଳ ହିତୈଷିଣୀର ସମ୍ପାଦକ ବାବୁ କାଳୀପଦ ବନ୍ଦୋପାଧ୍ୟାୟଙ୍କ

ସହରରେ କଟକ ଇଂରାଜୀ ଉଚ୍ଚ ସ୍କୁଲ ଗୃହରେ ଗୋଟିଏ ରାତ୍ରି ବିଦ୍ୟାଳୟ ସ୍ଥାପିତ ହୋଇଅଛି । ଯେଉଁମାନେ ଅଧିକ ବୟସ ହେବାରୁ ଅଥବା ସଂକୋଚ କରେଣ କ ଅନ୍ୟସ୍ଥାନରେ ଦିବସରେ କର୍ମ କରୁଥିବାରୁ ସ୍କୁଲରେ ପାଠ କରିବାକୁ ଅଯୋଗ୍ୟ ଏବଂ ସେମାନେ ନିତ୍ୟ ରାତ୍ରି ୮ଘଣ୍ଟାରୁ ୧୦ଘଣ୍ଟା ପର୍ଯ୍ୟନ୍ତ ଏଠାରେ ଇଂରାଜୀ ଭାଷା ଅଧ୍ୟୟନ କରିବେ । ସ୍କୁଲର ବେତନ ଆଠଅଣା ମାତ୍ର । ଏକାର୍ଯ୍ୟଟି ଉତ୍ତମ ହୋଇଅଛି ଆମ୍ଭେମାନେ ଭରସାକରୁଁ ଯେ ଏଥିରେ ପ୍ରସ୍ତାବକର୍ତ୍ତାର ମାନସ ସଫଳ ହୋଇ ବିଦ୍ୟାଳୟ ଜନ ସମାଜର ମଙ୍ଗଳ ସାଧନକରୁ ।

୪୦ । ଆମ୍ଭେମାନେ ଆନନ୍ଦର ସହିତ ଅବଗତହେଲୁଁ ଯେ କଟକ ନର୍ମାଲ ସ୍କୁଲ ସମ୍ପର୍କରେ ଯେଉଁ ଗୃହଶାଳା ସ୍ଥାପିତ ହୋଇଅଛି ତହିଁରେ ଛାତ୍ର ସଂଖ୍ୟା ଦିନ ୨ ବୃଦ୍ଧି ହେଉଅଛି । ବିନା ବେତନରେ ପିଲାମାନଙ୍କୁ ଅସାଧାରଣ ଶିକ୍ଷା ଦେବାର ଅତି ସୁନ୍ଦର ଅଟଇ ଓ ଏଥିରେ ବିଦ୍ୟାପ୍ରଚାରର ବିଶେଷ ସୁବିଧା ହେଉଅଛି ।

## ( ୪ର୍ଥ ଭାଗ, ୧୦ । ୭ । ୧୮୬୯, ସଂଖ୍ୟା ୨୫ )

୪୧ । ସାପ୍ତାହିକ ସମ୍ବାଦ

ତଳଲିଖିତ ମହାଶୟମାନେ କଟକର ସାଧାରଣ ଶିକ୍ଷା ସମ୍ବନ୍ଧୀୟ କମିଟିର ସଭ୍ୟ ହୋଇଅଛନ୍ତି ।

କର୍ଣ୍ଣେଲ ଷ୍ଟାନଲି ସାହେବ
କପ୍ତାନ ଲେ ସାହେବ
ବାବୁ ମହେନ୍ଦ୍ର ବନ୍ଦ୍ୟୋପାଧ୍ୟାୟ

## ( ୪ର୍ଥ ଭାଗ, ୧୦ । ୭ । ୧୮୬୯, ସଂଖ୍ୟା ୨୮ )

୪୨ । ଉତ୍କଳ ପୁସ୍ତକ ପରୀକ୍ଷାର ସଭା ।

ପାଠକମାନଙ୍କୁ ଜଣାଅଛି ଯେ ଢେଙ୍କାନାଳର ମହାରାଜା ଉତ୍କଳ ପୁସ୍ତକ ମୁଦ୍ରିତ ସକାଶେ ପ୍ରାୟ ଏକସହସ୍ର ଟଙ୍କା କଟକ ଶିକ୍ଷା ସଂକ୍ରାନ୍ତ କମିଟି ହସ୍ତରେ ଗଚ୍ଛିତ କରିଥିଲେ । ଉକ୍ତ ଟଙ୍କା କିରୂପେ ବ୍ୟୟ ହେବ କମିଟି ସେଥିର ବିଚାର ଅନେକ କାଳରୁ କରିଥିଲେ ଏବଂ ଏହି ବିଷୟ ଜନ୍ୟ ଉତ୍କଳ ହିତୈଷିଣୀ ସଙ୍ଗେ

ଆମ୍ଭମାନଙ୍କର ଅନେକ ତର୍କବିତର୍କ ହୋଇଥିଲା । ଯାହାହେଉ ଗତ ସୋମବାର କମିଟୀଦ୍ୱାରା ଏ ବିଷୟ ନିଷ୍ପତ୍ତି ହୋଇଅଛି । ଆମ୍ଭେମାନେ ଏ ସମ୍ବାଦ ଶ୍ରବଣରେ ସନ୍ତୁଷ୍ଟ ହେବାରୁ ଆନନ୍ଦିତ ହେଲୁଁ । ଉକ୍ତ ପୁସ୍ତକ ମୁଦ୍ରାଙ୍କନ କାର୍ଯ୍ୟ ଶୀଘ୍ର ଆରମ୍ଭ ହେବ ଓ ଯେଉଁମାନେ ପୁସ୍ତକ ରଚନା କରିବାପାଇଁ ମାନସ କରନ୍ତି ମାତ୍ର ବ୍ୟୟ ନିର୍ବାହର ଉପାୟ ନଥିବାରୁ ସେଥିରେ ନିବୃତ୍ତ ଥିଲେ ସେମାନେ ଆଲସ୍ୟ ପରିତ୍ୟାଗ କରି କାର୍ଯ୍ୟରେ ନିଯୁକ୍ତ ହେବେ ।

କମିଟୀ ଯେଉଁ ନିୟମମାନ କରିଅଛନ୍ତି ତାହା ଯେ ସର୍ବମତରେ ଆମ୍ଭମାନଙ୍କର ପ୍ରସ୍ତାବାନୁଯାୟୀ ହୋଇଅଛି ବୋଲିବା ଅଧିକ ଅଟଇ ଓ ଏହି କାରଣରୁ ପୁନର୍ବାର ତହିଁର ବ୍ୟାଖ୍ୟା କରିବା ଅନାବଶ୍ୟକ । ଯେତେବେଳେ ଏହି ଯେ ଓଡ଼ିଆ ପୁସ୍ତକମାନଙ୍କର ଦୋଷାଦୋଷ ବିଚାର କାରଣ ଗୋଟିଏ ସଭାର ସୃଷ୍ଟି ହେଲା ଓ ତଳ ଲିଖିତ ମହାଶୟମାନେ ସେଥିର ସଭ୍ୟ ସ୍ୱରୂପ ନିଯୁକ୍ତ ହୋଇଅଛନ୍ତି ଯଥା :—

| | |
|---|---|
| ଶ୍ରୀ ରେବରେଣ୍ଡ ଟି. ଲେସିସାହେବ | ଶ୍ରୀ ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟ |
| ଶ୍ରୀ ବାବୁ ଜଗନ ମୋହନ ରାୟ | ଶ୍ରୀ ବାବୁ ନନ୍ଦନଚନ୍ଦ୍ର ଷଡ଼ଙ୍ଗୀ |
| ଶ୍ରୀ ବାବୁ ବିଚିତ୍ରାନନ୍ଦ ଦାସ | ଶ୍ରୀ ବାବୁ ବନମାଳୀ ସିଂହ |
| ଶ୍ରୀ ବାବୁ ଦ୍ୱାରକାନାଥ ଚକ୍ରବର୍ତ୍ତୀ | ଶ୍ରୀ ବାବୁ ଗୌରୀଶଙ୍କର ରାୟ |

ବିଶେଷ ସଭ୍ୟଙ୍କ ନିୟୋଗ ବିଷୟରେ ଆମ୍ଭେମାନେ ନାନା କାରଣରୁ କୌଣସି ମତ ବ୍ୟକ୍ତ କରି ନପାରୁଁ ମାତ୍ର ଆମ୍ଭମାନଙ୍କର ବିଶ୍ୱାସ ଓ ଭରସା ହୁଅଇ ସର୍ବସାଧାରଣରେ ଏ ସଭା ଆଦରଣୀୟ ହେବ ଓ ଗ୍ରନ୍ଥକାରକମାନେ ଯଥାର୍ଥ ବିଚାର ଲାଭ କରିବାର ଭରସାରେ ଉତ୍ସାହିତ ହୋଇ ସଭାରେ ଅର୍ପଣ କରିବେ ।

ଗ୍ରନ୍ଥକାରକଙ୍କ ଠାରୁ କେଉଁ ବିଷୟର ପୁସ୍ତକ କିପରି ପ୍ରାପ୍ତ ହେବ ଓ କି ନିୟମ ଅନୁସାରେ ସେମାନେ ଆପଣାର ପରିଶ୍ରମର ଫଳ ପାଇବେ ସଭା ବସିଲା ଠାରୁ ସେସମସ୍ତ ନିଷ୍ପତ୍ତି ହେବ ଓ ସାଧାରଣ ବିଜ୍ଞାପନ ଦ୍ୱାରା ସେ ସମସ୍ତ ଜଣାଇ ଦିଆଯିବ । ସମ୍ପ୍ରତି ଆମ୍ଭେମାନେ ଏତିକି କହିପାରୁଁ ଯେ ବିଶେଷ ବ୍ୟକ୍ତି ବା ବ୍ୟକ୍ତିମାନଙ୍କ ପ୍ରତି ପକ୍ଷପାତ ନହୋଇ ସର୍ବୋତ୍କୃଷ୍ଟ ପୁସ୍ତକ ପାଇବା କମିଟୀର ମାନସ ଅଛି ଓ ଏହା ଜାଣି ଉପଯୁକ୍ତ ବ୍ୟକ୍ତି ମାତ୍ରେ ପୁସ୍ତକ ରଚନା କାର୍ଯ୍ୟରେ ପ୍ରବୃତ୍ତ ହୋଇପାରନ୍ତି

( ୪ଥ ଭାଗ, ୧୦ । ୭ । ୧୮୭୯, ସଂଖ୍ୟା ୨୮ )

୪୩ ।

ବଙ୍ଗଅକ୍ଷରରେ ଉତ୍କଳଭାଷା ଲେଖିବା

ଗତସପ୍ତାହର କଟକକ୍ଷୀରରେ ବାବୁ ଉମାଚରଣ ହାଲଦାର ଖଣ୍ଡିଏ

ସୁଦୀର୍ଘ ପତ୍ରିକା ପ୍ରକାଶ କରୁଅଛନ୍ତି । ବଙ୍ଗଳା ଅକ୍ଷରରେ ଉତ୍କଳ ଭାଷା ପୁସ୍ତକ
ଓ ସମ୍ବାଦପତ୍ରାଦି ମୁଦ୍ରିତ ହେବା ସେଥିର ତାତ୍ପର୍ଯ୍ୟ ଅଟଇ ଓ ଏଥିଦ୍ୱାରା ବଙ୍ଗଳା ଓ
ଉତ୍କଳ ଉଭୟ ପ୍ରଦେଶର ଲୋକ ଏବଂ ସାହେବମାନେ ଉତ୍କଳ ଭାଷା ଅଳ୍ପମତେ
ସହଜରେ ଶିକ୍ଷା କରିବେ ଏହି ଆଶା କରନ୍ତି । ବାବୁଙ୍କୁ ଜଣେ ଉତ୍କଳର ହିତୈଷି
ବୋଲିବାକୁ ହେବ କାରଣ ଭିନ୍ନ ସ୍ଥାନର ଲୋକ ମଧ୍ୟରେ ଉତ୍କଳ ଭାଷା ପ୍ରଚଳନ
କରାଇବାପାଇଁ ସଦୁପାୟ ନିଷ୍କର୍ଷ କରିବାରେ ସେ କେତେ ପରିଶ୍ରମ ଓ କାଳବ୍ୟୟ
କରିଅଛନ୍ତି ତାହା ଉକ୍ତ ପତ୍ର ଦୃଷ୍ଟି କଲେ ପ୍ରତୀତ ହେବ । ଯୁକ୍ତିମାନ ମଧ୍ୟ ଅଲୌକିକ
ଅଟଇ ତନ୍ମଧ୍ୟରେ ପ୍ରଧାନ ଯୁକ୍ତି ଏହିକି ଯେବେ ବଙ୍ଗଳା କାଗଜ ବଙ୍ଗଳା କଲମ
ଓ ସିହାଇରେ ଉତ୍କଳ ଅକ୍ଷର ଲେଖାଗଲା ତେବେ ବଙ୍ଗଳା ଅକ୍ଷରରେ କିପାଇଁ ଲେଖା
ନହେବ ? ଅସ୍ମଦ୍ଦେଶୀୟ ପାଠକମାନେ ଯେବେ କାଗଜ, କଲମ ଓ ସିହାଇର ଶବ୍ଦ
ବିଷୟ ବିଚାରନ୍ତି ତେବେ ସ୍ପଷ୍ଟ ଜାଣିପାରନ୍ତି ଯେ ଏ ସମସ୍ତ ବଙ୍ଗଳାରେ ଜାତ ହୋଇଅଛି
ଓ ଏଥିର ପ୍ରମାଣ ଖୋଜିବାକୁ ବିଶେଷ ବୁଦ୍ଧିର ଆବଶ୍ୟକ ନ କରେ. କାଗଜ, କଲମ,
ଇତ୍ୟାଦି ଶବ୍ଦ ସବୁ ବାବୁଙ୍କ କଥା ସପ୍ରମାଣ କରୁଅଛି । ଏ ଗୋଟିଏ ଯୁକ୍ତିଦ୍ୱାରା
ବାବୁ ଏତେଡ଼ କଥା ସ୍ଥାପନ କରିବାକୁ ଚେଷ୍ଟା କରିନାହାନ୍ତି । ତେବେ ଆଉରି ଗୋଟିଏ
ଯୁକ୍ତିର କଥା ଶୁଣନ୍ତୁ । ଓଡ଼ିଆ ଓ ବଙ୍ଗଳା ଅକ୍ଷର ସବୁକୁ ବାବୁ ବଡ଼ ମନୋଯୋଗ
ପୂର୍ବକ ପରୀକ୍ଷା ଓ ତୁଳନା କରି ଦେଖିଲେ ଯେ ବଙ୍ଗଳା ଅକ୍ଷରର ବଡ଼ ଶୋଭା ହୋଇ-
ଅଛି । ଅବା ଏଥିରେ ବିଚାର କି ଯାହା ସୁଅ ତାହାକୁ ସୁନ୍ଦର । ଓଡ଼ିଆ ଅକ୍ଷର
ଗୋଲାକାର ବଙ୍ଗଳା ତ୍ରିକୋଣ ବା ଅର୍ଦ୍ଧଗୋଲ ଏ ତାହାଙ୍କୁ ଶଳମୁକ୍ତା ହାରରେ
ସ୍ଥାନକ ଖଣ୍ଡିତ ପଦକ ପ୍ରାୟ ବଡ଼ ଜାଲ୍ଲଲମାନ ଦିଶିଲ ଅଥବା ବାବୁଙ୍କର ବୈଷ୍ଣବୀ ଭବ
ଉଦୟ ହୋଇଥିବ ଯେ ତ୍ରିଭଙ୍ଗ ରୂପ ଦେଖି ଗୋପ କନ୍ୟାଙ୍କର କଥା ଅକସ୍ମାତ୍ ମନରେ
ଚେତିଲାର ପ୍ରେମରେ ପୂର୍ଣ୍ଣ ହେଲେ । ଯେବେ ଏରୂପ କିଛି ହୋଇ ନଥିବ ତେବେ
ବାବୁ କାହିଁକି ଏବୁଲି ଅକ୍ଷରକୁ ଦେଖି ୨ ବଙ୍ଗଳାକୁ ସୁନ୍ଦର ମନରେ କରି ହଠାତ୍
ଚମକି ପଡ଼ି କହିଲେ କି ଯେବେ ବଙ୍ଗଳା ଅକ୍ଷର ଏତେ ସୁନ୍ଦର ତେବେ ଓଡ଼ିଆ ଭାଷା
ଏଥିରେ କାହିଁକି ଲେଖା ନହେବ । ବାବୁ ଚମ ଚମକି ଥିବେ ଏଥିରେ ସନ୍ଦେହ
ନାହିଁ କାରଣ ଆମ୍ଭେମାନେ ତ ଶୁଣିକରି ଚମତ୍କାର ହେଲୁଁ ।

ବର୍ତ୍ତମାନ ଆମ୍ଭମାନଙ୍କର ଅବକାଶ ନଥିବାରୁ ଆଉ କଥାମାନ ଲେଖି
ନପାରିଲୁଁ । କିନ୍ତୁ ବାବୁଙ୍କୁ ଏତିକି କହିବାର ଆବଶ୍ୟକ ଯେ ଏ କଥ ପାଇଁ ଏତେ
ପରିଲେଖି ମୁଣ୍ଡହାଡ଼ିକୁ କ୍ଲେଶ ଦେବାର ପ୍ରୟୋଜନ କି ଥିଲା । ଦୁଇ ଗୁରୁକଣ୍ଡ
ଓଡ଼ିଆ ପୁସ୍ତକ ବଙ୍ଗଳା ଅକ୍ଷରରେ ଛପାଇ ଦେଲେ ତ ସବୁ ବୁଦ୍ଧି କାର୍ଯ୍ୟରେ
ପ୍ରକାଶ ପାନ୍ତା ।

୪୪ । ପ୍ରେରିତପତ୍ର

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ
ମହାଶୟ ସମୀପେଷୁ ।

ମହାଶୟ, ଉତ୍କଳ ସ୍କୁଲ ଅକ୍ଷର ପରିବର୍ତ୍ତିରେ ବଙ୍ଗ ବଙ୍କାଅକ୍ଷର ବ୍ୟବହାର ହେବା ବିଷୟରେ ବାବୁ ଉମାଚରଣ ହାଲଦାରଙ୍କ ପତ୍ର କଟକସ୍ଥ ପତ୍ରିକାରେ ପାଠକରି ପ୍ରଶଂସିତ ବାବୁ ଅତି ବିଦ୍ୱାନ ଓ ବୁଦ୍ଧିମାନ ଥିବା ଦୃଷ୍ଟିରେ ଏହି ଅନୁମାନ କଲୁଁ ଯେ ଏ ପ୍ରକାର ଅସଙ୍ଗତ ଓ ଅସମ୍ଭବ ବିଷୟରେ ପ୍ରବୃତ୍ତ ହେବାର ହେତୁ ମତିଭ୍ରମ ବ୍ୟତୀତ ଅନ୍ୟକିଛି ହୋଇ ନପାରେ ଏହି ପ୍ରବୋଧରେ ମୌନାବଲମ୍ବନ କରିଥିଲୁଁ । କିନ୍ତୁ ଏ ପ୍ରସଙ୍ଗରେ ଗତକାଲି କଟକ ଡିବେଟିଂ କ୍ଲବ ନାମ୍ନୀ ସଭାର ସଭା ହୋଇଥିଲି ଓ ନବାଗତ ବଙ୍ଗାଳି ସଭ୍ୟମାନେ ଏକ ମେଳହୋଇ ପ୍ରସ୍ତାବର ପୋଷକତାରେ ଅନେକ କଥାକହିଲେ । କି ଆଶ୍ଚର୍ଯ୍ୟ ବାବୁମାନେ ସାହସରେ ସମସ୍ତେ ବାହ୍ୟା ? ଏ ପ୍ରସ୍ତାବ ଏତେ ସ୍ପଷ୍ଟ ରୂପରେ ଅଦୂରଦର୍ଶୀ ଅନାବଶ୍ୟକ ଓ ଅସମ୍ଭବ ଯେ ତହିଁର ତର୍କବିତର୍କ କରିବାର ତେଣିକି ଥାଉ ତାହା ସଭାରେ ଗ୍ରହଣ ହେବାର ଯୋଗ୍ୟ ନଥିଲା ସ୍ୱର୍ଗରୁ ଗୋଟିଏ ସଡ଼କ ନିର୍ମାଣ କରିବାର ଆମ୍ଭେ ପ୍ରସ୍ତାବ କରୁଅଛୁଁ ଓ ଏହା ଯେ କେତେ ବାଞ୍ଛନୀୟ ଓ ହିତକର ତାହା ବର୍ଣ୍ଣନାତୀତ । ଏ ପ୍ରସ୍ତାବକୁ ଡିବେଟିଂ କ୍ଲବ ବିବେଚନା କରିବେ କି ନାହିଁ ଏହା ଆମ୍ଭେ ତାଙ୍କୁ ପ୍ରଶ୍ନ କରୁଁ । ଯାହାହେଉ ଗତେ ତ ଶୋଚନା ନାସ୍ତି, ଏଣିକି ଯେପରି ଉମାଚରଣ ବାବୁଙ୍କ ପ୍ରସ୍ତାବ ବିଷୟରେ କେହି ଚର୍ଚ୍ଚା ବା ଚିନ୍ତା ନକରନ୍ତୁ ଏହି ଆମ୍ଭର ଅଭିଳାଷ ।

ଆପଣ ଅନୁଗ୍ରହ ପୂର୍ବକ ସଂଶୋଧନାନନ୍ତର ଏ ପତ୍ରକୁ ଆପଣଙ୍କ ପତ୍ରିକାରେ ପ୍ରକାଶ କଲେ ବାଧିତ ହେବୁଁ ।

କଟକ
ତା ୧୫ରିଖ ଜୁଲାଇ
ସନ ୧୮୬୯

ବଶମ୍ବଦସ୍ୟ
କସ୍ୟଚିଦୁତ୍କଳସ୍ୟ ।

ଆମ୍ଭେମାନେ ମଧ୍ୟ ଡିବେଟିଂ କ୍ଲବର ବ୍ୟବହାର ଦେଖି ବ୍ୟସ୍ତ ହୋଇଅଛୁଁ । ଉକ୍ତ ସଭା ବଙ୍ଗାଳି ଓ ଓଡ଼ିଆଙ୍କ ହିତୋଦ୍ଦେଶ୍ୟରେ ସ୍ଥାପନ ହୋଇଅଛି କିନ୍ତୁ ଯେବେ ସାଧାରଣ ଉପକାରପ୍ରତି ଦୃଷ୍ଟି ନରଖି ଏକ ଦେଶୀୟ ସଭ୍ୟମାନେ ଅପର ଦେଶୀୟ ସଭ୍ୟଙ୍କ ବିରୁଦ୍ଧ ମତାଚରଣ କରନ୍ତି ତେବେ ଏ ପ୍ରକାର ସଭାରେ ଅସ୍ୱଦେଶୀୟ ଲୋକଙ୍କର ସଂସର୍ଗ ରଖିବାର ଉଚିତ କି ନା ବିଚାର କରିବାର නିତାନ୍ତ ପ୍ରୟୋଜନ ବୋଧ ହୁଅଇ ।

## ( ୪ଥ ଭାଗ, ୨୦ । ୭ । ୧୮୬୯, ସଂଖ୍ୟା ୩୦ )

୪୫ । ବଙ୍ଗ ଅକ୍ଷରରେ ଉତ୍କଳ ଭାଷା ଲେଖିବ ।

ପ୍ରସ୍ତାବ ବିଷୟରେ ସର୍ବସାଧାରଣର ମତ ଜାଣିବା ଅଭିଳାଷରେ ଆମ୍ଭେମାନେ ଗତ ସପ୍ତାହ ଠାରୁ କେତେଗୁଡ଼ିଏ ପ୍ରେରିତପତ୍ର ପ୍ରକାଶ କରି ଆସିଅଛୁଁ । ବୋଧକରୁଁ ଏ ବିଷୟରେ ଆଉ କିଛି ବ୍ୟକ୍ତ କରିବା ଆବଶ୍ୟକ ନାହିଁ ଅତଏବ ପତ୍ରପ୍ରେରକମାନଙ୍କୁ ଅନୁରୋଧ ଯେ ସେମାନେ ଏ କଥାକୁ ପରିତ୍ୟାଗ କରି ଅନ୍ୟାନ୍ୟ ବିଷୟ ରଚନା କରିବାରେ ପ୍ରବୃତ୍ତ ହେଉନ୍ତୁ ସମ୍ପ୍ରତି ପାଠକମାନଙ୍କୁ ଜଣାଇବାର ଆବଶ୍ୟକ ଯେ ଉତ୍କଳୋଲ୍ଲାସିନୀ ସଭାରେ ଏ ପ୍ରସଙ୍ଗ ଉପସ୍ଥିତ ହୋଇଥିଲା ସେଠାରେ ଏହି ସିଦ୍ଧାନ୍ତ ହେଲା ଯେ ଉକ୍ତ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେଲେ ବର୍ତ୍ତମାନ ବଙ୍ଗ ଭାଷାର ସତ୍ୟନାରାୟଣଙ୍କ ପାଲି ଚୈତନ୍ୟ ଚରିତାମୃତ ଓ ପଦ୍ୟାବଳୀ ଇତ୍ୟାଦି ଏ ଦେଶୀୟ ଲୋକମାନେ ଉତ୍କଳ ଅକ୍ଷରରେ ଲେଖି ପଢ଼ିବାରୁ ସେଥିରେ ଯେଉଁ ଦୁର୍ଦ୍ଦଶା ହୋଇଅଛି ବଙ୍ଗ ଅକ୍ଷରରେ ଲେଖା ହେଲେ ଉତ୍କଳ ଭାଷାର ମଧ୍ୟ ସେହି ଅବସ୍ଥା ହେବ ଅତଏବ ଏଥିରେ ଉତ୍କଳ ଭାଷାର ଅନିଷ୍ଟ ଭିନ୍ନ ଉନ୍ନତିର କୌଣସି ଆଶା ନାହିଁ । ପାଠକମାନେ ଅବଶ୍ୟ ଜ୍ଞାତ ଥିବେ ଯେ ଏ ସଭାର ସଭ୍ୟମଣ୍ଡଳୀରେ ଏ ନଗରର ସକଳ ଶ୍ରେଣୀର ପଣ୍ଡିତ ଧନୀ ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଅଛନ୍ତି ଓ ଏଠାର ମତକୁ ଦେଶର ମତବୋଲି ଅନାୟାସରେ ବିଶ୍ୱସ୍ତ ହୋଇପାରେ ।

୪୬ । ସାପ୍ତାହିକ ସମ୍ବାଦ

ଆମ୍ଭେମାନେ ଶୁଣି ବଡ଼ ଆନନ୍ଦିତ ହେଲୁଁ ଯେ କଲିକତା ସ୍କୁଲବୁକ ସୋସାଇଟୀ ଦକ୍ଷିଣ ପଶ୍ଚିମ ବିଭାଗର ଇନସ୍ପେକ୍ଟରଙ୍କୁ ଜଣାଇ ଅଛନ୍ତି ଯେ କଟକ ନଗରରେ ଉତ୍କଳ ପୁସ୍ତକ ପରୀକ୍ଷା କରିବା କାରଣ ଯେଉଁ ସଭା ହେବ ସେ ସଭାର ମତ ଭିନ୍ନ କୌଣସି ଉତ୍କଳ ପୁସ୍ତକ ମୁଦ୍ରିତ କରିବାର ଭାର ସେମାନେ ଗ୍ରହଣ କରିବେ ନାହିଁ । ଶ୍ରୀଯୁକ୍ତ ମାର୍ଟିନ ସାହେବ ଏ ନଗରର ଉତ୍କଳ ଭାଷା ଉତ୍ତମ ରୂପେ ଜାଣିଥିବା କେତେ ବ୍ୟକ୍ତିଙ୍କୁ କମିଶନରଙ୍କ ପରାମର୍ଶାନୁସାରେ ଏ ସଭାର ସଭ୍ୟ ମନୋନୀତ କରି ଡାଇରେକଟରଙ୍କ ମଞ୍ଜୁରି କାରଣ ପଠାଇ ଅଛନ୍ତି । ଏ ପ୍ରସ୍ତାବ ସେଠାରୁ ଗବର୍ଣ୍ଣମେଣ୍ଟକୁ ଯିବ ଓ ସଭ୍ୟମାନେ ରୀତିମତ ଗବର୍ଣ୍ଣମେଣ୍ଟର ନିଯୁକ୍ତ ହୋଇ କାର୍ଯ୍ୟାରମ୍ଭ କରିବେ । ଏତେଦିନେ ଦେଖାଗଲା ଯେ ଗବର୍ଣ୍ଣମେଣ୍ଟ ଉତ୍କଳ ଭାଷାର ଦୁର୍ଦ୍ଦଶା ମୋଚନ ପକ୍ଷରେ ଦୃଢ଼କଳ୍ପ ହୋଇଅଛନ୍ତି ଓ ଆମ୍ଭେମାନେ ପୁନଃପୁନଃ

ଏହି ପ୍ରସ୍ତାବ କରିବାର ଏତେକାଳେ ତାହା ସଫଳ ହେବାର ସମ୍ଭାବନା ଦେଖି ବିଶେଷ ଆନନ୍ଦିତ ହୋଇଅଛୁଁ ।

## ( ୪ଥ ଭାଗ, ୩୧ । ୭ । ୧୮୭୯, ସଂଖ୍ୟା ୩୧ )

( ପ୍ରାପ୍ତ )

୫୭ । ପୁରୀ ସଂସ୍କୃତ ବିଦ୍ୟାଳୟ

ପ୍ରାୟ ଷଷ୍ଠବର୍ଷ ହେଉଅଛି ଏହି ବିଦ୍ୟାଳୟଟି ପୁରୁଷୋତ୍ତମ କ୍ଷେତ୍ରରେ ସଂସ୍ଥାପିତ ହୋଇଥିବାର ଅନେକ ଶ୍ରବଣ କରିଥିଲୁଁ ମାତ୍ର ତାହା କାହା ଦ୍ୱାରା କି ରୂପରେ ଓ କାହା ଉଦ୍ୟୋଗରେ ସ୍ଥାପିତ ହୋଇଅଛି ଓ ତହିଁରେ ବାଳକମାନଙ୍କୁ କିରୂପ ଶିକ୍ଷା ପ୍ରଦାନ ହେଉଅଛି ତାହା କିଛି ସବିଶେଷ ଜ୍ଞାତ ନଥିଲୁଁ ବର୍ତ୍ତମାନ ସେହି ବିଦ୍ୟାଳୟର ଶିକ୍ଷକ ଓ ଛାତ୍ରମାନଙ୍କ ସହିତ ଆମ୍ଭର ପୁରୁଷୋତ୍ତମ କ୍ଷେତ୍ରରେ ସାକ୍ଷାତ ହେବାରୁ ସେମାନଙ୍କ ପ୍ରମୁଖାତ୍ ଏବଂ ତହିଁର ଦ୍ୱିତୀୟ ଶିକ୍ଷକ ଶ୍ରୀ ଗୋପୀନାଥ ମିଶ୍ରଙ୍କ ପ୍ରେରିତପତ୍ର ଦ୍ୱାରା ଅବଗତ ହେଲୁଁ ଯେ ଉକ୍ତ ବିଦ୍ୟାଳୟଟି ସେହି କ୍ଷେତ୍ର-ନିବାସୀ ଶ୍ରୀଯୁତ ହରିହର ଦାସ ପଣ୍ଡିତଙ୍କ ଉଦ୍ୟୋଗ ଓ ଯଥେଷ୍ଟ ପରିଶ୍ରମରେ ଅଯୋଧ୍ୟା ଦେଶାନ୍ତଃପାତି ବଳରାମପୁରର ମହାରାଜା ଶ୍ରୀ ଦିଗ୍‌ବିଜୟ ସିଂହ ଗବର୍ଣ୍ଣ-ମେଣ୍ଟରେ ଗଚ୍ଛିତ ରଖିଥିବା ୧୫୦୦୦ ଙ୍କାର ସୁଧ ଏବଂ ବାର୍ଷିକ ତହିଁର ଛାତ୍ରମାନଙ୍କ ମଧ୍ୟରେ ଯେଉଁମାନେ କି ଦରିଦ୍ର ଅଟନ୍ତି ସେମାନଙ୍କର ବୃତ୍ତି ସ୍ୱରୂପ ପ୍ରଦାନ କରିଥିବା ୬୧୩ ଟଙ୍କା ଦ୍ୱାରା ସ୍ଥାପିତ ଓ ନିର୍ବାହିତ ହେଉଅଛି, ଓ ସେ ବିଦ୍ୟାଳୟରେ ଅଧ୍ୟୟନ କରିବା ବାଳକମାନଙ୍କ ମଧ୍ୟରେ ଅଧିକାଂଶ ଦରିଦ୍ର ବ୍ରାହ୍ମଣମାନଙ୍କର ବାଳକମାନେ ପ୍ରବିଷ୍ଟ ହୋଇଅଛନ୍ତି କାରଣ ସେମାନେ ପ୍ରତ୍ୟେକରେ ତିନିଟଙ୍କା ଲେଖାଏଁ ମାସିକ ଛାତ୍ରବୃତ୍ତିପ୍ରାପ୍ତ ହୋଇ ତଦ୍ୱାରା ଗ୍ରାସାଚ୍ଛାଦନ ନିର୍ବାହ କରୁଅଛନ୍ତି ଅଥଚ ବିଦ୍ୟାଶିକ୍ଷା ମଧ୍ୟ କରୁଅଛନ୍ତି ମାତ୍ର ତନ୍ତ୍ୟ ସମ୍ଭ୍ରାନ୍ତ ଓ ଧନାଢ୍ୟ ବ୍ୟକ୍ତିମାନଙ୍କର ବାଳକମାନେ ଅଧିକ ପ୍ରବେଶ ହେଉ ନଥିବାର କାରଣ ଅନୁସନ୍ଧାନ କରିବାରେ ଜଣାଗଲା ଯେ ସେମାନେ ସ୍କୁଲରେ ସଂସ୍କୃତ ବିଦ୍ୟା ଯଥେଷ୍ଟ ରୂପେ ଶିକ୍ଷା ହେବାର ବିଶ୍ୱାସ କରନ୍ତି ନାହିଁ ବରଂ ଧର୍ମହାନିର ଶଙ୍କା କରନ୍ତି ଏହି ହେତୁ ଶ୍ରୀ ମହାନ୍ତ ନାରାୟଣ ଦାସ ଯେ କି ବର୍ତ୍ତମାନ ପୁରୁଷୋତ୍ତମ କ୍ଷେତ୍ର ମଧ୍ୟରେ ସଂସ୍କୃତ ବିଦ୍ୟାରେ ଏବଂ ହିନ୍ଦୁମାନଙ୍କ ଧର୍ମ ଶାସ୍ତ୍ରାଦିରେ ଯଥେଷ୍ଟ ଜ୍ଞାନସାର ଓ ଉପଯୁକ୍ତ ଅଟନ୍ତି ସେ ଆପଣ ଶିଷ୍ୟଙ୍କୁ କିଛିଦିନ ଉକ୍ତ ବିଦ୍ୟାଳୟରେ ଶିକ୍ଷା କରିବା ନିମିତ୍ତ ନିଯୁକ୍ତ କରି ତତ୍ପରେ ଆପଣା ମନରେ

କରଣ ଆଶଙ୍କା ଜାତ ହେବାର ବର୍ତ୍ତମାନ ଆଉ ସଂପ୍ରତି ନାହାନ୍ତି । ଆଗୋ ମଧ୍ୟରେ ଏକ ଶିକ୍ଷକ ନିଯୁକ୍ତ କରି ପଢ଼ାଉ ଅଛନ୍ତି ଓ ଏତଦ୍ଭିନ୍ନ ଅନ୍ୟ କେତେକ ବାବୁ ମଧ୍ୟ ଆପଣା ଶିଷ୍ୟ ଏବଂ ସନ୍ତାନମାନଙ୍କୁ ଉକ୍ତ ବିଦ୍ୟାଳୟକୁ ପଠାଇବାକୁ ନାହିଁ ଅନ୍ୟସ୍ଥରେ ଏ ଦେଶର ପୁରାତନ ପ୍ରଣାଳୀ ଅନୁସାରେ ଶିକ୍ଷା ପ୍ରଦାନ କରୁଅଛନ୍ତି ଏହା ଅତଏବ ଏଥିର ବିଷୟ କାଳରେ ଏମନ୍ତେ କେବଳ ପର୍ଯ୍ୟନ୍ତ ଦେଶୀୟ ସମସ୍ତ ଧନବାନ୍ ଓ ବିଦ୍ୱାନ୍ ବ୍ୟକ୍ତିମାନେ ଏକାଗ୍ରଚିତ୍ତ ଓ ଏକମତି ହୋଇ ସ୍ୱଦେଶର ଉନ୍ନତପ୍ରତି ଦୃଷ୍ଟିପାତ କରି ନାହାନ୍ତି ସେ ପର୍ଯ୍ୟନ୍ତ ଦେଶର ସୌଭାଗ୍ୟ ପ୍ରତ୍ୟାଶା କରିବା କେବଳ ଉତ୍ତପ୍ତ ବାଲୁକାମୟ ମରୁଭୂମିରେ ସୁଶୀତଳ ସଲିଳ ବୌଦ୍ଧିକ ପ୍ରଷ୍ଫୁଟିତ ପଦ୍ମପୁଷ୍ପର ପ୍ରତ୍ୟାଶା କରିବାତୁଲ୍ୟ ଅଳୀକ ଓ ଅସମ୍ଭବ ଅଟେ ଓ ଆମ୍ଭ ଦେଖିବାରେ ଉକ୍ତ ବିଦ୍ୟାଳୟର ପ୍ରଥମ ଶ୍ରେଣୀସ୍ଥ ଛାତ୍ରମାନେ ଅଳ୍ପ ଅଳ୍ପକାଳ ମଧ୍ୟରେ ଯେପରି ଶିକ୍ଷା ପ୍ରାପ୍ତ ହୋଇଅଛନ୍ତି ଓ ସେମାନଙ୍କର ଯେପରି ସଂସ୍କୃତ ଭାଷାରେ ପ୍ରବେଶିକା ଶକ୍ତି ଜନ୍ମିଅଛି ତାହା ଏତଦ୍ଦେଶୀୟ ପୁରାତନ ପଦ୍ଧତ୍ୟନୁସାରେ ଶିକ୍ଷା କରିଥିବା ଛାତ୍ରମାନଙ୍କର ଦଶବର୍ଷରେ ମଧ୍ୟ ପ୍ରାପ୍ତ ହେବା କଠିନ ଅତଏବ ସେ ବିଦ୍ୟାଳୟର ଛାତ୍ରମାନଙ୍କ ମଧ୍ୟରୁ ଏକ ଛାତ୍ରର ରଚନା କରିଥିବା ଲକ୍ଷ୍ମୀର ଏକଗୋଟି ଶ୍ଳୋକ ଉଦ୍ଧୃତ କରୁଅଛୁଁ ତହିଁର ସେମାନଙ୍କର ସୁଶିକ୍ଷାର ପରିଚୟ ଉତ୍ତମରୂପେ ପ୍ରକାଶ ପାଇବ । ଯଥା —

ବାସନ୍ତୀ ଶତଦଳ ମଲ୍ଲିକାଙ୍କିତୋରସୌ !
ମିହୀକା ମୃଗମଦ ଚନ୍ଦନାକ୍ତ କାନ୍ତିଃ ।
ଗୀର୍ବାଣାସ୍ତୁତ ଦଳତାରବିନ୍ଦନେତ୍ରା ।
ମାନାଥଃ ସପଦି ମନୋଜ୍ଞ ମଙ୍ଗଳଂ ବଃ ।

ଅତଏବ ଶ୍ରୀ ହରିହର ଦାସ ପଣ୍ଡିତବର ଯେ କି ଆପଣା ସ୍ୱଦେଶର ହିତସାଧନୋଦ୍ଦେଶ୍ୟରେ ଏତାଦୃଶ ପରିଶ୍ରମ ସ୍ୱୀକାର ଅଯୋଧ୍ୟା ପ୍ରଦେଶକୁ ଯାଇ ଏକ ବିଦେଶୀୟ ମହାରାଜାଙ୍କୁ ପ୍ରମୋଦ କରାଇ ଏବଂ ସ୍ୱୟଂ ଗବର୍ଣ୍ଣମେଣ୍ଟର ସ୍ଥାପିତ ବିଦ୍ୟାଳୟମାନଙ୍କରେ ପ୍ରଚଳିତଥିବା ପୁସ୍ତକମାନ ଅଧ୍ୟୟନ ପୂର୍ବକ ତହିଁର ପରୀକ୍ଷା କଲିକତା ସଂସ୍କୃତ କଲେଜରେ ଦେଇ ପ୍ରଶଂସାପତ୍ର ଲଭକରି ଉକ୍ତ ବିଦ୍ୟାଳୟର ଶିକ୍ଷକ ପଦରେ ନିଯୁକ୍ତ ହୋଇ ପୁନଶ୍ଚ ତହିଁରେ ବାଳକମାନେ ସ୍ୱେଚ୍ଛା ପୂର୍ବକ ପ୍ରବେଶ ହେବା ନିମିତ୍ତ ସେମାନଙ୍କର ଛାତ୍ରବୃତ୍ତି ପର୍ଯ୍ୟନ୍ତ ମହାରାଜାଙ୍କୁ ଅନୁରୋଧ କରିବା ଦ୍ୱାରା ପ୍ରଦାନ କରାଇ ଆପଣା ଶିଷ୍ୟମାନଙ୍କୁ ସଂସ୍କୃତ ବିଦ୍ୟାରେ ଯଥୋଚିତ ଉପଯୁକ୍ତ କରିବା ପର୍ଯ୍ୟନ୍ତ ଦୃଢ଼ବ୍ରତ ହୋଇଅଛନ୍ତି ଓ ଶ୍ରୀଯୁତ ବଦାନ୍ୟବର ମହାରାଜା ଦର୍ଗବିଜୟ ସିଂହ ଯେ କି ବିଦେଶୀୟ ରାଜା ହୋଇ କେବଳ ଏକବାର ମାତ୍ର ତୀର୍ଥ

ଦର୍ଶନାର୍ଥ ଏ ଦେଶକୁ ଆଗମନ କରି ଏ ଦେଶର ମଙ୍ଗଳୋନ୍ନତି ନିମିତ୍ତ ଏକା-
ବେଳେକେ ୨୫୦୦୦ଙ୍କା ଦାନକରି ପୁନର୍ବାର ଉକ୍ତଦର୍ଶ ହେଲ ବର୍ଷକୁ ବର୍ଷ
୧୨୩୦୦ଙ୍କା ଦେବାକୁ ପ୍ରଦାନକରି ଆମ୍ଭର ଉତ୍କଳ କାଳକୁ ଏହିରୂପ ଦାନ
କରିବାର ପ୍ରବନ୍ଧ କରିଅଛନ୍ତି ଧନ୍ୟ ସେ ପଣ୍ଡିତ ଧନ୍ୟ ସେ ମହାରାଜା ।

ଯଦ୍ୟପି ଏ ଦେଶର ଧନୀ ଓ ବିଦ୍ୱାନ ବ୍ୟକ୍ତିମାନଙ୍କର ଏଥିର
[illegible] ମାଧ୍ୟ ଆପଣା ସ୍ୱଦେଶର ବିଦ୍ୟା ଓ ଯଶୋନ୍ନତି ପ୍ରତି ଆଗ୍ରହ
ହୁଅନ୍ତା ତେବେ ଆମ୍ଭମାନଙ୍କୁ ଯେଉଁ ବିଦେଶୀମାନେ ସର୍ବଦା ଅସଭ୍ୟ ଏବଂ ବିଦ୍ୟା-
ହୀନ ବୋଲି ଘୃଣା କରୁଥିବାର ଶୁଣି ଶୁଣି ବଧିର ପ୍ରାୟ [illegible] ହୋଇ ରହିଅଛୁଁ
ତାହା କି ଆଉ ଶୁଣିବାକୁ ହୁଅନ୍ତା ।

## ( ୪ର୍ଥ ଭାଗ, ୧୪ । ୮ । ୧୮୭୯, ସଂଖ୍ୟା ୩୩ )

୫୮ । ବଙ୍ଗ ଅକ୍ଷରରେ ଉତ୍କଳଭାଷା ଲେଖିବା ।

ଆମ୍ଭେମାନେ ପୂର୍ବରୁ ସ୍ଥିର କରିଥିଲୁଁ ଯେ ଏ ଦୁଃଖଦାୟକ ପ୍ରସ୍ତାବ
ସମ୍ବନ୍ଧରେ ଆଉ କିଛି ମତାମତ ପ୍ରକାଶ ନ କରିବୁଁ । ଆମ୍ଭେମାନେ ଏହାକୁ ଦୁଃଖ-
ଦାୟକ ବୋଲିବାର କାରଣ ଏହି ଯେ ଏ ପ୍ରସ୍ତାବ ଉତ୍ଥିତ ହେଲା ବିନୁ ଅନର୍ଥକ
ବଙ୍ଗାଳାବାସୀ ଓ ଉତ୍କଳୀୟଙ୍କ ମଧ୍ୟରେ ମନାନ୍ତର ହୋଇଅଛି ଓ ଏବମ୍ବିଧ ମନାନ୍ତର
ଜାତ ରହିବା ନିତାନ୍ତ ଅନୁଚିତ ଅଟଇ ଓ ଯେହେତୁ ତାହା ଏହି ପ୍ରସ୍ତାବରୁ ଜାତ
ହୋଇଅଛି ଅତଏବ ଆମ୍ଭେମାନେ ଇଚ୍ଛା କରୁଅଛୁଁ ଯେ ଏ ପ୍ରସ୍ତାବର ଆଉ
ଉଲ୍ଲେଖ ନକରି ଏହାକୁ ଯେତେ ଶୀଘ୍ର ପାସୋରିଯିବା ତେତେ ଶୀଘ୍ର ବୋଧହୁଅଇ
ଉଲ୍ଲିଖିତ ବିଦ୍ୱେଷ ନିବାରଣ ହୋଇବାର ସମ୍ଭବ ତଥାପି ଆମ୍ଭେମାନେ ଏ ବିଷୟରେ
ଅଦ୍ୟ ଖଣ୍ଡିଏ ପତ୍ର ପ୍ରକାଶ କରିବାରେ ଆମ୍ଭମାନଙ୍କର ଏହି ଉଦ୍ଦେଶ୍ୟ ଯେ ଯଥାର୍ଥ
ବିବେଚକ ବଙ୍ଗାଳିମାନେ ସୁଦ୍ଧା ଜମାବରଣ ବାବୁଙ୍କ ମତକୁ ଆଦର କରୁନାହାନ୍ତି ।
ପତ୍ରପ୍ରେରକଙ୍କ ପରିଚୟ ଦେବା ଆମ୍ଭମାନଙ୍କ ପକ୍ଷରେ ଅନାବଶ୍ୟକ ଅଟଇ । ଉତ୍କଳରେ
କୋହ୍ଲାପୁରୀ ସେ ଅପରିଚିତ ନୁହନ୍ତି ଓ ବଙ୍ଗଦେଶରେ ଜଣେ ଉତ୍କୃଷ୍ଟ କବି ବୋଲି
ଖ୍ୟାତି ଲାଭ କରିଅଛନ୍ତି । ଅତଏବ ଏହାଙ୍କର ମତକୁ ଅବଶ୍ୟ ବଡ଼ ବୋଲି ଘେନିବାକୁ
ହେବ । ବାସ୍ତବରେ ପତ୍ରପ୍ରେରକ ବାବୁ ଯାହା ଲେଖିଅଛନ୍ତି ଯେ ସଂସ୍କୃତ ଭିନ୍ନ ଅନ୍ୟ
କୌଣସି ଭାଷାରେ ସକଳ ପ୍ରଦେଶର ଲୋକ ଐକ୍ୟ ହେବାର ସମ୍ଭାବନା ନାହିଁ ଏହା
ସର୍ବସ୍ୱରୂପେ ଆମ୍ଭମାନଙ୍କର ମନୋଗତ ଅଟଇ । ସଂସ୍କୃତ ଭାଷାକୁ ଭାରତବର୍ଷର

ସକଳ ସ୍ଥାନର ଲୋକ ଦେବଭାଷା ବୋଲି ମାନ୍ୟ କରନ୍ତି ଓ ଆଗ୍ରହ ପୂର୍ବକ ଶିକ୍ଷା କରନ୍ତି ସୁତରାଂ ଏ ଭାଷାର ଯେତେ ଉନ୍ନତି ହେବ ଭିନ୍ନ ୨ ସ୍ଥାନ ନିବାସିଙ୍କ ମଧ୍ୟରେ ତେତେ ଐକ୍ୟତା ବଢ଼ିବ ସନ୍ଦେହ ନାହିଁ । ଅତଏବ କୃତବିଦ୍ୟଲୋକ ମାତ୍ରେ ସଂସ୍କୃତ ପ୍ରଚାର ବିଷୟରେ ଯତ୍ନବାନ ହେଉନ୍ତୁ ।

## ( ୪ର୍ଥ ଭାଗ, ୧୪ । ୮ । ୧୮୬୯, ସଂଖ୍ୟା ୩୩ )

୪୯ ।

### ପ୍ରେରିତପତ୍ର

ଶ୍ରୀଯୁକ୍ତ ଉତ୍କଳ ଦୀପିକା ସମ୍ପାଦକ, ମହାଶୟେଷୁ ।

ଆପଣଙ୍କ ପତ୍ରିକାର ଗତାଙ୍କରେ ଉତ୍କଳ ଭାଷା ଲେଖିବା ବିଷୟରେ କତିପୟ ପ୍ରସ୍ତାବ ପାଠକରି ମହା କୌତୁହଳାକ୍ରାନ୍ତ ହେଲୁଁ । ଯଦ୍ୟପି ଏ ବିଷୟରେ ଆଉ ଅଧିକ ବାଦାନୁବାଦ ଆପଣଙ୍କ ଅଭିପ୍ରାୟରେ ଆବଶ୍ୟକ ନାହିଁ ତଥାପି ଉକ୍ତ ବିଷୟ ସମ୍ବନ୍ଧରେ କେତେଗୁଡ଼ିଏ କଥା ଉତ୍ଥାପିତ କି ଅବା ବିତର୍କିତ ନହେବାରୁ ଆମ୍ଭେ ତାହା ସ୍ୱଳ୍ପ କଥାରେ ବ୍ୟକ୍ତ କଲୁଁ । ଯଦି କାଳେ ସ୍ଥାନ ଦାନ ଦେବା ହେବେ ।

୧ମ । ଆମ୍ଭମାନଙ୍କ ସାଧାରଣ ଜନ୍ମଭୂମି ଏହି ଆର୍ଯ୍ୟାବର୍ତ୍ତରେ ଅର୍ଥାତ୍ ହିମାଳୟଠାରୁ ବିନ୍ଧ୍ୟାଚଳ ପର୍ଯ୍ୟନ୍ତ ଯେତେପ୍ରକାର ଭାଷା ଓ ଅକ୍ଷର ପ୍ରଚଳିତ ଅଛି ତତ୍ସବୁ ଏକ ମୂଳଭାଷା ଓ ବର୍ଣ୍ଣମାଳାର ଅନ୍ତର୍ଗତ ଅଟନ୍ତି ସୁକ୍ଷାନୁସୁକ୍ଷ୍ମ ଅନୁସନ୍ଧାନରେ ଏହା ସ୍ଥିର ସିଦ୍ଧାନ୍ତ ହୋଇଅଛି କି ଆର୍ଯ୍ୟଭୂମିର ଭିନ୍ନ ୨ ପ୍ରଦେଶବାସୀ ଜନସମାଜ ଏକ ମୂଳ ଆର୍ଯ୍ୟଜାତିର ଉତ୍ପନ୍ନ । ଅଧୁନା ଇଉରୋପୀୟ ବିଦ୍ୟା ଓ ବିଜ୍ଞାନ ପ୍ରାଦୁର୍ଭୂତ ହେବାରୁ ସ୍ୱଦେଶହିତୈଷୀ ହୃଦୟରେ ଏହି ଇଚ୍ଛା ବଳବତୀ ହୋଇଅଛି କି ଭାରତବର୍ଷୀୟ ଭିନ୍ନ ୨ ଦେଶ ଲୋକମାନଙ୍କ ଭାଷା ଅକ୍ଷର ଧର୍ମ ପ୍ରଭୃତି ବିଷୟରେ ଐକ୍ୟ ସଂସ୍ଥାପିତ ହେଲେ ଅତିଶୟ ସୁଖର ବିଷୟ ହେବ । ବାସ୍ତବିକ ଏ ସମୁଦାୟ ବିଷୟରେ ଐକ୍ୟ ସଂସ୍ଥାପିତ ନହେଲେ ଆମ୍ଭମାନଙ୍କ ଏହି ସାଧାରଣ ଜନ୍ମଭୂମିର ପୁନର୍ବାର ସ୍ୱାଧୀନତା ପ୍ରାପ୍ତିର କୌଣସି ସମ୍ଭାବନା ନାହିଁ । ଅଦ୍ୟାବଧି ଯେ କିଛି ଐକ୍ୟ ସ୍ଥାପନ ହୋଇଅଛି ତାହା କେବଳ ଇଉରୋପୀୟ ବିଦ୍ୟାର ଫଳ ମାତ୍ର ଅର୍ଥାତ୍ କି ଉତ୍ତର ପଶ୍ଚିମ ପ୍ରଦେଶରେ କି ବୋମ୍ବାଇରେ କି ବଙ୍ଗଳାରେ କି ଓଡ଼ିଶାରେ ଯେ ସବୁ ଯୁବା ପୁରୁଷ ଇଂରାଜୀ ବିଦ୍ୟାରେ କୃତବିଦ୍ୟ ହୋଇଅଛନ୍ତି ସେମାନଙ୍କର ଭାଷା ଅକ୍ଷର ଏବଂ ଧର୍ମ ପ୍ରଭୃତି ଏକପ୍ରକାର ହେବାରୁ ସେମାନଙ୍କ ମଧ୍ୟରେ ଐକ୍ୟ ବାକ୍ୟ

ସଂସ୍ଥାପିତ ହୋଇଅଛି କିନ୍ତୁ ଇଂରାଜୀ ଭାଷା ଓ ଅପର ଆମ୍ଭମାନଙ୍କର ସ୍ୱଦେଶ ଜାତ ନୁହେ ସୁତରାଂ ସ୍ୱଦେଶ ହିତୈଷୀ ବ୍ୟକ୍ତିମାନଙ୍କର ଅନ୍ତଃକରଣରେ ଏପରି ଆକାଙ୍କ୍ଷା ଉଦୟ ହୋଇପାରେ କି ସ୍ୱଦେଶ ଜାତ ଯେ ବଙ୍ଗୀୟ ଭାଷା ଏବଂ ଅକ୍ଷର ସର୍ବତ୍ର ପ୍ରଚଳିତ ହେଲେ ସବିଶେଷ ଉପକାର ହୋଇପାରେ ।

୨ୟ । ସୂକ୍ଷ୍ମରୂପେ ଦେଖିଲେ ଏ ଆକାଙ୍କ୍ଷା ଅତି ପ୍ରଶଂସାସ୍ପଦ କିନ୍ତୁ ଏହା କାର୍ଯ୍ୟାର୍ଥ ହେବା ପକ୍ଷରେ ବହୁତର ବ୍ୟାଘାତ ଅଛି ଏମନ୍ତ କି ସମ୍ଭାବନାର ଅତୀତ କାର୍ଯ୍ୟ ବୋଲି ବୋଧ ହୁଏ । ଅଦ୍ୟାପି ଭିନ୍ନ ୨ ପ୍ରଦେଶସ୍ଥ ମନୁଷ୍ୟ ମଣ୍ଡଳୀ ମଧ୍ୟରେ ବୈବାହିକ ସମ୍ବନ୍ଧ ପ୍ରଚଳିତ ନ ହେଲେ ଉକ୍ତ ମାନସ ସିଦ୍ଧ ହୋଇ ନପାରେ । ଯେ ସ୍ଥଳରେ ଏକ ପ୍ରଦେଶର ଯାଇ ଅନ୍ୟ ପ୍ରଦେଶରେ ବାସ କଲେ ଜାତି ଭ୍ରଂଶ ହୁଏ ସେ ସ୍ଥଳରେ ଏ ଆଶା ଫଳବତୀ ହେବା ବଳାତ୍ ପ୍ରତ୍ୟାଶା ମାତ୍ର । କାନ୍ୟକୁବ୍ଜର ବଙ୍ଗଳା ଦେଶରେ ବ୍ରାହ୍ମଣ ଏବଂ କାୟସ୍ଥ ଆସି ବାସ କରିବାର ସେମାନଙ୍କ ଜାତି-ପାତ ହୋଇଅଛି ସୁତରାଂ ସେମାନେ ପୂର୍ବଭାଷା ପରିତ୍ୟାଗ କରିଅଛନ୍ତି । ଓଡ଼ିଶା ପ୍ରଦେଶରେ ଯେ ବଙ୍ଗାଳମାନେ ବଂଶ ପରମ୍ପର ପୁରୁଷ ବାସ କରିଅଛନ୍ତି ସେମାନଙ୍କ କିଛି ଅପବାଦ ହୋଇଅଛି ସେମାନଙ୍କ ସଙ୍ଗରେ ବଙ୍ଗଳା ପ୍ରଦେଶସ୍ଥ ପ୍ରାଚୀନ ମତା-ବଲମ୍ବୀ ମନୁଷ୍ୟମାନେ ଆହାର ବ୍ୟବହାର ବିବାହାଦି ପ୍ରଚଳନ କରିବାକୁ ସମ୍ମତ ନୁହନ୍ତି । ଏହିସବୁ ପରିବର୍ତ୍ତନ କାଳ ସାପେକ୍ଷ । ଆର୍ଯ୍ୟାବର୍ତ୍ତରେ ସର୍ବତ୍ର ଜ୍ଞାନବୃଦ୍ଧି ହେଲେ ବିଦ୍ୱେଷ ବୁଦ୍ଧି ଅପସାରିତ ହେବ ଏବଂ ଏକ ଜାତିତ୍ୱ ସ୍ୱୀକାର ପକ୍ଷରେ ବ୍ୟାଘାତ ରହିବନାହିଁ । କୌଣସି ଭବିଷ୍ୟଦ୍ଦର୍ଶୀ କହିଅଛନ୍ତି କି ଉକ୍ତ ହୋଇଅଛି କି ବ୍ୟବ-ହାର ପରିବର୍ତ୍ତନ ଆବଶ୍ୟକ ଯେ ହେବାର ଉଚିତ ନୁହେ ତାହା ସମ୍ପୂର୍ଣ୍ଣ ବା ସର୍ବାଙ୍ଗ-ଶୁଦ୍ଧ ହେବା ଯଦ୍ୟପି ସୁତରାଂ ବର୍ତ୍ତମାନରେ ଉତ୍କଳ ଭାଷା ଲୋପିଲେ କି ଉପକାର ହେବ ବୁଦ୍ଧିର ଅଗମ୍ୟ ।

୩ୟ । ଅନେକେ କହିପାରନ୍ତି କି ବଙ୍ଗଳା ଭାଷା ସବିଶେଷ ଉତ୍କର୍ଷ ଲାଭ କରିଅଛି ମଧ୍ୟ ବଙ୍ଗଳା ଓ ଉତ୍କଳ ଭାଷାରେ କେବଳ ପ୍ରତ୍ୟୟ ଓ ବିଭକ୍ତିର ପ୍ରଭେଦ ମାତ୍ର ସୁତରାଂ ଉତ୍କଳ ଭାଷା ଉଚ୍ଛେଦ କରି ବଙ୍ଗଳା ଭାଷା ଓ ଅକ୍ଷର ପ୍ରଚଳନ କରିବାର କ୍ଷତି କ'ଣ ଅର୍ଥାତ୍ ଯେପରି ସ୍କଟଲଣ୍ଡ ଦେଶରେ ଇଂରାଜୀ ଭାଷା ପ୍ରଚଳିତ ହୋଇଅଛି ସେହିପରି ଉତ୍କଳ ଦେଶରେ ହେବାର ବାଧା କି ? ସେ ମହୋଦୟମାନେ ବିବେଚନା କରନ୍ତି ନାହିଁ ଯେ ସ୍କଟଲଣ୍ଡ ଦେଶର ସହିତ ଇଂଲଣ୍ଡର ଆହାର ବ୍ୟବହାର ବୈବାହିକ ସମ୍ପର୍କ କେବେହେଁ ରହିତ ନଥିଲା ବିଶେଷତଃ ସ୍କଟଲଣ୍ଡ ଦେଶ ଇଙ୍ଗଲଣ୍ଡୀୟ ଭୂପତିର ଅଧିକୃତ ହେବା ପର୍ଯ୍ୟନ୍ତ ସେ ଦେଶରେ ଇଂଲଣ୍ଡୀୟ ଭାଷା ପ୍ରାଦୁର୍ଭାବ ହୁଏ ତଦୁପ

ଉତ୍କଳ ଦେଶ ବଙ୍ଗଳା ଦେଶର ଭୂପତିଙ୍କ ଅଧିକାରରେ ନଥିଲେ ଓ ବଙ୍ଗାଳି ଆଉ ଉତ୍କଳୀୟମାନଙ୍କ ମଧ୍ୟରେ ବୈବାହିକ ସମ୍ବନ୍ଧ ପ୍ରଚଳିତ ନଥିଲେ ଉତ୍କଳ ଦେଶରେ ବଙ୍ଗଳା ଭାଷା କି ଅକ୍ଷର ପ୍ରଚଳନ ହେବାର କୌଣସି ସମ୍ଭାବନା ନାହିଁ । କିନ୍ତୁ ଏ କଳନା ଆକାଶ କୁସୁମବତ୍ କଳନା ମାତ୍ର ।

୪ର୍ଥ । ଉପସଂହାରରେ ଏହି ବକ୍ତବ୍ୟ ଯେ ଭାରତ ଦେଶୀୟ କୃତବିଦ୍ୟ ଯୁବକମାନଙ୍କ ଅନ୍ତଃକରଣରେ ସମସ୍ତ ଏକ ଜାତି ହେବାର ଯେଉଁ ଆଶା ବଦ୍ଧମୂଳ ହୋଇଅଛି ତାହା କାଳକ୍ରମେ ସୁସିଦ୍ଧ ହେବାର ଲକ୍ଷଣ ସବୁ ଯାହା ଦେଖାଯାଉ ଅଛି ଅତଏବ ସେମାନଙ୍କର ହତାଶ ହେବାର କୌଣସି କାରଣ ନାହିଁ ମତ କି ଏକଭାଷା ଓ ଏକ ବର୍ଣ୍ଣମାଳା ପ୍ରଚଳିତ କରିବା କର୍ତ୍ତବ୍ୟ ହୋଇଥାଏ ତେବେ ଆମ୍ଭମାନଙ୍କ ଆଦିଭାଷା ସଂସ୍କୃତ ଓ ଆଦିବର୍ଣ୍ଣମାଳା ଦେବନାଗର ସର୍ବ ଦେଶରେ ପ୍ରଚଳିତ କରିବା ବିଧେୟ । ଅନୁମାନ ହୁଏ ଏହି ଉଦ୍ଦେଶ୍ୟରେ ପ୍ରଚଳିତ ଭାଷା ସମୂହ ପରିବର୍ତ୍ତେ କଲିକତା ମାନ୍ଦ୍ରାଜ ବୋମ୍ବାଇ ରାଜଧାନୀମାନଙ୍କର ବିଶ୍ୱବିଦ୍ୟାଳୟ କର୍ତ୍ତୃକରେ ସଂସ୍କୃତ ଭାଷାରେ ପରୀକ୍ଷା ଦେବାର ବିଧାନ ହୋଇଅଛି । ଏହି ଉତ୍କୃଷ୍ଟ ବିଧାନର ଯେତେ ଉନ୍ନତି ହେବ ସେହି ପରିମାଣରେ ଏକ ଭାଷା ଓ ଏକ ଅକ୍ଷରରେ ସମସ୍ତ ଲିଖନ ପଠନ କଥନାଦି ପ୍ରଚଳିତ ହେବାର ଆଶା ଫଳବତୀ ହୋଇପାରିବ । ଯଦି ଆପଣଙ୍କ ପାଠକ ମହାଶୟ-ମାନଙ୍କ ବିରକ୍ତି ବୋଧ ନହୁଏ ତେବେ ପୁନର୍ବାର ଏ ବିଷୟରେ ଆଉ କିଛି ଲେଖିବାକୁ ଅଭିପ୍ରାୟ ରହିଲା ।

ହୁଗଳି                                        ଶ୍ରୀ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ
୫ । ୮ । ୧୮୬୯

**( ୪ର୍ଥ ଭାଗ, ୨୮ । ୮ । ୧୮୬୯, ସଂଖ୍ୟା ୩୪ )**

୫୦ । ଇଞ୍ଜିନିୟରିଂ ପରୀକ୍ଷା ଫଳ

ଆମ୍ଭେମାନେ ଆନନ୍ଦର ସହିତ ଜଣାଉଅଛୁଁ ଯେ କଲିକତା ବିଶ୍ୱବିଦ୍ୟାଳୟର ସିବିଲ ଇଞ୍ଜିନିୟରିଂ କ୍ଳାସରେ ଏ ବର୍ଷରେ ଉତ୍କଳ ନିବାସୀ ବାବୁ ସୁଦାମ ଚରଣ ପଟ୍ଟନାୟକ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଗୁଣାନୁସାରେ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରଙ୍କ ମଧ୍ୟରେ ଏ ବ୍ୟକ୍ତି ଦ୍ୱିତୀୟ ସ୍ଥାନ ପାଇଅଛନ୍ତି । ଅତଏବ ଭରସା ହୋଇପାରେ ସେ କାଳେ ଏକଜିକ୍ୟୁଟିବ ଇଞ୍ଜିନିୟରର କର୍ମ ପାଇ ପାରନ୍ତି । ଉତ୍କଳର ସୌଭାଗ୍ୟ ବୋଲିବାକୁ ହେବ ଯେ ଏଠାରୁ ଜଣେ ଛାତ୍ର କଲିକତାକୁ ଯାଇ ଏପରି ପରୀକ୍ଷା

ବାନରେ କୃତକାର୍ଯ୍ୟ ହୋଇଅଛନ୍ତି । ଏଥିରେ ଉତ୍କଳୀୟ ଆଉ ଲୋକମାନେ ଉତ୍ସାହିତ ହେଲେ ପରମ ଲଭ । ❊

( ୪ର୍ଥ ଭାଗ, ୧୧ । ୯ । ୧୮୭୯, ସଂଖ୍ୟା ୩୭ )

୬୧ । ଉତ୍କଳ ଇତିହାସ

ଉତ୍କଳ ଦେଶରେ ସଂସ୍ଥାପିତ ବିଦ୍ୟାଳୟମାନଙ୍କ ନିମିତ୍ତ ପାଠ୍ୟପୁସ୍ତକ ମୁଦ୍ରାଙ୍କନ କାରଣ ଢେଙ୍କାନାଳର ମହାରାଜା ଯେଉଁ ଟଙ୍କା ପ୍ରଦାନ କରିଥିଲେ କଟକ ସ୍ଥାନୀୟ ଶିକ୍ଷା ବିଭାଗର କମିଟି ଗତ ମାସ ସଭାରେ ଉକ୍ତ ଟଙ୍କା ମଧ୍ୟରୁ କୌଣସି ଏକଖଣ୍ଡ ଉତ୍କଳ ପୁସ୍ତକ ରଚନା ସକାଶେ ୪୩୦୦ଟଙ୍କା ପର୍ଯ୍ୟନ୍ତ ପୁରସ୍କାର ଦେବାର ବିଧାନ କରି ସେଥିର ବିଶେଷ ନିୟମ ନିର୍ଦ୍ଧାରଣ କରିବାର ଭାର ଏହି କାର୍ଯ୍ୟ ନିମିତ୍ତ ନିଯୁକ୍ତ ହୋଇଥିବା ଶାଖା କମିଟିଙ୍କୁ ଅର୍ପଣ କରିଥିଲେ । ଶାଖା କମିଟି ତଦନୁସାରେ ସ୍ଥିର କରିଅଛନ୍ତି ଯେ ଉତ୍କଳର ଏକଖଣ୍ଡି ଇତିହାସ ରଚନା ସକାଶେ ଉକ୍ତ ପୁରସ୍କାର ଦିଆଯିବ । ଏ ଇତିହାସ କୌଣସି ପୁସ୍ତକ ବିଶେଷର ଅନୁବାଦ ନହୋଇ ଉତ୍କଳ ଦେଶରେ ଥିବା ପୁରାତନ ଗ୍ରନ୍ଥମାନଙ୍କର ଯଥାର୍ଥ ବିବରଣମାନ ସଙ୍କଳନ ହୋଇ ନୂତନ ଗ୍ରନ୍ଥ ହେବ । ଏ ପୁସ୍ତକ ବିଷୟକ ବିସ୍ତାରିତ ନିୟମମାନ ବିଜ୍ଞାପନରୂପେ ଶୀଘ୍ର ପ୍ରକାଶ ହେବ ଓ ତହିଁର ପାଠକମାନେ ସବିଶେଷ ଜାଣି ପାରିବେ । ବର୍ତ୍ତମାନ ଆମ୍ଭେମାନେ ଏତିକି ମାତ୍ର ସମ୍ବାଦ ଦେଇ ଅବଶ୍ୟ କୃତବିଦ୍ୟ ମହାଶୟମାନଙ୍କୁ ଅନୁରୋଧ କରୁଅଛୁଁ ଯେ ଉକ୍ତ ପୁରସ୍କାର ପାଇବା ଆଶାରେ ଏ କାର୍ଯ୍ୟରେ ପ୍ରବୃତ୍ତ ହେଉନ୍ତୁ । ଯଦ୍ୟପି କି କେହି ୨ ସ୍ୱୀକୃତ ପୁରସ୍କାରକୁ ଊଣା ବୋଧ କରିବେ ତାହାଙ୍କୁ ଆମ୍ଭମାନଙ୍କର ବକ୍ତବ୍ୟ ଏହି ଯେ ଉତ୍କଳର ଇତିହାସ ରଚନାରେ ଯେଉଁ ବ୍ୟକ୍ତି କୃତକାର୍ଯ୍ୟ ହେବେ ତାହାଙ୍କର ଏ ପୁସ୍ତକ ବିକ୍ରୟରେ ଏତେ ଲଭ ହେବ ଯେ ପୁରସ୍କାର ଭିନ୍ନ ଏଥିରେ ପରିଶ୍ରମ କଲେ ତାହା ବ୍ୟର୍ଥ ହେବ ନାହିଁ ।

( ୪ଥ ଭାଗ, ୧୮ । ୯ । ୧୮୭୯, ସଂଖ୍ୟା ୩୮ )

୬୨ । ବିଜ୍ଞାପନ

ଟ ୩୦୦ ଙ୍କା ପୁରସ୍କାର

କଟକର ବିଦ୍ୟାଧ୍ୟକ୍ଷୀୟ କମିଟୀ ପ୍ରସ୍ତାବ କରିଅଛନ୍ତି କି ଯେ

---

❊ ବାବୁ ସୁଦାମ ଚରଣ ପଟ୍ଟନାୟକଙ୍କ ସମ୍ବନ୍ଧରେ ସମାଜ ପରିଚ୍ଛେଦର କେହି ୧୮ । ୧୧ । ୭୨ ଓ ୨୨ । ୫ । ୭୭ ତାରିଖର ବିବରଣୀ ମଧ୍ୟ ଦେଖ । Man proposes but God disposes.

ଯେଉଁମାନେ ଉଲ୍ଲିଖିତ ନିୟମାନୁସାରେ ସର୍ବୋତ୍ତମ ଉତ୍କଳ ଭାଷାରେ ଗ୍ରନ୍ଥ କରିବେ ତାହାଙ୍କୁ ପାରିତୋଷିକ ସ୍ୱରୂପେ ଢେଙ୍କାନାଳର ଶ୍ରୀ ମହାରାଜାଙ୍କ ପ୍ରଦତ୍ତ ଟଙ୍କାରୁ ଟ୩୦୦ଙ୍କା ଦିଆଯିବ, ନିୟମ ଏହି ୨ ମଥା ।

୧ । ଉକ୍ତ ଗ୍ରନ୍ଥରେ ଓଡ଼ିଶାର ପ୍ରାଚୀନ ସମୟଠାରୁ ଇଂରାଜୀ-ମାନଙ୍କ ଅଧିକାର ପର୍ଯ୍ୟନ୍ତ ଇତିହାସ ଓ ପ୍ରଧାନ ନଗରମାନଙ୍କର ଉତ୍କୃଷ୍ଟ ହ୍ରାସ ପ୍ରାଚୀନ ବିଷୟ ଇତ୍ୟାଦି ଲେଖାଥିବ ଏବଂ ତାହା ଅସଲ ଦେଶୀୟ ଗ୍ରନ୍ଥ ଓ ଅନ୍ୟାନ୍ୟ ସ୍ଥାନ-ମାନଙ୍କଠାରୁ ସଂଗ୍ରହ କରାଯିବ ।

୨ । ଗ୍ରନ୍ଥକର୍ତ୍ତା ଇଂରେଜ କିଂବା ଦେଶୀୟ ଲୋକ ହୋଇ ପାରିବେ କିନ୍ତୁ ସେ ଉତ୍କଳ ଦେଶ ଓ ତଦନ୍ତର୍ଗତ ଗଡ଼ଜାତ ସମ୍ବଲପୁର ଓ ଗଞ୍ଜାମ ପ୍ରଦେଶର ନିବାସୀ ହେବାର ଆବଶ୍ୟକ ।

୩ । ହସ୍ତଲିଖିତ ଗ୍ରନ୍ଥର ପରିମାଣ ନିକୃଷ୍ଟପକ୍ଷରେ ଫୁଲସ୍କେପ ଆକାରରେ ପୃ ୪୦୦ଷ୍ଟା ହେବ ଓ ଗ୍ରନ୍ଥର ଭାବ ଓ ଭାଷା ଶୁଦ୍ଧଥିବ ଏବଂ ତହିଁରେ କୌଣସି ଧର୍ମର ସମ୍ପର୍କ ନଥିବ ଓ ଯାହା ବିଦ୍ୟାଳୟମାନଙ୍କରେ ବ୍ୟବହାର ହେବାପକ୍ଷରେ କୌଣସି ବାଧା ନହେବ ।

୪ । ସବାପେକ୍ଷା ଯାହାଙ୍କର ଗ୍ରନ୍ଥ ପସନ୍ଦ କରାଯିବ ତାଙ୍କର ବାଞ୍ଛା ହେଲେ ସେ ନିଜ ବ୍ୟୟରେ ତାହା ଛପା କରାଇବେ ତାହାହେଲେ କମେଟୀ ୨୦୦ଖଣ୍ଡ ପୁସ୍ତକ ନେଇ ସେଥିର ପ୍ରକୃତ ବ୍ୟୟ ତ୍ରିଅଂଶର ଦ୍ୱିଅଂଶ ଦେବେ କିନ୍ତୁ ଯଦି କମେଟୀ ଆପଣା ବ୍ୟୟରେ ଛପା କରନ୍ତି ତେବେ ବିନା ମୂଲ୍ୟରେ ଗ୍ରନ୍ଥ କର୍ତ୍ତାଙ୍କୁ ଖ୫୦ଖଣ୍ଡ ଦେବେ ।

୫ । ୧୮୭୦ ସାଲ ଜୁଲାଇ ମାସ ତା ୧ରିଖରେ କିଂବା ତତ୍-ପୂର୍ବେ କଟକର ବିଦ୍ୟାଧ୍ୟପନାୟ କମିଟୀର ସେକ୍ରେଟେରୀଙ୍କ ନିକଟରେ ଗ୍ରନ୍ଥକର୍ତ୍ତାମାନେ ଆପଣା ୨ ଲିଖିତ ଗ୍ରନ୍ଥ ଦାଖଲ କରିବେ ।

୬ । ଯେଉଁ ଗ୍ରନ୍ଥ ପାରିତୋଷିକ ଯୋଗ୍ୟବୋଲି ପସନ୍ଦ କରାଯିବ ତାହା କମେଟୀର ସ୍ୱୀୟ ବିବେଚନାନୁସାରେ ଛପା ହେବାର ପୂର୍ବେ ସଂଶୋଧନ କରିବାର କ୍ଷମତା ଥିବ ।

ଏ ବିଷୟର ଅନ୍ୟ କୌଣସି ବେଉରା ଜାଣିବାର ଆବଶ୍ୟକ ହେଲେ କମିଟୀର ସେକ୍ରେଟେରୀଙ୍କଠାରେ ତତ୍ତ୍ୱକଲେ ବାଞ୍ଛା ସିଦ୍ଧ ହେବ ।

କଟକ
୧୮୬୮ ସାଲ
ସେପ୍ଟେମ୍ବର ତା ୭

ଡବଲିଉ, ସି, ଲେସି
ସବ କମିଟୀର ମେମ୍ବର ।

## ( ୪ର୍ଥ ଭାଗ, ୨୬ । ୯ । ୧୮୭୯, ସଂଖ୍ୟା ୩୯ )

୫୩ । ଓଡ଼ିଶାରେ ବଙ୍ଗଳା ଭାଷା ଶିକ୍ଷା

ଗତ ଭାଦ୍ରମାସ ତା ୧୭ ରିଖର ଇଣ୍ଡିୟାନ ମିରର ନାମକ ଇଂରାଜୀ ସମାଦପତ୍ରରେ ଉତ୍କଳର ଶିକ୍ଷା ପ୍ରଣାଳୀ ବିଷୟକ ଗୋଟିଏ ପ୍ରବନ୍ଧ ପ୍ରକାଶ ହୋଇଅଛି । ସମ୍ପାଦକ ବୋଲନ୍ତି ଯେ ଯଦ୍ୟପି କି ଅଦ୍ୟାପି ବଙ୍ଗାଳି ଓ ଓଡ଼ିଆ ମଧ୍ୟରେ ପରସ୍ପର ବିବାହ କରିବାର ରୀତି ପ୍ରଚଳ ହୋଇନାହିଁ ତଥାଚ ଉତ୍କଳ ଓ ବଙ୍ଗଦେଶୀ ଲୋକ ମଧ୍ୟରେ ଏମନ୍ତ ନୈକଟ୍ୟ ସମ୍ବନ୍ଧ ଅଛି ଯେ ଅନ୍ୟ କୌଣସି ତୁଲ୍ୟଦେଶ କି ପ୍ରଦେଶର ଲୋକ ମଧ୍ୟରେ ସେରୂପ ସୁହୃଦତା ନାହିଁ । ଅତଏବ ଓଡ଼ିଶାବାସିମାନେ ଯେ ବଙ୍ଗଭାଷା ଶିକ୍ଷା କରିବାକୁ ଚେଷ୍ଟିତ ହେବେ ଏଥିରେ ଚିତ୍ର କି ଅଛି । ଓଡ଼ିଆମାନେ କାହିଁକି ବଙ୍ଗଳା ଶିଖିବାକୁ ଆଗ୍ରହ ହୁଅନ୍ତି ସମ୍ପାଦକ ସେଥିର ଏହି କାରଣମାନ ଦେଇଅଛନ୍ତି ଯଥା— ବଙ୍ଗଳା ଭାଷାରେ ଉତ୍କୃଷ୍ଟ ପୁସ୍ତକମାନ ଅଛି ଓ ଏ ଭାଷା ସହଜରେ ଶିକ୍ଷା ହୋଇପାରେ । ଉତ୍କଳୀୟମାନେ ଜାଣନ୍ତି ଯେ ଏ ଭାଷା ଯାହାଙ୍କର ଅଟଇ ସେମାନେ ବିଦ୍ୟା ଓ ସଭ୍ୟତାରେ ଅଧିକ ଉନ୍ନତ ଲାଭ କରିଅଛନ୍ତି ସେମାନେ ଆହୁରି ଜାଣନ୍ତି ଯେ ବଙ୍ଗଭାଷା ଭାରତ ରାଜ୍ୟଖଣ୍ଡ ଓ ଅନେକ ଜାତି ଲୋକ ମଧ୍ୟରେ ବ୍ୟବହୃତ ହୁଅଇ ଏବଂ ତାହାର ଗଠନ ସୁନ୍ଦର ସ୍ୱର ସୁଶ୍ରାବ୍ୟ ଉଚ୍ଚାରଣ କରିବା ସହଜ ଓ ତାଙ୍କ ମାତୃଭାଷାଠାରୁ ଉତ୍କୃଷ୍ଟ ଅଟଇ । ଏହି ସମସ୍ତ ଜାଣି ଓ ବଙ୍ଗାଳୀଙ୍କଠାରୁ ଅନେକ ପ୍ରକାର ସହାୟତା ପ୍ରତ୍ୟାଶା କରି ଉତ୍କଳୀୟମାନେ ଆପଣା ପୁତ୍ରଙ୍କୁ ବଙ୍ଗଭାଷାରେ ଶିକ୍ଷା ଦେଉଅଛନ୍ତି । ସମ୍ପ୍ରତି ଗବର୍ଣ୍ଣମେଣ୍ଟ ବଙ୍ଗଳା ଉଠାଇ ଦେଇ ଓଡ଼ିଆଭାଷା ବିଦ୍ୟାଳୟରେ ଚଳାଇବାର ଚେଷ୍ଟା କାହିଁକି କରୁଅଛନ୍ତି ସମ୍ପାଦକ ବୁଝିପାରୁ ନାହାନ୍ତି କିନ୍ତୁ ସେ ଏତିକି ଜାଣନ୍ତି ଯେ ଓଡ଼ିଆମାନେ ଏଥିରେ ଭାରି ଅସନ୍ତୁଷ୍ଟ ଅଛନ୍ତି ଏବଂ ତାହା ନିବାରଣ ନିମିତ୍ତ ଗବର୍ଣ୍ଣମେଣ୍ଟଙ୍କୁ ପ୍ରଦାନ କରିବା କାରଣ ଏକଖଣ୍ଡ ଦରଖାସ୍ତ କଲିକତାକୁ କୌଣସି ବନ୍ଧୁ ନିକଟକୁ ପଠାଇ ଅଛନ୍ତି ।

ଆମ୍ଭେମାନେ ଉପର୍ଯ୍ୟୁକ୍ତ କଥାମାନ ପାଠକରି ଅତ୍ୟନ୍ତ ଦୁଃଖିତ ଓ ଚମତ୍କୃତ ହୋଇଁ । ଇଣ୍ଡିୟାନ ମିରରର ସମ୍ପାଦକଙ୍କୁ କାର୍ଯ୍ୟ ଉତ୍ତମରୂପେ ନିର୍ବାହ ହେଉଥିବାର ଆମ୍ଭମାନଙ୍କର ବିଶ୍ୱାସ ଥିଲା ବିଶେଷତଃ ଏ ପତ୍ରିକା ବ୍ରାହ୍ମ-ସମାଜର ମୁଖ ହେବାରୁ ଆମ୍ଭେମାନେ ମନେ କରୁଥିଲୁଁ ସମ୍ପାଦକ ସତ୍ୟାନୁସନ୍ଧାନ ପୂର୍ବରେ ସମ୍ପାଦକ ନିର୍ବାହ କରନ୍ତି କିନ୍ତୁ ଏବେ ଜଣାଯାଉଅଛି ଯେ ତାହାଙ୍କ ଅଜ୍ଞାତ ବିଷୟରେ ସେ ଯାହା ଶୁଣନ୍ତି ଅତି ଅସାବଧାନ ପୂର୍ବକ ସରଳ ହୃଦୟରେ

ତାହାକୁ ସତ୍ୟ ଜ୍ଞାନକରି ସର୍ବସାଧାରଣଙ୍କୁ କିଛିମାତ୍ର ମଣନ୍ତୁ କରନ୍ତିନାହିଁ । ତାହା ନହେଲେ କି ସେ ଉଦ୍ଧୃତ କଥାମାନ ଲେଖିଥାନ୍ତେ । ଆମ୍ଭେମାନେ ନିଶ୍ଚୟ ବୋଧ କରଅଛୁଁ ଯେ ଉମାଚରଣ ବାବୁଙ୍କ ସମ୍ପ୍ରଦାୟର କୌଣସି ବଙ୍ଗୀୟ ଲୋକଙ୍କ ପ୍ରବର୍ତ୍ତିନାରେ ସମ୍ପାଦକ ଏବମ୍ପ୍ରକାର ମିଥ୍ୟା ଓ ଅଯୌକ୍ତିକ କଥା ଲେଖିବାକୁ ସାହସ କରଅଛନ୍ତି । ସେ କୋଉଁଲଠି ଯେ ଓଡ଼ିଶା ସଙ୍ଗରେ ବଙ୍ଗଳାର ଅତି ନୈକଟ୍ୟ ସମ୍ବନ୍ଧ ସ୍ଥାପିତ ହୋଇଅଛି କିନ୍ତୁ ଦୁଃଖର ବିଷୟ ତଥାପି ସେ ଉତ୍କଳର କୌଣସି କଥା ଜାଣନ୍ତି ନାହିଁ ଅଥଚ ତାହାଙ୍କ ପର ସମ୍ପାଦକମାନେ ସୁଦ୍ଧା ତାହାଙ୍କ ମତରେ ଗୁରୁଭାବରେ ଭୁଲ ଯେବେ ନଜାଣିଲି ତେବେ ଆଉ କାହାର ଜାଣିବାର ସମ୍ଭବ ହେବ । ସମ୍ପାଦକ ଯେବେ କିଛିମାତ୍ର ଉତ୍କଳର ବିଷୟ ଜାଣିବାକୁ ମନ କରିଥାନ୍ତେ ତେବେ ଓଡ଼ିଶାରେ ଏହି ବଙ୍ଗଳାଭାଷା ଓ ଅକ୍ଷର ଚଳାଇବା ବିଷୟ ଯେଉଁ ଯେତେ ଯେତେ ବିରୋଧ ଉପସ୍ଥିତ ହୋଇଅଛି ସେ ସମସ୍ତ ଅବଗତ ହୋଇଥାନ୍ତେ । ବଙ୍ଗାଳିମାନେ ସତ୍ୟ କହି ବୁଲୁ-ଅଛନ୍ତି ଯେ ଓଡ଼ିଆମାନେ ତାହାଙ୍କୁ ସୁଆପାନ୍ତି ନାହିଁ ଅଥଚ ବୁଝି ବସିଲେ ଓଡ଼ିଆ ବଙ୍ଗାଳିଙ୍କର ଯେ କିଛି ମନାନ୍ତର କେବଳ ଏହି ଭାଷା ପରିବର୍ତ୍ତନ ବିଷୟରେ ଅଟଇ । ବଙ୍ଗାଳିମାନେ ଏ ପ୍ରଦେଶକୁ ଆଜିକାଲି ଆସିନାହାନ୍ତି ମାତ୍ର ପୂର୍ବେ ବଙ୍ଗାଳିମାନେ ଏ ପ୍ରଦେଶର ଭାଷା କିମ୍ବା ଲୋକ ପ୍ରତି ଘୃଣା ନକରିବାରୁ ଅତି ସମ୍ମାନିତ ହୋଇଥିଲେ ବର୍ତ୍ତମାନ ବଙ୍ଗାଳିମାନେ ଓଡ଼ିଆ ଭାଷା କି ଅକ୍ଷରକୁ ଦେଖିପାରନ୍ତି ନାହାନ୍ତି ବୋଲି ଏତେ ବିରୋଧ । ତଥାପି ଉକ୍ତ ସମ୍ପାଦକ ବୋଲନ୍ତି ଯେ ଉତ୍କଳୀୟ-ମାନେ ଆପଣା ଭାଷାଠାରୁ ବଙ୍ଗଳା ପଢ଼ିବାକୁ ଅଧିକ ଆଗ୍ରହ ଅଛନ୍ତି ଓ ବଙ୍ଗାଳିଙ୍କର ଅଧୀନ ରହିବାକୁ ଲଜ୍ଜାଜନକ ଜ୍ଞାନ କରନ୍ତି । କେଡ଼େ ଭ୍ରମ । ଅଥବା ଲୋକେ ସ୍ୱଭାବତଃ ଏଡ଼େ ପକ୍ଷପାତୀ ଯେ ସ୍ୱଜାତି ବର୍ଗର କଥା ବିଶ୍ୱାସ କରିବାକୁ କେତେବେଳେ କୁଣ୍ଠିତ ନହୁଅନ୍ତି । ବଙ୍ଗାଳିମାନେ ଏଠାରେ ଅନେକ ପ୍ରକାର ଉପଭୋଗ କରି ପଛୁଁ ଓଡ଼ିଆ ଉଠାଇବାକୁ ଅକ୍ଷମ ହେଲେ ଏବେ ଏଠାରେ ଆଉ କିଛି ଚେଷ୍ଟା ନକରି ଦେଶ ଲୋକଙ୍କ ଆଶ୍ରୟ ନେଇ ଅଛନ୍ତି । ପୁଣି ସାହାସ ଏତେ ଯେ ଖଣ୍ଡେ ଦରଖାସ୍ତ ମଧ୍ୟ ଏଠାରୁ ପ୍ରାପ୍ତ କରିଅଛନ୍ତି । ଏ ଦରଖାସ୍ତ କେଉଁଠାରୁ କିଏ ପଠାଇଲା ଆମ୍ଭମାନଙ୍କୁ ଜଣାନାହିଁ ଓ ଜାଣିବାର ଅବା ସମ୍ଭାବନା ନାହିଁ କାରଣ ଏ ସମସ୍ତ ଲୁଚି ଚୋରି ବ୍ୟାପାର ଏକା କର୍ମଯାଧନ କରିବାର କଥା । ଓଡ଼ିଆଙ୍କର ତେତେ ବୁଦ୍ଧିବଳ କାହିଁ ଏମନ୍ତ ସୁନ୍ଦର କୌଶଳରେ କାର୍ଯ୍ୟ ସାଧନ କରିବେ ଏ କେବଳ ବଡ଼ ବୁଧିଆଙ୍କର କାର୍ଯ୍ୟ ଅଟଇ । ସେ ଯାହାହେଉ ଆମ୍ଭେମାନେ ଇଣ୍ଡିୟାନ ମିରରର ସମ୍ପାଦକ ଓ ତାହାଙ୍କର ସମ୍ବାଦଦାତାଙ୍କୁ ଅନୁରୋଧ କରଅଛୁଁ ଯେ ଓଡ଼ିଆମାନେ ବଙ୍ଗଳା ଶିକ୍ଷାପ୍ରତି କେଡ଼େ ଅଶ୍ରଦ୍ଧା ଓ ବଙ୍ଗଳା ଭାଷା ଅପେକ୍ଷା

ବିଦ୍ୟାଳୟରେ ପ୍ରଚଳ ଥିବାରୁ ଶିକ୍ଷାକାର୍ଯ୍ୟର ଯେତେ ବ୍ୟାଘାତ ହୋଇଅଛି ଯେବେ ଏ ସମସ୍ତ ସେମାନଙ୍କର ଜାଣିବାର ଇଚ୍ଛା ଥାଏ ଓ ଯେବେ ଉତ୍କଳ ପ୍ରତି ସେମାନେ ଯଥାର୍ଥରେ ମନୋଯୋଗୀ ଅଛନ୍ତି ତେବେ ଏ ବିଷୟରେ ଅବିଡ୍ୟ ସାଧାରଣ ମାନେ ଗବର୍ଣ୍ଣମେଣ୍ଟଙ୍କୁ ଯେଉଁ ଆବେଦନ ପତ୍ର ପାଇଅଛି ଓ କଟକର କଲେକ୍ଟର ଓ କମିଶ୍ନର ସାହେବ ଯେ ସମସ୍ତ କଥା ଲେଖି ଅଛନ୍ତି ଅରେ ସେ ସମସ୍ତ ପାଠକରନ୍ତୁ ବର୍ତ୍ତମାନ ଉକ୍ତ କାଗଜମାନ ଶିକ୍ଷାବିଭାଗର ଡାଇରେକ୍ଟରଙ୍କ କଚେରୀରେ ଅଛି ସେଠାକୁ ଗଲେ ଅବଶ୍ୟ ଦେଖିପାରିବେ । ଏ ସମସ୍ତର ମର୍ମ ଅବଗତ ହୋଇ ଆପଣା ୨ ମନ୍ତବ୍ୟ ଲେଖିଲେ ଉତ୍ତମ ହେବ । ହଠାତ୍ ଲୋକଙ୍କୁ ଭ୍ରମରେ ପକାଇବା ଉଚିତ କର୍ମ ନୁହଇ ।

## ( ୪ର୍ଥ ଭାଗ, ୯ । ୧୦ । ୧୮୬୯, ସଂଖ୍ୟା ୪୧ )

୫୪ । ସାପ୍ତାହିକ ସମ୍ବାଦ

ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ ଡେପୋଟୀ ଇନସ୍ପେକ୍ଟର ନିଯୁକ୍ତି ।

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦ ସହିତ ଅବଗତ ହେଲୁଁ ଦକ୍ଷିଣ ପଶ୍ଚିମ ବିଭାଗର ଇନସ୍ପେକ୍ଟର ସାହେବ ବାବୁ ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କୁ ପୂର୍ବ ବିଭାଗର ଗୁରୁ ଟ୍ରେନିଂ ସ୍କୁଲ ସମ୍ବନ୍ଧରେ ଡେପୋଟୀ ଇନସ୍ପେକ୍ଟର ନିଯୁକ୍ତ କରି ଡାଇରେକ୍ଟରଙ୍କ ସମ୍ମତି କାରଣ ପଠାଇ ଅଛନ୍ତି । ଭରସା ହୁଅଇ ଏ ପ୍ରସ୍ତାବ ଗ୍ରାହ୍ୟ ହେବ ଓ ଗୋବିନ୍ଦ ଚନ୍ଦ୍ର ବାବୁ ସମ୍ପ୍ରତି ଚତୁର୍ଥ ଶ୍ରେଣୀର ଡେପୁଟୀ ଇନସ୍ପେକ୍ଟର ମାସିକ ୨୦୦ଙ୍କା ବେତନରେ ନିଯୁକ୍ତ ହେବେ । କ୍ରମେ ଉତ୍କଳବାସିଙ୍କ ପ୍ରତି ଗବର୍ଣ୍ଣମେଣ୍ଟଙ୍କ ଦୃଷ୍ଟିପାତ ହେଉଅଛି ଅତି ସୁଖର ବିଷୟ ।

## ( ୪ର୍ଥ ଭାଗ, ୩ । ୧୦ । ୧୮୬୯, ସଂଖ୍ୟା ୪୨ ଅତିରିକ୍ତ )

୫୫ । ପ୍ରେରିତ ପତ୍ର

ଉତ୍କଳ ଦୀପିକା ସମ୍ପାଦକ, ମହାଶୟ

ସମୀପେଷୁ

ଆମ୍ଭର ରଚନା ହୋଇଥିବା ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ସାମ୍ପ୍ରତ ବୁଧ-ଗ୍ରହଙ୍କ ଠାରେ ଏବଂ ଗ୍ରାନ୍ତ ଅତୀତ ଡିସେମ୍ବର ମାସ ତାରିଖ ଗୁରୁବାରେ ସୂର୍ଯ୍ୟ ସମାନ

ପଡ଼ିଲ, ଯାମ୍ୟ ବିକ୍ଷେପ ଅଳ୍ପ ହେବାରୁ ପୁଣି ଚନ୍ଦ୍ରାର୍କରେ ଥିବାରୁ ସେହି ଦିବସ ଘଣ୍ଟା ୧୧ । ୪୦ ମିନିଟରେ ସୂର୍ଯ୍ୟମଣ୍ଡଳର ଅଧୋଭାଗେ ଆଗ୍ନେୟ କୋଣରେ ବୁଧ ମଣ୍ଡଳ ପ୍ରବେଶ ହୋଇ ବିମ୍ବର ୩୨ଭାଗରୁ ଭାଗେ ଆଚ୍ଛାଦିତ କରି ମଧ୍ୟରେ କାଳପ୍ରାନ୍ତ ଦୃଶ୍ୟହୋଇ ଘଣ୍ଟା ୩ । ୨୭ ମିନିଟରେ ନୈଋତ କୋଣରେ ମୁକ୍ତ ହେଲ ଘଣ୍ଟା ୩ । ୩୨ ମିନିଟ ପର୍ଯ୍ୟନ୍ତ ଦେଖାଗଲା । ଏ ଗ୍ରହଯୁତି କି ସିଦ୍ଧାନ୍ତ ଶିରୋମଣି ପ୍ରଭୃତି ଗ୍ରନ୍ଥାନୁସାରେ ସାଧିଲେ ଅତ୍ୟନ୍ତ ପ୍ରଭେଦ ହୁଅନ୍ତା । ଏବେ ନୂତନ କଳ୍ପିତଗ୍ରନ୍ଥରେ ଦୃକ୍‌ସମ୍ବାଦ ମିଳିବାରୁ ମହାନନ୍ଦ ଜାତହେଲା । ଏ ବିଷୟରେ ଯେ ବନାରସ କଲେଜର ପଣ୍ଡିତ ରାମେଶ୍ୱର ଦତ୍ତ, ଉକ୍ତ ଗ୍ରହଣକୁ ମଙ୍ଗଳ ଗ୍ରହଣ ନାମରେ ପ୍ରକାଶ କରିଥିଲେ ଏ ତାହାଙ୍କର ବୁଦ୍ଧିଭ୍ରମ କାରଣ ଏହିପରି ସେଦିନକୁ ସୂର୍ଯ୍ୟଙ୍କଠାରୁ ମଙ୍ଗଳ ତିନିରାଶି ଅନ୍ତରରେ ଥିଲେ । ସମାନ ଅଂଶରେ ଯେବେ ଥାନ୍ତେ ତେବେ ମଧ୍ୟ ଗ୍ରହଣ ସମ୍ଭବ ହୁଅନ୍ତା ନାହିଁ । କେବଳ ବୁଧ ଶୁକ୍ର ଦୁହେଁ ବକ୍ର କାଳରେ ସୂର୍ଯ୍ୟର ଅଧୋଭାଗସ୍ଥ ହୁଅନ୍ତି । ଅନ୍ୟ ତାରା ଗ୍ରହମାନେ କଦାପି ସୂର୍ଯ୍ୟାଧୋଭାଗକୁ ନ ଆସନ୍ତି । ଅତଏବ ଏତାଦୃଶ ଅସମ୍ଭବ ଉକ୍ତି କରିବା ବ୍ୟକ୍ତିଙ୍କ ସୂକ୍ତ ନ ଦେଇ ଆମ୍ଭେ ଶାନ୍ତ ହୋଇ ରହି ନପାରୁଁ । ସେହି ବିଷୟମାନ ସମ୍ବାଦରେ ପ୍ରଚଳିତ ଥିବାର ଜ୍ଞାତ ନ ଥିବାରୁ ପୂର୍ବରୁ ଉଲ୍ଲେଖ କରି ନଥିଲୁଁ ।

ଉତ୍କଳ ଦେଶାନ୍ତର୍ଗତ ଖଣ୍ଡପଡ଼ା ଦୁର୍ଗସ୍ଥ
ଶ୍ରୀ ଚନ୍ଦ୍ରଶେଖର ସିଂହ ସାମନ୍ତ

ବୋଧ ହୁଏ କି ସମ୍ବାଦ ପତ୍ରରେ ଭ୍ରମରେ ବୁଧକୁ ମଙ୍ଗଳ ବୋଲି ଲେଖା ହୋଇଥିବ ।

ଉ: ଦି: ସମ୍ପାଦକ

## ( ୪ର୍ଥ ଭାଗ, ୨୦ । ୧୧ । ୧୮୬୯, ସଂଖ୍ୟା ୪୭ )

୫୬ । ଉତ୍କଳ ଭାଷାଗ୍ରନ୍ଥ ପରୀକ୍ଷା ସଭା ।

ପାଠକମାନେ ଶ୍ରବଣରେ ଆନନ୍ଦିତ ହେବେ ଯେ ବିଦେଶୀୟ ଲୋକେ ଉତ୍କଳ ଭାଷା ଉଠାଇ ଦେବାପାଇଁ ଯେତେ ଚେଷ୍ଟା କଲେ ଆମ୍ଭମାନଙ୍କର ଦୟାବାନ ଗବର୍ଣ୍ଣମେଣ୍ଟ ସେଥିରେ ଆସ୍ଥା ନକରି ଏ ଦେଶର ଭାଷା ଉନ୍ନତି ପକ୍ଷରେ ଯଥେଷ୍ଟ ଉପାୟ କରିବାକୁ ଅନୁକମ୍ପା ପ୍ରକାଶ କରିଅଛନ୍ତି । ପ୍ରାୟ ଏକବର୍ଷରୁ ଉର୍ଦ୍ଧ୍ୱ ହେବ ବିଦ୍ୟାଳୟରେ ପାଠୋପଯୋଗୀ ପୁସ୍ତକ ପରୀକ୍ଷା କାରଣ ଗୋଟିଏ ସ୍ୱତନ୍ତ୍ର ସଭା

କରିବାର ପ୍ରସ୍ତାବ ହୋଇଥିଲା । ସମ୍ପ୍ରତି ଅବଗତ ହେଲୁଁ ଯେ ଶ୍ରୀଯୁକ୍ତ ଲେଫଟେନେଣ୍ଟ ଗବର୍ଣ୍ଣର ସାହେବ ତଳ ଲିଖିତ ବ୍ୟକ୍ତିଙ୍କୁ ଉକ୍ତ ସଭାର ସଭ୍ୟ ପଦରେ ନିଯୁକ୍ତ କରିଅଛନ୍ତି, ଯଥା —

ଶ୍ରୀଯୁକ୍ତ ଡବଲିଉ ସି ଲେସି ସାହେବ—ସଭାପତି
„ ରାଜା ଭାଗୀରଥୀ ମହେନ୍ଦ୍ର ବାହାଦୁର
ବାବୁ ବିଚିତ୍ରାନନ୍ଦ ଦାସ
„ ବନମାଳୀ ସିଂହ
„ ଦ୍ୱାରକାନାଥ ଚଟ୍ଟୋପାଧ୍ୟା
} ସଭ୍ୟ

ଆଉ କି ନିୟମ ସ୍ଥିର ହୋଇଅଛି ଗବର୍ଣ୍ଣମେଣ୍ଟଙ୍କ ଚିଠି ଦେଖିଲେ ଜଣାଯିବ ।

**( ୪ର୍ଥ ଭାଗ, ୨୭ । ୧୧ । ୧୮୭୯, ସଂଖ୍ୟା ୪୭ )**

୫୭ । ଉତ୍କଳ ଦେଶରେ ଶିକ୍ଷା ଦେବାର ବିଧାନ

ଆମ୍ଭେମାନେ ଗତ ସପ୍ତାହରେ ଉତ୍କଳ ପୁସ୍ତକର ପରୀକ୍ଷା କମିଟି ନିଯୁକ୍ତ ହେବାର କଥା ଉଲ୍ଲେଖ କରିଥିଲୁଁ । ସମ୍ପ୍ରତି ଏ ବିଷୟରେ ଗବର୍ଣ୍ଣମେଣ୍ଟ ଯେ ଅଭିପ୍ରାୟମାନ ପ୍ରକାଶ କରିଅଛନ୍ତି ତାହା ଅବଗତ ହୋଇ ସେଥିର ସାରାଂଶ ପାଠକଙ୍କ ଅବଗତ କାରଣ ପ୍ରକାଶ କରୁଅଛୁଁ । ପାଠକମାନେ ସେଥିରୁ ଜାଣିବେ ଯେ ଏତେକାଳ ଓଡ଼ିଆ ଓ ବଙ୍ଗଳା ଭାଷା ନେଇ ଯେତେ ବିରୋଧ ଜାତ ହୋଇଥିଲା ତାହା ସମସ୍ତ ରହିତ ହେଲା । ଯେଉଁମାନେ ବଳେ ପଡ଼ି ଓଡ଼ିଶାର ହିତ କରିବାକୁ ସଦର ମୋଫସଲରେ ଚେଷ୍ଟା କରି କୌଣସି ଉପାୟ ପରିତ୍ୟାଗ କରି ନଥିଲେ ସେମାନଙ୍କର ଶ୍ରମ ସାର୍ଥକ ହେଲା ନାହିଁ ।

ଗବର୍ଣ୍ଣମେଣ୍ଟ ବଙ୍ଗଳା ଏ ବିଷୟରେ ଡାଇରେକ୍ଟରଙ୍କ ନିକଟକୁ ଯେଉଁ ପତ୍ର ଦେଇ ଅଛନ୍ତି ସେଥିରେ ଉତ୍କଳ ଭାଷା ଶିକ୍ଷା ପ୍ରସ୍ତାବ ଆରମ୍ଭ ଠାରୁ ଅଦ୍ୟାବଧି ଯେଉଁ କର୍ମଚାରୀ ଯେ ପ୍ରକାର ମତ ପ୍ରକାଶ କରିଅଛନ୍ତି ତାହା ସମସ୍ତ ବର୍ଣ୍ଣିତ ହୋଇଅଛି । ଏ ଜିଲ୍ଲାର କମିଶନର ଶ୍ରୀଯୁକ୍ତ ରାଭେନଶା ସାହେବ ଗତ ସନ ୧୮୬୯ ମସିହାରେ ଏ ପ୍ରସ୍ତାବର ଅବତାରଣା କରିଅଛନ୍ତି । ତଦୁତ୍ତର ଏ ବିଷୟରେ ଯେଉଁ କର୍ମଚାରୀ ଯେ ମତ ପ୍ରକାଶ କରିଅଛନ୍ତି ତାହା ସମୁଦାୟ ସମୟ ସମୟରେ ଏ ପତ୍ରିକାରେ ପ୍ରକାଶ ହୋଇଥିବାରୁ ବର୍ତ୍ତମାନ ଲେଖିବାର ଆବଶ୍ୟକ ନାହିଁ କେବଳ

ଏତିକି ମାତ୍ର ଜଣାଇବାର ଉଚିତ ଯେ ଏ ଅଞ୍ଚଳର ବିଦ୍ୟାଳୟ ସମୂହର ଇନସ୍ପେକ୍ଟର ଓ କମିଶନର ଏବଂ ଅନ୍ୟାନ୍ୟ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଏକମତ ହୋଇ ଅନ୍ୟାନ୍ୟ ବିଦ୍ୟାଳୟ ସମୂହରେ ଉତ୍କଳ ଭାଷାରେ ଶିକ୍ଷା ଦେବାର ବିଧାନ କରିବାକୁ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କଲେ ଓ ଏକା ଶିକ୍ଷା ବିଭାଗର ଡାଇରେକ୍ଟର ସାହେବ ଏଥିର ବିପରୀତ ମତାନୁଗାମୀ ହୋଇ ବଙ୍ଗ ଭାଷାରେ ଶିକ୍ଷା ଦେବାର ଅନୁରୋଧ କରିଥିଲେ । ଏ ମତ ପୋଷକତାରେ ଉକ୍ତ କର୍ମଚାରୀ ଯେଉଁ ଯୁକ୍ତିମାନ ଦର୍ଶାଇ ଅଛନ୍ତି ତାହା ନୂତନ ନୁହଇ ବୋଲି ଲେଖିବାର ପ୍ରୟୋଜନ ନାହିଁ । ଯେଉଁମାନେ ବାବୁ ରାଜେନ୍ଦ୍ର ଲାଲ ମିତ୍ର ଓ ବାବୁ ଉମାଚରଣ ହାଲଦାର ଓ ତାହାଙ୍କ ସମ୍ପ୍ରଦାୟର ଲୋକଙ୍କ ଯୁକ୍ତି ସମସ୍ତଙ୍କୁ ସ୍ମରଣ କରିବେ ସେମାନେ ଅନାୟାସରେ ତାହା ଜାଣି ପାରିବେ । ଏମାନେ ଯେତେ କଥା କହିଥିଲେ ସେ ସମସ୍ତ ଡାଇରେକ୍ଟରଙ୍କ ପତ୍ରରେ ସନ୍ନିବେଶିତ ହୋଇଅଛି । ଆମ୍ଭମାନଙ୍କୁ ଏତିକି ବ୍ୟସ୍ତ ଜଣା ଯାଉଅଛି ଯେ କିଏ କାହାଠାରୁ ଏ ଯୁକ୍ତିମାନ ଶିକ୍ଷା କଲା । ସେ ଯାହାହେଉ ଶ୍ରୀଯୁକ୍ତ ଲେଫ୍ଟେନେଣ୍ଟ ଗବର୍ଣ୍ଣରଙ୍କ ଉକ୍ତ ଯୁକ୍ତିମାନଙ୍କୁ ନିତାନ୍ତ ଦୁର୍ବଲ ଜ୍ଞାନକରି ସ୍କୁଲ ଇନସ୍ପେକ୍ଟର ଶ୍ରୀଯୁକ୍ତ ମାର୍ଟିନ ସାହେବଙ୍କ ଉଲ୍ଲେଖିତ ମତକୁ ଯୁକ୍ତିସିଦ୍ଧ ଜ୍ଞାନକରି ଏହିପରି ବ୍ୟାଖ୍ୟା କରିଅଛନ୍ତି । ଯଥା;

"ପ୍ରଥମ, କଟକ ହାଇସ୍କୁଲ ଓ ଓଡ଼ିଶାର ଅନ୍ୟ ଜିଲ୍ଲାର ସ୍କୁଲରେ ବଙ୍ଗଳା ଅଥବା ଓଡ଼ିଆ ଭାଷା ପାଠ କରିବା ଛାତ୍ରଙ୍କ ସ୍ୱେଚ୍ଛାଧୀନ ରହିବ ଅଥବା ଲେଫ୍ଟେନେଣ୍ଟ ଗବର୍ଣ୍ଣରଙ୍କ ମତରେ ଦୁଇଭାଷା ଶିଖିବାକୁ ହେବ ।

ଦ୍ୱିତୀୟ, ମଧ୍ୟ ଶ୍ରେଣୀର ଇଂରାଜୀ ଓ ଭାଷା ସ୍କୁଲରେ ସକଳ ବିଷୟରେ ଶିକ୍ଷା ଉତ୍କଳ ଭାଷାରେ ଦିଆଯିବ, ଇଂରାଜୀ ଅବଶ୍ୟ ପଢ଼ିବାକୁ ହେବ ଏବଂ ବଙ୍ଗଳା ସ୍ୱେଚ୍ଛାଧୀନ ରହିବ ।

ତୃତୀୟ, ମଧ୍ୟ ଶ୍ରେଣୀର ଉତ୍କଳ ବିଦ୍ୟାଳୟରେ ଯେ ପର୍ଯ୍ୟନ୍ତ ଉତ୍କଳ ଭାଷାରେ ଉତ୍ତମ ସାହିତ୍ୟ ପୁସ୍ତକ ହୋଇନାହିଁ କେବଳ ଭାଷା ଶିଖିବା ପାଇଁ ବଙ୍ଗଳା ପଢ଼ାଯିବ ଏବଂ

ଚତୁର୍ଥ, ନିମ୍ନ ଶ୍ରେଣୀର ଉତ୍କଳ ବିଦ୍ୟାଳୟରେ କେବଳ ଉତ୍କଳ ଭାଷାରେ ଶିକ୍ଷା ଦିଆଯିବ ।

ସମସ୍ତେ ବୋଲନ୍ତି ଯେ ଉତ୍କଳ ଭାଷାରେ ପାଠ୍ୟ ପୁସ୍ତକର ଅଭାବ ହେବାର ଏଥିପାଇଁ ଶିକ୍ଷା ପ୍ରଣାଳୀ ଚଳାଇବା କଷ୍ଟକର ଅଟଇ ଓ ଉତ୍କଳ ଭାଷାରେ ବର୍ତ୍ତମାନ କେଉଁ ପୁସ୍ତକମାନ ଗ୍ରାହ୍ୟ ଯେଥେଷ୍ଟ ରୂପେ ଜଣାହେବା ପର୍ଯ୍ୟନ୍ତ ଲେଫ୍ଟେନେଣ୍ଟ ଗବର୍ଣ୍ଣର କୌଣସି ନିଶ୍ଚୟ ନିୟମ କରିବାକୁ ଅସମର୍ଥ ହେଲେ । ସାଧାରଣ ରୂପେ

ତାହାଙ୍କର ମତ ଏହିପରି ଜିଲା ସ୍କୁଲର ତଳ ସମସ୍ତ ବିଦ୍ୟାଳୟରେ ଉତ୍କଳ ଭାଷାରେ ଶିକ୍ଷା ପ୍ରଦାନ ହେବ ଏବଂ ଜିଲା ସ୍କୁଲ ଓ ହାଇସ୍କୁଲରେ ଛାତ୍ରମାନେ ଇଚ୍ଛା କଲେ ବଙ୍ଗଳା ଶିକ୍ଷା କରିପାରିବେ ।"

ବର୍ତ୍ତମାନ ଅବସ୍ଥା ଦୃଷ୍ଟିରେ ଗବର୍ଣ୍ଣମେଣ୍ଟଙ୍କର ଏହି ଅଭିପ୍ରାୟ ଶୀଘ୍ର କାର୍ଯ୍ୟରେ ପରିଣତ କରିବାପାଇଁ ଡାଇରେକ୍ଟର ସାହେବ ଆଦେଶ ପାଇଅଛନ୍ତି ।

ଉତ୍କଳ ପୁସ୍ତକର ଅଭାବ କି ପାଠ୍ୟ କମିଟି ଉପରେ ଲକ୍ଷିତ ପ୍ରଣାଳୀ ଶୀଘ୍ର ପ୍ରଚଳିତ ହୋଇ ପାରୁନାହିଁ ତହିଁ ବିଷୟରେ ଗବର୍ଣ୍ଣମେଣ୍ଟ ଡାଇରେକ୍ଟର ସାହେବଙ୍କୁ ସ୍ମରଣ କରାଇ ଦେଇଅଛନ୍ତି ଯେ ଉତ୍କଳଭାଷାରେ ଅନୁବାଦିତ ଅଥବା ନୂତନ ଗ୍ରନ୍ଥର ଦୋଷ ଗୁଣ ବିଚାର କାରଣ ସ୍କୁଲବୁକ ସୋସାଇଟୀକୁ ସାହାଯ୍ୟ କରିବା କାରଣ ଗୋଟିଏ ସଭା ନିଯୁକ୍ତ ହୋଇଅଛି । ଗତ ସପ୍ତାହରେ ଉକ୍ତ ସଭାର ସଭ୍ୟମାନଙ୍କ ନାମ ମୁଦ୍ରାଙ୍କନ ହୋଇଥିଲା । କଲିକତା ସ୍କୁଲବୁକ ସୋସାଇଟୀଙ୍କ ନିକଟକୁ ଯେ ସମସ୍ତ ଉତ୍କଳ ପୁସ୍ତକ ମୁଦ୍ରାଙ୍କନ ନିମିତ୍ତ ପ୍ରେରିତ ହେବ ଏ ସଭା ସେଥିର ଦୋଷଗୁଣ ବିଚାର କରି ଯେ ପ୍ରକାର ମତ ଦେବେ ତଦନୁସାର କାର୍ଯ୍ୟ ହେବ । କିନ୍ତୁ ଆପାତତଃ ଲେଫ୍ଟେନେଣ୍ଟ ଗବର୍ଣ୍ଣରଙ୍କ ଇଚ୍ଛା ଯେ ନୂତନ ଶିକ୍ଷା ପ୍ରଣାଳୀ ଅର୍ଥାତ୍ ଜିଲା ଓ ହାଇସ୍କୁଲ ଭିନ୍ନ ଓଡ଼ିଶାର ସମସ୍ତ ସ୍କୁଲରେ ଉତ୍କଳ ଭାଷାକୁ ଶିକ୍ଷାଦାନର ନିର୍ଦ୍ଦିଷ୍ଟ ଭାଷା ବୋଲି ଚଳାଇବା ଓ ଅନ୍ୟସବୁରେ ତାହା ସ୍ୱେଚ୍ଛାଧୀନ ରଖିବା ନିୟମ ସମ୍ପର୍କରେ ସକଳ କଥାର ବିଚାର କରି ମତ ପ୍ରଦାନ କରିବେ । ଏମାନଙ୍କ ମତ ଜାଣିଲେ ଗବର୍ଣ୍ଣମେଣ୍ଟଙ୍କ ଏ ବିଷୟରେ ନିଶ୍ଚିତ ନିୟମମାନ ପ୍ରଚଳିତ ହେବ ଅତଏବ ଦେଖାଯାଏ ଯେ ଏ ପ୍ରଣାଳୀ ଚଳିବା ପକ୍ଷରେ ଯେ କିଛି ବିଳମ୍ବ ତାହା ଏହି ସଭା ହାତରେ ରହିଅଛି ସୁତରାଂ ଆମ୍ଭେମାନେ ସଭ୍ୟମାନଙ୍କୁ ଅନୁରୋଧ କରୁଅଛୁଁ ଯେ ଏମନ୍ତ ଶୁଭକାର୍ଯ୍ୟରେ [illegible] ସେମାନେ ବିଳମ୍ବ ନକରି ଗବର୍ଣ୍ଣମେଣ୍ଟ ଅଭିପ୍ରାୟାନୁଯାୟୀ ସୁପ୍ରଣାଳୀ ସ୍ଥିର କରନ୍ତୁ ।

ଆମ୍ଭେମାନେ ଏ ସମସ୍ତ କଥା ଅବଗତ ହୋଇ କେଡ଼େ ଆନନ୍ଦିତ ହୋଇଅଛୁଁ ବର୍ଣ୍ଣନା କରିବାକୁ ଅସମର୍ଥ । ଏହି ଉତ୍କଳ ଓ ବଙ୍ଗଭାଷା ବିଷୟରେ ଆମ୍ଭମାନଙ୍କୁ କି ପର୍ଯ୍ୟନ୍ତ କ୍ଲେଶ ସହିବାକୁ ହୋଇଅଛି ତାହା କାହାରିକୁ ଅବିଦିତ ନାହିଁ । ନିନ୍ଦା ଓ ବ୍ୟଙ୍ଗୋକ୍ତି ଛଡ଼ା ଦେବାକୁ ପର୍ଯ୍ୟନ୍ତ ଚେଷ୍ଟା ହୋଇଥିଲା । କିନ୍ତୁ ପରିଶେଷରେ ଆମ୍ଭମାନଙ୍କର ଆଶା ପୂର୍ଣ୍ଣ ହେଲା ଏମନ୍ତ କହିଲେ ଆମ୍ଭେମାନେ ପୁନଃ ୨ ଯେ ପ୍ରସ୍ତାବମାନ କରିଥିଲୁଁ ତାହା ଗବର୍ଣ୍ଣମେଣ୍ଟଙ୍କ ପ୍ରକାଶ ହେଲା । ଆମ୍ଭମାନଙ୍କର ହିତାକାଙ୍କ୍ଷୀ କମିଶନର ଶ୍ରୀଯୁକ୍ତ ରେଭେନଶା ସାହେବ ଏ ବିଷୟରେ ଯେ ପର୍ଯ୍ୟନ୍ତ

ଉତ୍କଳର ହିତସାଧନରେ କୃତକାର୍ଯ୍ୟ ହେଲେ ତହିଁର ଉପଯୁକ୍ତ ଧନ୍ୟବାଦ କାହାଯେ ବାକ୍ୟ କହିବୁଁ ସ୍ଥିର କରିବାକୁ ଅସମର୍ଥ ହେଉଅଛୁଁ । ଏ ତାହାଙ୍କର କୀର୍ତ୍ତିସ୍ତମ୍ଭ ସ୍ଥାପ୍ୟ ନହେଲା ସନ୍ଦେହ ନାହିଁ । ପରିଶେଷରେ ବକ୍ତବ୍ୟ ଏହିଯେ ଅନ୍ୟନ୍ୟ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଗବର୍ଣ୍ଣମେଣ୍ଟକୁ ଉତ୍କଳ ଭାଷାରେ ଶିକ୍ଷାଦାନ ବିଷୟରେ ଯେଉଁ ଦରଖାସ୍ତ କରିଥିଲେ ଶ୍ରୀଯୁକ୍ତ ଲେଫ୍ଟେନେଣ୍ଟ ଗବର୍ଣ୍ଣର ସାହେବ ତାହାକୁ ଯୁକ୍ତିଯୁକ୍ତ ଜ୍ଞାନକରି ସେଥିର ପ୍ରଶଂସା କରିଅଛନ୍ତି । ଏଥିରେ ଉତ୍କଳୀୟମାନେ ବୁଝନ୍ତୁ ଯେ ଆମ୍ଭମାନଙ୍କର ଗବର୍ଣ୍ଣମେଣ୍ଟ ସତ୍ ପରାମର୍ଶ ଗ୍ରହଣ କରିବାକୁ କଦାକାଳରେ କୁଣ୍ଠିତ ନୁହନ୍ତି ଓ ଏହା ଜାଣି ସେମାନେ ଅନ୍ୟାନ୍ୟ ବିଷୟରେ ସତ୍ ପରାମର୍ଶ ଦେବାକୁ ଉତ୍ସାହିତ ହେଉନ୍ତୁ ।

( ୪ର୍ଥ ଭାଗ, ୧୧ । ୧୨ । ୧୮୭୯, ସଂଖ୍ୟା ୪୮ )

## ୫୮ । ବିଦ୍ୟାଳୟରେ ଅବକାଶ ଦେବାର ନିୟମ ।

ଗତ ବୁଧବାରଠାରୁ ଏ ନଗରସ୍ଥ ଗବର୍ଣ୍ଣମେଣ୍ଟ ଇଂରାଜୀ ଓ ନରମାଲ ସ୍କୁଲମାନ ଯଥାକ୍ରମେ ଦୁଇମାସ ଓ ଦେଢ଼ମାସ ନିମନ୍ତେ ବନ୍ଦହେଲା । ଏଥି-ମଧ୍ୟରେ ଛାତ୍ରମାନେ ଅଧ୍ୟୟନ କରିପାରିବେ ନାହିଁ ଓ ଦୁଇମାସକାଳ ପାଠ ବନ୍ଦ ହେଲେ ସେମାନଙ୍କର କି ଅବସ୍ଥା ହେବ ତାହା ସହଜରେ ଅନୁଭବ ହୋଇପାରେ । ଏଥିରୁ ଏତେ ଦୀର୍ଘକାଳ ଛୁଟି ଦେବାର ପ୍ରୟୋଜନ କି ବିଚାର କରିବାର ଆବଶ୍ୟକ ।

× × ×

## ( ୫ମ ଭାଗ, ୮ । ୧ । ୧୮୭୦, ସଂଖ୍ୟା ୨ )

୫୯ । ଓଡ଼ିଶା ଇଂରାଜୀ ବିଦ୍ୟାଳୟମାନଙ୍କ ପରୀକ୍ଷା ଫଳ

ଗତ ସପ୍ତାହର ଗଜେଟରେ ବଙ୍ଗ ପ୍ରଦେଶର ଫାଷ୍ଟ ଆର୍ଟସ ଓ ପ୍ରବେଶିକା ପରୀକ୍ଷାର ଫଳ ପ୍ରକାଶ ହୋଇଅଛି । ଓଡ଼ିଶାର ଯେଉଁମାନେ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି ତାହାଙ୍କ ନାମ ତଳେ ପ୍ରକାଶ ହେଲା । ପାଠକମାନେ ଏହା ଦେଖି ଅତ୍ୟନ୍ତ ଆନନ୍ଦିତ ହେବେ ସନ୍ଦେହନାହିଁ । ଏବର୍ଷ ପରୀକ୍ଷାର ଫଳ ଯେପ୍ରକାର ହୋଇ- ଅଛି ଏମନ୍ତ ପ୍ରାୟ କେବେ ହୋଇନାହିଁ । ଗତବର୍ଷ ପରୀକ୍ଷାର ଫଳ ଦୃଷ୍ଟିରେ ବାଲେଶ୍ୱର ସର୍ବଶ୍ରେଷ୍ଠ ହୋଇଥିଲା କିନ୍ତୁ ଏବର୍ଷ ଫଳ ପ୍ରତ୍ୟେକ ଜିଲ୍ଲାର ଅବସ୍ଥାନୁରୂପ ହୋଇ- ଅଛି । ଉତ୍କଳରେ କଟକ ଜିଲ୍ଲା ସର୍ବ ପ୍ରଧାନ ବାଲେଶ୍ୱର ଦ୍ୱିତୀୟ ଓ ପୁରୀ ତୃତୀୟ ହେଉଅଛି ଓ ପରୀକ୍ଷା ଫଳରେ ମଧ୍ୟ ଏହି ନିୟମ ରକ୍ଷା ହୋଇଅଛି । ପରୀକ୍ଷା ଦେବାକୁ ଯେତେ ବାଳକ ଉପସ୍ଥିତ ହୋଇଥିଲେ କୌଣସି ଜିଲ୍ଲାରେ ସେଥିର ତୃତୀୟାଂଶ ସୁଦ୍ଧା ବିଫଳ ହୋଇନାହାନ୍ତି । ଏଫଳ ଅତି ଆନନ୍ଦଜନକ ଅଟଇ ଓ ଏଥିରେ ଶିକ୍ଷକ ଓ ଛାତ୍ର ଉଭୟଙ୍କର ଯଥେଷ୍ଟ ପ୍ରଶଂସା ହେଉଅଛି ସନ୍ଦେହ ନାହିଁ । କଟକ ସ୍କୁଲରେ ଗତ ଦୁଇବର୍ଷଠାରୁ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରଙ୍କର ସଂଖ୍ୟା ବିବେଚନାରେ ଆମ୍ଭେମାନେ ବାବୁ ଚଣ୍ଡୀ ଚରଣ ବାନୁର୍ଯ୍ୟାଙ୍କର ପ୍ରଶଂସା ନକରି କ୍ଷାନ୍ତ ରହି ନପାରୁଁ । ହାଇସ୍କୁଲର ପ୍ରଥମ ଆର୍ଟସ ପରୀକ୍ଷାରେ ପାଞ୍ଚଜଣ ମଧ୍ୟରୁ ଏକଜଣ ମାତ୍ର ସେ ପୁଣି ତୃତୀୟ ବର୍ଗରେ ଉତ୍ତୀର୍ଣ୍ଣ ହୋଇଅଛି ବୋଲି ଯଦ୍ୟପି କି ଏ ଫଳକୁ ସାଧାରଣ ଉତ୍ତମ ଜ୍ଞାନ ନକରନ୍ତୁ ସେଥିପାଇଁ ଆମ୍ଭେମାନେ କହୁଅଛୁଁ ଯେ ହାଇସ୍କୁଲର ଉଚ୍ଚଶ୍ରେଣୀର ଶିକ୍ଷାର ଫଳ ଏହି ପ୍ରଥମ ଥର ଜଣା ଯାଉଅଛି । ଏଥିରେ ଯେ ଏକଜଣ କୃତକାର୍ଯ୍ୟ ହେଲେ ଏହିମାତ୍ର ଯଥେଷ୍ଟ । ଆମ୍ଭେମାନେ ଭରସାକରୁଁ ଯେ ଶିକ୍ଷକମାନେ ଏଥିରେ ଉତ୍ସାହିତ ହୋଇ ଆଗାମୀ ବର୍ଷ ଉତ୍ତମ ଫଳ ଦେଖାଇବେ । କଟକରେ ହାଇସ୍କୁଲ ସ୍ଥାପନ କରି ଗବର୍ଣ୍ଣମେଣ୍ଟ କେଡ଼େ ମଙ୍ଗଳକର କାର୍ଯ୍ୟ କରିଅଛନ୍ତି ଏହି ପରୀକ୍ଷା ଫଳରୁ ତାହା ପ୍ରକାଶ ହେଉଅଛି ଓ ଆମ୍ଭମାନଙ୍କର ଆଶା ହେଉଅଛି ଯେ ଆଗାମୀ ବର୍ଷକୁ ଏଠାରେ କଲେଜ ସ୍ଥାପନ କରିବାର ଆବଶ୍ୟକତା ପ୍ରତୀୟମାନହେବ । ଫାଷ୍ଟ ଆର୍ଟସ ପରୀକ୍ଷାରେ ଦୁଇ ତିନିଜଣ ମାତ୍ର ଉତ୍ତୀର୍ଣ୍ଣ ହେଲେ ଗବର୍ଣ୍ଣମେଣ୍ଟ ତାହାଙ୍କ ଅଧ୍ୟୟନର ଉପାୟ ନକରି ସେମାନଙ୍କୁ ଘରପାଠୁଆ କରି ରଖିଲେ ଉଚିତ କାର୍ଯ୍ୟ ହେବନାହିଁ । ଏ ପରୀକ୍ଷାର ଆଉ ଗୋଟିଏ ସନ୍ତୋଷଜନକ ଫଳ ଏହି ଯେ ପ୍ରବେଶିକା ପରୀକ୍ଷାର ସକଳ ଶ୍ରେଣୀରେ ଉତ୍କଳ ଦେଶୀୟ ଛାତ୍ରମାନେ ସ୍ଥାନ ପାଇଅଛନ୍ତି । ଏଥିରେ ବିଦେଶୀୟ- ମାନେ ପ୍ରମାଣ ପାଇବେ ଉତ୍କଳୀୟମାନେ ମାନସିକ ବୃତ୍ତିରେ ନିକୃଷ୍ଟ ନୁହନ୍ତି ।

କେବଳ ଆମ୍ଭେମାନେ ପୁନଃପୁନ ଯେଉଁ କାରଣ ନିର୍ଦ୍ଦେଶ କରୁଅଛୁଁ ସେମାନଙ୍କୁ ଉଚିତ ପ୍ରକାର ସୁଯୋଗ ଦିଆଯାଉ ନାହିଁ ଯେହି କାରଣରୁ ସେମାନେ ବଙ୍ଗଦେଶୀୟ-ଙ୍କର ସମସର ହୋଉନାହାନ୍ତି ।

ଉପସଂହାର କାଳରେ ଆମ୍ଭମାନଙ୍କର କର୍ତ୍ତବ୍ୟ ଏହି ଯେ ଏଠାର ସ୍କୁଲର ପ୍ରଧାନ ଶିକ୍ଷକ ପୂର୍ଣ୍ଣ ବେତନ ପାଉ ନାହାନ୍ତି ଓ ଆମ୍ଭମାନଙ୍କର ସ୍ମରଣ ହେଉଅଛି ପ୍ରଥମ ଆର୍ଟସ ପରୀକ୍ଷାରେ କେହି ଛାତ୍ର ଉତ୍ତୀର୍ଣ୍ଣ ହେଲେ ପୂର୍ଣ୍ଣ ବେତନ ତାହାଙ୍କୁ ଦେବାର କଥା ଥିଲି । ସମ୍ପ୍ରତି ସେ ନିୟମ ସଫଳ ହୋଇଅଛି ଅତଏବ ଆମ୍ଭେମାନେ ପ୍ରାର୍ଥନା କରୁଅଛୁଁ ଯେ ପ୍ରଧାନ ଶିକ୍ଷକଙ୍କୁ ପୂର୍ଣ୍ଣ ବେତନ ଦେବାପକ୍ଷରେ ଆଉ ଶିକ୍ଷା ବିଭାଗର କର୍ତ୍ତୃପକ୍ଷମାନେ ସଙ୍କୋଚିତ ହେବେନାହିଁ ।

ଫାଷ୍ଟ ଆର୍ଟସ ପରୀକ୍ଷୋତ୍ତୀର୍ଣ୍ଣମାନଙ୍କ ନାମ

ତୃତୀୟ ଭାଗ

| | |
|---|---|
| ପଦ୍ମମଣି ଘୋଷ | କଟକ ହାଇସ୍କୁଲ |

ପ୍ରବେଶିକା ପରୀକ୍ଷୋତ୍ତୀର୍ଣ୍ଣମାନଙ୍କ ନାମ

ପ୍ରଥମ ବିଭାଗ

| | |
|---|---|
| ଭଗବତୀ ଚରଣ ମୁଖୁର୍ଯ୍ୟା | କଟକ |
| ହରିଚରଣ ମୁଖୁର୍ଯ୍ୟା | ,, |
| ବଳରାମ ଦାସ | ,, |

ଦ୍ୱିତୀୟ ବିଭାଗ

| | |
|---|---|
| ଶୀତଳଚନ୍ଦ୍ର ଘୋଷ | କଟକ |
| ଶ୍ୟାମାଚରଣ ଘୋଷ | ,, |
| ବନମାଳୀ ମହାପାତ୍ର | ,, |
| ଚତୁର୍ଭୁଜ ପଟ୍ଟନାୟକ | ,, |
| କାଳୀଦାସ ମୁଖୁର୍ଯ୍ୟା | ବାଲେଶ୍ୱର |
| ମଧୁସୂଦନ ରାୟ | ପୁରୀ |

ତୃତୀୟ ବିଭାଗ

| | |
|---|---|
| ଯେ ଏସ ରାଉତ | କଟକ |
| ରାଜ କୁମାର ସେନ | ,, |

ରାଧାକୃଷ୍ଣ ଚୌଧୁରୀ ବାଲେଶ୍ୱର
ଶମ୍ଭୁନାଥ ପ୍ରଧାନ „
ହରିବଲ୍ଲଭ ବସୁ „

---

## ( ୫ମ ଭାଗ, ୨୨।୧।୧୮୭୦, ସଂଖ୍ୟା ୪ )

### ୭୦ । ଉତ୍କଳ ଭାଷାରେ ଶିକ୍ଷାଦାନର ଆବଶ୍ୟକତା

ଆମ୍ଭେମାନେ ଅଦ୍ୟ ଯେଉଁ ପ୍ରେରିତପତ୍ର ଖଣ୍ଡ ପ୍ରକାଶ କଲୁଁ ସେଥିରୁ ପାଠକମାନେ ବୁଝିପାରିବେ ଯେ ଉତ୍କଳର ବିଦ୍ୟାଳୟମାନଙ୍କରେ ବଙ୍ଗଳା ଶିକ୍ଷା ଦିଆଯାଇ ଥିବାରୁ କେତେ ବ୍ୟାଘାତ ହୋଇଅଛି । ଗବର୍ଣ୍ଣମେଣ୍ଟ ଏତଦ୍ଦିନେ ଯେଉଁ ନିୟମ କଲେ ତାହା ଉତ୍ତମ ହେଲା ସନ୍ଦେହ ନାହିଁ କିନ୍ତୁ ସେ ଆଜ୍ଞାଦ୍ୱାରା ଲେଖକଙ୍କ ଦୁଃଖ ନିବାରଣ ହେଉନାହିଁ ବାସ୍ତବରେ ଗବର୍ଣ୍ଣମେଣ୍ଟ ଆଜ୍ଞାଟି ସମ୍ପୂର୍ଣ୍ଣ ଅକାର୍ଯ୍ୟକର ହୋଇଅଛି । ଗବର୍ଣ୍ଣମେଣ୍ଟ ସବୁପ୍ରକାର ବିଦ୍ୟାଳୟରୁ ବଙ୍ଗଳା ଉଠାଇଦେଇ ସମ୍ପ୍ରତି କେବଳ ମଧ୍ୟମ ଶ୍ରେଣୀର ଉତ୍କଳ ବିଦ୍ୟାଳୟରେ ତାହା ପଠନ ହେବାର ଆଜ୍ଞା ଦେଇଅଛନ୍ତି ଏଥିରୁ ଏ ଦେଶର ସମସ୍ତ ଭାଷାବିଦ୍ୟାଳୟ ପ୍ରାୟ ମଧ୍ୟମ ଶ୍ରେଣୀର ଅଟଇ ଓ ଏହି ସମସ୍ତ ବିଦ୍ୟାଳୟରେ ଛାତ୍ରବୃତ୍ତିର ପରୀକ୍ଷା ଦେବାକୁ ଛାତ୍ର ପ୍ରସ୍ତୁତ ହୁଅନ୍ତି ସୁତରାଂ ଗବର୍ଣ୍ଣମେଣ୍ଟ ଆଜ୍ଞାରେ ଏମାନଙ୍କର ଫଳ ହେଉନାହିଁ କିନ୍ତୁ କାହିଁକି ଯେ ଏ ସମସ୍ତ ବିଦ୍ୟାଳୟରେ ବଙ୍ଗଳା ପଢ଼ିବାର ଆବଶ୍ୟକତା ରହିଲା ବୁଝିବାର ବହୁତ କଠିନ ଗବର୍ଣ୍ଣମେଣ୍ଟ ବୋଲନ୍ତି ଯେ ଉତ୍କଳ ଭାଷାରେ ଉତ୍ତମ ପୁସ୍ତକ ସୁଲଭ ହେବା ପର୍ଯ୍ୟନ୍ତ ବଙ୍ଗଳାଭାଷାରେ ଶିକ୍ଷା ଦିଆ ଯାଉଥିବ ଓ ଶିକ୍ଷାବିଭାଗର କର୍ମଚାରୀମାନେ ତଦନୁସାରେ

ବଙ୍ଗଳା ଗୃହପାଠ ପାଠ୍ୟ ପୁସ୍ତକବୋଲି ଧାର୍ଯ୍ୟ କରିଅଛନ୍ତି ଏଥିରୁ ଯେସ୍ଥଳେ ଶିକ୍ଷା ପୁସ୍ତକ ଉତ୍କଳରେ ଅନୁବାଦିତ ହୋଇ ବିକ୍ରୟ ହେଉଅଛି ସେସ୍ଥଳେ ବଙ୍ଗଳାଭାଷା ପୁସ୍ତକ ରଖିବାରେ ବିଶେଷ କି ଲଭ ହେଲା ? ଉତ୍କଳ ଗୃହପାଠ ପଢ଼ାଇବାରେ କି ଅନିଷ୍ଟହେବ ଆମ୍ଭେମାନେ ସ୍ଥିର କରିବାକୁ ଅକ୍ଷମ ହେଉଅଛୁଁ । ବାସ୍ତବରେ କିଛି ହିତ ନାହିଁ ଓ ଏତକରେ ବଙ୍ଗଳା ରହିଅଛି ବୋଲି ଅନେକ ଅହିତର ସମ୍ଭାବନା ଦେଖାଯାଏ । ଅତଏବ ଆମ୍ଭେମାନେ ପତ୍ରପ୍ରେରକଙ୍କ ମତର ଅନୁମୋଦନ କରି ଶିକ୍ଷା-ବିଭାଗର କର୍ତ୍ତୃପକ୍ଷଙ୍କୁ ଅନୁରୋଧ କରୁଅଛୁଁ ଯେ ବଙ୍ଗଳା ପରିବର୍ତ୍ତେ ଉତ୍କଳ ଗୃହ-ପାଠ ପଢ଼ାଇବାର ବିଧାନ କରନ୍ତୁ ତାହାହେଲେ ଅବଶ୍ୟ ଛାତ୍ରମାନଙ୍କର ପଢ଼ିବାର ଅନେକ ସୁଯୋଗ ହେବ ।

## ( ୫ମ ଭାଗ, ୨୨।୧।୧୮୭୦, ସଂଖ୍ୟା ୪ )

୬୧ । ଶ୍ରୀଯୁତ ଉତ୍କଳ ଦୀପିକା ସମ୍ପାଦକ ମହାଶୟ—ସମୀପେଷୁ

ଏତେ କହି ୨ ଉତ୍କଳ ଦେଶର ଦୁଃଖ ନ ଗଲା । ବାଳକମାନଙ୍କର ଦୁଃଖ ସବୁଠାରୁ ଅଧିକ, ସେମାନେ ଦୁଇ ନାବରେ ଗୋଡ଼ଦେଇ ମଲେ, ଆପଣ ଅନୁଭବ କରିଥା ହୋଇ ଥିବେ ଯେ ମଫସଲରେ ବାଳକମାନେ କେତେକ ସ୍ଥଳରେ ବଙ୍ଗଳାକଥା ଉଚ୍ଚାରଣ କରନ୍ତି, ବିଶେଷରେ ଯେଉଁମାନେ କି ବଙ୍ଗାଳିଙ୍କ ସହିତ ବସାଉଠା କରିନାହାନ୍ତି ତାଙ୍କ ବଙ୍ଗଳା କହିବାର ଅତି ରମଣୀୟ । ନା ହେଲା ଓଡ଼ିଆରେ ସବୁଶିକ୍ଷା ଦିଆଗଲା କିନ୍ତୁ ପ୍ରକୃତ ବୁଝିଲେ ବଙ୍ଗଳା ଭାଷାମାନଙ୍କର ପରି ହେଉଅଛି । ସେମାନଙ୍କର ଅଧିକାଂଶ ସମୟ ଭାଷାଶିକ୍ଷା ଓ ତଦୁଚ୍ଚାରଣରେ ଗଲା ଜ୍ଞାନ ଉପାର୍ଜନକୁ ଅତି ଅଳ୍ପ ରହିଲା । ବାଳକମାନେ ବଙ୍ଗଳାରେ ଅପଟୁ ଥିବାରୁ ଶିକ୍ଷକ-ମାନେ କେତେବେଳେ ୨ ବାଧିତ ହୋଇ ବଙ୍ଗଳାରେ ବୁଝାନ୍ତି କି କଥୋପକଥନ କରନ୍ତି । "କାଲ" ବୋଲି କହିଲେ କେହି କାଲିଆ ବୁଝିଲା କେହି କାଲ କି ବଧିର ବୁଝିଲେ କେହି ଗତକାଲ କି ଆସନ୍ତା କାଲି ବୁଝିଲେ ଓ ଓଡ଼ିଆରେ ଯେ କହନ୍ତି 'ଆଲ ବୋଇଲେ କାଲ' ଶୁଣେ ସେହିତା ହୋଇଅଛି । ମଫସଲ ବିଦ୍ୟାଳୟ ମାନଙ୍କର ଏହିପରି ଦୁରବସ୍ଥା । ଛାତ୍ରବୃତ୍ତି ପରୀକ୍ଷାର ଏହି ଉଦ୍ଦେଶ୍ୟ ଯେ ବାଳକ-ମାନଙ୍କୁ ସେମାନଙ୍କର ଆପଣା ୨ ଭାଷାରେ କିଛିତ୍ ପରିମାଣରେ ଶିକ୍ଷା ଦେଇ ପରେ ତାହାଙ୍କୁ ଇଂରାଜୀ ବିଦ୍ୟାରେ ସମଧିକ ନିପୁଣ କରି ଉତ୍ତମ ୨ ଶାସ୍ତ୍ରାଧ୍ୟୟନ କରାଇବା କିନ୍ତୁ ସେ ଉଦ୍ଦେଶ୍ୟ ବର୍ତ୍ତମାନ ନହୋଇ ଉତ୍କଳ ବାଳକମାନଙ୍କୁ ଭାଷାନ୍ତର ପଣ୍ଡିତ କରିବାର ହେଉଅଛି । ସବୁ ବଙ୍ଗଳାତ ଉଠିଗଲା ବର୍ତ୍ତମାନ ଶିକ୍ଷାର ସମସ୍ତ ଆରମ୍ଭ ମାତ୍ର ଏତେବେଳେ ସେହି ବଙ୍ଗଳା ଗୃହପାଠ ଦ୍ୱିତୀୟ ଭାଗ ବ୍ୟବହାର କରିବାର

କି ପ୍ରୟୋଜନ ? ତତ୍ପରିବର୍ତ୍ତିରେ ତାହାର ତରଜମା ସମ୍ବଲପୁରର ବାବୁ ଚନ୍ଦ୍ରଶେ ଖରାନାୟକଙ୍କ କୃତ ପୁସ୍ତକ ପଢ଼ାଇଲେ ଅତି ଉତ୍ତମ ହୁଅନ୍ତା । ଏଥିରେ ବାଳକମାନେ ବଙ୍ଗଦେଶୀୟ ଭାଷା ଶିକ୍ଷାରେ ଯେତେ ସମୟ ଅପବ୍ୟୟ କରିଅଛନ୍ତି ସେହି ସମୟ ସେମାନେ ଯେବେ ଜ୍ଞାନୋପାର୍ଜନରେ ବ୍ୟୟ କରିବେ ତେବେ ସେମାନଙ୍କର ବାସ୍ତବିକ କେତେ ଉପକାର ହେବ ? ଏହିବର୍ଷ ପରୀକ୍ଷାରେ ଯେଉଁଫଳ ତାହା ଦେଖିଲେ ଜାଣିବ ଯେ ବାଳକମାନେ ଦୁଇଭାଷା ଶିକ୍ଷା କରି କିପରି ଉତ୍ତମ ପରୀକ୍ଷା ଦେଇଅଛନ୍ତି । ଏବର୍ଷ ବଙ୍ଗଳା ଭାଷା ପରୀକ୍ଷା ଇଚ୍ଛାଧୀନ କରିବାରୁ ଆରବର୍ଷ ଦେଖିବ ଯେ ବାଳକମାନେ କିପରି ପରୀକ୍ଷା ଦେବେ ଓ ଫଳ କାଦୃଶ ହେବ । ଅତଏବ ଆମ୍ଭେମାନେ ଭରସାକରୁଁ ଯେ ଇନ୍‌ସ୍ପେକ୍‌ଟର ମହାଶୟ ଏ ବିଷୟରେ କଟାକ୍ଷପାତ କରିବେ ଓ ବାଳକମାନେ ଯେ ଦୁଇ ନାବରେ ଗୋଡ଼ଦେଇ ମଝିରେ ବୁଡ଼ି ମରୁ-ଅଛନ୍ତି ତାହାଙ୍କୁ ରକ୍ଷା କରିବେ ।

ଆମ୍ଭର ଉଦ୍ଦେଶ୍ୟ ଯେ କାହିଁରେ ଉତ୍କଳର ଭଲ ହେଉ । ବଙ୍ଗାଳି-ଙ୍କୁ ଗାପିନ୍ଧାଇଲେ ଆମ୍ଭେ ଲୁଗା ପିନ୍ଧିବାନାହିଁ । ଏ ମତ୍ତରିପରିଶିଷ୍ଟ । ତରଜମା ପଢିବାରେ କିଛି ଦୋଷ ନାହିଁ ଅଥବା ମାନହାନି ନାହିଁ । ବଙ୍ଗାଳିପିଲାଙ୍କ ପଢିଲା ବେଳକୁ ତରଜମା ହୋଇ ଏକାଧ ସଂକଳିତ ହୋଇ ନଥିଲା । ଆମ୍ଭ ଉତ୍କଳପିଲାଙ୍କ ପଢ଼ିଲା-ବେଳକୁ ଯେବେ ସଂକଳିତ ହୋଇଥିବା ବହି ପାଇଲୁଁ ତେବେ କିପାଇଁ ତରଜମା କରି ନ ପଢ଼ିବା କି ? ଉତ୍ତମ କଥା ତରଜମା ବହି ପଢ଼ିବାରେ କୌଣସି ଦୋଷ ନାହିଁ । ମଧ୍ୟ ଏ ପ୍ରତ୍ୟାଶା ଅଛି ଯେ ଅଳ୍ପକାଳରେ ଭଲ ଭଲ ପୁସ୍ତକ ପ୍ରସ୍ତୁତ ହୋଇ ମୁଦ୍ରାଙ୍କନ ହେବ ।

ବାଲେଶ୍ୱର ସମ୍ବାଦ

## ( ୫ମ ଭାଗ, ୫ । ୨ । ୧୮୭୦, ସଂଖ୍ୟା ୭ )

୭୨ । ଉତ୍କଳର ଖଣ୍ଡର ମାଇନର ଓ ବର୍ନାକ୍ୟୁଲର ଛାତ୍ରବୃତ୍ତି ପରୀକ୍ଷାର ଫଳ ।

ଗତ ସପ୍ତାହର ଏଡୁକେଶନ ଗେଜେଟରେ ପ୍ରକାଶିତ ଦକ୍ଷିଣ ପଶ୍ଚିମ ବିଭାଗର ଉକ୍ତ ପରୀକ୍ଷାର ଫଳ ପ୍ରଚାର ହୋଇଅଛି ସେଥିରୁ ଉତ୍କଳ ଖଣ୍ଡର ଫଳ ଉଦ୍ଧୃତ କରି ସାଧାରଣ ଜ୍ଞାପନାର୍ଥେ ପ୍ରକାଶ ହେଲା । × ×

ମାଇନର ଛାତ୍ରବୃତ୍ତିପ୍ରାପ୍ତ ବାଳକଙ୍କ ନାମ

ଦ୍ୱିତୀୟ ବର୍ଗ

ବଂଶୀଧର ମହାପାତ୍ର ଯାଜପୁର ୨ ବର୍ଷ

| | | |
|---|---|---|
| ଗୋଲକ ପ୍ରସାଦ ଦେ | ଭଦ୍ରକ | ଏକକ |
| ନିତ୍ୟାନନ୍ଦ ଘୋଷ | କଟକ | ଉର୍ଦ୍ଧ ସ୍କୁଲ ,, |
| ନୀଳକଣ୍ଠ ପାଲିତ | ,, | ଡିଷ୍ଟ୍ରିକ୍ଟ |
| ଦ୍ୱାରିକାନାଥ ରାୟ | ,, | ,, |
| ମୋହନୀ ମୋହନ ମହାପାତ୍ର ଟାଉନସ୍କୁଲ | ,, | |
| ଜଗନ୍ମୋହନ ଦାସ | ,, | ,, |
| ଚୈତନ୍ୟ ପ୍ରସାଦ ରାୟ | ,, | ,, |
| ରାମ ଯୋଗେନ୍ଦ୍ର ଘୋଷ | ,, | ,, |

ଉର୍ଣ୍ଣାକଉଲର ଛାତ୍ରବୃତ୍ତି ପ୍ରାପ୍ତ ବାଳକଙ୍କ ନାମ

ପ୍ରଥମ ବିଭାଗ

ରାମଶଙ୍କର ରାୟ କଟକ ଗବର୍ଣ୍ଣମେଣ୍ଟ ବିଦ୍ୟାଳୟ ୪ବର୍ଷ

ଦ୍ୱିତୀୟ ବିଭାଗ

| | | |
|---|---|---|
| ଦ୍ୱାରିକା ମୋହନ ଆଗ୍ରୂର୍ଷି | ବିଦ୍ୟାଳୟ | ଏକବର୍ଷ |
| ଗଦାଧର ଘୋଷ | ବାଲେଶ୍ୱର ସେଣ୍ଟଯୋସେଫ ସ୍କୁଲ | ୪ବର୍ଷ |
| ପରଶୁରାମ ଦାସ | ବାଲେଶ୍ୱର ସେଣ୍ଟଯୋସେଫ ସ୍କୁଲ | ୪ ବର୍ଷ |
| ମହେଶଚନ୍ଦ୍ର ଘୋଷ | ,, | ୪ ,, |
| ପଦ୍ମନାଭ ମିଶ୍ର | ପୁରୀ | ୧ ,, |
| ଦାମୋଦର ପଣ୍ଡା | କଟକ ଗବର୍ଣ୍ଣମେଣ୍ଟ ବିଦ୍ୟାଳୟ | ୧ ,, |
| ସିଦ୍ଧେଶ୍ୱର | ,, | ୪ ,, |
| ନୀଳମଣି ଘୋଷ | ,, | ୪ ,, |
| ଦୀନବନ୍ଧୁ ଦାସ | ,, | ୧ ,, |
| କରୁଣାକର ସାହା | ବାଲେଶ୍ୱର ମିଶନ ସ୍କୁଲ | ୪ ,, |
| ସଲମନ ନାୟକ | ,, | ୪ ,, |
| ଗୋଲାମ ବୋତଲ ଖାନ ବାରବାଟୀ ସ୍କୁଲ | | ୧ ,, |
| ଦୁର୍ଗା ଚରଣ ସାହା | ,, | ୪ ,, |
| ଦ୍ୱାରିକା ନାଥ ଦାସ | ,, | ୪ ,, |
| ଜଗନ୍ନାଥ ପଟ୍ଟନାୟକ | ,, | ୪ ,, |

## ତୃତୀୟ ବର୍ଗ

| | | |
|---|---|---|
| ମିୟାଖାନ ଖାନ | ଖୋର୍ଦ୍ଧା | ୧ ବର୍ଷ |
| ଦାମୋଦର ନାୟକ | ଭୁବନେଶ୍ୱର | ୧ ,, |
| ନିତ୍ୟାନନ୍ଦ ଦାସ | ସୋରେ | ୧ ,, |
| ପରଶୁନାଥ ସିଂହ | ଡାଲିକୋଠ | ୧ ,, |
| ବ୍ରଜକୁମାର ସିଂହ | ,, | ୪ ,, |
| ବାମଦେବ ମହାନ୍ତି | ପ୍ରହରାଜପୁର | ୪ ,, |
| ହାରାଧନ ରାୟ | ଭଦଲେ | ୧ ,, |
| ରାମଚନ୍ଦ୍ର ଗୋଛିକାର | ପୁରୀ | ୧ ,, |
| ଶରତଚନ୍ଦ୍ର ମହାନ୍ତି | ପିପିଲି | ୪ ,, |
| ପୂର୍ଣ୍ଣଚନ୍ଦ୍ର ଦତ୍ତ | ବାରବାଟୀ | ଉତ୍ତୀର୍ଣ୍ଣ |
| ଲଲ୍ ଗୋବିନ୍ଦ ପ୍ରସାଦ ରାୟ | ,, | ,, |
| ବୈକୁଣ୍ଠ ନାଥ ଦେ | ,, | ,, |
| ଶିବପ୍ରସାଦ ଦାସ | ବାରବାଟୀ | ଉତ୍ତୀର୍ଣ୍ଣ |
| ମଦନମୋହନ ଦାସ | ବାଲେଶ୍ୱର ମିଶନ ସ୍କୁଲ | ,, |
| ଯୋସଫ ମହାରଣା | ,, | ,, |
| ବାମଦେବ ପ୍ରସାଦ ଦାସ | ,, | ,, |
| ଗୋଲକ ଚନ୍ଦ୍ର ଘୋଷ | ବାଲେଶ୍ୱର ସେଣ୍ଟଯୋସେଫ ସ୍କୁଲ | ,, |
| କାଶୀନାଥ ଆଗୃର୍ଯ୍ୟ | ସୋରେ | ,, |
| ମୁକୁନ୍ଦ ପ୍ରସାଦ ସିଂହ | ଡାରକୋଠ | ,, |
| ଲକ୍ଷ୍ମଣ ଶତପଥି | ,, | ,, |
| ସେକ ମୁକ୍ତାର | କଟକ ଗବର୍ଣ୍ଣମେଣ୍ଟ ବିଦ୍ୟାଳୟ | ,, |
| ବାମଦେବ ମିଶ୍ର | ପୁରୀ ବିଦ୍ୟାଳୟ | ,, |
| କୃଷ୍ଣଚନ୍ଦ୍ର ମହାନ୍ତି | ,, | ,, |

(୫ମ ଭାଗ, ୨୭।୨।୧୮୭୦, ସଂଖ୍ୟା ୯)

## ସାପ୍ତାହିକ ସମ୍ବାଦ

ଶ୍ରୀଯୁକ୍ତ ଡାକ୍ତର ହଣ୍ଟର ସାହେବ ପ୍ରାୟ ଦୁଇ ସପ୍ତାହ ହେବ ଏ ନଗରରେ ପ୍ରବେଶ ହୋଇ ଦେଶର ଅବସ୍ଥା ବିଷୟରେ ନାନାବିଧ ଅନୁସନ୍ଧାନ

କରଅଛନ୍ତି । ବଙ୍ଗାଳ ଗେଜେଟୀୟର ନାମକ ପୁସ୍ତକ ପ୍ରଣୟନ ସକାଶେ ଏସବୁ ସମ୍ବାଦ ଜାଣିବାର ପ୍ରୟୋଜନ ଓ ଏହି କର୍ମହେତୁ ସେ ବର୍ତ୍ତମାନ ଗବର୍ଣ୍ଣମେଣ୍ଟର ନିଯୁକ୍ତ ହୋଇଅଛନ୍ତି ଓଡ଼ିଶାକୁ ଆସି ଆଗେ ପୁରୁଷୋତ୍ତମରେ କିଛିକାଳ ଅବସ୍ଥିତି କରି କଟକକୁ ଆସିଅଛନ୍ତି । ଗଡ଼ଜାତ ରଜାଙ୍କ ସ୍ୱଭାବ ଓ ଗଡ଼ଜାତର ଅବସ୍ଥା ଦେଖିବା କାରଣ ତିଗିରିଆ ଢେଙ୍କାନାଳ ଓ ଆଠଗଡ଼ ଏହି ତିନି ଗଡ଼ଜାତକୁ ଯାଇ ରଜାମାନଙ୍କ ସଙ୍ଗେ ସାକ୍ଷାତକରି ଆସିଅଛନ୍ତି । ବ୍ରାହ୍ମ ଧର୍ମର ପ୍ରାଦୁର୍ଭାବ ଏଠାରେ କେତେଦୂର ସଞ୍ଚିତ ହୋଇଅଛି ତାହା ଜାଣିବା କାରଣ ଗତ ରବିବାର ଉତ୍କଳ ବ୍ରାହ୍ମସମାଜର ଉପାସନା ଦେଖିବାକୁ ଆସିଥିଲେ ସେଦିନ ସମାଜରେ ଅନେକ ଗୁଡ଼ିଏ ସଭ୍ୟ ଥିଲେ ଓ ବାବୁ ରମାନାଥ ସେନ୍ ଚୌଧୁରୀଙ୍କ ବଇଠକ ଖାନାରେ ସମାଜ ହୋଇଥିଲା ସମାଜର କାର୍ଯ୍ୟ ଦେଖି ସାହେବ ଆନନ୍ଦିତ ହେଲେ ଏବଂ ଓଡ଼ିଆ ଭାଷା ବୁଝିପାରିଲେ କି ନାହିଁ କେହି ତାହାଙ୍କୁ ପ୍ରଶ୍ନ କରିବାରେ ସେ ଉତ୍ତର କଲେ ଯେ ସେ ସହଜରେ ବୁଝିପାରିଲେ ଯେହେତୁ ଓଡ଼ିଆ ସଂସ୍କୃତ ସଙ୍ଗେ ବହୁତ ସୌସାଦୃଶ୍ୟ ଅଛି ସାହେବ ବଙ୍ଗଳା ଜାଣନ୍ତି ବଙ୍ଗଳା ସଙ୍ଗେ ମିଶୁଥିବା କାହିଁକି କହିଲେ ନାହିଁ ଆଉ ବ୍ରାହ୍ମଧର୍ମ ପ୍ରଚାର ହେବା ପକ୍ଷରେ କି ପ୍ରତିବନ୍ଧକ ଅଛି ତାହା ବର୍ଣ୍ଣନାକରି ଲେଖିବାକୁ ବାବୁ ଦେବେନ୍ଦ୍ରନାଥ ଠାକୁରଙ୍କୁ ଅନୁରୋଧ କରିଅଛନ୍ତି । ନଗର ମଧ୍ୟରେ ଥାଇଁ ଆଉ ଯେ ସବୁ କଥା ସଂଗ୍ରହ କରିବାର ପ୍ରୟୋଜନ ତାହା ହେଲଠାରୁ ଜଳ ପ୍ରଣାଳୀ କାର୍ଯ୍ୟର ଅବସ୍ଥା ଜାଣିବା ପାଇଁ କେନ୍ଦ୍ରାପଡ଼ା ଓ ବ୍ରାହ୍ମଣୀ ନାଳ ଦେଖି ଯାଜପୁର ବାଟେ ବାଲେଶ୍ୱର ଯାତ୍ରା କରିବେ ।

୬୪ । ସମାଲୋଚନା ।

'ଉଡ଼ିଆ ସ୍ୱତନ୍ତ୍ର ଭାଷା ନୟ' ।

ଏହାଦ୍ୱାରା ଆମ୍ଭେ ଏ ପୁସ୍ତକ ଗ୍ରନ୍ଥକର୍ତ୍ତାଙ୍କ ଠାରୁ ପାଇଥିବାର କୃତଜ୍ଞତା ପୂର୍ବକ ସ୍ୱୀକାର କରୁଅଛୁଁ । ଗ୍ରନ୍ଥକର୍ତ୍ତାଙ୍କ ନାମ ବାବୁ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ବାଲେଶ୍ୱର ବିଦ୍ୟାଳୟର ପଣ୍ଡିତ । ଏହା ବଙ୍ଗଭାଷାରେ ରଚିତ । ଉତ୍କଳ ଓ ବଙ୍ଗଳା ଭାଷାର ଏକତ୍ୱ ପ୍ରମାଣ କରିବା ଏହାର ଉଦ୍ଦେଶ୍ୟ ଅଟଇ ଓ ସେ ଉଦ୍ଦେଶ୍ୟ କି ପର୍ଯ୍ୟନ୍ତ ସଫଳ ହୋଇଅଛି ତାହା କ୍ରମେ ପ୍ରକାଶ ହେବ । ଉତ୍କଳ ଓ ବଙ୍ଗଭାଷା ଭେଦାଭେଦ କେତେ କାଳରୁ ଯେ ବିବାଦ ହୋଇଥିଲା ଏ ପୁସ୍ତକ ତାହାରି ଫଳ ଅଟଇ ଓ ଗ୍ରନ୍ଥକର୍ତ୍ତା କାୟିକ ଶ୍ରମ ଓ ଅର୍ଥବ୍ୟୟ ସ୍ୱୀକାର ପୂର୍ବକ ସ୍ୱଦେଶାନୁରାଗ ଯେମନ୍ତ ପରିଚୟ ଦେଇଅଛନ୍ତି ତାହା ପ୍ରଶଂସା ଯୋଗ୍ୟ ସନ୍ଦେହ ନାହିଁ । କେହି୨ ବୋଲନ୍ତି ଯେ ଓଡ଼ିଆ ବଙ୍ଗଳାର ଭିନ୍ନ ଗବର୍ଣ୍ଣମେଣ୍ଟର ନିଷ୍ପତ୍ତି ହେବାର ଜାଣି ଗ୍ରନ୍ଥକର୍ତ୍ତା କାହିଁକି

ଅନର୍ଥକ କ୍ଲେଶ ଓ ଧନ ବ୍ୟୟରେ ମଗ୍ନହେଲେ ଏଥିରେ ଚକ୍ରବର୍ତ୍ତୀ ମହାଶୟ ଯୋହିଏ ଲକ୍ଷଣ ଅର୍ଥାତ୍ ସ୍ୱଭାବତଃ ବଙ୍ଗାଳି ଯୋଉଁ ପ୍ରବାଦ ଅଛି ତାହା ସାର୍ଥକ କରିଅଛନ୍ତି ।

ଚକ୍ରବର୍ତ୍ତୀ ପୁସ୍ତକର ଆରମ୍ଭରେ ଲେଖନ୍ତି ଯେ ଭାଷା ତତ୍ତ୍ୱବିତ୍ ପଣ୍ଡିତଙ୍କର ମତାନୁସାରେ ଓଡ଼ିଆ ବଙ୍ଗଳା ହିନ୍ଦୀପ୍ରଭୃତି ଦଶଭାଷା ଏକମୂଳର ଉତ୍ପନ୍ନ ଅର୍ଥାତ ଓଡ଼ିଆ ବଙ୍ଗଳା ଇତ୍ୟାଦି କେହି ସ୍ୱତନ୍ତ୍ର ଭାଷା ନୁହଁଇ କିନ୍ତୁ ତଦୁତ୍ତର ଓଡ଼ିଆକୁ ବଙ୍ଗଳାବୋଲି ସିଦ୍ଧାନ୍ତ କରି ଅଛନ୍ତି । ଏଥିରୁ ତାହାଙ୍କର କେଉଁକଥା ସତ୍ୟ ବୁଝିବାର କଠିନ । ବୋଧହୁଅଇ ଭାଷାବିତ୍ ପଣ୍ଡିତଙ୍କ କଥା ମିଥ୍ୟା ହୋଇ ନଥିବ ନଚେତ୍ ଯେଉଁ ଉତ୍କଳଭାଷାର କଥା ଚକ୍ରବର୍ତ୍ତୀ ଲେଖନ୍ତି ତାହାଛଡ଼ା ଆଉକିଛି ସ୍ୱତନ୍ତ୍ର ଓଡ଼ିଆଭାଷା ଥିବ । ସେ ଯାହାହେଉ ଆମ୍ଭେମାନେ ଓଡ଼ିଆ ଭାଷାକୁ କେବେହେଁ ସ୍ୱତନ୍ତ୍ର ଭାଷା ବୋଲୁନାହୁଁ । ଏହାକୁ ସଂସ୍କୃତର ଅଧୀନବୋଲି ଜାଣୁ । ଚକ୍ରବର୍ତ୍ତୀଙ୍କ ମତରେ କି ବଙ୍ଗଳା ସ୍ୱତନ୍ତ୍ର ଭାଷା ସେ ଓଡ଼ିଆ ଯାହାସଙ୍ଗେ କିୟ-ଦଂଶରେ ମିଶିବାରୁ ସେ ସ୍ୱତନ୍ତ୍ର ଭାଷା ହେଉନାହିଁ ? ମାତ୍ର ଦୁଃଖର ବିଷୟ ଯେ ବଙ୍ଗଳା ଭାଷା ସ୍ୱତନ୍ତ୍ର ଥିବା ପକ୍ଷରେ କିଛି ପ୍ରମାଣ ଦେଇ ନାହାନ୍ତି ଓ ଯେବେ ଏକ ଆର୍ଯ୍ୟଜାତିଙ୍କ ସମାଗମରେ ଏକ ସ୍ଥାନରେ ହିନ୍ଦୀ ଓ ଅନ୍ୟ ସ୍ଥାନରେ ବଙ୍ଗଳାଭାଷାର ସୃଜନ ହେଲା ତେବେ ଏକ ସ୍ଥାନରେ ଓଡ଼ିଆଭାଷା ହେବାରେ କି ଅସୁବିଧା ହେଲା ଜଣାପଡ଼ୁ ନାହିଁ । ହିନ୍ଦୋସ୍ଥାନରୁ ଓଡ଼ିଶାକୁ ନେବ ଆସିବାର କି ବଙ୍ଗଳା ଭିନ୍ନ ବାଟ ନଥିଲା । ଯେଉଁଖଣ୍ଡରେ ଚକ୍ରବର୍ତ୍ତୀଙ୍କ ମତରେ ଏକଭାଷା ଅର୍ଥାତ୍ ବଙ୍ଗଳାଭାଷା ହେବାର ଉଚିତ ସେ ଖଣ୍ଡର ଆଦିମନିବାସୀ ଯଥା, ଗୋଣ୍ଡ ସାନ୍ତାଳ କନ୍ଧ ପୁଆଙ୍ଗ ଶବର ଇତ୍ୟାଦିଙ୍କ ଭାଷା ଭିନ୍ନ କାହିଁକି ହେଲା ? ବୋଧହୁଅଇ ଏଥିର ଉତ୍ତର ପାଇଁ ଚକ୍ରବର୍ତ୍ତୀ ହଣ୍ଟରଙ୍କ ସାହାଯ୍ୟ ନେଇ କହିବେ ଯେ ଏ ସମସ୍ତ ଭାଷାର ମୂଳ ଏକ ଅଟଇ ମାତ୍ର ଭାଷା ପୃଥକ ଥିବାର ଅସ୍ୱୀକାର କରି ପାରିବେ ନାହିଁ ।

କେବଳ କେତେକ ସାଦୃଶ୍ୟ ହେତୁରୁ ଯେବେ ଦୁଇ ବା ଅଧିକ ଭାଷାକୁ ଏକ ବୋଲିପାରି ପାରେ ତେବେ କେହି ଓଡ଼ିଆରୁ ହିନ୍ଦୀ ଓ ବଙ୍ଗଳା ବାହାରି ଥିବାର କହିଲେ ଦୋଷ ହେବ ନାହିଁ । ମାତ୍ର ଓଡ଼ିଆମାନେ ତୁଚ୍ଛାକୁ ଏତେ ଅହଙ୍କାର କରନ୍ତି ନାହିଁ ଅଥଚ ବିଚାର କଲେ ଏହାଙ୍କର ଅହଙ୍କାର କରିବାର ଅନେକ କାରଣ ଅଛି । ଓଡ଼ିଶାର କୀର୍ତ୍ତିକଳାପ ବଙ୍ଗଳାରେ ନାହିଁ । ଓଡ଼ିଶାର ରାଜା ଏକ ସମୟରେ ବଙ୍ଗଳାର ତ୍ରିବେଣୀ ପର୍ଯ୍ୟନ୍ତ ଅଧିକାର କରିଥିଲେ । ବଙ୍ଗଳାର କୌଣସି ରାଜା କେବେ ଓଡ଼ିଶାକୁ ଜୟ କରିବାକୁ ଶୁଣାନାହିଁ ଅତଏବ ବଳବୀର୍ଯ୍ୟ ଓ ଶିଳ୍ପ କୌଶଳରେ

ଓଡ଼ିଶାର ପୂର୍ବକାଳୀନ ଲୋକ ବଙ୍ଗଳାର ଶ୍ରେଣୀ ଥିବା ପ୍ରାଦେଶିକ ଭାଷା ନିମିତ୍ତ ଅନ୍ୟ ଠାରେ ଗଣା ହୋଇଥିଲେ କଦାଚ ସମ୍ଭବ ହୁଅଇ ବରଂ ଓଡ଼ିଶାର ଭାଷା କେତେକ ବଙ୍ଗଳାରେ ଚଳିବାର ଅନୁମାନ ସିଦ୍ଧ ଅଟଇ ଓ ଗ୍ରନ୍ଥକର୍ତ୍ତା ମେଦିନୀପୁର ଓଲବାଡ଼ିଆ ପ୍ରଭୃତି ସ୍ଥାନର କେତେକଥା ସଙ୍ଗେ ଓଡ଼ିଆ ଭାଷା ତୁଲ୍ୟ ଥିବାର ଯାହା ଲେଖନ୍ତି ସେଥିରେ ଉକ୍ତ ପ୍ରକାର ଅନୁମାନ ବାସ୍ତବ ହେବାର ଜଣାଯାଏ । ବିଶେଷରେ ଓଡ଼ିଆରେ ଯେତେ ପ୍ରାଚୀନ ଭାଷା ଗ୍ରନ୍ଥ ଅଛି ବଙ୍ଗଳାରେ ତେତେ ନାହିଁ । ମାଗିଆଣିଲେ ଡିଜଣରେ କି କୁଟିଏ ଯୋଗାନ୍ତା । ସେ ଯାହା ହେଉ ଆମ୍ଭେମାନେ ଗ୍ରନ୍ଥକର୍ତ୍ତାଙ୍କ ଭାଷାତତ୍ତ୍ୱ ଜ୍ଞାନରେ ସନ୍ତୁଷ୍ଟ ହେବାର କୌଣସି କାରଣ ଦେଖୁନାହୁଁ । ଆମ୍ଭମାନଙ୍କୁ ବୋଧହୁଅଇ ସେ କେବଳ ଓଡ଼ିଆ ବଙ୍ଗଳାର ସମତା ଉପରେ ନିର୍ଭର କରି ତାହାର ସମର୍ଥନ ନିମିତ୍ତ ଭାଷାତତ୍ତ୍ୱଜ୍ଞଙ୍କର ଦୁହାଇ ଦେଇ-ଅଛନ୍ତି । ଏଥିର ସେ ସମତା ବିଷୟରେ ତାଙ୍କର ମତର ବିଚାର କରିବା ଆବଶ୍ୟକ ।

ଗ୍ରନ୍ଥକର୍ତ୍ତା ଓଡ଼ିଆ ବଙ୍ଗଳାର ସମତା ଦେଖାଇବା ବିଷୟରେ ପ୍ରାକାଶ୍ୟରେ କୌଣସି ଯତ୍ନର ତ୍ରୁଟି କରିନାହାନ୍ତି । ଉତ୍କଳ ସାହିତ୍ୟ ବ୍ୟାକରଣ ଅଭିଧାନ ସମ୍ବାଦପତ୍ର ଗୀତ ଇତ୍ୟାଦି ନାନା ପ୍ରକାର ଓଡ଼ିଆ ରଚନାରୁ କିଛି ୨ ଉଦ୍ଧୃତ କରି ଆପଣା କଥା ସପ୍ରମାଣ କରିଅଛନ୍ତି । ଏ ପୁସ୍ତିକ ସବୁ ବଙ୍ଗାଳିଙ୍କ ମନରେ ଏମନ୍ତ ଦେଖନଅଛି ଯେ ସେମାନେ କୃତାର୍ଥ ହୋଇଅଛନ୍ତି ମାତ୍ର ବାସ୍ତବରେ କେଣ ଉତ୍କଳୀୟଙ୍କୁ ପଚାରିଥିଲେ ଜାଣି ପାରନ୍ତେ । ଗ୍ରନ୍ଥକର୍ତ୍ତା ତେତେ ଶ୍ରମ କରିବାକୁ ସଙ୍କୁଚିତ ହୋଇ ନାହାନ୍ତି ସେ ଦୁଇ ଗୃହରେ । ବାଳେଶ୍ୱରୀ କଥା ଶୁଣି ଆପଣା ବୁଦ୍ଧିକୁ ଧନ୍ୟବାଦ ଦେଇ ଗ୍ରନ୍ଥ ରଚନାରେ ପ୍ରବୃତ୍ତ ହୋଇଥିବାର ଜଣାଯାଏ । କେଡ଼େ ମୂର୍ଖପଣିଆ ! ପୁଣି ତାହାସଙ୍ଗେ ସାହସ ମଧ୍ୟ କେଡ଼େ ସଂସ୍କୃତ ପାରସୀ ଓ ହିନ୍ଦି ଶବ୍ଦମାନଙ୍କୁ ବଙ୍ଗଳା ବୋଲି ଅନାୟାସରେ ପରିଚୟ ଦେଇଅଛନ୍ତି । ଯେବେ କୌଣସି ପାରସୀ କିମ୍ବା ହିନ୍ଦି ଜାଣିଥାନ୍ତେ ତେବେ କେଉଁ ଶବ୍ଦ କେଉଁ ଭାଷାର ଜାତ ବାରିନେଇ ପାରନ୍ତେ ଓ ଯେବେ କିଛି ଓଡ଼ିଆ ଶିଖିଥାନ୍ତେ ତେବେ କେତେ ଗୁଡ଼ାଏ ଭ୍ରମରୁ ଉଦ୍ଧାର ହୋଇଥାନ୍ତେ । ଥରେ ମଫସଲର ଓଡ଼ିଆ ସଙ୍ଗେ କଥା କହିଥିଲେ ଜାଣନ୍ତେ ଯେ ଘଟିବାଟି ଗୃହଗାମୀ ସୁପାରି ସମ୍ଭାର ତରକାରୀ ଆନନ୍ଦ ଘୁନସି ଢେକିଆ ଇତ୍ୟାଦି କେହି ଓଡ଼ିଆ ବୁଝି ପାରିବ ନାହିଁ ଏବଂ ପିଲସୋଜ ଗିଲସ ଅବଖୋରା ସତରଞ୍ଜି ଗାଳିଚା ତକ୍ତପୋଷ ( ଏହାକୁ ଗ୍ରନ୍ଥକାର ତକ୍ତକୋଷ ବୋଲି ଲେଖିଅଛନ୍ତି ) ଓଡ଼ିଆ ଓ ବଙ୍ଗାଳିଙ୍କର ସମାନରୂପ ଅଧିକାର ଅଛି କାରଣ ସେ ସମସ୍ତ ପାରସୀ ଅବା ହିନ୍ଦୀ ଗୋଟିଏ ସୁଦ୍ଧା ବଙ୍ଗଳା ନୁହଇ । ଢ଼ାଲ ସାମସେର ମଥାବନ୍ଧ

କାର୍ଯ୍ୟ ପଢ଼ିବାରୁଣ ଜ୍ଞାନ ଜଣୁଣି ଆକୃତ ତେଲୋଣୀ ଚିନ୍ତା ପରିଷ୍କାରିଆ ପାଏଁ ଲାଇ ଅକୃତ୍ରିମ ବିଶୁଦ୍ଧ ଓଡ଼ିଆ ଶବ୍ଦମାନ ଯେବେ ଅଳେ ତାହାଙ୍କ କର୍ଣ୍ଣପ୍ରବେଶ ହୋଇଥାନ୍ତା ତେବେ ଏତେ ଦଶା ହୁଅନ୍ତା ନାହିଁ କିମ୍ବା ଗୁଡ଼ିଏ ଛୁଟା ବଙ୍ଗଳାକଥା ଶିଖି ଯେବେ ଓଡ଼ିଆ ସଙ୍ଗେ ସେ ସବୁର ସମତା ଦେଖାଇ ଥାଆନ୍ତେ ତେବେ ହେଲେ ତାହାଙ୍କ କଥା କିଛି ଗ୍ରାହ୍ୟ ହୁଅନ୍ତା । ତାହା ନକରି କେବଳ ସଂସ୍କୃତ ଓ ଅନ୍ୟାନ୍ୟ ଭାଷାର ଉଦ୍ଭଟ ଅକଟ୍ଟଗୁଡ଼ିଏ ଏ ଶବ୍ଦ ଲେଖି ପାଠକଙ୍କୁ ଏକ ପ୍ରକାର ପ୍ରତାରଣା କରୁଅଛନ୍ତି ବୋଲିବାକୁ ହେବ ନୋହିଲେ ସେ ଆପେ ପ୍ରତାରିତ ହୋଇଅଛନ୍ତି ଯେହେତୁ କିଛି ଓଡ଼ିଆ ନଜାଣି ସବୁ ଜାଣିବାର ପ୍ରକାଶ କରୁଅଛନ୍ତି । ଓଡ଼ିଆଭାଷା ଯେବେ ସେ କିଛି ମାତ୍ର ଜାଣିଥାନ୍ତେ ତେବେ ନିମ୍ନଲିଖିତ ଗୀତଟିରେ ସୁନ୍ଦର ଅର୍ଥ କି ସୂଚନା କରନ୍ତେ ?

ନଟବର ଶ୍ୟାମସୁନ୍ଦର ।
ଦେଖିଲେ ଲାଗଇ ସୁନ୍ଦର ॥

ଯୁକ୍ତଆଡ଼େ ସୁନ୍ଦର ଲାଗିବାର କି ସୁନ୍ଦର ଭାବହେଲା । ସୁନ୍ଦର ଶବ୍ଦ ଯେ ପାରସୀ ସୁନ୍ଦରର ଅପଭ୍ରଂଶ ଓ ଏଠାରେ ତାହାର ଅର୍ଥ କୌତୁକ ଏତିକି ସୁଦ୍ଧା ଜାଣି ନାହାନ୍ତି ଅଥଚ ଲାଜିବା ଯାଏ ପମ୍ବାଳ ନହୋଇ ସେ ପର ଗ୍ରନ୍ଥକାର ବୋଲି ଦାଣ୍ଡକୁ ବାହାରି ଅଛନ୍ତି । ଏଥିର ବଳକର ଗାଳୁଆ ପଣ ଆଉ ଦେଖା ନାହିଁ । ଗ୍ରନ୍ଥକାର ଯେବେ ପକ୍ଷପାତଶୂନ୍ୟ ହୋଇ ବିଚାର କରିବାକୁ ଚେଷ୍ଟା କରିଥାନ୍ତେ ତେବେ ଜାଣିପାରନ୍ତେ ଯେ ବର୍ତ୍ତମାନ ବଙ୍ଗଳା ଓ ଓଡ଼ିଆରେ ଯେ ପ୍ରଭେଦ ହୋଇଅଛି ତହିଁରେ ଅଧିକ ସଂସ୍କୃତ ଶବ୍ଦ ମିଶ୍ରିତ ହୋଇଥିବାରୁ ଏ ଦୁହିଙ୍କର ବହୁତ ସମତା ଦେଖାଯାଏ ମାତ୍ର ଅବୋଧ ଓଡ଼ିଆ ଓ ବଙ୍ଗାଳି ଦୁହେଁ ଏ ଭାଷା ବୁଝିବାକୁ ଅକ୍ଷମ । ଶିକ୍ଷାଲାଭ ନକଲେ ଏଥିରେ ପ୍ରବେଶ ହୋଇପାରେ ନାହାନ୍ତି । କିନ୍ତୁ କେହି କାହାରି ଦେଶ୍ୟଭାଷାକୁ ସହଜରେ ବୁଝି ପାରନ୍ତି ନାହିଁ । ସୁତରାଂ ଏ ଦୁଇଭାଷାକୁ ପୃଥକ୍ ବୋଲିବାକୁ ହେବ ଓ କାନ୍ତିବାବୁ କେତେ ପୁସ୍ତକ ରଚନା କରନ୍ତୁ ଦୁଇଭାଷା କଦାଚ ଏକ ହୋଇ ନପାରିବ ।

( ୫ମ ଭାଗ, ୨୬ । ୩ । ୧୮୭୦, ସଂଖ୍ୟା ୧୩ )

୭* । ଆମ୍ଭେମାନେ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲୁଁ ଯେ କେତେକ କର୍ତ୍ତା ବଙ୍ଗଳା ଭାଷା ଓ ବଙ୍ଗଳା ଅକ୍ଷରରେ ଛପା ଦଣ୍ଡଶାସ୍ତ୍ର ନଗରର କେତେକ ଜଣ ବଙ୍ଗାଳି ମିଳିଅଛନ୍ତି ବୁଲଇ ଓଡ଼ିଆଙ୍କର ସ୍ୱାର୍ଥର ଗୋଟାଇ ବୁଲୁଅଛନ୍ତି । ଉତ୍କଳ ଭାଷା ଉଠାଇ ଦେଇ ବଙ୍ଗଭାଷା ଏଠାର ବିଦ୍ୟାଳୟ ସମୂହରେ ପ୍ରଚଳିତ କରିବା ପାଇଁ

ଏ ଦରଖାସ୍ତରେ ଗବର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା ହୋଇଅଛି । ବଙ୍ଗାଳିମାନେ ନ୍ୟାୟ ପୃଷ୍ଠରେ ନପାଇ ବୋଧ ହୁଅଇ ଏଥର ଅସୁରଙ୍କ ପର ମାୟା ପ୍ରକାଶ କରିଅଛନ୍ତି କିନ୍ତୁ କୌଣ ଅସୁର ମାୟାକରି ପରିଶେଷରେ ଦେବତାଙ୍କୁ ଜିଣିବାର ଶୁଣାନାହିଁ । ଯାହାହେଉ ଉଡ଼ିଆମାନେ ସାବଧାନ ହେଉନ୍ତୁ ଯେମନ୍ତ ମାୟାରେ ପଡ଼ି "ନାଉଁୟାକରଫ ସହି" ନକରନ୍ତୁ ।

୬୬ ।

ସାପ୍ତାହିକ ସମ୍ବାଦ

ବାବୁ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ପୁସ୍ତକର ଉଲ୍ଲେଖକରି ହିନ୍ଦୁ ହିତୈଷିଣୀ ବୋଲନ୍ତି ଯେ କେତେଗୁଡ଼ିଏ ଓଡ଼ିଆ ଓ କେତେଜଣ ଏଠା ନିବାସି ବଙ୍ଗାଳି ଓଡ଼ିଶାର ସର୍ବସାଧାରଣଙ୍କ ମତର ଏକେଶ୍ୱର ବ୍ୟବସାୟୀ ହେବାର ଦେଖି ସେ ବଡ଼ ଆଶ୍ଚର୍ଯ୍ୟ ହୋଇଅଛନ୍ତି । ଆମ୍ଭେମାନେ ହିତୈଷିଣୀଙ୍କ ଆଶ୍ଚର୍ଯ୍ୟ ହେବାର କାରଣ ନିଶ୍ଚୟ ବୁଝି ପାରୁନାହୁଁ ଅନୁମାନ ହୁଅଇ ଓଡ଼ିଶାର ସର୍ବସାଧାରଣ ମତ ଜାଣିବା ବା ପ୍ରକାଶ କରିବା ଏକା ତାହାଙ୍କର ସତ୍ତ୍ୱାଧିକାର ବୋଲି ମଣି ଅଛନ୍ତି ଓ ତାହାଙ୍କ ଭିନ୍ନ ଆଉ କେହି କୌଣସି ବିଷୟରେ ଆପଣ ଅଭିପ୍ରାୟ ବ୍ୟକ୍ତ କରି ପାରିବ ନାହିଁ । ଏମନ୍ତ ହେଲେ ଯେଉଁମାନେ ଆପଣା ଅଭିପ୍ରାୟ ବ୍ୟକ୍ତ କରିଅଛନ୍ତି ସେମାନେ ଅପରାଧୀ ହୋଇଅଛନ୍ତି ସନ୍ଦେହ ନାହିଁ ।

୬୭ । ଗତ ପ୍ରକାଶିତ ବାଲେଶ୍ୱର ସମ୍ବାଦ ବାହିକାରୁ ଅବଗତ ହେଲୁଁ ଯେ ଉକ୍ତ ଜିଲ୍ଲା ସ୍କୁଲ ସମୂହର ଡେପୁଟି ଇନସ୍ପେକ୍ଟର ବାବୁ ଶିବଦାସ ଭଟ୍ଟାଚାର୍ଯ୍ୟ ଉତ୍କଳ ଭାଷା ଉଚ୍ଛେଦର ଚେଷ୍ଟା କରିବାରୁ ବାଲେଶ୍ୱର ସହରସ୍ଥ ପ୍ରାୟ ସମସ୍ତ ଜମିଦାର ମହାଜନ ସରକାରୀ କର୍ମଚାରୀ ପ୍ରଭୃତି ତାହାଙ୍କ ବଦଳି ପାଇଁ ଇନସ୍ପେକ୍ଟର ସାହେବଙ୍କ ଠାରେ ଦରଖାସ୍ତ କରିଅଛନ୍ତି । ନଗରବାସିମାନେ ସେହି ଆବେଦନ ପତ୍ର ଭିସାରିଡ୍ ସୁଯୋଗ୍ୟ କଲେକ୍ଟର ଜନ ବିମସଙ୍କ ହସ୍ତରେ ଦେଇ ଅନୁରୋଧ କରିବାରୁ ସେ ଆପଣା ମନ୍ତବ୍ୟ ପ୍ରକାଶ ପୂର୍ବକ ଇନସ୍ପେକ୍ଟର ସାହେବଙ୍କ ନିକଟକୁ ପ୍ରେରଣ କରି ଡାଇରେକ୍ଟର ଅଟକିନସନ୍ ସାହେବଙ୍କ ନିକଟକୁ ପଠାଇବା ପାଇଁ ଅନୁରୋଧ କରିଅଛନ୍ତି । ଦେଖା-ଯାଉ କି ଫଳ ହୁଏ । ଧରର ଉକ୍ତି ଯେବେ ଭୂମୀର ହେଲା ତେବେ ତାହାକୁ ଦଣ୍ଡ ଦେବାପାଇଁ ବାଲେଶ୍ୱର ବାସିମାନେ ଯାହା କରିଅଛନ୍ତି ତାହା ଉଚିତ ହୋଇଅଛି ।

( ୫ମ ଭାଗ, ୨।୪।୧୮୭୦, ସଂଖ୍ୟା ୧୪ )

୬୮ । ବାଳକ ମାଧୁରୀ ଓ ଦେଶର ପୁରାତନ କୀର୍ତ୍ତି ।

ଗତମାସ ତା ୨୯ରିଖରେ କଟକ ଡିବେଟିଂ କ୍ଲବରେ ବାବୁ ଚନ୍ଦ୍ରଶେଖର ବନ୍ଦ୍ୟୋପାଧ୍ୟାୟ ଉତ୍କଳର ପୁରାତନ କୀର୍ତ୍ତିକଳାପ ବିଷୟରେ ଗୋଟିଏ ସୁଦୀର୍ଘ

ଭଜନ ରଚନା ପାଠ କରୁଥିଲେ । ଆଲମଗିରି ଓ ଉଦୟଗିରି ପର୍ବତ ଓ ମହାବିନାୟକ ଓ ଅମରାବତୀ ଇତ୍ୟାଦି ସ୍ଥାନମାନଙ୍କରେ ଯେ ସମସ୍ତ ପ୍ରସ୍ତର ନିର୍ମିତ ମୂର୍ତ୍ତି ଓ ମନ୍ଦିରାଦି କୀର୍ତ୍ତିମାନ ଅଛି ଓ ଏକ ସ୍ଥାନରେ ପଥରରେ ଯେଉଁ ଅକ୍ଷରମାନ ଖୋଦିତ ହୋଇଅଛି ସେ ସବୁର ବର୍ଣ୍ଣନା ଅତି ସୁନ୍ଦରଭାବେ କରିଥିଲେ ଆମ୍ଭେମାନେ ତାହା ଶ୍ରବଣକରି ଅତିଶୟ ଆନନ୍ଦିତ ହେଲୁଁ ଓ ଏଥିରେ ବାବୁ ଯେଉଁପରି ଯତ୍ନ ଓ ପରିଶ୍ରମ ସ୍ୱୀକାର କରି ଅଛନ୍ତି ତାହା ଅବଶ୍ୟ ପ୍ରଶଂସା ଯୋଗ୍ୟ ସନ୍ଦେହ ନାହିଁ । ସେ ସବୁ କୀର୍ତ୍ତି କଳାପର ବର୍ଣ୍ଣନା କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନଥିବାରୁ ସେଥିରୁ ଯାହା ଗୋଟିଏ ମାତ୍ର କଥାର ଉଲ୍ଲେଖ କରୁଅଛୁଁ ।

ବାବୁ ମହାଶୟ ବ୍ୟକ୍ତ କଲେ ଯେ ଛତିଆ ନିକଟ ଅମରାବତୀ ସ୍ଥାନରେ ଯେଉଁ କୀର୍ତ୍ତିମାନ ଥିଲା ସେ ସବୁର ଅଧିକାଂଶ ବର୍ତ୍ତମାନରେ ଅଦୃଶ୍ୟ ହୋଇ-ଅଛି ଓ ବାରିକମାସ୍ତ୍ରରମାନେ ଏଥିପାଇଁ ଦାୟୀ ଅଟନ୍ତି ସେମାନେ ସେଠାରୁ ପଥର ନେଇ ସଡ଼କରେ ପକାଇ ଅଛନ୍ତି । ଏ ବ୍ୟାପାର ଦେଖି ବାବୁ ଯେ ପ୍ରକାର ଦୁଃଖ ପ୍ରକାଶ କରିଅଛନ୍ତି ତାହା ସର୍ବାଂଶରେ ଉପଯୁକ୍ତ ହୋଇଅଛି ସନ୍ଦେହ ନାହିଁ । ମୁସଲ-ମାନମାନେ ହିନ୍ଦୁମାନଙ୍କର ବିପକ୍ଷ ହୋଇ ତାହାଙ୍କ ଧର୍ମର ଲୋପ ସାଧନାର୍ଥେ ଯେ ସମସ୍ତ ଅନିଷ୍ଟ କରିଥିଲେ ତାହା ଶୋଚନୀୟ ହେଲେହେଁ ସେମାନଙ୍କ ପକ୍ଷରେ ଏତିକି କହିଲେ ବୋଲିଯାଇ ପାରେ ଯେ ତାହାଙ୍କ ଧର୍ମଶାସ୍ତ୍ରରେ ଏରୂପ କରିବାର ଆଜ୍ଞା ଅଛି । ମାତ୍ର ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କର କାର୍ଯ୍ୟ ସେରୂପ ନୁହଇ ଭିନ୍ନ ଧର୍ମ ପ୍ରତି ଅତ୍ୟାଚାର କରିବା ଦୂରେଥାଉ ପୁରାତନ ଇତିହାସ ସଂଗ୍ରହ ଓ ପୁରାତନ କୀର୍ତ୍ତିରକ୍ଷା ନିମିତ୍ତ ଆମ୍ଭ-ମାନଙ୍କ ଗବର୍ଣ୍ଣମେଣ୍ଟ ଅର୍ଥ ବ୍ୟୟ କରିବାକୁ କୁଣ୍ଠିତ ହେଉନାହାନ୍ତି । ଅଥଚ ସେହି ଗବର୍ଣ୍ଣମେଣ୍ଟର କର୍ମଚାରୀମାନେ କୀର୍ତ୍ତିମାନ ଭାଙ୍ଗି ସେ ପଥର ନେଇ ବାଟ ଠିକ କରୁ-ଅଛନ୍ତି । ବାରିକ ମାସ୍ତ୍ରରଙ୍କର ଏ ପ୍ରକାର ଅତ୍ୟାଚାରର ଅନେକ ଦୃଷ୍ଟାନ୍ତ ପ୍ରାପ୍ତ ହୁଅଇ । ଆମ୍ଭେମାନେ ଶୁଣିଅଛୁଁ ଯେ କେହି ବାରିକ ମାସ୍ତ୍ରର ଜଗନ୍ନାଥଙ୍କ ବେଢ଼ା ଭାଙ୍ଗି ସେ ପଥର ଦ୍ୱାରା ପୁରୀର ସଡ଼କମାନ ପକ୍କା କରିବାକୁ କହିଥିଲେ ଯାହା ପାଖରେ ସେ ଏକଥା କହିଲେ ସେ ତାହାଙ୍କୁ ଉତ୍ତର ଦେଲା କି ଯେଉଁ ବାରିକ ମାସ୍ତ୍ରରମାନେ କଣା-ରକ ମନ୍ଦିରର ଖଣ୍ଡିଏ ପଥର ନେଇ ପାରି ନାହାନ୍ତି ସେମାନେ ହିନ୍ଦୁଙ୍କର କୀର୍ତ୍ତି ଭାଙ୍ଗିବା କଥା କହିବା ବଡ଼ ଅସୁନ୍ଦର ଶୁଣୁଅଛି । ବାସ୍ତବରେ ପୁରାତନ କୀର୍ତ୍ତିମାନ ଯେଉଁ ଧର୍ମଶାଳା ଓ ଯେଉଁପରି ଦୃଢ଼ଭାବେ ନିର୍ମିତ ହୋଇଅଛି ତାହା ବର୍ତ୍ତମାନ ବାରିକ ମାସ୍ତ୍ରର କାର୍ଯ୍ୟରେ ଦେଖା ନଯାଏ କିନ୍ତୁ ଏସବୁ ଭାଙ୍ଗିବାରେ ବାରିକ ମାସ୍ତ୍ରରମାନେ ବଡ଼ ପରାକ୍ରମ ଦେଖାଉ ଅଛନ୍ତି । ଏ ବିଷୟରେ କିଛି ନିୟମ କରିବା ଗବର୍ଣ୍ଣମେଣ୍ଟଙ୍କର କର୍ତ୍ତବ୍ୟ ଅଟଇ ।

( ୫ମ ଭାଗ, ୨ । ୪ । ୧୮୭୦, ସଂଖ୍ୟା ୧୪ )

୬୧ । ଉତ୍କଳ ଭାଷା ଉଠାଇବାର ଉଦ୍ୟମ ।

ଆମ୍ଭେମାନେ ଗତ ସପ୍ତାହରେ ଯେଉଁ ପତ୍ରରେ ଏହି ସମ୍ବାଦ ଦେଇ-
ଥିଲୁଁ । ଅବକାଶାଭାବରୁ ଏଥର ସବିଶେଷ ଲେଖିବାକୁ ଅସମର୍ଥ ହେବାରୁ ବର୍ତ୍ତମାନ
ତାହା ଲେଖୁଅଛୁଁ । ଦରଖାସ୍ତ ଖଣ୍ଡି ବଙ୍ଗ ଭାଷାରେ ଲିଖିତ ଓ କଲିକତାର କୌଣସି
ଯନ୍ତ୍ରାଳୟରେ ମୁଦ୍ରିତ ହୋଇ ଥିବାର ଜଣାଯାଏ । ଅକ୍ଷର ଦେଖି ଆମ୍ଭେମାନେ ଅନୁ-
ମାନ କରୁଅଛୁଁ ଯେ ଯେଉଁ ଯନ୍ତ୍ରାଳୟରେ କାନ୍ତି ବାବୁଙ୍କ ପୁସ୍ତକ ମୁଦ୍ରିତ ହୋଇଥିଲା
ସେହି ଯନ୍ତ୍ରାଳୟରେ ଏହା ମୁଦ୍ରିତ ହୋଇଅଛି । କିଏ ଏହାର ରଚୟିତା ଓ କାହା
ଦ୍ୱାରା ଏ ଛପା ହୋଇ ଥିବାର କାରଣ ବୁଝାଉଅଛି ଜାଣିବାର କଠିନ କାରଣ ସବୁ
କାର୍ଯ୍ୟ ଯତ୍ନପୂର୍ବକ ଗୋପନରେ ହେଉଅଛି । ଦରଖାସ୍ତକୁ ଏକ ପ୍ରକାର କାନ୍ତି
ବାବୁଙ୍କ ପୁସ୍ତକର ପରିଶିଷ୍ଟ ବୋଲିପାରି ପାରେ ଓ ଏଥି ହେତୁରୁ ବୋଧ ହୁଅଇ ଯେ
କାନ୍ତି ବାବୁ କିମ୍ବା ତାହାଙ୍କ ସଙ୍ଗୀଲୋକ କେହି ଏ ଦରଖାସ୍ତ ରଚନା କରିଅଛନ୍ତି ।
ଦରଖାସ୍ତର ଏମନ୍ତ ଗୋଟିଏ କଥା ନାହିଁ କି ଯାହା କୌଣସି ଓଡ଼ିଆଙ୍କର ମନରେ
ସ୍ୱଭାବତଃ ଉଦୟ ହୋଇପାରେ ଅପଣା ଭାଷାକୁ କଦର୍ଯ୍ୟ ଜ୍ଞାନ କରିବାର କାହାରିଠାରେ
କେବେ ଶୁଣାନାହିଁ ଓ ଅଧିକାଂଶ ଉତ୍କଳୀୟ ବଙ୍ଗ ଭାଷାରେ ଅଜ୍ଞ ଥିବାରୁ କଦାପି
ସମ୍ଭବ ନୁହଇ ସେମାନେ ଆପଣା ଭାଷାକୁ ବାଙ୍ଗଲା ସଙ୍ଗେ ତୁଳନା କରି ଏହାର
ଉତ୍କୃଷ୍ଟତା ସ୍ୱୀକାର କରିବେ । ବଙ୍ଗାଳିମାନେ ଆପଣା ଇଷ୍ଟ ସାଧନ ନିମିତ୍ତ ଅତ୍ୟନ୍ତ
ଚେଷ୍ଟାକରି ଦରଖାସ୍ତର ମର୍ମ ପ୍ରତି ଦୃଷ୍ଟି ରଖିବାକୁ ସମର୍ଥ ହୋଇନାହାନ୍ତି । ଆମ୍ଭେ-
ମାନେ ଦରଖାସ୍ତର ଅନୁବାଦ ପତ୍ରିକାରେ ଦେବାକୁ ମନସ୍ଥ କରିଥିଲୁଁ ମାତ୍ର ଯେ
ସ୍ଥଳେ ଅନେକାଂଶ ଦରଖାସ୍ତ ଛପାହୋଇ ଦେଶ ମଧ୍ୟରେ ବୁଲୁଅଛି ସେ ସ୍ଥଳେ
ବୋଧ ହୁଅଇ ପାଠକମାନେ ଅନାୟାସରେ ତାହା ଦେଖି ପାରିବେ ଯଦ୍ୟପି ଆମ୍ଭେ-
ମାନେ ଦୁଃଖିତ ହୋଇ ସ୍ୱୀକାର କରୁଅଛୁଁ ଯେ ବହୁକଷ୍ଟରେ ଆମ୍ଭେମାନେ ଥରେ
ମାତ୍ର ଉକ୍ତ ଦରଖାସ୍ତକୁ ଦେଖିଅଛୁଁ ।

ଅମ୍ଭେମାନେ ଶୁଣିଲୁଁ ଯେ ଦୁଇ ତିନିମାସ ହେବ ଦରଖାସ୍ତମାନ
ଓଡ଼ିଶାକୁ ଆସି ଅତି ସାବଧାନ ପୂର୍ବକ ଗୋପନରେ ବଙ୍ଗାଳିଙ୍କ ପାଖରେ ରହିଅଛି
ଓ ସେମାନେ ଆପଣା ଅଧୀନସ୍ଥ ଲୋକଙ୍କ ସ୍ୱାକ୍ଷର ସଂଗ୍ରହ କରୁଅଛନ୍ତି । ବଙ୍ଗାଳି
ଜମିଦାରଙ୍କ ପ୍ରଜା ଓ ମଫସଲରେ କାର୍ଯ୍ୟ କରୁଥିବା ବଙ୍ଗାଳିଙ୍କ ଅଧୀନସ୍ଥ ସ୍କୁଲ କର୍ତ୍ତ୍ରା-
କ୍ଠେର ଇତ୍ୟାଦି ଲୋକଙ୍କ ସ୍ୱାକ୍ଷର ଗୃହୀତ ହେଉଅଛି । ଯେବେ ଏହିପରି ସ୍ୱାକ୍ଷରର

ପ୍ରୟୋଜନ ଥିଲା ତେବେ ବଙ୍ଗାଳିମାନେ କାହିଁକି ଏତେ ପରିଶ୍ରମ କରୁଅଛନ୍ତି ବୁଝି ପାରୁନାହିଁ ବରଂ । ଏହାରେ ଅନ୍ୟାୟ ଥିଲାପରି ତାହାଙ୍କ ଚତୁରତା ସଙ୍ଗେ ୨ ମୂର୍ଖପଣିଆଁ ଥିବାର ପ୍ରକାଶ ପାଉଅଛି, କଲିକତାରେ ତ ଗୌଡ଼, ବଙ୍ଗ, ବାଉରୀ ଇତ୍ୟାଦି ଅନେକ ଲୋକ ଅଛନ୍ତି ସେମାନଙ୍କର ସ୍ୱାକ୍ଷର ନେଇଥିଲେ ତ ସହଜରେ କାର୍ଯ୍ୟ ଚଳିଥାନ୍ତା ଅଥଚ ଆମ୍ଭେମାନେ କିଛି ଜାଣି ପାରନ୍ତୁ ନାହିଁ । କିନ୍ତୁ କେବଳ ଆମ୍ଭମାନଙ୍କୁ ପ୍ରତାରିତ କରିବା ଦରଖାସ୍ତ ରଚୟିତାଙ୍କର ଅଭିପ୍ରାୟ ନୁହଇ ଗବର୍ଣ୍ଣମେଣ୍ଟଙ୍କୁ ମଧ୍ୟ ପ୍ରତାରିତ କରିବା ଏଥିର ଅଭିପ୍ରାୟ ଥିବାର ଅନୁମାନ ହୁଅଇ ଓ ସେଥିପାଇଁ ବୋଧହୁଅଇ ସେମାନେ ଦରଖାସ୍ତ ଓଡ଼ିଶାରୁ ପଠାଇବାର ସ୍ଥିର କଲେ । ଦୁଃଖର ବିଷୟ ଯେ ତାହାଙ୍କ ଗୋପନେ ରଖିବା ଚେଷ୍ଟା ସଫଳ ହେଲା ନାହିଁ । ଗୋପନ ହୁଅନ୍ତା ଅବା କପଟ ସାଧାରଣ ପ୍ରବାଦ ଏହି ଯେ ପାପ ଲୁଚି ରହଇ ନାହିଁ ।

ଆମ୍ଭେମାନେ ଗୋପନରେ ସ୍ୱାକ୍ଷର କରାଇବା କଥାକୁ ପାପ ବୋଲି ବୋଲୁଅଛୁଁ ବାସ୍ତବରେ ଏହା ଗର୍ହିତ କର୍ମ କାର୍ଯ୍ୟ ଅଟଇ । କୌଣସି ବଙ୍ଗାଳି ସଙ୍ଗେ ଏଥିର ତର୍କ ହେବାରୁ ସେ କହିଲେ କି ଯେଉଁ ବ୍ୟକ୍ତି ଦରଖାସ୍ତ ଲେଖି ଓଡ଼ିଆଙ୍କର ସ୍ୱାକ୍ଷର ଗୋଟାଉ ଅଛନ୍ତି ତାହାଙ୍କ କାର୍ଯ୍ୟ ଦୂଷଣୀୟ ନୁହଇ କାରଣ ତାହାଙ୍କ ଦୃଢ଼ ବିଶ୍ୱାସ ଯେ ଓଡ଼ିଶାରେ ବଙ୍ଗଳା ଚଳିଲେ ଏ ଦେଶର ପରମୋପକାର ହେବ ଓ ପ୍ରକାଶ୍ୟରେ ତାହା କରିବାକୁ ଗଲେ ଅନେକ ଲୋକ ଏଥିର ପ୍ରତିବାଦୀ ହୋଇ ସବୁ ଉଦ୍ୟମ ବ୍ୟର୍ଥ କରିବେ ଏହି ହେତୁ ସେ ଗୋପନରେ ଏ କାର୍ଯ୍ୟ କରୁଅଛନ୍ତି । ଆହା ଏ ଯୁକ୍ତିକୁ ଦୂରୀଭୂତ କରିବାକୁ ଆଉ କିଏ ଅଛି ଆମ୍ଭେମାନେ କଷ୍ଟ ଯୁକ୍ତ କରି ପାରୁନାହୁଁ । କେହି ସତ୍‌କାର୍ଯ୍ୟ କରିବା ମାନସରେ କୃପଣ ଘରେ ଚୋରିକରି ଧନ ଲୁଟିଲେ ଏମାନେ ତାହାଙ୍କୁ ଚୋର ବୋଲିବେ କିନା ସନ୍ଦେହ । ବୋଧ ହୁଅଇ ତାହାଙ୍କୁ ଏମାନେ ସଭ୍ୟ ଓ ବଦାନ୍ୟ ବୋଲି ପୂଜା କରିବେ । କିନ୍ତୁ କେହି ଦୁଃଖୀ ଯେବେ ଅନାହାର ମୃତ୍ୟୁରୁ ରକ୍ଷାପାଇବା କାରଣ ଏମାନଙ୍କ ଘରୁ ପଇସାଟିଏ ଚୋରି କରିବ ତାହାଙ୍କୁ ପୁଲିସକୁ ପଠାଇବାକୁ ତିଳମାତ୍ର ବିଳମ୍ବ କରିବେ ନାହିଁ । ଯେଉଁମାନେ ଆପଣାକୁ ସଭ୍ୟ ଓ ଜ୍ଞାନୀ ବୋଲି ଅତିଶୟ ଅହଙ୍କାର କରନ୍ତି ସେମାନଙ୍କ ଠାରେ ଏରୂପ ନୀତିର କେମନ୍ତ ସୁନ୍ଦର ଦିଶୁଅଛି ତାହା ପାଠକମାନେ ବିଚାର କରନ୍ତୁ । ଓଡ଼ିଶା ଲୋକଙ୍କୁ ଯେତେ ପ୍ରକାରେ ବଙ୍ଗାଳୀମାନେ ନିନ୍ଦା କରନ୍ତୁ ସେମାନଙ୍କ ଠାରେ କଦାକାଳରେ ଏରୂପ ଚରିତ୍ର ପ୍ରକାଶ ହେବ ନାହିଁ । ଏସବୁ ଅତି ଚତୁର ଲୋକର କାର୍ଯ୍ୟ ଏ ଦରଖାସ୍ତ ଗବର୍ଣ୍ଣମେଣ୍ଟ ପ୍ରାପ୍ତ ହେଲେ ଉତ୍ତର କିରୂପ ବିଚାର କରିବେ ଆମ୍ଭେମାନେ ଚିନ୍ତାକରି ସ୍ଥିର କରି ପାରୁନାହୁଁ । ପାଠକଙ୍କର ସ୍ମରଣ ଥିବ ପ୍ରାୟ ଦେଢ଼ବର୍ଷ ହେବ ଅବନ୍ୟ ପ୍ରଧାନ ୨ ଲୋକମାନେ ସ୍ୱାକ୍ଷର କରି ଗବର୍ଣ୍ଣମେଣ୍ଟଙ୍କୁ ଦରଖାସ୍ତ ପଠାଇବାରୁ

ଏଠାରେ ବଙ୍ଗଳା ଉଠି ଯାଉଅଛି । ଗବର୍ଣ୍ଣମେଣ୍ଟଙ୍କ ପକ୍ଷରେ ସ୍ପଷ୍ଟରୂପେ ଲେଖା ଅଛି ଯେ ସେହି ଦରଖାସ୍ତ ଲିଖିତ ବିଷୟମାନ ପ୍ରକୃତ ଥିବାରୁ ଗବର୍ଣ୍ଣମେଣ୍ଟ ତାହା ଗ୍ରହଣ କଲେ । ସମ୍ପ୍ରତି ତହିଁର ବିପରୀତ ଖବର ଦରଖାସ୍ତ ପ୍ରବେଶହେଲା ଉତ୍ତାରୁ କୌ ଦରଖାସ୍ତ ବିଶ୍ୱାସ ଯୋଗ୍ୟ ହୋଇଲେ ଅନୁସନ୍ଧାନ କରିବେ ତହୁଁ ସକଳ କଥା ପ୍ରକାଶ ପାଇବ । କିନ୍ତୁ ସେତେବେଳ ଯାଏ ଅପେକ୍ଷା ନକରି ପ୍ରଥମରୁ ଏକଥା ଗବର୍ଣ୍ଣମେଣ୍ଟଙ୍କୁ ଜଣାଇଲେ ଭଲ ହେବ । ଗବର୍ଣ୍ଣମେଣ୍ଟଙ୍କର ଏହା ଜାଣିବାର ଆବଶ୍ୟକ କାରଣ ଆଜି ଏକ କଥାରେ ଯେବେ ଆପଣାମତାନୁସାରେ ଦରଖାସ୍ତ ଲେଖି ଓଡ଼ିଆଙ୍କ ସ୍ୱାକ୍ଷର କରାଇ ଓଡ଼ିଶାର ମତ ବୋଲି ଗବର୍ଣ୍ଣମେଣ୍ଟଙ୍କୁ ପ୍ରତାରିତ କରିପାରନ୍ତି ତେବେ କେବେ ଗବର୍ଣ୍ଣମେଣ୍ଟ କିମ୍ବା ଅବତ୍ୟ କୌଣସି ହାକିମ ବିରୁଦ୍ଧରେ କିଛି ଲେଖି ଏହିପରି ଓଡ଼ିଆଙ୍କ ସ୍ୱାକ୍ଷର ସଂଗ୍ରହକରି ଦରଖାସ୍ତ ପଠାଇ ପାରନ୍ତି । ରାଜବିଦ୍ରୋହ ଓ ଏହିପ ହୋଇପାରେ ଅତଏବ ଯେଉଁମାନେ ଏ ଦରଖାସ୍ତରେ ସ୍ୱାକ୍ଷର ଦୋହରାଇ ବୁଲୁଅଛନ୍ତି ତାଙ୍କର ରହସ୍ୟ ଅନୁସନ୍ଧାନ କରିବା ଗବର୍ଣ୍ଣମେଣ୍ଟଙ୍କର କର୍ତ୍ତବ୍ୟ ଅଟଇ । ସାଧାରଣ ହିତାହିତ ବିଷୟରେ ଯେ କାର୍ଯ୍ୟମାନ ହୁଅଇ ତାହା ପ୍ରକାଶ୍ୟ ରୂପେ ହେବାର ଆବଶ୍ୟକ ଓ ଅଧିକ ଲୋକଙ୍କଠାରୁ ଏକ ଦରଖାସ୍ତରେ ଦସ୍ତଖତ କରାଇବା ମୁତ୍ୟହେ ତହିଁର ବୃତ୍ତାନ୍ତ ଲୁଚାଇ ରଖିବାର ଉଦ୍ୟମରୁ ଏତିକ ମାତ୍ର ପ୍ରମାଣ ହେଉଅଛି ଯେ ଯାହାଙ୍କର ସ୍ୱାକ୍ଷର ଗ୍ରହଣ ହୋଇଅଛି ସେମାନେ ତହିଁର କିଛି ଜାଣନ୍ତି ନାହିଁ । ସେମାନେ ଯେବେ ଦରଖାସ୍ତର ମର୍ମରୁ ଅବଗତ ହୋଇଥାନ୍ତେ ତେବେ ଅବଶ୍ୟ ଆପଣା ମଧ୍ୟରେ ଲୁହା ଲୁହି ହେଉଁ ୨ ବୃଦ୍ଧିଆଡ଼େ ସେକଥା ପ୍ରକାଶ ପାଇ-ଥାନ୍ତା ।

ଏଠାରେ ଆମ୍ଭେମାନେ ଆଉ ଗୋଟିଏ କଥା କହି ରଖିଦେଉ । ଗତ ପ୍ରକାଶିତ ଉତ୍କଳ ହିତୈଷିଣୀରେ କାନ୍ତି ବାବୁଙ୍କ ପୁସ୍ତକ ସମ୍ପର୍କରେ ଯାହା ଲେଖାଥିଲା ଆମ୍ଭେମାନେ ତହିଁର ଅଭିପ୍ରାୟ ବୁଝିନପାରି ଲେଖିଥିଲୁଁ କି ଉତ୍କଳୀୟଙ୍କର ମତ ପ୍ରକାଶ କରିବା ଏକା ତାହାଙ୍କର ଅଧିକାର ହୋଇ ଅନ୍ୟ ଦ୍ୱାରା ତାହା ହୋଇଅଛି ବୋଲି ସେ ବିରକ୍ତ ହୋଇଅଛନ୍ତି ମାତ୍ର ଏ ଦରଖାସ୍ତର କଥା ଜଣା ପଡ଼ିଲା ଦିନୁ ଆମ୍ଭମାନଙ୍କର ବିଶ୍ୱାସ ହେଉଅଛି ଯେ ଏହି ଦରଖାସ୍ତକୁ ଲକ୍ଷକରି ସେ ଉକ୍ତ କଥା କହିଥିଲେ ଓ ଏଠାକୁ ଦରଖାସ୍ତ ଆସିବା ଓ ଗୋପନରେ ସ୍ୱାକ୍ଷରିତ ହେଉଥିବା ବିଷୟ ବହୁକାଳରୁ ତାହାଙ୍କୁ ଜଣାଥିଲା ମାତ୍ର ଏକଥା ପ୍ରକାଶ କରିବା ହିତୈଷିଣୀର କାର୍ଯ୍ୟ ନୁହେଁ ନକରି ସମ୍ପାଦକ ଏକ ପ୍ରକାର ଭଙ୍ଗିକ୍ରମେ ଏହି ଅଭିପ୍ରାୟ ବ୍ୟକ୍ତ କରିଅଛନ୍ତି ଯେ ଏ ଦରଖାସ୍ତରେ ଯେଉଁ କଥାମାନ ଲେଖାଅଛି ଓଡ଼ିଆ ବାସିଙ୍କର ଏକା ସେହି ମତ ଅଟେ । ଏମନ୍ତ ହେଲେ ବଡ଼କ ଗୋସାଇଁଠୀ କି କଣ

ବୋଲିବା ସ୍ଥିର କରି ନପାରନ୍ତି । ଉତ୍କଳ ଭାଷାର ଉନ୍ନତି ସାଧନ ସୋସାଇଟୀର ଗୋଟିଏ ଉଦ୍ଦେଶ୍ୟ ଅଥଚ ସେହି ସୋସାଇଟୀର ପତ୍ରିକା ଭିନ୍ନ ମତ ବ୍ୟକ୍ତ କରିବାର ଜଣାଯାଏ ।

## ( ୪ମ ଭାଗ, ୩୦ । ୪ । ୧୮୭୦, ସଂଖ୍ୟା ୧୮ )

୭୦ । ଓଡ଼ିଆ ଓ ବଙ୍ଗଳା ଭାଷା

ଏ ବିଷୟରେ ଅନେକ ବାଦାନୁବାଦ ହୋଇ ଯାଇଅଛି ଓ ଆମ୍ଭେମାନେ ଆପଣାର ମତ ଏଥିପୂର୍ବ ପ୍ରକାଶ କରିଅଛୁଁ । କାନ୍ତି ଚନ୍ଦ୍ର ଭଟ୍ଟାଚାର୍ଯ୍ୟ ରଚିତ "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେ" ପୁସ୍ତକ ବିଷୟରେ ଏଡୁକେଶନ ଗେଜେଟ ଯେ ମତ ପ୍ରକାଶ କରିଅଛନ୍ତି ତହିଁର କିଛି ଅଂଶ ବର୍ତ୍ତମାନ ପାଠକମାନଙ୍କ ଗୋଚରାର୍ଥେ ଉଦ୍ଧୃତ କରାଗଲା । ପାଠକମାନେ ଦେଖିବେ ଯେ ଏଡୁକେଶନ ଗେଜେଟ ଆମ୍ଭମାନଙ୍କ ମତର ପୋଷକତା କରିଅଛନ୍ତି । ସମ୍ପାଦକ ବଙ୍ଗଦେଶ ନିବାସୀ ଶିକ୍ଷା ବିଭାଗର ଏକଜଣ ପ୍ରଧାନ କର୍ମଚାରୀ ଏବଂ ପଣ୍ଡିତ ଅଟନ୍ତି ଏବଂ ସ୍କୁଲର ଇନସ୍ପେକ୍ଟର ଥିବାରୁ ନାନା ସ୍ଥାନର ଭାଷା ତାହାଙ୍କୁ ଜଣାଅଛି ଓ ସେ ଓଡ଼ିଆର ପକ୍ଷପାତୀ ହେବାର କିଛି ମାତ୍ର କାରଣ ନାହିଁ, ଏପରି ଅବସ୍ଥାରେ ତାହାଙ୍କର ମତ ଯେ ସର୍ବସାଧାରଣର ଗ୍ରହଣୀୟ ହେବ ଏଥିରେ କିଛିମାତ୍ର ସନ୍ଦେହ ନାହିଁ । ସମ୍ପାଦକଙ୍କ ନିଷ୍ପକ୍ଷପାତ ବିବେଚନାରେ ଆମ୍ଭେମାନେ ବିଶେଷ ସନ୍ତୁଷ୍ଟ ହୋଇଅଛୁଁ । ଓଡ଼ିଶାରେ ସମ୍ପ୍ରତି ଯେଉଁ ବଙ୍ଗାଳିମାନେ ଅଛନ୍ତି ସେମାନଙ୍କ ବ୍ୟବହାରରୁ ଏପରି ମତ ବଙ୍ଗଦେଶୀୟ ଏକ ପ୍ରଧାନ ସମ୍ବାଦପତ୍ରରେ ପ୍ରକାଶ ହେବ ଏହା ଆମ୍ଭମାନଙ୍କ ଆଶା ନଥିଲା । ଏଡୁକେଶନ ଗେଜେଟ ସମ୍ପାଦକ ଏହି ନିଷ୍ପକ୍ଷପାତ କାର୍ଯ୍ୟ ଦ୍ୱାରା ଓଡ଼ିଶା ବାସିମାନଙ୍କର ପ୍ରଶଂସା ଓ ଧନ୍ୟବାଦର ଭାଜନ ହୋଇଅଛନ୍ତି ସନ୍ଦେହ ନାହିଁ ।

ଉଦ୍ଧୃତ

ଫଳତଃ ଆମ୍ଭମାନଙ୍କ ବିବେଚନାରେ ସେ ଯେଉଁ ପ୍ରଣାଳୀରେ "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେ" ପ୍ରମାଣ କରିଅଛନ୍ତି ସେ ପ୍ରଣାଳୀ ଅବଲମ୍ବନ କଲେ ଓଡ଼ିଆ କାହିଁକି ହିନ୍ଦି ମଧ୍ୟ ସ୍ୱତନ୍ତ୍ର ଭାଷା ନୁହେ ଏକଥାର ସପ୍ରମାଣ ହୋଇପାରେ । ବଙ୍ଗଳା ଏବଂ ଓଡ଼ିଆ ଭାଷାରେ ଯେପରି ଅନେକ ମେଳଅଛି ହିନ୍ଦି ଏବଂ ବଙ୍ଗଳାରେ ମଧ୍ୟ ସେହିପରି ମେଳ ଦେଖାଯାଏ । ହିନ୍ଦି ଭାଷାରେ ଅତି ପ୍ରସିଦ୍ଧ ପ୍ରେମସାଗର ଓ

ତୁଲସୀ ଦାସକୃତ ରାମାୟଣରୁ କେତେ ୨ ଉଦ୍ଧୃତ କରୁଅଛୁଁ । ପାଠକବର୍ଗ ବିଚାର କରି ଦେଖିବେ ।

"ସାମଲଛନ୍ଦ ବୋଲେ ଦୀନନାଥ ଇନ୍ଦ୍ର ନାନ୍ଦରୋଣ୍ଡ କୃପାଡଣ୍ଡ ହୋ ଆପକେ ଚରଣ ସରଣେ ଦରଶନ କହ୍ନୁ।" । ( ଏକାଦଶ ଅଧ୍ୟାୟ । )

"ଭୟେ ପ୍ରଗଟ କୃପାଲ ଦୀନଦୟାଲ କୌଶଲ୍ୟା ହିତକାରୀ ।
ହରଷିତ ମହତାରୀ ମନ ମନୋହାରୀ ଅଦ୍ଭୁତ ରୂପ ନିହାରୀ ।
ଲୋଚନ ଅଭିରାମା ତନୁ ଘନଶ୍ୟାମା ନିଜ ଆୟୁଧ ଭୁଜ ଚାରୀ ।
ଭୂଷଣ ବନମାଲ ନୟନ ବିଶାଲ ଶୋଭା ସିନ୍ଧୁ ଖରାରୀ ।"

ଭାରତ ଚନ୍ଦ୍ରଙ୍କର ଏକ ୨ ସ୍ଥଳରେ ମଧ୍ୟ ଯେପରି ହିନ୍ଦି ରଚନା ଅଛି ସମସ୍ତେ ସେ ହିନ୍ଦି ରଚନା ବୁଝି ପାରନ୍ତି । ବସ୍ତୁତଃ ଶ୍ରୀଯୁକ୍ତ କାନ୍ତି ଭଟ୍ଟାଚାର୍ଯ୍ୟଙ୍କ ଅବଲମ୍ବିତ ବିଚାର ପଦ୍ଧତିକି ଯେବେ ସପ୍ରଶସ୍ତ ବୋଲି କହାଯାଏ ତେବେ ଯେପରି ଓଡ଼ିଶା ଦେଶରେ ବଙ୍ଗଳା ପ୍ରଚଳିତ ହେବା ଉଚିତ ବୋଲି ପ୍ରତିପନ୍ନ ହୋଇଅଛି ସେହିପରି ବଙ୍ଗଳା ଓ ଓଡ଼ିଶା ଉଭୟ ଦେଶରେ ହିନ୍ଦି ପ୍ରଚଳିତ ହେବା ଉଚିତ ବୋଲି ପ୍ରତିପନ୍ନ ହୋଇପାରେ ଅଥବା ସମୁଦାୟ ଆର୍ଯ୍ୟାବର୍ତ୍ତରେ ଏକ ବଙ୍ଗଭାଷା ବା ଏକ ଓଡ଼ିଆ ଭାଷା ବା ଏକ ଆସାମୀ ଭାଷା କିମ୍ବା ଏକ ହିନ୍ଦି ଭାଷା ପ୍ରଚଳିତ ହେବା ଉଚିତ ବୋଲି ମଧ୍ୟ ପ୍ରତିପନ୍ନ ହୋଇପାରେ । ବସ୍ତୁତଃ ଶ୍ରୀଯୁକ୍ତ କାନ୍ତି ଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ପଦ୍ଧତି ସର୍ବାଙ୍ଗସୁନ୍ଦରେ ଅବଲମ୍ବନ କରି ବିଚାର କଲେ ନାନାବିଧ ପରସ୍ପର ବିରୋଧ ଧର୍ମ-ଶୀଳ ସିଦ୍ଧାନ୍ତ ଆସି ଉପସ୍ଥିତ ହୁଅଇ ଏହିମାନ ।

ସେ ଯେଉଁ ସ୍ଥଳେ ଓଡ଼ିଆ ଓ ବଙ୍ଗଳାର ମେଳ ଦେଖି ଅଛନ୍ତି ସେ ସ୍ଥଳେ ଦୁହିଁଙ୍କି ବଙ୍ଗଳା ବୋଲିଅଛନ୍ତି । ଯେଉଁ ସ୍ଥଳେ ଭିନ୍ନ ରୂପ ଦେଖିଅଛନ୍ତି ସେ ସ୍ଥଳରେ ଓଡ଼ିଆକୁ ଅଶୁଦ୍ଧ ବଙ୍ଗଳାର ଅପଭ୍ରଂଶ ବୋଲିଅଛନ୍ତି । ଏହି କି ବିଚାରର ରୀତି ? ଯେଉଁ ସ୍ଥଳରେ ଦୁହିଁଙ୍କର ମେଳ ସେ ସ୍ଥଳରେ ବଙ୍ଗଳା କାହିଁକି ଓଡ଼ିଆ ହେଲା ନାହିଁ ଯେଉଁ ସ୍ଥଳେ ମେଳ ନହେଲା ସେ ସ୍ଥଳେ ବଙ୍ଗଳା କାହିଁକି ଅଶୁଦ୍ଧ ଓଡ଼ିଶାର ଅପଭ୍ରଂଶ ନହେଲା ? ଏହି ଅପଭ୍ରଂଶ ଶବ୍ଦ ମାତ୍ର ମହା ଅନର୍ଥକର । କିଏ କାହାର ଅପଭ୍ରଂଶ କିମ୍ବା ଏହା ବିଚାର କରିବା ଆବଶ୍ୟକ ଥିଲା । ଅଧୋ ଯେବେ ଏକ ଭାଷାର ଶବ୍ଦ ଅପରର ଅପଭ୍ରଂଶ ବୋଲି ନିର୍ଦ୍ଦେଶିତ ହେଲା ତେବେ ଏତେ ବିଚାରର କି ଆବଶ୍ୟକ ଥିଲା ? ଏପରି ପାଠିତ ପୂର୍ବପକ୍ଷ ହୋଇ ବିଚାର କଲେ ସକଳ ବିଷୟରେ ମଧ୍ୟ ମନୋମତ ରୂପ ସିଦ୍ଧାନ୍ତ ଲାଭ କରି ପାରିଇପାରେ ।

ବସ୍ତୁତଃ ଓଡ଼ିଆ ବଙ୍ଗଳାର ଅପଭ୍ରଂଶ ନୁହେ ଏବଂ ବଙ୍ଗଳା ମଧ୍ୟ ଓଡ଼ିଆର ଅପଭ୍ରଂଶ ନୁହେଁ । ବଙ୍ଗଳା, ଓଡ଼ିଆ ଓ ଆସାମୀ ଏକ ମୂଳର ସମୁତ୍ପନ୍ନ ଏକ ବୃକ୍ଷର ଭିନ୍ନ ଭିନ୍ନ ଶାଖା ସ୍ୱରୂପ ଏକ ପ୍ରସୂତିର ଭିନ୍ନ ଭିନ୍ନ ସନ୍ତତି ମାତ୍ର । ମୂଳବୃକ୍ଷ କାଳ ସହକାରରେ ଲୋପ ପାଇଅଛି । ଶାଖାଗଣ ଆପଣା ଆପଣା ଅନ୍ତର୍ନିହିତ ଶକ୍ତି ବଳରେ ପରସ୍ପରର ନିରପେକ୍ଷ ହୋଇ ପ୍ରାଣଧାରଣ କରୁଅଛନ୍ତି । ଏମାନଙ୍କୁ ବଳପୂର୍ବକ ଏକ ଶରୀରରେ ପରିଣତ କରିବାକୁ ଚେଷ୍ଟା କଲେ ବୃଥା ପ୍ରୟତ୍ନ ହେବେ । ଯେଉଁ ସ୍ରୋତଃ ଯେ ଦିଗ ହୋଇ ପ୍ରବାହିତ ହେଉଅଛି ତାହା ଆଉ ମିଳିବାର ନୁହେ । ସେ ମିଳିବାର ସମୟ ଯାଇଅଛି । ଯେବେ ବଙ୍ଗଳା ଏବଂ ଓଡ଼ିଆ ମିଳିବାର ହୋଇଥାନ୍ତା ଏମାନଙ୍କର ଶୈଶବାବସ୍ଥାରେ ସେ ମେଳ ଘଟିଥାନ୍ତା । ବର୍ତ୍ତମାନ ଏ ଦୁହେଁ ସମଧିକ ପରିପୁଷ୍ଟ ଓ ସ୍ୱାଧୀନ ଭାବରେ ପ୍ରାଣ ଧାରଣର ଉପଯୋଗୀ ଅଙ୍ଗ ପ୍ରତ୍ୟଙ୍ଗ ଭୂଷିତ ହୋଇଅଛନ୍ତି । ଏତେବେଳେ ଏମାନଙ୍କର କାହାକୁ ବଳପୂର୍ବକ ଅଦାଲତ ଓ ବିଦ୍ୟାଳୟମାନଙ୍କରୁ ଦୂରୀଭୂତ କଲେ ଲୋପ ପାଇବ ନାହିଁ ପ୍ରତ୍ୟୁତ ଅଦାଲତ ଓ ବିଦ୍ୟାଳୟରେ ବଳ ପ୍ରଚଳିତ ଭାଷାର କ୍ରମେ ଅବନତ ହେବ । ଆମ୍ଭେମାନେ ଆସାମର ଅଦାଲତରେ ପ୍ରଚଳିତ ବଙ୍ଗଭାଷା ଦେଖିଅଛୁଁ । ଓଡ଼ିଶାର ଅଦାଲତରେ ପ୍ରଚଳିତ ବଙ୍ଗ ଭାଷା ମଧ୍ୟ ଦେଖିଅଛୁଁ ।

କି କାରଣରୁ ଭାଷା ପୃଥକ୍ ପୃଥକ୍ ହୋଇପଡ଼େ ଶ୍ରୀଯୁକ୍ତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ସନ୍ଦର୍ଭରେ ତାହା ଉଲ୍ଲେଖ କରିଅଛନ୍ତି । ସେ ସମସ୍ତ କାରଣର ମୂଳକାରଣ ଏହି, ଭିନ୍ନ ଭିନ୍ନ ପ୍ରଦେଶୀୟ ଲୋକଙ୍କର ପରସ୍ପର ମିଳନର ଅସଦ୍ଭାବ, ଯେଉଁ କାରଣରୁ ପରସ୍ପର ମିଳନର ଅସଦ୍ଭାବ ହୁଏ ଭିନ୍ନ ରାଜାଧିକାର ଓ ଭିନ୍ନ ପ୍ରାକୃତିକ ଅବସ୍ଥାର ସେହି କାରଣ । ଭିନ୍ନ ରାଜାଧିକାର ଓ ପ୍ରାକୃତିକ ଅବସ୍ଥା ହେଲେ ଜନସାଧାରଣ ମଧ୍ୟରେ ମନୋବୃତ୍ତି ଚାଳନାର ପ୍ରଣାଳୀ ମଧ୍ୟ ଭିନ୍ନ ହୋଇପଡ଼େ, ଉଭୟ ଦେଶ ଉଭୟ ସମାଜର ଭାବ ପୃଥକ୍ ହୋଇଯାଏ । ନୂତନ ନୂତନ କାବ୍ୟ ଗ୍ରନ୍ଥାଦିର ପ୍ରଚାର ହେଉଥାଏ, ପ୍ରଥମ ବିଚ୍ଛେଦ ସମୟରେ ଯେ ଶବ୍ଦଗତ ପ୍ରଭେଦ ଲକ୍ଷିତ ହୁଅନ୍ତା କାଳରେ ତାହା ବଦ୍ଧମୂଳ ହେବାରୁ ଉଭୟ ପ୍ରଦେଶୀୟ ଭାଷା ସମ୍ୟକ୍ ମୂର୍ତ୍ତି ଧାରଣ କରେ । ଯେଉଁ ପରିମାଣରେ ଏହି ସମସ୍ତ କାରଣ ପ୍ରବଳ ଥାଏ ସେହି ପରିମାଣରେ ଭାଷା ଭେଦ ଘଟିଉଠେ । ଏହିରୂପେ ଭାଷାଭେଦ କ୍ରମଶଃ ବର୍ଦ୍ଧିତ ହେଲେ ତାହାର ଆଉ ପୁନର୍ମିଳନର ସମ୍ଭାବନା ରହିନପାରେ । ତେବେ ଏକର ଉଚ୍ଛେଦରେ ଅପର ସଂସ୍ଥାପନର ସମ୍ଭାବନା ଥାଏ ସତ୍ୟ କିନ୍ତୁ ଯେ ସମସ୍ତ କାରଣରେ ତାଦୃଶ ଭାଷାବୈଚିତ୍ର୍ୟ ଘଟିଥିଲା କେବଳ ତାହାର ଅଭାବ ଘଟାଇଲେ ଯେ କାହାର ଉଚ୍ଛେଦ ଘଟିବାରେ ଏମନ୍ତ ନୁହେ, ତାହାର ବିପରୀତ କାରଣର ସଦ୍ଭାବ ଘଟିଲେ ତାଦୃଶ ଉଚ୍ଛେଦ ସଂସ୍ଥାପନର

ସମ୍ଭାବନା ଅର୍ଥାତ୍ ଏକର କର୍ତ୍ତୃକ ଅପରର ଉପରେ ରାଜାଧିକାର ସଂସ୍ଥାପନା, ଉଭୟ ପ୍ରଦେଶ ଭଦ୍ରସମାଜର ସମ୍ୟକ୍ ସମ୍ମିଳନା, ଏକ ପ୍ରଦେଶରେ ଅସାଧାରଣ ଗୁଣସମ୍ପନ୍ନ କାବ୍ୟ ରଚନାଦିର ପ୍ରଭୃତି, ଅପର ପ୍ରଦେଶରେ ତାହାର ସମ୍ୟକ୍ ଅଭାବ ଇତ୍ୟାଦି କାରଣରେ କ୍ରମଶଃ ଏକର ଉଚ୍ଛେଦ ହୋଇ ଅପରର ସଂସ୍ଥାପନାର ସମ୍ଭାବନା କିନ୍ତୁ ଏରୂପ କାରଣର ସଦ୍ଭାବ ବଙ୍ଗଳା ଓ ଓଡ଼ିଶା ମଧ୍ୟରେ କେଉଁଠାରେ ? ଯେବେ ଆମ୍ଭେମାନେ କଟକରେ ପାଇଁ ରାଜା ହୋଇଥାନ୍ତୁ ତାହାହେଲେ କାଳରେ ଓଡ଼ିଶାରେ ବଙ୍ଗ ଭାଷା ଚଳାଇବାର ସମ୍ଭାବନା ଥିଲା ଏବଂ ସେଥି ନିମନ୍ତ ଆମ୍ଭମାନଙ୍କର ଓଡ଼ିଶା ଦେଶୀକୁ ଅଦାଲତ ଓ ବିଦ୍ୟାଳୟର ଭାଷା ବଳପୂର୍ବକ ପରିବର୍ତ୍ତିତ କରିବାର ଆବଶ୍ୟକ ହୁଅନ୍ତା ନାହିଁ ।

( ୫ମ ଭାଗ, ୨୪ । ୭ । ୧୮୭୦, ସଂଖ୍ୟା ୨୭ )

୭୧ ।

## ଅନଗୁଳ ସ୍କୁଲ

ଏଡୁକେଶନ ଗେଜେଟରୁ ଅବଗତ ହେଲୁଁ ଯେ ବଙ୍ଗଳାର ଦକ୍ଷିଣ ପଶ୍ଚିମ ବିଭାଗର ସ୍କୁଲ ଇନସ୍ପେକ୍ଟରର ଡାଇରେକ୍ଟର ସାହେବଙ୍କୁ ଜଣାଇ ଅଛନ୍ତି ଯେ ଅନଗୁଳର ଲୋକମାନେ ଅଦ୍ୟାପି ଆପଣା ସନ୍ତାନମାନଙ୍କୁ ଶିକ୍ଷାଦାନର ଲାଭ ଜାଣିପାରି ନାହାନ୍ତି ଏହି ହେତୁରୁ ସେଠା ସ୍କୁଲମାନଙ୍କର ବୃଦ୍ଧି ଘଟୁ ନାହିଁ । ଗଡ଼ଜାତ ସୁପ୍ରିଣ୍ଟେଣ୍ଡେଣ୍ଟଙ୍କ ଉପଦେଶର ବଶ ହୋଇ କେହି କେହି ସ୍କୁଲକୁ ବାଳକ ପଠାନ୍ତି । ସେ ବାଳକମାନେ ସ୍କୁଲର ବେତନ ଦିଅନ୍ତି ନାହିଁ । ପଇସାଏ ବେତନ ଗ୍ରହଣ କରିବାର ବିଧି ହେଲେ କେହି ସ୍କୁଲକୁ ଆସିବେ ନାହିଁ । ପଢ଼ିବା ପୁସ୍ତକମାନ ସୁଦ୍ଧା ଛାତ୍ରଙ୍କୁ କିଣିବାକୁ ହୁଏନାହିଁ । ମାଗଣା ପୁସ୍ତକ ଦେବା ରହିତ କରିବାପାଇଁ ଇନସ୍ପେକ୍ଟର ସାହେବ ସୁପ୍ରିଣ୍ଟେଣ୍ଡେଣ୍ଟଙ୍କୁ କହିଥିଲେ ସେଥିରେ କିଛିଫଳ ହେଉନାହିଁ ଓ ଲୋକଙ୍କର ଚିତ୍ତ ଏରୂପ ବୋଧହୁଅଇ ଯେ ଛାତ୍ରବୃତ୍ତି ଦେଇ ଉଚ୍ଚଶିକ୍ଷାପାଇଁ ତାହାଙ୍କୁ କଟକକୁ ଆଣିଲେ ସେ ଆସିବ ନାହିଁ । ଯେଉଁଠାର ଅବସ୍ଥା ଏରୂପ ସେଠାରେ ବିଦ୍ୟାଶିକ୍ଷାର ଉନ୍ନତି କପରି ହେବାର ସମ୍ଭାବନା । ଅତଏବ ଇନସ୍ପେକ୍ଟର ସାହେବ ପ୍ରସ୍ତାବ କରନ୍ତି ଯେ ସୁଲଣାଗଡ଼ ସ୍କୁଲରେ ଦୁଇବର୍ଷ-ପ୍ରାପ୍ୟ ମାସିକ ଟ ୨ଙ୍କା ଲେଖାଏଁ ବୃତ୍ତି ସ୍ଥାପନ କଲେ ଲୋକଙ୍କର ବିଦ୍ୟାଶିକ୍ଷା ପ୍ରତି କିଛି ଉତ୍ସାହ ଜନ୍ମିଲେ ଜନ୍ମିପାରେ । ଆମ୍ଭେମାନେ ବୋଧକଲୁଁ ଏ ପ୍ରସ୍ତାବଦ୍ୱାରା ଫଳ ଲାଭ ହୋଇପାରେ କିନ୍ତୁ ଯେ ପର୍ଯ୍ୟନ୍ତ କୌଣସି କୌଶଳ କ୍ରମେ ଉକ୍ତ ଗଡ଼ଜାତର ଦୁଇ ଏକ ଲୋକ ଉଚ୍ଚଶିକ୍ଷା ଲାଭ କରି ପାଇ-ନାହାନ୍ତି ସେ ପର୍ଯ୍ୟନ୍ତ ଶିକ୍ଷାର ଉନ୍ନତି ହେବାର କଠିନ । ଉଚ୍ଚଶିକ୍ଷା ଯେ ଭାଷାଶିକ୍ଷା

ଯତ୍ନ କେତେ ସାହାଯ୍ୟ କରଇ ତାହା ଗବର୍ଣ୍ଣମେଣ୍ଟଙ୍କୁ ଜଣାଥିଲେ ସେ କଣ ସେ
ଉଚ୍ଚଶିକ୍ଷା ରହିତ କରିବାକୁ ମନସ୍ଥ କରନ୍ତେ ? କେବଳ ଅକ୍ଷର ପରିଚୟ ହେଲେ ସ୍ୱାଧୁ
ମିଳଇ ନାହିଁ । ଯେ ବ୍ୟକ୍ତି ଉଚ୍ଚ ଶିକ୍ଷା ଲାଭ କରିଅଛି ସେହି ବାଧ୍ୟ କି ପଦାର୍ଥ ଚିହ୍ନିବାକୁ
ସକ୍ଷମ ହୁଅଇ ଓ ଅପର ବ୍ୟକ୍ତିମାନେ କରନ୍ତେ ସେଥିର ଫଳ ଭୋଗ କରିବେ
ସେହି ଏକା ଏ କଥାକୁ ଚିନ୍ତାକରେ ଓ ତାହାଦ୍ୱାରା ନିମ୍ନ ଶ୍ରେଣୀର ଶିକ୍ଷାଲାଭ
ହୁଅଇ ।

## ( ୫ମ ଭାଗ, ୩ । ୯ । ୧୮୭୦, ସଂଖ୍ୟା ୩୬ )

୨୨ । "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହଇ" ।

ଗତ ଜୁଲାଇ ମାସର 'କଲିକତା ରିଭିଉ' ନାମକ ତ୍ରୈମାସିକ
ପତ୍ରିକାରେ ଏ ପୁସ୍ତକର ସମାଲୋଚନା ପ୍ରକାଶ ହୋଇଅଛି । ଇଂରାଜମାନେ
କାନ୍ତି ବାବୁଙ୍କ ମତକୁ କିପରି ଜ୍ଞାନ କରନ୍ତି ତାହା ସେଥିରୁ ପ୍ରକାଶ ହେବ ବୋଲି
ଉକ୍ତ ସମାଲୋଚନାର ସାରାଂଶ ଏଠାରେ ପ୍ରକାଶିତ ହେଲା । ପାଠକମାନେ ତାହା
ପାଠକରି ବୁଝିବେ ଯେ ଏକା ଉତ୍କଳୀୟମାନେ କାନ୍ତି ବାବୁଙ୍କର ମତର ବିରୋଧୀ
ନୁହନ୍ତି । ଅପକ୍ଷପାତିବ୍ୟକ୍ତିମାନେ ସୁଦ୍ଧା ତାହାଙ୍କ ମତକୁ ହେୟ ଜ୍ଞାନ କରିଅଛନ୍ତି ।
'ରିଭିଉ' ସମ୍ପାଦକ ଲେଖନ୍ତି ଯେ—

"ପୁସ୍ତକର ଭୂମିକାରୁ ପ୍ରକାଶ ଯେ ଓଡ଼ିଶା କଚେରୀ ସମୂହରେ
ବଙ୍ଗଳା ପରିବର୍ତ୍ତରେ ଓଡ଼ିଆଭାଷା ପ୍ରଚଳିତ କରିବାରେ କମିଶନର ଓ ମିସନରିମାନେ
ଭ୍ରମରେ ପଡ଼ିଅଛନ୍ତି କାରଣ ଏ ଦୁଇଭାଷାକୁ ସେମାନେ ପୃଥକ୍ ଜ୍ଞାନ କରନ୍ତି ।
ତଦନୁସାରେ ଲେଖକ ଓଡ଼ିଆ ସ୍ୱତନ୍ତ୍ର ଭାଷା ନଥିବା ଓ ତାହା ବଙ୍ଗଳାର ଅପଭ୍ରଂଶ
ମାତ୍ର ଥିବାର ପ୍ରମାଣ କରିବାକୁ ଚେଷ୍ଟା ପାଇଅଛନ୍ତି ମାତ୍ର ଆମ୍ଭମାନଙ୍କ ବିବେଚନାରେ
ସେ କୃତକାର୍ଯ୍ୟ ହୋଇନାହାନ୍ତି । ତାହାଙ୍କର ମତ ସମର୍ଥନପାଇଁ ସେ ଗୋଟିଏ ମାତ୍ର
ହେତୁ ଦର୍ଶାଇ ଅଛନ୍ତି । ତାହା ଏହି ଯେ ଅନେକ ବଙ୍ଗଳା ଓ ଓଡ଼ିଆ ଶବ୍ଦ
ଏକାପ୍ରାୟ ଅଟଇ । କିନ୍ତୁ ଏକଥା ବଙ୍ଗଳା ଓ ଗୁଜୁରାଟ ପକ୍ଷରେ ମଧ୍ୟ କୁହାଯାଇ
ପାରେ ଓ ଆମ୍ଭେମାନେ ଆପେ ଆପେ ଅନୁଭବକରି କହୁଅଛୁଁ ଯେ ଜଣେ ସୁଶିକ୍ଷିତ
ବଙ୍ଗାଳୀ ଗୁଜରାଟି ଗୋଟିଏ ଅକ୍ଷର ସୁଦ୍ଧା ନଜାଣି ଉକ୍ତଭାଷାର ଦଶାଂଶର ନ ଅଂଶ
ବୁଝିପାରିବ ମାତ୍ର ଏଥିପାଇଁ କି କେହି ଗୁଜରାଟି ଓ ବଙ୍ଗଳାକୁ ଏକ ବୋଲି ଅନୁମାନ
କରନ୍ତି । ପ୍ରକୃତ କଥା ଏହି ଯେ ଓଡ଼ିଆ ବଙ୍ଗଳା ଗୁଜରାଟି ଓ ଅନ୍ୟ ଭାଷାମାନ
ସଂସ୍କୃତରୁ ଉଦ୍ଭବ ହୋଇଥିବାରୁ ସେହି ହେତୁରୁ ତାହାଙ୍କର ସୌସାଦୃଶ୍ୟ ଅଛି । ଆମ୍ଭେ-

ମାନେ ବୋଧକରନ୍ତି କି ଯେମନ୍ତ ତଳ ଡଚଭାଷା ଉପର ଜର୍ମଣଭାଷାର ଅପଭ୍ରଂଶ ହୁଅନ୍ତି ସେହିପ୍ରକାର ଓଡ଼ିଆ ବଙ୍ଗଳାର ଅପଭ୍ରଂଶ ହୁଅଇ । ଯେବେ କି ଓଡ଼ିଆ ମନ୍ଦ ବଙ୍ଗଳା ହୁଅଇ ( ଆମ୍ଭେମାନେ ଏକଥା ସ୍ୱୀକାର କରୁନାହୁଁ ) ତେବେହେଁ ଗବର୍ଣ୍ଣମେଣ୍ଟ ଏହାକୁ ଓଡ଼ିଶା ଅଦାଲତ ସମୂହର ଭାଷା କରିବାରେ ଯଥାର୍ଥ ବିଚାର କରିଅଛନ୍ତି କାରଣ ଏହା ମନ୍ଦ ବଙ୍ଗଳା ହେଲେ ମଧ୍ୟ ଓଡ଼ିଶାପ୍ରତି ଭଲଭାଷା ଅଟଇ ଏବଂ ଓଡ଼ିଶାର ତିନିକୋଟି ଲୋକ କେବଳ ଏ ଭାଷାରେ କଥାବାର୍ତ୍ତା କରନ୍ତି ଏମନ୍ତ ନୁହେଁ । ଏଭାଷାରେ ପୂର୍ବରୁ ଅନେକ ସାହିତ୍ୟ ଗ୍ରନ୍ଥ ରଚନା ହୋଇଅଛି ଓ ଦିନ ୨ ରଚନା ବୃଦ୍ଧି ହେଉଅଛି । ଅତଏବ ଓଡ଼ିଶାର ଲୋକଙ୍କୁ ବଳପୂର୍ବକ ବଙ୍ଗଳା ଶିକ୍ଷାଦେଲେ ଗବର୍ଣ୍ଣମେଣ୍ଟ ସେହିପ୍ରକାର ଅନ୍ୟାୟ କରନ୍ତେ କି ଯେମନ୍ତ ପ୍ରସିଆ ଗବର୍ଣ୍ଣମେଣ୍ଟ ଉପରେ ଡଚଭାଷା ହୋଲଷ୍ଟିନରେ ପ୍ରବଳ ବାଧ୍ୟରେ ଅନ୍ୟାୟାଚରଣ କରିଥିଲେ ।”

( ୫ମ ଭାଗ, ୩ । ୧୨ । ୧୮୭୦, ସଂଖ୍ୟା ୪୭ )

୭୩ । ପୁରୁଷୋତ୍ତମର ସଂସ୍କୃତ ବିଦ୍ୟାଳୟ ।

ପାଠକମାନଙ୍କ ମଧ୍ୟରୁ ଅନେକଙ୍କୁ ଜଣାଥିବ ଯେ ପଶ୍ଚିମ ଦେଶ ବଲରାମପୁର ମହାରାଜା ଆପଣା ବ୍ୟୟରେ ପୁରୁଷୋତ୍ତମଠାରେ ଗୋଟିଏ ସଂସ୍କୃତ ବିଦ୍ୟାଳୟ ସ୍ଥାପନକରି ପଣ୍ଡିତ ହରିହର ଦାସଙ୍କୁ ତହିଁର ଭାର ଦେଇଅଛନ୍ତି । ପଣ୍ଡିତବର ବିଦ୍ୟାଳୟର ପ୍ରଧାନ ଶିକ୍ଷକରୂପେ କାର୍ଯ୍ୟ କରନ୍ତି ଓ ବିଦ୍ୟାଳୟର ଉନ୍ନତି କାରଣ ସର୍ବଦା ଯତ୍ନବାନ୍ ଅଛନ୍ତି ଏ ବିଦ୍ୟାଳୟରେ ଅନେକ ବାଳକ ବୃତ୍ତିପାଇ ସଂସ୍କୃତ ବିଦ୍ୟାଭ୍ୟାସ କରନ୍ତି ଓ ଏଥିମଧ୍ୟରେ ଯାହାଙ୍କର ଇଂରାଜୀ ପଢ଼ିବାର ଇଚ୍ଛା ସେମାନେ ସ୍କୁଲରେ ଏଠାରେ ଇଂରାଜୀ ମଧ୍ୟ ପାଠକରନ୍ତି । କ୍ରମଶଃ ବିଦ୍ୟାଳୟଟି ଉତ୍ତମରୂପେ ଚଳିବାରୁ ଏଥର ଏହାକୁ ଚିରସ୍ଥାୟୀ କରିବାର ଉଦ୍ୟମ ହେଉଅଛି ରାଜା ବାର୍ଷିକ ନଗଦ ଟଙ୍କା ପଠାନ୍ତି ମାତ୍ର ତହିଁ ପରିବର୍ତ୍ତରେ ଯେବେ ସେ କମ୍ପାନୀ କାଗଜ କ୍ରୟ କରିଦିଅନ୍ତି ତେବେ ତହିଁର ସୁଧରୁ ଚିରକାଳ ବିଦ୍ୟାଳୟର ବ୍ୟୟ ନିର୍ବାହ ହେବ ଓ ତାହାଙ୍କର ନାମ ମଧ୍ୟ ଚିରକାଳ ପାଇଁ ଦେଦୀପ୍ୟମାନ ରହିବ । ଏ ବିଷୟର ପତ୍ର ତାହାଙ୍କ ନିକଟକୁ ଯିବାର ଆମ୍ଭେମାନେ ଶୁଣୁଅଛୁଁ ଓ ଭରସା ହେଉଅଛି ଯେ ରାଜା ଏଥିରେ ସମ୍ମତ ହେବେ । କାରଣ ଆପଣା ମନରୁ ସେ ଯେଉଁ ସଦନୁଷ୍ଠାନ ଆରମ୍ଭ କରିଅଛନ୍ତି ତାହା କଦାଚ ଲୋପ କରିବାକୁ ତାହାଙ୍କ ଇଚ୍ଛା ହେବନାହିଁ ।

ପୁରୁଷୋତ୍ତମ ହିନ୍ଦୁମାନଙ୍କର ଗୋଟିଏ ପ୍ରଧାନ ତୀର୍ଥସ୍ଥାନ ଅଟଇ

ଓ ସଂସ୍କୃତବିଦ୍ୟା ହିନ୍ଦୁଧର୍ମର ମାର୍ଗ ସ୍ୱରୂପ ଅଟେ ଅତଏବ ଯେମନ୍ତ କାଶୀ ଓ ନବଦ୍ୱୀପରେ ଏ ଭାଷାର ଉନ୍ନତି ହେଉଅଛି ଏଠାରେ ସେହିପରି ହେଉ ଏହା ସମସ୍ତେ ଆଶାକରିବେ ବିଶେଷରେ ଓଡ଼ିଶା ରାଜାଙ୍କ ପରାକ୍ରମ ସମୟରେ ଏଠାରେ ଏ ଭାଷାର ବିଶେଷ ଚର୍ଚ୍ଚା ଥିଲା ଓ ସ୍ମୃତିମଣ୍ଡପର ଗୌରବାନ୍ୱିତ ନାମ ଅଦ୍ୟାପି ଲୋପ ପାଇନାହିଁ ତେବେ ଓଡ଼ିଶା ନିର୍ଦ୍ଧନ ଦେଶ ହେବାରୁ ଏଠାରେ ଏ ବିଦ୍ୟାର ଉନ୍ନତି ସାଧନ ଏଣିକି ହୋଇପାରୁ ନାହିଁ । ପଣ୍ଡିତ ଯେମନ୍ତ ଉଦ୍‌ଯୋଗ କରି ଏଠାରେ ସଂସ୍କୃତ ବିଦ୍ୟାଳୟ ସ୍ଥାପନ କରିଅଛନ୍ତି ତାହା ପ୍ରଶଂସନୀୟ ଓ ତଦ୍ଦ୍ୱାରା ଅନେକ ଉପକାରର ସମ୍ଭାବନା ।

ବଲରାମପୁର ରାଜାଙ୍କ ବଦାନ୍ୟତାରୁ ଏ ବିଦ୍ୟାଳୟଟି ଚିରସ୍ଥାୟୀ ହେଲେ ମଧ୍ୟ ଏଥିର ଆହୁରି ଗୋଟିଏ ଅଭାବ ରହି ଯାଉଅଛି ତାହା ଏହି ଯେ ଏଠାରେ ସଂସ୍କୃତ ପୁସ୍ତକାଳୟ ନାହିଁ ସଂସ୍କୃତ ବିଦ୍ୟାଳୟ ସଙ୍ଗେ ସଂସ୍କୃତ ପୁସ୍ତକାଳୟ ଭାରି ପ୍ରୟୋଜନ ତାହା ନହିଲେ ଛାତ୍ରମାନେ ନିଜଧନରୁ ସବୁପୁସ୍ତକ କ୍ରୟକରି ପଢ଼ିପାରିବେ ନାହିଁ ଓ କୌଣସି ବିଷୟ ବୁଝିବାକୁ ଚେଷ୍ଟାକଲେ ଉପଯୁକ୍ତ ପୁସ୍ତକ ନପାଇ ନୈରାଶ୍ୟ ହେବେ ବିଶେଷତଃ ଯେଉଁଠାରେ ସଂସ୍କୃତଚର୍ଚ୍ଚା ରହିବାର ପ୍ରୟୋଜନ ସେଠାରେ ଉକ୍ତ ଭାଷାର ନାନା ପୁସ୍ତକ ସଂଗ୍ରହ କରିବାର ଉଚିତ । ସବୁ ପୁସ୍ତକ ଥିଲେ ଯାହାର ଯେଉଁ କଥାରେ ସନ୍ଦେହ ହେବ ତତ୍‌କ୍ଷଣାତ୍ ତାହା ଖଣ୍ଡନ ହୋଇ ପାରିବ । ଏହି ସବୁ ବିବେଚନାରେ ସଂସ୍କୃତ ବିଦ୍ୟାଳୟ ସଙ୍ଗେ ସଂସ୍କୃତ ପୁସ୍ତକାଳୟ ରଖିବାର ଆବଶ୍ୟକ ଓ ସେଥିରେ ଅନ୍ୟ ପୁସ୍ତକମାନ ରହିଲେ ଆହୁରି ମଙ୍ଗଳ ମାତ୍ର ଏଥିପାଇଁ ବିଦ୍ୟାଳୟ ସ୍ଥାପନକର୍ତ୍ତାଙ୍କୁ କହିବାର ଅନୁଚିତ କାରଣ ଏକଜଣ ଉପରେ ସବୁ ଭରଦେବା ଭଲ କଥାର ନାହିଁ ଯେବେ ଅସ୍ମଦ୍ଦେଶୀୟ ରାଜା ଓ ଜମିଦାର ଓ ସମ୍ଭ୍ରାନ୍ତ-ବ୍ୟକ୍ତିମାନେ କିଛି ୨ ଦେବାଦେବେ ତେବେ ଅନାୟାସରେ ଏ କଳ୍ପନା ସିଦ୍ଧହୋଇ ପାରିବ ଆପାତତଃ ଏକସହସ୍ର ଟଙ୍କା ହେଲେ କାର୍ଯ୍ୟାରମ୍ଭ ହେବ । କ୍ରମେ ଏହା ବୃଦ୍ଧି ହୋଇପାରେ । ରାଜାମାନେ ଓ ଧନୀମାନେ ତୀର୍ଥସ୍ଥାନକୁ ଯାଇ କେତେ ଅର୍ଥ ବ୍ୟୟ କରନାହାନ୍ତି ସେହି ତୀର୍ଥସ୍ଥାନରେ ହିନ୍ଦୁମାନଙ୍କର ଧର୍ମର ମୂଳସ୍ୱରୂପ ଯେଉଁ ସଂସ୍କୃତ ପୁସ୍ତକ ସେଥିରୁପାଇଁ କିଛିଦାନ କଲେ କି ତାହା ବ୍ୟର୍ଥହେବ । ନା ସେରୂପ କଦାଚ ନୁହଇ । ଯେଉଁମାନେ ପୁସ୍ତକାଳୟ ପାଇଁ ଦାନ କରିବେ ସେମାନେ ଅନ୍ଧକୁ ଚକ୍ଷୁଦାନ ଦେବାର ଫଳ ପାଇବେ ସନ୍ଦେହ ନାହିଁ ।

## ( ୭ ଭାଗ, ୩୦ । ୯ । ୧୮୭୧, ସଂଖ୍ୟା ୩୮ )

ବିଜ୍ଞାପନ

୨୪ । କଟକ ହିନ୍ଦୁ ବାଳିକା ବିଦ୍ୟାଳୟ

× × × ×
× × × × ×

ଯେ କାରଣ ହେଉ, ଅନ୍ୟାନ୍ୟ ଦେଶରେ ସ୍ତ୍ରୀଶିକ୍ଷା ବିଷୟରେ ଯେ ଯତ୍ନ ହୋଇଛି, ଦୌର୍ଭାଗ୍ୟ କ୍ରମେ ଆମ୍ଭମାନଙ୍କ ଉତ୍କଳ ଦେଶରେ କାହାରି ତଦ୍ ବିଷୟରେ କୌଣସି ଆଗ୍ରହ ଥିବାର ଦେଖାଯାଏ ନାହିଁ । ହେତୁକ କରଣ ଖଣ୍ଡାୟତ ପ୍ରଭୃତ କତିପୟ ଶ୍ରେଣୀ ମଧ୍ୟରେ ତାହାର ଏକ ପ୍ରକାର ଚଳନ ଅଛି । ପ୍ରତି ପରିବାର ମଧ୍ୟରେ ଅନ୍ତତଃ ଦୁଇ ଏକଜଣ ସ୍ତ୍ରୀଲୋକ ଯେ ଲେଖିବାର ଓ ପଢ଼ିବାର ଶିକ୍ଷା କରନ୍ତି ତଦ୍ ବିଷୟରେ ସନ୍ଦେହାଭାବ । ଫଳତଃ ଏ ଦେଶରେ ବହୁକାଳାବଧି ସ୍ତ୍ରୀଶିକ୍ଷାର ବୀଜରୋପିତ ହୋଇଅଛି । ବର୍ତ୍ତମାନ ତଦବିଷୟରେ ନୂତନ ଉଦ୍ୟମ କରିବାକୁ ହେବନାହିଁ । ତେବେ ତର୍କନିତ ଶୁଭଫଳ ଅଦ୍ୟାବଧି ନ ଫଳିବାର କାରଣ ଏହି ଯେ ପ୍ରକୃତ ପଦ୍ଧତି କ୍ରମେ ଶିକ୍ଷା ଦିଆଯାଏ ନାହିଁ । ପାଠକମାନେ ଶୁଣି ଆନନ୍ଦିତ ହେବେ ଯେ ବର୍ତ୍ତମାନ କଟକ ନଗରରେ କତିପୟ କୃତବିଦ୍ୟ ଭଦ୍ର ଲୋକମାନଙ୍କ ଯତ୍ନରେ ହିନ୍ଦୁ ବାଳିକାମାନଙ୍କ ବିଦ୍ୟାଶିକ୍ଷା କରିବା ପାଇଁ ଗୋଟିଏ ବିଦ୍ୟାଳୟ ସ୍ଥାପିତ ହୋଇଅଛି । ଏହା ଆପାତତଃ ସ୍ୱତନ୍ତ୍ର ଗୃହ ନିର୍ମାଣ ନହେବା ପର୍ଯ୍ୟନ୍ତ ବାଲୁବଜାରସ୍ଥ ଶ୍ରୀଯୁକ୍ତ ବାବୁ ଅବିନାଶଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ବସାରେ ହେଉଅଛି । ଶୁଣିଲୁ ଯେ ୧୩ । ୧୪ ଜଣ ଛାତ୍ରୀ ସେଠାରେ ପଢ଼ୁଅଛନ୍ତି । ବିଦ୍ୟାଳୟଟି ଅଳ୍ପଦିନ ସ୍ଥାପିତ ହେବା ପ୍ରଯୁକ୍ତ ଏ ବିଷୟଟି ସର୍ବସାଧାରଣଙ୍କୁ ଜଣାନାହିଁ । ଯାହାହେଉ ଆମ୍ଭମାନଙ୍କ ନିତାନ୍ତ ଇଚ୍ଛା ଯେ ବିଦ୍ୟାଳୟଟି ଚିରଜୀବୀ ହେଉ ଏବଂ ନଗରସ୍ଥ ଭଦ୍ର ଲୋକମାନେ ସ୍ୱ ସ୍ୱ କନ୍ୟାସନ୍ତାନ ବିଦ୍ୟାଶିକ୍ଷାର୍ଥେ ସେଠାକୁ ପଠାଇ ବିଦ୍ୟାଳୟର ଉନ୍ନତି ସାଧନ ଏବଂ ଦେଶର ମହତ୍ତ୍ୱ ଅଭାବ ଦୂର କରନ୍ତୁ ।

## ( ୭ଷ୍ଠ ଭାଗ, ୧୮ । ୧୧ । ୧୮୭୧, ସଂଖ୍ୟା ୪୪ )

୨୫ । ବାଳିକା ବିଦ୍ୟାଳୟର ପାରିତୋଷିକ ଦାନ ।

ପାଠକମାନେ ଅବଗତ ହୋଇଥିବେ ଯେ ଏ ନଗରରେ ହିନ୍ଦୁ

ବାଳିକା ବୃତ୍ତିଶାଳୀ ବୋଲି କୋଟିଏ ବିଦ୍ୟାଳୟ ସ୍ଥାପିତ ହୋଇଅଛି ବିଦ୍ୟାଳୟଟି ଆରମ୍ଭ ହେବାର ପ୍ରାୟ ତିନିବର୍ଷ ହେଲାଣି ଏବଂ ତାହା ସମ୍ପୂର୍ଣ୍ଣରୂପେ ଏହି ନଗର ନିବାସୀ କେତେକ ଭଦ୍ର ଲୋକଙ୍କ ଦାତବ୍ୟତା ଉପରେ ନିର୍ଭର କରଇ । ସ୍ତ୍ରୀ ଶିକ୍ଷା ପ୍ରଚଳିତ କରିବା ବିଦ୍ୟାଳୟର ଉଦ୍ଦେଶ୍ୟ ଅଟଇ ଓ ସମ୍ପ୍ରତି ତହିଁରେ ଜଣେ ଶିକ୍ଷକ ଓ ଦାସୀ ନିଯୁକ୍ତ ଥାଇଁ କାର୍ଯ୍ୟ ନିର୍ବାହ କରନ୍ତି ଅର୍ଥାତ୍ ଶିକ୍ଷକ ଶିକ୍ଷା ଦିଅନ୍ତି ଓ ଦାସୀ ପିଲାମାନଙ୍କୁ ବିଦ୍ୟାଳୟରେ ଉପସ୍ଥିତ କରି ପଠନାନ୍ତେ ତାହାଙ୍କ ଘରେ ଛାଡ଼ିଦେଇ ଆସିବା ଓ ବିଦ୍ୟାଳୟର ଅନ୍ୟାନ୍ୟ ଆବଶ୍ୟକୀୟ କାର୍ଯ୍ୟ କରଇ । ବିଦ୍ୟାଳୟର ତତ୍ତ୍ୱାବଧାରକ ବର୍ତ୍ତମାନ ବାବୁ ଅବିନାଶ ଚନ୍ଦ୍ର ଗୃହନ୍ତୁର୍ଯ୍ୟା ଅଛନ୍ତି ଓ ତାହାଙ୍କ ଆହ୍ୱାନମତେ ଗତ ଶନିବାର କଟକ ନର୍ମାଲ ବିଦ୍ୟାଳୟ ଗୃହରେ ବାଳିକାମାନଙ୍କୁ ବାର୍ଷିକ ପାରିତୋଷିକ ପ୍ରଦାନ କାରଣ ସଭା ହୋଇଥିଲା । ଯଦ୍ୟପି କି ଦେଶୀୟ ବିଦେଶୀୟ ଅନେକ ଲୋକଙ୍କୁ ସମ୍ପାଦକ ମହାଶୟ ଆମନ୍ତ୍ରଣ କରିଥିଲେ ମାତ୍ର ଦୁଃଖର ବିଷୟ ଯେ ଅତ୍ୟଳ୍ପ ଲୋକ ତାହାଙ୍କ ଅନୁରୋଧ ରକ୍ଷାକରି ସଭାକୁ ଆଗମନ କଲେ । ଇଂରାଜ ସମ୍ପ୍ରଦାୟ ମଧ୍ୟରୁ ଏକମାତ୍ର କମିଶ୍ନର ସାହେବ ଆସିଥିଲେ ଓ ବଙ୍ଗ ଦେଶୀୟଙ୍କ ମଧ୍ୟରୁ କେବଳ ଇଂରାଜୀ ଓ ନର୍ମାଲ ସ୍କୁଲର ଶିକ୍ଷକମାନେ ଉପସ୍ଥିତ ଥିଲେ । ଉତ୍କଳୀୟ ଶିକ୍ଷକମାନଙ୍କୁ ଛାଡ଼ି କେବଳ ବାବୁ ଜଗନ୍ମୋହନ ରାୟ ଓ ବାବୁ କୈଳାସ ଚନ୍ଦ୍ର ଘୋଷ ଓ ଚୌଧୁରୀ ପ୍ରହ୍ଲାଦ ମହାପାତ୍ର ଏବଂ ଆଉ କେତେ ଏତଦ୍ଦେଶୀୟ ଭଦ୍ରଲୋକ ଉପସ୍ଥିତ ହୋଇଥିଲେ । ସଭାଗୃହଟି ସୁସଜ୍ଜିତ କରିବା ବିଷୟରେ ଯଥାବିହିତ ଅନୁଷ୍ଠାନ ହୋଇଥିଲା । ଶ୍ରୀଯୁକ୍ତ କମିଶ୍ନର ସାହେବ ସଭାପତିଙ୍କ ଆସନ ଗ୍ରହଣ କରିଥିଲେ ଓ ତାହାଙ୍କ ସମ୍ମୁଖରେ ଦୁଇଖଣ୍ଡ ବେଞ୍ଚରେ ୧୨ଜଣ ବାଳିକା ବସିଥିଲେ । ଆମ୍ଭେମାନେ ଅବଗତ ହେଲୁଁ ଯେ ସବସୁଦ୍ଧା ୧୪ଜଣ ବାଳିକା ସେଠାରେ ପାଠ କରନ୍ତି ମାତ୍ର ୨ଜଣ ଅନୁପସ୍ଥିତ ଥିଲେ ।

× × ×

## ( ୬ଷ୍ଠ ଭାଗ, ୯ । ୧୨ । ୧୮୭୧, ସଂଖ୍ୟା ୪୨ )

୭୨ । ଜରିବ କାର୍ଯ୍ୟ ଶିଖିବାର ନୂତନ ବନ୍ଦୋବସ୍ତ ।

ଓଡ଼ିଶାସ୍ଥ ଇଂରାଜୀ ସ୍କୁଲସବୁ ଓ ଅନ୍ୟାନ୍ୟ ଶିକ୍ଷାର୍ଥୀମାନଙ୍କ ନିମିତ୍ତ ଗବର୍ଣ୍ଣମେଣ୍ଟ ମାସିକ ୧୦୦୲ଙ୍କା ବେତନରେ ଜଣେ ଜରିବ ଇଞ୍ଜିନିୟରିଂ ବିଷୟ ଶିକ୍ଷାଦେବା ସକାଶେ ଏକଜଣ ଶିକ୍ଷକ ନିଯୁକ୍ତ ହେବାର ମଞ୍ଜୁର କରିଅଛନ୍ତି । ସେପ୍ଟେମ୍ବର ଅକ୍ଟୋବର ଓ ନବେମ୍ବର ମାସ ବାଲେଶ୍ୱରରେ; ଡିସେମ୍ବର, ଜାନୁଆରୀ ଓ

ଫିବୃଆରୀ ଏବଂ ପୁନରାୟୁ ଜୁନ୍, ଜୁଲାଇ ଓ ଅଗଷ୍ଟ କଟକରେ ଏବଂ ମାର୍ଚ୍ଚ ଅପ୍ରେଲ ଓ ମଇମାସ ପୁରୁଷୋତ୍ତମରେ ଉକ୍ତ ଶିକ୍ଷକ ଶିକ୍ଷା ଦେବେ । କଟକ ନର୍ମାଲ ସ୍କୁଲ ଓ ଓଡ଼ିଶାର ତିନି ଇଂରାଜୀ ସ୍କୁଲର ଉଦବୃତ୍ତ ଟଙ୍କାରୁ ତାହାଙ୍କର ବେତନ ଓ ଗମନାଗମନ ଓ ବାକି ଖର୍ଚ୍ଚ ଦିଆଯିବ, ସେ ଜରିବ ଓ କଣ୍ଟା ଇଣ୍ଡିକିଯୁରଂ ଶିଖାଇବେ । ଏକାର୍ଯ୍ୟ ନିମନ୍ତେ କୌଣସି ବ୍ୟକ୍ତିକୁ ମନୋନୀତ କରିବାର ଆଦେଶ ଇନସ୍ପେକ୍ଟର ସାହେବଙ୍କୁ ଅର୍ପିତ ହୋଇଅଛି ।

ଇଂରାଜୀ ଧାରାରେ ଜରିବ କାର୍ଯ୍ୟ ଶିକ୍ଷିବାର ଆବଶ୍ୟକତା ଲୋକମାନେ ଅନେକ ଦିନୁ ବୁଝି ପାରଥିଲେ ମାତ୍ର ଗବର୍ଣ୍ଣମେଣ୍ଟ ବର୍ତ୍ତମାନକୁ ବ୍ୟୟ ଲୁଣ୍ଠିତ ହେବାର ସେଥିର କୌଣସି ଉପାୟ ହୋଇପାର ନଥିଲା । ବଲଇ ଭାଗ୍ୟରେ ଶିକ୍ଷା ଛିଣ୍ଡି ଲି ପର ବର୍ତ୍ତମାନ ଏ ନୂତନ ବନ୍ଦୋବସ୍ତ ହଠାତ୍ ହୋଇଅଛି । ଏଥିର ମୂଳ କାରଣ ଏକପ୍ରକାର ଆମ୍ଭ କମିଶ୍ନର ରେବନଶା ସାହେବ ଅଟନ୍ତି । ଶ୍ରୀଯୁକ୍ତ ବାବୁ ନନ୍ଦ କିଶୋର ଦାସ ଡେପୁଟୀ କଲେକ୍ଟର କର୍ମରେ ନିଯୁକ୍ତ ହେବାରୁ ନୂତନ ନିୟମାନୁସାରେ ତାଙ୍କୁ ଅନ୍ୟାନ୍ୟ ବିଷୟ ସଙ୍ଗେ ଜରିବରେ ପରୀକ୍ଷା ଦେବାକୁ ହୁଅନ୍ତା ମାତ୍ର ଶେଷୋକ୍ତ ବିଷୟ ଶିଖିବାର କୌଣସି ସୁବିଧା ଏଠାରେ ନଥିବାରୁ ଶ୍ରୀଯୁକ୍ତ କମିଶ୍ନର ସାହେବ ତାଙ୍କୁ ପରୀକ୍ଷାରୁ ମୁକ୍ତ କରିବା ନିମିତ୍ତ ଅନୁରୋଧ କଲେ । ଗବର୍ଣ୍ଣମେଣ୍ଟ ତାଙ୍କୁ ପରୀକ୍ଷାରୁ ମୁକ୍ତ ନକରି ଦୁଇବର୍ଷ ଅବକାଶ ଦେଲେ ଓ ଶିକ୍ଷା ବିଭାଗର ଡାଇରେକ୍ଟରଙ୍କୁ ଲେଖିଲେ ଯେ କି ଉପାୟରେ ଜରିବ ଓ ଇଣ୍ଡିକିଯୁରଂ ଶିଖିବାର ସୁବିଧା ଓଡ଼ିଶାରେ ହୋଇପାରେ ତାହା ବିବେଚନା କରିବେ । ଏଥିରେ ଓଡ଼ିଶାର ସ୍କୁଲ ଇନସ୍ପେକ୍ଟରଙ୍କ ପରାମର୍ଶ ଅନୁସାରେ ଉପରଲିଖିତ ବନ୍ଦୋବସ୍ତ ଗବର୍ଣ୍ଣମେଣ୍ଟ ମଞ୍ଜୁର କରିଅଛନ୍ତି ।

× × ×

## ( ୬ଷ୍ଠ ଭାଗ, ୨୩ । ୧୨ । ୧୮୭୧, ସଂଖ୍ୟା ୪୯ )

୭୨ । ସାପ୍ତାହିକ ସମ୍ବାଦ

ଇଣ୍ଡିଆନ ଅବଜର୍ଭରରୁ ଅବଗତ ହେଲୁଁ ଯେ ମାନ୍ଦ୍ରାଜର ଶିକ୍ଷା ବିଭାଗର ଡାଇରେକ୍ଟର ପାଉଲ ସାହେବ ବିଶ୍ୱବିଦ୍ୟାଳୟର ପରୀକ୍ଷାରୁ ଉତ୍କଳ ଭାଷାକୁ ଉଠାଇ ଦେବାପାଇଁ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଅଛନ୍ତି । ସେ ଲେଖନ୍ତି ଯେ ଓଡ଼ିଆମାନଙ୍କୁ ଯେବେ ତେଲଙ୍ଗୀ ଭାଷା ଶିକ୍ଷା କରିବାକୁ ବାଧ୍ୟ କରାଯାଏ ତାହା ହେଲେ ଅନେକ ଉପକାର ହେବ କାରଣ ତେଲଙ୍ଗ ଭାଷାରେ ପୂର୍ବ କାଳର ସାହିତ୍ୟ

ପୁସ୍ତକ ଅଛି, ଓଡ଼ିଆ ଅର୍ଥ ଅସଭ୍ୟ ଭାଷା ଅଟଇ ଓ ଏଥିରେ ଯେଉଁ ଅଲ୍ପ ପରିମାଣ ପୁସ୍ତକ ଅଛି ତାହା କୌଣସି କର୍ମର ନୁହଇ । ବଙ୍ଗଳା ଡାଇରେକ୍ଟର ପ୍ରାୟ ଏହି ପ୍ରକାର କଥାମାନ ଏକ କାଳରେ କହି ବଙ୍ଗଳା ଭାଷା ପାଇଁ ଯତ୍ନ ପାଇଥିଲେ । କେବଳ ମଧ୍ୟପ୍ରଦେଶର ଡାଇରେକ୍ଟର ଏ ବାଟରେ ଗୂଲ ନାହାନ୍ତି ।

---

(୭ମ ଭାଗ, ୧୦ । ୧ । ୧୮୭୨, ସଂଖ୍ୟା ୨)

୭୮ । ବିଶ୍ୱବିଦ୍ୟାଳୟ ପରୀକ୍ଷା ଫଳ

ଗତ ସପ୍ତାହରେ ଆମ୍ଭେମାନେ ଏ ଫଳ ବିଷୟରେ ଯାହା ବକ୍ତବ୍ୟ ପ୍ରକାଶ କରିଅଛୁଁ ସମ୍ପ୍ରତି ଯେଉଁ ଛାତ୍ରମାନେ କୃତକାର୍ଯ୍ୟତା ଲାଭ କରିଅଛନ୍ତି ସେମାନଙ୍କ ନାମ ସହିତ ଅନ୍ୟ କେତେକ କଥାର ଉଲ୍ଲେଖ କରୁଅଛୁଁ, ଯଥା ।

ଫାଷ୍ଟ ଆର୍ଟସ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରଗଣ

କଟକ ହାଇସ୍କୁଲ — ଦ୍ୱିତୀୟ ଶ୍ରେଣୀ

ଭଗବତୀ ଚରଣ ଚଟ୍ଟର୍ଯ୍ୟା
କ୍ଷିପ୍ର ଚରଣ ଚଟ୍ଟର୍ଯ୍ୟା
ବଳରାମ ଦାସ
ଚତୁର୍ଭୁଜ ପଟ୍ଟନାୟକ
ମଧୁସୂଦନ ରାୟ
ଯେ. ଏସ. ରାଉତ

ପ୍ରବେଶିକା ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରଗଣ

କଟକ ହାଇସ୍କୁଲ — ଦ୍ୱିତୀୟ ଶ୍ରେଣୀ

ଶିବପ୍ରସାଦ ବସୁ
ଭୁବନେଶ୍ୱର ଦାସ
ରାମକୃଷ୍ଣ ମହାପାତ୍ର
କୃଷ୍ଣ ଚନ୍ଦ୍ର ମହାନ୍ତି
ନାରାୟଣ ପ୍ରସାଦ ମିତ୍ର

ତୃତୀୟ ଶ୍ରେଣୀ

ସାରଦା ପ୍ରସାଦ ଗୃହୁଯ୍ୟା
ହେମଚନ୍ଦ୍ର ଘୋଷ
ଯଦୁନାଥ ରାୟ — ପୁରୀ
ମଥୁରା ଲାଲ ସେନ — ବାଲେଶ୍ୱର

କଟକର ପରୀକ୍ଷା ଭଲ ହୋଇଥିଲେହେଁ ଯେବେ ପ୍ରବେଶିକା ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଦୁଇ ଏକଜଣ ସ୍ଥାନ ପାଇଥାନ୍ତେ ତେବେ ଅତି ଆନନ୍ଦଜନକ ହୋଇଥାନ୍ତା । ଯାହା ହୋଇଅଛି ତହିଁରେ ପୁଣି ବଙ୍ଗାଳୀ ଓ ଓଡ଼ିଆ ଛାତ୍ରମାନେ ସମାନ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବାରୁ ଯେଉଁମାନେ ବୋଲୁଥିଲେ ଯେ ଓଡ଼ିଆଙ୍କ ବୁଦ୍ଧିବୃତ୍ତି ସ୍ୱାଭାବିକ ମନ୍ଦ ସେମାନେ ଲଜ୍ଜିତ ହେବେ ଓ ଜାଣିପାରିବେ ଯେ ସ୍ୱଭାବରେ କିଛି ଅନ୍ତର ନାହିଁ, ଶିକ୍ଷା ପାଇଲେ ସମାନ ରୂପେ ଫଳ ଦେଖାଇବେ ।

ପୁରୀ ଓ ବାଲେଶ୍ୱର ପକ୍ଷରେ ଫଳ ଉତ୍ତମ ହୋଇନାହିଁ । ପ୍ରଥମ ସ୍ଥାନରୁ ଦୁଇ ଓ ଶେଷସ୍ଥାନରୁ ତିନି ବାଳକ ଆସିଥିଲେ । ତହିଁରୁ ଗୋଟିଏ ଲେଖାଏଁ ନିମ୍ନ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହେଲେ । ଆଉ କେତେ କାଳରେ ଏ ନଗର ବାସୀମାନେ ବିଦ୍ୟାର ମର୍ଯ୍ୟାଦା ବୁଝିପାରି ପିଲମାନଙ୍କୁ ଶିକ୍ଷା ଦେବାକୁ ଯତ୍ନ କରିବେ । ଅଧିକ ଛାତ୍ର ପଢୁଥିଲେ ଅଧିକ ଆସୁଥାନ୍ତେ କିନ୍ତୁ ଆମ୍ଭେମାନେ ଶୁଣୁଅଛୁଁ ଯେ ଏସବୁ ସ୍ଥାନରେ ବାଳକମାନେ ଶୀଘ୍ର କର୍ମପାଇ ବିଦ୍ୟାଳୟ ତ୍ୟାଗ କରନ୍ତି ଓ ହାକିମମାନେ ମଧ୍ୟ ଅନ୍ୟ ଲୋକ ଅଭାବରେ ବିଦ୍ୟାଳୟରୁ ଛାତ୍ର ନନେଇ ନବାହ ହୋଇ ପାରନ୍ତି ନାହିଁ । ଏଥିରେ ପରୀକ୍ଷା ପ୍ରତି ଛାତ୍ରଙ୍କର ଆଦର ରହଇ ନାହିଁ । ପକ୍ଷାନ୍ତରେ ଛାତ୍ରମାନେ ଶୀଘ୍ର

ସରକାରୀ କର୍ମ ପାଇବାର ଦେଖି ବହୁତ ଲୋକ କାହିଁକି ଆପଣା ୨ ସନ୍ତାନଙ୍କୁ ଶିକ୍ଷା ଦେବା ନିମିତ୍ତ ବିଦ୍ୟାଳୟକୁ ପଠାନ୍ତି ନାହିଁ ସହଜରେ ବୁଝା ଯାଉନାହିଁ । ଯାହାହେଉ ଲୋକମାନେ ଯେବେ ନିତାନ୍ତ ଦୁଃଖି ଓ ଅପେକ୍ଷାକୃତ ମୋଟ ବୁଦ୍ଧିର ଛାତ୍ରଙ୍କୁ କର୍ମ ଦେବାକୁ ଦେଖି ଯାଇ ଭଲ ଭଲ ଛାତ୍ରଙ୍କୁ ଏ ଜିଲ୍ଲାରେ ସମ୍ଭବ ସର୍ବୋଚ୍ଚ ପରୀକ୍ଷା ପର୍ଯ୍ୟନ୍ତ ପାଠ କରିବା କାରଣ ଛାଡ଼ି ଦିଅନ୍ତେ ତାହାହେଲେ ପୁରୀ ବାଲେଶ୍ୱରରୁ ଅଧିକ ପରୀକ୍ଷାର୍ଥୀ ଆସନ୍ତେ ସନ୍ଦେହ ନାହିଁ ଓ ଏ ନିୟମରେ ପରିଶେଷରେ ଉତ୍ତମ ଫଳ ହୁଅନ୍ତା ।

୭୯ । ଓଡ଼ିଶାରେ ଗୋଟିଏ କଲେଜର ପ୍ରୟୋଜନ ।

କଟକ ହାଇସ୍କୁଲ ଗତ ପରୀକ୍ଷାରେ ଯେ ଫଳ ପ୍ରାପ୍ତ ହୋଇଅଛି ତାହା ଦେଖି ମନ ଯେମନ୍ତ ଆନନ୍ଦିତ ହେଉଅଛି ସେହି ପ୍ରାୟ ପୁଣି ବିଷାଦରେ ନିସ୍ତେଜ ହେଉଅଛି । ବାସ୍ତବରେ ତୁଳନାକରି ଦେଖିଲେ ଏ ଫଳ ଅଧିକ ଶୋକର କାରଣ ହୋଇଅଛି । ଫାଷ୍ଟ ଆର୍ଟସ ପରୀକ୍ଷାରେ ଜଣେ ଛାତ୍ର ଉପସ୍ଥିତ ହୋଇଥିଲେ ତହିଁ ମଧ୍ୟରୁ ଜଣେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଏଥିରୁ ଛାତ୍ରଙ୍କ ତୀକ୍ଷ୍ଣ ବୁଦ୍ଧିର ପରିଚୟ ପ୍ରାପ୍ତ ହେଉଅଛି କିନ୍ତୁ ଏହାର ପରିଣାମ କି ? ଆମ୍ଭେମାନେ ଏ ତୀକ୍ଷ୍ଣ ବୁଦ୍ଧିର କୌଣସି ଫଳ ପାଇବାକୁ ସମର୍ଥ ହେବୁନାହିଁ କାରଣ ଯେ ସମୟରେ ତଦ୍ଦ୍ୱାରା ବିଶେଷ ଉପକାର ପ୍ରତ୍ୟାଶା ଦେଖାଗଲା ଠିକ୍ ସେହି ସମୟରେ ଯତ୍ନର ତ୍ରୁଟି ଓ ଅସୁବିଧା ପ୍ରଯୁକ୍ତ ତାହା ନଷ୍ଟ ହେବାକୁ ବସିଲା । ବି: ଏ: ପରୀକ୍ଷା ପର୍ଯ୍ୟନ୍ତ ବିଦ୍ୟାଳୟରେ ଶିକ୍ଷା ପ୍ରାପ୍ତିର ଆବଶ୍ୟକ ଓ ସେ ପରୀକ୍ଷା ନହେଲେ ଅସ୍ମଦ୍ଦେଶୀୟମାନେ ଅନ୍ୟ ଦେଶୀୟ ଲୋକଙ୍କ ସଙ୍ଗେ ସମକକ୍ଷ ହୋଇପାରିବେ ନାହିଁ । ଆମ୍ଭେମାନେ ନାନାବିଧ ଅସୁବିଧା ହେତୁ ପୂର୍ବେ ଏତେଦୂର ଯାଏ ପ୍ରବେଶ ହେବାକୁ ଆଶା କରିନଥିଲୁଁ ଓ ବହୁତ ପ୍ରତିବନ୍ଧକ ଥିବା ହେତୁରୁ ମନକୁ ଏକପ୍ରକାର ପ୍ରବୋଧ ଦେଇଥିଲୁଁ । ଏଥର ସେସବୁ ଅତିକ୍ରମ କରି ଦ୍ୱାରଦେଶ ପାଖୁ ଫେରିଯିବାକୁ ପଡ଼ିଲା ଏହି ବଡ଼ ଦୁଃଖ । ଯେବେ ବିଦ୍ୟା ମନ୍ଦିରରେ ପ୍ରବେଶ ହେବାର ଆମ୍ଭମାନଙ୍କ ଭାଗ୍ୟରେ ନାହିଁ ତାହା ପୂର୍ବେ ଭଲରୂପେ ଜାଣିଥିବାରୁ ଘରେ ନିଶ୍ଚିନ୍ତ ହୋଇ ଶୋଇ ରହିଥିଲୁଁ କିନ୍ତୁ ସମ୍ପ୍ରତି ଗବର୍ଣ୍ଣମେଣ୍ଟ ଆମ୍ଭମାନଙ୍କ ହସ୍ତଧରି ଦ୍ୱାରଦେଶ ପର୍ଯ୍ୟନ୍ତ ଟାଣିଆଣି ଫେରାଇଦେବାକୁ କରୁଅଛନ୍ତି । ଏଥିରେ କେବଳ ନିଦ୍ରାସୁଖରୁ ବଞ୍ଚିତ ହେଲୁଁ ଏମନ୍ତ ନୁହଇ, ଦୋହରି ବାଟ ଚାଲି ସମୟ ଓ ଶାରୀରିକ କୁଶଳତାର ମଧ୍ୟ ବୃଥା ହାନି କଲୁଁ । ଜଣେ ଦୁଇଜଣ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ଏପରି କୋହଳିବାର ହେତୁ ନଥିଲା କିନ୍ତୁ ଏତେଗୁଡ଼ିଏ ଲୋକ ଏତେଦୂର ଯାଏ ପରିଶ୍ରମ କରି ଯେ ଉଚ୍ଚ ଶିକ୍ଷାରୁ ବଞ୍ଚିତ ହେବେ ବଡ଼ ସନ୍ତାପର ବିଷୟ ।

କଟକରେ କଲେଜ ସ୍ଥାପନ ଏ ପ୍ରାନ୍ତର ଉଦ୍ଧାର ହେବାର ଏକମାତ୍ର ଉପାୟ କିନ୍ତୁ ବର୍ତ୍ତମାନ ଭାରତ ଶିକ୍ଷାପ୍ରତି ଗବର୍ଣ୍ଣମେଣ୍ଟଙ୍କ କଠିନ ବ୍ୟବହାର ଦେଖି ମନରେ ପ୍ରତ୍ୟୟ ହେଉନାହିଁ ଯେ ଓଡ଼ିଶାରେ ଆଉ ଶିକ୍ଷାର ଉନ୍ନତି ହେବ । ତେବେ ଆମ୍ଭମାନଙ୍କର ଗୋଟିଏ ଆଶା ଏହି ଅଛି ଯେ ଓଡ଼ିଶା ବଙ୍ଗଦେଶର ଗୋଟିଏ ସୁଭା ଅଟଇ, ବଙ୍ଗଳା ଓ ବେହାର ଅନ୍ୟ ଦୁଇ ସୁଭା । ଏଥିରେ ବଙ୍ଗଳାରେ ବହୁତ କଲେଜ ଅଛି ଓ ବେହାରରେ ମଧ୍ୟ ପାଟନା କଲେଜ ଅଛି କିନ୍ତୁ ଓଡ଼ିଶା କି ଦୋଷ କରିଅଛି ଯେ ଗୋଟିଏ ସୁଦ୍ଧା କଲେଜ ପାଇବ ନାହିଁ । ବାସ୍ତବରେ ଏହାର ଗୋଟିଏ କଲେଜପ୍ରତି ଦାବୀ ହୋଇଅଛି । ଏଥିକି ଗବର୍ଣ୍ଣମେଣ୍ଟ ବ୍ରହ୍ମପୁର କଲେଜ ଉଠାଇ ଦେଇ ଯେଉଁ ଲାଭ କରିଅଛନ୍ତି ତାହାର କୌଣସି ଅଂଶ ଓଡ଼ିଶାକୁ ଦେଲେ କାର୍ଯ୍ୟ ଚଳିପାରେ । ଏସବୁ ଶୁଭଲକ୍ଷଣ ଛଡ଼ା ଆହୁରି ଦେଖାଯାଏ ଯେ ଏହିବର୍ଷ ନିମନ୍ତେ ବହୁତ ଛାତ୍ର ପରୀକ୍ଷୋତ୍ତୀର୍ଣ୍ଣ ହେବାରୁ କଲେଜ ସ୍ଥାପନର ନିତାନ୍ତ ପ୍ରୟୋଜନ ହୋଇଅଛି । ତେମନ୍ତ ମହାମାନ୍ୟବର ଗବର୍ଣ୍ଣର ଜେନେରାଲ ସାହେବ ଚିରଦୁଃଖିନୀ ଓଡ଼ିଶାର ଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦର୍ଶନ କରିବାକୁ ଶୁଭାଗମନ କରୁଅଛନ୍ତି । ଏରୂପ ସଂଯୋଗକୁ ରାଜଯୋଟକ ବୋଲି ଯାଇପାରେ । ଯେବେ ଗୋଟିଏ କଲେଜ ସ୍ଥାପନର ଆଜ୍ଞା ନହେବ ତେବେ ଏଡ଼େ ଯୋଗଟା କି ବ୍ୟର୍ଥ ଯିବ ? ଅଥବା ଆଉ ଉତ୍କୃଷ୍ଟ କାର୍ଯ୍ୟଦ୍ୱାରା ଲର୍ଡ ମହୋଦୟ ଏଠାରେ ଚିରସ୍ମରଣୀୟ ହୋଇ ନହେବେ ? ଓଡ଼ିଶାକୁ କେବେ କୌଣସି ଗବର୍ଣ୍ଣର ଜେନେରାଲ ସାହେବ ଆସିନାହାନ୍ତି ଓ କୌଣସି କାଳରେ ଯେ ଆସିବାକୁ ମନେକରିବେ ଏମନ୍ତ ଆମ୍ଭେମାନେ ସ୍ୱପ୍ନରେ ସୁଦ୍ଧା ଆଶା କରିନଥିଲୁଁ । ଯେବେ ଲର୍ଡ ମେଓ ସାହେବଙ୍କ ମନରେ ଆମ୍ଭମାନଙ୍କ ସାମାନ୍ୟ ପ୍ରଦେଶ ପଡ଼ିଲା ତେବେ କି ସେ ଏଠାରେ କୌଣସି ଚିହ୍ନ ନରଖି ତୁଚ୍ଛା ଫେରିପିବେ ଏମନ୍ତ ପ୍ରତ୍ୟୟ ହେଉନାହିଁ, ଅତଏବ ଆମ୍ଭେମାନେ ଦୃଢ଼ରୂପେ ବିଶ୍ୱାସ କରୁଅଛୁଁ ଯେ ଆମ୍ଭମାନଙ୍କର ଏ ଦୁଃଖ ତାହାଙ୍କୁ ବିଶେଷକରି ଜଣାଇଲେ ସେ ଅବଶ୍ୟ ପ୍ରତୀକାର କରିବେ ଶରୀର ପୋଷଣ ନିମିତ୍ତ ଆମ୍ଭେମାନେ ବଡ଼ କାତର ନୋହୁଁ । ଯଥେଷ୍ଟ ଧାନ ଫଳିବାରୁ ପ୍ରାଣ ଧାରଣ କରିବାକୁ ସମର୍ଥ ହେଉଅଛୁଁ ଓ ଯାହା ଅବା କଦା ? ଦୁର୍ଭିକ୍ଷର ଭୟ ଥିଲା ତାହା ନିବାରଣ ପକ୍ଷରେ ଗବର୍ଣ୍ଣମେଣ୍ଟ ନାଲଖୋଳି ଆପଣା କର୍ତ୍ତବ୍ୟ ସାଧନ କରୁଅଛନ୍ତି । ଏଥର ମାନସିକ ଦୁର୍ଭିକ୍ଷ ବଳବତ୍ତର ରୂପେ ପଡ଼ିଲା । ଏଥିର ଉଦ୍ଧାର କାରଣ କିଛି ଉପାୟ ହୋଇନାହିଁ ଅତଏବ ସର୍ବାଗ୍ରେ ଗବର୍ଣ୍ଣର ଜେନେରାଲଙ୍କ ଆସିବା ଅପେକ୍ଷାରେ ଏହି କାର୍ଯ୍ୟଟି ରହିଅଛି ।

## ( ୭ମ ଭାଗ, ୨୩ । ୩ । ୧୮୭୨, ସଂଖ୍ୟା ୧୨ )

୮୦ ଓଡ଼ିଶା ପାଇଁ ସ୍ୱତନ୍ତ୍ର ଇନସ୍ପେକ୍ଟର

ଆମ୍ଭେମାନେ ଅତି ଆନନ୍ଦ ସହକାରେ ଏଡୁକେଶନ ଗେଜେଟରୁ ଅବଗତ ହେଲୁ, ଯେ ଓଡ଼ିଶା କାରଣ ଜଣେ ସ୍ୱତନ୍ତ୍ର ଇନସ୍ପେକ୍ଟର ନିଯୁକ୍ତ କରିବା ପାଇଁ ଶିକ୍ଷାବିଭାଗର ଡାଇରେକ୍ଟର ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଅଛନ୍ତି ଓ ସେହେତୁରୁ ଏ ପ୍ରସ୍ତାବ ଗବର୍ଣ୍ଣମେଣ୍ଟଙ୍କ ଅଭିପ୍ରାୟାନୁସାରେ ଅର୍ଥାତ୍ କମିଶନରମାନଙ୍କ ସୀମା ସହିତ ଶିକ୍ଷାବିଭାଗର ସମତା ରକ୍ଷା କରିବା ଉଦ୍ଦେଶ୍ୟରେ ହୋଇଅଛି ଏଥିକରି ଭରସା ହୁଅଇ ଯେ ଶୀଘ୍ର ଏ ପ୍ରସ୍ତାବ ମଞ୍ଜୁର ହୋଇ ପାରିବ ।

× × ×

## ( ୭ମ ଭାଗ, ୨୨ । ୭ । ୧୮୭୨, ସଂଖ୍ୟା ୨୯ )

୮୧ । ଦେଶ ଭାଷାର ଉନ୍ନତି

ଓଡ଼ିଶାର ମାତୃଭାଷା ଓଡ଼ିଆ ଅଟଇ । ଯାବତୀୟ ସରକାରୀ କାର୍ଯ୍ୟାଳୟର ସମସ୍ତ କାର୍ଯ୍ୟ ଏହି ଭାଷାରେ ଚଳଇ ଏବଂ ଗବର୍ଣ୍ଣମେଣ୍ଟ ଦେଶୀୟ ଭାଷାରେ ଲୋକଙ୍କୁ ଶିକ୍ଷିତ କରାଇବା ପାଇଁ ବିଶେଷ ବ୍ୟସ୍ତ କରୁଅଛନ୍ତି ଓ କାର୍ଯ୍ୟାଳୟମାନଙ୍କରେ ଶୁଦ୍ଧଭାଷାରେ ଲିଖନ ପଠନ ହେବାପାଇଁ ଯତ୍ନବାନ ଅଛନ୍ତି । ମାତ୍ର ଦୁଃଖର ବିଷୟ ଯେ କାର୍ଯ୍ୟାଳୟର ଉପସ୍ଥ ହାକିମମାନେ କିଛି ମାତ୍ର ଏ ବିଷୟରେ ମନୋଯୋଗ କରୁନାହାନ୍ତି ଶୁଦ୍ଧାଶୁଦ୍ଧ ଏବଂ ସହଜରେ ପଢ଼ି ଅର୍ଥ ବୁଝିବା ପ୍ରତି କୌଣସି ପ୍ରକାର ଦୃଷ୍ଟି ନରଖି ସରକାରୀ କାର୍ଯ୍ୟାଳୟର ଲେଖକମାନେ ଯେ ଯାହା ଇଚ୍ଛାନୁସାରେ ଲେଖାପଢ଼ି କରନ୍ତି । ଏଥିରେ ଯେ ଦିନ ୨ ଦେଶୀୟ ଭାଷା କେଡ଼େ ନିକୃଷ୍ଟ ଅବସ୍ଥାକୁ ଯାଉଅଛି ବୋଲିବାର ବାହୁଲ୍ୟ । ମାତ୍ର ଆମ୍ଭମାନଙ୍କର ବର୍ତ୍ତମାନ ଜଜ ସାହେବ ଶ୍ରୀଯୁକ୍ତ ବ୍ରାଉନ ସାହେବ ଏ ଅନିଷ୍ଟ ନିବାରଣ ପକ୍ଷରେ ଯତ୍ନବାନ ହେବାର ଦେଖି ଅତିଶୟ ଆନନ୍ଦିତ ହେଲୁଁ । ସେ ସମ୍ପ୍ରତି କେତେଗୁଡ଼ିଏ ଓଡ଼ିଆ ଲେଖିବାର ଧାରା ନିଶ୍ଚୟ କରି ବିଜ୍ଞାପନ ଦେଇଅଛନ୍ତି ଯେ ଉକ୍ତ ନିୟମାନୁସାରେ ଯେ କେହି ଦରଖାସ୍ତ ଲେଖକ ଦରଖାସ୍ତ ଆଦି ନଲେଖିବ ତାହାକୁ କଚେରୀରେ ଲେଖାପଢ଼ା କରିବାକୁ ଅନୁମତି ଦେବେ ନାହିଁ । ତାହାଙ୍କର ଏମନ୍ତ ଇଚ୍ଛା ଯେ ଏ ନିୟମମାନ ପ୍ରଚଳିତ ହେଲା ଉତ୍ତାରୁ ସେ ଆଉ କେତେଗୁଡ଼ିଏ ନିୟମ ପ୍ରସ୍ତୁତ କରି ଶୁଦ୍ଧ ଲେଖିବାର ରୀତି ପ୍ରଚଳନ କରିବେ । ଆମ୍ଭେମାନେ ଭରସା କରୁଁ ସେ ଅନ୍ୟ ହାକିମମାନେ ଆପଣା ୨

ମହାକୁମାରେ ଶୁଦ୍ଧ ଭାଷାରେ ଲେଖାପଢ଼ାର ନିୟମ ପ୍ରଚଳ ପଥରେ ଏହାଙ୍କର ଉଦ୍ୟମ କଲନ୍ତୁ । ତାହାହେଲେ ଗବର୍ଣ୍ଣମେଣ୍ଟ ଯେତେବ୍ୟୟ କରି ଲୋକଙ୍କୁ ଶିକ୍ଷାଦାନ ଦେଉଅଛନ୍ତି । ତାହା ସାର୍ଥକ ହେବ । ଓଡ଼ଶାବାସୀମାନେ ଯେ ଆପଣା ମାତୃଭାଷା ପ୍ରତି କିଛିମାତ୍ର ମନୋଯୋଗୀ ହେଉନାହାନ୍ତି ବଡ ଶୋଚନୀୟ ବିଷୟ ଅଟଇ । ଏଥିରେ ଏମାନେ ସଭ୍ୟ ଦେଶର ଲୋକଙ୍କଠାରେ କେବଳ ନିନ୍ଦାର ଭାଜନ ହେଉଅଛନ୍ତି ।

---

( ୮ମ ଭାଗ, ୪ । ୧ । ୧୮୭୩, ସଂଖ୍ୟା ୧ )

୮୨ । ଓଡ଼ଶା ଶିକ୍ଷାବିଭାଗର ବାର୍ଷିକ ବିଜ୍ଞାପନୀ

ଓଡ଼ଶାର ଶିକ୍ଷା ବିଷୟରେ ସନ ୧୮୭୧ । ୭୨ ମସିହା ବାବତ୍ ଯେଉଁ ବାର୍ଷିକ ବିଜ୍ଞାପନୀ ସ୍କୁଲମାନଙ୍କ କମିଶନର, ଶିକ୍ଷାବିଭାଗର ଇନସ୍ପେକ୍ଟର ଦେଇଥିଲେ ତାହା ଗବର୍ଣ୍ଣମେଣ୍ଟ ଆନନ୍ଦର ସହିତ ପାଠକରି ବିଜ୍ଞାପନୀ ଲେଖକଙ୍କୁ ଯଥୋଚିତ ଧନ୍ୟବାଦ ଦେଇଅଛନ୍ତି ଓ ବିଜ୍ଞାପନୀ ସମ୍ବନ୍ଧରେ ଗବର୍ଣ୍ଣମେଣ୍ଟ ବଙ୍ଗାଳ ଯେ ସମସ୍ତ କଥା ଲେଖିଅଛନ୍ତି ତହିଁର ସାରାଂଶ ଏଠାରେ ପ୍ରକାଶ କରୁଅଛୁଁ ।

ମାର୍ଟିନ ସାହେବଙ୍କ ବିଜ୍ଞାପନୀରୁ ଜଣାପାଏ ଯେ କଟକ ହାଇସ୍କୁଲର କଲେଜ କ୍ଲାଶପାଇଁ ଏବର୍ଷ ଟ୧୬୮୨୭ଙ୍କା ବ୍ୟୟ ହୋଇଥିଲା । ତହିଁରୁ କେବଳ ଟ୧୩୪୫ଙ୍କା ଛାତ୍ରଙ୍କଠାରୁ ଫିସ ଗ୍ରହଣ ପୂର୍ବକ ଆଦାୟ ହୋଇଅଛି । ସୁତରାଂ ପ୍ରାୟ ସମୁଦାୟ ବ୍ୟୟ ଗବର୍ଣ୍ଣମେଣ୍ଟଙ୍କର ବୋଲିବାକୁ ହେବ । ଅତି ଉଚ୍ଚଶିକ୍ଷା ଛଡ଼ା ଗବର୍ଣ୍ଣମେଣ୍ଟଙ୍କ ଆଉ ସମସ୍ତ ପ୍ରକାର ଶିକ୍ଷାଦାନରେ ଟ୩୦୧୨୪ଙ୍କା ସରକାରଙ୍କର ଏବଂ ଟ୩୦୭୨୮ଙ୍କା ଲୋକମାନଙ୍କର ବ୍ୟୟ ହୋଇଥିଲା ।

× × ×

ଓଡ଼ିଶାର ବିଦ୍ୟାଳୟମାନଙ୍କରେ ବଙ୍ଗଳା ଭାଷାରେ ଶିକ୍ଷାଦେବା ଏକାବେଳକେ ନିଷେଧ କରିବାପାଇଁ ଶ୍ରୀଯୁକ୍ତ କମିଶନର ସାହେବ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଥିଲେ । ଏଥିକୁ ଗବର୍ଣ୍ଣମେଣ୍ଟ ବଙ୍ଗାଳ ଏହି ମନ୍ତବ୍ୟ ପ୍ରକାଶ କରି ଅଛନ୍ତି ଯେ ସେପରି ହେବାର ଉଚିତ କେବଳ ବଡ଼ ୨ ସ୍କୁଲରେ ବଙ୍ଗାଳିଙ୍କ ସଂଖ୍ୟା ଅଧିକ ହେତୁରୁ ଗୋଟିଏ ସ୍ୱତନ୍ତ୍ର ଶ୍ରେଣୀ ସ୍ଥାପନ ହୋଇପାରେ । ଏରୂପ ଉପାୟ କଲେ କିରୂପ କାର୍ଯ୍ୟ ହେବ ଅର୍ଥାତ୍ କୌଣସି ବାଧାହେବ କି ନାହିଁ ଏ ବିଷୟରେ କମିଶନର ଓ ଇନସ୍ପେକ୍ଟରଙ୍କ ମତ ପ୍ରାର୍ଥନା କରିପାଇ ଅଛି ।

× × ×

ଗଡ଼ଜାତ ମାହାଲର ଶିକ୍ଷା ସଂକ୍ରାନ୍ତ ରିପୋର୍ଟ ପଢ଼ି ଗବର୍ଣ୍ଣମେଣ୍ଟ ବଡ଼ ସନ୍ତୁଷ୍ଟ ହୋଇଅଛନ୍ତି । ସମ୍ପ୍ରତି ଅନୁଗୁଳ, ବାଙ୍କୀ, କନ୍ଧମାଳ, କେଉଁଝର, ଓ ବି ଖଣ୍ଡଧାଡ଼ିରେ ସବସୁଦ୍ଧା ୫୭ ପାଠଶାଳା ଅଛି । ଏରେ ଢେଙ୍କାନାଳରେ ଆଠ-ଗୋଟା ସାମାନ୍ୟ ସ୍କୁଲରେ ୨୩୫ ଛାତ୍ର ଅଧ୍ୟୟନ କରନ୍ତି ଏବଂ ମହାରାଜାଙ୍କ ଦ୍ୱାରା ପ୍ରତିପାଳିତ ଗୋଟିଏ ଇଂରାଜୀ ବିଦ୍ୟାଳୟରେ ୮୫ ଜଣ ଅଧ୍ୟୟନ କରନ୍ତି । ଗଡ଼ଜାତ ସ୍କୁଲ ସବୁକୁ ତତ୍ତ୍ୱାବଧାରଣର ନିୟମାଧୀନ କରିବାକୁ ରାଜାମାନେ ବାଞ୍ଛା କରନ୍ତି ନାହିଁ ବୋଲି ଶ୍ରୀଯୁକ୍ତ ରେବନସା ସାହେବ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇ ଅଛନ୍ତି ଓ ସେରୂପ ତତ୍ତ୍ୱାବଧାରଣରୁ କ୍ଷାନ୍ତ ରହିବା ପାଇଁ ଉକ୍ତ ସାହେବ ଯେଉଁ ମତ ଦେଇଅଛନ୍ତି ତାହା ଗବର୍ଣ୍ଣମେଣ୍ଟ ଅନୁମୋଦନ କରିଅଛନ୍ତି ।

ଶ୍ରୀଯୁକ୍ତ ରେବନସା ସାହେବ ଉତ୍କଳ ପାଠ୍ୟପୁସ୍ତକ ଯାହାକି କେତେକ ବର୍ଷ ମଧ୍ୟରେ ପ୍ରକାଶିତ ହୋଇଅଛି ତହିଁର ଖଣ୍ଡିଏ ତାଲିକା ପଠାଇ ଅଛନ୍ତି । ମାନ୍ୟବର ଲେଫ୍‌ଟେନାଣ୍ଟ ଗବର୍ଣ୍ଣର ଏ ବିଷୟରେ କହିଅଛନ୍ତି ଯେ କଟକ ବାଲେଶ୍ୱର, ମଧ୍ୟପ୍ରଦେଶ, ଗଞ୍ଜାମ ଏବଂ କଲିକତାରେ ପ୍ରକାଶିତ ସମସ୍ତ ଉତ୍କଳ ପୁସ୍ତକ ଅନୁସନ୍ଧାନପୂର୍ବକ ରିପୋର୍ଟ କରିବାର ଯେଉଁ ଉଦ୍‌ଯୋଗ ହୋଇଅଛି ତାହା ଅତି ପ୍ରଶଂସା ଯୋଗ୍ୟ ଅଟଇ କିନ୍ତୁ ସେ ଉଦ୍‌ଯୋଗ କିପ୍ରକାର ଓ କେବେ ତାହା ଫଳବତୀ ହେବ ଆମ୍ଭେମାନେ କହିନପାରୁ । ଆମ୍ଭେମାନେ ଆଶାକରୁଁ ଯେ ସମସ୍ତ ଉତ୍କଳ ପୁସ୍ତକ ସମାଲୋଚନାକର ପାଠ୍ୟପୁସ୍ତକ ଧାର୍ଯ୍ୟ କରିବା ଓ ଅକର୍ମଣ୍ୟ ପୁସ୍ତକ ସବୁକୁ ବିଦ୍ୟାଳୟରେ ପ୍ରବେଶ କରିବାକୁ ନଦେବା ବିଷୟରେ କେତେକଥର ଏହି ପତ୍ରିକାରେ ଯେଉଁ ପ୍ରସ୍ତାବମାନ ହୋଇଥିଲା ଯେବେ ତଦନୁସାରେ କାର୍ଯ୍ୟହୁଅଇ ତେବେ ସର୍ବ-ପ୍ରକାରରେ ମଙ୍ଗଳ ହେବ ।

## ( ୮ମ ଭାଗ, ୧୮ । ୧ । ୧୮୭୩, ସଂଖ୍ୟା ୩ )

୮୩ ।      ଉତ୍କଳ ଦର୍ପଣ

ବାଲେଶ୍ୱରର ଉତ୍କଳ ଦର୍ପଣ ନାମ ପତ୍ରିକାର ବିଜ୍ଞାପନ ଏହାପୂର୍ବେ ଏ ପତ୍ରିକାରେ ପ୍ରକାଶିତ ହୋଇଥିଲା ଏହି ମାସରେ ବାହାରି ଅଛି ଓ ଆମ୍ଭେମାନେ ତହିଁରେ ସାତିଶୟ ଆନନ୍ଦିତ ହୋଇଅଛୁଁ ଓ କୃତଜ୍ଞତା ପୂର୍ବକ ଖଣ୍ଡିଏ ପତ୍ରିକା ପାଇବାର ସ୍ୱୀକାର କରୁଅଛୁଁ । ଉତ୍କଳ ଦର୍ପଣର ଉଦ୍ଦେଶ୍ୟ ମହତ୍ତ ଅଟେ ଓ ତାହା ସଫଳହେଲେ ଦେଶର ଅନେକ ଉପକାର ହେବ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ସୁତରାଂ ସେଥିରେ ସମ୍ପାଦକମାନେ ସାହସ ଏ କାର୍ଯ୍ୟରେ ପ୍ରବୃତ୍ତ ହେବା ହେତୁ ସେମାନଙ୍କୁ ପ୍ରଶଂସା କରିବାକୁ ହେବ । ଆମ୍ଭମାନଙ୍କର ଏକାନ୍ତ ଇଚ୍ଛା ଯେ ସେମାନଙ୍କର କାର୍ଯ୍ୟ ସଫଳ ହେଉ ।

×      ×      ×      ×

ଆମ୍ଭେମାନେ ଦର୍ପଣ ଲେଖକମାନଙ୍କୁ ଅନୁରୋଧ କରୁଅଛୁଁ ଯେ କର୍କଶ କଠିନ, ବଙ୍ଗମିଶ୍ରିତ ଉତ୍କଳଭାଷା ଲେଖିବା ପରିତ୍ୟାଗ କରି ସରଳ ସୁମିଷ୍ଟ, ଶୁଦ୍ଧ ଓଡ଼ିଆ ଲେଖିବାର ଚେଷ୍ଟା କରନ୍ତୁ ଓ କ୍ରିୟାର କାଲ ନିୟମ ପ୍ରତି ବିଶେଷ ଦୃଷ୍ଟି ରଖନ୍ତୁ । ଏଦୋଷ ଆମ୍ଭେମାନେ ଗତ ସେପ୍ଟେମ୍ବର ମାସ ତା ୨୮ ରିଖର ପତ୍ରିକାରେ "ନବ୍ୟ ଲେଖକଙ୍କ ରଚନା ଦୋଷ" ଶିରୋନାମାର ପ୍ରସ୍ତାବରେ ବିଶେଷରୂପେ ଦେଖାଇ ଦେଇଅଛୁଁ । ପୁନର୍ବାର ଲେଖିବା ଆବଶ୍ୟକ ନାହିଁ ।

## ( ୮ମ ଭାଗ, ୭ । ୧୨ । ୧୮୭୩, ସଂଖ୍ୟା ୪୮ )

୮୪ ।      ଢେଙ୍କାନାଳର ମହାରାଜା ଆପଣା ଗଡ଼ମଧ୍ୟରେ ବିଦ୍ୟାଳୟର କାରଣ ଯେଉଁ ନୂତନ କୋଠାଘର ନିର୍ମାଣ କରିଅଛନ୍ତି ଅଳ୍ପଦିନ ହେଲା ତହିଁରେ ପ୍ରଥମ ଥର ଶିକ୍ଷା କମିଟୀର ସଭା ହୋଇଥିଲା ଓ ଉକ୍ତ ସଭାରେ ବିଦ୍ୟାଳୟର ଦ୍ୱିତୀୟ ଶିକ୍ଷକ ବାବୁ ଜଗନ୍ନାଥ ପଟ୍ଟନାୟକ ଗୋଟିଏ ରଚନା ପାଠ କରିଥିଲେ । ଆମ୍ଭେମାନେ ସ୍ଥାନାଭାବରୁ ତାହା ପ୍ରକାଶକରି ନପାରି ତହିଁରୁ ବିଦ୍ୟାଳୟ ସମ୍ପର୍କୀୟ କେତେକଥା ଲେଖୁଅଛୁଁ । ବିଦ୍ୟାଳୟ ଗୃହନିର୍ମାଣରେ ୨୪୬୩୪ଙ୍କା ବ୍ୟୟ ହୋଇଅଛି ଓ ଆହୁରି ୨୬୦୦ । ୭୦୦ ଙ୍କା ବ୍ୟୟ ହେଲେ କାର୍ଯ୍ୟ ସମ୍ପୂର୍ଣ୍ଣ ହେବ । ବିଦ୍ୟାଳୟରେ କା୮ଜଣ ଛାତ୍ର ନିୟମିତ ରୂପେ ଉପସ୍ଥିତ ହୋଇ ପଠନ କରୁଅଛନ୍ତି ଓ ସ୍କୁଲ ହେଲା ଦିନଠାରୁ ଜା୧୨ଜଣ ଛାତ୍ର ବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଏବର୍ଷ ମଧ୍ୟ

ଜାଂଶ ପରୀକ୍ଷା ଦେଇ ଅଛନ୍ତି ଅଲଦନରେ ଫଳ ଜଣାପିବ । ଏଥିରୁ ଦେଖାଯାଏ ଯେ ଢେଙ୍କାନାଳରେ କେବଳ ସୁନ୍ଦର ସ୍କୁଲ ଗୃହ ହୋଇଅଛି ଏମନ୍ତନ୍ତହେ, ଛାତ୍ରଙ୍କୁ ସୁନ୍ଦର ରୂପେ ଶିକ୍ଷା ସୁଦ୍ଧା ଦିଆଯାଉ ଅଛି । ଏପରି ସୁଖକର ସମାଦ ଶୁଣି କିଏ ସ୍ୱୀକାର ନ କରିବ ଯେ ପ୍ରଜାଙ୍କ ଜନିତ ବିଷୟରେ ଢେଙ୍କାନାଳର ମହାରାଜା ଓଡ଼ିଶାର ସମସ୍ତ ରାଜା ଓ ଜମିଦାରଙ୍କ ମଧ୍ୟରେ ଅଗ୍ରଗଣ୍ୟ ଅଟନ୍ତି । ଏବା ବିଦ୍ୟାଳୟ କାହିଁକି ଅନ୍ୟାନ୍ୟ କାର୍ଯ୍ୟରେ ମଧ୍ୟ ଏହାଙ୍କ ତୁଲ୍ୟ କାହାରିକୁ ଦେଖାଯାଏ ନାହିଁ । ଏ ପ୍ରଦେଶର ଅନ୍ୟାନ୍ୟ ରାଜା ଓ ଧନୀମାନେ ଆପଣା ୨ ରାଜ୍ୟରେ ଏପରି ହିତାନୁଷ୍ଠାନମାନ କଲେ ଓଡ଼ିଶାର କପର୍ଯ୍ୟନ୍ତ ଶ୍ରୀବୃଦ୍ଧି ହେବ ବୋଲିପାଇ ନପାରେ ।

---

## ( ୧୦ମ ଭାଗ, ୧୭ । ୧ । ୧୮୭୪ ସଂଖ୍ୟା ୩ )

୮୫ । ବାବୁ ବଳଦେବ ପଟ୍ଟନାୟକଙ୍କ କର୍ମରେ ବାବୁ ଧରଣୀଧର ମିଶ୍ର ସମ୍ବଲପୁରର ଡେପୁଟୀ ଇନସ୍ପେକଟର ନିଯୁକ୍ତ ହୋଇଅଛନ୍ତି । ଆମ୍ଭେମାନେ ଶୁଣିଲୁଁ ଯେ ଧରଣୀଧର ବାବୁ ସମ୍ବଲପୁର ନିବାସୀ ଅଟନ୍ତି ଓ କଲିକତା ବିଶ୍ୱବିଦ୍ୟାଳୟରେ ପରୀକ୍ଷା ଦେଇ କୃତକାର୍ଯ୍ୟ ହୋଇଅଛନ୍ତି । ସମ୍ବଲପୁରରେ ଜଣେ ହେଲେ ଏପ୍ରକାର ବ୍ୟକ୍ତି ଅଛନ୍ତି ଆମ୍ଭେମାନେ ଶୁଣି ଆନନ୍ଦିତ ହେଲୁଁ କାରଣ କି ସେଠା ଇଂରାଜୀ ସ୍କୁଲର ଏକ ଜଣ ଛାତ୍ର ଅବଧି ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର ଶୁଣାନାହିଁ । ଯାହାହେଉ ଏ ଲୋକକୁ ଉକ୍ତ କର୍ମରେ ନିଯୁକ୍ତକରି ସେଠା ହାକିମମାନେ ଉଚ୍ଚଶିକ୍ଷା ନିମିତ୍ତ ଲୋକଙ୍କୁ ଉତ୍ସାହ ଦେଇଅଛନ୍ତି ସନ୍ଦେହ ନାହିଁ । ଆମ୍ଭେମାନେ ଆହୁରି ଅବଗତହେଲୁଁ ଯେ ବାବୁ ବଳଦେବ ପଟ୍ଟନାୟକଙ୍କ କର୍ମରେ ସମ୍ବଲପୁରର ଲୋକମାନେ ସନ୍ତୁଷ୍ଟ ଥିବାର ନିଦର୍ଶନ ସ୍ୱରୂପ ତାହାଙ୍କୁ ଖଣ୍ଡିଏ ଅଭିନନ୍ଦନ ପତ୍ର ପ୍ରଦାନ କରିଅଛନ୍ତି । ଏ କାର୍ଯ୍ୟଟି ମଧ୍ୟ ସେଠା ନିବାସୀଙ୍କର ସଭ୍ୟତାର ପରିଚୟ ଦେଉଅଛି ସୁତରାଂ ବିଷୟ ଅଟଇ ।

## ( ୧୦ମ ଭାଗ, ୩୦ । ୧ । ୧୮୭୫, ସଂଖ୍ୟା ୫ )

୮୭ । ବେଙ୍ଗଲୀ ନାମରେ କଲିକତାର ଏକ ସମ୍ବାଦପତ୍ରରେ ଲେଖାଅଛି ଶିକ୍ଷାବିଭାଗର କାର୍ଯ୍ୟ ବୁଝିବାର ଦାୟ । ସେଦିନ ସର୍ ଜର୍ଜ କାମ୍ବେଲ କେତେ କଷ୍ଟରେ ମାସିକ ଟ୬୫୦୲ ବେତନରେ ଓଡ଼ିଶାପାଇଁ ଜଣେ ଜଏଣ୍ଟ ଇନସ୍ପେକ୍ଟର ଦେଇଥିଲେ ମାତ୍ର ସର୍ ରିଚାର୍ଡ ଟେମ୍ପଲ ତାହା ଉଠାଇ ଦେଇ ମାସି ଟ୫୦୦୲ ଙ୍କା ବେତନରେ ଜଣେ ଇନସ୍ପେକ୍ଟର ନିଯୁକ୍ତ କଲେ । ଏଥି ମଧ୍ୟରେ ପୁଣି ଗଜେଟରେ ଦେଖାଗଲା ଯେ ବାବୁ ନନ୍ଦକିଶୋର ଦାସ ଯେ କି କିଛିକାଳ ପୂର୍ବେ କଟକ ସ୍କୁଲରେ ପଢ଼ି ବିଶ୍ୱ-ବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ସାର୍ଟିଫିକେଟ ପାଇଅଛନ୍ତି ଓଡ଼ିଶାର ଜଏଣ୍ଟ-ଇନସ୍ପେକ୍ଟର ହୋଇଅଛନ୍ତି । ଏଥିଉତ୍ତାରୁ ଅନୁମାନ ହୁଅଇ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଜଣେ ଓଡ଼ିଆଛାତ୍ର ପ୍ରସ୍ତାବିତ କଟକ କଲେଜର ପ୍ରିନ୍ସିପାଲ ପଦରେ ନିଯୁକ୍ତ ହୋଇପାରିବ । ଏ ପ୍ରକାର ହେଲେ ଭବିଷ୍ୟତରେ ଓଡ଼ିଶାର ଗୌରବ ବୃଦ୍ଧି ପକ୍ଷରେ ଆଉ ସନ୍ଦେହ ରହିବ ନାହିଁ ।

୮୭ । ଗତ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଓଡ଼ିଶାର ଛାତ୍ରମାନଙ୍କ ମଧ୍ୟରୁ ତଳ ଲିଖିତ ବ୍ୟକ୍ତିମାନେ ପୂର୍ବକୃତ ସ୍କଲରସିପ ଅର୍ଥାତ୍ ନିମ୍ନ ଶ୍ରେଣୀର ବୃତ୍ତି ପାଇଅଛନ୍ତି , ଯଥା—

ଦ୍ୱିତୀୟ ବିଭାଗ

| | |
|---|---|
| ଫତୁଲ୍ଲଚନ୍ଦ୍ର ମୁଖୁର୍ଯ୍ୟା | କଟକ ହାଇସ୍କୁଲ |
| ରଘୁନାଥ ଚୌଧୁରୀ | ବାଲେଶ୍ୱର ହାଇସ୍କୁଲ |

ତୃତୀୟ ବିଭାଗ

| | |
|---|---|
| ଭାଗବତ ନନ୍ଦ | କଟକ ହାଇସ୍କୁଲ |
| ସେଖ ବାବୁଜାନ | ବାଲେଶ୍ୱର ସ୍କୁଲ |

ଓଡ଼ିଶା ସକାଶେ ୧୦ଗୋଟି ଛାତ୍ରବୃତ୍ତି ଗବର୍ଣ୍ଣମେଣ୍ଟ ମଞ୍ଜୁର କରି ଅଛନ୍ତି । ତହିଁ ମଧ୍ୟରୁ କେବଳ ଗୋ୪ଟି ଦିଆଗଲା, ଆଉ ଗୋ୬ଟି କାହିଁକି ଅସ୍ୱୀକୃତ ହେଲା ତହିଁର କାରଣ ଆମ୍ଭେମାନେ ବୁଝି ପାରୁନାହୁଁ । ବୋଧହୁଅଇ ଅପର ଛାତ୍ରମାନେ ଉତ୍ତୀର୍ଣ୍ଣ ହୋଇଥିଲେ ସୁଦ୍ଧା ତାହାଙ୍କର ନମ୍ବର ଏତେ ଊଣାଥିଲା ଯେ ସେମାନଙ୍କୁ

ବୃତ୍ତି ଦେବାର ଉପଯୁକ୍ତ ସ୍ଥାନ ହୋଇନାହିଁ । ମାତ୍ର ଆମ୍ଭେମାନେ ବାଲେଶ୍ୱର ଦର୍ପଣଙ୍କ ସହିତ ଐକ୍ୟ ହୋଇ କହୁଅଛୁଁ ଯେ ଓଡ଼ିଶାର ଅବସ୍ଥା ଦୃଷ୍ଟିରେ ସେପ୍ରକାର କଠିନ ନିୟମ ଅବଲମ୍ବନ କରିବା ଉଚିତ ହୋଇନାହିଁ । ଏଠା ଛାତ୍ରଙ୍କ ଉତ୍ସାହ ନିମିତ୍ତ ପୂର୍ବ ସଂଖ୍ୟାର ବୃତ୍ତି ନିତାନ୍ତ ପକ୍ଷରେ ଦ୍ୱିତୀୟ ବିଭାଗର ଗୋଟିଏ ବୃତ୍ତି ଦିଆଯାଇ ଥିଲେ ଭଲ ହୋଇଥାନ୍ତା । ଆମ୍ଭେମାନେ ଭରସା କରୁଁ ଯେ ଶିକ୍ଷାବିଭାଗର ମାନ୍ୟ କର୍ତ୍ତୃପକ୍ଷ ଏଥିପାଇଁ ଥରେ ଚେଷ୍ଟା କରିବେ ।

---

## (୧୧ଶ ଭାଗ, ୨୯ । ୧ । ୧୮୭୭, ସଂଖ୍ୟା ୫)

୮୮ ।

### କଟକ କଲେଜ

ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ କଟକ କଲେଜ ଏଥର ନିଶ୍ଚୟ ସ୍ଥିର । ଶ୍ରୀଯୁକ୍ତ ଏଜର ସାହେବ ପ୍ରିନସିପାଲ ହେଲେ ମାସ ବର୍ତ୍ତମାନ ପୁରା ବେତନ ନପାଇ ୫୩୫୦ଙ୍କା ପାଇବେ । ରସାୟନିକ ଓ ସାଧାରଣ ବସ୍ତୁର ଶିକ୍ଷା ନିମିତ୍ତ ଏକ ବ୍ୟକ୍ତି ନିଯୁକ୍ତ ହୋଇ ଆସୁଅଛନ୍ତି । ଏହି ମାସରେ ପହୁଞ୍ଚିବେ ଓ ଜଣେ ହେଡମାଷ୍ଟର ମଧ୍ୟ ଶୀଘ୍ର ନିଯୁକ୍ତ ହେବେ କିନ୍ତୁ କଲେଜରେ କେତେଜଣ ପଢ଼ିବେ ଅଦ୍ୟାପି ଠିକ ହୋଇନାହିଁ । ଏବର୍ଷ ଚାରିଜଣ ଫାଷ୍ଟ ଆର୍ଟସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି ତହିଁ ମଧ୍ୟରୁ ଜଣେ କଲିକତାରେ ପଢ଼ିବେ ଅପର ତିନିଜଣ ମଧ୍ୟରୁ ଜଣେ ବୃତ୍ତି ପାଇଅଛି ସେ ପଢ଼ିବ ଆଉ ଦୁଇଜଣ ବୃତ୍ତି ନପାଇଲେ ପଢ଼ିବେ ନାହିଁ ବୋଲି ଶୁଣାଯାଏ । ଏହାଙ୍କୁ ବୃତ୍ତି ଅର୍ଥ କେଉଁଠାରୁ ଦିଆଯିବ । ବୋଧହୁଏ ଜଣେ ମେଓ ବୃତ୍ତି ପାଇପାରିବେ ଏପରି ଶୁଣାଯାଏ ପୂର୍ବେ ଯେଉଁମାନେ ଏ ପରୀକ୍ଷାରେ କୃତକାର୍ଯ୍ୟ ଲଭି ବର୍ତ୍ତମାନ ଚାକିରି କରୁଅଛନ୍ତି ତାହାଙ୍କୁ ପଢ଼ାଇବାର ଉଦ୍ୟମ ହେଉଅଛି ପ୍ରତ୍ୟକ୍ଷ ଦେଖା ନଗଲେ ଏଥିରେ ବିଶ୍ୱାସ ହେଉନାହିଁ ଏପରି ପ୍ରବେଶିକା ପରୀକ୍ଷାର ଫଳ ଦୃଷ୍ଟିରେ ଆଗାମୀ ବର୍ଷରୁ ମଧ୍ୟ ଅଳ୍ପ ଛାତ୍ର କଲେଜ ପାଇଁ ମିଳିବାର ସମ୍ଭାବନା

ଦେଖାଯାଏ ଏମନ୍ତ ସ୍ଥଳେ କାହିଁକି ହାକମମାନେ କଲେଜ କରିବାକୁ ଏତେ ଡର ୨
ହେଉଅଛନ୍ତି ବୁଝିପାରୁ ନପାରେ କଲେଜ ସକାଶେ ଯେଉଁ ୩୦ ହଜାର ଟଙ୍କା
ଉଠିଅଛି ତହିଁର ସୁଧରୁ ବୃତ୍ତି ଦେଲେ ବଷକୁ ଗୁରିଜଣ ଲେଖାଏଁ କଲିକତାରେ
ଯାଇଁ ପଢ଼ି ପାରନ୍ତି ତାହା ନକରି ଅସମୟରେ କଲେଜ ଫିଟାଇ ଦରିଦ୍ର ଓଡ଼ିଶାର
ଟଙ୍କା ବନବସ୍ତ କରିବା ଆମ୍ଭମାନଙ୍କ ମତରେ ଭଲ ହୋଇନାହିଁ । ଏଥିରେ କେବଳ
ବର୍ତ୍ତମାନ କ୍ଷତି ହେବ ଏମନ୍ତ ନୁହେ ଭବିଷ୍ୟତକୁ କଲେଜ ରହିବା ପକ୍ଷରେ ମଧ୍ୟ
ଗୋଲମାଲ ହୋଇପାରେ ।

---

## ( ୧୧ଶ ଭାଗ, ୫ । ୨ । ୧୮୭୭, ସଂଖ୍ୟା ୭ )

୮୯ ।

### ସାପ୍ତାହିକ ସମ୍ବାଦ

କଲିକତା ବିଶ୍ୱବିଦ୍ୟାଳୟର ଗତ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଓଡ଼ିଶା ବିଭାଗର ନିମ୍ନଲିଖିତ ଛାତ୍ରମାନେ ବୃତ୍ତି ପାଇଅଛନ୍ତି, ଯଥା ।

ଦ୍ୱିତୀୟ ଶ୍ରେଣୀ

ଦୁର୍ଗା ଚରଣ ସାହୁ — ବାଲେଶ୍ୱର ସ୍କୁଲ
ମଧୁସୂଦନ ମହାନ୍ତି— ପୁରୀ ,,
ଗୋକୁଳାନନ୍ଦ ନାୟକ— ,, ,,
ଆନନ୍ଦ ଚନ୍ଦ୍ର ବ୍ରାହ୍ମ— କଟକ ହାଇ ,,

ତୃତୀୟ ଶ୍ରେଣୀ

ହରିହର ମିଶ୍ର— ପୁରୀ ସ୍କୁଲ
ସଦାନନ୍ଦ ଦେ— ,, ,,
ସୀତାନାଥ ମହାନ୍ତି— କଟକ ହାଇ ,,
ରମତାରଣ ମିଶ୍ର— ବାଲେଶ୍ୱର ,,

## ( ୧୧ଶ ଭାଗ, ୧୬ । ୨ । ୧୮୭୭, ସଂଖ୍ୟା ୭ )

୯୦ ।

### ଓଡ଼ିଶା ମେଡ଼ିକାଲ ସ୍କୁଲ

ଏତତ୍ସଙ୍ଗେ ଥିବା ଅତିରିକ୍ତ ପତ୍ରିକାରୁ ପାଠକମାନେ ଦେଖିବେ ଯେ କଟକ ମେଡ଼ିକାଲ ସ୍କୁଲର ବନ୍ଦୋବସ୍ତ ସବୁ ଶେଷହୋଇ ଆଗାମୀ ତାରିଖରୁ ସ୍କୁଲ ବସିବାର ସ୍ଥିର ହୋଇଅଛି । ଯେଉଁ ୨୦ଣ ଛାତ୍ର ବୃତ୍ତି ପାଇବେ ତାହାଙ୍କର ନାମ ସର୍ବସାଧାରଣଙ୍କ ଗୋଚରାର୍ଥେ ପ୍ରକାଶିତ ହେଲା । ଏହାଙ୍କୁ ଛଡ଼ା ଆଉ ୨୦ଣ ଛାତ୍ର ଡାକ୍ତର ସାହେବ ମନୋନୀତ କରିଅଛନ୍ତି କି ସେମାନେ ବିନା ବେତନରେ ପଢ଼ିବାକୁ ବାଞ୍ଛା କଲେ ଶିକ୍ଷାଲାଭ କରିପାରିବେ । ବୃତ୍ତିଭୋଗୀ ଛାତ୍ରମାନେ କେବଳ ଦୁଇ ଜଣ ଛଡ଼ା ମାଇନର ବା ଭର୍ଣ୍ଣାକ୍ୟୁଲାର ଛାତ୍ର ବୃତ୍ତି ପରୀକ୍ଷା ଦେଇଥିବା ବ୍ୟକ୍ତିଙ୍କ ମଧ୍ୟରୁ ମନୋନୀତ ହୋଇଅଛନ୍ତି । ପୁଣି ଡାକ୍ତର ସାହେବ ଓଡ଼ିଶାର ସମସ୍ତ ବିଭାଗ ଓ ଗଡ଼ଜାତରୁ ସୁଦ୍ଧା ଛାତ୍ର ବାଛି ନେଇଥିବାରୁ ବଡ଼ ବିବେଚନାର କାର୍ଯ୍ୟ କରିଅଛନ୍ତି । କୌଣସି ଜିଲ୍ଲାର ଛାତ୍ରଙ୍କ ପ୍ରତି ଅତିରିକ୍ତ ଅନୁଗ୍ରହ ପ୍ରକାଶ ହୋଇନାହିଁ । ଯେଉଁ ଦୁଇ ଜଣ ପରୀକ୍ଷା ଦ୍ୱାରା ନିର୍ବାଚିତ ହୋଇଅଛନ୍ତି ତାହାଙ୍କ ମଧ୍ୟରେ ଜଣେ ସମ୍ବଲପୁରୀ ଥିବାରୁ ଡାକ୍ତର ସାହେବଙ୍କ ଅପକ୍ଷପାତିତା ଅଧିକତର ସପ୍ରମାଣିତ ହୋଇଅଛି । ଏଥର ଛାତ୍ରମାନେ ସଦାଗୃହରେ ରହି ଯଥାସାଧ୍ୟ ପରିଶ୍ରମ ପୂର୍ବକ ଶିକ୍ଷାଲାଭ କଲେ ଏମାନଙ୍କର ଯେମନ୍ତ ଉପକାର ହେବ ତେମନ୍ତ ଦେଶର ମହତ୍ ମଙ୍ଗଳ ସାଧନ ହେବ । ଛାତ୍ରମାନେ ଏହିକଥା ସ୍ମରଣ ରଖି ଶିକ୍ଷାଲାଭ କରନ୍ତୁ ।

୯୧ ।

### ଉତ୍କଳ ରଚନା

ଆମ୍ଭେମାନେ ଉତ୍କଳରଚନା ଗ୍ରନ୍ଥର ପ୍ରଥମ ଭାଗ ପ୍ରାପ୍ତ ହୋଇ ଅତ୍ୟନ୍ତ ପ୍ରୀତ ହୋଇଅଛୁଁ । ଏ ଗ୍ରନ୍ଥର ରଚୟିତା ବାବୁ ରାଧାନାଥ ରାୟ ଓ ପ୍ରକାଶକ ବାବୁ ବୈକୁଣ୍ଠ ନାଥ ଦେ । ବାଲେଶ୍ୱର ଉତ୍କଳ ପ୍ରେସରେ ଏହା ମୁଦ୍ରିତ ହୋଇଅଛି । ଓଡ଼ିଆ ଭାଷାରେ ଏପରି ପୁସ୍ତକ ଦେଖାନାହିଁ ଓ ବଙ୍ଗଳା ଭାଷାରେ ମଧ୍ୟ ଥିବାର ଆମ୍ଭେମାନେ ଶୁଣିନାହୁଁ । × ×

× × × । ବାବୁ ରାଧାନାଥ ରାୟ ଏ ପୁସ୍ତକ ଖଣ୍ଡିକ ବାହାର କରି କେବଳ ଉକ୍ତ ଅଭାବ ଦୂରକଲେ ଏମନ୍ତ ନୁହେ, ଉପଯୁକ୍ତ ଲୋକଙ୍କୁ ଏ ଗୁରୁତର ବିଷୟରେ ପୁସ୍ତକ ରଚନା କରିବାର ବାଟ ଦେଖାଇଲେ ।

× × ×

ରାଧାନାଥ ବାବୁ ଏ ପୁସ୍ତକ ରଚନା କରି ପ୍ରଶଂସାର ଭାଜନ ହୋଇଅଛନ୍ତି ସନ୍ଦେହ ନାହିଁ ଓ ଆମ୍ଭେମାନେ ଭରସା କରୁଁ ଯେ ଏତକରେ କ୍ଷାନ୍ତ ନ ବସି ସେ ଏହି ମାର୍ଗରେ ଅଧିକ କାଳ ବୁଦ୍ଧି ନିକ୍ଷେପ କରନ୍ତୁ ତାହାହେଲେ ଭାଷା ଶିକ୍ଷାର ମହତ୍ ଉପକାର ତାହାଙ୍କ ଦ୍ୱାରା ସାଧିତ ହେବ ।

୯୨ ।

## କଟକ ସର୍ଭେ ସ୍କୁଲ

ବଙ୍ଗଳା ପ୍ରଦେଶରେ ବ୍ୟାବହାରିକ ବିଜ୍ଞାନ ଶିକ୍ଷା ଦେବାର ବିଦ୍ୟାଳୟମାନ ସ୍ଥାପନ କରିବା ଲାଗି ଏଥିପୂର୍ବେ ଆମ୍ଭମାନଙ୍କ ଲେଫଟେନେଣ୍ଟ ଗବର୍ଣ୍ଣର ପ୍ରସ୍ତାବ କରି ତହିଁର ଉଦ୍ୟମରେ ଥିଲେ । ସମ୍ପ୍ରତି ତାହାଙ୍କର ପ୍ରକାଶିତ ଅଭିପ୍ରାୟ ଲିପିରୁ ଦେଖାଗଲା କି ଆଗାମୀ ମାର୍ଚ୍ଚ ମାସ ତା୧ରିଖ ଠାରୁ ହୁଗୁଲି ଢାକା ପାଟନା ଓ କଟକ ଏହି ଚାରିସ୍ଥାନରେ ଜରିବ ଶିକ୍ଷାର ବିଦ୍ୟାଳୟ ମାନ ଫିଟିବ । ×

× × ×

ଯେଉଁ ଚାରୋଟି ବିଦ୍ୟାଳୟ ବର୍ତ୍ତମାନ ଫିଟିବ ସେ ସବୁ ସେହି ୨ ଜିଲ୍ଲାର କଲେଜର ଅଧ୍ୟକ୍ଷମାନଙ୍କ ଅଧୀନରେ ରହିବ । ତହିଁରେ ଦେଶୀୟ ଭାଷାରେ ଶିକ୍ଷା ଦିଆଯିବ ଓ ଦୁଇବର୍ଷରେ ଶିକ୍ଷା ସମାପ୍ତ ହେବ । ପ୍ରଧାନ ଶିକ୍ଷକ ପଦ୍ରକ ଓକ ବିଭାଗର ଜଣେ ଏତଦ୍ଦେଶୀୟ ବନ୍ଦୋବସ୍ତି ଓଭରସିଅରଙ୍କୁ ଦିଆଯିବ ଓ ଜିଲ୍ଲାର ପ୍ରଚଳିତ ଭାଷାରେ ସେ ଶିକ୍ଷା ଦେବେ । ମାର୍ଚ୍ଚ ପ୍ରଥମ ଦିବସ ଠାରୁ ଶିକ୍ଷା ଆରମ୍ଭ ହୋଇ ଦୁର୍ଗୋତ୍ସବ ପର୍ଯ୍ୟନ୍ତ ଅବିଚ୍ଛେଦରୂପେ ଶିକ୍ଷା ଦିଆଯିବ । ସେହି ସମୟରେ ଏକମାସ ବିଦ୍ୟାଳୟ ବନ୍ଦ ହେବ ଓ ନବମ୍ବର ମାସ ତା୧ରିଖ ଠାରୁ ଫିବ୍ରୁଏରୀ ଶେଷ ପର୍ଯ୍ୟନ୍ତ ଚାରିମାସ ବାହାରେ ବୁଲି ମାପ କରିବାର ଶିକ୍ଷା ଦିଆଯିବ । ତହିଁ ଉତ୍ତାରୁ ପରୀକ୍ଷା ଗୃହୀତ ହେବ । ମାଇନର ଓ ଭର୍ଣ୍ଣାକ୍ୟୁଲର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନେ ଏ ବିଦ୍ୟାଳୟରେ ଭର୍ତ୍ତି ହେବେ ଓ ସ୍ୱ ୨ ବୃତ୍ତି ସେଠାରେ ପାଇବେ । ଏମାନଙ୍କୁ ବେତନ ଦେବାକୁ ହେବନାହିଁ । ଅନ୍ୟ ଛାତ୍ରମାନେ ମାସକୁ ଟ୧ଙ୍କା ଲେଖାଏଁ ବେତନ ଦେବେ । ପ୍ରତ୍ୟେକ ବିଦ୍ୟାଳୟରେ ମାସକୁ ଟ୫ଙ୍କା ଲେଖାଏଁ ଗୋ୭ଟି ବୃତ୍ତି ଏକବର୍ଷ ପାଇଁ ସ୍ଥାପିତ ହେବ । ପ୍ରଥମ ବର୍ଷ ଏ ବୃତ୍ତି କାହାରିକୁ ଦିଆଯିବ ନାହିଁ । ପ୍ରଥମ ବର୍ଷ ଉତ୍ତାରୁ ପରୀକ୍ଷାର ଫଳ ଦେଖି ଉପଯୁକ୍ତ ଛାତ୍ରଙ୍କୁ ବୃତ୍ତି ମିଳିବ । ପ୍ରତ୍ୟେକ ସ୍କୁଲରେ ମାସକୁ ସବସୁଦ୍ଧା ଟ୨୧୨ଙ୍କା ଖର୍ଚ୍ଚ ହେବ । ଏଥିମଧ୍ୟରେ ପ୍ରଧାନ ଶିକ୍ଷକଙ୍କ ବେତନ ଟ୧୫୦ଙ୍କା ଓ ଦ୍ୱିତୀୟ ଶିକ୍ଷକଙ୍କର ଟ୭୫ଙ୍କା ହେବ । ଦ୍ୱିତୀୟ ଶିକ୍ଷକ ପ୍ରଥମ ବର୍ଷ ନିଯୁକ୍ତ ହେବେ ନାହିଁ । ମଫସଲରେ ବୁଲି ମାପ ଶିଖିବାର ଖର୍ଚ୍ଚ ପ୍ରତ୍ୟେକ ସ୍କୁଲରେ ବାର୍ଷିକ ଟ୪୦୦ଙ୍କା ହେବ ।

## ( ୧୧ଶ ଭାଗ, ୧୯ । ୨ । ୧୮୭୭, ସଂଖ୍ୟା ୮ )

### ୯୩ । ଓଡ଼ିଶା ମେଡ଼ିକାଲ ସ୍କୁଲ ।

ଗଲତ ମାସ ତାରିଖ ଦଶ ଠାରୁ ଓଡ଼ିଶାର ମେଡିକାଲ ସ୍କୁଲ ଫିଟିଲା । ସେଦିନ ସମସ୍ତ ଶିକ୍ଷକ ଓ ଛାତ୍ରମାନେ ଉପସ୍ଥିତ ହେଲାରୁ ଆସିଷ୍ଟାଣ୍ଟ ସର୍ଜନ ଚୂନିଲାଲ ବାବୁ ପ୍ରଥମେ ଗୋଟିଏ ବକ୍ତୃତା ଦ୍ୱାରା ଇଂରାଜୀ ଚିକିତ୍ସାର ଇତିହାସ ସଂକ୍ଷେପ ରୂପେ ଛାତ୍ରଙ୍କୁ ଜଣାଇଲେ । ତହିଁ ଉତ୍ତାରୁ ଶ୍ରୀଯୁକ୍ତ ଡାକ୍ତର ଷ୍ଟିୱାର୍ଟ ସାହେବ ଇଂରାଜୀରେ ଗୋଟିଏ ଉପଦେଶ ଗର୍ଭିତ ବକ୍ତୃତା କଲେ ଓ ନେଟିବ ଡାକ୍ତର ଭୂଷଣ ବାବୁ ତାହା ଉତ୍କଳ ଭାଷାରେ ଛାତ୍ରମାନଙ୍କୁ ବୁଝାଇ ଦେଲେ ।

× × ×

## ( ୧୧ମ ଭାଗ, ୧୭ । ୯ । ୧୮୭୭, ସଂଖ୍ୟା ୩୮ )

### ୯୪ । ବାମଣ୍ଡା ଓ କଳାହାଣ୍ଡି ମେଡିକାଲ ବୃତ୍ତି

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ସର୍ବସାଧାରଣଙ୍କୁ ଜଣାଉଅଛୁଁ ଯେ ସମ୍ବଲପୁର ଜିଲ୍ଲାର ଅନ୍ତର୍ଗତ ବାମଣ୍ଡାର ରାଜା ଶ୍ରୀ ସୁଢ଼ଳ ଦେବ ଓ କଳାହାଣ୍ଡିର ରାଜା ଶ୍ରୀ ଅଦ୍ୱୈତ ପ୍ରତାପ ଦେବ ଏହି ଦୁଇ ମହାଶୟ ଜଣକେ ଟ ୨୫୦ଙ୍କା ଲେଖାଏଁ କଟକ ମେଡିକାଲ ସ୍କୁଲକୁ ଦାନ କରିଅଛନ୍ତି ଯେ ଏଥିରେ ଦୁଇଜଣ ଛାତ୍ର ବୃତ୍ତିପାଇ ତିନିବର୍ଷ ଲେଖାଏଁ ଶିକ୍ଷା କରିବେ । ପ୍ରଥମ ବର୍ଷରେ ମାସକୁ ଟ ୪ଙ୍କା ଦ୍ୱିତୀୟ ବର୍ଷରେ ଟ ୫ଙ୍କା ଓ ତୃତୀୟ ବର୍ଷରେ ଟ ୬ଙ୍କା ଲେଖାଏଁ ଏକ ୨ ଛାତ୍ରକୁ ବୃତ୍ତି ଦିଆଯିବ । ଏ ରାଜାମାନେ ଯେରୂପ ନିରପେକ୍ଷ ହୋଇ ଏ ଦାନ କରିଅଛନ୍ତି ତାହା ଅତି ପ୍ରଶଂସାର ବିଷୟ ଅଟଇ କାରଣ ସେମାନେ ଆପଣା ରାଜ୍ୟରୁ କୌଣସି ଛାତ୍ର ନପଠାଇ ବୃତ୍ତିଦାନ ବିଷୟରେ ଚିକିତ୍ସା ବିଦ୍ୟାଳୟର ଅଧ୍ୟକ୍ଷଙ୍କୁ ସମ୍ପୂର୍ଣ୍ଣ କ୍ଷମତା ଦେଇଅଛନ୍ତି । ଓଡ଼ିଶାର ମୋଗଲବନ୍ଦୀ କିଂବା ଗଡ଼ଜାତର କୌଣସି ଜମିଦାର କି ରାଜା ଅଦ୍ୟାବଧି ଏରୂପ ଛାତ୍ରବୃତ୍ତି ସ୍ଥାପନ କରିଥିବାର ଆମ୍ଭେମାନେ ଅବଗତ ହୋଇନାହୁଁ । ସମ୍ବଲପୁର ଗଡ଼ଜାତ ମଧ୍ୟରୁ ରାଜାମାନେ ସର୍ବାଗ୍ରେ ଏ ବିଷୟରେ ଉତ୍ସାହ ଦେଇଥିବାରୁ ଅତ୍ୟନ୍ତ ଧନ୍ୟବାଦର ଯୋଗ୍ୟ ଅଟନ୍ତି । ଆମ୍ଭେମାନେ ଭରସା କରୁଁ ଯେ ଏ ମହତ୍ କାର୍ଯ୍ୟରେ ଅନ୍ୟ ଧନାଢ୍ୟ ବ୍ୟକ୍ତିମାନେ ଯୋଗ ଦେବେ । ଚିକିତ୍ସାଶାସ୍ତ୍ର ଅଧ୍ୟୟନ ବିଷୟରେ ଉତ୍ସାହ ଦେବା ପ୍ରାଣ ରକ୍ଷାର ହେତୁ ଅତଏବ ଏଥିରେ ଦାନ କରିବା ସର୍ବାପେକ୍ଷା ଉତ୍କୃଷ୍ଟ ଦାନ ଅଟଇ ସନ୍ଦେହ ନାହିଁ ।

## ( ୧୨ଶ ଭାଗ, ୭ । ୧ । ୧୮୭୭, ସଂଖ୍ୟା ୧ )

୯୫

### ପରୀକ୍ଷାଫଳ

କଲିକତା ବିଶ୍ୱବିଦ୍ୟାଳୟର ଫାଷ୍ଟ ଆର୍ଟସ ଓ ପ୍ରବେଶିକା ପରୀକ୍ଷାର ଫଳ ବାହାର ଅଛି । ଓଡ଼ିଶାର ସ୍କୁଲମାନଙ୍କରୁ ପରୀକ୍ଷା ଦେଇଥିବା ଛାତ୍ରମାନଙ୍କ ମଧ୍ୟରୁ ଯେଉଁମାନେ କୃତକାର୍ଯ୍ୟ ହୋଇଅଛନ୍ତି ତାହାଙ୍କ ନାମ ଏଠାରେ ପ୍ରକାଶିତ ହେଲା । ଏ ସମ୍ବନ୍ଧରେ ଆମ୍ଭମାନଙ୍କ ମତାମତ ଆଗାମୀ ସପ୍ତାହରେ ବ୍ୟକ୍ତ କରିବୁଁ ।

#### ଫାଷ୍ଟ ଆର୍ଟସ ପରୀକ୍ଷା

୩ୟ ଶ୍ରେଣୀ ।

| | |
|---|---|
| ଆନନ୍ଦଚନ୍ଦ୍ର ମହାନ୍ତି | କଟକ କଲେଜ |
| ଯଦୁନାଥ ରାୟ | ଏଜନ |

#### ପ୍ରବେଶିକା ପରୀକ୍ଷା ।

୧ମ ଶ୍ରେଣୀ

| | |
|---|---|
| ରାମଶଙ୍କର ରାୟ | କଟକ କଲେଜ |
| ପ୍ରିୟନାଥ ମୁଖର୍ଜୀ | ଏଜନ |
| ବ୍ରଜଲାଲ ମୁଖର୍ଜୀ | ଏଜନ |

୨ୟ ଶ୍ରେଣୀ

| | |
|---|---|
| ଆଶୁତୋଷ ବାନର୍ଜୀ | କଟକ କଲେଜ |
| ଜଗେଶଚନ୍ଦ୍ର ମୁଖର୍ଜୀ | ଏଜନ |
| ଯଦୁନାଥ କନ୍ୟୋଗୀ | ଏଜନ |
| ନିମାଇ ଚରଣ ମିତ୍ର | ଏଜନ |
| ଜାନକୀ ବଲ୍ଲଭ ଘୋଷ | ଏଜନ |
| ଦାମୋଦର ପାଢ଼ୀ | ଏଜନ |
| କେଉ ମହାନ୍ତି | ଏଜନ |
| ପ୍ରିୟନାଥ ଘୋଷ | ଏଜନ |

୩ୟ ଶ୍ରେଣୀ

| | |
|---|---|
| ଜୟନାରାୟଣ ଦାସ | କଟକ କଲେଜ |
| ଗୋପୀନାଥ ଦେ | ଏଜନ |
| ରାମକୃଷ୍ଣ ଦାସ | ଏଜନ |
| ମହେନ୍ଦ୍ରଚନ୍ଦ୍ର ସେନ | ଏଜନ |

କଟକ ଉଚ୍ଚ ସ୍କୁଲ

୩ୟ ଶ୍ରେଣୀ

ଉଦୟନାଥ ପଟ୍ଟନାୟକ

ସୁହଂକଲ

୨ୟ ଶ୍ରେଣୀ

ମଦନଧର ଦାସ

କୃଷ୍ଣମୋହନ ପଟ୍ଟନାୟକ

ସୂଚୀକଲ

୩ୟ ଶ୍ରେଣୀ

କୃଷ୍ଣଦେବ ଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ
ଶ୍ୟାମପ୍ରସାଦ ବୋଷ
ବଂଶୀଧର ମହାନ୍ତି

---

## ( ୧୨ଶ ଭାଗ, ୧୦ । ୨ । ୧୮୭୭, ସଂଖ୍ୟା ୬ )

୯୬ । କଲିକତା ବିଶ୍ୱବିଦ୍ୟାଳୟର ବି: ଏ: ପରୀକ୍ଷାର ଫଳ କଲିକତା ଗଜେଟରେ ବାହାରିଅଛି । ଆମ୍ଭେମାନେ ଚିତ୍ତରେ ଅତ୍ୟନ୍ତ ଆନନ୍ଦ ସହିତ ପାଠ କଲୁଁ ଯେ ଓଡ଼ିଶାର ଦୁଇଗୋଟି ଛାତ୍ର ଏଥର ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି । ଏମାନଙ୍କ ନାମ ନିତ୍ୟାନନ୍ଦ ଘୋଷ ଓ ଚତୁର୍ଭୁଜ ପଟ୍ଟନାୟକ । ଏଥିପୂର୍ବେ କେବଳ ବାବୁ ମଧୁସୂଦନ ଦାସ ବି: ଏ: ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ମାତ୍ର ସେ ଓଡ଼ିଶାରୁ ବାହାର ପାଇ ଖ୍ରୀଷ୍ଟିଆନ ହୋଇ କଲିକତାରେ ଅଧ୍ୟୟନ କରିବାଦ୍ୱାରା କୃତକାର୍ଯ୍ୟ ହୋଇଥିବାରୁ ଓଡ଼ିଶାର ଲୋକପରି ବୋଧ ହେଉନାହିଁ । ସମ୍ପ୍ରତି ଯେଉଁ ଦୁଇଜଣ ଉତ୍ତୀର୍ଣ୍ଣ ହେଲେ ଏମାନେ କେବଳ ପ୍ରକୃତ ଓଡ଼ିଆ ଏତିକି ନୁହେ କଟକ ହାଇସ୍କୁଲରେ ଏଲ୍ ଏ. ପରୀକ୍ଷା ଦେଇ ପ୍ରେସିଡେନ୍ସି କଲେଜରେ ପାଠ କରୁଥିଲେ । ନିତ୍ୟାନନ୍ଦ ବାବୁ ଏକାଥରକେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ ଏଥିପାଇଁ ସେ ବିଶେଷ ପ୍ରଶଂସା ଯୋଗ୍ୟ ଅଟନ୍ତି ମାତ୍ର ଚତୁର୍ଭୁଜ ପଟ୍ଟନାୟକ ତିନିଥର ହାରିଯାଇ ସୁଦ୍ଧା ଯେ ହତାଶ ନହୋଇ କ୍ରମଶଃ ପରିଶ୍ରମ କରି ଚତୁର୍ଥଥରରେ କୃତକାର୍ଯ୍ୟ ହେଲେ ତାହାଙ୍କର ଅଧ୍ୟବସାୟ ସାମାନ୍ୟ ପ୍ରଶଂସାର ବିଷୟ ନୁହଇ । ଅନେକ ଛାତ୍ର ଥରକରେ ଅକ୍ଷମ ହେଲେ ସୁଦ୍ଧା ଛାଡ଼ିଦେଇ ବସନ୍ତି, ଏପରି ଲୋକଙ୍କୁ ଆମ୍ଭେମାନେ ଅନୁରୋଧ କରୁଅଛୁଁ ଯେ ସେମାନେ ପଟ୍ଟନାୟକଙ୍କ ଅଧ୍ୟବସାୟ ଅନୁକରଣ କରନ୍ତୁ ତାହାହେଲେ ଓଡ଼ିଶାର ଅବସ୍ଥା ଶୀଘ୍ର ଉନ୍ନତ ହେବ । ଯାହାହେଉ ଓଡ଼ିଶାର ଭାଗ୍ୟରୁ ଦୁଇଜଣ ବି: ଏ: ପ୍ରାପ୍ତ ହେଲେ ବଡ଼ ସୁଖର ବିଷୟ ଅଟଇ । ଏଥର ଦେଖାଯିବ କମିଶନର ସାହେବ ଏମାନଙ୍କୁ କି ପୁରସ୍କାର ଦେବେ । ଆମ୍ଭମାନଙ୍କ ମତରେ ଏମାନେ ଆଇନର ପରୀକ୍ଷା ଦେଇ ଉକିଲ ହୋଇ ଆସିଲେ ହେବ ।

( ୧୨ଶ ଭାଗ, ୭ । ୪ । ୧୮୭୭, ସଂଖ୍ୟା ୧୪ )

୯୭ ।　　　　କଟକ ମେଡ଼ିକାଲ ସ୍କୁଲ

ଗତ ଶନିବାର ସକାଳ ବେଳା ଏ ନଗରର ଜେନେରଲ ହାସ-ପାତାଲ ଗୃହରେ କଟକ ମେଡ଼ିକାଲ ସ୍କୁଲର ବାର୍ଷିକ ପାରିତୋଷିକ ବିତରଣ ଉପଲକ୍ଷରେ ସଭା ହୋଇଥିଲା । ଉକ୍ତ ବିଦ୍ୟାଳୟଟି ଗତବର୍ଷ ଏଠାରେ ଫିଟିଅଛି ଓ ଏହି ସଭାଟି ଏହାର ପ୍ରଥମ ବାର୍ଷିକ ସଭା ଅଟଇ ।

× × ×

ଆମ୍ଭମାନଙ୍କର ନୂତନ କମିଶନର ଶ୍ରୀଯୁକ୍ତ ବମ୍‌ସ୍ ସାହେବ ଏ ନୂତନ ସଭାର ସଭାପତି ହୋଇ କାର୍ଯ୍ୟାରମ୍ଭ କଲେ । ଡାକ୍ତର ସାହେବ ଅତି ସୁନ୍ଦର ରୂପେ ବାର୍ଷିକ ବିଜ୍ଞାପନୀ ପାଠକଲେ ଓ ତହିଁରେ ବିଦ୍ୟାଳୟର ସମ୍ପୂର୍ଣ୍ଣ ଅବସ୍ଥା ବର୍ଣ୍ଣିତ ହୋଇଥିଲା । ଉକ୍ତ ବିଜ୍ଞାପନୀରୁ ଜଣାଗଲା ଯେ ଏ ବିଦ୍ୟାଳୟଟି ସନ ୧୮୭୬ ମସିହା ଫେବ୍ରୁଆରୀ ମାସରେ ଫିଟିଲା । ଏଥିରେ ପଢ଼ିବା ପାଇଁ ଜ୬୦ଣ ପ୍ରାର୍ଥନା କରିଥିଲେ ତହିଁ ମଧ୍ୟରୁ ଜ୨ଣ ଅଯୋଗ୍ୟ ଥିବାରୁ ତାହାଙ୍କର ପ୍ରାର୍ଥନା ଅଗ୍ରାହ୍ୟ ହେଲା । ଅବଶିଷ୍ଟ ଜ୭୨ଣ ମଧ୍ୟରୁ ତଳଲିଖିତ ରୂପେ ଜ୨୦ଣ ବୃତ୍ତିଭୋଗୀ ଛାତ୍ରସ୍ୱରୂପ ମନୋନୀତ ହେଲେ ଯଥା;—

କଟକ ଜିଲ୍ଲାରୁ ଜ୧୦ଣ
ବାଲେଶ୍ୱର „ ଜ୩ଣ
ପୁରୀ „ ଜ୪ଣ
ଗଡ଼ଜାତ ମଧ୍ୟରୁ ଜ୨ଣ
ସମ୍ବଲପୁରରୁ ଜ୧ଣ

ଏପରି ଜ୧୬ଣ ଛାତ୍ର ବେତନ ନଦେଇ ପଢ଼ିବାକୁ ଇଚ୍ଛା କରିବାରୁ ତାହାଙ୍କୁ ସୁଦ୍ଧା ନିଆଗଲା ଏହିପରି ଜ୩୬ଣ ଛାତ୍ର ଘେନି ବିଦ୍ୟାଳୟଟି ଆରମ୍ଭ ହେଲା ଏବଂ ବିଦ୍ୟାଳୟ ସ୍ଥାପନ ପୂର୍ବେ ଯେ ଛାତ୍ର ମିଳିବା ପକ୍ଷରେ ସନ୍ଦେହ ହୋଇଥିଲା ତାହା ଏକାବେଳକେ ଅମୂଳକ ହୋଇଗଲା । ପୁଣି ସୁଖର ବିଷୟ ଯେ କେବଳ ଜ୬ଣ ଛାତ୍ର ବର୍ଷ ମଧ୍ୟରେ ସ୍କୁଲ ତ୍ୟାଗ କରି ଗଲେ ଓ ବର୍ଷ ଶେଷରେ ଜ୧୮ଣ ବୃତ୍ତି-ଭୋଗୀ ଓ ଜ୧୩ଣ ଅବୈତନିକ ଛାତ୍ର ବିଦ୍ୟାଳୟରେ ରହିଲେ । ଭିନ୍ନ ଜିଲ୍ଲାର ଛାତ୍ର-ମାନଙ୍କ ସକାଶେ ସ୍କୁଲ ହତାରେ ଘରଦ୍ୱାର ହେଲା ଓ ତହିଁରେ ବର୍ତ୍ତମାନ ଜ୧୬ଣ ବାଳକ ବସା କରି ରହିଅଛନ୍ତି ।

× × ×

ନୂତନ ବିଦ୍ୟାଳୟର ଏତାଦୃଶ ସୁନ୍ଦର ଫଳ ପ୍ରଥମ ବର୍ଷରେ ହେବାର ଦେଖି ଅମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ ଓ ଏଥିପାଇଁ ଶ୍ରୀଯୁକ୍ତ ଡାକ୍ତର ଷ୍ଟିୱାର୍ଟ ସାହେବଙ୍କୁ ଅସଂଖ୍ୟ ଧନ୍ୟବାଦ ଦେଉଅଛୁଁ କାରଣ ସେ କେବଳ ସ୍କୁଲ ହିତ ସକାଶେ ଶ୍ରୀଯୁକ୍ତ ରେବେନସା ସାହେବ କମିଶନରଙ୍କୁ ମନାଇ ତାହାଙ୍କ ସାହାଯ୍ୟରେ ଗବର୍ଣ୍ଣମେଣ୍ଟ ମଞ୍ଜୁରି ଆଣାଇ ଆପେ ବିନା ବେତନରେ ପରିଶ୍ରମ କରି ଓ ଆପଣା ଅଧୀନସ୍ଥ କର୍ମଚାରୀଙ୍କୁ ମଧ୍ୟ ସେହିରୂପ ପରିଶ୍ରମ କରିବାକୁ ପ୍ରବୃତ୍ତ କରାଇବାରୁ ଏ ପ୍ରକାର ସୁନ୍ଦର ଫଳ ହେଲା ।

ଉକ୍ତ ପରୀକ୍ଷା ପାଠ ହେଲା ଉତ୍ତାରୁ ସଭାପତି ଶ୍ରୀଯୁକ୍ତ ବିମ୍ସ୍ ସାହେବ ଛାତ୍ରମାନଙ୍କୁ ପାରିତୋଷିକ ବିତରଣ କଲେ ଓ ଏଠାରେ ଲେଖିବାର ଉଚିତ କି ଏ ନଗରବାସି ସମ୍ଭ୍ରାନ୍ତ ବ୍ୟକ୍ତିମାନେ ପାରିତୋଷିକ ନିମିତ୍ତ ଚାନ୍ଦାଦ୍ୱାରା ୫୧୭୮ଙ୍କା ଦେଇଥିଲେ ଏହା ସୁଖର ବିଷୟ ଅଟଇ ।

× × × × ×

× × × ×

( ୧୬ଶ ଭାଗ, ୨୭।୫।୧୮୭୭, ସଂଖ୍ୟା ୨୧ )

## ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧାରଣ କମ୍ପାନୀ

ବାଲେଶ୍ୱର ସମ୍ବାଦ ବାହିକାରୁ ଜଣାଗଲା କି ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧାରଣ କମ୍ପାନୀ ନାମରେ ଗୋଟିଏ ନୂତନ କମ୍ପାନୀ ଏ ନଗରରେ ସ୍ଥାପିତ ହେବାର କଳ୍ପନା ହୋଇଅଛି । ଏଥିର ମୂଳଧନ ୫୫୦୦୦ଙ୍କା ଓ ପ୍ରତ୍ୟେକ ଅଂଶ ୫୨ଙ୍କା ଲେଖାଏ ହେବ । ଶ୍ରୀଯୁକ୍ତ ବିମ୍ସ୍ ସାହେବ ଏ କମ୍ପାନୀର ସହାୟ । ବାବୁ କାଳୀପଦ ବାନର୍ଜୀ ମୂଳାଧାର ଏବଂ ବାବୁ ବୈଦ୍ୟନାଥ ପଣ୍ଡିତ ରାୟ ବାହାଦୁର ଏ କମ୍ପାନୀର ଅଧ୍ୟକ୍ଷ ସମାଜର ସଭାପତି । ଓଡ଼ିଆ ଭାଷାର ଯେ ସମସ୍ତ ପ୍ରାଚୀନ ଗ୍ରନ୍ଥ ତାଳ ପତ୍ରରେ ଲେଖାଅଛି ସେ ସବୁକୁ ଛାପାକରି ବିକ୍ରୟ କରିବା ଏବଂ ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ ପୁସ୍ତକ ମଧ୍ୟ ମୁଦ୍ରିତ କରିବା ଏ କମ୍ପାନୀର ଉଦ୍ଦେଶ୍ୟ ଅଟଇ । କାରଖାନାଟି ବଡ଼ ଧୂମଧାମରେ ଚାଲୁଅଛି, କାର୍ଯ୍ୟ କିପରି ଚଳିବ ଓ ଅଂଶିମାନଙ୍କର କି ଲାଭ ହେବ କମ୍ପାନୀର ନିୟମାବଳୀ ଦେଖି ନଥିବାରୁ କହି ନପାରୁ ଓ ମଧ୍ୟ ଆମ୍ଭମାନଙ୍କର ଏ ସମ୍ପର୍କରେ କିଛି କହିବାର ପ୍ରାୟ ଉଚିତ ନୁହଇ କାରଣ ବିଲକ୍ଷଣ ସମ୍ଭବ ହୁଅଇ ଯେ ଅମ୍ଭେମାନେ ପ୍ରକୃତ କଥା କହିଲେ ମଧ୍ୟା କେତେ ଲୋକ ତାହାର ଭିନ୍ନ ଭାବ ଗ୍ରହଣ

କରିବେ । ଏହି ହେତୁରୁ ଏ ପ୍ରସ୍ତାବର ମୂଳାଧାର ସୁବିବେଚନା ପୂର୍ବକ ତାହା ଆମ୍ଭ-ମାନଙ୍କ ନିକଟକୁ ପଠାଇ ଦାନ୍ତୁ ।

## ( ୧୬ଶ ଭାଗ, ୨ । ୭ । ୧୮୭୨, ସଂଖ୍ୟା ୨୨ )

୯୯ ।

### ଚୌଦ୍ୱାର ତମ୍ବା ପଟ୍ଟା ।

ଚୌଦୁଆର ପାଟର ଗତବର୍ଷ ଯେଉଁ ତମ୍ବା ପଟ୍ଟା ସନନ୍ଦ ଗୋଟିଏ କ୍ଷେତରୁ ବାହାର ଏଠା କଲେକ୍ଟରୀ କଚେରୀକୁ ଆସିଥିଲା, ବାବୁ ରଙ୍ଗଲାଲ ବାନ୍ଦର୍ଯ୍ୟା ଡେପୁଟୀ କଲେକ୍ଟରେ ତାହାକୁ ପାଠକରି ତହିଁର ବୃତ୍ତାନ୍ତ କଲିକତାର ଆସିଆଟିକ ସୋସାଇଟୀ ନାମକ ସଭାକୁ ପଠାଇଥିଲେ । ତହିଁରୁ ଜଣାଯାଏ ଯେ ଉକ୍ତ ତମ୍ବା ପଟ୍ଟାରେ କଟକ ଅନ୍ତଃପାତୀ ଖଣ୍ଡିଏ ଗ୍ରାମଦାନ ହୋଇଥିଲା । ଦାତାର ନାମ ଯଯାତି । ଏ ବ୍ୟକ୍ତି କେଶରୀ ବଂଶର ସ୍ଥାପନକର୍ତ୍ତା ଥିଲେ କି ସେ ଖ୍ରୀଷ୍ଟର ପଞ୍ଚମ ଶତାବ୍ଦୀରେ ବୌଦ୍ଧମାନଙ୍କୁ ତଡ଼ାଇ ଓଡ଼ିଶାରେ ହିନ୍ଦୁଧର୍ମର ଅଧିକାର ପୁନର୍ବାର ସ୍ଥାପନ କରି-ଥିଲେ । ଏହାଙ୍କୁ ଏ ପର୍ଯ୍ୟନ୍ତ ସମସ୍ତେ ସ୍ୱାଧୀନ ରାଜା ଜ୍ଞାନ କରୁଥିଲେ ମାତ୍ର ପ୍ରସ୍ତାବିତ ସନନ୍ଦରେ ସେ ଆପଣାକୁ ମଗଧ ଦେଶର ଭବଗୁପ୍ତଙ୍କ ଅଧୀନ ବୋଲି ସ୍ୱୀକାର କରିଅଛନ୍ତି । ଅତଏବ ବୋଧହୁଅଇ କି ଯେଉଁ ବ୍ୟକ୍ତି ଓଡ଼ିଶାରେ ବୌଦ୍ଧଙ୍କ ଅଧିକାର ନାଶ କଲେ ସେ ମଗଧ ଦେଶର ଜଣେ କ୍ଷୁଦ୍ର ରାଜା ଥିଲେ ଓ ଆପଣା ଅଧୀନ ସନଦାର ଦ୍ୱାରା ଏ ପ୍ରଦେଶକୁ ଶାସନ କରୁଥିଲେ । ପୁରୁଷୋତ୍ତମର ମନ୍ଦିରରେ ଥିବା ବିବରଣରେ ବୌଦ୍ଧମାନଙ୍କୁ ଯବନ ବୋଲି ଲେଖାଯାଇଅଛି । ଓଡ଼ିଶା ରାଜାଙ୍କର ସ୍ୱାଧୀନତା ଅଳୀକ ଥିବାର ଶୁଣି ଏଠାରେ ଅନେକେ ଆଶ୍ଚର୍ଯ୍ୟ ହେବେ ।

## ( ୧୬ଶ ଭାଗ, ୧୧ । ୮ । ୧୮୭୨, ସଂଖ୍ୟା ୩୨ )

୧୦୦ ।

### ପ୍ରେରିତ ପତ୍ର

ବାଳିକା ବିଦ୍ୟାଳୟ ସ୍ଥାପନ

ମହାଶୟ, ସ୍ତ୍ରୀ ଜାତିଙ୍କ ଉନ୍ନତି ପକ୍ଷରେ ବିଦ୍ୟାଶିକ୍ଷା ଯେ କେତେ ପର୍ଯ୍ୟନ୍ତ ବହୁମୂଲ୍ୟ ଉପାୟ ଅଟେ ତାହା ସର୍ବସାଧାରଣଙ୍କୁ ଅବିଦିତ ନୁହେଁ । ଏହି ଅଭିପ୍ରାୟରେ ଆମ୍ଭେ ଯତ୍ନପୂର୍ବକ ଗୋଟିଏ ବାଳିକା ବିଦ୍ୟାଳୟ ସଂସ୍ଥାପନ କରିଅଛୁଁ । ଆଉ ବିଦ୍ୟାଳୟର ସ୍ଥାନ ଅଭାବ ପ୍ରଯୁକ୍ତ କେତେକ ବିଷୟରେ ଅସୁବିଧା ହେବାରୁ ଗୋଟିଏ

ଙ୍କ୍ରି କମିଶନର ସକଲ କରି ମହାରାଣୀ ସ୍ୱର୍ଣ୍ଣମୟୀଙ୍କୁ ପୂର୍ବୋକ୍ତ ବିଷୟ ଅବଗତ କରାଇବାରେ ସେ ମହାନୁଗ୍ରହପୂର୍ବକ ଏ କାର୍ଯ୍ୟ ସିଦ୍ଧ ନିମନ୍ତେ ୫୦୦ଙ୍କା ପ୍ରଦାନ କରିଅଛନ୍ତି, ତାହା ଆମ୍ଭେ କୃତଜ୍ଞତା ପୂର୍ବକ ସ୍ୱୀକାର କରୁଅଛୁଁ ।

ପୁନଶ୍ଚ ଦେଶହିତୈଷୀ ବର୍ଗଙ୍କ ମଧ୍ୟରୁ ଯେବେ କେହି ପୂର୍ବୋକ୍ତ କାର୍ଯ୍ୟକୁ ଉତ୍ତମ ଜ୍ଞାନକରି କିଛି ୨ ପ୍ରଦାନ କରନ୍ତି, ତେବେ ତାହା କୃତଜ୍ଞତା ପୂର୍ବକ ଗୃହୀତ ହେବ ।

ସମ୍ପାଦକ ମହାଶୟ, ଏ ବିଷୟମାନ ଆପଣଙ୍କ ପତ୍ରିକାରେ ସ୍ଥାନ ଦେଇ ପ୍ରକାଶ କଲେ ଚିରବାଧିତ ହେବୁଁ ।

କଟକ
ସୁତାହାଟ

ଆପଣଙ୍କ ବଶମ୍ବଦ
ଶ୍ରୀ ଯନ୍ ସାମସୋନ ରାଉତ
ଦେଶୀୟ ବାଳିକା ବିଦ୍ୟାଳୟର ସେକ୍ରେଟେରୀ ।

୧୦୧ । ସାପ୍ତାହିକ ସମ୍ବାଦ

ଛାତ୍ର ବୃତ୍ତି

ଶ୍ରୀଯୁକ୍ତ କମିଶନର ସାହେବ ଘୋଷଣା ଦେଇଅଛନ୍ତି କି ଓଡ଼ିଶା ଡିଭିଜନରେ ଯେଉଁ ୧୦ଗୋଟି ପ୍ରାଇମେରୀ ଛାତ୍ର ବୃତ୍ତି ନିରୂପିତ ହୋଇଅଛି ତହିଁ ମଧ୍ୟରୁ ମାସିକ ୫୧୫ଙ୍କା ମୂଲ୍ୟର ଗୋଟିଏ ବୃତ୍ତି ଓଡ଼ିଶାର ଛାତ୍ରମାନଙ୍କ ମଧ୍ୟରେ ଯେଉଁମାନେ ସର୍ବୋଚ୍ଚ ଅଙ୍କ ପାଇବେ ତାହାଙ୍କୁ ଦିଆଯିବ । ଅନ୍ୟ ୨ଗୋଟି ୫୧୦ଙ୍କା ମୂଲ୍ୟର ବୃତ୍ତି କଟକ ପୁରୀ ଓ ବାଲେଶ୍ୱର ଜିଲ୍ଲାର ଛାତ୍ରମାନଙ୍କୁ ସମାନ ଭାଗ ଅର୍ଥାତ୍ ପ୍ରତ୍ୟେକ ଜିଲ୍ଲାକୁ ଗୋ୨ଟି ଲେଖାଏଁ ବାଣ୍ଟି ଦିଆଯିବ । ଏକ ଜିଲ୍ଲାର ଛାତ୍ର ବୃତ୍ତି ସେ ଜିଲ୍ଲାରେ ଗୃହୀତ ନହେଲେ ଅପର ଜିଲ୍ଲାର ଛାତ୍ର ତାହା ପାଇ ପାରିବ ।

## ( ୧୧ଶ ଭାଗ, ୨୯ । ୯ । ୧୮୭୭, ସଂଖ୍ୟା ୩୯ )

୧୦୨ । ଅଡ଼ିଶନ୍ତ ଉତ୍କଳ ଦୀପିକା

**ପ୍ରେରିତ ପତ୍ର**

ମହାଶୟ, ଆଜ ଆପଣଙ୍କ ପତ୍ରିକାର ପାର୍ଶ୍ୱର ମୁଁ ଜଣେ ପ୍ରାର୍ଥୀ । ପ୍ରତି ଉତ୍କଳବାସୀର ମଙ୍ଗଳଜନକ ଗୋଟିଏ ବିଷୟରେ ମୋର କିଛି ବକ୍ତବ୍ୟ ଅଛି । ଆପଣଙ୍କ ପତ୍ରଦ୍ୱାରା ମୁଁ ତାହା ବ୍ୟକ୍ତ କରିବି । ଆମ୍ଭମାନଙ୍କର ପ୍ରଧାନ ହାକିମ କମିଶନର ସାହେବ ତାହା ଶୁଣିବେ, ସେଥିର ପ୍ରତିକାର କରିବେ ଏହି ଆଶାରେ ମୁଁ ଉକ୍ତ

ବିଷୟଟି ଛପାଇବା ପାଇଁ ଆଜି ଏତେ ବ୍ୟସ୍ତ ହୋଇଅଛି । ସାନ ଲୋକେ ଶୁଣିବେ ବୋଲି ଆଶା କଲାନ୍ତି, ମାତ୍ର ସାନ ଲୋକଙ୍କର ଦେଶୀୟ ସମ୍ବାଦ ପତ୍ର ପ୍ରତି ସେପରି ଭକ୍ତି, ସେଥିରେ ସେ ଯେ ଶୁଣିବେ ଏଥିରେ ମୋହୋର ସନ୍ଦେହ ଜନ୍ମୁଅଛି । ପୁଣି ଏଠାରେ ଉତ୍କଳ ଅନୁବାଦକ ମହାଶୟ ସମ୍ବାଦକୁ ସମ୍ବାଦ ଅନୁବାଦ କରି ପଠାନ୍ତି କି ନାହିଁ, ସେଥିର ସୂଚନା ଅଜ୍ଞାତ । ସୁତରାଂ ସେ ଆଶା ନାହିଁ । ଶୁଣୁଅଛି ସାମ୍ସ ସାହେବ ଟିକିଏ ୨ ଏବେ ଆପଣଙ୍କ ପତ୍ର ପଢ଼ନ୍ତି, ମଧ୍ୟ ସେ ପ୍ରଧାନ ଉତ୍କଳହିତୈଷୀ ବୋଲି ସମ୍ବାଦକୁ ସମ୍ବାଦ ପକ୍ଷକୁ ପଥ ବାଲେଶ୍ୱରରୁ ରଡ଼ି ଆସୁଅଛି; ଓଡ଼ିଶାର ପ୍ରତ୍ୟେକ ସ୍ଥାନ, ଶୁଣିବାରେ ତାଙ୍କର ସମ୍ବାଦ୍‌ଧ୍ୱନିକୁ ପ୍ରତିଧ୍ୱନିତ କରୁଅଛି । ମଧ୍ୟ ତାଙ୍କର ଶୁଣିଛି ବଡ଼ ଦୟାର୍ଦ୍ର ଚିତ୍ତ । ଲୋକଙ୍କ 'ମୋହବନ୍ତ' ସେ ଏଡ଼ି ପାରନ୍ତି ନାହିଁ । ଏ ସବୁରୁ ସେ କ୍ଷଣେ ମୋ ଗୁହାରି ଶୁଣିବେ ବୋଲି ମୋହୋର ବଡ଼ ଆଶା ଜନ୍ମିଅଛି । ମୋ ଗୁହାରି ତାଙ୍କ କର୍ଣ୍ଣରେ ପଡ଼ିଲେ, ମୋ କାମନା ସଫଳ ହୋଇପାରେ ।

ତେବେ ଅଧିକ ମୁଖବନ୍ଧ ଅନାବଶ୍ୟକ । ମୂଳପ୍ରସ୍ତାବର ସୂଚନା ହେଉ । ମୂଳ ପ୍ରସ୍ତାବଟି ସାମାନ୍ୟ । ସେଥିପ୍ରତି ଅବଧାନ କରନ୍ତୁ ।

ବର୍ତ୍ତମାନ ଓଡ଼ିଶା ବିଦ୍ୟାଳୟ ସମୂହର ବାବୁ ନନ୍ଦ କିଶୋର ଦାସ ଜଏଣ୍ଟ ଇନସ୍ପେକ୍ଟର ଅଛନ୍ତି । ଜଣେ ଦେଶୀୟ ଲୋକ ଜଏଣ୍ଟ ଇନସ୍ପେକ୍ଟର ହେଲେ ଓଡ଼ିଶା ବିଦ୍ୟାଶିକ୍ଷାର ଓ ଓଡ଼ିଆ ଭାଷାର ବହୁ ମଙ୍ଗଳ ହେବ ବୋଲି ରେଭେନଶା ସାହେବ ତାଙ୍କୁ ଡେପୁଟୀ କଲେକ୍ଟରରୁ ଆଣି ଏ କାର୍ଯ୍ୟରେ ନିଯୁକ୍ତ କରାଇଥିଲେ, ଉକ୍ତ ବାବୁ ମଧ୍ୟ ଆଶାନୁରୂପ କାର୍ଯ୍ୟ କରିଅଛନ୍ତି । ଓଡ଼ିଶାର ଶିକ୍ଷିତ ଲୋକେ ଯଥାସାଧ୍ୟ ଶିକ୍ଷାର ପୁରସ୍କାର ବାବୁଙ୍କଠାରୁ ପାଇଅଛନ୍ତି । ଓଡ଼ିଶା ବିଦ୍ୟାଳୟ ଓ ପାଠଶାଳା-ଚୟର ଶିକ୍ଷାପ୍ରଣାଳୀ ଏହି ବାବୁଙ୍କ ଯତ୍ନରେ କ୍ରମଶଃ ଉନ୍ନତ ହେଉଅଛି । ତାଙ୍କଦ୍ୱାରା ବିଦ୍ୟାଳୟର ବୃତ୍ତି ପରୀକ୍ଷା ନିୟମର ଶୃଙ୍ଖଳା ସମ୍ୟକ୍ ରୂପେ ସ୍ଥାପିତ ହୋଇଅଛି । ଉତ୍କଳ ପୁସ୍ତକମାନ ନିର୍ବାଚନ କରି ଉତ୍ତମ ୨ ପୁସ୍ତକମାନଙ୍କୁ ବିଦ୍ୟାଳୟର ପାଠ୍ୟ ପୁସ୍ତକ ସ୍ୱରୂପ ନିର୍ଦ୍ଧାରିତ କରି ଉତ୍ତମ ଓଡ଼ିଆ ପୁସ୍ତକ ରଚନା ବିଷୟରେ ଯଥେଷ୍ଟ ଉତ୍ସାହ ଦେଇଅଛନ୍ତି । ଏହିପରି ଗୋଟିଏ ୨ କରି ତାଙ୍କ କାର୍ଯ୍ୟ କଥା ଲେଖିବା ମୋ ପକ୍ଷରେ ବାହୁଲ୍ୟ ମାତ୍ର । ତାଙ୍କର ନିଯୁକ୍ତି ସ୍ଥଳରେ ରେଭେନଶା ସାହେବଙ୍କର ଓଡ଼ିଶାରେ ଗୋଟିଏ କୀର୍ତ୍ତି ବିଶେଷ । ଆଜିକି କିଛି ପାଞ୍ଚଦିନ ହେଲା ଶୁଣିଲି, ଡେପୁଟୀ କଲେକ୍ଟରୀ ଧାଡ଼ିରେ ତାଙ୍କର ୧୦୦ ଟଙ୍କା ବେତନ ବୃଦ୍ଧି ହେବାରୁ ତାଙ୍କୁ ୧୦୦ ଟଙ୍କା ଜଏଣ୍ଟ ଇନସ୍ପେକ୍ଟରୀ ଏଲାଉନସ ସାନଲାଟ ସାହେବ ଦେବାକୁ ଅସମ୍ମତ । ସୁତରାଂ ଉକ୍ତ ବାବୁ ଆପଣା ଡେପୁଟୀ କଲେକ୍ଟରୀ କର୍ମକୁ ପ୍ରତିଗମନ କରୁଅଛନ୍ତି । ମୋହୋ

ସ୍ଥାନବିବେଚନାରେ ନନ୍ଦ କିଶୋର ବାବୁ ଯେପରି ଓଡ଼ିଶାର ଶୁଭାନୁଧ୍ୟାୟୀ ହୋଇ କାର୍ଯ୍ୟ କରିଅଛନ୍ତି ଓ ବର୍ତ୍ତମାନ ପ୍ରସ୍ତାବ ଅନୁସାରେ ଛୋଟ ନାଗପୁର, ଚଟ୍ଟଗ୍ରାମ, ଓଡ଼ିଶା ପ୍ରଭୃତିରେ ୪୦୦ ଟଙ୍କା ବେତନରେ ଜଣେ ୨ ଜଏଣ୍ଟ ବା ଆସିଷ୍ଟାଣ୍ଟ ଇନ-ସ୍ପେକଟର ରଖିବାର ଯେପରି କଥା ହୋଇଅଛି, ଏହି ଉଭୟ ବିଷୟକୁ ବିଚାର କରି ନିତାନ୍ତ ପକ୍ଷେ ନନ୍ଦ କିଶୋର ବାବୁଙ୍କର ଡେପୁଟୀ କଲେକ୍ଟରୀ ଧାଡ଼ିରେ ୪୦୦ ଟଙ୍କା ହେବା ପର୍ଯ୍ୟନ୍ତ ତାଙ୍କୁ ୧୦୦ ଟଙ୍କା ଏଲାଉଏନ୍ସ ଦେଇ ଓଡ଼ିଶା ଜଏଣ୍ଟ ଇନସ୍ପେକ୍ଟରୀ କାର୍ଯ୍ୟରେ ରଖାଯାଉ । ମଧ୍ୟ ଏହିତ ପ୍ରତ୍ୟେକ ଓଡ଼ିଶାବାସିର ହୃଦୟର ପ୍ରାର୍ଥନା । ନନ୍ଦକିଶୋର ବାବୁ ଓଡ଼ିଶାବାସୀ, ସୁତରାଂ ସେ ଓଡ଼ିଶାର ଶିକ୍ଷା ଓ ଓଡ଼ିଆ ଭାଷାର ପ୍ରକୃତ ଅଭାବ ବୁଝି, ସେଥିର ପ୍ରତିକାର କରୁଅଛନ୍ତି ଓ ଏଥିମଧ୍ୟରେ ତାଙ୍କର କୃତ-କାର୍ଯ୍ୟତାର ବୀଜ ନିହିତ ରହିଅଛି ।

ଯଦି ଏହି ପ୍ରସ୍ତାବରେ ଥାମ୍ସ୍ ସାହେବ କୌଣସି କାରଣରୁ ଅସମ୍ମତ ହୁଅନ୍ତି; ଯଦି ତାଙ୍କୁ ସେ ଜଏଣ୍ଟ ଇନସ୍ପେକ୍ଟରୀରେ ଏ ଏଲାଉଏନ୍ସ ଦିଆଇ ରଖାଇବାକୁ ନଚାହାନ୍ତି; ତେବେ ଜଣେ ଏ ଦେଶୀୟ ଲୋକ ତାଙ୍କ କର୍ମରେ ନିଯୁକ୍ତ ହେବା ବିଷୟରେ ଯେମନ୍ତ ସେ ଯତ୍ନରୁ ତ୍ରୁଟି ନକରନ୍ତି, ଏହିତ ତାଙ୍କୁ ସବିନୟ ପ୍ରାର୍ଥନା । ଓଡ଼ିଶାବାସିଏ ବଙ୍ଗଦେଶୀୟ କୌଣସି ଶିକ୍ଷା ବିଭାଗୀୟ କର୍ମଚାରୀଙ୍କୁ ଏ କାର୍ଯ୍ୟରେ ଦେଖିବାକୁ ଚାହାନ୍ତି ନାହିଁ । ବଙ୍ଗୀୟଙ୍କର ଓଡ଼ିଶାର ଶିକ୍ଷାରେ ସହାନୁଭୂତି ଜନ୍ମିବା କଥାରେ ଓଡ଼ିଶାବାସିଙ୍କର ବିଶେଷ ସନ୍ଦେହ ଅଛି । ମଧ୍ୟ ଏ ସନ୍ଦେହ ଅହେତୁମୂଳକ ନୁହେ ।

ଯାହା ହେଉ ଜଣେ ଦେଶୀୟଙ୍କ ନାମ ଏଠାରେ ଉଲ୍ଲିଖିତ ହୋଇ-ପାରେ । ତାଙ୍କୁ ଉକ୍ତ କର୍ମ ଦେଲେ ଓଡ଼ିଶାବାସିଏ ଅସନ୍ତୁଷ୍ଟ ହେବେ ନାହିଁ, ସେ ବ୍ୟକ୍ତି ବାଲେଶ୍ୱରର ଡେପୁଟୀ ଇନସ୍ପେକ୍ଟର ରାଧାନାଥ ବାବୁ । ତାଙ୍କୁ ଏ କାର୍ଯ୍ୟରେ ନିଯୁକ୍ତ କଲେ ମଧ୍ୟ ଓଡ଼ିଶା ଶିକ୍ଷାବିଭାଗର ମଙ୍ଗଳର ସମ୍ୟକ୍ ସମ୍ଭାବନା । ସେ ପ୍ରକୃତ ବିଏ, ଏମାନଙ୍କଠାରୁ ଉପଯୁକ୍ତତର । ଅନେକ ଶିକ୍ଷା ବିଭାଗୀୟ ୨ । ୩ ଶହ ଟଙ୍କା ବେତନ ପାଉବା ଲୋକଙ୍କ ଅପେକ୍ଷା ସୁଦକ୍ଷତର କର୍ମଚାରୀ ଓ ଅଧିକ ପାଣ୍ଡିତ୍ୟଧାରୀ । ରାଭେନଶା ସାହେବ ସେଦିନ ଡେପୁଟୀ ଇନସ୍ପେକ୍ଟର ଧାଡ଼ିରେ ତାଙ୍କୁ ପଦୋନ୍ନତି ନଦେଇ ତାଙ୍କପ୍ରତି ବିଶେଷ ଅନ୍ୟାୟ କରିଅଛନ୍ତି, ଏହା ବୋଧହୁଏ ସ୍ୱୟଂ ଥାମ୍ସ୍ ସାହେବଙ୍କୁ ସୁଦ୍ଧା ଅଗୋଚର ନାହିଁ ।

ଶ୍ରୀଯୁକ୍ତ ଥାମ୍ସ୍ ସାହେବ ଉଲ୍ଲିଖିତ ଗୁହାରି ଦ୍ୱାରା କର୍ଣ୍ଣଡେର ଶୁଣି,

ସେଥିମଧ୍ୟରୁ ଗୋଟିକୁ ସଫଳ କଲେ, ପ୍ରକୃତ ତାଙ୍କର ନାମର ଗୌରବ ଓଡ଼ିଶା ଶିକ୍ଷା ସମ୍ବନ୍ଧରେ ପରିବର୍ଦ୍ଧିତ ହେବ । ଏହିଥିରୁ ମଧ୍ୟ ଜଣାଯିବ ଶ୍ରୀଯୁକ୍ତ ବାମ୍ସ୍ ସାହେବଙ୍କର ଓଡ଼ିଶା ପ୍ରତି କେତେଦୂର ମମତା !!! 'କମଧିକଂ ବକ୍ଷବଲେଷୁ' ।

ସମ୍ପାଦକ ମହାଶୟ ! ଆଜି ଏତିକ । ଓଡ଼ିଶା ଜଏଣ୍ଟ ଇନସ୍ପେକ୍ଟରୀ କାର୍ଯ୍ୟ ଜଣେ ଓଡ଼ିଶାବାସୀ ନପାଇଲେ ଓଡ଼ିଶା ଶିକ୍ଷା ବିଭାଗର ବିଶେଷ ମଙ୍ଗଳ ନାହିଁ । ଏଥିରେ ଆପଣଙ୍କ ମତ ଅବଶ୍ୟ ପ୍ରକାଶିତ ହେବ ।

ନିବେଦକ
ଠିକଠାକ ।

## ( ୧୨ଶ ଭାଗ, ୨୪ । ୧୧ । ୧୮୭୭, ସଂଖ୍ୟା ୪୭ )

୧୦୩ । ଆମ୍ଭେମାନେ ଅନେକ ଦିନରୁ ଉଡ଼ାଖବର ଶୁଣିଥିଲୁଁ ଯେ ଓଡ଼ିଶାର ଜଏଣ୍ଟ ଇନସ୍ପେକ୍ଟରୀ ପଦ ସକାଶେ ଶ୍ରୀଯୁକ୍ତ ବାମ୍ସ୍ ସାହେବ ବାବୁ ରାଧାନାଥ ରାୟଙ୍କୁ ମନୋନୀତ କରି ଗବର୍ଣ୍ଣମେଣ୍ଟକୁ ରିପୋର୍ଟ କରିଥିଲେ । ଗତ ସପ୍ତାହର କଲିକତା ଗେଜେଟ ଉକ୍ତ ଜନରବକୁ ସ୍ୱାର୍ଥ କଲା । ଆମ୍ଭେମାନେ ବାବୁ ରାଧାନାଥଙ୍କ ନିୟୋଗରେ ଆନନ୍ଦିତ ହୋଇଅଛୁଁ । ଓଡ଼ିଶାର ଡେପୁଟୀ ଇନସ୍ପେକ୍ଟରମାନଙ୍କ ମଧ୍ୟରେ ଏହାଙ୍କ ପ୍ରଶଂସା ଅଧିକ । ପ୍ରତିବର୍ଷର ବିଜ୍ଞାପନୀରୁ ତାହା ପ୍ରକାଶ ପାଉଅଛି । ଇଂରାଜୀ ଭାଷାରେ ଏମ୍. ଏ ଅଥବା ବି:ଏ ହୋଇ ନଥିଲେ ମଧ୍ୟ ଘରେ ବସି ଅନେକ ଶିକ୍ଷା କରିଅଛନ୍ତି ଏବଂ ଦେଶୀୟ ଭାଷାରେ ଏହାଙ୍କ ଯୋଗ୍ୟତାର ପରିଚୟ ଏହାଙ୍କ ପ୍ରକାଶିତ ପୁସ୍ତକମାନ ଦେଉଅଛି । କେହି ୨ ବୋଲନ୍ତି କି ଉମା ପ୍ରସାଦ ଦେଙ୍କ ପ୍ରତି ଅନ୍ୟାୟ ହୋଇଅଛି କାରଣ ସେ ଏହାଙ୍କ ଠାରୁ ଉଚ୍ଚ ଶ୍ରେଣୀରେ ଥିଲେ । ମାତ୍ର ଏ ଆପତ୍ତି ଯଥାର୍ଥ ନୁହଇ କାରଣ ଉମା ପ୍ରସାଦଙ୍କ ପଦୋନ୍ନତି ଠିକ୍ ନ୍ୟାୟ ବିଚାରରେ ହୋଇଥିବା ପକ୍ଷେ ସନ୍ଦେହ ଅଛି ପୁଣି ସେ ଓଡ଼ିଶାର ଲୋକ ନୁହନ୍ତି । ଆମ୍ଭମାନଙ୍କ ମତରେ ବାବୁ ନନ୍ଦକିଶୋର ଦାସଙ୍କ ଉତ୍ତାରୁ ବାବୁ ରାଧାନାଥ ରାୟଙ୍କୁ ମନୋନୀତ କରିବାରେ ଶ୍ରୀଯୁକ୍ତ ବାମ୍ସ୍ ସାହେବ ଉତ୍ତମ କରିଅଛନ୍ତି ଏବଂ ଏଥିରେ ଓଡ଼ିଶାର ଲୋକମାନେ ସନ୍ତୁଷ୍ଟ ହେବାର ଜଣାପାଏ ।

## ( ୧୩ଶ ଭାଗ, ୫ । ୧ । ୧୮୭୮, ସଂଖ୍ୟା ୧ )

୧୦୪ । ଗତ ଫାଷ୍ଟ ଆର୍ଟ୍‌ସ ପରୀକ୍ଷାରେ ନିମ୍ନଲିଖିତ ଛାତ୍ରମାନେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।

| | |
|---|---|
| ଦୁର୍ଗାଚରଣ ସାହୁ | ୨ୟ ଶ୍ରେଣୀ |
| କୃପାସିନ୍ଧୁ ସାହୁ | ୩ୟ ଶ୍ରେଣୀ |

ଗତ ପ୍ରବେଶିକା ପରୀକ୍ଷାରେ ନିମ୍ନଲିଖିତ ଛାତ୍ରମାନେ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି ।

କଟକ କଲେଜିଏଟ୍ ସ୍କୁଲ ।

| | | |
|---|---|---|
| ମହମ୍ମଦ ଅଲି | ୨ୟ ଶ୍ରେଣୀ | |
| ଶିବଶଚନ୍ଦ୍ର ରାୟଚୌଧୁରୀ | ,, | ,, |
| ଗିରିଧାରୀ ମହାନ୍ତି | ,, | ,, |
| ରବର୍ଟ ମାକାସନ ପ୍ରାଇଭେଟ | ,, | ,, |
| ସେଖ ମହମ୍ମଦ ଅଦାଲର | ୩ୟ ଶ୍ରେଣୀ | |
| ପୂର୍ଣ୍ଣାନନ୍ଦ ସିଂହ | ,, | ,, |
| କୃଷ୍ଣଚନ୍ଦ୍ର ରାୟ | ,, | ,, |
| ଆନନ୍ଦବଲ୍ଲଭ ଘୋଷ | ,, | ,, |
| ଗୌରଚରଣ ଦାସ | ,, | ,, |

ପୁରୀ ଜିଲ୍ଲା ସ୍କୁଲ ।

| | | |
|---|---|---|
| ଗଙ୍ଗାଧର ମିଶ୍ର | ୨ୟ ଶ୍ରେଣୀ | |
| ଜଗଦାନନ୍ଦ ପଟ୍ଟନାୟକ | ୩ୟ ଶ୍ରେଣୀ | |
| ବନମାଳୀ ଦାସ | ,, | ,, |

ବାଲେଶ୍ୱର ଜିଲ୍ଲାସ୍କୁଲ

| | | |
|---|---|---|
| ଗଜେନ୍ଦ୍ର ନାରାୟଣ ଦତ୍ତ | ୩ୟ ଶ୍ରେଣୀ | |
| ଶ୍ରୀବଲ୍ଲଭ ନନ୍ଦ | ,, | ,, |
| ଯଦୁନାଥ ଘୋଷ | ,, | ,, |

## ( ୧୩ଶ ଭାଗ, ୨୬ । ୧ । ୧୮୭୮, ସଂଖ୍ୟା ୪ )

୧୦୫ । ବିଶ୍ୱବିଦ୍ୟାଳୟର ଗତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଓଡ଼ିଶା ଛାତ୍ରମାନଙ୍କ ମଧ୍ୟରୁ ତଳ ଲିଖିତ ଛାତ୍ରମାନେ ବୃତ୍ତି ପାଇଅଛନ୍ତି, ଯଥା;—

ସିନିୟର ଅର୍ଥାତ୍ ଉଚ୍ଚ ଶ୍ରେଣୀର ଛାତ୍ର ବୃତ୍ତି

ଦ୍ୱିତୀୟଶ୍ରେଣୀ

| | |
|---|---|
| ଦୁର୍ଗାଚରଣ ସାହୁ | କଟକ କଲେଜ |

ମାଇନର ଅର୍ଥାତ୍ ନିମ୍ନଶ୍ରେଣୀର ଛାତ୍ରବୃତ୍ତି

| ଦ୍ୱିତୀୟ ଶ୍ରେଣୀ | | ତୃତୀୟ ଶ୍ରେଣୀ | |
|---|---|---|---|
| ଗିରିଶ୍ଚନ୍ଦ୍ର ରାୟଚୌଧୁରୀ | କଟକ ସ୍କୁଲ | ଜଗଦାନନ୍ଦ ପଟ୍ଟନାୟକ | ପୁରୀ ସ୍କୁଲ |
| ମହମ୍ମଦ ଅଲ୍ଲୀ | ,, ,, | କୃଷ୍ଣଚନ୍ଦ୍ର ରାୟ | କଟକ ସ୍କୁଲ |
| ଗଙ୍ଗାଧର ମିଶ୍ର | ପୁରୀ ସ୍କୁଲ | ପୂର୍ଣ୍ଣାନନ୍ଦ ସିଂହ | ,, ,, |
| ଗିରିଧାରୀ ମହାନ୍ତି | କଟକ ସ୍କୁଲ | ଶ୍ରୀବଲ୍ଲଭ ନନ୍ଦ | ବାଲେଶ୍ୱର ସ୍କୁଲ |
| | | ଗଜେନ୍ଦ୍ର ନାରାୟଣ ଦାସ | ,, ,, |
| | | ବନମାଳୀ ଦାସ | ପୁରୀ ,, |

( ୧୩ଶ ଭାଗ, ୨ । ୨ । ୧୮୭୮, ସଂଖ୍ୟା ୫ )

୧୦୬ । ଗତ ଗବର୍ଣ୍ଣମେଣ୍ଟ ଗଜେଟରେ ବି. ଏ. ପରୀକ୍ଷାର ଫଳ ବାହାରିଅଛି ମାତ୍ର କଟକ କଲେଜର ନାମ ନାହିଁ । ଏଠାରୁ ପାଞ୍ଚଜଣ ଛାତ୍ର ପରୀକ୍ଷା ଦେବାପାଇଁ କଲିକତାକୁ ଯାଇଥିଲେ ସମସ୍ତେ ବିଫଳ ହୋଇଅଛନ୍ତି । ଏହା ଅବଶ୍ୟ ଦୁଃଖର ବିଷୟ ଅଟଇ, କିନ୍ତୁ ଏଥିରେ ଆଶ୍ଚର୍ଯ୍ୟ କିଛିହିଁ ନାହିଁ । କଲେଜର ବନ୍ଦୋବସ୍ତ ଦେଖି ସମସ୍ତେ ପୂର୍ବରୁ କହୁଥିଲେ ଯେ ଏଥିରୁ ଭଲଫଳ ମିଳିବ ନାହିଁ ପ୍ରକୃତରେ ତାହା ଘଟିଲା ଏଥର କର୍ତ୍ତୃପକ୍ଷଙ୍କର ଆଖି ଫିଟିବ କି ? ନିର୍ଦ୍ଧନ ଓଡ଼ିଶାର କେତେ-ଗୁଡ଼ାଏ କୌଡ଼ି ଅକାରଣ ବ୍ୟୟ ହେଲା ଏବଂ ଏଣିକି ଯେବେ କଟକ ପ୍ରକୃତ କଲେଜ ପରି ନହୁଅଇ । ତେବେ ଅନ୍ୟୂନ୍ ଗୁଡ଼ାଏ ଟଙ୍କା ଅନର୍ଥକ ବ୍ୟୟ ହେବ । ଯେତେ ଟଙ୍କା ଏହି କଲେଜରେ ମାଟି ହେଲା ଯେବେ ତେତିକି ଟଙ୍କା ବାର୍ଷିକ ହୋଇ ଆଉ କୁଡ଼ି ଜଣଙ୍କୁ ବୃତ୍ତି ଦିଆଯିବାର ନିୟମ ହୋଇଥାନ୍ତା ତେବେ କେତେ ଉପକାର ହୋଇଥାନ୍ତା । ଯେତେବେଳେ କପାଳ ଫଟିବ ତେତେବେଳେ ଗଣ୍ଠିଧନ ମୁକ୍ତା କାର୍ଯ୍ୟରେ ଆସଇ ନାହିଁ ।

( ୧୩ଶ ଭାଗ, ୧୬ । ୩ । ୧୮୭୮, ସଂଖ୍ୟା ୧୧ )

୧୦୭ । ଯେଉଁମାନେ ଅବଶ୍ୟ ସର୍ଭେ ସ୍କୁଲରେ ଅଧ୍ୟୟନ କରିବାକୁ ଇଚ୍ଛା କରନ୍ତି ସେମାନେ ଚଳନ୍ତ ବର୍ଷ ମାର୍ଚ୍ଚ ଓ ଏପ୍ରେଲ ମାସ ମଧ୍ୟରେ ଉକ୍ତ ସ୍କୁଲରେ ନାମ ଲେଖାଇ ପାରିବେ । କିନ୍ତୁ ଯେଉଁମାନେ ମାଇନର ବା ଛାତ୍ରବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ବା ତଦୁପଯୁକ୍ତ ବା ତହିଁରୁ ଅଧିକ ଶିକ୍ଷିତ ହୋଇଥିବେ ସେହିମାନଙ୍କୁ ନିଆଯିବ । ବୃତ୍ତିଭୋଗୀ ବାଳକମାନେ ବିନା ବେତନରେ ଓ ଅପ୍ରାପ୍ତ ବୃତ୍ତି

ବାଳକମାନେ ମାସିକ ୫୲ଙ୍କା ବେତନଦେଇ ପଢ଼ିବେ ଏବଂ ବାର୍ଷିକ ପରୀକ୍ଷାରେ ବୃତ୍ତି - ଭୋଗୀ ବାଳକ ଭଳ ଯେଉଁମାନେ ବ୍ୟୁତ୍ପତ୍ତି ଦେଖାଇବେ ସେମାନଙ୍କୁ ମାସିକ ୫୲ଙ୍କା ଲେଖାଏଁ ଏକବର୍ଷ ବୃତ୍ତିମିଳିବ ଓ ବେତନ ଦେବାକୁ ହେବନାହିଁ ଯେଉଁମାନେ ଉକ୍ତ ସ୍କୁଲରୁ ପାଶକରିବେ ସେମାନେ ପବ୍ଲିକ ଡିପାର୍ଟମେଣ୍ଟର ନିମ୍ନସ୍ଥ କର୍ମଗୃହୀ ବା ସବ୍ଓଭରସିଅର ଅଥବା ଅମୀନ ହୋଇ ପାରିବେ । ଇତି ।

୧୧ । ୩ । ୭୮ } ପ୍ରିନ୍‌ସିପାଲ
କଟକ } କଟକ କଲେଜ ।

## ( ୧୩ଶ ଭାଗ, ୬ । ୪ । ୧୮୭୮, ସଂଖ୍ୟା ୧୪ )

୨୦୮ । ଓଡ଼ିଶା ମେଡ଼ିକାଲସ୍କୁଲ

ଗତ ସୋମବାର ଏ ନଗରସ୍ଥ ମେଡିକାଲ ସ୍କୁଲ ( ଚିକିତ୍ସା ବିଦ୍ୟାଳୟ ) ର ଛାତ୍ରମାନଙ୍କୁ ବାର୍ଷିକ ପାରିତୋଷିକ ବିତରଣ ଉଦ୍ଦେଶ୍ୟରେ ହାସପାତାଲ ଠାରେ ସଭା ହୋଇଥିଲା । ଶ୍ରୀଯୁକ୍ତ କମିଶନର ରେଭେନସା ସାହେବ ସଭାପତିର ଆସନ ଗ୍ରହଣ କରିଥିଲେ । ସଭାରେ ସ୍କୁଲର ଶିକ୍ଷକ ଓ ଛାତ୍ରମାନଙ୍କ ସହିତ ଏ ନଗରର କେତେକଣ ଇଂରାଜ ଓ ଦେଶୀୟ ଭଦ୍ରଲୋକ ଉପସ୍ଥିତ ହୋଇଥିଲେ ସକାଳ ୯ଘଣ୍ଟା ସମୟରେ ସଭାର କାର୍ଯ୍ୟ ଆରମ୍ଭ ହୁଅନ୍ତେ ଶ୍ରୀଯୁକ୍ତ ଡାକ୍ତର ଷ୍ଟିୱାର୍ଟ ସାହେବ ବାର୍ଷିକ ବିଜ୍ଞାପନୀ ପାଠକଲେ । ତହିଁରୁ ଜଣାଗଲା ଯେ ବିଦ୍ୟାଳୟର ଦ୍ୱିତୀୟ ବାର୍ଷିକ ଅଧିବେଶନ ସନ ୧୮୭୭ ସାଲ ଜୁନମାସରେ ଆରମ୍ଭହୋଇ ସନ ୧୮୭୮ ସାଲ ତା୩୧ରିଖ ମାର୍ଚ୍ଚରେ ଶେଷ ହେଲା । ଛାତ୍ରମାନେ ଦୁଇଶ୍ରେଣୀରେ ବିଭକ୍ତ ହୋଇ-ଥିଲେ । ଦ୍ୱିତୀୟ ବାର୍ଷିକ ଅର୍ଥାତ୍ ଉଚ୍ଚ ଶ୍ରେଣୀରେ ଜ୧୯ଣ ଓ ପ୍ରଥମ ବାର୍ଷିକ ଅର୍ଥାତ୍ ନିମ୍ନ ଶ୍ରେଣୀରେ ଜ୧୩ଣ ବାଳକ ଅଧ୍ୟୟନ କରିଥିଲେ । ଏଥି ମଧ୍ୟରେ ଜ୨୦ଣ ଗବର୍ଣ୍ଣମେଣ୍ଟଙ୍କ ବୃତ୍ତି ଓ ଦୁଇଜଣ ଛାତ୍ରାଶ୍ରୟ ବୃତ୍ତି ପାଇଥିଲେ ଅବଶିଷ୍ଟ ଜ୧୮ଣ ବିନାବେତନରେ ପଢ଼ୁଥିଲେ । ଛାତ୍ରମାନେ ସାଧାରଣ ରୂପେ ମନୋଯୋଗ ପୂର୍ବକ ଶିକ୍ଷା କରିଥିଲେ ଏବଂ ସଚ୍ଚରିତ୍ର ଦେଖାଇଥିଲେ । ପ୍ରାୟ ସମସ୍ତ ଶିକ୍ଷକ ତଳଲିଖିତ ଛାତ୍ରଙ୍କର ଅଧିକ ପ୍ରଶଂସା କରିଅଛନ୍ତି, ଯଥା :—

ଆନନ୍ଦଲାଲ ବୋଷ, ଶଙ୍କର ନାୟକ, ଲାଲ ବେହାରିଲାଲ ରାୟ, କ୍ଷେତ୍ରମୋହନ ଚନ୍ଦ୍ର ।

ଏ ବିଜ୍ଞାପନୀରୁ ଆହୁରି ଜଣାଗଲା ଯେ ଡେପୁଟୀ ସର୍ଜନ ଜେନରାଲ

ଡାକ୍ତର କୋବର୍ଣ୍ଣ ସାହେବ ଜେଲା ସମ୍ବନ୍ଧୀୟ ଇନସ୍ପେକ୍ଟର ଡାକ୍ତର ଲେଥବ୍ରିଜ ସାହେବ ଏବଂ ସାନିଟେରୀ କମିଶନର ଡାକ୍ତର ହାର୍ବୀ ସାହେବ ଏବର୍ଷ ମଧ୍ୟରେ ଏ ବିଦ୍ୟାଳୟ ସନ୍ଦର୍ଶନ ଏବଂ ଛାତ୍ରମାନଙ୍କର ପରୀକ୍ଷା କରି ସନ୍ତୁଷ୍ଟ ହୋଇଥିଲେ । ବିଦ୍ୟାଳୟ ପାର୍ଶ୍ୱରେ ଛାତ୍ରମାନଙ୍କର ବସା ଅବଧି ନିର୍ମିଅଛି ଓ ତହିଁରେ ପ୍ରାୟ ୬୦ଣ ଛାତ୍ର ବସାକରି ରହିଥିଲେ । ଏ ବାଳକମାନେ ସର୍ବଦା ଅଧ୍ୟୟନ କରିବାର ସୁଯୋଗ ପାଇବାରୁ ଅନ୍ୟ ବାଳକମାନଙ୍କଠାରୁ ଉତ୍କୃଷ୍ଟ ହୋଇଅଛନ୍ତି । ବାର୍ଷିକ ପାରିତୋଷିକ ଦାନ ସକାଶେ ମୟୂରଭଞ୍ଜର ମହାରାଜା ଟ୧୦୦ଙ୍କା ଏବଂ ରାମ କମାଇ ଚରଣ ଦୋସ ବାହାଦୂର ଗୋଟିଏ ପକେଟକେସ ଦାନ କରିଥିଲେ ଏପରି ଅନ୍ୟ ଦେଶୀୟ ଭଦ୍ରଲୋକଙ୍କଠାରୁ ଟ୧୫୦ଙ୍କା ସଂଗୃହୀତ ହୋଇଥିଲା । ଏପରି ମୟୂରଭଞ୍ଜ ମହାରାଜା ଯେଉଁ ଏକହଜାର ଟଙ୍କା ଦାନ କରିଅଛନ୍ତି ତାହା ବିଲାତକୁ ପଠାଯାଇଅଛି ଯେ ତହିଁରେ ବିଦ୍ୟାଳୟର କେତେକ ପ୍ରୟୋଜନୀୟ ଦ୍ରବ୍ୟ କଣାହୋଇ ଆସିବ । ଛାତ୍ର-ମାନଙ୍କର ଭବିଷ୍ୟତ ବିଷୟରେ କେତେକ ପ୍ରସ୍ତାବ ଏହି ବିଜ୍ଞାପନୀରେ ଲେଖାଅଛି । ସ୍ଥାନାଭାବରୁ ତହିଁର ଉଲ୍ଲେଖ କରିବାରୁ କ୍ଷାନ୍ତ ରହିଲୁଁ ।

ବିଜ୍ଞାପନୀ ପାଠହେଲା ଉତ୍ତାରୁ ଶ୍ରୀଯୁକ୍ତ କମିଶନର ସାହେବ ସ୍ୱହସ୍ତରେ ପାରିତୋଷିକ ବିତରଣ କରି ଗୋଟିଏ କ୍ଷୁଦ୍ର ବକ୍ତୃତାଦ୍ୱାରା ଜେନରଲ ହସପାତାଲ ଓ ତହିଁ ଉତ୍ତାରେ ମେଡିକାଲସ୍କୁଲ ଯେ ପ୍ରକାରରେ ସଂସ୍ଥାପିତ ହେଲା ତାହା ବର୍ଣ୍ଣନା କଲେ ଏବଂ ବିଦ୍ୟାଳୟର କାର୍ଯ୍ୟ ସୁରୂପେ ଚଳିବାର ଦେଖି ଡାକ୍ତର ଷ୍ଟିୱାର୍ଟ ଏବଂ ବିଦ୍ୟାଳୟର ଆଉ ସମସ୍ତ ଶିକ୍ଷକଙ୍କର ପ୍ରଶଂସା କଲେ ଓ କହିଲେ ଯେ ବିଦ୍ୟା-ଳୟ ବଙ୍ଗଳାର ଅନ୍ୟାନ୍ୟ ବିଦ୍ୟାଳୟରୁ ଉତ୍କୃଷ୍ଟ ନହେଉ ମାତ୍ର କୌଣସି ଅଂଶରେ ପରୀକ୍ଷାର ଫଳ ମନ୍ଦ ହେବ ନାହିଁ । ଛାତ୍ରଙ୍କ ଭବିଷ୍ୟତ ବିଷୟରେ ସେ କହିଲେ ଯେ ଯଦ୍ୟପିକି ବଙ୍ଗାଳିଙ୍କ ପ୍ରତି ତାହାଙ୍କର କୌଣସି ଦ୍ୱେଷ ନାହିଁ ତଥାଚ ତାହାଙ୍କ ବିବେଚନାରେ ଓଡ଼ିଶାର ଚିକିତ୍ସାଳୟ ମାନଙ୍କରେ ଏ ଦେଶୀୟ ଲୋକଙ୍କୁ ନିଯୁକ୍ତ କରିବା ବିହିତ ଅଟଇ ଓ ଏ ବିଦ୍ୟାଳୟର ଛାତ୍ରମାନେ ଯୋଗ୍ୟତା ଲାଭକଲେ କ୍ରମଶଃ ସରକାରୀ କର୍ମମାନ ପାଇପାରିବେ ।

ବକ୍ତୃତା ଶେଷହେଲାରୁ ସଭା ଭଙ୍ଗହେଲା ।

ଆମ୍ଭେମାନେ ଏ ବିଦ୍ୟାଳୟର ଉନ୍ନତି ଦେଖି ଅତ୍ୟନ୍ତ ପ୍ରୀତ ହୋଇଅଛୁଁ ଓ ତହିଁପାଇଁ ଏଥିର ସ୍ଥାପନ କର୍ତ୍ତା ଶ୍ରୀଯୁକ୍ତ ରେବନସା ସାହେବ ଏବଂ ଉନ୍ନତି କର୍ତ୍ତା ଶ୍ରୀଯୁକ୍ତ ଡାକ୍ତର ଷ୍ଟିୱାର୍ଟ ସାହେବଙ୍କୁ ଅସଂଖ୍ୟ ଧନ୍ୟବାଦ

ନିଦଉଅଛୁଁ । ଲେବନସା ସାହେବଙ୍କ ଉପରେ ଅନୁସନ୍ଧାନ ମଧ୍ୟରେ ଏହିଟି ସର୍ବାଙ୍ଗ ସୁନ୍ଦର ହୋଇଅଛି ଓ ତାହା ମେ କେବଳ ଡାକ୍ତର ଷ୍ଟିୱାର୍ଟ ସାହେବଙ୍କର ଅଧ୍ୟବସାୟ ଓ ଚତୁର ଫଳ ଅଟଇ ଏହା ସର୍ବସାଧାରଣରେ ବଦିତ ଅଛି ।

( ୧୩ଶ ଭାଗ, ୧୪ । ୯ । ୧୮୭୮, ସଂଖ୍ୟା ୩୭ )

୧୦୯ । ବିଜ୍ଞାପନ

ବାଲେଶ୍ୱର ନିବାସୀ ଶ୍ରୀଯୁକ୍ତ ବାବୁ ରାଜାରାମ ଦାସ ମହାଶୟ, ଆମ୍ଭଠାରେ ଗୋଟିଏ ସୁବର୍ଣ୍ଣ ଅଙ୍ଗୁରୀୟ ପୁରସ୍କାର ସକାଶେ ଗଚ୍ଛିତ କରିଅଛନ୍ତି । ଅଙ୍ଗୁରୀୟଟିର ମୂଲ୍ୟ ୪୦୲ ଟଙ୍କା । ଆଗାମୀ ଛାତ୍ରବୃତ୍ତି ପରୀକ୍ଷାରେ ଯେଉଁ ସ୍କୁଲର ଛାତ୍ର ସର୍ବପ୍ରଥମ ହୋଇ ଉତ୍ତୀର୍ଣ୍ଣହେବ ସେହି ସ୍କୁଲ ପ୍ରଧାନ ଶିକ୍ଷକ ଉକ୍ତାଙ୍ଗୁରୀୟ ପୁରସ୍କାର ସ୍ୱରୂପ ପ୍ରାପ୍ତ ହେବେ ।

Camp Balasore
The 10th Sept. 1878

Radhanath Rai
Joint Inspector of
School, Orissa

( ୧୩ଶ ଭାଗ, ୧୪ । ୯ । ୧୮୭୮, ସଂଖ୍ୟା ୩୭ )

୧୧୦ । ସର୍ଭେ ସ୍କୁଲ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ର ।

ଆମ୍ଭେମାନେ ଶୁଣି ଦୁଃଖିତ ହେଲୁଁ ଯେ ଏଠା ସର୍ଭେ ସ୍କୁଲର ଗତ ମାସରେ ଯେଉଁ କଅଣ ପରୀକ୍ଷୋତ୍ତୀର୍ଣ୍ଣ ହୋଇ ବାହାରି ଅଛନ୍ତି ତହିଁ ମଧ୍ୟରୁ ଅବଧି କେହି ଛାତ୍ର କର୍ମ ପାଇ ନାହାନ୍ତି । ଏଠାରେ ଜରିବ ଇତ୍ୟାଦ କର୍ମ ଜାଣିବା ଲୋକର ଅନ୍ୟାନ୍ୟ ଜିଲ୍ଲା ଅପେକ୍ଷା ଅଧିକ ପ୍ରୟୋଜନ । କଲେକ୍ଟର ମହାଲୁମା, ନୂତନ ସର୍ଭେ ମହାଲୁମା, ସାଧାରଣ କର୍ମ ନିମିତ୍ତ ଜମିକ୍ରୟ କରିବା ମହାଲୁମା, ରୋଡ଼ସେସ ମହାଲୁମା, ମିଉନିସିପାଲଟୀ ମହାଲୁମା ଓ ସର୍ବୋପରି ବାଇକମାସ୍ତରୀ ମହାଲୁମା ଏସମସ୍ତ ମହାଲୁମାରେ ଜରିବ କର୍ମ ଜାଣିବା ଲୋକର ପ୍ରୟୋଜନ ଥିବ । ପ୍ରତ୍ୟେକ ଗତ ଛମାସରେ ସର୍ଭେ ସ୍କୁଲରୁ ବାହାରିଥିବା କଅଣ ଛାତ୍ର ମଧ୍ୟରୁ କେହି ଜଣେ କର୍ମ ନପାଇବା ବଡ଼ ଦୁଃଖର ବିଷୟ ଅଟଇ । ଏଥି ମଧ୍ୟରେ ଉପର ଲିଖିତ ମହାଲୁମା-ମାନଙ୍କ ମଧ୍ୟରୁ ଯେ କୌଣସିଠାରେ ଏ ମାନଙ୍କ ଉପଯୁକ୍ତ ଗୋଟିଏ କର୍ମସୁଦ୍ଧା

ଖାର ହୋଇନାହିଁ ଏମନ୍ତ ଆମ୍ଭେମାନେ ବିଶ୍ୱାସ କରି ନପାରୁଁ । ଆମ୍ଭେମାନେ ଅନୁମାନ କରୁଁ କି ସମସ୍ତ ମହକୁମାର ହାକିମମାନେ ଏହାଙ୍କ କଥା ଜାଣି ନଥିବାରୁ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ର ଛଡ଼ା ଅନ୍ୟଲୋକଙ୍କୁ ନିଯୁକ୍ତ କରୁଅଛନ୍ତି କିନ୍ତୁ ଯେବେ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରମାନେ ଆଗେ କର୍ମ ନପାଇ ଅନ୍ୟଲୋକେ କର୍ମ ପାଇବେ ତେବେ କେବଳ ଏହାଙ୍କ ପକ୍ଷରେ ଗବର୍ଣ୍ଣମେଣ୍ଟଙ୍କର ଯାହା ବ୍ୟୟ ହୋଇଅଛି ତାହା ବ୍ୟର୍ଥ ହେବ ଏମନ୍ତ ନୁହେଁ ଛାତ୍ରମାନଙ୍କର ଉତ୍ସାହ ଭଙ୍ଗ ହେବ ଏବଂ ତଦ୍ଦ୍ୱାରା ସର୍ଭେ ସ୍କୁଲରୁ ଯେ ସମସ୍ତ ଉପକାର ହେବାର ସମ୍ଭାବନା ତାହା ଲଭ ହେବ ନାହିଁ । ଆମ୍ଭେମାନେ କମିଶନର ସାହେବଙ୍କୁ ପ୍ରାର୍ଥନା କରୁଅଛୁଁ ଯେ ଶୀଘ୍ର ଏ ସର୍କୁଲାର ଦ୍ୱାରା ଜିଲ୍ଲାର ସମସ୍ତ ହାକିମଙ୍କୁ ଆଦେଶ ଦେଉନ୍ତୁ ଯେ ଆଗେ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରଙ୍କୁ କର୍ମ ଦେବେ । ଶ୍ରୀଯୁକ୍ତ ରେଭେନସା ସାହେବଙ୍କର ଏ ସବୁ ବିଷୟରେ ବଡ଼ ଦୃଷ୍ଟି ଥିଲା ଏବଂ ଆମ୍ଭମାନଙ୍କର ବିଶ୍ୱାସ ହେଉଅଛି ଯେ ନୂତନ କମିଶନର ତାହାଙ୍କଠାରୁ ଊଣା ହେବେ ନାହିଁ ।

( ୧୩ଶ ଭାଗ, ୯ । ୧୧ । ୧୮୭୮, ସଂଖ୍ୟା ୪୪ )

୧୧୧ । ଗଡ଼ଜାତରେ ଶିକ୍ଷାଦାନ ।

ଗଡ଼ଜାତ ମହାଲରେ ଶିକ୍ଷାଦାନ କାର୍ଯ୍ୟର ତତ୍ତ୍ୱାବଧାରଣ ନିମିତ୍ତ ଗବର୍ଣ୍ଣମେଣ୍ଟ ଦୁଇଜଣ ସବଇନସ୍ପେକ୍ଟର ନିଯୁକ୍ତ କରିଅଛନ୍ତି । ଏକଜଣ ଅନୁଗୁଳ ବାଙ୍କୀ ଓ ଢେଙ୍କାନାଳ ଏବଂ ଏକଜଣ ମୟୂରଭଞ୍ଜ ଓ କେନ୍ଦୁଝର ସକାଶେ । ଯଦ୍ୟପି କି ଅନୁଗୁଳ ଓ ବାଙ୍କୀ ଛଡ଼ା ଆଉ କୌଣସି ଗଡ଼ଜାତରେ ଗବର୍ଣ୍ଣମେଣ୍ଟଙ୍କର ସ୍ୱତନ୍ତ୍ର ବା ସାହାଯ୍ୟକୃତ ବିଦ୍ୟାଳୟ ନାହିଁ ତଥାଚ ରାଜାମାନଙ୍କ ସ୍ଥାପିତ ବିଦ୍ୟାଳୟମାନଙ୍କର ତତ୍ତ୍ୱାବଧାରଣ କରିବା ସକାଶେ ଯେ ଗବର୍ଣ୍ଣମେଣ୍ଟ ସ୍ୱହସ୍ତରୁ ବେତନ ଦେଇ କର୍ମଚାରୀ ନିଯୁକ୍ତ କଲେ ଏହା ବଡ଼ ସୁଖର ବିଷୟ ଅଟଇ । ଏଥିରେ ରାଜାମାନେ ଆପଣା ୨ ସ୍କୁଲମାନଙ୍କୁ ଉତ୍ତମ ଅବସ୍ଥାରେ ରଖିବାକୁ ପ୍ରବୃତ୍ତ ହେବେ ଓ କାହା ଇଲାକାରେ କି ପ୍ରକାର ଶିକ୍ଷାଦାନର ଉପାୟ ହୋଇଅଛି ତାହା ଗବର୍ଣ୍ଣମେଣ୍ଟ ଜାଣି ପାରିବେ । ଆମ୍ଭମାନଙ୍କ ବିବେଚନାରେ ଏ ଦୁଇ ସବଇନସ୍ପେକ୍ଟର ଏବଂ କରଦମହାଲର ସବଇନସ୍ପେକ୍ଟର ଏହି ତିନିଜଣଙ୍କ ଇଲାକାରେ ସମସ୍ତ ଗଡ଼ଜାତ ବାଣ୍ଟି ଦେଇଥିଲେ ଭଲ ହୋଇଥାନ୍ତା । ଯେହେତୁ କି ଢେଙ୍କାନାଳ କେନ୍ଦୁଝର ଓ ମୟୂରଭଞ୍ଜରେ ଅଧିକ ବିଦ୍ୟାଳୟ ଅଛି ମାତ୍ର ଆଠଗଡ଼ ତାଳଚେର ନୀଳଗିରି ପ୍ରଭୃତି ଗଡ଼ଜାତରେ ଦୋଟିଏ ଲେଖାଏଁ ସୁଦ୍ଧା ବିଦ୍ୟାଳୟ ଅଛି ଏବଂ ସେ ସମସ୍ତର କାର୍ଯ୍ୟ ସୁରୀତିରୂପେ

ବୃଦ୍ଧିଅଛି କି ନାହିଁ ଦେଖିବାର ଆବଶ୍ୟକ ତାହାହେଲେ ରଜାମାନେ ଆପଣା ୨ ବିଦ୍ୟାଳୟକୁ ଉତ୍ତମ ଅବସ୍ଥାକୁ ଆଣିବା କାରଣ ପ୍ରବୃତ୍ତ ହେବେ ଏବଂ କେଉଁ ରଜା ଆପଣା ପ୍ରଜାଙ୍କ ଶିକ୍ଷା ନିମନ୍ତେ କି ପରିମାଣରେ ଯତ୍ନ ଓ ଅର୍ଥବ୍ୟୟ କରୁଅଛନ୍ତି ଗଭର୍ଣ୍ଣମେଣ୍ଟ ତାହା ଜାଣିପାରିବେ । ଆମ୍ଭେମାନେ ଶୁଣୁଅଛୁଁ ଯେ କେତେକ ରଜା କେବଳ ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟଙ୍କ ତୁଷ୍ଟି ଲାଭ ନିମିତ୍ତ ନାମମାତ୍ର ସ୍କୁଲ ରଖିଅଛନ୍ତି ଏବଂ ତାହାର ବାର୍ଷିକ କାଗଜ ମଧ୍ୟ ଦଅନ୍ତି ଅଥଚ ସ୍କୁଲରେ କେହି ପଢ଼ଇ କି ନାହିଁ ସନ୍ଦେହ । ସରକାରୀ କର୍ମକାରକ ଜଣେ ବର୍ଷ ମଧ୍ୟରେ ଥରେ ଦୁଇଥର ଏପରି ଗଡ଼ଜାତକୁ ଗଲେ ସେଠା ବିଦ୍ୟାଳୟର ଅବସ୍ଥା ଭଲ ହେବ ଓ ବିଦ୍ୟାଳୟ ପ୍ରତି ରଜାଙ୍କର ଆସ୍ଥା ଜନ୍ମିବ । ଆମ୍ଭେମାନେ ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟଙ୍କୁ ପ୍ରାର୍ଥନା କରୁଅଛୁଁ ଯେ ଏ ପ୍ରସ୍ତାବ ପକ୍ଷରେ ସୁବିଚାର କରିବେ ।

( ୧୩ଶ ଭାଗ, ୧୬ । ୧୧ । ୧୮୭୮, ସଂଖ୍ୟା ୪୫ )

୧୧୨ । ଏବର୍ଷ କଟକ କଲେଜକୁ ୬୧୧ଣ ଛାତ୍ର ପ୍ରବେଶିକା ଏବଂ ୬୮ଣ ଛାତ୍ର ଫାଷ୍ଟ ଆର୍ଟସ୍ ପରୀକ୍ଷା ଦେବାକୁ ପ୍ରାର୍ଥୀ ହୋଇଅଛନ୍ତି । ଫାଷ୍ଟ ଆର୍ଟସ୍ ପରୀକ୍ଷା ସକାଶେ ଆଉ ଦୁଇ ତିନିଜଣ ପ୍ରାର୍ଥୀ ହୋଇଥାନ୍ତେ ମାତ୍ର କଲେଜର ପ୍ରିନ୍ସିପଲଙ୍କ ବିଚାରରେ ସେମାନେ ଦଶୋପ୍ତ କରି ପରୀକ୍ଷାରେ ଭଲ ସାର୍ଟିଫିକେଟ ନପାଇବାରୁ ପ୍ରାର୍ଥୀ ହୋଇ ପାରିଲେ ନାହିଁ ।

୧୧୩ । ବାଲେଶ୍ୱର ଜିଲ୍ଲାର ଭର୍ଣ୍ଣାକ୍ୟୁଲର ଛାତ୍ର ବୃତ୍ତି ପରୀକ୍ଷାର୍ଥୀ ବାଳକ-ମାନଙ୍କୁ ଜ୍ଞାତ କରାଯାଉ ଅଛି ଯେ ଉକ୍ତ ଜିଲ୍ଲା କାଉପୁର ନିବାସୀ ଜମିଦାର ଶ୍ରୀଯୁକ୍ତ ବାବୁ ଗୋବିନ୍ଦ ବଲ୍ଲଭ ରାୟ ମହୋଦୟ ସେମାନଙ୍କ ଉତ୍ସାହାର୍ଥେ ଗୋଟିଏ ସ୍ୱର୍ଣ୍ଣାଙ୍ଗୁରୀୟ ଆମ୍ଭଠାରେ ଗଚ୍ଛିତ କରିଅଛନ୍ତି । ପରୀକ୍ଷୋତ୍ତୀର୍ଣ୍ଣ ବାଳକମାନଙ୍କ ମଧ୍ୟରେ ସର୍ବ ପ୍ରଥମ ସ୍ଥାନ ପ୍ରାପ୍ତ ବାଳକକୁ ସେହି ଅଙ୍ଗୁରୀୟରୂପ ପୁରସ୍କାର ଦିଆଯିବ ।

Sd. Radhanath Rai
Joint Inspector of Schools.
Orissa.

## ( ୧୪ଶ ଭାଗ, ୨୫ । ୧ । ୧୮୭୯, ସଂଖ୍ୟା ୪ )

୧୧୪ । ବିଶ୍ୱ ବିଦ୍ୟାଳୟର ପରୀକ୍ଷା ଫଳ

ଫାଷ୍ଟ ଆର୍ଟସ ଓ ପ୍ରବେଶିକା ପରୀକ୍ଷାର ଫଳ ଗତ ଇଣ୍ଡିଆ ଗେଜେଟରେ ପ୍ରକାଶିତ ହୋଇଅଛି । ଏଥର ଫଳ କିଞ୍ଚିତ୍ ବିଳମ୍ବରେ ପ୍ରକାଶିତ ହେଲା, ତହିଁ ପାଇଁ ଛାତ୍ର ଓ ଶିକ୍ଷକମାନେ ବଡ଼ ବ୍ୟସ୍ତ ଥିଲେ । ସମ୍ପ୍ରତି ଗେଜେଟ ଦେଖି ସମସ୍ତଙ୍କ ମନ ଥୟ ଧରିଲା ।

ଓଡ଼ିଶା ବିଦ୍ୟାଳୟ ସମୂହର ପରୀକ୍ଷାର୍ଥୀମାନଙ୍କ ମଧ୍ୟରୁ ତଳଲିଖିତ ଛାତ୍ରମାନେ କୃତକାର୍ଯ୍ୟ ହୋଇଅଛନ୍ତି ଯଥା:—

ଫାଷ୍ଟ ଆର୍ଟସ ପରୀକ୍ଷା

କଟକ କଲେଜ

ବ୍ରଜଲାଲ ମୁଖୁର୍ଯ୍ୟା ୧ମ ଶ୍ରେଣୀ

ଆଶୁତୋଷ ବାନୁର୍ଯ୍ୟା ୨ୟ ଶ୍ରେଣୀ
ରଜନୀକାନ୍ତ ବୋଷ ,,
ଜାନକୀ ବଲ୍ଲଭ ଘୋଷ ,,
ରାମଶଙ୍କର ରାୟ ,,

ନିମାଇଁ ଚରଣ ମିତ୍ର ୩ୟ ଶ୍ରେଣୀ
ଯୋଗେନ୍ଦ୍ର ଚନ୍ଦ୍ର ମୁଖୁର୍ଯ୍ୟା ,,
କୃଷ୍ଣ ମୋହନ ନାୟକ ,,

ପ୍ରବେଶିକା ପରୀକ୍ଷା

ପ୍ରଥମ ଶ୍ରେଣୀ

ମନମୋହନ ଚକ୍ରବର୍ତ୍ତୀ କଟକ

ଦ୍ୱିତୀୟ ଶ୍ରେଣୀ
ହେମ ଚନ୍ଦ୍ର ଗୁହ୍ରର୍ଯ୍ୟା କଟକ
ଗୋକୁଳାନନ୍ଦ ଚୌଧୁରୀ ,,
ହେଲା ନାଥ ଦାସ ,,
ବ୍ରହ୍ମାନନ୍ଦ ଦାସ — ,,
ଗୋପାଳ ବଲ୍ଲଭ ଦାସ ,,
ଅକ୍ଷୟ କୁମାର ଘୋଷ ,,
ନାରାୟଣ ଦାସ ବାନୁର୍ଯ୍ୟା ବାଲେଶ୍ୱର
ଜଗମୋହନ ଘୋଷ ,,
ବୈକୁଣ୍ଠ ନାଥ ପାଲ ,,
ସାଧୁଚରଣ ଚନ୍ଦ ପୁରୀ
ହରିଶ୍ଚନ୍ଦ୍ର ଘୋଷ ,,

ତୃତୀୟ ଶ୍ରେଣୀ

ଭୂପତି ନାଥ ବୋଷ  କଟକ
ଜଗବନ୍ଧୁ ଦାସ  ,,
ଗୋପୀନାଥ ମଜୁମଦାର ,,
ସଲମନ ନାୟକ  ବାଲେଶ୍ୱର
ଲଙ୍ଗରାଜ ପଟ୍ଟନାୟକ  ପୁରୀ

## ( ୧୪ଶ ଭାଗ, ୧୫ । ୨ । ୧୮୭୯, ସଂଖ୍ୟା ୭ )

୧୧୫ ।  କଟକ କଲେଜ

ଗତ ଏ: ଏ: ପରୀକ୍ଷାର ଫଳ ବାହାରିଅଛି । କଟକରୁ ଏଥର ସୁଦ୍ଧା କେତେଜଣ ଛାତ୍ର ପରୀକ୍ଷା ଦେବାକୁ ଯାଇଥିବାରୁ ଆମ୍ଭେମାନେ ଏ ପରୀକ୍ଷାର ଫଳକୁ ଅଧିକ ବ୍ୟଗ୍ରତାର ସହିତ ଚାହିଁ ବସିଥିଲୁ । ମାତ୍ର ଫଳ ଦେଖି ମନ ଅତ୍ୟନ୍ତ ଫିକା ପଡ଼ିଗଲା । କଟକ କଲେଜର ନାମ ଆଦୌ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରଙ୍କ ତାଲିକାରେ ନାହିଁ । କେହି ଜଣେ ସୁଦ୍ଧା ପାଶ କରିନାହାନ୍ତି । ଦୁଇଥର ପରୀକ୍ଷା ଦେଲେ ଅଥଚ କିଛି ହେଲା ନାହିଁ ଏ ଦୋଷ କାହାର ବୋଲିବାକୁ ହେବ ?

ଭଲ ୨ ପିଲାମାନେ ଦୁଇବର୍ଷ ଶ୍ରମ କଲେ ହାତର ଅର୍ଥ ବ୍ୟୟକରି କଲିକତା ଯାଇ ପରୀକ୍ଷା ଦେଲେ ମାତ୍ର ଫଳ କିଛି ହେଲାନାହିଁ ।

## ( ୧୪ଶ ଭାଗ, ୮ । ୩ । ୧୮୭୯, ସଂଖ୍ୟା ୧୦ )

୧୧୬ ।  ଗତ କଲିକତା ଗେଜେଟରେ ମୟୂରଭଞ୍ଜର ମହାରାଜାଙ୍କର ଗୋଟିଏ ଉତ୍କୃଷ୍ଟ ବଦାନ୍ୟତାକୁ ବଙ୍ଗାଳ ଗବର୍ଣ୍ଣମେଣ୍ଟ ସ୍ୱୀକାର କରି ଧନ୍ୟବାଦ ଦେଇଅଛନ୍ତି । ଶ୍ରୀଯୁକ୍ତ ରେବନ୍ସା ସାହେବ ଏଠାରେ ଦୀର୍ଘକାଳ କମିଶନର ଥାଇ ଓଡ଼ିଶାର ଅନେକ ମଙ୍ଗଳ ସାଧନ କରିଥିଲେ । ତାହାଙ୍କର ନାମକୁ ଓଡ଼ିଶାରେ ଚିର-ସ୍ମରଣୀୟ କରିବା ସକାଶେ ଓଡ଼ିଶାର ସବୁ ପ୍ରଧାନ ବ୍ୟକ୍ତି ଅର୍ଥାତ୍ ମୟୂରଭଞ୍ଜର ମହାରାଜା କୋଡ଼ିଏ ହଜାର ଟଙ୍କା ଦାନ କରିଅଛନ୍ତି, କଟକ କଲେଜ ଶ୍ରୀଯୁକ୍ତ ରେବନ୍ସା ସାହେବଙ୍କର ପ୍ରଧାନ କୀର୍ତ୍ତି । ଏ କଲେଜ ଚିରସ୍ଥାୟୀ ହେଲେ ତାହାଙ୍କର ନାମ ସୁଦ୍ଧା ଚିରସ୍ଥାୟୀ ହେବ ଏହି ବିବେଚନାରେ ଗବର୍ଣ୍ଣମେଣ୍ଟ ମହାରାଜାଙ୍କ ସମ୍ମତି ସହିତ ଉକ୍ତ ବିଂଶତି ସହସ୍ର ଟଙ୍କା କଟକ କଲେଜକୁ ଦାନ କରିଅଛନ୍ତି ଯେ ଏହା

ପାର୍ଶ୍ୱ ସ୍ୱରୂପ ଲୁହମାନ କାଗଜରେ ଗଚ୍ଛିତ ହେବ ଏବଂ ଏଥିର ସୁଧ ଦ୍ୱାରା କଲେଜର ଆଂଶିକ ବ୍ୟୟ ଶୂନ୍ୟ ହେବ । ଏଥି ସଙ୍ଗେ ୨ କଟକ କଲେଜର ନାମ ରେଭେନ୍ସା କଲେଜ ବୋଲି ପରିବର୍ତ୍ତିତ ହେଲା । ମହାରାଜାଙ୍କର ଏ କାର୍ଯ୍ୟଟି ସର୍ବସାଧାରଣଙ୍କର ମନୋନୀତ ହୋଇଅଛି ଏବଂ ଅତ୍ୟନ୍ତ ପ୍ରଶଂସନୀୟ ସନ୍ଦେହ ନାହିଁ କିନ୍ତୁ କଲେଜକୁ ଯେବେ ଗବର୍ଣ୍ଣମେଣ୍ଟ ପ୍ରକୃତ କଲେଜ କରି ନଦେଇ ଏହିପରି ରଖିବେ ତେବେ ରେଭେନ୍ସା ସାହେବଙ୍କ ନାମର ଠେକ ରହିବ ନାହିଁ ବରଂ ନିନ୍ଦନୀୟ ହେବ ।

## ( ୧୪ ଭାଗ, ୧୦ । ୮ । ୧୮୭୯, ସଂଖ୍ୟା ୧୯ )

୧୧୬ ।  କଟକ ମେଡିକାଲ ସ୍କୁଲ

ଆମ୍ଭେମାନେ ଗତ ସପ୍ତାହରେ ଏ ସ୍କୁଲର ବାର୍ଷିକ ପାରିତୋଷିକ ଦାନ ସଭା ହୋଇଥିବାର ସମ୍ବାଦ ମାତ୍ର ପାଠକମାନଙ୍କୁ ଦେଇ ସମୟାଭାବରୁ ତହିଁର ବିବରଣ ବର୍ତ୍ତମାନ ସପ୍ତାହକୁ ରଖି ଦେଇଥିଲୁଁ । ସମ୍ପ୍ରତି ତାହା ପାଠକମାନଙ୍କୁ ଜଣାଉଅଛୁଁ ।

ଏଠାର ଭୂତପୂର୍ବ କମିଶ୍ନର ଶ୍ରୀଯୁକ୍ତ ରେଭେନ୍ସା ସାହେବ ଓଡ଼ିଶାର ଶିକ୍ଷା ଉନ୍ନତି ନିମିତ୍ତ ଯେତେ ଗୁଡ଼ିଏ ନୂତନ କାର୍ଯ୍ୟର ଅନୁଷ୍ଠାନ କରି ଯାଇଥିଲେ ତହିଁମଧ୍ୟରେ ଏଠାର ମେଡିକାଲ ସ୍କୁଲ ଅର୍ଥାତ୍ ଚିକିତ୍ସାଳୟକୁ ପ୍ରଧାନ ବୋଲିବାକୁ ହେବ କାରଣ ଏହିଦ୍ୱାରା ତାହାଙ୍କର ଶୁଭ କାମନା ଯେତେ ଶୀଘ୍ର ଏବଂ ଯେମନ୍ତ ସୁନ୍ଦରରୂପେ ପୂର୍ଣ୍ଣ ହେଲା ଏମନ୍ତ ଅନ୍ୟ କୌଣସି ସ୍ଥଳରେ ଦେଖାଯାଇ ନାହିଁ । ଶ୍ରୀଯୁକ୍ତ ଡାକ୍ତର ଷ୍ଟିୱାର୍ଟ ସାହେବ ଏ ସ୍କୁଲର ମୂଳ କାରଣ ହୋଇଅଛନ୍ତି । ତାହାଙ୍କ ପ୍ରବର୍ତ୍ତନାରେ ଶ୍ରୀଯୁକ୍ତ ରେଭେନ୍ସା ସାହେବ ଗବର୍ଣ୍ଣମେଣ୍ଟରେ ବାର ୨ ଅନୁରୋଧ କରି ଏ ସ୍କୁଲ ସ୍ଥାପନ କଲେ ଏବଂ ଡାକ୍ତର ସାହେବ ଯେମନ୍ତ ତାହାଙ୍କୁ ପ୍ରବର୍ତ୍ତାଇ ସ୍କୁଲ ବସାଇଲେ ତେମନ୍ତ ସ୍ୱୟଂ ନିସ୍ୱାର୍ଥଭାବରେ ଆପେ ପରିଶ୍ରମ କରି ଏବଂ ଆପଣା ଅଧୀନସ୍ଥ କର୍ମଚାରୀଙ୍କୁ ପରିଶ୍ରମ କରାଇ ଅତି ଅଳ୍ପକାଳରେ ଏ ବିଦ୍ୟାଳୟକୁ ସର୍ବାଙ୍ଗ ସୁନ୍ଦର କରି ତହିଁରେ ସୁଫଳ ଫଳାଇ ସର୍ବସାଧାରଣଙ୍କୁ ଚମତ୍କାର କଲେ ଏବଂ ସେମାନଙ୍କର ଧନ୍ୟବାଦର ପାତ୍ର ହେଲେ ।

ଏ ବିଦ୍ୟାଳୟଟି କେବଳ ତିନବର୍ଷ ହେଲା ସ୍ଥାପିତ ହୋଇଅଛି ଗବର୍ଣ୍ଣମେଣ୍ଟଙ୍କ ଆଜ୍ଞା କ୍ରମେ ତିନିବର୍ଷରେ ଏଠାର ଶେଷ ପରୀକ୍ଷା ହେବାର ଥିଲା । ସେହି ଶେଷ ପରୀକ୍ଷା ଅଲଙ୍ଘନ ହେଲା ହୋଇ ଯାଇଅଛି । ପରୀକ୍ଷା ନେବା କାରଣ

ପ୍ରାଇଭ ଡାକ୍ତର ଗୁପ୍ତ ଏଠା ସିଲଟେରୀ ସର୍ଜନ ଡାକ୍ତର ହେମାସ ଏବଂ ସିଭିଲ ସର୍ଜନ ଡାକ୍ତର ଗ୍ରିଓ୍ୱାର୍ଟ ଗବର୍ଣ୍ଣମେଣ୍ଟରୁ ନିଯୁକ୍ତ ହୋଇଥିଲେ ।

ଏମାନେ ମୌଖିକ ପ୍ରଶ୍ନଦ୍ୱାରା ପରୀକ୍ଷାକାର୍ଯ୍ୟ ନିର୍ବାହକଲେ କାରଣ ବଙ୍ଗଳାର ଅନ୍ୟାନ୍ୟ ଏହି ପ୍ରକାର ବିଦ୍ୟାଳୟରେ ଏହି ରୀତିରେ ପରୀକ୍ଷାକାର୍ଯ୍ୟ ନିର୍ବାହିତ ହୁଏଇ । ୧୪ଜଣଛାତ୍ର ପରୀକ୍ଷା ଦେଇଥିଲେ ତନ୍ମଧ୍ୟରୁ କେବଳ ଏକଜଣ ଛଡ଼ା ସମସ୍ତେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।

ପରୀକ୍ଷକମାନେ କାର୍ଯ୍ୟ ଶେଷକରି ଯେଉଁ ରିପୋର୍ଟ ଦେଇଅଛନ୍ତି ତହିଁରେ ସେମାନେ ଛାତ୍ରମାନଙ୍କ ଯୋଗ୍ୟତା ଦର୍ଶନରେ ଆନନ୍ଦ ପ୍ରକାଶ କରି ଅଛନ୍ତି । × × ×

\+ + + +

\+ + + + +

ଏଥିଉପରେ ଆମ୍ଭମାନଙ୍କର ପ୍ରଶଂସା କରିବାର ପ୍ରୟୋଜନ ନାହିଁ । ଡାକ୍ତର ଗ୍ରିଓ୍ୱାର୍ଟ ଯଥାର୍ଥ କହିଅଛନ୍ତି ଯେ ଓଡ଼ିଶାବାସିଙ୍କୁ ଅନାୟାସରେ ଶିକ୍ଷାଦାନ ଦ୍ୱାରା ସଚିକିତ୍ସକ କରାଯାଇ ପାରେ । ଅଧିକାଂଶ ଛାତ୍ର ସରକାରୀ କର୍ମ କରିବାକୁ ଇଚ୍ଛୁକ ଏବଂ ଡାକ୍ତର ସାହେବ ଯେମନ୍ତ ସେମାନଙ୍କ ଶିକ୍ଷାପକ୍ଷରେ ତତ୍ପର ସେହିପରି ସେମାନଙ୍କୁ କାର୍ଯ୍ୟରେ ଖଞ୍ଜିଦେବା କାରଣ ମଧ୍ୟ ଚେଷ୍ଟିତ ଅଛନ୍ତି । ଏଥିମଧ୍ୟରେ ଏକଜଣ ଛାତ୍ର ସମ୍ବଲପୁର ଏଲକା ସାଙ୍ଗରଙ୍ଗ ଚିକିତ୍ସାଳୟରେ ଏକଜଣ ଶୋରଧାରେ ନିଯୁକ୍ତ ହେଲେଣି ଏବଂ ଓଡ଼ିଶାର ମୁଗଲବନ୍ଦୀ ଓ ଗଡ଼ଜାତ ଠାରୁ ସମ୍ବଲପୁରର ଗଡ଼ଜାତ ମାହାଲର ଶେଷ ସୀମାପର୍ଯ୍ୟନ୍ତ ଉତ୍ତୀର୍ଣ୍ଣ ହେବା ଛାତ୍ରଙ୍କ କାର୍ଯ୍ୟ କରିବା କାରଣ ବିସ୍ତୀର୍ଣ୍ଣ କ୍ଷେତ୍ର ରହିଅଛି । × ×

\+ + + +

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦ ସହିତ ଅବଗତ ହେଲୁଁ ଯେ ମୟୂରଭଞ୍ଜ ଓ କେଉଁଝର ମହାରାଜାଦ୍ୱୟ ଏ ବିଦ୍ୟାଳୟର ବିଶେଷ ସାହାଯ୍ୟ କରିଅଛନ୍ତି ଏବଂ ଡାକ୍ତର ଗ୍ରିଓ୍ୱାର୍ଟ ସାହେବ ଆଶାକରନ୍ତି କି ଏ ବିଦ୍ୟାଳୟର ଆଉ ଯାହା କିଛି ଅଭାବ ଅଛି ଏମାନଙ୍କ ଦ୍ୱାରା ପୂର୍ଣ୍ଣହେବ ।

ଏବର୍ଷ ଶେଷରେ ପ୍ରଥମ ବର୍ଷୀୟ ଶ୍ରେଣୀରେ ୭ଜଣ ଦ୍ୱିତୀୟ ବର୍ଷୀୟ

ଶ୍ରେଣୀରେ ଜଣ୧୨ଣ ଏବଂ ଦ୍ବିତୀୟ ବର୍ଷୀୟ ଶ୍ରେଣୀରେ ଜଣ୧୪ଣ ସର୍ବ ସୁଦ୍ଧା ଜଣ୩୩ଣ ଛାତ୍ର ଅଧ୍ୟୟନ କରୁଥିଲେ । ଜଣ୩ଣ ଉତ୍ତୀର୍ଣ୍ଣ ହୋଇଯିବାରୁ ବାକି ଜଣ୨୦ଣ ଅଛନ୍ତି । ଆମ୍ଭେମାନେ ଭରସା କରୁଁ ଯେ ଏଥର ନୂତନ ଛାତ୍ରମାନେ ଆଗ୍ରହ ପୂର୍ବକ ଏ ବିଦ୍ୟାଳୟକୁ ଧାଇଁ ଆସିବେ ।

ପରିଶେଷରେ ଗବର୍ଣ୍ଣମେଣ୍ଟଙ୍କୁ ଏତିକି ଅନୁରୋଧ ଯେ ଏ ବିଦ୍ୟାଳୟଟି ଚିରସ୍ଥାୟୀ କରିବା ପକ୍ଷରେ ବିହିତ ବନ୍ଦୋବସ୍ତ କରି ଦେଉନ୍ତୁ ଏବଂ ଶିକ୍ଷକମାନଙ୍କୁ ଉତ୍ସାହ ଦେବାପକ୍ଷରେ ମଧ୍ୟ ବିହିତ ବିଗୃହ କରନ୍ତୁ ।

## ( ୧୪ଶ ଭାଗ, ୩୧ । ୧ । ୧୮୮୦, ସଂଖ୍ୟା ୫ )

୧୧୮ । ବଙ୍ଗ ବିଦ୍ୟାଳୟର ଗତ ପରୀକ୍ଷାରେ ଓଡ଼ିଶାର ଯେଉଁ ଛାତ୍ରମାନେ ଉତ୍ତୀର୍ଣ୍ଣ ହୋଇଥିଲେ ସେମାନଙ୍କମଧ୍ୟରୁ ନିମ୍ନ ଲିଖିତ ଛାତ୍ରମାନେ ବୃତ୍ତିପାଇ ଅଛନ୍ତି ।

ଏଲ୍‌ ଏ. ପରୀକ୍ଷାରେ ।

୨ୟ ଶ୍ରେଣୀ ବୃତ୍ତି ମାସିକ ଟ୨୦ଙ୍କା

ଜାନକୀ ନାଥ ବସୁ କଟକ କଲେଜ
ଆର୍‌ ଡ଼. ଫାଟକସେନ ,,

ପ୍ରବେଶିକା ପରୀକ୍ଷାରେ

୨ୟ ଶ୍ରେଣୀ ମାସିକ ଟ୧୮ଙ୍କା

ଓ୍ୟାରସ ଅଲ୍କି କଟକ କଲେଜ
କୃଷ୍ଣାଜୀ ଗୁପ୍ତ କଟକ ଆକେଡେମୀ
ବୈକୁଣ୍ଠ ନାଥ ଦେ ବାଲେଶ୍ବର ସ୍କୁଲ
ଗଣପତି ଦାସ ,,

୩ୟ ଶ୍ରେଣୀ ମାସିକ ୫ ଟଙ୍କା

| | |
|---|---|
| ମଣି ଚରଣ ମହାପାତ୍ର | ବାଲେଶ୍ୱର ସ୍କୁଲ |
| ଶ୍ୟାମସୁନ୍ଦର ରାଉ | ,, |
| ପୂର୍ଣ୍ଣ ଚନ୍ଦ୍ର ପାଲିତ | କଟକ କଲେଜ |
| ମହମ୍ମଦ ଅଲି | ,, |
| ଜଗନ୍ନାଥ ଦାଶ | ପୁରୀ ସ୍କୁଲ |
| ଅନନ୍ତରାମ ତ୍ରିପାଠୀ | ,, |

ଏଲ. ଏ. ପରୀକ୍ଷାରେ ଜଣେ ଓଡ଼ିଆ ଛାତ୍ର ପାସ କରିଥିଲା ମାତ୍ର ବୃତ୍ତି ପାଇ ନପାରିଲା । ମେଓ ଫଣ୍ଡ ଇତ୍ୟାଦିରୁ ତାଙ୍କୁ ବୃତ୍ତି ଦିଆ ଯାଇପାରେ । କଟକ ଏକେଡେମୀ ଅର୍ଥାତ୍ ପ୍ୟାରୀ ବାବୁଙ୍କ ସ୍କୁଲର ଜଣେ ଛାତ୍ର ପାଶକରି ୨ୟ ଶ୍ରେଣୀ ବୃତ୍ତି ପାଇଅଛି ଏହା ସେ ସ୍କୁଲ ପକ୍ଷରେ ପ୍ରଶଂସନୀୟ । ଗତ ବୃତ୍ତିବର୍ଷର ବୃତ୍ତି ବିତରଣରୁ ବୋଧହୁଏ ଯେ ଓଡ଼ିଶା ସକାଶେ ଦଶଗୋଟି ବୃତ୍ତି ମଧ୍ୟରୁ କଟକର ଗୋଟିଏ ବାଲେଶ୍ୱରର ଗୋଟିଏ ଓ ପୁରୀର ଗୋଟିଏ ଅଟଇ । କଟକ ବଡ଼ ଜିଲ୍ଲା ଓ ଏଠାରେ କଲେଜ ଥିବାରୁ ବାଲେଶ୍ୱର ଅପେକ୍ଷା କଟକର ବୃତ୍ତି ସଂଖ୍ୟା ଅଧିକ ହେବା ଉଚିତ ଥିଲା । ନିତାନ୍ତ ପକ୍ଷରେ କଟକରେ ପାଞ୍ଚଗୋଟି ବୃତ୍ତି ହେବାର ଆବଶ୍ୟକ ।

## ( ୧୫ଶ ଭାଗ, ୧୪ । ୨ । ୧୮୮୦, ସଂଖ୍ୟା ୭ )

୧୧୯ । ବି. ଏ. ପରୀକ୍ଷାଫଳ

କଲିକତା ବିଶ୍ୱବିଦ୍ୟାଳୟର ବି. ଏ. ପରୀକ୍ଷାଫଳ ବାହାରିଅଛି । ଗତ ସପ୍ତାହରେ କଲିକତା ଗେଜେଟରେ ଦେଖାଗଲା ଯେ ଏଥର ୧୧୨ ଜଣ ଛାତ୍ର ଉକ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ତହିଁ ମଧ୍ୟରେ ପ୍ରଥମ ଶ୍ରେଣୀରେ ୭ ଜଣ ୨ୟ ଶ୍ରେଣୀରେ ୩୬ ଜଣ ଏବଂ ୩ୟ ଶ୍ରେଣୀରେ ୬୯ ଜଣ । ×

+ + । କଟକ କଲେଜର ଏକଜଣ ଛାତ୍ର ଦୁର୍ଗାଚରଣ ସାହୁ ଏହି ପରୀକ୍ଷାରେ ୩ୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି ଏବଂ ଏଥିପାଇଁ କଲେଜର ପ୍ରିନ୍ସିପାଲ ଏଜିର ସାହେବ ଅତ୍ୟନ୍ତ ଆନନ୍ଦିତ ହୋଇ ଏକଦିନ କଲେଜ ବନ୍ଦ କରିଥିଲେ । ବାସ୍ତବରେ କଲେଜର ଶିକ୍ଷକଙ୍କ ପକ୍ଷରେ ଏହା ଅନନ୍ଦର ବିଷୟ ଅଟଇ । ଅନ୍ତତଃ ସେମାନେ ଏଥର ଦମ୍ଭହୋଇ କହିପାରନ୍ତି କି ଏତେକାଳ ଯେବେ ଏ କଲେଜର କେହି ଛାତ୍ର ପାଶ କରି ପାରିନଥିଲେ ତାହା

ସେମାନଙ୍କ ଦୋଷରୁ ନୁହଇ କେବଳ ଛାତ୍ରମାନଙ୍କ ଦୋଷରୁ କାରଣ ପୂର୍ବବର୍ଷ
ମାନଙ୍କରେ ଦୁର୍ଗାଚରଣ ସାହୁ ପରି ଛାତ୍ର ଥିଲେ ଅବଶ୍ୟ ପାଶ କରୁଥାନ୍ତେ ମାତ୍ର
ଆମ୍ଭେମାନେ ବର୍ତ୍ତମାନର ଫଳରେ ତାଦୃଶ ଆନନ୍ଦିତ ହେବାର କାରଣ ଦେଖୁନାହୁଁ ।
ଆମ୍ଭେମାନେ ବୋଧକରୁଁ ଯେ ଏଥିରେ କେବଳ କଟକ କଲେଜର ବନ୍ଧ୍ୟା ନାମ
ଘୁଞ୍ଚିଗଲା ମାତ୍ର ପ୍ରଶଂସାର ବିଷୟ କିଛି ହେଲେ ନାହିଁ । ପାଞ୍ଚବର୍ଷରେ ଗୋଟିଏ ମାତ୍ର
ଛାତ୍ର ଉତ୍ତୀର୍ଣ୍ଣ ହେଲା । ସେ' ପୁଣି ତୃତୀୟ ଶ୍ରେଣୀରେ ! ଏପରି ମଞ୍ଜୁଆ ଫଳ
ଉପରେ କେଉଁ ଉଦ୍ଭବ ପ୍ରୀତିକର ଅନୁଭବ ହୁଅଇ ତାହା ପାଠକମାନେ ଅନାୟାସରେ
ସ୍ଥିରକର ପାରନ୍ତି । ଫଳକଥା ଏହିକ ଆମ୍ଭେମାନେ ପୁନଃ ପୁନଃ କହିଅଛୁ
ଏବଂ ବର୍ତ୍ତମାନ ମଧ୍ୟ କହୁଅଛୁଁ ଯେ କଟକ କଲେଜଟି ବିଡ଼ମ୍ବନା ମାତ୍ର । ଏଥିରେ
ଦରିଦ୍ର ଉତ୍କଳର ବହୁତ ଧନ ଅକାରଣ ଧ୍ୱଂସ ହେଉଛି ଏବଂ କଷ୍ଟକାଳ ସକାଶେ
ଉନ୍ନତିର ମାର୍ଗରେ କଣ୍ଟା ପଡ଼ିଆଗଲା । ଏହା ଦ୍ୱାରା ଆଉ କିଛି ହେଉନାହିଁ । ଗତ
ପାଞ୍ଚବର୍ଷରେ ଏହି କଲେଜରେ ଯେତେ ଟଙ୍କା ବ୍ୟୟ ହୋଇଗଲା ଯେବେ ସେତିକି
ଟଙ୍କା କମ୍ପାନି କାଗଜରେ ଗଚ୍ଛିତ ହୋଇଥାନ୍ତା ତେବେ ତହିଁର ସୁଧରେ ଅନ୍ତତଃ
ଗୁଡ଼ିକଣ ଛାତ୍ର ପ୍ରତିବର୍ଷ କଲିକତାର ଉତ୍କୃଷ୍ଟ କଲେଜରେ ଅଧ୍ୟୟନ କରିପାରି
ଥାନ୍ତେ ଓ ତଦ୍ଦ୍ୱାରା ଏଥିମଧ୍ୟରେ କେବଳ କେତେଜଣ ବି. ଏ. ଉପାଧିଧାରୀ
ଓଡ଼ିଶାରେ ହୋଇଥାନ୍ତେ ଏମନ୍ତ ନୁହେଁ କେହି ୨ ବି. ଏଲ ପରୀକ୍ଷା ମଧ୍ୟ ଦେଇ
ସ୍ୱାଧୀନ ଜୀବିକା ନିର୍ବାହ କରିବାକୁ ସମର୍ଥ ହୋଇଥାନ୍ତେ ଓ ତହିଁରେ ଓଡ଼ିଶାର
ଗୌରବ ବଢ଼ିଥାନ୍ତା । କିନ୍ତୁ ମୂଳଧନ ଯାକ ସମସ୍ତ ବ୍ୟୟହୋଇ ଗୋଟିଏ ମାତ୍ର
ବି. ଏ. ଉପାଧିଧାରୀ ଲଭହେଲା । ଏହା କି ସନ୍ତୋଷ ଜନକ ଅଟଇ ? ଆମ୍ଭେମାନେ
ଏତେବେଳେ ସୁଦ୍ଧା ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରୁଛୁଁ କି ଯଦ୍ୟପି ଯଥାର୍ଥରେ
ଓଡ଼ିଶାପ୍ରତି ଦୟାକରି କଲେଜକୁ ଚିରସ୍ଥାୟୀ କରିବାକୁ ମନସ୍ଥ କରିଅଛନ୍ତି ତେବେ
ଯେତେ ବ୍ୟୟ ଓ ଯେ ପ୍ରକାର ଯୋଗ୍ୟ ଲୋକ ପ୍ରକୃତ କଲେଜ ସକାଶେ ଆବଶ୍ୟକ
ତାହା ଅବଲମ୍ବେ ପ୍ରଦାନ ଓ ନିୟୋଗ କରନ୍ତୁ ନୋହିଲେ ଏପରି ନାମମାତ୍ର
କଲେଜରେ ଯେଉଁ ଟଙ୍କା ବ୍ୟୟ କରୁଅଛନ୍ତି ତହିଁର କିୟଦଂଶ ବୃତ୍ତିରୂପ ଛାତ୍ରଙ୍କୁ
ଦେଉନ୍ତୁ । ତାହାହେଲେ ସେମାନେ ଅନାୟାସରେ ବଙ୍ଗଳାର କଲେଜମାନଙ୍କରେ
ଉଚ୍ଚ ଶିକ୍ଷା ଲଭିକରି ପାରିବେ ।

( ୧୫ଶ ଭାଗ, ୭ । ୩ । ୧୮୮୦, ସଂଖ୍ୟା ୧୦ )

୧.୨୦ ।

କଟକ କଲେଜ

ଗତ ବି. ଏ. ପରୀକ୍ଷା ଫଳ ସମ୍ବନ୍ଧରେ ଆମ୍ଭେମାନେ ଏ କଲେଜ

କ୍ଷେତ୍ରରେ ଯେ ମନ୍ତବ୍ୟ ପ୍ରକାଶ କରିଥିଲେ, ପାଠକମାନେ ଅବଗତ ଅଛନ୍ତି । ଉତ୍କଳ ଦର୍ପଣ ଲେଖିଥିଲେ କି ଜଣେ ମାତ୍ର ଛାତ୍ର ତୃତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବାରୁ କଲେଜର ବୃଦ୍ଧି କହିଗଲା । ବର୍ତ୍ତମାନ ସେ ବୋଲନ୍ତି :—

"ଶୁଣାଯାଏ କେତେକ ଉନ୍ନତଚେତା ନବ୍ୟସମ୍ପ୍ରଦାୟଭୁକ୍ତ ମହାଶୟମାନେ ଏଥିରେ ଅସନ୍ତୁଷ୍ଟ ହୋଇ ଆମ୍ଭମାନଙ୍କୁ ପକ୍ଷପାତୀ ଓ ଦେଶଘାତକ ବୋଲି ନିନ୍ଦା କରୁଅଛନ୍ତି । ଏହା ଯଦି ସତ୍ୟ ହୁଏ ତେବେ ଉକ୍ତ ମହାଶୟମାନେ କି ନିମନ୍ତେ ଯେ ଏତେ କୋପାବିଷ୍ଟ ହୋଇଅଛନ୍ତି ଆମ୍ଭେମାନେ ବୁଝିପାରୁ ନାହୁଁ । ଆମ୍ଭେମାନେ ବାରମ୍ବାର କହିଅସୁଅଛୁଁ ଯେ କଟକ କଲେଜ ଯେଉଁ ପନ୍ଥାରେ ଠିଆ ହୋଇଅଛି ଏହା କଦାପି ଦେଶର ଅଭାବ ମୋଚନ କରିପାରିବ ନାହିଁ । ଆଜିକି ଚଉଦବର୍ଷ ହେଲା କଲେଜଟି ସଂସ୍ଥାପିତ ହୋଇ ଅନ୍ୟୂନ ୫୦ କି ୬୦ ହଜାର ଟଙ୍କା ବ୍ୟୟ ହେଲା ମାତ୍ର ଏତେ ଟଙ୍କାରେ ଲାଭ କଣ ହୋଇଅଛି ? ଏତେ ଟଙ୍କା ବ୍ୟୟରେ ଜଣେ ମାତ୍ର ଛାତ୍ର ଯଦି ତୃତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୁଏ ଏହା କି କଲେଜ-ପ୍ରତି ଗୌରବର କଥା" ?

+ + + +

+ + + । ଏଥିରେ ଯେତେ ଟଙ୍କା ବ୍ୟୟ ହେଲାଣି ସେହି ଟଙ୍କାରେ କେତୋଟି ଉଚ୍ଚ ଛାତ୍ରବୃତ୍ତି ସ୍ଥାପନ ହୋଇଥିଲେ ଏଠା ଛାତ୍ରେ ସେ ବୃତ୍ତି ନେଇ କଲିକତା ଯାଇ ଶିକ୍ଷା କରିଥିଲେ ଏ ଚଉଦବର୍ଷ ମଧ୍ୟରେ ଜଣକରୁ ଅଧିକ ଛାତ୍ର ପରୀକ୍ଷୋତ୍ତୀର୍ଣ୍ଣ ହୋଇଥାଆନ୍ତେ ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । ବୃତ୍ତି ସ୍ଥାପନଦ୍ୱାରା ଆଉ ଗୋଟିଏ ବିଶେଷ ଉପକାର ହୁଅନ୍ତା ଯେ ଛାତ୍ରମାନେ କଲିକତାକୁ ଯାଇ ଆପଣା ରୁଚି ଅନୁସାରେ କେହିବା ଡାକ୍ତରି କେହିବା ଇଞ୍ଜିନିୟରିଂ କେହିବା ଆଇନ ପ୍ରଭୃତି ଶିକ୍ଷା କରିବାକୁ ସମର୍ଥ ହୁଅନ୍ତେ । ଏଠା କଲେଜ ଦ୍ୱାରା କି ଏସବୁ ଲାଭ ହେବ ? ଅତଏବ ଦର୍ପଣ ଯଥାର୍ଥ କହିଅଛନ୍ତି ଓଡ଼ିଶାର ଛାତ୍ରେ କଲିକତାକୁ ଯାଇ ଶିକ୍ଷିତ ହେଲେ ଯେତେଦୂର ଉନ୍ନତ ହୁଅନ୍ତେ ଏବଂ ଦେଶର ଯେତେ ଉପକାର ହୁଅନ୍ତା କଟକ କଲେଜ ସେ ସମସ୍ତ ଏକାବେଳେକେ ପ୍ରତିରୋଧ କରିଅଛି । ସେ ଆହୁରି ବୋଲନ୍ତି--

"କଲେଜରେ ପଢ଼ି ଉତ୍ତୀର୍ଣ୍ଣ ହେବାକୁ ଗଲେ ଯେ ଉପକରଣ-ମାନଙ୍କର ଆବଶ୍ୟକ ଛାତ୍ରେ ତହିଁ ସମସ୍ତ ପାଉନାହାନ୍ତି । ଜଣେ ଅଧେ ଉତ୍ତୀର୍ଣ୍ଣ ହେଲେ କଟକ କଲେଜ ଯେ ବି. ଏ. ପାଶ କରାଇବାକୁ ସକ୍ଷମ ଏହା ଆଶା କରିପାରି ନପାରେ ।"

ଆମ୍ଭେମାନେ ସୁନନ୍ତୁ କହୁଁ ଯେ ଗବର୍ଣ୍ଣମେଣ୍ଟ ଯଦି ଏଠାରେ କଲେଜ ରଖିବାକୁ ଚାହାନ୍ତି ତେବେ ତହିଁର ଅବସ୍ଥା ସୁଧାରନ୍ତୁ। ଏତେବ୍ୟୟ କରି ଆଉ କିଛି ବ୍ୟୟକୁ କୁଣ୍ଠିତ ନହୁଅନ୍ତୁ। ଅନ୍ୟାନ୍ୟ ସ୍ଥାନର କଲେଜମାନଙ୍କର ଉପଯୁକ୍ତ ବେତନରେ ଉପଯୁକ୍ତ ଅଧ୍ୟାପକମାନ ନିଯୁକ୍ତ କରନ୍ତୁ ଓ ଆଇନ ଶିକ୍ଷାର ବ୍ୟବସ୍ଥା କରନ୍ତୁ। ଆମ୍ଭେମାନେ କଲେଜର ଶ୍ରୀବୃଦ୍ଧି ଚାହୁଁ ଓ ଏହାହିଁ ଆମ୍ଭମାନଙ୍କର ଏକାନ୍ତ ଇଚ୍ଛା। ତହିଁପ୍ରତି ଆମ୍ଭମାନଙ୍କର ସ୍ପର୍ଦ୍ଧା ବା ଦ୍ୱେଷ ନାହିଁ ତେବେ ତାହା କାହିଁକି? କେବଳ ଆମ୍ଭେମାନେ ସ୍ୱତନ୍ତ୍ର କଲେଜ ଚାହୁଁ ନାହୁଁ, ଶ୍ରୀମନ୍ତ ଶ୍ରୀକଲେଜ ଚାହୁଁ।

( ୧୪ଶ ଭାଗ, ୨୦।୩।୧୮୮୦, ସଂଖ୍ୟା ୧୨ )

୧୨୧। ପ୍ୟାରୀମୋହନ ଆଚାର୍ଯ୍ୟଙ୍କ କୃତ ଓଡ଼ିଶାର ଇତିହାସ।

କଟକରୁ ଏକବ୍ୟକ୍ତି ଗାଙ୍ଗୁଲୀ ଯୋଗେ କଲିକତାର ଇଣ୍ଡିଆନ ମିରର ସମ୍ବାଦ ପତ୍ରକୁ ଲେଖିଅଛନ୍ତି କି ବାବୁ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ କୃତ ଓଡ଼ିଶାର ଇତିହାସ ସମ୍ପର୍କରେ ଭାରି ଗଣ୍ଡଗୋଳ ଲାଗିଅଛି। ଉକ୍ତ ପୁସ୍ତକର କେତେକ ଅଂଶ ଅସତ୍ୟ ହୋଇଅଛି ମାତ୍ର ଜଗନ୍ନାଥଙ୍କ ବିଷୟ ଯାହା ଲେଖାଅଛି ତାହା ଭଲ ଅଛି। ଆଉ ଏକ ତାରିଖର ଉକ୍ତ ସମ୍ବାଦପତ୍ରକୁ ଜଣାଯାଏ ଯେ ଜଗନ୍ନାଥମୂର୍ତ୍ତି କଳାପାହାଡ଼ର ଅତ୍ୟାଚାର ବିଷୟରେ ଯାହା ଉକ୍ତ ଇତିହାସରେ ଲେଖାଅଛି ତହିଁରେ ବଡ଼ ଭ୍ରମ ଜାତ ହୋଇଅଛି। କାହିଁ ଆମ୍ଭେମାନେତ କିଛି ଗଣ୍ଡଗୋଳ ବା ଭ୍ରମର କଥା ଶୁଣି ନାହୁଁ ଶ୍ରୀଜଗନ୍ନାଥଙ୍କର ସେବା ପୂର୍ବପ୍ରାୟ ଚାଲୁଅଛି ଓ ଆଜିକାଲି ମହାପ୍ରସାଦ ଶସ୍ତା ମିଳିବାରୁ ଲୋକ ଅଧିକ ଭକ୍ତିପୂର୍ବକ ଗ୍ରହଣ କରୁଅଛନ୍ତି। ଯାତ୍ରୀମାନଙ୍କ ଗତାୟତ ଊଣା ବା ବନ୍ଦ ହୋଇନାହିଁ। ସଟନ ସାହେବଙ୍କ ଓଡ଼ିଶା ଇତିହାସରେ ଏହିକଥା ବହୁକାଳରୁ ପିଲାମାନେ ସ୍କୁଲରେ ପଢ଼ି ଆସୁଅଛନ୍ତି। ତହିଁରେ ତ କେହି ଆପତ୍ତି କରିବାର ଶୁଣାଯାଇ ନାହିଁ। ତେବେ କି ଗଣ୍ଡଗୋଳ। ଯେପରି ମନ୍ଦିରରୁ ପଥର ଖସିପଡ଼ିବା ବେଳେ ଅଥବା ରାଜା କନ୍ଦ୍ରୋଧ ହେବାବେଳେ ହୋଇଥିଲା ସେହିପରି କି? ଆମ୍ଭେମାନେ କେବଳ ଏତିକି ଜାଣୁଅଛୁ ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟ ଗୋଟାଏ ଗଣ୍ଡଗୋଳ କରିବାକୁ ବହୁତ ଯତ୍ନ ଚେଷ୍ଟା କରୁଅଛନ୍ତି। ସେ ଟଙ୍କା ବ୍ୟୟକରି ତାରଡାକରେ ସମ୍ବାଦପତ୍ରମାନଙ୍କ ନିକଟକୁ ଲେଖୁଅଛନ୍ତି ଏବଂ ଏଠାର ଭଦ୍ରଲୋକଙ୍କୁ ବୁଝାଉ ଅଛନ୍ତି ପ୍ୟାରୀବାବୁଙ୍କ ଓଡ଼ିଶା ଇତିହାସକୁ ନିର୍ମୂଳ କରିବା ତାହାଙ୍କର ଇଚ୍ଛା। ଆହା କି ମହତ୍ ଇଚ୍ଛା। ଯେଉଁ ଇତିହାସକୁ ଓଡ଼ିଶାର ସମସ୍ତ ସମ୍ବାଦପତ୍ର ଏକବାକ୍ୟହୋଇ ପ୍ରଶଂସା କରିଅଛନ୍ତି ଏବଂ ବିଦ୍ୱାନ୍ ମଣ୍ଡଳୀରେ ଯାହା ଗୃହୀତ ହୋଇ

ଅଛୁ ତାହାକୁ ଧ୍ୱଂସ କରି ନପାରିଲେ ଆଉ କି ମହତ୍ କାର୍ଯ୍ୟ ସାଧନ ହୋଇପାରେ ? ଆହୁରି ଶୁଣୁଅଛୁଁ ଅନ୍ୟ କେତେ ଭଦ୍ରଲୋକ ଏ ପ୍ରଶଂସାର ଭାଗୀ ହେବା କାରଣ ପରିଶ୍ରମ କରୁଅଛନ୍ତି କିନ୍ତୁ ତାହା ନପାଇବାରୁ ଦୁଃଖିତ ଅଛନ୍ତି ।

## ( ୧୬ଶ ଭାଗ, ୨୭ । ୩ । ୧୮୮୦, ସଂଖ୍ୟା ୧୩ )

୧୨୨ । ଆମ୍ଭେମାନେ ଆନନ୍ଦ ସହିତ ଅବଗତ ହେଲୁଁ ଯେ ଓଡ଼ିଶାର କେତେଣ ଛାତ୍ର ଶ୍ୟାମାଚରଣ ଘୋଷ ବ ୬ ବର୍ଷ କଲିକତା ମେଡ଼ିକାଲ କଲେଜରେ ଅଧ୍ୟୟନ କରି ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଏଥର ସେ ଆସିଷ୍ଟାଣ୍ଟ ସର୍ଜନ ହୋଇ ପାରିବେ । ଏପରି ପଦ ଅବଧି କେହି ଓଡ଼ିଶାବାସୀଙ୍କ କପାଳରେ ଘଟିନାହିଁ । କମିଶନର ସାହେବ ଏହାଙ୍କୁ ଓଡ଼ିଶାକୁ ଘେନି ଆସନ୍ତୁ ଯେ ଅନ୍ୟ ଛାତ୍ରଙ୍କ ଉତ୍ସାହ ବଢ଼ିବ ଆଉ ବି. ଏ. ପାଶକଲା ଛାତ୍ରଙ୍କ ପରି ଏହାଙ୍କୁ ଆପଣା କଚେରୀରେ ୪୦ । ୫୦-ଙ୍କାର କିରାନିଗିରିରେ ନିଯୁକ୍ତ ନ କରନ୍ତୁ ।

## ( ୧୭ଶ ଭାଗ, ୧୫ । ୧ । ୧୮୮୧, ସଂଖ୍ୟା ୩ )

୧୨୩ । ଫାଷ୍ଟ ଆର୍ଟସ ଓ ପ୍ରବେଶିକା ପରୀକ୍ଷାର ଫଳ ।

ଓଡ଼ିଶାର ତଳଲିଖିତ ଛାତ୍ରମାନେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ଯଥା :—

ଫାଷ୍ଟ ଆର୍ଟସ - କଟକ କଲେଜ
୧ମ ଶ୍ରେଣୀ
ମନମୋହନ ଚକ୍ରବର୍ତ୍ତୀ
୨ୟ ଶ୍ରେଣୀ
ଗୋକୁଳାନନ୍ଦ ଚୌଧୁରୀ
ବ୍ରହ୍ମାନନ୍ଦ ଦାସ
ହରିଶ୍ଚନ୍ଦ୍ର ଘୋଷ

୩ୟ ଶ୍ରେଣୀ
ନାରାୟଣଦାସ ଚାନ୍ଦୁଯା
ଗୋପାଳବଲ୍ଲଭ ଦାସ
ଅକ୍ଷୟକୁମାର ଘୋଷ
ଜଗଦାନନ୍ଦ ପଟ୍ଟନାୟକ

ପ୍ରବେଶିକା ପରୀକ୍ଷା

କଟକ ଏକାଡେମୀ

ପ୍ରଥମ ଶ୍ରେଣୀ
ଅକ୍ଷୟଚନ୍ଦ୍ର ବସୁ

୨ୟ ଶ୍ରେଣୀ
ଗୁରୁପ୍ରସାଦ ଦାସ

ରେଭେନସା କଲେଜ

୨ୟ ଶ୍ରେଣୀ
ସନ୍ତୋଷଚନ୍ଦ୍ର ବକ୍ସୀ
ସଦାଶିବ ଦାସ
ରଜନୀକାନ୍ତ ମୁଖର୍ଜୀ
ଦାମୋଦର ପଟ୍ଟନାୟକ
ନରେନ୍ଦ୍ରନାଥ ଗୁହଠାକୁର୍ଟା
ମହମ୍ମଦ ଜମିରୁଦ୍ଦିନ
ବନୱାରୀ ପାଣ୍ଡିତ
ଗୋପାଳବନ୍ଧୁ ପଟ୍ଟନାୟକ

୩ୟ ଶ୍ରେଣୀ
ରସାନନ୍ଦ ଦାସ
ବ୍ରଜବଲ୍ଲଭ ଘୋଷ

ବାଲେଶ୍ୱର

୨ୟ ଶ୍ରେଣୀ

ଗଗନ ବିହାରୀ ଚୌଧୁରୀ
ସାରଦା ପ୍ରସାଦ ଦତ୍ତ
ଶ୍ରୀଧର ଗିରି
ଉଦୟନାରାୟଣ ଦାସ
ବ୍ରଜନାଥ ଘୋଷ
ରାମପ୍ରସାଦ ନନ୍ଦୀ

ଷଲ ନାୟକ

୩ୟ ଶ୍ରେଣୀ
ବୈକୁଣ୍ଠ ନାଥ ଦାସ

ପୁରୀ

୨ୟ ଶ୍ରେଣୀ
ଜଗନ୍ନାଥ ଦାସ
ମଧୁସୂଦନ ରାୟ

୩ୟ ଶ୍ରେଣୀ
ତାରିଣୀ ପ୍ରସାଦ ଦେ
ଦ୍ୱାରକାଂଶ୍ୱର ମିତ୍ର

ଲକ୍ଷଣ ନାଥ

୨ୟ ଶ୍ରେଣୀ
ଗୋବର୍ଦ୍ଧନଚନ୍ଦ୍ର ସରକାର

( ବଙ୍ଗ ପ୍ରଦେଶର ) ଏହି ମୋଟ ଫଳ ତୁଳନାରେ ଓଡ଼ିଶାର ଫଳ ଉତ୍ତମ ହୋଇଅଛି କାରଣ ଗତବର୍ଷ କେବଳ ଜ ୪ ଣ ଫାଷ୍ଟ ଆର୍ଟସ ଏବଂ ଜ ୧୬ଣ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏବର୍ଷ ଯଥାକ୍ରମେ ଜ ୮ ଣ ଏବଂ ଜ ୨୫ ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।

ଫାଷ୍ଟ ଆର୍ଟସ ପରୀକ୍ଷାର ଫଳାଫଳରେ ଏକା ରେଭେନସା କଲେଜର ସମ୍ପର୍କ ଅଛି କାରଣ ଅନ୍ୟ କୌଣସିଠାରେ ଏ ପରୀକ୍ଷା ସକାଶେ ଛାତ୍ର ପ୍ରସ୍ତୁତ ହୁଅନ୍ତି ନାହିଁ । ଗତବର୍ଷ କେବଳ ଜ ୪ ଣ ପାଶ କରିଥିଲେ । ଏଥର ଜ ୧୧ ଣ ପ୍ରାର୍ଥୀଙ୍କ ମଧ୍ୟରୁ ଜ ୮ ଣ ପାଶ କରିଅଛନ୍ତି ଏବଂ ତାହାଙ୍କମଧ୍ୟରୁ ଏକଜଣ ପ୍ରଥମ ଶ୍ରେଣୀରେ ସ୍ଥାନ ପାଇଅଛି । ଏହା ଅବଶ୍ୟ କଲେଜପ୍ରତି ସୁଖ୍ୟାତିର ବିଷୟ ଅଟଇ ମାତ୍ର ସନ ୧୮୭୭ ସାଲରେ ଠିକ ଏହିପରି ଫଳ ଲାଭ ହୋଇଥିଲା ଏବଂ କଟକ ହାଇସ୍କୁଲ ଥିବା ସମୟରେ ମଧ୍ୟ ଏହିପରି ଥରେ ହୋଇଥିଲା ସୁତରାଂ ସେପରି ଠିକ ବ୍ୟୟରେ କଲେଜ ବସିଲା ତାହାର ଲାଭ ଅବଧି ମିଳିନାହିଁ ଏବଂ ଏହି କାରଣରୁ ଏବର୍ଷର ଫଳ ଉତ୍ତମ ବୋଲି କହିନପାରୁଁ । କେବଳ ଏତିକି ବୋଲିପାରିବା ଯେ କଲେଜର ଶିକ୍ଷକମାନେ ଉପଯୁକ୍ତ ଶିକ୍ଷାଦେବାରେ ତ୍ରୁଟି କରି ନାହାନ୍ତି । ଏଠାରେ ଆମ୍ଭେମାନେ ମନମୋହନ ଚକ୍ରବର୍ତ୍ତୀଙ୍କ ପ୍ରଶଂସା ନକରି ଏ ପ୍ରସଙ୍ଗ ଶେଷ କରି ନପାରୁଁ । ସନ ୧୮୭୮ର ପ୍ରବେଶିକା ପରୀକ୍ଷାରେ ସେହି ଏକା ଓଡ଼ିଶାରେ ପ୍ରଥମ ଶ୍ରେଣୀରେ ପାସ କରିଥିଲେ । ଏଥର ଫାଷ୍ଟ ଆର୍ଟସ ପରୀକ୍ଷାରେ ମଧ୍ୟ ପ୍ରଥମ ସ୍ଥାନ ପାଇଅଛନ୍ତି ।

ପ୍ରବେଶିକା ପରୀକ୍ଷା ।

କେବଳ ପ୍ୟାରୀ ବାବୁଙ୍କ ସ୍ଥାପିତ କଟକ ଏକାଡେମୀ ଓଡ଼ିଶାର ମର୍ଯ୍ୟାଦା ରକ୍ଷା କରିଅଛି । ଏହି ସ୍କୁଲରୁ ଯେଉଁ ଦୁଇ ଜଣ ପରୀକ୍ଷା ଦେଇଥିଲେ ତାହିଁ ମଧ୍ୟରୁ ଏକ ଜଣ ପ୍ରଥମ ଏବଂ ଅପରଟି ଦ୍ୱିତୀୟ ଶ୍ରେଣୀରେ ପାସ କରିଅଛି । ଓଡ଼ିଶାର ଆଉ କୌଣସି ସ୍କୁଲର ଛାତ୍ର ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇନାହିଁ । ଏପରି ସୁଫଳ ସକାଶେ ଆମ୍ଭେମାନେ ପ୍ୟାରୀବାବୁଙ୍କ ମଙ୍ଗଳ ବାଞ୍ଛା କରୁଅଛୁଁ । ତାହାଙ୍କର ଅର୍ଥବ୍ୟୟ ଓ ଅଧ୍ୟବସାୟ କ୍ରମଶଃ ଏପରି ସୁଫଳରେ ମଣ୍ଡିତ ହେବା ବଡ଼ ପ୍ରଶଂସାର ବିଷୟ ଅଟଇ । ଏ ଫଳ ଦୃଷ୍ଟିରେ ଗବର୍ଣ୍ଣମେଣ୍ଟ କଲେଜ ଏବଂ ସ୍କୁଲମାନ

ଭାବ ଲକ୍ଷିତ ହେବେ ସନ୍ଦେହ ନାହିଁ । ଏତେ ଅର୍ଥବ୍ୟୟ ଏବଂ ତନଖି ଉଦ୍ଧାରକ ଏବଂ ଫଳ ଏପରି ସାମାନ୍ୟ । କେବଳ ଏହି ବର୍ଷ ନୁହେଁ ଗତବର୍ଷ ମଧ୍ୟ ଏହିପରି ପ୍ରଥମ ଶ୍ରେଣୀରେ ଶୂନ୍ୟ ପଡ଼ିଥିଲା ।

କଟକ କଲେଜରୁ ୩୧ ଜଣ ଛାତ୍ର ପ୍ରେରିତ ହୋଇଥିଲେ । ୫ମସ୍ତେ ପାସ କରିବା ଯଦ୍ୟପିକ ସୁଖର ବିଷୟ ଅଟଇ ମାତ୍ର ଏଥିରେ କଲେଜର ସୁଖ୍ୟାତି ଆଦୌ ନାହିଁ । ପ୍ରଥମତଃ ଗୋଟାଏ କଲେଜରୁ ୩୧ ଜଣ ମାତ୍ର ପରୀକ୍ଷାର୍ଥୀ ହେବା ମନ୍ଦ, ଦ୍ୱିତୀୟତଃ ଜଣେ ସୁଦ୍ଧା ପ୍ରଥମ ଶ୍ରେଣୀରେ ସ୍ଥାନ ନ ପାଇବା ଅଧିକ ମନ୍ଦ ଅଟଇ । ସମସ୍ତ ପରୀକ୍ଷାର୍ଥୀଙ୍କର ପାସ ହେବାରୁ ଜଣାଯାଏ ଯେ ଶିକ୍ଷକମାନେ ଅତି କଠିନ ନିୟମରେ ଛାତ୍ରବାଛି ପଠାଇଥିଲେ ଯେବେ ତାହା ନକରି ଆଉ ୪ । ୫ ଜଣ ବା ଅଧିକ ପଠାଇ ଥାନ୍ତେ ତେବେ ସେମାନେ ମଧ୍ୟ ପାସ କରିଥାନ୍ତେ । ସେପରି ନହେବାରୁ କେହି ୨ ଛାତ୍ର ପ୍ରତି ଅନ୍ୟାୟ ବ୍ୟବହାର ହୋଇଅଛି ବୋଲିବାକୁ ହେବ । ଯେତେକାଳ ବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ଅଧିକାଂଶ ଛାତ୍ର ପରୀକ୍ଷାର୍ଥୀ ନହେବେ ତେତେକାଳ ପରୀକ୍ଷାର ଫଳଦ୍ୱାରା ବିଦ୍ୟାଳୟର ଯଥାର୍ଥ ସୁଖ୍ୟାତି ହୋଇପାରିବ ନାହିଁ ।

ବାଲେଶ୍ୱର ସ୍କୁଲର ଫଳ ବଡ଼ ପ୍ରୀତିକର ଅଟଇ । ଗତବର୍ଷ ୫ଜଣ ପାସ କରିଥିଲେ । ଏବର୍ଷ ୧୦ଜଣ ପରୀକ୍ଷାର୍ଥୀ ମଧ୍ୟରୁ ୮ଜଣ ପାସ କରିଅଛନ୍ତି କେହି ଜଣେ ପ୍ରଥମ ଶ୍ରେଣୀରେ ପାସ କରିଥିଲେ ଭାରି ପ୍ରଶଂସାର କଥା ହୋଇଥାନ୍ତା । ତଥାପି ଏଠାର ଫଳକୁ ଆମ୍ଭେମାନେ କଟକଠାରୁ ଉତ୍କୃଷ୍ଟ ମନେକରୁଁ ।

ପୁରୀସ୍କୁଲରୁ ଗତବର୍ଷ କେବଳ ଜ ୨ ଣ ତୃତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏବର୍ଷ ୨ୟ ଓ ୩ୟ ପ୍ରତ୍ୟେକ ଶ୍ରେଣୀରେ ୨ ଜଣ ଲେଖାଏଁ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ସୁତରାଂ ଏଫଳ ଉତ୍ତମ ଅଟଇ ଏବଂ ଏଠାର ଅବସ୍ଥା ଦୃଷ୍ଟିରେ ଏଥିରୁ ଭଲ ଫଳ ଆଶାକରିବା ଅଧିକ ଅଟଇ ।

( ୧୭ଶଭାଗ, ୨୯ । ୧ । ୧୮୮୧, ସଂଖ୍ୟା ୫ )

୧୨୪ । ଓଡ଼ିଶାର ତଳଲିଖିତ ଛାତ୍ରମାନେ ଉଚ୍ଚଶ୍ରେଣୀର ବୃତ୍ତି ପାଇଅଛନ୍ତି । ଯଥା—

| | |
|---|---|
| ମନୋମୋହନ ଚକ୍ରବର୍ତ୍ତୀ | କଟକ ରେଭେନସା କଲେଜ |
| ଗୋକୁଳାନନ୍ଦ ଚୌଧୁରୀ | ,, |
| ବ୍ରହ୍ମାନନ୍ଦ ଦାସ | ,, |

( ୧୭ଶ ଭାଗ, ୫ । ୨ । ୧୮୮୧, ସଂଖ୍ୟା ୭ )

୧୨୫ । ଓଡ଼ିଶାର ତଳଲିଖିତ ଛାତ୍ରମାନେ ଏଫ଼ ଏ ଅର୍ଥାତ୍ କମ୍ପଶ୍ରେଣୀର ବୃତ୍ତି ପାଇଅଛନ୍ତି । ଯଥା :—

୨ୟ ଶ୍ରେଣୀ

ଅକ୍ଷୟଚନ୍ଦ୍ର ରାୟ କଟକ ଏକାଡେମୀ
ସତୀଶଚନ୍ଦ୍ର ବକସି କଟକ କଲେଜ
ବନବିହାରୀ ପାଳିତ ,,
ଗଗନ ବିହାରୀ ଚୌଧୁରୀ ବାଲେଶ୍ୱରଜିଲ୍ଲା ସ୍କୁଲ

୩ୟ ଶ୍ରେଣୀ

ଉଦୟ ନାରାୟଣ ଦାସ ବାଲେଶ୍ୱର ଜିଲ୍ଲା ସ୍କୁଲ
କମାଲଉଦ୍ଦୀନ ମହମ୍ମଦ କଟକ କଲେଜ
ମଧୁସୂଦନ ରାୟ ପୁରୀଜିଲ୍ଲା ସ୍କୁଲ
ମାୟାଧର ଦାସ ,,
ରଜନୀକାନ୍ତ ମୁଖୋପାଧ୍ୟାୟ କଟକ କଲେଜ
ଗୋବିନ୍ଦଚନ୍ଦ୍ର ସରକାର ଲୋକନାଥସ୍କୁଲ-ବାଲେଶ୍ୱର
ଦିବ୍ୟସିଂହ ମିଶ୍ର ପୁରୀଜିଲ୍ଲା ସ୍କୁଲ

ଏଥିରୁ ଦେଖାଯାଏ ପରୀକ୍ଷାରେ ପୁରୀର ମାୟାଧର ଦାସ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ନ ହୋଇ ଦ୍ୱିତୀୟ ଶ୍ରେଣୀରେ ହୋଇଥିଲା । ଏ ଛାତ୍ରଟି ସମ୍ବନ୍ଧରେ ଏତେ ଗୋଲମାଲ କି ସକାଶେ ହେଲା ।

୧୨୬ । କଲିକତା ବିଶ୍ୱବିଦ୍ୟାଳୟର ବି. ଏ. ପରୀକ୍ଷାର ଫଳ ବାହାରିଅଛି । ଜଣ ୮୪ଣ ମଧ୍ୟରୁ ୧ମ ଶ୍ରେଣୀରେ ଜଣ୨୦ଣ ଦ୍ୱିତୀୟ ଶ୍ରେଣୀରେ ଜଣ୪୦ଣ ଏବଂ ୩ୟ-ଶ୍ରେଣୀରେ ଜଣ୧୪ଣ ସର୍ବସୁଦ୍ଧା ଜଣ୧୭୪ଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ପ୍ରେସିଡେନ୍ସି କଲେଜ ପ୍ରଥମ ସ୍ଥାନ ପ୍ରାପ୍ତ ହୋଇ ଆପଣାର ଠେକ ରକ୍ଷା କରିଅଛି । କଟକ କଲେଜରୁ ଗୁରିଜଣ ପରୀକ୍ଷା ଦେବା ନିମିତ୍ତ ଯାଇଥିଲେ, ତହିଁମଧ୍ୟରୁ କେବଳ ଏକଜଣ ଅର୍ଥାତ୍ ଜାନକୀବଲ୍ଲଭ ଘୋଷ ତୃତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଗତବର୍ଷ ମଧ୍ୟ ଠିକ ଏହିପରି ଫଳ ହୋଇଥିଲା ଏବଂ ଏହା ଯେ ଏଠା କଲେଜପ୍ରତି ନିତାନ୍ତ ଅସନ୍ତୋଷଜନକ ଏକଥା ବୋଲିବା ବାହୁଲ୍ୟ ଅଟଇ । ଆଗଠାରୁ ସମସ୍ତେ କହୁଥିଲେ ଯେ ଏଠା କଲେଜର ଫଳ ଭଲ ହେବ ନାହିଁ ଏବଂ ପ୍ରତ୍ୟକ୍ଷରେ ତାହାଇ ଦେଖାଗଲା । ବହୁତ କଷ୍ଟରେ ଓଡ଼ିଶାର ଭାଗ୍ୟକୁ ଗୋଟିଏ କଲେଜ ମିଳିଅଛି କିନ୍ତୁ କାଳର ତହିଁରୁ ସୁଫଳ ଫଳିବ ଗବର୍ଣ୍ଣମେଣ୍ଟ କିମ୍ବା ସ୍ଥାନୀୟ ପ୍ରଧାନ କର୍ମଗୁରୀମାନେ ଥରେ ମାତ୍ର ତାହା ଭାବି ନାହାନ୍ତି । ଆଜି පିଲଙ୍କ ମୁଣ୍ଡରେ ଦୋଷ ଛଡ଼ାଇଲେ

ଚଳିବ ନାହିଁ । ଏଥର ସାଧାରଣ ମତ ଏହି ଯେ କଲେଜର ଶିକ୍ଷାକାର୍ଯ୍ୟ ଯେଉଁ ପ୍ରଣାଳୀରେ ଶୃଙ୍ଖଳାର ଉଚିତ ତାହା ହେଉନାହିଁ ଓ ତହିଁ ସକାଶେ ପ୍ରିନ୍ସିପାଲ ଦାୟୀ ଅଟନ୍ତି । ଆମ୍ଭେମାନେ ବିବେଚନାକରୁଁ କି ଶ୍ରୀଯୁକ୍ତ ଏଜର ସାହେବଙ୍କୁ ଉଚ୍ଛେଦ କରିଦେଇ ଜଣେ ବିଦ୍ୱକର୍ମୀ ପ୍ରିନ୍ସିପାଲ ଗବର୍ଣ୍ଣମେଣ୍ଟ ଏଠାକୁ ପ୍ରେରଣ କରନ୍ତୁ । ତହିଁରେ କଲେଜର ଦୁର୍ଦ୍ଦଶା ଘୁଞ୍ଚିଯାଇ ପାରେ । ଏହାଛଡ଼ା ଅଉ କିଛି ଉପାୟ ଦିଶୁନାହିଁ ।

## ( ୧୭ଶ ଭାଗ, ୭ । ୪ । ୧୮୮୧, ସଂଖ୍ୟା ୧୯ )

୧୨୭ । କଟକ ଆକେଡେମୀର ପାରିତୋଷିକ

ବିତରଣ ସଭା

ଏ ସଭା ଗତ ସୋମବାର ଅପରାହ୍ନ କାଳରେ କଟକ ମ୍ୟୁନିସିପାଲ କମିଶନରଙ୍କ ଦୋମହଲା ଘରେ ହୋଇଥିଲା । ସେକ୍ରେଟେରୀ ବାବୁ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ଆହ୍ୱାନମତେ ଅନେକ ଭଦ୍ରଲୋକ ସଭାସ୍ଥଳେ ଉପସ୍ଥିତ ହୋଇଥିଲେ ଏବଂ ଶ୍ରୀଯୁକ୍ତ କମିଶନର ସାହେବ ସଭାପତିର ଆସନ ଗ୍ରହଣ କରିଥିଲେ । ସଭାର କାର୍ଯ୍ୟାରମ୍ଭ ହେଲାରୁ ସେକ୍ରେଟେରୀ ବାର୍ଷିକ ବିଜ୍ଞାପନ ପାଠକଲେ । ତହିଁରୁ ଜଣାଗଲା ଯେ ଏ ବିଦ୍ୟାଳୟରେ ବର୍ତ୍ତମାନ ୨୯୮ଜଣ ଛାତ୍ର ପଢ଼ୁଅଛନ୍ତି ଏବଂ ତହିଁମଧ୍ୟରୁ ୬୨ଜଣ ବେତନ ଦିଅନ୍ତି ନାହିଁ । ଗତବର୍ଷ ଏକାଜଣ ଛାତ୍ର ପ୍ରବେଶିକା ପରୀକ୍ଷା ଦେଇଥିଲେ । ଏବର୍ଷ ଦୁଇଜଣଙ୍କ ମଧ୍ୟରୁ ଏକଜଣ ପ୍ରଥମ ଏବଂ ଅନ୍ୟ ଜଣକ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଗତବର୍ଷ ସ୍କୁଲର ସବସୁଦ୍ଧା ଆୟ ଟ ୧୪୩୯ ଟଙ୍କା, ଏହିମଧ୍ୟରେ ଫିସ ଓ ଜରିମାନା ବାବଦ୍ ଟ ୬୪୮ ଟଙ୍କା ଏବଂ ବ୍ୟୟ ଟ ୧୪୬୮ ଟଙ୍କା ହୋଇଥିଲା । ଏ ବିଦ୍ୟାଳୟକୁ ଗବର୍ଣ୍ଣମେଣ୍ଟରୁ କିଛି ସାହାଯ୍ୟ ମିଳଇ ନାହିଁ ।

ବିଜ୍ଞାପନ ପାଠ ଶେଷ ଉତ୍ତାରୁ କେତେକଜଣ ଛାତ୍ର ମୁଖସ୍ଥ କରିଥିବା ବିଷୟ ପାଠ କଲେ ମାତ୍ର ତାହା ଭଲ ହୋଇନଥିଲା । ଏଥିଉତ୍ତାରୁ ସଭାପତି ପାରିତୋଷିକ ବିତରଣ ଓ ଛାତ୍ରମାନଙ୍କୁ ସମ୍ବୋଧନ କରି କେତେଗୁଡ଼ିଏ ଉତ୍ସାହବାକ୍ୟ କହିଲେ ଏବଂ ବିଦ୍ୟାଳୟର ଉତ୍କୃଷ୍ଟ ଫଳ ଦେଖି ଆନନ୍ଦ ପ୍ରକାଶକଲେ । ସେ କହିଲେ କି ଏ ବିଦ୍ୟାଳୟଟି ସ୍ୱାଧୀନ ପ୍ରକାରରେ ସ୍ଥାପିତ ହୋଇ ଏମନ୍ତ ଉତ୍କୃଷ୍ଟ ଫଳ ଦେଖାଇବା ବଡ଼ ପ୍ରଶଂସାର ବିଷୟ ଅଟଇ । ତହିଁ ଉତ୍ତାରୁ ଶ୍ରୀଯୁକ୍ତ

ଯାତ୍ରୀ ଟେକଲ ସାହେବ ପିଲମାନଙ୍କୁ କେତେଗୁଡ଼ିଏ ହିତ ବାକ୍ୟ କହିଲେ ଏବଂ ଏହି ସଦ୍‌ଭାବ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ ଜାଣି ସୁନିୟମରେ ଚଳିବା କାରଣ ଅନୁରୋଧ କଲେ । ତାହାଙ୍କ ମଧୁର ଏବଂ ସାର ଗର୍ଭ ବାକ୍ୟରେ ଦର୍ଶକମାନେ ବଡ଼ ସୁଖଲାଭ କରିଥିଲେ । ପରିଶେଷରେ ଡେପୁଟି ମହାଶୟ ସଭାପତି ଓ ଯାତ୍ରୀ ଟେକଲ ସାହେବଙ୍କୁ ଧନ୍ୟବାଦ ଦେଇ ଉତ୍ସବ ସଭା ଭଙ୍ଗ ହେଲା ।

କଟକ ଆକାଡେମୀକୁ ଯୋଗ୍ୟବାବୁ ଆପଣା ବ୍ୟୟରେ ସ୍ଥାପନ କରି ସନ ୧୨୭୫ ସାଲଠାରୁ ଏପର୍ଯ୍ୟନ୍ତ ସୁଶୃଙ୍ଖଳ ସହିତ ଚଳାଇ ଆସୁଅଛନ୍ତି ବଡ଼ ପ୍ରଶଂସାର ବିଷୟ ଅଟଇ । ଜଣେ ସହଜ ଅବସ୍ଥାର ଲୋକ ଯତ୍ନ ଓ ଚେଷ୍ଟା କଲେ କେମନ୍ତ ବୃହତ୍ କାର୍ଯ୍ୟ ସାଧିତ ହୁଅଇ ସର୍ବସାଧାରଣେ ଏହିରୁ ଶିକ୍ଷା କରନ୍ତୁ । ଯୋଗ୍ୟବାବୁ ସ୍ୱୟଂ କେତେ ଟଙ୍କା ଏ ବିଦ୍ୟାଳୟ ପଛରେ ବାର୍ଷିକ ବ୍ୟୟ କରନ୍ତି ତାହା ବିଜ୍ଞାପନରୁ ଜଣାଗଲା ନାହିଁ । କିନ୍ତୁ ଯେ ସ୍ଥଳେ ଅନ୍ୟ କେହି ସାହାଯ୍ୟ ଦେବାର କହିତ ହୋଇ ନାହିଁ ଏବଂ ବାର୍ଷିକ ଆୟ ଟ ୧୪୭୧ ମଧ୍ୟରୁ ଫିସ ଓ ଜରିମାନା ଦ୍ୱାରା କେବଳ ୬୭୪ ଙ୍କା ଆଦାୟ ହୋଇଥିଲା ସେ ସ୍ଥଳେ ଅବଶିଷ୍ଟ ୮୦୦ଙ୍କା ସେ ଛାତ୍ରରୁ ଦେଇଥିବାର ବୁଝା ଯାଉଅଛି ଏବଂ ତାହାଙ୍କ ଅବସ୍ଥା ବିବେଚନାରେ ଏହା ଅଳ୍ପ କେହେ ଜଳ ବୋଲି ଦାଇ ନପାରେ । ଯେଉଁମାନେ ବାର୍ଷିକ ସହସ୍ର ୨ ଟଙ୍କା ଆୟ କରୁଅଛନ୍ତି ସେମାନଙ୍କର ଏପରି ଉଚ୍ଚ ଏବଂ ଦାନ୍ୟାର୍ଦ୍ର ମନ ହେବାର ଦେଖାନାହିଁ । ଯେବେ ତାହା ହୁଅନ୍ତା ତେବେ ଓଡ଼ିଶାର ଅଭାବ ବେଦନା ଆମ୍ଭମାନଙ୍କୁ ଏତେ ବେଦନ କରିବାକୁ ହୁଅନ୍ତା ନାହିଁ ।

## ( ୧୬ଶ ଭାଗ, ୫ । ୧୧ । ୧୮୮୧, ସଂଖ୍ୟା ୪୪ )

୧୬୮ । ବାଳିକା ବିଦ୍ୟାଳୟ ।

ଏ ନଗରରେ ଗୋଟିଏ ହିନ୍ଦୁ ବାଳିକା ବିଦ୍ୟାଳୟ ଏଠା ନିବାସୀ କତିପୟ ବଙ୍ଗୀୟ ଭ୍ରାତାଙ୍କ ଯତ୍ନରେ କେତେବର୍ଷ ହେଲା ସ୍ଥାପନ ହୋଇଅଛି । ବିଦ୍ୟାଳୟ କାର୍ଯ୍ୟ ଏପର୍ଯ୍ୟନ୍ତ ସର୍ବସାଧାରଣଙ୍କ ଗୋଚରରେ ବଡ଼ ଆସୁନଥିଲା । ଏବର୍ଷ ସେ ବିଦ୍ୟାଳୟର ଛାତ୍ରୀମାନଙ୍କୁ ପୁରସ୍କାର ବିତରଣ ସଭା ଏଠା କଲେଜ ଗୃହରେ ଗତ ସୋମବାର ସଭା ହେବା ଥିବାରୁ ଉକ୍ତ କାର୍ଯ୍ୟ ଆମ୍ଭମାନଙ୍କ ଗୋଚରରେ ଆସିଅଛି ଓ ମଧ୍ୟ ଏ ସମ୍ବନ୍ଧରେ ଗୋଟିଏ ଇଂରେଜୀ ପତ୍ର ଅମ୍ଭେମାନେ ପ୍ରାପ୍ତ ହୋଇଅଛୁଁ । ଆମ୍ଭେମାନେ ଏ ବିଷୟରେ ଅତିଶୟ ଆନନ୍ଦିତ ହୋଇ ସେ ପତ୍ର ସ୍ଥାନାନ୍ତରେ ପ୍ରକାଶ

କଲୁଁ । ଏବଂ ଇଂରେଜୀ ଜାଣୁନଥିବା ପାଠକମାନଙ୍କ ଜ୍ଞାତାର୍ଥେ ତହିଁର ସାରାଂଶ ଓ ସ୍କୁଲ ସଂକ୍ରାନ୍ତ କେତେକ ବୃତ୍ତାନ୍ତ ନିମ୍ନେ ଲେଖୁଅଛୁଁ ।

ସଭାରେ ଶ୍ରୀଯୁକ୍ତ କମିଶନର ସାହେବ, ଡାକ୍ତର ସ୍ମିଥ ସାହେବ, ତିନିଜଣ ଇଂରେଜ ମହିଳା, ହିନ୍ଦୋଳର ରାଜା, ଓ କେତେକ ଦେଶୀୟ ଭଦ୍ରବ୍ୟକ୍ତି ଉପସ୍ଥିତ ହୋଇଥିଲେ । ଦୁଃଖର ବିଷୟ ଯେ ଅଧିକାଂଶ ଆମନ୍ତ୍ରିତ ବ୍ୟକ୍ତି ଅନୁପସ୍ଥିତ ରହିଲେ । ପ୍ରଥମେ ଛାତ୍ରୀମାନେ କବିତା ଇତ୍ୟାଦି ପାଠ କଲେ ଓ ସେମାନଙ୍କର ସିଲେଇ କର୍ମମାନ ପ୍ରଦର୍ଶିତ ହେଲା । ତଦୁତ୍ତାରୁ କମିଶନର ସାହେବ ପୁରସ୍କାର ବିତରଣ କଲେ । ୧୫୦ଙ୍କା ମୂଲ୍ୟର ବହି, କଲମ, ପେନସିଲ୍ ଇତ୍ୟାଦି ପଶମ, ପିତୁଳା ଓ ଛବି ପୁରସ୍କାର ଦିଆହୋଇଥିଲା ଓ ଏତଦ୍ଭିନ୍ନ ହିନ୍ଦୋଳର ରାଜା ଛଅଗୋଟି ରୂପା କର୍ଣ୍ଣଫୁଲ ପୁରସ୍କାର ଦେଲେ । ଶେଷରେ କମିଶନର ସାହେବ ଗୋଟିଏ ବକ୍ତୃତା ଦେଇ ସଭା ଭାଙ୍ଗିଲେ । ସେ ବାଳିକାମାନଙ୍କୁ ଶିକ୍ଷା ଉପରେ ମଧ୍ୟ ଶିଲ୍ପରେ ମନୋଯୋଗୀ ହେବା ସକାଶେ କହିଲେ ଓ ସ୍ତ୍ରୀ ଶିକ୍ଷାର ଉନ୍ନତି ପକ୍ଷରେ ଯତ୍ନ କରିବା କାରଣ ଜନସାଧାରଣଙ୍କୁ ଅନୁରୋଧ କଲେ

ଏ ବିଦ୍ୟାଳୟରେ ବର୍ତ୍ତମାନ ପଚିଶଟି ଛାତ୍ରୀ ଶିକ୍ଷା କରୁଅଛନ୍ତି । ସେମାନଙ୍କ ମଧ୍ୟରେ—

| | |
|---|---|
| ଓଡ଼ିଆ ବାଳିକା | ୪ |
| ବଙ୍ଗଦେଶୀୟ ବଙ୍ଗାଳି ବାଳିକା | ୬ |
| ଏଦେଶୀୟ ଏଜନ | ୧୪ |
| ହିନ୍ଦୋସ୍ଥାନୀ ବାଳିକା | ୧ |
| | ୨୫ |

ଏ ବିଦ୍ୟାଳୟ ସକାଶେ ସରକାରରୁ ମାସିକ ଟ୨୫ଙ୍କା ସାହାଯ୍ୟ ମିଳଇ ଓ ଟ ୧୬ଙ୍କା ଚାନ୍ଦା ଉଠଇ । ମୋଟ ଟ ୩୧ଙ୍କା ମଧ୍ୟରୁ ମାସିକ ଟ୩୦ଙ୍କା ବ୍ୟୟ ହୁଅଇ । ଏଥିର ଗୃହ ନିର୍ମାଣ ନିମିତ୍ତ ନିମ୍ନଲିଖିତ ଚାନ୍ଦା ପ୍ରାପ୍ତି ହୋଇଅଛି । ଯଥା ;—

| | |
|---|---|
| କେଉଁଝରର ମହାରାଜା | ଟ ୫୦୦୦ |
| ଚୌଧୁରୀ କୃଷ୍ଣଦାସ ଦାସ | ଟ୩୦୦ |
| ରାଜା ଶ୍ୟାମାନନ୍ଦ ଦେ | ଟ୨୫୦୦ |
| ଅନ୍ୟାନ୍ୟ ବ୍ୟକ୍ତି | ଟ ୫୦୦ |
| | ଟ୧୧୨୦୦ |

ତାଳଚେରର ରାଣୀ ଛାତ୍ରୀମାନଙ୍କୁ ପୁରସ୍କାର ବିତରଣ ସକାଶେ ବାର୍ଷିକ ୫୨ଙ୍କା ଦେବାର ସ୍ୱୀକାର କରିଅଛନ୍ତି । ଏହା ପ୍ରଶଂସନୀୟ ଅଟେ । ଜଣେ ମେମ ଛାତ୍ରୀମାନଙ୍କୁ ଶିଳେଇ କର୍ମ ଶିଖାଉଅଛନ୍ତି ଓ ଭାଷାଶିକ୍ଷା ସକାଶେ ଦୁଇଜଣ ପଣ୍ଡିତ ନିଯୁକ୍ତ ଅଛନ୍ତି । କଲେଜିଏଟ ସ୍କୁଲର ହେଡ଼ମାଷ୍ଟର ବାବୁ ରାମଦାସ ଚକ୍ରବର୍ତ୍ତୀ ଏ ବିଦ୍ୟାଳୟର ସେକ୍ରେଟରୀ ଅଛନ୍ତି । ଏଥିର କାର୍ଯ୍ୟ ଯଥାଯଥ ଉତ୍ତମ ରୂପେ ଚଳୁଥିବାରୁ ଆମ୍ଭେମାନେ ଆନନ୍ଦିତ ହୋଇଅଛୁଁ । କିନ୍ତୁ ଉତ୍କଳୀୟ ବାଳିକା ଏ ବିଦ୍ୟାଳୟରେ ଅତି ଅଳ୍ପମାତ୍ର ଥିବାର ଅସନ୍ତୋଷ ଜନକ ଅଟଇ । ଉତ୍କଳରେ ସ୍ତ୍ରୀ ଶିକ୍ଷା ପୂର୍ବରୁ ଚଳି ଆସୁଅଛି । ରାଜା ଓ ବିଷୟାପନ୍ନ କରଣମାନେ ଆପଣା ୨ ବାଳିକାମାନଙ୍କୁ ଘରେ ଉଚ୍ଚ ଲେଖାପଢ଼ାର ଶିକ୍ଷା ଦେଉଥାନ୍ତି । ବୋଧହୁଏ ସେମାନେ ସାଧାରଣ ବିଦ୍ୟାଳୟକୁ ବାଳିକା ପଠାଇବାର ନିନ୍ଦନୀୟ ଜ୍ଞାନକରନ୍ତି । ମାତ୍ର ଏହା ଭ୍ରମ ଅଟଇ । ବଙ୍ଗଦେଶରେ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଆପଣା ୨ ବାଳିକାଙ୍କୁ ସ୍କୁଲକୁ ପଠାଉ ଅଛନ୍ତି ଓ ଏଠା ବିଦ୍ୟାଳୟର ବଙ୍ଗୀୟ ଛାତ୍ରୀମାନେ ଭଦ୍ରକନ୍ୟା ଅଟନ୍ତି । ଅତଏବ ଉତ୍କଳୀୟମାନେ ଭ୍ରମ ତ୍ୟାଗକରି ବାଳିକାମାନଙ୍କୁ ସ୍କୁଲକୁ ପଠାଉନ୍ତୁ ଓ ତାହାର ଉନ୍ନତି ପକ୍ଷରେ ଯତ୍ନବାନ୍ ହେଉନ୍ତୁ । ଆମ୍ଭେମାନେ ଦେଖୁଅଛୁ ବଙ୍ଗୀୟ-ମାନେ ଏ ବିଦ୍ୟାଳୟ ପକ୍ଷରେ ବିଶେଷ ଯତ୍ନ ଓ ଅଧିକ ଚାନ୍ଦା ଅର୍ଥାତ୍ ୫୧ଙ୍କା ପ୍ରଦାନ କରୁଅଛନ୍ତି । ଏଥିରେ ସେ କେବଳ ସେହିମାନଙ୍କର ଉପକାର ଏମନ୍ତ ନୁହେ ଓ ଯେଉଁମାନେ ଏପରି ମନେ କରନ୍ତି ସେମାନଙ୍କର ବଡ଼ ଭ୍ରମ । ବିଦ୍ୟାଳୟଟି ସ୍ଥାୟୀହୋଇ ଉନ୍ନତ ଅବସ୍ଥାକୁ ଲଭିଲେ ଏ ଦେଶର ବିଶେଷ ଉପକାର ହେବ ଓ କିଛିକାଳ ଉତ୍ତାରେ ଅନେକ ଉତ୍କଳୀୟ ବାଳିକାଙ୍କୁ ସେଠାରେ ଶିକ୍ଷା କରିବାର ଦେଖାଯିବ । ଅତଏବ ସମସ୍ତେ ଏଥିର ଉନ୍ନତି ପକ୍ଷରେ ଯତ୍ନ କରନ୍ତୁ । ଯେଉଁମାନେ ଗୃହନିର୍ମାଣ ସକାଶେ ମୁକ୍ତ ହସ୍ତରେ ଦାନ କରି ଅଛନ୍ତି ଓ ଯେଉଁମାନେ ମାସିକ ଚାନ୍ଦା ଦେଉଅଛନ୍ତି ସେମାନଙ୍କୁ ଧନ୍ୟବାଦ ଦେଉଅଛୁଁ ।

**(୧୭ଶ ଭାଗ, ୧୨।୧୧।୧୮୮୧, ସଂଖ୍ୟା ୪୫)**

୧୨୪ । କଟକ ରେଭେନ୍‌ସା କଲେଜ ।

ଏ କଲେଜଟି ଚିରସ୍ଥାୟୀ ହେବାର ସମ୍ବାଦ ପାଇ ଆମ୍ଭେମାନେ ଅତି ଆନନ୍ଦିତ ହୋଇଅଛୁଁ । ଚାନ୍ଦା, ଛାତ୍ର ବେତନ, ମୟୁରଭଞ୍ଜ ମହାରାଜାଙ୍କ ଦତ୍ତ ଟଙ୍କାର ସୁଧ ଏବଂ ଗବର୍ଣ୍ଣମେଣ୍ଟଙ୍କ ସାହାଯ୍ୟରେ ଏ କଲେଜର କାର୍ଯ୍ୟ ଏପର୍ଯ୍ୟନ୍ତ ଚଳୁଥିଲା ବର୍ତ୍ତମାନ ଗବର୍ଣ୍ଣମେଣ୍ଟ ତାହାର ସମୁଦାୟ ଭାର ଏହି ନିୟମରେ ନେଇଅଛନ୍ତି

କି ଛାତ୍ର ବେତନ ଓ ମୟୁରଭଞ୍ଜ ଟଙ୍କାର ସୁଧ ସରକାରଙ୍କରେ ଜମାହେବ, କଲେଜର ସକଳ ଖର୍ଚ୍ଚ ସରକାରରୁ ଚଳିବ, ତହିଁପାଇଁ ଭେଦ ନ ଆସିବ ନାହିଁ । ଏ ଶୁଭ ସମ୍ବାଦରେ କଲେଜର ଅଧ୍ୟାପକମାନେ ଆନନ୍ଦିତ ହୋଇ କଲେଜ ଦିନେ ବନ୍ଦ କରିଥିଲେ । ବାସ୍ତବରେ ଏହା ଆନନ୍ଦର ବିଷୟ କାରଣ କଲେଜର କାର୍ଯ୍ୟ ସନ୍ତୋଷ ଜନକ ମତେ ଚାଲୁ ନଥିବାରୁ ତାହା ଚିରସ୍ଥାୟୀ ହେବା ପକ୍ଷରେ ବଡ଼ ସନ୍ଦେହ ଥିଲା । ଏପରି ସ୍ଥଳେ କଲେଜଟି ଚିରସ୍ଥାୟୀ ହେବା ବିଶେଷ ଆନନ୍ଦର ବିଷୟ । ଦୟାଳୁ ଓ ବିଦ୍ୟୋତ୍ସାହୀ ଗବର୍ଣ୍ଣମେଣ୍ଟ ଆମ୍ଭମାନଙ୍କୁ କଲେଜଟିଏ ପ୍ରଦାନ କଲେ ଏଥିପାଇଁ ଆମ୍ଭେମାନେ ତାଙ୍କୁ ଧନ୍ୟବାଦ ଦେଉଅଛୁଁ । କିନ୍ତୁ ବର୍ତ୍ତମାନ କଲେଜ ଯେପରି ଅବସ୍ଥାରେ ଅଛି ସେହିପରି ଅବସ୍ଥାରେ ରହିଲେ ତେତେ ଉପକାର ହେବନାହିଁ, ତେତେ ଆନନ୍ଦର ବିଷୟ ହେବନାହିଁ । ଗବର୍ଣ୍ଣମେଣ୍ଟ ଯେପରି ଦୟାବହି କଲେଜଟିକୁ ଚିରସ୍ଥାୟୀ କଲେ ଓ ତହିଁର ସକଳ ଭାର ଆପଣା ଉପରେ ନେଲେ ସେହିପରି ତହିଁର ଉନ୍ନତି ପକ୍ଷରେ ଯତ୍ନ କରନ୍ତୁ । ବର୍ଷେହେଲା ଆଇନ ଶିକ୍ଷାର୍ଥେ କଲେଜରେ ଗୋଟିଏ Law class ଫିଟିଅଛି । ଏହା ଅତି ଉତ୍ତମ ହୋଇଅଛି ଓ ଏଥିରେ ବଡ଼ ଉପକାରର ସମ୍ଭାବନା । ଯେହେତୁ ଗବର୍ଣ୍ଣମେଣ୍ଟ ଏତେ ବ୍ୟୟ ସ୍ୱୀକାର କରିଅଛନ୍ତି ସେ ସ୍ଥଳେ ଆଉ କିଛି ଅଧିକ ବ୍ୟୟରେ କୁଣ୍ଠିତ ନ ହେଉନ୍ତୁ, ହେଲେ ତାଙ୍କର ଏତେ ବ୍ୟୟ ସମ୍ୟକ ପ୍ରକାରରେ ଫଳଦାୟକ ହୋଇ ନପାରିବ । ଅତଏବ ଆମ୍ଭେମାନେ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରୁଅଛୁଁ ଯେ ବଙ୍ଗଦେଶର କଲେଜମାନଙ୍କରେ ଯେପରି ଅଧିକ ବେତନରେ ସୁଯୋଗ୍ୟ ପ୍ରିନ୍ସିପାଲ ଇତ୍ୟାଦି ଅଛନ୍ତି ସେହିପରି ଏଠାରେ ହେଉ । ଏହା ହେଲେ ସବୁ ଉତ୍ତମ ହେବ ଓ ସରକାରଙ୍କର ଏତେ ବ୍ୟୟ ସମ୍ପୂର୍ଣ୍ଣ ରୂପେ ସଫଳ ହେବ । ଯେହେତୁ କଲେଜଟି ଚିରସ୍ଥାୟୀ ହୋଇଅଛି ସେ ସ୍ଥଳେ ତହିଁର ଉନ୍ନତି ପକ୍ଷରେ ଅବଶ୍ୟ ଯତ୍ନ ହେବ ଏମନ୍ତ ଆଶା ହୋଇଅଛି ଓ କିଛି କାଳରେ ତାହା ଦେଖିବାକୁ ଆସିବ । ସବୁ ଏକାବେଳକେ ହୋଇ ନପାରେ, କ୍ରମେ କଲେଜର ଉନ୍ନତି ହେବ ଏପରି ଭରସା ହେଉଅଛି । ସୁତରାଂ କଲେଜ ଚିରସ୍ଥାୟୀ ହେବା ସମ୍ବାଦରେ ଆମ୍ଭମାନଙ୍କର ଆନ୍ତରିକ ଆନନ୍ଦ ଜାତ ହୋଇଅଛି ଓ ଆମ୍ଭେମାନେ କୃତଜ୍ଞତା ସହିତ ଗବର୍ଣ୍ଣମେଣ୍ଟଙ୍କର ପ୍ରଶଂସା କରୁଅଛୁଁ ।

---

( ଉତ୍କଳ ହିତୈଷିଣୀ )

Vol. IV 16 th May, 1874 No. 9

130. We are excceedingly glad to hear that Government have founded 2 scholarships at Rs 15/- to enable the natives of orissa to qualify themselves in Medical Science, These Scholrships are tenable at Sealdah Medical Institution and are to be held by the Uryah Students who we hope will now come forward to avail of this opportunity which they are fortunate to get. This is the result of the warmest exertion of our worthy Commisioner who has distinguished himself in Orissa by similar acts of public benefit for which most cordial thanks are due to him.

( ୭ମ ଭାଗ, ୧୭ । ୧୧ । ୧୮୭୪, ସଂଖ୍ୟା ୭ )

୧୩୧ ।                    ସ୍କୁଲର ନୂଆ ଇନସ୍ପେକ୍‌ଟର ।

ଗତ ପତ୍ରିକାରେ ବୋଲାଅଛୁଁ ଯେ ହୁଗୁଲୀ କଲେଜର ପ୍ରଫେସର ରବର୍ଟ ସେନ୍ ସାହେବ ଓଡ଼ିଶା ଡିଭିଜନର ସ୍କୁଲମାନଙ୍କ ନିମନ୍ତେ ସ୍ୱତନ୍ତ୍ର ଇନସ୍ପେକ୍‌ଟର ନିଯୁକ୍ତ ହେଲେ । ଓଡ଼ିଶା ସ୍ୱତନ୍ତ୍ର ଜଣେ ଇନସ୍ପେକଟର ପାଇବାର ଯେଉଁ ଆଶା କରିଥିଲୁ ଏବେ ତାହା ସମ୍ପୂର୍ଣ୍ଣ ରୂପେ ସଫଳ ହେଲା । ଇନସ୍ପେକ୍‌ଟର ସାହେବ ସମସ୍ତ ବର୍ଷ କିରୂପେ କଟାଇବେ ବର୍ତ୍ତମାନ ସେ ବିଷୟ ବିବେଚନା କରାଯାଉ ।

ସାଧାରଣରୂପେ ବିବେଚନା କଲେ ଦେଖାଯାଏ ଯେ, ପୁରୀ, କଟକ ଓ ବାଲେଶ୍ୱର ଏହି ୩ ଜିଲାର ସ୍କୁଲ ଓ ଗ୍ରାମ୍ୟ ପାଠଶାଳାମାନ ଇନସ୍ପେକ୍‌ଟର ସାହେବଙ୍କ ଅଧୀନ ହେଉଅଛି । ସ୍କୁଲ ଓ ଗ୍ରାମ୍ୟ ପାଠଶାଳା ଏହି ଦୁଇ ମଧ୍ୟରୁ ଗ୍ରାମ୍ୟ ପାଠଶାଳାର ସଂଖ୍ୟା ଅଧିକ, ସ୍କୁଲର ସଂଖ୍ୟା ଅତି ଅଳ୍ପ ଅଟେ । ଗ୍ରାମ୍ୟ ପାଠଶାଳାମାନଙ୍କ ପ୍ରତି ଡେଃ ଇନସ୍ପେକ୍‌ଟର ଓ ସବ ଡେଃ ଇନସ୍ପେକ୍‌ଟରମାନଙ୍କର ଯେ ପ୍ରକାର ଦୃଷ୍ଟି ଥାଏ, ଇନସ୍ପେକ୍‌ଟର ସାହେବମାନଙ୍କର ସେ ପ୍ରକାର ଦୃଷ୍ଟି ପ୍ରାୟ ଥାଏ ନାହିଁ । କେବଳ ଉଚ୍ଚ ଓ ମଧ୍ୟମ ଶ୍ରେଣୀର ସ୍କୁଲମାନଙ୍କ ପ୍ରତି ଇନସ୍ପେକ୍‌ଟର ସାହେବମାନଙ୍କର ଅପେକ୍ଷାକୃତ ଦୃଷ୍ଟି ଅଧିକ । ଏଥିରୁ ଉକ୍ତ ତିନି ଜିଲାରେ ଉଚ୍ଚଶିକ୍ଷାର ନିମନ୍ତେ ତିନିଗୋଟି, ନର୍ମାଲ କ୍ଲାସର ଗୃହଗୋଟି (ବାଲେଶ୍ୱର—ଶାନ୍ତିପୁରର ସାହାଯ୍ୟ ପ୍ରାପ୍ତ ନର୍ମାଲ ସ୍କୁଲ ଏଥିର ଅନ୍ତର୍ଗତ), ମାଇନର ଶ୍ରେଣୀର ସ୍କୁଲ ୧୭ଗୋଟି ଓ ମଧ୍ୟମ ଶ୍ରେଣୀର ସ୍କୁଲ ପ୍ରାୟ ୪୦ଗୋଟି, ସବୁ ମୁଦ୍ଧା ୬୦ଗୋଟି ସ୍କୁଲ ଅଛି । ଜଣେ ଇନସ୍ପେକ୍‌ଟର ବାର ମାସରେ ଯେବେ ୬୦ଗୋଟି ସ୍କୁଲ ଦେଖିବେ ତେବେ ମାସ ପ୍ରତି ୫ଗୋଟି ଲେଖାଏ ସ୍କୁଲ ପଡୁଅଛି । ଜଣେ ଇନସ୍ପେକ୍‌ଟରଙ୍କୁ ପ୍ରତି ମାସରେ ୫ଗୋଟି ସ୍କୁଲ ଦେଖିବାକୁ ହେବ ଏହା ନିତାନ୍ତ ଶୁଦ୍ଧକଳ୍ପ ହେଉଅଛି, ଅନ୍ତତଃ ଜଣେ ଇନସ୍ପେକ୍‌ଟରଙ୍କ ଉପରେ ପ୍ରତିମାସରେ ୧୦ । ୧୨ ସ୍କୁଲ ଦେଖିବାର ଭାର ଥିବା ଅତି ଆବଶ୍ୟକ । ତାହା ନହୋଇ ଯେବେ କେବଳ ୬୦ ଗୋଟି ସ୍କୁଲ ଜଣେ ଇନସ୍ପେକ୍‌ଟରଙ୍କ ଅଧୀନରେ ରଖାଯାଏ ଓ ସେ ଯେବେ ପ୍ରତିମାସରେ ଅନ୍ତତଃ ୧୦ଗୋଟି ସ୍କୁଲ ଦେଖନ୍ତି ତେବେ

ସେହି ୭୦ଗୋଟି ସ୍କୁଲ ଦେଖିବାକୁ ୬ ମାସ ଲାଗିବ । ବାକି ଛମାସ କିରୂପେ କଟା-
ଇବେ ? ଆମ୍ଭେମାନେ ଶୁଣିବାକୁ ଚାହୁଁ । ବାକି ଛଅମାସ ନିମନ୍ତେ ଓଡ଼ିଶା ଦେଶରେ
(ଯେଉଁ ସ୍ଥାନରେ ଉତ୍କଳଭାଷା ଚଳୁଅଛି) ଅନେକ କାର୍ଯ୍ୟ ଅଛି, ସେହି କାର୍ଯ୍ୟମାନ
ତାଙ୍କ ହସ୍ତରେ ଦେଲେ ଭଲ । ଗଞ୍ଜାମ, ବ୍ରହ୍ମପୁର, ସମ୍ବଲପୁର ଓ ଗଡ଼ଜାତର
ଅଧୀନ ସ୍କୁଲମାନ ଯେବେ ତାଙ୍କ ହସ୍ତରେ ଦିଆଯାଏ ତେବେ ସେହି ସ୍କୁଲର କାର୍ଯ୍ୟ-
ମାନ ବାକି ଛଅମାସ ନିମନ୍ତେ ତାହାଙ୍କୁ ଅଣ୍ଟିବ । ଏଥିରେ ସରକାର ବାହାଦୁରଙ୍କର
କି ଅସୁବିଧା ହେବ ଓ ପ୍ରଜାଙ୍କ କାର୍ଯ୍ୟରେ କି ବିଶୃଙ୍ଖଳା ଘଟିବ ତାହା ଆମ୍ଭେମାନେ
ବୁଝି ପାରୁନାହୁଁ । ଯେବେ ସରକାର ବାହାଦୁରଙ୍କର ଓଡ଼ିଆ ଜାତିପ୍ରତି ମମତ୍ୱ
ଥାଏ ଓ ଏମାନଙ୍କୁ ଏମାନଙ୍କ ପ୍ରତିବାସି ବଙ୍ଗାଳିମାନଙ୍କ ତୁଲ୍ୟ ଉନ୍ନତଶୀଳ
କରିବାକୁ ଯେବେ ଇଚ୍ଛା ଥାଏ ତେବେ ଓଡ଼ିଆ ଭାଷା ଯେଉଁ ଯେଉଁ ସ୍ଥଳରେ ଚଳୁ-
ଅଛି ବା ଉତ୍କଳ ଭାଷାର ବିଦ୍ୟାଳୟ ଯେଉଁ ଯେଉଁ ଠାରେ ଅଛି ସେହୁ ସେହି ସ୍ଥାନମାନ
ଓଡ଼ିଶାର ଇନସ୍ପେକ୍ଟର ସାହେବଙ୍କ ଜିମା କରିଯାଉ । ଆମ୍ଭେମାନେ ଗଡ଼ଜାତର
ସୁପରିଣ୍ଟେଣ୍ଡେଣ୍ଟ ମାନ୍ୟବର ରେଭେନସା ସାହେବ ମହୋଦୟଙ୍କଠାରେ ପ୍ରାର୍ଥନା କରୁ
ଅଛୁଁ ଯେ ଉକ୍ତ ମହୋଦୟ ଆପଣାର ଅଧିକାରସ୍ଥ ଗଡ଼ଜାତମାନଙ୍କରେ ଥିବା
ସ୍କୁଲମାନ ତାହାଙ୍କ ଅଧୀନରେ ରଖାଇ ଦେଉନ୍ତୁ ।

( ୧୧ଶ ଭାଗ, ୭ । ୨ । ୧୮୭୮, ସଂଖ୍ୟା ୭ )

୧୩୨ । 

## କଟକ କଲେଜ ।

ଗତବର୍ଷରେ କଲେଜ କ୍ଲାସରୁ ଏଫ. ଏ ପରୀକ୍ଷାରେ ଯୋଡ଼ିଏ ମାତ୍ର
ଛାତ୍ର ଉତ୍ତୀର୍ଣ୍ଣ ହୋଇଥିଲେ, ଏ ବର୍ଷରେ ଯୋଡ଼ିଏ ମାତ୍ର ଛାତ୍ର ଉତ୍ତୀର୍ଣ୍ଣ ହୋଇଅଛନ୍ତି,
ଏହା ପାଠକମାନଙ୍କଠାରେ ଅପ୍ରକାଶିତ ନାହିଁ । ବି: ଏ: କ୍ଲାସରୁ ଯେଉଁ ପାଞ୍ଚଜଣ
ଛାତ୍ର ପରୀକ୍ଷାର୍ଥୀ ହୋଇଥିଲେ ସେମାନେ ସମସ୍ତେ ହାରିଯାଇ ଅଛନ୍ତି । ଯାଞ୍ଚିକାରୁ
ଅବଗତ ହେଲୁ ଯେ ପରୀକ୍ଷାର୍ଥୀମାନେ ଅଙ୍କ ପରୀକ୍ଷାରେ ଯେଉଁ ନମ୍ବର ପାଇଥିଲେ,
ସେଥିର ସର୍ବୋଚ୍ଚ ନମ୍ବର ୧୨ରୁ ଅଧିକ ନଥିଲା । ପାଠକେ ଏଥିରୁ ଅନୁଭବ କରିବେ
ଯେ ଅନ୍ୟାନ୍ୟ ଶାଖାମାନଙ୍କରେ ପରୀକ୍ଷାର୍ଥୀମାନେ କିପରି ନମ୍ବର ପାଇଥିବେ । ଏଥି
ନିମନ୍ତେ ଆମ୍ଭେମାନେ ପରୀକ୍ଷାର୍ଥୀମାନଙ୍କୁ କୌଣସି ରୂପେ ଦୋଷ ଦେଉନାହୁଁ । ବରଂ
ସେମାନଙ୍କୁ ପ୍ରଶଂସା ଦେଉଅଛୁ ; କାରଣ ସେମାନେ ସଂସାର ସୁଖରେ ଜଳାଞ୍ଜଳି
ଦେଇ ଦୁଇବର୍ଷ କାଳ କଷ୍ଟ ସହି କଲେଜରେ ପଢ଼ି କଲେଜକୁ ବଞ୍ଚାଇ ରଖିଲେ ;
କଲେଜର ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କୁ ସୁଦ୍ଧା ଦୋଷ ଦେଇ ନପାରୁ ; କାରଣ "ଯେତେ

ଚୂନା ତେଢେ ପିଠା, ଏହା ସାଧାରଣଙ୍କ ଛଟା"। ଅଧ୍ୟକ୍ଷ ଓ ଅଧ୍ୟାପକମାନେ ଯେବେ ଅନ୍ୟାନ୍ୟ କଲେଜର ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କ ପରି ପୂରା ବେତନ ପାଉଥାନ୍ତେ, ତେବେ କଲେଜର ଫଳ ମନ୍ଦ ହେଲା ବୋଲି ସେମାନଙ୍କୁ ଦୋଷ ଦଅନ୍ତୁ ; ତେବେ ଏ ଦୋଷ କାହାର ? ସକଳ ବିବେଚନାରେ ଜଣା ପାଉଅଛି ଯେ ଏ ଦୋଷ ଶିକ୍ଷ୍ୟ ଓ ଶିକ୍ଷକମାନଙ୍କର ନୋହେ, ସରକାର ବାହାଦୂରଙ୍କର, ସରକାର ବାହାଦୂର ଆମ୍ଭ-ମାନଙ୍କୁ ନାଆଁକୁ ଗୋଟିଏ କଲେଜ ଦେଇ ଆମ୍ଭମାନଙ୍କ ମନରେ ଗୋଟିଏ ଦୁଃଖ ଦେଉଅଛନ୍ତି । ଏହିଳି କଲେଜ ହେବା ଅପେକ୍ଷା କଲେଜ ନହେବା ଉଚିତ ଥିଲା । ଆମ୍ଭେମାନେ ପ୍ରଥମେ କଲେଜ ପାଇ ଯେତେ ଆନନ୍ଦିତ ହୋଇଥିଲୁଁ ବର୍ତ୍ତମାନ କଲେଜର ଫଳ ଦେଖି ସେହି ପରିମାଣରେ ଦୁଃଖିତ ହେଲୁଁ ।

## ( ୧୧ଶ ଭାଗ, ୧୪ । ୨ । ୧୮୭୮, ସଂଖ୍ୟା ୭ )

୧୩୩ । ଓଡ଼ିଶ୍ୟାର ୧୮୭୬ । ୭୭ ସାଲର ଶିକ୍ଷା ସକ୍ରାନ୍ତ

### ବାର୍ଷିକ ରିପୋର୍ଟର ମର୍ମ

ରିପୋର୍ଟ ଲିଖିତ ବର୍ଷରେ ଓଡ଼ିଶ୍ୟାରେ ବିଦ୍ୟାଳୟର ସଂଖ୍ୟା ପୂର୍ବ ବର୍ଷ ଅପେକ୍ଷା ୨ୟ ଗୁଣରୁ ଅଧିକ । ଉଚ୍ଚ ଶ୍ରେଣୀର ବିଦ୍ୟାଳୟ ସ୍ୱରଣପୂର୍ବଣ ବାରେ ସମାନ । ମଧ୍ୟମ ଶ୍ରେଣୀର ବିଦ୍ୟାଳୟ * ଗୁଣ । ମଧ୍ୟବର୍ତ୍ତୀ ବିଦ୍ୟାଳୟ ଦୁଇଗୁଣ ଅଧିକ । ଗ୍ରାମ୍ୟ ପାଠଶାଳା ପୂର୍ବ ବର୍ଷରେ ୬୪୩ ଥିଲା ବର୍ଣ୍ଣିତ ବର୍ଷରେ ୧୯୧୯ ହୋଇଅଛି ଯଥା:— କଟକ ୨୭୦, ପୁରୀ ୨୮୮ ଓ ବାଲେଶ୍ୱର ୧୩୪୧. ଗତ-ବର୍ଷ ବାଲେଶ୍ୱରରେ ୨୬୨ ପାଠଶାଳା ଥିଲା ।

ସମସ୍ତ ଓଡ଼ିଶାରେ ୧୮୭୬ । ୭୭ ସାଲରେ ପାଠଶାଳା ସହିତ ବିଦ୍ୟାଳୟର ମୋଟ ସଂଖ୍ୟା ୨୧୬୦ ଓ ଛାତ୍ର ସଂଖ୍ୟା ୩୬୩୯୯ ଅଟେ; ଏହାମଧ୍ୟରୁ ୧୫୨୦ ଜଣ ପିଲା ଇଂରେଜୀ ପଢ଼ୁଅଛନ୍ତି [ ଏମାନଙ୍କ ମଧ୍ୟରେ ବଡ଼ଲୋକଙ୍କ ପୁଅ କେବଳ ୬୯ ଜଣ ] ଅବଶିଷ୍ଟ ମାତୃଭାଷା ଶିକ୍ଷା କରୁଅଛନ୍ତି । କଟକ ଜିଲ୍ଲାରେ ଲୋକସଂଖ୍ୟା ବିବେଚନାରେ ହଜାରକରା * ଜଣ, ପୁରୀରେ ୮ ଜଣ ଓ ବାଲେଶ୍ୱରରେ ୨୮ ଜଣ ଶିକ୍ଷା ପାଉଅଛନ୍ତି । × × ×

× × × ×

ଉଚ୍ଚଶ୍ରେଣୀର ଇଂରେଜୀ ଶିକ୍ଷା ନିମନ୍ତେ ଜଣ ପ୍ରତି ଟ ୨୮ ।/,

ମଧ୍ୟମ ଶ୍ରେଣୀର ଇଂ ଶିକ୍ଷା ନିମନ୍ତେ ଟ ୧୨୫୪୵, ପ୍ରତ୍ତ ବାଳିକା ଟ ୧୨୫୪୵, ପ୍ରତି ଅବଧାନ ନିମନ୍ତେ ଟ ୬୩।୵, ଶିଳ୍ପ ଓ ଡାକ୍ତରୀ ଶିକ୍ଷା ନିମନ୍ତେ ଜଣପ୍ରତି ଟ ୨୯୧ ଗତ ବର୍ଷରେ ଖର୍ଚ୍ଚ ହୋଇଅଛି ।

ଗତବର୍ଷ ଏଣ୍ଟ୍ରାନ୍ସ ପରୀକ୍ଷାରେ କଟକରୁ ୧୫ ଜଣ, ପୁରୀରୁ ୫ ଜଣ ଓ ବାଲେଶ୍ୱରରୁ ୯ ଜଣ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଛାତ୍ରବୃତ୍ତି ପରୀକ୍ଷାରେ ଅପେକ୍ଷାକୃତ ଅଳ୍ପସଂଖ୍ୟକ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ପୁରୀ ଓ କଟକ ଜିଲ୍ଲା ଅପେକ୍ଷା ବାଲେଶ୍ୱର ଜିଲ୍ଲାର ଫଳ ଅପ୍ରୀତିକର । ମାଇନର ପରୀକ୍ଷାର ଫଳ ପୂର୍ବବର୍ଷ ପରି ।

ଗୁରୁଟ୍ରେନିଂ ନର୍ମାଲ ସ୍କୁଲମାନଙ୍କ ମଧ୍ୟରୁ ବାଲେଶ୍ୱର ନର୍ମାଲସ୍କୁଲ ଭଲରୂପେ ଚଳୁଅଛି, ସେଥିରୁ ଅନେକ ଗୁରୁ ଉତ୍ତୀର୍ଣ୍ଣ ହେଉଅଛନ୍ତି । କଟକ ନର୍ମାଲସ୍କୁଲ ଦ୍ୱାରା ଅନେକ ଉପକାର ହେଉଅଛି, ପୁରୀ ନର୍ମାଲସ୍କୁଲ ଭଲରୂପେ ଚଳୁନାହିଁ । ସୁଖର ବିଷୟ ଯେ ଶାନ୍ତିପୁର (ଜଳେଶ୍ୱର)ର ନର୍ମାଲ ସ୍କୁଲ ଏବର୍ଷ ପ୍ରଥମେ ୩ଜଣ ଗୁରୁ ପାସ କରାଇ ଅଛି । କଟକରେ ଶିଳ୍ପ ଓ ଡାକ୍ତରୀ ଶିକ୍ଷା ସ୍କୁଲ ସୁନ୍ଦର ରୂପେ ଚଳୁଅଛି ଏବଂ ତାହାଦ୍ୱାରା ଦେଶର ବିଶେଷ ଉପକାର ହେବାର ସମ୍ଭାବନା ।

× × ×

ଶିକ୍ଷା ବିଭାଗର କର୍ମଚାରୀଙ୍କ ମଧ୍ୟରୁ ନିମ୍ନଲିଖିତ ବ୍ୟକ୍ତିମାନେ ବିଶେଷ ପ୍ରଶଂସା ପାଇଅଛନ୍ତି ;— ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀ, ବାବୁ ରାମଦାସ ଚକ୍ରବର୍ତ୍ତୀ, ବାବୁ ପ୍ୟାରୀମୋହନ ସେନ, ବାବୁ ରାଧାନାଥ ରାୟ, ବାବୁ ଭୋଳାନାଥ ଦାସ, ଓ ବାଲେଶ୍ୱର ନର୍ମାଲ ସ୍କୁଲର ପ୍ରଧାନ ଶିକ୍ଷକ ।

ଗଡ଼ଜାତ ସ୍କୁଲମାନଙ୍କ ସମ୍ବନ୍ଧରେ କମିଶନର ସାହେବ ଲେଖି-ଅଛନ୍ତି ଯେ ଢେଙ୍କାନାଳ ଗଡ଼ର ପ୍ରଧାନ ସ୍କୁଲ ସମସ୍ତ ଗଡ଼ଜାତ ସ୍କୁଲର ଶ୍ରେଷ୍ଠ ଅଟେ; ଏହି ଜିଲ୍ଲାରେ ବିଦ୍ୟାର ଚର୍ଚ୍ଚା ଅଧିକ । ମୟୂରଭଞ୍ଜର ମହାରାଜା ଆପଣା ଜିଲ୍ଲାରେ ବିଦ୍ୟାଳୟମାନ ସ୍ଥାପନ କରିଅଛନ୍ତି । କାମନଧାଟିରେ କେତୋଟି ବିଦ୍ୟାଳୟ ବସି-ଅଛି । ଏହାଛଡ଼ା ପାଦ୍ରି ଫିଲିପ ସାହେବଙ୍କ ପକ୍ଷରୁ ଅନେକ ସାନ୍ତାଳ ଶିକ୍ଷା ପାଉଅଛନ୍ତି । କେନ୍ଦୁଝରର ମହାରାଜା ମଧ୍ୟ ଆପଣା ଇଲାକାରେ ବିଦ୍ୟାଳୟ ସ୍ଥାପନ କରିଅଛନ୍ତି । ବାଙ୍କୀ ଓ ଅନୁଗୁଳରେ କେତେକ ବିଦ୍ୟାଳୟ ଅଛି । ସେମାନ ସୁନ୍ଦର ରୂପେ ଚଳୁନାହିଁ । ଏଥିର ଉନ୍ନତି ନିମନ୍ତେ ଚେଷ୍ଟା ହେଉଅଛି । ×

× × ×

( ୧୧ଶ ଭାଗ, ୧୮ । ୪ । ୧୮୭୮, ସଂଖ୍ୟା ୧୬ )

୧୩୪ । ପୁନର୍ବାର ବଙ୍ଗଳା ଶିକ୍ଷାର ପ୍ରସ୍ତାବ

ଗତ ସୋମବାର ଏଠା ଶିକ୍ଷା ବିଭାଗର କମିଟୀ ବସିଥିଲେ । କମିଟୀର ଅନ୍ୟତର ନୂଆ ମେମ୍ବର ବାବୁ ଉମେଶଚନ୍ଦ୍ର ମଣ୍ଡଳ କମିଟୀରେ ପ୍ରସ୍ତାବ କଲେ ଯେ, "ଏଠା ଇଂରାଜୀ ସ୍କୁଲରେ ଷାଠିକରୁ ଅଧିକ ବଙ୍ଗାଳି ପିଲା ପଢୁଅଛନ୍ତି. ଅତଏବ ସେମାନଙ୍କର ମାତୃଭାଷା ଶିକ୍ଷା ନିମନ୍ତେ ଉକ୍ତ ସ୍କୁଲରେ ବଙ୍ଗଳାଭାଷା ଚଳାଇବାର ବିଧାନ କରାଯାଉ ।" ଉମେଶ ବାବୁଙ୍କ ପ୍ରସ୍ତାବିତ ବିଷୟ ମୀମାଂସିତ ନହୋଇ କମିଟୀଙ୍କ ବିଚାରାଧୀନରେ ଅଛି । ଅନ୍ୟ ସମୟରେ ସେ ବିଷୟର ବିଚାର କରାଯିବ ।

ପାଠକ ମହାଶୟମାନେ ଆମ୍ଭମାନଙ୍କୁ ବଙ୍ଗଳା ଭାଷାର ବିରୋଧୀ ବୋଲି ଭାବିବେ ନାହିଁ, ବାସ୍ତବରେ ଆମ୍ଭେମାନେ ବଙ୍ଗଳାଭାଷାକୁ ପସନ୍ଦ କରୁଁ ଓ ବଙ୍ଗଳା ଭାଷାରେ ପ୍ରକାଶିତ ହୋଇଥିବା ନାନାବିଧ ପୁସ୍ତକମାନ ଅନାୟାସରେ ପଢ଼ି ଅନେକ ବିଷୟ ହୃଦୟଙ୍ଗମ କରୁଁ "ଅନାୟାସରେ" ଏହି ଶବ୍ଦ ବିନ୍ୟାସ କରିବାରୁ ହୁଏତ କୌଣସି ବଙ୍ଗାଲୀ ଅସନ୍ତୁଷ୍ଟ ହୋଇ ପାରନ୍ତି; ମାତ୍ର ଆମ୍ଭେମାନେ ବିଶ୍ୱାସପୂର୍ବକ କହୁଅଛୁଁ ଯେ ଯେଉଁ ଓଡ଼ିଆ ଉତ୍କଳ ଭାଷାରେ ଶିକ୍ଷିତ ହୋଇଥିବ ତାହା-ପକ୍ଷରେ ବଙ୍ଗଳା ପୁସ୍ତକମାନ ପଢ଼ିବା ବା ବୁଝିବା ଅତି ସହଜ ଅଟେ; କିନ୍ତୁ ଶିକ୍ଷିତ ବଙ୍ଗାଳିଙ୍କ ପକ୍ଷରେ ଉତ୍କଳ ଭାଷାର ପୁସ୍ତକମାନ ଅନାୟାସରେ ପଢ଼ିପାରିବା ଓ ବୁଝି-ପାରିବା ସେପରି ସହଜ ନୋହେ କିନ୍ତୁ ସେଭାଷା ଶିକ୍ଷାକରିବା ନିମନ୍ତେ ସ୍କୁଲରେ କ୍ଲାସ ଫିଟାଇବା ଉଚିତ କି ନା ତାହା ବିବେଚନା କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ଅଟେ ।

୧ । ଯେଉଁ ବଙ୍ଗାଳି ପିଲାମାନେ ସ୍କୁଲରେ ପଢୁଅଛନ୍ତି ସେମାନଙ୍କ ମଧ୍ୟରୁ ଓଡ଼ିଶାବାସୀ ବଙ୍ଗାଳୀପିଲା କେତେ ଓ ପ୍ରକୃତ ବଙ୍ଗାଳୀପିଲା କେତେ ଏ ବିଷୟ ଆଗ ବିବେଚନା କରାଯାଉ । ଯଦି ବୋଲ, ଏହି ଦୁଇ ପ୍ରକାର ବଙ୍ଗାଳି ମଧ୍ୟରେ ପ୍ରଭେଦ ରଖିବାର କାରଣ କଅଣ ? ଏଥକୁ ଆମ୍ଭେମାନେ ବୋଲୁଁ ପ୍ରଭେଦର ଅନେକ କାରଣ ଅଛି । ଯେଉଁମାନେ ପ୍ରକୃତ ବଙ୍ଗବାସୀ ସେମାନଙ୍କ ସମ୍ବନ୍ଧରେ ଆମ୍ଭେମାନେ କିଛି କହୁନାହୁଁ ଏ ଦେଶୀୟ ବଙ୍ଗାଳୀଙ୍କ ସମ୍ବନ୍ଧରେ କଥା କହିବାର ଆମ୍ଭମାନଙ୍କର ସମ୍ପୂର୍ଣ୍ଣ କ୍ଷମତା ଅଛି । ଏ ଦେଶବାସୀ ବଙ୍ଗାଳୀମାନେ ଆପଣା ଘରେ ବଙ୍ଗଳାରେ କଥାବାର୍ତ୍ତା ବୋଲନ୍ତି ସତ; ମାତ୍ର ସେମାନେ ( ବାଲେଶ୍ୱର-ନଗରବାସିଙ୍କ ଛଡ଼ା ) ଆପଣା ବନ୍ଧୁବାନ୍ଧବଙ୍କୁ ବଙ୍ଗଳା ଭାଷାରେ ପତ୍ର ଲେଖନ୍ତି

ନାହିଁ । କେବଳ ପାରସି ଭାଷାରେ, ଆଧୁନିକ ଶିକ୍ଷିତ ଯୁବକ ଇଂରାଜୀ ଭାଷାରେ ପତ୍ର ଲେଖନ୍ତି । ଯେଉଁମାନେ ଇଂରାଜୀ ବା ପାରସି ନ ଜାଣନ୍ତି ସେମାନେ ଓଡ଼ିଆରେ ଚିଠି ପତ୍ର ଲେଖନ୍ତି ଅଧିକ କି କହିବୁଁ । ସେମାନଙ୍କ ଘରର ଜମା ଖରଚ ଓଡ଼ିଆ ଭାଷାରେ ଲେଖାଯାଏ । ମନେକର; ସରକାର ବାହାଦୁର ଯେବେ ଓଡ଼ିଶାର କଚେରୀମାନଙ୍କରେ ଆଜି ବଙ୍ଗଭାଷା ଚଳାନ୍ତି ତେବେ ଓଡ଼ିଆମାନେ ଦୁଇ ଗୁରୁଦିନ ଶିକ୍ଷି ପାରିବେ; କିନ୍ତୁ ଅଧିକାଂଶ ଦେଶୀ ବଙ୍ଗାଳୀ କାଲି ୧୦ ଘଣ୍ଟା ବେଳେ କଚେରୀରେ ଉପସ୍ଥିତ ହେବେ ନାହିଁ । ହେତୁ କିସ ? ସେମାନେ ଓଡ଼ିଆ ଲେଖିବା ପଢ଼ିବାରେ ଯେତେ ପଟୁ ବଙ୍ଗଳାରେ ସେଥିର ବିପରୀତ । ଏହାଛଡ଼ା ଦରକାରୀ କାରଣ ଅନେକ ଅଛି ତାହା କହିଲେ ପ୍ରବନ୍ଧ ବଢ଼ିଯିବ । ଏତେବେଳେ ସ୍ଥିର ହେଲା ଯେ, ବଙ୍ଗାଳୀଙ୍କ ମଧ୍ୟରେ ପ୍ରଭେଦ ରଖିବା ଅବଶ୍ୟ ଉଚିତ । ଆଉ ଏତେବେଳେ ପ୍ରକୃତ ବଙ୍ଗାଳୀପିଲା କେତେ ପଢ଼ି ଅଛନ୍ତି ତାହା ବିବେଚନା କରିବା ଉଚିତ । ଯେବେ କେବଳ ସେମାନଙ୍କୁ ବାଛିଲା କରି ଯୋଗେ ତେବେ ସେ ଉକ୍ତ ଷାଠିଏ ପିଲା ମଧ୍ୟରୁ ୧୦ । ୧୫ ଅଥବା ତହୁଁ ବଳିଲେ ୨୦ । ୨୫ ପିଲା ପ୍ରକୃତ ବଙ୍ଗଳା-ବାସୀଙ୍କ ପୁଅ; ଆଉସବୁ ଏହି ଦେଶବାସୀ ବଙ୍ଗସନ୍ତାନ ଅଟନ୍ତି । ୨୦ । ୨୫ଟି ନିମନ୍ତେ କ୍ଲାସ ଫିଟାଇବା ଉଚିତ କି ନା ତାହା ପାଠକେ ବିବେଚନା କରିବେ ।

୨ । ଯେଉଁଦିନ ଓଡ଼ିଆ ଓ ବଙ୍ଗଭାଷା ଯୋନି କଳି ହୋଇଥିଲା, ଓଡ଼ିଆମାନେ ସେଦିନକୁ ପାଶୋରି ନାହାନ୍ତି । ସେହିଦିନ ଓଡ଼ିଆମାନଙ୍କ ପକ୍ଷରେ ଗୋଟିଏ ଶୁଭଦିନ ଥିଲା । ସେହିଦିନୁ ଓଡ଼ିଆ ଭାଷାର ପୂର୍ବକାଳର ଉଜ୍ଜ୍ୱଳ ଆଲୁଅ କ୍ରମଶଃ ଉଦ୍ଦୀପ୍ତ ହୋଇଆସୁଅଛି । ଏମନ୍ତ ଅବସ୍ଥାରେ ପବନ ବୁହାଇବାର ଚେଷ୍ଟା କାହିଁକି ? ଓଡ଼ ବୋଲ. ପ୍ରସ୍ତାବିତ ବିଷୟ କାର୍ଯ୍ୟରେ ପରିଣତ ହେଲେ ସେଥିରେ ଓଡ଼ିଆ ପୁଅମାନଙ୍କର ହାନି କିସ ? ସାକ୍ଷାତ୍ ସମ୍ବନ୍ଧରେ ହାନି କିଛି ନାହିଁ; କିନ୍ତୁ ପ୍ରକାରାନ୍ତରେ ଅବଶ୍ୟ ହାନି ଅଛି । ଏହି ନଗରର ଓଡ଼ିଆ ଭାଷା ସାଇ ସାଇକେ ଯେ ଦୁଇ ୨ ପ୍ରକାର ତାହା ଶିକ୍ଷିତ ଓଡ଼ିଆ ଯୁବକେ ଅବଶ୍ୟ ମାନିବେ । ଆମ୍ଭେମାନେ ଏ ସମ୍ବନ୍ଧେ ଏଥିପୂର୍ବେ ଅନେକଥର ବୋଲିଅଛୁଁ । ବର୍ତ୍ତମାନ ଗୋଟିଏ ସାକ୍ଷାତ ଉଦାହରଣ ଆମ୍ଭମାନଙ୍କ ପାଠକମାନଙ୍କୁ ଦେଖାଉଅଛୁଁ । ଯଥା :—

ଦର୍ପଣର ପାଠକେ ମନେ କି ପୂର୍ବେ, ଯେଉଁ ଦର୍ପଣ ପଢ଼ିଥିଲେ ଏହିମଧ୍ୟରେ ଯେଉଁ ଦର୍ପଣ ପଢ଼ି ଅଛନ୍ତି ତାହା ତୁଳନା କରି ଦେଖିବା ହେଉନ୍ତୁ, ଭାଷାରେ କେତେ ପ୍ରଭେଦ ଅଛି । ସେଥିର କାରଣ କିସ ? ପୂର୍ବ ଦର୍ପଣର ଭାଷା ଏ ନଗରବାସୀଙ୍କ ଦ୍ୱାରା ଲିଖିତ ହେଉଥିଲା ବର୍ତ୍ତମାନର ଦର୍ପଣର ଭାଷା ପଢ଼ା

ଗ୍ରାମବାସୀ ଅର୍ଥାତ୍ ନୂଆ ସମ୍ପାଦକଙ୍କ ଦ୍ୱାରା ଲିଖିତ ଓ ଶୋଧିତ । ହିଁ, ଆହୁରି ଗୋଟିଏ କଥା ମନରେ ପଡ଼ିଲା, ଆମ୍ଭେମାନେ ପୂର୍ବ ପରିଚ୍ଛେଦରେ ବୋଲିଅଛୁଁ ଯେ, ଏ ଦେଶବାସୀ ବଙ୍ଗାଳୀମାନେ ଓଡ଼ିଆ ଭାଷାରେ ଯେପରି ବିଜ୍ଞ, ବଙ୍ଗଳା ଭାଷାରେ ସେପରି ନୋହନ୍ତି; ସେଥିର ଉଦାହରଣ ଦର୍ପଣର ବର୍ତ୍ତମାନ ସମ୍ପାଦକ ଓ ବାହକାର ଅଗ୍ରଜ। ଦୀପିକାର ସମ୍ପାଦକ ଅଟନ୍ତି ।

ଅବଶିଷ୍ଟ ଉଦାହରଣ ଓ ଆମ୍ଭମାନଙ୍କର ମନ୍ତବ୍ୟ ପରେ ପ୍ରକାଶ କରିବୁଁ ।

**( ୧୧ଶ ଭାଗ, ୧୭ । ୧୦ । ୧୮୭୮, ସଂଖ୍ୟା ୪୦ )**

୧୩୫ । ମୟୂରଭଞ୍ଜର ମହାରାଜା ଶିକ୍ଷା ବିଭାଗ ପ୍ରତି ବଡ଼ ସହାନୁଭୂତି ଦେଖାଉଅଛନ୍ତି । ମହାରାଜା ଏଥିପୂର୍ବେ କଟକ କଲେଜ ଓ କଟକ ମେଡିକାଲ ସ୍କୁଲକୁ ଅନେକ ଟଙ୍କା ଦାନ କରିଥିଲେ । ବର୍ତ୍ତମାନ ଉକ୍ତ କଲେଜ ନିମନ୍ତେ ପୁଣି କୋଡ଼ିଏ ହଜାର (୨୦୦୦୦) ଟଙ୍କା ଦାନ କରିଅଛନ୍ତି ଅତ୍ୟନ୍ତ ଆନନ୍ଦର କଥା ।

## ଉତ୍କଳ ପୁତ୍ର

(ପାକ୍ଷିକ ସମ୍ବାଦପତ୍ର)

**( ୧ମ ଭାଗ, ୧ । ୬ । ୧୮୭୩, ସଂଖ୍ୟା ୪ )**

୧୩୬ । ସ୍କୁଲ ବୃତ୍ତି ପରୀକ୍ଷକ ।

ଆମ୍ଭେମାନେ ଶିରୋନାମାଙ୍କିତ ପ୍ରସ୍ତାବ ସମ୍ବନ୍ଧରେ ଦୁଇଖଣ୍ଡି ପତ୍ର ପ୍ରାପ୍ତହୋଇ ଏଥି ଉପରେ କିଛି ଲେଖିବାକୁ ବାଧ୍ୟ ହେଲୁଁ ।

ଯେତେଦିନରୁ ଓଡ଼ିଶାରେ ପାଠଶାଳାଦି ସଂସ୍ଥାପିତ ଓ ପରୀକ୍ଷା କାର୍ଯ୍ୟ ଆରମ୍ଭ ହୋଇଅଛି ଓଡ଼ିଶାବାସିଙ୍କର ତହିଁରେ ଲାଭ ଥିବାର ପ୍ରତୀୟମାନ ହେଉନାହିଁ ।

ବଙ୍ଗାଳିମାନେ ସମ୍ପୂର୍ଣ୍ଣରୂପେ ଉନ୍ନତି ସମ୍ପାଦନ କରି ଆସୁଅଛନ୍ତି । ଆଜକୁ ଦୁଇ ଚାରି ବର୍ଷ ତଳ ପର୍ଯ୍ୟନ୍ତ ଯେ ସେମାନଙ୍କର ଏକଚ୍ଛତ୍ରାଧିକାର ଥିଲା ତହିଁରେ ଆମ୍ଭମାନଙ୍କର କୌଣସି ଅସନ୍ତୋଷ ଜାତ ହେବାର କାରଣ ଥିଲା ନାହିଁ ଯେହେତୁ ଓଡ଼ିଶା ସ୍କୁଲମାନଙ୍କରେ ବଙ୍ଗ ଭାଷାର ସମଧିକ ପ୍ରାଦୁର୍ଭାବ ଓ ଓଡ଼ିଆ ନାମ ମାତ୍ରରେ ଅଧୀତ ହେଉଥିଲା ବର୍ତ୍ତମାନ ବଙ୍ଗଭାଷାର ପ୍ରବୃତ୍ତି କ୍ରମଶଃ ଜନତାର ସୌଭାଗ୍ୟ କ୍ରମେ ଏବର୍ଷ ଏକାବେଳକେ ଓଡ଼ିଶାରୁ ଲୋପପ୍ରାପ୍ତ ହୋଇଅଛି । ପୁଣି ଛାତ୍ର ବୃତ୍ତି ପରୀକ୍ଷାରେ ଉତ୍କଳ ଭାଷା ହସ୍ତ ଲିଖନାଦର ପର୍ଯ୍ୟନ୍ତ ପରୀକ୍ଷା ଗୃହୀତ ହେବ । ଏ ସ୍ଥଳରେ ଓଡ଼ିଆ ପରୀକ୍ଷକ ନିଯୁକ୍ତ ନକରି ବଙ୍ଗାଳୀ ପରୀକ୍ଷକ ନିଯୁକ୍ତ କରିବାର କି ଅଯୌକ୍ତିକ ନୁହେ ? ବଙ୍ଗ ସ୍କୁଲରେ ବଙ୍ଗାଳିମାନେ ଯେତେଦୂର ପାରଦର୍ଶିତା ଲାଭ କରିବାକୁ ସମର୍ଥ ହେବେ ଓଡ଼ିଶାବାସିମାନେ କି ତେତେଦୂର ପାରିବେ ? ସେହିପରି ଓଡ଼ିଆରେ ଓଡ଼ିଶାବାସିଙ୍କ ଠାରୁ ବଙ୍ଗାଳିମାନେ ଉତ୍ତମରୂପେ ଶୀଘ୍ର ବ୍ୟୁତ୍ପନ୍ନ ହେବାର ସୁକଠିନ । ଆହୁରି ଯେତେବେଳେ ସାଧାରଣ ଓଡ଼ିଶାବାସିଙ୍କର ଏ କାର୍ଯ୍ୟ ମତବନ୍ଧ ଓ ଓଡ଼ିଶାରେ ପରୀକ୍ଷକ ହେବାଭଳି ସୁଯୋଗ୍ୟ ଲୋକ ପ୍ରାପ୍ୟ, ସେତେବେଳେ ଓଡ଼ିଶାରେ ଓଡ଼ିଆ ପରୀକ୍ଷକ ନିଯୁକ୍ତ କରିବା ଗବର୍ଣ୍ଣମେଣ୍ଟଙ୍କର ସର୍ବତୋଭାବେ କର୍ତ୍ତବ୍ୟ । ପୁଣି ଓଡ଼ିଶାରେ ଏଠା ବାସିଙ୍କର ଯେତେଦୂର ଅଧିକାର ବଙ୍ଗ କି ତୈଲଙ୍ଗବାସିଙ୍କର ତେତେଦୂର ହେବା ଯୁକ୍ତିସିଦ୍ଧ ବା ନ୍ୟାୟାନୁମୋଦିତ ନୁହେ । ଉତ୍କଳବାସିମାନେ ଉନ୍ନତି ଦିଗକୁ ମୁଖ ଫେରାଇବାକୁ ଆରମ୍ଭ କରିଅଛନ୍ତି. ଏ ସମୟରେ ଓ ଏ ଅବସ୍ଥାରେ ସେମାନଙ୍କୁ ଉତ୍ସାହ ଦେବାର ଗବର୍ଣ୍ଣମେଣ୍ଟଙ୍କର ଦ୍ୱିତୀୟ କର୍ତ୍ତବ୍ୟ । ପ୍ରତି ବ୍ୟକ୍ତି ସମ୍ବନ୍ଧରେ ଉନ୍ନତିର ନିୟମ ଯେ ପ୍ରକାର ପ୍ରତି ଜାତି ସମ୍ବନ୍ଧରେ ମଧ୍ୟ ସେହି ପ୍ରକାର । ଧୀରେ ୨ ଉନ୍ନତି ସ୍ରୋତ ସବୁ ଦେଶରେ, ସବୁ ଜାତିରେ, ସବୁ କାଳରେ ପ୍ରବାହିତ ହେବାର ଦୃଷ୍ଟିଗୋଚର ହୁଏ, ଏଣୁକରି ଓଡ଼ିଶାରେ ମଧ୍ୟ ସେହି ପ୍ରକାରରେ ହେବ । ବଙ୍ଗଦେଶ ପ୍ରତି ନେତ୍ରପାତ କଲେ ସ୍ପଷ୍ଟ ଜଣାଏ ଯେ ସେଠାରେ ଇଂରାଜଙ୍କ ଦ୍ୱାରା ପ୍ରଥମ ସେମାନଙ୍କର ଶିକ୍ଷା ଓ ପରୀକ୍ଷା କାର୍ଯ୍ୟର ସୂତ୍ରପାତ, ତହିଁ ଉତ୍ତାରୁ ସେମାନେ ଉପଯୁକ୍ତ ହୁଅନ୍ତେ, ସେମାନଙ୍କ ସାହେବ ପ୍ରଭୃତି ଅଲଗା ହେଲେ, ଦେଶୀୟ ଲୋକମାନେ ନିଜ ଅଧିକାର ପ୍ରାପ୍ତ ହେଲେ । ଓଡ଼ିଶାରେ ସେହିପ୍ରକାର କାହିଁକି ନହେବ ? ଏବେତ ଓଡ଼ିଶାବାସିଙ୍କ ମଧ୍ୟରେ କେତେକ ଉପଯୁକ୍ତ ଲୋକ ଅନେକରେ ମିଳୁଛନ୍ତି ତେବେ ସେମାନଙ୍କ ଉପରେ ସେମାନଙ୍କର ଭାର ଓ ଅଧିକାର କାହିଁକି ଅର୍ପିତ ନହେବ ? ଏ ବିଷୟରେ କମିଶ୍ନର ଓ ଇନସ୍ପେକ୍ଟର ସାହେବମାନେ ଦୃଷ୍ଟି ବିଚାର କରନ୍ତୁ ଏହି ଆମ୍ଭମାନଙ୍କର ପ୍ରାର୍ଥନା ।

ଯେବେ କେହି ପ୍ରଶ୍ନ କରନ୍ତି ଓଡ଼ିଶାରେ ପରୀକ୍ଷକ ହେବାଭଳି ଲୋକ କିଏ ଅଛି ? ଅମ୍ଭେମାନେ କହୁଁ ଓଡ଼ିଶା ସ୍କୁଲମାନଙ୍କର ଡିପ୍ୟୁଟି ଇନସ୍ପେକ୍ଟରେ

ବାବୁ ଗୌରୀଶଙ୍କର ରାୟ, ବାବୁ ଭଗବାନଚନ୍ଦ୍ର ଦାସ, ବାବୁ ନନ୍ଦକିଶୋର ଦାସ, ଗବର୍ଣ୍ଣମେଣ୍ଟ ବିଦ୍ୟାଳୟମାନଙ୍କର କେତେକ ଏ ଦେଶୀୟ ପଣ୍ଡିତ, କାବ୍ୟ ସମ୍ପ୍ରଦାୟଙ୍କ ମଧ୍ୟରେ କେତେକ ବିଦ୍ୟାଗ୍ରାହୀ ପ୍ରଭୃତିଙ୍କ ଦ୍ୱାରାରେ ପରୀକ୍ଷା ଭାର ପ୍ରଦାନ ହେଲେ ସେମାନେ କି ସୁଚାରୁରୂପେ ପରୀକ୍ଷା ନେଇପାରିବେ ନାହିଁ ? ଆମ୍ଭେମାନେ ନିଃଶଙ୍କଚିତ୍ତ ଚିତ୍ତରେ କହିପାରୁଁ, ଏମାନେ ସୁନ୍ଦର ରୂପେ ସକ୍ଷମ ହେବେ । ଗବର୍ଣ୍ଣମେଣ୍ଟଙ୍କର ଶିକ୍ଷା ବିଭାଗର କର୍ତ୍ତୃପକ୍ଷମାନେ ଏ ବିଷୟରେ ଦୃଷ୍ଟିପାତ କଲେ ଓଡ଼ିଶାବାସୀଙ୍କ ପକ୍ଷରେ ଯଥାର୍ଥ ନ୍ୟାୟ ବିଚାର ହେବ ।

## ( ୧ମ ଭାଗ, ୧।୧୦। ୧୮୭୩, ସଂଖ୍ୟା ୧୨ )

୧୩୨ ।

### ଚିକିତ୍ସା ବିଦ୍ୟାଳୟ

ଦୀପିକା ଓ ହିତୈଷିଣୀ କଟକରେ ଗୋଟିଏ ଚିକିତ୍ସା ବିଦ୍ୟାଳୟ ସଂସ୍ଥାପନ କରିବାକୁ ପ୍ରସ୍ତାବ କରିଥିଲେ । ପ୍ରସ୍ତାବଟି ମନ୍ଦ ନୁହେଁ । କିନ୍ତୁ କଥା ଏହି ଯେ ଏପରି ଗୋଟିଏ ସ୍କୁଲ କି ବର୍ତ୍ତମାନ ଏଠାରେ ଚଳିପାରିବ ? ଓ ଏହାର ଆବଶ୍ୟକତା କି ଲୋକେ ବୁଝୁଅଛନ୍ତି ? ସୁଯୋଗ୍ୟ କମିସନର ସାହେବ ଦୀପିକାରେ ଉତ୍ତର ଦେଇଅଛନ୍ତି ଯେ ଏପରି ଗୋଟିଏ ସ୍କୁଲ ଏଠି ଚଳି ପାରିବାର କଠିନ, ଯେହେତୁ ଏ ଦେଶୀୟ ଲୋକେ ଇଂରାଜୀ ଔଷଧ ଅଧିକ ବ୍ୟବହାର କରନ୍ତି ନାହିଁ ଓ ପରେ ଡାକ୍ତରଖାନାରେ ଟ୪ଙ୍କା ହିସାବରେ ଖୋରାକି ଦେଇ କଣ କେତେ ଲୋକଙ୍କୁ ଚିକିତ୍ସା ବିଦ୍ୟା ଶିକ୍ଷା ଦେବାର ସ୍ଥିର ହୋଇଥିଲା ଓ ସେଥିସକାଶେ ଜ୨ । ୩ଣ ସବୁକି ଆସିଥିଲେ ଓ ସେମାନଙ୍କୁ ଯେବେ ଟ୧ଙ୍କା ହିସାବ ବେତନ ଦେବାକୁ ହୋଇଥାନ୍ତା ତେବେ କେହି ଆସନ୍ତେ ନାହିଁ ଏବଂ ଏଥିରୁ ଜଣାଯାଏ ଯେ ସେମାନେ ବିଦ୍ୟା ଲୋଭରେ ନ ଆସି ଅର୍ଥ ଲୋଭରେ ଆସନ୍ତି ।

ସାହେବ ମହୋଦୟ ଯେ ଅର୍ଥ ଲୋଭରେ ବୋଲି କହିଅଛନ୍ତି ଏଥିର କାରଣ ଅଛି; ବୋଧହୁଏ ସାହେବ ତାହା ବୁଝି, ବୁଝି ନାହାନ୍ତି । ତାହା ଏହି ଯେ ଏ ଦେଶୀୟମାନେ ନିତାନ୍ତ ଦୁଃଖୀ ଦରିଦ୍ର । ଜ୍ଞାନ ସ୍ପୃହା ଏମାନଙ୍କର ନାହିଁ ବୋଲି ଏକାବେଳକେ ବୋଲିବା ଦୁଃସାହସିକର କର୍ମ, ତାହାହେଲେ ଗଉଡ଼, ଭଣ୍ଡାରୀ, ଚଷା, ଧୋବା ଓ ବାଉରୀ ପ୍ରଭୃତିଙ୍କ ମଧ୍ୟରେ (ସ୍ତ୍ରୀମାନ୍ୟ ଉପେ) ପଢ଼ା ଲେଖି ପାରିବା ଲୋକ ସୁଲଭ ହୁଅନ୍ତେ ନାହିଁ ।

ଅବଶ୍ୟ ଏକଥା ସ୍ୱୀକାର କରିବାକୁ ହେବ ଓଡ଼ିଶାର ଅବସ୍ଥା ଏତେ ଉନ୍ନତ ହୋଇନାହିଁ ଯେ ଗୋଟିଏ ଚିକିତ୍ସା ବିଦ୍ୟାଳୟ ସ୍ଥାପିତ ହେଲେ

ଦରମାହା ଦେଇ କଲିକତା ମେଡ଼ିକାଲ କଲେଜରେ ଯେପରି ଚଳି ୨ ହୋଇ ପିଲାଏ ଆସି ପ୍ରବିଷ୍ଟ ହୁଅନ୍ତି ସେପରି ହେବ । ତେବେହେଲେ, ନିତାନ୍ତ ପକ୍ଷରେ ୧୦ । ୧୫ କରି ଛାତ୍ର ଆସି ଯାଇନ୍ତି । କିନ୍ତୁ ୧୦ । ୧୫ ଜଣଙ୍କ ସକାଶେ ୫୨୦୦ କି ୫୩୦୦ଙ୍କା ମାସକୁ ଖର୍ଚ୍ଚ କରି ପଢ଼ାଇବାକୁ ଗଲେ, ସରକାରର ଅନେକ କ୍ଷତି ହେବ । ଆହୁରି ବିଶ୍ୱରକରି ଦେଖିଲେ ଏ ପ୍ରକାର ଗୋଟିଏ ସ୍କୁଲ ବର୍ତ୍ତମାନ ସ୍ଥାପିତ ହେଲେ ଏ ଦେଶୀୟ ଲୋକେ ଅତି ଅଳ୍ପ ଶିକ୍ଷା କରିବାକୁ ଆସିବେ ଓ ମଧ୍ୟ ଦେଖିଲେ ଜଣାପାଏ ଯେ ଏ ଦେଶୀୟ ଭାଷାରେ ବର୍ତ୍ତମାନ ଶିକ୍ଷା କାର୍ଯ୍ୟ ଚଳପାରିବ ନାହିଁ । ଏପ୍ରକାର ଅବସ୍ଥାରେ ଆମ୍ଭେମାନେ ଅଧୁନା ଚିକିତ୍ସା ବିଦ୍ୟାଳୟ ସ୍ଥାପନର ତେତେ ଆବଶ୍ୟକତା ଦେଖୁନାହୁଁ ଓ ବିମ୍ସ୍ ସାହେବଙ୍କ ସଙ୍ଗେ ସୁତରାଂ ଅନୈକ୍ୟ ମତ ହେବାକୁ ସାହସ କରି ନପାରୁ ।

ତେବେ ଯେ ଏ ଦେଶୀୟ କେହି ଚିକିତ୍ସା ବିଦ୍ୟା ନଶିଖିବେ ଏ ପ୍ରକାର ମଧ୍ୟ ଆମ୍ଭମାନଙ୍କର ମତ ନୁହେ । ବର୍ତ୍ତମାନ ଜଣେ ଯୋଗ୍ୟ ଡାକ୍ତର କି ବୈଦ୍ୟ ଏ ଦେଶୀୟ ଲୋକଙ୍କ ମଧ୍ୟରେ ଅତି ଦୁଷ୍ପ୍ରାପ୍ୟ । ଚିକିତ୍ସା ବିଦ୍ୟାର ଦୁର୍ଗତି ଏ ଦେଶରେ ଯେପରି ଲକ୍ଷିତ ହୁଏ, ଅନ୍ୟ କୌଣସିଠାରେ ଏପରି ହୁଏ କି ନାହିଁ ସନ୍ଦେହ ।

ଅନେକେ ମନେ କରୁଥିବେ, ଆମ୍ଭେମାନେ ତେବେ କଣ କହୁଅଛୁଁ । ଆମ୍ଭମାନଙ୍କ ମତରେ ଗୋଟିଏ ଚିକିତ୍ସା ବିଦ୍ୟାଳୟ ଏଠାରେ ସ୍ଥାପିତ ହେବାର ଆବଶ୍ୟକ ନୁହେ । ପୁନଶ୍ଚ କଣ କେତେ ଏ ଦେଶୀୟଙ୍କ ମଧ୍ୟରେ ସୁଶିକ୍ଷିତ ଡାକ୍ତର ଲୋଡ଼ୁଅଛୁଁ । ଏ ଅବସ୍ଥାରେ ଆମ୍ଭମାନଙ୍କର ଏହି ପ୍ରାର୍ଥନା ଓ ଗବର୍ଣ୍ଣମେଣ୍ଟଙ୍କୁ ଏହି ଅନୁରୋଧ ଯେ, ଏଦେଶୀୟ କେତେଜଣଙ୍କୁ କଲିକତା ନେଇଯାଇ, ଛାତ୍ରବୃତ୍ତି ଦେଇ ଇଂରାଜୀ ବିଭାଗରେ ପଢାଇ, ସୁଶିକ୍ଷିତ କରି ଛାଡ଼ି ଦେଉନ୍ତୁ । ତାହା ହେଲେ, ଅନେକ ପରିମାଣରେ ବର୍ତ୍ତମାନର ଅଭାବ ଦୂର ହୋଇପାରେ. ଯଦି ଗବର୍ଣ୍ଣମେଣ୍ଟ ଛାତ୍ରବୃତ୍ତି ପ୍ରଦାନ କରି ନେବାକୁ ସମ୍ମତ ହୁଅନ୍ତି ତାହାହେଲେ, ଅନାୟାସରେ ଏ ଦେଶୀୟ କଣ କେତେ ଯାଇ ଚିକିତ୍ସା ବିଦ୍ୟାରେ ଶିକ୍ଷିତ ହୋଇପାରନ୍ତି । ଭରସା କରୁଁ ଆମ୍ଭମାନଙ୍କର ହିତୈଷୀ ବିମ୍ସ୍ ସାହେବ ଏ ବିଷୟରେ ଯତ୍ନବାନ୍ ହେବାକୁ ତ୍ରୁଟି କରିବେ ନାହିଁ ।

## ( ୬ଷ୍ଠ ଭାଗ, ୧ । ୬ । ୧୮୭୪, ସଂଖ୍ୟା ୬ )

୧୩୮ । ଦୁଇଜଣ ବଙ୍ଗଳା କ୍ଲାସରେ ପଢ଼ିବା ଛାତ୍ରା, ଜନାର୍ଦ୍ଦନ ମହାପାତ୍ର ନାମକ ଗତବର୍ଷର ଜଣେ ପ୍ରବେଶିକା ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ର ଓଡ଼ିଶାର ପ୍ରଥମଥର ମେଡ଼-କାଲ କଲେଜରେ ଇଂରାଜୀ ବିଭାଗରେ ପଢ଼ିବା ଆରମ୍ଭ କରିଅଛନ୍ତି । ଶୁଣିକରି ଦୁଃଖିତ ହେଲୁଁ କି କେତେ କୁସଂସ୍କାରୀ ଲୋକେ ଏଥିପାଇଁ ତାଙ୍କୁ ଘୃଣା କରୁଅଛନ୍ତି ଓ ମଡ଼ା ଛୁଇଁଲେ ଜାତି ଯିବାର ସନ୍ଦେହ କରୁଅଛନ୍ତି । ଧନ୍ୟ ସେମାନଙ୍କ ବୁଦ୍ଧି !!

## ( ୬ଷ୍ଠ ଭାଗ, ୧୫ । ୬ । ୧୮୭୪, ସଂଖ୍ୟା ୭ )

୧୩୯ । ସମ୍ବାଦ

କେବଳ ଓଡ଼ିଶା ସକାଶେ ଜଣେ ସ୍କୁଲ ଇନସ୍ପେକ୍ଟର ନିଯୁକ୍ତ ହେବାର କଥା ଶୁଣା ଯାଉଅଛି । ସତ୍ୟ ହେଲେ ସୁଖର ବିଷୟ ।

୧୪୦ । କଲିକତାରୁ ଆମ୍ଭମାନଙ୍କୁ ଜଣେ ଲେଖିଛନ୍ତି ଯେ ମେଡ଼କାଲ କଲେଜର ନୂଆ ଉତ୍କଳୀୟ ଛାତ୍ରେ ବଙ୍ଗାଳୀ ଛାତ୍ରମାନଙ୍କର ଉପହାସର ପଦାର୍ଥ ହୋଇଅଛନ୍ତି । ବଙ୍ଗାଳୀ ପିଲ୍ଲେ ସେମାନଙ୍କୁ କହୁଅଛନ୍ତି ଯେ "ଯେଉଁଦିନ ଉତ୍କଳୀୟ ଛାତ୍ରେ ଡିସେକ୍ସନ ଅର୍ଥାତ୍ ମଡ଼ା କାଟିବେ ସେଦିନ ତ୍ତେଠ ଲଠ ନକେ ଆସି ତାଙ୍କ ହାତରେ ଛୁରୀ ଦେବେ ।" ବଙ୍ଗବାସିଏ କି ଓଡ଼ିଆମାନଙ୍କର ଜନ୍ମ ଶତ୍ରୁ ?

## ( ୬ଷ୍ଠ ଭାଗ, ୭ । ୧୦ । ୧୮୭୪, ସଂଖ୍ୟା ୧୨ )

୧୪୧ । ପାଠକେ ! ଆପଣମାନେ ଅବଗତ ହୋଇ ଆନନ୍ଦିତ ହେବେ ଯେ ଆମ୍ଭମାନଙ୍କର ହିତୈଷୀ ଡମିଶନର ରାଭେନଶା ସାହେବ କଲିକତା ମେଡ଼କାଲ ସ୍କୁଲରେ ପଢୁଥିବା ଓଡ଼ିଶାବାସୀ ଜଣ ଓ ମେଡ଼କାଲ କଲେଜରେ ପଢୁଥିବା

ଜନାର୍ଦ୍ଦନ ମହାପାତ୍ର ନାମକ ଜଣଙ୍କୁ ସ୍ୱତନ୍ତ୍ର ସମ୍ବାଦ ଜ୍ଞାତକରିବା ଉଦ୍ଦେଶ୍ୟରେ ଚିଠିଙ୍କା ଲେଖାଏଁ ପ୍ରତ୍ୟେକଙ୍କୁ ପଠାଇଅଛନ୍ତି, ମଧ୍ୟ ଏହା ବଡ଼ ପ୍ରଶଂସାର ବିଷୟ । ସାଧାରଣଙ୍କର କର୍ମଚାରୀ ସାହେବଙ୍କୁ ଏ ବିଷୟରେ ଅନୁସରଣ କରିବା କର୍ତ୍ତବ୍ୟ । ବିଶେଷତଃ ଜନାର୍ଦ୍ଦନ ମହାପାତ୍ର ସକାଶେ ସାଧାରଣଙ୍କୁ ଅନୁରୋଧ କରୁଅଛୁଁ କିଛି ୨ ଟାକୁ ସମସ୍ତେ ସାହାଯ୍ୟ କରନ୍ତୁ । ଆମ୍ଭମାନଙ୍କଠାରୁ, କାହାରି କିଛି ଦେବାର ଥିଲେ ପଠାଇଲେ, ଅମ୍ଭେମାନେ ଯଥାସ୍ଥଳକୁ ପଠାଇଦେବୁଁ ।

( ୨ୟ ଭାଗ, ୪।୧୧।୧୮୭୪, ସଂଖ୍ୟା ୧୪ )

୧୪୨ । ଓଡ଼ିଶା ଶିକ୍ଷା ବିଭାଗୀୟ କେତୋଟି ପରିବର୍ତ୍ତନ ।

ଗତମାସ ମଧ୍ୟରେ ଓଡ଼ିଶା ଶିକ୍ଷା ବିଭାଗରେ କେତୋଟି ସୁଖ ଦୁଃଖଜନକ ପରିବର୍ତ୍ତନ ହୋଇଅଛି । ପ୍ରଥମତଃ ଓଡ଼ିଶା ସକାଶେ ଜଣେ ସ୍ୱତନ୍ତ୍ର ଇନସ୍ପେକ୍ଟର ନିଯୁକ୍ତ ହେବାର ଆମ୍ଭମାନଙ୍କର ଗୋଟିଏ ବହୁକାଳର ପ୍ରାର୍ଥନା ପୂର୍ଣ୍ଣ ହୋଇଅଛି । ରବର୍ଟ ପେୟାରୀ ସାହେବ ନାମକ ହୁଗଲୀ କଲେଜର ଜଣେ ଅତି ବିଦ୍ୱାନ, ନମ୍ର ଓ ଶିକ୍ଷାନୁରାଗୀ ଅଧ୍ୟାପକ ଓଡ଼ିଶାର ପ୍ରଥମ ଇନସ୍ପେକ୍ଟର ନିଯୁକ୍ତ ହୋଇ ଆସିଅଛନ୍ତି । ଏ ଘଟଣା ଓଡ଼ିଶାବାସିଙ୍କ ପ୍ରତି ଯେ କେତେଦୂର ଆନନ୍ଦପ୍ରଦ ତାହା ଓଡ଼ିଶାବାସୀ ମାତ୍ରକେହିଁ ଅନୁଭବ କରିଥିବେ ।

ଦ୍ୱିତୀୟତଃ ଜଣେ ସ୍ୱତନ୍ତ୍ର ଇନସ୍ପେକ୍ଟର ଓଡ଼ିଶା ସକାଶେ ନିଯୁକ୍ତ ହେବାରୁଁ ଓଡ଼ିଶା ସ୍କୁଲ ଜଏଣ୍ଟ ଇନସ୍ପେକ୍ଟରୀ କାର୍ଯ୍ୟ ଉଠିଗଲା ବୋଲି କହିବାକୁ ହେବ । ସୁତରାଂ ଏଜାର ସାହେବଙ୍କୁ କାର୍ଯ୍ୟାନ୍ତରରେ ନିଯୁକ୍ତ କରିବାର ଆବଶ୍ୟକ ହେଲା ଓ ଗବର୍ଣ୍ଣମେଣ୍ଟ ତଦନୁସାରେ ତାଙ୍କୁ କଟକ ହାଇସ୍କୁଲର ପ୍ରଧାନ ଶିକ୍ଷକତା ପଦରେ ନିଯୁକ୍ତ କରିଅଛନ୍ତି । ଆମ୍ଭେମାନେ ମଧ୍ୟ ବୋଧକରୁଁ ଏଜାର ସାହେବଙ୍କର ହାଇସ୍କୁଲରେ ପ୍ରବେଶ ହାଇସ୍କୁଲ ପ୍ରତି କୌଣସିରୂପେ ଅମଙ୍ଗଳପ୍ରଦ ନୁହେ । ତାଙ୍କ ନିଯୁକ୍ତିରେ କାହାରିକୁ ଅସନ୍ତୁଷ୍ଟ ହେବାର ଦେଖାଯାଉ ନାହିଁ । ଭରସା କରୁଁ ଏଜାର ସାହେବଙ୍କ ସମୟରେ ହାଇସ୍କୁଲର ଅବଶିଷ୍ଟ ଉନ୍ନତିମାନ ସମ୍ୟକ୍ ପ୍ରକାରେ ସାଧିତ ହୋଇ ଏହା ଯେମନ୍ତ ଶେଷକୁ କଲେଜ ରୂପରେ ପରିଣତ ହୁଏ ।

ତୃତୀୟତଃ ଆମ୍ଭମାନଙ୍କୁ ଗୋଟିଏ ଅତି ଦୁଃଖକର ସମ୍ବାଦ ସାଧାରଣଙ୍କୁ ଦେବାକୁ ହେଉଅଛି । ହାଇସ୍କୁଲର ସୁଯୋଗ୍ୟ ବିଦ୍ୱାନ ପ୍ରଥମ ପ୍ରଧାନ ଶିକ୍ଷକ ବାବୁ ଗଙ୍ଗାଚରଣ ବାନ୍ଧର୍ଯ୍ୟ ଓଡ଼ିଶାରୁ ସ୍ଥାନାନ୍ତରିତ ହେଉଅଛନ୍ତି । ଅଦ୍ୟାବଧି ସେ

କେଉଁଠାକୁ ବଦଳି ହୋଇଯିବେ ନିଶ୍ଚିତ ହୋଇନାହିଁ ; ଅଥଚ ହାଇସ୍କୁଲର ପ୍ରଧାନ ଶିକ୍ଷକତା ପଦରୁ ଅପସୃତ ହୋଇଅଛନ୍ତି । ବେଙ୍ଗଲ ଗବର୍ଣ୍ଣମେଣ୍ଟଙ୍କର ଏ ବିଷୟରେ କିଛି ଉଚ୍ଚତର୍ଯ୍ୟା ନୀତି ଅବଲମ୍ବନ କରିଥିବାରୁ, ସୁତରାଂ ଭ୍ରମାକ୍ରାନ୍ତ ହୋଇଥିବାରୁ, ଜଣାପଡ଼େ । ଅତେବ ଚଣ୍ଡୀ ବାବୁଙ୍କୁ କର୍ମାନ୍ତରେ ନିଯୁକ୍ତ କରି ତାଙ୍କ କାର୍ଯ୍ୟରେ ଅନ୍ୟ ବ୍ୟକ୍ତିଙ୍କୁ ନିଯୋଗ କରିବାର ଗବର୍ଣ୍ଣମେଣ୍ଟର ଉଚିତ ଥିଲା । ଯାହାହେଉ ଉଲ୍ଲିଖିତ ଶିକ୍ଷା ବିଭାଗୀୟ ଦୁଇ ଘଟଣା ଯେପରି ଅସନ୍ତୋଷଜନକ, ତଦପେକ୍ଷା ଚଣ୍ଡୀ ବାବୁଙ୍କ ବଦଳି ଯେ ଅଧିକତର ଶୋଚନୀୟ ଏଥିରେ ସନ୍ଦେହ ନାହିଁ । ବାବୁ ମହାଶୟ ହାଇସ୍କୁଲର କାର୍ଯ୍ୟ ଯଥାସାଧ୍ୟ ଉତ୍ତମରୂପେ ନିର୍ବାହ କରିଅଛନ୍ତି ଓ ପୂର୍ବାପେକ୍ଷା ଏଣିକି ଯେ ପ୍ରବେଶିକା ପରୀକ୍ଷାରେ ଅଧିକ ସଂଖ୍ୟକ ଛାତ୍ର ଉତ୍ତୀର୍ଣ୍ଣ ହେଉଥିଲେ, ଏହା ତାଙ୍କ ଯତ୍ନର ବୋଲିବାକୁ ହେବ । ସ୍ୱକୀୟ ଗୁଣ ମଧ୍ୟରେ ତାଙ୍କର ନିଃସ୍ପୃହତା ଓ ଶିଷ୍ଟା-ଚାରିତା ତାଙ୍କୁ ସଜ୍ଜନ ଓ ସର୍ବସାଧାରଣରେ ଅଧିକ ଆଦରର ପଦାର୍ଥ କରିଥିଲା । ଅତି ଦୁଃଖର ସହିତ ତାଙ୍କଠାରୁ ଆମ୍ଭମାନଙ୍କୁ ବର୍ତ୍ତମାନ ବିଦାୟ ଗ୍ରହଣ କରିବାକୁ ପଡ଼ିବ ।

---

# ସାହିତ୍ୟ

## • ( ୨ୟ ଭାଗ, ୨୭ । ୫ । ୧୮୭୭, ସଂଖ୍ୟା ୨୧ )

୧ । ଉତ୍କଳ ଭାଷୋନ୍ନତିସାଧନୀ ସଭା ।

ଗତ ରବିବାର ଉତ୍କଳ ଦେଶ ପକ୍ଷରେ ଏକ ଉତ୍କୃଷ୍ଟ ଦିନ ଥିଲା । ଏ ଦିବସ ଅତ୍ରସ୍ଥ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଏକତ୍ର ହୋଇ ଏକ ମହତ୍ କର୍ମର ଅନୁଷ୍ଠାନ କରିଅଛନ୍ତି । କିରୂପେ ଉତ୍କଳଭାଷା ଉନ୍ନତ ହେବ ଓ ସର୍ବସାଧାରଣର ଉତ୍କର୍ଷ ସାଧନରେ ଯତ୍ନବାନ୍ ହେବେ ଏବଂ ସରକାରୀ ମହକୁମାମାନଙ୍କରେ ବର୍ତ୍ତମାନ ଚଳିତ ଥିବା ମିଶ୍ରିତ ଭାଷା ପରିବର୍ତ୍ତିରେ ବିଶୁଦ୍ଧ ଉତ୍କଳଭାଷା ଚଳନ ହେବ ଓ କେବଳ ଉପଯୁକ୍ତ ବ୍ୟକ୍ତିମାନେ ଅମଲାଗିରି କର୍ମ କରିପାରିବେ ; ଏହି ସମସ୍ତ ଏ ସଭାର ଉଦ୍ଦେଶ୍ୟ । ସଭାର ସମ୍ପୂର୍ଣ୍ଣ ବିବରଣ ଅତିରିକ୍ତ ପତ୍ରିକାରେ ପ୍ରକାଶ ହେଲା । ପାଠକମାନେ ସେଥିରୁ ସମସ୍ତ ଅବଗତ ହେବେ ।

ଏ ସଭା ଯେଉଁ ଭାର ଗ୍ରହଣ କରିଅଛନ୍ତି ତାହା ସାମାନ୍ୟ ନୁହଇ । ଯେଉଁମାନେ ଦେଶର ବର୍ତ୍ତମାନ ଅବସ୍ଥାର ସମ୍ୟକ୍‌ରୂପେ ଅବଗତ ଅଛନ୍ତି ସେମାନେ ବୁଝି ପାରିବେ ଯେ ଏ ଭାର ନିର୍ବାହ ନିମିତ୍ତ କେତେ କୌଶଳ କେତେ ଅନୁସନ୍ଧାନ ଓ କେତେ ଯତ୍ନ ଆବଶ୍ୟକ । ଏ ଦେଶରେ ବର୍ତ୍ତମାନ ଧନବାନ୍ ଶକ୍ତିମାନ୍ ଅବା ଦେଶାନୁରାଗୀ ସଂଖ୍ୟା ଅତି ଅଳ୍ପ । ଏଣୁ କରି ଏ କର୍ମ ସମ୍ପନ୍ନ କରିବାରେ ସମଧିକ କ୍ଳେଶ ହେବ । ମାତ୍ର ସୁଖର ବିଷୟ ଏହି ଯେ ଏ ସଭାର ସଭ୍ୟମାନେ ଜଣେ ଉପଯୁକ୍ତ ବ୍ୟକ୍ତିଙ୍କୁ ସଭାପତି ପଦରେ ବରଣ କରିଅଛନ୍ତି ଓ ଏଥିରୁ ସମ୍ପୂର୍ଣ୍ଣ ଭରସା ହୁଅଇ ଯେ ସଭାର କାର୍ଯ୍ୟମାନ ସୁନ୍ଦର ରୂପେ ଚଳିବ ।

ସଭାପତି ଶ୍ରୀଯୁକ୍ତ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ବଙ୍ଗ ଦେଶର ଜଣେ

ହିତୈଷୀ ବ୍ୟକ୍ତି । ବଙ୍ଗଭାଷା ଏମାନଙ୍କ ଦ୍ୱାରା ସାମାନ୍ୟ ଉନ୍ନତ ହୋଇନାହିଁ ଓ ଏ ଦେଶସ୍ଥ ଆମ୍ଭେମାନେ ବାବୁମାନଙ୍କ ଲିଖିତ ଗ୍ରନ୍ଥ ଇତ୍ୟାଦି ମହାଶୟଙ୍କରେ ପାଠ କରୁଅଛୁଁ । ବଙ୍ଗଭାଷାରେ ଯେଉଁ ପୁସ୍ତକମାନ ଏମାନଙ୍କ ଦ୍ୱାରା ରଚନା ହୋଇଅଛି ସେଥିର ସୁଖ୍ୟାତି ମଧ୍ୟ ଆମ୍ଭେମାନେ ପୁନଃ ୨ ଶ୍ରବଣ କରୁଅଛୁଁ । ଏ ପ୍ରକାର କେତେ ମନୁଷ୍ୟ ଏ ସଭାର ଆନୁକୂଲ୍ୟ ସମ୍ବନ୍ଧରେ ଯେ ଏଥିର କାର୍ଯ୍ୟର ସ୍ୱରୂପ ପ୍ରାପ୍ତ ହେଲେ ଏହା ସାମାନ୍ୟ ଭାଗ୍ୟର କଥା ନୁହଇ । ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ସଭାସ୍ଥ ହେବାର କେତେ ଉପଯୁକ୍ତ ତାହା ତାହାଙ୍କ ବକ୍ତୃତା ପାଠକଲେ ଉତ୍ତମରୂପେ ପ୍ରକାଶ ହେବ । ଏହା ଧର୍ମ ପ୍ରବୃତ୍ତିର ଅଭିପ୍ରାୟରେ ସକଳ ଦେଶୀୟ ଭାଷା ଉନ୍ନତ ହୋଇଅଛି ଓ ସେହି ଉପାୟ ଅବଲମ୍ବନ କଲେ ଅସ୍ମଦ୍ଦେଶର ଭାଷା ମଧ୍ୟ ପୁନରୁଦ୍ଦୀପନ ହେବ ଏ କଥାମାନ ଯେ କେତେଦୂର ଯୁକ୍ତିସିଦ୍ଧ ତାହା କୁହାଯାଇ ନପାରେ । ପୁରାତନ ଭାଷା ରଚିତ ଧର୍ମ ପୁସ୍ତକମାନ ମୁଦ୍ରାଙ୍କନ କଲେ ସାଧାରଣ ପାଠକରିବେ କାରଣ ଦେଖାଯାଉଅଛି ଯେ ଗଜୋଦ୍ଧାରଣ କେଶୀବଧ ଚନ୍ଦ୍ରଭାଗା ଇତ୍ୟାଦି ଯେତେ ଅଧିକରୂପେ ଲୋକମାନେ ପାଠକରନ୍ତି ତେତେ ଆଉ କିଛି ପାଠକରିବାର ଦେଖାଯାଏ ନାହିଁ । ପ୍ରତି ଗ୍ରାମରେ ପ୍ରାୟ ଗୋଟିଏ ଭାଗବତାଦି ପୁରାଣପାଠ ହେବାର ସ୍ଥାନ ଅଛି ଓ ସେଠାରେ ଗ୍ରାମସ୍ଥ ସମସ୍ତ ବ୍ୟକ୍ତି ଅତି ଆଗ୍ରହପୂର୍ବକ ଶ୍ରବଣ କରିବାକୁ ଆସନ୍ତି । ଯେବେ ଏ ପୁସ୍ତକମାନ ଶୁଦ୍ଧରୂପେ ଉତ୍ତମ ଅକ୍ଷରରେ ମୁଦ୍ରାଙ୍କନ ଓ ଅଳ୍ପ ମୂଲ୍ୟରେ ସର୍ବସାଧାରଣର ପ୍ରାପ୍ୟ ହୁଅଇ ତାହାହେଲେ କ୍ରମଶଃ ସମସ୍ତେ ବିଦ୍ୟାଭ୍ୟାସରେ ମନୋଯୋଗୀ ହେବେ ସନ୍ଦେହ ନାହିଁ ।

ଏ ସଭା ସମ୍ବନ୍ଧୀୟ ଯେ ସମସ୍ତ କାର୍ଯ୍ୟମାନ ହେଉଅଛି ତାହା ଆମ୍ଭେମାନେ ଆନନ୍ଦ ସହିତ ସମୟ ସମୟରେ ପ୍ରକାଶ କରିବୁଁ ଓ ଆମ୍ଭେମାନେ ସାମାନ୍ୟ ବୁଦ୍ଧିରେ ଯେ ପର୍ଯ୍ୟନ୍ତ ଆସିବ ସଭାର ଉଦ୍ଦେଶ୍ୟ ସଫଳ ପଥରେ ସାହାଯ୍ୟ କରିବୁଁ । ଆମ୍ଭେମାନେ ଏହି ଆଶା କରୁଁ ଯେମନ୍ତ ଏ ମଙ୍ଗଳ ଅନୁଷ୍ଠାନରେ ଏ ଦେଶସ୍ଥ ସମସ୍ତ ଧନୀ ଓ ଜ୍ଞାନୀମାନେ ଏକତ୍ର ହୋଇ ଆପଣା କର୍ତ୍ତବ୍ୟ ସାଧନ କରନ୍ତୁ ଓ ଉତ୍କଳ ଦେଶରେ ମଧ୍ୟ ହିତୈଷୀ ବ୍ୟକ୍ତିର ଅଭାବ ନାହିଁ ଏକଥା ଜଗତରେ ଘୋଷଣା କରନ୍ତୁ । ଯେତେ ପରିମାଣ ଭୂମିରେ ଉତ୍କଳଭାଷା ବ୍ୟବହାର ହୁଅଇ ସେ ସମୁଦାୟ ରାଜ୍ୟଖଣ୍ଡର ଲୋକମାନେ ଏ ସଭାର ଅନ୍ତର୍ଗତ ହୋଇ ଏକତାରେ କର୍ମ କରିବାର ଉଚିତ । ପୁରୁଷୋତ୍ତମ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ପ୍ରଭୃତି ଜିଲ୍ଲା ସମୂହର ଲୋକମାନଙ୍କୁ ଏ ସଭାର ସଭ୍ୟ କରିବାର ଉଚିତ ଓ ଆମ୍ଭେମାନେ ବିଶ୍ୱାସ କରୁଅଛୁଁ ଯେ ଏଥିରେ କିଛିମାତ୍ର ବିଘ୍ନ ହେବନାହିଁ ।

ପରିଶେଷରେ ଆମ୍ଭେମାନେ ଏହି ପ୍ରାର୍ଥନା କରୁଅଛୁଁ ଯେ ଏ ସଭାଟି

ଏତଦସ୍ଥାନିକା ହେଉ ଓ ଏହାର ଯତ୍ନ ଓ ପରିଶ୍ରମ ଦ୍ୱାରା ଉତ୍କଳଦେଶର ଉତ୍ତରୋତ୍ତର ଗୌରବ ବୃଦ୍ଧି ହେଉ ।

## ଅତିରିକ୍ତ ( ୨୭ । ୪ । ୧୮୬୭ )

୨ । ଉତ୍କଳଭାଷାର ପୁନରୁଦ୍ଦୀପନ କରିବା କାରଣ
ଚଳିତ ମଇମାସ ୪ ତାରିଖରେ ସହର କଟକରେ
ଯେ ସଭା ହୋଇଥିଲା ତହିଁର ବିବରଣ ।

ଉପସ୍ଥିତ— ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ, ବାବୁ ଜଗମୋହନ ରାୟ, ବାବୁ ଚନ୍ଦ୍ରଶେଖର ବାନାର୍ଜୀ, ବେବର୍ତ୍ତା ଚନ୍ଦ୍ରଶେଖର ମହାପାତ୍ର, ବାବୁ ଜଗମୋହନ ସେନ, ବାବୁ ହରେକୃଷ୍ଣ ଦାସ, ବାବୁ ଗୋବିନ୍ଦ ଚନ୍ଦ୍ର ମହାପାତ୍ର, ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ, ବାବୁ ବଳରାମ ବୋଷ, ବାବୁ ଜଗମୋହନ ଲାଲ, ବାବୁ ରାଜକୃଷ୍ଣ ବାନାର୍ଜୀ, ବାବୁ କୈଳାସ ଚନ୍ଦ୍ର ପାଲିତ, ବାବୁ ହରିଧନ ଘୋଷ, ବାବୁ ଗୌରୀଶଙ୍କର ରାୟ ।

ସଭା ହେବାର ବିଜ୍ଞାପନ ପାଠ ହେବାରୁ ଶ୍ରୀଯୁକ୍ତ ବାବୁ ଜଗମୋହନ ରାୟଙ୍କ ପ୍ରସ୍ତାବ ଅନୁସାରେ ଉପସ୍ଥିତ ସଭ୍ୟଙ୍କ ସମ୍ମତିରେ ଶ୍ରୀଯୁକ୍ତ ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ଏ ସଭାର କାର୍ଯ୍ୟ ନିର୍ବାହ ନିମିତ୍ତ ସଭାପତି ପଦରେ ବରଣ ହେଲେ ।

ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ସଭାପତି ଆସନ ଗ୍ରହଣକରି କହିଲେ ଯେ ଆମ୍ଭଙ୍କୁ ଏ ସଭାର ପ୍ରଧାନ ଆସନରେ ଆହୁତ କରିବା ଶୋଭନୀୟ ହୋଇନାହିଁ ଯେହେତୁ ଆମ୍ଭେ ଏ ଦେଶୀୟ ମନୁଷ୍ୟ ନୋହୁଁ । ବିଶେଷରେ ଉତ୍କଳ-ଭାଷାର ଉଦ୍ଦୀପନ କେବଳ ଏ ସଭାର ଉଦ୍ଦେଶ୍ୟ, ସୁତରାଂ ସେହି ଭାଷାରେ ଏହାର କାର୍ଯ୍ୟାଦି ନିର୍ବାହ ହେବା ବିଧେୟ । ଆମ୍ଭେ ବିଦେଶୀୟ ଲୋକ, ଉତ୍କଳଭାଷା କହିବାକୁ ଆମର ଚାତୁରୀ ପଟୁତା ନାହିଁ, ଅତଏବ ଏପରି ସ୍ଥଳରେ ଅଯୋଗ୍ୟ ପାତ୍ରକୁ ଅନୁପଯୁକ୍ତ ସମ୍ମାନ ପ୍ରଦାନ ହେଉଅଛି । ଅଧିକନ୍ତୁ ଯଦ୍ୟପି ଆପଣମାନେ ଆମ୍ଭଙ୍କୁ ଅନୁମତି ଦିଅନ୍ତି ଆମ୍ଭେ ଆମ୍ଭର ମାତୃଭାଷାରେ କିଞ୍ଚିତ୍ ବକ୍ତୃତା କରିବାକୁ ଅନୁମତି ଦିଅନ୍ତି ତେବେ ଆମ୍ଭେ ଏ ଗୌରବାସ୍ପଦ ଆସନ ଗ୍ରହଣ କରିବାକୁ ସାହସ କରିପାରୁଁ ।

(ଉପସ୍ଥିତ ସଭ୍ୟମାନେ ବଙ୍ଗଭାଷାରେ ବକ୍ତୃତା କରିବାକୁ ଅନୁମତି ଦେଲେ ।)

( ୨ୟ ଭାଗ, ୧୦ । ୮ । ୧୮୭୭, ସଂଖ୍ୟା ୩୨ )

୩ । ପୁସ୍ତକ ପ୍ରାପ୍ତି ସ୍ୱୀକାର । ଆମ୍ଭେମାନେ କୃତଜ୍ଞତା ପୂର୍ବକ ସ୍ୱୀକାର କରୁଅଛୁଁ ଯେ ନିମ୍ନଲିଖିତ ପୁସ୍ତକମାନ ଗ୍ରନ୍ଥକର୍ତ୍ତାଙ୍କଠାରୁ ପ୍ରାପ୍ତ ହୋଇଅଛୁଁ ।

| ପୁସ୍ତକ | ଗ୍ରନ୍ଥକର୍ତ୍ତା |
|---|---|
| ସରଳ ବ୍ୟାକରଣ | ଶ୍ରୀଯୁକ୍ତ ଫକୀରମୋହନ ସେନାପତି |
| ଜୀବନ ଚରିତ | ଏଉଜନ |
| ବର୍ଣ୍ଣ ବୋଧକ | ତାରିଣୀଭୂଷଣ ଶର୍ମା |

( ସଂଖ୍ୟା ୩୨- ଅତିରିକ୍ତ ) ।

୪ । ଉତ୍କଳ ଭାଷୋନ୍ନତିବିଧାୟିନୀ ସଭା । ସନ ୧୮୬୭ ମସିହା ଜୁଲାଇ ମାସ ତା ୨୮ ଦିନରେ ଉତ୍କଳ ଭାଷୋନ୍ନତିବିଧାୟିନୀ ସଭାର ଉଦ୍ଦେଶ୍ୟ ସାଧନ କରିବାକୁ ନିଯୁକ୍ତ ହୋଇଥିବା ସଭ୍ୟମାନଙ୍କ ସଭାର ବିବରଣ ।

ଉପସ୍ଥିତ — ଶ୍ରୀଯୁକ୍ତ ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ
,, ,, ଜଗନ୍ମୋହନ ଲାଲ
,, ,, ଗୌରୀମୋହନ ବନ୍ଦ୍ୟୋପାଧ୍ୟାୟ
ପଣ୍ଡିତ ଆଦିତ୍ୟରାମ ତର୍କପଞ୍ଚାନନ
,, କପିଳେଶ୍ୱର ବିଦ୍ୟାଭୂଷଣ
ଶ୍ରୀଯୁକ୍ତ ବାବୁ ବନମାଳୀ ସିଂହ
,, ଗୋବିନ୍ଦ ଚନ୍ଦ୍ର ମହାପାତ୍ର
,, ଗୌରୀଶଙ୍କର ରାୟ

ଏ ସଭାରେ ତଳଲିଖିତ କଥାମାନ ନିଷ୍ପନ୍ନ ହେଲା, ଯଥା:—

୧ । ଉତ୍କଳ ଭାଷାରେ ଯେତେ ପୁସ୍ତକ ପ୍ରସ୍ତୁତ ହୋଇ ଏ ପ୍ରଦେଶରେ ବର୍ତ୍ତମାନ ଅଛି ସେ ସମସ୍ତର ଏକ ଫର୍ଦ୍ଦ ପ୍ରସ୍ତୁତ କରିବାକୁ ହେବ । ଉକ୍ତ ଫର୍ଦ୍ଦରେ ପ୍ରତ୍ୟେକ ପୁସ୍ତକର ନାମ, ଗ୍ରନ୍ଥକର୍ତ୍ତାଙ୍କ ନାମ, ଯେଉଁ ବିଷୟ କି ଚରିତ୍ର ତହିଁରେ ଲେଖାଅଛି ଏବଂ ଗ୍ରନ୍ଥକର୍ତ୍ତାଙ୍କ ଜୀବନବୃତ୍ତାନ୍ତ ବିଷୟ ଯାହା ଜଣା ଯାଇଅଛି — ଏହି ସକଳ ଲେଖା ହେବ । ଏ ଫର୍ଦ୍ଦ ପ୍ରସ୍ତୁତ କରିବା ଏକ ଅଧୀନ ସଭା ହେଲା । ସେଥିରେ ତଳଲିଖିତ ସଭ୍ୟମାନେ ନିଯୁକ୍ତ ହେଲେ, ଯଥା:—

ପଣ୍ଡିତ ଆନନ୍ଦଚନ୍ଦ୍ରପ୍ରାଣ ତର୍କ ପଞ୍ଚାନନ

„ କପିଳେଶ୍ୱର ବିଦ୍ୟାଭୂଷଣ

ଶ୍ରୀଯୁକ୍ତ ବାବୁ ବନମାଳୀ ସିଂହ

„ ଗୋବିନ୍ଦ ଚନ୍ଦ୍ର ମହାପାତ୍ର

„ ଗୌରୀଶଙ୍କର ରାୟ ।

୨ । ମିଶ୍ର ବିଦ୍ୟାଳୟର ପ୍ରବେଶିକା ପରୀକ୍ଷା ନିମନ୍ତେ ଏକଖଣ୍ଡ ପୁସ୍ତକ ସଂକଳନ କରା ଆବଶ୍ୟକ । ଅତଏବ ଏ କର୍ମ ସମ୍ପନ୍ନ କରିବା କାରଣ ନିମ୍ନଲିଖିତ ସଭ୍ୟଙ୍କୁ ଅନୁରୋଧ କରାଗଲା ଯେ ସେମାନେ ତାହାଙ୍କ ନାମ ସମ୍ମୁଖରେ ଲେଖାଥିବା ପୁସ୍ତକରୁ ବିଦ୍ୟାଳୟରେ ପଠନ ଯୋଗ୍ୟ ଉତ୍କୃଷ୍ଟ କବିତାମାନ ଉଦ୍ଧୃତ କରି ଉଚିତ କାଳମଧ୍ୟରେ ସଭାକୁ ଅର୍ପଣ କରିପାରିବେ । ସେ ସମସ୍ତ ସଭାର ମନୋନୀତ ହୋଇଲେ ଏକ ଖଣ୍ଡ ପୁସ୍ତକାକାରରେ ମୁଦ୍ରିତ ହେବ ।

| | |
|---|---|
| ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ<br>ପଣ୍ଡିତ ପ୍ରଭାକର ବିଦ୍ୟାରତ୍ନ | } ବୈଦେହୀଶ ବିଳାସ |
| ବାବୁ ପ୍ୟାରୀମୋହନ ବନ୍ଦ୍ୟୋପାଧ୍ୟାୟ<br>ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ | } ସୁଭଦ୍ରା ପରିଣୟ |
| ବାବୁ ବନମାଳୀ ସିଂହ<br>ବାବୁ ଗୋବିନ୍ଦ ଚନ୍ଦ୍ର ମହାପାତ୍ର | } ଭାଷା ଭାଗବତ |

୩ । ସଭାର ନିର୍ଦ୍ଦିଷ୍ଟ ବ୍ୟୟ ନିର୍ବାହ ନିମନ୍ତେ ଚେନ୍ଦା ସଂଗ୍ରହ କରିବାର ଆବଶ୍ୟକ ଥିବାରୁ ଧାର୍ଯ୍ୟ ହେଲା ଯେ ଏଥିପାଇଁ ଏକ ଚାନ୍ଦାବହି ପ୍ରସ୍ତୁତ ହେବ ଓ ବିଶେଷ ବ୍ୟକ୍ତିଙ୍କ ନିକଟକୁ ସ୍ୱତନ୍ତ୍ର ପତ୍ର ପଠାଯିବ । ପୁସ୍ତକାଦି ମୁଦ୍ରାଙ୍କନର ବ୍ୟୟ ପକ୍ଷରେ ପ୍ରଥମେ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ସହିତ ବନ୍ଦୋବସ୍ତ ହେବ ଓ ତଦୁତ୍ତରେ ଆବଶ୍ୟକ ହେଲେ ଉକ୍ତ କର୍ମ ନିମିତ୍ତ ପୃଥକ୍ ଚାନ୍ଦା ହେବ ଅବା ଅନ୍ୟ ଉପାୟ କରାଯିବ ।

୪ । ଉତ୍କଳ ଭାଷୋଦ୍ଦୀପିନୀ ସଭାର ଉଦ୍ଦେଶ୍ୟ ଇତ୍ୟାଦି ବିବରଣୀରେ ଏକପତ୍ର ଗବର୍ଣ୍ଣମେଣ୍ଟ ବଙ୍ଗାଳକୁ ପଠାଯିବ ଓ ଓଡ଼ିଶା ପ୍ରଦେଶର ସ୍କୁଲ ସମୂହରେ ପ୍ରଚଳିତ ହେବାପାଇଁ କୌଣସି ପୁସ୍ତକ ପ୍ରସ୍ତୁତ ହେଲେ ତାହା ବିଦ୍ୟାଳୟର ଉପଯୁକ୍ତ କିନା ଏ ବିଷୟରେ ଏ ସଭାର ମତାନୁସାରେ କର୍ମ ହେବ ।

୫ । ପଣ୍ଡିତ ପ୍ରହରାଜ ଦେୱାନଜିଙ୍କୁ ଏ ସଭାର ଜଣେ ସଭ୍ୟ ସ୍ୱରୂପ ନିଯୁକ୍ତ କରିଗଲେ ।

ଶ୍ରୀ ଗୌରୀଶଙ୍କର ରାୟ
ସେକ୍ରେଟରୀ

## ( ୩ୟ ଭାଗ, ୧୫ । ୨ । ୧୮୬୮, ସଂଖ୍ୟା ୭ )

୫ । ବିଜ୍ଞାପନ

କୃଷ୍ଣସିଂହ ମହାଭାରତ ଓ ହରିବଂଶ ।

× × ×

ଏହି ପୁସ୍ତକ ପାଠକଲେ କୁଳଧର୍ମ ଓ ଦେଶ ଜାତିଧର୍ମ ଓ ନୀତି ବିଦ୍ୟା ଏବଂ ସହଜେ ବାକ୍ୟଶୁଦ୍ଧତା ଏହା ସକଳ ଜଣାଯାଏ ଆହୁରି ମଧ୍ୟ ପଣ୍ଡିତମାନଙ୍କର ମନୋରଞ୍ଜନ ହୁଏ କେମନ୍ତ କି ସଂସ୍କୃତ ମହାଭାରତରେ ଯେଉଁ ଯେଉଁ କଷ୍ଟ ସ୍ଥଳସବୁ ଅଛି ତାହା ମଧ୍ୟ ଏଥିରେ ସ୍ପଷ୍ଟାର୍ଥ ହୋଇଅଛି ଏବଂ ଶାରଳା ଦାସଙ୍କ କୃତ ଭାଷା ଭାରତ ଯାହାକି ପ୍ରଚଳିତ ରହିଅଛି ତାକୁ ସଂସ୍କୃତ ଭାରତ ସଙ୍ଗେ ତୁଳନା କଲେ କୌଣସି ଅଂଶରେ ଐକ୍ୟ ନହୋଇ ବରଂ ଅନେକ ସ୍ଥଳରେ ଅଶୁଦ୍ଧତା ଥିବା ହେତୁରୁ ସଜ୍ଜନମାନଙ୍କର ଆନନ୍ଦକାରକ ହେଉନାହିଁ । ଏହି ପୁସ୍ତକକୁ ଧରାକୋଟ ଦେଶ ରାଜା କୃଷ୍ଣସିଂହ ନାମଧେୟ ଜଣେ ସମ୍ବତ ୧୮[illegible] ଅର୍ଥାତ୍ ଇଂରାଜୀ ୧୭୯୨ ସାଲରେ କବିସୂର୍ଯ୍ୟ ଓ ହରିଭୂଷଣ ପ୍ରଭୃତି ପ୍ରଧାନ ୨ ପଣ୍ଡିତଙ୍କ ସାହାଯ୍ୟରେ ସଂସ୍କୃତରୁ ଅନୁବାଦ କରିଥିଲେ ।

× × × ×

ପ୍ରକାଶ ଥାଉକି ଅଗ୍ରିମ ମୂଲ୍ୟ ପ୍ରଦାନ କର୍ତ୍ତାମାନେ ପୁସ୍ତକ ମୁଦ୍ରିତ ହେଲାରୁ ଉପରୋକ୍ତ ପ୍ରକାର ଯଥାର୍ଥ ମୂଲ୍ୟରୁ ଟ ୨ ଙ୍କା ନ୍ୟୂନରେ ଅର୍ଥାତ୍ ଟ ୧୮ ଙ୍କାରେ ସେହି ପୁସ୍ତକ ପାଇବେ । କଟକ, ପୁରୀ, ବାଲେଶ୍ୱର ଜିଲ୍ଲାନ୍ତର୍ଗତ ଗ୍ରାହକମାନେ କଟକ ପ୍ରିଣ୍ଟିଂକମ୍ପାନିଙ୍କ ସେକ୍ରେଟରୀ ଶ୍ରୀବାବୁ ଗୌରୀଶଙ୍କର ରାୟଙ୍କ ନିକଟରୁ ଏବଂ ସମ୍ବଲପୁରସ୍ଥ ଗ୍ରାହକମାନେ ସେହି ଜିଲ୍ଲା ଅନ୍ତର୍ଗତ ବିଦ୍ୟାଳୟ ସମୂହର ତତ୍ତ୍ୱାବଧାରକ ଶ୍ରୀଯୁକ୍ତ ବାବୁ ବଳଭଦ୍ର ପଟ୍ଟନାୟକ ମହାଶୟଙ୍କ ସମୀପରୁ ଅଥବା ଉକ୍ତ ଜିଲ୍ଲାନ୍ତର୍ଗତ ବରଗଡ଼ ତହସିଲଦାର ବାବୁ ବାଳମୁକୁନ୍ଦ ପଟ୍ଟନାୟକ ମହାଶୟଙ୍କ ନିକଟରୁ ଉକ୍ତ ପୁସ୍ତକ ନେବାର ସମ୍ମତି କିମ୍ବା ଅଗ୍ରୀମ ମୂଲ୍ୟ ପ୍ରଦାନ କଲେ ପୁସ୍ତକ ପାଇପାରିବେ ।

× × ×

ତା ୨୩ରିଖ ମାହେ ଅକ୍ଟୁବର
ସନ ୧୮୬୭ ସାଲ

ବଳଭଦ୍ର ପଟ୍ଟନାୟକ

## ( ୪ର୍ଥ ଭାଗ, ୨ । ୧ । ୧୮୭୯, ସଂଖ୍ୟା ୧ )

୨ ।

### ବିଜ୍ଞାପନ

ଭ୍ରମରଞ୍ଜନ ନାମା ଗୋଟିଏ କାବ୍ୟ ନିର୍ଗତହେଲା। ତହିଁ ଷଟପଦୀରେ ନାନାବିଧ କାବ୍ୟୋପଯୁକ୍ତ ବର୍ଣ୍ଣନା ଓ ଉପମା ସହିତ ବିବିଧ ରାଗରେ ସୁଛନ୍ଦରେ ରଚନା କରି ପ୍ରକାଶ କରିଅଛୁଁ ଓ ତହିଁର ତାତ୍ପର୍ଯ୍ୟ ଅତି ମହାନ ଅଟେ ଓ ପାଠଶାଳା-ମାନଙ୍କରେ ପ୍ରଚଳ ହେବାର ଓ ସର୍ବସାଧାରଣଙ୍କର ପାଠୋପଯୁକ୍ତ ଅଟେ । ଅମ୍ଭଠାରେ ଅଥବା କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଛାପାଖାନାରେ ତତ୍ତ୍ୱକଲେ ପୁସ୍ତକ ପ୍ରାପ୍ତ ହେବ । ମୂଲ୍ୟ ନଗଦ ଟ° ୷ ୬ ଓ ବାକି ଟ° ୷୯ । ଡାକରେ ପଠାଇବାକୁ ହେଲେ ଡାକ-ମାସୁଲ ଦେବାକୁ ହେବ ।

ଶ୍ରୀ ଜଗନ୍ମୋହନ ଲାଲ ।

## ( ୪ର୍ଥ ଭାଗ, ୯ । ୧ । ୧୮୭୯, ସଂଖ୍ୟା ୨ )

୨ ।

### ବିଜ୍ଞାପନ

ସର୍ବସାଧାରଣଙ୍କୁ ଜ୍ଞାତ କରାଯାଉଅଛି ଯେ ନିମ୍ନଲିଖିତ ଉତ୍କଳ ପୁସ୍ତକ-ମାନ ମୁଦ୍ରିତ ହୋଇ ପ୍ରସ୍ତୁତ ଅଛି । ଉପସ୍ଥିତ ଗ୍ରାହକମାନେ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ପଣ୍ୟାଳୟରେ ଅଥବା କଲିକତା ସ୍କୁଲ ବୁକ ସୋସାଇଟୀ ପଣ୍ୟାଳୟରେ କିମ୍ବା ଆମ୍ଭ ନିକଟରେ ତତ୍ତ୍ୱକଲେ ପ୍ରାପ୍ତ ହୋଇ ପାରିବେ । ଏ ପୁସ୍ତକମାନଙ୍କ ମଧ୍ୟରୁ ଶିଶୁପାଠ ପ୍ରଥମଭାଗ ଓ ଦ୍ୱିତୀୟ ଭାଗ ଆଉ ରଘୁବଂଶ ଏବଂ ଲାଲ ବସାକଙ୍କ ରଚିତ ଭାରତବର୍ଷର ଇତିହାସର ଦ୍ୱିତୀୟଭାଗ ଯେଉଁ ସବୁ ପୁସ୍ତକ କଲିକତା ପଣ୍ୟାଳୟରେ ମୁଦ୍ରିତ ହୋଇଥିଲା, ତାହା ସବୁ ବର୍ତ୍ତମାନ କଲିକତା ସ୍କୁଲ ବୁକ ସୋସାଇଟିରେ ପ୍ରାପ୍ତ ହେବ । ତହିଁମଧ୍ୟରୁ କେତେକ ପୁସ୍ତକ ନିକଟରେ କଟକରେ ପ୍ରବେଶ ହେବାର ଅଛି, ତାହାହେଲେ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ପଣ୍ୟାଳୟରେ ସୁଦ୍ଧା ପ୍ରାପ୍ତ ହେବ ।

ବାଲେଶ୍ୱର ନିବାସୀ ଶ୍ରୀଯୁକ୍ତ ବାବୁ ସଦାଶିବ ଦାସ ନାମଧେୟ ଜଣେ ବ୍ୟକ୍ତି ଚଳିତ ମାସ ତା ୮ ଦିନରେ ବାଲେଶ୍ୱର ସମ୍ବାଦ ବାହିକା ଓ ମାର୍ଗଶିରର ବୋଧଦାୟିନୀ ପତ୍ରିକାରେ ବିଜ୍ଞାପନ ଦେଇଅଛନ୍ତି ଯେ ସେ ଶ୍ରୀଯୁକ୍ତ ଶିଲ ବସାକଙ୍କ ରଚିତ ଭାରତବର୍ଷର ଇତିହାସକୁ ଉତ୍କଳ ଭାଷାରେ ଅନୁବାଦ କରିବା ବିଷୟରେ ପ୍ରବୃତ୍ତ ହୋଇଅଛନ୍ତି ମାତ୍ର ଅନ୍ୟ ଲୋକ ପ୍ରକାଶ କରିବାର ନିଷେଧ କରିଅଛନ୍ତି । ଅତଏବ ଆମ୍ଭେ ମଧ୍ୟ ଉଲ୍ଲିଖିତ ବାବୁ ମହାଶୟଙ୍କୁ ଜଣାଉଅଛୁଁ ଯେ ଉକ୍ତ ପୁସ୍ତକର ପ୍ରଥମ ଓ ଦ୍ୱିତୀୟଭାଗ ଆମ୍ଭ ଦ୍ୱାରା ଉତ୍କଳରେ ମୁଦ୍ରିତ ହୋଇ ବିକ୍ରୟାର୍ଥେ ପ୍ରସ୍ତୁତ ହୋଇଅଛି ଏବଂ ତୃତୀୟଭାଗ ସୁଦ୍ଧା ପନ୍ତାଳୟରେ ମୁଦ୍ରିତ ହେଉଅଛି ପ୍ରାୟ ଦୁଇମାସ ମଧ୍ୟରେ ତାହା ପ୍ରସ୍ତୁତ ହୋଇପିବ । ଅତଏବ ବାବୁ ମହାଶୟ ସେ ବିଷୟରୁ କ୍ଷାନ୍ତ ହେଲେ ଉତ୍ତମ ହେବ ଯେହେତୁ ଏକ ପୁସ୍ତକ ଦୁଇବାର ମୁଦ୍ରିତ ହେବାର ଅନାବଶ୍ୟକ । ଅଧିକନ୍ତୁ ଗୃହପାଠ ତୃତୀୟଭାଗ ଓ ସୀତା ବନବାସ ମଧ୍ୟ ପନ୍ତାଳୟରେ ମୁଦ୍ରିତ ହେଉଅଛି । ପ୍ରାୟ ନିକଟରେ ହୋଇପିବ ।

| ପୁସ୍ତକମାନଙ୍କର ନାମ | ମୂଲ୍ୟ | ପୁସ୍ତକମାନଙ୍କର ନାମ | ମୂଲ୍ୟ |
|---|---|---|---|
| ରଘୁବଂଶ | ୧୦୪୮ | କାଦମ୍ବରୀ | ୧୧୧ |
| ଗୃହପାଠ ପ୍ରଥମ ଭାଗ | ୧୦୮ | ବର୍ଣ୍ଣ ପରିଚୟ | ୧୦/୧୦ |
| ଏଜାନ ଦ୍ୱିତୀୟ ଭାଗ | ୧୦୮ | ବ୍ୟାକରଣ-ସଂକ୍ଷେପ | ୧୦। |
| ଶ୍ରୀ ଶିଲ ବସାକଙ୍କ ଭାରତବର୍ଷର | | ବୋଧୋଦୟ | ୧୦୬ |
| ଇତିହାସ ପ୍ରଥମ ଭାଗ | ୧୦୪୮ | ଭୂଗୋଲ ସୂତ୍ର | ୧୦।/ |
| ଏଜାନ ଦ୍ୱିତୀୟ ଭାଗ | ୧୦୪୮ | | |

ସମ୍ବଲପୁର
ତା ୨୮ ଘର୍ଷ ଦପମ୍ବର
ସନ ୧୮୬୯ ମସିହା

ଶ୍ରୀ ବଳଭଦ୍ର ପଟ୍ଟନାୟକ
ସମ୍ବଲପୁରସ୍ଥ ବିଦ୍ୟାଳୟ ସମ୍ପୁଦ୍ରର ତତ୍ତ୍ୱାବଧାରକ

(୮ମ ଭାଗ, ୪।୮।୧୮୭୩, ସଂଖ୍ୟା ୩୨)

୮। ଉତ୍କଳ ହିତୋଦ୍ଦୀପିନୀ ସଭା।

ଏହି କାମରେ ଗୋଟିଏ ସଭା ଏ ନଗରରେ ସ୍ଥାପିତ ହୋଇଅଛି ବୋଲି ଏକମାସ ହେବ 'ଉତ୍କଳଦୀପିକା'ର ପାଠକମାନେ ଅବଗତ ହୋଇଥିବେ । ମାତ୍ର ଆମ୍ଭମାନେ ତହିଁର ବିଶେଷ ପରିଚୟ କିଛି ପାଇ ନଥିବାରୁ ଏପର୍ଯ୍ୟନ୍ତ ପାଠକମାନଙ୍କୁ

ଜଣାଇନଥିଲୁଁ । ଗତ ସପ୍ତାହରେ ଉକ୍ତ ସଭାର ସମ୍ପାଦକ ଶ୍ରୀ ପଣ୍ଡିତ ପ୍ରହ୍ଲାଦ ବ୍ୟୋ-ରହଙ୍କଠାରୁ ସଭା ସଂକ୍ରାନ୍ତ ସମସ୍ତ ବିବରଣ ଓ ନିୟମାବଳୀ ଓ କାର୍ଯ୍ୟ ବର୍ତ୍ତମାନ ଅବଗତ ହେଲୁଁ ଯେ ଏ ସଭା ଗତ ଜୁଲାଇମାସ ଆଦ୍ୟରୁ ଆରମ୍ଭ ହୋଇ ପ୍ରତି ରବିବାର କଟକ ନର୍ମାଲସ୍କୁଲ ଗୃହରେ ଏହାର ଅଧିବେଶନ ହେଉଅଛି । ସଭାର ଉଦ୍ଦେଶ୍ୟ ଏହାରୂପେ ବର୍ଣ୍ଣିତ ହୋଇଅଛି ଯଥା "ମଦ୍ଧ୍ୟାମ ଉତ୍କଳଭାଷାର ଉନ୍ନତି ଓ ଉତ୍କଳ ପାଠ୍ୟ ପୁସ୍ତକାଦିର ସମାଲୋଚନା ଏବଂ ଆଧୁନିକ ଶିକ୍ଷିତ ବ୍ୟକ୍ତିମାନଙ୍କର ବକ୍ତୃତା ଓ ରଚନା ଶକ୍ତିର ବୃଦ୍ଧି ଆଉ ତର୍କ ବିତର୍କ ପ୍ରଭୃତି ।" ଉଦ୍ଦେଶ୍ୟ ଅବଶ୍ୟ ଭଲ ତହିଁରେ ସନ୍ଦେହ ନାହିଁ ଓ ସଭ୍ୟଗଣ ପ୍ରାୟ ସମସ୍ତେ ନର୍ମାଲ ଓ ହାଇସ୍କୁଲର ଶିକ୍ଷକ ଓ ଛାତ୍ର ଅଟନ୍ତି । ଅତଏବ ଦେଖାଯାଏ ଯେ ସଭ୍ୟଶ୍ରେଣୀଭୁକ୍ତ ହୋଇଥିବା ଶିକ୍ଷକ ଓ ଛାତ୍ରମାନେ କି ଯାହାଙ୍କଦ୍ୱାରା ଦେଶର ଉନ୍ନତି ହେବାର ଆଶା କରାଯାଇପାରେ ସେମାନେ ଆପଣା ଗୁରୁଭାରର ମହତ୍ତ୍ୱ ବୁଝିବାର ଉଚିତ ବୁଝିଅଛନ୍ତି । ଏହା ସୁଖର ବିଷୟ ଅଟଇ । ସଭାର ପ୍ରଥମ ଅଧିବେଶନଠାରୁ ଅବଧି ଯେଉଁ ବିଷୟ ସବୁର ଚର୍ଚ୍ଚା ହୋଇଅଛି ତହିଁରୁ ପ୍ରତ୍ୟେକ ହୁଅଇ ଯେ ପ୍ରକୃତ ବିଷୟ ସବୁର ସମା-ଲୋଚନା ହେଉଅଛି । ପାଠକଙ୍କ ଜାଣିବା କାରଣ ଲେଖୁଅଛୁଁ ଯେ ଭୂଗୋଳର ଫଳ; ଉତ୍କଳଭାଷାର ପୂର୍ବାପର ଅବସ୍ଥା, ଉତ୍କଳୀୟମାନଙ୍କର ପୂର୍ବାପର ସଭ୍ୟତାର ଉନ୍ନତି ଇତ୍ୟାଦି ବିଷୟରେ ରଚନା ପାଠ ଓ ତର୍କ ବିତର୍କ ହୋଇଅଛି । ସଭ୍ୟଙ୍କର ସଂଖ୍ୟା ପଞ୍ଚାଶ ଜଣରୁ ନ୍ୟୂନ ହେବନାହିଁ ଓ ପ୍ରତି ଅଧିବେଶନରେ ଚାରି ୪୦ ଜଣରୁ ଊଣା ଉପସ୍ଥିତି ହୁଅନ୍ତିନାହିଁ । ସଭ୍ୟମାନେ ଯେପରି ଉତ୍ସାହପୂର୍ବକ ଏ ସଭାର ଉଦ୍ଦେଶ୍ୟ ସଫଳ କରିବାକୁ ଯତ୍ନବାନ ଅଛନ୍ତି ଏଥିରୁ ବଳକରି ତହିଁର କି ପରିଚୟ ଦିଆ ଯାଇପାରେ । ଆମ୍ଭେମାନେ ଭରସା କରୁଁ ଯେ ଏ ସଭାହିଁ ଯାବଜ୍ଜୀବନ ହେଉ ଓ ପ୍ରଥମ ମାସ ଏହାର କାର୍ଯ୍ୟ ଯେପରି ଚାଲିଅଛି ତହିଁରୁ ଅନୁମାନ ହୁଅଇ ଯେ ଆମ୍ଭମାନଙ୍କର ଆଶା ପୂର୍ଣ୍ଣହେବ । ତେବେ ଦୁଃଖର ସହିତ କହିବାକୁ ହେଉଅଛି ଯେ ଏ ନଗରରେ ସମୟ ୨ ରେ ସ୍ଥାପିତ ହୋଇଥିବା ଅନେକ ସଭାର ଅବସ୍ଥା ଦେଖି ଆମ୍ଭମାନଙ୍କର କୁସଂସ୍କାର ଜନ୍ମିଅଛି ଯେ ଓଡ଼ିଶାକୁ ସଭା ସହଇ ନାହିଁ । ଉତ୍କଳଭାଷୋଦ୍ଦୀପିନୀ ସଭାକୁ ଏତିକି ପ୍ରାର୍ଥନା ଯେ ପ୍ରତ୍ୟକ୍ଷ ପ୍ରମାଣ ଦର୍ଶାଇ ଆମ୍ଭମାନଙ୍କୁ ଉକ୍ତ କୁସଂସ୍କାରରୁ ମୁକ୍ତ କରନ୍ତୁ ।

( ୮ମ ଭାଗ, ୨୨ । ୧୧ । ୧୮୭୩, ସଂଖ୍ୟା ୪୭ )

୫ । ସ୍ୱଦେଶୀ

ଏହି ନାମରେ ଗଣ୍ଡିଏ ନୂତନ ପତ୍ରିକା ଏ ନଗରରେ ବାହାରିଅଛି ।

ମାର୍ଗଶୀର ମାସ ଭାରତଖଣ୍ଡରେ ଏହାଙ୍କର ପ୍ରଥମ ପ୍ରବେଶ ହେଲା । ଏ ଖଣ୍ଡିକ ମଧ୍ୟ ପାକ୍ଷିକପତ୍ର ଓ ମୂଲ୍ୟ ଏକଟଙ୍କା । ଏହାଙ୍କୁ ନେଇ ବର୍ତ୍ତମାନ କଟକରେ ଚାରିଖଣ୍ଡି ପାକ୍ଷିକପତ୍ର ହେଲା ଓ ସମସ୍ତଙ୍କର ଏହିବର୍ଷ ମଧ୍ୟରେ ପ୍ରାଦୁର୍ଭାବ ଦେଖି ଆମ୍ଭେମାନେ ଅନେକଙ୍କ ଅଛୁଁ ଯେ ପାକ୍ଷିକ ସମ୍ବାଦପତ୍ର ବାହାର କରିବା ଗୋଟିଏ ରୋଗ ହୋଇ-ଅଛି । ଓଡ଼ିଶା ପରି କ୍ଷୁଦ୍ର ସ୍ଥାନରେ ଏତେ ପତ୍ରିକା ବାହାରିବାର ଆନନ୍ଦର ବିଷୟ ନୁହଇ କାରଣ ସମସ୍ତେ ରୋଗୀ ହେଲେ ଔଷଧ ଦେବ କିଏ ? ବୋଧହୁଏ ବିଦେଶୀ ପତ୍ରରେ ଉକ୍ତ ବାର୍ତ୍ତା ପ୍ରବର୍ତ୍ତି ନାହିଁ ଦେଖିଲୁ ଅନେକ ଲୋକ ବିଦେଶକୁ ବାହାରିଲେ ଆପଣା ପାଥେୟ ବ୍ୟୟ ସଙ୍ଗରେ ଆଣିଥାନ୍ତି, ତେବେ ବିଦେଶୀ କି ଅଭିପ୍ରାୟରେ ଆଗମନ କରିଅଛନ୍ତି ବିସ୍ତାର କରିବାର ଆବଶ୍ୟକ । ଆମ୍ଭ ପତ୍ରପାଠରୁ ଜଣାଯାଏ ଯେ ଓଡ଼ିଶାର ମଙ୍ଗଳ କରିବା ଓ ଭିନ୍ନ ୨ ସମ୍ପ୍ରଦାୟ ମଧ୍ୟରେ ପ୍ରେମ ଓ ବନ୍ଧୁଭାବ ସ୍ଥାପନ କରିବା ଏହାଙ୍କର ଉଦ୍ଦେଶ୍ୟ ଅଟଇ ଅଥଚ ବଙ୍ଗାଳୀ ଓ ଉତ୍କଳୀୟଙ୍କ ମଧ୍ୟରେ ଯେ ମନାନ୍ତର ବୃଦ୍ଧି ଆସୁଅଛି ତାହାକୁ ଲକ୍ଷ୍ୟକରି କହୁଅଛନ୍ତି ଯେ ଏକଜାତୀୟ ଲୋକ ଅନ୍ୟ ଜାତୀୟ ଲୋକଙ୍କୁ ଘୃଣା କରିବାରେ କିଛି କାରଣ ନାହିଁ ଓ ଏ ଦୋଷମନ୍ତ୍ରୀ ହୃତ ନିର୍ମଳ ହେବାର ଅନେକ କାଳ ବିଳମ୍ବ ଅଛି । ତେବେ ବିଦେଶୀ ଏତେ ତରତର ହୋଇ କାହିଁକି ପଦକ୍ରମ କରି ଆସିଲେ ? ବିଦେଶୀଙ୍କ ଭାଷାର ଜଣାଯାଏ ଯେ ସେ ଅଳ୍ପକାଳ ହେଲା ଓଡ଼ିଶାକୁ ଆସିଅଛନ୍ତି କିନ୍ତୁ ସମ୍ବାଦପତ୍ର ପ୍ରଚାର ଦ୍ୱାରା ଓଡ଼ିଶାର ମଙ୍ଗଳ ଚେଷ୍ଟା କରିବା ପୂର୍ବେ ଉତ୍କଳଭାଷା ଭଲକରି ଶିଖିଲେ ଭଲହେବ । ବର୍ତ୍ତମାନ ଯେଉଁପ ଭାଷାରେ ସେ ଆପଣା ଅଭିପ୍ରାୟମାନ ବ୍ୟକ୍ତ କରିଅଛନ୍ତି ତାହା ଦେଖି ଆମ୍ଭମାନଙ୍କର ଏହି ଶଙ୍କା ହେଉଅଛି ଯେ ତାହାଙ୍କୁ ବଙ୍ଗବାସୀ ମନେକରି କେହି ନ ଶୁଣି ଅଗ୍ରାହ୍ୟ କରନ୍ତି ।

## ( ୧୦ମ ଭାଗ, ୨ଶ । ୧ । ୧୮୭୫, ସଂଖ୍ୟା ୪ )

୧୦ । ରାମବିଳାସ । (ସପ୍ତ ଶ୍ରୀ ରାମାୟଣ ଚରିତ) । ଏହା ଉତ୍କଳଭାଷା ଓ ଗଦ୍ୟରେ ଆମ୍ଭଦ୍ୱାରା ବିରଚିତ ଏବଂ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ-ହୋଇ ବିକ୍ରୟ ହେଉଅଛି । ମୂଲ୍ୟ ଟ୧୦/ । ମୋଫସଲ ଗ୍ରାହକଙ୍କୁ ମୂଲ୍ୟ ଛଡ଼ା ଡାକ ମାସୁଲ ଦେବାକୁ ହେବ ।

୨୨ । ୧ । ୭୫ — ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣ ।

## ( ୧୨ଶ ଭାଗ, ୩ । ୧୧ । ୧୮୭୭, ସଂଖ୍ୟା ୪୩ )

୧୧ । **ବାବାଜୀ ନାଟକ ।**

ବାବୁ ଜଗନ୍ମୋହନ ଲାଲଙ୍କ କୃତ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ।

ଆମ୍ଭେମାନେ ଏ ପୁସ୍ତକଖଣ୍ଡି ଅତ୍ୟନ୍ତ ସମାଦରେ ସହିତ ଗ୍ରହଣ କରିଅଛୁଁ । ଓଡ଼ିଆ ଭାଷାରେ ଏ ପର୍ଯ୍ୟନ୍ତ ନାଟକ ରଚନା ହୋଇନଥିଲା । ଏହି ପୁସ୍ତକ ତହିଁର ପ୍ରଥମ ଉଦ୍ୟମ ଅଟଇ । ବାବୁ ଜଗନ୍ମୋହନ ଲାଲ ଓଡ଼ିଆ ସାହିତ୍ୟ ସମାଜରେ ନିତାନ୍ତ ଅପରିଚିତ ନୁହନ୍ତି । ସମାଲୋଚିତ ଗ୍ରନ୍ଥ ରଚନାରେ ସେ ଅଧିକ କୃତକାର୍ଯ୍ୟ ହୋଇଅଛନ୍ତି । ଇଂରାଜୀ ଓ ସଂସ୍କୃତ ନାଟକର ଲକ୍ଷଣାନୁସାରେ ଏହାକୁ ପ୍ରକୃତ ନାଟକ ବୋଲିବାକୁ ମନ ବଳୁନାହିଁ ସତ୍ୟ ମାତ୍ର ବଙ୍ଗଳା ଭାଷାରେ ନାଟକ ନାମରେ ଯେତେ-ପ୍ରକାର ରଚନା ବାହାରିଅଛି ତହିଁସଙ୍ଗେ ତୁଳନା କଲେ ଏହାର ନାମ ନାଟକ ହେବା ବଡ଼ ଦୂଷଣୀୟ ନୁହଇ । ନିତାନ୍ତ ପକ୍ଷରେ ନାଟକର ଭାଷା ଓ ରଚନାର ଛଟା କିପ୍ରକାର ହେବ ଏହାକୁ ଅତି ଚମତ୍କାର ରୂପେ ଗ୍ରନ୍ଥକର୍ତ୍ତା ଦର୍ଶାଇ ଅଛନ୍ତି ଓ ଅନେକ ଲୋକ ଏହାକୁ ଆଗ୍ରହପୂର୍ବକ ପଢ଼ିବାର ଦେଖାଯିବାରୁ ଅନାୟାସରେ ବୋଲିଯାଇ ପାରେ ଯେ ବର୍ତ୍ତମାନର ରୁଚିକୁ ଏହା ବଡ଼ ସୁନ୍ଦର ଦେଖାଉଅଛି । ଭଣ୍ଡ ମଠଧାରୀଙ୍କ ଦୋଷ ପ୍ରକାଶ କରିବା ଏବଂ ଭୂତ ଡାଆଣୀ ଜଡ଼ି ମନ୍ତ୍ର ଇତ୍ୟାଦି ବିଷୟରେ ଲୋକଙ୍କର ଭ୍ରମ ଓ କୁସଂସ୍କାର ଛେଦନ କରିବା ଏ ଗ୍ରନ୍ଥର ମୋଖ୍ୟ ଉଦ୍ଦେଶ୍ୟ ଜଣାଯାଏ ଓ ତହିଁରେ ଗ୍ରନ୍ଥକର୍ତ୍ତା ଆଶାତିରିକ୍ତ କୃତକାର୍ଯ୍ୟ ହୋଇଅଛନ୍ତି । ସଙ୍କ୍ଷେପରେ ଆମ୍ଭମାନଙ୍କର ମନ୍ତବ୍ୟ ଏହି ଯେ ପୁସ୍ତକ ଖଣ୍ଡିକ ଉତ୍ତମ ହୋଇଅଛି । ଏହାଦ୍ୱାରା ନାଟକର ବାଟ ଫିଟିଲା ଏଥର ଅନ୍ୟାନ୍ୟ କୃତବିଦ୍ୟମାନେ ଏ ପକ୍ଷରେ ମନ ଦେଲେ ଅଚିରେ ପ୍ରକୃତ ନାଟକ ଓଡ଼ିଆ ଭାଷାରେ ବାହାରିପାରେ ।

୧୨ । **ଉତ୍କଳ ମଧୁପ**

'ଉତ୍କଳ ମଧୁପ' ନାମରେ ଏକଖଣ୍ଡ ମାସିକପତ୍ର ଏ ସପ୍ତାହରେ ଉପହାର ପାଇ ଅତ୍ୟନ୍ତ ପ୍ରୀତ ହୋଇଅଛୁଁ । ଓଡ଼ିଶାରେ ଏପରି ପତ୍ର ନଥିବା ଲଜ୍ଜାର ବିଷୟ ଅଟଇ । ବାଲେଶ୍ୱରରେ ପ୍ରଥମେ ଏହାର ଚେଷ୍ଟା ହୋଇଥିଲା ମାତ୍ର ତାହା ରହିପାରିଲା ନାହିଁ ଓ ରହନ୍ତା ଅବା କପରି । ସର୍ବସାଧାରଣଙ୍କ ସାହାଯ୍ୟ ଉପରେ ଯାହାର ଅସ୍ତିତ୍ୱ ନିର୍ଭର କରଇ ତାହା ଦୁଇ ଗୁରୁଜଣର ଚେଷ୍ଟାରେ କପରି ହେବ ?

ଓଡ଼ିଶା ବଙ୍ଗଳାଠାରୁ ଶିକ୍ଷା ଓ ଅଶିକ୍ଷିତ ଦେଶ ହେଲେହେଁ ଏଠାରେ ଯେତେ ଧନବାନ୍ ଓ ଶିକ୍ଷିତ ଲୋକ ଅଛନ୍ତି କେବଳ ସେହିମାନଙ୍କ ସାହାଯ୍ୟରେ ଖଣ୍ଡିଏ ମାସିକପତ୍ର ଜୀବିତ ରହିବା କଠିନ ନୁହେଁ । ବର୍ଷକରେ ୫୧୦ଟଙ୍କା ଦେବା ଭଳି ଲୋକ ଓଡ଼ିଶାରେ ଊଣା ନାହାନ୍ତି ତେବେ ମନହେବା ଆବଶ୍ୟକ । ଆମ୍ଭେମାନେ ଆଶାକରୁଁ ଯେ ଉତ୍କଳବାସୀମାନେ ଏଥିପୂର୍ବେ ମାସିକପତ୍ର ପ୍ରତି ଯେଉଁପ୍ରକାର ଅନାଦର ଦେଖାଇ ଅଛନ୍ତି ବର୍ତ୍ତମାନ ସେମନ୍ତ ସେପରି କରିବେ ନାହିଁ ଓ ସେପରି ହେଲେ ଓଡ଼ିଶାରେ ଶିକ୍ଷାର ଉନ୍ନତି ହୋଇଅଛି ଏମନ୍ତ ବୋଲିବା ନିତାନ୍ତ ଅଯୌକ୍ତିକ ହେବ । ଆମ୍ଭେ-ମାନେ ପ୍ରଥମ ସଂଖ୍ୟା ପାଠକରି ଆନନ୍ଦିତ ହୋଇଅଛୁଁ । ବାସ୍ତବରେ ଏହା ସୁପାଠ୍ୟ ହୋଇଅଛି ଏବଂ ସାହାଯ୍ୟ ପାଇଲେ ଏହା କ୍ରମେ ଭଲ ହେବ ଏମନ୍ତ ଲକ୍ଷଣ ଦେଖା ଯାଉଅଛି । ପତ୍ରିକା ଖଣ୍ଡି ଦୀର୍ଘଜୀବୀ ହେଉ ଏହି ଆମ୍ଭମାନଙ୍କର ଆଶା ।

## ( ୧୪ଶ ଭାଗ, ୨୦ । ୯ । ୧୮୭୯, ସଂଖ୍ୟା ୩୮ )

୧୩ । ଓଡ଼ିଶାର ଇତିହାସ ।

ଏହି ପୁସ୍ତକ ଅତି ଅଳ୍ପ ଦିନ ହେଲା କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରୁ ବାହାରିଅଛି ଏବଂ ଆମ୍ଭେମାନେ ଏହାରୁ ଏକଖଣ୍ଡ ଗ୍ରନ୍ଥକର୍ତ୍ତାଙ୍କଠାରୁ ଉପହାରପ୍ରାପ୍ତ ହୋଇ ଅତ୍ୟନ୍ତ ଆଦରପୂର୍ବକ ଗ୍ରହଣ କରି ତହିଁପାଇଁ କୃତଜ୍ଞତା ସ୍ୱୀକାର କରୁଅଛୁଁ । ଗ୍ରନ୍ଥକର୍ତ୍ତା ବାବୁ ପ୍ୟାରୀମୋହନ ଆଚାର୍ଯ୍ୟ । ଦୀପିକା ପାଠକଙ୍କଠାରେ ଏ ଓଡ଼ିଶାବାସୀ କୃତବିଦ୍ୟ ପୁରୁଷ ଅପରିଚିତ ନୁହନ୍ତି କାରଣ ଅନେକ ସଭା ଓ ବକ୍ତୃତା ପ୍ରସଙ୍ଗରେ ଏହାଙ୍କର ଯେ ଉଲ୍ଲେଖ ଆମ୍ଭେମାନେ କରିଅଛୁଁ ଏବଂ ଏଥିପୂର୍ବେ ଉତ୍କଳପୁତ୍ର ନାମରେ ଯେଉଁ ସମ୍ବାଦପତ୍ର ଏଠାରେ ପ୍ରଚାରିତ ହେଉଥିଲା ତଦ୍ଦ୍ୱାରା ମଧ୍ୟ ସର୍ବସାଧାରଣ ଏହାଙ୍କର ଯଥେଷ୍ଟ ପରିଚୟ ପାଇଅଛନ୍ତି ।

ଓଡ଼ିଆ ଭାଷାରେ ଓଡ଼ିଶାର ଇତିହାସ ଆଦୌ ନଥିଲା କହିଲେ ଅତ୍ୟୁକ୍ତି ହେବନାହିଁ କାରଣ ସଟନ ସାହେବଙ୍କ ସଙ୍କଳିତ ପୁସ୍ତକ କେବଳ ନାମ ମାତ୍ର ଇତିହାସ ଅଟଇ । ଓଡ଼ିଶା ଶିକ୍ଷାବିଭାଗର କର୍ମକର୍ତ୍ତାମାନେ ଏ ଗୁରୁତର ଅଭାବ ମୋଚନ କରିବା ଉଦ୍ଦେଶ୍ୟରେ ସନ ୧୮୭୫ ସାଲରେ ଖଣ୍ଡିଏ ଉତ୍ତମ ଓଡ଼ିଶାର ଇତିହାସ ସକାଶେ ୫୦୦୦ ପାରିତୋଷିକ ଦେବା ବିଷୟରେ ବିଜ୍ଞାପନ ଦେବାରୁ ତହିଁର ଫଳସ୍ୱରୂପ ଏ ପୁସ୍ତକଖଣ୍ଡି ବାହାରିଅଛି । ଆମ୍ଭେମାନେ ଏହାର ଅନେକାଂଶ ପାଠକରି ଅତ୍ୟନ୍ତ ଆନନ୍ଦ ଲାଭ କରିଅଛୁଁ ଏବଂ ବିବେଚନା କରୁଁ ଯେ ଗବର୍ଣ୍ଣମେଣ୍ଟଙ୍କର ପ୍ରଦତ୍ତ ଟଙ୍କା ସତ୍ପାତ୍ରରେ ପଡ଼ିଥିବାରୁ ସୁନ୍ଦର ଫଳ ଜାତ କରିଅଛି । ଓଡ଼ିଶାର

ଇତିହାସ ଓ ପ୍ରାଚୀନ ଗୌରବ ଏବଂ ଆଧୁନିକ ଅବସ୍ଥା ସମ୍ବନ୍ଧରେ ଷ୍ଟର୍ଲିଂ ହଣ୍ଟର ଟ଼ଏନବ ସାହେବମାନେ ଏବଂ ବାବୁ ରାଜେନ୍ଦ୍ରଲାଲ ମିତ୍ର ଯେ ସମସ୍ତ ଗ୍ରନ୍ଥମାନ ଲେଖି-ଅଛନ୍ତି ଏବଂ ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟଙ୍କ ପରିଶ୍ରମରେ ତାମ୍ରପଟ୍ଟା ସନନ୍ଦ ଏବଂ ଅନ୍ୟାନ୍ୟ ସୂତ୍ରରୁ ଯେ ସମସ୍ତ ଐତିହାସିକ ଓ ଅନ୍ୟ ବିବରଣମାନ ଜଣା ଯାଇଅଛି ଗ୍ରନ୍ଥକାର ସେ ସମସ୍ତ ସମସ୍ତର ସାରମର୍ମ ସଙ୍କଳନ କରିବାରେ ଯଥାସାଧ୍ୟ ଅଧ୍ୟବସାୟ ଦେଖାଇଅଛନ୍ତି ଏବଂ ଅନ୍ୟାନ୍ୟ ସ୍ଥଳରୁ ମଧ୍ୟ ଉପକରଣ ସଂଗ୍ରହ କରିବାରେ ତ୍ରୁଟି କରିନାହାନ୍ତି । ଆମ୍ଭେମାନେ ଏଥିପାଇଁ ତାହାଙ୍କୁ ଧନ୍ୟବାଦ ଦେଉଅଛୁଁ । ଏ ପୁସ୍ତକ ରଚନା ପ୍ରଣାଳୀ ସୁନ୍ଦର ଏବଂ ଏହା ସର୍ବାଂଶରେ ସୁପାଠ୍ୟ ଅଟଇ । କିନ୍ତୁ ସାଧୁଭାଷା ସଙ୍ଗେ ୨ ଗୋଟିଏ ଅଧ ଗ୍ରାମ୍ୟ ଭାଷା ଏବଂ ଦୁଇ ଏକ ସ୍ଥଳରେ ଅସଙ୍ଗତ ଭାବ ଇତ୍ୟାଦି ଦୋଷ ଆମ୍ଭମାନଙ୍କର ଦୃଷ୍ଟି ପଥରେ ଆସିଥିଲେହେଁ ଏହିର ଉଲ୍ଲେଖ ଆବଶ୍ୟକ ନରଣେ ବିଶେଷତଃ ଭୂମିକାରେ ଗ୍ରନ୍ଥକାର ସ୍ୱୟଂ ସ୍ୱୀକାର କରିଅଛନ୍ତି ଯେ ତାହାଙ୍କର ପୀଡ଼ା ଏବଂ ଅନ୍ୟାନ୍ୟ କାରଣରୁ ଭ୍ରମ ସଂଶୋଧନ ପକ୍ଷରେ ସମ୍ପୂର୍ଣ୍ଣ ପ୍ରତିବିଧାନ କରି ପାରିନାହାନ୍ତି । ସୁତରାଂ ଆମ୍ଭେମାନେ ଆଶା କରୁଁ ଯେ ଦ୍ୱିତୀୟ ସଂସ୍କରଣରେ ସେସବୁ ଅନ୍ତର୍ହିତ ହେବ ।

ପରିଶେଷରେ ଆମ୍ଭେମାନେ ଓଡ଼ିଶାବାସୀ ସର୍ବସାଧାରଣଙ୍କୁ ବିଶେଷରେ ରାଜା ଜମିଦାର ପ୍ରଭୃତିଙ୍କୁ ଏ ଗ୍ରନ୍ଥ ପାଠକରି ଏଥିଲିଖିତ ବିଷୟମାନ ଆଲୋଚନା କରିବାକୁ ପ୍ରାର୍ଥନା କରୁଁ । ତାହାହେଲେ ସେମାନେ ସ୍ୱଦେଶର ପୂର୍ବକାଳର ଗୌରବକୁ ସ୍ମରଣ କରି ପୁନର୍ବାର ତାହା ପ୍ରତ୍ୟକ୍ଷ କରିବାକୁ ବ୍ୟଗ୍ର ହେବେ ଏବଂ ଉତ୍ସାହପୂର୍ବକ ଉନ୍ନତିର ଚେଷ୍ଟା କରିବେ । ଆଉ ବିଦ୍ୟାଳୟ ସକାଶେ ଯେସ୍ଥଳେ ପୁସ୍ତକ ମନୋନୀତ ହୋଇଅଛି ସେସ୍ଥଳେ ବିଦ୍ୟାଳୟର ପାଠ୍ୟ ପୁସ୍ତକ କରିବାକୁ ଶିକ୍ଷା କର୍ମଚାରୀଙ୍କଠାରେ ଅନୁରୋଧ କରିବା ବାହୁଲ୍ୟ ମାତ୍ର ।

## ( ୧୫ଶ ଭାଗ, ୧୪ । ୨ । ୧୮୮୦, ସଂଖ୍ୟା ୭ )

୨୪ ।

### କାଞ୍ଚିକାବେରୀ

ଏହି ନାମରେ ଗୋଟିଏ ବଙ୍ଗଳା ପଦ୍ୟ ଗ୍ରନ୍ଥ ଆମ୍ଭେମାନେ ଉପହାର ପାଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏହାର ରଚୟିତା ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ । କଲିକତା ଗଣେଶ ଯନ୍ତ୍ରରେ ମୁଦ୍ରିତ ହୋଇଅଛି ।

କାଞ୍ଚିକାବେରୀ ଆଖ୍ୟାନଟି ଉତ୍କଳବାସୀଙ୍କୁ ଅଜଣା ନାହିଁ । ଏ କଥାଟିରେ ଗୋଟିଏ ଓଡ଼ିଆ ପଦ୍ୟଗ୍ରନ୍ଥ ଅଛି ଓ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ କଳାପଲା ଅଶ୍ୱାରୋହୀ ଓ ମାଣିକୀ ଗୌଉଡ଼ୁଣୀର ରୂପ ଖୋଦିତ ଓ ଚିତ୍ରିତ ହୋଇଅଛି । ଏଥିନିମନ୍ତେ ପ୍ରତିବର୍ଷ ଏକ ବୈଶାଖରେ ଜଗନ୍ନାଥଙ୍କର ମଧ୍ୟ ଏକ ଦିନ କାଞ୍ଚିକାବେରୀ ବେଶ ହୋଇଥାଏ । ସୁତରାଂ ତାହାର ବୃତ୍ତାନ୍ତ ପ୍ରାୟ ସମସ୍ତେ ଜାଣନ୍ତି । ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ମଧ୍ୟ ଏ ଜିଲ୍ଲାରେ ବହୁକାଳ ଡେପୁଟୀ କଲେକ୍ଟର ଥାଇ ସମସ୍ତଙ୍କ ଠାରେ ପରିଚିତ ହୋଇ ଅଛନ୍ତି ଓ ଯେଉଁମାନେ ବଙ୍ଗଳା ଭାଷା ପାଠ କରୁଅଛନ୍ତି ସେମାନେ ଅବଶ୍ୟ ଜାଣିଥିବେ ଯେ ବାବୁ ଜଣେ ପ୍ରଧାନ କବି ଓ ଗ୍ରନ୍ଥକର୍ତ୍ତା ଅଟନ୍ତି । ଏଥିଉତ୍ତାରୁ ସମାଲୋଚିତ ଗ୍ରନ୍ଥଟି ଉତ୍ତମ ହୋଇଅଛି ଏହା ବୋଲିବା ବାହୁଲ୍ୟ ଅଟଇ । ଫଳତଃ ଆମ୍ଭେମାନେ ଏ ଗ୍ରନ୍ଥଟି ପାଠକରି ଅତ୍ୟନ୍ତ ପ୍ରୀତ ହୋଇଅଛୁଁ ଏବଂ ଓଡ଼ିଶାର ଗୋଟିଏ ଐତିହାସିକ ବିବରଣ ବଙ୍ଗଳା ଛନ୍ଦରେ ସୁଲଳିତ ଭାଷାରେ ପ୍ରକାଶ ହୋଇଥିବାରୁ ଅଧିକ ଆଦରର ସାମଗ୍ରୀ ହୋଇଅଛି । ଏପରି କୌଣସି ପୁସ୍ତକ ଅଦ୍ୟାପି ପ୍ରକାଶ ହୋଇ ନଥିଲା । ବଙ୍ଗାଳିମାନେ ଏହାକୁ ପାଠକଲେ ଉତ୍କଳର ପ୍ରାଚୀନ ଗୌରବର କଥା ଜାଣିପାରି ଅବଶ୍ୟ ତାହାଙ୍କର ଏଦେଶ ପ୍ରତି ଅଧିକ ମମତା ହେବ ଓ ତଦ୍ୱାରା ଉଭୟ ଜାତି ମଧ୍ୟରେ ସମାଜ ବନ୍ଧନ ଦୃଢ଼ତର ହେବ ସନ୍ଦେହ ନାହିଁ ।

## ( ୧୫ଶ ଭାଗ, ୧୩ । ୪ । ୧୮୮୦, ସଂଖ୍ୟା ୧୪ )

୨୫ ।

### କାଳୀବାବୁଙ୍କ ଗଣ୍ଡଗୋଳ

ଏ ବିଷୟରେ ସ୍ୱୟଂ ବାବୁ କାଳୀପଦ ବାନାର୍ଜୀ ଆମ୍ଭମାନଙ୍କ ନିକଟକୁ ଗୋଟିଏ ମୁଦ୍ରିତ ପତ୍ର ପଠାଇ ଅଛନ୍ତି ଓ ତହିଁରେ ମାଦଳାପାଞ୍ଜୀ, ସାହେବ ଯାଡ଼ୁଭବଙ୍କ ଲିଖିତ ଓ ପାଣ୍ଡେ ବାବୁଙ୍କ ଇଚ୍ଛାରେ ଲିଖିତ କଳାପାହାଡ଼ର ବିବରଣୀମାନ ତୁଳନା କରିଣ ଦେଇଅଛନ୍ତି । ବାବୁ ମହୋଦୟ ଏ ପତ୍ର ଉତ୍କଳଦୀପିକାକୁ କାହିଁକି

ଲେଖି ଅଛନ୍ତି ଆମ୍ଭେମାନେ ବିଶ୍ୱାସ କରୁ ନାହିଁ କାରଣ ସମ୍ବାଦରେ ତାହା ପ୍ରକାଶ ହେବାର ଆଶା ନଥିଲା ନମ୍ର ସ୍ୱୟଂ ଆଗନ୍ତୁକ ଅନେକ ବ୍ୟକ୍ତି ସ୍ୱହସ୍ତ କଟାଇ ଉଦ୍ଧାର କରିଅଛନ୍ତି । ଅତଏବ କେବଳ ଆମ୍ଭମାନଙ୍କର ମନ୍ତବ୍ୟ ବାକି ରହିଅଛି ଓ ତାହା ସମ୍ପ୍ରତି ପୂର୍ଣ୍ଣ କରୁଅଛୁଁ ।

କାଳୀବାବୁ ଲେଖନ୍ତି କଳାପାହାଡ଼ର ବୃତ୍ତାନ୍ତ ସମ୍ବନ୍ଧେ ପ୍ୟାରୀବାବୁ ଯେଉଁ ବିଷୟ ସ୍ୱ କଳ୍ପିତ ଓ ଯେଉଁ ବିଷୟ ମନଯୋଗ କରୁଅଛନ୍ତି ତାହା ପାଠକ-ବୃନ୍ଦଙ୍କୁ ଜଣାଇ ତାଙ୍କୁ ଓ ତାଙ୍କ ସମର୍ଥନକାରୀଙ୍କୁ ଦୋଷ ଦେବାର ଉଚିତ ନୁହେଁ । ମାତ୍ର ଯେଉଁ କଥା ପ୍ୟାରୀବାବୁଙ୍କର ସ୍ୱ କପୋଳ କଳ୍ପିତ ତାହା ସେ ନିଜ ହେଲେ ଜାଣନ୍ତି । ଆମ୍ଭେମାନେ ଉଭୟଙ୍କ ଦ୍ୱାରା ବର୍ଣ୍ଣନାରେ ମୂଳ କଥାରେ କିଛି ପ୍ରଭେଦ ଦେଖୁ ନାହୁଁ । କେବଳ ପ୍ରଭେଦ ଏତିକି ଯେ ମାଦଳାପାଞ୍ଜିରେ ବାହୁଲ୍ୟ ବର୍ଣ୍ଣନା ଲେଖାଅଛି, ପ୍ୟାରୀବାବୁ ସଂକ୍ଷେପରେ ଲେଖିଅଛନ୍ତି । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପ୍ରତି କଳାପାହାଡ଼ର ଅତ୍ୟାଚାର ଆନ୍ଦୋଳନ ବିଷୟ ନୁହେଁ । ତହିଁର ବାହୁଲ୍ୟ ହେଲେ ସୁଅନ୍ତ ଆକାର ବୃଦ୍ଧି କରିବାର ଆବଶ୍ୟକ ନଥିଲା । ତାହା ଗୋଟିଏ ପ୍ରକୃତ ଓ ଶୋଚନୀୟ ଘଟଣା ଥିବା ଏବଂ ମାଦଳାପାଞ୍ଜି ଓ ଅନ୍ୟାନ୍ୟ ଇତିହାସରେ ଲେଖା ଥିବାରୁ ପ୍ୟାରୀବାବୁ ତହିଁର ସଂକ୍ଷେପ ଉଲ୍ଲେଖ କରିଅଛନ୍ତି ଏହା ଯେଉଁ ଦୁଇଏକ କଥା ଗୁପ୍ତ ହୋଇ ରହିଅଛି ତହିଁରେ ଦୋଷ ପଡ଼ ନାହିଁ । କାଳୀ-ବାବୁ ଆପଣା ମତ ପୋଷକତା ଉଦ୍ଦେଶ୍ୟରେ ଉକ୍ତ ବର୍ଣ୍ଣନାକୁ ଏକାବେଳେ ମୁଦ୍ରିତ କରିଅଛନ୍ତି ମାତ୍ର ତହିଁରୁ ତାଙ୍କର ମତର ପୋଷକତା ନହୋଇ ପ୍ୟାରୀବାବୁଙ୍କ ନିର୍ଦ୍ଦୋଷିତା ପ୍ରମାଣ ହୋଇଅଛି ଯେହେତୁ ଉକ୍ତ ବର୍ଣ୍ଣନାର ମୂଳକଥା ଏକ ବରଂ ମାଦଳାପାଞ୍ଜି ଓ ଷ୍ଟର୍ଲିଂ ସାହେବଙ୍କ ଇତିହାସରେ ଦେବତାଙ୍କ ଅପମାନ କଥା ଅଧିକ ଲେଖାଅଛି । ନିମ୍ନଲିଖିତ ସାରାଂଶରୁ ଏହା ପ୍ରକାଶ ହେବ ଯଥା:—

ମାଦଳାପାଞ୍ଜି ।

"କଟକେ ରାଜା କେହି ନ ଥାନ୍ତିଲେ ମୁଗଲ ପୀଡ଼ାକର ମାଡ଼ି ରହିଲେ ପଛାକୁ ଦିବ୍ୟସିଂହ ପଟ୍ଟନାୟକ ଠାକୁରଙ୍କୁ ନେଇଗଲେ ଏ ଗୋଳରେ ପରମେଶ୍ୱରଙ୍କୁ ଛପଲ ହାତୀପଡ଼ାରେ ପାତାଳି କରିଥିଲେ ତହିଁକି ବୋଲି କଳାପାହାଡ଼ ଯାଇଁ ଠାବ କଲ ମୁହାଣ ପାରିହୋଇ ଗଡ଼ ଭେଉଆ ଜଡ଼ାଇ ଅଷ୍ଟାଙ୍ଗ ଡାଳିରେ ନେଲା ସେଠାରୁ ପରମେଶ୍ୱରଙ୍କୁ ହାତୀରେ ଟେକାଇ ଆଣିଲ ଦାନ କୋଟି ଉଗ୍ରାଳ ସେଠାରେ ଜାଳି କଲା ବଡ଼ ଦେଉଳ ଅଏଲା ସଉପାଏ ଭଙ୍ଗାଇଲ ଯେତେ

ଦେବତାମାନ ପିତୁଳାମାନ ସବୁକୁହିଁ ଖଣ୍ଡକଲା କାଲବିଠ ଶୋଲାଇ ପକାଇଲା ଦୋଳ୍ହାନେକ ସୁନାର ନାଆଁ ଲଗାଇଲା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଗଙ୍ଗାକୂଳ ଡଣ୍ଡାପାଏ ନେଲା କାଠ ଜୁଳାଇ ଅଗ୍ନି ଲଗାଇ ନାଳିଦେଲା ତେଣେ ପୋଡ଼ାଣର ଦେହ ଖଣ୍ଡ ଖଣ୍ଡ ହୋଇ ଫାଟିଗଲା ଜାଣି କହିଲା ଓଡ଼ିଶାର ଦେବତା ଜଳାଇ ଦେଲୁ ତେଣୁକରି ତୋହର ଦେହ ଫାଟିଗଲା ଏହା ଶୁଣି ତାହାର ପୁଅ ପରମେଶ୍ୱରଙ୍କୁ ଗଙ୍ଗାରେ ମେଲିଦେଲା ସେ ଦାରୁ ଭାସି ଆସନ୍ତେ ଅସୁର ଗୋଟାଏ କାଳି କାଠ ବୋଲି ଧରି ତାହା ବାଡ଼ରେ ପକାଇଲା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ନେବାବେଳେ ବିଶ୍ୱର ମହାନ୍ତି ଯାଇଥିଲା ବୈଷ୍ଣବ ହୋଇ ସଙ୍ଗେ ଚୋଡ଼ାଇଥିଲା ଆଠମାସ ରହି ବଦ୍ୟପଣ କରି ଦାରୁ ମାଗିଲା ବ୍ରହ୍ମ ଖୋଳ କରି ମୃଦଙ୍ଗେ ପୁରାଇ ନେଇଅଇଲା କୁଜଙ୍ଗ ଗଡ଼ରେ ଆଣି ପ୍ରବେଶ କଲା ଖଣ୍ଡାଏତ କୋଳଆ ଉପରେ ଥୁଇ ଠାକୁର ରହିଲେ ଯଦୁବଂଶ ରାଜାଏ ଏତେଣ ଉଦିତ ହୋଇଲେ ଦନେଇ ବିଦ୍ୟାଧରଙ୍କ ପୁଅ ଗୋଟିମି ଗଡ଼ରେ ଥିଲେ ରାମଚନ୍ଦ୍ର ଦେବ ରାଜା ହୋଇଲେ ✻ ✻ ଅ ୯ ଙ୍କେ ରାଜା କୁଜଙ୍ଗ ଗଡ଼ରୁ ବ୍ରହ୍ମ ଅଣାଇଲେ ଖୋର୍ଦ୍ଧା କଟକେ ବନଯାଗ କରି ସୁମୂର୍ତ୍ତି କରାଇଲେ ୭୧୧ ଙ୍କ କକଡ଼ା ଦି ୧୮ ନେ ଶ୍ରାବଣ ଶୁକ୍ଳ ନବମୀଦିନ ଶ୍ରୀପୁରୁଷୋତ୍ତମ ବଡ଼-ଦେଉଳେ ରତ୍ନସିଂହାସନେ ବିଜେ କରାଇଲେ ବ୍ରହ୍ମ ଆଣିଲାର ବିଶ୍ୱର ମହାନ୍ତିକୁ ପୋରନାୟକ କଲେ ଏ ଦାରୁବ୍ରହ୍ମ ବୋହି ଆଣିଲା ଏ ଜାତି ଭିତରେ ପଶିବ ବୋଲି ଶାଢ଼ୀ ଦେଲେ ।"

## ସଟନ ସାହେବଙ୍କ ଇତିହାସ ।

" କଳାପାହାଡ଼ ରାଣକଲା ଯେ ଓଡ଼ିଶା ଦେଶରେ କୌଣସି ହିନ୍ଦୁ-ଧର୍ମର ଚିହ୍ନ ମାତ୍ର ନ ରହିବ ଏଣୁ ସେ ବ୍ରାହ୍ମଣମାନଙ୍କ ପ୍ରତି ବିରୋଧି ହୋଇ ସେମାନଙ୍କୁ ନାଶ କଲା । ସେ ଦେଉଳମାନଙ୍କୁ ଭାଙ୍ଗିକରି ପ୍ରତିମାମାନଙ୍କୁ ଖଣ୍ଡ ଖଣ୍ଡ କଲା ମାତ୍ର ସବୁଠାରୁ ଜଗନ୍ନାଥଙ୍କ ବିରୁଦ୍ଧରେ ଅତିଶୟ କ୍ରୋଧିତ ହେଲା ।

ମାଦଳାପାଞ୍ଜିରେ ଲେଖାଅଛି ଯେ ଯେତେବେଳେ ପଣ୍ଡାମାନେ ଏହି ଦୁର୍ଘଟନାର ବୃତ୍ତାନ୍ତ ସବୁ ବୁଝିଲେ ତେତେବେଳେ ସେମାନେ ଚୁଟାସ୍ଥିର ଆପଣାମାନଙ୍କର ଦେବତାଙ୍କୁ ଶଗଡ଼ରେ ଲଦାଇ ଲୁଗାରେ ଆଚ୍ଛାଦକରି ବହନ ନେଇଯାଇ ଚାଡ଼ିକୁଦ ନାମକ ଚିଲିକା କଳନ୍ତୁ ଏକ ଗାତରେ ତାହାଙ୍କୁ ପୋତି ରଖିଲେ । ମାତ୍ର ଏମନ୍ତ ସତର୍କକରି କଳାପାହାଡ଼କୁ ଏହି ବହୁମୂଲ୍ୟ ଦ୍ରବ୍ୟରେ ବଞ୍ଚିତ ହେବାକୁ ନ ହୁଅନ୍ତା । ସେ ଅନେକ ଖୋଜି ଶେଷରେ ଆପଣା ଗୁପ୍ତସ୍ଥାନକୁ

ସେ ମୂର୍ତ୍ତିକୁ କାଠ ଘୋଡ଼ା ହାତୀ ଉପରେ ତାହାଙ୍କୁ ଲଦାଇ ଷେତରେ ଆଉସବୁ ପୁତ୍ତଳିକ ଭର୍ତ୍ତିଏକାଳେ ଶ୍ରୀଜଗନ୍ନାଥଙ୍କୁ ଡମ୍ବଲ ଆଡ଼କୁ ଘେନିଗଲା । ଏ ଉତ୍ତାରୁ ସେ ଗଙ୍ଗାକୂଳରେ ବଡ଼ ନିଆଁ ଜାଳି କରି ଶ୍ରୀଜଗନ୍ନାଥଙ୍କୁ ସେ ଜଳନ୍ତା କାଠ ଉପରେ ଫୋପାଡ଼ି ଦେଲା ମାତ୍ର ସେହିକ୍ଷଣି ସେ ନିଜକର ଅଙ୍ଗପ୍ରତ୍ୟଙ୍ଗ ଖସିପଡ଼ି ସେ ଅତ୍ୟନ୍ତ କଷ୍ଟରେ ପ୍ରାଣ ଛାଡ଼ିଲା । ଏଠାରେ ପାଠକ ଜାଣିବେ କି ଏହା ଓଡ଼ିଶାର ଦେବତାଙ୍କୁ ଅମର୍ଯ୍ୟାଦା କରିବାର ଦଣ୍ଡ ଏହି । ଏ ଉତ୍ତାରୁ ଜଳନ୍ତା ମୂର୍ତ୍ତିକି ଓହ୍ଲାଇ ନଦୀରେ ପକାଇଲା । ଏହି ସବୁ କର୍ମକୁ ବିଶ୍ୱର ମହାନ୍ତି ବୋଲି ଜଣେ ବିଶ୍ୱସ୍ତ ସେବକ ଜଗି ବସି ସେହି ଦରପୋଡ଼ା ମୂର୍ତ୍ତିକି ଗୁପ୍ତ ରୂପରେ ସ୍ରୋତରୁ କାଢ଼ି ଅତି ଯତ୍ନ କରି ଓଡ଼ିଶା ଦେଶକୁ ବାହୁଡ଼ାଇ ଆଣି ଖୁର୍ଦ୍ଧା ଗଡ଼ିଆଇତ ଠାରେ ସାବଧାନ ରୂପେ ସମର୍ପି ଦେଲା । ଏହି ବୃତ୍ତାନ୍ତରେ ବହୁତ ଅମିଳନ କଥାଅଛି ଏଣୁ କରି ପାଠକ ଯେତେ କଥାକୁ ସତ୍ୟ ମଣି ପାରିବେ ସେତିକି ବିଶ୍ୱାସ କରିବେ ।”

ପ୍ୟାରୀ ବାବୁଙ୍କ ଇତିହାସ

“ମୁସଲମାନ ରାଜ୍ୟ ସମୟରେ ଦେବ ଦେବୀଙ୍କ ଉପରେ କଳାପାହାଡ଼ ଘୋର ଅତ୍ୟାଚାର ଆରମ୍ଭ କଲେ । ଜଗନ୍ନାଥଦେବଙ୍କ ସେବକମାନେ ଜଗନ୍ନାଥଙ୍କୁ ଘେନି ଚିଲିକା ହ୍ରଦ ତଟବର୍ତ୍ତୀ ପାରିକୁଦ ନାମକ ସ୍ଥାନରେ ପୋତି ରଖିଥିଲେ । ଦୁର୍ଦ୍ଦାନ୍ତ କଳାପାହାଡ଼ ସେ ଗୁପ୍ତମୂର୍ତ୍ତିର ସନ୍ଧାନ ପାଇ ପାରିକୁଦ ଠାକୁ ଯାଇ ଜଗନ୍ନାଥଦେବଙ୍କୁ ଖୋଳି ହାତୀ ପିଠିରେ ନେଇ ଗଙ୍ଗା କୂଳକୁ ଘେନି ଗଲେ ଓ ଗଙ୍ଗା କୂଳରେ ଜଳୁଥିବା ଏକ ଚିତା ବହ୍ନିରେ ଜଗନ୍ନାଥଙ୍କୁ ପୋଡ଼ିଦେବା ପାଇଁ ନିକ୍ଷେପ କଲେ କିନ୍ତୁ ଓଡ଼ିଶା-ବାସୀଙ୍କର ଜଗନ୍ନାଥଙ୍କ ପ୍ରତି ଭକ୍ତି ତାଙ୍କୁ ସମ୍ପୂର୍ଣ୍ଣରୂପେ ଦଗ୍ଧୀଭୂତ ହୋଇ ଦେଲା ନାହିଁ । ଜଗନ୍ନାଥ ଦେବ ଚିତା ଅଗ୍ନିରେ ପୋଡ଼ି ନ ଯାଉଣୁ ବିଶର ମହାନ୍ତି ନାମକ ଏକବ୍ୟକ୍ତି ତାଙ୍କୁ ଓହ୍ଲାଇ ନେଲେ ଓ ତାଙ୍କ ନାଭିମୂଳ ଉଦ୍ଧାର କରି ନେଇ ଓଡ଼ିଶାକୁ ପ୍ରତ୍ୟାଗମନ କଲେ । ଖୁର୍ଦ୍ଧା ରାଜା ଅବଶେଷରେ ଜଗନ୍ନାଥଙ୍କର ସେହି ନାଭିମୂଳ ପ୍ରାପ୍ତହୋଇ ତାଙ୍କର ପ୍ରତିଷ୍ଠା କରାଇଲେ ।”

କାଳୀବାବୁ ଏତିକିରେ କ୍ଷାନ୍ତ ନୋହି ମେକେଞ୍ଜିର ସାହେବଙ୍କ ନିକଟରେ ଏ ବିଷୟର ଗୁହାରି କରିଥିଲେ । ଶ୍ରୀଜଗନ୍ନାଥଙ୍କ ବିଷୟ ଛଡ଼ା ଆଉ ଗୋଟିଏ ଦୋଷ ଦେଖାଇ ଥିଲେ, ତାହା ଏହି—ଇତିହାସର ଏକସ୍ଥାନରେ ଲେଖା-ଅଛି ଗବର୍ଣ୍ଣମେଣ୍ଟ ଚିରସ୍ଥାୟୀ ବନ୍ଦୋବସ୍ତର ଆଶା ଦେଇଥିଲେ । ମାତ୍ର ୧୮୨୩-ସାଲର ୧ ଆଇନ ଦ୍ୱାରା ଲେଖକଙ୍କ ଉକ୍ତିରୁ ବଞ୍ଚିତ ହେଲେ “ବଞ୍ଚିତ” ଅର୍ଥ ସେ ପ୍ରବଞ୍ଚନା କରି ଗବର୍ଣ୍ଣମେଣ୍ଟଙ୍କ ପ୍ରତି ଏପରି ମନ୍ଦ କଥା ବ୍ୟବହାର ହେବାର ଦୋଷ

ଦର୍ଶାଇ ଥିଲେ । ମେଟେକାଫ୍ ସାହେବ ଏଥିରେ କଣ୍ଠସ୍ୱରେ ଶିକ୍ଷା କମିଟୀଙ୍କ ମତ ପ୍ରାର୍ଥନା କରିଥିବାରୁ ଗତ ବୁଧବାର ଶିକ୍ଷା କମିଟୀଙ୍କ ଅଧିବେଶନ ହୋଇଥିଲା ଓ ଅନେକ ସଭ୍ୟ ଉପସ୍ଥିତ ହୋଇଥିଲେ । ଏଥିରେ ଅନେକ ବିତର୍କ ହେଲା ଉତ୍ତାରେ କାଳୀ-ବାବୁଙ୍କ ସମର୍ଥନକାରୀ ରମାପ୍ରସାଦ ବାବୁଙ୍କୁ ଛାଡ଼ି ଆଉ ଦୁଇଜଣ ମାତ୍ର ତାଙ୍କ ପକ୍ଷରେ ମତଦେଲେ ମାତ୍ର ଅନ୍ୟ ସମସ୍ତେ ଏକମତ ହୋଇ ପ୍ୟାରୀ ବାବୁଙ୍କ ଲେଖାରେ କିଛି ଆପତ୍ତି ନ ଦେଖିବାରୁ କାଳୀବାବୁଙ୍କର ଅଭିଯୋଗମାନ ଅଗ୍ରାହ୍ୟ ହେଲା । ଚତ୍ତାବଣ୍ଟି ଅର୍ଥରେ ଅନେକ ଯୁକ୍ତି ହୋଇଥିଲା । କାଳୀବାବୁ ଓ ତାଙ୍କର ସମର୍ଥନକାରୀ ଉକ୍ତିର ଅର୍ଥ "ଶବଦାହ" ବୋଲି ନିର୍ଦ୍ଦେଶ କଲେ ମାତ୍ର ଅନ୍ୟ ସଭ୍ୟ-ମାନେ ସ୍ଥିର କଲେ ଯେ ଉକ୍ତିର ଅର୍ଥ କେବଳ "ଶବଦାହ ଅଗ୍ନି ନୁହଇ କାଠ ଗଦାକର ନିଆଁ ଲଗାଇଲେ ତାହା ଚତ୍ତାବଣ୍ଟି ବୋଲାଇବ ।" କଳ୍ପିତ ଅର୍ଥ ହେ ପ୍ରବଞ୍ଚନା ନୁହେ ଏହା ବୋଲିବା ବାହୁଲ୍ୟ । ଏହି ପ୍ରକାରରେ କାଳୀ ବାବୁଙ୍କର ବୃଥା ଆପତ୍ତିମାନ ଖଣ୍ଡନ ହୋଇ ପୁସ୍ତକ ଖଣ୍ଡିକ ରକ୍ଷାପାଇଲା । କାଳୀବାବୁ ଉକ୍ତିର ନାଶ କମିଟି ଏପରି ସଙ୍କୀର୍ଣ୍ଣ ମାର୍ଗରେ ନ ଯାଇ ଓ ଏତେ ଶ୍ରମ ସ୍ୱୀକାର ଓ ଅର୍ଥବ୍ୟୟ ଇତ୍ୟାଦି ନ କରି ଯଦି ଉକ୍ତି ଅପେକ୍ଷା ଅଧିକ ଉତ୍କୃଷ୍ଟ ପୁସ୍ତକଟିଏ ପ୍ରକାଶ କରି ପାରନ୍ତି ତେବେ ପ୍ୟାରୀବାବୁଙ୍କ ଇତିହାସ ଅନ୍ୟାୟ ସେ ରହିତ ହୋଇଯିବ ଓ ସର୍ବସାଧାରଣ ଖଣ୍ଡେ ଭଲପାଇ ଆନନ୍ଦିତ ହେବେ । ଯଦି ତାଙ୍କର ବଳବୁଦ୍ଧି ପାଏ ତେବେ ଏଥିର ଚେଷ୍ଟା କରନ୍ତୁ ନଚେତ୍ ତୁନି ହୋଇ ରହନ୍ତୁ । ଅନର୍ଥକ ଗଣ୍ଡଗୋଳ ଲଗାଇବା ଦ୍ୱାରା ପ୍ୟାରୀବାବୁଙ୍କର ଓ ତାଙ୍କ ସଙ୍ଗେ ୨ ସର୍ବସାଧାରଣଙ୍କର କ୍ଷତି ଚେଷ୍ଟା ନ କରନ୍ତୁ ।

( ୧୫ଶ ଭାଗ, ୧୭ । ୪ । ୧୮୮୦, ସଂଖ୍ୟା ୧୬ )

୧୬ । ପ୍ୟାରୀ ବାବୁଙ୍କ ଇତିହାସ ସମ୍ବନ୍ଧରେ କାଳୀପଦ ବାବୁଙ୍କର ଦ୍ୱିତୀୟ ପତ୍ର ଆମ୍ଭେମାନେ ପାଇଅଛୁଁ । ଏଥର ଏହାର ନାମ "ଜଗନ୍ନାଥୀ ନ ୨ ମ୍ବର" ବୋଲି ଦିଆ ହୋଇଅଛି ଏବଂ ଶେଷରେ 'କ୍ରମଶଃ' ଥିବାରୁ ଆହୁରି କେତେ ବାହାରି-ବାର ସମ୍ଭାବନା ଅଛି । ବାବୁ ଆଗ ପତ୍ର ପରି ଏହାକୁ ସୁଦ୍ଧା ଆପେ ବିତରଣ କରିବା ଦ୍ୱାରା ଆମ୍ଭମାନଙ୍କୁ ଅନେକ ଅନର୍ଥକ କଷ୍ଟରୁ ବଞ୍ଚାଇ ଥିବାରୁ ଧନ୍ୟବାଦ ଦେଉଅଛୁଁ ଓ ଏଥିରେ ଯେଉଁ କମିଟିର ବିବରଣ ଲେଖାଅଛି ତାହା ଗତ ପତ୍ରିକାରେ ଆମ୍ଭେମାନେ ପାଠକଙ୍କୁ ଜଣାଇଅଛୁଁ ସୁତରାଂ ଆଉ କିଛି ବକ୍ତବ୍ୟ ନାହିଁ । କେବଳ ତାହାଙ୍କ ପତ୍ରରେ କେତୋଟି ଭ୍ରମ ଅଛି ଯେ ତାହା ଦେଖାଇଦେବା ଆବଶ୍ୟକ କାରଣ ସେ ଭ୍ରମ ଜ୍ଞାନକୃତ କି ଅନ୍ୟପ୍ରକାର ସ୍ଥିରକରିବା କଠିନ । ପ୍ରଥମତଃ 'ବହୁତ' ଶବ୍ଦ ପରିବର୍ତ୍ତିରେ

ସେ 'ବଞ୍ଚନା' ଶବ୍ଦ ବ୍ୟବହାର କରିଅଛନ୍ତି ଯେପର୍ଯ୍ୟନ୍ତ କି ଉଭୟ ଶବ୍ଦ ମଧ୍ୟରେ କିଛି ପ୍ରଭେଦ ନାହିଁ । ଦ୍ୱିତୀୟ ବଙ୍କିମ ସାହେବ ଏ ବିଷୟରେ ଗବର୍ଣ୍ଣମେଣ୍ଟ ଉଦ୍ୟାନକୁ ହସ୍ତକ୍ଷେପଣ କରୁଥାଆନ୍ତି' ବୋଲି କହିବାର ଲେଖା ଅଛି ମାତ୍ର କମିଟୀରେ ଉପସ୍ଥିତ ଥିବା ଲୋକଙ୍କଠାରୁ ଶୁଣିଅଛୁଁ ଯେ ସାହେବ ଏପରି ନକହି କେବଳ ଖ୍ରୀଷ୍ଟିୟାନ ଥିବା ହେତୁରୁ ମତ ଦେବାକୁ ଅସମ୍ମତ ହେଲେ । ଶେଷରେ ଲେଖାଅଛି ଯେ ସଠନ ସାହେବଙ୍କ ଇଚ୍ଛାନୁସାରେ ଜଗନ୍ନାଥଦେବଙ୍କ ଦୁର୍ଦ୍ଦଶା କଥା ଲେଖାଥିବାରୁ ଓ ତାହା ସ୍କୁଲରେ ପଠିତ ହେବାରୁ ସନ ୧୮୭୬ ସାଲଠାରୁ ବୈଦ୍ୟାଧର ବିଦ୍ୟାଳୟ ଗ୍ରନ୍ଥ ଅଭାବରେ ଉଠିଯାଇଥିଲା କିନ୍ତୁ ପ୍ରବେଶିକା ପରୀକ୍ଷାରେ ଏ ପୁସ୍ତକ ଥିବା ହେତୁ କେତେ ସ୍କୁଲ ଉଠିଗଲା ଏବଂ ମାଡଲା ପାଞ୍ଜିର ଲେଖାଦ୍ୱାରା କି ଅନିଷ୍ଟ ହେଲା ସେ ସମସ୍ତ ଲେଖିବାର ଉଚିତ ଥିଲା । ବାସ୍ତବରେ ଯେବେ ସେକଥା ସତ୍ୟ ହୋଇଅଛି ତେବେ କାଳୀ ବାବୁଙ୍କ ଉପରେ ନୈଷ୍ଠିକ ହିନ୍ଦୁମାନେ ଯେ ଅବଧି ଏ ନଗର ଛାଡ଼ି ପଳାଇ ନାହାନ୍ତି ଏହାହିଁ ବଡ଼ିବ ମଣିବାକୁ ହେବ କାରଣ ବ କା, ଲେଖା ଓ କୃପାଦ୍ୱାରା ଏହାଙ୍କୁ ବଳକର କେହି ଜଗନ୍ନାଥଙ୍କର ଦୁର୍ଦ୍ଦଶାର କଥା ପ୍ରଚାର କରିନାହିଁ । ଆମ୍ଭେମାନେ ଏ ସମ୍ପର୍କରେ ଗଣ୍ଡିଏ ପ୍ରେରିତ ପତ୍ର ପାଇଥିଲୁଁ ତାହା ପ୍ରକାଶ କରିବାର ଆଉ ପ୍ରୟୋଜନ ନାହିଁ ।

## ( ୧୪ଶ ଭାଗ, ୮ । ୫ । ୧୮୮୦, ସଂଖ୍ୟା ୧୯ )

୧୬ । ଆମ୍ଭେମାନେ ଦୁଃଖର ସହିତ ଅବଗତ ହେଲୁଁ ଯେ ୪ଠା ମାଜିଷ୍ଟ୍ରେଟ କଲେକ୍ଟର ଶ୍ରୀଯୁକ୍ତ ପସି ସାହେବ ପ୍ୟାରୀ ବାବୁଙ୍କ ଇତିହାସ ବର୍ତ୍ତମାନ ବିଦ୍ୟାଳୟ-ମାନଙ୍କରେ ପଠିତ ହେବାର ନିଷେଧ କରିଅଛନ୍ତି । କାଳୀ ବାବୁଙ୍କ ଜଗନ୍ନାଥୀ ମାନ ବ୍ୟର୍ଥ ଯାଇନାହିଁ । କିନ୍ତୁ କମେଟୀର ମତନେବା ଉତ୍ତାରୁ ମାଜିଷ୍ଟ୍ରେଟ ସାହେବ କିପରି ଏହା କଲେ ଏବଂ ତାହାଙ୍କର ଏପରି କରିବାର କି କ୍ଷମତା ଅଛି ଆମ୍ଭେମାନେ ବୁଝି ପାରିଲୁଁ ନାହିଁ । ଯେବେ ସାଧାରଣଙ୍କ ବିଚାର ବିରୁଦ୍ଧରେ କେବଳ କାଳୀପଦ ବାବୁଙ୍କ ଅସାର ଯୁକ୍ତିରେ ଅନୁଗାମୀ ହୋଇ ଏପରି କରିଥାନ୍ତି ତେବେ ବଡ଼ ଦୁଃଖର ବିଷୟ ଅଟଇ କାରଣ ସେପରି ଯୁକ୍ତିରୁ ଦେଖିଲେ ଆହୁରି କେତେକ ପୁସ୍ତକ ବିଦ୍ୟାଳୟରୁ ଉଠାଇ ଦେବାକୁ ହେବ ଏବଂ ତହିଁର ଫଳ ଏହି ହେବ ଯେ ଆଉ କେହି ପୁସ୍ତକ ଲେଖିବାକୁ ସାହସୀ ହେବେ ନାହିଁ ।

---

( ୧୭ଶ ଭାଗ, ୨୯ । ୧୦ । ୧୮୮୧, ସଂଖ୍ୟା ୪୩ )

୧୮ । ପ୍ରେରିତ ପତ୍ର ।

To

The Editor of Utkal Dipika.

Sir,

On the 16th October last, there was a meeting held by Baboo Pran Kissen Ray, Nundo Kishore Dass, Dinonath Banergea, Hari Churn Banergea, Gourey Sunker Roy, (Secretary), and Obinash Chunder Chattergea for the purpose of establishing a Public Library in the town of Katak.

A library has been opened from the 19th October in a house situated on the eastern side of the Cuttack Ravenshaw College ; and it is to be denominated the " Town Library, Katak. " Newspapers (English, Bengali and Uriya) and books English, Bengali, Sanscrit and Uriya are to be kept in the library for the use of the public. We heartily pray God, that the public will show sympathy for the maintenance of the said library.

yours faithfully
Hurry Churn Banergea
Offg, Secretary

( ୧୧ଶ ଭାଗ, ୭ । ୨ । ୧୮୭୮, ସଂଖ୍ୟା ୬ )

## ପ୍ରେରିତ ପତ୍ର

୧୯ । ( ବାବାଜୀ ନାଟକ ସମାଲୋଚନା )

ମହାଶୟ,

× × × ×

ଆମ୍ଭେ ବାବାଜୀ ନାଟକକୁ ସର୍ବାଙ୍ଗ ସୁନ୍ଦର ନାଟକ ସ୍ୱରୂପ ଦେଖୁ ନାହୁଁ କିଂବା ଏପରି ଆଶା କରିପାରୁ ନପାରେ । କୌଣସି ଦେଶରେ କୌଣସ ଭାଷାରେ ପ୍ରଥମତଃ ସର୍ବାଙ୍ଗ ସୁନ୍ଦର ନାଟକ ବାହାରି ନାହିଁ । ପାଠକ ମହାଶୟ ସେ ଦୀନବନ୍ଧୁ ବାବୁଙ୍କ ନାଟକକୁ ବଙ୍ଗଳାରେ ଏକମାତ୍ର ପ୍ରକୃତ ନାଟକ ସ୍ୱରୂପ ପ୍ରଶଂସା କରନ୍ତି ତାହା କ ବଙ୍ଗ ଭାଷାରେ ପ୍ରଥମ ନାଟକ ଅଟଇ ? କୌଣସି ନୂତନ କାର୍ଯ୍ୟ ଏକା ବେଳେକେ ସର୍ବାଙ୍ଗ ସୁନ୍ଦର ହୋଇ ନପାରେ, କମ୍ପା ହେବାର ବଡ଼ କଠିନ ଅଟେ, ତାହା କ୍ରମେ ଉନ୍ନତି ଲାଭ କରେ । ଅତଏବ ଆପଣଙ୍କର ଆଉ ଏକ ଲେଖକ ଯେ ସେହି ପତ୍ରିକାରେ ବାଲେଶ୍ୱରର ନବ ପାଦାନ୍ତଲ ଓ ନବ ନାଟକ ଲେଖକଙ୍କୁ ପ୍ରକାରାନ୍ତରେ କଳଙ୍କି ବୋଲି ଲେଖି ଅଛନ୍ତି ଏହା କ ଯଥାର୍ଥ ହୋଇଅଛି ? ଏହା ଲେଖିବାକୁ ତାଙ୍କୁ ଲେଶମାତ୍ର ଲଜ୍ଜାବୋଧ ହେଲନାହିଁ ? ଆମ୍ଭେ ତାଦୃଶ ବିଦ୍ୱାନ ନ ହେଲେ ମଧ୍ୟ ଉତ୍କଳ ଦୀପିକାଙ୍କ ସହିତ ଐକ୍ୟ ହୋଇ କହୁଅଛୁଁ ଯେ, ବାବାଜୀ ନାଟକ ଉତ୍କଳରେ ନାଟକର ବାଟ ଅଟେ । ସେଥିରେ ଅନେକାନେକ ହିତକଥା କୌତୁକ ମନୋହର କଥୋପକଥନ ଭଙ୍ଗିରେ ଲେଖା ହୋଇଅଛି । ଏଣୁକରି ତାହା "ନା ଟକ, ନା ମିଷ୍ଟ" ଏତାଦୃଶ ତୁଚ୍ଛ ଓ ନିନ୍ଦଣୀୟ ହୋଇ ନପାରେ । ବୋଧକରୁଁ ଏହି ବିବେଚନାରେ ଆପଣ ଉକ୍ତ ନାଟକ ଲେଖକଙ୍କୁ ପ୍ରଶଂସାକରି ଧନ୍ୟବାଦ ଦେଇଅଛନ୍ତି ।

\+ \+ \+ \+

\+ × × । ଇତି *

କଟକ } ବଶମ୍ବଦ
୨୮ ତାରିଖ ଜାନୁଆରି } "କେହି ଲେଖକ"
ସନ ୧୮୭୮ ମସିହା

---

* ପତ୍ରପ୍ରେରକ ମହାଶୟ ଏହି ପତ୍ରରେ ଯାହା ଲେଖିଅଛନ୍ତି ଆଦ୍ୟୋପାନ୍ତ ତାହା ହୃଦୟ ଗ୍ରାହୀ ଓ ଯୁକ୍ତି ଯୁକ୍ତ ଅଟେ; ଏଣୁ ଅମ୍ଭେମାନେ ତାହାଙ୍କର

## ( ୧୧ଶ ଭାଗ, ୩୦ । ୫ । ୧୮୭୮, ସଂଖ୍ୟା ୨୨ )

### ୨୦ । ଆମ୍ଭମାନଙ୍କ ମାତୃଭାଷା ।

ଆମ୍ଭମାନଙ୍କ ମାତୃଭାଷା ଓଡ଼ିଆ, ଏହା ବୁଧିଆ ପିଲ୍ଲମାନେ ସୁଦ୍ଧା ଜାଣନ୍ତି । ମାତ୍ରରେ ଏହି ଭାଷାର ଉନ୍ନତି ହେବ ସେଥିର ଚେଷ୍ଟା କରିବା ଆମ୍ଭମାନଙ୍କର ଉଚିତ । ପୃଥିବୀ ମଧ୍ୟରେ ଯେଉଁ ୨ ଜାତି ସଭ୍ୟତା ସୋପାନରେ ଆରୋହଣ କରି-ଅଛନ୍ତି ସେମାନେ ଆପଣା ୨ ମାତୃଭାଷାକୁ ବୃଦ୍ଧି କରିବା ନିମନ୍ତେ ଯାଥାସାଧ୍ୟ ଯତ୍ନ କରୁଅଛନ୍ତି ମାତ୍ର ଦୁଃଖର ବିଷୟ ଏହି ଯେ ଆମ୍ଭେମାନେ ତାହା ନକରି ସେଥିର ବିପରୀତ କରୁଅଛୁ । ଆମ୍ଭମାନଙ୍କର ମାତୃଭାଷା କିଛି ନୂତନ ଭାଷା ନୋହେ, ଏହା ବହୁଦିନର ଭାଷା । ଯେଉଁମାନେ ଏହା ଅବିଶ୍ୱାସ କରନ୍ତି, ସେମାନେ ପୁରୁଣା ପୋଥିମାନ ଫିଟାଇ ଦେଖନ୍ତୁ, ତାହାହେଲେ ଆମ୍ଭମାନଙ୍କର ଉକ୍ତିର ପ୍ରମାଣ ପାଇବେ । ଆମ୍ଭ-ମାନଙ୍କର ମାତୃଭାଷା ଦୁଇଶଅ ବର୍ଷପୂର୍ବେ ଯେପରି ଅବସ୍ଥାରେ ଥିଲା, ଆଜି ବଙ୍ଗଳା ଭାଷା ଏତେ ଉନ୍ନତ ହୋଇକରି ସୁଦ୍ଧା ପ୍ରାୟ ସେହିରୂପ ଅବସ୍ଥାପନ୍ନ ହୋଇଅଛି । ଦୀନକୃଷ୍ଣ, ଉପେନ୍ଦ୍ରଭଞ୍ଜ ଓ ଅଭିମନ୍ୟୁ ପ୍ରଭୃତିଙ୍କ କାବ୍ୟ ଯେଉଁମାନେ ମନଦେଇ ପଢ଼ିଅଛନ୍ତି ସେହିମାନେ ସେଥିର ପ୍ରମାଣ ପାଇଅଛନ୍ତି ।

---

ଏହି ପତ୍ରର ସମସ୍ତ ଉକ୍ତିରେ ସମ୍ମତ ହେଲୁଁ । ବାବାଜୀ ନାଟକକୁ ଆମ୍ଭେମାନେ ତୁଚ୍ଛ ଓ ନିନ୍ଦନୀୟ ବୋଲି କହିନାହୁଁ ମଧ୍ୟ ସର୍ବାଙ୍ଗ ସୁନ୍ଦର କହି ନପାରୁଁ । ନାଟକ ଲେଖିବାର ପ୍ରକୃତ ସମୟ ଓଡ଼ିଶାରେ ଉପସ୍ଥିତ ହୋଇ ନଥିବା ସତ୍ତ୍ୱେ ବାବାଜୀ ନାଟକର ପ୍ରଣେତା ଯେ ସାହସ ଉପରେ ନିର୍ଭର କରି ନାଟକ ଲେଖି ନାଟକ ଲେଖିବାର ବାଟ ଦେଖାଇ ଅଛନ୍ତି ଏଥିପାଇଁ ଆମ୍ଭେମାନେ ତାଙ୍କୁ ଧନ୍ୟବାଦ ଦେଉଅଛୁଁ । ଫଳକଥା ଏହି, ଗୋପିନାଥ ବଲ୍ଲଭ ନାଟକ ଅପେକ୍ଷା ବାବାଜୀ ନାଟକ ଉତ୍କୃଷ୍ଟ ଅଟେ । ବାବାଜୀ ନାଟକର ଉଚିତ ସମାଲୋଚନା ନ କରି ପାଠକମାନଙ୍କ ହସ୍ତରେ ସମର୍ପଣ କରିବାର ଅଭିପ୍ରାୟ ଏହି ଯେ, ନାଟକମାନଙ୍କର ସମାଲୋଚନା ଯେରୂପ କରାଯାଏ ସେହିପରି ବାବାଜୀ ନାଟକର ସମାଲୋଚନା କଲେ ।କଲେ ଲେଖକଙ୍କର ଉତ୍ସାହ ଭଙ୍ଗହେବ ଏହି ଆଶଙ୍କାରେ ଆମ୍ଭେମାନେ ସେଥିରୁ ନିବୃତ୍ତ ହୋଇଅଛୁଁ । ନାଟକ-ମାନଙ୍କର ଲକ୍ଷଣ କିସ ? ଇତ୍ୟାଦି ପ୍ରଶ୍ନମାନଙ୍କର ବିଷୟରେ ବାହାକ ପାଠକ ଯେଉଁ ଉତ୍ତର ଦେଇଅଛନ୍ତି ସେହି ଉତ୍ତରମାନଙ୍କୁ ଆମ୍ଭେମାନେ ନିତାନ୍ତ ଭ୍ରମାତ୍ମକ ଓ ଯୁକ୍ତି ବହିର୍ଭୂତ ବୋଲି କହି ନ ପାରୁଁ, ତେବେ ଲେଖକଙ୍କ ଭାଷାରେ "ଖା, ଭୃଷ୍ଟ. ଗିଳ" ଏହି ତିନି ଶବ୍ଦର ପରସ୍ପର ଯେପରି ପ୍ରଭେଦ ଅଛି ସେହିପରି ପ୍ରଭେଦ ଦେଖାଯାଏ; ଏଣୁ ଆମ୍ଭେମାନେ ଯେ କହୁଅଛୁ ଯେ, ସେ ଲେଖକ ସଙ୍କଟରେ ପ୍ରଥମେ ପଡ଼ିଅଛନ୍ତି । ସମସ୍ତ ଜାତିର ପ୍ରଚ୍ଛନ୍ନ କାର୍ଯ୍ୟ ଅଛି ମାତ୍ର ନବ ଲେଖକ ସୀମା ଅତିକ୍ରମ କରିଅଛନ୍ତି । ( ସଂ )

ପୂର୍ବେ ଆମ୍ଭମାନଙ୍କ ମାତୃଭାଷାରେ ଗଦ୍ୟମୟ କୌଣସି ପୁସ୍ତକ ପ୍ରକାଶିତ ହୋଇନଥିଲା । ମୁଦ୍ରାଯନ୍ତ୍ର ସ୍ଥାପିତ ହେଲା ଦିନଠାରୁ ଏଣିକି କ୍ରମେ ୨ ଗଦ୍ୟମୟ ପୁସ୍ତକମାନ ପ୍ରକାଶିତ ହେଉଅଛି । କେବଳ ଆମ୍ଭମାନଙ୍କ ମାତୃଭାଷାରେ କାହିଁ ? ବଙ୍ଗଳା, ହିନ୍ଦୀ ପ୍ରଭୃତି ଭାଷାରେ ସୁଦ୍ଧା ଅଳ୍ପଦିନ ହେଲା ଗଦ୍ୟମୟ ପୁସ୍ତକ ପ୍ରକାଶିତ ହୋଇଅଛି । ବଙ୍ଗାଳିମାନେ ପଦ୍ୟମୟ ପୁସ୍ତକର ଭାଷାକୁ କେତେ ପରିମାଣରେ ଗଦ୍ୟମୟ ରୂପରେ ଉନ୍ନତ କରିଅଛନ୍ତି, ଆମ୍ଭେମାନେ ଆମ୍ଭମାନଙ୍କର ପଦ୍ୟମୟ ପୁସ୍ତକର ଭାଷାକୁ ସେହି ପରିମାଣରେ ଗଦ୍ୟମୟ ଭାଷାରୂପେ ଉନ୍ନତ କରି ପାରିନାହୁଁ । ଏହାର ମୂଳକାରଣ ଏହିଯେ, ବଙ୍ଗାଳିମାନେ ମୁଦ୍ରାଯନ୍ତ୍ର ସାହାଯ୍ୟରେ ଭାଷାକୁ ଉନ୍ନତ କରିବା ବିଷୟରେ ପ୍ରାୟ ୩୦ । ୩୫ ବର୍ଷହେଲା ସାଧ୍ୟାନୁସାରେ ଚେଷ୍ଟା କରୁଅଛନ୍ତି । ଦୁଃଖର ବିଷୟ ଏହିଯେ, ଆମ୍ଭେମାନେ ଆମ୍ଭମାନଙ୍କ ମାତୃଭାଷାର ଉନ୍ନତି ବିଷୟରେ କିଛି କରି ପାରୁନାହୁଁ ।

× × ×

## ଉତ୍କଳପୁତ୍ର

ପାକ୍ଷିକ ସମ୍ବାଦପତ୍ର

### ( ୧ମ ଭାଗ, ୧ । ୫ । ୧୮୭୩, ସଂଖ୍ୟା ୨ )

୨୧ । ଉତ୍କଳ ଭାଷା

ଏହି ଭାଷା ଯେ ପୁରାତନ, ସ୍ୱତନ୍ତ୍ର ପୁଣି ଗୋଟିଏ ମୂଳଭାଷାରୁ ଅର୍ଥାତ୍ ସଂସ୍କୃତରୁ ଉତ୍ପନ୍ନ, କେତେକ ଦିନହେଲା ନିଷ୍ପନ୍ନ ହୋଇଅଛି । ବର୍ତ୍ତମାନ ଏ ବିଷୟରେ ଆଉ କିଛି ତର୍କ ବିତର୍କ କରିବାର ଆବଶ୍ୟକ ନାହିଁ, ମାତ୍ର ଅଦ୍ୟାପି ଏହା ଯେ ଏତେ ଅନୁନ୍ନତାବସ୍ଥାରେ ରହିଅଛି ଏହି ବିଷୟରେ ହିଁ ଏକକଥା ଲେଖି- ବାକୁ ଆମ୍ଭେମାନେ ପ୍ରବୃତ୍ତ ହେଲୁଁ । ଏହା କାହାରିକୁ ଅବିଦିତ ନାହିଁ ଯେତେବେଳେ

ଓଡ଼ିଆଭାଷା ଏକପ୍ରକାର ଉଠିଯିବ ଏତଦ୍ ପରିବର୍ତ୍ତେ ବଙ୍ଗଭାଷା ପ୍ରଚଳିତ ହେବବୋଲି ଘୋଷିତ ହେଲା ସେ ସମୟରେ ପ୍ରାୟ ଓଡ଼ିଶାବାସୀ ଅଧିକାଂଶ ସଭ୍ୟଲୋକେ ବଙ୍ଗାଳିଙ୍କ ଉପରେ ଏକାବେଳକେ ଖଡ୍ଗହସ୍ତ ହୋଇ ଉଠିଲେ, ଓଡ଼ିଶାର ନାନା ସ୍ଥାନରେ ଗୋଳମାଳ ପଡ଼ିଗଲା । ଯାହାହେଉ ଅବଶେଷରେ ଓଡ଼ିଆ ପ୍ରଚଳିତ ହେବବୋଲି ସ୍ଥିର ହୋଇ ରହିଲା ; ଏହି ଘଟନା ଓଡ଼ିଆ ଭାଷା ପକ୍ଷରେ ମଙ୍ଗଳକର ଘଟନା ବୋଲିବାକୁ ହେବ କାରଣ ସେହିଦିନଠାରୁ ଗବର୍ଣ୍ଣମେଣ୍ଟଙ୍କର ଏହାପ୍ରତି ଅଧିକାଂଶରେ ଦୃଷ୍ଟି ପଡ଼ିଅଛି ମାତ୍ର ଯେଉଁମାନେ ବଙ୍ଗାଳିଙ୍କ ଉପରେ ଖଡ୍ଗହସ୍ତ ହୋଇଥିଲେ ସେମାନଙ୍କ ମଧ୍ୟରୁ ଦୁଇ ଏକଜଣଙ୍କୁ ଛାଡ଼ି ଆଉ ସମସ୍ତେ ତୁନିହୋଇ ରହିଲେଣି ଓ ଏହାର ଉନ୍ନତି ପାଇଁ ଅଧିକ କିଛି କରୁନାହାନ୍ତି । ଓଡ଼ିଶାରେ ଓଡ଼ିଆ ଭାଷା ପ୍ରଚଳିତ ରହିଲା ଏତିକି ସେମାନଙ୍କ ପକ୍ଷରେ ଯଥେଷ୍ଟ ହୋଇଅଛି, ରାଜପୁରୁଷମାନେ ଯାହା ବିଚାର କରିବେ କରନ୍ତୁ । କି ଦୁଃଖର ବିଷୟ ! ବଙ୍ଗଭାଷାର ଯେତେଦୂର ଉନ୍ନତି ଲକ୍ଷିତ ହେଉଅଛି, ଏହା କି କେବଳ ରାଜପୁରୁଷଙ୍କ ଯତ୍ନରେ ନା ସେ ଦେଶବାସିମାନେ କିଛି ଚେଷ୍ଟା କରିଥିଲେ ? ସମସ୍ତଙ୍କୁ ଥରେ ବିଚାର କରିବାର ଉଚିତ, ଆମ୍ଭମାନଙ୍କ ଦେଖିବାରେ ଯେଉଁମାନେ ଓଡ଼ିଆ ଭାଷାର ଉନ୍ନତି ପକ୍ଷରେ କିଞ୍ଚିତ୍ ଯତ୍ନବାନ ଅଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ନିର୍ଧନ ସୁତରାଂ ସେମାନଙ୍କ ଚେଷ୍ଟା କାର୍ଯ୍ୟରେ ପରିଣତ ହୋଇ ପାରୁନାହିଁ, କେବଳ ରାଜପୁରୁଷଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ରହିଲେ ହେବନାହିଁ । କାର୍ଯ୍ୟରେ ଦେଶୀୟ ଧନୀ ଓ ସମ୍ଭ୍ରାନ୍ତ ଲୋକେ ଏହାକୁ କର୍ତ୍ତବ୍ୟ ମଣି ଏଥିରେ ଚେଷ୍ଟିତ ହେଲେ ନିଶ୍ଚୟ ଏହାର ଉନ୍ନତି ଅବଲମ୍ବ ହୋଇପାରିବ । ଆଜି ଯାଏ ଓଡ଼ିଆରେ ଯେତେଗୁଡ଼ିଏ ପୁସ୍ତକ ହେଲାଣି ସେଥିରୁ ଦୁଇ ତିନିଖଣ୍ଡ ଛାଡ଼ି ସମୁଦାୟ ବଙ୍ଗଳାରୁ ଅନୁବାଦିତ ହୋଇଅଛି ଓ ବଙ୍ଗଳାର ବାତକ ଅନୁସରି ଅନୁବାଦକମାନେ ଚଳିଅଛନ୍ତି । ଏଥିରୁ ଓଡ଼ିଆ ଭାଷାର ଯେତେଦୂର ଉନ୍ନତି ହେବ ତାହା ସହଜରେ ଅନୁଭବ ହେଉଅଛି ମାତ୍ର ଯାହାହେଉ "ନାହିଁ ମାମୁଁଠାରୁ କଣା ମାମୁଁ ଭଲ" । ପୁସ୍ତକ ପ୍ରଚାର ପକ୍ଷରେ ଆଉ ଗୋଟିଏ ପ୍ରତିବନ୍ଧକ ଅଦ୍ୱିତୀୟ ପୁସ୍ତକ ପରୀକ୍ଷକ କମିଟି, ତାହାଙ୍କୁ ପୁସ୍ତକ ପରୀକ୍ଷା ପାଇଁ ଦେଲେ ସେମାନେ ଅନେକ ଦିନ ପକାଇ ରଖନ୍ତି ସୁତରାଂ ଅନ୍ୟ ଲୋକଙ୍କର ପୁସ୍ତକ ରଚନା ବିଷୟରେ ଉତ୍ସାହ ବଢ଼ୁନାହିଁ । ଅତଏବ ଆମ୍ଭମାନଙ୍କ ବିବେଚନାରେ ନାହିଁ କାହିଁ ପଠାଇ ଉତ୍ତର ଦେବାକୁ ଯେତେଶୀଘ୍ର ହୋଇପାରେ ଯତ୍ନ କରିବାର ଉଚିତ ।

ଏ ସ୍ଥଳେ ଆଉ ଗୋଟିଏ ବିଷୟ ଆମ୍ଭମାନଙ୍କ ମନରେ ହେଲା ଏ ଦେଶରୁ ବଙ୍ଗଳା ଏକାବେଳକେ ଉଠିଯିବାରୁ କେହି ୨ ଦୁଃଖିତ ଅଛନ୍ତି ମାତ୍ର ସେମାନଙ୍କ ଦୁଃଖର ହେତୁ ତ ଆମ୍ଭେମାନେ କିଛି ଦେଖୁନାହୁଁ । ଯେଉଁସ୍ଥଳେ ବଙ୍ଗଳା

ଉଠିବ ଓ ଓଡ଼ିଶାରେ ଓଡ଼ିଆ ଚଳିବାର ବନ୍ଦୋବସ୍ତ ହୋଇଗଲା ସେଠାରେ ବଙ୍ଗଭାଷା ନ ଚଳିବାର ଭଲ । ନୋହିଲେ ଉତ୍କଳ ଭାଷାର ଉନ୍ନତି ପକ୍ଷରେ ଏହା ଗୋଟିଏ ପ୍ରଧାନ ପ୍ରତିବନ୍ଧକ ହେବ । କାରଣ ବଙ୍ଗଳାରେ ପୁସ୍ତକ ଓ ସମ୍ବାଦପତ୍ର ଅନେକ ଓ ଅଳ୍ପ ମୂଲ୍ୟରେ ପ୍ରାପ୍ତ ହୁଅଇ ସୁତରାଂ ଲୋକେ ଓଡ଼ିଆ ପୁସ୍ତକ ପାଇଁ ତାଦୃଶ ଆଗ୍ରହ କରିବେ ନାହିଁ । ଯେଉଁମାନେ ଯଥାର୍ଥ ହିତୈଷୀ ହେବେ ସେମାନେ ମୁକ୍ତ କଣ୍ଠରେ ଏହା ସ୍ୱୀକାର କରିବେ ଓ ଦୁଃଖିତ ହେବେ ନାହିଁ ।

## ( ୧ମ ଭାଗ, ୧୭ । ୭ । ୧୮୭୩, ସଂଖ୍ୟା ୭ )

୨୨ । ଗଞ୍ଜାମ, ସମ୍ବଲପୁର ଓ ଉତ୍କଳପୁସ୍ତକ

ଓଡ଼ିଆଭାଷା ପରିବର୍ତ୍ତିରେ ବଙ୍ଗଳାଭାଷା ଚଳାଇବାକୁ ଦେଶହିତୈଷୀ ବଙ୍ଗାଳିମାନେ ଯେତେ ଯତ୍ନ କରିଥିଲେ ଏବଂ ବଙ୍ଗାଳି ଓ ଓଡ଼ିଆଙ୍କ ମଧ୍ୟରେ ଯେ କଳହ ଉପସ୍ଥିତ ହୋଇଥିଲା ତାହା ପାଠକମାନଙ୍କୁ ଅବଦିତ ନାହିଁ । ଏମନ୍ତ କି ଉଭୟ ପକ୍ଷରେ "ଅଧିକାରୀ" ମାନେ ମାନ ମର୍ଯ୍ୟାଦା ଭୁଲିଯାଇ ନିତାନ୍ତ କଟୂକ୍ତି ଓ ଅସହ୍ୟ ଉପହାସ ବ୍ୟବହାର କଲେ । ସମ୍ବାଦପତ୍ରମାନ ଏହିକଥା ଘେନି ଗ୍ରନ୍ଥନ ବ୍ୟସ୍ତ । ଏହି ଅବସରରେ କେହି ୨ ସାମାନ୍ୟ ବୁଦ୍ଧିଜୀବ ଗ୍ରନ୍ଥକାର ନାମ ପାଇଗଲେ । ଦୁଇ ଏକଜଣଙ୍କୁ ଫୌଜଦାରୀ ମଧ୍ୟ ଦେଖିବାକୁ ହୋଇଥିଲା । ସୁଖର ବିଷୟ ଯେ ନ୍ୟାୟବାନ୍ ଗବର୍ଣ୍ଣମେଣ୍ଟ ସେ କଳହ ଶୀଘ୍ର ନିସ୍ପତ୍ତି କରିଦେଲେ । ଓଡ଼ିଆ ଭାଷା ରହିବାର ସ୍ଥିର ହେଲା ; ଏତେବ ବଙ୍ଗାଳିମାନେ ଯେ ଆଶାକୁ କରୁଣ ଓହ୍ଲେଣି, ସେହିର ମନକୁ କ୍ରୋଧାଗ୍ନି ସମ୍ପୂର୍ଣ୍ଣରୂପେ ନିର୍ବାପିତ ହୋଇନାହିଁ । ବଙ୍ଗାଳିମାନେ ତାଙ୍କର କି ଆମ୍ଭର ମଙ୍ଗଳ ନିମନ୍ତେ ଏପରି ଯତ୍ନ କରୁଥିଲେ ଏବଂ ଗବର୍ଣ୍ଣମେଣ୍ଟ ଯେ କି ଉଦ୍ଦେଶ୍ୟରେ ସେମାନଙ୍କୁ ସେ ଆଶାରୁ ବଞ୍ଚିତ କଲେ, ତାହା ଆମ୍ଭେମାନେ କହି ନପାରୁଁ, ଅଥବା କହିବାକୁ ଆମ୍ଭମାନଙ୍କର ଇଚ୍ଛା ନାହିଁ । ମାତ୍ର ଆପାତତଃ ଯେ ଓଡ଼ିଶାର ମଙ୍ଗଳ ହୋଇଅଛି ଓ ଉତ୍କଳୀୟମାନେ ଗବର୍ଣ୍ଣମେଣ୍ଟଙ୍କ ନ୍ୟାୟରେ ସନ୍ତୁଷ୍ଟ ଅଛନ୍ତି ତହିଁରେ କିଛି ସନ୍ଦେହ ନାହିଁ ।

ବଙ୍ଗଳା ଉଠିଗଲା ଭଲ ହେଲା । ଭଲ ହେଲା ସତ, ମାତ୍ର ଓଡ଼ିଆର ଶ୍ରୀବୃଦ୍ଧି ଉନ୍ନତି ଓ ସ୍ଥାୟିତ୍ୱ ସାଧନାରେ ଯେ ୨ ଉପାୟ ଅବଲମ୍ବନ କରିବାର ବିହିତ (ଓ ଯେ ଉପାୟରେ ଉନ୍ନତିର ହେବାର ସମ୍ଭାବନା ) ତାହା ଯାହା ଗବର୍ଣ୍ଣମେଣ୍ଟ କରିନାହାନ୍ତି ଏଥିରେ ଆମ୍ଭେମାନେ ତାଙ୍କୁ ପ୍ରଶଂସା କରି ନପାରୁଁ, ବରଂ ନକଲେ ଗବର୍ଣ୍ଣମେଣ୍ଟ ଦୋଷୀ ହେବେ । ଯେ ସୁରୁଚିତ ପୁସ୍ତକମାନ ଅଛି ତହିଁରେ ଆମ୍ଭମାନଙ୍କର

ଆଦୌ ନାହିଁ । ଉପେନ୍ଦ୍ରଙ୍କ ଯମକ, ଦୀନକୃଷ୍ଣଙ୍କ ଅନୁପ୍ରାସ ଓ ଅଭିମନ୍ୟୁଙ୍କ ଶ୍ଳେଷକ୍ରୀଡ଼ା ଆମ୍ଭମାନଙ୍କ ଚିତ୍ତକୁ ଭଲ ଲାଗୁନାହିଁ । ବସ୍ତୁତଃ ଏପରି ଶୃଙ୍ଗାରାତ୍ମକ ପୁସ୍ତକମାନ ପାଠ୍ୟ-ପୁସ୍ତକରୂପେ ସୁକୁମାର ମତି ବାଳକମାନଙ୍କ ହସ୍ତରେ ଦେବାକୁ ଆମ୍ଭମାନଙ୍କୁ ଲଜ୍ଜା ହେଉଅଛି । ବର୍ତ୍ତମାନ ସରଳ ପଦ୍ୟ ଓ ପ୍ରଶସ୍ତ ଗଦ୍ୟ ପୁସ୍ତକ ନିତାନ୍ତ ପ୍ରୟୋଜନ ।

ପାଠକ ସଂଖ୍ୟାର ବୃଦ୍ଧି ଉପରେ ଗ୍ରନ୍ଥରଚନାର ଆଧିକ୍ୟ ଓ ଲେଖକଙ୍କ ଉତ୍ସାହ ନିର୍ଭର କରେ । ପାଠକେ ଯେ ପରିମାଣରେ ତାଙ୍କୁ ଉତ୍ସାହ ଦେବେ ସେହି ପରିମାଣରେ ଭଲ ୨ ପୁସ୍ତକ ପାଇପାରିବେ । ଅଧିକାଂଶ ଲେଖକ ମଧ୍ୟ ବା ନିମ୍ନ ଶ୍ରେଣୀର ଲୋକ ; ସେମାନଙ୍କର ଏପରି ସଙ୍ଗତି ନାହିଁ ଯେ ଆପଣା ବ୍ୟୟରେ ପାଠ୍ୟ ପୁସ୍ତକ ଯୋଗାଇବେ । ବଡ଼ଲୋକଙ୍କ ଦ୍ୱାରା ତ ଏକାର୍ଯ୍ୟ ହେବାର ନୁହେ, ସେମାନେ ଆପଣା କେତେ ବିଷୟରେ ଏଡ଼େ ବ୍ୟସ୍ତ ସେମାନଙ୍କୁ ଅବସର ନାହିଁ ଯେ ଏପରି ଅବକାଶ ସାପେକ୍ଷ କାର୍ଯ୍ୟରେ ହସ୍ତ ଦେବେ । ଓଡ଼ିଶା ପ୍ରଦେଶ ଅତି କ୍ଷୁଦ୍ର ଓ ବିଦ୍ୟା ଶିକ୍ଷାର ପ୍ରଥମାବସ୍ଥା । ଏ ପର୍ଯ୍ୟନ୍ତ ସମସ୍ତେ ଛୋଟା ଅକ୍ଷର ପଢ଼ିବାକୁ ଶିକ୍ଷା କରିନାହାନ୍ତି । ପୁଣି ଶିକ୍ଷାକାର୍ଯ୍ୟର ଭାର ଯେଉଁମାନଙ୍କଠାରେ ନ୍ୟସ୍ତ ତାହାର ଭଲମନ୍ଦ ବିଚାର କରିବାର ସେମାନଙ୍କର କ୍ଷମତା ନାହିଁ କିମ୍ବା କ୍ଷମତା ଥାଇ ୨ ଆପଣା ସୁବିଧା ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରୁଅଛନ୍ତି । ଏମନ୍ତ ଅବସ୍ଥାରେ ଆମ୍ଭେମାନେ କିପରି କହିପାରୁଁ ଯେ କାହିଁକି ଓଡ଼ିଶାରେ ଭଲ ୨ ପାଠ୍ୟ ପୁସ୍ତକ ବାହାରୁ ନାହିଁ ? ଯେଉଁମାନେ କିଛି ୨ ଲେଖୁଅଛନ୍ତି (ଅଧିକାଂଶ ଅନୁବାଦ) ତାହା ପ୍ରକାଶ କରିବାକୁ ସାହସ କରୁନାହାନ୍ତି ।

ଆମ୍ଭେମାନେ ଏମନ୍ତ କହୁନାହୁଁ ଯେ ଗବର୍ଣ୍ଣମେଣ୍ଟ ଓଡ଼ିଶାକୁ ବଡ଼ କରିଦେଉନ୍ତୁ ବା ସୁବିଧା ହେଲେ ଏକାବେଳକେ ବଡ଼ ୨ ଲେଖକ ବାହାରି ପଡ଼ିବେ । ଯେତେବେ ଯେଉଁ ୨ ଉପକରଣ ଇତସ୍ତତଃ ବିକ୍ଷିପ୍ତ ହୋଇଅଛି ସେ ସବୁକୁ ଏକତ୍ର କରି ଆଣିଲେ ଯେ ଏହି ଉତ୍କଳ ଖଣ୍ଡରେ ଏକସମୟରେ ବିଦ୍ୟାସାଗର ଓ ଅକ୍ଷୟ କୁମାରଙ୍କ ପରି ଲେଖକ ବାହାରିବେ ଏହା ଅସମ୍ଭବ ନୁହେ । କେହି ଲେଖନୀ ଧାରଣ କଲମାତ୍ରକେ ଉନ୍ନତି ସୋପାନର ଶିରୋଦେଶରେ ଆରୋହଣ କରଇ ନାହିଁ । ଅନ୍ୟାନ୍ୟ ମହତ୍ତ୍ୱ କାର୍ଯ୍ୟପରି ରଚନାର ଉନ୍ନତି ମଧ୍ୟ ସମୟ ଅପେକ୍ଷା କରେ । ଯାହା ମନୁଷ୍ୟ କରିଅଛି ତାହା ଅବଶ୍ୟ ମନୁଷ୍ୟ କରିପାରିବ । ଦିନକେ ନହେବ ସହସ୍ର ଦିନେ ହେବ ; ସହସ୍ର ଦିନେ ନହୁଏ ସହସ୍ର ବର୍ଷରେ ହେବ । ଯତ୍ନ କର ଅବଶ୍ୟ ହେବ ।

ସମ୍ବଲପୁର ଓ ଗଞ୍ଜାମ ଯେବେ କଟକ ସଙ୍ଗେ ମିଶିଯାଏ ତେବେ ସମାଲୋଚିତ ଏ ଅଭାବ ଅବଶ୍ୟ ଦୂର ହୋଇଯିବ । ସମ୍ବଲପୁର ଓ ଗଞ୍ଜାମ ଓଡ଼ିଶାର

ଅଂଶମାତ୍ର ଓ ସେ ବୃଦ୍ଧିକୁ ଧରିଲେ ଓଡ଼ିଶା ବଙ୍ଗଳାର ଅଷ୍ଟାଂଶରୁ ଅଧିକ ହେବ । କି ଭାଷା, କି ଆଚାର ବ୍ୟବହାର, କି ଧର୍ମ ସବୁ ବିଷୟରେ ଉକ୍ତ ତିନି ଜିଲ୍ଲାର କଟକ ସଙ୍ଗେ ଯେତେ ଐକ୍ୟତା ପ୍ରାପ୍ତ ଅନ୍ୟ କାହାରି ସଙ୍ଗେ ନାହିଁ । ବର୍ତ୍ତମାନ ଯେପରି ଅଛି ସେପରି ରହିଲେ କସ୍ମିନ୍ କାଳେ କାହାର ଭଲ ହେବାର ସମ୍ଭାବନା ନାହିଁ । ଗଞ୍ଜାମର ଲୋକେ ନା ତେଲଙ୍ଗୀ ଜାଣନ୍ତି ନା ଓଡ଼ିଆ ଜାଣନ୍ତି ଏବଂ କଟକ ସଙ୍ଗେ ଯେତେ ସମ୍ପର୍କ ନାହିଁ ଯେ ସେମାନେ ଭବିଷ୍ୟତରେ ଶିକ୍ଷା କରିପାରିବେ । ଅପତ୍ୟ ଲୋକେ ବଙ୍ଗଳାକୁ ଯିବାକୁ ଯେତେ ଅଗ୍ରସର ଗଞ୍ଜାମକୁ ଯିବାକୁ ତେତେ [illegible]ନ୍ତି; ତହିଁର କାରଣ ଏହି ଯେ ଗଞ୍ଜାମ ଭିନ୍ନ ଗବର୍ଣ୍ଣମେଣ୍ଟର ଅଧୀନ, ସେଠାକୁ ଗଲେ ଆଉ କଟକକୁ ଫେରି ଆସିବାର ଆଶା ନାହିଁ । ମଧ୍ୟ ଯେଉଁମାନେ ସେଠାକୁ ଯାଉଅଛନ୍ତି ସେମାନେ କଟକ ସଙ୍ଗେ କୌଣସି ସମ୍ପର୍କ ରଖୁନାହାନ୍ତି । ଗଞ୍ଜାମରେ କେଉଁ ଶିକ୍ଷାର କେତେ ଗତି ଓ କି କି ପୁସ୍ତକ ପ୍ରଚଳିତ ଅଛି ତାହା ଆମ୍ଭମାନଙ୍କୁ କିଛି ଜଣାନାହିଁ । ସୁତରାଂ ଏଠା ପୁସ୍ତକମାନ ଗଞ୍ଜାମକୁ ଯିବାର କୌଣସି ବାଟ ନାହିଁ ।

ସମ୍ବଲପୁର ଅବସ୍ଥା ତହୁଁ ଶୋଚନୀୟ । ଯେଉଁ ଶିକ୍ଷିତମାନେ ଯାଇ ସେଠାରେ ରହିଲେ ସେମାନେ ଆପଣା ପଣଃ ଲୋପ ଭୟରେ ହେଉ ଅଥବା ଅନ୍ୟ କାରଣରୁ ହେଉ, କଟକ ସଙ୍ଗେ ସମ୍ବଲପୁରର ଯେପରି କୌଣସି ସମ୍ପର୍କ ନରହେ ତହିଁର ଚେଷ୍ଟା କରୁଅଛନ୍ତି । ଅନ୍ୟଥା ସେମାନେ ଆପଣା ୨ ବ୍ୟବସାୟରେ ମାରି ପଡ଼ିବେ । କେତେକ ବଙ୍ଗଳା ପୁସ୍ତକକୁ ଓଡ଼ିଆ ଅକ୍ଷରରେ ଛପାଇ ବର୍ଷରେ ସହସ୍ର ଟଙ୍କା ଉପାର୍ଜନ କରୁଅଛନ୍ତି ତାହା ଆଉ ହୋଇପାରିବ ନାହିଁ । ଏଠାରେ ଆମ୍ଭେମାନେ ଭାଷାକୁ ବିଶଦ କରିବାକୁ ଚେଷ୍ଟା କରୁଅଛୁଁ ସେଠାରେ ସେମାନେ କଦର୍ଯ୍ୟ ଭାଷାରେ ବ୍ୟବସାୟ ଚଳାଉଅଛନ୍ତି । ସେମାନେ ଯେବେ ପ୍ରକୃତ ଦେଶହିତୈଷୀ ହୋଇଥାନ୍ତେ ତେବେ ଏଠାର ଭଲ ୨ ପୁସ୍ତକ ନେଇ ସେଠାରେ ଚଳାଇ ଲୋକମାନଙ୍କୁ ଉତ୍ସାହ ଦିଅନ୍ତେ ଓ ସମ୍ବଲପୁର ସଙ୍ଗେ କଟକର ମେଳ ହୁଅନ୍ତା ତହିଁରେ ଫଳବାନ ହୁଅନ୍ତେ । ତାହାହେଲେ ସମ୍ବଲପୁରୀଆମାନେ କଟକ ଲୋକଙ୍କୁ ଦେଶୀ ସାହେବ ବୋଲି ଡରନ୍ତେ ନାହିଁ ଏବଂ ସେମାନଙ୍କୁ ବିଶ୍ୱାସ କରନ୍ତେ । ଆମ୍ଭମାନଙ୍କ କହିବାର ତାତ୍ପର୍ଯ୍ୟ ଏହି ଯେ ଆମ୍ଭେମାନେ ସେମାନଙ୍କଠାରେ ଯେଉଁପ ଆଶା କରୁଁ ସେମାନେ ସେପରି କାର୍ଯ୍ୟ କରୁନାହାନ୍ତି ।

ଶିକ୍ଷା ସମ୍ବନ୍ଧରେ ଯାହା କହିଲୁଁ ବାଣିଜ୍ୟ ସମ୍ବନ୍ଧରେ ମଧ୍ୟ ସେହିରୂପ । ବାଣିଜ୍ୟ କରିବାର ଅନ୍ୟାନ୍ୟ ସୁବିଧା ଥାଉଁ ୨ ଭିନ୍ନ ଗବର୍ଣ୍ଣମେଣ୍ଟ ପ୍ରତ୍ୟେକ ଏ ତିନି ଜିଲ୍ଲା ମଧ୍ୟରେ ବାଣିଜ୍ୟ ଚଳି ପାରୁନାହିଁ । ଗତବର୍ଷ ସମ୍ବଲପୁରରେ ଲୁଣ ମହଙ୍ଗ

ଣ୍ଟେକ୍ସା ହେଲା ତଥାପି କେହି ସାହସ । ଲୋକଙ୍କୁ ଲୁଣ ନେବାକୁ ସାହସ କଲେ ନାହିଁ ଏଥିଯୋଗୁଁ ଆମ୍ଭେମାନେ କହୁଅଛୁଁ ଯେ ଯେପର୍ଯ୍ୟନ୍ତ ଏ ବିଭାଗର ସାଧାରଣ ଗଭର୍ଣ୍ଣମେଣ୍ଟ ଅଧୀନ ହୋଇନାହିଁ ସେ ପର୍ଯ୍ୟନ୍ତ ତାହାର ଉନ୍ନତ ହେବନାହିଁ । ଏଥିପୂର୍ବେ ଗଭର୍ଣ୍ଣମେଣ୍ଟ ଏ ବିଷୟରେ ଦୁଇ ଏକଥର ପ୍ରସ୍ତାବ କରିଥିଲେ ମାତ୍ର କାହିଁକି ଯେ ତହିଁର ଶାନ୍ତ ରହିଲେ ତାହା ଆମ୍ଭମାନଙ୍କୁ ଜଣାନାହିଁ । ଅନୁମାନ କରୁଁ ଏଥିର ଆବଶ୍ୟକତା ଓ ଉପକାରିତା ଗଭର୍ଣ୍ଣମେଣ୍ଟଙ୍କୁ ସମ୍ୟକ୍ ବୋଧ ହୋଇନାହିଁ । ଯେବେ ଏମନ୍ତ ହୋଇଥାଏ ତେବେ ଆମ୍ଭମାନଙ୍କ ବିବେଚନାରେ ଏଠା ଲୋକେ ଏ ବିଷୟରେ ଗଭର୍ଣ୍ଣମେଣ୍ଟଙ୍କୁ ଆବେଦନ କଲେ ଅସଙ୍ଗତ ହେବ ନାହିଁ ।

ଯେତେବେଳେ ଗଞ୍ଜାମ, ସମ୍ବଲପୁର ଓ କଟକ ଏକତ୍ର ମିଳିବ ସ୍କୁଲର ସଂଖ୍ୟା ପ୍ରାୟ ଦୁଇ ସହସ୍ର ହୋଇପଡ଼ିବ ଓ ଜଣେ ସ୍ୱତନ୍ତ୍ର ଇନସ୍ପେକ୍ଟରର ଆବଶ୍ୟକ ହେବ. ଗ୍ରନ୍ଥକର୍ତ୍ତାମାନଙ୍କର ଆଉ ଏ ଦୁର୍ଦ୍ଦଶା ରହିବ ନାହିଁ ; ଅଳ୍ପଦିନ ମଧ୍ୟରେ ପ୍ରଚୁର ପାଠ୍ୟପୁସ୍ତକ ଦୃଷ୍ଟିଗୋଚର ହେବ ଏବଂ ସେତେବେଳେ ଆମ୍ଭେମାନେ ବିଶ୍ୱାସ କରିବୁଁ ଯେ ବଙ୍ଗଳା ଓଡ଼ିଶାରୁ ଉଠିଗଲା ।

---

## ( ୨ୟ ଭାଗ, ୩ । ୬ । ୧୮୭୪, ସଂଖ୍ୟା ୪ )

୨୩ । ଉତ୍କଳ ସାହିତ୍ୟ

ଉତ୍କଳ ସାହିତ୍ୟର ଅବସ୍ଥା ଯେ ଅଦ୍ୟାବଧି ଶୋଚନୀୟ, ଏକଥା କିଏ ଅସ୍ୱୀକାର କରିବ ? ଆଜି ପର୍ଯ୍ୟନ୍ତ ସରସ, ସୁଲଳିତ, ଶୃଙ୍ଗାର ରସ ବିବର୍ଜିତ, ମନୋଦୁଃଖହର ଓ ପ୍ରୀତିପଦ ଖଣ୍ଡିଏ ଗଦ୍ୟ କି ପଦ୍ୟ ମୂଳଗ୍ରନ୍ଥ ଓଡ଼ିଆ ଭାଷାରେ ଦେଖିବାକୁ ପାଇବାର ଦୁସ୍ତର । ନାଟକ ଓ ନବନ୍ୟାସ ଗୀତ ଓ ଅଦ୍ୟାବଧି ପ୍ରକୃଷ୍ଟରୂପେ ଏ ଭାଷାରେ ପ୍ରବେଶ କରି ପାରିନାହିଁ ଯେନାପତି ରଚିତ ଭାରତବର୍ଷର ଇତିହାସ ଓ ଅନୁଦିତ ବଙ୍ଗଳାର ଅନୁବାଦିତ ଦୁଇ ଏକଖଣ୍ଡ ଇଂଲଣ୍ଡ ଇତିହାସ ଛଡ଼ା ପ୍ରକୃତ ଇତିହାସ ଏ ଭାଷାରେ ଆଉ ଥିବାର ତ ଆମ୍ଭମାନଙ୍କୁ ଜଣାନାହିଁ । ଉପାଖ୍ୟାନ କି

ଭ୍ରମଣ ବୃତ୍ତାନ୍ତ ବିଷୟକ ପୁସ୍ତକ ମୂଳର ଦୁଷ୍ପ୍ରାପ୍ୟ । ଏହିପରି ଗୋଟି ଗୋଟି କରି କହିଲେ ଅନେକ ହୋଇଯିବ । ଅଙ୍କ ବିଜ୍ଞାନାଦି ବିଷୟକ ପୁସ୍ତକମାନ ଛାଡ଼, ଯାହାର ମଧ୍ୟ ସଂଖ୍ୟା ବ ୭ । ୮ ଖଣ୍ଡ ଅନୁବାଦ ଓ ସଙ୍କଳନକୁ ଅତିକ୍ରମ କରିନାହିଁ, ଶୁଦ୍ଧ ସାହିତ୍ୟର ଗଡ଼, ମୂଳରେ ଆନନ୍ଦ ଦାୟକ ନୁହେଁ । ତେବେ ଏ ବିଭାଗରେ ପ୍ରକୃତ ଯାହା କିଛି ଅଛି ତାହା କେବଳ ପୂର୍ବକାଳୀନ ଦୀର୍ଘ ଶବ୍ଦାଡ଼ମ୍ବର ବିକ୍ଷିପ୍ତ, ସାତ୍ତ୍ୱିକଭାବପୂର୍ଣ୍ଣ, ଅଶ୍ଳୀଳ ଭାଷା ମଣ୍ଡିତ ଓ ସ୍ଥାନ ସ୍ଥାନରେ ଅବଶ୍ୟ ହୃଦୟମୋହନକାରୀ ସରଳ ଭାଷାରେ ଲଳିତ, ସୁଲଳିତ ଓ ସ୍ୱାଭାବିକ ଭାବଯୁକ୍ତ, ଉପେନ୍ଦ୍ର, ଦିନକୃଷ୍ଣ ଦାସ, ସାମନ୍ତସିଂହାର ପ୍ରଭୃତି କବି କବିମାନଙ୍କ ଲୌହ ଲେଖନୀ ସମ୍ଭୂତ ଖଣ୍ଡିଏ କେତେ କାବ୍ୟ । କିନ୍ତୁ ଏ ଗ୍ରନ୍ଥାବଳୀର ଅବସ୍ଥା ଏପରି ହୋଇଛି, ଯେ ସୁକୁମାରମତି ଶିଶୁ କି ଯୌବନୋନ୍ମୁଖୀ ବାଳକ ସମସ୍ତଙ୍କ ହସ୍ତରେ ଏ ସବୁକୁ ନିଃସନ୍ଦେହରେ ଅର୍ପଣ କରାଯାଇ ନ ପାରେ । ଆଜିକାଲି ଲୋକଙ୍କ ରୁଚି କ୍ରମଶଃ ପରିବର୍ତ୍ତିତ ହେଉଅଛି । ଓଡ଼ିଶାରେ ଏ ପରିବର୍ତ୍ତନ ସବୁ ବିଷୟରେ ପ୍ରତ୍ୟକ୍ଷୀଭୂତ ହୋଇନାହିଁ, ତଥାପି ଯେ ପରିବର୍ତ୍ତନର ସମୟ ଅତିଶୀଘ୍ର ଏ କଥା ସ୍ପଷ୍ଟ ଦେଖା ଯାଉଅଛି । ଦିନ ଦିନ ପାଶ୍ଚାତ୍ୟ ଜ୍ଞାନ ଓ ପାଶ୍ଚାତ୍ୟ ସଭ୍ୟତା ଯେପରି ଗତି ବିସ୍ତାର କରୁଅଛି, ସେଥିରେ ଏକ ନୂତନ ପ୍ରକାରର ରୁଚି ଶୀଘ୍ର ହେଉ ବା ବିଳମ୍ବରେ ହେଉ ଯେ ଦିନେ ଭାରତବର୍ଷକୁ ଆକ୍ରମଣ ସୁତରାଂ ଓଡ଼ିଶାରେ ମଧ୍ୟ ଗତି ବିକ୍ଷେପ କରିବ ଏଥିରେ ଦ୍ୱିଧା ଉପସ୍ଥିତ ହେଉନାହିଁ । ଏହି ନୂତନ ରୁଚିର ଅନୁସାରେ ଭାରତରେ ସ୍ଥାନ ସ୍ଥାନରେ ନୂତନ ଏକ ସାହିତ୍ୟ ଭଣ୍ଡାର ସଗଠିତ ହେଉଅଛି, ଓଡ଼ିଶାରେ ମଧ୍ୟ ଏହିପରି ହେବାର ଉଚିତ, ଓ ହେବ, ହେବାର ସମସ୍ତ ସୁଚନା ଆସି ଉପସ୍ଥିତ ହେଲାଣି ଓ ଉଦ୍ୟୋଗ ଲାଗିଲାଣି ।

ଓଡ଼ିଆ ଭାଷାରେ ଭଲ ଭଲ ପୁସ୍ତକମାନ ବାହାରି ଓଡ଼ିଆ ସାହିତ୍ୟ ପୁସ୍ତକାଳୟ ପୂର୍ଣ୍ଣ କରିନାହିଁ ଏହାର ନାନା କାରଣ ଅଛି । ଆଦୌ ଅଦ୍ୟାବଧି ଉପଯୁକ୍ତ ଲେଖକଙ୍କର ଅଭ୍ୟୁଦୟ ହୋଇନାହିଁ । ଦ୍ୱିତୀୟତଃ ଯାହା ଜଣା ଅଧିକ ହୋଇ ଲାଣି କେତେ ଅଛନ୍ତି, ସେମାନେ ଅର୍ଥାଭାବ ଓ ଉତ୍ସାହ ପ୍ରାପ୍ତି ବିହୀନରୁ କିଛି ଲେଖା-ଲେଖି କରି ପାରୁନାହାନ୍ତି, ଅନ୍ୟତଃ ଏ ସ୍ଥାନୀୟ ବିଭିନ୍ନ ଲୋକଙ୍କର ଏ ବିଷୟରେ ବିଶେଷ ଶ୍ରଦ୍ଧା ଓ ଉତ୍ସାହ ଦାନର ଚେଷ୍ଟା ନ ହେବାରୁ ମଧ୍ୟ ଅନେକ ଅସୁବିଧା ଘଟୁଅଛି । ଆମ୍ଭମାନଙ୍କ ସରକାର ବାହାଦୁର ବରଂ ଏ ବିଷୟରେ ଅନେକ କରିଅଛନ୍ତି । ସେଦିନ ବଙ୍ଗାଳ ଗବର୍ଣ୍ଣମେଣ୍ଟ ୨୦୦୦ ଟଙ୍କା ଓଡ଼ିଆ ପୁସ୍ତକ ସଙ୍କାଶେ ଦେଇଅଛନ୍ତି ଯଦ୍ୟପି ଏ ଟଙ୍କାର ଭଲ ବିନିଯୋଗ ଅଦ୍ୟାବଧି ହୋଇନାହିଁ ତଥାପି ସରକାରଙ୍କର ଓ ଏ ବିଷୟରେ ଢେଙ୍କାନାଳ ମହାରାଜାଙ୍କର ଯେଉଁ ପ୍ରକାର ଉତ୍ସାହ

ଅବଲମ୍ବନୀୟ ହୋଇଅଛି ତାହା ଅବଶ୍ୟ ସାଧାରଣ ହିତୈଷୀ ଓ ଧନୀଲୋକଙ୍କର ଅନୁକରଣୀୟ ।

ଏ କ୍ଷେତ୍ରରେ ଏତିକି ଉପସଂହାରରେ କହି ଭୁନ ହେବା ଯେ ସାଧାରଣ ସାହିତ୍ୟ, ବିଶେଷତଃ ଗଦ୍ୟ ଗ୍ରନ୍ଥ ଆଧୁନିକ ରୀତି ଯେ ପ୍ରକାର ପ୍ରତିକୂଳ, ସେଥିରେ ପୁଣି ଓଡ଼ିଆ ସାହିତ୍ୟ ଉନ୍ନତିର ସାଧାରଣ ଚେଷ୍ଟା ଯେପରି ଅପ୍ରତିହତ, ଏଥିରେ ଶୀଘ୍ର ଅବଶ୍ୟ ଏହାର ଭଲ ଗତିର ଭରସା ନାହିଁ; ମାତ୍ର ଏଥି ସକାଶେ ଯେଉଁମାନଙ୍କର କିଛି ଶକ୍ତିଅଛି, ସେମାନଙ୍କର ସୁଖା ତୁନିହୋଇ ରହିବା ବଡ଼ ଉତ୍ତମ ଦିଶୁନାହିଁ । ସେମାନଙ୍କର ଉଚିତ ଲେଖନୀ ସଞ୍ଚାଳନ କରିବାର, ଆଜିକାଲି ନହେଉ ଭବିଷ୍ୟତରେ ଲୋକେ ଏହାର ଉପକାର ଓ ସାରତ୍ୱ ବୁଝିବେ ଓ ଉତ୍ସାହ ଦେବାକୁ କୁଣ୍ଠିତ ହେବେ ନାହିଁ । ଆଜିକାଲି କାହାର ୨ ମତ ଓଡ଼ିଆରେ ପଦ୍ୟ ଯଥେଷ୍ଟ ଅଛି ଆଉ ଆବଶ୍ୟକ ନାହିଁ । କିନ୍ତୁ ଆମ୍ଭମାନଙ୍କ ମତ ଏଥି ବିରୁଦ୍ଧରେ । ଆଜିକାଲି ଏକ ଦର୍ପଣର ଅଭ୍ୟୁଦୟ ସାହିତ୍ୟ ବିସ୍ତାର ବିଷୟରେ ବଡ଼ ଉପଯୋଗୀ ହୋଇଅଛି । ବର୍ତ୍ତମାନ ଓଡ଼ିଶାରେ ଯେଉଁମାନେ ଲେଖିବାକୁ କିଛି ୨ ସମର୍ଥ, ସେମାନଙ୍କୁ ଆମ୍ଭମାନଙ୍କର ଆନ୍ତରିକ ଅନୁନୟ ଓଡ଼ିଶାର ଓ ଓଡ଼ିଆଭାଷାର ଦୁରବସ୍ଥା ଦେଖି ଉକ୍ତ ସତ୍କାର୍ଯ୍ୟରୁ ବିରତ ନ ହେଉନ୍ତୁ । ଯଦି ଲେଖି ଛପାଇବାର ସଙ୍ଗତି ନଥାଏ, ବାଲେଶ୍ୱରସ୍ଥ ଉତ୍କଳ ଦର୍ପଣ ଅଫିସକୁ ସେମାନଙ୍କର ଲେଖା ପଠାଇଲେ ସେଠାର ବୋଧକରେଁ ଯଥେଷ୍ଟ ଉତ୍ସାହକ ସେମାନେ ପାଇପାରନ୍ତି ।

---

# ଧର୍ମ

( ୨ୟ ଭାଗ, ୧ । ୭ । ୧୮୭୭, ସଂଖ୍ୟା ୨୨ )

୯ । ନୂତନ ଧର୍ମ ପ୍ରଚାର

କଟକର ନିକଟସ୍ଥ କେତେକ ଗଡ଼ଜାତମାନଙ୍କରେ ଏକ ନୂତନ ଧର୍ମ ପ୍ରଚାର ହେବାର ଉପକ୍ରମ ହୋଇଅଛି । ଏ ଧର୍ମର ନାମ ମହିମା । ଢେଙ୍କାନାଳର ଅନ୍ତଃପାତୀ କପିଳାସ ପର୍ବତରେ ଏକ ଫଳାହାରୀ ସନ୍ୟାସୀ ଥିଲେ । ସେ ପ୍ରଥମେ କିଛିଦିନ ଫଳାହାର କଲେ ତହିଁ ଉତ୍ତାରୁ ଦୁଗ୍ଧ ପାନ କଲେ ଓ ଶେଷରେ କେବଳ ଜଳପାନ ଦ୍ୱାରା ଜୀବନଧାରଣ କରି ଶିବପୂଜା କରୁଥିଲେ । ଏକଦିନ ସେ ଆକାଶବାଣୀ ଶ୍ରବଣକରି ତଦନୁସାରେ ଜଟା ମୁଣ୍ଡନକରି ସନ୍ୟାସ ଧର୍ମ ତ୍ୟାଗ କଲେ । ବର୍ତ୍ତମାନ ସେ ବଲ୍‌କଲ ପରିଧାନ କରି ନୂତନ ଏକ ଧର୍ମ ପ୍ରଚାର କରିବାରେ ପ୍ରବୃତ୍ତ ହୋଇ-ଅଛନ୍ତି । ଏ ଧର୍ମରେ ଜାତି ବିଚାର ନାହିଁ, ଶ୍ରାଦ୍ଧାଦି କ୍ରିୟା ଏବଂ ପିତୁଳା ପୂଜା ନିଷେଧ, କେବଳ ଏକମାତ୍ର ଈଶ୍ୱର ଏ ଧର୍ମାବଲମ୍ବୀମାନଙ୍କର ସେବ୍ୟ ଅଟନ୍ତି । ଉକ୍ତ ଧର୍ମ ପ୍ରଚାରକ ଅତି ନିର୍ଲୋଭି ଏବଂ ଲୋକମାନଙ୍କୁ ଭୋଜ ଦେବା ବିଷୟରେ ବିଶେଷ ତତ୍ପର ଅଟନ୍ତି । ସେ ଏବଂ ତାହାଙ୍କ ଶିଷ୍ୟମାନେ ଗୃହ ମଧ୍ୟରେ କିଂବା କଂସା ପିତ୍ତଳାଦି କୌଣସି ପାତ୍ରରେ ଭୋଜନ କରନ୍ତି ନାହିଁ । ଦାଣ୍ଡ ମଧ୍ୟରେ ଭଙ୍ଗା ଖପରରେ ଯେ କୌଣସି ଜାତି ଯାହା କିଛି ଖାଇବାକୁ ଦେଲେ ଆହାର କରନ୍ତି । ଏକ ଏକ ସ୍ଥାନରେ ଉତ୍ତମ ବଡ଼ ବଡ଼ ଗୃହ ନିର୍ମାଣ କରି ଚାଳିଶ ପଚାଶ ସହସ୍ର ଲୋକଙ୍କୁ ଭୋଜନ ଦିଅନ୍ତି ଓ କେବେ କେବେ ଇଚ୍ଛାହେଲେ ଗୃହକୁ ଭସ୍ମୀଭୂତ କରି ସ୍ଥାନତ୍ୟାଗ କରିଯାନ୍ତି । ପ୍ରାୟ ୨୦ କି ୩୦ ସହସ୍ର ଲୋକ ଏ ଧର୍ମ ଅବଲମ୍ବନ କରିଥିବା ଶୁଣାଯାଏ । ଉକ୍ତ ସନ୍ୟାସୀ ଯେତେ ସ୍ଥଳକୁ ଯାଇଅଛନ୍ତି ସେଠାର ଲୋକମାନେ ତାହାଙ୍କର ଏପରି ଆଜ୍ଞାଧୀନ ହୋଇଅଛନ୍ତି ଯେ ସେ ଯାହା କହନ୍ତି ସେଥିର ଅନ୍ୟଥା କରିବାକୁ କେହି ସାହସୀ ହୁଅନ୍ତି ନାହିଁ ଏବଂ ସେ ଯାହାକୁ ଯାହା ମାଗୁଅଛନ୍ତି ସେ ତାହା ଦେଉଅଛନ୍ତି ।

## ( ୪ଥ ଭାଗ, ୧୯ । ୯ । ୧୮୭୨, ସଂଖ୍ୟା ୩୭ )

୨ । ସାପ୍ତାହିକ ସମ୍ବାଦ ।

### ଉତ୍କଳ ଶୁଭକରୀ ପତ୍ରିକା

ବ୍ରାହ୍ମ ଧର୍ମର ମର୍ମ ଉତ୍କଳର ସର୍ବସାଧାରଣଙ୍କୁ ଜଣାଇବା ଓ ଉକ୍ତ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଖଣ୍ଡିଏ ମାସିକପତ୍ରିକା ଚଳିତ ମାସଠାରୁ ଆରମ୍ଭ ହୋଇ ଅଛି । ଏହାର ନାମ 'ଉତ୍କଳ ଶୁଭକରୀ ପତ୍ରିକା' । ମୂଲ୍ୟ ଏକଖଣ୍ଡକୁ ୦ / ମାତ୍ର । ଗତ ବୁଧବାର ଏହାର ପ୍ରଥମ ସଂଖ୍ୟା ଆମ୍ଭେମାନେ ପ୍ରାପ୍ତ ହୋଇ ଆନନ୍ଦିତ ହେଲୁଁ ।

## ( ୮ମ ଭାଗ, ୭ । ୯ । ୧୮୭୩, ସଂଖ୍ୟା ୩୬ )

୩ । ମହିମା ବାବାଜୀ

ଆମ୍ଭମାନଙ୍କର ଯାଜପୁରସ୍ଥ ସମ୍ବାଦଦାତା ଲେଖିଅଛନ୍ତି ଯେ ଢେଙ୍କାନାଳ ସୁକିନ୍ଦା କେଉଁଝର ପ୍ରଭୃତି ଗଡ଼ଜାତରେ କୁମ୍ଭିପଟେ ନାମଧେୟରେ ପ୍ରାୟ ଚାରି ପାଞ୍ଚଶତ ଲୋକ ଏକ ସମ୍ପ୍ରଦାୟ ବାନ୍ଧି ଅଛନ୍ତି । ଏମାନଙ୍କର ଅପର ନାମ ମହିମା ବାବାଜୀ । ଏହି ସମ୍ପ୍ରଦାୟ ମଧ୍ୟରୁ ଦୁଇ ଗୋଟିଜଣ ମଧୁପୁରରେ ପ୍ରବେଶ ହୋଇ ଲୋକଙ୍କ ଜାତି ଧ୍ୱଂସର ଚେଷ୍ଟା କରିବାରୁ ରାଜା ତାହାଙ୍କୁ ହିନ୍ଦୁଧର୍ମର ବିରୋଧୀ ଜାଣି ଆପଣା ରାଜ୍ୟରୁ ବାହାର କରିଦେଲେ । ସେହି ବୈରାଗୀଙ୍କ ମଧ୍ୟରୁ ଦୁଇଜଣ ଆଜକୁ ମାସ ୨ ୩ ହେବ ଯାଜପୁରକୁ ଆସି ବ୍ରାହ୍ମଣ କରଣ ଖଣ୍ଡାୟତ ପ୍ରଭୃତି ନାନା ଜାତି ମଧ୍ୟରୁ କେତେ ଗୁଡ଼ିଏ ଶିଷ୍ୟ କରି ତାହାଙ୍କୁ ସଙ୍ଗେ ନେଇ ବୁଲୁଅଛନ୍ତି । ରାଜା ଓ ବ୍ରାହ୍ମଣ, ଭଣ୍ଡାରି, ଧୋବା, ମାଳୀ ଓ ଡମ୍ବ ଏହି ପାଞ୍ଚ ଜାତିକୁ ଛାଡ଼ି ଆଉ ସମସ୍ତଙ୍କ ଘରେ ଭୋଜନ କରନ୍ତି । ଖ୍ରୀଷ୍ଟୀୟାନଙ୍କୁ ଘୃଣା କାରଣ ନାହିଁ । ଏ ସମସ୍ତଙ୍କ ଘରୁ ଭାତ ମାଗିନେଇ ହାଣ୍ଡିରେ ରଖି ଦାଣ୍ଡରେ ଗୁରୁ ଶିଷ୍ୟ ସମସ୍ତେ ଏକତ୍ରେ ଭୋଜନ କରି ହାଣ୍ଡିକୁ ଭାଙ୍ଗି ପକାଇ ଦିଅନ୍ତି । ଲୋକେ ଏହାଙ୍କୁ ବଡ଼ ମାନନ୍ତି ଓ କେତେକେ ଲୋକ ଏହାଙ୍କଠାରେ ଦୁଃଖ ଜଣାଇ ଆଜ୍ଞା ଦେଲେ ଅତି ଭକ୍ତି ସହିତ ପ୍ରତିପାଳନ କରୁଅଛନ୍ତି । ସୁଦ୍ଧ କାମନା ସଫଳ କରିବାର ଶୁଣାଯାଏ । ଯାହାହେଉ ଏହାଙ୍କ ଦ୍ୱାରା ଜାତି ବନାଶର ପ୍ରବଳ ଉପାୟ ହେବାରୁ ଦେଖି ଯାଜପୁରର ବ୍ରାହ୍ମଣମାନେ ସଭାକରି ସ୍ଥିର କରିଅଛନ୍ତି ମହିମା ବାବାଜୀଙ୍କ ଦ୍ୱାରା ଯାହାଙ୍କର ଜାତି ନାଶ ହୁଅଇ ସେମାନେ ପତିତ ହେବେ

ଓ ବିଧିମତ ପ୍ରାୟଶ୍ଚିତ୍ତ ନକଲେ କେହି ତାହାଙ୍କର ସଙ୍ଗୀ ହେବେ ନାହିଁ । ଏଥିରୁ ବଧି ହେବାର ଶିଷ୍ୟଙ୍କ ସଂଖ୍ୟା ଊଣା ହେଉଅଛି ଓ ଯେଉଁମାନେ ଶିଷ୍ୟ ହୋଇଅଛନ୍ତି ତାହାଙ୍କ ମଧ୍ୟରୁ ଅନେକଲୋକ ଘରକୁ ଫେରିଆସି ପ୍ରାୟଶ୍ଚିତ୍ତର ଉଦ୍ୟମରେ ଅଛନ୍ତି ।

× × ×

( ୧୪ଶ ଭାଗ, ୨୨ । ୨ । ୧୮୭୯, ସଂଖ୍ୟା ୮ )

୪ । ସଦାବର୍ତ୍ତ ଓ ଜଗନ୍ନାଥ ମନ୍ଦିର ବିଷୟକ ବ୍ୟବସ୍ଥା

ମାନ୍ୟବର ଓର୍ମିସ୍ଟନ ସାହେବ ଏଠାକୁ ଯେ ସମସ୍ତ କାର୍ଯ୍ୟ ନିମିତ୍ତ ଆସିଥିଲେ ତହିଁ ମଧ୍ୟରେ ସଦାବର୍ତ୍ତ ସମ୍ପତ୍ତିର ରକ୍ଷା ଏବଂ ଜଗନ୍ନାଥ ମନ୍ଦିରର କାର୍ଯ୍ୟ ନିର୍ବାହ ବିଷୟରେ କିପରି ନିୟମ କଲେ ଭଲ ହେବ ତହିଁର ପରାମର୍ଶ ଏଠା ଲୋକଙ୍କ ସହିତ କରିବା ଗୋଟିଏ କାର୍ଯ୍ୟ ଥିଲା । ସଦାବର୍ତ୍ତ ସମ୍ପତ୍ତି ବିଷୟରେ ଯେ ପ୍ରକାର ଆଇନ କଲେ ଭଲ ହେବ ତହିଁର ଏକ ଚଠା ଏଠା ସୁହୃଦସମାଜ ପ୍ରସ୍ତୁତ କରିଥିବା କଥା ପାଠକମାନେ ପୂର୍ବରୁ ଜାଣିଅଛନ୍ତି । ସେହି ଚଠି ତାହାଙ୍କୁ ଅର୍ପିତ ହେଲା ଏବଂ ସେଥି ଲିଖିତ କଥମାନ ବୁଝିବା କାରଣ ଗତ ଶନିବାର ମଧ୍ୟାହ୍ନକାଳରେ ସୁହୃଦସମାଜର କେତେକ ସଭ୍ୟ ଅପର ଦୁଇ ଶ୍ରେଣୀର ଦେଶୀୟ ଭଦ୍ରଲୋକଙ୍କୁ ଡେକି ସାହେବ ପ୍ରଶଂସିତ ଶ୍ରୀଯୁକ୍ତ କମିଶନରଙ୍କ କୋଠି ଠାରେ ସଭା କରିଥିଲେ ଏବଂ ଉକ୍ତ ସଭାରେ ଉପର ଲିଖିତ ଚଠା ଆଇନର ସମସ୍ତ ଧାରା ପାଠକରି ଯେଉଁଠାରେ ଯାହା ସନ୍ଦେହ ହେଲା ତାହା ସବୁ ମିମାଂସା କରିନେଲେ । ସାହେବ ଆପଣା ମତ କିଛି ବ୍ୟକ୍ତ କରି ନାହାନ୍ତି କେବଳ ଏଠା ଲୋକଙ୍କ ମତ ଜାଣିବା କାରଣ ସଭା କରିଥିଲେ ଓ ତାହା ବୁଝି ନେଲେ । ଏଥରେ ଯେ ପ୍ରକାର ବ୍ୟବସ୍ଥା କରିବାର ହେବ ତହିଁର ପରାମର୍ଶ ସେ ଗବର୍ଣ୍ଣମେଣ୍ଟକୁ ଦେବେ । କେବଳ ତାହାଙ୍କ କଥାବାର୍ତ୍ତାରୁ ଏତିକି ଜଣାଗଲା ଯେ ମାନ୍ଦ୍ରାଜରୁ ଏ ବିଷୟରେ ଯେଉଁ ପାଣ୍ଡୁଲିପି ଆସିଅଛି ସାହେବଙ୍କ ମତ ତହିଁର ସପକ୍ଷରେ ନୁହଇ ଏଠା ପାଣ୍ଡୁଲିପି ତାହାଙ୍କର ମନୋନୀତ ହୋଇଅଛି ଏବଂ ଏହି ମର୍ମର ସେ ଗୋଟିଏ ଆଇନର ଚଠା ପ୍ରସ୍ତୁତ କରିବେ ଏପରି ଅନୁମାନ ହୁଅଇ । ସାହେବ ଯେପରି ସୁନ୍ଦର ବକ୍ତୃତାଦ୍ୱାରା ଏ ବିଷୟର ତର୍କବିତର୍କ ଆରମ୍ଭ କଲେ ଏବଂ ତର୍କବିତର୍କରେ ଯେମନ୍ତ ବିଚକ୍ଷଣତା ଦେଖାଇଲେ ସଭ୍ୟମାନେ ତହିଁରେ ମୋହିତ ହୋଇ ସାହେବଙ୍କ ପ୍ରଶଂସା କରିଥିଲେ ।

ସଦାବର୍ତ୍ତର କଥା ଶେଷହେଲାରୁ ପୁରୀମନ୍ଦିରର କାର୍ଯ୍ୟନିର୍ବାହ

ପ୍ରସଙ୍ଗର ଅବତାରଣା କରି ସାହେବ କହିଲେ କି ଏ ବିଷୟରେ ପୂର୍ବରୁ ଯେଉଁ ଆଇନ ଦ୍ୱାରା ପୁରୀ ରାଜାଙ୍କୁ ମନ୍ଦିରର ଭାର ଦିଆଯାଇ ଅଛି ସେ ଆଇନ ପରିବର୍ତ୍ତନ କରିବାର ଆବଶ୍ୟକ ହୋଇଅଛି । ସମ୍ପ୍ରତି ପୁରୀର ରାଜା କାରାବାସରେ ଥିବା ଏବଂ ତାହାଙ୍କ ପୁତ୍ର ନାବାଳକ ହେବାରୁ ମନ୍ଦିର କାର୍ଯ୍ୟ ନିର୍ବାହ ପକ୍ଷରେ ଭାରି ଅସୁବିଧା ଘଟିଅଛି ଏବଂ ମନ୍ଦିରର ସେବା ଇତ୍ୟାଦି ଛଡ଼ା ମନ୍ଦିର ମଧ୍ୟରେ ଜନତା ନିବାରଣ, ସ୍ୱାସ୍ଥ୍ୟରକ୍ଷା, ସାଧାରଣ ପ୍ରାଣରକ୍ଷା ପ୍ରଭୃତି ନାନା ବିଷୟରେ ରାଜାଙ୍କର ଦାୟିତ୍ୱ ଅନେକ ସାଧାରଣ ହିତ ଉଦ୍ଦେଶ୍ୟରେ ଗବର୍ଣ୍ଣମେଣ୍ଟ ସେ ସମସ୍ତ କର୍ମ ସୁଚାରୁରୂପେ ହେଉଅଛି କି ନା ସର୍ବଦା ଦେଖିବାକୁ ବାଧ୍ୟ । ଏହିପୂର୍ବେ ଗୋବିନ୍ଦ ଦ୍ୱାଦଶୀ ସମୟରେ ଯେଉଁ ଶୋଚନୀୟ ଦୁର୍ଘଟଣା ସେଠାରେ ଘଟିଥିଲା ଉପର ଲିଖିତ ବିଷୟମାନଙ୍କର ତାହା ଗୋଟିଏ ଉଦାହରଣ ଅଟଇ । ରାଜା ଥିବା ସମୟରେ ଏକାକୀ ଏ ସମସ୍ତ କାର୍ଯ୍ୟ ନିର୍ବାହ କରିବା କଠିନ ଏବଂ ଏହି ସମସ୍ତ କାର୍ଯ୍ୟ ସମ୍ପର୍କରେ ସ୍ଥାନୀୟ ହାକିମମାନଙ୍କଠାରୁ ସର୍ବଦା ତାହାଙ୍କ ନିକଟକୁ ପରୱାନା ହୁକୁମ ପ୍ରଭୃତି ଯିବା ଏବଂ ତହିଁର କୈଫିୟତ ଦେବାକୁ ସେ ବାଧ୍ୟ ହେବା ରାଜ ମର୍ଯ୍ୟାଦା ପକ୍ଷରେ ଅଶୋଭନୀୟ ଅଟଇ । ଏହି ସବୁ କାରଣରୁ ସାହେବ ଉଲ୍ଲିଖିତ ପ୍ରକାରର ବ୍ୟବସ୍ଥା କରିବାକୁ ମାନସ କରିଅଛନ୍ତି, ଯଥା:—

ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ଯେପରି ରାଜା ଅଛନ୍ତି ସେହିପରି ଥିବେ । ତାହାଙ୍କୁ ପରାମର୍ଶ ଦେବା କାରଣ ଗୋଟିଏ କମିଟୀ ନିଯୁକ୍ତ ହେବ । ମୁକ୍ତି ମଣ୍ଡପରେ ପଣ୍ଡିତମାନଙ୍କର ସଭା ପ୍ରାଚୀନ କାଳରୁ ଅଛି । ସେମାନେ ଧର୍ମ ସଂକ୍ରାନ୍ତ ନାନା ବିଷୟରେ ରାଜାଙ୍କୁ ପରାମର୍ଶ ଦିଅନ୍ତି । ସେହିପରି ଅପର କାର୍ଯ୍ୟ ନିର୍ବାହ ବିଷୟରେ ନୂତନ ନିର୍ବାଚିତ ସଭା ରାଜାଙ୍କୁ ପରାମର୍ଶ ଦେବେ ଓ ସେହି ପରାମର୍ଶାନୁସାରେ ସମସ୍ତ କାର୍ଯ୍ୟ କରିବାକୁ ହେବ । ମନ୍ଦିରର କାର୍ଯ୍ୟ ନିର୍ବାହ ନିମନ୍ତେ ଜଣେ ମେନେଜର କି ସରବରାକାର ନିଯୁକ୍ତ ହେବେ । ମେନେଜର ମନ୍ଦିରର ସମସ୍ତ କର୍ମ ନିର୍ବାହ କରିବେ ଓ ସମସ୍ତ ଦାୟିତ୍ୱ ତାଙ୍କ ଉପରେ ରହିବ । ସରକାରଙ୍କ ପକ୍ଷରୁ ଯେତେବେଳେ ଯେ ଆଜ୍ଞା ଦେବାର ପ୍ରୟୋଜନ ହେବ ଓ ଯାହା ଚିଠିପତ୍ର ଲେଖାପଢ଼ା ହେବ ସେ ସମସ୍ତ ମେନେଜରଙ୍କ ନାମରେ ହେବ ଓ ମେନେଜରଙ୍କୁ ତହିଁର ଜବାବଦେହି କରିବେ । ଏପରି ହେଲେ ସରକାରୀ ହାକିମଙ୍କ ସହିତ ରାଜାଙ୍କର ସାକ୍ଷାତ ସମ୍ପର୍କ ରହିବ ନାହିଁ, ମନ୍ଦିରର ସମସ୍ତ କାର୍ଯ୍ୟ ସକାଶେ ମେନେଜର ଦାୟୀ ହେବ ଏବଂ ତହିଁପାଇଁ ସେ ଦଣ୍ଡନୀୟ ମଧ୍ୟ ହୋଇ ପାରିବ । ରାଜାଙ୍କ ଅନୁପସ୍ଥିତିକାଳରେ ସଭାର ଅଧୀନରେ ମେନେଜରଙ୍କ ଦ୍ୱାରା ସୁଚାରୁରୂପେ କାର୍ଯ୍ୟ ଚାଲିବ ଏବଂ ରାଜା ଉପସ୍ଥିତ ଥିବା କାଳରେ ମଧ୍ୟ ସଭାର ପରାମର୍ଶରେ ରାଜାଙ୍କର କାର୍ଯ୍ୟ ଉତ୍ତମରୂପେ ଚାଲିବ ।

ଏ ପ୍ରକାର ବ୍ୟବସ୍ଥା ଏଠା ଲୋକଙ୍କର ମନୋଗତ ଅଟଇ କି ନାହିଁ ଏହା ଜାଣିବା କାରଣ ଶ୍ରୀ ଚୌଧୁରୀ କାଶୀନାଥ ଦାସଙ୍କୁ ସାହେବ ପ୍ରଶଂସିତ ପ୍ରଶ୍ନ କଲେ । ଚୌଧୁରୀ ଏ ବିଷୟ ପୂର୍ବରୁ ଚିନ୍ତା କରି ନଥିଲେ ସୁତରାଂ ଏ ପ୍ରକାର ଗୁରୁତର ବିଷୟରେ ସହସା ଉତ୍ତର ନଦେଇ ପଛେ ଉତ୍ତର ଲେଖି ପଠାଇବା ବୋଲି କହି ଆସିଲେ ।

ଏଥିଉତ୍ତାରୁ ଚୌଧୁରୀ ମହାଶୟ ଏ ନଗରର କେତେକ ଦେଶୀୟ ଭଦ୍ରଲୋକଙ୍କୁ ଏକ ସଭାକୁ ଆହ୍ୱାନ କରି ସମସ୍ତଙ୍କର ମତ ପଚାରିଲେ ଅନେକ ତର୍କ-ବିତର୍କ ଉତ୍ତାରୁ ସଭାରେ ଏହି ଧାର୍ଯ୍ୟ ହେଲା ଯେ ମାନ୍ୟବର ଡାମ୍ପିୟର ସାହେବ ଯେପ୍ରକାର ବ୍ୟବସ୍ଥା କରିବାକୁ କଳ୍ପନା କରିଅଛନ୍ତି ତାହା ସ୍ଥୂଳରୂପେ ଭଲ ଅଟଇ ଓ ତହିଁରେ ସୁନ୍ଦରରୂପେ କାର୍ଯ୍ୟ ଚଳିବ ଏବଂ ଅନାୟାସରେ ଆଶା କରାଯାଇ ପାରେ ମାତ୍ର ସାହେବ କେବଳ ମୋଟ କଥା ପ୍ରକାଶ କରିଅଛନ୍ତି ତପସିଲ ଅବଧି କିଛି ଜଣାଯାଇ ନାହିଁ ଅଥଚ ଏହାର କାର୍ଯ୍ୟକାରିତା ତପସିଲ ଉପରେ ଅଧିକାଂଶ ନିର୍ଭର ରଖଇ । ଉକ୍ତ ତପସିଲମାନ ପ୍ରକାଶିତ ହେଲେ ତଦ୍ ବିଷୟରେ ଯେହିପ୍ରକାର ଯାହା ମତାମତ ହେବ ସଭ୍ୟମାନେ ଯଥାକାଳରେ ବ୍ୟକ୍ତ କରିବାର ଅଧିକାର ରଖି ଉପର ଲେଖିତ ବ୍ୟବସ୍ଥାକୁ ମନୋଗତ କରିବାର ଉତ୍ତର ପଠାଇବେ ।

ଅମ୍ଭେମାନେ ଆନନ୍ଦ ପୂର୍ବକ ଅବଗତ ହେଲୁଁ ଯେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରର ଭାର ରାଣୀଙ୍କ ହସ୍ତରେ ରହିବାର ସ୍ଥିର ହେବାରୁ କମିଶନର ସିରସ୍ତାଦାର ବାବୁ ରାମ ପ୍ରସାଦ ସିଂହଙ୍କୁ ମେନେଜରୀ କର୍ମରେ ନିଯୁକ୍ତ କରିବାର ଗବର୍ଣ୍ଣମେଣ୍ଟ ମଞ୍ଜୁର କରି ବାବୁଙ୍କୁ ଛଅମାସର ଛୁଟି ଦେଇ ଅଛନ୍ତି । ଏ କର୍ମରେ ସେ ମାସିକ ତିନିଶତ ଟଙ୍କା ବେତନ ପାଇବେ ।

## ( ୧୬ଶ ଭାଗ, ୧୨ । ୩ । ୧୮୮୧, ସଂଖ୍ୟା ୧୧ )

୫ । ଏଠାରେ ବୁଢ଼ ସପ୍ତାହ ହେଲା ଜନରବ ହୋଇଅଛି ଯେ ପୁଦୁଲେ କେଲାଙ୍କ ପରି କେତେକଜଣ ସ୍ତ୍ରୀ ପୁରୁଷ ଭକ୍ତହାର୍ଣ୍ଣି ସଙ୍ଗେ ନେଇ ବଳପୂର୍ବକ ଶ୍ରୀଜଗ-ନ୍ନାଥଙ୍କ ମନ୍ଦିରରେ ପ୍ରବେଶକଲେ । ସେତେବେଳେ ଭୋଗବୁଢ଼ା ହେଉଥିଲା, ମନ୍ଦିରର ପହରିବାଲମାନେ ନିଷେଧ କଲେ ମାତ୍ର ସେମାନେ ନମାନି ଜଗନ୍ନାଥଙ୍କ ପାଖକୁ ଯିବାକୁ ଉଦ୍ୟମ ହେଲେ । ଏଥିରେ ପହରିବାଲଙ୍କ ସହିତ କଜିଆ ହୋଇ ଶେଷରେ ମାଡ଼ଗୋଳ ହେଲା, ତହିଁରେ ଆକ୍ରମଣକାରୀଙ୍କ ମଧ୍ୟରୁ ଏକଜଣ ତତ୍‌କ୍ଷଣାତ୍ ମରିଗଲା ଆଉଲୋକେ କେବଳ ଆପଣା ହାଣ୍ଡି ଭାତ ଫିଙ୍ଗିଦେଇ ବେଗମାରିକରି ଜଗନ୍ନାଥଙ୍କୁ

ଛାଡ଼ିଦେଇ ତାହାଙ୍କ ଭସ୍ମ ଦେହରେ ବୋଳିବେ ବୋଲି ଧମକାଇ ଚାଲିଆସିଲେ । ଦଣ୍ଡବିଧି ଆଇନର ଗୁଡ଼ାଏ ଅପରାଧ ମଦ୍ଧିକ ମଧ୍ୟରେ ହୋଇଗଲା ମାତ୍ର ପୁଲିସ ଦ୍ୱାରା ସେମାନେ ଗିରଫ୍ତାର କିମ୍ବା ତାହାଙ୍କ ନାମରେ ମୋକଦ୍ଦମା ହେବାର ଜନରବଟି ପ୍ରକାଶ ପାଇନାହିଁ ଏବଂ ଅଦ୍ୟାବଧି କୌଣସି ସରକାରୀ ସଂବାଦ ମଧ୍ୟ ଆସିବାର ଆମ୍ଭ-ମାନେ ଶୁଣି ନାହୁଁ । ଯାହାହେଉ ଯେବେ ଏ ଘଟନାରେ ସତ୍ୟର ଲେଶ ଥାଏ ତେବେ ଜଗନ୍ନାଥଙ୍କର ଭକ୍ତ ବନ୍ଦ ଏବଂ ତାହାହେଲେ ଅଦ୍ୟାବଧି କୌଣସି ନମ୍ବର ଜଗନ୍ନାଥୀ ନବାହାଦୁରୀ କିମ୍ବା କାଳୀପଦ ବାବୁ ଜଗନ୍ନାଥଙ୍କ ରତ୍ନାକମିଶ୍ର ସୁଦ୍ଧା ନଯିବା କିମ୍ବା ଅନ୍ୟ ପ୍ରକାର ନକରିବା ବଡ଼ ଆଶ୍ଚର୍ଯ୍ୟର ବିଷୟ ଅଟେ । ପ୍ରକୃତ କଥା ଆଗାମୀ ସପ୍ତାହରେ ଜଣାଇବାକୁ ସକ୍ଷମ ହେବାର **ଆମ୍ଭେମାନେ ଆଶାକରୁଁ** ।

( ୧୭ଶ ଭାଗ, ୨୭ । ୩ । ୧୮୮୧. ସଂଖ୍ୟା ୧୩ )

୬ । ପୁରୀ ଜଗନ୍ନାଥଙ୍କ ପ୍ରତି ଆକ୍ରମଣ ।

ଏ ବିଷୟରେ ଆମ୍ଭେମାନେ ଏଥିପୂର୍ବ ଯାହା ଶୁଣିଥିଲୁଁ ତାହାର ସବିଶେଷ ବୃତ୍ତାନ୍ତ ସମ୍ପ୍ରତି ଅବଗତ ହୋଇ ପାଠକମାନଙ୍କୁ ଜଣାଉଅଛୁଁ । ଯଥା :—

ଚଳିତମାସ ପ୍ରଥମ ତାରିଖ ମଙ୍ଗଳବାର ଦିନ ଦୁଇପ୍ରହର ସମୟରେ ନଙ୍ଗଳା ନଙ୍ଗଳା ୧୬ ଜଣ ଭିତରଛାଣ୍ଡି ନେଇ ମନ୍ଦିର ମଧ୍ୟକୁ ଯିବାକୁ ଉଦ୍ୟତ ହେଲେ । ତହିଁ ପ୍ରହରୀ ବର୍କନ୍ଦାଜ ଓ ଦ୍ୱାରୀ ଯିବାକୁ ନଦେଇ ସିଂହଦ୍ୱାର ବନ୍ଦ କରିବାକୁ ଯୁଝିବାରେ ସେମାନେ ଭିତରଛାଣ୍ଡି ଗରୁଡ଼ସ୍ତମ୍ଭ ଠାରେ ରହି କବାଟ ଠେଲିଦେଇ ସିଂହଦ୍ୱାର ସାମନା ଭୋଗମଣ୍ଡପ କବାଟ ଭାଙ୍ଗି ଜଗମୋହନ ବାଟେ ଜୟ ବିଜୟ ଦ୍ୱାରଠାକୁ ଯାଇ ୨ ଯୋଡ଼ା କବାଟ ଓ ଦକ୍ଷିଣଦ୍ୱାର କବାଟକୁ ଖଡ଼ିଆରୀ ପ୍ରଭୃତି, ବନ୍ଦ କରିଦେଲେ । ତହୁଁ ସେମାନେ ଶ୍ରୀଜିଉଙ୍କ ସିଂହାସନ ପାଖକୁ ଯାଇ ନ ପାରିଲେ ଓ ସେମାନଙ୍କୁ ବର୍କନ୍ଦାଜ ପ୍ରଭୃତି ମନ୍ଦିର କର୍ମଚାରୀ ଏବଂ ଯାତ୍ରୀମାନେ କୌଣସି ମତେ ଠେଲି ବାହାର କରି ଆଣିଲେ । ସେମାନେ ଉଲଗ୍ନ ଓ ମଦୁଆ ନ୍ୟାୟ ଥିଲେ । ମନ୍ଦିର ବାଟ କେବେହେଁ ଦେଖି ନଥିବାରୁ ଘୂରି ୨ ବାହାର ଆସୁ ୨ ସେମାନଙ୍କ ମଧ୍ୟରେ ଦଶାବମ ନାମକ ସରଦାର ଥିଲା କି ସେ କବାଟ ଭାଙ୍ଗିବାରେ ଅନେକ ପରିଶ୍ରମ କରିଥିଲା । ସେ ବ୍ୟକ୍ତି ଭୋଗ ମଣ୍ଡପ ପାବଚ ନିକଟ ଅଗ୍ନିଶୂଳ ମହାଦେବଙ୍କ ମନ୍ଦିର ସାମନାରେ ପଥର ପାହାଚରେ ଝୁଣ୍ଟିପଡ଼ି ଅଚେତ ହେଲା । ତହୁଁ ସେମାନଙ୍କ ସଙ୍ଗୀ ତାକୁ ଧରାଧରି କରି ଗରୁଡ଼ସ୍ତମ୍ଭ ପାଖକୁ ନେଇ ଆସିଲେ ଓ ତାକୁ ଲକ୍ଷ୍ମାମତେ

ହତ ଖୁଆଇଲେ ଓ ପ୍ରାୟ ଏକଘଣ୍ଟା ମଧ୍ୟରେ ସେ ବ୍ୟକ୍ତି ପ୍ରାଣତ୍ୟାଗ କଲା । ତଦନନ୍ତର ପୁଲିସ ସାହେବ ଓ ପୁଲିସ ସବଇନସ୍ପେକ୍ଟର ଆସି ତାକୁ ଡାକ୍ତର ସାହେବଙ୍କ ପାଖକୁ ପଠାଇଲେ । ଡାକ୍ତର ମାଡ଼ଦ୍ୱାରା ମରିନଥିବା ଇତ୍ୟାଦିର ସାର୍ଟିଫିକେଟ ଦେଇ ଥିବାର ପ୍ରକାଶ ହେଲା ।

ପ୍ରଥମ ପୁଲିସର ସବଇନସ୍ପେକ୍ଟର ବାବୁ ରାମକୃଷ୍ଣ ମୁଖାର୍ଜି ତଦପର ବାବୁ କୃପାସିନ୍ଧୁ ମହାନ୍ତି ନିଶ୍ଚିନ୍ତରୂପେ ତଦାରଖ କଲେ ଓ ମନ୍ଦିରର କର୍ମଚାରୀ ଏବଂ ସେବକ ଓ ମନ୍ଦିରର ଚେ-ଚର୍କାବାଲା ବ୍ୟକ୍ତିଙ୍କର ଜବାନବନ୍ଦୀ ନେଲେ । ମୃତ ବ୍ୟକ୍ତି ପଥର କଟାଣରେ ପଡ଼ିବା ଆଘାତ ଦ୍ୱାରା କୌଣସି ଦୁର୍ଘଟଣାରେ ମରିଥିବା ଓ ମାଡ଼ଦ୍ୱାରା ମରି ନଥିବାର ପ୍ରମାଣ ହେଲା । ଏଥିରୁ ମୋକଦ୍ଦମା ବାବୁ କମଲନାଥ ଘୋଷ ଡେପୁଟୀ ମେଜେଷ୍ଟ୍ରଟଙ୍କୁ ଅର୍ପଣ ହୋଇଅଛି । ସେ ମଧ୍ୟ ଉକ୍ତ ଅନୁସାରେ ଅନେକ ତଦାରଖ କରି ଅବଶିଷ୍ଟ ୧୫ ଜଣଙ୍କୁ ତିନିମାସ ଲେଖାଏଁ କଏଦ ରହିବାର ହୁକୁମ ଗତ ସୋମବାର ଦିନ ସାଦର କରିବାରୁ ସେମାନେ କଏଦ ହୋଇଅଛନ୍ତି ।

ଉକ୍ତ ବ୍ୟକ୍ତିମାନଙ୍କ ଘର ରାମପୁର ଓ ସମ୍ବଲପୁର ଅଞ୍ଚଳରେ ଅଛି । ସେମାନେ ତାଙ୍କ ଗୁରୁ ଅଲେଖଙ୍କ ଆଜ୍ଞା ଦ୍ୱାରା ମୃତ ଦଶାବମ ପ୍ରାପ୍ତ ହୋଇଥିଲେ ସେହି ଆଜ୍ଞା ପ୍ରତିପାଳନରେ ଶ୍ରୀଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରା ଏପରି ତିନି ଦାରୁ ମୂର୍ତ୍ତି-ମାନଙ୍କରେ ବ୍ରହ୍ମ ପଦାର୍ଥ ନଥିବା ହେତୁ ତାଙ୍କୁ ସିଂହାସନରୁ ଆଣି ବଡ଼ଦାଣ୍ଡରେ ପୋଡ଼ି ଦେବା କାରଣ ଆସିଥିବାର ପୁଲିସ ତଦାରଖରେ ଏବଂ ଡେପୁଟୀ ମେଜେଷ୍ଟରଙ୍କ ଠାରେ ପ୍ରକାଶ କଲେ ଓ ଏମାନଙ୍କ ଛଡ଼ା ପୁରୁଷ ଓ ସ୍ତ୍ରୀ ବାଳକ ଓ ବାଳିକା ଯେ ସତ୍ୟବାଦୀ ମୁକାମ ଠାରେ ଜ ୨୮ ଣ ଥିଲେ ସେମାନଙ୍କ ଅବସ୍ଥା ବୁଝିବେ ସେମାନଙ୍କୁ ପୁଲିସ ଚଲଣ କରିବାରେ ସେମାନଙ୍କ ମଧ୍ୟରୁ ଚୈତନ ଉକ୍ତ ଅନୁସାରେ ଦାରୁମୂର୍ତ୍ତି-ମାନଙ୍କୁ ପୋଡ଼ିବା ନିମନ୍ତେ ଆସିଥିବାର ଡେପୁଟୀ ମେଜେଷ୍ଟ୍ରଟଙ୍କ ଠାରେ ଏକରାର କରିବାରୁ ସେମାନଙ୍କୁ ଏକ ସପ୍ତାହ ଲେଖାଏଁ କଏଦର ହୁକୁମ ସାଦର ହୋଇଅଛି । ଉକ୍ତ ବ୍ୟକ୍ତିମାନେ ଅତ୍ୟନ୍ତ ମ୍ଳେଚ୍ଛ, ସ୍ନାନ କରନ୍ତି ନାହିଁ ଓ ପୋଖରୀ ବସି ପାଣି ନିଅନ୍ତି ନାହିଁ ।

ଏହି ଅଲେଖ ସମ୍ପ୍ରଦାୟିଙ୍କ ନେତା କିଏ ଏମାନଙ୍କର ଗୁରୁ କିଏ, ସେ କି ପ୍ରକାରେ ଆପଣା ମତ ପ୍ରଚାର କରୁଅଛନ୍ତି, କେତେଲୋକ ତାହାଙ୍କର ମତାବଲମ୍ବୀ ହୋଇ ଅଛନ୍ତି, ସେମାନେ ପୂର୍ବେ କି ଜାତି ବା ଧର୍ମାବଲମ୍ବୀ ଥିଲେ ଏବଂ ଜଗନ୍ନାଥଙ୍କ ଉପରେ ତାହାଙ୍କର ଏତେ ଆକ୍ରୋଶ କାହିଁକି ଏ ସମସ୍ତ ବିଷୟ ଆମ୍ଭମାନଙ୍କ ସମ୍ବାଦ-ଦାତା ଅନୁସନ୍ଧାନ କରି ଲେଖିଲେ ସର୍ବସାଧାରଣଙ୍କର ବଡ଼ ମନୋରଞ୍ଜନ ହୁଅନ୍ତା ।

ଏ ସମ୍ପ୍ରଦାୟ ମଧ୍ୟରୁ ଯେଉଁମାନେ ବର୍ତ୍ତମାନ ଜେଲଖାନାରେ ଅଛନ୍ତି ସେମାନଙ୍କ ଠାରୁ ସମସ୍ତ କଥା ମିଳିପାରେ । ଅନୁମାନରେ ବୋଧ ହେଉଅଛି ଏମାନେ ସାନ୍ତାଳଙ୍କ ପରି ଅସଭ୍ୟ ବଣୁଆ ଜାତି ଅଟନ୍ତି ଏବଂ କୌଣସି ଚତୁର ଲୋକ ଏହାଙ୍କ ଗୁରୁ ହୋଇ ଏହାଙ୍କୁ ଠକି ଖାଉଅଛି ।

---

# ବିବିଧ

## ପ୍ରବୋଧ ଚନ୍ଦ୍ରିକା

### ସନ ୧୮୫୭ ଜାନୁଏରି ସଂଖ୍ୟା ୧

୧। ମାଘ ମାସ ପତ୍ରିକାର ନିର୍ଘଣ୍ଟ ପତ୍ର



ଏ ପୁସ୍ତକ ଗ୍ରହଣ କରିବାକୁ ଯାହାର ଇଚ୍ଛା ହେଲେ ସେ କଟକ ସହର ନିବାସି ଶ୍ରୀଯୁକ୍ତ ଲେସି ସାହେବଙ୍କ ନିକଟକୁ ଚିଠି ଲେଖିଲେ ନତୁବା ସ୍ୱୟଂ ସାକ୍ଷାତ କଲେ ବାଞ୍ଛାସିଦ୍ଧ କରିପାରିବେ। ମାସକୁ ମାସ ନୂତନ ୨ କରି ଛପା ହେବ। ମୂଲ୍ୟ ଖଣ୍ଡକୁ ଦଶପଇସା ଲେଖାଏଁ। ବାରଖଣ୍ଡର ଆଗତୁରା ଦାମ ଏକାବେଳକେ ଦାଖଲ କଲେ ୧॥ଟଙ୍କା ଲଗିବ ଆଉ ଡାକରେ ପଠାଇବାକୁ ହେଲେ ବାରଗୋଟା ଅଣାକିଆ ଡାକ ଟିକଟ ଦେଲେ ବିନା ମାସୁଲ ଅତିଶୀଘ୍ର ପଠିଯିବ।

---

କଟକନଗର ଯନ୍ତ୍ରାଳୟରେ ଶ୍ରୀଯୁତ ଡବଲିଉ ବ୍ରୁକ୍ସ ସାହେବଙ୍କ ଦ୍ୱାରା ଛପା ହେଲା।

୨ । ପାଠକମାନଙ୍କ ପ୍ରତି ପ୍ରଥମ ପତ୍ର

ଏ ପ୍ରବୋଧ ଚନ୍ଦ୍ରିକା ବିଷୟକ ।

ଓଡ଼ିଶା ନାମରେ ବିଖ୍ୟାତ ଏହି ଦେଶ ଉତ୍ତରରେ ସୁବର୍ଣ୍ଣରେଖା ନଦୀଠାରୁ ସମୁଦ୍ର କୂଳେ ୨ ଦକ୍ଷିଣରେ ଚିଲିକା ଓ ଗଞ୍ଜାମ ପ୍ରଦେଶ ପର୍ଯ୍ୟନ୍ତ ବିର୍ଦ୍ଧିଷ୍ଟ ଅଛି । ତାହାର ପୂର୍ବସୀମା ବଙ୍ଗସାଗର ଏବଂ ପଶ୍ଚିମ ସୀମା ଗଡ଼ଜାତ । ପୂର୍ବକାଳରେ ଉତ୍କଳଦେଶର ସୀମା ଅଧିକ ପ୍ରଶସ୍ତ ଆଉ ରାଜମହେନ୍ଦ୍ର ଓ ବିଜୟନଗର ଏ ଦୁହେଁ ଏ ଦେଶ ରାଜାମାନଙ୍କର ପ୍ରଧାନ ୨ ନଗର ମଧ୍ୟରେ ଗଣିତ ଥିଲେ, ଆଉ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତେ ରାଜ୍ୟର ଦକ୍ଷିଣ ସୀମା ବିସ୍ତୃତ ଥିଲା । ମାତ୍ର ଏ ପୁରାତନ ସୀମା ଛାଡ଼ି ଇଦାନୀଂ ଯେଉଁ ସୀମା ମଧ୍ୟରେ ନିର୍ଦ୍ଦିଷ୍ଟ ଅଛି ତଦୁପଲକ୍ଷରେ ଏ ଦେଶ ଅତି ବୃହତ୍ ଓ ବସ୍ତୃତଯୋଗ୍ୟ ଅଟେ । କେବଳ ମୁଗଲବନ୍ଦି ଭିତରେ ଲୋକସଂଖ୍ୟା ପନ୍ଦରଲକ୍ଷର ଅଧିକ । ଏ ବୃହତ୍‌ଦେଶରେ ସବସ ଲୋକେ କି ପ୍ରକାର ଅଜ୍ଞାନରେ ପତିତ ହୋଇବାର ନାନାବିଧ କ୍ଲେଶ ଆଉ ଦୁରବସ୍ଥା ଭୋଗ କରୁଅଛନ୍ତି ତାହା ଚକ୍ଷୁଲୋକଙ୍କଠାରେ ସୁବ୍ୟକ୍ତ । ଯଦ୍ୟପି ଅଳ୍ପ ବର୍ଷ ମଧ୍ୟରେ ସମୀପବର୍ତ୍ତି ବଙ୍ଗଦେଶରେ ବଙ୍ଗଳାଭାଷା ଅତି ଯତ୍ନ ପୂର୍ବକ ସେ ଦେଶର ଅନେକ ବିଦ୍ୱାନ୍‌ଦ୍ୱାରାନ୍ଧକର୍ତ୍ତୃକ ସଂସ୍କୃତ ଓ ସୁଶୋଭିତ ହୋଇଅଛି ପୁଣି ଦେଶୀୟ ଏବଂ ଇଙ୍ଗରେଜୀ ବିଦ୍ୟା ଶିକ୍ଷାର୍ଥେ ଅନେକ ପାଠଶାଳା ଓ କାଲେଜ ସ୍ଥାପନ କରାଯାଇଅଛି ଏବଂ ଛାପାଯନ୍ତ୍ର ସ୍ଥାପିତ ହୋଇଅଛି ଅଥଚ ଅତୀତ ସପ୍ତତ ଶତବର୍ଷ ମଧ୍ୟରେ ପ୍ରାୟ ଶଏଗୋଟା ଭିନ୍ନ ୨ ସମାଚାରପତ୍ର ଆଉ ପ୍ରବୋଧ ଚନ୍ଦ୍ରିକା ତୁଲ୍ୟ ମାସିକ କମ୍ବା ସାପ୍ତାହିକ ପୁସ୍ତକ ଆରମ୍ଭ ହୋଇ ଦେଶଦାକ ପ୍ରଚାର ହୋଇଅଛି ପୁଣି ବିବିଧ ଜ୍ଞାନସୂଚକ ଅନେକ ପୁସ୍ତକ ମୁଦ୍ରିତ ହୋଇ ପ୍ରକାଶ ପାଇ ଅଛନ୍ତି ତଥାପି ଏ ଉତ୍କଳ ଦେଶରେ ଏତାଦୃଶ ଅତ୍ୟାବଶ୍ୟକ ବିଷୟରେ ଅଳ୍ପମାତ୍ର ଉଦ୍‌ଯୋଗ ହୋଇଅଛି । ଏ ସକଳ ବିଷୟରେ ଏ ଦେଶୀୟ ଲୋକେ ଶିଥିଳ ଆଉ ନିଶ୍ଚେଷ୍ଟିତ ଜ୍ଞାନଠାରୁ ଅଳ୍ପ ଧନସୁଖ ପ୍ରିୟତର ବୋଧକରି ଯାହାଦ୍ୱାରା ସେହିଧନ ସଦାସ ପ୍ରଚୁର ରୂପେ ଉପାର୍ଜିତ ହୁଅଇ ତାହା ଅନାଦର କରୁଅଛନ୍ତି । ଅତଏବ ଫଳ ଦେଖ । ଏ ଦେଶ ସ୍ଥାପିତ ନାନା ସରକାରୀ କଚେରୀ ଇତ୍ୟାଦିରେ ବିଦେଶୀୟ ଅର୍ଥାତ୍ ବଙ୍ଗାଳି ଲୋକେ ପ୍ରାୟ ସବୁ ଉତ୍ତମ ୨ ପଦ ପ୍ରାପ୍ତ ହୋଇଅଛନ୍ତି ।

## ସନ ୧୮୫୬ ମଇ, ସଂଖ୍ୟା ୫

୩ । ସମାଚାର ପତ୍ରିକା

ସିଂହଳନ ପତ୍ରରୁ ପାଠରେ ଜଣାଗଲା ଯେ, କୋର୍ଟ ଅଫ ଡିରେକ୍‌ଟର୍ସ ଆଧୁନିକ ଅବଚ୍ଛିତ କର୍ମଚାରମାନଙ୍କ ପ୍ରତି ସଦୟ ହୋଇ ପେନଶନର ନିୟମ

ପରିବର୍ତ୍ତିନ କରିଅଛନ୍ତି ଅର୍ଥାତ୍ ପୂର୍ବରେ ୩୫ବର୍ଷ କର୍ମ ନ କଲେ ପେନଶନ ପ୍ରାପ୍ତା-ଧିକାରୀ ହେଉନଥିଲେ, ଏବେ ୨୫ବର୍ଷ ଉତ୍ତାରୁ ମାସିକ ବେତନକୁ ଅର୍ଦ୍ଧେ ଟଙ୍କା ପ୍ରାପ୍ତ ହେବେ । ପୁନଶ୍ଚ ୨୦ବର୍ଷ କର୍ମକରି ଯେବେ କେହି ପେନଶନ ନେବାକୁ ବାଞ୍ଛା କରେ ତେବେ ସେ ବେତନର ତିନିଅଂଶରୁ ଏକାଂଶ ପାଇବ । ଏ ନିୟମ ସ୍ଥାପିତ ହେବାରୁ ଅବହିତ କର୍ମକୃତ୍ମାନଙ୍କ ଉପରେ ଗବର୍ଣ୍ଣମେଣ୍ଟର ବିଶେଷାନୁଗ୍ରହ ପ୍ରକାଶ ହୋଇଅଛି ।

The Ganjam Gagette, 1859 — 1860.

4 । Ryots wishisg to relingnish lands should do so before the 30th April.

ପ୍ରକଟନ ପତ୍ରିକା

ରହିତମାନେ ଆପଣା ପଟ୍ଟାମାନଙ୍କରେ ଲଗିଥିବା ସରକାରୀ ଭୂମି ଆସନ୍ତା ବରଷକୁ ଛାଡ଼ିଦେବାକୁ ତାତ୍ପର୍ଯ୍ୟ ଥିବା ସନ୍ଧିକ ଏପ୍ରେଲ ମାସ ତା ୩୦ ଖଗରୁ ଭିତରରେ ସେ ଭୂମିମାନଙ୍କ ନମ୍ବର ନାମ ଆପଣାର ତଳେଥିବା ଯେ ନମ୍ବର ପୂର୍ବରୁ ବନ୍ଦ ପରିମାଣ ସିସ୍ତୁ ଟଙ୍କା ମଧ୍ୟ ନମୋଦ କରି ଗୃହପନ୍ଥ ଲେଖି କରଣ କାର୍ଯ୍ୟଙ୍କ ସନ୍ତକ ସହିତରେ ତହସିଲଦାର କଚେରୀରେ ଦାଖଲକରି ସେଥିରୁ ତହସିଲଦାରଙ୍କ ଜବାବ ନେବାର ଅଛି— ସଦର କାଲ ଅତିକ୍ରମଣ ହେବା ପକ୍ଷରୁ ସେ ଆସନ୍ତା ବରଷକୁ ଆପଣାର ପଟ୍ଟାଭୂମିମାନଙ୍କୁ ପୁରିସିସ୍ତୁ ଦେଇ ଯେକମା ପୂରା ରହିତଙ୍କୁ ଛାଡ଼ହୋଇ ଯିବନାହିଁ ।

ଛାଡ଼ଦେବା ଭୂମିମାନେ ଅନ୍ୟକୁ ରଇତକୁ ଦିଆଯିବ— ଫେରେ ଆପଣଙ୍କୁ ଏକା ଦିଆଇବାର ଅଛି ବୋଲି ଲେଡ଼ିବା ପକ୍ଷରୁ ଅନ୍ୟ ଲୋକଙ୍କ ଦରଖାସ୍ତ ପ୍ରତିକି ଆପଣାର ଦରଖାସ୍ତ ବଳହୀନ ହେବାର ବୋଲି ଜାଣିମାର ଅଛି — ଏ ସଙ୍ଗତି ରଇତ ସମସ୍ତଙ୍କୁ କରଣ - କାପିମାନେ ଉତ୍ତମକରି ଜଣାଇବ ସେଥିରୁ ଅନୁସରି ଅମଲ ଚଳାଉ ଥିବାର ଅଛି ॥

**( ୧ମ ଭାଗ, ୧୧ । ୮ । ୧୮୬୬, ସଂଖ୍ୟା ୨ )**

୫ । ଉତ୍କଳ ଦୀପିକାର ମୂଲ୍ୟ

ଅଗ୍ରିମ ବାର୍ଷିକ ମୂଲ୍ୟ ଟ ୩୯

ଛଅମାସର ଅଗ୍ରିମ ମୂଲ୍ୟ ଟ ୨୯

| | |
|---|---|
| ଡାକମାସୁଲ ଏକାକ | ୦୧୫ |
| ବର୍ଷାନ୍ତେ ମୂଲ୍ୟ ଦେଲେ | ୦ ୬ |
| ପ୍ରତିଖଣ୍ଡର ମୂଲ୍ୟ | ୦୦। |

ସହର କଟକ ଆଲମଚାନ୍ଦ ବଜାର କଟକ ପ୍ରିଣ୍ଟିଂ କମ୍ପାନୀର ପ୍ରେସର ଛାପାରେ ମୁଦ୍ରିତହୋଇ ପତ୍ରିକାର ଅଧ୍ୟକ୍ଷଙ୍କ ସକାଶେ ପ୍ରଚାର କରାଗଲା ।

## ( ୧ମ ଭାଗ, ୨୪ । ୧୧ । ୧୮୬୭, ସଂଖ୍ୟା ୧୭ )

୧ । କଟକର ବାଲିବାଟି କଲ୍ଲ ଛଡ଼ୁଆର ଗୋ ୩୭ ଟି ପୁରଣା ଟଙ୍କା ବାହାରିଅଛି । ବାଟକ ମାଷ୍ଟର କର୍ମଚାରୀ ସେଠାରେ ମୃତ୍ତିକା ଖନନ ସମୟରେ ଏ ମୁଦ୍ରାମାନ ଗୋଟିଏ ଖାନ ଘଡ଼ିରୁ ପ୍ରାପ୍ତ ହେଲେ । ଏ ମୁଦ୍ରା ଉପରେ ଆରବି ଭାଷା ଲେଖାଅଛି ମାତ୍ର ତାହା କେଉଁ ରାଜା ସମୟରେ ଚଳଣ ଥିଲା କିଛି ପତ୍ତା ଯାଉନାହିଁ । ଯାହାହେଉ ଏ ମୁଦ୍ରାରୁ ଦୁଇ ଟଙ୍କାଗୋଟି କଲିକତାର ଏସିଆଟିକ ସୋସାଇଟିକୁ ପଠାଇ ଦେଲେ ଏଥିର ସବିଶେଷ ଜଣାପିବାର ସମ୍ଭବ । ଏ ସ୍ଥାନରୁ ମଧ୍ୟ କେତେକ ବାସନ ପ୍ରାପ୍ତ ହେଉଅଛି ମାତ୍ର ତହିଁର ଏମନ୍ତ ଅବସ୍ଥା ହୋଇଅଛି ଯେ ହାତରେ ଛୁଇଁଦେଲେ ଅନାୟାସରେ ଭାଙ୍ଗି ଯାଉଅଛି । ଏଥିରୁ ବୋଧହୁଅଇ ଯେ ଅନେକ ପୁରାତନ କାଳରେ ଏଠାରେ ବସତି ଥିଲା ମାତ୍ର ପ୍ରାପ୍ତ ହୋଇଥିବା ମୁଦ୍ରାର ସମୟର ନିଶ୍ଚୟ ହୋଇ ପାରିବ ।

## ( ୧ମ ଭାଗ, ୧ । ୧୨ । ୧୮୬୭, ସଂଖ୍ୟା ୧୭ )

୨ । କଟକ ଡିଭିଜନର ସବଡ଼ିଭିଜନମାନ ପରିବର୍ତ୍ତନ କରିବାର ପ୍ରସ୍ତାବ ଗବର୍ଣ୍ଣମେଣ୍ଟରେ ହୋଇଅଛି ଓ ତାହା ନିଷ୍ପନ୍ନ ନହେବା ପର୍ଯ୍ୟନ୍ତ ଲେଫଟେନେଣ୍ଟ ଗବର୍ଣ୍ଣର ଆଜ୍ଞା କରିଅଛନ୍ତି ଯେ କଟକ ପୁରୀ ଓ ବାଲେଶ୍ୱର ଜିଲ୍ଲାମାନଙ୍କର ସଦର ସବଡ଼ିଭିଜନ ନାମରେ ଏକ ଏକ ନୂତନ ସବଡ଼ିଭିଜନ ହେବ ଓ ସଦର ମୁକାମ ଉକ୍ତ ସବଡ଼ିଭିଜନର ପ୍ରଧାନ ସ୍ଥାନ ହେବ ଓ ପ୍ରତ୍ୟେକ ଜିଲ୍ଲାର ଜଏଣ୍ଟ ମାଜିଷ୍ଟ୍ରେଟ ଓ ମେଜେଷ୍ଟ୍ରରଙ୍କର

ସମ୍ପୂର୍ଣ୍ଣ କ୍ଷମତାପ୍ରାପ୍ତ ସର୍ବାପେକ୍ଷା ପ୍ରଧାନ କର୍ମଚାରୀଙ୍କଠାରେ ନୂତନ ସବଡିଭିଜନ ଭାର ରହିବ । ଏ ସବଡିଭିଜନମାନଙ୍କର ସୀମା ତଳେ ଲେଖାଗଲା ଯଥା —

| ସବଡିଭିଜନ | ସୀମା |
| --- | --- |
| କଟକ ସଦର— | ଧର୍ମଶାଳା ଓ ସାଲେପୁର |
| ପୁରୀ ସଦର— | ପୁରୀ ଓ କବା |
| ବାଲେଶ୍ୱର ସଦର | ଏ-ଡିଭିଜନ-ବାଲେଶ୍ୱର ସି ଡିଭିଜନ ସୋରୋ ଓ ବାସୁଦେବ ପୁର |

## ( ୨ୟ ଭାଗ, ୫ । ୧ । ୧୮୬୭, ସଂଖ୍ୟା ୧ )

୮ । ଘୋଡ଼ ଦୌଡ଼

ଗତ ମାସ ତା ୨୯ । ୩୦ରେ ଓ ଚଳିତ ମାସ ତା ୧ ରିଖରେ କଟକ ଇଙ୍ଗରେଜମାନେ ଅତି ସମାରୋହରେ ଘୋଡ଼ ଦୌଡ଼ କ୍ରିଡ଼ାର ଅନୁଷ୍ଠାନ କରିଥିଲେ । ଏଥିରେ ଅନେକ ସର୍ବସାଧାରଣ ପର୍ଯ୍ୟାପ୍ତରୂପେ ଆନନ୍ଦ ଅନୁଭବ କରିଅଛନ୍ତି । ଅନେକ ଦିନ ପୂର୍ବରୁ ଏପ୍ରକାର କ୍ରିଡ଼ା ଏ ନଗରରେ ହେଉଥିଲା ମାତ୍ର ଇଦାନିଂ ଲୋକେ କେହି ଦର୍ଶନ କରିନଥିଲେ । ଯାହାହେଉ ଏବର୍ଷ ଏ ସ୍ଥାନର ଡାକ୍ତର ଶ୍ରୀଯୁକ୍ତ ଯେକସନ ସାହେବଙ୍କ ଉଦ୍‌ଯୋଗରେ ଏ କ୍ରିଡ଼ା ପୁନର୍ଜୀବିତ ହେଲା । ସହରର କି ଧନୀ କି ଦରିଦ୍ର ଅନେକ ଲୋକ ଦର୍ଶନାଭିଳାଷରେ ଦ୍ରୁତତା ଓ କୌତୁକ ଭାବରେ ମନରେ ନଯେବ ବେଳା ଦୁଇପ୍ରହର ଦୁଇଘଣ୍ଟା ସମୟରେ ଦୃତଗତି ଆଗନ୍ତୁ ପହଞ୍ଚି ଯାଇଥିଲେ ଓ ଆମ୍ଭେମାନେ ଭରସା କରୁଁ ଯେ ସେମାନଙ୍କ ପରିଶ୍ରମ ବିଫଳ ହୋଇ ନାହିଁ । ବାସ୍ତବରେ ଉକ୍ତ କ୍ରିଡ଼ା ଉତ୍ତମରୂପେ ନିର୍ବାହ ହେଲା ଓ ତହିଁର ଉଦ୍‌ଯୋଗ କର୍ତ୍ତାଙ୍କର ଯତ୍ନ ସାର୍ଥକ ହୋଇଅଛି ସନ୍ଦେହ ନାହିଁ ।

× × ×

## ( ୨ୟ ଭାଗ, ୧୨ । ୧ । ୧୮୬୭, ସଂଖ୍ୟା ୨ )

୯ । ନୂତନ ପତ୍ରିକା ।

ବିକ୍ରୟାର୍ଥେ ଉତ୍କଳଭାଷାରେ କଟକ ପ୍ରିଣ୍ଟିଂ କୁମ୍ପାନୀଙ୍କ ଦ୍ୱାରା

ମୁଦ୍ରିତ ହେଉଅଛି । ଏକମାତ୍ର ଉତ୍ତର ଗ୍ରାହକମାନେ କ୍ରୟ କରିବାକୁ ଚାହିବେ । ପୂର୍ବବର୍ଷାପେକ୍ଷା ଏ ବରଷର ପତ୍ରିକା ଅନେକ ବାହୁଲ୍ୟ ହୋଇଅଛି ଓ ସକଳ ବିଷୟ ଜ୍ଞାତ କରାଇବା କାରଣ ଯଥାସାଧ୍ୟ ପରିଶ୍ରମ ଓ ଯତ୍ନ ହୋଇଅଛି ।

## ( ୩ୟ ଭାଗ, ୧୯ । ୧୨ । ୧୮୬୮, ସଂଖ୍ୟା ୫୦ )

୧୦ । ସାମ୍ବାଦିକ ସଂବାଦ

ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ

ଆମ୍ଭେମାନେ ଦୁଃଖର ସହିତ ଜଣାଉ ଅଛୁଁ ଯେ ଆଗାମୀ ୬ । ୮ । ୧୦ ନ ମଧ୍ୟରେ ବାବୁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ଡେପୁଟି କଲେକ୍ଟର ଏ ନଗରରୁ ସ୍ଥାନାନ୍ତରକୁ ବଦଳି ହୋଇଯିବେ । ତାହାଙ୍କ କର୍ମରେ ବାବୁ ଜଗନ୍ମୋହନ ବସୁ ଅସୁଅଛନ୍ତି ଏବଂ ବାବୁ ଚନ୍ଦ୍ରଶେଖର ବନ୍ଦ୍ୟୋପାଧ୍ୟାୟ କେନ୍ଦ୍ରାପଡ଼ାକୁ ଯିବେ । ରଙ୍ଗଲାଲ ବାବୁ ପ୍ରାୟ ବର୍ଷ କାଳ ଓଡ଼ିଶାରେ ରହି ଏଠାର ରୀତି ନୀତି ଅବଗତ ହୋଇଥିଲେ ଏବଂ ସ୍ୱୟଂ ବିଦ୍ୱାନ ଥିବାରୁ ଏହାଙ୍କ ଦ୍ୱାରା ଅନେକ ଉପକାରର ସମ୍ଭାବନା ଥିଲା ।

## Vol. IV, 16. 1. 1869. No. 3.

୧୧ । (Imprint line in Utkal Dipika up to and including this issue-)

"ଏହି ଉତ୍କଳ ଦୀପିକା ସହରର କଟକ ଆଲମଚାନ୍ଦ ବଜାର କଟକ ପ୍ରିଣ୍ଟିଂ କମ୍ପାନୀଙ୍କର ଯନ୍ତ୍ରାଳୟରେ ମୁଦ୍ରିତ ଓ ପ୍ରଚାରିତ ହେଲା ।"

## ( From Vol. IV, 23. 1. 1869, No. 4 )

୧୨ । "ଏହି ଉତ୍କଳଦୀପିକା ସହର କଟକ ଦରଘାବଜାର କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ଓ ପ୍ରଚାରିତ ହେଲା ।"

## ( ୪ର୍ଥ ଭାଗ, ୩୦ । ୧ । ୧୮୬୯, ସଂଖ୍ୟା ୫ )

୧୩ । ମୟୂରଭଞ୍ଜର ରାଜା କୃଷ୍ଣଚନ୍ଦ୍ର ଭଞ୍ଜ ଓ ତାଙ୍କ କନିଷ୍ଠ ଭ୍ରାତା ବୃନ୍ଦାବନ ଚନ୍ଦ୍ର ଭଞ୍ଜ ଜୟପୁରର ରାଜା ରାଜେଶ୍ୱରୀ ପ୍ରସାଦ ଦେବ ବାହାଦୁର

କ: ସି: ଏସ: ଆଇ: ଙ୍କ ଦୁଇ ଦୁହିତାଙ୍କୁ ବିବାହ ହୋଇଗିବାର ସ୍ଥିର ହୋଇଅଛି ଓ ଏମାନେ ବିବାହ କରିବା କାରଣ ଉଦୟପୁରକୁ ଯିବାପାଇଁ ଗବର୍ଣ୍ଣମେଣ୍ଟଙ୍କଠାରୁ ଆଜ୍ଞା ପ୍ରାପ୍ତହୋଇଅଛନ୍ତି ।

## ( ୪ର୍ଥ ଭାଗ, ୨୦ । ୨ । ୧୮୬୯, ସଂଖ୍ୟା ୮ )

୧୪ । ଶ୍ରୀଯୁକ୍ତ ଉତ୍କଳଦୀପିକା ସମ୍ପାଦକ ମହାଶୟ,

ବନ୍ଧୁବରେଷୁ ।

ମହାଶୟ,

ତଳଲିଖିତ ଅନୁସାରେ ଅନୁଗୁଳ ଇଲାକାରେ ଜନସମାନଙ୍କର ଦର ହୋଇଅଛି । ଏ ଦର ଆମ୍ଭେ କଣ୍ଟରି ମୋକାମ ମାହାକ କଟକରୁ ମାଇଲ ମା ୬୬ ଭିତର ଅନ୍ତର ସେଠାରେ ବୁଝିଲୁଁ । ଏଠାରେ ମା ୨୪ ଶରେ କହିଲା ଏକଷେର ବୋଲି ଲୋକେ କହନ୍ତି ।

ଟଙ୍କାକୁ ଗୁଡ଼ଳ ମା ୬୪ ଶ, ସୋରିଷ ମା ୩୦ ଶ, ରଶା ମା ୧୦୦ ଶ, ହଳଦ୍ଦ ମା ୮ ଶ. ଗୁଡ଼ଦଣା ପଦ୍ଧିରେ କ ମା ୧୬ । ୧୭ ଶ ଧରିପାରେ ୧୦୦, କଳାଶି ପଦ୍ଧିରେ କ ମା ୨୨ଶ ଅନାଜ ଧରେ ସେ ୪୧୦ ରୁ ୧୧ ପର୍ଯ୍ୟନ୍ତ ।

ଉକ୍ତ କଣ୍ଟରି ମୋକାମର ରଷାମାନଙ୍କଠାରୁ ଶୁଣିଲୁ କି ତାଙ୍କ ସ୍ତ୍ରୀମାନଙ୍କୁ ନଅ ଦଶବର୍ଷ ମଧ୍ୟରେ ବିଭା ଦିଅନ୍ତି । ଯଦି କେହି ଅନେକ ବଡ଼ ଦିନତକ ଅବିବାହିତା ରହିଯାଏ ତାକୁ ଏକପଥ ଶର କନ୍ଧା ସଙ୍ଗେ ବିଭା କରିଦିଅନ୍ତି । ତତ୍ପରେ ଯେବେ କେହି ମନୁଷ୍ୟ ମିଳେ ତାହା ସଙ୍ଗେ ସେ ଦ୍ବିତୀୟ ହୁଏ ।

ଏଠାରେ ଆମ୍ଭେ ଅନେକ ସ୍ତ୍ରୀଲୋକଙ୍କୁ ଦେଖିଅଛୁଁ ତେଲେଙ୍ଗାଙ୍କ ପରି ବାଳ ବାନ୍ଧନ୍ତି ଓ ଛୋଟ ଲୋକଙ୍କ ସ୍ତ୍ରୀମାନେ ଅନେକ ମୁଣ୍ଡରେ ଲୁଗା ଦିଅନ୍ତି ନାହିଁ ।

କଟକରୁ ଏଠାକୁ ଆସିବାରେ ସଡ଼କ ମଧ୍ୟଦେଇ ଅନେକ ସ୍ଥାନରେ ନାଳ ଯାଇଅଛି ଓ ଉକ୍ତ ନାଳମାନଙ୍କ ଉପରେ ପୋଲ ଇତ୍ୟାଦି ବନ୍ଧା ନାହିଁ । କେତେକ ସ୍ଥାନରେ ପୋଲର ତଳ ସନ୍ଧନ କେବଳ ଅଛି । ଏକ ବାଙ୍କିମହାଲର ଇଲାକାର ଦାରୋଗାଙ୍କୁ ପଚାରିବାରେ କହିଲେ ଯେ ଏଠାର ନାଳ ଇତ୍ୟାଦି ବର୍ଷା କେବଳ ଏକ ଓଳ କନ୍ଧା ଦୁଇ ତିନଘଣ୍ଟା ପର୍ଯ୍ୟନ୍ତ ଥାଏ ଅତଏବ ବନ୍ଧା ଗଢ଼ିଗଲେ

ଲୋକମାନେ ଯିବା ଆସିବା କରନ୍ତି, ତାଙ୍କୁ କଛି ହରକତ ହୁଏନାହିଁ ଏଥି ସକାଶ ପୋଲର ଦରକାର ନଥିବାରୁ ବନ୍ଧା ହେଉନାହିଁ । ଇଞ୍ଜିନିୟରମାନଙ୍କର କି ସୁନ୍ଦର ବିଚାର ? ପଥିକମାନେ ଯେ ଏକଓଳ ପର୍ଯ୍ୟନ୍ତ ବାଟରେ ଦେରିରେ ହରକତ ହେବେ ସେ କିଛି ନୁହେ ! ଉକ୍ତ ନାଳ ଥିବା ସ୍ଥାନମାନଙ୍କରେ କଛି ଚଟି ନାହିଁ ଯେ ଲୋକମାନେ ଆଶ୍ରା ନେଇ ରହିବେ । ଆଜକୁ ପାଞ୍ଚ କି ସାତଦିନ ତଳେ ଯେଉଁ ବୃଷ୍ଟି ହୋଇଥିଲା ତହିଁରେ ଦୁଇ ତିନିସ୍ଥାନର ନାଳମାନେ ବଢ଼ିଥିଲେ । ଆମ୍ଭେ ଅନେକ ହଲକତରେ ପାରିହେଲୁଁ ମାତ୍ର ଅସୁବିଧାରୁ କେତେକ ଗାଡ଼ି ଆସିନପାରି ବାଟରେ ରହିଲେ । ପାଣି ବଡ଼ ବେଗରେ ଚାଲୁଥିଲା ଏମନ୍ତ କି ଏକ କମର ପାଣିରେ ମନୁଷ୍ୟ ପଶିଁବାର ଦୁସ୍ତର ଓ କଠକରେ ଚଣ୍ଡ ସମୁଦ୍ରରେ ପାଣି ଯେପରି ମଇଳା ହୁଏ ଓ ଫେନ ଚାଲେ ସେହିପରି ଉକ୍ତ ନାଳ ହୋଇଥିଲା ।

ତା ୧୫ ଜାନୁଆରି
ସନ ୧୮୭୯

ନିବେଦକ
କ. ବ. ଚ.

## ( ୪ଥ ଭାଗ, ୧୩ । ୩ । ୧୮୭୯, ସଂଖ୍ୟା ୧୧ )

୧୫ । ଗଙ୍ଗାମନ୍ଦିର ପୁଷ୍କରିଣୀ ।

ଏ ପୁଷ୍କରିଣୀର ଅବସ୍ଥା ଆଜକୁ ଛଅମାସ ହେବ ବଡ଼ ମନ୍ଦ ହୋଇଅଛି । ଜଳ ଉପରେ ବଡ଼ଝାଙ୍କି ଓ ଭିତରେ ଚଙ୍ଗୁଡ଼ିଆ ଦଳ ମାଡ଼ିଯାଇ ଏହାକୁ ଲୋକଙ୍କର ବ୍ୟବହାରରେ ଅଯୋଗ୍ୟ କରିଅଛି । ଦୁଇମାସ ପୂର୍ବରେ କେତେକ ଜେଲ କଏଦୀମାନେ କେତେଦିନ ପରିଶ୍ରମ କରି ବଡ଼ଝାଙ୍କି ଦଳସବୁ କାଢ଼ି ଦେଇ ଅଛନ୍ତି ବୋଲି ଏହାର ଉପରିଭାଗ ପରିଷ୍କାର ଦେଖାଯାଏ କିନ୍ତୁ ଜଳମଧ୍ୟରେ ଚଙ୍ଗୁଡ଼ିଆ ଦଳ ଭର୍ତ୍ତି ହୋଇଅଛି ଯେ ସେଥିରେ ପ୍ରବେଶ କରିବା କଷ୍ଟକର ଅଟଇ । ପ୍ରତିଦିନ ଏ ଦଳ ବୃଦ୍ଧି ହେଉଅଛି ଓ ଏଥିର କେତେକ ଅଂଶ ପଚିସିବାରୁ ଜଳ ଦୁର୍ଗନ୍ଧ ଓ ତଳେ ଦନ୍ଧ ହେଉଅଛି ଏମନ୍ତ କି ଆଜିକାଲି ସେଥିରେ ସ୍ନାନକରିବା କଠିନ ଅଟେ ଓ ଯଦ୍ୟପି ଶୀଘ୍ର ପରିଷ୍କାର ନହୁଅଇ ତେବେ ଏ ପୋଖରୀ ଅଳ୍ପକାଳ ମଧ୍ୟରେ ପୂର୍ବର ଅବସ୍ଥାକୁ ପ୍ରାପ୍ତ ହେବ । ଯେହେତୁ ଏ ପୁଷ୍କରିଣୀ ନଗରର ମଧ୍ୟସ୍ଥଳରେ ସ୍ଥିତ ଓ ଓ ବୃହତ୍ ଅଟଇ ଏଥିରେ କେବଳ ସାଧାରଣର ଉପକାର ନୁଅଇ ଏମନ୍ତ ନୁହେ, ଜେଲଖାନାର ବ୍ୟବହାର ନିମିତ୍ତ ପ୍ରତିଦିନ ବହୁ ପରିମିତ ଜଳ ଏଠାରୁ ଗୃହୀତ ହୁଅଇ । ଏ ପ୍ରକାର ଉପକାରିଣୀ ପୁଷ୍କରିଣୀର ଅବସ୍ଥା ଏତେ ମନ୍ଦ ହେବା ଅତି ଦୁଃଖର ବିଷୟ ଅଟଇ । ଶ୍ରୀଯୁକ୍ତ ଶୋର ସାହେବ ଏ ନଗରର ମାଜିଷ୍ଟ୍ରେଟ ଥିଲା କାଳରେ ଅବଶ୍ୟ କେତେକ ଧନାଢ୍ୟ ବ୍ୟକ୍ତିଙ୍କଠାରୁ ଟ ୧୪୦୦୯ ଙ୍କା ଚେନ୍ଦା କରିନେଇ ଆସେ

ସରକାରର ଯେଉଁ ପରିମାଣ ଟଙ୍କା ଦେଇ ୧୦ବର୍ଷ ହେଲା ଏ ପୁଷ୍କରିଣୀର ଘଷ୍ଟାର କରିଥିଲେ । ଏଥିରୁ ଜଣାଯାଏ ଯେ ଏହା ବହୁକାଳର ସାଧାରଣ ଉପକାରିଣୀ ବୋଲି ପରିଚିତ ହୋଇଅଛି ଓ କେତେ ୨ ଦେବତେଲେ ଏଠାକୁ ସ୍ନାନ କାରଣ ଆସନ୍ତି ସେମାନେ ଏଥିର ସାକ୍ଷ ଦେଉଅଛନ୍ତି । ଅତଏବ ଏହାର ଦଳ ଉଠାଇ ଦେଇ ଏହାକୁ ପରିଷ୍କାର ରଖିବା ମାଜିଷ୍ଟ୍ରେଟଙ୍କର ଅବଶ୍ୟ କର୍ତ୍ତବ୍ୟ ହେଉଅଛି । ନଗର ଓ ବିଶେଷରେ ଜେଲର ସ୍ୱାସ୍ଥ୍ୟରକ୍ଷା ମଧ୍ୟ ବହୁ ପରିମାଣରେ ଏ ପୁଷ୍କରିଣୀର ଅବସ୍ଥା ଉପରେ ନିର୍ଭର ରଖଇ । ଅତଏବ ଆମ୍ଭେମାନେ ମାଜିଷ୍ଟ୍ରେଟ ଓ ଜେଲର କର୍ମାଧ୍ୟକ୍ଷଙ୍କୁ ଅନୁରୋଧ କରୁଅଛୁଁ ଯେ ଚୌକିଦାରୀ ଟଙ୍କାରୁ ହେଉ ଅଥବା ଜେଲର ବ୍ୟୟରେ ହେଉ କୌଣସି ରୂପେ କିଛି ବ୍ୟୟକରି ଅଥବା କଏଦୀଙ୍କ ଦ୍ୱାରାରେ ପୁଷ୍କରିଣୀକୁ ସର୍ବଦା ପରିଷ୍କୃତ ରଖାଯାଉ ।

## ( ୪ଥ ଭାଗ, ୨୭ । ୩ । ୧୮୭୯, ସଂଖ୍ୟା ୧୩ )

୧୬ । ଆମ୍ଭେମାନେ ଅବଗତ ହେଲୁଁ ଯେ କଟକରେ ଆଉ ଏକ ଗାଡ଼ି କୁମ୍ପାନୀ ହେବାର ବିଚାର ହୋଇଅଛି । ଏହି ନୂତନ ଗାଡ଼ି କୁମ୍ପାନୀ ଘୋଡ଼ା ଓ ଗାଡ଼ି କଲିକତାରୁ ଆଣାଇବା ସକାଶ ଟଙ୍କା ପଠାଇଥିବାର ଶୁଣାଯାଏ । କଟକର ଅବସ୍ଥା ଦିନକୁଦିନ ସର୍ବପ୍ରକାରେ ଉନ୍ନତ ହେଉଅଛି ।

୧୭ । ଆଗାମୀ ଶୀତକାଳରେ ଅନୁକୂଳ ପ୍ରଭୃତି ଗଡ଼ଜାତମାନଙ୍କରେ ହାତୀ ଧରିବାର ଖେଦା ହେବାର ପ୍ରସ୍ତାବ ହୋଇଅଛି । ଏଥିରେ ପ୍ରାୟ ଟ ୩୭୦୦୦ଙ୍କା ବ୍ୟୟ ହେବାର ଅନୁମାନ ହୋଇଅଛି ।

## ( ୪ର୍ଥ ଭାଗ, ୫ । ୭ । ୧୮୭୯, ସଂଖ୍ୟା ୨୩ )

୧୮ । ପ୍ରେରିତ ପତ୍ର

ଉତ୍କଳ ଦୀପିକା ସମ୍ପାଦକ ... ... ... ... ... ... ... ... ...

ଉତ୍କଳ ଦେଶରେ ... ... ... ... ... କାର ପୁରାତନ କୀର୍ତ୍ତି ଦୃଶ୍ୟ ହୁଅଇ । କାର୍ଯ୍ୟ ବଶରେ ଭ୍ରମଣ କରି ୨ କଟକ ଜିଲ୍ଲା ଅନ୍ତଃପାତି ଅଳତି ପ୍ରଗଣାରେ ଗୃହିନଗାଁଲ ଗ୍ରାମ ନିକଟରେ ସଲମନ ନାମକ ଏକ ପର୍ବତ ଅଛି ତାହା ଉପରେ ଏକ ସୁରମ୍ୟ ମଣ୍ଡପ ଦୂରରୁ ନୟନ ପଥବର୍ତ୍ତୀ ହେବାରୁ ଆମ୍ଭେ କୌତୁକାବିଷ୍ଟ ହୋଇ ସେହି ଗିରି ଶିଖରକୁ ଆରୋହଣ କରି ସେ ନିର୍ଜନ ସ୍ଥାନର ରମଣୀୟ ଶୋଭା ଦର୍ଶନ କଲୁଁ ଓ

କିମ୍ବଦନ୍ତୀକ ପର୍ଯ୍ୟନ୍ତ ସେଠାରେ ଜନକଙ୍କ ରହି ସର୍ବସାଧାରଣଙ୍କୁ ତତ୍ତ୍ୱ ଗୋଚ ଅବଗତ କରିବା ଅଭିଳାଷ ହେବାରୁ ନିମ୍ନଲିଖିତ କତିପୟ ପଂକ୍ତିରେ ତାହା ବର୍ଣ୍ଣନାକରି ଆପଣଙ୍କ ପତ୍ରିକାରେ ପ୍ରକାଶିତ ହେବା ନିମିତ୍ତ ପ୍ରେରଣ କଲୁଁ ଆପଣ ଦୟାକରି ଏହାକୁ ପତ୍ରିକାରେ ସ୍ଥାନ ଦାନ କରିବା ହେବେ ।

ପୁନଶ୍ଚ ଏହା ଦେଖା ଅଛି ଯେ ଆମ୍ଭ ଉତ୍କଳ ଦେଶରେ ଯେଉଁ ସ୍ଥାନରେ ହିନ୍ଦୁମାନଙ୍କର କୌଣସି ଦେବତା କି ମୁସଲମାନଙ୍କର ପୀର ପ୍ରକଟିତ ଥାନ୍ତି ସେହି ସ୍ଥାନର ମହିମା ବୃଦ୍ଧି କରିବା ନିମିତ୍ତ ତାହାର ମାହାତ୍ମ୍ୟ କଥା ହୋଇ ଲିଖିତ ପୁସ୍ତକରେ ନଥିବା ବୃଦ୍ଧ ବ୍ୟକ୍ତିମାନଙ୍କ ଠାରୁ ଶୁଣିଲେ ମିଳଇ ଓ ତାହାର ସତ୍ୟ ପୃଥକ୍ କରିବା କଷ୍ଟକର ଅଟଇ । ତଥାପି ସର୍ବଙ୍କ ଗୋଚର ନିମିତ୍ତ ଆମ୍ଭେ ଉକ୍ତ ପ୍ରବାଦ ଏଠାରେ ଲେଖିଲୁଁ ଭରସା କରୁଁ ଏ ଅସଙ୍ଗତ ହେବ ନାହିଁ । ପୂର୍ବ କାଳରେ 'କନ୍ଦର' ନାମରେ ଗୋଟିଏ ଅସୁର ଥିଲା ତାହାର ଦୁରାଚାରରେ ଲୋକମାନଙ୍କର ଅତିଷ୍ଠିତ କରିବା କ୍ଳେଶକର ହେବାରୁ ବଳଦେବ ତାହାକୁ ବିନାଶ କରିବା ନିମିତ୍ତ ଅସୁରାଳୟ ଉକ୍ତ ସ୍ଥଳ ଉପରେ ଲୁଣ୍ଠନ ବାଣ ବର୍ଷିଲେ ( ଏହି ସମୟରେ ତାଙ୍କର ହଳାଙ୍କ ପର୍ବତରେ ରହିଗଲା ସେ ପଦ ଚିହ୍ନକୁ ହିନ୍ଦୁମାନେ ପୂଜା କରନ୍ତି ଓ ମାନସିକ କରି ନୈବେଦ୍ୟ ଦିଅନ୍ତି ) ଅସୁର ପଳାୟନ କଲା ଓ ବଳଭଦ୍ର ତାହା ପଛରେ ଧାବନ କରି 'କନ୍ଦରପଡ଼ା' ଠାରେ ତାକୁ ନିହତ କଲେ ଓ ସେ ସ୍ଥାନରେ ସ୍ୱୟଂ ରହିଲେ ଏ ହେତୁରୁ ବଳଦେବଙ୍କ ମନ୍ଦିର କନ୍ଦରପଡ଼ାରେ ଦୃଶ୍ୟ ହୁଅଇ ଓ ସେ ସ୍ଥାନର ନାମ ଅସୁର ନାମରେ 'କନ୍ଦରପଡ଼ା' ବୋଲି ଡାକ ହେଲା ମୁସଲମାନ ଯବନମାନେ ବୋଲନ୍ତି ଯେ ସେ ପୀରଙ୍କ ଆଳୟ, ନମାଜ ( ) କଲାବେଳେ ତାହାଙ୍କର ଚରଣ ଚିହ୍ନ ... ... ... ସେମାନେ ହିନ୍ଦୁଙ୍କୁ ବାହାର କରି ଦେଇ ସେଠାରେ ଏକ ମଣ୍ଡପ ନିର୍ମାଣ କରି ହୋଇଗଲେ ଖଟ୍ଟିଶି କରି ଦେଇଥିଲେ ସେ ପୀରଭୂମିରେ ଅନେକ ଗୁଡ଼ିଏ ଶସ୍ତ୍ରଧାରୀ ପ୍ରତିପାଳିତ ହେଉଅଛନ୍ତି ସେମାନେ କହିଲେ ଯେ ଏ ମଣ୍ଡପ ସୁନା ଉଦ୍ଦିନ ନବାବଙ୍କ ଦ୍ୱାରା ନିର୍ମିତ ହୋଇଅଛି ଅଫିସର ଦ୍ୱାରା ଏହି ଯେ ସେଠାରେ ଧାରସ୍ୟ ଭାଷାରେ ଗୋଟିଏ କାଗଜ ଲେଖା ହୋଇଥିଲା ଅବସରଭାବରୁ ଆମ୍ଭେ ତାହା ପାଠ କରିବାକୁ ସମର୍ଥ ହୋଇ ନପାରିଲୁଁ ଆମ୍ଭେ ଯେଉଁ ସମୟକୁ ଗିରି ଉପରକୁ ଗଲୁଁ ସେତେବେଳେ ମଣ୍ଡପ ସମ୍ବନ୍ଧୀୟ କୌଣସି ବ୍ୟକ୍ତି ନଥିବାରୁ ଆମ୍ଭେ ନିର୍ବିଘ୍ନରେ ଫୁଲ ବାହାର କରି ୨୫ ମିନିଟ ପର୍ଯ୍ୟନ୍ତ ନିରୀକ୍ଷଣ କରି ଦେଖିଲୁଁ ଯେ ସେଠାରେ ପଦାଙ୍କ ନାହିଁ କେବଳ ମଣ୍ଡପ ମଧ୍ୟରେ ଗୋଟିଏ ଚତୁଷ୍କୋଣ କୁଣ୍ଡ ଖଡ଼ିପ୍ରମିତ ଗମ୍ଭୀରର ଅଛି ସେ କୁଣ୍ଡ ଜଳ ମାଙ୍କଡ଼ା ପଥର ତଳେରେ ଆମ୍ଭେ ଅନୁଲ୍ୟାଧିର ଚିହ୍ନ କଳନା ମଧ୍ୟ କଲୁଁ ତଥାପି ଦେଖି ନପାରିଲୁଁ । । ଇତି ।

## ( ୪ର୍ଥ ଭାଗ, ୧୮ । ୯ । ୧୮୬୯, ସଂଖ୍ୟା ୩୮ )

୧୯ । ସାପ୍ତାହିକ ସମ୍ବାଦ

ହାତୀ ଖେଦା

କଟକର ଗଡ଼ଜାତରେ ହାତୀ ଧରିବା କାରଣ ଗବର୍ଣ୍ଣମେଣ୍ଟ ଗୋଟିଏ ଖେଦା ସ୍ଥାପନର ଆଦେଶ ଦେଇଅଛନ୍ତି । ଏହି ଖେଦା କେଣ୍ଡୁଏଲର ଲେଫ୍ଟେନଣ୍ଟ ଜାନସ୍ନନ ସାହେବଙ୍କ ଅଧୀନରେ ରହିବ ।

## ( ୫ମ ଭାଗ, ୧୯ । ୩ । ୧୮୭୦, ସଂଖ୍ୟା ୧୨ )

୨୦ । ଗତ ମଙ୍ଗଳବାର କଟକ କାଲେକ୍ଟର ସରକାରୀ ନଦୀ ଘାଟମାନ ନିଲାମ ହୋଇଥିଲା ଏଥିରେ ମହାନଦୀ ଘାଟ ଟ ୪୯୦୦ ଙ୍କା ଓ କାଠଯୋଡ଼ି ଟ ୨୯୦୦ ଙ୍କାରେ ଇଜାରା ହୋଇଅଛି । ନରାଜ ବନ୍ଧ ହେବୁଁ କାଠଯୋଡ଼ି ଘାଟର ମୂଲ୍ୟ ଏତେ ଉଣା ହେଲା ନୋହିଲେ ଏ ଘାଟ ପୂର୍ବେ ମହାନଦୀ ଠାରୁ ଅଧିକ ମୂଲ୍ୟରେ ନିଲାମ ହେଉଥିଲା ।

## ( ୬ଷ୍ଠ ଭାଗ, ୨୩ । ୮ । ୧୮୭୧, ସଂଖ୍ୟା ୩୭ )

୨୧ । ପୁରୀରୁ ସମ୍ବାଦ ପାଇଅଛୁଁ ଯେ ଗଲା ମାସ ତା ୧୨ ରିଖ ଦିବା ଦୁଇ ପ୍ରହର କିମ୍ବା ତହିଁର କିଛି ପୂର୍ବରେ ଶ୍ରୀଜଗନ୍ନାଥଦେବଙ୍କ ମନ୍ଦିରରେ ବଜ୍ରପାତ ହୋଇଥିଲା । ସେଦିନ ପ୍ରାୟ ସକାଳୁଁ ମେଘ ଘୋଟି ରହିଥିଲା । ବଜ୍ର କେଉଁ ଆଡ଼ୁ ପ୍ରଥମେ ଆସିଲା ଜଣାନାହିଁ ମାତ୍ର ମନ୍ଦିରର ଦକ୍ଷିଣ ଦ୍ୱାରରେ ପ୍ରବେଶ କରି ସିଂହାସନ ପାଖଦେଇ ପାଦୁକ ଟାଣି ଗଡ଼ିଯିବା ମନୁଷ୍ୟ ବାଟେ ଦାଣ୍ଡରୁ ବାହାରି ଗଲା । ମହାପ୍ରଭୁଙ୍କ ନିକଟରେ ଜଳୁଥିବା ପ୍ରଦୀପ ମାଳ ଲିଭିଗଲା ଏବଂ ମନ୍ଦିର ମଧ୍ୟରେ ଘଡ଼ିଏ ଯାଏ ବାରୁଦ ଗନ୍ଧ ରହିଥିଲା । ସେବାକାରୀ ଲୋକଙ୍କ ମଧ୍ୟରୁ ୨ । ୩ ଜଣ ଶବ୍ଦଶୁଣି ଓ ବିଦ୍ୟୁତ ଚାହିଁ ଦେଇ ଯିବାରୁ ଭୟପାଇ ଅଚେତନ ହୋଇ ପଡ଼ିଲେ ନଚେତ କୌଣସି ଭର ପୀଡ଼ା ହୋଇ ନାହିଁ । ମନ୍ଦିରର ମଧ୍ୟ କିଛି କ୍ଷତି ହୋଇନାହିଁ । କେବଳ ଏକ ସ୍ଥାନରେ ଚଟାଣ ଖୋଲା ହୋଇ ଯାଇଥିଲା ଓ ନୀଳଚକ୍ରରୁ ପତାକା ସମ୍ପୂର୍ଣ୍ଣରୁପେ ପୋଡ଼ି ଯାଇଥିଲା । ପୁରୀରେ ବିଦ୍ୟୁତ ପଡ଼ିବା ଅସାଧାରଣ ଘଟନା ଅଟଇ ତହିଁରେ ପ୍ରଧାନ ଦେବଙ୍କ ମନ୍ଦିରରେ ପଡ଼ିଅଛି । ଏ ଦୂର କଥାକୁ ଦେଖି କେତେଲୋକ କେତେ ପ୍ରକାର ଅନିଷ୍ଟ ସମ୍ଭାବନା କରୁଅଛନ୍ତି ମାତ୍ର ଈଶ୍ୱରଙ୍କ କୃପାରୁ ଏ ବର୍ଷ ଓଡ଼ିଶାରେ ସର୍ବପ୍ରକାରରେ ଭଲ ଦେଖାଯାଏ ।

## ( ୭ମ ଭାଗ, ୨୦ । ୪ । ୧୮୭୨, ସଂଖ୍ୟା ୧୬ )

୨୨ । କଟକର ଲୋକସଂଖ୍ୟା

ଓଡ଼ିଶାର ଲୋକସଂଖ୍ୟା କାଗଜ କମିଶ୍ନରରେ ପ୍ରସ୍ତୁତ ହେଉଅଛି ଓ ତାହା ସମାପ୍ତ ହେଲରୁ ତହିଁର ସବିଶେଷ ବୃତ୍ତାନ୍ତ ଲେଖିବୁଁ । ବର୍ତ୍ତମାନ କଟକର ମୋଟ ଲୋକସଂଖ୍ୟା ଜଣାଇବାକୁ ପାଠକଙ୍କ ଗୋଚରାର୍ଥେ ନିମ୍ନେ ଲେଖୁଅଛୁଁ ।

| | |
|---|---|
| କଟକ ସହର ଓ ତହିଁର ତଳଗ୍ରାମ ସହିତ | ୫୦୮୨୦ ଜଣ |
| ସମୁଦାୟ କଟକଜିଲ୍ଲା | ୧୪୯୧୯୯୮ ଜଣ |

ସନ ୧୮୬୯ ମସିହାରେ କଟକ ସହରର ଲୋକସଂଖ୍ୟା ୪୬୪୩୬ ଜଣ ଥିଲା କିନ୍ତୁ ଏ ବର୍ଷର ଲୋକସଂଖ୍ୟାରେ ଅନେକ ଗୁଡ଼ିଏ ତଳଗ୍ରାମ ସହର ସଙ୍ଗେ ସଂଯୁକ୍ତ ହୋଇଅଛି ଓ ମଧ ମହାନଦୀ ଓ କାଠଯୋଡ଼ି ନଦୀସ୍ଥ ନୌକାରେ ଥିବା ଲୋକଙ୍କ ସଂଖ୍ୟା ଧରାଯାଇଅଛି । ଏଥିପାଇଁ ୨୪୦୦ ଜଣ ବାଦ ଦେଲେ ତିନି ବରଷରେ ୨୦୦୦ ଜଣ ବୃଦ୍ଧି ହୋଇଥିବାର ଅନୁମାନ ହୋଇପାରେ ।

## ( ୭ମ ଭାଗ, ୮ । ୬ । ୧୮୭୨, ସଂଖ୍ୟା ୨୩ )

୨୩ । କଟକ ବଜାର ଦର

କଟକରେ ବର୍ଷା କ୍ଷିନକୁଟିଆ ଓ ତୃପ୍ତି ହେତୁ ପ୍ରାୟ ସବୁ ଖାଦ୍ୟଦ୍ରବ୍ୟ ମହାର୍ଘ ହୋଇଅଛି, ଯଥା:—

| ତୃପ୍ତି ପୂର୍ବେ | | ତୃପ୍ତି ପରେ |
|---|---|---|
| ମୋଟ ଚାଉଳ ଟ ୧ ଙ୍କାରେ | ସେ ୨୬ ର | ସେ ୨୦ ର |
| ଘିଅ „ | ସେ ୧ଭ ବା ସେ ୧/ | ସେ ୦୳ |
| ମୋଟ ତେଲ „ | ସେ ୩୳ | ସେ ୨୳ |
| ମିଶା ସୋରିଷତେଲ „ | ସେ ୨୳ | ସେ ୨ |
| ନବେଲା ସୋରିଷ ତେଲ „ | ସେ ୨୳ ର ବା ସେ ୨। | ସେ ୧୳ ବା ସେ ୧୳ |

ଭଲ ଘିଅ ଟଙ୍କାକୁ ସେ ୦୳ ମୁଦ୍ଧା ମିଳିବାକୁ ନାହିଁ ଓ ମୋଫସଲରେ ମୋଟ ତେଲ ମୁଦ୍ଧା ଟ ୧ ଙ୍କାକୁ ସେ ୨ ର ।

## ( ୭ମ ଭାଗ, ୩ । ୮ । ୧୮୭୨, ସଂଖ୍ୟା ୩୧ )

୨୪ । ଗଞ୍ଜାମ ଜିଲ୍ଲା ।

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ପାଠକମାନଙ୍କୁ ଜଣାଉଅଛୁଁ ଯେ ଏତେକାଳରେ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟ ଗଞ୍ଜାମଜିଲ୍ଲା ଓଡ଼ିଶାର ଅଂଶ ବୋଲି ଜାଣିକରି ସେ ସ୍ଥାନର ଗବର୍ଣ୍ଣମେଣ୍ଟ କାର୍ଯ୍ୟାଳୟ ସମସ୍ତର ପ୍ରଚଳିତ ଭାଷା ଓଡ଼ିଆ ହେବାର ଆଜ୍ଞା ଦେଲେ । ପୂର୍ବେ ଏ ମହକୁମା ସମସ୍ତରେ ତେଲିଙ୍ଗ ଭାଷା ଚଳୁଥିବାରୁ ତେଲେଙ୍ଗା ଲୋକେ ଏକା ଗବର୍ଣ୍ଣମେଣ୍ଟ କାର୍ଯ୍ୟ ପାଉଥିଲେ ଓ ଗଞ୍ଜାମ ନିବାସିମାନଙ୍କର କୌଣସି ଉନ୍ନତି ହେଉନଥିଲା । ଏ ବିଷୟରେ ଯେ ଗଞ୍ଜାମବାସୀମାନେ ଅତ୍ୟନ୍ତ ଦୁଃଖିତ ଥିଲେ ତାହା ଆମ୍ଭେମାନେ କେତେଥର ଏ ପତ୍ରିକାରେ ଜଣାଇ ଅଛୁଁ । ଯାହାହେଉ ଏଥର ସେମାନଙ୍କର ମନସ୍କାମନା ପୂର୍ଣ୍ଣ ହେଲା ଓ ତଦ୍ଦ୍ୱାରା ଓଡ଼ିଆ ଭାଷାର ଉନ୍ନତି ମଧ୍ୟ ହେବାର ବିଶେଷ ଆଶା ହେଲା । ଓଡ଼ିଆ ଭାଷାରେ ଯେତେ ପୁରାତନ ପୁସ୍ତକ ବର୍ତ୍ତମାନ ଦେଖିବାରେ ଆସୁଅଛି ତହିଁର ଅଧିକାଂଶ ପ୍ରାୟ ଗଞ୍ଜାମ ଜିଲ୍ଲା କିମ୍ବା ତନ୍ନିକଟ ବାସୀ ରଚନା କରିଥିଲେ ଓ ବର୍ତ୍ତମାନ ମଧ୍ୟ ଖଲ୍ଲିକୋଟ ପାରଳା-ଖେମୁଣ୍ଡିରେ ଦୁଇଜଣ ଅସାଧାରଣ ଗ୍ରନ୍ଥକାର ଓ ଉତ୍ତମ କବି ଅଛନ୍ତି । ଏପରି ଖୋର୍ଦ୍ଧା । ଏ ଉତ୍ତରୁ ଖୋର୍ଦ୍ଧାଠାରୁ ଦକ୍ଷିଣକୁ କ୍ରମଶଃ ବିଶେଷ ଶାସ୍ତ୍ରାର୍ଥୀ ଓ ଶାସ୍ତ୍ରାନୁରାଗୀ ପ୍ରାପ୍ତ ହୁଅନ୍ତି । ଓଡ଼ିଆ ଭାଷା ପ୍ରତି ସେ ଅଞ୍ଚଳରେ ଗବର୍ଣ୍ଣମେଣ୍ଟଙ୍କର ଆସ୍ଥା ନ ଥିଲାରୁ ଏମାନଙ୍କର ପରିଶ୍ରମ ଓ ବୁଦ୍ଧି ବିଫଳ ହେଉଥିଲା । ଏବେ ସେସବୁ କାର୍ଯ୍ୟରେ ଲାଗିବାର ସମ୍ଭାବନା କିନ୍ତୁ ଏ ଲୋକମାନେ ଆଧୁନିକ ପ୍ରଣାଳୀରୁ ଅବଗତ ନୁହନ୍ତି ଓ ଏମାନଙ୍କୁ ବାଟ ଦେଖାଇବା ପାଇଁ ଆବଶ୍ୟକ ଯେ ଏ ସ୍ଥାନର ଜ୍ଞାନାଲୋକ ଓ ଶିକ୍ଷା ସନ୍ତ୍ରାନ୍ତ କର୍ମଚାରୀ ଓ ସେ ସ୍ଥାନର ଉକ୍ତ ପ୍ରକାର ଲୋକଙ୍କ ମଧ୍ୟରେ ମନୋଭାବ ବିନିମୟ କରିବାର ଗୋଟିଏ ଉପାୟ ସ୍ଥାପନ ହେଉ ଓ ତାହା କେବଳ ସଭା ଓ ସମ୍ବାଦପତ୍ର ଅଥବା ଏ ଦୁଇଟି ଏକଦ୍ୱାରା ହୋଇପାରେ ।

## ( ୭ମ ଭାଗ, ୧୦ । ୮ । ୧୮୭୨, ସଂଖ୍ୟା ୩୨ )

୨୫ । ଓଡ଼ିଆ ଡେପୁଟୀ କଲେକ୍ଟର

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ଗେଜେଟରେ ପାଠକଲୁଁ ଯେ ବାବୁ ନନ୍ଦକିଶୋର ଦାସ ଡେପୋଟି କଲେକ୍ଟର ପ୍ରଥମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଗତ ଅପ୍ରେଲ ମାସରେ ଏ ପରୀକ୍ଷା ହୋଇଥିଲା ଓ ଏ ମହାଶୟ ଏଥିରେ

ପ୍ରଥମ ଥର ଉପସ୍ଥିତ ହୋଇଥିଲେ । ଏକାଧିକରେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ପ୍ରଶଂସାର ବିଷୟ ଅଟଇ । ଓଡ଼ିଶାରେ ପରୀକ୍ଷା ନିୟମ ଅଧୀନରେ କେବଳ ତିନିଜଣ ଲୋକ ଅବଧି ଡେପୋଟୀ କଲେକ୍ଟର୍‌ରେ ନିଯୁକ୍ତ ହୋଇଅଛନ୍ତି, ଯଥା— ବାବୁ ସଦାନନ୍ଦ ଯାଚକ, ବାବୁ ଜଗନ୍‌ମୋହନ ରାୟ ଓ ବାବୁ ନନ୍ଦକିଶୋର ଦାସ । ବାବୁ ସଦାନନ୍ଦ ଯାଚକଙ୍କୁ ଗଭର୍ଣ୍ଣମେଣ୍ଟ ସ୍ଥାନରେ ନିଯୁକ୍ତ କରାଯାଇଥିଲା । ଅତଏବ ସେ ପରୀକ୍ଷାରେ ଉପାର୍ଜିତ ହେବାର କଥା ବିଦିତ ନୁହଇ । କିନ୍ତୁ ଆଉ ଦୁଇଜଣ ତ କ୍ରମଶଃ କର୍ମ କରି ଏକାଥରକେ ପ୍ରଥମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଏଥିରୁ ସର୍ବସାଧାରଣ ବିଚାର କରିବେ ଉତ୍କଳୀୟମାନେ ଡେପୋଟୀ କଲେକ୍ଟରୀ କର୍ମ କରିବାକୁ ସମ୍ପୂର୍ଣ୍ଣରୂପେ ପାରଗ ଅଟନ୍ତି ମାତ୍ର ଦୁଃଖର ବିଷୟ ଯେ ଆମ୍ଭମାନଙ୍କ କମିଶ୍ନର ଶ୍ରୀଯୁକ୍ତ ରେଭେନସା ସାହେବ ଓଡ଼ିଆଙ୍କ ଉନ୍ନତି ପ୍ରସଙ୍ଗରେ ବହୁତ କଥା କହନ୍ତି କିନ୍ତୁ କାର୍ଯ୍ୟତଃ ଅବଧି ଜଣକରୁ ଅଧିକ ସ୍ଥାନୀୟ ଲୋକଙ୍କୁ ଉଚ୍ଚପଦରେ ନିଯୁକ୍ତ କରାଇନାହାନ୍ତି । ଆମ୍ଭେମାନେ ଭରସା କରୁଁ ଯେ ବର୍ତ୍ତମାନ ଫଳ ଦେଖି ସେ ଉତ୍ସାହିତ ହୋଇ ଉତ୍କଳୀୟଙ୍କୁ ଏ ପ୍ରକାର ଉଚ୍ଚକର୍ମ ଦେବାପାଇଁ ବିଶେଷ ମନୋଯୋଗୀ ହେବେ ।

## ( ୭ମ ଭାଗ, ୧୦ । ୮ । ୧୮୭୨, ସଂଖ୍ୟା ୩୨ )

୨୨ । ସାପ୍ତାହିକ ସମ୍ବାଦ

ସୋରରି କେଦାରପୁର ନିକଟରେ ଏହି ସ୍ପୁଲର ମାସ ତା ୨୦ ରିଖ-ରେ ବେଳ ଦଶଘଣ୍ଟା ସମୟରେ ଅଗ୍ନି ଆକୃତି ଗୋଟା ୨ ସ୍ତମ୍ଭ ଆକାଶରୁ ଖସି ଏକ କ୍ଷୁଦ୍ର ନଦୀରେ ପଡ଼ିଲା । ସେହି ସ୍ତମ୍ଭ ଆଉ ଦଣ୍ଡେ ଅଧ କ୍ରୋଶ ପର୍ଯ୍ୟନ୍ତ ସ୍ଥଳେ ଧୂଆଁ ହୋଇଥିବାରୁ ନିକଟବର୍ତ୍ତୀ ଗ୍ରାମବାସୀମାନେ ପଳାଇବାକୁ ଉଦ୍ୟତ ହୋଇ ଥିଲେ କିନ୍ତୁ କେହି ପ୍ରାଣୀ ନଷ୍ଟ ହୋଇନାହିଁ ।

## ( ୮ମ ଭାଗ, ୧ । ୨ । ୧୮୭୩, ସଂଖ୍ୟା ୪ )

୨୨ । ଧୋବ କାଞ୍ଚନ ଫୁଲର ଉପକାରିତା

ଆମ୍ଭେମାନେ ଧୋବ କାଞ୍ଚନଫୁଲ ପତ୍ରର ଘାଣ ଶୁଷ୍କକାରିତା ଗୁଣ ଜାଣି ପାରିଅଛୁଁ । ଯେଉଁ ଘା ହେଲେହେଁ ଉକ୍ତ ପତ୍ର ବାଟି ଘା ଉପରେ ଓ ଚାରି ପାଖରେ ଲେପନ କଲେ ଶୁଷ୍କ ହୁଅଇ । ଘା ଅଧିକ ବଡ଼ ହେଲେ ପ୍ରତିଦିନ ଥରେ ଦୁଇ ଥର ଲେଖାଏଁ ଦୁଇ କି ତିନିଦିନ ଦେବାକୁ ହେବ । ଅଳ୍ପ ଘା ଦିନକରେ ଶୁଖିଯାଏ ।

ଆମ୍ଭେମାନେ ଅନେକ ଥର ପ୍ରତ୍ୟକ୍ଷ ପରୀକ୍ଷାରେ ଦେଖିଅଛୁଁ । ଏଗାରୁଣୀ ଟୀକା ଦେବା ସମୟରେ ଗୋଟିଏ ବାଳକର ଘା କ୍ରମେ କ୍ରମେ ପ୍ରବଳ ହୋଇ ଅର୍ଦ୍ଧାଙ୍ଗ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା ଓ ପ୍ରକାଶିଶି ତାହାର ବାଳକଟିକୁ ନିତାନ୍ତ କଷ୍ଟ ଦେଉଥିଲା । ସେହି ଘା ଉପରେ ଉପଳ ଲିପ୍ତିତ ପତ୍ର ବାନ୍ଧି ଦେବାରୁ ଦୁଇଦିନ ମଧ୍ୟରେ ଶୁଖି-ଗଲା । କାହାର କାହାର ଅଙ୍ଗରେ ଜେଉଁ ଘା ହୁଏ ତାହା ମଧ୍ୟ ଭଲ ହୋଇଅଛି । ଅଳ୍ପ ପାଣିରେ ଉକ୍ତ ପତ୍ର ବାଟିବାକୁ ହେବ ।

( ୮ମ ଭାଗ, ୧୨ । ୭ । ୧୮୭୩. ସଂଖ୍ୟା ୨୮ )

୨୮ । କୃଷିକାର୍ଯ୍ୟର ଉତ୍କର୍ଷ ସାଧନ ।

× × ×

ମାନ୍ଦ୍ରାଜର ପ୍ରଧାନ କର୍ମଚାରୀ ଶ୍ରୀଯୁକ୍ତ ରାବେନସା ସାହେବ କମିଶନର

× × ଯେ ଯେ ନିୟମରେ ଉତ୍ତମ ରୂପେ କୃଷି କାର୍ଯ୍ୟ ହୋଇ ପାରେ ତଦ୍ ବିଷୟରେ ଖଣ୍ଡିଏ ପୁସ୍ତକ ରଚନା କରିବାକୁ ଆଦେଶ ଦେବାରୁ ବାବୁ ସଚ୍ଚିଦାନନ୍ଦ ଦାସ କୃଷିବିଜ୍ଞାନ ନାମରେ ଏକଖଣ୍ଡି ପୁସ୍ତକ ରଚନା କରିଅଛନ୍ତି ଓ ପ୍ରଶଂସିତ ସାହେବ ଗବର୍ଣ୍ଣମେଣ୍ଟଙ୍କ ସରକାରୀ ତହବିଲରୁ ୨୫୦ ଖଣ୍ଡ କ୍ରୟ କରି ଜମିଦାର-ମାନଙ୍କୁ ବିତରଣ କରୁଅଛନ୍ତି ।

× × ×

( ୮ମ ଭାଗ, ୯ । ୮ । ୧୮୭୩, ସଂଖ୍ୟା ୩୨ )

୨୯ । ସାପ୍ତାହିକ ସମ୍ବାଦ

ଆମ୍ଭେମାନେ ଅବଗତ ହେଲୁଁ ଯେ ଜଗତସିଂହପୁର ସବଡିଭିଜନ ଉଠାଇ ଦେବାକୁ ଗବର୍ଣ୍ଣମେଣ୍ଟ ନିଶ୍ଚୟ କରିଅଛନ୍ତି । ଉକ୍ତ ସବଡିଭିଜନର ଅର୍ଦ୍ଧେ ଇଲାକା କେନ୍ଦ୍ରାପଡ଼ା ଓ ଅର୍ଦ୍ଧେ ସଦର ସବଡିଭିଜନ ସଙ୍ଗେ ମିଶିଯିବ ।

( ୮ମ ଭାଗ, ୧ । ୧୧ । ୧୮୭୩, ସଂଖ୍ୟା ୪୩ )

୩୦ । ବଙ୍ଗାଳୀ ଓ ଓଡ଼ିଆଙ୍କର ମତାନ୍ତର ।

ଗତ ପ୍ରକାଶିତ 'ଉତ୍କଳପୁତ୍ର' ଆମ୍ଭମାନଙ୍କ ଏକଟି କମିଶନର ଶ୍ରୀଯୁକ୍ତ ବିମସ ସାହେବଙ୍କୁ ପ୍ରଶଂସା କରି କହିଅଛନ୍ତି ଯେ ସେ କାହାରି କଥାରେ ନ ଭୁଲି ଆପେ ସ୍ୱାଧୀନରୂପେ ବିଚାର କରି କର୍ମ କରନ୍ତି । ଏଥିରେ ଆମ୍ଭେମାନେ ଐକ୍ୟ

ଅଛୁଁ କିନ୍ତୁ ଅଧିକାଂଶ ବଙ୍ଗାଳୀମାନେ 'ସବୁଠାରେ ଓଡ଼ିଆଙ୍କର ନିନ୍ଦା କରନ୍ତି, ଏବଂ ଓଡ଼ିଆମାନେ ସୁତରାଂ ସେମାନଙ୍କୁ ଅଶ୍ରଦ୍ଧା କରନ୍ତି' ଏ କଥା ଅତି ଶୋଚନୀୟ ଅଟଇ । ଏରୂପ ହେବାର କାରଣ କି ତାହା ନିର୍ଦ୍ଦେଶ କରିବା ବର୍ତ୍ତମାନ ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହଇ କିନ୍ତୁ ଓଡ଼ିଆ ଓ ବଙ୍ଗାଳୀଙ୍କ ମଧ୍ୟରେ ଏରୂପ ବୈର ଭାବ ଯେ ଓଡ଼ିଶାର ଅମଙ୍ଗଳର ହେତୁ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ବଙ୍ଗାଳୀଙ୍କ ଦ୍ୱାରା ଓଡ଼ିଶାର ଅନେକ ଉନ୍ନତି ହୋଇଅଛି ଏହା କିଏ ଅସ୍ୱୀକାର କରିବ ? ମଧ୍ୟ ଏଥିରେ କିଛି ଅସମ୍ଭବ ନାହିଁ । ବଙ୍ଗାଳୀମାନେ ବିଦ୍ୟା ବୁଦ୍ଧି ସଭ୍ୟତା ଏବଂ ଧନରେ ଓଡ଼ିଆଙ୍କଠାରୁ ଅନେକ ପରିମାଣରେ ଉତ୍କୃଷ୍ଟ ଅବଶ୍ୟ ସ୍ୱୀକାର କରିବାକୁ ହେବ ଓ ସଭ୍ୟଲୋକଙ୍କ ସମାଗମରେ ଅସଭ୍ୟମାନେ ସଭ୍ୟତାକୁ ପ୍ରାପ୍ତ ହୁଅନ୍ତି ଏହା ମଧ୍ୟ ନିଃସନ୍ଦେହ ସୁତରାଂ ବଙ୍ଗାଳୀଙ୍କ ଦ୍ୱାରା ଓଡ଼ିଶାର ଉନ୍ନତି ହେବାର ସମ୍ଭାବନା କିନ୍ତୁ ପରସ୍ପର ଏରୂପ ବୈର ଭାବ ଥିବାରୁ ତାହା ଘଟନା ହୋଇ ପାରୁ ନାହିଁ । ପୂର୍ବେ ଯେଉଁ ବଙ୍ଗାଳୀମାନେ ଏଠାକୁ ଆସୁଥିଲେ ସେମାନେ ଓଡ଼ିଆଙ୍କ ସହିତ ସଦ୍ଭାବ ରଖୁଥିଲେ ବୋଲି ତାହାଙ୍କ ଦ୍ୱାରା ଓଡ଼ିଆଙ୍କର ଉପକାର ହେଉଥିଲା । ଏବେ ସେରୂପ କାହିଁ ? ସେରୂପ ନ ହେବା ଉଭୟଙ୍କ ପକ୍ଷର ଦୋଷ ହେଲେହେଁ ବଙ୍ଗାଳୀଙ୍କୁ ଆମ୍ଭେମାନେ ଅଧିକ ଦୋଷୀ କରୁଁ କାରଣ ବଙ୍ଗାଳୀମାନେ ଯେ ଏ ପ୍ରଦେଶକୁ ଉଚ୍ଚ ପଦ ପାଇ ଆସିଅଛନ୍ତି ତାହା କେବଳ ଓଡ଼ିଆଙ୍କର ଭଲ ସକାଶେ । ସେମାନଙ୍କର ନିଜ କମ୍ପା ବନ୍ଧୁ କୁଟୁମ୍ବର ଉପକାର ସକାଶେ ନୁହଇ । ଗବର୍ଣ୍ଣମେଣ୍ଟ ଯେବେ ଜାଣନ୍ତେ ଯେ ଯେଉଁ ପଦରେ ବଙ୍ଗାଳୀଙ୍କୁ ନିଯୁକ୍ତ କରି ପଠାନ୍ତି ସେହି କର୍ମ ନିର୍ବାହ କରିବାର ଉପଯୁକ୍ତ ଓଡ଼ିଆ ଏଠାରେ ଅଛି ତେବେ ତାହାଙ୍କୁ ପଠାନ୍ତେ ନାହିଁ । ଏ ଅବସ୍ଥାରେ ବଙ୍ଗାଳୀମାନେ ଆପଣା ସଦ୍ଗୁଣ ଦର୍ଶାଇବା ଦ୍ୱାରା ଓଡ଼ିଆଙ୍କର ଶ୍ରଦ୍ଧାସ୍ପଦ ନ ହେଲେ ତେବେ ତାହାଙ୍କର ଉତ୍କୃଷ୍ଟ ବିଦ୍ୟା ଓ ସଭ୍ୟତା କି କାର୍ଯ୍ୟରେ ଆସିଲା ? ଓ ତେମନ୍ତ ସଦ୍ଗୁଣର ଅହଂକାର ଯେଉଁ ବ୍ୟକ୍ତି କରଇ ତାହାଠାରୁ ମୂର୍ଖ ସଂସାରରେ ଲୋକ ପାଇବାର ଭାର । ମୂର୍ଖ ସଙ୍ଗେ ସଦ୍ଭାବ କରି ତାହାକୁ ସୁପଥରେ ଆଣିବା ପଣ୍ଡିତର କାର୍ଯ୍ୟ ଅଟଇ ମାତ୍ର ବର୍ତ୍ତମାନ ଓଡ଼ିଆ ବଙ୍ଗାଳୀଙ୍କର ଯେମନ୍ତ ଭାବ ଦେଖାଯାଏ ତହିଁରେ ଉକ୍ତ ମହତ୍ କାର୍ଯ୍ୟର କିଛି ମାତ୍ର ଚିହ୍ନ ପାଇବା ଯାଉ ନାହିଁ । ସେ ଯାହାହେଉ ଏଥର ବଙ୍ଗାଳୀ ଓ ଓଡ଼ିଆମାନଙ୍କର କିରୂପେ ସଦ୍ଭାବ ହେବ ତହିଁର ଚେଷ୍ଟା କରିବା ଆବଶ୍ୟକ ଏବଂ ଏଥିପାଇଁ ଆମ୍ଭେମାନେ ଉଭୟ ପକ୍ଷଙ୍କୁ ଅନୁରୋଧ କରୁଅଛୁଁ ଯେ ପଛକଥା ପାଶୋରି ପକାଇ ଏଣିକି ବନ୍ଧୁଭାବ ଅବଲମ୍ବନ କରନ୍ତୁ ।

ଏ ପ୍ରସ୍ତାବ ପ୍ରାୟ ଏକମାସ ହେବ ଲେଖା ହୋଇ ସ୍ଥାନାଭାବରୁ ପ୍ରକାଶ ହୋଇ ନଥିଲା । ଏଥିମଧ୍ୟରେ ଦେଖିଲୁଁ ଯେ 'ଉତ୍କଳପୁତ୍ର' ଓ ହିତୈଷିଣୀ

ମଧ୍ୟରେ ଏହି ବିଷୟ ଯେତେ ଦୂର ଗଣ୍ଡଗୋଳ ହୋଇ ଯାଇଅଛି ଓ ଇତର କଟୁବାକ୍ୟ ପ୍ରୟୋଗରେ ମଧ୍ୟ ତ୍ରୁଟି ହୋଉନାହିଁ । ଏକଥା ଅତି ଶୋଚନୀୟ ଅଟେ । କାରଣ ଆମ୍ଭମାନଙ୍କ ଦ୍ୱାରା କିଛି ହେଉ ବା ନହେଉ ଆମ୍ଭେମାନେ ସମସ୍ତେ ଉତ୍କଳର ମଙ୍ଗଳ-କାମନା କରୁଁ ଓ ସେହି ଉଦ୍ଦେଶ୍ୟରେ ପରିଶ୍ରମ କରୁଅଛୁଁ ମାତ୍ର କଳହ ଦ୍ୱାରା ତାହା ସମ୍ପନ୍ନ ହେବାର ନୁହଇ ବରଂ ଏଥିରେ ଅନିଷ୍ଟ ହେବାର ଅଧିକ ସମ୍ଭାବନା । ଆମ୍ଭେ-ମାନେ ବିନୟ ପୂର୍ବକ ଆମ୍ଭ ଭ୍ରାତାମାନଙ୍କୁ ଅନୁରୋଧ କରୁଅଛୁଁ କି ସେମାନେ ଏରୂପ ଭାବ ତ୍ୟାଗ କରି କି ଉପାୟ ଦ୍ୱାରା ଓଡ଼ିଆ ଓ ବଙ୍ଗାଳୀମାନଙ୍କ ମଧ୍ୟରେ ଐକ୍ୟତା ହେବ ତହିଁର ବିବେଚନାରେ ପ୍ରବୃତ୍ତ ହେଉନ୍ତୁ । ମନ୍ଦ ଲୋକଙ୍କୁ ମନ୍ଦ ଓ ଭଲ ଲୋକଙ୍କୁ ଭଲ ଅବଶ୍ୟ ବୋଲିବାକୁ ହେବ କିନ୍ତୁ ଆମ୍ଭେମାନେ ଏହି ଆକାଂକ୍ଷା କରୁଁ ଯେମନ୍ତ ପରର ଦୋଷ ଧରି ଆପଣା ମଧ୍ୟରେ ବିବାଦ ନ ହୁଅଇ ।

## ( ୧୦ମ ଭାଗ, ୧୭ । ୧ । ୧୮୭୫, ସଂଖ୍ୟା ୩ )

୩୧ । ସାପ୍ତାହିକ ସମ୍ବାଦ

ବାବୁ ବଷ୍ଟମ ପଟ୍ଟନାୟକ ଅନୁଗୁଳର ତହସିଲଦାରୀ ପଦରେ ନିଯୁକ୍ତ ହେବାର ଗବର୍ଣ୍ଣମେଣ୍ଟ ଗେଜେଟରେ ଛପା ହୋଇଅଛି ।

## ( ୧୧ଶ ଭାଗ, ୨୨ । ୧ । ୧୮୭୬, ସଂଖ୍ୟା ୪ )

୩୨ । କାଠଯୋଡ଼ି ପଥର ବନ୍ଧ ।

ଗତ ଗୁରୁବାର କାଠଯୋଡ଼ି ନଦୀର ପଥର ପାହାଚରୁ ଅନେକ ଭାଙ୍ଗି ପଡ଼ିଲା । ନଦୀବନ୍ଧ ବର୍ଷାକାଳରେ ଭାଙ୍ଗଇ. ଶୁଖିଲା ଦିନରେ ବନ୍ଧ ଅତଡ଼ା ଖାଇ ପଡ଼ିବା କଥା ଶୁଣି ପାଠକମାନେ ଆଶ୍ଚର୍ଯ୍ୟ ହୋଇପାରନ୍ତି ମାତ୍ର ଆମ୍ଭେମାନେ ବୁଝୁଅଛୁଁ ଯେ ତହିଁରେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । କାଠଯୋଡ଼ିର ପଥରବନ୍ଧ ପୁରୁଣା ହେବାରୁ ତାହାର ଅଧିକ ଦୃଢ଼ କରିବାପାଇଁ ବାରିକ ମାଷ୍ଟର ମହଲୁମାନ୍ତୁ ତହିଁ ତଳେ ପଥର ଗାନ୍ଥୁଣୀ ହୋଇ ପୁସ୍ତା ଦିଆଯାଉଥିଲା । ସେହି ପଥର ପୁସ୍ତା ବସାଇବା ପାଇଁ ଗୋଟିଏ ବୃହତ୍ ନାଳପ୍ରାୟ ବନ୍ଧ ତଳେ କିଛି ଖୋଳାଗଲା ଏଥିର କାନ୍ଥି ପାଖରେ ଗଭୀର ନାଳ ଖୋଳିଲେ ଯେ ଫଳ ହୁଅଇ ତାହାର ପ୍ରତ୍ୟକ୍ଷ ଘଟିଲା ଅର୍ଥାତ୍ ମୂଳ ଶିଥିଳ ହେବାରୁ ପଥର ବନ୍ଧଟି ଆପଣା ସୁଖେ ଅଜାଡ଼ି ପଡ଼ିଲା । ବାରିକ ମାଷ୍ଟର ବୁଦ୍ଧିକୁ ଚମତ୍କାର ବୋଲିବାକୁ ହେବ ସେମାନେ ଗଢ଼ିବାକୁ ଯେମନ୍ତ ଭାଙ୍ଗିବାକୁ ମଧ୍ୟ ସେମନ୍ତ

ଅଟନ୍ତି ମୂର୍ଖ ଲୋକ ଗଡ଼ା ଲଗିଥିଲେ ଏ ମହନ୍ତମାନେ କାର୍ଯ୍ୟ କଲେ । ବରଂ ଅଧିକ ହାଣ କରିବାକୁ ବନ୍ଧୁର ତାହାର ଉପାୟ କରି ୨ ତାହାକୁ ସ୍ୱର୍ଗ ପଠାଇବା ବଡ଼ କୌତୁକର କଥା ଅଟଇ ମାତ୍ର ଏପରି କୌତୁକ ବାରକମାତ୍ରବା ମହନ୍ତମାନେ କର୍ତ୍ତବ୍ୟ ୨ ଲଗିଅଛି । ଏଥର ଦେଖାଯିବ ଉକ୍ତ ମହନ୍ତମା ଦୁର୍ଘଟନାର କେଉଁ କାରଣ ନର୍ଦ୍ଦେଶ କରିବେ ।

( ୧୧ଶ ଭାଗ, ୨୪ । ୩ । ୧୮୭୭, ସଂଖ୍ୟା ୧୩ )

୧୩ । ମକରବା ଭୂତ ।

ଗତ ଶୁକ୍ର ପାଞ୍ଚଦିନରୁ ଗୋଟିଏ ବଡ଼ ଚମତ୍କାର କଥା ଏ ନଗରର ଆବାଳ ବୃଦ୍ଧ ସମସ୍ତଙ୍କ ମୁଖରେ ଶୁଣା ଯାଉଅଛି ଓ ହାଟ ବାଟ ସବୁଠାରେ ତାହାର ଚର୍ଚ୍ଚା ହେଉଅଛି । ପ୍ରଥମ ଦିନରେ ଚମତ୍କାରତା ବର୍ତ୍ତମାନ ନାହିଁ ସତ୍ୟ କିନ୍ତୁ ସମସ୍ତ ଲୋକ ଏହାକୁ ଅବହେଳା ବା ମନରୁ ଅନ୍ତର କରିନାହାନ୍ତି ।

କଥାଟି ଏହି ଯେ ଏହି ନଗର ମଧ୍ୟରେ ମକରବା ବୋଲି ସଲଗ୍ନ ନୂତନ ସଡ଼କର ପୁଲ ପାଖରେ ମୂଲିଆମାନେ ମାଟି ଖୋଳି ୨ ଗୋଟିଏ ମାଟିଆ ବାହାର କଲେ । ମାଟିଆଟି ଭାରି ଜଣାଯିବାରୁ ତାହିରେ ଗୁପ୍ତଧନ ଥିବାର ଅନୁମାନ କରି ତାହା ମୁହଁ ଫିଟାଇଲେ ତତ୍‌କ୍ଷଣାତ୍ ଶୂନ୍ୟ କରି ଗୋଟିଏ ପବନ ବେଗେ ବାହାରିଗଲା ( ଆରବ୍ୟ ଉପନ୍ୟାସରେ ଏହିପରି ଗଳ୍ପଟିଏ ଅଛି ) ସେହି ପବନ ଗୋଟିଏ ଭୂତ ଅଟଇ । ଏବେ ସେ ଭୂତ ସେଠାରେ ଅବସ୍ଥିତ କରି ଯାହାକୁ ଏକା ପାଉଅଛି ତାହାର ଟୋଣ୍ଟିଧରି ଚେକ ଏମନ୍ତ କଚଡ଼ିଏ ଦେଉଅଛି କି ତାହାର ତତ୍‌କ୍ଷଣାତ ମୃତ୍ୟୁ ହେଉଅଛି । ଏପରି ଭଳି ୨ ଲୋକଙ୍କ କହିବାମତେ ୮ । ୧୦ । ୧୫ । ୨୦ ଜଣ ମନୁଷ୍ୟର ପ୍ରାଣ ନେଲାଣି ସେ ବାଟଦେଇ ଜାଣିବା ଲୋକ କେହି ଯାଉ ନାହାନ୍ତି ଓ ନଜାଣିବା ଲୋକଙ୍କୁ ସତର୍କ କରିଦେବା କାରଣ ବାଟ ଦୁଇପାଖରେ କନଷ୍ଟବଲ ପହରି ଅଛନ୍ତି । ଏଠା ଲୋକଙ୍କର ଭୟ ଓ ବିଶ୍ୱାସ ଏମନ୍ତ ଅଧିକ ଯେ ସହରର ମଧ୍ୟରେ ଏ ଘଟଣା ହେଉ ଥିବାର ଜାଣି ସୁଦ୍ଧା ସେଠାକୁ କେହି ନଯାଇ କି ଯଥାର୍ଥ କଥାର ଅନୁସନ୍ଧାନ ନକରି ପରସ୍ପରରେ ଏହିକଥା କୁହାକୁହି ହୋଇ ନାନା ଅମଙ୍ଗଳର ଆଶଙ୍କା କଲେ ଓ ଏ ଘଟନାର ନାନା ସିଦ୍ଧାନ୍ତ ଘଟାଇଲେ । ପରିଶେଷରେ କେହି ୨ ସାହସୀ ଲୋକ ସେଠାକୁ ଯାଇ ପ୍ରତିବାସୀଙ୍କଠାରୁ ସନ୍ଧାନ ନେବାରେ ସେମାନେ କିଛି ଜାଣୁନଥିବାର କହିଲେ ଓ ଏକଥା କୌଣସି ଅଂଶରେ ସତ୍ୟ ଥିବାର ପ୍ରକାଶ ହେଲା ନାହିଁ ତଥାପି ସେହି ଶୁଣା କଥାରେ ସମସ୍ତଙ୍କର ଏକାନ୍ତ ବିଶ୍ୱାସ

ହୋଇଥିଲା । କାହିଁକି ଏତେକଥା ଉଠିଲା ଆମ୍ଭେମାନେ ଜାଣି ନପାରୁଁ । ଶୁଣାଯାଏ ସ୍କୁଲ ପାଠଶାଳାର ଦଳେ ଖଣ୍ଡେ ଶଗଡ଼ ଜଳକୁ ପଡ଼ିଥିଲା ଓ ଆଉ ଦିନେ ଜଣେ ବୁଢ଼ା ସ୍କୁଲ ଉପରେ ବସି କନ୍ଦରେ ଝୁଲାଇ ଥିବାରୁ କାଗୁଡ଼ ପଡ଼ିଥିଲା । ଆଉ ଏକଦିନ ଗୋଟାଏ ଗୌଡ଼ ଘିଅ ନେଇ ଯାଉଥିଲା ଯେ ତାହାର ଘିଅ ମାଠିଆ ସେଠାରେ କପର ଆଘାତ ପାଇ ଭାଙ୍ଗିଗଲା । ଏପର ଆଜକାଲ କାହାର କାହାରକୁ ଓଲଉଠା ରୋଗରେ ମରିବାର ଦେଖାଯାଏ । ରୋଗଟି କିଛିଦିନ ଶୁଣା ନଥିଲା ଏବେ ବାହାରିଅଛି । ଏ ସବୁ ଘଟନା ସମ୍ପୂର୍ଣ୍ଣ ସତ୍ୟ ନହେଲେହେଁ ଅନେକ ସତ୍ୟ ହେବାର ସମ୍ଭବ ଓ ଏ ସମସ୍ତକୁ ଏକତ୍ର କଲେ ଉପରଲିଖିତ କଥାର ମୂଳ କିଛି ଜଣା ପଡୁଅଛି । ଏଠା ଲୋକଙ୍କର ମନୋବୃତ୍ତି ଏପରି ଅଟଇ ଯେ ସ୍ୱଭାବପ୍ରତି ଆଦୌ ଦୃଷ୍ଟି କରିବେ ନାହିଁ । କୌଣସି କଥା ହେଲେ ଆଗେ ତହିଁର ଗୋଟିଏ ଅନୈସର୍ଗିକ ହେତୁ କଳ୍ପନା କରିବେ ଓ ଭୂତ ପ୍ରେତ ଡାଆଣୀ ଚିରଗୁଣୀ ଏହାଙ୍କ ଜିଭ ଉପରେ ରାତିଦିନ ନାଚୁଅଛି । ଏମନ୍ତ ଦିନ ନାହିଁ କି କୌଣସିଠାରେ କାହାରକୁ ଭୂତ ଲଗୁନାହିଁ କି କାହାର ପିଲାଝିଲାକୁ ଡାଆଣୀ ଶୋଷି ଯାଉନାହିଁ । ସହରରେ କିଛିଦିନ ପଡ଼ିଆକୁ ଗଲେ ଚିରଗୁଣୀ ସହିତ ଅବଶ୍ୟ ଭେଟ ହେବ । ଏପରି ଲୋକଙ୍କ ମୂର୍ଖତା ଭାଙ୍ଗିବାକୁ ଯେ ବହୁତ କାଳ ଲାଗିବ ଏଥିରେ ସନ୍ଦେହ କି ?

## ( ୧୧ଶ ଭାଗ, ୧୦ । ୭ । ୧୮୭୬, ସଂଖ୍ୟା ୨୪ )

୩୪ । ଓଡ଼ିଶାର ଶାସନ ପରିବର୍ତ୍ତନ

ଗତମାସ ଶେଷ ତାରିଖର ଡେଲି ନ୍ୟୁସରୁ ଅବଗତ ହେଲୁଁ ଯେ କେନ୍ଦ୍ରଗୁଡ଼ିଏ ପ୍ରଧାନ କମିଶନରଙ୍କ ଏଲାକା ପରିବର୍ତ୍ତନ ବିଷୟରେ ଗବର୍ଣ୍ଣମେଣ୍ଟ ବିଚାର କରୁଅଛନ୍ତି । ଉକ୍ତ ପରିବର୍ତ୍ତନମାନ ଏହି ଯେ ମଧ୍ୟପ୍ରଦେଶର କମିଶ୍ନର ଉଠିଯିବ ଓ ତହିଁର ଏକଅଂଶ ବମ୍ବେଇ ଓ ଏକଅଂଶ ଉତ୍ତର ପଶ୍ଚିମ ଗବର୍ଣ୍ଣମେଣ୍ଟରେ ଯୋଗ ହୋଇ ଅବଶିଷ୍ଟ ଅଂଶ ଓଡ଼ିଶା ସଙ୍ଗରେ ମିଶି ଗୋଟିଏ ସ୍ୱତନ୍ତ୍ର ପ୍ରଧାନ କମିଶ୍ନରର ଅଧୀନ ହେବ । ସୁତରାଂ ଯେମନ୍ତ ଆଶାମ ବାହାରିଗଲା ସେହିରୂପ ଓଡ଼ିଶା ବାହାରି ଗଲେ ବଙ୍ଗ ପ୍ରଦେଶର ଶାସନ କାର୍ଯ୍ୟ ନିରୂପିତ ସୀମା ମଧ୍ୟରେ ରହିବ ଓ ବର୍ତ୍ତମାନ ପରି ଅସଙ୍ଗତ ପରିମାଣରେ ରହିବନାହିଁ ଅର୍ଥାତ୍ ଏହାର ଶାସନକର୍ତ୍ତାର ଯୋଗ୍ୟତା ସହିତ ଆୟତନର ସମତା ରହିବ ।

ଉପରଲିଖିତ ସମ୍ବାଦଟି ପାଠକରି ଆମ୍ଭମାନଙ୍କର ହର୍ଷ ବିଷାଦ ଜାତ ହୋଇଅଛି । ହର୍ଷର କାରଣ ଏହିଯେ ସମସ୍ତ ଓଡ଼ିଆ ଭାଷା ପ୍ରଚଳିତ ଖଣ୍ଡ ନହେଲେ

ଅଛନ୍ତି ତହିଁର ଅଧିକାଂଶ ଏକଜଣ ଶାସନକର୍ତ୍ତା ଅଧୀନରେ ଆସିବା ଓଡ଼ିଶାର ଉନ୍ନତିର ବିଷୟ ଅଟଇ । ଏ କାରଣ ଚିନ୍ତାଶୀଳ ଲୋକମାନେ ପୁନଃ ପୁନଃ ଗବର୍ଣ୍ଣମେଣ୍ଟଙ୍କୁ ଏବଂ ସର୍ବସାଧାରଣଙ୍କୁ ଜଣାଇ ଅଛନ୍ତି ଯେ ସମସ୍ତ ଓଡ଼ିଶା ଏକଜଣ ଶାସନକର୍ତ୍ତାର ଅଧୀନ ନହେବାରୁ ଏହାର ଉନ୍ନତି ହୋଇ ପାରୁନାହିଁ ଓ ଗଞ୍ଜାମଠାରୁ ସମ୍ବଲପୁର ପର୍ଯ୍ୟନ୍ତ ଭୂମିଖଣ୍ଡ ଯେ ଯାହିଁରେ ଓଡ଼ିଆଭାଷା ପ୍ରଚଳିତ ଅଛି ତାହା ସମସ୍ତ ଏକା ଜିଲ୍ଲା ଏକ ଶାସନକର୍ତ୍ତାର ଅଧୀନରେ ଆସିଲେ ଓଡ଼ିଆଙ୍କର ପ୍ରକୃତ ମଙ୍ଗଳ ହେବ ଏବଂ ବର୍ତ୍ତମାନ ଯେମନ୍ତ ସେମାନେ ବଙ୍ଗଳା ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶର ଏକ ୨ ଅଜ୍ଞାତ କୋଣରେ ପଡ଼ିରହି କୌଣସି ଆଡ଼େ ମୁଣ୍ଡ ଟେକି ପାରୁନାହାନ୍ତି ତେମନ୍ତ ଆଉ ହେବ ନାହିଁ । ଓଡ଼ିଆଙ୍କର ପ୍ରାଧାନ୍ୟ ସ୍ଥାପନ ହେବ ସୁତରାଂ ସେମାନଙ୍କର ପ୍ରକୃତ ଉନ୍ନତି ଦୃଷ୍ଟିଗୋଚର ହେବ । ଅତଏବ ଉପର ଲିଖିତ ପରିବର୍ତ୍ତନଟି ଗବର୍ଣ୍ଣମେଣ୍ଟ ପ୍ରତ୍ୟକ୍ଷ କରାଇଲେ ଅବଶ୍ୟ ଓଡ଼ିଶାବାସିଙ୍କର ଆନନ୍ଦର ବିଷୟ ହେବ ସନ୍ଦେହ ନାହିଁ ।

କିନ୍ତୁ ଏଥିରେ ବିଷାଦର କାରଣ ମଧ୍ୟ ଅଛି । ବର୍ତ୍ତମାନ ଓଡ଼ିଶା ସବୁ ବିଷୟରେ ହୀନ ହେଲେହେଁ ଯେଉଁ ଖଣ୍ଡ ବଙ୍ଗଳା ଗବର୍ଣ୍ଣମେଣ୍ଟର ଅଧୀନ ଅଛି ସେ ଖଣ୍ଡ ଅପେକ୍ଷାକୃତ ସୁଖରେ କାଳ କଟାଉଅଛି କାରଣ ଉନ୍ନତି ନ ହେଉ ଅତ୍ୟାଚାର ନାହିଁ । ବଙ୍ଗଳାର ସମସ୍ତ ଆଇନ ପ୍ରଚଳିତ ଥିବାରୁ ସମ୍ପତ୍ତି ଓ ପ୍ରାଣରକ୍ଷାର ଯେ କିଛି ଉତ୍କୃଷ୍ଟ ଉପାୟ ଗବର୍ଣ୍ଣମେଣ୍ଟ ଅବଲମ୍ବନ କରିଅଛନ୍ତି ତହିଁର ସମ୍ପୂର୍ଣ୍ଣ ଫଳ ଭୋଗ ହେଉ ଅଛୁ । ପୃଥକ୍ କମିଶନରର ଅଧୀନ ହେଲେ କି ଜାଣି ଯେବେ ଆଇନର ଗୌରବ ଊଣା ପଡ଼ିବ ; କମିଶନରଙ୍କ ଶାସନାଧୀନ ଅନ୍ୟାନ୍ୟ ରାଜ୍ୟ ଖଣ୍ଡର ଅବସ୍ଥା ଚିନ୍ତାକଲେ ଉକ୍ତ ଭୟ ନିତାନ୍ତ ଅମୂଳକ ହୁଅଇ ତେବେ ଆମ୍ଭମାନଙ୍କର କି ଲାଭ ହେବ । ବଙ୍ଗାଳିମାନେ ବର୍ତ୍ତମାନ ଭାରତବର୍ଷରେ ବିଚକ୍ଷଣତା ଓ ସଭ୍ୟତାରେ ପ୍ରଧାନ ଅଟନ୍ତି ଓ ଆମ୍ଭେମାନେ ତାହାଙ୍କର ପ୍ରତିବାସୀ ଅଟୁଁ । ଯାହାଙ୍କର କିଞ୍ଚିତ୍ ମାତ୍ର ଦୂରଦର୍ଶିତା ଅଛି ସେମାନେ ଉପଯୁକ୍ତ ପ୍ରତିବାସୀ ଲୋଡ଼ି ଯତ୍ନକରି ରଖନ୍ତି ସୁତରାଂ ଏମନ୍ତ ପ୍ରତିବାସିଙ୍କଠାରୁ ବର୍ଜିତ ହୋଇ ଓ ଲେଫ୍‌ଟେନେଣ୍ଟ ଗବର୍ଣ୍ଣରଙ୍କ ଶାସନରୁ ବାହାରି ପ୍ରଧାନ କମିଶନରଙ୍କ ଅଧୀନରେ ରହିଲେ ଆମ୍ଭମାନଙ୍କର ଯେ ଉନ୍ନତି ହେବ ଏମନ୍ତ ଆଶା ହେଉନାହିଁ ଓ ବିପଦ ଘଟିବାର କିଛି ସମ୍ଭାବନା ଅଛି । ଆମ୍ଭେମାନେ ବୋଧକରୁଁ ଯେ ଶାସନ ପ୍ରଣାଳୀର କିଛିମାତ୍ର ପରିବର୍ତ୍ତନ ନହୋଇ ଯେବେ କେବଳ ଶାସନକର୍ତ୍ତାର ପରିବର୍ତ୍ତନ ହେବ ଓ ବଙ୍ଗଳାର ବିଧି ସମସ୍ତ ଏଠାରେ ପ୍ରଚଳିତ ରହିବ ତେବେ କିଛି ଅନିଷ୍ଟ ନହୋଇ ଭଲ ହୋଇପାରେ ନୋହିଲେ [illegible]ଠାରୁ ବର୍ତ୍ତମାନ ମନ୍ଦ ଭଲ ଅଟଇ ଓ ଆମ୍ଭେମାନେ ଆଉ କିଛି ଲୋଡ଼ୁନାହୁଁ ।

୩୨ ।

## ଅନୁଗୁଳ

ଗତମାସ ତା ୨୯ ରିଖ ସୋମବାର ଅନଗୁଳର ଗବର୍ଣ୍ଣମେଣ୍ଟ ଉଚ୍ଚ ବିଦ୍ୟାଳୟରେ ଛାତ୍ରମାନଙ୍କୁ ବାର୍ଷିକ ପାରିତୋଷିକ ଦାନ ସକାଶେ ସଭା ହୋଇଥିଲା । ଜଣେ ପତ୍ରପ୍ରେରକ ତହିଁର ବିବରଣ ଲେଖି ପଠାଇଅଛନ୍ତି ମାତ୍ର ପତ୍ର ଖଣ୍ଡିକ ଅତି ବୃହତ୍ ଥିବାରୁ ତାହା ପ୍ରକାଶ ନକରି ସାରାଂଶ ଗ୍ରହଣ କଲୁଁ ।

ସଭାରେ ଅନୁଗୁଳର ତହସିଲଦାର ଓ ପୁଲିସ କର୍ମଚାରୀ ଏବଂ ଅନ୍ୟାନ୍ୟ ଭଦ୍ରଲୋକମାନେ ଉପସ୍ଥିତ ଥିଲେ ଓ ପାରିତୋଷିକ ବିତରଣ ହେବା ଉତ୍ତାରୁ ତହସିଲଦାର ଛାତ୍ରମାନଙ୍କୁ ଶିକ୍ଷା ବିଷୟକ ଉପଦେଶ ଦେଇ ଏ କାର୍ଯ୍ୟ ଶେଷକଲେ । ଶିକ୍ଷା କମିଟୀର ମେମ୍ବରମାନେ ସୁଚାରୁରୂପେ ପରୀକ୍ଷା କାର୍ଯ୍ୟ ନିର୍ବାହ କରିଥିବାରୁ କମିଶନର ସାହେବ ତାହାଙ୍କୁ ଧନ୍ୟବାଦ ଦେଇଥିଲେ । ସେ ଦିନ ସଭାରେ ପଠିତ ହେଲା । ପରିଶେଷରେ ବକ୍ସି ଗୋପୀନାଥ ପଟ୍ଟନାୟକଙ୍କର ଲିଖିତ ଗୋଟିଏ ପ୍ରବନ୍ଧ ସଭାରେ ପଠିତ ହେଲା । ଉକ୍ତ ପ୍ରବନ୍ଧର ଯେଉଁ ମର୍ମ ପତ୍ରପ୍ରେରକ ଲେଖିଅଛନ୍ତି ତହିଁରୁ ଆମ୍ଭେମାନେ ଆନନ୍ଦର ସହିତ ଅବଗତ ହେଲୁଁ ଯେ ବର୍ତ୍ତମାନର ତହସିଲଦାର ଉକ୍ତ ଜିଲ୍ଲାରେ ସ୍ୱାସ୍ଥ୍ୟ ବୃଦ୍ଧିର ଅନେକ ଉପାୟ କରିଅଛନ୍ତି । ଅନଗୁଳ କାହିଁକି ପ୍ରାୟ ସମସ୍ତ ଗଡ଼ଜାତରେ ପରିଷ୍କାର ଜଳ ଅଭାବରେ ଏବଂ ବିସ୍ତର ଜଙ୍ଗଲ ଥିବାରୁ ଅନେକ ପରିମାଣରେ ରୋଗ ବୃଦ୍ଧି ହୁଅଇ । ଜିଲ୍ଲାର ପୁଷ୍କରିଣୀମାନଙ୍କୁ ପରିଷ୍କାର ଅବସ୍ଥାରେ ରଖିଲେ ଗୋଟିଏ ଅଭାବ ମୋଚନ ହେବାର ସମ୍ପୂର୍ଣ୍ଣ ସମ୍ଭାବନା ଅଛି, ଏହି ହେତୁ ଦେଉଳ ବନ୍ଧ ନାମକ ସୁଦୀର୍ଘ ପୁଷ୍କରିଣୀର ଜୀର୍ଣ୍ଣ ସଂସ୍କାର ସକାଶେ ତହସିଲଦାର ଉଦ୍ୟମଶୀଳ ହୋଇ ସେଠାର ଭଦ୍ର ଲୋକମାନଙ୍କଠାରୁ ଭେଦା ଉସୁଲ କରୁଅଛନ୍ତି ଓ କମିଶନର ସାହେବ ମଧ୍ୟ ଅଧେ ଟଙ୍କା ଦେବାକୁ ପ୍ରତିଶ୍ରୁତ ହୋଇଅଛନ୍ତି । ଗଡ଼ଜାତରେ ନଗର ପରିଷ୍କାର ସକାଶେ ଲୋକମାନେ ଇଚ୍ଛାପୂର୍ବକ ଭେଦା ଦେବା କଥା ଶୁଣି ଲୋକେ ଆଶ୍ଚର୍ଯ୍ୟ ହୋଇଅଛନ୍ତି ମାତ୍ର କନ୍ଦମାଳ ତହସିଲଦାରଙ୍କ ଯୋଗେ କନ୍ଧମାନେ ସୁଙ୍ଗା କର ଦେବାକୁ ସ୍ୱୀକୃତ ହେଲେ ଅନଗୁଳର ତହସିଲଦାରଙ୍କ ଉଦ୍ୟମରେ ସେଠା ଲୋକଙ୍କର ଭେଦା ଦେବା ବିଚିତ୍ର ନୁହଇ । ଏଥିରୁ ଏହା ଉପଲବ୍ଧି ହୁଅଇ ଯେ ଗଡ଼ଜାତର ତହସିଲଦାରମାନେ କେବଳ ଖଜଣା ଉସୁଲ କିମ୍ବା ମୋକଦ୍ଦମା ଫଏସଲ କରିବାକୁ ଆପଣା କର୍ତ୍ତବ୍ୟ ଜ୍ଞାନକରି କ୍ଷାନ୍ତ ନରହି ଯହିଁରେ ଆପଣା ୨ ଏଲକାର ଶ୍ରୀବୃଦ୍ଧି ହୁଅଇ ଓ ଅଭାବମାନ ଲୁପ୍ତହୁଏ ତହିଁ ପକ୍ଷରେ ଯତ୍ନ କରିବେ ତେବେ ଅଳ୍ପ କାଳରେ ଗଡ଼ଜାତର ଅବସ୍ଥା ମଧ୍ୟ ଅନେକ ସୁଖକର ହେବ । ତହସିଲଦାରମାନଙ୍କୁ ଅନୁକ୍ଷଣେ ଏସବୁ ବିଷୟରେ ଦୃଷ୍ଟି ରଖିବାର ଉଚିତ ଏଥିରେ ଅଳ୍ପ ଯତ୍ନକଲେ ସେମାନଙ୍କର ଅଧିକ ପ୍ରଶଂସା ହେବ ।

ଆଉ ଗୋଟିଏ ଉନ୍ନତିର ଉପାୟ ସମ୍ପ୍ରତି ଅବଲମ୍ବନରେ ହୋଇଅଛି ତାହା ଏହି ଯେ କିଲ୍ଲାର ଅଧିବାସି ସଂଖ୍ୟାର ଚତୁର୍ଥାଂଶରୁ ଅଧିକ ପାଣ ଅଟନ୍ତି ଓ ଏମାନେ ଚୌର୍ଯ୍ୟବୃତ୍ତି ଓ ନାନାବିଧ ଅସଦୁପାୟରେ ପୂର୍ବକାଳରୁ ଜୀବିକା ନିର୍ବାହ କରି ଆସୁଅଛନ୍ତି । ସମ୍ପ୍ରତି ଏମାନଙ୍କୁ ଶାସନ କରି ସତ୍ ପଥରେ ଆଣିବା ଉଦ୍ଦେଶ୍ୟରେ ପ୍ରତ୍ୟେକ ପରଗନାରେ ଜଣେ ୨ ପାଣ ସର୍ଦ୍ଦାର ନିଯୁକ୍ତ ହୋଇଅଛନ୍ତି । ସର୍ଦ୍ଦାରମାନେ ବେତନ ସ୍ୱରୂପ ଜାଗିର ଭୂମି ପାଇଅଛନ୍ତି ଓ ସରକାରରୁ ପୋଷାକ ମଧ୍ୟ ପାଇଅଛନ୍ତି । ଏମାନେ ପାଣଙ୍କ ଉପରେ ଦୃଷ୍ଟି ରଖିବେ ଓ କେହି ଚୋରି ଇତ୍ୟାଦି କଲେ ତାହାଙ୍କୁ ଧରାଇ ଦେଇ ଦଣ୍ଡରେ ପହଞ୍ଚାଇବେ । ବନ୍ଦୋବସ୍ତଟି ଉତ୍ତମ ବୋଧ ହେଉଅଛି ମାତ୍ର ବର୍ଷେ କାର୍ଯ୍ୟ ଦେଖା ନଗଲେ ଏହାର କାର୍ଯ୍ୟକାରିତା ଜଣାଯାଇ ପାରିବ ନାହିଁ । ଯେବେ ଏ ଉପାୟଟି ସଫଳ ହେବ ତେବେ ଗଡ଼ଜାତର ରାଜାମାନଙ୍କୁ ଏହି ନିୟମ ଅନୁସରିବା ସକାଶେ କମିଶନର ସାହେବ ଅନୁରୋଧ କଲେ ସବୁସ୍ଥରେ ଶାସିତ ହେବେ ।

## ( ୧୧ଶ ଭାଗ, ୨୯ । ୭ । ୧୮୭୭, ସଂଖ୍ୟା ୩୧ )

### ୩୭ । ଗଣ୍ଡି ଉଠାଇ ଦେବା ପ୍ରସ୍ତାବ ।

ଅମ୍ଭେମାନେ ଅତ୍ୟନ୍ତ ଆନନ୍ଦ ସହିତ ଅବଗତ ହେଲୁଁ ଯେ ଗଣ୍ଡି ଉଠାଇ ଦେବା କାରଣ ଆମ୍ଭମାନଙ୍କର କଲେକ୍ଟର ସାହେବ ଯେଉଁ ରିପୋର୍ଟ କରିଥିଲେ ଗବର୍ଣ୍ଣମେଣ୍ଟ ଇଣ୍ଡିଆରୁ ତାହା ଅଗ୍ରାହ୍ୟ ହୋଇଅଛି । ଏହି ଗଣ୍ଡି ବିଷୟରେ ପ୍ରଥମରେ କଲେକ୍ଟରଙ୍କ ଆଜ୍ଞା ଯେପରି କମିଶନର ସାହେବ ରହିତ କରିଥିଲେ ତହିଁର ବିବରଣ ଅମ୍ଭେମାନେ ସେ ସମୟରେ ପାଠକଙ୍କୁ ଜଣାଇଥିଲୁଁ । କଲେକ୍ଟର ସାହେବ ତହିଁରେ ନିଷ୍ଫଳ ହୋଇ ସମସ୍ତ ଗଣ୍ଡି ଏକା ବେଳକେ ଉଠାଇ ଦେବା ପାଇଁ ରିପୋର୍ଟ କଲେ ଓ କମିଶନର ତାହା ଅନୁମୋଦନ କରି ବଙ୍ଗଳା ଗବର୍ଣ୍ଣମେଣ୍ଟଙ୍କୁ ପଠାଇଲେ । ବଙ୍ଗଳା ଗବର୍ଣ୍ଣମେଣ୍ଟ ସ୍ଥାନୀୟ ହାକିମଙ୍କ କଥାରେ ପଡ଼ି ତାହାଙ୍କ ମତର ପୋଷକତାରେ ଏକ ଦୀର୍ଘ ପତ୍ର ଗବର୍ଣ୍ଣମେଣ୍ଟ ଇଣ୍ଡିଆକୁ ପଠାଇଲେ ଓ ଏମନ୍ତ ଯୁକ୍ତି ଦେଖାଇଲେ ଯେ ଗଣ୍ଡି ଉଠି ଯିବାର କିଛି ଆଶ୍ଚର୍ଯ୍ୟ ନଥିଲା ମାତ୍ର ଭାଗ୍ୟକ୍ରମେ ତାହା ଲର୍ଡ଼ ଲିଟନ ସାହେବଙ୍କ ହସ୍ତରେ ପ୍ରବେଶ ହେଲା ଓ ଏହାଙ୍କର ସୁବିଚାର ପାଖରେ ବଙ୍ଗଳା ଗବର୍ଣ୍ଣମେଣ୍ଟଙ୍କ ଯୁକ୍ତିମାନ ଥିର ହୋଇ ରହି ପାରିଲା ନାହିଁ । ମହାମାନ୍ୟ ଗବର୍ଣ୍ଣର ଜେନେରେଲ କହିଅଛନ୍ତି ଯେ ସଦାବର୍ତ୍ତ ଇତ୍ୟାଦି ଧର୍ମାର୍ଥ ଦାନ ସମ୍ପର୍କରେ ନୂତନ ବ୍ୟବସ୍ଥା କରିବା ପାଇଁ ଗବର୍ଣ୍ଣମେଣ୍ଟ ବିଚାର କରୁଅଛନ୍ତି ଓ ତାହା ନ ହେବା

ପର୍ଯ୍ୟନ୍ତ କଟକର ଗଣ୍ଡି ବିଷୟରେ ହସ୍ତକ୍ଷେପଣ କରିବାର କୌଣସି ବିଶେଷ ହେତୁ ଦେଖା ଯାଉ ନାହିଁ । ଯାହାହେଉ ଲର୍ଡ଼ ଲିଟନଙ୍କ ଯୋଗୁଁ ଓଡ଼ିଶାର ଅନେକ ଦୁର୍ଭିକ୍ଷ-ଲୋକ କଷ୍ଟକାଳ ସକାଶେ ମୁଠିଏ ଦାନା ପାଇବାକୁ ସକ୍ଷମ ହେଲେ ସାମାନ୍ୟ ମୁଖର ବିଷୟ ନୁହଇ ଓ ଏହାଙ୍କର ଆଶୀର୍ବାଦରୁ ଅବଶ୍ୟ ଲିଟ ସାହେବଙ୍କ ମଙ୍ଗଳ ହେବ ସନ୍ଦେହ ନାହିଁ ।

୩୭ । ସେଣ୍ଟ୍ରାଲ ପ୍ରଭିନସେସ ଗେଜେଟ ।

ମଧ୍ୟ ପ୍ରଦେଶର ସେଣ୍ଟ୍ରାଲ ପ୍ରଭିନସେସ ଗେଜେଟ ନାମରେ ଗୋଟିଏ ସମ୍ବାଦ ପତ୍ର ପ୍ରଚଳିତ ଥିବାର ବୋଧ ହୁଅଇ ଏ ଅଞ୍ଚଳରେ ଲୋକେ ଜାଣନ୍ତି ନାହିଁ । ଏ ସମ୍ବାଦପତ୍ରର ଅସ୍ତିତ୍ୱ ବିଷୟ ଆମ୍ଭେମାନେ ଶୁଣିଥାଉ ପତ୍ର ଲେଖି ଥିବାରୁ ମଧ୍ୟ-ପ୍ରଦେଶର ଶିକ୍ଷା ବିଭାଗର ଇନସ୍ପେକ୍ଟର ଜେନେରାଲଙ୍କ ଅନୁଗ୍ରହରୁ ଦୁଇଗୋଟି ପତ୍ରିକା ପାଇଅଛୁଁ । ତାହା ଗତ ମାସ ଓ ଚଳିତ ମାସର ପତ୍ରିକା ଅଟଇ । ଏ ପତ୍ରିକା ଗୋଟିକ ମାସରେ ଥରେ ବାହାରେ ଓ ଏହାର ଆକାର ଆମ୍ଭମାନଙ୍କ ପତ୍ରିକା ପ୍ରାୟ ମାତ୍ର ଉତ୍କଳଦୀପିକା କେବଳ ଚତୁଷ୍ପୃଷ୍ଠା କିନ୍ତୁ ଏହା ପୃ ୧୬ ଟା ଅଟଇ ଅଥଚ ମୂଲ୍ୟ ଡାକ ମାସୁଲ ସହିତ ବର୍ଷକୁ ଅଗ୍ରୀମ ଟ ୧ ୷୵ ଓ ପଛେ ଦେଲେ ଟ ୨ । । ଶିକ୍ଷା ବିଭାଗର ଆନୁକୂଲ୍ୟରେ ପ୍ରକାଶ ହୁଅଇ ସୁତରାଂ ବଙ୍ଗଳାର ପୂର୍ବକାଳର ଏଡୁକେସନ ଗେଜେଟ ପ୍ରାୟ ବୋଲିପାଇ ପାରେ । ମୁଦ୍ରାଙ୍କନ କାର୍ଯ୍ୟ ପଥରଛାପା କଳ ଦ୍ୱାରା ସମାଧାନ ହେଉଥିବାରୁ ପଢ଼ିବାକୁ କିଛି କ୍ଳେଶ ବୋଧ ହେଉଅଛି ନୋହିଲେ ରଚନା ଦୋଷ ତେତେ ଗୁରୁତର ନୁହଇ । ନାଗପୁରଠାରେ ଏହା ଛପା ହୁଅଇ ଓ ଏଥିରେ ମଧ୍ୟ ପ୍ରଦେଶାନ୍ତର୍ଗତ ଏକ ୨ ସ୍ଥାନର ଇତିହାସ ଓ ଶିକ୍ଷାଦାନ ବିଷୟକ ଉପଦେଶମାନ ଅଧିକାଂଶରେ ପ୍ରକାଶିତ ହୁଅଇ । ଅନ୍ୟାନ୍ୟ ବିଷୟ ଓ ଅତ୍ୟଳ୍ପ ସମ୍ବାଦ ମଧ୍ୟ କେବେ ୨ ଥାଏ । ଯାହାହେଉ ନାଗପୁର ଠାରେ ଓଡ଼ିଆ ଭାଷାରେ ସମ୍ବାଦପତ୍ର ଖଣ୍ଡେ ପ୍ରକାଶିତ ହେଉଅଛି ସୁଖର ବିଷୟ ଅଟଇ ଏବଂ ଶିକ୍ଷା ବିଷୟରେ ତାହା ଉପଯୋଗୀ ହୋଇଥିବା ଆହୁରି ସୁଖର ବିଷୟ ଅଟେ କାରଣ ଆଗେ ଲୋକେ ସୁଶିକ୍ଷିତ ହେଉନ୍ତୁ ତହିଁ ଉତ୍ତାରୁ ଉକ୍ତ ବିଷୟ ସବୁର ପ୍ରୟୋଜନ ବୁଝି ପାରିବେ । ଆମ୍ଭେମାନେ ଏ ପତ୍ରିକାର ଅଧିକାରୀଙ୍କୁ ଏତିକି ପ୍ରାର୍ଥନା କରୁଁ ଯେ ପଥର ଛପା ପରିବର୍ତ୍ତେ ଅକ୍ଷର ଛପା ବ୍ୟବହାର କରନ୍ତୁ । ଓଡ଼ିଆ ଅକ୍ଷର କଲିକତାରେ ଅପର୍ଯ୍ୟାପ୍ତ ରୂପେ ଅଳ୍ପ ବ୍ୟୟରେ ପାପ୍ୟ ଯାଉଅଛି ଓ ଅନ୍ୟ ଉପକରଣମାନ ନାଗପୁରରେ ଗବର୍ଣ୍ଣମେଣ୍ଟ ପ୍ରେସରେ ରହିଅଛି । ଅକ୍ଷର ଛପା ହେଲେ ପତ୍ରିକା ଗୋଟିକ ପଢ଼ିବାର ବିଶେଷ ସୁବିଧା ହେବ ଓ ତଦ୍ଦ୍ୱାରା ଏହାର ଗ୍ରାହକ ମଣ୍ଡଳୀ ବଢ଼ି ପାରନ୍ତି । ବର୍ତ୍ତମାନ ଅବସ୍ଥାରେ ଏହା ପଢ଼ିବାକୁ ବଡ଼ କଷ୍ଟ ହେଉଅଛି ।

## ( ୧୧ଶ ଭାଗ, ୧୮ । ୧୧ । ୧୮୭୭, ସଂଖ୍ୟା ୪୭ )

୩୮ । ବିଜ୍ଞାପନ

ଏତଦ୍ଦ୍ୱାରା ସର୍ବସାଧାରଣଙ୍କୁ ଜଣାଇ ଦିଆ ଯାଉଅଛି ଯେ ଅମ୍ଭେ ଶ୍ରୀ କୃଷ୍ଣା ଅବଦୁଲ ଶୋବାନ ଖାଁ ସା : ଓଡ଼ିଆ ଶାସନ ପ୍ର : ଗଡ଼ପଦା ଥାନା ବସ୍ତା ଜିଲ୍ଲା ବାଲେଶ୍ୱର ସନ ୧୮୭୧ ମସିହା ମାର୍ଚ୍ଚ ମାସ ତା ୨୫ ରିଖରେ ବାଲେଶ୍ୱର ଜିଲ୍ଲା ବସ୍ତା ଥାନା ଇଲକା ଗଡ଼ପଦା ପ୍ରଗନା ଓଡ଼ିଆ ଶାସନ ମୌଜା ନିବାସୀ ଶ୍ରୀ କୃଷ୍ଣା ଗୋଲମ ମୋସ୍ତଫା ଖାଁ । ନାମରେ ଯେଉଁ ଆମ୍ ମୋକ୍ତାର ନାମା ଲେଖି ଦେଇଥିଲୁଁ ତାହା ଆମ୍ଭେ ରଦ ଓ ବହୁତ କରୁଅଛୁଁ । ଉକ୍ତ ବହୁତ ମୋକ୍ତାରନାମା ବଳରେ ସେ ଯେଉଁ କାର୍ଯ୍ୟ କରିବେ ତାହା ରଦ୍ ଓ ବହୁତ ଜ୍ଞାନ ହେବ । ଇତି

ବାଲେଶ୍ୱର ଶ୍ରୀ କୃଷ୍ଣା ଅବଦୁଲ ଶୋବହାନ ଖାଁ ।
୩୧ । ୧୦ । ୭୭

## ( ୧୧ଶ ଭାଗ, ୨ । ୧୨ । ୧୮୭୭, ସଂଖ୍ୟା ୪୮ )

୩୯ । ଏଠାରେ ଚାଉଳ ଦର ଟଙ୍କାରୁ ୧୫ । ୧୬ ସେର ହେବାରୁ କଣ୍ଟି-ଗିଆଙ୍କର ବଡ଼ କଷ୍ଟ ହୋଇଅଛି । ଯାଜପୁରରେ ମଧ୍ୟ ଚାଉଳ ମହାର୍ଘ ହେବାର ସମ୍ବାଦ ପାଇଅଛୁଁ । ମାନ୍ଦ୍ରାଜର ଦୁର୍ଭିକ୍ଷ ଏଥିର କାରଣ ଅଟଇ ।

## ( ୧୨ଶ ଭାଗ, ୧୩ । ୧ । ୧୮୭୭, ସଂଖ୍ୟା ୨ )

୪୦ । ପୁରୀରାଜାଙ୍କୁ ଦେଖି ଏ ସପ୍ତାହରେ ଗୋଟିଏ ଅପୂର୍ବ କାଣ୍ଡ ହୋଇଗଲା । ରାଜା ଦରବାରକୁ ଆସି ଯେମନ୍ତ ଶଯ୍ୟା ଦେଖାଇ ଯାଇଥିଲେ ତାହା ଆମ୍ଭେମାନେ ଗତ ସପ୍ତାହରେ କହିଅଛୁ । ସେହି ଅପମାନ ହେତୁରୁ କେଉଁ ବା ସ୍ୱାଭାବିକ ମୂର୍ଖ-ତାପ୍ରଯୁକ୍ତ ହେଉ ରାଜା କମିଶନର ସାହେବଙ୍କ ଠାରୁ ବିଦାୟ ନହୋଇ ଚଳିଲ ପୁରୀକୁ ବାହୁଡ଼ି ଗଲେ ଯେମନ୍ତ କି ତାହାଙ୍କ ବିନା ପୁରୀର କାର୍ଯ୍ୟ ଦଣ୍ଡେ ଚଳି ପାରୁ ନଥିଲ । ଯେତେବେଳେ ରାଜା ଓ ଭଦ୍ରଲୋକଙ୍କର ପଳାଇବାର ସମ୍ବାଦ ଆସିଲ ସେତେ-ବେଳେ କମିଶନର ତାହାଙ୍କୁ ଖୋଜି ନିଆଇ ଫେରାଇ ଆଣିବା ପାଇଁ ଚର ପଠାଇଲେ, ମାତ୍ର ଦେବରାଜ ତାହା ଶୁଣିଲେ ନାହିଁ । ପୁରୀରେ ପହଞ୍ଚି ବୋଧହୁଏ ଠାକୁର ସଙ୍ଗେ ପରାମର୍ଶ କରି ପରଦିନ କଟକକୁ ଆସି କମିଶନର ସାହେବଙ୍କ ସାକ୍ଷାତ ଲୋଡ଼ିଲେ ମାତ୍ର ପ୍ରତ୍ୟୁତ୍ତର ପାଇଲେ ଯେ ଅଗ୍ରେ ମାନବ ରାଜାମାନଙ୍କ ଠାରେ କ୍ଷମାପ୍ରାର୍ଥନା କରିବେ ଓ

ସେମାନଙ୍କ ସାକ୍ଷାତରେ କମିଶନର ସାହେବଙ୍କ ନିକଟରେ ଅପରାଧ ସ୍ୱୀକାର କରି ସ୍ତୁତି ବାକ୍ୟ ଦ୍ୱାରା ତୁଷ୍ଟ କଲେ ତାଙ୍କର ଦୋଷ ମାର୍ଜନା ହେବ । ତେତେବେଳେ ଦେବରାଜ ଜାଣି ପାରିଲେ ଯେ ସେ ମର୍ତ୍ତ୍ୟ ଭୂମିରେ ଅଛନ୍ତି ସୁତରାଂ ଏଠାରେ ଦେବତ୍ୱ ଖଟିବ ନାହିଁ କେବଳ ମନୁଷ୍ୟତା ପ୍ରୟୋଜନ । ଏହି ଜ୍ଞାନବଳରେ ସେ ଅପରା ଶ୍ରେଷ୍ଠତ୍ୱର ଅହଙ୍କାରକୁ ତ୍ୟାଗକରି ଗତ ବୁଧବାର କମିଶ୍ନର ସାହେବଙ୍କ କୋଠିରେ ଢେଙ୍କାନାଳ ମୟୁରଭଞ୍ଜ ଓ କେନ୍ଦୁଝରର ମହାରାଜାଙ୍କ ନିକଟରୁ କ୍ଷମା ପ୍ରାପ୍ତ ହୋଇ ସେମାନଙ୍କ ସହିତରେ କମିଶ୍ନରଙ୍କ ଦର୍ଶନ ଲାଭକଲେ । ଏ ଉତ୍ତାରୁ ତାହାଙ୍କର ମୁକ୍ତି ହେଲ ବୋଲିବା ଅନାବଶ୍ୟକ । ମହାରାଜା ପଦ ପାଇବାର ସମ୍ବାଦ ଶୁଣି ଆନନ୍ଦ ଚିତ୍ତରେ ତହିଁ ଆର ଦିନ ପୁରୀକୁ ଚାଲିଗଲେ । ପଦ ପାଇଲେ ବୋଲି ଏହାଙ୍କୁ ପୁରୀରୁ ମହାରାଜା ବୋଲିପାର ନପାରେ କାରଣ ସେ ପଦଟି ଚିରସ୍ଥାୟୀ ନୁହେ କେବଳ ତାହାଙ୍କୁ ମିଳିଅଛି । ଯାହା ହେଉ ଆମ୍ଭେମାନେ କମିଶ୍ନରଙ୍କର ଏ କାର୍ଯ୍ୟରେ ବଡ଼ ସନ୍ତୁଷ୍ଟ ହୋଇଅଛୁଁ । ଦେବରାଜଙ୍କର ଦେବତ୍ୱ ଛଡ଼ାଇବା ବଡ଼ ବିଷମ କଥାଥିଲା ଓ ଏପରି ଘଟନା ହୋଇ ନଥିଲେ ଦିବ୍ୟସିଂହଙ୍କର ଦିବ୍ୟଜ୍ଞାନ ପ୍ରାପ୍ତ ହୁଅନ୍ତା ନାହିଁ । ଆମ୍ଭେମାନେ ଭରସାକରୁଁ ଯେ ଏଥର ତାହାଙ୍କୁ ଯେ ଶିକ୍ଷା ମିଳିଲା ତାହା କଦାଚ ପାଶୋରିବେ ନାହିଁ ଓ ଗବର୍ଣ୍ଣମେଣ୍ଟ ଯେମନ୍ତ ପ୍ରବଳ ହୋଇ ତାହାଙ୍କୁ ମହାରାଜ ପଦ ଦେଇଅଛନ୍ତି ତେମନ୍ତ ସେ ତହିଁର ଯୋଗ୍ୟ ହୋଇ ବାଦକାଳ ତାହା ଭୋଗ କରିବେ ଓ ଆମ୍ଭେମାନେ ସର୍ବଦା ତାହାଙ୍କର ସୁଖ୍ୟାତି ଜନସମାଜରେ ପ୍ରକାଶ କରିବାକୁ ସମର୍ଥ ହେବୁଁ ।

## ( ୧୨ଶ ଭାଗ, ୨୦ । ୧ । ୧୮୭୭, ସଂଖ୍ୟା ୩ )

୪୧ ।

### ପୁରୀରାଜା ।

ଆମ୍ଭେମାନେ ଶୁଣିଅଛୁଁ ଯେ ପୁରୀର ରାଜା ଦିବ୍ୟସିଂହ ଦେବଙ୍କୁ ମହାରାଜା ପଦ ମିଳିଥିବାର ସମ୍ବାଦ କମିଶନର ସାହେବ ଜଣାଇ ଦେବା ସମୟରେ ମହାରାଜାଙ୍କୁ କେତେଗୁଡ଼ିଏ ଉପଦେଶ ଦେଇଥିଲେ ଓ ଅନ୍ୟାନ୍ୟ ବିଷୟ ମଧ୍ୟରେ ତାହାଙ୍କୁ ନିଷେଧ କରିଥିଲେ ଯେ କାହାରିକୁ ଛତ୍ର ପଦ ଦେବେ ନାହିଁ ଓ ତାହାଙ୍କ ଅଙ୍କ ଆଉ ଚଳିବ ନାହିଁ ଏବଂ ମନ୍ଦିରରେ ଦର୍ଶକଙ୍କ ପ୍ରତି ଯେଉଁ ଅନ୍ୟାୟ ବାଧା ମାନ ଦିଅନ୍ତି ତାହା ଆଉ କରିବେ ନାହିଁ । କମିଶ୍ନର ସାହେବଙ୍କ ଉପଦେଶ ଗୁଡ଼ିକ ଯେ ଭଲ ଆମ୍ଭେମାନେ ତହିଁରେ ଆପତ୍ତି କରୁ ନାହୁଁ କିନ୍ତୁ ଆମ୍ଭମାନଙ୍କର ବକ୍ତବ୍ୟ ଏହି କି ଯଦ୍ୟପି ଲୋକେ ଆଗ୍ରହୀ ହୋଇ ପଦ ଲୋଡ଼ିବେ ଓ ତହିଁ ପାଇଁ ଟଙ୍କା ଓ ଦ୍ରବ୍ୟାଦି ଭେଟି ଦେବେ ତେବେ ମହାରାଜ କାହିଁକି ପଦ ନ ଦେବେ । ଅନ୍ୟାନ୍ୟ ରାଜାମାନେ

ଆପଣା ୨ ଇଲକା ମଧ୍ୟରେ ଲୋକଙ୍କ ଠାରୁ ସଲାମୀ ନେଇ ପଦ ଦେଉଅଛନ୍ତି ଓ ତାହାଙ୍କ ଅଧିକାରସ୍ଥ ଭୂମି ମଧ୍ୟରେ ସେ ପଦକୁ ସମସ୍ତେ ମାନ୍ୟ କରୁଅଛନ୍ତି । ରାଜାମାନଙ୍କର ଏ କାର୍ଯ୍ୟ ଗୋଟିଏ ଅପୂର୍ବ ମୂଳ ଅଟଇ । ଯେବେ ଅନ୍ୟ ସମସ୍ତ ରାଜାଙ୍କୁ ଏଥିରୁ ନିଷେଧ ନହେଲା ତେବେ ଏକା ପୁରୀର ମହାରାଜାଙ୍କୁ ନିଷେଧ କରିବା ଉଚିତ ହୋଇନାହିଁ । ଏମନ୍ତ ବୋଲାଯାଇ ପାରେ ଯେ ମହାରାଜା ଏପରି ପଦ ଦେବାରୁ ତାହାଙ୍କର ପୂର୍ବ ଆୟ ରକ୍ଷା ପାଇଅଛି ଓ ଲୋକେ ଅକାରଣ ତାହାଙ୍କୁ ମାନ୍ୟ କରିବାରୁ ଗୋଟିଏ ଭ୍ରମାତ୍ମକ ଭାବ ସର୍ବସାଧାରଣରେ ପ୍ରଚଳିତ ରହିଅଛି ଓ ରାଜକୀୟ ବିବେଚନାରେ ଉକ୍ତ ଭାବକୁ ଚିରସ୍ଥାୟୀ କରିବାର ଉଚିତ ନୁହଇ । ମାତ୍ର ଏଥିରେ ରାଜାଙ୍କର କି ଦୋଷ ହେଲା ? ଆମ୍ଭେମାନେ ବୋଧକରୁଁ ଯେ ଏଥିର ପ୍ରକୃତ ଉପାୟ ଗବର୍ଣ୍ଣମେଣ୍ଟଙ୍କ ହସ୍ତରେ ଅଛି । ଯଦ୍ୟପି ଗବର୍ଣ୍ଣମେଣ୍ଟ ଏପରି ଗୋଟିଏ ଘୋଷଣା ପ୍ରଚାର କରନ୍ତି କି ସରକାରୀ କାଗଜପତ୍ର ଓ ଅନ୍ୟାନ୍ୟ ସର୍ବସାଧାରଣ ବିଷୟରେ ଗବର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ପଦ ବିନା ଅନ୍ୟ କୌଣସି ପଦ କେହି ବ୍ୟବହାର କରି ପାରିବେ ନାହିଁ ଓ ସେ ନୂଆ ବ୍ୟବହାର କଲେ ଅର୍ଥଦଣ୍ଡ ହେବ ତାହାହେଲେ ଲୋକେ ଆଉ ପଦ ନେବାକୁ ଆଗ୍ରହୀ ହେବେନାହିଁ । କମିଶ୍ନର ସାହେବଙ୍କର ଉଚିତ ଯେ ଗବର୍ଣ୍ଣମେଣ୍ଟରେ ଏପରି କିଛି ପ୍ରସ୍ତାବ କରନ୍ତୁ । ମହାରାଜାଙ୍କ ଅଙ୍କ ଧରି ବର୍ଷ ଗଣନା କରିବା ବିଷୟରେ ମଧ୍ୟ ଉପର ଲିଖିତ ଉପାୟ କରିବା ଉଚିତ । ମହାରାଜା କାହାରିକୁ କହି ଦେଉ ନାହାନ୍ତି ଯେ ତାହାଙ୍କର ଅଙ୍କ ଅନୁସାରେ ଗଣନା କରିବାକୁ ହେବ । ଲୋକେ ଆପଣା ଇଚ୍ଛାରେ ତାହା କରୁଅଛନ୍ତି । ଏଥିକୁ ମହାରାଜଙ୍କୁ ନିଷେଧ କରିବା ବୃଥା ଅଟଇ ।

ମନ୍ଦିର ମଧ୍ୟରେ ମହାରାଜା ଦର୍ଶକଙ୍କ ପ୍ରତି କେତେକ ଅନ୍ୟାୟ ବାଧା ରଖିଅଛନ୍ତି ସତ୍ୟ ମାତ୍ର ତଦ୍ଦ୍ୱାରା ତାହାଙ୍କର ଲାଭ ଭିନ୍ନ ଲଭ ନାହିଁ । ଉକ୍ତ ପ୍ରକାର ବାଧା ହେବାରୁ ସେ କେତେବେଳେ କିଛି ଟଙ୍କା ଲଭ କରନ୍ତି ମାତ୍ର ଆମ୍ଭମାନଙ୍କ ବିବେଚନାରେ ଯଦ୍ୟପି ସେ ସବୁ ଉଠାଇ ଦେଇ ଦର୍ଶକମାନଙ୍କୁ ଯେ ଯାହା ଭଳି ସମାଦର କରିବେ ତେବେ ତାହାଙ୍କର ଅଧିକ ଲାଭ ହେବ ଓ ଦେଶ ବିଦେଶରେ ତାହାଙ୍କର ଖ୍ୟାତି ବିସ୍ତାର ହେବ । କମିଶ୍ନର ସାହେବଙ୍କ ଉପଦେଶଟିକୁ ମହାରାଜାଙ୍କୁ ଅତି ଯତ୍ନ ସହିତ ପାଳନ କରିବାର ଉଚିତ ।

( ୧୬ଶ ଭାଗ, ୧୭ । ୨ । ୧୮୭୭, ସଂଖ୍ୟା ୭ )

୪୨ । ସାପ୍ତାହିକ ସମ୍ବାଦ

ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦର ସହିତ ଅବଗତ ହେଲୁଁ ଯେ

ଢେଙ୍କାନାଳର ନାବାଳଗ ରାଜାଙ୍କର ମାହାଫିଜ ଓ ମାନେଜର ପଦରେ ବାବୁ ବନମାଳୀ ସିଂହଙ୍କୁ କମିଶନର ସାହେବ ନିଯୁକ୍ତ କରିଅଛନ୍ତି ଏବଂ ଅସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ବାବୁ ହରେକୃଷ୍ଣ ଦାସ ଢେଙ୍କାନାଳ ଗଡ଼ଜାତରେ ରହି ରାଜଗିର କାର୍ଯ୍ୟ ଚଳାଇବାର ଅପର ବନ୍ଦୋବସ୍ତମାନ କରୁଅଛନ୍ତି । ସମ୍ପ୍ରତି ତହିଁର ବିସ୍ତାରିତ ବିବରଣ ଜଣା ଯାଇ ନାହିଁ ।

୪୩

## ପ୍ରେରିତ ପତ୍ର

ମାନ୍ୟବର ଉତ୍କଳ ଦୀପିକା ସମ୍ପାଦକ ମହାଶୟୁ, ସମୀପେଷୁ ।

ମହାଶୟ, ଢେଙ୍କାନାଳ ମହାରାଜାଙ୍କ ଅକାଳ ମୃତ୍ୟୁ ଯେ ଆମ୍ଭମାନଙ୍କର ସର୍ବନାଶର ମୂଳ, ତାହା କିଏ ଅସ୍ୱୀକାର କରିବ । ମହାରାଜା ଓଡ଼ିଶାର ଚନ୍ଦ୍ରମା ତୁଲ୍ୟ ବିରାଜୁଥିଲେ, ଉତ୍କଳ ଭୂମି ସେହି ଚନ୍ଦ୍ରମାକୁ ହରାଇ ହା ହା କରୁଅଛି । ବିଶେଷତଃ ଢେଙ୍କାନାଳର ଆବାଳ ବୃଦ୍ଧ ବନିତା ଏବଂ ତରୁ ଗୁଳ୍ମ ଲତା ପର୍ଯ୍ୟନ୍ତ ଏହି ଦାରୁଣ ଶୋକାବହ ଘଟନା ହେତୁକ ଶବ୍ଦ କରି କ୍ରନ୍ଦନ କରୁଅଛନ୍ତି ! ମହାରାଜାଙ୍କ ପରି ବିଦ୍ୟାବାନ୍ ଓ ଦାନଶୀଳ ରାଜା ଓଡ଼ିଶା ପ୍ରଦେଶରେ ସ୍ୱପ୍ନର ଅଗୋଚର, ମହାରାଜା ଯଦି ଆଉ ୧୦ । ୧୫ ବର୍ଷ ପର୍ଯ୍ୟନ୍ତ ସ୍ୱର୍ଗକୁ ନଯାଇ ଆମ୍ଭମାନଙ୍କୁ ମଙ୍ଗଳୋନ୍ନତ କରିଥାନ୍ତେ, ତେବେ ମହାରାଜଙ୍କ ଟିକାମଲାଙ୍ଗ ଯୁବରାଜ ମଧ୍ୟ ତାହାଙ୍କର ସମସ୍ତ ଗୁଣମାନ ଅନୁକରଣ କରି ଆପଣାର ପୈତୃକ ରାଜକାର୍ଯ୍ୟ କୀର୍ତ୍ତିକଳାପରୁ ବିଶେଷ କୀର୍ତ୍ତିମାନ କରାଇ ଥାନ୍ତେ । ଯାହା ହେଉ ଏହି ଆଶା ଆମ୍ଭେମାନେ ସମ୍ପୂର୍ଣ୍ଣ ରୂପେ ଛାଡ଼ିପାରୁ ନାହୁଁ ଯେହେତୁ ରାଜପୁତ୍ର ଉତ୍ତମ ଶିକ୍ଷା ପାଉଅଛନ୍ତି ଏବଂ ରାଜମନ୍ତ୍ରୀ ବାବୁ ଶ୍ରୀ ବନମାଳୀ ସିଂହ ଜଣେ ସୁବିଖ୍ୟାତ ଓ ସୁଯୋଗ୍ୟ ପୁରୁଷ ଅଟନ୍ତି । ସମ୍ପ୍ରତି ଆମ୍ଭମାନଙ୍କର ଏହି ଇଚ୍ଛା, ମହାରାଜା ଯେଉଁ ସବୁ କୀର୍ତ୍ତି ଓ ଅନୁଗ୍ରହ ଚିହ୍ନମାନ କରି ଯାଇଅଛନ୍ତି ତହିଁରୁ ଯେପରି କୌଣସି ପ୍ରକାର କିଛି ଖଣ୍ଡିତ ନହେବ ଏବଂ ମହାରାଜା ଯେଉଁ ୨ କୀର୍ତ୍ତିମାନଙ୍କର ମୂଳ ସ୍ଥାପନ କରିଅଛନ୍ତି, ତାହା ଯେପରି ସର୍ବାଙ୍ଗ ସୁନ୍ଦର ହେବ, କର୍ତ୍ତୃପକ୍ଷୀୟମାନେ ଏ ବିଷୟରେ ବିଶେଷ ଉତ୍ସାହୀ ହେବେ । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ପ୍ରାୟ ଛ ମାସ ହେଲା ରାଜାଙ୍କ ଅନୁମତି ଅନୁସାରେ ବାବୁ ଶ୍ରୀ ବ୍ରଜବିହାରୀ ଦାସଙ୍କ ଯତ୍ନ ଓ ଉତ୍ସାହ ଦ୍ୱାରା ଢେଙ୍କାନାଳ ଗଡ଼ରେ ଯୁବରାଜ ସ୍କୁଲ ନାମରେ ଗୋଟିଏ ବିଦ୍ୟାଳୟ ସ୍ଥାପିତ ହୋଇଅଛି ଏବଂ ତହିଁରେ [illegible] ଜଣ ବାଳକ ଅଧ୍ୟୟନ କରୁଅଛନ୍ତି । ଗଡ଼ଜାତ ମଧ୍ୟରେ ଏପରି ଗୋଟିଏ କାର୍ଯ୍ୟ ହେବାର ଯେ କେତେଦୂର ବଡ଼ ପ୍ରଶଂସନୀୟ ତାହା କୁହାଯାଇ ନପାରେ । ରାଜା ଉକ୍ତ ବିଦ୍ୟାଳୟ ଗୃହ ନିର୍ମାଣାର୍ଥେ କିଛି ଦାନ କରିଥିଲେ ଓ ସ୍କୁଲର ସ୍ଥାୟିତ୍ୱ ସମ୍ପାଦନ କରିବା ନିମିତ୍ତ

ଶିକ୍ଷକମାନଙ୍କୁ ବିଶେଷ ଆଶା ଭରସା ଦେଉଥିଲେ । ବର୍ତ୍ତମାନ ଏହି ପ୍ରାର୍ଥନା ଢେଙ୍କାନାଳର ହିତପ୍ରାପ୍ତ କର୍ମଚାରୀମାନେ ବିଦ୍ୟାଳୟର ଉନ୍ନତି ସାଧନ କରି ପ୍ରଶଂସା ଭାଜନ ହୁଅନ୍ତୁ ।

୧୨ । ୨ । ୭୭ }
କଟକ }
ଶ୍ରୀ ————

(୧୨ଶ ଭାଗ, ୧୦ । ୩ । ୧୮୭୭, ସଂଖ୍ୟା ୧୦)

୪୪ । ଢେଙ୍କାନାଳ ଶାସନ ବନ୍ଦୋବସ୍ତ

ଗତ ରବିବାର ଶ୍ରୀଯୁକ୍ତ କମିଶ୍ନର ସାହେବ ଢେଙ୍କାନାଳର ବନ୍ଦୋବସ୍ତ କରି ଏ ନଗରକୁ ଫେରି ଆସିଅଛନ୍ତି । ଆମ୍ଭେମାନେ ଶୁଣିଲୁଁ ଯେ ଢେଙ୍କାନାଳ ରାଜ୍ୟର କର୍ମ ଯେପରି ବନ୍ଦୋବସ୍ତରେ ଚଳୁଥିଲା ଠିକ ସେହିପରି ବନ୍ଦୋବସ୍ତରେ ବର୍ତ୍ତମାନ ନିଯୁକ୍ତ ଥିବା ଅମଲଙ୍କ ଦ୍ୱାରା ଆଗାମୀ ସୁନିଆଁ ପର୍ଯ୍ୟନ୍ତ ବାବୁ ବନମାଳୀ ସିଂହଙ୍କ ତତ୍ତ୍ୱାବଧାନରେ ଚଳିବ ଓ ଭବିଷ୍ୟତକୁ କିପରି ବନ୍ଦୋବସ୍ତ କଲେ ଉତ୍ତମ ହେବ ଓ ବର୍ତ୍ତମାନ ନିଯୁକ୍ତ ଥିବା ଅମଲଙ୍କ ମଧ୍ୟରୁ କି ପରିମାଣରେ ଊଣା ହେବ ବାବୁ ବନମାଳୀ ସିଂହ ଏଥି ମଧ୍ୟରେ ଏହିର ତଦନ୍ତ କରି ରିପୋର୍ଟ କଲେ କମିଶ୍ନର ସାହେବ ବିବେଚନା କରି ବିହିତ ଆଜ୍ଞା ଦେବେ । ସମ୍ପ୍ରତି ବନମାଳୀ ବାବୁଙ୍କ ସାହାଯ୍ୟ ନିମିତ୍ତ ମାସକୁ ଟ ୨୦୦୲ଙ୍କା ବେତନରେ ଜଣେ କର୍ମଚାରୀ ନିଯୁକ୍ତ ହେବ ଏବଂ ନାବାଳଗ ରାଜାଙ୍କୁ ପଢ଼ାଇବା ସକାଶେ ମାସକୁ ଟ ୧୫୦୲ଙ୍କା ବ୍ୟୟରେ ଏକଜଣ ଉପଯୁକ୍ତ ଶିକ୍ଷକ ରହିବ । ନାବାଳକ ରାଜା ଗଡ଼ଠାରେ ରହି ଶିକ୍ଷାଲାଭ କରିବେ । ଏ ପର୍ଯ୍ୟନ୍ତ ବନ୍ଦୋବସ୍ତ ସବୁ ଉତ୍ତମ ହୋଇଅଛି ସନ୍ଦେହ ନାହିଁ ଓ କମିଶ୍ନର ସାହେବ ବନମାଳୀ ବାବୁଙ୍କ ହସ୍ତରେ ସମସ୍ତ ଛାଡ଼ିଦେଇ ତାହାଙ୍କ ପରାମର୍ଶରେ କାର୍ଯ୍ୟ କରିବାକୁ ଇଚ୍ଛୁକ ହେବାରେ ବିଜ୍ଞର କାର୍ଯ୍ୟ କରିଅଛନ୍ତି । ବାସ୍ତବରେ ମୃତ ମହାରାଜା ସ୍ୱୟଂ ଯେମନ୍ତ ବିଚକ୍ଷଣ ଥିଲେ ତେମନ୍ତ ଏକଜଣ ବୁଦ୍ଧିମାନ ଓ ଗୁଣବନ୍ତ ଦେବାନ ନିଯୁକ୍ତ କରି ପାଇଥିବାରୁ ତାହାଙ୍କ ରାଜ୍ୟର କିଛିମାତ୍ର ବିଶୃଙ୍ଖଳା ଘଟିଲା ନାହିଁ । କିନ୍ତୁ ଦୁଃଖର ବିଷୟ ଯେ କମିଶ୍ନର ସାହେବ ବାବୁ ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କୁ ବରଖାସ୍ତ କଲେ । ମୃତ ମହାରାଜା ଏହାଙ୍କୁ ଅନେକ ଦିନ ପରୀକ୍ଷାଧୀନରେ ରଖି ଏହାଙ୍କର ଗୁଣଗୀତ ଓ ବିଦ୍ୟାରେ ସନ୍ତୁଷ୍ଟ ହୋଇ ଯୁବରାଜଙ୍କର ଶିକ୍ଷକ ପଦରେ ନିଯୁକ୍ତ କରିଥିଲେ ଓ ସେ ଅଳ୍ପକାଳରେ ଯୁବରାଜଙ୍କୁ ଯେମନ୍ତ ଉତ୍ତମ ପ୍ରଣାଳୀରେ ଶିକ୍ଷା ଦେଇଅଛନ୍ତି ତାହା ଯେ ଯୁବରାଜଙ୍କର ଶିକ୍ଷାର ପରୀକ୍ଷା ନେଇଅଛି ସେ ଜାଣିଅଛି ଓ ଆମ୍ଭେମାନେ ମୁକ୍ତକଣ୍ଠରେ କହୁଁ ଯେ ଗୋବିନ୍ଦ ବାବୁଙ୍କ ପକ୍ଷରେ ତାହା ବଡ଼ ପ୍ରଶଂସାର ବିଷୟ ଅଟଇ, ମାତ୍ର କମିଶ୍ନର ଏସବୁ କିଛି

ବଗୁଡ଼ର ନକଲ ଗୋବନ୍ଦ ବାବୁଙ୍କର ସରକାରୀ କର୍ମରେ ଥିବା ସମୟରେ ସାମାନ୍ୟ ଦୋଷକୁ ଗୁରୁତର ଜ୍ଞାନକରି ଯାହା ତାହାଙ୍କୁ ଏକାବେଳକେ କର୍ମରୁ ବାହାର କରିଦେଲେ ଏଥିରେ ସାହେବଙ୍କର ସ୍ୱଳ୍ପ ବିବେଚନାର ସ୍ଫୂର୍ତ୍ତି ଓ ନିଷ୍ଠୁରତା ପ୍ରକାଶ ପାଉଅଛି । ସରକାରୀ ମହକୁମାରେ ବଡ଼ ବଡ଼ ଗୃହସ୍ଥମାନେ ଅଛନ୍ତି କମିଶ୍ନର ସାହେବ ତାହାଙ୍କର କିଛି କରି ପାରୁନାହାନ୍ତି ବରଂ କାହାରି ୨ କୁ ଉଚ୍ଚପଦ ଦେଉଅଛନ୍ତି ମାତ୍ର ପୂର୍ବେ ଯେ ବ୍ୟକ୍ତିର ସାମାନ୍ୟ ଦୋଷ ଥିଲା କି ନାହିଁ ସନ୍ଦେହ ଓ ବର୍ତ୍ତମାନକୁ ଉତ୍ତମ କାର୍ଯ୍ୟକଲା ଏକାବେଳକେ ତାହାର ତଣ୍ଟିରେ ଛୁରୀ ଲଗାଇ ଦେଲେ । ଏହା ଯେବେ ଅବିଚାର ଓ ନିର୍ଦ୍ଦୟର କାର୍ଯ୍ୟ ନୁହଇ ତେବେ ଏହାକୁ କି ବୋଲିଯିବ ଅଥବା ଏଥିରେ ସାହେବଙ୍କର ଦୋଷ କି ଏହା କଳିକାଳର ଧର୍ମ ଅଟଇ ।

## ( ୧୨ଶ ଭାଗ, ୧୭ । ୩ । ୧୮୭୭, ସଂଖ୍ୟା ୧୧ )

୪୫ । **କଟକ ମିଉନିସିପାଲିଟି**

ନୂତନ ମିଉନିସିପାଲ ଆଇନ ଅର୍ଥାତ୍ ସନ ୧୮୭୬ ମସିହା ୫ ଆଇନର ଦ୍ୱିତୀୟ ଅଧ୍ୟାୟର ନବମ ଭାଗ କଟକ ମିଉନିସିପାଲିଟିର ଅନୁରୋଧ କ୍ରମେ ଗବର୍ଣ୍ଣମେଣ୍ଟ ବଙ୍ଗାଳା ଏଠାରେ ପ୍ରବଳ କରିବାର ଘୋଷଣା କରିଅଛନ୍ତି । ଆଇନର ଏ ଭାଗ ଲେଖିତ ନିୟମମାନ ମିଉନିସିପାଲ ହାଟ ପକ୍ଷରେ ଅଟଇ ସୁତରାଂ ଏଠାରେ ଯେଉଁ ହାଟ ନିର୍ମାଣ ହୋଇଅଛି ତହିଁର କାର୍ଯ୍ୟ ଏହି ନିୟମାନୁସାରେ ଚଳିବ ଏବଂ ସେଠାରେ ଯେଉଁମାନେ ଦ୍ରବ୍ୟ ବିକ୍ରୟ କରିବେ ସେମାନେ କମିଶ୍ନରଙ୍କଠାରୁ ଛାଡ଼ ନେବେ ଓ ତାହାଙ୍କଠାରୁ ଏହି ଆଇନକ୍ରମେ ଖଜଣା ଆଦାୟ ହେବ । ବିନା ଛାଡ଼ରେ କେହି ଦୋକାନ କଲେ ଦଣ୍ଡନୀୟ ହେବ ।

## ( ୧୨ଶ ଭାଗ, ୧୪ । ୪ । ୧୮୭୭, ସଂଖ୍ୟା ୧୫ )

୪୬ । **ସାପ୍ତାହିକ ସମ୍ବାଦ**

ଶ୍ରୀଯୁକ୍ତ ଟେମ୍ସ ସାହେବଙ୍କ ମାଜିଷ୍ଟ୍ରେଟି ସମୟର ଶେଷ ପ୍ରଧାନ କାର୍ଯ୍ୟ ବଳରାମପୁରର ରାଜାଙ୍କ ଭାଇ ଓ କେତେଜଣ ଗୁମାସ୍ତାଙ୍କୁ ଛମାସ ଲେଖାଏଁ କଏଦ ଦେବା ହୋଇଥିଲା । ଏମାନଙ୍କ ଉପରେ ମଧୁପୁର ରାଜାଙ୍କ ତରଫରୁ ନାଲିଶ ହୋଇଥିଲା ଯେ ଏମାନେ ସରହଦ ବନ୍ଦୀର ଚିହ୍ନ ସ୍ଥାନାନ୍ତରିତ ବା ଲୋପ କରିଥିଲେ । ଯାହାହେଉ ଜଜ୍ ସାହେବଙ୍କଠାରେ ଅପିଲ ହେବାରେ ସେମାନେ ଖଲାସ ପାଇଅଛନ୍ତି ।

୪୭ । ବାବୁ ଫକୀର ମୋହନ ସେନାପତି ଢେଙ୍କାନାଳର ଆସିଷ୍ଟାଣ୍ଟ ମାନେଜର ନିଯୁକ୍ତ ହୋଇଥିବାର ଶୁଣାଯାଏ । ଏ ମହାଶୟ କେତେକ ମାସ ହେଲା ଡମ୍ପଡ଼ା ରାଜାଙ୍କ ଦେୱାନ ହୋଇ ଉତ୍ତମ କାର୍ଯ୍ୟ କରିବାରୁ ଏଥି ମଧ୍ୟରେ ପାଞ୍ଚ ହଜାର ଟଙ୍କା ପାରିତୋଷିକ ପାଇଅଛନ୍ତି ଏବଂ ମାସକୁ ଏକଶତ ଟଙ୍କା ଲେଖାଏଁ ବେତନ ପାଉଅଛନ୍ତି । ଏମନ୍ତ ମୁନିବକୁ ଛାଡ଼ିବାର କାରଣ କି ?

## ( ୧୨ଶ ଭାଗ, ୫ । ୫ । ୧୮୭୭, ସଂଖ୍ୟା ୧୮ )

୪୮ । ସାପ୍ତାହିକ ସମ୍ବାଦ

ବାବୁ ନାରାୟଣ ଚନ୍ଦ୍ର ନାୟକ ଖୋରଧାର ସବ୍ ଡେପୁଟୀ ପଦରେ ଏକଟିଂ ନିଯୁକ୍ତ ହୋଇ ଗତ ମଙ୍ଗଳବାର ଏଠାରୁ ଉକ୍ତ ସ୍ଥାନକୁ ଯାତ୍ରା କଲେ । ବାବୁ ବଳରାମ ଦାସଙ୍କଠାରୁ ଚାର୍ଜ ନେବେ ଓ ବଳରାମ ଦାସ ସେ କର୍ମରୁ ବରଖାସ୍ତ ହୋଇ ଫେରି ଆସୁଅଛନ୍ତି । ଶ୍ରୀଯୁକ୍ତ ବିମ୍ସ ସାହେବ ତାହାଙ୍କ ତହବିଲରେ କୌଣସି ଦୋଷ ଦେଖି ଏପରି ବନ୍ଦୋବସ୍ତ କଲେ । ବଳରାମ ବାବୁ କୃତବିଦ୍ୟ ହୋଇ ଗୋଟିଏ ଅବିବେଚନାର କାର୍ଯ୍ୟକରି ଅବନତିକୁ ଲଭିଲେ ବଡ଼ ଦୁଃଖର ବିଷୟ ଅଟଇ ।

## ( ୧୨ଶ ଭାଗ, ୭ । ୭ । ୧୮୭୭, ସଂଖ୍ୟା ୨୭ )

୪୯ । ଓଡ଼ିଶା ଗଡ଼ଜାତ

ଶ୍ରୀଯୁକ୍ତ ବିମ୍ସ୍ ସାହେବ ଓଡ଼ିଶାର କମିଶନର ଓ ଗଡ଼ଜାତର ସୁପରି-ଣ୍ଟେଣ୍ଡେଣ୍ଟ ହେବାରେ ଗଡ଼ଜାତର ମଙ୍ଗଳ ହେବାର ଅନେକ ସୂଚକ ଦେଖା ଯାଉ-ଅଛି । ସାହେବ ପ୍ରଶଂସିତଙ୍କର ଶୁଭରାଜ୍ୟ ଆରମ୍ଭ ହେବା ମାତ୍ରକେ ଅନେକ ଗଡ଼-ଜାତର ପ୍ରଜାମାନେ ଏଠାକୁ ଆସି ଆବେଦନ ପତ୍ର ଦ୍ୱାରା ଆପଣା ୨ ଦୁଃଖ ଜଣାଇଲେ ଓ ଅବଧି ତହିଁର ସ୍ରୋତ ବନ୍ଦ ହୋଇ ନାହିଁ । କେହି ୨ ଅନୁମାନ କରି ଥାଉନ୍ତି ଯେ ଶ୍ରୀଯୁକ୍ତ ବିମ୍ସ୍ ସାହେବ ବାଲେଶ୍ୱରରେ ଥିଲବେଳେ ପ୍ରଜାଙ୍କର ମଙ୍ଗଳାକାଂକ୍ଷୀ ବୋଲି ରାଷ୍ଟ୍ର ହୋଇଥିଲେ ସେହି ହେତୁରୁ ପ୍ରଜାମାନଙ୍କର ପ୍ରକୃତ ଦୁଃଖ ଥାଉ ବା ନ ଥାଉ ସେମାନେ ଉତ୍ସାହିତ ହୋଇ ରାଜାଙ୍କ ବିରୁଦ୍ଧରେ ଗୁହାରି କରୁଅଛନ୍ତି ମାତ୍ର ଏ କାରଣ ସମ୍ଭବ ନୁହଇ ଯେହେତୁ ଗଡ଼ଜାତର ପ୍ରଜାମାନେ ଏସବୁ ସମାଚାର ପାଇଥିବାର ଅନୁମାନ ହୋଇ ନପାରେ ଏବଂ ଶ୍ରୀଯୁକ୍ତ ରେବନସା ସାହେବଙ୍କ ସମୟରେ ମଧ୍ୟ ସେମାନେ ଅନେକ ଥର ଆପଣା ୨ ଦୁଃଖ ଜଣାଇ ପ୍ରତିକାର ନପାଇବାରୁ ଶେଷକୁ

ଭୁବନେଶ୍ୱର ରହୁଥିଲେ । ଏଥିରୁ ବୋଧହୁଅଇ ଯେ ଅନେକ ସ୍ଥଳରେ ସେମାନଙ୍କର ପ୍ରକୃତ ଗୁହାରି କରିବାର ହେତୁ ଅଛୁ ବୋଲି ଏପରି କରୁଅଛନ୍ତି । ଶ୍ରୀଯୁକ୍ତ ରେବନସା ସାହେବ ଗଡ଼ଜାତର ମଙ୍ଗଳାକାଂକ୍ଷୀ ଥିଲେ ଓ କେତେକ ମଙ୍ଗଳ ସାଧନ କରିଅଛନ୍ତି ଏଥିର ସନ୍ଦେହ ନାହିଁ । କେବଳ ତାହାଙ୍କର ବିଚାର ଏକ ପ୍ରକାର ଥିଲା । ସେ ରଜାମାନଙ୍କୁ ଆପଣା ପୁତ୍ରବତ୍ ସ୍ନେହ କରୁଥିଲେ ଓ ତାହାଙ୍କର ସୌଭାଗ୍ୟ ସର୍ବଦା ଲୋଡୁଥିଲେ । ଏମନ୍ତ କି ରଜାଙ୍କର କୌଣସି ବାଟେ ଯେମନ୍ତ କି ପଇଶେ ଅନର୍ଥକ ବ୍ୟୟ ନ ହୁଅଇ ଓ ସେମାନେ ସମସ୍ତେ ଧନବାନ ହୋଇ ଆପଣ ରାଜ୍ୟ ସ୍ୱାଧୀନ ରୂପେ ପାଳନ କରନ୍ତି ସର୍ବଦା ଏହିକଥା ସେ ମନାସୁ ଥିଲେ । ମାତ୍ର ଯେମନ୍ତ ବୃଦ୍ଧ ପିତା ଆପଣା ସନ୍ତାନଙ୍କୁ ଅତ୍ୟନ୍ତ ସ୍ନେହକରେ ଓ କୌଣସି କଥାରେ ତାଡ଼ନା କରିବାକୁ ସୁଖପାଏ ନାହିଁ ସେହିପରି ସେ ରଜାମାନଙ୍କ ସଙ୍ଗେ ବ୍ୟବହାର କରୁଥିଲେ । ରଜାଙ୍କର କିଛି ଅନ୍ୟାୟ କାର୍ଯ୍ୟ ଶୁଣିଲେ ତହିଁ ପାଇଁ ତାହାଙ୍କୁ ତାଡ଼ନା ନକରି ମିଷ୍ଟବାକ୍ୟ ଓ ସଦୁପଦେଶ ଦ୍ୱାରା ସେମାନଙ୍କୁ ସୁପଥରେ ଆଣିବାର ଚେଷ୍ଟା କରୁଥିଲେ । ଏଥିରୁ ବର୍ତ୍ତମାନ ଗଡ଼ଜାତର ରଜାମାନେ ପ୍ରାୟ ସମସ୍ତେ ତରୁଣ ବୟସ୍କ ସୁତରାଂ କେବେ ୨ ଏହାଙ୍କୁ ରକ୍ତଚକ୍ଷୁ ନଦେଖାଇଲେ କେବଳ ଉପଦେଶରେ ଶାସିତ ହେବା ଅନେକଙ୍କ ପକ୍ଷରେ ଏକପ୍ରକାର ଅସମ୍ଭବ ଥିଲା । ଏହି ଅପରିମିତ ବାତ୍ସଲ୍ୟ ସ୍ନେହର ବଶବର୍ତ୍ତୀ ହୋଇ ରଜାଙ୍କ ବରୁଦ୍ଧରେ କୌଣସି ପ୍ରଜା ଗୁହାରି କଲେ ସେ ତାହା ନଶୁଣି ରଜାଙ୍କ ନିକଟରେ ଗୁହାରି କରିବାକୁ ଉକ୍ତ ପ୍ରଜାଙ୍କୁ ଆଜ୍ଞା ଦେଉଥିଲେ । ଏ ନ୍ୟାୟଟି ଯେ ମନ୍ଦ ଥିଲା ତାହା ମାନ୍ୟବର ଇଡେନ ସାହେବ କଟକ ଜିଲାର କଲେକ୍ଟର ଥିବା ବେଳେ ଅତ୍ୟନ୍ତ କୌତୁକ ପ୍ରକାରରେ ବୁଝାଇ ଦେଇ ଯାଇଅଛନ୍ତି ଓ ଯେଉଁ ଉପଲକ୍ଷରେ ସେ ତାହା କହିଥିଲେ ସେହି ଘଟନା ପାଠକଙ୍କୁ କହିଦେଲେ ଅମ୍ଭମାନଙ୍କର ଭାବ ବୁଝାଯିବ । ଉକ୍ତ ଘଟନା ଏହି ଯେ ଏକ ତଲ ଗଡ଼ଜାତର କେତେକ ପ୍ରଜା ମିଶି ରଜାଙ୍କ ବରୁଦ୍ଧରେ ସେ ସମୟର କମିଶନରଙ୍କ ନିକଟରେ ଦରଖାସ୍ତ କଲେ । କମିଶନର ସାହେବ ପ୍ରଜାଙ୍କ କଥା କିଛି ନବୁଝି ସେ ଦରଖାସ୍ତ ଉପରେ ଏହି ଆଜ୍ଞା ଲେଖି କଲେକ୍ଟର ସାହେବଙ୍କ ନିକଟକୁ ପଠାଇ ଦେଲେ ଯଥା ଦରଖାସ୍ତକାରୀଙ୍କୁ ସାହେବ ବୁଝାଇ ଦେବେ ଯେ ସେମାନେ ରଜାଙ୍କ ନିକଟରେ ଦରଖାସ୍ତ କରି ଆପଣା ୨ ଗୁହାରି ସବୁ ନିକାଶ କରିନେବେ । ମାନ୍ୟବର ଇଡ଼େନ ସାହେବ ଏହାକୁ ଦେଖି କହିଲେ "ଏତ ବଡ଼ ବିଚିତ୍ର ଆଜ୍ଞା ଅଟଇ । ଛେଳିମାନେ ବାଘର ଅତ୍ୟାଚାର ସହି ନପାରି ହାକିମ ପାଖରେ ଗୁହାରି କଲେ ଯେ ବାଘ ଜ୍ୱାଳାରେ ଆମ୍ଭେମାନେ ରହି ପାରୁଁ ନାହିଁ, ଆମ୍ଭକୁ ରକ୍ଷାକର, ତହୁଁ ହାକିମ ବାଘକୁ ଡକାଇ କହିଲେ ତୁ ପାଟି ମେଲିକରି ଓ ଛେଳିମାନଙ୍କୁ ଧରି ଗୋଟି ୨ କରି

ତାହା ପୂର୍ବରେ ହୋଇ ହେଲେ ।" ଏଥର ପାଠକମାନେ ଅନୁମାନ କରନ୍ତୁ ଯେ ପ୍ରଜାମାନେ ଗୁହାରି କଲେ ତାହାଙ୍କ କଥା ନଶୁଣି ରଜା ପାଖରେ ଗୁହାରି କରିବାକୁ ସେମାନଙ୍କୁ କହିଦେବା କେମନ୍ତ ହେବ ନ୍ୟାୟ ଅଟଇ । ସୁଖର ବିଷୟ ଯେ ଶ୍ରୀଯୁକ୍ତ ବିମସ୍ ସାହେବ ଏ ବଡ଼ର ନ୍ୟାୟକୁ ଅବଲମ୍ବନ କରିନାହାନ୍ତି । ତାହାଙ୍କ ନିକଟରେ ପ୍ରଜାମାନେ ଦରଖାସ୍ତ ଦେଲେ ସେ ରଜାଙ୍କଠାରୁ କୈଫିୟତ ତଲବ କରୁଅଛନ୍ତି ଏବଂ ତହିଁର ବିଚାର କରିବାକୁ ପ୍ରସ୍ତୁତ ଅଛନ୍ତି । ରଜାମାନେ କୈଫିୟତ ତଲବ ହେବାର ଦେଖି ବ୍ୟସ୍ତ ହେଲେଣି । ସେମାନେ ଜାଣିଲେଣି ଯେ ବାମ୍ସ ସାହେବଙ୍କ ଠାରେ ନିୟମ ଚରମ ଭୁଲ କଥା ଅଛି ଓ ଦଶପଲ୍ଲା ରଜାଙ୍କ ବିରୁଦ୍ଧରେ ଯେଉଁ ରିପୋର୍ଟ ହୋଇଅଛି ସେଥିର ସମ୍ବାଦ ଶୁଣି ସେମାନେ ସ୍ପଷ୍ଟ ବୁଝି ଅଛନ୍ତି ଯେ ଏହାଙ୍କ ଅମଳରେ ଆଉ ପୂର୍ବ କାଳର ଆଳସ୍ୟ ଓ ଅମନୋଯୋଗିତା ଚଳିବ ନାହିଁ । ଏଥର ଖେଲ ପୌତୁକମାନ ଛଡ଼ ବଳଧର୍ମମାନ ସୁଚାରୁ ରୂପେ ପାଳଣ କରିବାକୁ ହେବ । ଏହିମଧ୍ୟରେ ଆମ୍ଭେମାନେ ଶୁଣିଲୁଣି ଯେ କେହି କେହି ରଜାଙ୍କର ଚରିତ୍ର ବ୍ୟବହାର ଅନେକ ସୁଧାରିଲାଣି ଓ ଅଧିକ ରଜାମାନେ ମଧ୍ୟ ସେହି ଚେଷ୍ଟାରେ ଅଛନ୍ତି । ଖଲଗିର ରଜାଙ୍କ ବିରୁଦ୍ଧରେ ଅନେକ ପ୍ରଜା ଦରଖାସ୍ତ ଦେଇଥିଲେ ଓ ସେ ସବୁରେ ରଜାଙ୍କୁ କୈଫିୟତ ତଲବ ହୋଇ ବାଲେଶ୍ୱର ମୁକାମରେ ବିଚାର ହେବାର ଥିଲା ଏଥିକୁ ଆମ୍ଭେମାନେ ଅବଗତ ହୋଇ ଅଛୁଁ ଯେ ରଜା ସୁବିବେଚନା ପୂର୍ବକ ପ୍ରଜାମାନଙ୍କୁ ରାଜିକରି ନେବାରେ ଆଉ ମୋକଦ୍ଦମା ବୁଝିବାର ଦରକାର ହୋଇ ନାହିଁ ଓ ଏମନ୍ତ ଭରସା ହୁଅଇ ଯେ ସେଠାରେ ରଜା ପ୍ରଜାଙ୍କର ଅମେଳ ଆଉ ରହିବ ନାହିଁ । ଏହି ଅମେଳର କଥା ଆମ୍ଭେମାନେ କେତେ କାଳରୁ ଶୁଣି ଆସୁ ଅଛୁଁ । ପୂର୍ବ ହାକିମଙ୍କ ଅମଳଧାରା ଥାଇ ଏହା ଚଳି ଆସିଲା କହିଲେ ଅତ୍ୟୁକ୍ତି ହେବ ନାହିଁ କିନ୍ତୁ ଶ୍ରୀଯୁକ୍ତ ବିମସ୍ ସାହେବ ଥରେ ମାମଲା ବୁଝିବାକୁ ପ୍ରସ୍ତୁତ ହେଲେ ବୋଲି ତାହା ଦିନେ ୨ ନିଷ୍ପତ୍ତି ହୋଇଗଲା । ଆଉ ତାହାଙ୍କ ମାମଲା ବୁଝିବାକୁ ହେଲା ନାହିଁ । ଆମ୍ଭେମାନେ ଏ ସମସ୍ତ ଫଳ ଦେଖି ବଡ଼ ଆନନ୍ଦିତ ହୋଇଅଛୁଁ ଓ ଯେବେ ଏ ନ୍ୟାୟ ରୀତି ଲଙ୍ଘନ କରି କୌଣସି ଏକ ଆଡ଼କୁ ମାଡ଼ି ନଯାଏ ତେବେ ଗଡ଼ଜାତର ଅବସ୍ଥା ଅନେକ ଭଲ ହେବ ସନ୍ଦେହ ନାହିଁ ।

**( ୧୨ଶ ଭାଗ, ୧୪ । ୭ । ୧୮୭୭, ସଂଖ୍ୟା ୨୮ )**

୫୦ ।

ସାପ୍ତାହିକ ସମ୍ବାଦ ।

ଦାତୁନେଙ୍ଗା ନିକଟ ଜଙ୍ଗଲରେ ଶ୍ରୀଯୁକ୍ତ ଟେଲର ସାହେବ ଡେପୁଟୀ କଲେକ୍ଟର ଏକ ଷଣ ବାହାର କରିଅଛନ୍ତି । ଏହାର ଆୟତନ ୧୪ ଦଣ୍ଡି ଏକମାତ୍ର

ହେବ ତହିଁରେ ମୃତଲ ଜମାଥିଲ ମାତ୍ର ବର୍ତ୍ତମାନ ତାହା ଅଙ୍ଗାର ହୋଇ ଉଡ଼ି ହୋଇଅଛି । ଓଡ଼ିଶାର କୌଣସି ପ୍ରାଚୀନ ରାଜା ଏହା ଲଗାଇଥିଲେ ।

## ( ୧୨ଶ ଭାଗ, ୨୧ । ୭ । ୧୮୭୭, ସଂଖ୍ୟା ୨୯ )

୫୧ ।

### ପୁରୀ ମନ୍ଦିରର ଶାସନ

ଗତ ଗୋବିନ୍ଦଦ୍ୱାଦଶୀ ସମୟରେ ପୁରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରରେ କେତେଗୁଡ଼ିଏ ପାପୀ ମରି ପଡ଼ିବାରୁ ଗବର୍ଣ୍ଣମେଣ୍ଟଙ୍କ ଆଦେଶ କ୍ରମେ ଶ୍ରୀଯୁକ୍ତ କମିଶ୍ନର ଶିମ୍ସ୍ ସାହେବ ତହିଁର ଅନୁସନ୍ଧାନ କରିଥିଲେ । ଅନୁସନ୍ଧାନର ଫଳ କି ହୋଇଥିଲ ଅଦ୍ୟାପି ପ୍ରକାଶ ପାଇନାହିଁ ମାତ୍ର ଗବର୍ଣ୍ଣମେଣ୍ଟ ଇଣ୍ଡିଆ ପୁରୀର ରାଜାଙ୍କ ପ୍ରତି ଯେଉଁ ଆଜ୍ଞା ଦେଇଅଛନ୍ତି ତହିଁରୁ ଅନୁମାନ ହୁଅଇ ଯେ ମହାରାଜାଙ୍କର ତତ୍ତ୍ୱାବଧାନ ଦୋଷରୁ ଉକ୍ତ ଦୁର୍ଘଟନା ଘଟିଥିବାର ସ୍ଥିର ହୋଇଅଛି । ଏଥିପାଇଁ ଗବର୍ଣ୍ଣମେଣ୍ଟ ଆଦେଶ କରିଅଛନ୍ତି କି ମହାରାଜା ପୁରୀ ମନ୍ଦିର ମଧ୍ୟରେ ଯାତ୍ରୀଙ୍କ ପ୍ରବେଶ, ରକ୍ଷା ଓ ଦର୍ଶନ କାର୍ଯ୍ୟମାନ ସୁଚାରୁରୂପେ ଚଳିବା ଓ ସମସ୍ତ ଦୁର୍ଘଟନାର ନିବାରଣର ବ୍ୟବସ୍ଥା କରିଣ ଗୋଟିଏ ସ୍ଥାନୀୟ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କର କମିଟୀ ନିଯୁକ୍ତ କରିବେ ଓ ତାହାଙ୍କ ପରାମର୍ଶରେ ଏ ବିଷୟର ନିୟମାବଳୀ ସ୍ଥିର କରି ଗବର୍ଣ୍ଣମେଣ୍ଟଙ୍କ ମଞ୍ଜୁରି କାରଣ ପଠାଇବେ । ଯେ ପର୍ଯ୍ୟନ୍ତ ଏ ନିୟମାବଳୀ ପ୍ରସ୍ତୁତ ଓ ଗବର୍ଣ୍ଣମେଣ୍ଟରେ ଅର୍ପିତ ନହେବ ସେ ପର୍ଯ୍ୟନ୍ତ ମହାରାଜାଙ୍କୁ ମହାରାଜା ପଦ ଓ ତହିଁର ସନନ୍ଦ କି ଯାହା ଗତ ଜାନୁଆରୀ ମାସରେ ଗବର୍ଣ୍ଣମେଣ୍ଟ ଦେଇଅଛନ୍ତି ତାହା ସ୍ଥଗିତ ରହିବ । ଏ ଆଜ୍ଞା ଅନେକଦିନ ହେଲା ତାହାଙ୍କ ନିକଟକୁ ଯାଇଅଛି ଓ ଏ ଅନୁସାରେ ଅବଧି କିଛି କାର୍ଯ୍ୟ ହୋଇନାହିଁ । ଯେପରି ବନ୍ଦୋବସ୍ତ ହେବ ତାହା ଏ ଉତ୍ତାରୁ ଜଣା ପଡ଼ିବ । ପୁରୀର ମହାରାଜା ଆଇନାନୁସାରେ ଶ୍ରୀଜଗନ୍ନାଥଙ୍କ ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ଅଟନ୍ତି ଓ ତାହାଙ୍କ ଉକ୍ତ କର୍ମରେ କେତେ ପ୍ରକାର ଶୈଥିଲ୍ୟ ଘଟିଥିବାର ମଧ୍ୟ ଅପ୍ରକାଶ ନାହିଁ । ଅତଏବ ଆମ୍ଭେମାନେ ବିବେଚନା କରୁଁ କି ଗବର୍ଣ୍ଣମେଣ୍ଟ ତାହାଙ୍କୁ ଯେଉଁ ଆଜ୍ଞା ଦେଇଅଛନ୍ତି ତାହା ଅଯୌକ୍ତିକ ନୁହଇ ଏବଂ ତହିଁରେ ଏହାଙ୍କର ଅଧିକାର ପ୍ରତି ମଧ୍ୟ ହସ୍ତକ୍ଷେପଣ ହୋଇନାହିଁ କାରଣ ଗବର୍ଣ୍ଣମେଣ୍ଟ ତାହାଙ୍କୁ ଏତିକି କହିଅଛନ୍ତି ଯେ ଏଡ଼େ ଗୁରୁତର ବ୍ୟାପାର ସେ କେବଳ ଆପଣା ବିବେଚନାରେ ନିର୍ବାହ କରିବାକୁ ସାହସ ନକରି କେତେକ ସମ୍ଭ୍ରାନ୍ତ ଲୋକଙ୍କୁ ଆପଣା ମନ୍ତ୍ରୀ ସ୍ୱରୂପ କମିଟୀ ନିଯୁକ୍ତ କରି ତାହାଙ୍କ ପରାମର୍ଶରେ ଓ ଆପେ ସ୍ଥିର କରିଥିବା ନିୟମାନୁସାରେ କର୍ମକାରକ ହେବେ । ଏପରି ହେଲେ ତାହାଙ୍କର ବର୍ତ୍ତମାନ ଯେ ଆୟ ଅଛି ତାହା ସ୍ଥିର ରହିଲା । କିନ୍ତୁ କେତେକ

ଲୋକ ମନେ କରନ୍ତି ଯେ ଗୋବିନ୍ଦ ଦ୍ୱାଦଶୀ ସମୟରେ ଦୁର୍ଘଟନା ସକାଶେ ଏକା ପୁରୀର ମହାରାଜାଙ୍କୁ ଦାୟୀଗ୍ରସ୍ତ କରିବାର ଉଚିତ ହୋଇନାହିଁ । ସେଠାରେ ସରକାରୀ କର୍ମଚାରୀମାନେ ତ ଉପସ୍ଥିତ ଥିଲେ ସେମାନେ ଅଧିକା କି ବନ୍ଦୋବସ୍ତ କଲେ । ଏତେ ତୀର୍ଥଯାତ୍ରୀ ଯେ ମନୁଷ୍ୟ ମରି ପଡ଼ିବାର ଶୁଣାଯାଏ ତହିଁରେ ତ ମହାରାଜାଙ୍କର ଦୋଷ ବୋଲିଯାଇ ନପାରେ । ଏପରି ଏହି କାଳରେ ଅଯୋଧ୍ୟା କାଶୀ ପ୍ରଭୃତି ତୀର୍ଥସ୍ଥାନ ମାନଙ୍କରେ ଭକ୍ତଙ୍କର ଦୁର୍ଘଟନା ହୋଇଥିଲା ଓ ପୁଲିସ ତାହାର ନିବାରଣ କରି ପାରିଲେ ନାହିଁ । ଏଥିରୁ ସହଜରେ ଅନୁମାନ ହୋଇପାରେ ଯେ ଅସାଧାରଣ ଭିଡ଼କୁ କାହାରି ଆୟତ୍ତ ନଥିବାର ଗବର୍ଣ୍ଣମେଣ୍ଟ ବିବେଚନା କରି ସରକାରୀ କର୍ମଚାରୀଙ୍କୁ ନିର୍ଦ୍ଦୋଷୀ କରିଅଛନ୍ତି ଅଥଚ ପୁରୀର ମହାରାଜାଙ୍କୁ ଏଥିପାଇଁ ଶାସନ କରିବାକୁ ପ୍ରବୃତ୍ତ ହେଲେ । ଏହା କେମନ୍ତ କରି ଘଟିଲା । ଏପରି ସଂଶୟ ମନରେ ଜାତ ହେବା ନିତାନ୍ତ ଅସଙ୍ଗତ ନୁହଇ ଓ ଏଥିପାଇଁ ଆମ୍ଭେମାନେ ଏକାନ୍ତ ଆଶା କରୁଁ ଯେ ନିଯୁକ୍ତ କମିଶନର ସାହେବଙ୍କ ଅନୁସନ୍ଧାନ ଓ ତହିଁରେ ଗବର୍ଣ୍ଣମେଣ୍ଟଙ୍କ ମନ୍ତବ୍ୟ ସର୍ବସାଧାରଣଙ୍କ ଗୋଚରାର୍ଥେ ପ୍ରକାଶ ହେଉ । ତାହାହେଲେ କାହାରି କିଛି ଭ୍ରମ ରହିପାରିବ ନାହିଁ ।

( ୧୨ଶ ଭାଗ, ୧ । ୯ । ୧୮୭୭, ସଂଖ୍ୟା ୩୪ )

*୨ । ଚଟ୍ଟଗ୍ରାମ କମିଶନରଙ୍କର ଅଫିସ୍ମାଷ୍ଟ ବାବୁ ନବୀନଚନ୍ଦ୍ର ସେନ ପୁରୀ ସଦର ମୁକାମର ଡେପୁଟୀ କଲେକ୍ଟର ନିଯୁକ୍ତ ହୋଇଅଛନ୍ତି ।

( ୧୨ଶ ଭାଗ, ୨୨ । ୧୨ । ୧୮୭୭, ସଂଖ୍ୟା ୪୦ )

*୩ । ଓଡ଼ିଶା ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ ବାବୁ ହରେକୃଷ୍ଣ ଦାସ ଗତ ଶୀତକାଳେ ପେନଶନ ସକାଶେ ଦରଖାସ୍ତ କରିଅଛନ୍ତି । ଏହିମାସ ଶେଷ ହେଲେ ସେ ଆଉ କର୍ମ କରିବେ ନାହିଁ କୋହଲେ ପେନଶନ ମଞ୍ଜୁର ଆସିବା ପର୍ଯ୍ୟନ୍ତ ରହିବେ । ତାହାଙ୍କ କର୍ମରେ କେଉଁ ଭାଗ୍ୟବାନ ପୁରୁଷ ନିଯୁକ୍ତ ହେବେ ଏହି କଥାର ଆନ୍ଦୋଳନ ସରକାରୀ କର୍ମଚାରୀଙ୍କ ମଧ୍ୟରେ ବର୍ତ୍ତମାନ ହେଉଅଛି । ଶୁଣାଯାଏ ଯେ ଶ୍ରୀଯୁକ୍ତ ବାମ୍ସ ସାହେବ ଏକ ବ୍ୟକ୍ତି ସକାଶେ ଗବର୍ଣ୍ଣମେଣ୍ଟରେ ଅନୁରୋଧ କରିଅଛନ୍ତି ମାତ୍ର ରେବେନସା ସାହେବଙ୍କର ତହିଁରେ ତୃପ୍ତି ଜନ୍ମି ନାହିଁ । ସେ ଜଣେ ଓଡ଼ିଆକୁ ଏ କର୍ମ ଦେବାର ବାଞ୍ଛା କରନ୍ତି । ଓଡ଼ିଆ ଶବ୍ଦ ସାଧାରଣ ଓଡ଼ିଶାବାସିଙ୍କୁ ବୁଝାଏ, ପାଠକମାନେ ଏପରି ଅର୍ଥ କରିବେ ନାହିଁ । ଶ୍ରୀଯୁକ୍ତ ରେବେନସା ସାହେବଙ୍କ ମତରେ ଓଡ଼ିଶାର ଆଦିମ ନିବାସୀମାନେ ପକ୍କା ଓଡ଼ିଆ ଅଟନ୍ତି ଓ ସେମାନଙ୍କ ମଧ୍ୟରୁ ଜଣକୁ ଏ କର୍ମ ଦିଆଯିବ ।

ଆମ୍ଭମାନଙ୍କର ଇଚ୍ଛା ଥିଲା ଯେ ଏ କର୍ମର ଯୋଗ୍ୟ କେତେଜଣ ଉପଯୁକ୍ତ ବ୍ୟକ୍ତିଙ୍କର ନାମ ଲେଖିଲୁ ମାତ୍ର ଠକ୍କା ଓଡ଼ିଆ କଏ ଉତ୍କଳର ଜାଣି ନଥିବାରୁ ତହିଁରୁ କ୍ଷାନ୍ତ ହେଲୁଁ । କିଏ ଓଡ଼ିଆଙ୍କୁ ଠକ୍କା ଓଡ଼ିଆ ବୋଲୁଥିବ କି ?

## ୧୩ଶ ଭାଗ, ୪ । ୧ । ୧୮୭୮, ସଂଖ୍ୟା ୧

୫୪ । ଗତ ସୋମବାର ସନ ୧୮୭୭ ମସିହା ଗତ ହେଲା କଲ୍ପ ଏକା ନୁହେ । ଶେଷକାଳକୁ ସୁଦ୍ଧା ଏହାର ଦାନ୍ତ ବାକି ଥିଲା ଯେ ଆଉ ଜଣେ ପ୍ରଧାନ ଲୋକଙ୍କୁ ସଙ୍ଗେ ଘେନିଗଲା । ଏ ବର୍ଷର ଆରମ୍ଭରେ ଢେଙ୍କାନାଳର ସୁଶୋଭିତ ମହାରାଜ ଭଗୀରଥୀ ମହେନ୍ଦ୍ର ବାହାଦୂରଙ୍କୁ, ମଧ୍ୟ ଭାଗରେ ବାବୁ ରାଧଶ୍ୟାମ ନରେନ୍ଦ୍ର ଓ ବାବୁ ବୃନ୍ଦାବନ ଚନ୍ଦ୍ର ମଣ୍ଡଳଙ୍କୁ ଆମ୍ଭେମାନେ ହରାଇ ବସିଲୁଁ । ଶେଷଦିନରେ ବାବୁ ହରେକୃଷ୍ଣ ଦାସ ମାନବ ଲୀଳା ଶେଷ କଲେ । ହରେକୃଷ୍ଣ ବାବୁ ଜଣେ ପୁରାତନ ଗବର୍ଣ୍ଣମେଣ୍ଟ କର୍ମଚାରୀ । ପ୍ରାୟ ବ ୪୫ ବର୍ଷ ସରକାରୀ କର୍ମକାର ଏହି ଶହରରେ ଜଣେ ମାନ୍ୟ ଲୋକ ହୋଇଥିଲେ । ଗବର୍ଣ୍ଣମେଣ୍ଟ ଆଜ୍ଞା କ୍ରମେ ସନ ୧୮୭୭ ସାଲ ଶେଷପାଏ ଏହାଙ୍କୁ କର୍ମ କରିବାକୁ ଅନୁମତି ଥିଲା ଓ ତଦନୁସାରେ ସେ ପେନସନର ଦରଖାସ୍ତ କଲେ । ସେହି ଦିନରୁ ସେ ଅତ୍ୟନ୍ତ ପୀଡ଼ିତ ହେଲେ ଓ ବର୍ଷର ଶେଷଦିନରେ ଗୃହକର୍ମ ସଙ୍ଗେ ସଙ୍ଗେ ସଂସାରକୁ ସୁଦ୍ଧା ପରିତ୍ୟାଗ କଲେ । ପେନସନ ନେବାକୁ ତାହାଙ୍କର ଇଚ୍ଛା ନଥିଲା ଓ ତାହା ନେବାକୁ ହେଲାନାହିଁ । ବାବୁ ହରେକୃଷ୍ଣ ଦାସ ଉତ୍କଳୀୟଙ୍କ ମଧ୍ୟରେ ଜଣେ ପ୍ରଧାନ ଓ ମାନ୍ୟ ବ୍ୟକ୍ତି ଥିଲେ ସୁତରାଂ ତାହାଙ୍କ ମୃତ୍ୟୁ ଭାରୀ ଦୁଃଖର କାରଣ ହୋଇଅଛି । ସତ୍ୟବାଦୀ ଠାକୁରଙ୍କ ପ୍ରତି ତାହାଙ୍କର ବଡ଼ ଭକ୍ତି ଥିଲା ଓ ସେଠାରେ କେତେଗୁଡ଼ିଏ କୀର୍ତ୍ତି କରି ଆପଣା ନାମକୁ ଚିରସ୍ମରଣୀୟ କରିଗଲେ ।

ପରିଶେଷରେ ବକ୍ତବ୍ୟ ଯେ ବାବୁ ହରେକୃଷ୍ଣ ଦାସ କଟକ ପ୍ରିଣ୍ଟିଂ କମ୍ପାନୀ ସ୍ଥାପନ ବିଷୟରେ ଜଣେ ପ୍ରଧାନ ଉଦ୍‌ଯୋଗୀ ଓ ଏହାର ଜଣେ ପ୍ରଧାନ ଡିରେକ୍ଟର ଥିଲେ । ତାହାଙ୍କ ମୃତ୍ୟୁରେ କମ୍ପାନୀର ଭାରୀ ଅନିଷ୍ଟ ହୋଇଅଛି ।

## ( ୧୩ଶ ଭାଗ ୨ । ୩ । ୧୮୭୮, ସଂଖ୍ୟା ୯ )

୫୫ । ସାପ୍ତାହିକ ସମ୍ବାଦ

ଖୋର୍ଦ୍ଧାରେ ମାଲଗୁଜାରି କମ୍ପାନୀ ନାମରେ ଏକ କମ୍ପାନୀ ସ୍ଥାପିତ ହୋଇଅଛି । ଶ୍ରୀଯୁକ୍ତ ଠେଲର ସାହେବ ବାବୁ ଭଗବତ ଦାସ ପ୍ରଭୃତି ଜ ୨୦ ଶ

ଅଂଶୀ ହୋଇ ପ୍ରତ୍ୟେକ ଟ ୫୦ ଙ୍କା ଲେଖାଏଁ ଦେଇ ଟ ୧୦୦୦୦ଙ୍କା ମୂଳଧନ କରିଅଛନ୍ତି । ସେହି ଟଙ୍କାରେ ସେଠାକାର ବାଲିର ମୁଖ୍ୟ ଉଦ୍ଧବ ମହାରାଜାଙ୍କର ଭଙ୍ଗା ଗଡ଼ଖାଇ ଓ ବାଣୀଶ୍ୱର ପୁଷ୍କରିଣୀର ପଙ୍କ ଉଦ୍ଧାରଣ କରି ମାଟି ଖୋଳି ମାଲ ତୟାର କରୁଅଛନ୍ତି । କୁଇଟଗୋଟା ଲେଖା ଥାଳି ଓ ତଳଦାର ବାହାରିଅଛି, ଆଉ ମିଳିବାର ଆଶା ଅଛି । ଏହି ଯାହାହେଉ ବର୍ତ୍ତମାନ ଜଳକଷ୍ଟ ସମୟରେ ପୁଷ୍କରିଣୀ ଖୋଳା ହୋଇଯିବା ତଦ୍ଦ୍ୱାରା ସର୍ବସାଧାରଣଙ୍କର ବିଶେଷ ଉପକାର ହେବ ।

(୧୩ଶ ଭାଗ, ୯ । ୩ । ୧୮୭୮, ସଂଖ୍ୟା ୧୦)

୫୬ । ଆମ୍ଭେମାନେ ଶୁଣିଅଛୁଁ ଯେ ପୁରୀ ରାଜାଙ୍କର ମକଦ୍ଦମା ଏହିମାସ ତା ୧୧ ରିଖରେ ବିଚାର ହେବା ଯେପର୍ଯ୍ୟନ୍ତ ସେ ଦୁଇହଜାର ଟଙ୍କାର ଜାମିନରେ ହାଜତରୁ ଖଲାସ ହୋଇଅଛନ୍ତି । ପ୍ରପୀଡ଼ିତ ବୈଷ୍ଣବ ହସପାତାଲରେ କ୍ରମେ ଆରୋଗ୍ୟ ଲାଭ କରୁଅଛି । ମୋକଦ୍ଦମା ମେଜେଷ୍ଟରଙ୍କ ତଦ୍ବିରଧୀନରେ ଅଛି ।

୧୩ଶ ଭାଗ, ୧୬ । ୩ । ୧୮୭୮, ସଂଖ୍ୟା ୧୧

ବିଜ୍ଞାପନ

୫୭ । କଟକଜିଲ୍ଲା ଗଡ଼ଜାତ ମାହାଲର
ଶ୍ରୀ ସୁପ୍ରସିଦ୍ଧ ସାହେବଙ୍କ ହୁକୁମର

ବିଜ୍ଞାପନ

ଯେହେତୁ ବର୍ତ୍ତମାନ ଦଶପଲ୍ଲା କଲ୍ଲୀର ସମସ୍ତ ବିଷୟର ଭାର ଦଶପଲ୍ଲାର କମିଟୀଙ୍କ ଉପରେ ଗବର୍ଣ୍ଣମେଣ୍ଟ ହୁକୁମାନୁସାରେ ରହିଲା ଏ ପ୍ରତ୍ୟକ୍ଷେ ରାଜାଙ୍କୁ କମିଟୀଙ୍କ ବିନା ମଞ୍ଜୁରିରେ କାହାଠାରୁ ଏକଟଇଆ କରଜ ନେବାର ଅଧିକାର ନାହିଁ ଅତଏବ ଏତଦ୍ଦ୍ୱାରା ସର୍ବସାଧାରଣଙ୍କୁ ଜ୍ଞାତ କରାଇ ଦିଆଯାଉ ଅଛି ଯେ ଦଶପଲ୍ଲା କମିଟୀଙ୍କ ବିନା ମଞ୍ଜୁରିରେ କେହି ଏ ରାଜାଙ୍କୁ ଏକଟଇଆ କରଜ ନଦେବେ ଏଥିର ବିପରୀତ କଲେ ତାହା ଅଗ୍ରାହ୍ୟ ହେବ । ତା ୯ ରଖ ଫିବ୍ରୁଏରୀ ସନ ୧୮୭୮ ମସିହା ।

(୧୩ଶ ଭାଗ, ୭ । ୪ । ୧୮୭୮, ସଂଖ୍ୟା ୧୪)

୫୮ । ସାପ୍ତାହିକ ସମ୍ବାଦ

ଗତ ସୋମବାର ଆମ୍ଭମାନଙ୍କର ନୂତନ କମିଶନର ଶ୍ରୀଯୁକ୍ତ ମି ଥ

ସାହେବ କାର୍ଯ୍ୟଭାର ଗ୍ରହଣ କଲେ । ଶ୍ରୀଯୁକ୍ତ ରେଭେନସା ସାହେବ ଗତକାଲି ଏଠାରୁ ଯାବାକଲେ । ସେ ଆଉ ଏ ପ୍ରଦେଶକୁ କମିଶନର ହୋଇ ଆସିବାର ସମ୍ଭାବନା ନାହିଁ ଛୁଟିରୁ ଫେର ଆସିଲେ ସଦରରେ ରହିବେ ।

ପୁରୀ ରଜାଙ୍କ ମୋକଦ୍ଦମା ଶେଷ ପର୍ଯ୍ୟନ୍ତ ଶ୍ରୀଯୁକ୍ତ ଏକଷ୍ଟିଂ ଜଜ ଉଭନସ ସାହେବ ଏଠା ଆଡିସିନାଲ ଜଜ ହୋଇ ଅଛନ୍ତି ।

## (୧୩ଶ ଭାଗ, ୨୦ । ୪ । ୧୮୭୮, ସଂଖ୍ୟା ୧୬)

୬୯ । ପୁରୀ ରଜାଙ୍କ ମୋକଦ୍ଦମା ।

ଗତ ମଙ୍ଗଳବାର ପୁରୀ ରଜା ଓ ତାହାଙ୍କ ସଙ୍ଗୀ ଅପରାଧୀଙ୍କର ଅପୀଲ ହାଇକୋର୍ଟରେ ଦାଖଲ ହେଲା । ଶ୍ରୀଯୁକ୍ତ ଇବାନସ ସାହେବ ସେଠାରେ ମଧ୍ୟ ରଜାଙ୍କର ବାରିଷ୍ଟର ହୋଇ ଅଛନ୍ତି ଏବଂ କେତେ ଜଣ ଉକୀଲ ତାହାଙ୍କ ସଙ୍ଗରେ ଅଛନ୍ତି । ଅପୀଲର ଫଳ ପଛକୁ ଯାହା ହେବ ବର୍ତ୍ତମାନ ଅପୀଲ ନିଷ୍ପତ୍ତି ପର୍ଯ୍ୟନ୍ତ ଦଣ୍ଡ ରହିତ ହେବାର ଯେ ଆଜ୍ଞା ହାଇକୋର୍ଟ ଦେଇଅଛନ୍ତି ଏଥିରେ ଲୋକେ ବଡ଼ ଅନନ୍ଦିତ ଅଛନ୍ତି, ବାସ୍ତବରେ ରଜାଙ୍କର ଜେଲଖାନାରେ ଯେପରି କଷ୍ଟ ହେଉଅଛି ତାହା ଶୁଣିଲେ ମନେ ହୁଅଇ ଯେ ଗବର୍ଣ୍ଣମେଣ୍ଟ ସମ୍ଭ୍ରାନ୍ତ ଓ ସାମାନ୍ୟ ଲୋକ ସକାଶେ ଜେଲଖାନାର ନିୟମ ଏକ ପ୍ରକାର କରି ଭଲ କରି ନାହାନ୍ତି । ଏକା ଦଣ୍ଡରେ ସାମାନ୍ୟ ଲୋକ ଠାରୁ ସମ୍ଭ୍ରାନ୍ତ ଲୋକଙ୍କୁ ଅଧିକ କ୍ଳେଶ ଭୋଗ କରିବାକୁ ହୁଅଇ କିନ୍ତୁ ଅନ୍ୟ ଦିଗ ଭାବିଲେ ଦେଖାଯାଏ ଯେ ଜେଲଖାନା ଦୁଷ୍ଟ-ଲୋକ ସକାଶେ ହୋଇଅଛି ଭଦ୍ରଲୋକ ସକାଶେ ନୁହେ । ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଯେ ସେଠାକୁ ଆସନ୍ତି ଏହାହିଁ ଅତ୍ୟନ୍ତ ଦୁଃଖର ବିଷୟ ଅଟଇ ।

## ( ୧୩ଶ ଭାଗ, ୭ । ୭ । ୧୮୭୮, ସଂଖ୍ୟା ୨୬ )

୭୦ । ଶୁଣିଲୁଁ ଯେ ଏଠା ମିଉନିସିପାଲ କମିଟି ମୁସଲମାନଙ୍କ କବର ସ୍ଥାପନ କଦମରସୁଲ ଖାନନଗର ସଡ଼ଆକୁ ଉଠାଇ ଦେବାର ସ୍ଥିର କରିଅଛନ୍ତି । ଆପାତତଃ ମୁସଲମାନଙ୍କୁ ଏ ନିୟମ କଷ୍ଟକର ବୋଧହେବ କିନ୍ତୁ ଯେ ସ୍ଥଳେ ହିନ୍ଦୁ ଓ ଖ୍ରୀଷ୍ଟୟାନଙ୍କର ଶ୍ମଶାନଭୂମି ନଗର ବାହାରେ ଅଛି ସେ ସ୍ଥଳେ ମୁସଲମାନଙ୍କର ନଗର ମଧ୍ୟରେ କାହିଁକି ରହିବ ଓ ତାହା ସାଧାରଣ ସ୍ୱାସ୍ଥ୍ୟପ୍ରତି ଅନିଷ୍ଟକର ବୋଲି ଏକ ପ୍ରକାର ନିଷ୍ପତ୍ତି ରୂପେ ସିଦ୍ଧାନ୍ତ ହୋଇଅଛି ।

( ୧୩୬ ଭାଗ ୧୨ । ୧୦ । ୧୮୭୮, ସଂଖ୍ୟା ୪୦ )

୬୧ । ଢାକାର ଲୁଗା

ପୂର୍ବ କାଳରେ ଢ଼ାକାରେ କିପ୍ରକାର ଲୁଗା ପ୍ରସ୍ତୁତ ହେଉଥିଲା ତହିଁର ତଳ ଲିଖିତ ବିବରଣଟି ଏକ ପତ୍ରିକାରୁ ଉଦ୍ଧୃତ କଲୁଁ ।

"ଢ଼ାକାର ଲୁଗା ମଧ୍ୟରେ ମଲମଲ ଖାସ, ସରକାର ଆଲୀ, ଝୁନା, ରଙ୍ଗ, ଆବରୋଁୟା, ଖାସା, ସବନମ, ଆଲବଲ୍ଲୀ, ତାଞ୍ଜେବ, ତରନ୍ଦମ, ସରବନ୍ଦ, ସରବୋଟୀ, କମିଶ, ଡୋରିଆ, ଚାରଖାନା ଏବଂ ଜାମଦାନୀ, ଏହି ସବୁ ସର୍ବାପେକ୍ଷା ବିଖ୍ୟାତ । ତଳେ ତହିଁର କେତେକ ପ୍ରକାରର ସଂକ୍ଷିପ୍ତ ବିବରଣ ଲେଖା ଯାଉ-ଅଛି :—

ମଲମଲ ଖାସ— ଏହା ମୁସଲମାନ ରାଜାମାନଙ୍କ ରାଜତ୍ୱ କାଳରେ ରାଜପରିବାର ବ୍ୟବହାର କରୁଥିଲେ । ସେ ହେତୁରୁ ତାହାର 'ଖାସ' ଉପାଧି ହୋଇଅଛି । ମାସ ୬ ରୁ ଊଣାରେ ଗୋଟିଏ ଥାନ ପ୍ରସ୍ତୁତ ହେଉ ନଥିଲା । ଓଜନରେ ୧୬ ତୋଳା ମାତ୍ର । ଗୋଟିଏ ଅଙ୍ଗୁଠିର ମଧ୍ୟ ଦେଇ ତାହା ଅନାୟାସରେ ଗଳିତ କରିଯାଇ ପାରୁଥିଲା । ୨୦୦ । ୨୦୦ ଟଙ୍କା ଗୋଟିଏ ଥାନର ମୂଲ୍ୟ ଥିଲା ।

ସରକାର ଆଲୀ— ଏହା ମଲମଲ ଖାସଠାରୁ କିଛି ନିକୃଷ୍ଟ । ମୁସଲମାନ ରାଜପ୍ରତିନିଧିମାନେ ବ୍ୟବହାର କରୁଥିଲେ ।

ଝୁନା— ଏହା ଏତେ ସୂକ୍ଷ୍ମ ଯେ ପରିଧାନ କଲେ ଶରୀର ଉପରେ ବସ୍ତ୍ର ଅଛି ବୋଲି ବୋଧ ହୋଇ ନଥିଲା । ମୁସଲମାନ ରାଜମହିଷୀମାନେ ଓ ନର୍ତ୍ତକୀ-ମାନେ ଏହି ଲୁଗା ବ୍ୟବହାର କରୁଥିଲେ । ଅନ୍ୟତ୍ର ଏହାର ବ୍ୟବହାର ନଥିଲା ।

ଆବରୋଁୟା— ଏହା ଅତି ବିଖ୍ୟାତ ବସ୍ତ୍ର । ଏପରି ପାତଳ ଲୁଗା ଆଉ କୌଣସିଠାରେ ହୋଇନାହିଁ । କହିତ ଅଛି ଯେ ଏକଦିନ ଆରଙ୍ଗଜେବ ସ୍ୱୀୟ ତନୟାର ବର୍ଣ୍ଣ ତାହାର ବସ୍ତ୍ର ଭେଦ କରି ପ୍ରକାଶ ହେଉଅଛି ଦେଖି ତିରସ୍କାର କରିବାରୁ ସେ କହିଲେ ପିତଃ ! ମୋ ଶରୀର ଉପରେ ସାତ ପରସ୍ତ ଲୁଗା ଅଛି ତଥାପି ମୋତେ ତିରସ୍କାର କରୁଅଛନ୍ତି ?

ସବନମ— ଏହା ଅତି ଆଶ୍ଚର୍ଯ୍ୟ ବସ୍ତ୍ର । ରାତ୍ରିକାଳରେ ଏହି ଲୁଗା ଘାସ ଉପରେ ବିସ୍ତୃତ କରି ରଖିଲେ ଆରଦିନ ସକାଳେ କେଉଁଠାରେ ଲୁଗା ଅଛି

ବୋଲି ବୋଧ ହେଉ ନଥିଲା । ତଦବାଦ ଦିନ ବେଣୀ ହେବା ସଙ୍ଗେ ୨ ଛିଦ୍ରିତ ଶୁଖିଯାଇ କ୍ରମଶଃ ପ୍ରକାଶ ପାଉଥିଲା ।

ଏହି ସମସ୍ତ ବସ୍ତୁ ସେମାଆଦ ଇଉରୋପରେ ନାନା ସ୍ଥାନରେ ବହୁମୂଲ୍ୟରେ ବିକ୍ରୀ ହେଉଥିଲା । ବର୍ତ୍ତମାନ ବାଲୁଚୀ ଲୁଗା ଏ ଦେଶରେ ଲୋପ ପାଇ କରୁଅଛି ।

## ( ୧୪ଶ ଭାଗ, ୨ । ୨ । ୧୮୭୯, ସଂଖ୍ୟା ୮ )

୭୨ । ପ୍ରେରିତ ପତ୍ର

ମହାଶୟ, ସମସ୍ତ ଲୋକାନନ୍ଦ ଆପଣଙ୍କ ଦୀପିକାରନ୍ତ୍ରମଣିରେ ଏତନ୍ନିମ୍ନଲିଖିତ ପଂକ୍ତିମାନଙ୍କୁ ମୁଦ୍ରାଙ୍କିତ କରି ଓଡ଼ିଶାବାସିଙ୍କି ଆନନ୍ଦ କରିବା ହେବେ ।

ଆମ୍ଭେମାନେ ଶୁଣିପାରିଲୁଁ ଯେ ପୁରୀର ଶ୍ରୀଠାକୁର ମହାରାଜଙ୍କୁ ଯାବଜ୍ଜୀବନ କାରାଦଣ୍ଡରୁ ମୁକ୍ତ କରାଇବା ନିମିତ୍ତ ପାର୍ଲିଆମେଣ୍ଟ ସଭ୍ୟରେ ଅପିଲ କରିବାକୁ ବଡ଼ ଖେମୁଣ୍ଡି ଶ୍ରୀରାଜା ଉଦ୍ୟମକରି ଏମନେ ଅନୁନ ଆଠ ଜଣ ଇଂରେଜୀ ଲାଇରମାନଙ୍କୁ ନିର୍ଦ୍ଦିଷ୍ଟ କଲେ ପାର୍ଲିଆମେଣ୍ଟରେ ପାଞ୍ଚ ସହସ୍ର ଟଙ୍କା ଫିଜ ଦାଖଲ କଲେ ।

ସେ ସଭ୍ୟସଦମାନେ ସଭ୍ୟକରି ଅପିଲ କରିବାର ଅଛି ବୋଲି କାମ୍ୟ କ୍ଷମା କରି ଶ୍ରୀଠାକୁର ମହାରାଜାଙ୍କୁ ମୁକ୍ତ କରିବାକୁ ଆଦେଶ ଦେବେ ସୁଣି ସେଥି-ନିମନ୍ତେ ଆଠଜନ ଉଲେ ବଡ଼ ଖେମୁଣ୍ଡି ଶ୍ରୀରାଜା ପାଞ୍ଚ ସହସ୍ର ଟଙ୍କା ଲଣ୍ଡନକୁ ପଠାଇ ଅଛନ୍ତି ଅତି ସୁଖର ବିଷୟ ।

ଶ୍ରୀ ନାରାୟଣ ଗଡ଼ନାୟକ ସାନ୍ତ
Head Dewan of Mandasa
to the Sree Rajah, C. I. E,

## ( ୧୪ଶ ଭାଗ, ୮ । ୩ । ୧୮୭୯, ସଂଖ୍ୟା ୧୦ )

୭୩ । ମୋରଯାର ଓୟାଲ ସାହେବ ସମ୍ପ୍ରତି ଭୁବନେଶ୍ୱର ନିକଟସ୍ଥ କପିଳେଶ୍ୱରରେ ଏକ ପାଗ ଖୋଳାଇ ସୁନାର ମନ୍ତ୍ରକମାଳା, ଅନନ୍ତ ବଡ଼, ଟେଲିପଶୀ, ଇତ୍ୟାଦି ଏବଂ ହୀନଗଣ୍ଡ ବହୁମୂଲ୍ୟ ପଥର ଏପରି ଟ ୩,୦୦୦ଙ୍କାର ଦ୍ରବ୍ୟ ପ୍ରାପ୍ତ କରିଅଛନ୍ତି ।

( ୧୪ଶ ଭାଗ, ୧୯ । ୭ । ୧୮୭୯, ସଂଖ୍ୟା ୨୯ )

୬୪ । ଅମ୍ଭେମାନେ ଆନନ୍ଦର ସହିତ ଅବଗତ ହେଲୁଁ ଯେ ପୁରୀର ମହାରାଣୀ ଆପଣ ର ଦେଓ୍ୟାନ ପଦରେ ବାବୁ ରାମ ପ୍ରସାଦ ସିଂହଙ୍କୁ ମନୋନୀତ କରି ତାହାଙ୍କୁ ପାଇବା । କାରଣ କମିଶନର ସାହେବଙ୍କ ପାଖରେ ଆବେଦନ କରିଅଛନ୍ତି ଏବଂ ବାବୁଙ୍କ ପ୍ରାର୍ଥନା ମତେ ମାସକୁ ୫୩-୦୯ଙ୍କା ଲେଖାଏଁ ବେତନ ଦେବାକୁ ସ୍ୱୀକୃତ ହୋଇଅଛନ୍ତି । ଆପାତତଃ ରାମ ପ୍ରସାଦ ବାବୁ ମାଁ ୬ ସ ସକାଶେ ଛୁଟି ନେବେ ଓ କୌଣସି ଅସୁବିଧା ନହେଲେ ଏ ଉତ୍ତାରୁ ମଧ୍ୟ ରହି ପାରନ୍ତି । ବାବୁଙ୍କର କାର୍ଯ୍ୟରେ ସର୍ବସାଧାରଣ ସନ୍ତୁଷ୍ଟ ଥିବାର ଜଣାଯାଏ କାରଣ ବାବୁଙ୍କ ଦ୍ୱାରା ରାଜ-ପରିବାର ଏବଂ ମନ୍ଦିରର ସମସ୍ତ କାର୍ଯ୍ୟ ସୁଶୃଙ୍ଖଳାରେ ଚଳିବ ବୋଲି ସମସ୍ତଙ୍କର ବିଶ୍ୱାସ ହେଉଅଛି । ମହାରାଣୀ ଏହାଙ୍କୁ ମନୋନୀତ କରିବାରେ ଧନ୍ୟବାଦର ପାତ୍ର ହୋଇଅଛନ୍ତି ।

( ୧୫ଶ ଭାଗ, ୨୮ । ୨ । ୧୮୮୦, ସଂଖ୍ୟା ୯ )

୬୫ । ଓଡ଼ିଶାର କପାଳରେ କି ରେଲବାଟ ନାହିଁ ?

ଗତ କଲିକତା ଗେଜେଟରେ ବଙ୍ଗ ପ୍ରଦେଶର କେତେକ ସରକାରୀ ରେଲି ବାଟର ବିବରଣ ପ୍ରକାଶ ହୋଇଅଛି । ତହିଁରୁ ଆମ୍ଭେମାନେ ଆନନ୍ଦ ସହିତ ଅବଗତ ହେଲୁଁ ଯେ ବଙ୍ଗଳାର ରେଲବାଟମାନଙ୍କରେ ଗବର୍ଣ୍ଣମେଣ୍ଟଙ୍କର କିଛି ଖତି ହୋଇନାହିଁ । ରେଲ ଦ୍ୱାରା ଯାହା ଆମଦାନୀ ହେଉଅଛି ତଦ୍ଦ୍ୱାରା ଖର୍ଚ୍ଚ ଛଡ଼ା ଉକ୍ତ ବାଟମାନଙ୍କରେ ଲାଗିଥିବା ମୂଳଧନର ସମ୍ପୂର୍ଣ୍ଣ ସୁଧ ଭରଣା ହେଉଅଛି । ଲେଫଟେନାଣ୍ଟ ଗବର୍ଣ୍ଣର ଆଶା କରନ୍ତି କି ଆଗାମୀ ବର୍ଷରୁ ଏ ରେଲ ଲାଇନମାନଙ୍କର ଆୟ ଦ୍ୱାରା ଶତକରା ୫ ଟଙ୍କା ଲାଭ ହେବ । ଏହା ଦେଖିଲେ ବଙ୍ଗଳାରେ ଆଉ କେତେଟା ରେଲବାଟ ଖୋଲିବାକୁ ଗବର୍ଣ୍ଣମେଣ୍ଟ ମନସ୍ଥ କରିଅଛନ୍ତି ଓ ତହିଁର ତାଲିକା ଦେଇ ଅଛନ୍ତି । ଏମାନ ଛଡ଼ା ଅଉ ଗୋଟିଏ ରେଲବାଟ ପକାଇବା ମାନ୍ୟବର ଇଡନ ସାହେବ ଆଲୋଚନା କରିଅଛନ୍ତି । ସେହି ବାଟଟି ହେଉଛି କଲିକତାରୁ ମେଦିନୀପୁର ଦେଇ ନୋହିଲେ ବର୍ଦ୍ଧମାନ କି ରାଣୀଗଞ୍ଜରୁ ବାଙ୍କୁଡ଼ା ଦେଇ ପୁରୁଲିଆ ବସାକୁ ଫିଟିବ ସେଠାରୁ ଛତିଶଗଡ଼ ଦେଇ ନାଗପୁର ସଙ୍ଗେ ମିଶିବ । ଏହା ଦ୍ୱାରା କଲିକତାରୁ ବୋମ୍ବେଇକୁ ରେଲବାଟ ସଲଗ୍ନ ହେବ ଏବଂ ଗଡ଼ଜାତର ଅନେକ ବାଣିଜ୍ୟ ଦ୍ରବ୍ୟ ଏଠାକୁ ଆସିପାରିବ ।

ଆମ୍ଭେମାନେ ଶୁଣୁଅଛୁଁ କି ମାନ୍ୟବର ଇଡ଼େନ ସାହେବ ବଙ୍ଗଳାରେ ରେଲବାଟ ବିସ୍ତାର କରିବାର ଏତେ ଉପଯୁକ୍ତ ଚିନ୍ତା କରି ଦେଲେ ଯେ ଓଡ଼ିଶାକୁ ଥରେ ମନରେ ନପକାଇଲେ ବଡ଼ ଦୁଃଖର ବିଷୟ ଅଟଇ । ଛତିଶଗଡ଼ ପର୍ଯ୍ୟନ୍ତ ଆସିଲା ବେଳେ ଯେବେ ଟିକିଏ ଓଡ଼ିଶାପ୍ରତି ଦୃଷ୍ଟି ଦେଇଥାନ୍ତେ ତେବେ ରାଜ୍ୟଗଡ଼ ଠାରୁ ସମ୍ବଲପୁର ବାଟେ କଟକ ପର୍ଯ୍ୟନ୍ତ ଗୋଟିଏ ରେଖାଟାଣି ଦେଇଥିଲେ ଆଜି ଆମ୍ଭେମାନେ କେତେ ଆନନ୍ଦିତ ହୋଇଥାନ୍ତୁ ତାହା ବୋଲିହାଇ ନପାରେ । ଏହି ରେଲବାଟ ସକାଶେ ଶ୍ରୀଯୁକ୍ତ ଟେମ୍ପଲ ସାହେବ ଲେଫ୍‌ଟେନାଣ୍ଟ ଗବର୍ଣ୍ଣରଙ୍କ ଏ ନଗରକୁ ଶୁଭାଗମନ ସମୟରେ ଓଡ଼ିଶାବାସିମାନେ ଆବେଦନପତ୍ର ଦେଇଥିଲେ ମାତ୍ର ତାହା କିଛିମାତ୍ର ସଫଳ ହେବାର ଦେଖାଗଲା ନାହିଁ । ମାନ୍ୟବର ଇଡେନ ସାହେବ ଓଡ଼ିଶାର କେବଳ ନାଲର ଉପଯୋଗିତା ସିଦ୍ଧାନ୍ତ କରିଅଛନ୍ତି । ତାହାଛଡ଼ା ଆଉ କିଛି ଓଡ଼ିଶାପ୍ରତି ଧ୍ୟାନ କରିବାର ଚିନ୍ତା ତାହାଙ୍କ ମନରେ ସ୍ଥାନ ପାଇନାହିଁ ଅଥଚ ଯେଉଁ ନାଲବାଟେ ଗଞ୍ଜାମ ଓ ଓଡ଼ିଶାର ସମସ୍ତ ପ୍ରଧାନ ନଗର ସଙ୍ଗେ କଲିକତାକୁ ଯୋଗ କରିବାକୁ ସଂକଳ୍ପ କରି ବହୁ ବର୍ଷରେ ସେ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବାକୁ ବସିଥିଲେ ତହିଁର ସୁଦ୍ଧା କିଛି ମାତ୍ର କରି ପାରିଲେ ନାହିଁ । ଗବର୍ଣ୍ଣମେଣ୍ଟଙ୍କ ବାଣିଜ୍ୟ ମାଷ୍ଟର ଏଲକାର ମଧ୍ୟ କଟକର ପ୍ରଧାନ ଅଂଶ ଓଡ଼ିଶା କେନାଲକୁ ଘଟିଲ ତାହା ହୋଇଥିଲେ ମୁଗଲବନ୍ଦୀ ଲୋକଙ୍କର କେତେକ ସାମାନ୍ୟ ସୁବିଧା ହୋଇ ଥାନ୍ତା ମାତ୍ର ଯେତେ କହିଲେ ଗମନାଗମନ ପଥରେ ରେଲ ସଙ୍ଗେ ନାଲର ତୁଳନା ନାହିଁ ଓ ଯେ ସ୍ଥଳେ ନାଲ ଦ୍ୱାରା ସରକାରଙ୍କ କ୍ଷତି ହେଉଅଛି ଓ ତଦ୍ଦ୍ୱାରା କୌଣସି କାଳରେ ଗମନାଗମନର ସମ୍ପୂର୍ଣ୍ଣ ସୁବିଧା ନାହିଁ ସେ ସ୍ଥଳେ ଆମ୍ଭେମାନେ ବଙ୍ଗଳା ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରୁଅଛୁ କି ଆଉ ନାଲ ଦ୍ୱାରା ଓଡ଼ିଶାକୁ ନାରଖାର ନକରି ପ୍ରସ୍ତାବିତ ରେଲବାଟ ଫିଟାଇବାର ଯତ୍ନ କରନ୍ତୁ ।

**( ୧୫ଶ ଭାଗ, ୧୦ । ୪ । ୧୮୮୦, ସଂଖ୍ୟା ୧୫ )**

୭୨ । ଏଠା ମ୍ୟୁନିସିପାଲିଟି

ଗତ ସୋମବାର ଦିନ ଏଠା ମ୍ୟୁନିସିପାଲିଟି କମିଶନରଙ୍କର ଅଧି-ବେଶନ ହୋଇଥିଲା । ତହିଁରେ ତଳ ଲିଖିତ କାର୍ଯ୍ୟମାନ ହେଲା ।

× × ×

× × × ×

ଏ ନଗର ମଧ୍ୟରେ ମୁସଲମାନଙ୍କ ପାଞ୍ଚୋଟି କବର ସ୍ଥାନ ଲୋକଙ୍କ ପ୍ରତି ଅସ୍ୱାସ୍ଥ୍ୟ ଜନକ ଓ ଅନିଷ୍ଟକର ଥିବା ଏବଂ ଖାନନଗର ଓ ଇଦଗାହାରେ

ନୂତନ କବର ସ୍ଥାନ ହୋଇଥିବାରୁ ସେ ଫାଟକଟି ବନ୍ଦକରିବା କାରଣ ବିଜ୍ଞାପନ ଦେବାର ସ୍ଥିର ହେଲା ।

କାଠଯୋଡ଼ରେ ଖାନନଗର ଓ ସତୀଚଉରା ଓ ମହାନଦୀରେ କାଳିଆବୁଦା ଘାଟ ବ୍ୟତୀତ ଅନ୍ୟ ସ୍ଥାନରେ ଶବ ଦାହର ନିଷେଧ ହେଲା । ଏ ପକ୍ଷରେ ପୁଲିସ ଦୃଷ୍ଟି ରଖିବେ ।

## ( ୧୫ଶ ଭାଗ, ୮ । ୫ । ୧୮୮୦, ସଂଖ୍ୟା ୧୯ )

୬୨ । ଏ ନଗରବାସି ମୁସଲମାନମାନେ କଦମ ରସୁଲ ହତଭଗ୍ନି ସ୍ଥଳରୁ କବର ଦେବା ଉଠିଯିବା ବିରୁଦ୍ଧରେ ଗବର୍ଣ୍ଣମେଣ୍ଟ ପର୍ଯ୍ୟନ୍ତ ଲଢ଼ି ମିଉନିସିପାଲଟିକୁ ହାରି ଦେଇଅଛନ୍ତି । ପ୍ରଥମେ ମିଉନିସିପାଲିଟି ନଗରର ସବୁ ସ୍ଥାନରୁ କବର ଦେବା ଉଠାଇ ଦେଇ କେବଳ ଖାନନଗରରେ ତନ୍ନିମିତ୍ତ ସ୍ଥାନ ନିରୂପଣ କରିଇଲେ ଏବଂ କେତେ ଟଙ୍କା ବ୍ୟୟକରି ସେଠାରେ ପ୍ରାଚୀରାଦି ଇତ୍ୟାଦି କାର୍ଯ୍ୟକଲେ କିନ୍ତୁ ଆଇନ ଅନୁସାରେ କାର୍ଯ୍ୟ କରିବାକୁ ତ୍ରୁଟି କରିଥିଲେ । ସମ୍ପ୍ରତି ଆଇନାନୁସାରେ କାର୍ଯ୍ୟକରି ମୁସଲମାନଙ୍କ ଆପତ୍ତି ଶୁଣିବାରେ ଜାଣିପାରିଲେ ଯେ ଖାନନଗର ଉପଯୁକ୍ତ ସ୍ଥାନ ନୁହଇ । ସେଠାରେ ବର୍ଷାକାଳରେ ପାଣି ଜମାହୁଅଇ ଏବଂ ନଦୀବନ୍ତି ଓ ବାଲି ହେତୁ ତାହା କର୍ମର ଉପଯୁକ୍ତ ସ୍ଥାନ ନୁହଇ । ମୁସଲମାନମାନଙ୍କ ଆପତ୍ତି ଅନୁସାରେ କଦମ ରସୁଲର ଭିତର ବେଢ଼ା କେଶରପୁର ଭରୁଆ ତକିଆ ଏବଂ ଇଦଗାହ ଏହି ସ୍ଥାନମାନ କବର ଦେବା ସକାଶେ ମିଉନିସିପାଲଟୀ ଧାର୍ଯ୍ୟ କରିଅଛନ୍ତି ଏବଂ ଖାନନଗର ବିଷୟରେ ଗୋଟିଏ ସବ୍ କମିଟୀ ନିଯୁକ୍ତ ହୋଇଅଛି । ମିଉନିସିପାଲିଟି ପ୍ରଥମରୁ ଆଇନ ଛାଡ଼ି ଅନ୍ଧାଧୁନ୍ଧ କାର୍ଯ୍ୟ କରିବାରେ ଖାନନଗରର ହତା ଇତ୍ୟାଦିରେ କେତେଗୁଡ଼ିଏ ଟଙ୍କା ଅନର୍ଥକ ନଷ୍ଟ ହେଲା ।

## ୧୫ଶ ଭାଗ, ୧୭ । ୭ । ୧୮୮୦, ସଂଖ୍ୟା ୨୯

୬୮ । ସାପ୍ତାହିକ ସମ୍ବାଦ

ସତୀଦାହ ।

ଓଡ଼ିଶାର ଗଡ଼ଜାତର ପଶ୍ଚିମ ସୀମାରେ ବାମଣ୍ଡା ନାମରେ ଗୋଟିଏ ରାଜ୍ୟ ଅଛି, ସେହି ରାଜ୍ୟରେ ଓଡ଼ିଆ ଭାଷା ପ୍ରଚଳିତ । ଏଣୁ ବାମଣ୍ଡାକୁ ଓଡ଼ିଶାର ଗୋଟିଏ ଅଂଶ ବୋଲିବାକୁ ହେବ । ସେହି ରାଜ୍ୟରେ ଗୋଟିଏ ସଧବା ସ୍ତ୍ରୀଲୋକ ସତୀ ହୋଇଅଛନ୍ତି । ଜାତି, କୁଟୁମ୍ବ ଓ ପଡ଼ିଶାମାନେ ବିଶେଷରୂପେ ବାରଣ କରିଥିଲେ

କିନ୍ତୁ ସେ ତାହା ଶୁଣିଲେ ନାହିଁ । ବାମଣ୍ଡାର ରାଜା ଜାତି କୁଟୁମ୍ବମାନଙ୍କୁ ସାମାନ୍ୟରୂପ ଅର୍ଥଦଣ୍ଡ କରିଥିଲେ; ଏଥିକୁ ସମ୍ବଲପୁରର ଡେ. କମିଶନର ଏପରି ଲଘୁଦଣ୍ଡ ଦେବାର କାରଣ ବାମଣ୍ଡା ରାଜାଙ୍କୁ ପଚାରନ୍ତେ ସେ ଉତ୍ତର ଦେଇଅଛନ୍ତି ଯେ ସ୍ତ୍ରୀଲୋକଟି ଆପଣା ଇଚ୍ଛାରେ ସତୀ (ଅନୁମୃତା) ହୋଇଅଛି ଏବଂ ଆସାମୀମାନେ ବିଶେଷରୂପେ ନିଷେଧ କରିଥିଲେ । ଏହି ଦୁଇ ବିଷୟର ପ୍ରମାଣ ପାଇଥିଲୁଁ ବୋଲି ଲଘୁଦଣ୍ଡ ବିଧାନ କରିଅଛୁଁ ।

ମ. ବା.

## ( ୧୬ଶ ଭାଗ, ୨୪ । ୭ । ୧୮୮୦, ସଂଖ୍ୟା ୩୦ )

୬୯ । ପୁରୀଠାରୁ ଗତ ରଥଯାତ୍ରା ସମ୍ପର୍କରେ ଏକବ୍ୟକ୍ତି ଲେଖିଅଛନ୍ତି କି ମହାନ୍ତ ନାରାୟଣ ଦାସ ଏବଂ ବାବୁ ତାରିକାନ୍ତ ବିଦ୍ୟାସାଗର ଦେଉଳର ସେବକ ପ୍ରଭୃତିଙ୍କୁ ଡକାଇ ଏକ ଗୃହ ଚକ୍ରଯୁକ୍ତ ଯାନ ରଥ ଅଥବା ଗାଡ଼ିରେ ଠାକୁରମାନଙ୍କୁ ଗୁଣ୍ଡିଚା ମନ୍ଦିରକୁ ନେଇଯିବାର ପରାମର୍ଶ କରିଥିଲେ । ଊନବିଂଶ ଶତାବ୍ଦୀର ଉଜ୍ଜ୍ୱଳ ଭାରତରେ ପଡ଼ି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଭାବ ଭକ୍ତମାନେ ଯେ ଏକସମୟରେ ମହାପ୍ରଭୁଙ୍କୁ ମନୁଷ୍ୟ ଟାଣିବାର ରଥ ଛଡ଼ାଇ ଘୃହ ଘୋଡ଼ାର ଟଣା ଗାଡ଼ିରେ ବସାଇ ଗୁଣ୍ଡିଚା ମନ୍ଦିରକୁ ନେଇଯିବେ ଏହା ଅସମ୍ଭବ ବା ଅସଙ୍ଗତ କଳ୍ପନା ବୋଲି ବୋଲି ଯାଇନପାରେ କିନ୍ତୁ ପ୍ରାଚୀନ ଓ ଶାସ୍ତ୍ରଜ୍ଞ ବ୍ୟକ୍ତିଙ୍କ ମନରେ ଆଜିହୁଁ ଏକଥା ଉଦୟ ହେବାର ଶୁଣିବା ବଡ଼ କୌତୁକଜନକ ଅଟଇ । ଧନ୍ୟ କଳିକାଳ !

୭୦ । ପୁରୀ ରଥଯାତ୍ରା

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଗୁଣ୍ଡିଚା ଯାତ୍ରା କୌଣସିମତେ ନିର୍ବାହ ହେଲା କିନ୍ତୁ ଦୁଃଖର ସହିତ ଅବଗତ ହେଲୁଁ ଯେ ହାକିମମାନେ ଏଥିର ଯଥାସାଧ୍ୟ ବାଧା ଦେବାକୁ ତ୍ରୁଟି କରିନାହାନ୍ତି । ଗଳିତମାସ ତା ୧୪ ରିଖରେ ବଳଦେବଜିଙ୍କ ରଥ ମାଉସୀ ମାଆ ଘରଠାରେ ଖହିନ୍ଦୁ ପୁଲିସ ସାହେବଙ୍କ ଆଜ୍ଞାରେ ସେହିଠାରେ ରହିଲା । ତହିଁର ଆରଦିନ ସକାଳେ ସୁଭଦ୍ରାଙ୍କ ରଥ ବଳଗଣ୍ଡିଠାରେ ପହୁଞ୍ଚିବା ମାତ୍ରକେ ପୁଲିସ ସାହେବ ରଥଟଣା ବନ୍ଦକରି ଘରକୁ ଗଲେ । ଲୋକମାନେ କଚେରୀକୁ ଯାଇ ମାଜିଷ୍ଟ୍ରେଟଙ୍କ ନିକଟରେ ଗୁହାରି କଲେ ମାତ୍ର ସାହେବ ତାହାଙ୍କ କଥା ଗ୍ରାହ୍ୟ କଲେନାହିଁ । ସୁତରାଂ ସମସ୍ତେ ଅତ୍ୟନ୍ତ ମନସ୍ତାପରେ ଫେରିଆସିଲେ । ଭାଗ୍ୟରୁ ଏହି ସମୟରେ ଗବର୍ଣ୍ଣମେଣ୍ଟଙ୍କ ତାରଡ଼ାକ ଆଜ୍ଞା ପ୍ରବେଶ ହେଲା । ତହୁଁ ମାଜିଷ୍ଟ୍ରେଟ ଏବଂ

ପୁଲିସ ସାହେବଙ୍କ କଦଂ ଭଙ୍ଗିଲା ଏବଂ ସେ ସମୟରେ ଭାରି ବୃଷ୍ଟି ହେଉଥିଲେହେଁ ସାହେବମାନେ ତାହା ନମାନି ଘୋଡ଼ା ଚଢ଼ି ବଡ଼ଦାଣ୍ଡକୁ ଯାଇ ରଥ ଟଣାଇବାର ବନ୍ଦୋବସ୍ତ କଲେ । ଜଗନ୍ନାଥଙ୍କ ରଥ ମାଉସି ମାଆ ଘରଠାରେ ପହୁଞ୍ଚାଇ ଦେଇ ବଳଦେବ ଓ ସୁଭଦ୍ରାଙ୍କ ରଥମାନ ଗୁଣ୍ଡିଚା ଘର ଦ୍ୱାରରେ ରାତ୍ର ଆଠଘଣ୍ଟା ବେଳେ ପହୁଞ୍ଚାଇଲେ । ରାତ୍ରରେ ମଶାଲ ଲଗାଇ ରଥଟଣା କେବେ ଦେଖାଯାଇ ନଥିଲା । ସାହେବଙ୍କ ହୁକୁମ ମତେ ରାଣୀ ଟେଗା ୪୦ ଟା ମଶାଲ ଜଳାଇ ଦେଇଥିଲେ । ଯେଉଁ ରଥମାନ ବଳରେ ଟାଣିବା ଏତେ ଜନପଦଜନଙ୍କ ସେସବୁ କି ସାହସରେ ହାକିମମାନେ ରାତ୍ରିରେ ଟଣାଇଲେ ତାହା ପାଠକମାନେ ବିବେଚନା କରିବେ । ଯାହାହେଉ ସେଦିନ କୌଣସିମତେ ଦୁର୍ଘଟନା ହୋଇନାହିଁ । ତହିଁ ଆରଦିନ ସକାଳୁ ରଥଟଣା ଆରମ୍ଭ ହୋଇ ବେଳ ଘ ୧୧ ଣ୍ଟା ସମୟରେ ଶ୍ରୀଜଗନ୍ନାଥଙ୍କ ରଥ ଗୁଣ୍ଡିଚା ମନ୍ଦିରରେ ପହୁଞ୍ଚିଲା । ଏପରି ଗୁଣ୍ଡିଚା ମନ୍ଦିରରେ ଠାକୁରମାନେ ପହଞ୍ଚି ପାରିନଥିଲେ ୧୨ ବର୍ଷ ଦାଣ୍ଡରେ ରହନ୍ତେ । କୌଣସି ମତେ ତାହା ନିବାରଣ ହୋଇଅଛି ଏବଂ ହାକିମମାନେ ଆଉ କିଛି କଷ୍ଟ ସ୍ୱୀକାର କରିଥିଲେ ରଥ ପହୁଞ୍ଚିବା ମାତ୍ରକେ ପହଣ୍ଡି ବିଜେ ହୋଇଥାନ୍ତା । କିନ୍ତୁ ତାହା ନହୋଇ ଅପରାହ୍ଣ ଘ ୩ ଣ୍ଟା ସମୟରେ ପହଣ୍ଡି ବିଜେ ହେଲା ଏବଂ ତଦ୍ଦ୍ୱାରା ଜନତମାନ କ୍ଳେଶରେ ହେବାରୁ ଯାତ୍ରୀଙ୍କର ବିଶେଷ କଷ୍ଟ ହେଲା ।

ଏହିରୂପେ ଗୁଣ୍ଡିଚା ଯାତ୍ରା ନିର୍ବାହିତ ହେଲା । ଏଥର ବ୍ୟକ୍ତିଙ୍କୁ ଏଥିକି ଏ ଯାତ୍ରା ନିୟମାନୁସାରେ ହେବା ପକ୍ଷରେ ଯେତେ ବ୍ୟାଘାତ ଓ ବିଳମ୍ବ ହେଲା ତହିଁର ଦାୟୀ କିଏ ? ବିଚାରକ ଲୋକ ମାତ୍ରକେ ନିଶ୍ଚୟ କହିବ ଯେ ଏ ଦୋଷ ହାକିମ-ଙ୍କର ଅଟଇ । ପ୍ରଥମେ ମାଜିଷ୍ଟ୍ରେଟ ସାହେବ ଏ କାର୍ଯ୍ୟର ଗୁରୁତ୍ୱ ବୁଝି ଯାତ୍ରା ସମୟରେ ତହିଁ ପ୍ରତି ମନୋଯୋଗୀ ହୋଇନାହାନ୍ତି । ସେ ମନୋଯୋଗୀ ହୋଇଥିଲେ ବାରିକ୍-ମାଷ୍ଟରଙ୍କ ସାର୍ଟିଫିକେଟ ଶେଷ ସମୟ ପର୍ଯ୍ୟନ୍ତ ପଡ଼ି ରହି ନଥାନ୍ତା ଏବଂ ଯଦ୍ୟପି ସେ ସ୍ୱୟଂ ଆସି ଖାଲି ରଥ ସିଂହଦ୍ୱାରୁ ଯୌନ୍ତ ଟଣା ହେବା ସମୟରେ ଦେଖିଥାନ୍ତେ ତେବେ ରଥଗଡ଼ା କାର୍ଯ୍ୟରେ ଦୋଷ ନହିବାର ବିଲକ୍ଷଣ ଭଲରେ ଜାଣି ପାରିଥାନ୍ତେ ଓ ପଣ୍ଡାନ୍ତ-ଙ୍କ ମାସ୍ତରରୁ ବାଧା ଦେବାର ଚେଷ୍ଟା ହେଉଥିଲା ମଧ୍ୟ ତାହା ସଫଳ ହୁଅନ୍ତା ନାହିଁ । ଦ୍ୱିତୀୟତଃ ବାରିକ ମାଷ୍ଟର ମହାକୁମାରୁ ଯଥା ସମୟରେ ରଥ ଦେଖିବା ଓ ତହିଁରେ କିଛି ଦୋଷ ଥିଲେ ତାହା ସଂଶୋଧନ କରାଇବାର ଚେଷ୍ଟା ହୋଇଥାନ୍ତା । ଓଭର-ସିୟର ପ୍ରତି ସଦର ଅଫିସରୁ ଉର୍ଦ୍ଦି ଥିଲେ ସେ କଦାଚ ଯାତ୍ରା ସମୟରେ ବାଧା ଦେଇ ପାରନ୍ତେ ନାହିଁ ଏବଂ ତାହାଙ୍କର ତଦାରଖ ଯେ ଅତ୍ୟନ୍ତ ଅକର୍ମଣ୍ୟ ସେ ବିଷୟରେ କିଛି ସନ୍ଦେହ ନାହିଁ କାରଣ ସ୍ୱୟଂ ରଥମାନେ ନିର୍ବିଘ୍ନରେ ଚାଲି ଯିବାହାର ତହିଁର ସାକ୍ଷ ଦେଉଅଛନ୍ତି । ଏମନ୍ତ ଗୁରୁତର କାର୍ଯ୍ୟରେ ଜଣେ ଓଭରସିୟର ଉପରେ ନିର୍ଭରକରିବା

ବାବୁକ ମାସ୍ତରୀ ସାହେବଙ୍କର ଉଚିତ ହୋଇନାହିଁ । ବିଶେଷତଃ ପୁଲିସ ସାହେବଙ୍କର ଅଯଥା କଣ୍ଟ୍ରିକ୍ଟ କରିବାର ଉଚିତ ନଥିଲା । ଶାନ୍ତିରକ୍ଷା ତାହାଙ୍କର କାର୍ଯ୍ୟ ଏଥିପାଇଁ ସେ ରଥଟଣା ସମୟରେ ଉପସ୍ଥିତ ରହନ୍ତେ । ତାହାଙ୍କର ସୁବିଧା ସକାଶେ ସାଧାରଣଙ୍କର ଧର୍ମ ସମ୍ପର୍କୀୟ କାର୍ଯ୍ୟ ସ୍ଥଗିତ ରଖିବାର ଉଚିତ ହୋଇନାହିଁ । ଆମ୍ଭେମାନେ ଶୁଣି ଆନନ୍ଦିତ ହେଲୁଁ ଯେ ମାନ୍ୟବର ଲେପ୍‌ଟେନାଣ୍ଟ ଗବର୍ଣ୍ଣର ଏଥିର ତଦନ୍ତ ଆରମ୍ଭ କରଅଛନ୍ତି ଏବଂ ଭରସା କରୁଁ ଯେ ଭବିଷ୍ୟତକୁ ଏପରି ଗୋଲମାଳ ନିବାରଣ ପକ୍ଷରେ ବିହିତ ଉପାୟ କରିବେ ।

ଏ ପ୍ରସ୍ତାବ ଲେଖା ହେଲା ଉତ୍ତାରୁ ଅବଗତ ହେଲୁଁ ଯେ ବାହୁଡ଼ା ଦଶମୀ ଦିନ ରଥମାନ ଦକ୍ଷିଣ ମୁଖା ହେବାର ତେଣିକି ଆଜ ଗତ ବୁଧବାର ପର୍ଯ୍ୟନ୍ତ ତାହା ହୋଇନଥିଲା । ସୁତରାଂ ଠାକୁରମାନେ ଅବଧି ମନ୍ଦିରକୁ ଫେରି ଆସିବାର ସମ୍ଭବ ନାହିଁ । ଏଥିରେ ଯେ ଅନ ମହାପ୍ରସାଦ ବିନା ଲୋକଙ୍କର କେତେ କଷ୍ଟ ହେଉଥିବ ବୋଲିପାଇ ନପାରେ । ପୁଲିସର ଶୈଥିଲ୍ୟ ଏଥିର କାରଣ ଅଟଇ ଓ କହିତ ହୁଅଇ ଯେ ମ୍ୟାନେଜର କମିଶ୍ନର ଓ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବାରୁ ପୁଲିସ ଓ ମାଜିଷ୍ଟ୍ରେଟ ଉଭୟ ତାହାଙ୍କ ଉପରେ ରାଗାନ୍ୱିତ ହୋଇଅଛନ୍ତି । ପୁଲିସ କର୍ମଚାରୀମାନେ ବାରଟା ବେଳେ ଆସି ପାଞ୍ଚଟା ବେଳେ ଫେରିଗଲେ କଦାଚ ଏ କର୍ମ ସମାଧା ହେବାର ନୁହଇ । ଆମ୍ଭେମାନେ ଆଶା କରୁଁ କି ନୂତନ କମିଶ୍ନର ଏଥିର ବିହିତ ବନ୍ଦୋବସ୍ତ କରି ଦେବେ ।

( ୧୪ଶ ଭାଗ, ୧୪ । ୮ । ୧୮୮୦, ସଂଖ୍ୟା ୩୩ )

୭୧ । ପୁରୀର ରଥ ମାମଲା ।

ପୁରୀ ରଥ ଯାତ୍ରାରେ ହାକିମଙ୍କ ଅନ୍ୟାୟ ହସ୍ତକ୍ଷେପଣ ବିଷୟରେ ଗବର୍ଣ୍ଣମେଣ୍ଟ ରିପୋର୍ଟ ତଲବ କରିଥିବାରୁ ଆମ୍ଭେମାନେ ଦୃଢ଼ ଆଶା କରିଥିଲୁଁ ଯେ ଏ ବିଷୟର ଉତ୍ତମ ତଦନ୍ତ ହେବ ଏବଂ ପର ଏସବୁ ଉତ୍ପାତ ଯେପରି ପୁନର୍ବାର ନ ହୁଏ ତହିଁରେ ଅଧିକ ଆଶା ଥିଲା ଯେ ସେ ଏ ଗୁରୁତର ବିଷୟକୁ ସାମାନ୍ୟରେ ଛାଡ଼ି ଦେବେନାହିଁ ମାତ୍ର ଆମ୍ଭେମାନେ ଆଶ୍ଚର୍ଯ୍ୟ ହୋଇ ସମ୍ବାଦ ପତ୍ରରେ ପାଠକଲୁଁ ଯେ ଗବର୍ଣ୍ଣମେଣ୍ଟ ଏ ବିଷୟର କିଛି ମାତ୍ର ତଦନ୍ତ କଲେନାହିଁ । ପୁରୀର ମାଜିଷ୍ଟ୍ରେଟ ଯେଉଁ କୈଫିୟତ କମିଶନରଙ୍କ ନିକଟକୁ ପଠାଇଲେ ତହିଁର ଏକ ପ୍ରସ୍ତ ନକଲ ପତ୍ରଦ୍ୱାରାରେ ଗବର୍ଣ୍ଣମେଣ୍ଟଙ୍କୁ ପଠାଇଦେଲେ ଓ ଲେପ୍‌ଟେନାଣ୍ଟ ଗବର୍ଣ୍ଣର ସେହି ରିପୋର୍ଟ ଉପରେ

ଏକତରଫା ବିଚାର କରି ତାହାଁର ଉତ୍ତରପତ୍ରରେ ଲେଖିଦେଲେ ଯେ ସବୁ ଦୋଷ ମ୍ୟାନେ-
ଜରଙ୍କର ଅଟଇ । ଆର୍ମଷ୍ଟ୍ରଂ ସାହେବ ସଫେରଙ୍କ ଖେଳରେ ମଜବୁତ ହେତୁ ଏକ ବେଗୁ
ବୃଳରେ କସ୍ତ ମାଡ଼କଲେ ଏବଂ ଷ୍ଟ୍ରେଟ ଲାଟଙ୍କୁ ଏମନ୍ତ ଭ୍ରମାଇ ଦେଲେ ଯେ କମିଶନରଙ୍କ
ରିପୋର୍ଟ ପାଇବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଇଚ୍ଛୁକ ହେଲେ । କମିଶନର ଏଣେ
ମ୍ୟାନେଜର ଠାରୁ ଜବାବ ନେଇ ବିଚାର କରୁଅଛନ୍ତି, ତେଣେ ଷ୍ଟ୍ରେଟ ଲାଟଙ୍କର
ବିଚାର ଶେଷ ହୋଇଗଲା । ଏପରି ଚମତ୍କାର ବିଚାର ଆମ୍ଭେମାନେ କେବେ ଦେଖିନାହୁଁ ।
ଆପଣା ୨ ଦୋଷ ସମସ୍ତେ ଘୋଡ଼ାଇବାକୁ ଚେଷ୍ଟା କରନ୍ତି ଏହି ମାମଲାରେ ହାକିମ
ଓ ମ୍ୟାନେଜର ଉଭୟଙ୍କର ଅଥବା ଏକପକ୍ଷର ଦୋଷ ଥାଇପାରେ କିନ୍ତୁ ବିଚାର-
କର୍ତ୍ତାଙ୍କର କାର୍ଯ୍ୟ ଯେ କିଏ କି ପରିମାଣରେ ଦୋଷୀ ତାହା ଉଭୟ ପକ୍ଷର କଥା ଶୁଣି
ଠିକଣାଇଦେବା ଓ ଯେବେ ତାହା ନହେଲା ତେବେ କପରି ସେ ବିଚାରରେ ସର୍ବ-
ସାଧାରଣଙ୍କ ତୃପ୍ତିଲାଭ ହେବ । ବାସ୍ତବରେ ଏମନ୍ତ ଗୁରୁତର ବିଷୟକୁ ଯେପ୍ରକାର
ସାମାନ୍ୟରେ ଲେଫ୍ଟେନାଣ୍ଟ ଗବର୍ଣ୍ଣର ନିଷ୍ପତ୍ତି କରିଦେଇ ଅଛନ୍ତି ତହିଁରେ ଯେ ଅବଶ୍ୟ
ହିନ୍ଦୁମାନେ ହତାଶ ହୋଇଅଛନ୍ତି ବୋଲିବା ବାହୁଲ୍ୟ ।

ଆମ୍ଭେମାନେ ଶ୍ରୀଯୁକ୍ତ ଆର୍ମଷ୍ଟ୍ରଂ ସାହେବଙ୍କ କୈଫିୟତ ଆଦ୍ୟପ୍ରାନ୍ତ
ପାଠ କରିଅଛୁଁ । ତହିଁରେ ଲେଖାଅଛି ଯେ ମଇମାସ ତା ୨୯ ରିଖ ଠାରୁ
ଜୁଲାଇମାସ ତା ୭ ରିଖ ପର୍ଯ୍ୟନ୍ତ ସେ ଅନେକ ପରୱାନା ଓ ତାଗିଦ ମ୍ୟାନେଜର
ଓ ରାଣୀଙ୍କ ନିକଟକୁ ରଥ ନିର୍ମାଣ ବିଷୟରେ ପଠାଇ ଥିଲେ ମାତ୍ର ସେମାନେ କୌଣସି
ଆଜ୍ଞା ମାନ୍ୟକଲେ ନାହିଁ । ତା ୮ ରିଖ ସେ ଓ ପୁଲିସ ସାହେବ ଦୁହେଁ ରଥ ଦେଖିଲେ
ଏବଂ ତା ୨୫ ରିଖ ଜୁନ ଉତ୍ତାରୁ ବାରିକ ମାସ୍ତର ଠାରୁ କିଛି ଶୁଣି ନ ଥିବାରୁ
ସେ ସ୍ୱୟଂ ଯାତ୍ରା ହେବାର ଅନୁମତ ଦେଲେ । କେବଳ ସେ ଗୋଟାଏ ନୂତନ
କାଠ ଲଗାଇବାକୁ ଆଜ୍ଞା ଦେଲେ ମାତ୍ର ତାହା ମୁଦ୍ଧା ପ୍ରତିପାଳନ
ହେଲା ନାହିଁ କାରଣ ତହିଁ ଆରଦିନ ଦେଖାଗଲା ଯେ ନୂତନ କାଠ ପ୍ରସ୍ତୁତ ଥିଲେ
ମୁଦ୍ଧା ପୁରୁଣା କାଠ ଲାଗିଥିଲା । ଆଉ ଏ ସ୍ଥଳରେ ଲେଖାଅଛି କି ବାରିକ ମାସ୍ତର
ସାହେବ ସେହି ଦିନ ଆସି ରଥମାନ ଆପଦଜନକ ଥିବାର ସ୍ପଷ୍ଟ ରୂପେ କହିବାରୁ
ସେ ଯାତ୍ରା ବନ୍ଦ କଲେ । ପୁଣି ଏକ ସ୍ଥାନରେ ଲେଖାଅଛି ଯେ କେବଳ ଦୁଇ
ଏକ ଘଣ୍ଟାର କାର୍ଯ୍ୟଥିଲା ଓ ତାହା ପୂର୍ବରୁ ନ ହେବା ଆଶ୍ଚର୍ଯ୍ୟର ବିଷୟ ଅଟଇ ।

ଆମ୍ଭେମାନେ ମାଜିଷ୍ଟ୍ରେଟ ସାହେବଙ୍କ ପରୱାନା ଓ ମ୍ୟାନେଜର
ଓ ରାଣୀଙ୍କର କୈଫିୟତମାନ ଦେଖିଅଛୁଁ ଓ କୌଣସି ଆଜ୍ଞା ପ୍ରତିପାଳନ ନ ହେବାର
କିଛି ନିଦର୍ଶନ ପାଇନାହୁଁ । ବରଂ ରଥ ନିର୍ମାଣ ପକ୍ଷରେ କିଛି ଆଦେଶ ହୋଇ

ନଥିବାର ପ୍ରକାଶ ପାଏ । ଫଳତଃ ଯେବେ ମ୍ୟାନେଜର କରଣୀ କୌଣସି ଆଜ୍ଞା ମାନ୍ୟ ନକଲେ ତେବେ ପୂର୍ବରୁ ତାହା କମିଶନର ବା ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବା କି ମାଜିଷ୍ଟ୍ରେଟଙ୍କର କର୍ତ୍ତବ୍ୟ ନଥିଲା ? ସେ କଥାର କିଛିମାତ୍ର ଉଲ୍ଲେଖ ହୋଇନାହିଁ । ଏଥର ମାଜିଷ୍ଟ୍ରେଟଙ୍କ ରିପୋର୍ଟରୁ ଯେ ସମସ୍ତ ପ୍ରଶ୍ନ ଜାତ ହୋଉଅଛି ଗବର୍ଣ୍ଣମେଣ୍ଟ ତହିଁର କିଛି ମାତ୍ର ଅନୁସନ୍ଧାନ ନକରି ଏତେ କଥାଟାକୁ ଅବଲୀଳା କ୍ରମେ ବିଶ୍ୱାସ କରିଦେଲେ ବଡ଼ ଆଶ୍ଚର୍ଯ୍ୟର ବିଷୟ ଅଟଇ । ସେ ସମସ୍ତ ପ୍ରଶ୍ନ ଏହି :—

ରଥରେ କି ଦୋଷଥିଲା ଓ ତାହା ସଂଶୋଧନ କରିବା କାରଣ କେବେ ମେନେଜରଙ୍କୁ ଆଦେଶ ହୋଇଥିଲା ଓ ପରିଶେଷରେ ତାହା କି ପ୍ରକାରରେ କେବେ ସଂଶୋଧିତ ହେଲା ? ବାରିକ ମାସ୍ତର ତା ୨୫ ରିଖ ଦିନରେ ଯେଉଁ ଦୋଷମାନ ଦେଖିଥିଲେ ତାହା ସେ ଅଥବା ମାଜିଷ୍ଟ୍ରେଟ ମେନେଜରଙ୍କୁ ଜଣାଇଥିଲେ କି ନାହିଁ ? ଯେବେ ଜଣାଇ ନଥାନ୍ତି ତେବେ ମେନେଜର ଦୋଷୀ ହୋଇପାରନ୍ତି କି ନାହିଁ ? ଆଜି ଯେବେ ଦୁଇ ଏକ ଘଣ୍ଟାର କାର୍ଯ୍ୟ ଥିଲା ତେବେ ତାହା ପାହାନ୍ତି ପ୍ରଥମ ଦିନରେ କି ସକାଶେ ନ ହେଲା ଓ ତାହା ସେହି ଦିନ କରିଇନେବା କାରଣ ମାଜିଷ୍ଟ୍ରେଟ ଅବା ପୁଲିସ କି ଚେଷ୍ଟା କରିଥିଲେ ଓ ମେନେଜର କି ବୋଲି ଅମାନ୍ୟ ଅଥବା ଆପତ୍ତି କଲେ ।

ଆମ୍ଭେମାନେ ଅବଗତ ହୋଇଅଛୁଁ ଯେ ତେଭିସ ସାହେବ ବାରିକ ମାସ୍ତର ରଥର ଚକ, ଅଖ, ଆଡ଼, ଓ ସାମନା କାଠ ଇତ୍ୟାଦି ସବୁ ମନ୍ଦ ହୋଇବାର ସାର୍ଟିଫିକେଟ ଦେଇଥିଲେ । ଏ ସମସ୍ତ ତା ୨୫ ରିଖ ଦିନ କିମ୍ବା ତହିଁ ଉତ୍ତାରୁ ମେନେଜରଙ୍କୁ କେହି କହିନାହିଁ କେବଳ ଅନେକ କାଠ ସମ୍ପର୍କରେ କେତେକ ଅନିର୍ଣ୍ଣିତ ଆଦେଶ ହୋଇଥିଲା । ପ୍ରକୃତରେ ରଥର କିଛି ମାତ୍ର ପରିବର୍ତ୍ତନ ହୋଇନାହିଁ ଓ ହେବାର ସମ୍ଭବ ନଥିଲା କାରଣ ଠାକୁରମାନେ ସେସମୟରେ ରଥରେ ବିଜେ କରିଥିଲେ; କେବଳ କଥା ରକ୍ଷିବାକୁ ଅନେକ କାଠ ଖୋଲିବା ବିଷୟରେ ନାମମାତ୍ର ପରିବର୍ତ୍ତନ ହୋଇଥିଲା ଓ ତହିଁ ସକାଶେ ଯାତ୍ରା ମୁହୂର୍ତ୍ତକ ବନ୍ଦ ହେବାର କୌଣସି କାରଣ ନଥିଲା । ହାକିମମାନେ ଚଢ଼ିଯୋଡ଼ି କରି ଚଡ଼ କଲେ, ଶେଷରେ ସେହି ରଥ ଗଲା ଓ ଆସିଲା କିଛି ବ୍ୟାଘାତ ହେଲା ନାହିଁ କିନ୍ତୁ କଥା ପଡ଼ିଲା ବେଳକୁ ସବୁ ଦୋଷ ମେନେଜରର ମୁଣ୍ଡରେ ଗଲା । ବାସ୍ତବରେ ଯେ ପ୍ରବାଦ ଅଛି କି ବଡ଼ ଲୋକଙ୍କୁ ଉପରକୁ ନାହିଁ ଓ ସ୍ୱର୍ଗକୁ ନିଶୁଣି ନାହିଁ ତାହାହିଁ ଏଠାରେ ପ୍ରତ୍ୟକ୍ଷ ହେଲା । ଯେବେ ଗବର୍ଣ୍ଣମେଣ୍ଟ କେବଳ ମାଜିଷ୍ଟ୍ରେଟଙ୍କ ରିପୋର୍ଟରେ ସନ୍ତୁଷ୍ଟ ନ ହୋଇ ତାହାଙ୍କ ପର୍ଯ୍ୟାଲୋଚନା ଓ ତହିଁର ଜବାବମାନ ତଲବ କରି ଦେଖି ଥାଆନ୍ତି ତେବେ ଆମ୍ଭେମାନେ ନିଶ୍ଚୟ କରି କହିପାରୁଁ ଯେ ଏପରି

ଷବ୍ରୟର ବଗୃର ହୁଅନ୍ତା ନାହିଁ । ଯାହାହେଉ ସମସ୍ତ ବୃତ୍ତାନ୍ତ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବା ଉଚିତ ।

## ( ୧୫ଶ ଭାଗ, ୨୭ । ୧୧ । ୧୮୮୦, ସଂଖ୍ୟା ୪୭ )

୭୨ । ଭେଲ ନ ସୁସବୁ ପାଠକଙ୍କୁ ଯେ ସମ୍ବଲପୁରରେ ଟଙ୍କାକୁ ସେ ୪୪ ର ଚାଉଳ ବିକ୍ରୟ ହେଉଅଛି ।

## ( ୧୬ଶ ଭାଗ, ୧୯ । ୨ । ୧୮୮୧, ସଂଖ୍ୟା ୮ )

୭୩ । ସମ୍ପ୍ରତି ଏକଟଙ୍କାକୁ ସମ୍ବଲପୁରରେ ସେ ୪୨ ର ବିଲାସପୁରରେ ସେ ୪୦ ର ଜବଲପୁରରେ ସେ ୧୫ ର ଏବଂ ରାଞ୍ଚିରେ ସେ ୧୨ ର ଚାଉଳ ବିକ୍ରୟ ହେଉଅଛି, ବାଣିଜ୍ୟ ଦ୍ରବ୍ୟ ଗତାଗତର ସୁବିଧା ବାଟ ନଥିବାରୁ ଧାନର ଏ ପ୍ରକାର ଅସୁବିଧା ଦେଖାଯାଏ । ସମ୍ବଲପୁରରୁ ରେଲି କଲିକତାକୁ ଫିଟିଲେ ଆଉ ଏ ଦର ରହିବ ନାହିଁ ।

## ( ୧୬ଶ ଭାଗ, ୨ । ୪ । ୧୮୮୧, ସଂଖ୍ୟା ୧୪ )

୭୪ । ସାମ୍ବାଦିକ ସମ୍ବାଦ ।

ଗତ ଗଣନାରେ ଜିଲ୍ଲା ଅନୁଗୁଳର ଲୋକସଂଖ୍ୟା ୧୦୧୫୯୦ ହୋଇଅଛି ବୋଲି କଥିତ ହୁଏଇ ।

## ( ୧୬ଶ ଭାଗ, ୧୫ । ୧୦ । ୧୮୮୧, ସଂଖ୍ୟା ୪୧ )

୭୫ । ଉତ୍କଳୀୟ ଡେପୁଟୀ କଲେକ୍ଟର ।

ଆମ୍ଭେମାନେ ଗତ ସପ୍ତାହରେ ବାବୁ ହରେକୃଷ୍ଣ ଦାସ ଡେପୁଟୀ କଲେକ୍ଟରଙ୍କର ମୃତ୍ୟୁ ସମାଚାର ପାଠକମାନଙ୍କୁ ଜଣାଇଅଛୁଁ । ଏ ଶୋକାବହ ଘଟଣା ଦ୍ୱାରା ଓଡ଼ିଶାର ଗୋଟିଏ ହିର ଖଣ୍ଡ ହୋଇଅଛି । ବାବୁ ଯେମନ୍ତ ଆପଣା ବାହୁବଳ ଦ୍ୱାରା ଅଳ୍ପକାଳ ମଧ୍ୟରେ ସାମାନ୍ୟ କିରାଣି ଗିରିଠାରୁ ଡେପୁଟୀ କଲେକ୍ଟର ପର୍ଯ୍ୟନ୍ତ ଉଠିଥିଲେ ତେମନ୍ତ ଉଦାହରଣ ଅଳ୍ପ ଅଛି ଏବଂ ତାହାଙ୍କର କାର୍ଯ୍ୟକଳାପ ଓ

ବୃଦ୍ଧି ଦେଖି ଆଶା ହେଉଥିଲା ଯେ ସମୟରେ ସେ ଜଣେ ଉତ୍ତମ ହାକିମ ହୋଇ ଏ ଦେଶର ଗୌରବ ବୃଦ୍ଧି କରନ୍ତେ । ମାତ୍ର ଓଡ଼ିଶାର ଦୁର୍ଭାଗ୍ୟ ହେତୁରୁ ଯମ ତାହା ସହିଲା ନାହିଁ । ଏକ ଆଡ଼େ ହାକିମଙ୍କର ଅନାସ୍ଥା ଏବଂ ଅନ୍ୟ ଆଡ଼େ ଯମର ନିଷ୍ଠୁର ଅତ୍ୟାଗ୍ରହ ଏଥିରେ ଓଡ଼ିଶାର ଭାଗ୍ୟ କେବେ ଫିଟିବ ଆମ୍ଭେମାନେ ଭାବି ଆକୁଳ ହେଉଅଛୁଁ । ପଚ୍ଛ କଥା ଦେଶୀୟ ଥାଉ ଚଟ୍ଟଗ୍ରାମ ଶ୍ରେଣୀୟ ଶ୍ରୀଯୁକ୍ତ ସୋମ-ସାହେବ ଏଠାରେ କଲେକ୍ଟର ଥିଲାବେଳେ କେତେଜଣ ଡେପୁଟୀ କଲେକ୍ଟର ନିଯୁକ୍ତ କରି ଯାଇଥିଲେ । ତହିଁ ମଧ୍ୟରୁ ବର୍ତ୍ତମାନ ଏକମାତ୍ର ଜଗନ୍ମୋହନ ରାୟ ଅଛନ୍ତି ଏବଂ ସେ ଅତ୍ୟନ୍ତ ପ୍ରଶଂସାର ସହିତ କାର୍ଯ୍ୟକରି ଉଚ୍ଚପଦକୁ ଲଭି ଏତେବେଳେ ଓଡ଼ିଶାର ଟେକ ରଖିଅଛନ୍ତି । ତହିଁ ଉତ୍ତାରୁ ଶ୍ରୀଯୁକ୍ତ ରେଭେନସା ସାହେବ ଏକ ଯୁଗ ଏଠାରେ କମିଶ୍ନର ପଦରେ ରହିଲେ ଏବଂ ଓଡ଼ିଶାର ମଙ୍ଗଳ ନିମନ୍ତେ ଏହାଙ୍କର ଚିନ୍ତାର ବିଷୟ ଥିଲା ଏବଂ ଅନେକ ଗୁଡ଼ିଏ ହିତକର ଅନୁଷ୍ଠାନ କରିଥିଲେହେଁ ଏକା ବାବୁ ନନ୍ଦକିଶୋର ଦାସ ଛଡ଼ା ଆଉ କେତେଜଣ ଡେପୁଟୀ କଲେକ୍ଟର କରିବା ଦ୍ୱାରା ଏ ଦେଶର ମୁଖ ଉଜ୍ଜ୍ୱଳ କରିବାକୁ ଚେଷ୍ଟା କଲେ ନାହିଁ ଏବଂ ନନ୍ଦ-କିଶୋର ବାବୁ ଯେପରି ସୁଖ୍ୟାତି ସହିତ କାର୍ଯ୍ୟ କରୁଅଛନ୍ତି ତାହା କାହାକୁ ଅବିଦିତ ନାହିଁ । ବର୍ତ୍ତମାନ କମିଶ୍ନର ଶ୍ରୀଯୁକ୍ତ ସ୍ମିଥ ସାହେବଙ୍କ ଯତ୍ନରେ ନହେଉ ତାହାଙ୍କ ଅମଳରେ ଏକା ବାବୁ ହରେକୃଷ୍ଣ ଦାସ ଡେପୁଟୀ ପଦରେ ନିଯୁକ୍ତ ହୋଇ-ଥିଲେ ଏବଂ ସେ ଜଣେ ଭଲ ହାକିମ ହେବେ ବୋଲି ସମ୍ପୂର୍ଣ୍ଣ ଆଶା ଥିଲା । ଅତଏବ ଗତ କୋଡ଼ିଏ ବର୍ଷ ମଧ୍ୟରେ ନିଯୁକ୍ତ ହୋଇଥିବା ତିନିଜଣ ଉତ୍କଳୀୟ ଡେପୁଟୀ କଲେକ୍ଟର ଯୋଗ୍ୟତା ସହିତ କାର୍ଯ୍ୟ କରିଥିଲେହେଁ ଏପରି ଡେପୁଟୀଙ୍କ ସଂଖ୍ୟା ବୃଦ୍ଧି ନହେବା ଅତ୍ୟନ୍ତ ଦୁଃଖର ବିଷୟ ଅଟଇ ଏବଂ ଏହା ଯେ କେବଳ ହାକିମଙ୍କ ଅମନୋଯୋଗରୁ ହେଉନାହିଁ ଏକଥା ବୋଲିବା ବାହୁଲ୍ୟ । ଉତ୍କଳୀୟ ଡେପୁଟୀ କଲେକ୍ଟରଙ୍କ ସଂଖ୍ୟା ବୃଦ୍ଧି ନହେଲେ ଦେଶର ମଙ୍ଗଳ ହେବ ନାହିଁ କାରଣ ଜନ ସାଧାରଣ ଏବଂ ଉଚ୍ଚ ହାକିମଙ୍କ ମଧ୍ୟରେ ଏମାନେ ମଧ୍ୟସ୍ଥ ଅଟନ୍ତି । ଏହାଙ୍କ ଦ୍ୱାରା କଲେକ୍ଟର ଓ କମିଶ୍ନରମାନେ ଦେଶର ପ୍ରକୃତ ଅବସ୍ଥା ଏବଂ ଲୋକଙ୍କର ମନୋଭାବ ଜାଣି ପାରିବେ । ଅତଏବ ଆମ୍ଭେମାନେ ଶ୍ରୀଯୁକ୍ତ କମିଶ୍ନର ସାହେବଙ୍କୁ ନିତାନ୍ତ ଅନୁରୋଧ କରୁଅଛୁଁ ଯେ ବାବୁ ହରେକୃଷ୍ଣ ଦାସଙ୍କ ପଦରେ ଆଉ ଜଣେ ଏ ପ୍ରଦେଶୀୟ ବ୍ୟକ୍ତିଙ୍କୁ ନିଯୁକ୍ତ କରାଇ ଦେଉନ୍ତୁ ଏବଂ ଉତ୍କଳୀୟ ଡେପୁଟୀ କଲେକ୍ଟରଙ୍କ ସଂଖ୍ୟା ବୃଦ୍ଧି ବିଷୟରେ ସର୍ବଦା ଯତ୍ନବାନ୍ ହେଉନ୍ତୁ । ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଯେ ସେ ଚେଷ୍ଟାକଲେ ତାହା ସଫଳ ହେବ । କେବଳ ଗୁଡ଼ିଏ ପର ଡେପୁଟୀ ଦ୍ୱାରା ଓଡ଼ିଶାକୁ ଭର୍ତ୍ତିକଲେ କିଛି ହେବ ନାହିଁ ।

## ବାଲେଶ୍ୱର ସମ୍ବାଦ ବାହିକା

### ( ୭ମ ଭାଗ, ୧୭।୧୨।୧୮୭୪, ସଂଖ୍ୟା ୯ )

୭୬ । ବାବୁ ବନମାଳୀ ସିଂହ ଅନୁଗୁଳର ତହସିଲଦାରୀ କର୍ମରେ ଇସ୍ତଫା ଦେଇ ପୁନର୍ବାର ଢେଙ୍କାନାଳ ମହାରାଜାଙ୍କ ଦେଓ୍ୱାନ ପଦରେ ନିଯୁକ୍ତ ହୋଇଅଛନ୍ତି । ଢେଙ୍କାନାଳର ମହାରାଜା ତାହାଙ୍କୁ ମାସିକ ଟ ୨୫୦୲ ବେତନ ଦେବେ ଓ ମହାରାଜା ତାହାଙ୍କୁ ସରକାରୀ କର୍ମରୁ ଛଡ଼ାଇ ନେଲେ ବୋଲି ଏକା-ଥରକେ ଟ ୨୨୫୦୦୲ଙ୍କା ଦାନ କରିବେ ଯେ ଏହି ଟଙ୍କାର ସୁଧ ମାସକୁ ଟ ୭୫୲ଙ୍କା ହେବ । ଏକୁଟ ଟ ୨୫୲ଙ୍କା ବନମାଳୀ ବାବୁଙ୍କର ବେତନ ହେଲା ବୋଲିବାକୁ ହେବ । ସେ ତହସିଲଦାରୀ କର୍ମରେ ବଶରେ ରହି ଟ ୨୦୦୲ଙ୍କା ବେତନ ପାଉଥିଲେ ଏବେ ଏଣେ ରହି ଅଧିକା ଟ ୨୫୲ଙ୍କା ବେତନ ପାଇବେ । ବନମାଳୀ ବାବୁ ଯେ ପର୍ଯ୍ୟନ୍ତ ଦେଓ୍ୱାନ କରିବେ ସେ ପର୍ଯ୍ୟନ୍ତ ଟ ୨୨୫୲ଙ୍କା ପାଇବେ ଓ ତାହାଙ୍କ ଉତ୍ତରା-ଧିକାରୀମାନେ ଉକ୍ତ ଟଙ୍କାର ଉପସ୍ୱତ୍ତ୍ୱ ଟ ୭୫୲ଙ୍କା ଭୋଗ କରିବେ । ପାଠକେ ! ଏଥିରୁ ଢେଙ୍କାନାଳର ମହାରାଜାଙ୍କର ଅସାଧାରଣ ଉଦାରଚିତ୍ତତା ଓ ଗୁଣଗ୍ରାହିତା ପ୍ରକାଶ ପାଉଅଛି । ଯେବେ ଓଡ଼ିଶାର ଅନ୍ୟାନ୍ୟ ରାଜାମାନେ ପ୍ରଶଂସିତ ମହାରାଜାଙ୍କ ଅନୁକରଣ କରନ୍ତେ ତେବେ ଉପଯୁକ୍ତ ଅମାତ୍ୟ ହେତୁରୁ ଓଡ଼ିଶାର ଗଡ଼ଜାତର ଦୁରବସ୍ଥା ଏକାବେଳକେ ଦୂର ଯାଆନ୍ତା ସନ୍ଦେହ ନାହିଁ ।

### ( ୧୧ଶ ଭାଗ, ୮।୮।୧୮୭୮, ସଂଖ୍ୟା ୩୨ )

୭୭ । ବିଜ୍ଞାପନ

ଆମ୍ଭମାନଙ୍କ ମାତୃଭାଷାରେ ଯେଉଁ ସବୁ ଅକ୍ଷର ଓ ଯୁକ୍ତାକ୍ଷର ଅଛି, ସେଥି ମଧ୍ୟରୁ କେତେକ ଅକ୍ଷରର ଟାଇପ ଅବଧି ଗଢ଼ା ହୋଇ ନଥିଲା । ମୁଁ ସେଥିମଧ୍ୟରୁ ହିକ ଗୃବ ପ୍ରକାର ଟାଇପ ଗଢ଼ାଇ ଅଛି । ସୁଖର ବିଷୟ ଯେ କଟକ ମିଶନରୀ ଯନ୍ତ୍ରାଳୟକୁ ଛଡ଼ା ସମସ୍ତ ଯନ୍ତ୍ରାଳୟରେ ସେହି ଟାଇପମାନ ବ୍ୟବହୃତ ହେଉଅଛି । ସମ୍ପ୍ରତି ଏହି ବର୍ଣ୍ଣମାନଙ୍କର ଟାଇପ ଗଢ଼ାଇ ଅଛି ଯଥା :— ଝୁ ର୍ଣ୍ଣ ଇତ୍ୟାଦି । ସେହି ବର୍ଣ୍ଣମାନ ଶ୍ରୀରାମପୁର ନିବାସୀ ଅଧର ଚନ୍ଦ୍ର କର୍ମକାରଙ୍କ କାରଖାନାରେ ବିକ୍ରୟ ନିମନ୍ତେ ପ୍ରସ୍ତୁତ

ଅଛି । ଭରସା କରେଁ, ଓଡ଼ିଶାର ପତ୍ରାଳୟର ଅଧିକାରୀମାନେ ସେହି ବର୍ତ୍ତମାନ ଅଣାଇଁ ସୁତ୍ତକାଦରେ ପ୍ରୟୋଗ କରିବେ । ଆମ୍ଭର ଟକେତେକ ପ୍ରସ୍ତାବର ଶୀଘ୍ର କରାଯିବ ।

ଶ୍ରୀ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ

## ( ୧୧ଶ ଭାଗ, ୨୭ । ୯ । ୧୮୭୮. ସଂଖ୍ୟା ୩୯ )

୭୮ । ଆଗାମୀ ବର୍ଷରୁ ଭାରତ ବର୍ଷରେ ଏକ ପ୍ରକାର କାର୍ଡ ( ଟିକେଟ ) ପ୍ରଚଳିତ ହେବ । ତାହା ଦ୍ୱାରା ଅତି ଅଳ୍ପ ବ୍ୟୟରେ ସକଳ ଲୋକଙ୍କ ଠାରୁ ସମ୍ବାଦ ପାଇ ଆସି ପାରିବ । ଗୋଟିଏ ପଇସା ଦେଲେ ସେହି କାର୍ଡ଼ ଯୋଗେ ସମସ୍ତ ଭାରତବର୍ଷ ଏବଂ ଯୋଡ଼ିଏ ପଇସା ଦେଲେ ସମସ୍ତ ଇଂରେଜରୁ ସମ୍ବାଦ ଆସିପାରିବ ଓ ପାଇପାରିବ । ପୋଷ୍ଟାଲ ବିଭାଗ ଦ୍ୱାରା ଦିନକୁ ଦିନ ସାଧାରଣଙ୍କର ଉପକାର ହେଉଅଛି ବଡ଼ ଆନନ୍ଦର ବିଷୟ ।

## ଉତ୍କଳ ପତ୍ର

## ( ୧ମ ଭାଗ, ୧ । ୪ । ୧୮୬୩, ସଂଖ୍ୟା ୨ )

୭୯ । ସମ୍ବାଦ

ରଙ୍ଗଲାଲ ବାନୁର୍ଯୀ କଟକସ୍ଥ ଭୂତପୂର୍ବ ଡେପୁଟୀ କଲେକ୍ଟର ପୁନର୍ବାର ଉକ୍ତ କାର୍ଯ୍ୟରେ ନିଯୁକ୍ତ ହୋଇ କଟକକୁ ଆସିଅଛନ୍ତି । ଏ ବାବୁ ଉତ୍କଳ ବଙ୍ଗାଳର ପୃଷ୍ଠ ସମୟରେ ଅତି ପ୍ରଶଂସନୀୟ ନ୍ୟାୟପରାୟଣତାର ସହିତ ଉତ୍କଳ ଅଞ୍ଚଳ ଚଳନର ପରିଚୟ ଦେଇଥିଲେ । ଏହାଙ୍କ ଠାରୁ ଆମ୍ଭେମାନେ ଅନେକ ଉପକାର ପାଇବାର ଭରସା ରଖୁଁ । ଆଜିକାଲି ସେ ସାହିତ୍ୟରୁ ପୀଡ଼ିତ ଅଛନ୍ତି ।

## ( ୧ମ ଭାଗ, ୩ । ୯ । ୧୮୬୩, ସଂଖ୍ୟା ୧୦ )

୮୦ । ସମ୍ବାଦ

ଗତ ତା ୨୦ଙ୍କ ଶ ରାତିରେ କାଠଯୋଡ଼ୀ ନଦୀର ହରିହର ଘାଟ ନିକଟରେ ପୂର୍ବ୪୦ଟ ପଥର ବନ୍ଧ ଭଗ୍ନ ହୋଇଅଛି ।

## ଉତ୍କଳ ହିତୈଷିଣୀ

( ୩ୟ ଭାଗ, ୨୪ । ୮ । ୧୮୭୩, ସଂଖ୍ୟା ୨ )

୮୧ । ସ୍ଥାନୀୟ ସମ୍ବାଦ

ଦୋବନ୍ଦା ନିକଟସ୍ଥ କାଠଯୋଡ଼ୀ ନଦୀବନ୍ଧ ଅତଡ଼ା ଖାଇଅଛି । ସ୍ୱଶ୍ୟରେ ନଦୀ ବଢ଼ି ନଥିଲା । ଆମ୍ଭେମାନେ ଭରସା କରୁଁ ଆମ୍ଭମାନଙ୍କର ଇଞ୍ଜି-ନିୟର ମେକମଲନ ସାହେବ ତାହାର ଶୀଘ୍ର ସଂସ୍କାର କରିବେ ।

---



ସୁଧାକର ପଟ୍ଟନାୟକ—ଜନ୍ମ ଅନୁଗୋଳର ପୂର୍ବ ରାଜଧାନୀ ପୁରୁଣାଗଡ଼ଠାରେ ୧୮୯୧, ଅଗଷ୍ଟ ୧୭ ତାରିଖରେ । ପିତା ଜଣେ ଉଚ୍ଚ ପ୍ରଶଂସିତ ସ୍କୁଲ ଶିକ୍ଷକ ଥିଲେ । ବାଲ୍ୟକାଳରୁ ଓଡ଼ିଆ ସାହିତ୍ୟ ପ୍ରତି ଆକୃଷ୍ଟ ଓ ଗଳ୍ପଲେଖନ (ପ୍ରଣୟ ପ୍ରତି—ମୁକୁର ୧୯୧୪), (ଏପ୍ରିଲ ଫୁଲ—ଉତ୍କଳ ସାହିତ୍ୟ ୧୯୨୧) । ପରେ ଗଳ୍ପ କବିତା ଆଦି ଲେଖନ ପରିତ୍ୟାଗ କରି ଉତ୍କଳ ସାହିତ୍ୟରେ ତତ୍‌କାଳୀନ ବିଶେଷ ଅଭାବଥିବା ଇତିହାସ, ପ୍ରତ୍ନତତ୍ତ୍ୱ ଆଦିର ଆଲୋଚନାରେ ମନୋନିବେଶ ।

୧୯୨୯ରେ ସବ୍‌ଡେପୁଟି କଲେକ୍ଟରରୂପେ ନିଯୁକ୍ତି ପାଇ ସମନ୍ଧକ୍ରମେ ସମ୍ବଲପୁର ବରଗଡ଼ର ତହସିଲଦାର—ଆସିଷ୍ଟାଣ୍ଟ ସେଟଲମେଣ୍ଟ ଅଫିସର—ବାଣପୁରର ତହସିଲଦାର—ଓଡ଼ିଶା କେନାଲ ରେଭିନ୍ୟୁ ଅଫିସର—କଟକ ମ୍ୟୁନିସିପାଲିଟିର ଏକ୍‌ଜିକ୍ୟୁଟିଭ ଅଫିସର—କଟକ ଟ୍ରେଜେରି ଅଫିସର—କଟକ, ଯାଜପୁର ଆଦି ବିଭିନ୍ନ ସବଡିଭିଜନର ସବ୍‌ଡିଭିଜନାଲ ଅଫିସରରୂପେ କାର୍ଯ୍ୟ କରି ପରିଶେଷରେ ଓଡ଼ିଶା ଦେବୋତ୍ତର କମିଶନର ଭାବରେ ସରକାରୀ କର୍ମରୁ ଅବସରଗ୍ରହଣ (୧୯୫୦) । ସରକାରୀ କର୍ମବ୍ୟପଦେଶରେ ଓଡ଼ିଶାର ବିଭିନ୍ନ ଜିଲାରେ କାର୍ଯ୍ୟ କରିବା ସମୟରେ ଉକ୍ତ ଜିଲାମାନଙ୍କର ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ ଓ ପ୍ରବନ୍ଧ ଲେଖନ ।

ବହୁପୂର୍ବରୁ ଉତ୍କଳ ସାହିତ୍ୟ ସମାଜର ସଭ୍ୟ—ସରକାରୀ କାର୍ଯ୍ୟରୁ ଅବସରଗ୍ରହଣ ପରେ ଉତ୍କଳ ସାହିତ୍ୟ ସମାଜର ସମ୍ପାଦକ—ପରେ ସମାଜର ସଭାପତି (୧୯୬୧-୬୪) । ସାହିତ୍ୟ ସାଧନା—'ଚନ୍ଦ୍ରକଳାବିନୋଦ', 'ରାଜା ସୋମନାଥ ସିଂହ ଜଗଦେବ', 'ସମରତରଙ୍ଗ', 'ବ୍ରଜନାଥ ଗ୍ରନ୍ଥାବଳୀ', 'ଚକଡ଼ା ପୋଥି', 'ସମ୍ବାଦପତ୍ରରୁ ଓଡ଼ିଶାର କଥା' ଇତ୍ୟାଦି ପ୍ରକାଶିତ ଓ ବ୍ୟକ୍ତିଗତ ବହୁ ଅପ୍ରକାଶିତ ପାଣ୍ଡୁଲିପି ।